# ଶ୍ରୀମଦ୍ ଭାଗବତ-ପ୍ରବଚନ

ସ୍ୱାମୀ ତେଜୋମୟାନନ୍ଦ




ସେଣ୍ଟ୍ରାଲ ଚିନ୍ମୟ ମିଶନ ଟ୍ରଷ୍ଟ

# ବିଷୟାନୁକ୍ରମଣିକା

| କ୍ର.ସଂ. | ବିବରଣୀ | ପୃଷ୍ଠା |
|---|---|---|
| ୧୨. | ପରୀକ୍ଷିତଙ୍କ ଦ୍ୱାରା କଳିର ନିଗ୍ରହ | ୯୦ |
| ୧୩. | କଳିର ପାଞ୍ଚଟି ନିବାସ ସ୍ଥାନ | ୯୦ |
| ୧୪. | ରାଜା ପରୀକ୍ଷିତଙ୍କୁ ଋଷି ପୁତ୍ରଙ୍କ ଅଭିଶାପ | ୯୨ |
| ୧୫. | ପରୀକ୍ଷିତଙ୍କ ପଶ୍ଚାତାପ ଏବଂ ଦଣ୍ଡ ଯାଚନା | ୯୪ |
| ୧୬. | ପରୀକ୍ଷିତଙ୍କ ବିରକ୍ତି ତଥା ଶୁକଦେବଙ୍କ ଆଗମନ | ୯୬ |

## ଦ୍ୱିତୀୟ ସ୍କନ୍ଧ



## ତୃତୀୟ ସ୍କନ୍ଧ

| କ୍ର.ସଂ. | ବିବରଣୀ | ପୃଷ୍ଠା |
|---|---|---|

## ଚତୁର୍ଥ ସ୍କନ୍ଧ



## ପଞ୍ଚମ ସ୍କନ୍ଧ

| କ୍ର.ସଂ. | ବିବରଣୀ | ପୃଷ୍ଠା |
|---|---|---|

| କ୍ର.ସଂ. | ବିବରଣୀ | ପୃଷ୍ଠା |
|---|---|---|


**ଦଶମ ସ୍କନ୍ଧ (ଉତ୍ତରାର୍ଦ୍ଧ)**

| କ୍ର.ସଂ. | ବିବରଣୀ | ପୃଷ୍ଠା |
|---|---|---|

## ଏକାଦଶ ସ୍କନ୍ଧ

ॐ

ଓଁ ଶ୍ରୀ ଚିନ୍ମୟ ସଦ୍‌ଗୁରବେ ନମଃ ॥
ଓଁ ଶ୍ରୀ ଚିନ୍ମୟ ସଦ୍‌ଗୁରବେ ନମଃ ॥
ଓଁ ଶ୍ରୀ ଚିନ୍ମୟ ସଦ୍‌ଗୁରବେ ନମଃ ॥
ଓଁ ଶ୍ରୀ ଚିନ୍ମୟ ସଦ୍‌ଗୁରବେ ନମଃ ॥

ଓଁ ନମୋ ଭଗବତେ ବାସୁଦେବାୟ ॥
ଓଁ ନମୋ ଭଗବତେ ବାସୁଦେବାୟ ॥
ଓଁ ନମୋ ଭଗବତେ ବାସୁଦେବାୟ ॥
ଓଁ ନମୋ ଭଗବତେ ବାସୁଦେବାୟ ॥

ଶ୍ରୀକୃଷ୍ଣ ଶରଣଂ ମମ ॥
ଶ୍ରୀକୃଷ୍ଣ ଶରଣଂ ମମ ॥
ଶ୍ରୀକୃଷ୍ଣ ଶରଣଂ ମମ ॥
ଶ୍ରୀକୃଷ୍ଣ ଶରଣଂ ମମ ॥



୨୭ ସେପ୍ଟେମ୍ବର, ୨୦୦୧

## ଦୁଇ ପଦ

ଶ୍ରୀମଦ୍ ଭାଗବତ ଏପରି ଏକ ହୃଦୟସ୍ପର୍ଶୀ ଗ୍ରନ୍ଥ ଯେ, ତାର ପାଠକ, ଶ୍ରୋତା ଏବଂ ବକ୍ତା ସମସ୍ତଙ୍କୁ ଆନନ୍ଦ ସାଗରରେ ବୁଡେଇ ଦେଇଥାଏ । ସର୍ବୋତ୍କୃଷ୍ଟ ଜ୍ଞାନ ପ୍ରାପ୍ତି ସହିତ ତାଙ୍କର ହୃଦୟ ଦିବ୍ୟ ଭକ୍ତି ରସରେ ମଧ୍ୟ ଆପ୍ଳୁତ ହୋଇଯାଏ । ଏହି ଭକ୍ତି ରସ ହିଁ ମନୁଷ୍ୟର ପରମ ଉପଲବ୍ଧି ।

ସନ ୧୯୮୯ରେ ସନ୍ଦୀପନି ସାଧନାଳୟ, ମୁମ୍ବାଇରେ ମୋର ଭାଗବତ ସପ୍ତାହ ଆୟୋଜନ ହୋଇଥିଲା । ଚିନ୍ମୟ ମିଶନ, ମୁଲୁଣ୍ଡର ଜଣେ ଅତ୍ୟନ୍ତ ପରିଶ୍ରମୀ ସଦସ୍ୟା ଶ୍ରୀମତୀ ସବିତା ଚକ୍ରବର୍ତ୍ତୀ ଅତି ମନୋଯୋଗ ପୂର୍ବକ ଭିଡିଓ ଟେପ୍ ଦ୍ୱାରା ସେହି ପ୍ରବଚନକୁ ଲିପିବଦ୍ଧ କରିଥିଲେ । ତା ପରେ ବ୍ରହ୍ମଚାରିଣୀ ଅମୃତା ଚୈତନ୍ୟ ଏକାଗ୍ରତା ପୂର୍ବକ ତାର ସମ୍ପାଦନ କଲେ । କମ୍ପ୍ୟୁଟର ଦ୍ୱାରା ପାଣ୍ଡୁଲିପିକୁ ପ୍ରସ୍ତୁତ କରିବାରେ ଚିନ୍ମୟ ମିଶନ, ଲକ୍ଷ୍ନୌର ଯୁବଶାଖା ବିଶେଷ ଭାବେ ସମୀର, ସଞ୍ଜୟ, ପୁନୀତ, ମନୀଷ, କମଳ, ପ୍ରୀତି, ଋତୁ ଏବଂ ରାଜିକା ତଥା ଚିନ୍ମୟ ମିଶନ ଲକ୍ଷ୍ନୌର ସଦସ୍ୟ ଡା. ମୋତି ବାବୁ ବହୁତ ପରିଶ୍ରମ କରିଥିଲେ । ଏ ସମସ୍ତଙ୍କୁ ହାର୍ଦ୍ଦିକ ଅଭିନନ୍ଦନ । ଭଗବାନ ଶ୍ରୀକୃଷ୍ଣ ଏବଂ ପୂଜ୍ୟ ଗୁରୁଦେବଙ୍କର ଆଶୀର୍ବାଦ ଏ ସମସ୍ତଙ୍କ ପାଇଁ ସଦାସର୍ବଦା ରହିଥାଉ । ହରି ଓମ୍ ।

ପ୍ରଭୁ ସେବାରେ
ସ୍ୱାମୀ ତେଜୋମୟାନନ୍ଦ

ପୂଜ୍ୟ ସ୍ୱାମୀ ତେଜୋମୟାନନ୍ଦଜୀଙ୍କ
ଦ୍ୱାରା ଶ୍ରୀମଦ୍ ଭାଗବତ ସପ୍ତାହର ଅବସରରେ
(୩୧ ଅକ୍ଟୋବର-୬ ନଭେମ୍ବର ୧୯୯୨)

## ପରମ ପୂଜ୍ୟ ଗୁରୁଦେବ ସ୍ୱାମୀ ଚିନ୍ମୟାନନ୍ଦଜୀଙ୍କର
## ଉଦ୍‌ଘାଟନୀ ସନ୍ଦେଶ

ବନ୍ଧୁଗଣ, ଇତିହାସର ଏକ ମହାନତମ ଚମତ୍କାର ହେଉଛି ହିନ୍ଦୁ ଧର୍ମର ବୈଦିକ କାଳରୁ ଆଜି ପର୍ଯ୍ୟନ୍ତ ଦୀର୍ଘ ଏବଂ ଅନ୍ତହୀନ ଇତିହାସ । ଏଥିପାଇଁ ଏହା (ହିନ୍ଦୁ ଧର୍ମ) ସମସ୍ତ ଧର୍ମର ଏବଂ ଦର୍ଶନର ମୂଳସ୍ରୋତ ଅଟେ । ଯଦ୍ୟପି ଆମ ନିଜର ଘୋର ଅଜ୍ଞାନର କାରଣ ହେତୁ ଆମେ ତାକୁ ଖଣ୍ଡନ କରୁ କିନ୍ତୁ ଆଜି ମଧ୍ୟ ଆମେ ହିନ୍ଦୁ । ଅନ୍ୟ ଧର୍ମର ଇତିହାସକୁ ବିଚାର କରନ୍ତୁ । ସେସବୁ ବହିଯାଇଥିବା ବାୟୁର ଆଭାସ ମାତ୍ର ଏବଂ ନଷ୍ଟ ହେବା ଦିଗରେ ଅଗ୍ରସର ହେଲେଣି । ପୁଣି ଏଇ ହିନ୍ଦୁଧର୍ମ ବଞ୍ଚିଛି କିପରି ? ଆମର ଏଠାରେ ଖ୍ରୀଷ୍ଟିଆନ ବା ଇସଲାମ ଭଳି ସଙ୍ଗଠନ ମଧ୍ୟ ନଥିଲା ତଥାପି ସେ ବଞ୍ଚି ରହିଲା ।

ଇତିହାସର ଉତ୍‌ଥାନ-ପତନ ମଧ୍ୟ ଦେଇ ଆସିଥିବା ହିନ୍ଦୁଧର୍ମ ଅଛି । ଏ କଥା ନୁହେଁ ଯେ ତାର ଶତ୍ରୁ ନ ଥିଲେ । ତାର ଶତ୍ରୁ ବାହାରେ ହିଁ ନୁହେଁ, ଭିତରେ ମଧ୍ୟ ଥିଲେ । ଆଜି ମଧ୍ୟ ଆମର ଆଭ୍ୟନ୍ତରୀଣ ଶତ୍ରୁ ଏହି ମହାନ୍ ସଂସ୍କୃତିର ବିନାଶ କରିବା ପାଇଁ ପ୍ରଯତ୍ନଶୀଳ, ତଥାପି ମଧ୍ୟ ଏହି ସଂସ୍କୃତି ଏବେ ବି ଜୀବନ୍ତ । ଆପଣ କହନ୍ତି ଯେ, ମୁଁ ହିନ୍ଦୁ ଧର୍ମ ଉପରେ ଆସ୍ଥା ରଖେ ନାହିଁ, ନମସ୍ତେ । କିନ୍ତୁ ଏହି ନମସ୍ତେ ମଧ୍ୟ କେଉଁଠୁ ବାହାରୁ ଆସି ନାହିଁ । ଏହା କିପରି ବଞ୍ଚିଛି ? ହିନ୍ଦୁ ଧର୍ମର ନମନିୟତା ଯୋଗୁଁ ଏହା ବଞ୍ଚିଛି ।

ବୃକ୍ଷ ନିଜର Cambium ଦ୍ୱାରା ବିକଶିତ ହୋଇଥାଏ । ସେ ଭିତରୁ ବିକଶିତ ହୋଇ ଛୋଟରୁ ବଡ଼ ସ୍ୱସ୍ଥ ବିଶାଳ ବୃକ୍ଷ ହୋଇଯାଏ । Cambium ଭିତରୁ ବଢ଼ିଥାଏ, ଯେପରି କୌଣସି ଗର୍ଭିଣୀ, ଗର୍ଭସ୍ଥ ଶିଶୁ ବଢ଼ିବା ସହିତ ସେ ନିଜେ ମଧ୍ୟ ବଢ଼ିଥାଏ । ସେହିପରି ଯେତେବେଳେ ବୃକ୍ଷଟିଏ ବଢ଼ିଥାଏ, ସେତେବେଳେ ବାହାର ଛାଲିଗୁଡିକ ତାକୁ ସ୍ଥାନ ଦେଇ ଦିଅନ୍ତି । କିନ୍ତୁ ସେ ଛାଲି ବୃକ୍ଷକୁ କେବେ ଛାଡ଼େ ନାହିଁ । ଏହା ବୃକ୍ଷକୁ ବାନ୍ଧି ରଖିଥାଏ । ସେହି ବୃକ୍ଷକୁ Cambium ଭିତରୁ ଏବଂ ଛାଲି ଗୁଡିକ ବାହାରୁ ବାନ୍ଧି ରଖିଥାଆନ୍ତି ।

ଆମର ଧର୍ମ ଅର୍ଥାତ୍ ହିନ୍ଦୁଧର୍ମରେ ବିକଶିତ ହେବାର କ୍ଷମତା ଅଛି, ଯଦ୍ୱାରା ସେ ସମାଜକୁ ସେତେବେଳେ ମଧ୍ୟ ବାନ୍ଧି ରଖିଥିଲା ଯେତେବେଳେ ସେ ଅତ୍ୟଧିକ ବୃଦ୍ଧି ହୋଇଥିଲା । ଆଜି କ'ଣ ଆମ ଭିତରେ ବୈଦିକ ସମାଜ ନାହିଁ ? ବିଶ୍ୱର ସମସ୍ତ ଐତିହାସିକ ପରିବର୍ତ୍ତନ ଆମର ଏଠାରେ ମଧ୍ୟ ହୋଇଛି, କିନ୍ତୁ ଏହି ପରିବର୍ତ୍ତନ ହୋଇଥିଲେ ମଧ୍ୟ, ଯୁଦ୍ଧ ହେଉ ବା ଶାନ୍ତି, ଦୁର୍ଭିକ୍ଷ ହେଉ ବା ସମ୍ପନ୍ନତା- ହିନ୍ଦୁତ୍ୱ ଆମକୁ ବାନ୍ଧି ରଖିଛି। ଏହି କ୍ଷମତା ଅନ୍ୟ ଧର୍ମରେ ମଧ୍ୟ କେବେ କେବେ ମିଳିଥାଏ, ସେମାନେ ବିକଶିତ ନ ହୋଇ ମତାନ୍ଧ ହୋଇଯାଆନ୍ତି ଏବଂ ସମାଜକୁ ପଦାଘାତ କରନ୍ତି । ତାକୁ ବିକଶିତ ହେବାକୁ ଦିଅନ୍ତି ନାହିଁ । ସେତେବେଳେ ଭିତରୁ ବିଦ୍ରୋହ ହୁଏ ଏବଂ ସେ ଧର୍ମ ନଷ୍ଟ ହୋଇଯାଏ ।

ଅନେକ ଧର୍ମ ଓ ସଂସ୍କୃତିମାନ ଆସିଛନ୍ତି ଏବଂ ଚାଲିଯାଇଛନ୍ତି । ଗ୍ରୀକ୍, ରୋମାନ, ମେସିଡୋନିୟନ ପ୍ରଭୃତି । ସେମାନେ ଆସି ବସ୍ତୁତଃ ସମାଜର ସେବା କଲେ, କଳା ଓ ସାହିତ୍ୟରେ ସଂସ୍କୃତିର ବୈଭବଶାଳୀ ଯୁଗ ଆଣିଲେ କିନ୍ତୁ ଇତିହାସର ଏକ ମୋଡ଼ରେ ପୁଣି ତାହା ଲୁପ୍ତ ହୋଇଗଲା । ଏପରି କାହିଁକି? କାହିଁକି ନା ସେମାନେ ସମସ୍ତଙ୍କୁ (ତାଙ୍କର ନୂତନ ଆକାଂକ୍ଷା ଏବଂ ଆବଶ୍ୟକତା, ଜୀବନରେ ନୂତନ ପ୍ରୟୋଗ ପାଇଁ ଉତ୍ସୁକ ବ୍ୟକ୍ତିମାନଙ୍କୁ) ଏକାଠି ବାନ୍ଧି ରଖି ପାରିଲେ ନାହିଁ । ଏପରି ନୁହେଁ ଯେ, ଏକ ପୂର୍ଣ୍ଣାଙ୍ଗ ରୂପରେ ହିନ୍ଦୁମାନଙ୍କର ଏପରି ଆକାଂକ୍ଷା ଏବଂ ଆଶା କେବେ ରହି ନାହିଁ କିନ୍ତୁ ଏହି ଧର୍ମ ସ୍ୱୟଂ ବଢି ସମସ୍ତଙ୍କୁ ଏକାଠି ରଖିବାରେ ସମର୍ଥ ହୋଇପାରିଛି । ଏହି ଧର୍ମର ଅନେକ ପ୍ରମୁଖ ଲକ୍ଷଣ ମଧ୍ୟରୁ ଏହା ଗୋଟିଏ ।

ଏହା ବୁଝିବା ଆବଶ୍ୟକ ଯେ, ବୈଦିକ କାଳରେ ଏକ ପଦ୍ଧତି ରୂପରେ କୌଣସି ଭକ୍ତି ଆନ୍ଦୋଳନ ହୋଇ ନଥିଲା କାହିଁକି ? କାହିଁକି ନା ସେ ସମୟରେ ବ୍ୟକ୍ତି ଅଧିକ ବୁଦ୍ଧିଜୀବୀ ଥିଲେ । ତାଙ୍କ ମନରେ ସ୍ୱଚ୍ଛ ଇଚ୍ଛା ଥିଲା । ତେଣୁ ତାଙ୍କର ବହିର୍ମୁଖିତା ମଧ୍ୟ ସ୍ୱଚ୍ଛ ଥିଲା । ସେମାନେ ସମସ୍ତେ ଜନ୍ମରୁ ଚିନ୍ତନଶୀଳ ଥିଲେ । ସେମାନଙ୍କର ଜୀବନ ସରଳ ଥିଲା ଏବଂ ସେମାନଙ୍କର ଦେଶ ସୁନ୍ଦର ଥିଲା । ଯେଉଁଠାରେ ଲୋଭୀ ବ୍ୟକ୍ତିମାନେ ବୃକ୍ଷର ନାଶ କରି ନଥିଲେ । ପ୍ରାକୃତିକ ସମ୍ପଦ ପ୍ରଚୁର ମାତ୍ରାରେ ଥିଲା । ସେହି ସମ୍ପନ୍ନତା ମଧ୍ୟରେ ମାନବର ଆକାଂକ୍ଷା ବହୁତ କମ ଥିଲା । ତେଣୁ ସେ ଅଧିକ ଚିନ୍ତନଶୀଳ ହୋଇଗଲେ। ସମ୍ପୂର୍ଣ୍ଣ ବୈଦିକ ସାହିତ୍ୟରେ ବୌଦ୍ଧିକ ଚିନ୍ତନ ଉପରେ ହିଁ ଗୁରୁତ୍ୱ ଦିଆଯାଇଥିଲା ।

ମହାଭାରତ ଯୁଦ୍ଧ ପ୍ରାରମ୍ଭ ସମୟ ପର୍ଯ୍ୟନ୍ତ ଅଧିକନ୍ତୁ ତା'ଠାରୁ ବହୁତ ପୂର୍ବରୁ ଲୋକମାନେ ଆତ୍ମକେନ୍ଦ୍ରିତ, ତୃଷ୍ଣାଗ୍ରସ୍ତ ହୋଇଗଲେ । ସେମାନେ ନିଜର ଇଚ୍ଛା ପୂରଣ କରିବା ପାଇଁ ସମାଜର ଅନ୍ୟ ସଦସ୍ୟମାନଙ୍କୁ ଉପେକ୍ଷା କରିବାକୁ ମଧ୍ୟ କୁଣ୍ଠାବୋଧ କରୁ ନଥିଲେ । ସେମାନଙ୍କର ମନ ଚଞ୍ଚଳ ହେବାକୁ ଲାଗିଲା ଏବଂ ଏଭଳି ବ୍ୟକ୍ତିମାନଙ୍କ ପକ୍ଷରେ କିଛି ସମୟ ବସି ଚିନ୍ତନ କରିବା ଅସମ୍ଭବ ହେବାକୁ ଲାଗିଲା ।

ପରମ ଗୁରୁ ବ୍ୟାସଜୀ ସେହି ପରିବର୍ତ୍ତନଶୀଳ ସମାଜର ଏହି ଆବଶ୍ୟକତାକୁ ବୁଝିଲେ, (ମୁଁ ସମ୍ପୂର୍ଣ୍ଣ ବିବରଣୀକୁ ଯାଉନାହିଁ) ତେଣୁ ସେ ଏକ ପଦ୍ଧତି ବିକଶିତ କଲେ ଯାହାକି ବୌଦ୍ଧିକ ଚିନ୍ତନ ନୁହେଁ, କିନ୍ତୁ ତାହା ଥିଲା ହୃଦୟରେ ଭକ୍ତି ଜାଗ୍ରତ କରିବା । ସେହି ତୀବ୍ର ଭକ୍ତିକୁ ପ୍ରକଟିତ କରିପାରୁଥିବା ଏକ ରୂପ ଚିନ୍ତନ କରିବା ପାଇଁ- ସେ ଶ୍ରୀକୃଷ୍ଣ ହୁଅନ୍ତୁ ଅଥବା ଶ୍ରୀରାମ- ପୌରାଣିକ ପରମ୍ପରାର ଆରମ୍ଭ ହେଲା । ଆମେ କୌଣସି ରୂପ ଉପରେ ନିଜର ମନକୁ ଲଗାଇ ପାରିବା ନାହିଁ, ଯେଉଁ ପର୍ଯ୍ୟନ୍ତ ସେ ଆମ କଳ୍ପନାରେ ସ୍ପଷ୍ଟ ଓ ବିଶଦ ରୂପରେ ନ ଆସିଛି । ତେଣୁ ଶ୍ରୀକୃଷ୍ଣ ଅଥବା ଶ୍ରୀରାମଙ୍କୁ ନେଇ ଏକ ସମ୍ବେଦନଶୀଳ ବ୍ୟାଖ୍ୟା କରାଗଲା । ସ୍ୱୟଂ ଭଗବାନ, ଆମର ଏବଂ ଆପଣଙ୍କର ସମ୍ମୁଖରେ ଆସୁଥିବା ସାଂସାରିକ ସମସ୍ୟାର କିପରି ସମ୍ମୁଖୀନ ହୋଇଛନ୍ତି, ଏହି ସବୁର ଏତେ ବିଶଦ ବର୍ଣ୍ଣନ କରାଗଲା ଯେ, ଯେକେହି ବ୍ୟକ୍ତି- ସେ ଯୁଦ୍ଧ ଭଳି ମାନସିକ ଅଶାନ୍ତ ଗ୍ରସ୍ତ ହୋଇଥିଲେ ସୁଦ୍ଧା-ଯଦି ସେ ସେଠାରେ ଆସି ବସିଯାଏ, ତେବେ ତାହା ଶୁଣି ତାର ମନ ପରମ ସତ୍ତା ଆଡ଼କୁ ଆକୃଷ୍ଟ ହୋଇଯିବ ।

ବୈଦିକ କାଳୀନ ଉପାସନା ପଦ୍ଧତିକୁ ହୃଦୟଙ୍ଗମ କରିବା ଆଜିର ସାଧାରଣ ବ୍ୟକ୍ତି ପାଇଁ ପ୍ରାୟ ଅସାଧ ଅଟେ। କିନ୍ତୁ ସୌନ୍ଦର୍ଯ୍ୟକୁ ଆହୁରି ସୁନ୍ଦରତା ପ୍ରଦାନ କରୁଥିବା ଘନଶ୍ୟାମଙ୍କର ଯମୁନା ତଟରେ ବିଚରଣ, ତାଙ୍କର ମୂରଲୀର ମଧୁର ସଙ୍ଗୀତ, ଗୋପୀମାନଙ୍କର ସେହି ସଙ୍ଗୀତରେ ବିଭୋର ହୋଇ ଆକର୍ଷିତ ହେବା ଏବଂ ତାଙ୍କୁ ଘେରି ନୃତ୍ୟ କରିବା- ଏହିସବୁ ଏପରି ଦୃଶ୍ୟ ଯେ ଯାହାର ସାକ୍ଷାତ ସହଜରେ ହୋଇଯାଏ କାରଣ ଏହା ଆମ ସ୍ତରର କଥା ।

ପ୍ରାରମ୍ଭିକ ବିଦ୍ୟାଳୟ ଏବଂ କଲେଜରେ ପଢ଼ା ହେଉଥିବା ଭୌତିକ ବିଜ୍ଞାନ ଆମେ ବୁଝିପାରିବୁ। କିନ୍ତୁ ଯଦି ଆପଣ ପ୍ରାରମ୍ଭିକ ଶ୍ରେଣୀରେ ଛାତ୍ରକୁ ଉଚ୍ଚ ଭୌତିକ ବିଜ୍ଞାନ ପଢ଼ାଇବେ ତେବେ ସେ ବୁଝିପାରିବ ନାହିଁ । ହଁ, ଥରେ ପ୍ରାରମ୍ଭିକ, ଭୌତିକ ବିଜ୍ଞାନ ପଢ଼ି ଧିରେ ଧିରେ ଯାଇ ସ୍ନାତକୋତ୍ତର ଶ୍ରେଣୀରେ ଉଚ୍ଚ ଭୌତିକ ବିଜ୍ଞାନ ବୁଝି

ପାରିବେ । ସେହିଭଳି ଭାବରେ ଭକ୍ତି ମନକୁ ଶାନ୍ତ କରିଦିଏ । ତାର ବିକ୍ଷୋଭ ହ୍ରାସ ପାଏ ଏବଂ ପୁଣି ସେହି ସ୍ଥିର ମନ ହୃଦୟସ୍ଥ ଚୈତନ୍ୟର ସୂକ୍ଷ୍ମ ଏବଂ ସତତ ଚିନ୍ତନ କରିବାର ସାଧନ ହୋଇଯାଏ ।

ଆଜି ଆପଣଙ୍କୁ ଏବଂ ଆମକୁ ଏକମାତ୍ର ମାର୍ଗ ଉପଲବ୍ଧ, ତାହା ହେଉଛି ଭାଗବତ। ଆମେ ଉପନିଷଦକୁ ପଢିପାରିବୁ । ବୁଦ୍ଧିସ୍ତରରେ ମଧ୍ୟ ତାକୁ ବୁଝିପାରିବୁ । କିନ୍ତୁ କେବଳ ଏହିପରି ବୁଝିବା ଦ୍ୱାରା ହିଁ ଉପନିଷଦ ଉପଲବ୍ଧ ହୁଏ ନାହିଁ । ଆମେ ନିଜ ଜୀବନରେ ତାହା ଆଚରଣ କରିବାକୁ ହେବ । କିନ୍ତୁ ଯେତେବେଳେ ଆମେ ସେହି ଦିଗରେ ପ୍ରଯନ୍ କରୁ, ସେତେବେଳେ ଆମେ ନିଜକୁ ଅସମର୍ଥ ଅନୁଭବ କରୁ, କାରଣ ଆମ ମନ ତ ସବୁବେଳେ ଏପଟ ସେପଟ ଦୌଡୁଥାଏ । ଏହା ଆମ ସମସ୍ତଙ୍କର ଅଙ୍ଗେ ଲିଭାଇବା କଥା। ଏଥିରେ ଗୋପନୀୟତାର କୌଣସି କଥା ନାହିଁ । ଆମ ମଧ୍ୟରେ ପ୍ରତ୍ୟେକ କାମୀ, ଲୋଭୀ, ସ୍ୱାର୍ଥୀ ଏବଂ ଆତ୍ମକେନ୍ଦ୍ରିତ ଅଟୁ ।

ଏପରି ସ୍ଥିତିରେ ଆମେ ସେହି ମହତ୍ତମର ଧ୍ୟାନ କିପରି କରିବା ? ମନକୁ ତାର ଭ୍ରମଣରୁ ଟାଣି ଆଣି ଏହା ବୁଝାଇବା ପାଇଁ କିପରି ପ୍ରେରିତ କରିବୁ ଯେ ଭଗବାନଙ୍କ ଚିନ୍ତନରେ ଉଚ୍ଚତର ଆନନ୍ଦ ଏବଂ ଅଧିକ ଆହ୍ଲାଦ ରହିଛି । ସେଥିପାଇଁ ବ୍ୟାସଜୀ ଆଜିର ମନୋବିଜ୍ଞାନୀମାନଙ୍କୁ ମଧ୍ୟ ଅଜ୍ଞାତ ସମସ୍ତ ସମ୍ଭବ ମନୋବୈଜ୍ଞାନିକ ଯୁକ୍ତିମାନ ଅଧିକତମ ଆକର୍ଷଣୀୟ ରୂପରେ ପ୍ରସ୍ତୁତ କରିଛନ୍ତି ।

ଉଦାହରଣସ୍ୱରୂପ, ଯଦି ଆପଣଙ୍କୁ କୁହାଯାଏ ଯେ ତିରୁପତି ଯିବେ, ତେବେ ଆପଣ ପଚାରିବେ, କାହିଁକି ? "ଧନ ପାଇଁ" । ତାହା ଆପଣଙ୍କୁ ବୁଝି ହୋଇଯିବ, କାହିଁକି ନା ଆପଣ ତାହାହିଁ ତ ଚାହୁଁଛନ୍ତି । ସେଥିପାଇଁ ନିଷ୍ଠାବାନ୍ ଶିକ୍ଷକ କହିଥାଏ, ହଁ, ତାହା ତୁମକୁ ମିଳିପାରେ । "କିପରି ?" "ତିରୁପତି ଯିବା ଦ୍ୱାରା" ତେବେ ଆପଣ ସେଠାକୁ ଚାରି ପାଞ୍ଚଥର ଯାଆନ୍ତି, ପୁଣି କହନ୍ତି, "ସ୍ୱାମୀଜୀ, ଆମର କାରବାର ବଢୁ ନାହିଁ।" "ତିରୁପତି ଗଲେ ?" "ହଁ, ଗଲି ।" "କିପରି ?" "ନିଜ କାରରେ।" "ବାସ୍, ସେଥିପାଇଁ ତ ବଢୁ ନାହିଁ। ତୁମକୁ ପାଦରେ ଚାଲି ଚାଲି ଯିବା ଉଚିତ। "ଏପରି କି ?" ଆପଣ ପୁଣି ଧଇଁ ସଇଁ ହୋଇ ଚାରି ପାଞ୍ଚଥର ଯାଆନ୍ତି । ତା ଦ୍ୱାରା ଆପଣଙ୍କ ସ୍ୱାସ୍ଥ୍ୟ ତ ସୁଧୁରିଯାଏ, କିନ୍ତୁ କାରବାର ବଢ଼େ ନାହିଁ । "ସ୍ୱାମୀଜୀ, ଆମକୁ ଲାଗୁଛି ଏଥିରେ କୌଣସି କାର୍ଯ୍ୟ ସିଦ୍ଧି ହେବ ନାହିଁ ।" "କାହିଁକି ? ତୁମେ ପାଦରେ ଯାଇଥିଲ ?" "ହଁ, ପାଦରେ ତ ଯାଇଥିଲି ।" "ଚାଲୁଥିବା ସମୟରେ ତୁମେ କ'ଣ କରୁଥିଲ ?"

"କେବଳ ଶ୍ୱାସ ନେଉଥିଲି ।" "ନାହିଁ, ତୁମକୁ ଗୋବିନ୍ଦ-ଗୋବିନ୍ଦ-ଗୋବିନ୍ଦ ଜପ କରିବା ଉଚିତ।"

ପୁଣି ଏପରି ହୁଏ ଯେ, ଯେତେ ଯେତେ ଆପଣ ଭଗବାନଙ୍କ ନାମ ଉଚ୍ଚାରଣ କରି ଆଗକୁ ବଢୁଛନ୍ତି, ସେତେ ସେତେ ଆପଣଙ୍କର ଭଗବାନଙ୍କ ପ୍ରତି ଶ୍ରଦ୍ଧା ମଧ୍ୟ ବଢୁଛି। ପୁଣି ଆପଣ ସେଠାରେ ପହଞ୍ଚୁଛନ୍ତି । ସେ ପର୍ଯ୍ୟନ୍ତ ବ୍ୟବସାୟ ମଧ୍ୟ ବଢ଼ିଯିବ, କାହିଁକି ନା ବ୍ୟବସାୟ ସଦାବେଳେ ମାନ୍ଦା ହୋଇ ରହି ନ ଥାଏ । ଦେଖନ୍ତୁ ଯଦି ବ୍ୟବସାୟ ନ ବଢେ, ତେବେ ଆପଣ ପର୍ଯ୍ୟାପ୍ତ ଚତୁର ନୁହନ୍ତି । ଭୁଲ କରି କରି ଏବେ ଚତୁର ହୋଇଗଲେଣି । ଯେତେବେଳେ ଆପଣଙ୍କର ବ୍ୟବସାୟ ସମ୍ଭାଳି ହୋଇଯାଏ, ସେତେବେଳେ ଆପଣଙ୍କର ଗୋବିନ୍ଦଙ୍କ ଉପରେ ଆସ୍ଥା ବଢିଯାଏ ।

ଆପଣ କହି ଉଠନ୍ତି, "ଦେଖନ୍ତୁ ଏହି ସବୁ ଭଗବାନ ତିରୁପତି ଭେଙ୍କଟାଚଳପତିଙ୍କ କାରଣରୁ ସମ୍ଭବ ହୋଇଛି । ସବୁ ହିଁ ତାଙ୍କରି କୃପା। ପୁଣି ଆପଣ ପ୍ରତିମାସ 'ଗୋବିନ୍ଦ-ଗୋବିନ୍ଦ' ଜପ କରି ପାଦରେ ଯିବାକୁ ଲାଗନ୍ତି । ଆପଣଙ୍କର ସ୍ୱାସ୍ଥ୍ୟ ସୁଧୁରି ଯାଏ, ଆସ୍ଥା ବଢ଼ିଥାଏ ଏବଂ ବ୍ୟବସାୟର ମଧ୍ୟ ଅଭିବୃଦ୍ଧି ହୋଇଥାଏ । କହିବାର ତାତ୍ପର୍ଯ୍ୟ, ଯଦି ଆପଣଙ୍କୁ କୁହାଯାଏ ଯେ, ବ୍ୟବସାୟ ସୁଧାର ନିମନ୍ତେ ଆପଣଙ୍କର ଆସ୍ଥା (ବିଶ୍ୱାସ) ବଢିବା ଉଚିତ, ତେବେ ଆପଣ କହିଥାନ୍ତେ 'ପୁଣି ଆସ୍ଥା କେଉଁଠାରୁ ଆଣିବି ? ଏହା ଦନ୍ତମଞ୍ଜନ ଭଳି ବଜାରରେ ମିଳୁ ନାହିଁ।' ଠିକ୍ ଅଛି, ଏଭଳି ଭାବରେ ଆସ୍ଥା ଆସେ ନାହିଁ । ସେଥିପାଇଁ ବ୍ୟାସଦେବଜୀ ଆପଣମାନଙ୍କୁ ମାର୍ଗ ଦର୍ଶନ କରାଇଛନ୍ତି। ସେ ଆପଣଙ୍କୁ ଯୁକ୍ତି ଶିଖାଇଛନ୍ତି ।

ଏହି ପ୍ରକାର ସମସ୍ତ ପୁରାଣରେ ଶତାଧିକ ଛୋଟ, ଛୋଟ ଯୁକ୍ତିମାନ ଦିଆଯାଇଛି, ଯାହାକି ଆମ ସମସ୍ତଙ୍କ ପାଇଁ ଏବଂ ସବୁ ପ୍ରକାର ସ୍ତର ପାଇଁ ଉପଯୁକ୍ତ ଅଟେ। ଏହି ପୁସ୍ତକ ଏପରି ଏକ ବୈଜ୍ଞାନିକ ପୁସ୍ତକ ଅଟେ । ଏହି କାରଣରୁ ଆମର ପୂର୍ବଜ ଏହାକୁ ପଢୁଥିଲେ । ଏହା ନିଃସନ୍ଦେହ ଯେ ସେମାନଙ୍କର ମନ ଅନ୍ୟ କେଉଁଠି ଥିଲା । ସେମାନଙ୍କର ଏହି ଆଦର୍ଶ ନଥିଲା । ତେଣୁ ସେମାନେ କେବଳ ପାଠ କରୁଥିଲେ । ଏହା ଉପରେ ସେମାନେ କେବେ ବିଚାର କରି ନାହାନ୍ତି ଯେ କ'ଣ ପଢୁଛନ୍ତି । ସେମାନେ ବୁଝୁଥିଲେ ଯେ ଭଗବାନ ସେମାନଙ୍କର ପାଠ ଶୁଣିବେ, ସେ ନିଜେ ନ ଶୁଣନ୍ତୁ ବରଂ ଭଗବାନ ନିଶ୍ଚୟ ଶୁଣିବେ, ତା ପ୍ରତି ଧ୍ୟାନ ଦେବେ ଏବଂ ସେମାନଙ୍କୁ ମୁକ୍ତି ମିଳିଯିବ ।

ଏଠାରେ ଆପଣ ସମସ୍ତେ ଗମ୍ଭୀରତା ପୂର୍ବକ ଅଧ୍ୟୟନରତ । ସ୍ୱାମୀଜୀ ଭାଗବତର ଆନ୍ତରିକ ଭାବ ଏବଂ ସୌନ୍ଦର୍ଯ୍ୟ ଉପରେ ପ୍ରକାଶ କରିବାରେ ସମ୍ପୂର୍ଣ୍ଣ ଦକ୍ଷ । ଧ୍ୟାନ ଦେଇ ଶୁଣିବେ। **'ଯେଉଁମାନେ ଗମ୍ଭୀର ସେମାନେ ଛୁଟି ନିଅନ୍ତୁ।'**

ଯଦି ଅଧିକାରୀ ଛୁଟି ନ ଦେବେ, ତେବେ କାର୍ଯ୍ୟାଳୟ ଯିବା ବନ୍ଦ କରି ଦିଅନ୍ତୁ। ଶେଷରେ ଆପଣ ଦେଖିବେ ଯେ ଅଧିକାରୀ କହୁଛନ୍ତି-"ତେବେ ଆପଣ ଫେରି ଆସିଲେ। ଧନ୍ୟବାଦ ! ବସନ୍ତୁ !" ଏହା ଅବଶ୍ୟମ୍ଭାବୀ ଅଟେ ।

ଧ୍ୟାନ ପୂର୍ବକ ଶୁଣନ୍ତୁ। କଥନକୁ ଏବଂ ବିଚାରକୁ ଶ୍ରବଣ କରୁଥିବା ସମୟରେ ତାକୁ ସ୍ୱୟଂ ନିଜ ଜୀବନରେ ଆଚରଣ କରନ୍ତୁ। ବିଜ୍ଞାନର ପାଠ୍ୟପୁସ୍ତକ ଭଳି ତାର ଗମ୍ଭୀର ଅଧ୍ୟୟନ କରନ୍ତୁ । ଆପଣ ଅନୁଭବ କରିବେ ଯେ, ଆପଣଙ୍କର ବହୁତ ଲାଭ ହୋଇଛି- ଯାହା ଆପଣ ଉପନିଷଦ ପଢ଼ି, ଗୀତା ସ୍ମରଣ ରଖି ଏବଂ ବିବେକ ଚୂଡ଼ାମଣି ରଟନ କରି ପାଇଛନ୍ତି, ତା'ଠାରୁ ଯଥେଷ୍ଟ ଅଧିକ । ଆପଣ ପାଇବେ ଯେ, ଭାଗବତରେ ବିଷୟାସକ୍ତି ଅଛି, ରାଗଦ୍ୱେଷ ଅଛି, କ୍ରୁରତା ଅଛି ଏବଂ ଅପରାଧ ବୃତ୍ତି ମଧ୍ୟ ଅଛି । ଭଗବାନ ଶ୍ରୀକୃଷ୍ଣ ଆବଶ୍ୟକତା ଅନୁସାରେ ସୁନ୍ଦର ଅସତ୍ୟ କହିବାରେ ସଙ୍କୋଚ କରି ନାହାନ୍ତି । ଆପଣଙ୍କୁ ମଧ୍ୟ ଲାଗୁଥିବ ଯେ, ଠିକ ହୋଇଛି । କାହିଁକି ? କାହିଁକି ନା ଏପରି ମିଥ୍ୟାରେ କୌଣସି ଭୁଲ ନାହିଁ, ଯଦ୍ୱାରା ଶେଷରେ ସମାଜକୁ ଆନନ୍ଦ ପ୍ରାପ୍ତି ହେବ । ଯାହା କରାଯାଇଛି, ଠିକ୍ କରାଯାଇଛି ।

ଆପଣ ପାଇବେ ଯେ- ଆପଣଙ୍କର ସମସ୍ତ ସ୍ତରର ଏବଂ ସମସ୍ତ ପ୍ରକାରର ସନ୍ଦେହ ଏବଂ ପ୍ରଶ୍ନମାନଙ୍କର ଏଥିରେ ନିରାକରଣ ହୋଇଗଲା । ପ୍ରଶ୍ନୋତ୍ତର ରୂପରେ ନୁହେଁ, ଅଧିକନ୍ତୁ ଏକ କ୍ରିୟାଶୀଳ ପୂର୍ଣ୍ଣ ପୁରୁଷର ଚିତ୍ରଣ ରୂପରେ, ଜୀବନ୍ତ ଏବଂ ସମ୍ବେଦନଶୀଳ ଚିତ୍ରର ରୂପରେ ଯେଉଁ ପୁରୁଷ ଏହି ଦୁଃଖମୟ ସଂସାରରେ ରହିଥିଲେ, ଯେଉଁଠି ଆପଣ ଏବଂ ମୁଁ ରହିଛନ୍ତି । ସେତେବେଳେ ଆପଣଙ୍କୁ ଲାଗିବ ଯେ ଯଦି ସେ ଏପରି ଭାବରେ ରହିପାରିବେ ଏବଂ ସମସ୍ତ ପରୀକ୍ଷାର ସମ୍ମୁଖୀନ ହୋଇ ପାରିଲେ, ତେବେ ଆମର ସମସ୍ୟା ତ ତାଙ୍କ ତୁଳନାରେ କିଛି ନୁହେଁ । ଆମେ ମଧ୍ୟ ତାର ସାମନା କରିପାରିବୁ । ଏହିଭଳି ଭାବରେ ଏଥିରୁ ପ୍ରେରଣା ଗ୍ରହଣ କରନ୍ତୁ । ନିଜର ସଂସ୍କୃତି ଉପରେ ଗର୍ବ ଅନୁଭବ କରନ୍ତୁ ଏବଂ ସଚ୍ଚା ହିନ୍ଦୁ ଭଳି ଜୀବନ ନିର୍ବାହ କରନ୍ତୁ । ବହୁତ-ବହୁତ ଧନ୍ୟବାଦ ! ହରି ଓମ୍।



# ମାହାତ୍ମ୍ୟ

ଅଷ୍ଟାଦଶ ପୁରାଣ ମଧ୍ୟରେ ଶ୍ରୀମଦ୍ ଭାଗବତକୁ ସର୍ବଶ୍ରେଷ୍ଠ ମହାପୁରାଣ ରୂପେ ମାନ୍ୟତା ଦିଆଯାଏ । ବ୍ୟୁତ୍ପତ୍ତି ଅନୁସାରେ ଭାଗବତର ଏକ ଅର୍ଥ- "ଭଗବତଃ ଇଦଂ ଭାଗବତମ୍' ଯାହା ଭଗବାନଙ୍କର ଅଟେ ତାକୁ ଭାଗବତ କହନ୍ତି । ଭାଗବତ ଭଗବାନଙ୍କର ସ୍ୱରୂପ ଅଟେ । ଭଗବାନ ଶ୍ରୀକୃଷ୍ଣ ଏବଂ ଭାଗବତ ଏକ ଅଟନ୍ତି । ଦ୍ୱିତୀୟ ଅର୍ଥ- ଭଗବାନଙ୍କର ସ୍ୱରୂପ ଯେଉଁ ଶାସ୍ତ୍ର ଦ୍ୱାରା ପ୍ରକଟିତ ହୋଇଥାଏ, ସେହି ଶାସ୍ତ୍ରହିଁ ଭାଗବତ। ତୃତୀୟ ଅର୍ଥ- "ଭଗବତଃ ଅୟଂ ଭାଗବତଃ' ଯେଉଁ ବ୍ୟକ୍ତି ଭଗବାନଙ୍କର ହୋଇଯାଆନ୍ତି ତାଙ୍କୁ ଭାଗବତ କୁହାଯାଏ । ଏଣୁ ଭାଗବତର ଅର୍ଥ ଭଗବାନଙ୍କର ଭକ୍ତ ।

ତେଣୁ ତାର ଅର୍ଥ ହେଉଛି- ଭଗବତ ତତ୍ତ୍ୱ, ତାକୁ ଜାଣିବାର ସାଧନ ଏବଂ ତାଙ୍କୁ ଜାଣିଥିବା ବ୍ୟକ୍ତି ଏହି ସମସ୍ତଙ୍କୁ ଭାଗବତ କୁହାଯାଏ ।

ଭାଗବତର ଅନ୍ୟ ଏକ ଅର୍ଥ ହେଉଛି- "ଭା'ର ଅର୍ଥ ପ୍ରକାଶ-ଚୈତନ୍ୟ-ଜ୍ଞାନ ସ୍ୱରୂପ। ଏହା ପରମାତ୍ମାଙ୍କର ସ୍ୱରୂପ ଅଟେ । ଏହି ପରମାତ୍ମାଙ୍କୁ ଜାଣିବାର ତଥା ତାଙ୍କର ସାନ୍ନିଧ୍ୟତା ପ୍ରାପ୍ତ କରିବାର ସାଧନର ଆବଶ୍ୟକତା ରହିଛି । ସେଥିପାଇଁ ଦ୍ୱିତୀୟ ଅକ୍ଷର 'ଗ' ଅଟେ । 'ଗ'ର ଅର୍ଥ ହେଉଛି ଜାଣିବା ଅଥବା ଗମନ କରିବା । 'ଗମ୍' ଧାତୁର ପ୍ରୟୋଗ ଏହି ଦୁଇ ଅର୍ଥରେ ହୋଇଥାଏ । ଆମକୁ ଭଗବାନଙ୍କର ନିକଟରେ ପହଞ୍ଚିବାକୁ ହେବ (ଅର୍ଥାତ ଗମନ କରିବାକୁ ହେବ) । ଯଦ୍ୟପି ଭଗବାନ ଆମର ନିଜର ସ୍ୱରୂପ ଅଟନ୍ତି, ତଥାପି ଆମେ ତାଙ୍କଠାରୁ ଅନେକ ଦୂରରେ ଅଛୁ । ଆମ ମଝିରେ କିଏ ଆସିଗଲା ? ଭବ ସାଗର ! ଏପରି ଲାଗେ ଆମେ କୂଳରେ ଅଛୁ, ପରମାତ୍ମା ଅନ୍ୟ କୂଳରେ ଅଛନ୍ତି କିନ୍ତୁ ମଝିରେ ଏକ ବିଶାଳ ସାଗର ଅଛି, ତାକୁ ପାର କରିବା ପାଇଁ ଏକ ନୌକାର ଆବଶ୍ୟକ । ଏହାକୁ ତରଣୀ କହନ୍ତି । ତେବେ 'ଭା' ଅର୍ଥ ଭଗବାନ, 'ଗ' ଅର୍ଥ ତାଙ୍କୁ ଜାଣିବା ଅଥବା ତାଙ୍କ ପାଖରେ ପହଞ୍ଚିବା ଏବଂ 'ତ' ଅର୍ଥ ତରଣୀ ବା ନୌକା । ମଝିରେ 'ବ' ଅକ୍ଷର ରହିଗଲା । ଆମେ ଯେଉଁ ନୌକାରେ ବସିଛନ୍ତି, ଯଦି ସେଥିରେ କୌଣସି ଛିଦ୍ର ହୋଇଥାଏ, ତେବେ ପାରି ହେବା ପରିବର୍ତ୍ତେ ସେହି ନୌକା

ଆମକୁ ବୁଡେଇଦେବ । ତେଣୁ ନୌକା ଶ୍ରେଷ୍ଠ, ସୁଦୃଢ଼ ହେବା ଆବଶ୍ୟକ । ତେବେ 'ବ'ର ଅର୍ଥ ବର ବା ଶ୍ରେଷ୍ଠ । ତେଣୁ 'ଭାଗବତ'ର ଅର୍ଥ ଆମକୁ ଭଗବାନଙ୍କ ପାଖରେ ପହଞ୍ଚାଇ ପାରୁଥିବା ଶ୍ରେଷ୍ଠ ତରଣୀ ।

ଭାଗବତକୁ କେବଳ ଏକ ଗ୍ରନ୍ଥ ବୁଝିବା ଉଚିତ ନୁହେଁ । ଶ୍ରୀମଦ୍ ଭାଗବତ ଭଗବାନଙ୍କର ସ୍ୱରୂପ ଅଟେ । ଭକ୍ତର ସ୍ୱରୂପ ଅଟେ ଏବଂ ସାଧନର ମଧ୍ୟ ସ୍ୱରୂପ ଅଟେ। ଏଠାରେ ଦ୍ୱୈତ ନାମର କୌଣସି ବିଷୟ ନାହିଁ । ବିଚାର କରିବା ଦ୍ୱାରା ମଝିରେ ଥିବା ଭବସାଗର ଅସିଦ୍ଧ ହୋଇଯାଇଥାଏ ଏବଂ ତତ୍ ସହିତ ଜ୍ଞାତ ହୋଇଥାଏ ଯେ ସେଠାରେ କିଛି ହିଁ ନାହିଁ । ଏଣୁ 'ଭାଗବତ' ଶବ୍ଦର ଅର୍ଥ 'ଅଦ୍ୱୟ ଜ୍ଞାନ' ଏବଂ ଏହା ଭଗବାନ ହିଁ ଅଟନ୍ତି । ଏହି ସଂକ୍ଷିପ୍ତ ବିଚାରର ବିସ୍ତୃତ ବର୍ଣ୍ଣନ ଭାଗବତ ମାହାତ୍ମ୍ୟରେ କରାଯାଇଅଛି।

ଭାଗବତ ମାହାତ୍ମ୍ୟରେ ତଥା ଶ୍ରୀମଦ୍‌ଭାଗବତରେ ଭାଗବତର ପ୍ରସ୍ତାବନା ଭଲ ଭାବରେ କରାଯାଇ ଅଛି । ସେଥିପାଇଁ ଏଠାରେ ତାର ବିସ୍ତାରର ଆବଶ୍ୟକତା ନାହିଁ । ସଂକ୍ଷେପରେ କୁହାଗଲେ, ଭଗବାନ ତଥା ଭଗବାନଙ୍କର ଭକ୍ତ, ଏଇ ଦୁହିଁଙ୍କୁ ଭାଗବତ କୁହାଯାଏ । ଆମକୁ ଭକ୍ତ ହେବାକୁ ହେବ, ଭଗବାନଙ୍କ ସହିତ ଏକ ରୂପ ହେବାକୁ ହେବ ଏବଂ ସେଥିପାଇଁ ଯେଉଁ ସାଧନର ଆବଶ୍ୟକତା, ସେହି ସାଧନକୁ ମଧ୍ୟ "ଭାଗବତ' କୁହାଯାଏ ।

ଶ୍ରୀମଦ୍‌ଭାଗବତ ଏପରି ବିଶାଳ ଏବଂ ମହାନ୍ ଗ୍ରନ୍ଥ ଯେ ତାହା ଉପରେ ଭାଷ୍ୟ ଲେଖିଥିବା ଜଣେ ଶ୍ରେଷ୍ଠ ଜ୍ଞାନୀ ସନ୍ଥ ଶ୍ରୀ ଶ୍ରୀଧର ସ୍ୱାମୀ କହନ୍ତି- **'କ୍ୱାଽହଂ ମନ୍ଦମତିଃ'** ମୁଁ କେଉଁଠି ମନ୍ଦମତି ତା ଅଳ୍ପବୁଦ୍ଧିଯୁକ୍ତ ପୁରୁଷ ଏବଂ **'କ୍ୱ ଇଦଂ ମନ୍ଥନଂ କ୍ଷୀରବାରିଧେଃ'** ପୁଣି କେଉଁଠି ଏହି କ୍ଷୀର ସାଗର ଭାଗବତର ମନ୍ଥନ । ଶ୍ରୀ ମଧୁସୂଦନ ସରସ୍ୱତୀ, ଶ୍ରୀ ଶ୍ରୀଧର ସ୍ୱାମୀଙ୍କ ଭଳି ମହାପୁରୁଷମାନଙ୍କର ଏପରି ବଚନ ଶୁଣି, ଏହି ଗ୍ରନ୍ଥକୁ ପଠନ କରି ଏହା ବିଷୟରେ ନିଜେ କିଛି କହିବା ଏବଂ ଏହାର ବ୍ୟାଖ୍ୟା କରିବା ଦୁଃସାହାସ ଭଳି ମନେ ହୁଏ। ତେବେ ପୁଣି କାହିଁକି କରୁଛନ୍ତି ? ଦେଖନ୍ତୁ, ଭାଗବତ ବିଷୟରେ କୁହାଯାଇଛି- **'ଧନଂଜୟେ ହାଟକ ସଂପରୀକ୍ଷା'** ସୁବର୍ଣ୍ଣର ପରୀକ୍ଷା ଅଗ୍ନିରେ ହୋଇଥାଏ । ସେହିପରି ଭାବରେ **'ମହାରଣେ ଶସ୍ତ୍ରଭୃତାଂ ପରୀକ୍ଷା'** ଶୌର୍ଯ୍ୟତାର ପରୀକ୍ଷା ରଣଭୂମିରେ ହୋଇଯାଏ। ଯିଏ ଶୂର, ସେ ପ୍ରତିପକ୍ଷ ସେନାକୁ ଦେଖି ବିଚଳିତ ହୁଅନ୍ତି ନାହିଁ । **'ବିପତ୍ତିକାଳେ ଗୃହିଣୀ ପରୀକ୍ଷା'** ଗୃହିଣୀର ନିଷ୍ଠାର ପରୀକ୍ଷା ବିପତ୍ତି କାଳରେ ହୋଇଥାଏ ଏବଂ **'ବିଦ୍ୟାବତାଂ ଭାଗବତେ ପରୀକ୍ଷା'** ବିଦ୍ୱାନମାନଙ୍କର ପରୀକ୍ଷା ଭାଗବତର

ବ୍ୟାଖ୍ୟାନ ଦ୍ୱାରା ହିଁ ହୋଇଥାଏ, ଯଦ୍ୟପି ଲୋକମାନେ ଭାଗବତକୁ ଏକ ସାମାନ୍ୟ ଗ୍ରନ୍ଥ ବୋଲି ଭାବନ୍ତି ଏବଂ ଏହା ସାଧାରଣ ଲୋକମାନଙ୍କ ପାଇଁ ଉଦ୍ଦିଷ୍ଟ ବୋଲି ବୁଝିଥାଆନ୍ତି, ବାସ୍ତବରେ ଏହି ଭାଗବତକୁ ବ୍ୟାଖ୍ୟା କରିବାରେ ବିଦ୍ୱାନମାନଙ୍କର ପରୀକ୍ଷା ହୋଇଥାଏ। ଏହି ଗ୍ରନ୍ଥରେ ସାହିତ୍ୟର, ବ୍ୟାକରଣ, ବେଦାନ୍ତ, ସୃଷ୍ଟି ତଥା ଯେତେ ପ୍ରକାର ଜ୍ଞାନ ଅଛି ଏ ସମସ୍ତ ଜ୍ଞାନର ବର୍ଣ୍ଣନ କରାଯାଇଛି । ଏଣୁ ଏଥିରେ ନିଜର ବିଦ୍‌ବତ୍ତାର ପରୀକ୍ଷା ହୋଇଯାଏ। ଯଦି କେହି ନିଜକୁ ବିଦ୍ୱାନ ବୋଲି ମାନେ ତାର ସେଥିରେ ପରୀକ୍ଷା ହୋଇଯାଏ କିନ୍ତୁ ମୁଁ ନିଜକୁ ବିଦ୍ୱାନ ବୋଲି ମାନେ ନାହିଁ । ମୋର ବ୍ୟାଖ୍ୟା କରିବାର ଆଧାର କେବଳ ଭଗବାନଙ୍କର ନାମ ଏବଂ ଗୁରୁ ପରମ୍ପରା। ଏହା ମାତ୍ର ବିନମ୍ରତା ନୁହେଁ, ବାସ୍ତବିକତା। ଏହା କେବଳ ଭଗବାନ ଏବଂ ଗୁରୁଜୀଙ୍କର କୃପା- ଆଶୀର୍ବାଦର ପ୍ରକଟିତ ରୂପ ମାତ୍ର ।

## ମଙ୍ଗଳାଚରଣ

ଏବେ ମାହାତ୍ମ୍ୟ ପ୍ରସଙ୍ଗରେ ପ୍ରବେଶ କରିବା । ଶ୍ରୀମଦ୍ ଭାଗବତରେ ବାରଗୋଟି ସ୍କନ୍ଧ ଏବଂ ଅଠର ହଜାର ଶ୍ଳୋକ ଅଛି ।

ଏହାକୁ ପୂର୍ଣ୍ଣ ରୂପରେ ବିବେଚନ କରିବା ପ୍ରାୟ ଅସମ୍ଭବ ଅଟେ । କାରଣ ଏହା ଉପରେ ଯେତେ ବିବେଚନ କଲେ ମଧ୍ୟ ଏହା ବହୁତ ଅଳ୍ପ ହେବ । ଯଦ୍ୟପି ଭାଗବତର ପ୍ରତ୍ୟେକ ଶବ୍ଦ ହିଁ ମହତ୍ତ୍ୱପୂର୍ଣ୍ଣ ଅଟେ ତଥାପି ଯାହା ଆମ ପାଇଁ ଉପଯୋଗୀ ଅଟେ, ଯାହାକୁ ସରଳତା ପୂର୍ବକ ଆମେ ଆମ ଜୀବନରେ ପ୍ରୟୋଗ କରିପାରିବା । ଆମେ ତାରି ଉପରେ ବିଚାର କରିବା । ସାର କଥାକୁ ଗ୍ରହଣ କରିବା ଉଚିତ । ଏଥିରେ ଅନେକ ବିଷୟ ତଥା ଅନେକ କଥାମାନ ପୁନରାବୃତ୍ତି କରାଯାଇଛି, ପରନ୍ତୁ ଆମେ ତ ସାରତତ୍ତ୍ୱକୁ ଗ୍ରହଣ କରି ଚାଲିବା ।

**ସଚ୍ଚିଦାନନ୍ଦରୂପାୟ ବିଶ୍ୱୋତ୍ପତ୍ତ୍ୟାଦିହେତବେ।**
**ତାପତ୍ରୟବିନାଶାୟ ଶ୍ରୀକୃଷ୍ଣାୟ ବୟଂ ନୁମଃ ॥ ଭା.ମା.୧.୧.**

ଏଠାରେ କୁହାଯାଇଛି ଆମେ ସବୁ ଭଗବାନ ଶ୍ରୀକୃଷ୍ଣଙ୍କୁ ନମସ୍କାର କରୁଛୁ । ଯେତେବେଳେ କାହାକୁ ନମସ୍କାର କରିବାକୁ କୁହାଯାଏ, ତେବେ ଆମେ ବିଚାର କରୁ ଯେ ଆମେ କାହିଁକି ନମସ୍କାର କରିବା ? ତାଙ୍କଠାରେ ଏପରି କ'ଣ ବିଶେଷତା ଅଛି ? ଯାହାକୁ ଆମେ ବଡ଼ ବୋଲି ବୁଝି ନ ଥାଉ ତାକୁ ନମସ୍କାର କରିପାରୁ ନାହିଁ । କୁହାଯାଏ, ଭଗବାନ ସଚ୍ଚିଦାନନ୍ଦ ସ୍ୱରୂପ ଅଟନ୍ତି । ତେଣୁ ନମସ୍କାର କରିବା ଉଚିତ । ହୋଇପାରନ୍ତି। ସେଥିରୁ ଆମକୁ କ'ଣ ମିଳିବ ? ତେଣୁ କୁହାଯାଏ- କେବଳ ଏତିକି କଥା ନୁହେଁ । "ତାପତ୍ରୟ ବିନାଶାୟ' ଆଧିଦୈବିକ, ଆଧ୍ୟାତ୍ମିକ ଏବଂ ଆଧିଭୌତିକ- ଏହି ପ୍ରକାର ଆମର କଷ୍ଟ, ତାପ- ସନ୍ତାପ ତିନିପ୍ରକାର ଅଟେ ।

**ଆଧ୍ୟାତ୍ମିକ ତାପ** - ଶରୀରରେ, ମନରେ ହେଉଥିବା ରୋଗ ଆଧ୍ୟାତ୍ମିକ ତାପର ଅନ୍ତର୍ଗତ ।

**ଆଧିଭୌତିକ ତାପ** - ଚତୁଃପାର୍ଶ୍ୱ ବାତାବରଣରୁ ପ୍ରାପ୍ତ ଅଶାନ୍ତି ତଥା ଦୁଃଖକୁ ଆଧିଭୌତିକ ତାପ କୁହାଯାଏ ।

**ଆଧିଦୈବିକ ତାପ** - ଅଜ୍ଞାତ ସ୍ରୋତର କାରଣରୁ ହେଉଥିବା ଦୁଃଖଦ ଘଟଣାସମୂହରୁ ପ୍ରାପ୍ତ ତାପକୁ ଆଧିଦୈବିକ ତାପ କୁହାଯାଏ ।

ଭଗବାନ ଏଭଳି ଆନନ୍ଦ ସ୍ୱରୂପ ନୁହନ୍ତି, ଯେ କି ସ୍ୱୟଂ ଆନନ୍ଦରେ ରହିବେ ଏବଂ ଅନ୍ୟମାନଙ୍କୁ ଦୁଃଖରେ ରଖିବେ। ତାଙ୍କୁ ପୂର୍ଣ୍ଣତଃ ବୁଝିଗଲା ପରେ ଆମେ ଜାଣିବା ଯେ ସେ ଆମର ନିଜ ଆତ୍ମସ୍ୱରୂପ ଅଟନ୍ତି ତଥା ସଚ୍ଚିଦାନନ୍ଦ ସ୍ୱରୂପ ଅଟନ୍ତି। ଏପରି ସଚ୍ଚିଦାନନ୍ଦ ସ୍ୱରୂପ ଭଗବାନ ଆମର ସମସ୍ତ ତାପକୁ ନଷ୍ଟ କରିଦିଅନ୍ତି । ଆମେ ଦୁଇଟି ଜିନିଷ ଚାହିଁ ଥାଉ । ସୁଖ ପ୍ରାପ୍ତି ଓ ଦୁଃଖର ସମାପ୍ତି । ଏହି ଦୁଇଟି କାର୍ଯ୍ୟ ଭଗବାନ କରିଥାଆନ୍ତି ।

ସେହି ଭଗବାନଙ୍କର ଦ୍ୱିତୀୟ ବିଶେଷତା ହେଉଛି - **'ବିଶ୍ୱୋପୃତ୍ତ୍ୟାଦିହେତବେ'**। ସେ ସମସ୍ତ ବିଶ୍ୱର ଉତ୍ପତ୍ତିର କାରଣ ଅଟନ୍ତି । ଜଗତରେ କେହି ସୁନ୍ଦର ଚିତ୍ର ତିଆରି କରୁଛି ଅଥବା କିଏ ସୁନ୍ଦର କଣ୍ଠରେ ଗୀତ ଗାଉଛି । ତେବେ ଆମେ ତାର କେତେ ପ୍ରଶଂସା କରିଥାଉ। ସମସ୍ତ ବିଶ୍ୱକୁ ଦେଖିଲେ ଆମର ବୁଦ୍ଧିବଣା ହୋଇଯାଏ ।

କୋଇଲିଟିଏ ଅତି ମଧୁର କଣ୍ଠରେ ଗାନ କରେ । ସେ କିଏ, ଯେକି ତା'ର କଣ୍ଠରେ ଏତେ ମଧୁର ସ୍ୱର ଭରି ଦେଇଛନ୍ତି ?

ତାହା ଦେଖିବା ପରେ ଯଦି ଆମର ମଥା ତାଙ୍କ ପ୍ରତି ନଇଁ ଯାଏ ନାହିଁ ତେବେ ଏହା ବଡ଼ ଆଶ୍ଚର୍ଯ୍ୟର କଥା- ଏହା କେବଳ ମୂଢ଼ତା ଓ ଦୁଷ୍ଟତାର ପ୍ରମାଣ ଅଟେ। ଭଗବାନଙ୍କର ସଚ୍ଚିଦାନନ୍ଦ ରୂପ। ଶାସ୍ତ୍ରୀୟ ଭାଷାରେ ତାହା ତାଙ୍କର ସ୍ୱରୂପ ଲକ୍ଷଣ ଏବଂ ବିଶ୍ୱର ଉତ୍ପତ୍ତିର କାରଣତ୍ୱ- ତାଙ୍କର ତଟସ୍ଥ ଲକ୍ଷଣ ଅଟେ ।

ଶ୍ରୀକୃଷ୍ଣ ଆମକୁ ବଳପୂର୍ବକ ଆକର୍ଷିତ କରନ୍ତି । ଏହା ତାଙ୍କୁ ଭଲ ଲାଗେ ନାହିଁ ଯେ, କୌଣସି ଜୀବ ତାଙ୍କଠାରୁ ଅଲଗା ହୋଇ, ଦୁଃଖରେ ପଡି ରହି କାନ୍ଦୁ । ସେଥିପାଇଁ ଅନେକ ପ୍ରକାର ଲୀଳା ମାଧ୍ୟମରେ ଆମର ହୃଦୟକୁ ଆକର୍ଷିତ କରନ୍ତି। ଏଇଭଳି ଶ୍ରୀକୃଷ୍ଣଙ୍କୁ ବାରମ୍ବାର ନମସ୍କାର ।

ଏହାପରେ ଆମେ ଭଗବାନ ଶୁକଦେବଜୀଙ୍କୁ ନମସ୍କାର କରୁଅଛୁ । ଅନେକ ବକ୍ତା ଓ ଅନେକ ଶ୍ରୋତା ଅଛନ୍ତି କିନ୍ତୁ ଶୁକଦେବଙ୍କ ଭଳି କୌଣସି ବକ୍ତା ହୋଇନାହାନ୍ତି। ଶ୍ରୀମଦ୍ ଭାଗବତର ଗୁରୁ ପରମ୍ପରାରେ ନାରାୟଣ ଭଗବାନ ଆଦିଗୁରୁ ଅଟନ୍ତି । ତାଙ୍କର ଶିଷ୍ୟ ବ୍ରହ୍ମାଜୀ, ବ୍ରହ୍ମାଜୀଙ୍କର ଶିଷ୍ୟ ନାରଦ ମୁନି, ନାରଦଙ୍କ ଶିଷ୍ୟ ଭଗବାନ ବେଦବ୍ୟାସଜୀ

ଏବଂ ବ୍ୟାସ ଦେବଜୀଙ୍କର ଶିଷ୍ୟ ଶ୍ରୀ ଶୁକଦେବ ଜୀ । ଶ୍ରୀ ଶୁକଦେବଜୀଙ୍କର ଏପରି ବିଲକ୍ଷଣ ପ୍ରଭାବ ଯେ, ତାଙ୍କର ଆଗମନରେ ଶ୍ରେଷ୍ଠ ମହର୍ଷିମାନଙ୍କ ସଭାରେ ମଧ୍ୟ ସମସ୍ତେ ଉଠି ଠିଆ ହୋଇଯାଆନ୍ତି । ସ୍ୱୟଂ ବ୍ୟାସ ଭଗବାନ ମଧ୍ୟ ଠିଆ ହୋଇଯାଆନ୍ତି। ଯଦିବା ଶୁକଦେବ ଜୀ ବୟସ ଅନୁଯାୟୀ ସର୍ବ କନିଷ୍ଠ, ମାତ୍ର ଷୋହଳ ବର୍ଷର ଅଟନ୍ତି ।

**ଯଂ ପ୍ରବ୍ରଜନ୍ତମନୁପେତମପେତକୃତ୍ୟଂ**
**ଦ୍ୱୈପାୟନୋ ବିରହକାତର ଆଜୁହାବ।**
**ପୁତ୍ରେତି ତନ୍ମୟତୟା ତରବୋଽଭିନେଦୁ-**
**ସ୍ତଂ ସର୍ବଭୂତହୃଦୟଂ ମୁନିମାନତୋଽସ୍ମି ॥ ଭା.ମା.୧.୨**

ସ୍କନ୍ଦ ପୁରାଣ ପ୍ରଭୃତିରେ ଏପରି ବର୍ଣ୍ଣନ ଆସେ ଯେ, ଭଗବାନ ଶୁକଦେବଜୀ ଯେତେବେଳେ ମାଙ୍କ ଗର୍ଭରେ ଥିଲେ, ସେତେବେଳେ ସେ ଗର୍ଭରୁ ବାହାରକୁ ଆସିବାକୁ ଋହୁଁ ନଥିଲେ । ଦଶମାସ ପୂରଣ ହେଲା, ଏକ ବର୍ଷ ହୋଇଗଲା, ବାର ବର୍ଷ ହୋଇଗଲା ପରେ ମଧ୍ୟ ବାହାରକୁ ଆସିଲେ ନାହିଁ। ବ୍ୟସ୍ତ ହୋଇ ଶୁକଦେବଙ୍କର ମାତା ବେଦବ୍ୟାସଜୀଙ୍କୁ କହିବା ପରେ- ବେଦବ୍ୟାସ ଜୀ କହିଲେ- "ମାଙ୍କୁ ବହୁତ କଷ୍ଟ ହେଉଛି, ତୁମେ ବାହାରକୁ ବାହାରି ଆସ" । ଶୁକଦେବଜୀ କହିଲେ ନାହିଁ, "ଭଗବାନଙ୍କର ମାୟା ବହୁତ ପ୍ରବଳ । ବାହାରକୁ ଆସୁ ଆସୁ ବନ୍ଧନରେ ବାନ୍ଧିଥାଏ । ତେଣୁ ମୁଁ ବାହାରକୁ ଆସିବି ନାହିଁ ।" ଗର୍ଭରେ ଆମର ସ୍ୱରୂପ ଜ୍ଞାନ ରହିଥାଏ । ପରନ୍ତୁ ବାହାରକୁ ଆସିବା ଦ୍ୱାରା ସବୁକିଛି ବିସ୍ମୃତ ହୋଇଯାଏ। ତେଣୁ ଶୁକଦେବଜୀ କହନ୍ତି ଯେ ସେ ବାହାରକୁ ଆସିବେ ନାହିଁ । ତେଣୁ ବ୍ୟାସଦେବଜୀ କହିଲେ- "ମୁଁ ତୁମକୁ ଆଶୀର୍ବାଦ ଦେଉଛି, ମାୟା ତୁମକୁ ବନ୍ଧନରେ ବାନ୍ଧି ପାରିବ ନାହିଁ ।" ତା ପରେ ସେ ବାହାରକୁ ଆସିଲେ ଏବଂ ମାତା ପିତାଙ୍କୁ ଛାଡ଼ି ଋଲିଗଲେ । କାରଣ ବ୍ୟାସଦେବ ତାଙ୍କୁ ଆଶୀର୍ବାଦ ଦେଇଥିଲେ ଯେ, ତାଙ୍କୁ ମାୟା ସ୍ପର୍ଶ କରିବ ନାହିଁ ।

ଶୁକଦେବଜୀ ଋଲିଯାଉଛନ୍ତି, '**ଅନୁପେତମପେତକୃତ୍ୟଂ**' ତାଙ୍କର ଯଜ୍ଞୋପବୀତ ଆଦି କୌଣସି ସଂସ୍କାର ହୋଇ ନାହିଁ । ଯେ ନିତ୍ୟ ଶୁଦ୍ଧ ଅଟନ୍ତି, ତାଙ୍କ ପାଇଁ ସଂସ୍କାରର ଆବଶ୍ୟକତା କ'ଣ ?

ସଂସ୍କାର ତ ଅଶୁଦ୍ଧ ଲୋକମାନଙ୍କୁ ଦିଆଯାଇଥାଏ। ପ୍ରଶ୍ନୋପନିଷଦରେ ଭଗବାନଙ୍କର ଏକ ନାମ ଆସେ- 'ବ୍ରାତ୍ୟ'। ବ୍ରାତ୍ୟର ଅର୍ଥ ସଂସ୍କାରହୀନ । କିନ୍ତୁ

ଭଗବାନଙ୍କୁ ବ୍ରାତ୍ୟ କାହିଁକି କୁହାଗଲା ? କାହିଁକି ନା ତାଙ୍କୁ ସଂସ୍କାର ପ୍ରଦାନ କଲାବାଲା ତ କେହି ନାହାନ୍ତି । ସେ ତ ସମସ୍ତଙ୍କୁ ସଂସ୍କାର ପ୍ରଦାନ କରନ୍ତି । ଯାହାର କାହାଠାରୁ ଜନ୍ମ ହେଉଥିବ, ଯିଏ ଅସଂସ୍କାରୀ, ଅଶୁଦ୍ଧ ଅଟନ୍ତି ତାଙ୍କୁ ସଂସ୍କାର ଦେବାର ଆବଶ୍ୟକତା ଅଛି । ନିତ୍ୟ-ଶୁଦ୍ଧକୁ ସଂସ୍କାର ନେବାର ଆବଶ୍ୟକତା କ'ଣ ?

ଶୁକ ଭଗବାନ ସାକ୍ଷାତ ବ୍ରହ୍ମ ଅଟନ୍ତି, ସେ ଯିବାକୁ ଆରମ୍ଭ କଲେ- **'ଦ୍ୱୈପାୟନୋ ବିରହକାତର ଆଜୁହାବ'** ପୁତ୍ରର ବିରହରେ ବ୍ୟାକୁଳ ହୋଇ ଦ୍ୱୈପାୟନ ଭଗବାନ ମଧ୍ୟ ବାହାରି ପଡ଼ିଲେ ଏବଂ **'ପୁତ୍ରେତି'** ପୁତ୍ର, ପୁତ୍ର କହି ଡାକିବାକୁ ଲାଗିଲେ । କିନ୍ତୁ ଆଶ୍ଚର୍ଯ୍ୟର କଥା **'ତନ୍ମୟତୟା ତରବୋଽଭିନେଦୁଃ'** ଶୁକଦେବଜୀ ପ୍ରାଣୀମାତ୍ର ସହିତ ଏପରି ଏକରୂପ ହୋଇଯାଇଥିଲେ ଯେ ତାଙ୍କ ପାଇଁ ବେଦବ୍ୟାସଙ୍କୁ ବୃକ୍ଷମାନେ ଉତ୍ତର ଦେଲେ । ଏହି ପ୍ରକାର ଯିଏ ସର୍ବଭୂତାତ୍ମ ଭୂତାତ୍ମା ହୋଇଯାଇଥିଲେ, **'ତଂ ସର୍ବଭୂତ ହୃଦୟଂ'** ସେହି ଶୁକଦେବଜୀଙ୍କୁ ମୁଁ ବାରମ୍ବାର ପ୍ରଣାମ କରୁଛି ।

# ଭାଗବତ-ମାହାତ୍ମ୍ୟ

ଏବେ ପଦ୍ମପୁରାଣରେ ପ୍ରାପ୍ତ ଭାଗବତ ମାହାତ୍ମ୍ୟର କଥା ଆରମ୍ଭ କରିବା । ଏଥିରେ ଛଅ ଅଧ୍ୟାୟ ଅଛି । **'ନୈମିଷେ ସୂତମାସୀନମ୍'** । ଏକଦା ନୈମିଷାରଣ୍ୟରେ ଶୌନକ ପ୍ରଭୃତି ଅଠାଅଶୀ ହଜାର ଋଷି ଯଜ୍ଞ କରୁଥିଲେ । ସେତେବେଳେ ସୂତଜୀ ସେହି ସ୍ଥାନକୁ ଆସିଲେ । ଏହି ସୂତଜୀ କିଏ ? ସେ ଭଗବାନ ବେଦବ୍ୟାସଜୀଙ୍କର ଶିଷ୍ୟ ରୋମହର୍ଷଣ ମୁନିଙ୍କର ପୁତ୍ର ଅଟନ୍ତି । ସୂତ ଏକ ଜାତି ବିଶେଷ ଅଟନ୍ତି, ଯେଉଁଥିରେ ମାତା ବ୍ରାହ୍ମଣ ଜାତିର ଏବଂ ପିତା କ୍ଷତ୍ରିୟ ଜାତି ହୋଇଥାଆନ୍ତି। ଏପରି ବିବାହକୁ ପ୍ରତିଲୋମ ବିବାହ କୁହାଯାଏ । ସେମାନଙ୍କର ଯେଉଁ ପୁତ୍ର ହୁଅନ୍ତି, ତାଙ୍କୁ ସୂତ କୁହାଯାଏ। ଏହି ସୂତ ଶ୍ରେଷ୍ଠ ଜ୍ଞାନୀ ଅଟନ୍ତି । ସେ ନିଜର ପିତାଙ୍କଠାରୁ ସବୁକିଛି ଶିକ୍ଷା କରିଥିଲେ । ଋଷିମାନଙ୍କର ସଭାରେ ଯାଇ ସେ ପୁରାଣ କଥା ଶୁଣାଉଥିଲେ । ଶ୍ରେଷ୍ଠ ଋଷିମାନେ ମଧ୍ୟ ସୂତଜୀଙ୍କୁ ନମସ୍କାର କରୁଥିଲେ ଏବଂ ଉଚ୍ଚ ଆସନରେ ବସାଇ ତାଙ୍କ କଥା ଶ୍ରବଣ କରୁଥିଲେ ।

ପ୍ରଥମେ ଆମେ 'ନୈମିଷାରଣ୍ୟ' ଶବ୍ଦ ଉପରେ ବିଚାର କରିବା । ଏହାକୁ ଦୁଇ ପ୍ରକାର ଦୃଷ୍ଟିରେ ଦେଖିପାରିବା । ଥରେ ଅନେକ ଋଷି ବ୍ରହ୍ମାଜୀଙ୍କ ନିକଟକୁ ଯାଇ ପଚାରିଲେ- "ମହାରାଜ ଆମେ କେଉଁଠାରେ ସାଧନା କରିବୁ ?" ସେତେବେଳେ ବ୍ରହ୍ମାଜୀ ଋଷିମାନଙ୍କୁ ଏକ ଘୁରୁଥିବା ଚକ୍ର ଦେଲେ ଏବଂ କହିଲେ, "ଯେଉଁଠାରେ ଏହି ଚକ୍ର ସ୍ଥିର ହୋଇଯିବ **'ନେମିଃ ଶୀର୍ଯତେ ଯତ୍ର ତତ୍ ନୈମିଶଃ'** ସେହି ସ୍ଥାନ ସାଧନା ନିମନ୍ତେ ଉତ୍ତମ ଅଟେ।"

ସମସ୍ତେ ଚକ୍ର ପଛରେ ଚାଲିଲେ ଏବଂ ଚାଲି ଚାଲି ଏପରି ସ୍ଥାନରେ ପହଞ୍ଚିଲେ, ଯେଉଁ ସ୍ଥାନରେ ଚକ୍ରର ଗତି ବନ୍ଦ ହୋଇଗଲା । ସେହି ସ୍ଥାନ ଉତ୍ତର ପ୍ରଦେଶରେ ଲକ୍ଷ୍ନୌ ନିକଟରେ ଅବସ୍ଥିତ ଅଛି ଏବଂ ତାର ନାମ 'ନୈମିଷାରଣ୍ୟ' ଅଟେ । ଏହି କଥାର ତାତ୍ପର୍ଯ୍ୟ ହେଉଛି- ଯେଉଁଠି ଆମ ମନର ଯାତ୍ରା ବନ୍ଦ ହୋଇଯାଏ, ଏହାର ବିକ୍ଷେପ ଶାନ୍ତ ହୋଇଯାଏ ଏବଂ ଏହାର ସ୍ଥିରତା ଆସିଯାଏ, ସେହି ସ୍ଥାନ ସାଧନା ପାଇଁ ଉତ୍ତମ ଅଟେ। ତାହା ହିଁ "ନୈମିଷାରଣ୍ୟ' ଅଟେ ।

ଦ୍ୱିତୀୟ ଦୃଷ୍ଟିରେ ଦେଖିଲେ 'ନିମିଷ'ର ଅର୍ଥ ହେଉଛି ଏକ କ୍ଷଣ ଅଥବା ପଲକ ପଡ଼ିବା । ଯେଉଁଠି ଭଗବାନ କ୍ଷଣ ମାତ୍ରକେ ସମସ୍ତ ଦୈତ୍ୟମାନଙ୍କୁ ସଂହାର କରିଥିଲେ, ସେହି ସ୍ଥାନକୁ 'ନୈମିଷାରଣ୍ୟ' କୁହାଯାଏ ।

ଦୁଇଟି ଦୃଷ୍ଟିରୁ ଅର୍ଥ ଏକ ହେଲା । ଯେଉଁଠାରେ ମନର ଗତି- ବୃତ୍ତିଗୁଡିକ ସ୍ଥିର ହୋଇଯାଆନ୍ତି ଅଥବା ଆମର ଆସୁରୀ ବୃତ୍ତି ଗୁଡିକ ତତ୍‌କ୍ଷଣାତ୍ ସମାପ୍ତ ହୋଇଯାଏ ସେହିଁ 'ନୈମିଷାରଣ୍ୟ' । ଯେପରିକି ଲୋକମାନେ ଯେତେବେଳେ ପ୍ରଥମ ଥର କୌଣସି ଆଶ୍ରମକୁ ଯାଆନ୍ତି, ତେବେ ପ୍ରାୟ କହିଥାନ୍ତି- ଦେଖ, ଏଠାରେ କେତେ ଶାନ୍ତି । କେଉଁଠି କେଉଁଠି ପହଞ୍ଚିଗଲେ ଜଣାଯାଏ ଯେପରି ମନକୁ ଅପାର ଶାନ୍ତି ମିଳୁଛି । ଏପରି ସ୍ଥାନକୁ ନୈମିଷାରଣ୍ୟ କୁହାଯାଏ ।

ଏପରି ନୈମିଷାରଣ୍ୟରେ ଅଠାଅଶୀ ହଜାର ଋଷି ଯଜ୍ଞ କରୁଥିଲେ ସ୍ୱର୍ଗପ୍ରାପ୍ତି ନିମନ୍ତେ । କେଉଁଠାରେ ସ୍ୱର୍ଗପ୍ରାପ୍ତିର ଅର୍ଥ ପରମାତ୍ମା ପ୍ରାପ୍ତି କୁହାଯାଇଛି, ପରନ୍ତୁ କର୍ମକାଣ୍ଡ ଦ୍ୱାରା ପ୍ରାପ୍ତ ସ୍ୱର୍ଗ, ସ୍ୱର୍ଗଲୋକ ଅଟେ । ଯଜ୍ଞ ଆହୁତି ଦେବା ମଧ୍ୟରେ ବିଶ୍ରାମ ଦିଆଯାଏ (ମଧ୍ୟାନ୍ତର)। ସେହି ସମୟରେ ଭଗବାନଙ୍କର ନାମ ଜପ, କଥା ଶ୍ରବଣ କରିବାର ବିଧାନ ଅଛି। ଅଠାଅଶୀ ହଜାର ଋଷିମାନଙ୍କର ପ୍ରମୁଖ ଶୌନକ ଜୀ ସୂତଜୀଙ୍କୁ ନମସ୍କାର କରି ତାଙ୍କୁ ଆସନରେ ବସାଇ ନିବେଦନ କରନ୍ତି ।

**"ସୂତାଖ୍ୟାହି କଥାସାରଂ ମମ କର୍ଣ୍ଣରସାୟନମ୍ ।।" ଭା.ମା. ୧-୪**

ହେ ସୂତ ! ଆପଣ ମୋର କର୍ଣ୍ଣକୁ ଅମୃତ ଭଳି ଲାଗୁଥିବା ଭଗବାନଙ୍କର କଥା ଶ୍ରବଣ କରାନ୍ତୁ । ଏବେ 'କଥା' ଶବ୍ଦର ଅର୍ଥ ବୁଝିବା ଉଚିତ । ପ୍ରାୟ ଆମେ କଥାର ଅର୍ଥ କିଛି କାହାଣୀ ବୋଲି ବୁଝିଥାଉ। କିନ୍ତୁ କଥାର ବାସ୍ତବିକ ଅର୍ଥ 'କଥ' ଅର୍ଥାତ କହିବା। ଆମେ କେଉଁଥିପାଇଁ କହିଥାଉ ? କୌଣସି ବସ୍ତୁକୁ ପ୍ରକାଶିତ କରିବା ନିମନ୍ତେ, ଏହାର ବୋଧ କରାଇବା (ସ୍ପଷ୍ଟ ଜ୍ଞାନ ଦେବା) ନିମନ୍ତେ, **'କଥ୍ୟତେ ପ୍ରକାଶ୍ୟତେ ଯଥା'** । ଯାହା ଦ୍ୱାରା କୌଣସି ବିଷୟରେ କୁହାଯାଏ, ପ୍ରକାଶିତ କରାଯାଏ ତାକୁ କଥା କୁହାଯାଏ। ସେଥିପାଇଁ ରାମକଥାର ତାତ୍ପର୍ଯ୍ୟ କେବଳ କୌଣସି କାହାଣୀ ନୁହେଁ। ରାମଚନ୍ଦ୍ରଜୀ କିଏ, ତାଙ୍କର ସ୍ୱରୂପ କ'ଣ ଏ ସବୁ ଯେଉଁଥିରେ ପ୍ରକଟ କରାଯାଏ, ତାକୁ ରାମକଥା କୁହାଯାଏ। ତେଣୁ ଶୌନକଜୀ କହନ୍ତି- ଆପଣ ମୋତେ ଏପରି କଥା ଶୁଣାନ୍ତୁ ଯାହାକୁ ଶୁଣି ଭକ୍ତି, ଜ୍ଞାନ, ବୈରାଗ୍ୟ ବଢିବାକୁ ଲାଗେ ଏବଂ ମୋହ, ମାୟା, ଆସକ୍ତି, ରାଗ, ଦ୍ୱେଷ, କ୍ରୋଧ ଆଦି ନାଶ ହୋଇଥାଏ । ଏହି କଳିଯୁଗର ଜୀବ, ଆସୁର-ଦୁଷ୍ଟ ଭାବକୁ ପ୍ରାପ୍ତ ହୋଇ

ବହୁତ ଦୁଃଖି ହେଉଛନ୍ତି । ସେମାନଙ୍କ ପାଇଁ ନିଜର ଶୁଦ୍ଧ ସ୍ୱରୂପକୁ ପ୍ରାପ୍ତ କରିବା, କୃଷ୍ଣ ପ୍ରାପ୍ତିର ସବୁଠାରୁ ଶ୍ରେଷ୍ଠ ପାବନକାରୀ ଏବଂ ଶୀଘ୍ର ଫଳଦାୟୀ ସାଧନ କ'ଣ ?

ଆଜି ଆମେ 'ଇନ୍‌ସ୍ଟେଣ୍ଟ କଫି' ଯୁଗରେ ଅଛୁ । ଆମକୁ ସବୁ କିଛି ତତ୍‌କ୍ଷଣ ଆବଶ୍ୟକ, ଭଗବାନ ପ୍ରାପ୍ତି ମଧ୍ୟ । କିଛି ଲୋକ କହନ୍ତି- ସ୍ୱାମୀଜୀ ଏହି କଥା ଅଢ଼େଇ ଘଣ୍ଟା ପର୍ଯ୍ୟନ୍ତ ଚାଲୁଛି । ଏହା ବହୁତ ଦୀର୍ଘ ସମୟ ହେଉଛି । ଆପଣ ଦୁଇ ମିନିଟ୍‌ରେ ଆମକୁ କିଛି ଉପଦେଶ ଦିଅନ୍ତୁ । ଦୁଇ ମିନିଟ୍‌ରେ ତ କୁହାଯାଇ ପାରିବ **'ତତ୍ତ୍ୱମସି'** କିନ୍ତୁ ଏଥିରୁ କ'ଣ ବୁଝିପାରିବ ? ତେଣୁ ଜୀବମାନଙ୍କ ନିମନ୍ତେ ସରଳ ଉପାୟ ହେଉଛି- ଭଗବାନଙ୍କର ନାମ ସ୍ମରଣ । ଆମକୁ ଯାହା ଆବଶ୍ୟକ, ତାକୁ କଳ୍ପବୃକ୍ଷ ଆଦି ଦେଇପାରନ୍ତି, ଲୌକିକ ସୁଖ, ସ୍ୱର୍ଗ ଆଦି ମଧ୍ୟ ଦେଇପାରନ୍ତି କିନ୍ତୁ ଗୁରୁ ବୈକୁଣ୍ଠ ପ୍ରଦାନ କରନ୍ତି । ବୈକୁଣ୍ଠର ଅର୍ଥ ସ୍ୱର୍ଗାଦିଲୋକ ନୁହେଁ । ବୈକୁଣ୍ଠ ତାକୁ କୁହାଯାଏ, ଯେଉଁଠି ମାୟାର ଗତି କୁଣ୍ଠିତ ହୋଇଥାଏ 'ବିକୁଣ୍ଠିତ ବୁଦ୍ଧିର୍ଯତ୍ର ଭବେତ୍' ଯେଉଁଠି ବୁଦ୍ଧି ବିକୁଣ୍ଠିତ ହୋଇଯାଏ, ସ୍ତବ୍ଧ ହୋଇଯାଏ । ବୈକୁଣ୍ଠ କୌଣସି ସାଧାରଣ ଲୋକ ନୁହେଁ ।

ଶୌନକ ଜୀଙ୍କର ପ୍ରଶ୍ନ ସର୍ବକଲ୍ୟାଣକାରୀ ହୋଇଥିବାରୁ ତାକୁ ଉତ୍ତମର ମାନ୍ୟତା ଦିଆଯାଏ । ଆମର ପ୍ରଶ୍ନ ପ୍ରାୟତଃ ବ୍ୟକ୍ତିଗତ ହୋଇଥାଏ- ଯେପରି ମୋର ବିବାହ କେବେ ହେବ ଅଥବା ଲୌକିକ ତଥା ଆର୍ଥିକ ସମସ୍ୟାର ନିବାରଣ ପାଇଁ ହୋଇଥାଏ ଏବଂ ସେହି ପ୍ରଶ୍ନର ସମାଧାନ ପାଇଁ ଆମେ ଜ୍ୟୋତିଷଙ୍କ ପାଖକୁ ଯାଇଥାଉ ।

ଜଣେ ବ୍ୟକ୍ତି ଜ୍ୟୋତିଷଙ୍କ ପାଖକୁ ଯାଇ କହିଲା- ମୋ ଉପରେ ଗୋଟିକ ପରେ ଗୋଟିଏ ସଙ୍କଟ ଆସୁଛି । ମୋତେ କ'ଣ ସେଥିରୁ ନିବୃତ୍ତି ମିଳିବ ? ଜ୍ୟୋତିଷ କହିଲେ ତୁମର ସାଢ଼େ ସାତୀ ଚାଲୁଛି । ଆସନ୍ତା ସାତ ବର୍ଷ ପର୍ଯ୍ୟନ୍ତ ତୁମକୁ ଦୁଃଖ ଭୋଗିବାକୁ ପଡ଼ିବ । ସେ ବ୍ୟକ୍ତି ଜଣକ କହିଲେ ସାତବର୍ଷ ପରେ ମୋର ଦୁଃଖରୁ ରକ୍ଷା ମିଳିବ ତ ? ଜ୍ୟୋତିଷ କହିଲେ- ନାହିଁ, ସାତ ବର୍ଷ ପର୍ଯ୍ୟନ୍ତ ଦୁଃଖ ସହି ସହି ଦୁଃଖ ସହିବା ତୁମର ଅଭ୍ୟାସ ହୋଇଯିବ ।

ତେଣୁ ପ୍ରଶ୍ନ ଏପରି ହେବା ଉଚିତ୍, ଯଦ୍ୱାରା ଏହି ଭବରୋଗ ହିଁ ସମାପ୍ତ ହୋଇଯିବ, ଦୁଃଖର ମୂଳୋତ୍ପାଟନ ହୋଇଯିବ । କଷ୍ଟକୁ ଗୋଟିଏ ଗୋଟିଏ କରି କେଉଁ ପର୍ଯ୍ୟନ୍ତ ଆମେ ତାକୁ ଦୂର କରୁଥିବା । କୁହାଯାଏ, ବିନା ପ୍ରଶ୍ନରେ (ଜଣକୁ) କିଛି କହିବା ଉଚିତ ନୁହେଁ ଏବଂ ଅନ୍ୟାୟ ପୂର୍ବକ ତଥା ଅନାଦର ପୂର୍ବକ ପଚାରିଲେ କିଛି କହିବା ଉଚିତ୍ ନୁହେଁ । ସୂତଜୀ କହନ୍ତି- ତୁମେ (ଶୌନକ ଆଦି ଋଷି) ଅତି ଉତ୍ତମ ପ୍ରଶ୍ନ

ପଚାରିଛ। ଭଗବାନଙ୍କ ପ୍ରତି ତୁମର ଅତି ପ୍ରୀତି ଅଛି ଏବଂ ତୁମେ ଆଦର ପୂର୍ବକ ପଚାରିଛ। ସେଥିପାଇଁ ମୁଁ ତୁମକୁ ସର୍ବ ସିଦ୍ଧାନ୍ତର ସାର କହୁଛି ।

**କାଲବ୍ୟାଲମୁଖଗ୍ରାସତ୍ରାସନିର୍ଣ୍ଣାଶହେତବେ ।**

**ଶ୍ରୀମଦ୍‌ଭାଗବତଂ ଶାସ୍ତ୍ରଂ କଲୌ କୀରେଣ ଭାଷିତମ୍ ॥ ଭା.ମା. ୧.୧୧**

ସଂସାରର ଭୟ ତଥା ଦୁଃଖକୁ ସମ୍ପୂର୍ଣ୍ଣ ନଷ୍ଟ କରିବାର ସାମର୍ଥ୍ୟ ଥିବା ଅମୃତର ନାମ-**ଶ୍ରୀମଦ୍‌ଭାଗବତ**। ମନ ଶୁଦ୍ଧି କରିବା ପାଇଁ ଏହାଠାରୁ ବଡ଼ ଅନ୍ୟ କୌଣସି ସାଧନ-ଶାସ୍ତ୍ର ନାହିଁ । ଏଠାରେ ଧ୍ୟାନ ଦେବାର ମୁଖ୍ୟ ବିଷୟ ହେଉଛି-

**ଜନ୍ମାନ୍ତରେ ଭବେତ୍‌ପୁଣ୍ୟଂ ତଦା ଭାଗବତଂ ଲଭେତ୍ । ଭା.ମା.୧.୧୨**

ଅନେକ ଜନ୍ମର ପୁଣ୍ୟ ଫଳୀଭୂତ ହେଲେ ଭାଗବତ ଶ୍ରବଣର ସୁଅବସର ପ୍ରାପ୍ତ ହୁଏ । ଯେଉଁ ଲୋକମାନେ ଏହି ରହସ୍ୟ ଜାଣନ୍ତି ନାହିଁ, ସେମାନେ କୁହନ୍ତି- ଏ ସବୁ ତ ପ୍ରଶଂସା ତଥା ବିଜ୍ଞାପନ ଅଟେ। ଦେଖନ୍ତୁ ଋଷି, ମୁନିମାନଙ୍କୁ କୌଣସି ବିଜ୍ଞାପନ ମାଧ୍ୟମରେ କିଛି ବିକ୍ରି କରିବାର ନାହିଁ କିମ୍ବା କୌଣସି ପୁସ୍ତକ ପ୍ରକାଶ କରି ବିକ୍ରି କରିବାର ନାହିଁ । ଯେ ପର୍ଯ୍ୟନ୍ତ କୌଣସି ବ୍ୟକ୍ତି ସବିଧିପୂର୍ବକ ଆସି ପ୍ରଶ୍ନ ନ ପଚାରୁଥିଲେ, ସେ ପର୍ଯ୍ୟନ୍ତ ସେମାନେ କିଛି ଜଣାଉ ନଥିଲେ । ଏହି କଥା ସତ୍ୟ ଯେ, ଭାଗବତ ଗ୍ରନ୍ଥର, ଭଗବାନଙ୍କର ଏବଂ ଭକ୍ତର ଯେତେ ସ୍ତୁତି କଲେ ମଧ୍ୟ ତାହା ଅଳ୍ପ ।

ଆଗକୁ ବହୁତ ସୁନ୍ଦର କଥା କୁହାଯାଇଛି। ଶୁକଦେବ ଜୀ ଯେତେବେଳେ ରାଜା ପରୀକ୍ଷିତଙ୍କୁ କଥା ଶୁଣାଇବାକୁ ପ୍ରସ୍ତୁତ ହେଲେ, ସେତେବେଳେ ଦେବତାମାନେ ଅମୃତ କୁମ୍ଭ ନେଇ ସେଠାରେ ପହଞ୍ଚିଗଲେ ଏବଂ ଶୁକଦେବ ଜୀଙ୍କୁ କହିଲେ, "ମହାରାଜ ! ଏହାଙ୍କୁ (ପରୀକ୍ଷିତ) ଅଭିଶାପ ମିଳିଛି ଯେ, ତକ୍ଷକ ଆସିବ ଏବଂ ତାର ଦଂଶନରେ ତାଙ୍କର (ପରୀକ୍ଷିତ) ମୃତ୍ୟୁ ହେବ । ତେଣୁ ଏହି ଅମୃତ କୁମ୍ଭକୁ ଆମେ ତାଙ୍କୁ ଦେଉଛୁ। ଆପଣ ଆମକୁ ଭାଗବତାମୃତ ପାନ କରାନ୍ତୁ।"

ଶୁକଦେବଜୀ ସେହି ଦେବତାମାନଙ୍କୁ ଦେଖି କହୁଛନ୍ତି-

**କ୍ୱସୁଧା କ୍ୱ କଥା ଲୋକେ କ୍ୱ କାଚଃ କ୍ୱ ମଣିର୍ମହାନ୍ ।**

**ବ୍ରହ୍ମରାତୋ ବିଚାର୍ଯ୍ୟୈବଂ ତଦା ଦେବାଞ୍ଜହାସ ହ ॥ ଭା.ମ.୧.୧୬**

"କେଉଁଠାରେ ତୁମର ଅମୃତ ଆଉ କେଉଁଠି ଏହି ଭାଗବତ କଥା ? ଏହି ଅମୃତକୁ ପାନ କରି ତୁମ୍ଭମାନଙ୍କର କେଉଁ ପ୍ରୟୋଜନ ସିଦ୍ଧ ହୋଇଛି ? ନା ତୁମେ ସବୁ ଅମରଣ ଧର୍ମା ହେଲ, ନା ତୁମ୍ଭମାନଙ୍କର ଦୁଃଖ ଦୂର ହୋଇଛି । ଏପରି ଅମୃତ ବଦଳରେ ମୁଁ ତୁମକୁ ଏହି ଭାଗବତ କଥା ଦେଇଦେବି ?" ଏମାନେ ଅଭକ୍ତ ଅଟନ୍ତି **'ଅଭକ୍ତାଂସ୍ତାଂଶ୍ଚ ବିଜ୍ଞାୟ ନ ଦଦୌ'** ଏମାନଙ୍କର ହୃଦୟରେ ଭଗବାନଙ୍କୁ ଭକ୍ତି ନାହିଁ, ଏହା ଜାଣି ଶ୍ରୀଶୁକଦେବ ଜୀ ଦେବତାମାନଙ୍କୁ ଏହି ଭାଗବତ କଥା ଦେଲେ ନାହିଁ । ତୁଳସୀ ଦାସ ଜୀ ତ ସ୍ପଷ୍ଟ କହନ୍ତି- **'ଆଏ ଦେବ ସଦା ସ୍ୱାରଥୀ'** (ଶ୍ରୀରାମଚରିତ ମାନସ ୬.୧୦.୬୨)। ଏମାନଙ୍କୁ କେବଳ ନିଜର ସ୍ୱାର୍ଥ ଦେଖାଯାଇଥାଏ ।

ଏହି ପ୍ରସଙ୍ଗରେ କୁହାଯାଇଛି ଯେ, ଦେବତାମାନଙ୍କ ପାଇଁ ମଧ୍ୟ ଏହି କଥା ଦୁର୍ଲଭ ଅଟେ । କାହିଁକି ଦୁଲର୍ଭ ? କୁହାଯାଏ, ସେମାନେ ଭୋଗରେ ଆସକ୍ତ ଅଟନ୍ତି । ଯଦି ସେମାନଙ୍କୁ ଏହି କଥା ପ୍ରାପ୍ତି ମଧ୍ୟ ହୋଇଗଲା, ତେବେ ସେଥିରେ ସେମାନଙ୍କର ଆଗ୍ରହ ନ ଥାଏ ଏବଂ ସେମାନେ ଏହାର ଆନନ୍ଦ ଉପଲବ୍ଧି କରି ପାରନ୍ତି ନାହିଁ। ବରଂ ଯେଉଁମାନେ ସଂସାରକୁ ଭଲ ଭାବରେ ପରୀକ୍ଷା କରିସାରିଛନ୍ତି ଏବଂ ଏହି କାରଣରୁ ସେମାନଙ୍କର ସଂସାରରେ କୌଣସି ନେବା-ଦେବା ନାହିଁ, ଏପରି ବିରକ୍ତ ଲୋକମାନଙ୍କ ନିମନ୍ତେ ଏହି କଥା ଉପଲବ୍ଧ ହୋଇଥାଏ । ସେମାନେ ହିଁ ଏହାର ଶ୍ରେଷ୍ଠ ଅଧିକାରୀ ଅଟନ୍ତି । ଶ୍ରୀଶୁକଦେବଜୀ ଦେବତାମାନଙ୍କୁ ଏହି କଥା ଦେଲେ ନାହିଁ । ଏହା ଜାଣିବା ପରେ ଋଷିମାନେ ବଡ଼ ଆଶ୍ଚର୍ଯ୍ୟ ହେଲେ । ଶ୍ରୀମଦ୍‌ଭାଗବତ ଶ୍ରେଷ୍ଠ ଅଟେ, ଭାଗବତ ସପ୍ତାହ ବିଶେଷ ଅଟେ, କାରଣ ସମ୍ପୂର୍ଣ୍ଣ ଭାଗବତ କେତେ ପଢିବା ? ତେଣୁ ଅତି କମ୍‌ରେ ସାତ ଦିନରେ ଭାଗବତ ଶୁଣିନେବା ଉଚିତ ।

ରାଜା ପରୀକ୍ଷିତଙ୍କୁ ଶାପ ମିଳିଥିଲା ଯେ ସାତ ଦିନରେ ତକ୍ଷକ ନାଗ ତାଙ୍କୁ ଦଂଶନ କରିବ ଏବଂ ତାଙ୍କର ମୃତ୍ୟୁ ହେବ। ଏହା ଜାଣିବା ପରେ ରାଜା ସବୁ କିଛି ଛାଡ଼ିଦେଇ ଗଙ୍ଗା କୂଳରେ ଯାଇ ବସିଲେ। ଏହାର ଅଭିପ୍ରାୟ କ'ଣ ? ସେହି ସାତ ଦିନରେ ଶୁକଦେବ ଜୀ ତାଙ୍କୁ ଭାଗବତ କଥା ଶୁଣାଇ ତାଙ୍କର ମରଣକୁ ଦୂର କରିଦେଲେ। ଏଠାରେ ବିଶେଷ ଧ୍ୟାନ ଦେବାର ଯୋଗ୍ୟ ବିଷୟ ଏହା ଯେ, ଆମ ସମସ୍ତଙ୍କର ମରଣ

ମଧ୍ୟ ଏହି ସାତ ଦିନରେ ହିଁ ହେବ। ଏହା କିପରି ? ଏକ ସପ୍ତାହରେ ସାତଟି ଦିନ ହୋଇଥାଏ। (ଏଥିମଧ୍ୟରୁ) କୌଣସି ନା କୌଣସି ଦିନ ଆମର ମରଣ ସୁନିଶ୍ଚିତ ହେବ। ସପ୍ତାହର କୌଣସି ଦିନ ମଧ୍ୟ ସପ୍ତମ ଦିନ ହୋଇପାରେ। ଆମେ ସୋମବାରଠାରୁ ଗଣନା ଆରମ୍ଭ କଲେ, ରବିବାର ସପ୍ତମ ହେବ ଏବଂ ଶନିବାରଠାରୁ ଆରମ୍ଭ କଲେ ଶୁକ୍ରବାର ସପ୍ତମ ହେବ । କହିବାର ଅଭିପ୍ରାୟ ଏହି ଯେ, ମୃତ୍ୟୁ ଯେ କୌଣସି ଦିନ ଯେକୌଣସି ମୂହୁର୍ତ୍ତରେ ହୋଇପାରେ । ତେଣୁ ସମୟ ନଷ୍ଟ ନ କରି ମୃତ୍ୟୁ ପୂର୍ବରୁ ଏହି (ଭାଗବତ) ଅମୃତକୁ ପାନ କରିନେବା ଉଚିତ । ଭାଗବତାମୃତର ଶ୍ରବଣକୁ ଜୀବନରେ ପ୍ରାଥମିକତା ଦେବା ହିଁ ଏହି କଥା ତାତ୍ପର୍ଯ୍ୟ ଅଟେ । ସପ୍ତମ ଦିନ ମୃତ୍ୟୁ ତ ହେବ, କିନ୍ତୁ କାହାର ? ଅହଂକାରର । ତକ୍ଷକ ଆସି ପରୀକ୍ଷିତଙ୍କୁ ଦଂଶନ କଲା ଏବଂ ତାଙ୍କର ମୃତ୍ୟୁ ମଧ୍ୟ ହେଲା । ଏହା ତ କେବଳ ଗୋଟିଏ ଘଟଣା । କିନ୍ତୁ ଧ୍ୟାନ ଦେବାର ବିଷୟ ଯେ, ସେତେବେଳକୁ ସେ ସମାଧି ସ୍ଥିତିରେ ଶରୀର ଜ୍ଞାନ ତାଙ୍କର ଆଦୌ ନଥିଲା । ଏପରି ଶରୀରକୁ କିଏ ଦଂଶନ କରୁ ବା ମୃତ୍ୟୁ ହୋଇଯାଉ ସେଥିରେ ତାଙ୍କର କ'ଣ ଯାଏ ଆସେ ? ତେଣୁ ଭାଗବତ ସପ୍ତାହ ଶ୍ରବଣ ଦ୍ୱାରା ଅହଂକାରର ନାଶ ହୋଇଯାଏ- ମୃତ୍ୟୁ ହୋଇଯାଏ ।

ଏବେ ଦେଖନ୍ତୁ, ଏ ପୁରାଣର କଥା ଏପରି ଯେ, ଗୋଟିଏ କଥାରୁ ଆହୁରି ଅନେକ କଥା ବାହାରି ଆସେ । ଭାଗବତ ସପ୍ତାହର ଶ୍ରବଣ ବିଧି ନାରଦଜୀଙ୍କୁ ସନତ୍‌କୁମାର କହିଥିଲେ। ଏହା ଶୁଣି ଶୌନକ ଜୀ ପଚାରିଲେ ଯେ, ନାରଦ ମୁନି ତ ସବୁବେଳେ ବୁଲୁଥିଲେ, ତାଙ୍କର ସନତକୁମାରମାନଙ୍କ ସହିତ କେଉଁଠାରେ ଦେଖା ହେଲା ଏବଂ ସେ ଶ୍ରବଣ ବିଧି କେଉଁଠି ଶୁଣିଥିଲେ ? ନାରଦ ଜୀଙ୍କ ବିଷୟରେ ମଧ୍ୟ ଲୋକମାନେ କହନ୍ତି- ନାରଦ ଜୀ ତ କଳି ଲଗାଇବା ବାଲା । ପରନ୍ତୁ 'ନାରଦ'ର ଅର୍ଥ ହେଉଛି ଜ୍ଞାନ ଦେବା ବାଲା । ଥରେ ନାରଦଜୀ ବିଚରଣ କରୁ କରୁ ବିଶାଲା। କ୍ଷେତ୍ର (ବଦ୍ରିକାଶ୍ରମ)ରେ ଯାଇ ପହଞ୍ଚିଲେ, ଯେଉଁଠି ତାଙ୍କର ସନତକୁମାର ମାନଙ୍କ ସହିତ ଭେଟ ହେଲା । ସନକ, ସନନ୍ଦନ, ସନାତନ ଏବଂ ସନତ୍‌କୁମାର ଏ ଚାରିଜଣ ବ୍ରହ୍ମାଜୀଙ୍କର ମାନସ ପୁତ୍ର ଅଟନ୍ତି। ସେମାନେ ନାରଦ ଜୀଙ୍କୁ ପଚାରିଲେ "ନାରଦ ଜୀ ଆପଣ ଅତ୍ୟନ୍ତ ଦୁଃଖୀ ଜଣା ପଡୁଛନ୍ତି, କଥା କ'ଣ ?" ସେ କହିଲେ- କ'ଣ କହିବି ? ମୁଁ ତ ସ୍ୱର୍ଗଲୋକରୁ ଏହା ଭାବି ଆସିଥିଲି ଯେ ପୃଥିବୀ ବହୁତ ଭଲ ସ୍ଥାନ, କାରଣ ମନୁଷ୍ୟ ଅଧିକାରୀ ଅଟେ। ଏଠାକୁ ଆସି ମୁଁ ଅନେକ ସ୍ଥାନକୁ ଗଲି, ଅନେକ ତୀର୍ଥ କ୍ଷେତ୍ରକୁ ଗଲି, ପରନ୍ତୁ କେଉଁଠାରେ ମୋତେ ସନ୍ତୋଷ ମିଳିଲା ନାହିଁ । ଲୋକମାନଙ୍କର ଅବସ୍ଥା ଦେଖି ମୋତେ ବହୁତ ଦୁଃଖ

ହେଲା । (ନାରଦ ଜୀ ସେ ସମୟରେ ଯାହା କହିଥିଲେ, ତାହା ଆଜି ମଧ୍ୟ ସତ୍ୟ ଅଟେ)। ଏପରି ଲାଗୁଛି ଯେ, ଯେପରି ଏଠାରେ କଳିଯୁଗ ନିଜର ଆସ୍ଥାନ ଜମାଇଲାଣି। ଏଠାରେ ସତ୍ୟ ନାହିଁ, ତପ ନାହିଁ, ଶୌଚ, ଦୟା, ଦାନ ଆଦି କିଛି ନାହିଁ। ଲୋକମାନେ କେବଳ ନିଜ ପେଟପୋଷଣ ନିମନ୍ତେ ଲାଗିଛନ୍ତି ଏବଂ ତତ୍‌ସହ ମିଥ୍ୟାବାଦୀ ହୋଇଗଲେଣି ।

**ମନ୍ଦାଃ ସୁମନ୍ଦମତୟୋ ମନ୍ଦଭାଗ୍ୟା ହ୍ୟୁପଦ୍ରୁତାଃ । ଭା.ମା.୧.୩୦**

ଏମାନେ ସମସ୍ତେ ମନ୍ଦବୁଦ୍ଧି ଏକ ମହା ଅଳସୁଆ ଅଟନ୍ତି । ଅର୍ଥାତ୍ ଏମାନେ ସବୁ ଅନ୍ୟ ବ୍ୟବହାରିକ କାର୍ଯ୍ୟ ଜଲ୍‌ଦି ଜଲ୍‌ଦି କରନ୍ତି ପରନ୍ତୁ ନିଜର ଶ୍ରେୟ ସାଧନରେ - ସକାଳୁ ଉଠି ଭଗବାନଙ୍କର ନାମ ସ୍ମରଣ ଆଦି କରିବାରେ ମହା ଅଳସୁଆ ଅଟନ୍ତି । ଏପରି ବର୍ଣ୍ଣନ କରାଯାଇଛି ଯେ କଳିଯୁଗର ଲୋକମାନଙ୍କୁ ଭଗବାନଙ୍କର ଭଜନ କରିବାକୁ କହିଲେ କୁହନ୍ତି 'ଖାଲି ପେଟ ଭଜନ ନ ହୋୟ' । ଆଚ୍ଛା, ତେବେ କିଛି ଭୋଜନ କର ଏବଂ ତା ପରେ ଭଜନ କର । ତେବେ ସେମାନେ କହିଥାନ୍ତି ଭୋଜନ ପରେ ଭଜନ ନୁହେଁ, ଶୟନ ହୋଇଥାଏ । ତେଣୁ ଏହି ଲୋକମାନେ ଖୁବ ମନ୍ଦ ଏବଂ ଅଳସୁଆ ଅଟନ୍ତି। ଲୋକମାନେ କହିଥାନ୍ତି ଯେ ନୂତନ ପୀଢୀ ବହୁତ ବୁଦ୍ଧିମାନ ଅଟନ୍ତି । କିନ୍ତୁ ପୁରାଣରେ କୁହାଯାଇଛି ଯେ '**ସୁମନ୍ଦମତୟଃ**' – ଏମାନେ ଅତ୍ୟନ୍ତ ମନ୍ଦ, ମୂଢ଼ ଅଟନ୍ତି। ଏମାନଙ୍କୁ ମନ୍ଦମତି କାହିଁକି କୁହାଯାଇଛି ? ଯେଉଁ ବୁଦ୍ଧି ନିଜର ହିଁ ନାଶ କରିଥାଏ, ତାକୁ ସଦ୍‌ବୁଦ୍ଧି କୁହାଯାଇ ପାରିବ କି ? ଟିକିଏ ବିଚାର କର, ଆଜି ବିଜ୍ଞାନର ଏତେ ପ୍ରଗତି ହେଉଛି, ନୂଆ ନୂଆ ଆବିଷ୍କାର ହେଉଛି କିନ୍ତୁ ତାର ପ୍ରୟୋଗ କରିବାକୁ ମଧ୍ୟ ଭୟ ଲାଗୁଛି । ଆଜି ଆମର ବୁଦ୍ଧି ଏପରି ହୋଇଯାଇଛି ଯେ, ଆମେ ନିଜର ତ ନାଶ କରୁଛୁ, ତତ୍ ସହିତ ଅନ୍ୟର ମଧ୍ୟ ବିନାଶ କରୁଛୁ । ଏହାର କ'ଣ ଲାଭ ? ଏଥିରେ ନା ଆତ୍ମ କଲ୍ୟାଣ ହେଉଛି ନା ଅନ୍ୟ କାହାର କଲ୍ୟାଣ ହେଉଛି ।

ଯଦି କେହି ଅଳସୁଆ ଓ ମନ୍ଦମତି ଅଟନ୍ତି କିନ୍ତୁ ତାଙ୍କର ଭାଗ୍ୟ ଯଦି ଉତ୍ତମ ହୁଏ, ତେବେ ? ଶାସ୍ତ୍ର କହେ '**ମନ୍ଦଭାଗ୍ୟାଃ**', ତାର ଭାଗ୍ୟ ମଧ୍ୟ କିଛି ଭଲ ନୁହେଁ । ସେ ଗୋଟିଏ କ୍ଷଣରେ ହସନ୍ତି ଏବଂ ପର କ୍ଷଣରେ କାନ୍ଦନ୍ତି ଏବଂ '**ଉପଦ୍ରୁତାଃ**' ତାଙ୍କର ମାର୍ଗରେ ଜଣା ନାହିଁ କେତେ ପ୍ରକାର ବିଘ୍ନ ଆସିଥାଏ । ସେ ଶାନ୍ତିରେ କୌଣସି କାର୍ଯ୍ୟ କରି ପାରନ୍ତି ନାହିଁ । '**ପାଖଣ୍ଡ ନିରତାଃ**' ଏବଂ '**ବିରକ୍ତାଃ ସପରିଗ୍ରହାଃ**' । ଯିଏ ନିଜ ନିଜକୁ ବିରକ୍ତ କହନ୍ତି, ତାଙ୍କ ପାଖରେ ଧନ ପ୍ରଭୃତି ପରିଗ୍ରହ (ସଞ୍ଚୟ) ଥାଏ । ଘରେ

ପତ୍ନୀଙ୍କର ରାଜୁତି ଚାଲିଥାଏ । ଆଜି ମଧ୍ୟ କେଉଁଠି କେଉଁଠି ଲେଖାଥିବାର ଦେଖିବାକୁ ମିଳେ "I am the boss of the house and I have my wife's permission to say so." (ମୁଁ ଏହି ଘରର ସ୍ୱାମୀ ଅଟେ ଏବଂ ଏହା କହିବା ନିମନ୍ତେ ମୋତେ ମୋ ପତ୍ନୀଙ୍କର ଅନୁମତି ମିଳିଛି ।) **'ତରୁଣୀ ପ୍ରଭୁତା ଗେହେ ଶ୍ୟାଲକୋ ବୁଦ୍ଧି ଦାୟକଃ'** । ପତ୍ନୀଙ୍କର ଭାଇ ପରାମର୍ଶ ଦାତା ହୁଅନ୍ତି ଏବଂ ଲୋକମାନେ ଏପରି ଲୋଭୀ ହୁଅନ୍ତି ଯେ ଟଙ୍କା ପାଇଁ ନିଜର ଶିଶୁକୁ ମଧ୍ୟ ବିକ୍ରି କରି ଦିଅନ୍ତି । ତୀର୍ଥସ୍ଥାନ ଏବଂ ଆଶ୍ରମ ଆଦି ଦୁଷ୍ଟ ଲୋକମାନଙ୍କ ଦ୍ୱାରା କବଳିତ ହେଲାଣି । ଏ ସବୁ ଦେଖି ମୁଁ ବହୁତ ବ୍ୟସ୍ତ ହୋଇଗଲି ଏବଂ ଦୁଃଖ ଅନୁଭବ କଲି ଯେ ଲୋକମାନେ ବେଦକୁ ମଧ୍ୟ ବିକ୍ରି କରିବାକୁ ଲାଗିଲେଣି ।

# ଦେବର୍ଷି ନାରଦ ଓ ଭକ୍ତିଙ୍କ ସମ୍ବାଦ

ଦେବର୍ଷି ନାରଦ କହୁଛନ୍ତି, "ଚାଲି ଚାଲି ମୁଁ ବୃନ୍ଦାବନରେ ପହଞ୍ଚିଲି । ମୁଁ ସେଠାରେ ଏକ ଆଶ୍ଚର୍ଯ୍ୟ ଘଟଣା ଦେଖିଲି । ଏକ ସୁନ୍ଦର ତରୁଣୀ ସ୍ତ୍ରୀ ଏବଂ ଦୁଇ ଜଣ ବୃଦ୍ଧ ତରୁଣ ଥିଲେ । ବୃଦ୍ଧ ତରୁଣ ? (ନାରଦ) କହିଲେ- ହଁ । ଏ ଦୁଇଜଣ ତାଙ୍କର ପୁତ୍ର ଥିଲେ ଏବଂ ବୃଦ୍ଧ ହୋଇଯାଇଥିଲେ- ବେହୋସ ହୋଇ ପଡ଼ିଥିଲେ । ସେହି ସ୍ତ୍ରୀଙ୍କ ସହିତ ତାଙ୍କ ସଖିମାନେ ମଧ୍ୟ ଥିଲେ ଯେଉଁମାନେ କି ତାଙ୍କର ସେବା କରୁଥିଲେ । ସେ ତରୁଣ ଯୁବତୀ କାନ୍ଦୁଥିଲେ ।" ଯେତେବେଳେ ସେ ମୋତେ ଦେଖିଲେ ମୋ ପାଖକୁ ଆସି କହିଲେ, "ନାରଦ ଜୀ ଆପଣଙ୍କ ଭଳି ସନ୍ଥଙ୍କର ଦର୍ଶନ ବଡ଼ କଷ୍ଟରେ ମିଳିଥାଏ ଏବଂ ବଡ଼ ଭାଗ୍ୟରେ ଥିଲେ ମିଳେ । ଆପଣ ମୋର ଦୁଃଖ ଦୂର କରନ୍ତୁ ।" ସେତେବେଳେ ମୁଁ ତାଙ୍କୁ ପଚାରିଲି- ତୁମେ କିଏ ? ସେ କହିଲେ "**ଭକ୍ତିରିତି ଖ୍ୟାତା**'- ମୁଁ ଭକ୍ତି ଅଟେ । ଏ ଦୁଇଜଣ ମୋର ପୁତ୍ର ଅଟନ୍ତି- ଜ୍ଞାନ ଏବଂ ବୈରାଗ୍ୟ । ଏହି ସ୍ତ୍ରୀମାନେ, ଗଙ୍ଗା, ଯମୁନା, କାବେରୀ ଆଦି ନଦୀ ସମୂହ ଏବଂ ମୋର ସେବାରେ ଲାଗିଛନ୍ତି କିନ୍ତୁ ମୁଁ ଅତ୍ୟନ୍ତ ଦୁଃଖୀ ଅଟେ । ମୋର ଜନ୍ମ ଦ୍ରାବିଡ଼ ଦେଶରେ ହେଲା, କର୍ଣ୍ଣାଟକରେ ମୋର ବୃଦ୍ଧି ହେଲା, ମହାରାଷ୍ଟ୍ରରେ ଆଉ କିଛି ବୃଦ୍ଧି ହେଲା ଏବଂ ବଡ଼ ହେଲି ଏବଂ ଗୁଜୁରାଟକୁ ଯାଇ କ୍ଷୀଣ ହୋଇଗଲି ।

ଏହାର ଅର୍ଥ ହେଲା ଯେ- ଗୁଜରାଟରେ ଭକ୍ତି ନାହିଁ । ଗୁଜରାଟର ଲୋକମାନେ ଏହାକୁ ଭଲ ଅର୍ଥରେ ନେଇଛନ୍ତି । ସେମାନେ କହିଲେ- ଆମର ଏଠି ଭକ୍ତି ନାହିଁ । ତେଣୁ ଆମର ଅଧିକ ଭକ୍ତି କରିବାର ଆବଶ୍ୟକତା ଅଛି । ସେଥିପାଇଁ ଭାଗବତର ପ୍ରଚାର ମଧ୍ୟ ହେଉଛି ଗୁଜରାଟରେ ଅଧିକ । ତେଣୁ ଭକ୍ତିମାତା କହନ୍ତି, ସେଠାରେ ମୁଁ ଜର୍ଜର ହୋଇଗଲି, ବୃଦ୍ଧା ହୋଇଗଲି ଏବଂ ମୋର ପୁତ୍ରମାନେ ମଧ୍ୟ ବୃଦ୍ଧ ହୋଇଗଲେ । ବୃନ୍ଦାବନକୁ ଆସି ମୁଁ ଯୁବା ହୋଇଗଲି ପରନ୍ତୁ ଏ ଦୁଇଜଣ ବୃଦ୍ଧ ହୋଇ ରହିଛନ୍ତି । ଏହା କିପରି ବିଚିତ୍ର କଥା ଯେ, ମାତା ଯୁବା ଅଛି ଏବଂ ପୁତ୍ରମାନେ ବୃଦ୍ଧ ହୋଇଗଲେଣି ।

ବିଚାର କରନ୍ତୁ, ଜଗତରେ ଯେତେବେଳେ ଜ୍ଞାନ, ଭକ୍ତି, ବୈରାଗ୍ୟକୁ କେହି ପଚାରିବାକୁ ନ ରହନ୍ତି, ସେତେବେଳେ ସେମାନେ ବୃଦ୍ଧ ହୋଇଗଲେ କି ନାହିଁ ? ଏବେ

ଆମେ ସବୁବେଳେ ଦୂରଦର୍ଶନ କରିବାକୁ ବସିଛୁ, ସେତେବେଳେ ରାମ ଦର୍ଶନ, କୃଷ୍ଣ ଦର୍ଶନ କିପରି ହେବ ? ଭଗବଦ୍ ଦର୍ଶନ କେଉଁଠାରୁ ହେବ ? କାରଣ ବର୍ତ୍ତମାନ ଟି.ଭି., ଭିଡିଓ ପ୍ରତି ଅଭିଳାଷ ଅଧିକ ଏବଂ ତାର ବିକ୍ରି ମଧ୍ୟ ଅଧିକ । ଆମର ଯେଉଁ ସବୁ ଶାସ୍ତ୍ର, ଧର୍ମଗ୍ରନ୍ଥ ଅଛି ସେ ସବୁର ପ୍ରକାଶନ ନାହିଁ - ଏସବୁ ବୃଦ୍ଧ ହୋଇଗଲେଣି। ଏଠାରେ ଜ୍ଞାନ, ଭକ୍ତି, ବୈରାଗ୍ୟ ବୃଦ୍ଧ ହୋଇଗଲେଣି- ଏହା କହିବାର ତାତ୍ପର୍ଯ୍ୟ ହେଉଛି ଯେ, ତାଙ୍କୁ ପଚାରିବାକୁ କେହି ନାହାନ୍ତି । ସେମାନଙ୍କର ମହତ୍ତ୍ୱ ମଧ୍ୟ ନାହିଁ । ବୃନ୍ଦାବନରେ ଭକ୍ତିର ବଡ଼ ମହିମା ଅଛି, ସେଥିପାଇଁ କୁହାଯାଇଛି, ସେଠାକୁ ଭକ୍ତି ଆସିବା ପରେ ତରୁଣ ହୋଇଗଲେ। ବୃନ୍ଦାବନ, ଗୋକୁଳ ଆଦିର ଲୋକମାନେ ଭଗବାନ ଶ୍ରୀକୃଷ୍ଣଙ୍କର ସଗୁଣ ରୂପର ଉପାସକ ଅଟନ୍ତି। ସେମାନଙ୍କୁ ବେଦାନ୍ତର ଚର୍ଚ୍ଚା ଭଲ ଲାଗେ ନାହିଁ । ସେମାନେ ଜ୍ଞାନ, ବୈରାଗ୍ୟଙ୍କୁ ମାନନ୍ତି ନାହିଁ, ସେଥିପାଇଁ ସେଠାରେ ଏ ଦୁଇଜଣ ଚେତା ହରାଇ ପଡ଼ିଛନ୍ତି । ସେମାନେ କହନ୍ତି, ସବୁଠାରେ ଭଗବାନଙ୍କୁ ଦେଖୁଛୁ, ତେବେ ବୈରାଗ୍ୟ କାହା ପ୍ରତି କରିବା ? ତେଣୁ ଭକ୍ତିମାତା କହୁଛନ୍ତି- ଆପଣ ମୋର ପୁତ୍ରମାନଙ୍କ ପାଇଁ କିଛି କରନ୍ତୁ, ସେମାନଙ୍କୁ ପୁନର୍ବାର ଯୁବକ କରିଦିଅନ୍ତୁ ।

ଶ୍ରୀ ନାରଦ କହୁଛନ୍ତି- **'ହରିଃ ଶଂ ତେ କରିଷ୍ୟତି'** ଚିନ୍ତା କର ନାହିଁ, ଭଗବାନ ସବୁ ଠିକ କରିଦେବେ । ଏଠି ଲୋକମାନେ ଭୋଗ ବିଳାସରେ ଆସକ୍ତ ହୋଇଗଲେଣି । ସେମାନେ ଜ୍ଞାନ-ବୈରାଗ୍ୟ ପ୍ରତି ଧ୍ୟାନ ଦେବା ଛାଡ଼ି ଦେଲେଣି, ସେଥିପାଇଁ ଏପରି ଅବସ୍ଥା ହୋଇଯାଇଛି । ବୃନ୍ଦାବନରେ ଲୋକମାନେ ତୁମକୁ ତ ପଚାରୁଛନ୍ତି, ସେଥିପାଇଁ ତୁମେ ଠିକ ହୋଇଯାଇଛ । ପରନ୍ତୁ, **'ଗ୍ରାହକ ଅଭାବାତ୍'** ଗ୍ରାହକ ଅଭାବରୁ ଏମାନଙ୍କୁ ଗ୍ରହଣ କରିବାବାଲା କେହି ନାହାନ୍ତି ସେଥିପାଇଁ ସେମାନଙ୍କୁ ନିଦ୍ରା ଆସିଯାଇଛି । ଏମାନଙ୍କର ମୃତ୍ୟୁ ହୋଇ ନାହିଁ । ତେଣୁ ଏଥିରେ ଚିନ୍ତା କରିବାର କୌଣସି ଆବଶ୍ୟକତା ନାହିଁ । ଏହା ତ କଳିଯୁଗର ପ୍ରଭାବ । ରାଜା ପରୀକ୍ଷିତ କଳିଯୁଗକୁ ନ ମାରି ଛାଡ଼ିଦେଲେ, ସେଥିପାଇଁ ଏସବୁ ଅବ୍ୟବସ୍ଥା ହୋଇଯାଇଛି ।

ଭକ୍ତି ପଚାରିଲେ- ରାଜା ପରୀକ୍ଷିତ ଏତେ ବଳଶାଳୀ ଥିଲେ, ସେ ପୁଣି କଳିକୁ ଛାଡ଼ି ଦେଲେ କାହିଁକି ? କାହିଁକି ମାରିଲେ ନାହିଁ ? ତେଣୁ କହିଲେ ସେ ରାଜା ବହୁତ ବୁଦ୍ଧିମାନ ଏବଂ ସାରଗ୍ରାହୀ ଥିଲେ । ସେ ଦେଖିଲେ, ଏ କଳିଯୁଗରେ ଅନେକ ପାପ କର୍ମ, ନୀଚ କର୍ମମାନ ହେବ, କିନ୍ତୁ ଏହି କଳିଯୁଗର ଏକ ଶ୍ରେଷ୍ଠ ବୈଶିଷ୍ଟ୍ୟ ମାତ୍ର ନାମ ଉଚ୍ଚାରଣ ଅଛି । ଏଠାରେ ଭଗବାନଙ୍କ ନାମମାତ୍ର ଉଚ୍ଚାରଣ ଦ୍ୱାରା ସମସ୍ତ ପ୍ରାଣୀ ମୁକ୍ତ ହୋଇଯିବେ। କଳିଯୁଗ ଭଳି ଅନ୍ୟ କୌଣସି ଯୁଗ ନାହିଁ । ଅନ୍ୟ ଯୁଗମାନଙ୍କରେ

ଭଗବତ୍ ପ୍ରାପ୍ତି ନିମନ୍ତେ ବଡ଼ କଠିନ-କଠିନ ସାଧନା ବର୍ଣ୍ଣନ ହୋଇଛି, କିନ୍ତୁ କଳିଯୁଗରେ କେବଳ ନାମ-କୀର୍ତ୍ତନ ଦ୍ୱାରା ମୋକ୍ଷର ପ୍ରାପ୍ତି ହୋଇପାରିବ । ସେଥିପାଇଁ (ରାଜା ପରୀକ୍ଷିତ) ସେ କଳିଯୁଗକୁ ଛାଡ଼ି ଦେଲେ ।

ଏହାର ଅର୍ଥ କ'ଣ ହେଲା ? ଅର୍ଥ ଏହା ଯେ, ଆମ ସମସ୍ତଙ୍କୁ ଭଗବାନଙ୍କର ନାମ ସ୍ମରଣ କରିବା ଉଚିତ । ବାସ୍ ! ଏତେ ଲମ୍ବା କାହାଣୀ କହିବାର ଏହାହିଁ ତାତ୍ପର୍ଯ୍ୟ ଅଟେ । ଏହି କଳିଯୁଗରେ ଲୋକମାନେ ଅତି କୁକର୍ମ କରିବାରେ ଲାଗିଛନ୍ତି, ବେଦକୁ ମଧ୍ୟ ବିକ୍ରି କରୁଛନ୍ତି । କଥା ମଧ୍ୟ ବିକ୍ରି କରୁଛନ୍ତି, ତେଣୁ କଥାର ସାର ଚାଲିଯାଇଛି ଏବଂ ତୀର୍ଥ କ୍ଷେତ୍ରରେ ଘୋର କର୍ମ କରୁଥିବା ଅଭକ୍ତ ଲୋକ ମଧ୍ୟ ରହିବାକୁ ଲାଗିଲେଣି, ଯଦ୍ୱାରା ତୀର୍ଥକ୍ଷେତ୍ରର ସାର ମଧ୍ୟ ଚାଲିଗଲାଣି ।

ଏବେ ତୁମ ନିମନ୍ତେ ମୁଁ ସେମାନଙ୍କୁ ଜାଗ୍ରତ କରାଉଛି । ତୁମେ ବୃଥା ଚିନ୍ତା କର ନାହିଁ, ଭଗବାନଙ୍କର ନାମ ନିଅ । ଭକ୍ତି କହିଲେ- "ମୁଁ ଧନ୍ୟ' ଅଟେ । ଯୋଗ-ବ୍ରତ-ତପ ଦ୍ୱାରା ଯାହା ହୋଇପାରିବ ନାହିଁ, ତାହା ଭକ୍ତି ଦ୍ୱାରା ସମ୍ଭବ ଅଟେ । ଏପରି କହି ଆପଣ ମୋର ପ୍ରଶଂସା କରିଛନ୍ତି, ତାହା ତ ଠିକ ଅଛି କିନ୍ତୁ ଯେପର୍ଯ୍ୟନ୍ତ ମୋର ପୁତ୍ରମାନେ ଠିକ୍ ହେବେ ନାହିଁ ସେ ପର୍ଯ୍ୟନ୍ତ ମୋତେ ତୃପ୍ତି ଲାଗିବ ନାହିଁ । ଏବେ ନାରଦ ଜୀ ଜ୍ଞାନ-ବୈରାଗ୍ୟ ପାଖକୁ ଯାଇ ତାଙ୍କ କାନ ପାଖରେ କହୁଛନ୍ତି-

**"ଜ୍ଞାନ ପ୍ରବୁଧ୍ୟତାଂ ଶୀଘ୍ରଂ ରେ ବୈରାଗ୍ୟ ପ୍ରବୁଧ୍ୟତାମ୍ ॥ ଭା.ମା.୨.୨୬**

ଆରେ ଜ୍ଞାନ ଉଠ, ବୈରାଗ୍ୟ ଉଠି ଯାଅ । କେତେ ବିସ୍ମୟକାରୀ କଥା, ଯେପରି ଆମକୁ କେହି ଉଠାଏ, ସେହିପରି ଜ୍ଞାନ-ବୈରାଗ୍ୟକୁ ଉଠାଇବା ପାଇଁ ନାରଦ ଜୀ ବେଦ-ବେଦାନ୍ତ ପାଠ କରିବାକୁ ଲାଗିଲେ । ବେଦ-ବେଦାନ୍ତ ଶୁଣାଇବା ପରେ ମଧ୍ୟ ଜ୍ଞାନ-ବୈରାଗ୍ୟ ଉଠିଲେ ନାହିଁ । ତେଣୁ ନାରଦ ଜୀ ଗୀତାଜୀଙ୍କର ପାଠ କରିବାକୁ ଲାଗିଲେ- **'ଧର୍ମ କ୍ଷେତ୍ରେ କୁରୁକ୍ଷେତ୍ରେ'** ଠାରୁ ନେଇ **'ମତିର୍ମମ'** ପର୍ଯ୍ୟନ୍ତ । ଅଥ ଠାରୁ ନେଇ ଇତି ପର୍ଯ୍ୟନ୍ତ । ତେବେ **"ଜୃମ୍ଭନ୍ତୌ ସାଲସାବୁଭୌ'** ଜ୍ଞାନ-ବୈରାଗ୍ୟ ଟିକିଏ ଉଠି ପୁଣି ଶୋଇଗଲେ । ଭଗବାନ ନାରଦ ଜୀ ଆଶ୍ଚର୍ଯ୍ୟ ଚକିତ ହୋଇ କହିଲେ- **"ଅହୋ ନିଦ୍ରା କଥଂ ଯାତି'** ଆରେ ଏହା କିପରି ନିଦ୍ରା ? ଏମାନେ ଉଠୁ ନାହାନ୍ତି କାହିଁକି ? ସେହି ସମୟରେ ଆକାଶବାଣୀ ହେଲା "ନାରଦ ଜୀ ଦୁଃଖି ହୁଅନ୍ତୁ ନାହିଁ, ଆପଣଙ୍କ କାର୍ଯ୍ୟ ସଫଳ ହେବ । ପରନ୍ତୁ ସେଥିପାଇଁ ଆପଣଙ୍କୁ ଏକ ସତକର୍ମ କରିବାକୁ ପଡିବ । ସେହି ସତ୍‌କର୍ମ କ'ଣ ତାହା ଆପଣଙ୍କୁ ଋଷିମାନଙ୍କ ଠାରୁ ଜଣା ପଡିବ ।"

ତେବେ ସେହି ସତ୍‌କର୍ମ କ'ଣ ଜାଣିବା ପାଇଁ ନାରଦଜୀ ଅନେକ ମୁନିଋଷିମାନଙ୍କ ପାଖକୁ ଯାଉଛନ୍ତି । ପରନ୍ତୁ କେହି କହିପାରୁ ନାହାନ୍ତି ଯେ ସେ ସତ୍‌କର୍ମ କ'ଣ ? ସାରା ଜଗତରେ ହା ହା କାର ହେଉଯାଉଛି । ଏହା ଏପରି ଘଟଣା ଯେ, ଯାହାର ଉପାୟ ନାରଦ ଜୀ ମଧ୍ୟ ଜାଣି ନାହାନ୍ତି । କିଛି ଲୋକ ଏହା କହିବାକୁ ଲାଗିଲେ, ଯଦି ବେଦ-ବେଦାନ୍ତ ଦ୍ୱାରା ମଧ୍ୟ ଜ୍ଞାନ-ବୈରାଗ୍ୟ ଜାଗ୍ରତ ହେଉ ନାହାନ୍ତି, ଏବେ ଅନ୍ୟ କୌଣସି ଉପାୟ ହୋଇପାରିବ ନାହିଁ।

## ନାରଦଙ୍କର ସନତ୍‌କୁମାରମାନଙ୍କ ସହ ଭେଟ

ନାରଦ ମଧ୍ୟ ଚିନ୍ତାରେ ପଡ଼ିଗଲେ। ଏବେ ମୁଁ କ'ଣ କରିବି ? ଚିନ୍ତିତ ହୋଇ ସେ ବଦ୍ରୀବନକୁ ଚାଲିଗଲେ। ଭାବିଲେ- 'ଏବେ ମୁଁ ତପସ୍ୟା କରିବି' । ଏତିକିରେ ସନତ, ସନକ, ସନାତନ ଓ ସନନ୍ଦନ- ଚାରି କୁମାର ଆସିଗଲେ । ସେମାନଙ୍କୁ ଦେଖି ନାରଦ ଜୀ ପ୍ରସନ୍ନ ହୋଇଗଲେ। ନମସ୍କାର କରି କହିଲେ, "ମହାରାଜ, ଆପଣଙ୍କର ଅଶେଷ କୃପା ଯେ ମୁଁ ଆପଣଙ୍କର ଦର୍ଶନ ପାଇଲି ।" ପୁଣି ସମସ୍ତ କଥା ଶୁଣାଇ କହିଲେ ଯେ ଏବେ ଆପଣ ଜ୍ଞାନ-ବୈରାଗ୍ୟକୁ ଜାଗ୍ରତ କରାଇବା ନିମନ୍ତେ ଉପାୟ କୁହନ୍ତୁ । ମୋର ବିଚାରରେ ମୁଁ ଜାଣିପାରୁ ନାହିଁ । ମୁଁ କ'ଣ କରିବି ? ସନତ କୁମାରମାନେ କହିଲେ- ନାରଦ ଜୀ ତୁମେ ଧନ୍ୟ ଏବଂ ଶ୍ରେଷ୍ଠ ଅଟ । ଏତେ ନିରାଶ ହେବା ପରେ ମଧ୍ୟ ତୁମେ ଏହି ଉଦ୍ୟମକୁ ଛାଡ଼ି ନାହଁ । ତୁମେ ବାସ୍ତବରେ ଭଗବାନଙ୍କର ଶ୍ରେଷ୍ଠ ଭକ୍ତ। ଏବେ ତୁମେ ଚିନ୍ତା କର ନାହିଁ । ଆମେ ପୂର୍ବରୁ ଉପାୟ ଭାବିକରି ରଖିଛୁ ।

**"ସତ୍‌କର୍ମସୂଚକୋ ନୂନଂ ଜ୍ଞାନଯଜ୍ଞଃ ସ୍ମୃତୋ ବୁଧୈଃ ।**
**ଶ୍ରୀମଦ୍‌ଭାଗବତାଲାପଃ ସ ତୁ ଗୀତଃ ଶୁକାଦିଭିଃ ॥ ଭା.ମା.-୨.୬୦**

ଭାଗବତ ସପ୍ତାହ କର । ସେଥିରେ ଜ୍ଞାନ-ବୈରାଗ୍ୟ ଜାଗ୍ରତ ହେବେ । ଏହାର ଔଷଧ ପ୍ରଥମରୁ ଜଣା ଅଛି । କେବେ କେବେ କୌଣସି ରୋଗ ହୋଇଗଲା ପରେ ତାର ଔଷଧ ଜଣା ନଥାଏ । ସେତେବେଳେ ଆମେ ଡାକ୍ତରଙ୍କ ନିକଟକୁ ଯାଉ କିନ୍ତୁ ସେ ଆମକୁ ଅନ୍ୟ କେଉଁଠାକୁ ପଠାନ୍ତି । ପରନ୍ତୁ ରୋଗ କେଉଁଠି ଠିକ୍ ହୁଏ ନାହିଁ । କେହି ଜାଣିଥିବା ବ୍ୟକ୍ତି ଆସି କହେ - "ତୁମ ଘରେ ତୁଳସୀ ଗଛ ଅଛି କି ନାହିଁ ? ଆଚ୍ଛା, ତାର ରସ ପିଇ ଦିଅନ୍ତୁ । କେବେ କେବେ ଉପାୟ ଏତେ ସରଳ ହୋଇଥିଲେ ମଧ୍ୟ ଆମକୁ

ଜଣା ନଥିବାରୁ ଆମେ ଅନ୍ୟ ବଡ଼ ବଡ଼ ଉପାୟ କରିଥାଉ, ଅପରେସନ ଆଦି କରିବାକୁ ଚାଲିଯାଉ । କହିଲେ- ତୁମେ ଭାଗବତ ସପ୍ତାହ କର, ତୁମର କାର୍ଯ୍ୟ ସମ୍ପନ୍ନ ହେବ । ଯେପରି ଭାବରେ ସିଂହର ଗର୍ଜନରେ ଜଙ୍ଗଲର ଛୋଟ ଛୋଟ ପ୍ରାଣୀ, ଶୃଗାଳ ପ୍ରଭୃତି ସମସ୍ତେ ପଳାଇ ଯାଆନ୍ତି, ସେହିଭଳି ଭାଗବତ ଶ୍ରବଣ ଦ୍ୱାରା କଳିର ସମସ୍ତ ଦୋଷ ନିବାରଣ ହୋଇଥାଏ ।

ଏଠାରେ ନାରଦ ଜୀ ବହୁତ ସୁନ୍ଦର ପ୍ରଶ୍ନ ପଚାରିଛନ୍ତି । ସେ ସନତକୁମାରଙ୍କୁ କହିଲେ ଯେ- ମୁଁ ବୁଝିପାରୁ ନାହିଁ ଯେ ଭାଗବତ ଶାସ୍ତ୍ର ତ ବେଦ-ବେଦାନ୍ତ ଠାରୁ ଅଲଗା କିଛି କୁହେ ନାହିଁ । ଭାଗବତର ସମସ୍ତ ଶ୍ଳୋକରେ ବେଦାନ୍ତ ହିଁ କୁହାଯାଇଛି । ତେବେ ବେଦଠାରୁ ଅଧିକ ଭାଗବତରେ ଏପରି କ'ଣ ବିଶେଷତା ଅଛି ? ଭାଗବତରେ ଏପରି କିଛି ନୂଆ କଥା କୁହାଯାଇଚି, ଯାହାକି ବେଦରେ ନାହିଁ ? ତେଣୁ ସନତକୁମାର ମାନେ କହିଲେ- ତୁମେ ତ ଠିକ କଥା କହୁଛ । ଭାଗବତରେ ବେଦାନ୍ତ ହିଁ କୁହାଯାଇଛି, ତଥାପି ଭାଗବତର ବିଶେଷତା ଏପରି ଯେ, ଯେପରି ଆମ୍ବ ଫଳରେ ଆମ୍ବ ଗଛର ରସ ହିଁ ବ୍ୟାପ୍ତ ହୋଇଥାଏ । ଏଥିରେ ଅନ୍ୟ କୌଣସି ଉପାଦାନ ନାହିଁ, ତଥାପି ଆମ୍ବର ସ୍ୱାଦ ତ କେବଳ ଫଳରେ ହିଁ ଆସିଥାଏ, ଗଛର ଅନ୍ୟ କୌଣସି ଅଂଶରେ ନଥାଏ ।

ଆଗକୁ ଏହା ବିଚାର କରାଯାଇଛି ଯେ, **"ନିଗମ କଳ୍ପତରୋର୍ଗଳିତଂ ଫଳମ୍'** (୧.୧.୩) ଏହା ଭାଗବତ ବେଦରୂପୀ କଳ୍ପ ବୃକ୍ଷର ପରିପକ୍ୱ ହୋଇଥିବା ଫଳ, ଯାହାକି ଆପେ ଆପେ ତଳେ ପଡ଼ିଛି । ଦେଖନ୍ତୁ, ବୃକ୍ଷର ସାର ହିଁ ଫଳରେ ଆସେ କିନ୍ତୁ ବୃକ୍ଷ ଓ ଫଳ ମଧ୍ୟରେ ପାର୍ଥକ୍ୟ ଅଛି କି ନାହିଁ ? ଏବଂ ଯେପରି ଦୁଧରୁ ହିଁ ଘିଅ ତିଆରି ହୁଏ କିନ୍ତୁ ଦୀପ ଜଳାଇବାକୁ ହେଲେ ଘିଅ ସ୍ଥାନରେ ଦୀପରେ ଦୁଧ ଢାଳିରେ ତାହା ଜଳିବ କି ? ଦୁଧରୁ ହିଁ ଘିଅ ହୁଏ କିନ୍ତୁ ଘିଅର ନିଜର ବିଶେଷତା ସ୍ୱତନ୍ତ୍ର । ସେହିପରି ଆଖୁର ଯେଉଁ ରସ ତାହା ଆଖୁଠାରୁ ଅଲଗା ଅଟେ ।

**ଇକ୍ଷୁଣାମପି ମଧ୍ୟାନ୍ତଂ ଶର୍କରା ବ୍ୟାପ୍ୟ ତିଷ୍ଠତି ।**

**ପୃଥକ୍‌ଭୂତା ଚ ସା ମିଷ୍ଟା ତଥା ଭାଗବତୀ କଥା ॥ ଭା.ମା.୨.୭୦**

ଆଖୁରେ ଯେଉଁ ଚିନି ଥାଏ, ତାହା ସମ୍ପୂର୍ଣ୍ଣ ଆଖୁରେ ବ୍ୟାପ୍ତ ହୋଇ ରହିଥାଏ କିନ୍ତୁ ଆଖୁର ସମସ୍ତ ଭାଗ କ'ଣ ମିଠା ? ତା ନୁହେଁ । ଆଖୁରୁ ଯେତେବେଳେ ରସକୁ ଅଲଗା କରି ଚିନି କରାଯାଏ, ସେ ଚିନିର ଯେଉଁ ଅଂଶରୁ ଚାଖିଲେ ମିଠା ଲାଗିଥାଏ । ସେଥିରେ ରସ ଥାଏ ।

**ଇଦଂ ଭାଗବତଂ ନାମ ପୁରାଣଂ ବ୍ରହ୍ମସମ୍ମିତମ୍ ।**
**ଭକ୍ତିଜ୍ଞାନବିରାଗାଣାଂ ସ୍ଥାପନାୟ ପ୍ରକାଶିତମ୍ ॥ ଭା.ମା.୨.୭୧**

ଏହି ଭାଗବତ ବିଷୟରେ ଏକ ସୁନ୍ଦର କଥା କୁହାଯାଇଛି । ଏହି ଭାଗବତ କଥା କ'ଣ ? କୁହାଯାଏ ବ୍ରହ୍ମ ସମାନ ଅଟେ । 'ବ୍ରହ୍ମ' ଶବ୍ଦର ତାତ୍ପର୍ଯ୍ୟ ବେଦ ବୋଲି ମଧ୍ୟ ସ୍ୱୀକାର କରାଯାଏ । ଏଣୁ ଏହି ଭାଗବତ ବେଦ ସହ ସମାନ । ତାକୁ ପୁରାଣ ଗ୍ରନ୍ଥ କହି ଛୋଟ ବିଚାର କରିବା ଉଚିତ ନୁହେଁ । ଏହା ସତ୍ୟ ଯେ ଏହି ଗ୍ରନ୍ଥ ବେଦ ସହ ସମାନ ନୁହେଁ ଅଧିକନ୍ତୁ ଏହା ବେଦ ଠାରୁ ମଧ୍ୟ ଉଚ୍ଚରେ । କାରଣ ଭାଗବତକୁ **"ନିଗମକଳ୍ପତରୋର୍ଗଳିତଂ ଫଳଂ"** କୁହାଯାଇଛି । ବେଦକୁ ବୃକ୍ଷ କୁହାଯାଇଛି କିନ୍ତୁ ଭାଗବତକୁ ଫଳ ରୂପେ ବର୍ଣ୍ଣନା ହୋଇଛି । ତେଣୁ ଏହା ବେଦଠାରୁ ପୃଥକ୍ ନୁହେଁ । କିନ୍ତୁ ତା'ଠାରୁ ଶ୍ରେଷ୍ଠ । ସେଥିପାଇଁ ଏଠାରେ କୁହାଯାଇଛି- **'ବ୍ରହ୍ମ ଶବ୍ଦେନ ପରମାତ୍ମା ଉଚ୍ୟତେ ନ ତୁ ବେଦାଃ'** । ଅର୍ଥାତ ଏହା ତ ବ୍ରହ୍ମ ସହ ସମାନ । ବେଦ ଯେଉଁ ବ୍ରହ୍ମଙ୍କ ଜ୍ଞାନ କରାଏ, ସେହି ବ୍ରହ୍ମ ସ୍ୱୟଂ ଏହି ଭାଗବତ ଅଟନ୍ତି । ତେଣୁ ପ୍ରାରମ୍ଭରୁ ଆମେ ଦେଖି ଆସୁଛୁ ଯେ ଭାଗବତ କୌଣସି ଗ୍ରନ୍ଥ ଅଥବା ପୁସ୍ତକ ନୁହେଁ । ତାକୁ ଅକ୍ଷର ମାତ୍ର ବୁଝିବା ଉଚିତ ନୁହେଁ, ସେ ତ ପରମାତ୍ମାଙ୍କର ସ୍ୱରୂପ ଅଟେ ।

ଦେଖନ୍ତୁ, ବେଦବ୍ୟାସ ଜୀ ସମସ୍ତ ବେଦକୁ ସମ୍ପାଦିତ କରି ପୁଣି ବ୍ରହ୍ମସୂତ୍ର ଲେଖିଲେ, ପୁରାଣର ରଚନା ଲେଖିଲେ, ମହାଭାରତ ଲେଖିଲେ, ତଥାପି ଯେପର୍ଯ୍ୟନ୍ତ ଭାଗବତ ରଚନା କରି ନଥିଲେ, ସେ ପର୍ଯ୍ୟନ୍ତ ତୃପ୍ତି ନଥିଲା, ସୁଖ ମିଳି ନଥିଲା, ଶାନ୍ତି ମିଳି ନଥିଲା, ସନ୍ତୋଷ ମିଳି ନଥିଲା । କୃତକୃତ୍ୟତାର ଅନୁଭବ ହୋଇ ନଥିଲା । ଏଥିରୁ ସିଦ୍ଧ ହୁଏ ଯେ, ଭାଗବତର ବିଶେଷତା ସର୍ବାଧିକ ଅଟେ । ସେଥିପାଇଁ ଏହି ଭାଗବତ ସପ୍ତାହ କରଣୀୟ। ଭାଗବତ ସପ୍ତାହ କରିବା ଦ୍ୱାରା ଆମର ମୋହ ନଷ୍ଟ ହୋଇଯାଏ ଏବଂ ହୃଦୟରେ ବୈରାଗ୍ୟର ଉଦୟ ହୁଏ, ବିବେକ ମଧ୍ୟ ଜାଗ୍ରତ ହୁଏ । ଅର୍ଥାତ ଜ୍ଞାନ ଓ ବୈରାଗ୍ୟ ଯାହା ଆଜି ବୃଦ୍ଧ ହୋଇ ଅଚେତ ହୋଇ ପଡ଼ିଛନ୍ତି, ସେ ଦୁହେଁ ଜାଗ୍ରତ ହୋଇଯାଆନ୍ତି ।

ନାରଦ ଜୀ କହିଲେ- **"ଜ୍ଞାନ ଯଜ୍ଞଂ କରିଷ୍ୟାମି'** ମୁଁ ଏହି ଜ୍ଞାନଯଜ୍ଞ କରିବି । ଆପଣ କୁହନ୍ତୁ ମୁଁ କେବେ ଓ କେଉଁଠାରେ ପ୍ରାରମ୍ଭ କରିବି ? ଏହି ଶୁକଶାସ୍ତ୍ରର ମହିମା ଶିଖାଇ ଦିଅନ୍ତୁ ଏବଂ ଏହା ମଧ୍ୟ ବୁଝାଇ ଦିଅନ୍ତୁ ଯେ ଏହାକୁ କେତେ ଦିନରେ ଶ୍ରବଣ କରିବା ଉଚିତ୍। ତା ସହିତ ଏହାକୁ ଶ୍ରବଣ କରିବାର ବିଧି ମଧ୍ୟ କୁହନ୍ତୁ । ତେବେ

ସନତକୁମାରମାନେ କହିଲେ- ଏପରି ସ୍ଥାନରେ କରନ୍ତୁ, ଯେଉଁଠି ପ୍ରାଣୀମାନଙ୍କର ପରସ୍ପର କୌଣସି ଶତ୍ରୁତା ନଥିବ- ଯେପରି ଗଙ୍ଗା କୂଳ । କାହିଁକି ନା ଏପରି ପବିତ୍ର ସ୍ଥାନରେ ଯଦି କାହା ପ୍ରତି ଶତ୍ରୁତା ହୋଇଯାଏ, ତେବେ ଶୀଘ୍ର ଏହା ଶାନ୍ତ ହୋଇଯାଏ । ଯେମିତି ସେ ଗଙ୍ଗାକୂଳରେ ଭାଗବତ କଥା ହେବାର ନିଶ୍ଚୟ ହେଲା, ସେତେବେଳେ ତାର ପରିଣାମ ସ୍ୱରୂପ ଏହା ହେଲା ଯେ-

**ଶ୍ରୀଭାଗବତପୀୟୂଷପାନାୟ ରସଲମ୍ପଟାଃ ।**
**ଧାବନ୍ତୋଽପ୍ୟାୟୟୁଃ ସର୍ବେ ପ୍ରଥମଂ ଯେ ଚ ବୈଷ୍ଣବାଃ ॥ ଭା.ମା.୩.୧୨**

କଥାର (ରସ ସ୍ୱାଦନ) କରିବା ପାଇଁ ରସ ଲମ୍ପଟ ଲୋକମାନେ ଦୌଡି-ଦୌଡି ସେଠାକୁ ଆସିଗଲେ । ସମସ୍ତ ନଦୀ ମଧ୍ୟ ସେଠାକୁ ଆସିଗଲେ । ସମସ୍ତ ଶ୍ରେଷ୍ଠ, ଋଷି, ଭୃଗୁ, ଚ୍ୟବନ, ଗୌତମ, ମେଧାତିଥି, ଦେବରାତ, ଗାଧିସୁତ, ପିପ୍ପଲାଦ ଆଦି ସମସ୍ତେ ସେଠାରେ ପହଞ୍ଚିଲେ । ସମସ୍ତ ବେଦ-ଶାସ୍ତ୍ର ପୁରାଣ ଏବଂ ତାଙ୍କର ଅଧିଷ୍ଠାତା ଦେବତା ମଧ୍ୟ ସେଠାକୁ ଆସିଲେ ଏବଂ ସେଠାରେ ଜୟ ଜୟକାର ହେବାକୁ ଲାଗିଲା । ଦେବତାମାନେ ପୁଷ୍ପବୃଷ୍ଟି କରିବାକୁ ଲାଗିଲେ । ପୁଣି ସନତ୍କୁମାର କଥା କହିବା ନିମନ୍ତେ ଆସନ ଉପରେ ବସିଲେ । ସେ ସର୍ବପ୍ରଥମେ ଭାଗବତ ମାହାତ୍ମ୍ୟ କହିବାକୁ ପ୍ରାରମ୍ଭ କଲେ ।

**ତାବତ୍ସଂସାରଚକ୍ରେଽସ୍ମିନ ଭ୍ରମତେଽଜ୍ଞାନତଃ ପୁମାନ୍ ।**
**ଯାବତ୍କର୍ଣ୍ଣଗତା ନାସ୍ତି ଶୁକଶାସ୍ତ୍ରକଥା କ୍ଷଣମ୍ ॥ ଭା.ମା. ୩.୨୭**

କହିଲେ- ଯେପର୍ଯ୍ୟନ୍ତ ଲୋକମାନଙ୍କ କାନରେ ଭାଗବତ କଥା ନ ପଡିଛି (ଅର୍ଥାତ୍ ସେମାନେ ଭାଗବତ କଥା ଶୁଣି ନାହାନ୍ତି) ସେ ପର୍ଯ୍ୟନ୍ତ ଲୋକମାନେ ସଂସାର ଚକ୍ରରେ ଭ୍ରମଣ କରନ୍ତି । ଥରେ ମାତ୍ର ଭାଗବତ କଥା ଶ୍ରବଣ କଲେ ଏହି ଭ୍ରମଣ ବନ୍ଦ ହୋଇଯାଏ । ବହୁତ ବଡ଼ ବଡ଼ ଶାସ୍ତ୍ର ପଢ଼ିବାର କୌଣସି ଆବଶ୍ୟକତା ନାହିଁ ।

**ଆଜନ୍ମମାତ୍ରମପି ୟେନ ଶଠେନ କିଂଚି**

**ଚ୍ଚିତଂ ବିଧାୟ ଶୁକଶାସ୍ତ୍ର କଥା ନ ପୀତା ।**

**ଚାଣ୍ଡାଲବଚ୍ଚ ଖରବଦ୍ବତ ତେନ ନୀତଂ**

**ମିଥ୍ୟା ସ୍ୱଜନ୍ମ ଜନନୀଜନିଦୁଃଖଭାଜା ॥ ଭା.ମା.୩.୪୨**

ଯିଏ ଜନ୍ମ ନେବା ପରେ ଥରେ ମଧ୍ୟ ଭାଗବତ କଥା ଶ୍ରବଣ କରିନାହାନ୍ତି, ସେମାନେ ନିଜର ମାଆକୁ ବହୁତ କଷ୍ଟ ଦେଇଛନ୍ତି ଏବଂ ସେମାନେ ତା'ର ଯୌବନ ହରଣ କରିଛନ୍ତି । ସେମାନଙ୍କର ଜୀବନ ଗଧ-ଘୋଡ଼ାଠାରୁ ମଧ୍ୟ ନିକୃଷ୍ଟ ।

**ଧିକ୍ ତଂ ନରଂ ପଶୁସମଂ ଭୁବି ଭାରରୂପ-**

**ମେବଂ ବଦନ୍ତି ଦିବି ଦେବସମାଜମୁଖ୍ୟାଃ ॥ ଭା.ମା.୩.୪୩**

ଏପରି ଲୋକମାନେ ପଶୁଙ୍କ ସଙ୍ଗେ ସମାନ ଅଟନ୍ତି । କେବଳ (ସେମାନଙ୍କ ମଧ୍ୟରେ) ଅନ୍ତର ଏତିକି ଯେ ସେମାନଙ୍କର ଶିଙ୍ଘ ଓ ଲାଞ୍ଜ ନାହିଁ । କିନ୍ତୁ ସେମାନେ ପଶୁଭଳି ଅଟନ୍ତି । ଏକ ଶାସ୍ତ୍ରରେ ଏ ପର୍ଯ୍ୟନ୍ତ କୁହାଯାଇଛି ଯେ, ସେମାନେ ପଶୁଠାରୁ ମଧ୍ୟ ହୀନ । କୁହାଯାଏ- ଆଉ ଏକ ପାର୍ଥକ୍ୟ ସେମାନଙ୍କ ମଧ୍ୟରେ ଅଛି- ପଶୁ ଘାସ ଖାଏ, ମନୁଷ୍ୟ ଘାସ ଖାଏ ନାହିଁ । ମନୁଷ୍ୟ ଘାସ ଚରୁ ନାହିଁ । ଏହା ପଶୁମାନଙ୍କର ଭାଗ୍ୟ। ନଚେତ୍ ପଶୁମାନଙ୍କ ପାଇଁ ଘାସ ମଧ୍ୟ ରହି ନଥାନ୍ତା । ଏପରି କଥା କୁହାଯାଇଛି- ଏହାର ଅର୍ଥ ଏହା ଯେ, ପ୍ରଥମେ ଆମେ ମନୁଷ୍ୟ ଜନ୍ମର ଦୁର୍ଲଭତାକୁ ବୁଝିବା ଏବଂ ତାକୁ ଶ୍ରେଷ୍ଠ ରୂପ ଦେବା । ତେଣୁ ଏଠାରେ ଏହା କହିବାର ତାତ୍ପର୍ଯ୍ୟ, ଏହି ଭାଗବତ କଥା ଅତି ଦୁର୍ଲଭ ଅଟେ ।

ଏବେ, ଏହି କଥାକୁ କେତେ ଦିନରେ ଶୁଣିବା ? କେଉଁ ଦିନରୁ ଆରମ୍ଭ କରିବା ? କହନ୍ତି- **'ଦିନାନାଂ ନିୟମୋ ନାସ୍ତି'** । କେତେକ ପଚାରନ୍ତି ମୋ ପାଖରେ ମିଠେଇ ଅଛି । କେଉଁ ମୁହୂର୍ତ୍ତରେ ଖାଇବା ପ୍ରାରମ୍ଭ କରିବି ? ସେଥିରେ ମୁହୂର୍ତ୍ତ କ'ଣ ଦେଖିବା ? ତୁମ ହାତକୁ ଆସିଛି ତ ଖାଇବା ଆରମ୍ଭ କର । ଆଛା, କେଉଁଠାରୁ ଆରମ୍ଭ କରିବି ? ଇଏ ତ ମିଠେଇ, ଯେଉଁଠାରୁ ମଧ୍ୟ ଆରମ୍ଭ କରିପାର । ଏ ପାଖରୁ ଖାଆନ୍ତୁ ନହେଲେ ସେ ପାଖରୁ ଖାଆନ୍ତୁ ଏହା ତ ସବୁଆଡୁ ମିଠା ହିଁ ଲାଗିବ । କିନ୍ତୁ ଭାଗବତ କଥାକୁ ସତ୍ୟ, ବ୍ରହ୍ମଚର୍ଯ୍ୟ ଇତ୍ୟାଦି ସହିତ ଶ୍ରବଣ କରିବା ଉଚିତ୍ । ସମ୍ପୂର୍ଣ୍ଣ ଭାଗବତର

ପ୍ରତ୍ୟେକ ଶବ୍ଦକୁ ବିସ୍ତାର ପୂର୍ବକ ନ ଶୁଣି ପାରିଲେ ମଧ୍ୟ ସାତ ଦିନରେ ଭାଗବତ କଥା ଶ୍ରବଣ କରିବା ଉଚିତ୍ । ବଡ଼ ବଡ଼ ସାଧନ ଦ୍ୱାରା ଯେଉଁ ଫଳର ପ୍ରାପ୍ତି ନ ହୋଇପାରୁଛି ସେ ସବୁ ସପ୍ତାହ ଶ୍ରବଣ ଦ୍ୱାରା ମଧ୍ୟ ପ୍ରାପ୍ତ ହୋଇଯାଏ ।

**ନିଃଶ୍ରେୟସେ ଭାଗବତଂ ପୁରାଣଂ**

**ଜାତଂ କୁତୋ ଯୋଗବିଦାଦିସୂଚକମ୍ ॥ ଭା.ମା.୩.୫୩**

ଶୌନକ ଋଷି ସୂତଜୀଙ୍କୁ ପଚାରୁଛନ୍ତି- ଯେଉଁ ଭାଗବତର ଆପଣ ଏତେ ପ୍ରଶଂସା କରୁଛନ୍ତି, ସେଥିରେ ଏତେ ଶକ୍ତି କେଉଁଠାରୁ ଆସିଛି ? ସୂତ ଜୀ କହିଲେ- ଭଗବାନ ଶ୍ରୀକୃଷ୍ଣ ଯେତେବେଳେ ନିଜର ଅବତାର ସମାପ୍ତ କରି ଏଠାରୁ ଯାଉଥିଲେ, ସେତେବେଳେ ଉଦ୍ଧବଜୀ ତାଙ୍କ ପାଖକୁ ଯାଇ କହିଲେ, "ଭଗବାନ ଆପଣ ଏଠାରୁ ଚାଲିଯିବେ, ଏଠାରେ କଳିଯୁଗର ପ୍ରବେଶ ହୋଇଯିବ ଏବଂ ସମସ୍ତେ ଦୁଃଖୀ ହୋଇଯିବେ। ସେମାନଙ୍କର ଉଦ୍ଧାର ନିମନ୍ତେ କୌଣସି ଶକ୍ତିଶାଳୀ ସାଧନ ମଧ୍ୟ ହେବା ଆବଶ୍ୟକ ।" ଭଗବାନ ମଧ୍ୟ ଭାବିବାକୁ ଲାଗିଲେ । କହିଲେ- ତୁମେ ଠିକ କଥା କହୁଛ ।

**ତିରୋଧାୟ ପ୍ରବିଷ୍ଟୋଽୟଂ ଶ୍ରୀମଦ୍‌ଭାଗବତାର୍ଣ୍ଣବମ୍ ॥ ଭା.ମା.୩.୬୧**

ତେଣୁ ଭଗବାନ ନିଜର ଶ୍ରୀକୃଷ୍ଣ ରୂପକୁ ଅନ୍ତର୍ଦ୍ଧାନ କରିଦେଲେ ଏବଂ ସେ ସ୍ୱୟଂ ଭାଗବତ ମଧ୍ୟରେ ପ୍ରବିଷ୍ଟ ହୋଇଗଲେ । ଏଥିପାଇଁ ଭାଗବତ ଭଗବାନଙ୍କର ଶବ୍ଦମୟୀ ମୂର୍ତ୍ତି ଅଟେ। **'ବାଙ୍‌ମୟୀ ମୂର୍ତ୍ତିଃ ପ୍ରତ୍ୟକ୍ଷା ବର୍ତତେ ହରେଃ'** । (ଭା.ମା.୩-୬୨) । ସେଥିପାଇଁ ଏହି ଭାଗବତ ଶ୍ରବଣ ଦ୍ୱାରା, ପଠନ ଦ୍ୱାରା ଯଦି ସମସ୍ତ ଦୁଃଖ ଦୂର ହୋଇଯାଏ, ତେବେ ଏଥିରେ ଆଶ୍ଚର୍ଯ୍ୟ କ'ଣ ?

ଏବେ ସେଠାରେ (ଯେଉଁଠାରେ ସନକାଦି ଭାଗବତ କଥା କରୁଥିଲେ) ଏକ ଆଶ୍ଚର୍ଯ୍ୟ ଘଟଣା ହେଲା । ବର୍ତ୍ତମାନ ଭାଗବତ କଥାର ଆରମ୍ଭ ହୋଇଥିଲା ଏତିକିରେ ଭକ୍ତିମାତା ନିଜର ଦୁଇ ପୁତ୍ରଙ୍କୁ ନେଇ ସେଠାକୁ ଆସି ପହଞ୍ଚିଗଲେ ଏବଂ ସେ ଦୁହେଁ ତରୁଣ ହେବାକୁ ଲାଗିଲେ, ଭାଗବତ ସପ୍ତାହ କରିବାର ସଂକଳ୍ପ ମାତ୍ର ଦ୍ୱାରା । ଏହା ଆଶ୍ଚର୍ଯ୍ୟ ନୁହେଁ କି ?

**ଭକ୍ତି ସୁତୌ ତୌ ତରୁଣୌ ଗୃହୀତ୍ୱା**

**ପ୍ରେମୈକରୂପା ସହସାଽଽବିରାସୀତ୍**

**ଶ୍ରୀକୃଷ୍ଣ ଗୋବିନ୍ଦ ହରେ ମୁରାରେ**

**ନାଥେତି ନାମାନି ମୁହୁର୍ବଦନ୍ତୀ ।। ଭା.ମା.୩.୬୭**

ଭକ୍ତିମାତା କହିବାକୁ ଲାଗିଲେ, "ଆପଣ ଧନ୍ୟ । ଆପଣଙ୍କୁ ବହୁତ ବହୁତ ଧନ୍ୟବାଦ ! ଆପଣ ମୋର ବଡ ଉପକାର କରିଛନ୍ତି ।"

**'କ୍ୱାହଂ ତୁ ତିଷ୍ଠାମ୍ୟଧୁନା ବ୍ରୁବନ୍ତୁ' ।। ଭା.ମା.୩.୭୦**

ଏବେ କୁହନ୍ତୁ, "ମୁଁ କେଉଁ ସ୍ଥାନରେ ରହିବି ?" ସନତ୍‌କୁମାରମାନେ କହିଲେ, "ତୁମେ ବୈଷ୍ଣବ ଲୋକମାନଙ୍କ ହୃଦୟରେ ରୁହ ।" ଏହାର ଅର୍ଥ ଯେଉଁମାନେ ଭଗବାନ ବିଷ୍ଣୁଙ୍କୁ ଉପାସନା କରନ୍ତି, ତାଙ୍କ ହୃଦୟରେ ଭକ୍ତି ରୁହନ୍ତି । ଅର୍ଥାତ୍ ଯେତେବେଳେ ଆମେ ନିଜର ହୃଦୟକୁ ବୈଷ୍ଣବ କରିଦେବୁ, ସେତେବେଳେ ସେ ହୃଦୟରେ ଭକ୍ତିର ଆବିର୍ଭାବ ହେବ ।

**ସକଳ ଭୁବନ ମଧ୍ୟେ ନିର୍ଧନାସ୍ତେଽପି ଧନ୍ୟା**

**ନିବସତି ହୃଦି ୟେଷାଂ ଶ୍ରୀହରେର୍ଭକ୍ତିରେକା ।**

**ହରିରପି ନିଜଲୋକଂ ସର୍ବଥାତୋ ବିହାୟ**

**ପ୍ରବିଶତି ହୃଦି ତେଷାଂ ଭକ୍ତିସୂତ୍ରୋପନଦ୍ଧଃ ।। ଭା.ମା.୩.୭୩**

**'ସକଳଭୁବନ ମଧ୍ୟେ ନିର୍ଧନାସ୍ତେପି ଧନ୍ୟା'** ସେ ଲୋକମାନେ ଧନ୍ୟ, ଯାହାର ହୃଦୟରେ ଭଗବାନଙ୍କର ଭକ୍ତି ରହିଛି । ଲୌକିକ ଦୃଷ୍ଟିରେ ସେ ନିତାନ୍ତ ଦରିଦ୍ର ହୋଇଥାଉ, ତଥାପି କିଛି କଥା ନାହିଁ, କାରଣ ଭଗବାନ ଭକ୍ତିକୁ ଦେଖି ନିଜର ଲୋକ (ବୈକୁଣ୍ଠ)କୁ ଛାଡ଼ି ଏଠାକୁ ଆସି ଯାଆନ୍ତି ଏବଂ ଭକ୍ତର ହୃଦୟରେ ରହନ୍ତି । ଭକ୍ତି ସୂତ୍ର ଦ୍ୱାରା ବାନ୍ଧି ହୋଇ ଯାଆନ୍ତି । ଯେତେବେଳେ ଭଗବାନ ଶ୍ରୀକୃଷ୍ଣ ଦେଖିଲେ ଯେ ସେ ସଭାରେ ସମସ୍ତଙ୍କ ହୃଦୟରେ ଭକ୍ତି ଛାଇ ହେଇ ଗଲାଣି ତ ସେ ନିଜେ ସମସ୍ତଙ୍କ ହୃଦୟରେ ପ୍ରକଟିତ ହୋଇଗଲେ । ସମସ୍ତଙ୍କର ନିଜର ଦେହ ତଥା ଗୃହର ବିସ୍ମୃତି ହୋଇଗଲା ।

## ଭାଗବତ କଥା ଶ୍ରବଣର ମହିମା

ଏବେ ନାରଦ ଜୀ ସନତକୁମାରଙ୍କୁ ପ୍ରଶ୍ନ ପଚାରୁଛନ୍ତି ଯେ- ଭଗବନ୍ ! ଏହି ଭାଗବତ କଥା ଦ୍ୱାରା କେଉଁ କେଉଁ ଲୋକ ପବିତ୍ର ହୁଅନ୍ତି ?

**ପ୍ରକାଶିତଃ କୋଽପି ନବୀନମାର୍ଗଃ ॥ ଭା.ମା.୪.୧୦**

ଆପଣ ଆଜି ମୋତେ ଏକ ନୂତନ ମାର୍ଗ ବତାଇଛନ୍ତି । ଏହା ବିଷୟରେ ମୋତେ କିଛି ଜଣା ନଥିଲା । ତେଣୁ ସନତକୁମାରମାନେ କହିଲେ- ଯେତେ ବଡ଼-ବଡ଼ ପାପୀର ତୁମେ କଳ୍ପନା କରିପାରିବ, ସେମାନେ ମଧ୍ୟ ଏହି ଭାଗବତ ଶ୍ରବଣ କର ମୁକ୍ତ ହୋଇପାରିବେ । ସେମାନଙ୍କର ମଧ୍ୟ ଏହି କଥାରେ ଅଧିକାର ଅଛି । ଦେଖନ୍ତୁ, ପାପ ତ ଅନେକ ପ୍ରକାରର ଅଛି । ସମସ୍ତେ ତ ସବୁ ପାପ କରନ୍ତି ନାହିଁ । କିନ୍ତୁ ଯଦି ଏପରି କୌଣସି ବ୍ୟକ୍ତି ଅଛନ୍ତି, ଯେ କି ସବୁ ପାପ କରିଛନ୍ତି, ପାପୀମାନଙ୍କର ଶିରୋମଣି ଅଟନ୍ତି, ଯେ କି ଗୋଟିଏ ପାପ ମଧ୍ୟ ଛାଡ଼ି ନଥାନ୍ତି, ସେ ମଧ୍ୟ ଭାଗବତ କଥା ଶ୍ରବଣ କରି ପବିତ୍ର ହୋଇଯାଆନ୍ତି । ପୁଣି ସେମାନେ ଏହାର ଏକ ଦୃଷ୍ଟାନ୍ତ ମଧ୍ୟ କହିଛନ୍ତି ।

## ଆତ୍ମଦେବ ତଥା ଧୁଂଧୁଲୀର କଥା

ତୁଙ୍ଗଭଦ୍ରା କୂଳରେ ଆତ୍ମଦେବ ନାମରେ ଜଣେ ବ୍ରାହ୍ମଣ ରହୁଥିଲେ । ସେଇ ବ୍ରାହ୍ମଣଙ୍କର ଏକ ପତ୍ନୀ ଥିଲେ । ତା ନାମ ଥିଲା ଧୁଂଧୁଲୀ । ଅଳ୍ପ ଶବ୍ଦରେ ତାର ଅତି ସୁନ୍ଦର ବର୍ଣ୍ଣନା କରାଯାଇଛି । ସେ ଆତ୍ମଦେବ ବଡ଼ ଶାସ୍ତ୍ରଜ୍ଞ ଥିଲେ । ବୈଦିକ କର୍ମରେ ସେ ବିଶ୍ୱାସ ରଖୁଥିଲେ । କିନ୍ତୁ ତାଙ୍କର ପତ୍ନୀ 'ସ୍ୱବାକ୍ୟ ସ୍ଥାପିକା' ଅର୍ଥାତ୍ ନିଜର କଥା ଉପରେ ଅଟଳ ରହିଲାବାଲା ଥିଲା । ସମସ୍ତଙ୍କ ଉପରେ ଆରୋପ ଲଗାଇବାରେ ସେ ଅଭ୍ୟସ୍ତ ଥିଲା ।

**'ଲୋକ ବାର୍ତାରତା'** ଗପ ସପ କରିବାରେ ତାକୁ ବହୁତ ଆନନ୍ଦ ଆସୁଥିଲା । **'କ୍ରୂରା'** ସେ କ୍ରୂର ମଧ୍ୟ ଥିଲା, **'ବହୁଜଳ୍ପିକା'** ବହୁତ କଥା କହିବାବାଲା ଥିଲେ । **'ଶୂରା ଚ ଗୃହକୃତ୍ୟେଷୁ'**- ଘର କାମରେ ସେ କୁଶଳୀ ଥିଲେ ଏବଂ **'କଲହପ୍ରିୟା'** କଳହ କରିବା ପାଇଁ ତାକୁ ଖୁବ୍ ଭଲ ଲାଗୁଥିଲା । କେଉଁଠି ନା କେଉଁଠି କଳହ କରିବା

ଏବଂ ସମସ୍ତଙ୍କ ନିନ୍ଦା କରିବା ଖରାପ କଥା କହିବା ତା ସ୍ୱଭାବ ଥିଲା । କେଉଁଆଡେ ଯିବାର ଥିବାବେଳେ ଯଦି ତାଙ୍କୁ କେହି ନ ଡାକନ୍ତି- ବାସ୍ କ୍ରୋଧ କରି ଅଭିଶାପ ଦେବାରେ ଲାଗିଯାଏ ।

ଥରେ ସେଠାର ଲୋକମାନେ କୌଣସି ସ୍ଥାନକୁ ବୁଲିବା ପାଇଁ ଯାଉଥିଲେ । ଯିବା ସମୟରେ କାହାର ମନେ ପଡିଲା ଯେ, ଧୁଂଧୁଲୀକୁ ତ ଡକାଯାଇ ନାହିଁ । ପରେ ସେ କ୍ରୋଧ କରିବ, ପୁଣି କଳହ କରିବ, ତେଣୁ ସେମାନେ ତାଙ୍କ ପାଖକୁ ଯାଇ କହିଲେ, "ଧୁଂଧୁଲୀ ପିକ୍‌ନିକ୍ ପାଇଁ ଚାଲନ୍ତୁ ।" ସେ କହିଲେ- "ଏବେ ତ ବହୁତ ଡେରି ହୋଇଗଲାଣି । ମୁଁ ପ୍ରଥମରୁ କହି ଦେଇଛି ଯେ ବର୍ଷା ହେବ ।" ଭଗବାନଙ୍କୁ ସେ ପ୍ରାର୍ଥନା କରିଥିଲା ଯେ ସେମାନେ ପିକ୍‌ନିକ୍ ଯାଉଛନ୍ତି, ବର୍ଷା ହୁଅନ୍ତା କି- ସେ ଏପରି କଳହପ୍ରିୟ ଥିଲା ।

ସେ ଦୁଇଜଣ ପତିପତ୍ନୀ ସେଠାରେ ରହୁଥିଲେ, ପରନ୍ତୁ ତାଙ୍କର କୌଣସି ପୁତ୍ର ନଥିଲା । ଆଶ୍ଚର୍ଯ୍ୟର କଥା ଯେ, ତାଙ୍କ ପତ୍ନୀଙ୍କୁ ଏ ବିଷୟରେ କୌଣସି ଦୁଃଖ ନଥିଲା। କିନ୍ତୁ ଆତ୍ମଦେବଙ୍କୁ ଭଲ ଲାଗୁ ନଥିଲା । ଦିନେ ସେ ବହୁତ ଦୁଃଖି ହୋଇ ଘର ଛାଡି ବନକୁ ଚାଲିଗଲେ । କହିଲେ- ଏବେ ମୁଁ ଯାଉଛି । ବିନା ପୁତ୍ରରେ ଘରେ କ'ଣ ରହିବି ? ଗୋଟିଏ ଦିନ ସେ ନିରାଶ ହୋଇ ଥକି ପଡ଼ି ଗୋଟିଏ ପୁଷ୍କରିଣୀ ନିକଟରେ ବସିଥିଲେ। ସେତେବେଳେ ସେଠାକୁ ଜଣେ ସନ୍ୟାସୀ ଆସିଲେ । ଆତ୍ମଦେବ ତାଙ୍କୁ ପ୍ରଣାମ କରି ତାଙ୍କ ଚରଣ ତଳେ ପଡ଼ିଗଲେ । ସନ୍ୟାସୀ କହିଲେ, "କ'ଣ ହେଲା ? ତୁମର ଦୁଃଖ କ'ଣ ? ସେ ଉତ୍ତର ଦେଲେ- "ଏପରି କିଛି ପୂର୍ବ ପାପ ଅଛି ଯେଉଁଥିପାଇଁ ମୋର ପୁତ୍ର ହେଉ ନାହିଁ । କୌଣସି ବସ୍ତୁ ମଧ୍ୟ ଆମ ଘରେ ତିଷ୍ଠିପାରୁ ନାହିଁ । ବୃକ୍ଷଲତା ଲଗାଇଲେ କେବେ ଫଳ ଆସୁ ନାହିଁ । ଗାଈଟିଏ ଆଣିଲେ ତାର ମଧ୍ୟ ପିଲା ହେଉ ନାହିଁ। ପୁତ୍ର ବିନା ତ କିଛି ହିଁ ହେଉ ନାହିଁ । ଆପଣ ମୋ ପ୍ରତି କୃପା କରି ଏକ ପୁତ୍ର ଦିଅନ୍ତୁ । ସେ ସନ୍ୟାସୀ ବ୍ରାହ୍ମଣର ରେଖା ପଢ଼ି କହିଲେ- ଆରେ ! ସାତଜନ୍ମରେ ତୋର ପୁତ୍ର ହେବାର ନାହିଁ । ତେଣୁ ପୁତ୍ର ପଛରେ ତୁ କାହିଁକି ପଡିଛୁ ? ଅଧିକନ୍ତୁ ପୁତ୍ର ଦ୍ୱାରା ତୁମକୁ ଏପରି କେଉଁ ସୁଖ ମିଳିବାକୁ ଅଛି ? ପ୍ରତ୍ୟେକ ବ୍ୟକ୍ତି ଭାବେ ଯେ, ପୁତ୍ର ହେଲେ ବହୁତ ସୁଖ ହେବ । ପୁତ୍ର ହେବା ପରେ ସେ କହେ ମୋ ପିଲା, ମୋ ଆଖିର ତାରା, ମୋ ଆଖି ସାମ୍ନାରେ ଚମକୁଥାଅ। ସେଇ ପୁତ୍ର ପୁଣି (ଏପରି କୃତୀ କରେ ଯେ) ଦିନରେ ମଧ୍ୟ ଆଖି ସାମ୍ନାରେ ତାରା ଦେଖାଯାଏ । ଏଥିରେ କ'ଣ ଲାଭ ? ଏହିପରି ହୋଇଥାଏ।

ପୁଣି କହନ୍ତି ଯେ-

**ରେ ମୁଞ୍ଚାଦ୍ୟ କୁଟୁମ୍ବାଶାଂ ସଂନ୍ୟାସେ ସର୍ବଥା ସୁଖମ୍ ॥ ଭାମା.୪.୩୬**

ତୁମେ ସନ୍ୟାସ ଗ୍ରହଣ କର । ସନ୍ୟାସରେ ସୁଖ ଅଛି । କିନ୍ତୁ କାହାର ମନରେ ଯେତେବେଳେ କାମନା ଆସେ, ସେତେବେଳେ ଅନ୍ୟ କୌଣସି କଥା ବୁଝି ହୁଏ ନାହିଁ। ବିବାହ କରିବାର କାମନା ଆସିଲେ, ବିବାହ କରିବାକୁ ହିଁ ପଡ଼ିବ । ତାହାଠାରୁ ଅଧିକ ଅନ୍ୟ କିଛି ହେବା ସମ୍ଭବ ମଧ୍ୟ ହୁଏ ନାହିଁ । ବିବାହ ହେବା ପରେ ପୁତ୍ରର ଆବଶ୍ୟକ, ପୁଣି ଲାଗେ ଯେ ପୁତ୍ର ତ ହେବାହିଁ ଉଚିତ୍ । ସେ (ଆତ୍ମଦେବ) କହନ୍ତି-

**ପୁତ୍ରାଦିସୁଖହୀନୋଽୟଂ ସଂନ୍ୟାସଃ ଶୁଷ୍କ ଏବ ହି ।**

**ଗୃହସ୍ଥଃ ସରସୋ ଲୋକେ ପୁତ୍ରପୌତ୍ରସମନ୍ୱିତଃ ॥ ଭା.ମା.୪.୩୮**

ଗୃହସ୍ଥାଶ୍ରମ ଅତି ସୁନ୍ଦର । ଛୋଟ ଛୋଟ ପିଲାମାନେ ଥିବେ । ପୁଣି ସେମାନେ ଯେତେବେଳେ ବଡ଼ ହୋଇଯିବେ, ତାଙ୍କର ମଧ୍ୟ ପିଲା ହେବେ । ସେଥିରେ କେତେ ସୁଖ ଅଛି । ଏକୁଟିଆ ବଞ୍ଚିରହିବାରେ କୌଣସି ରସ ନାହିଁ । ମୋତେ ଆପଣ କୌଣସି ଉପାୟରେ ପୁତ୍ର ପ୍ରାପ୍ତି କରାଇ ଦିଅନ୍ତୁ, ନଚେତ୍ ମୁଁ ଜୀବିତ ରହି କ'ଣ କରିବି ? ଏବେ ସନ୍ୟାସୀ ଜାଣି ପାରିଲେ ଯେ ଏହାଙ୍କ ମନରେ ଖୁବ ଆଗ୍ରହ ଅଛି, ତେଣୁ ଅନ୍ୟ କୌଣସି କଥା ଏ ବୁଝିପାରିବେ ନାହିଁ । ତେଣୁ ତାଙ୍କୁ ଏକ ଫଳ ଦେଲେ ଏବଂ କହିଲେ, "ଏହି ଫଳ ତୁମେ ତୁମ ପତ୍ନୀଙ୍କୁ ଖୁଆଇ ଦେବ । ଏକ ବର୍ଷ ପର୍ଯ୍ୟନ୍ତ ନିଷ୍ଠାରେ ତାଙ୍କୁ ବ୍ରତ କରିବାକୁ ହେବ । ସତ୍ୟ, ଶୌଚ ଏବଂ ଦୟାର ପାଳନ କରିବାକୁ ହେବ, ଦାନ କରିବ ତଥା ଥରେ ମାତ୍ର ଭୋଜନ କରିବା ଉଚିତ୍ । ଏକ ବର୍ଷ ପରେ ତାଙ୍କ ଗର୍ଭରୁ ପୁତ୍ର ହେବ। ସେ ବଡ଼ ଜ୍ଞାନୀ ହେବ।"

ଆତ୍ମଦେବ ବହୁତ ଖୁସି ହେଲେ । ଘରକୁ ଆସି ପତ୍ନୀକୁ ଫଳଟି ଦେଲେ ଏବଂ ସମସ୍ତ କଥା ତାଙ୍କୁ ବୁଝାଇ, ନିଜ କାର୍ଯ୍ୟରେ ସେ ବାହାରକୁ ଚାଲିଗଲେ । ପତ୍ନୀକୁ ବଡ଼ ଚିନ୍ତା ହେଲା । ବିଚାର କଲ, ଏବେ ମୁଁ ଏ ଫଳ ଖାଇବି, ତେବେ ଗର୍ଭ ରହିବ ଏବଂ ଶରୀର ବୃଦ୍ଧି ହେବ । ତେବେ କାମ କରିବାକୁ କଷ୍ଟ ହେବ । ଘରେ ଏତେ ସବୁ କାମ ରହିଛି । ଦିନରେ ଥରେ ମାତ୍ର ଭୋଜନ କରିବାକୁ କୁହାଯାଇଛି । ଏପରି କରିବା ଦ୍ୱାରା ମୋର ଶକ୍ତି ରହିବ ନାହିଁ । ଶକ୍ତି ନ ରହିଲେ ଘର କାମ କିପରି ହେବ ? ମନେକର ଗ୍ରାମରେ କେତେବେଳେ ଚୋର-ଡାକୁ ଆସିଗଲେ ତେବେ ଗର୍ଭଧାରଣ କାରଣରୁ ମୁଁ ଦୌଡି ମଧ୍ୟ ପାରୁନଥିବି । (ଏସବୁ ଭାଗବତରେ ଉଲ୍ଲେଖ ଅଛି ।)

**ଦୈବାଦ୍ ଘାଟି ବ୍ରଜେଦ୍ଗ୍ରାମେ ପଳାୟେଦ୍ଗର୍ଭିଣୀ କଥମ୍ । ଭା.ମା.୪.୪୬**

ମୁଁ ତ ଏମିତିରେ ସୁକୁମାରୀ ଅଟେ । ଗର୍ଭଧାରଣର ଏ ସମସ୍ତ ଦୁଃଖକୁ ମୁଁ କିପରି ସହି ପାରିବି ? ସତ୍ୟ-ଶୌଚ-ଦାନ-ଦୟା-ତପ ଏସବୁ ବଡ଼ କଠିନ ନିୟମ ଅଟେ । ଏ ସମସ୍ତ ମୋ ଦ୍ୱାରା ହୋଇପାରିବ ନାହିଁ । ସେ କହିଲା- ବନ୍ଧ୍ୟା ନାରୀ ଅଥବା ବିଧବା ହେବା ବହୁତ ଭଲ, କିନ୍ତୁ ପୁତ୍ରବତୀ ହେବା ନୁହେଁ । ଏପରି ନାନା ପ୍ରକାର କୁତର୍କ କରି ସେ ଫଳ ଖାଇଲା ନାହିଁ । ଆତ୍ମଦେବ ଯେତେବେଳେ ଫେରି ଆସିଲେ, ତାକୁ ପଚାରିଲେ- ତୁମେ ସେ ଫଳ ଖାଇଲ ? ସେ କହିଲେ- ହଁ, ଖାଇଲି । ମିଥ୍ୟା କହିଲେ । ତାଙ୍କର ଏକ ଭଉଣୀ ଥିଲା, ତାରି ପରି । ଭଉଣୀକୁ ଦେଖି ଧୁଂଧୁଲି କହିଲା- ବଡ଼ ଦୁଃଖ ଆସିଗଲା । ସେ ପଚାରିଲେ- କ'ଣ ହେଲା ? ସମସ୍ତ ବୃତ୍ତାନ୍ତ କହିବା ପରେ କହିଲା- ମୁଁ ତ ଚାହୁଁ ନାହିଁ, ଏବେ କ'ଣ କରିବି ? ସେଥିରେ ତାଙ୍କ ଭଉଣୀ କହିଲେ- ମୋର ସନ୍ତାନ ହେବାକୁ ଅଛି କିନ୍ତୁ ତୁମେ ଏପରି ନାଟକ କର ଯେପରି କି ତୁମର ଗର୍ଭ ହୋଇଛି । ଯେତେବେଳେ ମୋର ପିଲା ଜନ୍ମ ହେବ, ସେତେବେଳେ ମୁଁ ତୁମକୁ ମୋର ପିଲାକୁ ଦେଇଦେବି, ବୁଝିଲ ? ପୁଣି ମୁଁ ନିଜେ ଏଠାରେ କହିଦେବି ଯେ, ମୋର ପୁତ୍ର ଜନ୍ମ ହେବା କ୍ଷଣି ମରିଗଲା । ତୁମେ ମୋର ପତିଙ୍କୁ କିଛି ଟଙ୍କା ଦେଇଦେବ । ସେ ସମୟରେ ସ୍ତ୍ରୀମାନେ ମଧ୍ୟ ଏପରି ବ୍ୟବହାର କରୁଥିଲେ । ସବୁ ବଡ଼ ଯୋଜନା ଭିତରେ କରାଯିବ । କିନ୍ତୁ ପ୍ରଶ୍ନ ହେଉଛି ସେ ଶିଶୁକୁ କ୍ଷୀର ପିଆଇବାକୁ ପଡିବ । ସେ କାମ କିପରି ହେବ ? ତେଣୁ ତା ଭଉଣୀ କହିଲା- ମୁଁ ଆସି କ୍ଷୀର ପିଆଇ ଚାଲିଯିବି ।

କିଛି ସମୟରେ ପରେ ଧୁଂଧୁଲୀ ଗର୍ଭବତୀ ହେଲା ଭଳି ନାଟକ କରିବାକୁ ଲାଗିଲା । ପୁଣି ଯେତେବେଳେ ତା ଭଉଣୀର ଶିଶୁ ଜନ୍ମ ହେଲା, ସେ ଆସି ଶିଶୁଟିକୁ ଦେଇଗଲା । ଧୁଂଧୁଲୀ ପୂର୍ବ ସର୍ତ୍ତ ଅନୁସାରେ ଭଉଣୀକୁ ପଇସା ଦେଇଦେଲା । ପୁଣି ଧୁଂଧୁଲୀ କହିବାକୁ ଲାଗିଲେ- ମୋର ସ୍ତନରେ କ୍ଷୀର ନାହିଁ । କିନ୍ତୁ ମୋ ଭଉଣୀର ଏବେ ଏକ ଶିଶୁ ଜନ୍ମ ହୋଇଥିଲା, ତା ସ୍ତନରେ କ୍ଷୀର ଅଛି । ତେଣୁ ସେ ଆସି ତାକୁ କ୍ଷୀର ପିଆଇ ଚାଲିଯିବ । ଆତ୍ମଦେବ ଭାବିଲେ ଠିକ ଅଛି । ଭଉଣୀ ଆସି (ଶିଶୁଟିକୁ) କ୍ଷୀର ପିଆଇବାକୁ ଲାଗିଲା ।

ଭଉଣୀ ଆଉ ଗୋଟିଏ କଥା କହିଥିଲା- ସନ୍ୟାସୀଙ୍କ ଦ୍ୱାରା ଦିଆଯାଇଥିବା ଫଳର ଶକ୍ତିକୁ ଦେଖିବା ପାଇଁ ସେ ଫଳକୁ ତୁମେ ନିଜ ଘରର ଏକ ଗାଈକୁ ଖୁଆଇ ଦିଅ ଏବଂ ଦେଖ କ'ଣ ହେଉଛି ? ଧୁଂଧୁଲୀ ସେହିପରି କଲା । ଆଶ୍ଚର୍ଯ୍ୟର କଥା ଯେଉଁ

ଗାଈକୁ ସେ ଫଳ ଦିଆଯାଇଥିଲା, ସେ ଗାଈ ମଧ୍ୟ ଗର୍ଭବତୀ ହେଲା ଏବଂ ସେହି ଗାଈ ଏକ ସୁନ୍ଦର କୁମାରକୁ ଜନ୍ମ ଦେଲା । ତାର କାନ ଗୁଡ଼ିକ ଗାଈ କାନ ଭଳି ହୋଇଥିବାରୁ ତାର ନାମ ଗୋକର୍ଣ୍ଣ ରଖାଗଲା । ଆଲୋଚନା ହେଲା ଧୁଂଧୁଲୀର ପୁତ୍ରର ନାମ କ'ଣ ରଖାଯିବ- ଧୁଂଧୁଲୀ ନିଜେ କହିଲା- ମୋର ନାମ ଧୁଂଧୁଲୀ । ତେଣୁ ତାର ନାମ ଧୁଂଧୁକାରୀ ହେବା ଉଚିତ୍ । ଯିଏ ବହୁତ ଧୁମଧାମ କରିଥାଏ, ତାକୁ ଧୁଂଧୁକାରୀ କୁହାଯାଏ ।

## ଧୁଂଧୁକାରୀର ପତନ ଓ ଉଦ୍ଧାର

ବଡ଼ ହୋଇ ଗୋକର୍ଣ୍ଣ ବିରକ୍ତ ଜ୍ଞାନୀ, ପଣ୍ଡିତ ହେଲେ ପରନ୍ତୁ ଧୁଂଧୁକାରୀ ମହାଦୁଷ୍ଟ, କ୍ରୁର ଏବଂ ଭୟଙ୍କର ହୋଇଗଲା । ମାରିବା, ପିଟିବା, ଖେଳୁଥିବା ପିଲାମାନଙ୍କୁ ଦେଖିବା ମାତ୍ରକେ ସେମାନଙ୍କୁ କୂଅରେ ପକାଇଦେବ । ଆଦି କୁକର୍ମ କରିବାକୁ ଲାଗିଲା । 'ଶବହସ୍ତେନ ଭୋଜନଂ' ଶବ ହସ୍ତରେ ଭୋଜନ ଅର୍ଥାତ୍ ମୁର୍ଦାର ସ୍ପର୍ଶ କରି ସେହି ହାତରେ ଅନ୍ନ ମଧ୍ୟ ଭୋଜନ କରୁଥିଲା । ଶବ ହସ୍ତର ଦ୍ୱିତୀୟ ଅର୍ଥ ହେଲା ମରିଯାଇଥିବା ହସ୍ତ ଅର୍ଥାତ ଯେଉଁ ହାତ କେବେ ଦାନ ଦେଇ ନାହିଁ । ତେବେ ଧୁଂଧୁକାରୀ ଆଦୌ କେବେ ଦାନ କରୁ ନଥିଲା, କେବଳ ଭୋଗ କରୁଥିଲା । ପୁଣି ସେ ନିଜର ପିତାମାତାଙ୍କୁ ମଧ୍ୟ ଗାଳି ଦେଉଥିଲା ଏବଂ ମାଡ ଦେଉଥିଲା । ବେଶ୍ୟାମାନଙ୍କ ଫାନ୍ଦରେ ପଡ଼ି ସେ ନିଜ ପିତାଙ୍କର ସମସ୍ତ ସମ୍ପତ୍ତି ନଷ୍ଟ କରିଦେଲା ।

ଏବେ ଆତ୍ମଦେବ କାନ୍ଦିବାକୁ ଲାଗିଲେ । କହିଲେ, ସେ ସନ୍ୟାସୀ ପ୍ରଥମରୁ କହିଦେଇଥିଲେ । ଦେଖ, ଏହା କିଭଳି ପୁତ୍ର ହୋଇଗଲା ? ପୁଣି ସେ ଭାବିବାକୁ ଲାଗିଲେ ଏଠାରେ ତ କେବଳ ଦୁଃଖ ହିଁ ଦୁଃଖ । ତଥାପି ସେ ଭଗବାନଙ୍କୁ ଧନ୍ୟବାଦ ଦେବାକୁ ଲାଗିଲେ । ଭାବିଲେ, ଏହି ପୁତ୍ରର କାରଣରୁ ମୋତେ ସଂସାରରୁ ବୈରାଗ୍ୟ ଆସିଗଲା । ସଂସାରରେ କିଛି ସାର ନାହିଁ । ଏହି କଥା ମୁଁ ବୁଝିଗଲି । ତେବେ ଗୋକର୍ଣ୍ଣ, ଯେ କି ବଡ଼ ବୁଦ୍ଧିମାନ ପୁତ୍ର ଥିଲା, ସେ କହିଲା- ପିତା ! ଆପଣ ମିଥ୍ୟା ଆଶା ଛାଡ଼ି ବନକୁ ଚାଲିଯାଆନ୍ତୁ । ଆତ୍ମଦେବ କହିଲେ, "ମୁଁ ବନକୁ ଯାଇ କ'ଣ କରିବି ? ମୋତେ ବୁଝାଇ କରି କହିଦିଅ । ମୁଁ କିଛି ବୁଝି ପାରୁନାହିଁ । ଏବେ ମୁଁ ଷାଠିଏ ବର୍ଷର ହୋଇଗଲିଣି କିନ୍ତୁ ମୋର ତ କିଛି ବୁଦ୍ଧି ନାହିଁ **'ସାଠୀ ବୁଦ୍ଧି ନାଠୀ'** । ଏବେ ତୁମେ ହିଁ ବୁଝାଇ କରି କୁହ ।" ତାପରେ ଗୋକର୍ଣ୍ଣ ପିତା ଆତ୍ମଦେବଙ୍କୁ ଯେଉଁ ଉପଦେଶ ଦେଲେ, ତାହା ବହୁତ

ସୂତଉବାଚ । ଗୋକର୍ଣ୍ଣ କହିଲେ

ଦେହେଽସ୍ଥିମାଂସରୁଧିରେଽଭିମତିଂ ତ୍ୟଜ ତ୍ୱଂ
ଜାୟାସୁତାଦିଷୁ ସଦା ମମତାଂ ବିମୁଞ୍ଚ ।
ପଶ୍ୟାନିଶଂ ଜଗଦିଦଂ କ୍ଷଣଭଙ୍ଗନିଷ୍ଠଂ
ବୈରାଗ୍ୟରାଗରସିକୋ ଭବ ଭକ୍ତିନିଷ୍ଠଃ ॥ ଭା.ମା.୪.୭୯

ଧର୍ମଂ ଭଜସ୍ୱ ସତତଂ ତ୍ୟଜ ଲୋକଧର୍ମାନ୍
ସେବସ୍ୱ ସାଧୁପୁରୁଷାଂଜହି କାମତୃଷ୍ଣାମ୍ ।
ଅନ୍ୟସ୍ୟ ଦୋଷଗୁଣଚିନ୍ତନମାଶୁ ମୁକ୍ତ୍ୱା
ସେବାକଥାରସମହୋ ନିତରାଂ ପିବ ତ୍ୱମ୍ ॥ ଭା.ମା.୪.୮୦

ଏହି ଦେହ ଅସ୍ଥି, ମାଂସ, ରକ୍ତରେ ପୂର୍ଣ୍ଣ ହୋଇଛି । ଏପରି ଦେହକୁ "ଏହା ମୋର ସ୍ୱରୂପ ଅଟେ, ଏହା ମୁଁ ଅଟେ' ଏପରି ଯାହା ମାନି ନେଇଛନ୍ତି, ଏହି ବୁଦ୍ଧିକୁ ଅର୍ଥାତ ଦେହପ୍ରତି ଯେଉଁ "ଅହଂତା' ଅଛି ତାହା ଛାଡ଼ି ଦିଅନ୍ତୁ। ଏବଂ ପତ୍ନୀ-ଘର-ପୁତ୍ରକୁ ମୋର ପତ୍ନୀ, ମୋର ଘର, ମୋର ପୁତ୍ରମାନି ନେଇଛନ୍ତି, ଏହି "ମମବୁଦ୍ଧି'କୁ ମଧ୍ୟ ଛାଡ଼ି ଦିଅନ୍ତୁ । ଏହି ଜଗତ ଅତ୍ୟନ୍ତ କ୍ଷଣିକ ଅଟେ । ତେଣୁ ବୈରାଗ୍ୟର ରସ ସ୍ୱାଦନ ପୂର୍ବକ ଧର୍ମ ପାଳନ କରନ୍ତୁ ଏବଂ ସାଧୁପୁରୁଷମାନଙ୍କର ସେବା କରନ୍ତୁ । ଅନ୍ୟର ଗୁଣ-ଦୋଷକୁ ଦେଖିବା, ସେ ସବୁ ଚିନ୍ତନ କରିବା ଛାଡ଼ି ଭାଗବତ କଥା ରସରେ ରମଣ କରିବା ଉଚିତ୍ । ଏହିପରି ଭାବରେ ଗୋକର୍ଣ୍ଣ ଆତ୍ମଦେବଙ୍କୁ ବଡ଼ ସୁନ୍ଦର ଉପଦେଶ ଦେଇଥିଲେ । ନିଜ ପୁତ୍ରର ଉପଦେଶ ମାନି ଆତ୍ମଦେବ ଜଙ୍ଗଲକୁ ଚାଲିଗଲେ । ସେଠାରେ ସେ ଶ୍ରୀମଦ୍ ଭାଗବତର ଦଶମ ସ୍କନ୍ଧ ପାଠ କରିବାକୁ ଲାଗିଲେ ଏବଂ ତାଙ୍କର ତାପରେ ମୁକ୍ତି ହୋଇଗଲା ।

ଏବେ ଧୁଂଧୁକାରୀ ନିଜ ମା'କୁ ପାଦରେ ପ୍ରହାର କରି କହୁଥିଲା- ଟଙ୍କା ପଇସା ବାହାର କର, ଟଙ୍କା ପଇସା ବାହାର କର, ନଚେତ୍ ମାରିବି । ସେ ବିଚାରୀ ଏତେ ହଇରାଣ ହୋଇଗଲା ଯେ, ଦିନେ କୂଅଁକୁ ଡେଇଁ ଆତ୍ମହତ୍ୟା କଲା । ତା'ପରେ ସେ ତ ବୁଲା ଷଣ୍ଢ ଭଳି ହୋଇଗଲା । ପାଞ୍ଚଜଣ ବେଶ୍ୟାଙ୍କୁ ଘରକୁ ଆଣି ଭୋଗରେ ବୁଡ଼ି

ରହିଲା । ସେମାନେ ପ୍ରତିଦିନ ନୂଆ-ନୂଆ ବସ୍ତୁ ମାଗିବାରେ ଲାଗିଲେ । କହୁଥାନ୍ତି- ଆମକୁ ଧନ ଦିଅ, ଅଳଙ୍କାର ଓ ଆଭୂଷଣ ଆଣି ଦିଅ । ଏବେ ଧୁଂଧୁକାରୀ ଯେକୌଣସି ସ୍ଥାନରୁ ଚୋରୀ କରି ସେ ସବୁ ଆଣୁଥିଲା । ଯେତେବେଳେ ସେ ଶୋଇଗଲା, ସେତେବେଳେ ସେ ବେଶ୍ୟାମାନେ ନିଜ ନିଜ ଭିତରେ କଥାବାର୍ତ୍ତା କରିବାକୁ ଲାଗିଲେ। "ଇଏ ତ ବଡ଼ ଚୋର ଅଟେ, ସବୁଦିନ ଚୋରୀ କରି କିଛି ନା କିଛି ନେଇ ଆସୁଛି । ଦିନେ ନିଶ୍ଚୟ ରାଜାଙ୍କର ଲୋକ ଏହାକୁ ଧରିବେ । ତେବେ ଆମର ମଧ୍ୟ ମୃତ୍ୟୁ ସୁନିଶ୍ଚିତ । ଏଣୁ ଏହାକୁ ମାରି ଦେବା ।' ଏହି ବିଚାର କରି ସେମାନେ ତାକୁ ଦଉଡିରେ ବାନ୍ଧିଦେଲେ ଏବଂ ତାର ଗଳା ଚିପିଲେ, ତଥାପି ସେ ମଲା ନାହିଁ । ତାପରେ ତା ମୁହଁରେ ଜଳୁଥିବା ଅଙ୍ଗାର ପକାଇ ତାକୁ ମାରି ଦେଲେ । ଯେତେବେଳେ ଆଖପାଖ ଲୋକ ପଚାରିଲେ ଧୁଂଧୁକାରୀ କୁଆଡ଼େ ଗଲା, ସେମାନେ କହିଲେ- ସେ ଧନ ରୋଜଗାର କରିବା ନିମନ୍ତେ କେଉଁ ଦୂର ଦେଶକୁ ଯାଇଛି । ତା' ପରଦିନ ସେମାନେ ସେଠାରୁ ପଳାୟନ କଲେ ।

ସେହି ମଧ୍ୟରେ ଗୋକର୍ଣ୍ଣ ବାହାରକୁ ତୀର୍ଥ କରିବା ନିମନ୍ତେ ଚାଲି ଯାଇଥିଲେ । ଯେତେବେଳେ ନିଜ ଭାଇର ମୃତ୍ୟୁ ଖବର ତାଙ୍କୁ ମିଳିଲା, ସେ ଗୟା ଆଦି ପବିତ୍ର କ୍ଷେତ୍ରରେ ଶ୍ରାଦ୍ଧ କର୍ମ କଲେ ଏବଂ ବୁଲାବୁଲି କରି ନିଜର ଗ୍ରାମକୁ ଫେରି ଆସିଲେ । ରାତିରେ ଯେତେବେଳେ ସେ ନିଜ ଅଗଣାରେ ଶୋଇଥିଲେ, ସେତେବେଳେ ସେ ଏକ ଭୟଙ୍କର ସ୍ୱପ୍ନ ଦେଖିଲେ । ଏକ ବଡ଼ ଭୟଙ୍କର ପ୍ରାଣୀ ଥିଲା, ଯାହା କି କେବେ ଛେଳିର ମୁଖ ତ କେତେବେଳେ ମହିଷିର ମୁଖ, କେତେବେଳେ ଗନ୍ଧର୍ବର ତ କେତେବେଳେ ଦେବତାମାନଙ୍କ ଆକୃତି ଧାରଣ କରୁଥିଲା । ଗୋକର୍ଣ୍ଣ ଚିନ୍ତା କଲେ - ଇଏ କିଏ ? କୌଣସି ଭୟାନକ ପ୍ରାଣୀ ଅଥବା କୌଣସି ପ୍ରେତାତ୍ମା ଭଳି ଜଣା ପଡୁଛି। କହିଲେ- ତୁମେ କିଏ ? କିନ୍ତୁ ସେ ଉତ୍ତର ଦେଇ ପାରୁ ନଥିଲା । ଗୋକର୍ଣ୍ଣ ଭୟ କଲେ ନାହିଁ । ସେ ତାଙ୍କ ଉପରେ ଜଳ ସିଞ୍ଚନ କରିବା ଦ୍ୱାରା ତାର କହିବାର ଶକ୍ତି ଆସିଲା । ସେ କହିଲା- ମୁଁ ତୁମର ଭାଇ ଧୁଂଧୁକାରୀ ଅଟେ । ମୋ ନିଜ ଘୋର କର୍ମର ଫଳ ସ୍ୱରୂପ ମୋତେ ଏହି ପ୍ରେତ ଯୋନି ପ୍ରାପ୍ତ ହୋଇଛି । ଗୋକର୍ଣ୍ଣ କହିଲେ, "ପରନ୍ତୁ ମୁଁ ତୋର ମୁକ୍ତି ପାଇଁ ତ ବହୁତ ଶ୍ରାଦ୍ଧ କରିଛି । ସେଥିରେ ତୋର କ'ଣ ମୁକ୍ତି ହୋଇ ନାହିଁ ?" ଧୁଂଧୁକାରୀ କହିଲା, ମୁଁ ଏତେ ପାପ କରିଛି ଯେ ତୁମେ ଏପରି ହଜାର ହଜାର ଶ୍ରାଦ୍ଧ କଲେ ମଧ୍ୟ ମୋର ମୁକ୍ତି ହେବ ନାହିଁ । ଗୋକର୍ଣ୍ଣ କହିଲେ, " "ଏବେ ମୁଁ କ'ଣ କରିବି ?" ସେ କହିଲା- "ମୋତେ ଜଣା ନାହିଁ କିନ୍ତୁ ତୁମେ କିଛି ଉପାୟ କର ।"

## ଗୋକର୍ଣ୍ଣ ଦ୍ୱାରା ଭାଗବତ କଥା

ସକାଳୁ ଉଠି ଗୋକର୍ଣ୍ଣ ଚିନ୍ତା କରିବାକୁ ଲାଗିଲେ । ଏବେ ଏଥିପାଇଁ କ'ଣ କରିବି ? ପାଖ ଗାଁର ଲୋକମାନେ ତାଙ୍କୁ ଦେଖାକରିବାକୁ ଆସିଲେ । ତେବେ ସେମାନଙ୍କୁ ପଚାରି ସେ ସୂର୍ଯ୍ୟ ଉପାସନା କରିଲେ । ସୂର୍ଯ୍ୟ ଭଗବାନ ପ୍ରସନ୍ନ ହୋଇ କହିଲେ- ତୁମେ ଭାଗବତ ସପ୍ତାହ କର, ସବୁ ଠିକ ହୋଇଯିବ । ଦେଖନ୍ତୁ କଥା ବୁଲି ବୁଲି ଭାଗବତ ସପ୍ତାହକୁ ଆସିଗଲା । ତତ୍‌କ୍ଷଣାତ୍ ଭାଗବତ ସପ୍ତାହର ଆୟୋଜନ ହୋଇଗଲା । ସମସ୍ତେ ଅଗଣାରେ ବସିଗଲେ । ଗୋକର୍ଣ୍ଣ ଭାଗବତ କଥା କହିଲେ । ସେଠାରେ ଏକ ବାଉଁଶ ପଡ଼ିଥିଲା, ଯେଉଁଥିରେ ସାତଟି ଗଣ୍ଠି ଥିଲା । ପ୍ରେତାତ୍ମା ଧୁଂଧୁକାରୀକୁ ଅନ୍ୟ କେଉଁଠି ବସିବାକୁ ସ୍ଥାନ ମିଳିଲା ନାହିଁ । ତେଣୁ ସେ ସେଇ ବାଉଁଶରେ ଯାଇ ବସିଲା । ଗୋଟିଏ ଦିନର କଥା ହେଲା ପରେ ଗୋଟିଏ ଗଣ୍ଠି ଫାଟିଲା । ଦ୍ୱିତୀୟ ଦିନ କଥା ହେବା ପରେ ଦ୍ୱିତୀୟ ଗଣ୍ଠି ଫାଟିଲା । ଲୋକମାନେ ବୁଝିପାରୁ ନଥିଲେ ଯେ, ବାଉଁଶ ଫାଟିବାର ଶବ୍ଦ କେଉଁଠାରୁ ଆସୁଛି ? ସପ୍ତମ ଦିନର କଥା ସମାପ୍ତି ପରେ ବାଉଁଶର ଶେଷ ଗଣ୍ଠି ମଧ୍ୟ ଫାଟିଗଲା ଏବଂ ସେହି ବାଉଁଶରୁ ଏକ ଦିବ୍ୟ ଦେହଧାରୀ ଜୀବ ବାହାରିଲା । ସେ ଗୋକର୍ଣ୍ଣଙ୍କୁ ପ୍ରଣାମ କରି ବାରମ୍ବାର ଧନ୍ୟବାଦ ଦେଇ କହିଲା- ଭାଇ ତୁମେ ମୋତେ ଏହି ଦୁର୍ଗତିରୁ ବଞ୍ଚାଇଦେଲ । ମୁଁ ତୁମକୁ କେଉଁ ଉପାୟରେ ଧନ୍ୟବାଦ ଦେବି ?

ସମସ୍ତ ଲୋକ ଆଶ୍ଚର୍ଯ୍ୟ ହୋଇ ଦେଖୁଥିଲା । ଦେଖୁ ଦେଖୁ ତାଙ୍କ ପାଇଁ ବୈକୁଣ୍ଠରୁ ବିମାନ ଆସିଲା । ତେବେ ଗୋକର୍ଣ୍ଣ ହରିଦୂତମାନଙ୍କୁ ପଚାରିଲେ- ଆରେ ଏଠାରେ ଆମର ଏତେ ଶ୍ରୋତା ଥିଲେ, ସମସ୍ତେ ଭାଗବତ କଥା ଶୁଣିଛନ୍ତି । ତୁମେ କେବଳ ତାଙ୍କରି ପାଇଁ ବିମାନ ନେଇ ଆସିଛ ? ଅନ୍ୟ ସମସ୍ତ ଲୋକଙ୍କ ପାଇଁ ବିମାନ ଆଣି ନାହଁ ? କେବଳ ଯିଏ ପ୍ରେତାତ୍ମା, ତୁମେ ତାଙ୍କୁ ନେଇ ଯାଉଛ, ଏହା କିପରି କଥା ? ଏହା କିପରି ହେଲା ? ଶ୍ରବଣ ତ ସମସ୍ତେ କରିଛନ୍ତି, ପୁଣି ଫଳ ଭେଦ କିପରି ହେଲା ? ହରିଦୂତମାନେ ବହୁତ ସୁନ୍ଦର ଉତ୍ତର ଦେଲେ ।

ସେମାନେ କହିଲେ-

**ଶ୍ରବଣସ୍ୟ ବିଭେଦେନ ଫଲଭେଦୋଽତ୍ର ସଂସ୍ଥିତଃ ।**
**ଶ୍ରବଣଂ ତୁ କୃତଂ ସର୍ବୈର୍ନ ତଥା ମନନଂ କୃତମ୍ ।। ଭା.ମା.୫.୭୮**

ଶ୍ରବଣ ତ ସମସ୍ତେ କଲେ, କିନ୍ତୁ ମନନ କଲେ ନାହିଁ । ଏଥିଯୋଗୁଁ ଫଳ ଭେଦ ରହିଲା । ଶ୍ରବଣ ତ ସମସ୍ତେ କରୁଥିଲେ କିନ୍ତୁ ଭାବୁଥିଲେ - ଆଜି କଥା ସମାପ୍ତି ପରେ ଘରକୁ ଯାଇ ଗୋ ଦୋହନ କରି ଦୁଧ ବିକ୍ରି କରିବ, କିଏ ସାକ୍ଷାତ କରିବା ପାଇଁ ଆସିବେ ଆଦି ନାନା ପ୍ରକାର ବିଚାର କରୁଥିଲେ । ତେଣୁ ସେମାନଙ୍କ ମନ ବ୍ୟଗ୍ର ହୋଇଗଲା ତଥା ବିକ୍ଷିପ୍ତ ହୋଇଗଲା । ଏଣୁ ପରେ ସେମାନେ ଭାଗବତ କଥା ଉପରେ ବିଚାର କରି ନଥିଲେ । କିନ୍ତୁ ଏହି ପ୍ରେତାତ୍ମା (ଧୁଂଧୁକାରୀ)ର କିଛି କାମ ନଥିଲା । ତାକୁ ଯେମିତି ଦୁଃଖ ହେଉଥିଲା- ପାଣି ଦେଖୁଥିଲା କିନ୍ତୁ ପିଇ ପାରୁ ନଥିଲା, ଖାଦ୍ୟ ଦେଖୁଥିଲା କିନ୍ତୁ ଖାଇ ପାରୁ ନଥିଲା, ଏପରି ଦୁଃଖ ଅନ୍ୟମାନେ ଭୋଗୁ ନଥିଲେ । ସେମାନେ ସମସ୍ତେ ଆରାମରେ ବସିଥିଲେ । ସେଇ ଅବସ୍ଥାରୁ ମୁକ୍ତି ପାଇବା ପାଇଁ ସେ ଯେପରି ଛଟପଟ ହେଉଥିଲା। ଏପରି ବ୍ୟାକୁଳତା ଅନ୍ୟମାନଙ୍କ ପାଖରେ ନଥିଲା । ତେଣୁ ସେମାନେ କଥାର ବିଷୟର ମନନ କରୁ ନଥିଲେ । ସମସ୍ତେ ଶ୍ରବଣ କୁମାର ହୋଇଗଲେ, ମନନ କୁମାର ହେଲେ ନାହିଁ । ତାତ୍ପର୍ଯ୍ୟ ହେଉଛି ଯେ- ଯାହା ଶ୍ରବଣ କରିଛନ୍ତି, ତାର ମନନ କରିବା ଉଚିତ୍ ।

ତା'ପରେ ଗୋକର୍ଣ୍ଣ ନିଜର ନଗରବାସୀମାନଙ୍କୁ କହିଲେ- ଆମ୍ଭେମାନେ ପୁଣିଥରେ 'ଭାଗବତ କଥା' କରିବା । ଏଥର କଥାରେ ଗାଈ, ମହିଁଷି, ଗଧ-ଘୋଡା, ପତ୍ନୀ, ପିଲାମାନଙ୍କୁ ମନେ ପକାଇବ ନାହିଁ । ଏକାଗ୍ର ଚିତ୍ତରେ କଥାକୁ ଶ୍ରବଣ କରିବା ଉଚିତ୍। ଦ୍ୱିତୀୟ ଥର କଥାର ଆୟୋଜନ ହେଲା ଏବଂ କଥାର ଶେଷରେ ସବୁଲୋକଙ୍କ ପାଇଁ ବିମାନ ଆସିଲା ।

**ଅଯୋଧ୍ୟାବାସିନଃ ପୂର୍ବଂ ଯଥା ରାମେଣ ସଂଗତାଃ ।**
**ତଥା କୃଷ୍ଣେନ ତେ ନୀତା ଗୋଲକଂ ଯୋଗିଦୁର୍ଲଭମ୍ ।। ଭା.ମା.୫.୮୫**

ସ୍ୱୟଂ ଭଗବାନ ଶ୍ରୀକୃଷ୍ଣ ସବୁଲୋକଙ୍କୁ ବୈକୁଣ୍ଠ ନେଇ ଯାଇଥିଲେ । କିପରି ? ଯେପରି ଶ୍ରୀରାମଜୀ ଅଯୋଧ୍ୟାବାସୀ ସମସ୍ତଙ୍କୁ ସାକେତ୍ ଲୋକକୁ ନେଇ ଯାଇଥିଲେ । ଆମେ ମଧ୍ୟ ସପ୍ତମ ଦିନଟିକୁ ଅପେକ୍ଷା କରିବା । ଦେଖନ୍ତୁ, ଆମର ସଂସ୍କୃତ ଭାଷା ବଡ଼

ସୁନ୍ଦର ଅଟେ । ସେଥିରେ ଗୋଟିଏ ଶବ୍ଦର ଅନେକ ଅର୍ଥ ହୁଏ । "ବିମାନ' ଶବ୍ଦର ଗୋଟିଏ ଅର୍ଥ ହେଉଛି "ଉଡାଜାହାଜ' ଏବଂ ଦ୍ୱିତୀୟ ଅର୍ଥ ହେଉଛି- "ମାନ'ର ଅର୍ଥ ଅଭିମାନ ଏବଂ "ବି' ଅର୍ଥ ଚାଲିଯାଇଛି । ଏଇପରି "ବିମାନ' (ଭାବ) ଆସିବା ଉଚିତ। "ବିବେକ ଚୂଡାମଣି'ରେ ଜ୍ଞାନୀ ପୁରୁଷଙ୍କ ବିଷୟରେ ଏକ ଶ୍ଳୋକ ଅଛି-

**ବିମାନମାଲମ୍ବ୍ୟ ଶରୀରମେତଦ୍**

**ଭୁନକ୍ତ୍ୟଶେଷାନ୍ୱିଷୟାନୁପସ୍ଥିତାନ୍ ।**

**ପରେଚ୍ଛୟା ବାଲବଦାତ୍ମବେତ୍ତା**

**ୟୋଽବ୍ୟକ୍ତଲିଙ୍ଗୋଽନନୁଷକ୍ତବାହ୍ୟଃ ॥ ବି.ଚୂ- ୫୪୦**

ଯିଏ ଅଭିମାନ ରହିତ ହୋଇ ଶରୀର ଧାରଣ କରିଥାଆନ୍ତି, ସେ ମୁକ୍ତ ଅଟନ୍ତି । କହିଲେ- ଏହା ଅତି ବୁଦ୍ଧିମତ୍ତାର ବିଷୟ । ଉଡିବା ବିମାନ ନ ଆସିଲେ କାହାକୁ ଦୁଃଖ ନ ହେଉ। ସେଥିପାଇଁ ପ୍ରଥମରୁ ଏହି ଦ୍ୱିତୀୟ ଅର୍ଥଟି କୁହାଯାଇଛି। ଏହା ସତ୍ୟ ଯେ, ଏପରି ବିମାନ ନିଶ୍ଚୟ ଆସିବ । ଏଭଳି ଭାବରେ ଏ ସୁନ୍ଦର ଇତିହାସର ବର୍ଣ୍ଣନ ହୋଇଛି, ଯାହାକୁ ଶୁଣିବା ଦ୍ୱାରା ସମସ୍ତ ପାପ-ତାପ ନଷ୍ଟ ହୋଇଯାଏ ।

## ସନତ୍କୁମାରମାନଙ୍କ ଦ୍ୱାରା ଭାଗବତ ସପ୍ତାହ ଏବଂ ତାର ବିଧି

ଏହାପରେ ସନତକୁମାରମାନେ ଭାଗବତ କଥା ଶ୍ରବଣର ବିଧି ବୁଝାଇଲେ । କୁହାଯାଏ ଯେ- ମୁହୂର୍ତ୍ତ ବାହାର କରିବା ଉଚିତ୍, ଲୋକମାନଙ୍କୁ ନିମନ୍ତ୍ରଣ ଦେବା ଉଚିତ। ଏଠାରେ (ଭାଗବତ) କଥା ହେବାକୁ ଯାଉଛି, ଆପଣ ନିଶ୍ଚୟ ଆସନ୍ତୁ । ଶ୍ରୋତା- ବକ୍ତା ଦୁହେଁ ଭକ୍ତିପୂର୍ବକ, ଶ୍ରଦ୍ଧାପୂର୍ବକ ଆସିବା ଉଚିତ । ବକ୍ତାଙ୍କୁ ଅତି ଶ୍ରଦ୍ଧାପୂର୍ବକ କଥା କରିବା ଉଚିତ । ଶ୍ରୋତାଙ୍କୁ ଭକ୍ତି ପୂର୍ବକ କଥା ଶୁଣିବା ଉଚିତ ଏବଂ ଧ୍ୟାନ ରଖିବା ଉଚିତ୍ ଯେ ଶ୍ରବଣରେ ଯେପରି କୌଣସି ବାଧା ନ ଘଟେ । ସେଥିପାଇଁ ଅଧିକ ଭୋଜନ କରିବା ଉଚିତ୍ ନୁହେଁ ଯେପରି ଅଧିକ ସମୟ ବସିବାରେ ବାଧା ନ ଆସିବ । ତେବେ ନିୟମ ପୂର୍ବକ, ଭଲ ରୂପେ କଥା ଶୁଣିବା ଏବଂ କହିବା ଦ୍ୱାରା ବଡ଼ ଆନନ୍ଦ ଆସେ । ଏହିପରି ଭାଗବତ କଥାର ଶ୍ରବଣ ବିଧି ବର୍ଣ୍ଣନ ପରେ ସମ୍ପୂର୍ଣ୍ଣ ଭାଗବତ କଥା ସେଠାରେ ବର୍ଣ୍ଣନ ହେଲା । କଥାର ସମାପ୍ତି ପରେ ଶୁକଦେବ ଜୀ ସାକ୍ଷାତ ସେଠାରେ ପ୍ରକଟ ହେଲେ । ଶୁକଦେବଜୀ ଷୋହଳ ବର୍ଷର ଅଟନ୍ତି । ତାଙ୍କର ପ୍ରବେଶ କରିବା ଦେଖି ସମସ୍ତେ ଠିଆ ହୋଇଗଲେ ।

**ସ୍ୱର୍ଗେ ସତ୍ୟେ ଚ କୈଲାସେ ବୈକୁଣ୍ଠେ ନାସ୍ତ୍ୟୟଂ ରସଃ ।**

**ଅତଃ ପିବନ୍ତୁ ସଭାଗ୍ୟା ମା ମା ମୁଂଚତ କର୍ହିଚିତ୍ ॥ ଭା.ମା.୬.୮୩**

ଶୁକଦେବ ଜୀ କହିଲେ- ଆରେ ! ଏହି ଭାଗବତ ରସ ତ ସ୍ୱର୍ଗ ଆଦି ଲୋକରେ ମଧ୍ୟ ପ୍ରାପ୍ତ ହୁଏ ନାହିଁ । **'ନିଗମକଲ୍ପତରୋର୍ଗଳିତଂ ଫଳଂ'** ବେଦରୂପୀ କଳ୍ପବୃକ୍ଷର ଏହା ପରିପକ୍ୱ ଫଳ ଅଟେ । **'ଶୁକମୁଖାଦମୃତଦ୍ରବ ସଂଯୁତଂ'** ଏହା ଅମୃତ ଅଟେ । ଶୁକ ପକ୍ଷୀ (ଚଞ୍ଚୁ ଲାଗିଥିବ) ଋଖିଥିବା ଫଳ ସମ୍ପୂର୍ଣ୍ଣ ରସାଳ । **"ଶୁକ'**ର ଅର୍ଥ ଶୁଆ କୁହାଯାଇପାରିବ ଏବଂ ଶୁକଦେବ ଜୀ ମଧ୍ୟ ହୋଇପାରିବ । ସେ ତ ବୈରାଗୀ ପରମହଂସ ଅଟନ୍ତି, ତଥାପି ସେ ଏହି ରସାସ୍ୱାଦନ କରିଛନ୍ତି। ପ୍ରାୟ ଫଳକୁ ଖାଇଥାଆନ୍ତି । କିନ୍ତୁ ଏଠାରେ କୁହାଯାଇଛି- ଏହି ଫଳକୁ ପିଇଯାଅ । ଏହା ରସରୂପୀ ଫଳ ଅଟେ । ଏଥିରେ କିଛି ତ୍ୟାଜ୍ୟ ନାହିଁ, କେବଳ ରସ ହିଁ ରସ । ଅନ୍ୟ ଫଳରେ ତ ଚୋପା ଏବଂ ମଞ୍ଜି ଆଦି ଫିଙ୍ଗି ଦିଆଯାଏ । କିନ୍ତୁ ଏଥିରେ ଫିଙ୍ଗିବା ଭଳି ଯେପରି କୌଣସି ଜିନିଷ ନାହିଁ, ରସ ହିଁ ରସ, **"ପିବତ ଭାଗବତଂ ରସମାଳୟଂ'** । କେଉଁ ପର୍ଯ୍ୟନ୍ତ ପାନ କରିବା ? କୁହାଯାଏ - ପିଇ ପିଇ ଯେଉଁ ପର୍ଯ୍ୟନ୍ତ ଆପଣଙ୍କର ମନ ପରମାତ୍ମାଙ୍କଠାରେ ଲୀନ ନ ହୋଇଛି ସେ ପର୍ଯ୍ୟନ୍ତ ପିଇବାକୁ ପଡ଼ିବ । ଲୀନ ହେବା ପରେ ? ତା'ପରେ ତୁମେ ସେହି ରସରେ ବୁଡ଼ି ରହିଥିବ ।

ଏହାପରେ ଆହୁରି ଆଶ୍ଚର୍ଯ୍ୟଜନକ ଘଟଣା ହେଲା ଯେତେବେଳେ ଶୁକଦେବ ଜୀ ସେଠାକୁ ଆସିଗଲେ, ସେ ଆସିବା ପରେ ଭଗବାନ ଶ୍ରୀକୃଷ୍ଣ ବୈକୁଣ୍ଠରେ ରହିପାରିଲେ ନାହିଁ । ପ୍ରହ୍ଲାଦ, ଉଦ୍ଧବ, ଅର୍ଜୁନ, ବଳି ଆଦିଙ୍କ ସହିତ ସେ ମଧ୍ୟ ସେଠାକୁ ଚାଲିଆସିଲେ। ଏବେ ଏପରି ହେଲା ଯେ, ସମସ୍ତ ଭକ୍ତମାନେ କୀର୍ତ୍ତନ କରିବାକୁ ଲାଗିଲେ । ମଝିରେ ମଝିରେ ଜ୍ଞାନ, ଭକ୍ତି ତଥା ବୈରାଗ୍ୟ ନୃତ୍ୟ କରିବାକୁ ଲାଗିଲେ । ଭଗବାନ ତ କହିଛନ୍ତି-

**ମଦ୍ଭକ୍ତାଃ ଯତ୍ର ଗାୟନ୍ତି ତତ୍ର ତିଷ୍ଠାମି ନାରଦ ।**

ମୋର ଭକ୍ତମାନେ ଯେଉଁଠାରେ ମୋର ନାମ ଗାନ କରନ୍ତି, ମୁଁ ସେଇଠାରେ ରହିଥାଏ । **'ତତ୍ର ତିଷ୍ଠାମି' 'ତିଷ୍ଠାମି'** କେବଳ ନୁହେଁ ନୃତ୍ୟାମି । ମୁଁ ସେଠାରେ ନୃତ୍ୟ କରିଥାଏ। କିପରି ? **'ପ୍ରହ୍ଲାଦସ୍ତାଳଧାରୀ'** ପ୍ରହ୍ଲାଦ କାଠରେ କରତାଳ ବଜାଉଛନ୍ତି **'ଉଦ୍ଧବକାଂସ୍ୟଧାରୀ'** ଉଦ୍ଧବଜୀ ଝାଞ୍ଜ ବଜାଉଛନ୍ତି । ନାରଦ ଜୀ ବୀଣା ବଜାଉଛନ୍ତି। ଅର୍ଜୁନ ରାଗ ଆଳାପ କରୁଛନ୍ତି- ଗାନ କରୁଛନ୍ତି **'ସ୍ୱକୁଶଳତୟା ରାଗକର୍ତ୍ତା ଅର୍ଜୁନ'**।

ଦେଖନ୍ତୁ ଆମେ ସମସ୍ତେ ଅର୍ଜୁନଙ୍କୁ ଧନୁର୍ଦ୍ଧାରୀ ରୂପରେ ଜାଣିଛୁ । ସେ ସଙ୍ଗୀତ ମଧ୍ୟ ଜାଣିଥିଲେ, ଏହା କେତେ ଲୋକଙ୍କୁ ଜଣା ଅଛି ? ଆରେ ! ଅର୍ଜୁନ ଜଣେ ପ୍ରସିଦ୍ଧ ଗାୟକ ଥିଲେ ଏବଂ

**ଇନ୍ଦ୍ରୋଽବାଦୀନ୍ମୃଦଙ୍ଗ ଜୟ ଜୟସୁକରାଃ**

**କୀର୍ତନେ ତେ କୁମାରା ॥ ଭା.ମା.୬.୮୬**

ଇନ୍ଦ୍ରଦେବ ମୃଦଙ୍ଗ ବଜାଉଥିଲେ । କୀର୍ତ୍ତନର ମଝିରେ ମଝିରେ ସନତ୍‌କୁମାର ଆଦି ଜୟ-ଜୟକାର କରୁଥିଲେ । "ବୃନ୍ଦାବନ ବିହାରୀ ଲାଲ କୀ ଜୟ' । ଏବେ କେହି କହିବେ କି କବିତା କିଏ ଲେଖୁଥିଲେ ? କହିଲେ-

**ଯତ୍ରାଗ୍ରେ ଭାବବକ୍ତା ସରସରଚନୟା ବ୍ୟାସପୁତ୍ରୋ ବଭୂବ ॥ ଭା.ମା.୬.୮୬**

ବ୍ୟାସପୁତ୍ର ଭଗବାନ ଶୁକଦେବଜୀ କବିତା ଲେଖୁଥିଲେ । ଅର୍ଜୁନ ତାକୁ ସଂଗୀତବଦ୍ଧ କରି ଗାଇ ଯାଉଥିଲେ । ସେଠାରେ କିପରି ରସର ପ୍ରବାହ ହେଉଥିବ ? ମହାରାଷ୍ଟ୍ରର ସନ୍ତମାନେ ବର୍ଣ୍ଣନ କରନ୍ତି, ଯେତେବେଳେ ପଣ୍ଡରପୁର ଭକ୍ତମାନେ କୀର୍ତ୍ତନ କରିବାକୁ ଲାଗୁଥିଲେ, **'ନାମଦେବ କୀର୍ତନ କରି ପୁଢେ ନାଚେ ପାଣ୍ଡୁରଙ୍ଗ ।'** ନାମଦେବ କୀର୍ତ୍ତନ କରୁଥିଲେ ତ ପାଣ୍ଡୁରଙ୍ଗ ଭଗବାନ ନିଜେ ସେଠାରେ ଆସି ନୃତ୍ୟ କରୁଥିଲେ । ଥରେ ନୃତ୍ୟ କରି କରି ସେ ଏପରି ନିମଗ୍ନ ହୋଇଗଲେ ଯେ "ଗଳଲା ପୀତାମ୍ବର' ତାଙ୍କର ପିତାମ୍ବର ଖସିଗଲା । କିନ୍ତୁ ଭଗବାନଙ୍କୁ ଜଣାଗଲା ନାହିଁ ।

ତାପରେ ସେମାନଙ୍କ ଉପରେ ପ୍ରସନ୍ନ ହୋଇ ଭଗବାନ କହିଲେ- "ମୁଁ ତୁମ ସମସ୍ତଙ୍କ ଉପରେ ବହୁତ ପ୍ରସନ୍ନ । ଯାହା ବର ଆବଶ୍ୟକ ତାହା ମାଗି ନିଅ ।" ଏବେ ଦେଖନ୍ତୁ ଭକ୍ତମାନେ କ'ଣ ମାଗିଲେ ?

**ନାଗାହଗାଥାସୁ ଚ ସର୍ବଭକ୍ତୈ**

**ରେଭିସ୍ତ୍ୱୟା ଭାବ୍ୟମିତି ପ୍ରୟତ୍ନାତ୍ ।**

**ମନୋରଥୋଽୟଂ ପରିପୂରଣୀୟ-**

**ସ୍ତଥେତି ଚୋକ୍ତ୍ୱାନ୍ତର ଧୀୟତାଚ୍ୟୁତଃ ॥ ଭା.ମା.୬.୮୯**

ଭଗବାନ ! ଯେକୌଣସି ସ୍ଥାନରେ ଯଦି ଭାଗବତ କଥା ହେବ, ଆପଣ ଏହିପରି ସେଠାକୁ ଆସି ସମସ୍ତଙ୍କୁ ପ୍ରସନ୍ନ କରାନ୍ତୁ । ଲୋକମାନଙ୍କର ମନୋରଥକୁ ପୂର୍ଣ୍ଣ କରନ୍ତୁ। ଆମ୍ଭେମାନେ ଏହି ବର ମାଗୁଅଛୁ । ଦେଖନ୍ତୁ, ଏମାନଙ୍କୁ ସନ୍ତୁ କୁହାଯାଏ । ତଥାସ୍ତୁ କହି ଭଗବାନ ଅନ୍ତର୍ଦ୍ଧାନ ହୋଇଗଲେ ।

ଏବେ ସେଠାରେ ସମସ୍ତେ ଦେଖିଲେ ଯେ, ନବଯୁବତୀ ରୂପୀ ଭକ୍ତିମାତାଙ୍କର ଦୁଇପୁତ୍ର ଜ୍ଞାନ, ବୈରାଗ୍ୟ ମଧ୍ୟ ନବଯୁବକ ହୋଇଗଲେ । ତେବେ ଚତୁର୍ଦ୍ଦିଗରେ ଆନନ୍ଦ ହିଁ ଆନନ୍ଦ ଖେଳିଗଲା। ପୁଣି ସମସ୍ତେ ଯଥାସ୍ଥାନକୁ ଲେଉଟି ଗଲେ । ଶ୍ରୀଶୁକଦେବ ଜୀ ଭକ୍ତି, ଜ୍ଞାନ ତଥା ବୈରାଗ୍ୟକୁ ଭାଗବତରେ ସ୍ଥାପନା କରିଦେଲେ । ଏହି କାରଣରୁ ଭାଗବତ ଶ୍ରବଣ କରୁଥିବା ବ୍ୟକ୍ତିମାନଙ୍କ ହୃଦୟରେ ଭଗବାନଙ୍କର ଆବିର୍ଭାବ ହୋଇଯାଏ। **"କ୍ଷେମାୟ ବୈ ଭାଗବତଂ ପ୍ରଗର୍ଜତି'** (ଭା.ମା.୬.୯୨) ସମସ୍ତଙ୍କର କ୍ଷେମ ନିମନ୍ତେ, କଲ୍ୟାଣ ନିମନ୍ତେ ଶ୍ରୀମଦ୍‌ଭାଗବତ ଗର୍ଜନ କରୁଥାଏ ।

ଏବେ ଶୌନକଜୀ ସୂତଜୀଙ୍କୁ ପ୍ରଶ୍ନ ପଚାରୁଛନ୍ତି- ଭାଗବତ କଥା ପ୍ରଥମେ କେବେ ହୋଇଥିଲା ? ସେ କହିଲେ- ଯେତେବେଳେ ଭଗବାନ ଶ୍ରୀକୃଷ୍ଣ ପୃଥିବୀଲୋକରୁ ଚାଲିଗଲେ, ତାହାର ୩୦ ବର୍ଷ ପରେ ସର୍ବ ପ୍ରଥମେ ଶୁକଦେବଜୀ ଏହି ଭାଗବତକୁ ପରୀକ୍ଷିତଙ୍କୁ ଶୁଣାଇଥିଲେ । ତାର ଦୁଇଶହ ବର୍ଷ ପରେ ଗୋକର୍ଣ୍ଣ ଏହି କଥା ଅନ୍ୟମାନଙ୍କୁ ଶୁଣାଇଥିଲେ। ଏହାପରେ ତିରିଶ ବର୍ଷ ବିତିଗଲା । ସେହି ସମୟରେ ସନତକୁମାରମାନେ ନାରଦ ଜୀଙ୍କୁ ନିମିତ୍ତ କରି ଏହି କଥା ସମସ୍ତଙ୍କୁ ଶୁଣାଇଲେ ।

ଆଗକୁ ଭାଗବତ ବିଷୟରେ ବଡ଼ ସୁନ୍ଦର ବର୍ଣ୍ଣନା କରାଯାଇଛି-

**ସ୍ୱପୁରୁଷମପି ବୀକ୍ଷ ପାଶହସ୍ତଂ**
**ବଦତି ଯମଃ କିଲ ତସ୍ୟ କର୍ଣ୍ଣମୂଲେ ।**
**ପରିହର ଭଗବତ୍‌କଥାସୁ ମତ୍ତାନ୍**
**ପ୍ରଭୁରହମନ୍ୟନୃଣାଂ ନ ବୈଷ୍ଣବାନାମ୍ ।। ଭା.ମା.୬.୯୯**

ଯମରାଜା ନିଜର ଦୂତଙ୍କୁ କହୁଛନ୍ତି- ଦେଖନ୍ତୁ, ଯେଉଁ ବୈଷ୍ଣବମାନେ ଭଗବାନଙ୍କର ଭକ୍ତ, ସେମାନଙ୍କ ପାଖକୁ ତୁମେ ଯିବ ନାହିଁ, ତାଙ୍କୁ ଛାଡ଼ି ଅନ୍ୟସବୁ ବ୍ୟକ୍ତି ସେମାନଙ୍କୁ ଧରି ମୋ ପାଖକୁ ନେଇ ଆସିବ । (ନର୍କର ବର୍ଣ୍ଣନ ଆଗକୁ ଆସିବ, ସେତେବେଳେ ବିସ୍ତାର ପୂର୍ବକ ଦେଖିବା) ଅର୍ଥାତ ଯେଉଁମାନେ ଭଗବାନଙ୍କ ଭକ୍ତ ଅଟନ୍ତି **"କ୍ରିୟତେ ତସ୍ୟ ଯମେନ ନ ଚର୍ଚ୍ଚା"** (ଭଜ ଗୋବିନ୍ଦମ୍-୨୦) ଯମରାଜା ସେମାନଙ୍କର ଚର୍ଚ୍ଚା କରନ୍ତି ନାହିଁ ।

**ଅସାରେ ସଂସାରେ ବିଷୟବିଷସଙ୍ଗାକୁଳଧିୟଃ**
**କ୍ଷଣାର୍ଦ୍ଧ କ୍ଷେମାର୍ଥ ପିବତ ଶୁକଗାଥାତୁଲସୁଧାମ୍ ।**
**କିମର୍ଥଂ ବ୍ୟର୍ଥଂ ଭୋ ବ୍ରଜତ କୁପଥେ କୁତ୍ସିତକଥେ**
**ପରୀକ୍ଷିତ୍‌ସାକ୍ଷୀ ଯଚ୍ଛ୍ରବଣଗତମୁକ୍ତ୍ୟୁକ୍ତିକଥନେ ।। ଭା.ମା.୬.୧୦୦**

କୁହାଯାଏ- ଏହି ସଂସାରରେ ଯଦି କୌଣସି ସାରବସ୍ତୁ ଥାଏ, ତେବେ ତାହା ଭଗବତ୍ କଥା ଅଟେ । ଆରେ ସଂସାରୀ ଲୋକମାନେ ତୁମ୍ଭେମାନେ କାହିଁକି ଏଣେ ତେଣେ ଦଉଡୁଛ ? ସମୟ ବ୍ୟର୍ଥରେ କଟାଉଛ ? ଟିକିଏ ଭାଗବତ କଥା ଶ୍ରବଣ କର। ଶ୍ରବଣ ମାତ୍ରେ ମୁକ୍ତି ମିଳିଯିବ । ଆପଣମାନେ କହିବେ, କିଛି ପ୍ରମାଣ ଅଛି ? ଭାଗବତ କଥା ଶ୍ରବଣ ମାତ୍ରେ ମୋକ୍ଷ ହୋଇଯାଏ, ଏଇ କଥାର କିଛି ପ୍ରମାଣ ଅଛି ? କୁହାଯାଏ- **"ପରୀକ୍ଷିତ୍‌ସାକ୍ଷୀ"** ରାଜା ପରୀକ୍ଷିତ ଏହାର ଜ୍ୱଳନ୍ତ ଉଦାହରଣ । ଭାଗବତ କଥା ଶୁଣିବା ମାତ୍ରେ ତାଙ୍କର ମୁକ୍ତି ହୋଇଗଲା। ଆଉ କ'ଣ ଆବଶ୍ୟକ ?

ଏହିପରି ଭାବରେ ଭାଗବତ ମାହାତ୍ମ୍ୟର ବର୍ଣ୍ଣନ ହୋଇଛି । ପୁଣି ଥରେ ସ୍ମରଣ କରିନେବା ଯେ, ଭାଗବତ କ'ଣ ? ଭାଗବତ ହେଉଛି ଭଗବାନଙ୍କର ସ୍ୱରୂପ, ଭଗବାନଙ୍କ

ପ୍ରାପ୍ତିର ସାଧନ ଏବଂ ଯେ ଭଗବାନଙ୍କୁ ପ୍ରାପ୍ତି କରି ନିଅନ୍ତି, ତାଙ୍କୁ ମଧ୍ୟ ଭାଗବତ କୁହାଯାଏ । ଏହିପରି ଭାବରେ ସାଧନ, ସାଧ୍ୟ ଓ ସାଧକ ତିନିଜଣଯାକ ଏକ ଅଟନ୍ତି । ଏଥିରେ କୌଣସି ଭେଦ ରହେ ନାହିଁ । ସେଥିପାଇଁ କୁହାଯାଇଛି ଯେ, ପୁରାଣ ବ୍ରହ୍ମସ୍ୱରୂପ ଅଟେ। ଏହା ଦ୍ୱାରା ସବୁ ପ୍ରକାର ପାପରୁ ମୁକ୍ତି ହୋଇପାରିବ । ଆରେ, ଆପଣ ଯେତେବେଳେ ଏହି ଭାଗବତ କଥା ଶୁଣିବେ, ଆପଣ ନିଜେ ତାହା ଉପଲବ୍ଧି କରିପାରିବେ। ଏଥିସହିତ 'ଭାଗବତ ମାହାତ୍ମ୍ୟ' ପ୍ରସଙ୍ଗର ଏଠାରେ ସମାପ୍ତି ହେଉଛି ।



# ପ୍ରଥମ ସ୍କନ୍ଧ

ବର୍ତ୍ତମାନ ଭାଗବତ ପୁରାଣ ଆରମ୍ଭ ହେଲା। ଶ୍ରୀମଦ୍‌ଭାଗବତରେ ଅଛି ବାରଟି ସ୍କନ୍ଧ। ପ୍ରତ୍ୟେକ ସ୍କନ୍ଧରେ ଅନେକ ଅଧ୍ୟାୟ। କେଉଁଥିରେ କମ ତ କେଉଁଥିରେ ବେଶୀ। ପ୍ରଥମ ସ୍କନ୍ଧର ନାମ **'ଅଧିକାରୀ ସ୍କନ୍ଧ'**। ଭାଗବତର ସର୍ବୋତ୍କୃଷ୍ଟ ଅଧିକାରୀ କିଏ ? ଏଥିରେ କୁହାଯାଇଛି ରାଜା ପରୀକ୍ଷିତ ହିଁ ସର୍ବୋତ୍କୃଷ୍ଟ ଅଧିକାରୀ। ଅର୍ଥାତ୍ ଯିଏ ତାଙ୍କ ପରି ହୋଇପାରିବ ସିଏ ହିଁ ସର୍ବଶ୍ରେଷ୍ଠ ଅଧିକାରୀ।

ଏହି ଭାଗବତ ପୁରାଣର ଆରମ୍ଭରେ ଅତି ସୁନ୍ଦର ଶ୍ଳୋକଟିଏ ଅଛି। ଯଦି କେବଳ ସେହି ଗୋଟିଏ ଶ୍ଳୋକକୁ ନେଇ ବେଦାନ୍ତ ଆଲୋଚନା କରାଯିବ ତେବେ ତା ପାଇଁ ସାତଦିନ ବି କମ୍ ହେବ। ସମ୍ପୂର୍ଣ୍ଣ ଗ୍ରନ୍ଥରେ ଏହି ଗୋଟିଏ ଶ୍ଳୋକର ବ୍ୟାଖ୍ୟା କରାଯାଇଛି। ତେଣୁ ତାର ଅଲଗା ବ୍ୟାଖ୍ୟା ନକରି, ଭଗବାନ୍‌ଙ୍କୁ ପ୍ରଣାମ କରି ପ୍ରଥମ ସ୍କନ୍ଧ ଆରମ୍ଭ କରିବା।

**ଜନ୍ମାଦ୍ୟସ୍ୟ ଯତୋଽନ୍ୱୟାଦିତରତଶ୍ଚାର୍ଥେଷ୍ୱଭିଜ୍ଞଃ ସ୍ୱରାଟ୍।**
**ତେନେ ବ୍ରହ୍ମହୃଦା ଯ ଆଦିକବୟେ ମୁହ୍ୟନ୍ତି ଯତ୍ସୂରୟଃ ॥**
**ତେଜୋବାରିମୃଦାଂ ଯଥା ବିନିମୟୋ ଯତ୍ର ତ୍ରିସର୍ଗୋଽମୃଷା।**
**ଧାମ୍ନା ସ୍ୱେନ ସଦା ନିରସ୍ତକୁହକଂ ସତ୍ୟଂ ପରଂ ଧୀମହି ॥ (୧.୧.୧)**

ଦେଖନ୍ତୁ ପ୍ରଥମ ଶ୍ଳୋକରେ ହିଁ କୁହାଯାଇଛି **"ସତ୍ୟଂ ପରଂ ଧୀମହି"**, ଶୁଣିବା ମାତ୍ରେ ଗାୟତ୍ରୀ ମନ୍ତ୍ର ମନେପଡ଼ିଯାଏ। ଗାୟତ୍ରୀ ମନ୍ତ୍ର ତ ସବୁ ବେଦମାନଙ୍କର ସାର। ତେଣୁ ଶ୍ରୀମଦ୍‌ଭାଗବତ ମଧ୍ୟ ବୈଦିକ ଅଟେ। ଏଥିରେ ବେଦଶାସ୍ତ୍ରର ସାରତତ୍ତ୍ୱ ଅର୍ଥାତ୍ ଗାୟତ୍ରୀର-ବେଦର ରହସ୍ୟ କୁହାଯାଇଛି। **'ଧୀମହି'**ମାନେ ଆମେ ଧ୍ୟାନ କରୁଛୁ। କାହାର ? ପରମ ସତ୍ୟର। **'କୃଷ୍ଣଂ ଧୀମହି'** ଏପରି କୁହାଯାଇ ନାହିଁ। କୌଣସି ଏକ ନାମ ବିଶେଷ ମଧ୍ୟ ନିଆଯାଇ ନାହିଁ। ଯିଏ ନିର୍ବିଶେଷ ପରମ ସତ୍ୟ, ସେହିଁ ଅନେକ ରୂପରେ ପ୍ରକଟ ହୁଅନ୍ତି। ଏଠାରେ ସେହି ଅଦ୍ୱିତୀୟ ସତ୍ୟକୁ ପ୍ରଣାମ କରାଯାଇଛି, ସ୍ମରଣ କରାଯାଇଛି । ଏଥିରେ ତିଳେମାତ୍ର ହଠଧର୍ମିତା ନାହିଁ।

ପରମସତ୍ୟ କଣ ? କୁହାଗଲା **'ଜନ୍ମାଦ୍ୟସ୍ୟ ଯତଃ'**। ଏହା ପଢ଼ିବା ମାତ୍ରେ **'ବ୍ରହ୍ମସୂତ୍ର'** ମନେପଡ଼ିଯାଏ। ବ୍ରହ୍ମସୂତ୍ର ର ଦ୍ୱିତୀୟ ସୂତ୍ର ହେଲା **'ଜନ୍ମାଦ୍ୟସ୍ୟ ଯତଃ'**। କୁହାଗଲା - ପ୍ରଥମେ ବ୍ରହ୍ମର ଜ୍ଞାନ ପ୍ରାପ୍ତ କର। ବ୍ରହ୍ମ କଣ ? ଯାହାଠାରୁ ସମ୍ପୂର୍ଣ୍ଣ ଜଗତର ଉତ୍ପତ୍ତି ହୁଏ, ସ୍ଥିତି ହୁଏ, ଏବଂ ଯେଉଁଠି ଜଗତର ଲୟ ହୁଏ ସେହିଁ ବ୍ରହ୍ମ। ଆମେ ସେହି ପରମ ସତ୍ୟକୁ ଧ୍ୟାନ କରୁଛୁ। **'ଅର୍ଥେଷ୍ୱଭିଜ୍ଞଃ ସ୍ୱରାଟ୍'** - ଅଭିଜ୍ଞର ଅର୍ଥ ହେଲା ଚୈତନ୍ୟ ସ୍ୱରୂପ। ତେବେ ସେହି ହିଁ ସତ୍ୟ ଚୈତନ୍ୟ ସ୍ୱରୂପ ଏବଂ ସେହି ଏହି ଜଗତର କାରଣ। ଯିଏ ଜଗତର କାରଣ ସେ ଅସତ୍ ତ କେବେ ହୋଇପରିବ ନାହିଁ। ସେ ସତ୍ତା ସ୍ୱରୂପ ହିଁ ହୋଇଥିବ। **'ଅଭିଜ୍ଞ'** ର ଅର୍ଥ ସେ ଚୈତନ୍ୟ ସ୍ୱରୂପ ଏବଂ **'ସ୍ୱରାଟ'** ଶବ୍ଦ ଦ୍ୱାରା ଦର୍ଶାଗଲା ଯେ ସେ ସ୍ୱୟଂ ଚୈତନ୍ୟ ସ୍ୱରୂପ। ଅନ୍ୟ କୌଣସି କାରଣରୁ ଚେତନ ହୋଇନାହିଁ। **'ଅନ୍ୱୟାତ୍'** ସମ୍ପୂର୍ଣ୍ଣ ଜଗତରେ ତାର ସତ୍ତା ବ୍ୟାପ୍ତ କିନ୍ତୁ ତା ଭିତରେ ଜଗତ ନାହିଁ। ଜଗତ ର ସମସ୍ତ ବିଶେଷତା ଠାରୁ ସେ ଭିନ୍ନ। **'ତେନେ ବ୍ରହ୍ମହୃଦା ଯ ଆଦିକବୟେ ମୁହ୍ୟନ୍ତି ଯତ୍ସ୍ୱରୂୟଃ'**, ରେ ଆଦି କବିର ଅର୍ଥ ବ୍ରହ୍ମ, ସେହି ବ୍ରହ୍ମ ଯିଏ ବ୍ରହ୍ମାଙ୍କ ହୃଦୟରେ ସର୍ବ ପ୍ରଥମେ ସଂକଳ୍ପ ମାତ୍ରକେ ବେଦ ଗୁଡ଼ିକୁ ପ୍ରକଟ କରିଦେଲେ। ଏହା ଏପରି ଏକ ସତ୍ୟ ଯାହାର ସତ୍ୟତା ଯୋଗୁଁ ଏହି ସମ୍ପୂର୍ଣ୍ଣ ଜଗତ ଅସତ୍ୟ ହେଲେ ମଧ୍ୟ ସତ୍ୟ ପରି ଦେଖାଯାଏ। କିପରି ?

**'ତେଜୋବାରିମୃଦାଂ ଯଥା ବିନିମୟୋ ଯତ୍ର ତ୍ରିସର୍ଗୋଽମୃଷା'**

ଯେପରି ମୃଗତୃଷ୍ଣା ଯୋଗୁଁ ମରୁଭୂମିରେ ପାଣି ଦେଖାଯାଏ। ବାଲି ଉପରେ ସୂର୍ଯ୍ୟକିରଣ ଚମକେ, କିନ୍ତୁ ସେହି କିରଣରୁ ଆଭାସ ହୁଏ ଜଳର। ପ୍ରକୃତରେ ସେଠି କ'ଣ ଥାଏ ? କେବଳ ବାଲି ଆଉ ତାଉପରେ ଚମକୁଛି ସୂର୍ଯ୍ୟ କିରଣ। କିନ୍ତୁ ସେଠି ଯେଉଁ ଜଳ ଦିଶୁଛି ତାହା କେବଳ ଭ୍ରାନ୍ତି। କେବେ କେବେ କାଚ ଚମକୁଥିଲେ ମଧ୍ୟ ଜଳର ଭ୍ରମ ହୁଏ। ସେଇଥିପାଇଁ ସେହି ମାୟା ମହଲରେ ଦୁର୍ଯ୍ୟୋଧନ ମଧ୍ୟ ପଡ଼ିଯାଇଥିଲା। ଯେଉଁଠି କାଚ ଥିଲା ସେହି ସ୍ଥାନରେ ତାକୁ ପାଣି ପରି ଲାଗିଲା । ତେଣୁ ଧୋତି ଟେକି-ଟେକି ଯାଉଥିଲା କିନ୍ତୁ ସେଠିତ ପାଣି ନଥିଲା। ଯେଉଁଠି ଭାବିଲା ଯେ କାଚ ଅଛି ସେ ସିଧା ଚାଲିବାକୁ ଲାଗିବାରୁ ପାଣିରେ ପଡ଼ିଗଲା। ଆଉ ସେଇଠୁ ଆରମ୍ଭ ହେଲା ମହାଭାରତ।

ବାଲିରେ ଚମକୁଥିବା କିରଣ ରେ ପାଣି ନଥାଏ, ଥାଏ କେବଳ ପାଣି ର ଆଭାସ ମାତ୍ର। କିନ୍ତୁ ଆମକୁ ତ ଏହି ସୃଷ୍ଟି ସତ୍ୟ ପରି ଲାଗୁଛି। ପ୍ରକୃତରେ ପରମାତ୍ମାଙ୍କ ସତ୍ତା ଯୋଗୁଁ ହିଁ ଏହା ସତ୍ୟ ପରି ଦେଖାଯାଉଛି। କୁହାଯାଏ- ଆମେ ସେହି ପରମାତ୍ମାଙ୍କୁ ଧ୍ୟାନ କରୁଛୁ।

ଏହାର ଅର୍ଥ କ'ଣ ? ଆମେ ସେହି ପରମ ସତ୍ୟର ଧ୍ୟାନ କରୁଛୁ ଯିଏ ସମ୍ପୂର୍ଣ୍ଣ ସୃଷ୍ଟିର କାରଣ, ସ୍ୱୟଂ ଚୈତନ୍ୟ ସ୍ୱରୂପ, ଅନନ୍ତ ସ୍ୱରୂପ, ଯେଉଁଠି ଜଗତର କେବଳ ଆଭାସ ହେଲେ ମଧ୍ୟ ତାହା ସତ୍ୟ ପରି ପ୍ରତୀତ ହୁଏ। **'ମୁହ୍ୟନ୍ତି ଯତ୍ସୂରୟଃ'** ଯାହା ବିଷୟରେ ବଡ଼ ବଡ଼ କବି ମାନେ ମଧ୍ୟ ମୋହିତ ହୋଇ ଯାଆନ୍ତି। **'ଧାମ୍ନା ସ୍ୱେନ ସଦା ନିରସ୍ତ କୁହକଂ'** ଯିଏ ନିଜସ୍ୱରୂପରେ ଏପରି ଭାବରେ ସ୍ଥିତ ଯେ ସେଠାରେ ମାୟାର ଆଭାସ ମଧ୍ୟ ହୁଏ ନାହିଁ, ଯିଏ ମାୟାଠାରୁ ସମ୍ପୂର୍ଣ୍ଣ ମୁକ୍ତ, ସେହି ପରମାତ୍ମାଙ୍କୁ ଆମେ ଧ୍ୟାନ କରୁଛୁ।

**ଧର୍ମଃ ପ୍ରୋଜ୍‌ଝିତକୈତବୋଽତ୍ର ପରମୋ ନିର୍ମତ୍ସରାଣାଂ ସତାଂ।**
**ବେଦ୍ୟଂ ବାସ୍ତବମତ୍ର ବସ୍ତୁ ଶିବଦଂ ତାପତ୍ରୟୋନ୍ମୂଲନମ୍॥**
**ଶ୍ରୀମଦ୍‌ଭାଗବତେ ମହାମୁନିକୃତେ କିଂ ବା ପରୈରୀଶ୍ୱରଃ।**
**ସଦ୍ୟୋ ହୃଦ୍ୟବରୁଧ୍ୟତେଽତ୍ର କୃତିଭିଃ ଶୁଶ୍ରୂଷୁଭିସ୍ତତ୍କ୍ଷଣାତ୍॥ (୧.୧.୨)**

ଭାଗବତରେ କର୍ମକାଣ୍ଡ, ଉପାସନା କାଣ୍ଡ, ଜ୍ଞାନକାଣ୍ଡ ସବୁ ର ବିଶେଷତ୍ୱ ଦର୍ଶାଯାଇଛି। ଏଥିରେ ଧର୍ମକଥା ମଧ୍ୟ କୁହାଯାଇଛି- **'ଧର୍ମଃ ପ୍ରୋଜ୍‌ଝିତକୈତବୋଽତ୍ର ପରମଃ'**- ତାର ବିଶେଷତ୍ୱ ଏହି କି ଯେ ସେଥିରେ ତିଳେମାତ୍ର ଛଳ-କପଟ ନଥାଏ, (ଏହାର ଅର୍ଥ ଭାଗବତ ରେ ଆଗକୁ ଅଛି) ତାହା ହିଁ ପରମ ଧର୍ମ। ଏହା କେଉଁ ମାନଙ୍କ ପାଇଁ କୁହାଯାଇଛି ? **'ନିର୍ମତ୍ସରାଣାଂ ସତାଂ'** - ସାମାନ୍ୟ ଲୋକ ମାନଙ୍କ ପାଇଁ ନୁହଁ, ଏପରି ସତ୍ ପୁରୁଷ - ଯେଉଁ ମାନଙ୍କ ମନରୁ ମତ୍ସରାଦି ସମସ୍ତ ବିକାର ନଷ୍ଟ ହୋଇ ଯାଇଛି, ଯିଏ ଅତ୍ୟନ୍ତ ଶୁଦ୍ଧ ଅନ୍ତକରଣ ଯୁକ୍ତ ସେହି ମାନଙ୍କ ପାଇଁ। ଏହା ଦ୍ୱାରା ଅନୁଭବ ହେଉଛି ଯେ ଏହା ତ ସ୍ୱୟଂ ଧର୍ମ ର ପରିଭାଷା। ତେଣୁ ଏହି ଶ୍ଳୋକ ଉପରେ ବଡ଼ ବଡ଼ ଭାଷ୍ୟ ଲେଖା ଯାଇଛି।

**'ବେଦ୍ୟଂ ବାସ୍ତବମତ୍ର ବସ୍ତୁ ଶିବଦଂ'**- ଏଠାରେ ଏପରି ପରମବସ୍ତୁର ନିରୂପଣ କରାଯାଇଛି ଯିଏ **'ଶିବଦଂ'** ବା କଲ୍ୟାଣପ୍ରଦ ଏବଂ **'ତାପତ୍ରୟୋନ୍ମୂଲନମ୍'** ଅର୍ଥାତ୍ ତାପତ୍ରୟର ମୂଳୋତ୍ପାଟକ। ଏହି **'ବାସ୍ତବଂ'** ଶବ୍ଦର ଭାବ ଅତ୍ୟନ୍ତ ଶ୍ରେଷ୍ଠ। ଜୀବ, ଜଗତ, ମାୟା, ଈଶ୍ୱର ଆଦି ସମସ୍ତେ ଯିଏ ଆମକୁ ଅଲଗା ଅଲଗା ଦେଖାଯାଉଛନ୍ତି ପ୍ରକୃତରେ ସେହି ସବୁ ଏକ ପରମାତ୍ମ ବସ୍ତୁ ଅଟେ। ଏଠାରେ ସେହି ପରମବସ୍ତୁର ବର୍ଣ୍ଣନା କରାଯାଇଛି ଯିଏ ଆମକୁ ଜୀବ, ଜଗତ, ଏବଂ ଈଶ୍ୱର ରୂପରେ ଦେଖା ଯାଆନ୍ତି।

**'ଶ୍ରୀମଦ୍ଭାଗବତ ମହାମୁନିକୃତେ'** ଅର୍ଥାତ୍ ଏହି ଭାଗବତ ମହାମୁନି କୃତ - ମହାମୁନିଙ୍କ ଦ୍ୱାରା ରଚିତ। କୁହାଯାଏ ଯେ ମହାମୁନି ର ଅର୍ଥ ଶ୍ରୀ ବ୍ୟାସଦେବ, କିନ୍ତୁ ମନେ ରଖଯେ ମହାମୁନି ତ ସ୍ୱୟଂ ଭଗବାନ ନାରାୟଣ। କାରଣ ଭଗବାନ ନାରାୟଣଙ୍କ ଠାରୁ ହିଁ ଜ୍ଞାନର ଏହି ପରମ୍ପରା ଆରମ୍ଭ।

**କୃଷ୍ଣଂ ନାରାୟଣଂ ବନ୍ଦେ କୃଷ୍ଣଂ ବନ୍ଦେ ବ୍ରଜପ୍ରିୟମ୍ ।**
**କୃଷ୍ଣଂ ଦ୍ୱୈପାୟନଂ ବନ୍ଦେ କୃଷ୍ଣଂ ବନ୍ଦେ ପୃଥାସୁତମ୍ ।।(୧.୧.୩)**

କୃଷ୍ଣ ହିଁ ଭଗବାନ ନାରାୟଣ। କୃଷ୍ଣ ହିଁ ବ୍ରଜପ୍ରିୟ, କୃଷ୍ଣ ହିଁ ଦ୍ୱୈପାୟନ ବ୍ୟାସଦେବ ଏବଂ କୃଷ୍ଣ ହିଁ ଅର୍ଜୁନ। ସମସ୍ତେ କୃଷ୍ଣ ହିଁ ଅଟନ୍ତି।

କୁହାଯାଏ ଯେ ପରମାତ୍ମାଙ୍କୁ ହୃଦୟରେ ଧରି ରଖିବା ପାଇଁ ଜଗତରେ ଅନେକ ଉପାୟ ଅଛି। କିନ୍ତୁ ଅନ୍ୟ ସାଧନ ଗୁଡ଼ିକ ଦ୍ୱାରା ପରମାତ୍ମା ଧରା ପଡ଼ିବେ କି ନାହିଁ ଏଥିରେ ସଂଦେହ ଅଛି। କିନ୍ତୁ ଭାଗବତର ବିଶେଷତ୍ୱ ହେଲା **'ସଦ୍ୟୋ ହୃଦ୍ୟବରୁଧ୍ୟତେଽତ୍ର କୃତିଭିଃ ସୁଶ୍ରୁଷୁଭିଃ'**, ଶ୍ରବଣ ମାତ୍ରକେ ଭଗବାନ ସ୍ୱୟଂ ହୃଦୟରେ ପ୍ରକଟ ହୋଇ ଯାଆନ୍ତି, **'ତତ୍କ୍ଷଣାତ୍'** ସେହି କ୍ଷଣରେ ପ୍ରକଟ ହୋଇ ଯାଅନ୍ତି ଡେରି ହୁଏନାହିଁ। ଦେଖ ଏଠି **'ଅତ୍ର'** ଶବ୍ଦର ବ୍ୟବହାର କେତେଥର ହୋଇଛି। **'ଧର୍ମଃ ପ୍ରୋଜ୍ଝିତ ଅତ୍ର', 'ବେଦ୍ୟଂ ବାସ୍ତବଂ ଅତ୍ର', ସଦ୍ୟୋ ହୃଦ୍ୟବରୁଧ୍ୟତେ ଅତ୍ର'**। ତେବେ ଏହାର ଅର୍ଥ କ'ଣ ? **'ଅତ୍ରୈବ'** କେବଳ ଏହିଠାରେ ପରମଧର୍ମର ନିରୂପଣ କରାଯାଇଛି। ଏଠାରେ ସେହି ପରମବସ୍ତୁର ଯେପରି ବୋଧ କରେଇଦିଆ ଯାଇଛି, ସେପରି ଆଉ କେଉଁଠି ହେଲେ କରାଯାଇ ନାହିଁ। ଏଠାରେ ହିଁ ସେହି ସାଧନ ବିଷୟରେ କୁହାଯାଇଛି, ଯାହାର ଶ୍ରବଣ ମାତ୍ରକେ ନିଶ୍ଚିତ ରୂପେ ସେ ହୃଦୟରେ ଧରା ପଡ଼ି ଯାଆନ୍ତି। ପ୍ରକଟ ହୋଇ ଯାଆନ୍ତି। ବନ୍ଦନାର ଏହି ଦୁଇଟି ଶ୍ଳୋକ-ଏହିପରି

**ନୈମିଷେଽନିମିଷକ୍ଷେତ୍ରେ ଋଷୟଃ ଶୌନକାଦୟଃ।**
**ସତ୍ରଂ ସ୍ୱର୍ଗାୟ ଲୋକାୟ ସହସ୍ରସମମାସତଃ ।। (୧.୧.୪)**

ଥରେ ଶୌନକାଦି ଋଷି ମାନେ ନୈମିଷାରଣ୍ୟରେ ଏକ ବିରାଟ ସଭା କଲେ। ନୈମିଷାରଣ୍ୟ କୁ ହିଁ ଅନିମିଷ କ୍ଷେତ୍ର କୁହାଯାଏ। ଅନିମିଷ କିଏ ? ସେ ତ ସ୍ୱୟଂ ଭଗବାନ। ନିମିଷର ଅର୍ଥ ଜଣା ଅଛି ତ ? ନିମିଷର ଅର୍ଥ ପଲକ ପଡ଼ିବା, ଆଖି ଖୋଲିବା ବା ବନ୍ଦ ହେବା। କିନ୍ତୁ ଯିଏ କେବେହେଲେ ମଧ୍ୟ ନିଦ୍ରା -ତନ୍ଦ୍ରାରେ ଯାଆନ୍ତି ନାହିଁ, ତାଙ୍କୁ

ଅନିମିଷ କୁହାଯାଏ । ତେଣୁ ଏହି ନୈମିଷାରଣ୍ୟ, ଭଗବାନଙ୍କର ହିଁ କ୍ଷେତ୍ର । ଶୌନାକାଦି ଋଷି ସେଠାରେ ଯଜ୍ଞ କଲେ । ପ୍ରଥମେ ଆମେ ଯେଉଁ କ୍ଷେତ୍ର ମାହାତ୍ମ୍ୟ ଦେଖିଲେ ତାହା ପଦ୍ମ ପୁରାଣର । ଏବେ ଆମେ ଭାଗବତ ପୁରାଣ ଦେଖୁଛେ । ଯଜ୍ଞର ଅନ୍ତରାଳ ସମୟରେ ସେମାନେ ସୂତମୁନିଙ୍କୁ ପ୍ରଶ୍ନ ପଚାରିଲେ । ସେହି ପ୍ରଶ୍ନ ଗୁଡ଼ିକର ମୁଖ୍ୟ ସାର ହେଲା ଯେ, ବିଶେଷ ଭାବେ କଳିଯୁଗରେ ଜୀବମାନେ ଯେଉଁ ଅତ୍ୟଧିକ ଦୁଃଖ ପାଇଥାନ୍ତି ସେଗୁଡ଼ିକରୁ ଉଦ୍ଧାର ର ମାର୍ଗ କ'ଣ ହୋଇପାରେ ? ସଂକ୍ଷେପରେ ଏହା ହିଁ ଶୌନାକାଦି ମୁନିଙ୍କର ପ୍ରଶ୍ନ । ଏଠାରେ ଏହି ପ୍ରଥମ ଅଧ୍ୟାୟ ରେ ସେମାନେ ଛଅଟି ପ୍ରଶ୍ନ ପଚାରୁଛନ୍ତି ।

**ଶୌନକ ଆଦି ଋଷି ମାନଙ୍କର ପ୍ରଶ୍ନ-**

ପ୍ରଥମ ପ୍ରଶ୍ନ: **'ପୁଂସାଂ ଏକାନ୍ତତଃ ଶ୍ରେୟଃ କିଂ ଅସ୍ତି ?'** ଅର୍ଥାତ୍ ମନୁଷ୍ୟର ପରମ କଲ୍ୟାଣ ର ମାର୍ଗ କେଉଁଟି ?

ଗୋଟିଏ ପ୍ରେୟ ମାର୍ଗ ଏବଂ ଅନ୍ୟଟି ଶ୍ରେୟ ମାର୍ଗ, ଯାହା ଆମକୁ ପ୍ରିୟ ଲାଗେ, ଭଲ ଲାଗେ, ସେ ଗୋଟିଏ ମାର୍ଗ - ପ୍ରେୟ ମାର୍ଗ । କିନ୍ତୁ ଯାହା ଆମକୁ ଭଲ ଲାଗୁଛି ତାହା ଆମ ପାଇଁ କଲ୍ୟାଣକାରୀ ହୋଇଥିବ, ଏହା ଜରୁରୀ ତ ନୁହେଁ । ଅର୍ଥାତ୍ ଗୋଟିଏ ହେଲା ପ୍ରିୟ ଏବଂ ଅନ୍ୟଟି ହେଲା ହିତକାରୀ । କଲ୍ୟାଣ ବା ହିତ ମଧ୍ୟ ଦୁଇପ୍ରକାରର । ଗୋଟିଏ ହେଲା ସାମାନ୍ୟ ଏବଂ ଅନ୍ୟଟି ହେଲା ପରମ । କୌଣସି କୌଣସି ହିତ ଏପରି ଯାହା ସମୟ ବିଶେଷ ପାଇଁ କଲ୍ୟାଣପ୍ରଦ । କିନ୍ତୁ ଯାହା ସବୁକାଳରେ , ସବୁ ଦେଶରେ, ସମସ୍ତଙ୍କ ପାଇଁ ହିତକର ହୋଇଥାଏ ତାକୁ ପରମ କଲ୍ୟାଣ କୁହାଯାଏ । ତେଣୁ ପ୍ରଶ୍ନ ଉଠେ ଯେ ସବୁ ଲୋକ ମାନଙ୍କ ପରମ କଲ୍ୟାଣପ୍ରଦ ଏବଂ ପରମ ହିତକର କଥା କ'ଣ ହୋଇପାରେ ?

ଦ୍ୱିତୀୟ ପ୍ରଶ୍ନ : ଭଗବାନଙ୍କର ଅନେକ ଅବତାର ବୋଲି କୁହାଯାଏ । ଏହି ଅବତାର ମାନଙ୍କର ପ୍ରୟୋଜନ କଣ ? କାରଣ କଣ ? ନିମିତ୍ତ କ'ଣ ? କେଉଁ କାରଣରୁ ଭଗବାନ ଏତେ ଅବତାର ନିଅନ୍ତି ?

ତୃତୀୟ ପ୍ରଶ୍ନ: ଭଗବାନ ଅବତାର ନେବା ସମୟରେ କେଉଁ କେଉଁ କର୍ମ କରନ୍ତି ?

ଚତୁର୍ଥ ପ୍ରଶ୍ନ :- ଅବତାର ମାନଙ୍କର କଥା କ'ଣ କ'ଣ ?

ପଞ୍ଚମ ପ୍ରଶ୍ନ : ସୂତମୁନିଙ୍କୁ ତାଙ୍କର ବିନମ୍ର ନିବେଦନ ଯେ ସେମାନେ ବିଶେଷ ଭାବରେ ଭଗବାନ ଶ୍ରୀକୃଷ୍ଣଙ୍କର ଚରିତ୍ର ଶୁଣିବା ପାଇଁ ଆଗ୍ରହୀ ।

ଅନ୍ତିମ ପ୍ରଶ୍ନ : ଯେତେବେଳେ ଭଗବାନ ଶ୍ରୀକୃଷ୍ଣ ନିଜର ଲୀଳା ସଂବରଣ କରି ଏହି ଧରାଧାମରୁ ବିଦାୟ ନେଲେ ସେତେବେଳେ ଏହି ଧର୍ମ କାହାର ଶରଣରେ ରହିଲା। କାରଣ ଭଗବାନ ତ ଧର୍ମ ସଂସ୍ଥାପନା ଲାଗିହିଁ ଏଠାକୁ ଆସିଥିଲେ।

**ବ୍ରୂହୀ ଯୋଗେଶ୍ୱରେ କୃଷ୍ଣ ବ୍ରହ୍ମଣ୍ୟେ ଧର୍ମବର୍ମଣି।**

**ସ୍ୱାଂ କାଷ୍ଠାମଧୁନୋପେତେ ଧର୍ମଃ କଂ ଶରଣଂ ଗତଃ॥ (୧.୧.୨୩)**

ଇଏତ ଗଲା ଛଅଟି ପ୍ରଶ୍ନ। ଯାକୁ ମଧ୍ୟ ସଂକ୍ଷିପ୍ତ କରିପାରିବା। ସମସ୍ତ ଜଗତଙ୍କର ପରମକଲ୍ୟାଣ କେଉଁଠି ଅଛି - ଏହା କ'ଣ ଅଟେ? ଦ୍ୱିତୀୟ, ତୃତୀୟ ଏବଂ ଚତୁର୍ଥ ପ୍ରଶ୍ନ ଅବତାର ମାନଙ୍କ ସହ ସମ୍ବନ୍ଧିତ- ସେମାନଙ୍କ ପ୍ରୟୋଜନ, ତାଙ୍କ କାର୍ଯ୍ୟ ଏବଂ ତାଙ୍କ କଥା ପଞ୍ଚମ ପ୍ରଶ୍ନ ଭଗବାନ ଶ୍ରୀକୃଷ୍ଣଙ୍କ ଚରିତ୍ର ସହ ସମ୍ବନ୍ଧିତ। ଶେଷ ପ୍ରଶ୍ନ ଏହି ଧର୍ମ କାହାର ଶରଣରେ ରହିଲା? ଏଗୁଡ଼ିକର ଉତ୍ତର ଏଠାରେ ବିସ୍ତୃତ ଭାବେ ଦିଆଯାଇଛି। ଏବେ କେହି ଯେମିତି ନ ଭାବନ୍ତୁ ଯେ ଶୌନାକାଦି ଋଷିମାନଙ୍କୁ କିଛି ହେଲେ ଜଣା ନଥିଲା କିମ୍ବା ସେମାନେ କେବେହେଲେ ଅବତାର ମାନଙ୍କ କଥା ଶୁଣିହିଁ ନଥିଲେ। ଋଷିମାନେ ଅଜ୍ଞାନ ନଥିଲେ, ବରଂ ସେମାନେ ବାରମ୍ବାର ଅବତାର ମାନଙ୍କ କଥା ଶୁଣିବାକୁ ଚାହୁଁଥିଲେ।

**ବୟଂ ତୁ ନ ବିତୃପ୍ୟାମ ଉତ୍ତମଶ୍ଳୋକବିକ୍ରମେ।**

**ୟଚ୍ଛୃଣ୍ୱତାଂ ରସଜ୍ଞାନାଂ ସ୍ୱାଦୁ ସ୍ୱାଦୁ ପଦେ ପଦେ॥ (୧.୧.୧୯)**

ପ୍ରକୃତରେ ଭଗବାନଙ୍କର ଯଶ ଓ ତାଙ୍କର ଚରିତ୍ର ଏପରି ଯେ ତାକୁ ଯେତେଥର ଶୁଣିଲେ ମଧ୍ୟ ତୃପ୍ତି ହୁଏ ନାହିଁ। ଥରେ ଭାବିଲେ ଦେଖି ଆମେ କ'ଣ ରାମାୟଣ ର କାହାଣୀ ଜାଣିନେ। ତଥାପି ରାମକଥା କୁ ବାରମ୍ବାର ବାରମ୍ବାର ଶୁଣୁ, ତାଙ୍କର ଲୀଳା କୁ ଦେଖୁ ବା ପଢୁ, ନାଟକ ରୂପରେ, ଦୂରଦର୍ଶନରେ ବା ସିନେମାରେ ଦେଖୁ, କିନ୍ତୁ କେବେ ତ ତାହା କାହାକୁ ଅପ୍ରିୟ ଲାଗେନି। ତାର ଲୋକପ୍ରିୟତା ଯେମିତି -ସେମିତି ଅଛି। ଅନ୍ୟ ଲୋକମାନଙ୍କୁ ଆଶ୍ଚର୍ଯ୍ୟ ଲାଗେ, ତାର୍କିକ ଏବଂ ନାସ୍ତିକ ଲୋକଙ୍କୁ ମଧ୍ୟ ବହୁତ ଆଶ୍ଚର୍ଯ୍ୟ ଲାଗେ ଯେ ରାମୟଣ ରେ ଏମିତି କ'ଣ ଅଛି? ଏଥିରେ ଲୋକଙ୍କର ଏତେ ପ୍ରିୟତା କାହିଁକି?

ଭଗବାନଙ୍କ କଥା ଏପରି ଯେ ଏଥିରେ ପ୍ରତ୍ୟେକ ପଦରେ, ପ୍ରତ୍ୟେକ ଶ୍ଳୋକରେ ଅତ୍ୟନ୍ତ ରସ ଅଛି। **'ରସଜ୍ଞାନାଂ ସ୍ୱାଦୁ ସ୍ୱାଦୁ ପଦେ ପଦେ'**। ତାର ସ୍ୱାଦ, ରସ

କେବେ ବି କମ ହୁଏ ନାହିଁ। ଯେତେ ଶୁଣିଲେ ମଧ୍ୟ ଆହୁରି ଶୁଣିବାକୁ ଇଚ୍ଛା ହେଉଥାଏ। ଏହା ହିଁ ତାର ବିଶେଷତ୍ୱ।

ସୂତମୁନି ଏପରି ପ୍ରଶ୍ନ ଶୁଣି ଅତ୍ୟନ୍ତ ପ୍ରସନ୍ନ ହେଲେ। ଭାଗବତରେ ବାରମ୍ବାର ଦେଖଯାଏ ଯେ ଯେତେ ପ୍ରଶ୍ନ ପଚରାଗଲେ ମଧ୍ୟ ବକ୍ତା କେବେ ବି ରାଗି ଯାଆନ୍ତି ନାହିଁ। ଏଠି ଯଦି ପ୍ରଶ୍ନ ସଂଗ୍ରହ କରାଯାଏ ତେବେ ଗୋଟିଏ ଛୋଟ ପୁସ୍ତିକା ହେବ। ବିଦୁର ମଧ୍ୟ ପ୍ରଶ୍ନ ପଚାରିଛନ୍ତି। ରାଜା ପରୀକ୍ଷିତ ମଧ୍ୟ ପ୍ରଶ୍ନ ପଚାରିଛନ୍ତି। କିନ୍ତୁ ପ୍ରତ୍ୟେକ ଥର ଦେଖାଯାଏ ଯେ ବକ୍ତା ଆରମ୍ଭରୁ ହିଁ କୁହନ୍ତି - ତୁମେ ବହୁତ ଭଲପ୍ରଶ୍ନ ପଚାରିଲ। ତାପରେ ପ୍ରସନ୍ନ ଏବଂ ଆନନ୍ଦିତ ହୋଇ ଉତ୍ତର ଦିଅନ୍ତି। ଏହା ହିଁ ଭାଗବତର ବିଶେଷତ୍ୱ। ଏଠାରେ ଉଲ୍ଲେଖ କରାଯାଇଛି -

**ଇତି ସମ୍ପ୍ରଶ୍ନସଂହୃଷ୍ଟୋ ବିପ୍ରାଣାଂ ରୌମହର୍ଷଣିଃ।**

**ପ୍ରତିପୂଜ୍ୟ ବଚସ୍ତେଷାଂ ପ୍ରବକ୍ତୁମୁପଚକ୍ରମେ ॥ (୧.୨.୧)**

ସୂତମୁନି ଉତ୍ତର ଦେବା ଆରମ୍ଭ କରିବା ପୂର୍ବରୁ, ସର୍ବପ୍ରଥମେ ଶୁକଦେବଙ୍କୁ ପ୍ରଣାମ କଲେ।

**'ସର୍ବଭୂତହୃଦୟଂ ମୁନିମାନତୋଽସ୍ମି'।** ଏହି ଶ୍ଳୋକକୁ ଆମେ ପୂର୍ବରୁ ପଢ଼ି ସାରିଛେ। ପରବର୍ତ୍ତୀ ଶ୍ଳୋକମଧ୍ୟ ଅତ୍ୟନ୍ତ ସୁନ୍ଦର ଅଟେ।

**ଯଃ ସ୍ୱାନୁଭାବମଖିଲଶ୍ରୁତିସାରମେକ**

**ମଧ୍ୟାତ୍ମଦୀପମତିତିତୀର୍ଷତାଂ ତମୋଽନ୍ଧମ୍**

**ସଂସାରିଣାଂ କରୁଣୟାଽଽହ ପୁରାଣଗୁହ୍ୟଂ**

**ତଂ ବ୍ୟାସସୂନୁମୁପୟାମି ଗୁରୁଂ ମୁନୀନାମ୍॥ (୧.୨.୩)**

ସୂତ ମୁନି ବ୍ୟାସ ପୁତ୍ର ଶୁକଦେବଙ୍କ ଶରଣ ପଶି, ତାଙ୍କୁ ପ୍ରଣାମ କରୁଛନ୍ତି। କାରଣ ଯିଏ ନିଜର ଅନୁଭବର ପ୍ରଭାବରେ ସମସ୍ତ ଶ୍ରୁତି ଗୁଡ଼ିକର ସାର ରୂପୀ ଏହି ଆଧାତ୍ମ ଦୀପକୁ ପ୍ରଜ୍ୱଳିତ କରି ଅଜ୍ଞାନ ରୂପୀ ଅନ୍ଧକାର ରୁ ଉର୍ଦ୍ଧ୍ୱକୁ ଯିବା ପାଇଁ ସବୁ ଲୋକଙ୍କ ମାର୍ଗ ପ୍ରକାଶିତ କରିଛନ୍ତି, କେବଳ ତାଙ୍କ ଆଶୀର୍ବାଦ ଦ୍ୱାରା ହିଁ ଏହି କଥା ସମ୍ପନ୍ନ ହୋଇପାରିବ । ଶୁକଦେବ ଏପରି କାହିଁକି କଲେ? କୁହାଗଲା **'କରୁଣୟା'** କରୁଣା ଯୋଗୁଁ। ଦେଖନ୍ତୁ ଭାଗବତରେ ଯେତେଜଣ ବକ୍ତା ହୋଇଛନ୍ତି, ଯିଏ ଭାଗବତ

କଥା କହିଛନ୍ତି, ତାର ଏକମାତ୍ର କାରଣ ଥିଲା ଯେ ସେମାନଙ୍କ ହୃଦୟରେ ସମସ୍ତଙ୍କ ପାଇଁ କରୁଣା ଥିଲା।

କିନ୍ତୁ କରୁଣା ର ଅର୍ଥ କ'ଣ ? ଏହାକୁ ସାମାନ୍ୟ ଦୟା ବୋଲି ଆଦୌ ଭାବିବେ ନାହିଁ। ଯେପରି ଭିକାରୀ ଟି ଭିକ ମାଗୁଥିଲା। ମୁଁ ତାକୁ ଗୋଟିଏ ରୁଟି ଦେଇଦେଲି, କାରଣ ମୁଁ ତାକୁ ଖାଇ ପାରିଲି ନାହିଁ। ଏହା ଦ୍ୱାରା ମୁଁ ଭାବେ ଯେ ମୁଁ ତାର ଉପରେ ବହୁତ ଦୟା କଲି। କିନ୍ତୁ ଦୟା-କରୁଣା ଏପରି କରାଯାଏନାହିଁ। ତେବେ କରୁଣା କ'ଣ ? ଯାହା ସହିତ ଏକତ୍ୱର ଅନୁଭବ କରୁ, ତାକୁ ଦୁଃଖୀ ଦେଖି, ତା ଦୁଃଖକୁ ନିଜର ଦୁଃଖ ଭାବି, ତାକୁ ଦୂର କରିବା ପାଇଁ ଆମ ମନରେ ଯେଉଁ ଭାବ ଆସେ ତାକୁ 'କରୁଣା' କୁହାଯାଏ। ଯେପରି ମାତା - ପିତାଙ୍କୁ ନିଜପିଲାର ଦୁଃଖ ଦେଖି ତା ଉପରେ କରୁଣା ହୁଏ ଯେ କେମିତି ସେ କାନ୍ଦୁଛି, ଦୁଃଖୀ ଅଛି, ଆମେ ତା ଦୁଃଖ ଦେଖି ପାରୁନୁ। ଏହି ଭାବ ହିଁ କରୁଣା। ଏହି କରୁଣା ଯୋଗୁଁ ହିଁ ଶୁକଦେବ ଏଠାରେ ଭାଗବତ କଥା କହିଲେ। ନଚେତ୍ ସେ ତ ଆତ୍ମ ସ୍ୱରୂପରେ ରମଣ କରୁଥିଲେ, କାହାକୁ କିଛି କହିବା ବା କଥା କରିବାର ତାଙ୍କର କୌଣସି ଆବଶ୍ୟକତା ହିଁ ନ ଥିଲା।

**ନାରାୟଣଂ ନମସ୍କୃତ୍ୟଂ ନରଂ ଚୈବ ନରୋତ୍ତମମ୍।**

**ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋ ଜୟ ମୁଦୀରୟେତ୍॥ (୧.୨,୪)**

ସୂତମୁନୀ କହିଲେ- ଭଗବାନ ନାରାୟଣ ଏବଂ ନରୋତ୍ତମଙ୍କୁ (ନର-ନାରାୟଣଙ୍କ ଅବତାରକୁ ଜ୍ଞାନର ଅବତାର କୁହାଯାଏ। ତାଙ୍କର ବର୍ଣ୍ଣନା ଆଗକୁ ଆସିବ), ଦେବୀ ସରସ୍ୱତୀଙ୍କୁ ତଥା ବ୍ୟାସଦେବଙ୍କୁ ନମସ୍କାର କରି ତାଙ୍କର ଜୟଜୟକାର କରିବା ଉଚିତ୍। ତା'ପରେ କହିଲେ ଆପଣ ମାନେ ବହୁତ ଭଲ ପ୍ରଶ୍ନ ପଚାରିଲେ। ପରବର୍ତ୍ତୀ କିଛି ଶ୍ଳୋକ ଧ୍ୟାନ ଦେବା ଯୋଗ୍ୟ। ଏହାର ଅର୍ଥ ନୁହେଁ ଯେ ଅନ୍ୟ କଥା ଗୁଡ଼ିକ ଧ୍ୟାନ ନ ନେଇ ଶୁଣିବା। କହିବାର ତାତ୍ପର୍ଯ୍ୟ ହେଲା ଯେ ଏଠାରେ ବିଶେଷରୂପେ ମହତ୍ତ୍ୱପୂର୍ଣ୍ଣ କଥା କୁହା ଯାଉଛି। ଆମ ଶାସ୍ତ୍ର ଗୁଡ଼ିକ କଥନର ଏକ ବିଶିଷ୍ଟ ଶୈଳୀ, ବିଶିଷ୍ଟ ବିଧି ଅଛି। ପ୍ରଥମେ ସଂକ୍ଷେପରେ ପ୍ରଶ୍ନ କରାଯାଏ, ତାର ଉତ୍ତର ମଧ୍ୟ ସଂକ୍ଷେପରେ ସିଦ୍ଧାନ୍ତ ରୂପେ ଦିଆଯାଏ। ଯଦି କେହି ବ୍ୟକ୍ତି ସେହି ସିଦ୍ଧାନ୍ତ କୁ ବୁଝିଯାଏ ତେବେ ଅଧିକ ବିସ୍ତାରର ଆବଶ୍ୟକତା ନଥାଏ। କିନ୍ତୁ ଆମେ ଜାଣିଛେ କେବଳ ସିଦ୍ଧାନ୍ତ ଦ୍ୱାରା ସମସ୍ତେ ଭଲ ଭାବରେ ବୁଝି ପାରନ୍ତି ନାହିଁ। ତା ପାଇଁ ଦୃଷ୍ଟାନ୍ତ ମଧ୍ୟ ଦେବାକୁ ପଡ଼େ। ଦୃଷ୍ଟାନ୍ତ ଦ୍ୱାରା କଥାଟି ସହଜରେ ବୁଝି ହୋଇ ଯାଏ। ତେଣୁ ପିଲାମାନଙ୍କ ବହିରେ ମଧ୍ୟ କୁକୁର -ବିଲେଇ ଆଦିର ଚିତ୍ର

ଦିଆଯାଇଥାଏ କାରଣ ସେମାନେ ସେଗୁଡ଼ିକୁ ଦେଖି ଥାଆନ୍ତି। ପିଲାଟି ଚିତ୍ରଦେଖି ତାକୁ ଚିହ୍ନି ପାରେ। ତା'ପରେ ସେଠି ଲେଖାଯାଇଥିବା ଶବ୍ଦ ଦେଖି ତାହା କଣ ମଧ୍ୟ ବୁଝି ଯାଏ। ଛବି ଦ୍ୱାରା ବର୍ଣ୍ଣନା ଆବଶ୍ୟକ। ତେଣୁ ପ୍ରଥମେ ସିଦ୍ଧାନ୍ତ ତିଆରି ହୁଏ ଏବଂ ତା ପରେ ଅନେକ ପ୍ରକାରର ଦୃଷ୍ଟାନ୍ତ ଦିଆଯାଏ।

## ସୂତ ମୁନିଙ୍କ ଉତ୍ତର

ଏଠି ମଧ୍ୟ ଆମେ ପ୍ରଥମେ ସିଦ୍ଧାନ୍ତ ରୂପେ କଥାକୁ ବୁଝିବା। ସୂତମୁନି ଉତ୍ତର ଦେଉଛନ୍ତି ଯେ -

**ସ ବୈ ପୁଂସଂ ପରୋ ଧର୍ମୋ ଯତୋ ଭକ୍ତିରଧୋକ୍ଷଜେ।**
**ଅହୈତୁକ୍ୟପ୍ରତିହତା ଯୟାଽଽତ୍ମା ସଂପ୍ରସୀଦତି ॥ (୧.୨.୬)**

ଆପଣମାନେ ପଚାରିଲେ ଯେ ସବୁଠାରୁ ଶ୍ରେଷ୍ଠ ପରମ କଲ୍ୟାଣର କଥା କ'ଣ? ପରମ ଶ୍ରେୟ କ'ଣ? ଯାହା ଦ୍ୱାରା ଭଗବାନ ଙ୍କ ଚରଣରେ ଦୃଢ଼ ପ୍ରେମ ହୋଇଯିବ ତାହା ଶ୍ରେୟ। ଏହା ହିଁ ସବୁଠାରୁ ଶ୍ରେଷ୍ଠ ଧର୍ମ। ସେଥିରେ ହିଁ ବ୍ୟକ୍ତିର ସବୁଠାରୁ ଶ୍ରେଷ୍ଠ ପରମ କଲ୍ୟାଣ ନିହିତ। ଭଗବାନଙ୍କ ପ୍ରତି କିପରି ପ୍ରେମ ରହିବା ଉଚିତ୍? **'ଅହୈତୁକୀ!'** ବିନା କୌଣସି ହେତୁ ବା କାରଣ ର ପ୍ରେମ, ଭଗବାନଙ୍କ ସହିତ ଯେଉଁ ପ୍ରେମ ଥାଏ ସେହି ପ୍ରେମର ଯଦି କୌଣସି କାରଣ ଥାଏ ଯେପରି...ତେଣୁ ମୁଁ ପ୍ରେମ କରୁଛି, ତେବେ ତାହା ପ୍ରେମ ନୁହେଁ। ଭଗବାନଙ୍କୁ ପ୍ରେମ କିରିବା କିନ୍ତୁ ସେହି ପ୍ରେମ କିପରେି ହୋଇଥିବ? **'ଅହୈତୁକୀ'**।

ଯେମିତି ଭକ୍ତି କିପରି ହେବା ଉଚିତ୍ **'ଅପ୍ରତିହତା'**। ଜୀବନରେ ଯେତେ ଲୌକିକ ଆଘାତ ସହିବାକୁ ପଡ଼ିଲେ କିମ୍ବା ସଂକଟର ସମ୍ମୁଖୀନ ହେବାକୁ ପଡ଼ିଲେ ମଧ୍ୟ ସେଥିପାଇଁ ଆମର ଭକ୍ତି ଟଳମଳ ହେବା ଅନୁଚିତ୍। ଆମକୁ କିନ୍ତୁ ଟିକିଏ ବି କଷ୍ଟ ହେଲେ ଆମ ଭକ୍ତି ଦୌଡ଼ି ପଳାଏ। ଆମେ କହୁ ଭଗବାନ ବୋଲି କେହି ନାହାଁନ୍ତି। ଆମ ଦୃଷ୍ଟିରେ ଭଗବାନଙ୍କ ଅସ୍ତିତ୍ୱ କାହା ଉପରେ ନିର୍ଭର କରେ ଜାଣନ୍ତି? ଆମ ଇଚ୍ଛା ପୂର୍ତ୍ତୀ ଉପରେ। ଆମ ଇଚ୍ଛା ପୂର୍ଣ୍ଣ ହେଲେ ଭଗବାନ ଅଛନ୍ତି। ଇଚ୍ଛା ପୂର୍ଣ୍ଣ ନହେଲେ ଭଗବାନ ନାହାଁନ୍ତି। ଭଗବାନ କେତେ ଶକ୍ତିଶାଳୀ ଏହା ବି କିପରି ସିଦ୍ଧ ହୁଏ - ଆମ ଇଚ୍ଛା ପୂର୍ତ୍ତୀ ଆଧାରରେ। ଯେପରି କିଏ ବଜଂରଙ୍ଗବାଲୀ ଙ୍କ ପାଖରେ ଟଙ୍କାକର ପ୍ରସାଦ ଚଢ଼େଇଛି -ପାସ ହେବାପାଇଁ। ପାସ ହେଲେ କହିବ ବଜଂରଙ୍ଗବଲୀ ସର୍ବଶକ୍ତିମାନ। ଦ୍ୱିତୀୟ ଥର ବି

ସେଇଆ କଲା । କିନ୍ତୁ ଫେଲ ହେଲା । କହିବ - ଜଣାପଡୁଛି ଯେ ବଜଂରଙ୍ଗବଲୀଙ୍କ ଶକ୍ତି କମି ଗଲାଣି । ପୁଣି ଯାଇ ତାଙ୍କୁ କହିବ କ'ଣ ଭଗବାନ, ଟିକିଏ ପାସ୍ କରେଇ ଦେଲନି । ଭଗବାନ ତାକୁ କହଲେ - ଆରେ ତୁ ତ ପଢ଼ିଲୁନି । ସେ ପିଲା କହିବ "ପଢ଼ିକରି ପାସ୍ ହେବାର ଥିଲେ ଆପଣଙ୍କ ପାଖକୁ କାହିଁକି ଆସିଥାଆନ୍ତି । ପଢ଼ିକରି ପାସ୍ ହୋଇଯାଇଥାନ୍ତି । ଆପଣଙ୍କ ପାଖକୁ ଆସି ଥିଲି ଯେ ଆପଣ କିଛି କରିବେ ।"

ଦେଖନ୍ତୁ, ଆମେ ସବୁ ଏମିତି ଯେ ଆମର ଭକ୍ତି ପ୍ରତିହତ ହୋଇ ଯାଉଛି । ଟିକିଏ ଏପଟ ସେପଟ ହେଲେ ଆମ ଭକ୍ତି ଉଭେଇ ହୋଇଯାଉଛି । କିନ୍ତୁ ଏପରି ହେବା ଉଚିତ୍, ଯେଉଁଥିରେ ଟିକିଏ ହେଲେ ସ୍ୱାର୍ଥ ନ ଥିବ । କୌଣସି କାରଣ ନଥିବ, ଯେମିତି ଆମେ ନିଜକୁ କୌଣସି କାରଣ ବା ସ୍ୱାର୍ଥ ନଥାଇ ଭଲ ପାଉ । କହିଲେ ଦେଖି ଆମେ ନିଜକୁ କୌଣସି କାରଣରୁ ଭଲ ପାଉକି ? ଯଦିଓ ଅନ୍ୟ ପାଖରେ ଆମକୁ ଭଲପାଇବାର କୌଣସି କାରଣ ନ ଥାଉ ପଛେ । ଯଦି କେହି କୁହେ - ତୁମକୁ ଭଲ ପାଇବା ପରି ତୁମ ଭିତରେ କୌଣସି କଥା ତ ଦେଖା ଯାଉନି । କିନ୍ତୁ ଆମର ନିଜ ପ୍ରତି ଯେଉଁ ଭଲପାଇବା ଅଛି ତା'ର କିଛି କାରଣ ଅଛି କି ? ନା । ମୁଁ ବହୁତ ସୁନ୍ଦର ତେଣୁ ପ୍ରିୟ ? ଆରେ ମୁଁ ଯେତେ ଅସୁନ୍ଦର ହେଲେ ମଧ୍ୟ ନିଜକୁ ସୁନ୍ଦର ବୋଲି ମାନିନିଏ । ତେଣୁ ନିଜକୁ ଭଲ ପାଇବା ପଛରେ ଆମ ପାଖରେ କୌଣସି କାରଣ ନଥାଏ । ଦ୍ୱିତୀୟତଃ ନିଜପ୍ରତି ନିଜ ଭଲପାଇବା କେବେ ହେଲେ ନଷ୍ଟ ହୁଏ ନାହିଁ, ଅପ୍ରତିହତ ହୋଇରହେ । ଏପରି ପରମ ପ୍ରେମ ଯଦି ଭଗବାନଙ୍କ ପ୍ରତି ହୁଏ ତେବେ ତାହା ସମସ୍ତଙ୍କ ପାଇଁ କଲ୍ୟାଣପ୍ରଦ ହୁଏ ।

**ବାସୁଦେବେ ଭଗବତି ଭକ୍ତିଯୋଗଃ ପ୍ରୟୋଜିତଃ ।**
**ଜନୟତ୍ୟାଶୁ ବୈରାଗ୍ୟଂ ଜ୍ଞାନଂ ଚ ଯଦହୈତୁକମ୍ ॥ (୧.୨.୭)**

ଯଦି ଭଗବାନଙ୍କ ସହ ଶୁଦ୍ଧ, ପ୍ରକୃତ ପ୍ରେମ ହେବ ତେବେ ଜ୍ଞାନ-ବୈରାଗ୍ୟ ସ୍ୱତଃ ଆସିଯିବ । ଭକ୍ତି ତାକୁ ବଢ଼ାଏ ପୁଷ୍ଟ କରେ । କଥାଟି ସତ । ଦେଖନ୍ତୁ , ଆପଣ ଯେଉଁ ବସ୍ତୁକୁ ଜାଣନ୍ତି, ତାକୁ ଭଲ ମଧ୍ୟ ପାଇବା ଜରୁରୀ ତ ନୁହେଁ । ମଶା, ଓଡ଼ଶ ଆଦିଙ୍କୁ ଜାଣନ୍ତି, ତାଙ୍କୁ ଭଲ ପାଆନ୍ତି କି ? ଆପଣ କହିବେ ସେଇମାନଙ୍କ ପାଇଁତ ସାରା ରାତି ଶୋଇ ପାରିଲି ନାହିଁ । ତେଣୁ ଆମେ ଯେଉଁ ବ୍ୟକ୍ତି ବା ବସ୍ତୁ ମାନଙ୍କୁ ଜାଣୁ ତାଙ୍କୁ ଭଲ ପାଇବା ଜରୁରୀ ନୁହେଁ । କିନ୍ତୁ ଯାହାକୁ ଭଲ ପାଉ ତା ବିଷୟରେ ଅଧିକ ଜାଣିବା ପାଇଁ ଚାହୁଁ କି ନାହିଁ ? ଆମେ ତାଙ୍କ ପାଖକୁ ଯିବାପାଇଁ ସେମାନଙ୍କ ବିଷୟରେ ସବୁକିଛି

ଜାଣିବା ପାଇଁ ଚାହୁଁ। ଏହା ମଧ୍ୟ ଦେଖା ଯାଏ ଯେ ପ୍ରେମ ଶୁଦ୍ଧ ନହେଲେ ଜୀବନରେ ବୈରାଗ୍ୟ ମଧ୍ୟ ଆସେ ନାହିଁ। ଯେଉଁଠି ଶୁଦ୍ଧ ପ୍ରେମ ଥାଏ ତାର ଜ୍ଞାନ ଆମେ ନିଶ୍ଚେ ପ୍ରାପ୍ତ କରୁ। ତା ପାଇଁ ଯାହା ବି ତ୍ୟାଗ କରିବାକୁ ପଡ଼ିଲେ, ସେଥିପାଇଁ ପ୍ରସ୍ତୁତ ହୋଇଯାଉ। ଏହା ହିଁ ଭକ୍ତିର ମହିମା।

## କର୍ତ୍ତବ୍ୟର ସ୍ୱରୂପ ଏବଂ ପ୍ରୟୋଜନ

ଆମେ ସମସ୍ତେ ଧର୍ମର ଅର୍ଥାତ୍ କର୍ତ୍ତବ୍ୟ ର ପାଳନ କରୁ କିନ୍ତୁ ଏହି କର୍ତ୍ତବ୍ୟ ପାଳନ ର ଫଳ ବିଷୟରେ କେବେ ଭାବିଛନ୍ତି କି ? ଆମ ସମସ୍ତଙ୍କର ଗୋଟିଏ ବିଚାର ଯେ ଆମେ ଯେଉଁ କର୍ତ୍ତବ୍ୟ ପାଳନ କରୁ ତା ଦ୍ୱାରା ଆମକୁ ଧନ, ଜଗତରେ ପ୍ରତିଷ୍ଠା, ଯଶ -କୀର୍ତ୍ତି, ପ୍ରମୋଶନ ମିଳିବା ଉଚିତ୍। ଆଉ ନ ମିଳିଲେ କହୁ ଯେ ମୁଁ ଏତେ କଲି ଅଥଚ କିଛି ମିଳିଲାନି ! ଅନ୍ୟମାନେ କାମ ନ କଲେ ମଧ୍ୟ ତାଙ୍କୁ ପ୍ରମୋଶନ ମିଳୁଛି, ତାର ଟ୍ରାନସଫର ହେଉନାହିଁ, ଯାହ ଦରକାର ସେମାନେ ପାଇଯାଉଛନ୍ତି। କର୍ତ୍ତବ୍ୟ ପାଳନ କରି ମୁଁ କ'ଣ ପାଇଲି ? ତାହାଲେ ଏବେ ଦେଖିବା କର୍ତ୍ତବ୍ୟ ପାଳନର ଅର୍ଥ କ'ଣ ? କୁହାଯାଏ

**ଧର୍ମଃ ସ୍ୱନୁଷ୍ଠିତଃ ପୁଂସାଂ ବିଷ୍ୱକ୍‌ସେନକଥାସୁ ଯଃ।**
**ନୋତ୍ପାଦୟେଦ୍ୟଦି ରତିଂ ଶ୍ରମ ଏବ ହି କେବଲମ୍॥ (୧.୨.୮)**

ଯେଉଁ ଧର୍ମ ପାଳନ ଆମ ମନରେ ଭଗବାନଙ୍କ ପାଇଁ, ତାଙ୍କ ବିଷୟରେ ଜାଣିବା ପାଇଁ ପ୍ରେମ ଉତ୍ପନ୍ନ କରି ପାରୁନି ତାହା କେବଳ ପରିଶ୍ରମ। ଏହାହିଁ ମନେ ରଖ। କର୍ତ୍ତବ୍ୟ ପାଳନ ଠିକ୍ ଭାବରେ ହେଲେ ଆମେ ଆନନ୍ଦ ଅନୁଭବ କରୁ। 'ଏତେ କଷ୍ଟ କଲି କଣ ବା ଲାଭ ପାଇଲି' ଏପରି ଅନୁଭବ ହେବ ନାହିଁ। ଯାହା ପାଇଁ ଆମେ କର୍ତ୍ତବ୍ୟ ପାଳନ କରୁ ତା ପାଇଁ ଆମ ମନରେ ପ୍ରେମ ଉତ୍ପନ୍ନ ହେବା ଉଚିତ୍। ଯଦି ଆମ ମନରେ ପ୍ରେମ ବୃଦ୍ଧି ନ ହୁଏ ବା ଆନନ୍ଦର ଅନୁଭବ ନ ହୁଏ ତେବେ ତାହା ବ୍ୟର୍ଥ କର୍ମ।

ଯେମିତି ଜଣେ ଅଫିସ୍ ଯାଏ ଏବଂ ଆଉ ଜଣେ ନିଜର ସଉକ ବା ମନପସନ୍ଦର କାର୍ଯ୍ୟ କରେ। ଉଭୟଙ୍କ କର୍ମହେଲା କର୍ମ କିନ୍ତୁ ଦୁଇଟି ଯାକ କର୍ମ ଭିତରେ କେତେ ପାର୍ଥକ୍ୟ ଅଛି ! ମନ ପସନ୍ଦ କାର୍ଯ୍ୟ କରୁଥିବା ସମୟରେ ଘଣ୍ଟା -ଘଣ୍ଟା କାମ କଲେ ମଧ୍ୟ ନା ଥକ୍କା ଲାଗେ ନା ବିରକ୍ତି ବରଂ ଆନନ୍ଦ ର ଅନୁଭୂତି ହୁଏ। ସେହି କର୍ମ ପ୍ରତି ପ୍ରେମ ବଢ଼େ। କିନ୍ତୁ ଅଫିସ୍ ରେ କାମ କଲା ଲୋକ ଦଶ ବାଜିଲେ ଏମିତି ଅଫିସ୍ ଯାଏ

ଯେମିତି କଂସେଇଖାନା କୁ ହଣାଖାଇବାକୁ ଯାଉଛି। ଅନେକ ସମୟରେ ତ ଶୁଣାଯାଏ ଯେ ଦଶଟା ବାଜି ଗଲାଣି, ଆଜି ଯାଇନକି ? ଉତ୍ତର ମିଳେ ଯିବି ତ, ତର ତର କାହିଁକି ? କିନ୍ତୁ ସିନେମା ବା ଡ୍ରାମା ଦେଖିବାର ଥିଲେ ଆଗରୁ ଯାଇ ବସିଥିବେ। ତେଣୁ ପ୍ରତି କଥା ପାଇଁ ଆମେ ଚାହିଁଲେ ସମୟ ବାହାରକରି ପାରିବା।

ଆମେ ଜାଣିଲେ ଯେ କର୍ତ୍ତବ୍ୟ ପାଳନର ପ୍ରକୃତ ପ୍ରୟୋଜନ ହେଲା ଭଗବାନଙ୍କ ପ୍ରତି ପ୍ରେମ। କାହିଁକି ? ଧର୍ମ ପାଳନର ଏହାହିଁ ଫଳ କାହିଁକି ହେବ ? ଏହି ପ୍ରଶ୍ନ ଉଠିପାରେ। ତେବେ ସିଧା କଥା ଜାଣିବା ଯେ ଆମର କର୍ତ୍ତବ୍ୟ କଣ ? ଯାହାଙ୍କ ଠାରୁ ଆମକୁ କାର୍ଯ୍ୟ କରିବାର ଏବଂ ଅନ୍ୟ ସବୁ ପ୍ରକାରର ଶକ୍ତି ମିଳୁଛି ତାଙ୍କର ସେବା କରିବା ଆମର କର୍ତ୍ତବ୍ୟ। ଏହା ସରଳତମ ନିୟମ ଯେମିତି ମାତା-ପିତାଙ୍କ ସେବା କରିବା ପୁତ୍ରର କର୍ତ୍ତବ୍ୟ। କାହିଁକି ? କାରଣ ମାତା-ପିତା ଶରୀର ଦେଲେ, ଶିକ୍ଷା -ଦୀକ୍ଷା ଦେଲେ, ପାଳନ -ପୋଷଣ କଲେ। ଯେହେତୁ ସେମାନେ ହିଁ ସବୁକିଛି ଦେଉଛନ୍ତି ତେଣୁ ତାଙ୍କର ସେବା କରିବା ପୁତ୍ରର କର୍ତ୍ତବ୍ୟ। ରାଜନୈତିକ ନେତା ମାନେ ଜନତାର ବହୁମତରେ ନିର୍ବାଚନ ଜିତି ସତ୍ତାକୁ ଆସିଲେ ଜନତାର ସେବା କରିବା ସେମାନଙ୍କର କର୍ତ୍ତବ୍ୟ। ସରକାରୀ ଅଫିସ୍ ବା କମ୍ପାନୀ ରେ କାମ କଲେ ଯେହେତୁ ଆମକୁ ତାଙ୍କ ଠାରୁ ହିଁ ସବୁ ଜିନିଷ ମିଳୁଛି ତେଣୁ ତାଙ୍କର ସେବା କରିବା ଆମର କର୍ତ୍ତବ୍ୟ।

ଭାବିଲେ ଦେଖି, ଆମକୁ ଯେଉଁ ମୂଳ ଶକ୍ତି ପ୍ରାପ୍ତ ହେଇଛି ତାହା କେଉଁଠାରୁ ପ୍ରାପ୍ତ ହୋଇଛି ? ଦେଖିବା, ଶୁଣିବା, ଲେଖିବା- ସବୁଶକ୍ତି କେଉଁଠାରୁ ମିଳିଛି ? ଆମ ଭିତରେ ଏହି ଶକ୍ତି ନ ଥିଲେ ସରକାର ଆମକୁ ଚାକିରୀ ଦେଇ ଥାଆନ୍ତେ କି ? ନାହିଁ ନା। ତେବେ ଦେଖନ୍ତୁ ଯେ ଶକ୍ତିର ମୂଳ ସ୍ରୋତକୁ **'ଭଗବାନ'** କୁହାଯାଏ। ସେହି ଭଗବାନଙ୍କ ସେବା ଆମର ପ୍ରକୃତ କର୍ତ୍ତବ୍ୟ। କର୍ତ୍ତବ୍ୟ କରୁଥିବା ସମୟରେ ଭଗବାନଙ୍କ ପ୍ରତି ଆମ ମନରେ ପ୍ରେମ ଉତ୍ପନ୍ନ ହେବା ଆବଶ୍ୟକ। ଏହା ହିଁ ଧର୍ମ ପାଳନର ପ୍ରକୃତ ଫଳ। ନ ହେଲେ ସେହି ଧର୍ମ ପାଳନ ଅସଲି ନୁହଁ ନକଲି। ଯେଉଁ ପିଲା ନିଜ ମାତା ପିତା ଙ୍କ ସେବା କରେ ତା ମନରେ ମଧ୍ୟ ତାଙ୍କ ପ୍ରତି ପ୍ରେମରେ ବୃଦ୍ଧି ହୁଏ ଏବଂ ଏହାହିଁ ତାର କର୍ତ୍ତବ୍ୟ। ଅନ୍ୟଥା - 'ଶ୍ରମ ହି କେବଳମ୍' - ସବୁ କିଛି ବ୍ୟର୍ଥ ପରିଶ୍ରମ ମାତ୍ର। ମନରେ ପ୍ରେମ ନ ଥିଲେ ସେହି କାମକୁ କରିବା ପାଇଁ ପରିଶ୍ରମ ଦରକାର ହୁଏ, ମୁଣ୍ଡ ଉପରେ ବୋଝ ଥିବା ପରି ଲାଗେ।

ଏବେ ମନ ଦେଇ ଧର୍ମ, ଅର୍ଥ, କାମ, ମୋକ୍ଷ ବିଷୟରେ ଶୁଣନ୍ତୁ। ଭାବିଲେ ଆମେ ନିଜ ଜୀବନରେ ସର୍ବପ୍ରଥମେ କ'ଣ ଚାହୁଁ? ପ୍ରଥମେ ଚାହୁଁ ନିଜର ସୁରକ୍ଷା। ନିଜର ସୁରକ୍ଷା ପାଇଁ ଆମେ ଯେଉଁ ଚେଷ୍ଟା କରୁ, ଶାସ୍ତ୍ରୀୟ ଭାଷାରେ ତାକୁ କୁହାଯାଏ **'ଅର୍ଥ ପୁରୁଷାର୍ଥ'**। ନିଜକୁ ସୁରକ୍ଷିତ କରି ସାରିବା ପରେ ଭୋଗ ପାଇଁ ଇଚ୍ଛା ହୁଏ। ତାକୁ କୁହାଯାଏ **'କାମ'**। ଅର୍ଥ ପରେ ଆସେ କାମ।

ଆମେ କେଉଁ ଆଡ଼େ ଗଲେ ଆଗେ ନିଜ ରହିବା ସ୍ଥାନ ଦେଖୁ। ମୋ ରୁମ୍ କେଉଁଟି ? ଆଉ ମଶା ଠାରୁ ସୁରକ୍ଷିତ ନା ନାହିଁ? ସବୁଠାରୁ ପ୍ରଥମେ ରହିବା ସ୍ଥାନ। ଯଦି କୁହାଯାଏ ଆଗ ଖାଇ ନିଅନ୍ତୁ, ତେବେ ଆମେ କହିବା 'ରୁମ୍ ଟା ଦେଖି ଜିନିଷ ଥୋଇଦେବା' । କେଉଁ ଆଡ଼େ ଗଲେ, ଆଗ ଭାବିବାକୁ ପଡ଼େ ଯେ ସେଠି କେଉଁଠି ରହିବା। ଥରେ ସୁରକ୍ଷା ମିଳିଗଲେ ତା ପରେ ଖାଇବା। ଟ୍ରେନ ରେ ଯିବା ସମୟରେ ମଧ୍ୟ ସେଇଆ ତ ହୁଏନା! ବିଶେଷତଃ ସାଂଗରେ ବେଶୀ ଲୋକ ଥିଲେ ଦେଖିବା ପରି ଅବସ୍ଥା ହୋଇଥାଏ। ପିଲା ମାନେ ଏପଟ - ସେପଟ ହେଉଥିବେ। ପିଲାଙ୍କୁ ସମ୍ଭାଳିବେ ନା ଜିନିଷ - ପତ୍ର। କେତେବେଳେ କମ୍ ଜିନିଷ ହୋଇଗଲାଣି ତ କେତେବେଳେ ଅଧିକା ଜିନିଷ ହୋଇଗଲାଣି। କେଜାଣି କାହା ଜିନିଷ ପିଲାମାନେ ଉଠେଇ ଆଣିଲେଣି। ଟ୍ରେନ ଏସବୁ ମଝିରେ ଆସିଗଲେ ଅବସ୍ଥା ଅସମ୍ଭାଳ। ଆମ ଦେଶରେ ସେମିତି ଠିକ୍ ଭାବରେ ଆରକ୍ଷଣ ମିଳିବା କାଠିକର ପାଠ ପୁଣି ମଝିରେ ଷ୍ଟେସନ ହେଲେ କଥା ସରିଲା।

ମୁଁ ବହୁତ ଭୋଗିଛି। ମୋର ନାମ ଆରକ୍ଷଣ ଚାର୍ଟରେ କେତେ ପ୍ରକାର ରେ ଲେଖା ଯାଉଥିଲା କହି ହବନି। ଗୋଟିଏ ଜାଗାରେ ମୋ ନା ଲେଖା ଥିଲା ବିନାୟକ ଚେତନୀ। ମୁଁ ପୁରା ଟ୍ରେନ ଖୋଜିଲି। ଟିକଟ ନମ୍ବର ବି ଭୂଲ, ନାମ ବି ଭୂଲ। କଣ୍ଡକ୍ଟର କୁ ପଚାରିବାରୁ କହିଲା, "ବିନାୟକ ଚେତନୀ ନାଁ ସହ ଆପଣଙ୍କ ନାଁ ମିଶି ଯାଉଛି ତ! ଯାଆନ୍ତୁ ସେଇଠି ବସିଥିବେ।" ମୁଁ ଏକଥା କାହିଁକି କହୁଛି କି, ଯଦି କେହି ସେହି ସମୟରେ ମତେ କହିଥାନ୍ତା, 'ବ୍ରହ୍ମଚାରୀ ଜୀ ଗୋଟିଏ ଆଇସକ୍ରୀମ୍ ଖାଆନ୍ତୁ, ମୁଁ ରାଗି ଯାଇଥାନ୍ତି ନା ନାହିଁ?' ଆଉ ସବୁ ଛାଡ଼ନ୍ତୁ, ସେତେବେଳେ ଖାଇବା -ପିଇବାକୁ ବି ଇଚ୍ଛା ହେବନି। ଟ୍ରେନ ଛାଡ଼ିବା ସମୟ ହେଲାଣି, ଆଉ ମୁଁ ଜାଣିନି ଯେ ମୋ ସିଟ କେଉଁଠି ? ତା'ହେଲେ ଟ୍ରେନରେ ବି ଆମେ ପ୍ରଥମେ ଆମ ସିଟ ଖୋଜୁ। ଥରେ ବସିଗଲେ ତା ପରେ ଖାଇବା ପିଇବା ବିଷୟରେ ଭାବୁ।

ଅର୍ଥ ପରେ ଆସେ କାମ। ଦେଖନ୍ତୁ, ଯେତେବେଳେ ମନରେ ଅର୍ଥ ଏବଂ କାମର ଭାବ ଅତ୍ୟନ୍ତ ପ୍ରବଳ ହୁଏ ସେତେବେଳେ ନିଜ ଉପରେ ନିୟନ୍ତ୍ରଣ ରହେ ନାହିଁ। ସେତେବେଳେ କ'ଣ ନାହିଁ କ'ଣ କରି ବସୁ । ସେତେବେଳେ ଧର୍ମ ଆମକୁ ନିୟନ୍ତ୍ରିତ କରିଥାଏ। ଯେପରି ପ୍ରତ୍ୟେକ ଦେଶର ନିଜର ଏକ ସଂବିଧାନ ଥାଏ ସେହିପରି ଭଗବାନଙ୍କ ଶାସ୍ତ୍ର ବା ସଂବିଧାନ ହେଲା - 'ଧର୍ମ', ଯାହା ଜୀବର ଗତିକୁ ନିୟନ୍ତ୍ରିତ କରିଥାଅନ୍ତି। ଯାହା ଜୀବକୁ ସଂଯମିତ -ନିୟନ୍ତ୍ରିତ କରେ ତାହା ହେଲା **'ଧର୍ମ'**। କୁହାଯାଇଛି -ଧର୍ମଦ୍ୱାରା ତୁମେ ନିଜର ଅର୍ଥ ଏବଂ କାମକୁ ସଂଯମିତ କର। ପୁଣି କୁହାଯାଇଛି ଧର୍ମ ଦ୍ୱାରା ଅର୍ଥ ପ୍ରାପ୍ତି କରି କାମନା ପୂରଣ କର, ତା ପରେ **'ମୋକ୍ଷ'** ପ୍ରାପ୍ତି କର। ଏହି ଚାରୋଟି କୁ ପୁରୁଷାର୍ଥ କୁହାଯାଏ। ଏଠାରେ ଧର୍ମ, ଅର୍ଥ କାମ ର ରହସ୍ୟ ଏବଂ ପ୍ରକୃତ ପ୍ରୟୋଜନ ବିଷୟରେ କୁହା ଯାଇଛି।

ସାଧାରଣତଃ ଆମ ମାନଙ୍କର ବଦ୍ଧ ଧାରଣା ଯେ, ବହୁତ ଧନ ରୋଜଗାର କରିବା ଉଚିତ। କାରଣ ତା ଦ୍ୱାରା ଅନେକ ଜିନିଷ ଆଣିବା ଏବଂ ଅନେକ ପ୍ରକାର ର କାମ- ଭୋଗ କରିବା। ଆମେ ଏଇଆ ହିଁ ଭାବୁ ଯେ କାମର ପ୍ରୟୋଜନ ଭୋଗ। କିନ୍ତୁ ଆମ ଶାସ୍ତ୍ରମାନଙ୍କରେ କୁହା ଯାଇଛି ଯେ ଅର୍ଥର ପ୍ରୟୋଜନ କାମ ନୁହେଁ, ଧର୍ମ ପାଳନ ଅଟେ। ଧନ ଆମ ପାଖରେ କେବଳ ଧର୍ମ, ଦାନ ଏବଂ ପୁଣ୍ୟ କର୍ମ ଉପଲକ୍ଷେ ରହିବା ଉଚିତ। କିନ୍ତୁ କେହି ଯଦି ପଚାରେ , "ମୁଁ ଯେ କୌଣସି ଉପାୟ ରେ ଧନ ଅର୍ଜନ କରି ଦାନ କରି ପାରିବି କି ?" ଉତ୍ତର ହେଲା ନା, ଏହା ଅନୁଚିତ। ଧନ ଅର୍ଜନ ମଧ୍ୟ ଧର୍ମ ପୂର୍ବକ ହେବା ଉଚିତ ଏବଂ ତାର ବିନିଯୋଗ ମଧ୍ୟ ଧର୍ମପାଳନ ପାଇଁ ହେବା ଆବଶ୍ୟକ, ତେବେ **'ଅର୍ଥ' ହେଲା - 'ଧର୍ମ'** ପାଇଁ।

ତେବେ ଆମର ପ୍ରଥମ ଭୁଲ୍ କ'ଣ ହେଲା ? ଆମେ ଭାବିଲେ ଧନ ଅର୍ଜନ କେବଳ ଭୋଗ ପାଇଁ। ଅଧିକ ଭୋଗ ପାଇଁ ଅଧିକ ଧନ ଦରକାର - ଯେଉଁ ଉପାୟରେ ଅର୍ଜନ ହେଇଥାଉ ପଛକେ। କିନ୍ତୁ, ନା ! ଅର୍ଥ -ଧର୍ମ ପାଇଁ। ତେବେ ଧର୍ମର ପ୍ରୟୋଜନ କ'ଣ ? ଏ ତ ବିଚିତ୍ର କଥା। ଆମେ କର୍ତ୍ତବ୍ୟ ପାଳନ କଲୁ, ସବୁ କାମ କଲୁ - ଧନ ଅର୍ଜନ ପାଇଁ । ଆଉ ଧନର ପ୍ରୟୋଜନ ଭୋଗ ପାଇଁ । ଆମେ ମନରେ ଏପରି ଭ୍ରାନ୍ତ ଧାରଣା ଭରି ରହିଛି। ଆଉ ଆମେ ନିଜ ଦୁଃଖର କାରଣ ବୁଝି ପାରୁନାହୁଁ। ଆମେ ଏହି ପୁରୁଷାର୍ଥ ମାନଙ୍କର ପ୍ରୟୋଜନ କୁ ଠିକ୍ ଭାବରେ ବୁଝି ପାରିନାହୁଁ। ଆମେ କର୍ତ୍ତବ୍ୟ କଲେ, ଦାନ, ପୁଣ୍ୟ, ଧର୍ମ କଲେ, କଣ ଖାଲି ଅଧିକ ଧନ -ପ୍ରାପ୍ତି ପାଇଁ । ଆଜି ମୁଁ ପାଞ୍ଚ ପଇସା ଦେଲେ ପରେ ମୋତେ ପାଞ୍ଚକୋଟି ମିଳିବ। ଆମେ ଏଇମିତି ଭାବୁ।

ପାଞ୍ଚପଇସା ଇନ୍‌ଭେଷ୍ଟ କରି ପାଞ୍ଚକୋଟି ଅର୍ଜନ କରିବାକୁ ଚାହୁଁ। କିନ୍ତୁ ନା, ଧର୍ମର ପ୍ରୟୋଜନ ହେଲା - **'ମୋକ୍ଷ'**

**ଧର୍ମସ୍ୟ ହ୍ୟାପବର୍ଗ୍ୟସ୍ୟ ନାର୍ଥୋଽର୍ଥାୟୋପକଳ୍ପତେ। (୧.୨.୯)**

ଧର୍ମର ପାଳନ ମୋକ୍ଷ ପ୍ରାପ୍ତି ପାଇଁ, ଅର୍ଥର ପ୍ରୟୋଜନ ଧର୍ମ ପାଇଁ। ତେବେ କାମର ପ୍ରୟୋଜନ କ'ଣ ? ଆମେ ବିଷୟ -ଭୋଗ, କାମ-ଭୋଗ କରୁଛୁ, କାହିଁକି ? ଟିକିଏ ଭାବିଲେ ଦେଖି। ପ୍ରାୟଃ ଲୋକେ ଧନ ଅର୍ଜନ କାହିଁକି କରନ୍ତି - ଭୋଗ ପାଇଁ। ଧର୍ମ କାହିଁକି କରନ୍ତି ଅର୍ଥ ପାଇଁ। ଆମର ତ ସବୁ ଓଲଟା। ଧର୍ମ କରନ୍ତି ଅର୍ଥ ପାଇଁ। ଅର୍ଥର ପ୍ରୟୋଜନ କାମ ଭୋଗ ପାଇଁ। ମୋକ୍ଷର ତ ନାଁ କୋଉଠି ବି ନାହିଁ, ଆଉ ପୁଣି କାମର ପ୍ରୟୋଜନ କଣ ? ଇନ୍ଦ୍ରିୟ ତୃପ୍ତି। ହଁ ଆଖି ଭଲ ଦେଖୁ, କାନ ଭଲ ଶୁଣୁ, ତ୍ୱଚାକୁ କୋମଳ ସ୍ପର୍ଶ ମିଳୁ। କିନ୍ତୁ କୁହାଯାଇଛି ଯେ - **'କାମସ୍ୟ ନ ଇନ୍ଦ୍ରିୟ ପ୍ରୀତିଃ'**। କାମ ର ପ୍ରୟୋଜନ ଇନ୍ଦ୍ରିୟ ପ୍ରୀତି ନୁହେଁ। ତେବେ ଆଉ କଣ ପାଇଁ ? **'ଲାଭୋ ଜୀବେତ ଯାବାତା'**। ଆମେ ସେତିକି ବିଷୟ ଭୋଗ କରିବା, ଯାହା ଦ୍ୱାରା ଏହି ଶରୀର ଚାଲୁଥିବ, ଆମେ ବଞ୍ଚିଯିବା।

ବଡ଼ ବିଚିତ୍ର କଥା। ପ୍ରକୃତରେ ଭୌତିକବାଦୀ ଙ୍କ ମନରେ ଏହି ବିଚାର ନା ନିଜେ ଆସିବ ନା ବୁଝେଇଲେ ବୁଝିବେ। ସେମାନେ ତ ମୂଳରୁ ଏହାକୁ ମାନିବେନି। ତେଣୁ ଆମେ ତାଙ୍କୁ ଏକଥା କହିବାନି। ଯାହାକୁ ଯାହା କରିବାର ଅଛି କରୁ ଯିଏ ନିଜକୁ ଉଦ୍ଧାର କରିବା ପାଇଁ ଚାହୁଁଥିବ, ତାକୁ ଧର୍ମ, ଅର୍ଥ, କାମ, ମୋକ୍ଷର ରହସ୍ୟ ବୁଝିବା ଉଚିତ୍।

ଆମର ଧନ ଅର୍ଜନ- ଧର୍ମ ପାଳନ ପାଇଁ। ଯେଉଁ ଧର୍ମ ଭଗବତ୍ ପ୍ରୀତି ପାଇଁ କରାଯାଏ ତାହା ମୋକ୍ଷ ପାଇଁ। ଏଠି ଏହି ରହସ୍ୟ କୁହାଯାଛି। ଆଉ ଜୀବନରେ ଯେଉଁ ଖାଇବା ପିଇବା ଆଦି ବିଷୟ ଭୋଗ ବା କାମନାର କେବଳ ଏତିକି ପ୍ରୟୋଜନ ଯେ ଆମେ ବଞ୍ଚିକରି ରହିବା। ଏବେ ପ୍ରଶ୍ନ ଉଠେ ଯେ କାହିଁକି ବଞ୍ଚିବା ? ଅନେକ ଲୋକ ଭାବନ୍ତି ଯେ ଆମ ଜୀବନ କେବଳ ଖାଇବା - ପିଇବା ପାଇଁ। ଇଚ୍ଛାନୁସାରେ ଖାଇ-ପିଇ ନ ପାରିଲେ ବଞ୍ଚିକରି ଲାଭ କଣ ? ଥରେ ଜଣେ ରୋଗୀ ଡାକ୍ତର ଙ୍କ ପାଖକୁ ଗଲା। ଡାକ୍ତର ତାଙ୍କୁ କହିଲେ 'ଦେଖ ତୁମ ରୋଗ ଏଇଆ , ତେଣୁ ମିଠା ଖାଇବା ଛାଡ଼। ତା ସହିତ ଆଳୁ ଛାଡ଼, ଭାତ ଛାଡ଼, ଘିଅ-ତେଲ ଛଣା ଜିନିଷ ମଧ୍ୟ ଛାଡ଼'। " ଆଉ ଆଜ୍ଞା, ଚା-କଫି ପିଇ ପାରିବିତ ? ବିଲ୍ କୁଲ୍ ନୁହଁ, ଚା-କଫି ର ତ ପାଖ ବି ମାଡ଼ିବନି।" ସେ

ପୁଣି ପଚାରିଲା - 'ଆଚ୍ଛା ଏଇଆ ଏଇଆ ସବୁ କରି ପାରିବି କି ?' ନା' 'ତେବେ କଣ ଖାଲି ଔଷଧ ଖାଇ ବଞ୍ଚିବି। ମୁଁ କଣ ଖାଲି ଔଷଧ ଖାଇବା ପାଇଁ ବଞ୍ଚିକରି ରହିବି! ଅର୍ଥାତ୍ ଅନେକେ ଭାବନ୍ତି ଯେ ଜୀବନ ମାନେ ଭଲ ଭାବେ ଖାଇ-ପିଇ ବଞ୍ଚିବା। ଏପରି ଲୋକ ତ କହିବେ ଯେ ଯଦି ଇନ୍ଦ୍ରିୟ ପ୍ରୀତି ଜୀବନର ପ୍ରୟୋଜନ ନୁହଁ ତେବେ କାହିଁକି ବଞ୍ଚିବା ? ସେଥିପାଇଁ ଏଠି ଏକ ଶ୍ରେଷ୍ଠ କଥା କୁହାଯାଇଛି।

**"ଜୀବସ୍ୟ ତତ୍ତ୍ୱଜିଜ୍ଞାସା ନାର୍ଥୋ ଯଶ୍ଚେହ କର୍ମଭିଃ"। (୧.୨.୧୦)**

କୁହାଯାଏ ଯେ ଆମ ଜୀବନର ଏକମାତ୍ର ପ୍ରୟୋଜନ ହେଲା **'ତତ୍ତ୍ୱ ଜିଜ୍ଞାସା'**। ଆରେ ବାବୁ ଯଦି ମଣିଷ ଜନ୍ମ ପାଇଛ ତେବେ ତତ୍ତ୍ୱ କୁ ଜାଣ। ଅନ୍ୟ ସମସ୍ତ କାମ ଯେ କୌଣସି ଜନ୍ମ ରେ ମଧ୍ୟ କରି ପାରିବ। ଜଣେ ଲୋକ ଥିଲା ଯିଏ ବହୁତ ପାନ ଖାଉଥିଲା। ପାନ୍-ବହାର, ଚୁନ-ମସଲା ଆଦି ପକେଇ ପାନ ଖାଉଥିଲା। ତା ସାଙ୍ଗ ପଚାରିଲା - ପତ୍ର ଚୋବେଇ ଚୋବେଇ ତୁମ ମନ ପୁରିନି କି ? ପଶୁ ଦେହରେ ତ ବହୁତ ଘାସ-ପତ୍ର ଖାଇଛ। ଉତ୍ତର ମିଳିଲା -ହଁ, କଥା କ'ଣକି ? ପତ୍ର ତ ବହୁତ ଖାଉଥିଲି  କିନ୍ତୁ ଚୁନ - ମସଲା ଆଦି ପକାଇ ଖାଉଥିଲି କି? ମନୁଷ୍ୟ ଜନ୍ମ ରେ ହିଁ ଏମିତି ଖାଇ ପାରିବା। ବଂଗାଳୀ ପାନ, ମଲାଇ ପାନ, ମାଡ୍ରାସୀ ପାନ, ମିଠା ପାନ, ବନାରସୀ, ଆଉ କେଜାଣି କେତେ ପ୍ରକାର ର ପାନ। ତେଣୁ ଏବେ ଏହାକୁ ଖାଉଛି। ଏତିକି ବିବେକ ତ ମୋର ବି ଅଛି ଯେ ଅନ୍ୟ ପତ୍ର ତ ସେତେବେଳେ ବି ଖାଉଥିଲି, କିନ୍ତୁ ଏମିତି କେବଳ ଏଠିହିଁ ମିଳିବ। ଆଚ୍ଛା ଏବେ ଯାଠୁ ଆଗକୁ ଯାଅ। ସବୁ କର୍ମ ଅନ୍ୟ ଦେହ ରେ ଥାଇ ମଧ୍ୟ କରିହେବ କିନ୍ତୁ କେବଳ ମନୁଷ୍ୟ ଦେହରେ ଥାଇ ସତ୍ୟ କୁ ଜାଣିପାରିବା। ତେଣୁ ଏବେ ତାକୁ ଜାଣିଯାଅ। ଏହି ଦୁର୍ଲଭ ମାନବ ଶରୀରକୁ ପାଇ ଯେଉଁ ଶ୍ରେଷ୍ଠତମ କାର୍ଯ୍ୟ କରିବା କଥା ତାକୁ କର।

ଅନ୍ୟ ଅନେକ ବେକାର କର୍ମର କୌଣସି ପ୍ରୟୋଜନ ନ ଥାଏ। ଏହା ମଧ୍ୟ ସତ। କାରଣ ଦେଖାଯାଏ ଯେ ଲୋକ ମାନେ ରାତି ଦିନ ପରିଶ୍ରମ କରନ୍ତି, ଡିଗ୍ରୀ ପ୍ରାପ୍ତ କରନ୍ତି, ବିବାହ କରନ୍ତି, ବହୁତ ଧନ ମଧ୍ୟ ଅର୍ଜନ କରନ୍ତି, ଶେଷରେ ଭାବନ୍ତି ମୁଁ କ'ଣ ପାଇଲି ? ଶେଷରେ ଭାବି ଦେଖିଲେ କିଛି ସାର ତତ୍ତ୍ୱ ଦିଶେ ନାହିଁ। ଏତେ ସବୁ ତାହେଲେ କାହିଁକି କଲେ ? ପୁଣି ଭାବିବେ ଏବେ କଣ କରିବା ? ଗୋଟିଏ ଲେଟର ପ୍ୟାଡ ରେ ସବୁ ଡିଗ୍ରୀ ଲେଖି ଦେବେ ବା ଗୋଟିଏ ନେମପ୍ଲେଟ ବନେଇ ଟାଙ୍ଗି ଦେବେ। ତା'ଠୁ ଅଧିକା କ'ଣ କରିହେବ? ନାମ ଆଲୋକିତ ବା ପ୍ରସିଦ୍ଧ କରିବା ଉପରେ ଗୋଟିଏ

ମଜା କଥା ଶୁଣିଥିଲି। ଥରେ ଗୋଟିଏ ପିଲା ଭାବିଲା ମୁଁ ମୋ ବାପାଙ୍କ ନାମ ଆଲୋକିତ କରିବି। ନେମପ୍ଲେଟ ଉପରେ ଆଲୋକ ପକାଇ ବଲବଟିଏ ଜଳାଇ ସେ ତା ବାପାଙ୍କ ନାମ ଆଲୋକିତ କଲା। ବ୍ୟକ୍ତି ସବୁ କାର୍ଯ୍ୟ କରିସାରିବା ପାରେ ଭାବେ ସବୁ ତ କଲି ଏବେ ଆଉ କ'ଣ କରିହେବ।

**ଇହ ଚେଦବେଦୀଦଥ ସତ୍ୟମସ୍ତି ନ ଚେଦିହାବେଦୀନ୍ମହତୀ ବିନଷ୍ଟିଃ।**
**(କେନ ଉପ. ୨.୫)**

ଏହି ମନୁଷ୍ୟ ଜନ୍ମ ରେ ପରମ ସତ୍ୟକୁ ଜାଣି ପାରିଲେ ବହୁତ ଭଲ କଥା। ଯଦି ନ ଜାଣି ପାରିଲେ ତ **'ମହତି ବିନଷ୍ଟି'**ମହା ବିନାଶ। ଏତେ ଭଲ ସୁଯୋଗ ଆସିଥିଲା। ଅଯଥା ଚାଲିଗଲା। ଗୋଟିଏ ବଢ଼ିଆ କଥା ଅଛି ଯେ ନିଜ କର୍ତ୍ତବ୍ୟ ପାଳନ ସମୟରେ ମଧ୍ୟ ଆମେ କହୁ ଯେ ମୁଁ ଏ ଘରେ ଏତେ କାମ କରୁଛି, କେହି ମୋ ସହିତ ଭଲଭାବରେ ପଦେ କଥା ମଧ୍ୟ ହେଉ ନାହାଁନ୍ତି'। ଆରେ ବାବୁ, ତୁମେ କଣ ଖାଲି ଭଲ କଥା ପଦେ ଶୁଣିବା ପାଇଁ ଭଲ କାମ କରୁଛ ? କେତେ ମୂଢ଼ ସତେ ! ଅଫିସରେ ମୁଁ କେତେ କାମ କରୁଛି, ମୋର ପ୍ରମୋଶନ ତ ହଉନି। କଣ ନିଜ କାମ ଭଲ ଭାବରେ ସେଥିପାଇଁ କରିବା ଯେ ପ୍ରମୋଶନ ମିଳୁ।

ଆମେ ଧର୍ମ କରୁ ଅର୍ଥ ପାଇଁ। ଅର୍ଥର ପ୍ରୟୋଜନ କାମ ପାଇଁ । କାମନା ପୂର୍ତୀର କାରଣ ହେଲା ଭୋଗ। ଭୋଗ କରୁ ରୋଗ ପାଇଁ। ଆଉ ରୋଗ ଡାକି ଆଣେ ମରଣ କୁ। କଥା କେବଳ ଏତିକି। ଯେମିତି ମଶାଟେ ମରି ଯାଉଛି ସେଇମିତି ଆମେ ବି ମରିଯିବା। କେତେ ମଶା ମଲେ କିଏ ମନେ ରଖେ କି ? କେତେ ଲୋକ ଆସିଲେ ଆଉ ଗୋଟିଏ ଦିନରେ ମରିଗଲେ କାହାରି ମନେ ନାହିଁ। ନା ଏହା ଉଚିତ୍ ନୁହଁ। ପ୍ରକୃତରେ ଅର୍ଥର ପ୍ରୟୋଜନ ଧର୍ମ ପାଇଁ ଏବଂ ଧର୍ମର ପ୍ରୟୋଜନ ମୋକ୍ଷ ପାଇଁ। କାମ କେବଳ ଶରୀର ଧାରଣ ପାଇଁ ଆଉ ଶରୀର ଧାରଣ ତତ୍ତ୍ୱ **ଜିଜ୍ଞାସା** ପାଇଁ।

ଏଠାରେ ଏ ବିଷୟ ପାଇଁ କେବଳ ଚାରି ପାଞ୍ଚୋଟି ଶ୍ଳୋକ ଅଛି କିନ୍ତୁ ଏ ବିଷୟରେ ବଡ-ବଡ଼ ଗ୍ରନ୍ଥ ଲେଖାଯାଇ ପାରିବ। ଆଜି କାଲି ମନୋବିଜ୍ଞାନର ବହି ମିଳୁଛ, ପାଷ୍ଚାତ୍ୟ ମନୋବିଜ୍ଞାନର ମଧ୍ୟ ମିଳୁଛି କିନ୍ତୁ ସେମାନେ ମଧ୍ୟ ଏ ବିଷୟରେ ଗମ୍ଭୀର ବିବେଚନା କରି ନାହାଁନ୍ତି।

## ତତ୍ତ୍ୱର ସ୍ୱରୂପ

ଏବେ ଆମେ ନିଶ୍ଚିୟ ପୂର୍ବକ କହିପାରିବା ଯେ ଆମ ଜୀବନର ମୁଖ୍ୟ ପ୍ରୟୋଜନ ତତ୍ତ୍ୱ ଜିଜ୍ଞାସା। କିନ୍ତୁ ଏବେ ପ୍ରଶ୍ନ ଉଠେ ଯେ ତତ୍ତ୍ୱ କ'ଣ ? ସତ୍ୟ କ'ଣ ? ତେଣୁ ତତ୍ତ୍ୱ ସମ୍ବନ୍ଧରେ କୁହା ଗଲା ଯେ -

**ବଦନ୍ତି ତତ୍ତତ୍ତ୍ୱବିଦସ୍ତତ୍ତ୍ୱଂ ୟଜଜ୍ଞାନମଦ୍ୱୟମ୍ ।**

**ବ୍ରହ୍ମେତି ପରମାତ୍ମେତି ଭଗବାନିତି ଶବ୍ଦ୍ୟତେ ॥ (୧.୨.୧୧)**

ଏହି ତତ୍ତ୍ୱ କୁ ହିଁ ବ୍ରହ୍ମ କୁହାଯାଏ, ତାକୁ ହିଁ ପରମାତ୍ମା ମଧ୍ୟ କୁହାଯାଏ, ତାକୁ ହିଁ ଭଗବାନ କୁହାଯାଏ। ତାର ସ୍ୱରୂପ କଣ ? **'ଅଦ୍ୱୟଂ ଜ୍ଞାନଂ'** ସେହି ଅଦ୍ୱିତୀୟ ଚୈତନ୍ୟ, ସଚ୍ଚିଦାନନ୍ଦ ସ୍ୱରୂପ ହିଁ ତତ୍ତ୍ୱ, ଏବଂ ସେ ହିଁ ଆମର ସ୍ୱରୂପ ମଧ୍ୟ ! ଆଉ ଆମେ ମଧ୍ୟ ଦେଖିଛେ ଯେ ଭାଗବତ ଗ୍ରନ୍ଥ, ଭଗବାନ ଏବଂ ଭକ୍ତ ମାନଙ୍କ ମଧ୍ୟରେ କୌଣସି ପ୍ରଭେଦ ନାହିଁ। ଗୋଟିଏ ଅଦ୍ୱୟ ତତ୍ତ୍ୱ ଅନେକ ନାମ ରୂପରେ ଆମକୁ ଦେଖା ଯାଉଛି, ସେହିଁ **ତତ୍ତ୍ୱ**। ଉଦାହରଣ ସ୍ୱରୂପ ଆମେ ସ୍ୱପ୍ନରେ ଦେଖୁଥିବା ଅସଂଖ୍ୟ ବସ୍ତୁ ନିଜ ନିଜ ନାମ-ରୂପ ସହ ଅଲଗା ଅଲଗା ରୂପରେ ଦେଖା ଯାଆନ୍ତି ଆଉ ଆମେ ମଧ୍ୟ ପ୍ରତ୍ୟେକକୁ ପ୍ରତ୍ୟେକ ଠାରୁ ଅଲଗା ଭାବୁ। କିନ୍ତୁ କହିଲେ ଦେଖି ଏହା ପ୍ରକୃତ ଜ୍ଞାନ କି ? ଏହା କଣ ସତ୍ୟ ନୁହଁ ଯେ ଆମର ମନ ହିଁ ସ୍ୱପ୍ନରେ ଅନେକ ରୂପ ଧାରଣ କରି ପ୍ରକଟିତ ହୁଏ। ଯେତେବେଳେ ବୁଝିଯିବା ଯେ ଗୋଟିଏ ତତ୍ତ୍ୱ ସବୁ ରୂପରେ ଦେଖା ଯାଉଛି ସେତେବେଳେ ହିଁ ତାହାକୁ ପ୍ରକୃତ ଜ୍ଞାନ କୁହା ଯିବ।

ପ୍ରକୃତରେ ଚୈତନ୍ୟ ତତ୍ତ୍ୱ ହିଁ ମନରେ ବିଭିନ୍ନ ରୂପରେ ଦେଖା ଯାଉଛି, ସ୍ଫୁରିତ ହେଉଛି, ଏହାହିଁ ମନର ବିଭିନ୍ନ ନାମ -ରୂପରେ ଏବଂ ପ୍ରକଟ ହେଉଛି। ସେହି ଗୋଟିଏ ତତ୍ତ୍ୱ ର ବୋଧ ହେବା ହିଁ **ତତ୍ତ୍ୱ- ଜ୍ଞାନ** ଅଟେ। ଦର୍ଶନ ଶାସ୍ତ୍ର ରେ କେହି ତତ୍ତ୍ୱ ର ପ୍ରକାର ତିନି - ଚାରି ବା କେହି କେହି ପଚିଶି, ଛବିଶି, ଅଠାଇଶ ବା କେହି କେହି ଅନନ୍ତ ବୋଲି କହିଥାନ୍ତି। ସବୁ କିଛି ଆପେକ୍ଷିକ, ତତ୍ତ୍ୱ କେବଳ ଗୋଟିଏ, **'ସେହି ଜ୍ଞାନଂ ଅଦ୍ୱୟଂ'** ଅଟେ।

**ଜନ୍ମାଦ୍ୟସ୍ୟ ୟତୋଽନ୍ୱୟାଦିତରତଶ୍ଚାର୍ଥେଷ୍ୱଭିଜ୍ଞଃ ସ୍ୱରାଟ୍।**

ସେହି ତତ୍ତ୍ୱ, ସେହି ପରମାତ୍ମା ହିଁ ବ୍ରହ୍ମ, ଭଗବାନ। ଲୋକ ମାନେ ମାନନ୍ତି ଯେ ଭଗବାନ ମାନେ ସପ୍ତମ ଆକାଶରେ ବସି ଥିବା କେହି ଜଣେ ଯାହାକୁ ଆମ ଉପରେ

ଟିକିଏ ବି ଦୟା ଆସେ ନାହିଁ। ଲୋକେ ତ ତାଙ୍କୁ ଅନ୍ଧ, କାଳ ମଧ୍ୟ କହନ୍ତି। କିନ୍ତୁ ପ୍ରକୃତରେ ଭଗବାନ ତ ତୁମ୍ଭ ହୃଦୟ ଭିତରେ ଅଛନ୍ତି, ଅଦ୍ୱୟ ଏବଂ ଚୈତନ୍ୟ ରୂପେ ବିରାଜମାନ। ପ୍ରଥମ ସ୍କନ୍ଧର ଏହି ଦ୍ୱିତୀୟ ଅଧ୍ୟାୟ ବହୁତ ଗୁରୁତ୍ୱ ପୂର୍ଣ୍ଣ। ଏତିକି କେବଳ ବୁଝିଗଲେ ହେଲା। ଅନ୍ୟ କଥା ମାଧ୍ୟମରେ ଯାହା କିଛି କୁହା ଯିବ ତାର ସାର କେବଳ ଏତିକି।

ଚତୁର୍ଥ ସ୍କନ୍ଧରେ ସତୀ, ଦକ୍ଷ, ଧ୍ରୁବ, ରାଜା ପୃଥୁ ଏବଂ ପୁରଞ୍ଜନର କାହାଣୀ ଅଛି। ସେଥିରେ ଧର୍ମ - ଅର୍ଥ - କାମ-ମୋକ୍ଷ, କେବଳ ଏହି ବିଷୟ କୁହାଯାଇଛି। କାହା ପାଇଁ କେଉଁ କଥା ଅଛି ଆମେ ଜାଣିବା ଉଚିତ। ତେଣୁ ତା'ର ହିଁ ବିସ୍ତାର କରାଯାଇଛି। ତେଣୁ ଆଗ ସିଦ୍ଧାନ୍ତ କୁ ବୁଝି ନେବା ତେବେ ଆଗକୁ ସବୁ ବୁଝି ପାରିବା। ଯଦି ନ ବୁଝି, ନ ଶୁଣି ଭାଗବତ ପଢ଼ି ବସିବା ତେବେ ଗୋଟିଏ ଗପ ରୁ ଆଉ ଗୋଟିଏ, ତା ଭିତରୁ ଆଉ ଗୋଟିଏ ଗପପଢ଼ି ଚାଲିବା କିନ୍ତୁ ବୁଝି ପାରିବା ନାହିଁ। ତେଣୁ ଚାରିଟି ପୃଷ୍ଠା ପଢ଼ି ରଖି ଦେବ। ମୁଁ ବି ରଖି ଦେଇ ଥିଲି। କେତେଥର ପଢ଼ିବାକୁ ନେଇ ଥିବି କିନ୍ତୁ ରଖି ଦେଇ ଥିବି। କାରଣ ତା ଭିତରେ କଣ ଅଛି ଏହା ଦେଖି ପାରିବାର ଦୃଷ୍ଟି ନ ଥିଲା। ଥରେ ସେହି ଦୃଷ୍ଟି ମିଳିଗଲେ ଦେଖ କେତେ ଆନନ୍ଦ ଲାଗୁଛି। ସବୁ କାହାଣୀ ମାନଙ୍କର ଅର୍ଥ ବି ବୁଝି ହେଇଯିବ ଯେ କେଉଁ କଥା କାହାପାଇଁ କୁହା ଯାଇଛି।

ସୂତ ମୁନି ଭାବିଲେ ଯେ ଅନେକ ଲୋକ ଏପରି ଭାବୁ ଥିବେ ଯେ ଆପଣ ଖାଲି ତାତ୍ତ୍ୱିକ ଚର୍ଚ୍ଚା କରୁଛନ୍ତି। ଏସବୁ ତ କଠିନ ଦାର୍ଶନିକ ବ୍ୟାଖ୍ୟା। ଆମକୁ ବ୍ୟାବହାରିକ ଉପାୟ କୁହନ୍ତୁ। ଉନ୍ନତିର ସୋପାନ ଦରକାର। ଆପଣ କହିଲେ ଯେ ଧର୍ମର ପରମ ପ୍ରୟୋଜନ ଭଗବତ୍ ଭକ୍ତି। କିପରି ? ଭାଗବତ ର ଆଧାର ରେ ଆଚାର୍ଯ୍ୟ ଶ୍ରୀ ମଧୁସୂଦନ ସରସ୍ୱତୀ **'ଭଗବଦଭକ୍ତି ରସାୟନ'** ନାମକ ଗ୍ରନ୍ଥ ଲେଖିଛନ୍ତି। ସେଥିରେ ଭକ୍ତି ର ସବୁ ବିଷୟ ର ବର୍ଣ୍ଣନା କରାଯାଇଛି ଯାହା ଭାଗବତରେ ଅଛି।

ଏହି ତାତ୍ତ୍ୱିକ ଆଲୋଚନା ପରେ ସିଦ୍ଧାନ୍ତ ରୂପରେ ସାଧନା ବିଷୟ ରେ କହୁଛନ୍ତି ଯେ ଆମେ କେଉଁଠାରୁ ଆରମ୍ଭ କରିବା ? ଆମେ ତ ଲୋଅର କେ.ଜି ବା ପ୍ରାଥମିକ ଶ୍ରେଣୀ ରେ ଅଛୁ। ଆମ ମନରେ ଏହି ପ୍ରଶ୍ନ ଉଠିବ ଯେ କେଉଁଠୁ ଆରମ୍ଭ ? ଅର୍ଥାତ୍ ଧର୍ମାଚରଣ କରିବା, ଭଗବାନଙ୍କୁ ସନ୍ତୁଷ୍ଟ କରିବା, ପୁଣି ଶ୍ରବଣ, ମନନ, ନିଦିଧ୍ୟାସନ ଆଦି କରିବା ପାଇଁ ପ୍ରଥମେ କ'ଣ କରିବା ?

**ଶୁଶ୍ରୂଷୋଃ ଶ୍ରଦ୍ଦଧାନସ୍ୟ ବାସୁଦେବ କଥାରୁଚିଃ ।**
**ସ୍ୟାନ୍ମହତ୍ସେବୟା ବିପ୍ରାଃ ପୁଣ୍ୟତୀର୍ଥନିଷେବଣାତ୍ ॥ (୧.୨.୧୬)**

କୁହାଗଲା ଯେ ତୀର୍ଥଯାତ୍ରାରୁ ଆରମ୍ଭ କର । କିନ୍ତୁ 'ତୀର୍ଥ' ଶବ୍ଦର ଅର୍ଥ ଆଗ ବୁଝିବା । ତୀର୍ଥ ଯାତ୍ରାର ଅର୍ଥ ନୁହଁ ଯେ ପଇସା ଖର୍ଚ୍ଚ କରି ଚାରିଧାମ ବୁଲି ଆସିବା । ଏମିତି ତୀର୍ଥ ଯାତ୍ରା ପ୍ରାୟଃ ସମସ୍ତେ କରି ଥାନ୍ତି । କିନ୍ତୁ ଦୁଇ ଚାରି ଦିନରେ ଥକି ପଡ଼ନ୍ତି । ପୁଣି କିଛି ଜାଗା ବାକିରଖି ଭାବନ୍ତି ବହୁତ ହେଲା । ଆଉ ହବନି କହି ଫେରି ଆସନ୍ତି । ଖାଲି ଫଟୋ ଉଠାନ୍ତି । ପୁଣି ସେଥିରେ ବି ଥକି ପଡ଼ନ୍ତି, ବିକ୍ରି ହେଉ ଥିବା ଫଟୋ କିଣି ଘରକୁ ଫେରନ୍ତି । କିନ୍ତୁ 'ତୀର୍ଥ' ଶବ୍ଦ ର ଅର୍ଥ ହେଲା -

**ମୁଦଂ ମଙ୍ଗଲମୟ ସଂତ ସମାଜୁ ।**
**ଯୋ ଜଗ ଜଙ୍ଗମ ତୀରଥରାଜୁ ।**

**(ଶ୍ରୀ ରାମ ଚରିତ ମାନସ ୧.୧.୪)**

ସାଧୁ ସମାଜ, ସନ୍ଥ ମାନେ ହିଁ ପ୍ରକୃତ ତୀର୍ଥ, ତାଙ୍କ ମାଧ୍ୟମରେ ହିଁ ଆମେ ଏହି ଭବସାଗରକୁ ପାର କରି ପାରିବା । ସେମାନହିଁ ଜୀବନ୍ତ ପ୍ରୟାଗ ରାଜ । ଏହାର ଅର୍ଥ ନୁହଁ ଯେ ହୃଷିକେଶ ଆଦି ତୀର୍ଥକୁ ଯାଆନ୍ତୁ ନାହିଁ । କିନ୍ତୁ କୁହା ଯାଇଛି ଯେ - 'ମହତ୍ସେବୟା' । ତୀର୍ଥ କ୍ଷେତ୍ରକୁ ଗଲେ ଆଗ ଦେଖିବେ ସେଠି କେଉଁ ସନ୍ଥ ମହାତ୍ମା ଅଛନ୍ତି ? ଆଜିକାଲି ବଡ଼ କୋଠା ବେଶୀ ଦିଶୁଛି । ଋଷିକେଶ ଗଲେ ଚୋଟିବାଲା ପାଖକୁ ସମସ୍ତେ ଯାଆନ୍ତି । କୌଣସି ମହାପୁରୁଷଙ୍କ ପାଖକୁ ଯାଆନ୍ତୁ ବା ନ ଯାଆନ୍ତୁ । କିଛି ଲୋକ ଜାଣି ନଥିବେ ଯେ ଚୋଟିବାଲା ଗୋଟିଏ ହୋଟେଲ ର ନାମ । ଋଷିକେଶ ରୁ ଫେରିଥିବା ଲୋକ ଙ୍କୁ ପଚରାଯାଏ ଚୋଟିବାଲା ପାଖକୁ ଯାଇଥିଲ କି ? ତୀର୍ଥ ଯାତ୍ରା ମାନେ **'ମହତ୍ସେବା'** ମାନେ ମହାପୁରୁଷ ଙ୍କ ସେବା । ମହାପୁରୁଷଙ୍କ ସେବା କଲେ କ'ଣ ହେବ ? 'ଶୁଶ୍ରୂଷୋ ଶ୍ରଦ୍ଦଧାନସ୍ୟ' ମନରେ ଶ୍ରଦ୍ଧା ଉତ୍ପନ୍ନ ହେବ । ତେଣୁ ମହତ୍ସେବା ହେଲା ପ୍ରଥମ ।

**ପ୍ରଥମ ଭଗତି ସନ୍ତହ୍ନ କର ସଂଗା ।**

**(ଶ୍ରୀ ରାମଚରିତ ମାନସ ୩.୩୪.୮)**

ପ୍ରଥମ ଭକ୍ତିହେଲା ସତ୍‌ସଂଗ । ସନ୍ତମାନଙ୍କ ସଙ୍ଗ ଆରମ୍ଭ କର। ସତ୍‌ସଙ୍ଗ କଲେ ମନରେ ଶ୍ରଦ୍ଧା ଉତ୍ପନ୍ନ ହେବ ଏବଂ ଶ୍ରବଣ ର ଇଚ୍ଛା ହେବ। ତାର ଫଳ କଣ ?

**ବାସୁଦେବ କଥା ରୁଚିଃ !**

**ଦୂସରି ରତି ମମ କଥା  ପ୍ରସଂଗା ।।**

**(ଶ୍ରୀ ରାମ ଚରିତ ମାନସ ୩.୩୪.୮)**

ଭଗବାନଙ୍କ କଥାରେ ମନ ରମଣ କରିବ, ରସ ମିଳିବ। ତେଣୁ ପ୍ରଥମେ ତୀର୍ଥଯାତ୍ରା ର ଅର୍ଥ ହେଲା ସତସଂଗ, ମହାପୁରୁଷ ମାନଙ୍କ ସେବା । ସେଥିରୁ ଶ୍ରଦ୍ଧା ଉତ୍ପନ୍ନ ହୁଏ, ତା'ପରେ ବ୍ୟକ୍ତି ଶ୍ରଦ୍ଧା ପୂର୍ବକ ଭଗବାନଙ୍କ କଥା ଶ୍ରବଣ କରିବାକୁ ଲାଗେ ତାପରେ -

**ଶୃଣ୍ୱତାଂ ସ୍ୱକଥାଂ କୃଷ୍ଣଃ ପୁଣ୍ୟଶ୍ରବଣକୀର୍ତନଃ ।**

**ହୃଦ୍ୟନ୍ତଃସ୍ଥୋ ହ୍ୟଭଦ୍ରାଣି ବିଧୁନୋତି ସୁହୃତ୍‌ସତାମ୍ ।। (୧.୨.୧୭)**

ଯେତେବେଳେ ଆମେ ଭଗବାନଙ୍କ କଥା ଶ୍ରବଣ କରୁ ସେତେବେଳେ ଭଗବାନ ଶ୍ରୀକୃଷ୍ଣ ଆମ କାନ ମାଧ୍ୟମରେ ହୃଦୟରେ ପ୍ରବେଶ କରନ୍ତି ଏବଂ ସେଠାରେ ଥିବା ସମସ୍ତ ପ୍ରକାରର ଅଳିଆ କୁ ସଫା କରି ଦିଅନ୍ତି। ତେଣୁ ତୁଳସୀ ଦାସ ଜୀ କହୁଛନ୍ତି -

**'ମମ ହୃଦୟକଂଜ ନିବାସ କୁରୁ କାମାଦି ଖଲ-ଦଲ ଗଂଜନମ୍।'**

"ମୋ ହୃଦୟରେ ଆପଣ ନିବାସ କରନ୍ତୁ।" କାରଣ ଭଗବାନ ନିବାସ କଲେ ସବୁ ଅଳିଆ ସଫା କରିଦେବେ। ଆମ ମନ ବ୍ୟର୍ଥ କଥା ଶୁଣି-ଶୁଣି ଖରାପ ହେଇ ଯାଇଛି। କୌଣସି ବ୍ୟକ୍ତି ପ୍ରତି ମନରେ ଯେଉଁ ଦ୍ୱେଷ ଉତ୍ପନ୍ନ ହୁଏ ତାହା ପ୍ରାୟଃ ଶ୍ରବଣ ଦ୍ୱାରା ହିଁ ହୋଇଥାଏ। ଆମେ ପ୍ରାୟ ମିଛ -ସତ କଥା ଶୁଣି ଶୁଣି ନିଜ ମନକୁ ଖରାପ କରିଦେଉ। କୌଣସି ବ୍ୟକ୍ତି ପ୍ରତି ଭଲକଥା ଶୁଣି-ଶୁଣି  ତା ପ୍ରତି ଆମ ମନରେ ଭଲ ଭାବ ଉତ୍ପନ୍ନ ହୁଏ। ତେଣୁ ଆମେ କ'ଣ ଶୁଣୁଛୁ ତା ଉପରେ ବିଶେଷ ରୂପରେ ବିଚାର କରିବା ଉଚିତ୍ , ଧ୍ୟାନ ଦେବା ଉଚିତ। ଭଗବାନଙ୍କ କଥା ଶୁଣିଲେ, ଭଗବାନ ଆମ ମନ ଭିତରେ ପ୍ରବେଶ କରିବେ, ଏବଂ ହୃଦୟ ରେ ଜମା ହୋଇଥିବା ସବୁ ମଇଳା ସଫା କରି ଦେବେ। ମଇଳା ସଫା ହୋଇଗଲେ କ'ଣ ହୁଏ ?

**ନଷ୍ଟପ୍ରାୟେଷ୍ୱଭଦ୍ରେଷୁ ନିତ୍ୟଂ ଭାଗବତସେବୟା ।**
**ଭଗବତ୍ୟୁତ୍ତମଶ୍ଳୋକେ ଭକ୍ତିର୍ଭବତି ନୈଷ୍ଠିକୀ ॥ (୧.୨.୧୮)**

ଆମ ମନ ଭିତରୁ ମଇଳା ପୂର୍ଣ୍ଣ ରୂପେ ବାହାରି ଗଲେ, ମନ ଭିତରେ ଭଗବାନ୍‌ଙ୍କ ପାଇଁ ନୈଷ୍ଠିକୀ ଭକ୍ତି ଉତ୍ପନ୍ନ ହୁଏ ଯାହା କେବେ ବି କୌଣସି ପ୍ରକାରରେ ମଧ୍ୟ ବିଚଳିତ ହୁଏ ନାହିଁ। ଭଗବାନ ଙ୍କ ପ୍ରତି ରତି ଉତ୍ପନ୍ନ ହୁଏ। ବର୍ତ୍ତମାନ ଆମ ମନ ରେ ଅନ୍ୟ ବିଷୟ ଗୁଡିକର କାମନା ଥିବା ହେତୁ ଭଗବାନ ଙ୍କ ପ୍ରତି ଶୁଦ୍ଧ ପ୍ରେମ ନାହିଁ। ତେଣୁ ସେଥିରେ ନିଷ୍ଠା ନାହିଁ। ତାହା ଏପଟ ସେପଟ ହୁଏ। କିନ୍ତୁ ମନ ରଜୋଗୁଣ ଏବଂ ତମୋଗୁଣ ରୁ  ମୁକ୍ତ ହେଲେ ଖୁବ୍ ଭଲ। ଋଷି ମାନଙ୍କର ପ୍ରଶ୍ନ ଥିଲା ଯେ ମନୁଷ୍ୟର ସର୍ବଶ୍ରେଷ୍ଠ ଶ୍ରେୟ କଣ ? ଉତ୍ତର ମିଳିଲା - ଭଗବଦ୍ ଭକ୍ତି ଉତ୍ପନ୍ନ ହେବା। ଠିକ୍ କି ନୁହଁ ? ଆମ ଧର୍ମର ଉଦ୍ଦେଶ୍ୟ ମଧ୍ୟ ଭଗବଦଭକ୍ତି। ତେଣୁ ଧର୍ମ, ଅର୍ଥ, କାମ ଏବଂ ମୋକ୍ଷ ଏହି ଚାରୋଟିର ଭଲରୂପେ ବିବେଚନା କରି ବୁଝିବା ଯେ କେଉଁଟି କାହା ପାଇଁ ? ଏଠାରେ ଆରମ୍ଭ କରିବାର ଏକ ବ୍ୟାବହାରିକ ଉପାୟ ମଧ୍ୟ କୁହାଯାଇଛି - ସତ୍‌ସଙ୍ଗ ରୁ । ଆମେ ସତ୍‌ସଙ୍ଗ ରେ ବସିଛୁ ବୋଲି ଏତେ କଥା ବୁଝି ପାରୁଛୁ ନା ? ସତ୍‌ସଙ୍ଗ କରୁନଥିଲେ ଏହାକୁ ବୁଝିପାରି ନଥାନ୍ତେ। ସତ୍‌ସଙ୍ଗ ମାଧ୍ୟମରେ ହିଁ ଏହି କଥା ଗୁଡ଼ିକ ବୁଝି ହୁଏ।

କୁହାଯାଏ ଯେ ଏହି ଅଦ୍ୱୟ ଭଗବାନ, ପରମାତ୍ମା. ଯାହାଙ୍କୁ ଅଦ୍ୱୟ ବ୍ରହ୍ମ କୁହାଯାଏ, ତାଙ୍କୁ ହିଁ ତାଙ୍କର ମାୟା ଶକ୍ତି ଯୋଗୁଁ ଈଶ୍ୱର କୁହାଯାଏ। ମାୟା ତ୍ରିଗୁଣାତ୍ମିକା (ସତ୍ତ୍ୱଗୁଣ, ରଜୋଗୁଣ, ତମୋଗୁଣ) ଅଟେ। ଏହି ଗୁଣ ଯୋଗୁଁ  ଭଗବାନଙ୍କର କୌଣସି ରୂପ ଉଗ୍ର ଦିଶେ ତ କେଉଁ ଟି ଶାନ୍ତ, କୌଣସି ଟି ରଜୋଗୁଣ ପ୍ରଧାନ ତ କୌଣସିଟି ସତଗୁଣ ପ୍ରଧାନ। ଭଗବାନଙ୍କର ଭିନ୍ନ ଭିନ୍ନ ଅବତାର ମାନଙ୍କ ମଧ୍ୟରେ ଭିନ୍ନ ଭିନ୍ନ ରୁପ ଦେଖା ଯାଏ। ବୁଦ୍ଧିମାନ ମୁମୁକ୍ଷୁ ଭଗବାନଙ୍କ ସାତ୍ତ୍ୱିକ ରୂପ କୁ ଧ୍ୟାନ କରନ୍ତି । ଯିଏ ସମସ୍ତଙ୍କୁ ପ୍ରେମ କରନ୍ତି, ସେହି ଭଗବାନଙ୍କୁ ଧ୍ୟାନ କରନ୍ତି।

## ଭଗବାନଙ୍କ  ଅବତାର ମାନଙ୍କ ପ୍ରୟୋଜନ

ଭଗବାନ ତ ଅନେକ ଅବତାର ନିଅନ୍ତି, ସେଗୁଡ଼ିକର  ଆବଶ୍ୟକତା କଣ ? ଏପରି ପ୍ରଶ୍ନ ପଚରାଗଲେ କ'ଣ କୁହାଯିବ ? ଭଗବାନ ତ ଅନନ୍ତ -ବୁଦ୍ଧି। ସେ କ'ଣ କରିବେ ଆମେ ବା ପଚାରିବାକୁ କିଏ ? ତାଙ୍କୁ ଭଲ ଲାଗୁଛି ସେଇଥିପାଇଁ କରୁଛନ୍ତି।

ଭଗବାନଙ୍କ କାର୍ଯ୍ୟରେ ଆମେ 'ଇଦଂ -ଇତ୍ଥଂ' କହି ପାରିବା ନାହିଁ, କାହିଁକି, କଣ, କିଛି ବି କହି ପାରିବା ନାହିଁ। ଯଦିଓ ଆମେ ଭଗବାନଙ୍କ ଲୀଳା, ତାଙ୍କ ଅବତାର ମାନଙ୍କ ଆବଶ୍ୟକତା ବିଷୟରେ ବହୁତ କିଛି କହି ପାରିବା। ସେ ମଧ୍ୟ ନିଜେ ଅନେକ ଥର ଏ ବିଷୟରେ କହିଛନ୍ତି ମଧ୍ୟ, ତଥାପି ଏଇଆ ହିଁ ସତ ଯେ ସବୁ କିଛି ତାଙ୍କରି ଲୀଳା। ଏଥିରେ ପ୍ରଶ୍ନ କରିପାରିବା ନାହିଁ। ତାଙ୍କ ଇଚ୍ଛା, ତାଙ୍କ ମନ ହେଲା।

ସେ କାହିଁକି ଲହୁଣୀ ଚୋରୀକଲେ ? ଅନେକ ଲୋକ ଏହାର ଅନେକ କାରଣ ଏବଂ ଅର୍ଥ ଦେଇ ଥାଆନ୍ତି। କିନ୍ତୁ କାହିଁକି ଖାଇଲେ ? ମନ ହେଲା ଖାଇଲେ ବାସ୍। ଆଉ ଚୋରି ? କାହାର ଚୋରେଇଲେ ? ସମ୍ପୂର୍ଣ୍ଣ ଦୁନିଆ ତ ତାଙ୍କର। ଆମେ ହିଁ ଚୋରି କରି ଖାଉଛୁ, ସେ ନୁହେଁ। ସତ କଥା ଏତିକି। ଭଗବାନ ଚୋରେଇ କରି ଖାଇବେ କି ? ଆମେ ତ ଭଗବାନଙ୍କୁ ମଧ୍ୟ ଚୋର କହୁଛୁ। ଏହି ବିଚିତ୍ର ପ୍ରସଂଗ କୁ ଆମେ କୃଷ୍ଣ ଲୀଳା ରେ ବିସ୍ତାର ପୂର୍ବକ ଦେଖିବା।

ଆମେ ଯେତେ ପ୍ରୟୋଜନ ବତେଇଲେ ମଧ୍ୟ ସତ୍ୟ ହେଲା ଯେ ଧର୍ମ ସଂସ୍ଥାପନା ପାଇଁ, ସବୁ ପ୍ରାଣୀଙ୍କର କଲ୍ୟାଣ କରିବା ପାଇଁ ଯେହେତୁ ସେ ସମସ୍ତଙ୍କୁ ଭଲପାଆନ୍ତି, ତେଣୁ ସେ ଆସନ୍ତି। ଆଚ୍ଛା କହିଲେ ଦେଖି, ପିଲାଟି ଯଦି ମା କଥାରେ ରାଗି-ରଷି ଘରୁ ବାହାରି ଯାଏ  ଯେ ଯା' ମୁଁ ଘରକୁ ଯିବିନି କି କିଛି ଖାଇବିନି। ମା ତାକୁ ଟିକିଏ ସମୟ ପାଇଁ ଛାଡ଼ି ଦିଏ, କିନ୍ତୁ ପୁଣି ଡାକିବାକୁ ଯାଏ, ଖୁଆଏ ମଧ୍ୟ। କାହିଁକି ? ଦରକାର କ'ଣ ? ଦରକାର ଭଲା କଣ ହୋଇପାରେ, ମୁର୍ଖ ପିଲାଟା ବୁଝୁନି, କିନ୍ତୁ ମା ନିଜ ମମତା ଯୋଗୁଁ ତା ପାଖକୁ ଯାଇ ତାକୁ ବୁଝାଏ, କିନ୍ତୁ ଆମେ ଏତେ ସହଜରେ ତ ଯିବାନି ! ଭଗବାନ ଆସନ୍ତୁ କି ଯାହା ଇଚ୍ଛା କରନ୍ତୁ , ସେ କହିବେ ମୋ ସାଙ୍ଗରେ ଚାଲ ତ ଆମେ  କହିବା କଣ କରିବୁ ଯାଇକରି  ? ଆଜିକାଲି ତ ପଚାରିବେ, 'ଆଜ୍ଞା ସ୍ୱର୍ଗରେ ଟି.ଭି, ଭିଡିଓ ଅଛି ନା ନାହିଁ? ଆମେ ସମସ୍ତେ ଏଇମିତି, କିନ୍ତୁ  ଗୋଟିଏ କଥା ଭଗବାନ ତଥାପି ଆସନ୍ତି। କାହିଁକି ?

**ତସ୍ମିଂସ୍ତଜ୍ଜନେ  ଭେଦଭାବାତ୍ ।**

**ନାରଦ - ଭକ୍ତି ସୂତ୍ର । (୪୧)**

କାରଣ ଭଗବାନ ଏବଂ ତାଙ୍କର ପ୍ରଜା ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ । ଆମେ ତାଙ୍କୁ ନ ଚିହ୍ନି ପାରିଲେ ମଧ୍ୟ ସେ କହନ୍ତି - ହଁ ମୋରି ସନ୍ତାନ ତ, ତାକୁ ଧରି ଆଣିବାକୁ ପଡ଼ିବ। ସେ ଖାଲି ବାହାନା ଖୋଜନ୍ତି। ଆଗକୁ ଆମେ ଦେଖିବା  - ଭଗବାନ

କେବଳ ନିମିତ୍ତ ଖୋଜନ୍ତି। ଯେତେବେଳେ କୌଣସି ନିମିତ୍ତ ମିଳିଗଲା ତାକୁ ମୁକ୍ତ କରି ଦିଅନ୍ତି। ଆମ ଭଗବାନ ଏଇମିତି ଆଉ ସେ ବାରମ୍ବାର ଅବତାର ନିଅନ୍ତି।

ପୁଣି କୁହାଯାଇଛି ଯେ ସେହି ସଚ୍ଚିଦାନନ୍ଦ ବ୍ରହ୍ମ, ସେହିଁ ନିର୍ବିଶେଷ। ସେହିଁ ତ୍ରିଗୁଣାତ୍ମିକା ମାୟା ସହ ଯୁକ୍ତ ହେଲେ ତାଙ୍କୁ ଈଶ୍ୱର କୁହାଯାଇଛି। ତାଙ୍କୁ ହିଁ ହିରଣ୍ୟଗର୍ଭ କୁହାଯାଏ। ଆଉ ସେ ସ୍ଥୁଳ ଶରୀର ଧାରଣ କଲେ ତାଙ୍କୁ ବିରାଟ କୁହାଯାଏ। ଏହି ବିରାଟ ପୁରୁଷ ହିଁ 'ନାରାୟଣ', ଯିଏ ସମସ୍ତ ଅବତାର ମାନଙ୍କର ବୀଜ। ପ୍ରତ୍ୟେକ ବ୍ୟକ୍ତିର ଶରୀର ର ମାପ ତା ନିଜ ହାତରେ ସାଢ଼େ ତିନି ହାତ । ଏହା ହିଁ ଆମର ସ୍ଥୁଳ ରୂପ। ଆମର ବିରାଟ ରୂପ କେବଳ ଏତିକି। ଭଗବାନଙ୍କ ବିରାଟ ରୂପ କେତେ ବଡ଼ ହୋଇଥିବ ? ଗୋଟିଏ ଦୁଇଟି - ଶରୀର ମାଧ୍ୟମରେ ତାଙ୍କର ବର୍ଣ୍ଣନା ହେଇ ପାରିବ ନାହିଁ। ଅନନ୍ତ କୋଟି ବ୍ରହ୍ମାଣ୍ଡ ତାଙ୍କର ବିରାଟ ରୂପ ଅଟେ। ଗୋଟିଏ ବ୍ରହ୍ମାଣ୍ଡରେ ୧୪ଟି ଲୋକ, ଭୂଃ, ଭୂବ, ସ୍ୱଃ, ମହଃ ଜନଃ, ତପଃ, ସତ୍ୟ ଏମିତି ଭାବେ ପୃଥିବୀ ଉପରେ ସାତୋଟି ଲୋକ ଅଛି। ପୃଥିବୀ ତଳକୁ ମଧ୍ୟ ଆଉ ସାତୋଟି ଲୋକ ଅଛି, ଯଥା ଅତଳ, ବତଳ, ସୁତଳ, ତଳାତଳ, ମହାତଳ, ରସାତଳ ଆଦି। ଏହି ପରି ଚଉଦଲୋକ କୁ ମିଶାଇ ଏକ ବ୍ରହ୍ମାଣ୍ଡ। ଏପରି କୋଟି କୋଟି ବ୍ରହ୍ମାଣ୍ଡ ମାନଙ୍କୁ ଧାରଣ କରିବା ବାଲା ହିଁ ବିରାଟ ପୁରୁଷ, କିଏ ବା ତାଙ୍କର ବର୍ଣ୍ଣନା କରିପାରିବ।

**ସହସ୍ରଶୀର୍ଷା ପୁରୁଷଃ। ସହସ୍ରାକ୍ଷ ସହସ୍ରପାତ୍ !**

**ପୁରୁଷ ସୁକ୍ତଃ।**

ଅନନ୍ତ କୋଟି ବ୍ରହ୍ମାଣ୍ଡ ରୂପୀ ଦେହର ଧାରଣ କର୍ତ୍ତା ଙ୍କୁ ବିରାଟ ପୁରୁଷ କୁହାଯାଏ। ସେହି ବିରାଟ ପୁରୁଷ ଅସଂଖ୍ୟ ଅବତାର ନିଅନ୍ତି। ଭଗବାନ କେଜାଣି କେତେ ଅବତାର ନିଅନ୍ତି। ଗୁଣାବତାର, ନିତ୍ୟାବତାର, ଅଂଶାବତାର, କଳାବତାର, ଚରିତ୍ରାବତାର, ସ୍ପୂର୍ତ୍ତିଅବତାର, ଆଦି-ଆଦି । ଯଥା - ବ୍ରହ୍ମା, ବିଷ୍ଣୁ, ମହେଶ ଏମାନେ ଭଗବାନଙ୍କର ଗୁଣାବତାର। ଅସଂଖ୍ୟ ଅବତାର ମାନଙ୍କ ମଧ୍ୟରୁ ଏଠି ବାଇଶ ଚବିଶ ମାତ୍ର କୁହାଯାଇଛି।

ବିଭିନ୍ନ ସମୟରେ ଭଗବାନ ଭିନ୍ନ ଭିନ୍ନ ଅବତାର ନିଅନ୍ତି। ଏମାନଙ୍କ ମଧ୍ୟରୁ କିଛି ବିଷୟରେ ଆଗକୁ କୁହାଯିବ। ସର୍ବପ୍ରଥମେ ଭଗବାନଙ୍କ ନାଭିରୁ ଏକ ପଦ୍ମଫୁଲ ବାହାରେ। ସେଥିରୁ ବ୍ରହ୍ମା ବାହାରନ୍ତି। ଏହା ବ୍ରହ୍ମାଙ୍କ ଅବତାର। ତା ପରେ ବରାହ ଅବତାର। ବରାହ ମାନେ ବାରହା, ନାରଦ ଦେବର୍ଷି, ସେ ମଧ୍ୟ ଭଗବାନଙ୍କ ଅବତାର। ନର-ନାରାୟଣ ଋଷି, ସେ ମଧ୍ୟ ଅବତାର। କପିଳ ମୁନି, ଦତ୍ତାତ୍ରେୟ ଭଗବାନ, ଯଜ୍ଞ

ଭଗବାନ, ଉରୁକ୍ରମ, ରାଜାପୃଥୁ, ମତ୍ସ୍ୟ, କଚ୍ଛପ, ଧନ୍ୱନ୍ତରୀ, ମୋହିନୀ, ନୃସିଂହ, ବାମନ, ବ୍ୟାସ ଭଗବାନ, ଶ୍ରୀରାମ, ଶ୍ରୀ ବଳରାମ ଏବଂ ଶ୍ରୀକୃଷ୍ଣ ସମସ୍ତେ ଅବତାର । କୁହାଯାଏ ଯେ ଆଗକୁ ବୁଦ୍ଧାବତାର ଅଛି । ସୂତ ମୁନୀ ଏହା କହୁଥିଲା ବେଳେ ଆଗକୁ ବୁଦ୍ଧାବତାର ହେବାର ଥିଲା । ଏବେ ତ ହେଇ ସାରିଲେଣି । ଆଗକୁ କଳିଯୁଗର ସମାପ୍ତି ସମୟରେ କଲ୍‌କୀ ଅବତାର ହେବ । ଆମେ ବର୍ତ୍ତମାନ କଳିଯୁଗ ଆରମ୍ଭର ପ୍ରଥମ ସୋପାନରେ ଅଛୁ । କଳିଯୁଗ ଅତ୍ୟନ୍ତ ଭୟଙ୍କର ହେଲେ କଲ୍‌କୀ ଅବତାର ହେବ । ତା ପାଇଁ ଅନେକ ବର୍ଷ ଅଛି । ଚିନ୍ତା ର କିଛି କାରଣ ନାହିଁ । କୁହାଯାଏ ଯେ ସେ ଘୋଡ଼ା ଉପରେ ବସି ହାତରେ ଖଣ୍ଡା ଧରି ଦୁଷ୍ଟସଂହାର କରିବେ ।

ଦିନେ ମୋତେ ଜଣେ ପଚାରିଲେ ଯେ ବିଜ୍ଞାନରେ ଏତେ ଉନ୍ନତି ହଉଛି । କଳିଯୁଗ ଶେଷ ପର୍ଯ୍ୟନ୍ତ ତ ଆହୁରି ହେବ । ସେତେବେଳେ ବି କ'ଣ ଭଗବାନ ହାତରେ ଖଣ୍ଡା ଧରି ଘୋଡ଼ାରେ ବସି ଆସିବେ ? ମେଶିନ୍ -ଗନ୍ ଆଣିବେନି ? ମୁଁ କହିଲି -ବାବୁ ମୁଁ କହିପାରିବିନି ଯେ ଏଇ ଚକ୍ର କିପରି କେଉଁଆଡ଼କୁ ବୁଲିଯିବ । ବୋଧହୁଏ ଆମେ ପୁଣି ପୁରୁଣା ଯୁଗ ରେ ପହଞ୍ଚିଯିବା । କିନ୍ତୁ ସିଧା -ସିଧା କଥା ଯେ ଯେହେତୁ ଭାଗବତ କଥା ଶୁଣିଲଣି, ଆଉ ପୁନର୍ଜନ୍ମ ହେବନାହିଁ । କାରଣ ଭାଗବତ କଥା ପରେ ମୁକ୍ତି ମିଳିଯିବ । ତେଣୁ ଡରିବା ପାଇଁ କିଛି ନାହିଁ । ଏଠି କିଛି ଅବତାରଙ୍କ କଥା ମୁଁ କହୁଛି । ଋଷଭ ଦେବ ଆଦି ଅନେକ ଅବତାର ଙ୍କ କଥା ଅଛି ।

**କଳାଃ ସର୍ବେ ହରେରେବ ସପ୍ରଜାପତୟସ୍ତଥା ॥ (୧.୩.୨୭)**
**ଏତେ ଚାଂଶକଳାଃ ପୁଂସଃ କୃଷ୍ଣସ୍ତୁ ଭଗବାନ ସ୍ୱୟମ୍ ॥(୧.୩.୨୮)**

ଏଠି ଯେଉଁ ମାନଙ୍କ କଥା କୁହାଯାଇଛି ସେମାନେ ଭଗବାନଙ୍କର କଳାବତାର, କିନ୍ତୁ କୃଷ୍ଣ ତ ସାକ୍ଷାତ୍ ଭଗବାନ - ପୂର୍ଣ୍ଣ ପରମାତ୍ମା ଅଟନ୍ତି । ଭଗବାନଙ୍କର ଯେଉଁ କଳା ବିଷୟରେ କୁହାଯାଇଛି - ଚାରିକଳା, ପାଞ୍ଚକଳା, ଛଅକଳା, ଆଠକଳା ଆଦି - ଏହା କ'ଣ ? ଏହାକୁ ଭଲ କରି ବୁଝିବା ଉଚିତ୍ । ଏହାକୁ ଆମେ ଉଦାହରଣ ଦ୍ୱାରା ବୁଝି ପାରିବା । ଯେମିତି ୨୪୦ ଭୋଲଟ୍ ର ଗୋଟିଏ ଟେପ୍ ରେକର୍ଡ଼ର ନେଇ ସେଥିରେ ୧୦୦୦ ଭୋଲଟ୍ ବିଦ୍ୟୁତ୍ ପାସକରେଇଲେ କଣ ହେବ ? ଧୂଆଁ । ସେହି ଇଲେକ୍‌ଟ୍ରିକ୍ ଟେପ ରେକର୍ଡ଼ ପାଇଁ ଚିତା ସମାନ ହେବ । ପୁରା ଜଳେଇ ଦେବ । କାହିଁକି ? କାରଣ ସେହି ମେଶିନ ରେ ସେତେ କରେଣ୍ଟ କୁ ଧାରଣ କରିବାର ଶକ୍ତି ନାହିଁ । ଭଗବାନ ତ ଅନନ୍ତ ତେଜମୟ । ଆମକୁ ବୁଝେଇବା ପାଇଁ କୁହାଯାଇଛି - ଷୋହଳ କଳା ବା ଷୋହଳ ୟୁନିଟ୍ । ପଥର ଆଦି ଖାଲି ଆକାର ଧାରଣ କରୁଥିବା ବସ୍ତୁ ଯେଉଁ ମାନଙ୍କର କେବଳ

ଅନ୍ନମୟ କୋଷ ରହିଛି ସେମାନେ ଏକ କଳା ବିଶିଷ୍ଟ। ଯେଉଁମାନଙ୍କର ଶରୀର ଏବଂ ପ୍ରାଣ ଉଭୟ ରହିଛି ଅର୍ଥାତ୍ ଅନ୍ନମୟ କୋଷ ଏବଂ ପ୍ରାଣମୟ କୋଶ ରହିଛି ସେମାନେ ଦୁଇ କଳା ବିଶିଷ୍ଟ। ଭଗବାନଙ୍କର ଦୁଇ ୟୁନିଟ୍ ତେଜ ସେଠି ପ୍ରକଟ ହୁଏ।

ଯେଉଁ ମାନଙ୍କର ଶରୀର, ପ୍ରାଣ ଏବଂ ମନ ବା ମନୋମୟ କୋଷ ମଧ୍ୟ ଅଛି ସେଠାରେ ତିନୋଟି କଳା ପ୍ରକଟ ହୁଏ ବା ତିନିୟୁନିଟ ପ୍ରକଟ ହୋଇଥାଏ।

ଯେଉଁ ମାନଙ୍କର ଶରୀର, ପ୍ରାଣ, ମନ ସହିତ ବିଜ୍ଞାନମୟ କୋଶ ଥାଏ ସେଠାରେ ଚାରି କଳା ପ୍ରକଟ ହୁଏ।

ମନୁଷ୍ୟ ର ପାଞ୍ଚୋଟି କୋଷ। ଶରୀର - ଅନ୍ନମୟ କୋଷ, ପ୍ରାଣ-ପ୍ରାଣମୟ କୋଷ, ମନ- ମନମୟ କୋଷ, ବୁଦ୍ଧି- ବିଜ୍ଞାନମୟ କୋଷ ଏବଂ ତା ସହିତ ଆନନ୍ଦମୟ କୋଷ ମଧ୍ୟ ଅଛି। ତେଣୁ ଆମ ମାନଙ୍କର ପାଞ୍ଚୋଟି କଳା ।

କିନ୍ତୁ ନିଜର ମନକୁ ଶୁଦ୍ଧ କରିବା ସହିତ ବ୍ୟକ୍ତି ମଧ୍ୟରେ ଅଧିକ କଳା - ଛଅ, ସାତ, କଳା ମଧ୍ୟ ପ୍ରକଟ ହୁଏ। ଅର୍ଥାତ୍ ଭଗବାନଙ୍କର ଅଧିକାଧିକ ତେଜ ସେଠି ପ୍ରକଟ ହୋଇପାରେ। ମନୁଷ୍ୟ ଠାରେ ସାତ ଆଠ କଳା ଠାରୁ ଅଧିକ ତେଜ ପ୍ରକଟ ହୋଇପାରିବ ନାହିଁ, କାରଣ ହେଲା ତାର ହାଡ଼-ମାଂସର -ଶରୀର। ଯେତେ ଶୁଦ୍ଧ ଅନ୍ତକରଣ ଯୁକ୍ତ ହେଲେ ବା ଭଗବାନଙ୍କୁ ଆତ୍ମ- ସ୍ୱରୂପ ଦ୍ୱାରା ଜାଣିଗଲେ ମଧ୍ୟ ଏହି ଶରୀର ରେ ଭଗବାନଙ୍କର ସମସ୍ତ ଶକ୍ତି ବା ତେଜ ପ୍ରକଟ ହୋଇପାରିବ ନାହିଁ। ସାଧୁ ମାନଙ୍କ ଭିତରେ ଆମେ ଅଧିକ ତେଜ ଦେଖୁଁ ବା ଯେଉଁ ମହାତ୍ମା ଆତ୍ମ ସାକ୍ଷାତ୍କାର କରି ସାରିଛନ୍ତି ତାଙ୍କ ଭିତରେ ତା ଠାରୁ ଅଧିକ ତେଜ ଦେଖୁଁ। ଇଏତ ଗଲା କଳା ମାନଙ୍କ କଥା।

ଭଗବାନ ଅନେକ ଅବତାର ଗ୍ରହଣ କରିଛନ୍ତି କିନ୍ତୁ ମତ୍ସ୍ୟ, କୂର୍ମ, ବରାହ ଆଦି ଅବତାର ମାନଙ୍କ ମଧ୍ୟରେ ନିଜର ପୂର୍ଣ୍ଣତେଜ ପ୍ରକଟ କରିନାହାନ୍ତି। ତେଣୁ ଏମାନଙ୍କୁ ଅଂଶାବତାର କୁହାଯାଏ, କାରଣ ଭଗବାନଙ୍କ ତେଜର କିଛି ଅଂଶ ମାତ୍ରହିଁ ପ୍ରକଟ ହୋଇଛି। ଭଗବାନଙ୍କ ତେଜ କେବଳ ଶ୍ରୀରାମ ଅବତାର ଏବଂ ଶ୍ରୀକୃଷ୍ଣ ଅବତାରରେ ପୂର୍ଣ୍ଣ ମାତ୍ରାରେ ପ୍ରକଟ ହୋଇଛି। ତାଙ୍କ ଦେହ ଆମ ଦେହ ପରି ଦେଖାଗଲେ ମଧ୍ୟ ସେଥିରେ ରକ୍ତ, ମାଂସ, ହାଡ଼, ଜଡ଼ - ଚେତନ ଆଦି ଭେଦ ହୁଏ ନାହିଁ। ତାଙ୍କ ଶରୀର ପଞ୍ଚଭୂତ ରୁ ତିଆରି ହୋଇନି । ତାହା ଚୈତନ୍ୟ ତତ୍ତ୍ୱ ରୁ ନିର୍ମିତ। ତେଣୁ ସେଥିରେ ଅଧିକ ତେଜ ପ୍ରକଟ ହୋଇ ପାରିବ।

**'କୃଷ୍ଣସ୍ତୁ ଭଗବାନ ସ୍ୱୟଂ'** (୧.୩.୨୮)। ଷୋହଳ କଳାର ପୂର୍ଣ୍ଣ ଅବତାର ହେଲେ ଭଗବାନ ଶ୍ରୀକୃଷ୍ଣ। ଏଠାରେ ଯେଉଁ ସଂସାର ର, ସୃଷ୍ଟି -ପ୍ରପଞ୍ଚର, କାଳର, ନାମ-ରୂପ ଆଦିର ବର୍ଣ୍ଣନା କରା ଯାଇଛି ତାହା ସବୁ ସେହି ପରମାତ୍ମା ବା ଦ୍ରଷ୍ଟା ଙ୍କ ଉପରେ ଆରୋପିତ। ଆକାଶରେ, ବାୟୁମଣ୍ଡଳରେ ଯେପରି ଧୂଳିକଣା ଠିକ୍ ସେହିପରି ଏହି ଅସଂଖ୍ୟ ନାମ-ରୂପ ସେହି ପରମାତ୍ମାଙ୍କ ଉପରେ ଅଧ୍ୟସ୍ତ। ସେ ଆକାଶବତ୍ ନିତାନ୍ତ ନିର୍ଲେପ, ନିଃସଂଗ ଏବଂ ଶୁଦ୍ଧ।

**ଇଦଂ ଭାଗବତଂ ନାମ ପୁରାଣଂ ବ୍ରହ୍ମ ସମ୍ମିତମ୍।**
**ଉତ୍ତମଶ୍ଳୋକଚରିତଂ ଚକାର ଭଗବାନୃଷିଃ ॥ (୧.୩.୪୦)**

ଏହି ସୁନ୍ଦର ଭାଗବତ ଗ୍ରନ୍ଥରେ ଆମର ଶ୍ରେୟ ର କଥା କୁହାଯାଇଛି ଏବଂ ଭଗବାନଙ୍କ ଅବତାର ମାନଙ୍କର କଥାମଧ୍ୟ କୁହାଯାଇଛି। ଏଠାରେ ତ କେବଳ ଅନୁକ୍ରମଣିକା ଦିଆ ଯାଇଛି। ଆଗକୁ ସମସ୍ତ ଅବତାର ମାନଙ୍କ କଥା ଆସିବ। ବେଦବ୍ୟାସ ଏହି ସୁନ୍ଦର ରଚନା କଲେ ଏବଂ ସେ ନିଜେ ନିଜ ପୁତ୍ର ଶୁକଦେବଙ୍କୁ ମଧ୍ୟ ଏହି କଥା ଶୁଣେଇଲେ।

## ବେଦବ୍ୟାସଙ୍କ ଅସନ୍ତୋଷ

ଏହି ସମୟରେ ଶୌନକ ମୁନି ପଚାରିଲେ - ମହାତ୍ମନ୍ , ବ୍ୟାସଦେବ ଏହି ପୁରାଣର ରଚନା କେବେ ଏବଂ କାହିଁକି କଲେ ? କୁହନ୍ତୁ। ତାଙ୍କ ପୁତ୍ର ଙ୍କ ପାଇଁ ତ କୁହାଯାଏ ଯେ ସେ ବୈରାଗୀ ଥିଲେ, ନିଜ ପିତାଙ୍କ ଠାରୁ ମଧ୍ୟ ଏକ ପାଦ ଆଗରେ ଥିଲେ। ଆମେ ଶୁଣିଛୁ ଯେ ଯେତେବେଳେ ଯୁବକ ଶୁକଦେବଙ୍କ ପଛରେ ବ୍ୟାସଦେବ ଦୌଡୁଥିଲେ ସେତେବେଳେ ଶୁକଦେବ ନଗ୍ନାବସ୍ଥାରେ ଥିଲେ। ମାର୍ଗରେ କୌଣସି ଏକ ନଦୀରେ ସ୍ତ୍ରୀ ଲୋକମାନେ ନଗ୍ନ ହୋଇ ସ୍ନାନ କରୁଥିଲେ। ସେମାନେ ଯୁବକ ଶୁକଦେବ-ବ୍ୟାସପୁତ୍ରଙ୍କୁ ଦେଖିଲେ ମଧ୍ୟ ସଂକୋଚ କଲେ ନାହିଁ। ସେମାନେ ସେହି ଅବସ୍ଥାରେ ସ୍ନାନ କଲେ ଏବଂ ଶୁକଦେବ ଚାଲିଗଲେ। ପଛରେ ଆସୁଥିବା ବ୍ୟାସଦେବଙ୍କୁ ଦେଖି ଲୁଗା ପିନ୍ଧି ପକେଇଲେ। ବ୍ୟାସଦେବ ପଚାରିଲେ ମୋର ପୁତ୍ରକୁ ଦେଖି ଆପଣମାନେ ସଂକୋଚ କଲେ ନାହିଁ। ମୁଁ ତ ବୃଦ୍ଧ ବ୍ୟକ୍ତି, କିନ୍ତୁ ମତେ ଦେଖି ଆପଣ ମାନେ ବସ୍ତ୍ର ପିନ୍ଧିପକେଇଲେ, କାହିଁକି ?

ଆମେ ଭାବିବା ଅନୁଚିତ୍ ଯେ ବ୍ୟାସଦେବଙ୍କ ମନରେ କୌଣସି ବିକାର ଥିଲା। ନା। ସେହି ସ୍ତ୍ରୀ ଲୋକମାନେ ଉତ୍ତର ଦେଲେ - ମହାତ୍ମନ୍ , ଆପଣଙ୍କ ପୁତ୍ର ଚାଲବୁଲ କରୁଥିବା ବ୍ରହ୍ମ। ତାଙ୍କ ମନରେ ସ୍ତ୍ରୀ ପୁରୁଷ ର ଭେଦ ନାହିଁ, କେବଳ ବ୍ରହ୍ମର ଅନୁଭବ ଅଛି। କିନ୍ତୁ ଆପଣ କାରକ ପୁରୁଷ, ଜଗତର କଲ୍ୟାଣ ଚାହୁଁଥିବା ଅଧିକାରୀ ପୁରୁଷ, ଭଗବାନଙ୍କ ଅବତାର । ତେଣୁ ଆପଣ ଜାଣନ୍ତି ଯେ ମୁଁ ପୁରୁଷ ଏବଂ ମତେ ସମାଜର କଲ୍ୟାଣ କରିବାକୁ ହେବ। ଆପଣଙ୍କ ମଧ୍ୟରେ ଏବେ ମଧ୍ୟ ପୁରୁଷ ଏବଂ ସ୍ତ୍ରୀ ର ଭେଦ ରହିଛି। ଆଉ ମଧ୍ୟ ବୃଦ୍ଧ ମାନଙ୍କୁ ସମ୍ମାନ ଦେବା ଦୃଷ୍ଟିରୁ ମଧ୍ୟ ଆମେ ବସ୍ତ୍ର ଧାରଣ କରିଲୁ।

ଯଦି ଶୁକଦେବ ଏପରି ସୁଯୋଗ୍ୟ ପୁତ୍ର ଥିଲେ, ସ୍ୱୟଂ ବ୍ରହ୍ମ ସ୍ୱରୂପ ଥିଲେ, ପୁଣି ତାଙ୍କର ଭାଗବତ କଥା ଶ୍ରବଣ ର ଆବଶ୍ୟକତା କ'ଣ ଥିଲା ? ତାଙ୍କ ବିଷୟରେ ଆହୁରି ମଧ୍ୟ କୁହାଯାଏ ଯେ ଗାଈ କୁ ଦୁହିଁବାରେ ଯେତିକ ସମୟ ଲାଗେ ତା ଠାରୁ ଅଧିକ ସମୟ ସେ କୌଣସି ସ୍ଥାନରେ ରହନ୍ତି ନାହିଁ, କିନ୍ତୁ ଏତେ ବିରାଟ ଭାଗବତ ପୁରାଣ ଶିଖିବା ପାଇଁତ ବହୁତ ସମୟ ଲାଗିଥିବ। ସେତେବେଳ ପର୍ଯ୍ୟନ୍ତ ସେ ବ୍ୟାସଦେବ ଙ୍କ ପାଖରେ କିପରି ବସି ପାରିଲେ ? ଟିକିଏ ବୁଝେଇ କୁହନ୍ତୁ।

ଶୁକଦେବ ଏହି ଜ୍ଞାନ କିପରି ପ୍ରାପ୍ତ କଲେ ? ସୂତ ମୁନି ଶୌନକାଦି ମୁନିଙ୍କୁ ଏହି ପ୍ରଶ୍ନ ର ଉତ୍ତର ରେ କହିଲେ ଯେ ସେହି ସମୟ ଦ୍ୱାପର ଯୁଗର ସମାପ୍ତି ଏବଂ କଳିଯୁଗର ଆରମ୍ଭ ସମୟ ଥିଲା। ଭଗବାନ୍ ବ୍ୟାସ ଦେବ ଦେଖିଲେ ଯେ ଲୋକମାନେ ଦୁଃଖୀ ହେଲେଣି, ସେମାନଙ୍କୁ କଲ୍ୟାଣର ମାର୍ଗ ଦେଖାଇବାକୁ ପଡ଼ିବ। ସେ ଚାରିବେଦ ର ସଂକଳନ କଲେ,ବ୍ରହ୍ମସୂତ୍ର ଲେଖିଲେ, ତା'ପରେ ସତରଟି ପୁରାଣ ଲେଖିଲେ ଏବଂ ମହାଭାରତ ଲେଖିଲେ। ଏହା ସହିତ ଅନେକ ଶିଷ୍ୟ ମଧ୍ୟ ପ୍ରସ୍ତୁତ କଲେ। ପୈଲ ଋଷିଙ୍କୁ ଋକ୍‌ବେଦ, ଜୈମିନୀ ଋଷିଙ୍କୁ ସାମବେଦ, ବୈଶମ୍ପାୟନ ଋଷିଙ୍କୁ ଯର୍ଜୁବେଦ ଏବଂ ସୁମନ୍ତୁ ଋଷିଙ୍କୁ ଅଥର୍ବ ବେଦ ଶିଖେଇଲେ। ସୂତ ମୁନିଙ୍କ ପିତା ରୋମହର୍ଷଣ ଋଷିଙ୍କୁ ଇତିହାସ - ପୁରାଣ ଶିଖାଇଲେ। ଯିଏ ଯାହା ଶିଖିଥିଲେ ତାର ପ୍ରଚାର କଲେ। ଭଗବାନ୍ ବ୍ୟାସଦେବ ଲେଖକ ସହିତ ପ୍ରଚାରକ ମଧ୍ୟ ଥିଲେ। ଏତେ ସବୁ କାର୍ଯ୍ୟ କରିବା ପରେ ମଧ୍ୟ ସରସ୍ୱତୀ ନଦୀତଟରେ ବସି-ବସି ସେ ଭାବିଲେ ଯେ ଏତେ ସବୁ ପରେ ମଧ୍ୟ ମୋ ମନରେ ପୂର୍ଣ୍ଣତା ର ଅନୁଭବ ହେଉନାହିଁ । ମୋତେ ସନ୍ତୋଷ ମିଳୁ ନାହିଁ। ବୋଧହୁଏ କିଛି ବାକି ରହି ଯାଇଛି। ଏତେସବୁ କଲାପରେ ଯେଉଁ କୃତକୃତ୍ୟତା ର ଅନୁଭବ ହେବା କଥା, ହେଉନାହିଁ କାହିଁକି ? ଏବେ ମୁଁ କ'ଣ କରିବି ?

**କିଂ ବା ଭାଗବତା ଧର୍ମା ନ ପ୍ରାୟେଣ ନିରୁପିତାଃ।**

**ପ୍ରିୟାଃ ପରମହଂସାନାଂ ତ ଏବ ହ୍ୟଚ୍ୟୁତପ୍ରିୟାଃ ॥ (୧.୪.୩୯)**

ମୁଁ ଧର୍ମ, କର୍ମ, ଜ୍ଞାନ ଆଦିର ବହୁତ ବର୍ଣ୍ଣନ କଲି । କିନ୍ତୁ ମୁଁ ଭଗବାନଙ୍କର ପର୍ଯ୍ୟାପ୍ତ କଥାର ବର୍ଣ୍ଣନ କଲି ନାହିଁ କି? ଏହା ହିଁ ଭଗବାନଙ୍କର ଅତ୍ୟଧିକ ପ୍ରିୟ। ପରମହଂସ ମାନଙ୍କର ମଧ୍ୟ ପ୍ରିୟ। ସେ ନିଜ ଭିତରର ଅଭାବକୁ ଅନୁଭବ କଲେ। ଏହା ତାଙ୍କର ମହାନତା । ଏଠାରେ ଆମେ ମନୁଷ୍ୟ ମାନେ ଜାଣିବା ଉଚିତ୍ ଯେ ଆମେ ଟିକିଏ କିଛି ପଢ଼ିପକେଇଲେ ନିଜକୁ କୃତାର୍ଥ ବୋଧ କରୁଛେ। ନିଜକୁ ବହୁତ ବଡ଼ ଜ୍ଞାନୀ ଭାବିନଉ। ଆଉ ଅନ୍ୟ ପକ୍ଷରେ ମହାମୁନି ବ୍ୟାସଦେବ **"ନମୋଽସ୍ତୁତେ ବ୍ୟାସ ବିଶାଳ ବୁଦ୍ଧେ"** ଯିଏ ଏତେ କଲା ପରେ ମଧ୍ୟ ଭାବୁଛନ୍ତି ଯେ କିଛି ବାକି ରହିଗଲା। ଏପରି ଭକ୍ତ ମନରେ ଏପରି ଆଶଂକା ଜନ୍ମ ହେଲେ ଦେଖନ୍ତୁ କିପରି ତାଙ୍କର ଶଂକା ନିବାରଣ ମନକୁ ମନ ସାଙ୍ଗେ ସାଙ୍ଗେ ହୁଏ। ନାରଦ ମୁନି ସେଠାରେ ଅନାୟାସ ପହଞ୍ଚି ଗଲେ। ନାରଦ ମୁନି ଭଗବାନଙ୍କର 'ସ୍ଫୁର୍ତ୍ତୀ ଅବତାର' ଅଟନ୍ତି। ଯେଉଁଠି ଦରକାର ସେ ପହଞ୍ଚିଯାଆନ୍ତି। ସେ ସେଠି ପହଞ୍ଚି ଗଲେ। ବ୍ୟାସଦେବ ତାଙ୍କର ଭବ୍ୟ ସ୍ୱାଗତ କଲେ। ପୂଜା କଲେ। ନାରଦ ତାଙ୍କୁ ପଚାରିଲେ ମହାତ୍ମନ୍ ଆପଣଙ୍କ ସାଧନା ଭଲ ଚାଲୁଛି ତ? ଆପଣ ତ ଅତ୍ୟନ୍ତ ଶ୍ରେଷ୍ଠ କାର୍ଯ୍ୟ ସବୁ କରିଛନ୍ତି। ଯେଉଁ ବ୍ରହ୍ମର ଜିଜ୍ଞାସା କରବା ଉଚିତ, ଯାହାକୁ ଜାଣିବା ଦରକାର, ଆପଣ ଅତ୍ୟନ୍ତ ବିଚାର ପୂର୍ବକ ତାକୁ ଜାଣି ମଧ୍ୟ ସାରିଛନ୍ତି।

**ଜିଜ୍ଞାସିତମଧୀତଂ ଚ ଯତ୍‌ଦବ୍ରହ୍ମ ସନାତନମ୍।**

**ଅଥାପି ଶୋଚସ୍ୟାତ୍ମାନମକୃତାର୍ଥ ଇବ ପ୍ରଭୋ ॥ (୧.୫.୪)**

ତଥାପି ଆପଣ ଦୁଃଖୀ -ପରି ଦେଖା ଯାଉଛନ୍ତି ଏପରି ଜଣା ଯାଉଛି ଯେପରି ଆପଣ କୃତାର୍ଥ ହେଇ ନାହାଁନ୍ତି। କଥା କଣ? ଆପଣଙ୍କ ଦୁଃଖର କାରଣ କ'ଣ? ବ୍ୟାସଦେବ କହିଲେ -ମହାତ୍ମନ୍ , ଆପଣ ଠିକ୍ ସମୟରେ ଆସିଛନ୍ତି। ମୁଁ ବି ଠିକ୍ ସେଇଆ ଭାବୁଛି। ଆପଣ ଯାହା କହୁଛନ୍ତି ସବୁ ସତ । ମୁଁ ଏତେ ବିଚାର କଲି, ଜାଣିଲି ଲେଖିଲି, ପ୍ରଚାର କଲି, ଶିଷ୍ୟ ମାନଙ୍କୁ ପଢ଼େଇଲି, ସବୁ କଲି କିନ୍ତୁ ତଥାପି ମତେ ସନ୍ତୋଷ ମିଳିଲାନି।

**ପରାବରେ ବ୍ରହ୍ମଣି ଧର୍ମତୋ ବ୍ରତୈଃ।**
**ସ୍ନାତସ୍ୟ ମେ ନ୍ୟୂନମଲଂ ବିଚକ୍ଷ୍ୱ ॥ (୧.୫.୮)**

ନିଜ ବୁଦ୍ଧି ଅନୁସାରେ ତ ମୁଁ ସବୁ କିଛି କରିସାରିଲିଣି। କିନ୍ତୁ ଦୟା କରି ମୋର କଣ ଦୋଷ ରହି ଯାଉଛି, କୁହନ୍ତୁ । ଦେଖନ୍ତୁ ସେ କେତେ ମହାନ। ଆମେ ଏପରି ଅନୁଭବ କରୁଛୁ କି ? ଆମକୁ ତ ପ୍ରାୟଃ ଲାଗୁଛି ଯେ ଆମ ଭିତରେ କୌଣସି ଦୋଷ ନାହିଁ। ଆମେ ପରିପୂର୍ଣ୍ଣ ପରମାତ୍ମାଙ୍କ ଠାରୁ ଅଧିକ। ଆମ ଦୋଷ କେହି ଦେଖାଇଦେଲେ ଆମେ କହୁ ଯେ ତୁମ ଦୃଷ୍ଟିରେ ଦୋଷ ଅଛି। କିନ୍ତୁ ଆତ୍ମ- ନିରୀକ୍ଷଣ କରି ଭଗବାନ ବ୍ୟାସଦେବ ବୁଝିପାରିଲେ ଯେ ମୋ ଭିତରେ କିଛି ଦୋଷ ରହି ଯାଇଛି। ସେ କାହାକୁ ପଚାରିବେ ? ଯାହାକୁ ଇଚ୍ଛା ତାକୁ ତ ପଚାରି ପାରିବେନି। ନାରଦ ମୁନି ଆସିବାରୁ ସେ ତାଙ୍କୁ ପଚାରିଲେ। କହିଲେ "ଭଗବନ୍ !ମୋ ଭିତର ଦୋଷ ଦେଖେଇବାର କୃପା କରନ୍ତୁ"।

**ଭବତାନୁଦିତପ୍ରାୟଂ ଯଶୋ ଭଗବତୋଽମଲମ୍।**
**ଯେନୈବାସୌ ନ ତୁଷ୍ୟେତ ମନ୍ୟେ ତଦ୍ଦର୍ଶନଂ ଖିଲମ୍ ॥ (୧.୫.୮)**

ନାରଦ କହିଲେ, "ତା'ର ସିଧା -ସିଧା କାରଣ ହେଲା ଯେ ଆପଣ ଅନ୍ୟ ସବୁ କଥା ତ କହିଲେ, କିନ୍ତୁ ଭଗବାନ ଙ୍କ ଯେଉଁ ପ୍ରକାର ମହିମା ଗାନ କରିବା କଥା, ସେପରି କରି ନାହାଁନ୍ତି। ଏମିତି ବି ନୁହଁ ଯେ ଆପଣ ଭଗବାନଙ୍କର ଯଶ ଗାନ କରି ନାହାଁନ୍ତି। ଧର୍ମ ପ୍ରସଂଗ ରେ ଧର୍ମର, କର୍ମ ପ୍ରସଂଗରେ କର୍ମର ଏବଂ ଜ୍ଞାନପ୍ରସଂଗରେ ଜ୍ଞାନର ବର୍ଣ୍ଣନା କରିବା ସମୟରେ ମଝି- ମଝିରେ ଟିକିଏ ଭକ୍ତିର ମଧ ବର୍ଣ୍ଣନା ଅବଶ୍ୟ କରିଛନ୍ତି। କିନ୍ତୁ ପ୍ରାରମ୍ଭ ରୁ ଶେଷ ପର୍ଯ୍ୟନ୍ତ ଭକ୍ତି ରସ ପରିପୂର୍ଣ୍ଣ କୌଣସି ଗ୍ରନ୍ଥର ରଚନା ଆପଣ କରି ନାହାଁନ୍ତି।

ଦେଖନ୍ତୁ, ଏହାକୁ ମଧ ଟିକିଏ ବୁଝିବାକୁ ପଡ଼ିବ। କେବେ -କେବେ ଲାଗେ ଯେ ମୁଁ ଏତେ ଜ୍ଞାନ ପ୍ରାପ୍ତ କଲି, ତାହା କ'ଣ ଯଥେଷ୍ଟ ନୁହେଁ ? ଜ୍ଞାନର ପରିସମାପ୍ତି ପ୍ରେମରେ ହେବା ଉଚିତ୍। ଆଉ ପ୍ରେମର ଅର୍ଥ କ'ଣ ? କେବଳ ଶୁଦ୍ଧ ପ୍ରେମ ଦରକାର। **'ଜ୍ଞାନର ପରିସମାପ୍ତି ପ୍ରେମରେ ହୁଏ।'** ନାରଦ ଭକ୍ତିସୂତ୍ର ରେ କୁହାଯାଇଛି -

**ବେଦାନପି ସଂନ୍ୟସ୍ୟତି କେବଳମବିଚ୍ଛିନ୍ନାନୁରାଗଂ ଲଭତେ ॥**

**ନାରଦ ଭକ୍ତି-ସୂତ୍ର....୪୯**

**ସ ତରତି, ସ ତରତି, ସଲୋକାଂସ୍ତାରୟତି ॥**

**ନାରଦ ଭକ୍ତି-ସୂତ୍ର ....୫୦**

ଯିଏ ବେଦର ମଧ୍ୟ ଉର୍ଦ୍ଧ୍ୱକୁ ଯାଏ, ସେ କେବଳ ଶୁଦ୍ଧ ଅନୁରାଗ ପ୍ରାପ୍ତ କରେ। ମୁଁ ଆପଣ ମାନଙ୍କୁ ସତ୍ୟ କହୁଛି, ନିଜ ଅନୁଭବରୁ କହିଛି ଯେ କେବଳ ଅନେକ ବେଦାନ୍ତ ଗ୍ରନ୍ଥ ପଢ଼ି ପକେଇଲେ କୃତାର୍ଥତା ଆସେ ନାହିଁ। ସନ୍ଥ ମାନଙ୍କର ବାଂଗମୟ ପଢ଼ିଲେ ରସାନୁଭୂତି ହୁଏ। ସନ୍ଥ ମାନଙ୍କର କହିବା ଶୈଳୀ ହିଁ ଅଲଗା। ସେମାନଙ୍କର ଅନ୍ତଃକରଣ ପ୍ରେମରେ ଏମିତି ବୁଡ଼ିକରି ଥାଏ ଯେ କଣ କହିବି ? ଅତଃ ବ୍ୟାସଦେବ ଏତେ ଜ୍ଞାନ ପ୍ରାପ୍ତ କଲେ, କିନ୍ତୁ ମନ ଯେଉଁ ପରମ ପ୍ରେମ ରେ ପରିପୂର୍ଣ୍ଣ ହେବା, ଉଚିତ୍, ସେହି ପ୍ରେମ ଯେପରି ଅଭିବ୍ୟକ୍ତି ହେବା କଥା, ସେପରି ହେଲା ନାହିଁ। ତେଣୁ ଅକୃତାର୍ଥତା ରହିଲା। ଅନ୍ୟ ଯେତେ ବିଷୟ ସବୁର ବର୍ଣ୍ଣନା ହେଲେ ମଧ୍ୟ ଯଦି ସେଥିରେ ଭଗବାନଙ୍କର ବର୍ଣ୍ଣନା ପୂର୍ଣ୍ଣରୂପେ ନ କରାଗଲା ତେବେ ତାର କୌଣସି ବିଶେଷତ୍ୱ ନାହିଁ।

**ନୈଷ୍କର୍ମ୍ୟମପ୍ୟଚ୍ୟୁତଭାବବର୍ଜିତଂ।**

**ନ ଶୋଭତେ ଜ୍ଞାନମଲଂ ନିରଞ୍ଜନମ୍ ॥ (୧.୫.୧୨)**

ନିଜକୁ ଯେତେ ନୈଷ୍କର୍ମ୍ୟ ସିଦ୍ଧି ପ୍ରାପ୍ତ -କର୍ତ୍ତା ମାନୁଥିଲେ ମଧ୍ୟ, ଯଦି ତା ଭିତରେ ଭଗବାନଙ୍କ ପ୍ରତି ପ୍ରୀତି ନାହିଁ, ତେବେ ସେହି ନୈଷ୍କର୍ମ୍ୟ ସିଦ୍ଧିର କୌଣସି ଶୋଭା ନାହିଁ କି ସେହି ଜ୍ଞାନର ମଧ୍ୟ କୌଣସି ଶୋଭା ନାହିଁ। ଏଠାରେ ନାରଦମୁନି ଚୁପକରି ବ୍ୟାସ ଭଗବାନଙ୍କୁ ଗାଳି ମଧ୍ୟ ଦେଉଛନ୍ତି, ଏହା ତାଙ୍କର ଅଧିକାର। କହୁଛନ୍ତି-

**ଜୁଗୁପ୍‌ସିତଂ ଧର୍ମକୃତେଽନୁଶାସତଃ**
**ସ୍ୱଭାବରକ୍ତସ୍ୟ ମହାନ୍ ବ୍ୟତିକ୍ରମଃ**
**ଯଦ୍ୱାକ୍ୟତୋ ଧର୍ମ ଇତୀତରଃ ସ୍ଥିତୋ**
**ନ ମନ୍ୟତେ ତସ୍ୟ ନିବାରଣଂ ଜନଃ ॥ (୧.୫.୧୫)**

ବ୍ୟାସଦେବ, ଆପଣ ଭାବିଲେ ଯେ ଲୋକମାନେ ବହୁତ ବେଶୀ ଅଧର୍ମ କରୁଛନ୍ତି। ତେଣୁ ସେମାନଙ୍କୁ ଧର୍ମ ମାର୍ଗକୁ ଆଣିବା ପାଇଁ, ହଠାତ୍ ସେମାନଙ୍କୁ ସବୁ କିଛି ଛାଡ଼ିଦେବା ପାଇଁ କହିବେ ତ ଲୋକମାନେ ଶୁଣିବେନି। ତେଣୁ ଆପଣ ତାଙ୍କୁ ଟିକିଏ ଅବକାଶ ଦେଲେ ଯେ ହଉ ପଛେ ଟିକିଏ ଏପଟ - ସେପଟ। ହେଲେ ମଧ୍ୟ ଚଳିବ। ହିଂସା ତ ସର୍ବଦା ବର୍ଜନୀୟ, କିନ୍ତୁ ଯଜ୍ଞ ରେ ଟିକିଏ ହିଂସା ଚଳିବ। ଆପଣ ତ ଉଦାର ହୃଦୟ ରେ ତାଙ୍କୁ ଟିକିଏ ଅବକାଶ ଦେଲେ, କାରଣ ହଠାତ୍ କିନ୍ତୁ ବ୍ୟକ୍ତି କେବେହେଲେ ମଧ୍ୟ କୌଣସି ଜିନିଷ ଛାଡ଼ିବ ନାହିଁ। ବ୍ୟକ୍ତିର ସ୍ୱଭାବ ଏମିତି ଯେ ଅପବାଦକୁ ପ୍ରଥମେ ଧରି ବସିବ ଏବଂ ତାକୁ ନିୟମ ମାନି ନେବ। ଏମିତି ହୁଏ ନା ନାହିଁ ?

ଯେମିତି ଡାଇବେଟିସ୍ ହୋଇ ଯାଇଛି କିନ୍ତୁ ମିଠା ଖାଇବାକୁ ମନ ତ ବହୁତ ହୁଏ। ଡାକ୍ତର ତ କହିଲେ ବିଲକୁଲ ଖାଅନି। କିନ୍ତୁ ସେ ଜାଣିଛନ୍ତି ଯେ ରୋଗୀ ଜମା ଛାଡ଼ିବନି ତେଣୁ କହିଲେ କେବେ -କେବେ ଅଳ୍ପ ଟିକିଏ ଖାଇଲେ ଚଳିବ। ତାଙ୍କର 'କେବେ-କେବେ' ଅର୍ଥ ମାସରେ ଥରେ ଅଧେ। ରୋଗୀ କହିବ ଡାକ୍ତର କହିଛନ୍ତି ଦିନରେ ଥରେ-ଅଧେ ଖାଇଲେ ଚଳିବ। ସେ ଧରି ବସିବ ଯେ, ଡାକ୍ତର ଅନୁମତି ଦେଇଛନ୍ତି। ଦିନରେ ଥରେ -ଅଧେ ଖାଇ ପାରିବି। ଅର୍ଥାତ୍ ଟିକିଏ ହୁଗୁଳା ହେଲେ ଆମେ ସବୁବେଳେ ତାକୁ ଆହୁରି ଅଧିକା ବଢ଼େଇ ଦେଉ।

ନାରଦ ମୁନି କହୁଛନ୍ତି -ଆପଣ ମଧ୍ୟ, ଲୋକମାନଙ୍କୁ କେବଳ ଧର୍ମ-ମାର୍ଗ କୁ ଆଣିବା ପାଇଁ, ଅଧର୍ମ କୁ ଟିକିଏ ଅନୁମତି ଦେଇ ଦେଲେ। ଆପଣ ତ ସଦ୍‌ଭାବନା ସହିତ ଏହା କଲେ, କିନ୍ତୁ ଲୋକମାନଙ୍କର ସ୍ୱଭାବ କି ମନ ରେ ପରିବର୍ତ୍ତନ ହେଲା ନାହିଁ। ତେଣୁ ଏବେ ଆପଣ ଭଗବାନଙ୍କ ନାମ ଏବଂ ମହିମା ବର୍ଣ୍ଣନ କରନ୍ତୁ। ନାରଦ ଜୀ ଆଗ ତ ଗାଳି ଦେଇ ଦେଲେ ତାପରେ ଭାବିଲେ -ଇଏ ଏତେ ବଡ଼ ମହାପୁରୁଷ, ମୁଁ ଏମିତି ଗାଳି ଦେଲି । ତେଣୁ କହିଲେ -ବ୍ୟାସଦେବ, ଆପଣ ମୋତେ ପଚାରୁଛନ୍ତି କିନ୍ତୁ ମୁଁ ଆପଣଙ୍କୁ ଯାହା କହୁଛି ତାହା କିଛି ନୂଆ କଥା ନୁହେଁ। ଆପଣ ତ ସବୁ ଜାଣିଛନ୍ତି।

**ପ୍ରାଦେଶମାତ୍ରଂ ଭବତଃ ପ୍ରଦର୍ଶିତମ୍ । (୧.୫.୨୦)**

କେବେକେବେ ଆମେ କଥାଟିଏ ଜାଣିଥିଲେ ମଧ୍ଯ ସେଥିପ୍ରତି ଆମର ଦୃଷ୍ଟି ନ ଥାଏ। ତେଣୁ ସେତେବେଳେ ଟିକିଏ ସଂକେତ ହିଁ ଯଥେଷ୍ଟ। ତେଣୁ ମୁଁ କୌଣସି ଉପଦେଶ ନେବାପାଇଁ ନୁହଁ, ଟିକିଏ ସଂକେତ ଦେବା ପାଇଁ ଏତେକଥା କହିଲି।

## ନାରଦ-ମୁନି ଙ୍କ ପୂର୍ବ ଜନ୍ମ କଥା

ଦେବର୍ଷି ନାରଦ ନିଜ ପୂର୍ବଜନ୍ମ ର କଥା ବ୍ୟାସଦେବ ଙ୍କ ଆଗରେ ବର୍ଣ୍ଣନା କରି କହୁଛନ୍ତି ଯେ ପୂର୍ବଜନ୍ମ ରେ ମୁଁ ଜଣେ ଦାସୀ ପୁତ୍ର ଥିଲି। ସେହି ଦାସୀ ସାଧୁ ସନ୍ଥ ମାନଙ୍କର ସେବା କରୁଥିଲେ। ମୁଁ ଅତ୍ୟନ୍ତି ଛୋଟ ବାଳକ ଥିଲି ଏବଂ ସେହି ସାଧୁ ମାନେ ମୋତେ ବହୁତ ଭଲ ପାଉଥିଲେ। ମୁଁ ସେମାନଙ୍କ ଅଇଁଠା ଖାଉଥିଲି। ଏହି ପରି ମୋତେ ସତ୍‌ସଙ୍ଗ ମିଳିଲା, ମହତ୍ ସେବା ମଧ୍ଯ ମିଳିଲା। ମା ଅଶିକ୍ଷିତ ଥିଲା ଏବଂ ମୋ ପ୍ରତି ତାର ବହୁତ ମୋହ ଥିଲା। ଦିନେ ସେ ଜଙ୍ଗଲ କୁ ଯାଇଥିବା ସମୟରେ ସାପ କାମୁଡ଼ି ଦେଲା ଏବଂ ସେ ମରିଗଲା। ମୁଁ ତାକୁ ମଧ୍ଯ ଭଗବତ୍ କୃପା ମାନି ନେଲି।

**ତଦା ତଦହମୀଶସ୍ୟ ଭକ୍ତାନାଂ ଶମଭୀପ୍ସତଃ ।**
**ଅନୁଗ୍ରହଂ ମନ୍ୟମାନଃ ପ୍ରାତିଷ୍ଠଂ ଦିଶମୁତ୍ତରାମ୍ ॥ (୧.୬.୧୦)**

ମୁଁ ଭାବିନେଲି ଯେ ଭଗବାନ ମତେ ମୁକ୍ତ କରିଦେଲେ। ଏ ପର୍ଯ୍ୟନ୍ତ ମା'ର ଚିନ୍ତା ମନରେ ଥିଲା। ଏବେ ମା ଚାଲିଗଲା ପରେ ମୁଁ ନିଜର ପୁରା ସମୟ ଭଗବତ୍ ସେବାରେ ଲଗେଇ ପାରିବି। ଏଠି ଗୋଟିଏ କଥା ମନେ ରଖିବାକୁ ପଡ଼ିବ। ଏହି ପରି ଭାବରେ ଯଦି ମା'ର ମୃତ୍ୟୁ ହୁଏ ତେବେ ଆମେ ବି ଏମିତି ଭାବି ପାରିବା, କିନ୍ତୁ ଏହାର ଅର୍ଥ ନୁହେଁ ଯେ ମା ମରିଗଲେ ହିଁ ମୁଁ ମୁକ୍ତ ହେବି। ଏମିତି ଭାବିବା ପିଲା ତ ମହା ଦୁଷ୍ଟ। ଏଠି ବୁଝିବାକୁ ହେବ ଯେ ଜୀବନରେ ଯଦି କିଛି ଅପ୍ରିୟ ଘଟଣା ଘଟେ ତେବେ ସେଥିରେ ମଧ୍ଯ ନିଜର ଯେଉଁ ଲାଭ ଲୁଚିକରି ରହିଛି ତାକୁ କେମିତି ଦେଖି ପାରିବା, କେମିତି ବୁଝି ପାରିବା। ମୁଁ ଆର୍ଥିକ ଲାଭର କଥା କହୁନି, ଏଠାରେ ପାରମାର୍ଥିକ ଲାଭ କଥା କୁହାଯାଇଛି।

ତାପରେ ନାରଦ ମୁନି କହୁଛନ୍ତି ଯେ, ନିଜର ପୁରା ସମୟ ଭଗବାନଙ୍କ ସେବାରେ ଲଗେଇବା ପାଇଁ ମୁଁ ସେଠାରୁ ଚାଲି ଆସିଲି। ଚାଲୁ ଚାଲୁ ଥକି ଯାଇ ଗୋଟିଏ ଗଛ ମୂଳରେ ବସି ପଡିଲି । କେଜାଣି କେମିତି ଭାବାବେଗ ରେ ମୁଁ ଧ୍ଯାନ କରିବାକୁ ଲାଗିଲି।

ସେତେବେଳେ କ୍ଷଣକ ପାଇଁ ଭଗବାନ ମଧ୍ୟ ପ୍ରକଟ ହେଲେ। ତାଙ୍କର ଏତେ ସୁନ୍ଦର ରୂପ ଦେଖି ମୁଁ ମୁଗ୍ଧ ହେଲି। କିନ୍ତୁ କେଜାଣି କାହିଁକି ଭଗବାନ ଆସିବା ପାଇଁ ଯେତେ ତରତର ହୁଅନ୍ତି ନାହିଁ ଯିବା ପାଇଁ ତା ଠାରୁ ବେଶୀ ତରତର ହୁଅନ୍ତି। ସେ କ୍ଷଣକ ପାଇଁ ଆସିଲେ ଏବଂ ଚାଲିଗଲେ। ମତେ ଲାଗିଲା - ସତେ ଯେମିତି ମାଛ କୁ ପାଣିରୁ କାଢ଼ି ଦିଆ ଯାଇଛି। ମୁଁ ବ୍ୟାକୁଳ ହୋଇଗଲି, କାନ୍ଦିବାକୁ ଲାଗିଲି ଯେ ଭଗବାନ ଆପଣ ଆସି ଚାଲିଗଲେ। ସେତେବେଳେ ଆକାଶବାଣୀ ହେଲା। ଭଗବାନ କହିଲେ -ପୁତ୍ର, ତୋ ମନରେ ଏବେ ବହୁତ ମଇଳା ଭର୍ତ୍ତି ହେଇଛି। ତେବେ ତୁମର ଅଧିକ ସାଧନା କରିବାର ଆବଶ୍ୟକତା ରହିଛି. ତୁମେ ସାଧନା କର। ତୁମ ମନ ଯେତେବେଳେ ଶୁଦ୍ଧ ହେଇଯିବ ତୁମେ ମୋତେ ପ୍ରାପ୍ତ ହେବ। ତୁମ ମନକୁ ଶୁଦ୍ଧ କରିବା ପାଇଁ ମୁଁ ଅଳ୍ପ ସମୟ ପାଇଁ ତୁମକୁ ଦର୍ଶନ ଦେଇ ଚାଲିଆସିଲି, ଯାହା ପାଇଁ ତୁମେ ମନରେ ବ୍ୟାକୁଳତା ରହିବ। ଏହା ଦ୍ୱାରା ବିଚ୍ଛେଦର ଜ୍ୱାଳା ପ୍ରଜ୍ୱଳିତ ହେବ ଏବଂ ସେହି ବିରହର ଅଗ୍ନି ହିଁ ତୁମର ସବୁ ପାପକୁ ନଷ୍ଟ କରି ଦେବ, ଭସ୍ମ କରିଦେବ। ଚିନ୍ତା କର ନାହିଁ। ତା ପରେ ମୁଁ ବ୍ୟାକୁଳ ହୋଇ ଭଗବାନଙ୍କର ଧ୍ୟାନ କରିବାକୁ ଲାଗିଲି।

ଥରେ ବିଜୁଳି ଚମକିଲା ଏବଂ ମୋ ଉପରେ ପଡ଼ିଲା। ତା ଦ୍ୱାରା ମୋ ଦେହ ଚାଲିଗଲା ଏବଂ ପ୍ରଳୟ ସମୟରେ ମୁଁ ଭଗବାନଙ୍କ ସହିତ ଏକରୂପ ହୋଇଗଲି। ତା'ପରେ ଯେତେବେଳେ ବର୍ତ୍ତମାନର କଳ୍ପ ପ୍ରକଟ ହେଲା, ମୋର ଜନ୍ମ ଦେବର୍ଷି ରୂପରେ ହେଲା। ମୁଁ ଏଥିପାଇଁ ଏହା କହୁଛି ଯେ ଭଗବାନଙ୍କ ପ୍ରତି ପ୍ରେମହିଁ ସବୁଠାରୁ ଶ୍ରେଷ୍ଠ ପ୍ରାପ୍ତି। ଭଗବଦ୍ -ଭକ୍ତିରୁ ହିଁ ପ୍ରକୃତ ପ୍ରେମ ମିଳିଥାଏ। ଏବେ ଦେଖ, ମୋତେ ବୀଣା (ଦେବଦତ୍ତ ବୀଣା) ମିଳିଗଲା, ମୁଁ ନାରାୟଣ -ନାରାୟଣ ଗାଇ ଗାଇ ଚାରିଆଡ଼େ ବୁଲୁଛି। ମୋର ଅନ୍ୟ କିଛି କାମ ନାହିଁ। ଏହି ନାରଦ ଭଗବାନ ତ ଏପରି ସନ୍ଥ ଯେ ରାକ୍ଷସଙ୍କ ପାଖକୁ ଯାଆନ୍ତୁ କି ଦେବତାଙ୍କ ପାଖକୁ, ଋଷି ମାନଙ୍କ ପାଖକୁ ଯାଆନ୍ତୁ କି ମନୁଷ୍ୟ ମାନଙ୍କ ପାଖକୁ , ସର୍ବତ୍ର ତାଙ୍କର ସ୍ୱାଗତ ହୁଏ, ଯଦିଓ ସମସ୍ତଙ୍କୁ ଜଣାଥାଏ ଯେ ସେ ସମସ୍ତଙ୍କ ପାଖକୁ ଯାଆନ୍ତି। ଏହା ଏକ ଅତ୍ୟନ୍ତ ବିଚିତ୍ର କଥା ଯେ ଭଗବାନଙ୍କୁ ଦ୍ୱେଷ କରୁଥିବା ଲୋକ ଥିଲେ କିନ୍ତୁ ନାରଦ ମୁନି ଙ୍କୁ ଦ୍ୱେଷ କରିଲା ବାଲା କେହି ଜନ୍ମ ହୋଇ ନାହାଁନ୍ତି।

ନାରଦ ମୁନି ଏହା କହି ଚାଲିଗଲେ। ତା'ପରେ ଭଗବାନ ବ୍ୟାସଦେବ ସ୍ନାନ କରି ଧ୍ୟାନରେ ବସିଲେ ଏବଂ ଧ୍ୟାନରେ ସେ ବ୍ରହ୍ମଙ୍କୁ ଆଦିଶକ୍ତି ମାୟାଙ୍କ ସହିତ ଦେଖିଲେ। ତାପରେ ଯେଉଁ ପରି ଦେବର୍ଷି ନାରଦ ତାଙ୍କୁ କହିଥିଲେ ସେହି ପ୍ରକାର ବର୍ଣ୍ଣନ କରି ସେ ଭାଗବତ ରଚନା କଲେ। ସେ ଯେଉଁ **'ଅଷ୍ଟାଦଶ'** ତମ ପୁରାଣ ର ରଚନା କଲେ

ତାହା ହେଲା 'ମହାପୁରାଣ'। ରଚନା କରିସାରିଲା ପରେ ସେ ଭାବିବାକୁ ଲାଗିଲେ ଯେ, ଏହାର ସବୁଠାରୁ ଯୋଗ୍ୟ ଅଧିକାରୀ କିଏ ? କାରଣ ଏଥିରେ ସର୍ବଶ୍ରେଷ୍ଠ ରସ ପୂର୍ଣ୍ଣ ହୋଇ ଅଛି। ସେତେବେଳେ ତାଙ୍କର ଦୃଷ୍ଟି ନିଜ ପୁତ୍ର ଉପରେ ପଡ଼ିଲା। ଏହିଁ ସବୁଠାରୁ ଯୋଗ୍ୟ। ମୋ ପୁତ୍ର ବୋଲି ନୁହଁ, ପ୍ରକୃତରେ ଏହିଁ ଯୋଗ୍ୟ। ସେ କହିଲେ, ଯାହା ଭିତରେ କୌଣସି ପ୍ରକାର ର ସ୍ୱାର୍ଥ ନାହିଁ, ଅହଂ ଭାବ ବା ମମଭାବ ନାହିଁ, ଅନ୍ୟ କୌଣସି ପ୍ରକାର ର ବିକାର ନାହିଁ, କେବଳ ସେ ହିଁ ଏହି ରସ କୁ ପୂର୍ଣ୍ଣ ରୂପେ ଚାଖି ପାରିବ। ତା'ପରେ ସେ ଶୁକଦେବଙ୍କୁ ଏହି କଥା ଶୁଣେଇଥିଲେ।

ଏହା ଶୁଣି ଶୌନକ ମୁନି କହିଲେ - ମହାତ୍ମନ୍, ସେ ତ ନିଜେ ବ୍ରହ୍ମ ରେ ରମଣ କରୁଥିଲେ, ସ୍ୱୟଂବ୍ରହ୍ମ। ସେ ପୁଣି ଏ କଥା କାହିଁକି ଶୁଣିଲେ ? ଭଗବାନଙ୍କ ସଗୁଣ ଲୀଳା କାହିଁକି ଶୁଣିଲେ ? ସୂତ ମୁନି କହିଲେ (ଏହା ଅତ୍ୟନ୍ତ ପ୍ରସିଦ୍ଧ ଶ୍ଳୋକ) -

**ଆତ୍ମାରାମଶ୍ଚ ମୁନୟୋ ନିର୍ଗ୍ରନ୍ଥା ଅପ୍ୟୁରୁକ୍ରମେ।**

**କୁର୍ବନ୍ତ୍ୟହୈତୁକିଂ ଭକ୍ତିମିତ୍ଥମ୍ଭୂତଗୁଣୋ ହରିଃ ॥ (୧.୭.୧୦)**

"କଣ କରିପାରିବା ? ଭଗବାନଙ୍କ ଗୁଣ ସେମିତି। ଏହା ତ ଭଗବାନଙ୍କ ଗୁଣ ଗୁଡ଼ିକର ଦୋଷ ଯେ ବ୍ରହ୍ମଜ୍ଞାନୀ ମହାପୁରୁଷ ମଧ୍ୟ ତାଙ୍କ ନିକଟକୁ ଆକର୍ଷିତ ହୋଇ ଆସନ୍ତି। ଯିଏ ଆତ୍ମାରାମ, 'ନିର୍ଗ୍ରନ୍ଥା' - ଯାହାଙ୍କର ଗ୍ରନ୍ଥର ଆବଶ୍ୟକତା ନାହିଁ, ଯାହାଙ୍କ ଅବିଦ୍ୟାଗ୍ରନ୍ଥି ଖୋଲି ଯାଇଛି ସେମାନେ ମଧ୍ୟ ଅକାରଣ ଭଗବାନଙ୍କ ଭକ୍ତି କରୁଥାଆନ୍ତି, କାହିଁକି ? କାରଣ ଭଗବାନଙ୍କ ସ୍ୱଭାବ ସେହିପରି। ଭଗବାନଙ୍କ ଗୁଣ ଏମିତି ଯେ, ସେମାନେ ବଳାତ୍ ନିଜ ଆଡ଼କୁ ଆକର୍ଷିତ କରନ୍ତି।"

## ଗର୍ଭରେ ପରୀକ୍ଷିତଙ୍କୁ ରକ୍ଷା

ଏହାର ପରବର୍ତ୍ତୀ ପ୍ରସଂଗ ଗୁଡ଼ିକର ପ୍ରୟୋଜନ କେବଳ ରାଜା ପରୀକ୍ଷିତଙ୍କ ଜନ୍ମ ସହ ସଂଗତି ରକ୍ଷା କରିବା ପାଇଁ ଲେଖାଯାଇଛି। ତେଣୁ ଏହାର ବିସ୍ତାର ର ଆବଶ୍ୟକତା ନାହିଁ। ମହାଭାରତ ର ଯୁଦ୍ଧ ସମାପ୍ତ ହୋଇ ଗଲା। ରାଜା ଯୁଧିଷ୍ଠିର ରାଜ୍ୟ ଶାସନ କଲେ। ତାଙ୍କ ଭାଇ ଅର୍ଜୁନ ର ପୁତ୍ର ହେଲା ଅଭିମନ୍ୟୁ। ତାର ମୃତ୍ୟୁ ମହାଭାରତ ଯୁଦ୍ଧ ସମୟରେ ହିଁ ହେଇଯାଇଥିଲା। ଅଭିମନ୍ୟୁ ଙ୍କ ସ୍ତ୍ରୀ ହେଲେ ଉତ୍ତରା। ଉତ୍ତରା ଙ୍କ ଗର୍ଭରେ ପରୀକ୍ଷୀତ ଥିବା ସମୟରେ ତାଙ୍କ ଉପରକୁ ଅଶ୍ୱତ୍ଥମା ବ୍ରହ୍ମାସ୍ତ୍ର ଚଳେଇଲା।

ଉତ୍ତରା ପୁତ୍ରର ରକ୍ଷା ପାଇଁ ପ୍ରାର୍ଥନା କଲା । ଭଗବାନ ସ୍ୱୟଂ ଉତ୍ତରା ର ଗର୍ଭରେ ପ୍ରବେଶ କରି ସେହି ପିଲାଟିକୁ ରକ୍ଷା କଲେ । ମନେ ରଖିବେ, ଗର୍ଭରେ ଆମ ସମସ୍ତଙ୍କ ରକ୍ଷା ମଧ୍ୟ କେବଳ ଭଗବାନ ହିଁ କରିଥାଆନ୍ତି, ମା'କରେ ନାହିଁ । ମା'କୁ ତ ଜଣା ମଧ୍ୟ ନ ଥାଏ ଯେ ସେଠି କଣ ଅଛି । ଗର୍ଭ ରେ ରକ୍ଷା କରିବା ବାଲା ଭଗବାନ ଅଟନ୍ତି । ଯେତେବେଳେ ସେହି ପୁତ୍ର(ପରୀକ୍ଷିତ) ର ଜନ୍ମ ହେଲା ସେତେବେଳେ ପାଣ୍ଡବ ମାନଙ୍କର ସବୁ ପୁତ୍ର ମରିଯାଇଥିଲେ, କେହି ବି ବଞ୍ଚି ନ ଥିଲେ । ବଂଶ ଚଳାଇବା ପାଇଁ କେବଳ ଏହି ପୁତ୍ରଟି ଥିଲା । ରାଜା ଯୁଧିଷ୍ଠିର ସବୁ ଜ୍ୟୋତିଷୀ ଏବଂ ବ୍ରାହ୍ମଣ ମାନଙ୍କୁ ଡାକି କରି କହିଲେ, ମହାତ୍ମନ୍ "ଆପଣ ମାନେ ମୋତେ କୁହନ୍ତୁ ଯେ ଭବିଷ୍ୟତ ରେ ଇଏ କିପରି ରାଜା ହେବ ? ଏହାର ଭବିଷ୍ୟତ କଣ ?"

ଭାଗବତ ର ଅଧିକାରୀ ଙ୍କ ସ୍ଥିତି କେତେ ଶ୍ରେଷ୍ଠ ଏହା ବତେଇବା ପାଇଁ ହିଁ ଏହି କଥା କୁହାଯାଉଛି । ଏଠାରେ ଶୁକଦେବ ବକ୍ତା । ବକ୍ତାଙ୍କ ସ୍ତର କେତେ ଶ୍ରେଷ୍ଠ ଆମେ ତ ଦେଖି ସାରିଲେଣି । ଏବେ ଶ୍ରୋତା ଏବଂ ଶିଷ୍ୟଙ୍କ ବିଷୟ ରେ ଜାଣିବା । ତେବେ ସେହି ବାଳକ ର ଦୁଇଟି ନାମ ଥିଲା, ପରୀକ୍ଷିତ ଏବଂ ବିଷ୍ଣୁରାତ । ଗର୍ଭରେ ଭଗବାନ ବିଷ୍ଣୁ ତାଙ୍କୁ ରକ୍ଷା କରିଥିଲେ, ତେଣୁ ବିଷ୍ଣୁରାତ । ଶୁକଦେବଙ୍କର ଅନ୍ୟନାମ ବ୍ରହ୍ମରାତ । ବ୍ରହ୍ମରାତ ମାନେ ବ୍ରହ୍ମ ତାଙ୍କ ପାଇଁ ସଦା ପ୍ରକଟ ହୋଇଥାଆନ୍ତି । କେବେ ବି ଗୁପ୍ତ ନୁହଁନ୍ତି । ତେଣୁ ଶୁକଦେବଙ୍କ ନାମ ବ୍ରହ୍ମରାତ ଏବଂ ପରୀକ୍ଷିତ ଙ୍କ ନାମ ବିଷ୍ଣୁରାତ । ଜନ୍ମ ସମୟରେ ପରୀକ୍ଷିତ ଧ୍ୟାନ ପୂର୍ବକ ଦେଖୁଥିଲେ ଯେ ଗର୍ଭରେ ମୋତେ ରକ୍ଷାକଲା ବାଲା କିଏ ? ପ୍ରକୃତରେ ଛୋଟ ପିଲଟି ସବୁବେଳେ ଧ୍ୟାନ ପୂର୍ବକ ହିଁ ଦେଖେ । ସେ ଦେଖୁଥିଲେ ଯେ ଗର୍ଭରୁ ମୋତେ ରକ୍ଷା କଲା ବାଲା ଇଏ ତ ସିଏ ନୁହଁନ୍ତି । ତେଣୁ ଶିଶୁ ସମସ୍ତଙ୍କୁ ଦେଖୁଥିଲା । ମୋ ପରି ସନ୍ୟାସୀ ଆସି ଗଲେ ଦେଖି ଦେଇ କାନ୍ଦିବାରେ ଲାଗୁଥିଲା, ଇଏ ତ ମୋତେ ରକ୍ଷା କରି ନାହିଁ ।

## ଅଧିକାରୀଙ୍କ ଲକ୍ଷଣ

ସେହି ସମୟରେ ବ୍ରାହ୍ମଣ ମାନେ କହିଲେ- ହେ ଯୁଧିଷ୍ଠିର, ଏହି ପରୀକ୍ଷିତ ଆପଣ ମାନଙ୍କ ଠାରୁ ମଧ୍ୟ ଶ୍ରେଷ୍ଠ । ଏବେ ରାଜା ପରୀକ୍ଷିତ ଙ୍କ ଗୁଣ ବର୍ଣ୍ଣନା କରାଯାଇଛି ।

**ବ୍ରାହ୍ମଣ୍ୟଃ ସତ୍ୟସଂଧଶ୍ଚ ରାମୋ ଦାଶରଥିର୍ଯ୍ୟଥା ।। (୧.୧୨.୧୯)**

କହିଲେ ପ୍ରଜାପାଳନରେ ଇଏ ମହାରାଜ ମନୁଙ୍କ ପରି ହେବେ । ନିଜ ପ୍ରତିଜ୍ଞା ପୂର୍ଣ୍ଣ କରିବାରେ ଏବଂ ବ୍ରାହ୍ମଣ ମାନଙ୍କ ରକ୍ଷା କରିବାରେ ଇଏ ସାକ୍ଷାତ ଶ୍ରୀ ରାମଚନ୍ଦ୍ରଙ୍କ

ପରି ହେବେ। ସେହିପରି, ନିଜ ଶରଣାଗତ ଙ୍କୁ ସର୍ବସ୍ୱ ପ୍ରଦାନରେ, ତା ପାଇଁ ନିଜ ପ୍ରାଣ ମଧ୍ୟ ତ୍ୟାଗ କରିବାରେ ଇଏ ରାଜା ଶିବିଙ୍କ ପରି ହେବେ। ଶୂର-ବୀରତ୍ୱ ରେ, ଯଶ - ବିସ୍ତାର ରେ ଦୁଷ୍ୟନ୍ତ-ପୁତ୍ର ଭରତଙ୍କ ପରି ହେବେ। ଧନୁର୍ବିଦ୍ୟାରେ ଆପଣଙ୍କ ଭାଇ ଅର୍ଜୁନ ଏବଂ ସହସ୍ରବାହୁ ଉଭୟଙ୍କ ସମକକ୍ଷ ଅର୍ଥାତ ତାଙ୍କ ଠାରୁ ମଧ୍ୟ ଅଧିକ ହେବେ। ଅଗ୍ନି ପରି ଦୁର୍ଦ୍ଧର୍ଷ ହେବେ ଯାହାକୁ କେହି ଛୁଇଁ ପାରିବେ ନାହିଁ। ସମୁଦ୍ର ପରି ବିଶାଳ ହେବେ ଯାହାକୁ କେହି ପାର କରିପାରିବ ନାହିଁ। ସାହାସରେ ସିଂହ ପରି, କ୍ଷମାରେ ପୃଥିବୀ, ସହନଶୀଳତାରେ ପିତୃ ମାନଙ୍କ ପରି ହେବେ। ପ୍ରସନ୍ନତା ରେ ଭଗବାନ ମହାଦେବଙ୍କ ପରି ଏବଂ ସମସ୍ତଙ୍କୁ ଆଶ୍ରୟ ଦେବାରେ ଭଗବାନ ବିଷ୍ଣୁଙ୍କ ସମାନ ହେବେ। ଉଦାହରଣରେ ରନ୍ତିଦେବଙ୍କ ପରି, ଭକ୍ତିରେ ପ୍ରହ୍ଲାଦଙ୍କ ପରି ହେବେ। ଇଏ ଅନେକ ପ୍ରକାରର ଅଶ୍ୱମେଧାଦି ଯଜ୍ଞ କରିବେ। ରାଜର୍ଷିମାନଙ୍କର ପାଳନ - ପୋଷଣ କରିବେ। ଦୁଷ୍ଟ ମାନଙ୍କର ନିଗ୍ରହ କରିବେ ଏବଂ କଳିକୁ ସଂଯମିତ କରିଦେବେ।

ତାପରେ ଯୁଧିଷ୍ଠିର କହିଲେ ମହାତ୍ମନ୍, 'ଆପଣ ତ ସବୁ ଭଲ ଭଲ କଥା ଗୁଡ଼ିକ କହିଲେ। ଆଉ କିଛି କଥା ଅଛି କିଁ?' ଉତ୍ତର ମିଳିଲା, 'ଡରିବା ପରି କିଛି ନାହିଁ। ହଁ ଏହାକୁ ଏକ ବ୍ରାହ୍ମଣ ର ଅଭିଶାପ ମିଳିବ ଯେ ତକ୍ଷକ ସର୍ପର ଦଂଶନରେ ତୁମର ମୃତ୍ୟୁ ହେବ। କିନ୍ତୁ ସର୍ପଦଂଶନ ରେ ମୃତ୍ୟୁ ଜାଣିବା ମାତ୍ରକେ ଇଏ ସମସ୍ତ ସାଂସାରିକ ବସ୍ତୁକୁ ତ୍ୟାଗ କରି ଗଂଗା କୂଳରେ ଯାଇ ବସି ପଡ଼ିବେ। ସେତେବେଳେ ସମସ୍ତ ଶ୍ରେଷ୍ଠ ଋଷି ମହର୍ଷି ମାନେ ସେଠାକୁ ଆସିବେ ଏବଂ ଶୁକଦେବ ମଧ୍ୟ ସେଠାକୁ ଆସି ୟାଙ୍କୁ ଜ୍ଞାନ ଦେବେ। ଇଏ ମୁକ୍ତ ହୋଇଯିବେ। ଇଏ ତୁମର ସମ୍ପୂର୍ଣ୍ଣ କୂଳର ଉଦ୍ଧାର କର୍ତ୍ତା ହେବେ। ଇଏ ଏହିପରି ମହାନ ଗୁଣ ସମ୍ପନ୍ନ ବାଳକ ଅଟେ। ୟାଙ୍କ ବିଷୟରେ ଚିନ୍ତା କରିବା ପାଇଁ କୌଣସି କାରଣ ହିଁ ନାହିଁ। ପରୀକ୍ଷିତ ଙ୍କ ବିଷୟରେ ଏହା ଶୁଣି ଯୁଧିଷ୍ଠିର ଙ୍କ ମନ ଆନନ୍ଦରେ ଭରିଗଲା। ପ୍ରସନ୍ନ ଚିତ୍ତରେ ସେ ବ୍ରାହ୍ମଣ ମାନଙ୍କୁ ଏବଂ ଅନ୍ୟମାନଙ୍କୁ ଅନେକ ଦାନ ଦେଲେ। ରାଜ ପୁତ୍ର ଙ୍କର ବୟସ ବୃଦ୍ଧି ସହିତ ତାଙ୍କ ର ପ୍ରେମ ମଧ୍ୟ ତାଙ୍କ ପ୍ରତି ବଢ଼ିବାକୁ ଲାଗିଲା। ଯୁଧିଷ୍ଠିର ଶ୍ରୀକୃଷ୍ଣଙ୍କ ପରାମର୍ଶ ଅନୁସାରେ ଅନେକ ଯଜ୍ଞ କଲେ। ଏହି ପରି ତାଙ୍କ ରାଜ୍ୟ ବଢ଼ି ଚାଲିଲା।

## ବିଦୁର ଙ୍କ ଉପଦେଶ ଅନୁସାରେ ଧୃତରାଷ୍ଟ୍ର ଏବଂ ଗାନ୍ଧାରୀଙ୍କ ବନ-ଗମନ

ଏବେ ଆଗକୁ କଥା ବଢ଼େଇବା ପାଇଁ ବିଦୁର ଙ୍କ ବିଷୟରେ ମଧ୍ୟ ଜାଣିବାକୁ ପଡ଼ିବ। ବିଦୁର କିଏ ? ଧୃତରାଷ୍ଟ୍ର ଙ୍କ ନାମ ତ ସମସ୍ତେ ଶୁଣିଛନ୍ତି। ସେ ବାହାରେ ଏବଂ ଭିତରେ ଦୁଇ ଆଡୁ ଅନ୍ଧ ଥିଲେ, କେବଳ ଆଖିରେ ନୁହଁ। ଅଧିକ ମୋହ ବ୍ୟକ୍ତିକୁ ଅନ୍ଧ କରିଦିଏ। ଧୃତରାଷ୍ଟ୍ର ଙ୍କ ଭାଇ ଥିଲେ ପାଣ୍ଡୁ। ଧୃତରାଷ୍ଟ୍ର ଙ୍କ ପୁତ୍ର ଦୁର୍ଯ୍ୟୋଧନ, ଦୁଃଶାସନ ଆଦି କୌରବ ଏବଂ ପାଣ୍ଡୁଙ୍କ ପୁତ୍ର ଯୁଧିଷ୍ଠିରାଦି ପଞ୍ଚ ପାଣ୍ଡବ। ବିଦୁର ରାଜା ଧୃତରାଷ୍ଟ୍ରଙ୍କର ସବୁଠାରୁ ଛୋଟ ଭାଇ ଥିଲେ। ସେ ଦାସୀ ପୁତ୍ର ଥିଲେ। ସେ ସାକ୍ଷାତ୍ ଯମରାଜ ଥିଲେ। ଯମରାଜଙ୍କୁ କୌଣସି ଏକ ଅଭିଶାପ ଯୋଗୁଁ ଦାସୀ ପୁତ୍ର ରୂପେ ଜନ୍ମ ନେବାକୁ ପଡ଼ିଥିଲା। ବିଦୁର ଅତ୍ୟନ୍ତ ଧର୍ମାତ୍ମା ଥିଲେ। ମହାଭାରତ ଯୁଦ୍ଧ ସମୟରେ ସେ କହିଲେ ଯେ ମୋର ଏହି ଯୁଦ୍ଧ ସହିତ କୌଣସି ସମ୍ପର୍କ ନାହିଁ, କହି ତୀର୍ଥଯାତ୍ରା ରେ ଚାଲିଗଲେ। ବିଦୁରଙ୍କ ଧର୍ମାନୁକୂଳ, ନ୍ୟାୟ ସଂଗତ କଥା କେହି ଶୁଣିଲେ ନାହିଁ। ତେଣୁ ସେ ତୀର୍ଥ ଯାତ୍ରାରେ ଯାଇ ଫେରି ଆସିଲେ। ରାସ୍ତାରେ ସେ କୌରବ ତଥା ଅନ୍ୟ ମାନଙ୍କ ବିନାଶ ର କଥା ଜାଣି ଯାଇଥିଲେ ଏବଂ ଶ୍ରୀକୃଷ୍ଣଙ୍କର ଲୀଳା ସଂମ୍ବରଣ ବିଷୟ ରେ ମଧ୍ୟ ଜାଣି ଯାଇଥିଲେ। ସେ ଫେରି ଆସି ଧୃତରାଷ୍ଟ୍ର ଏବଂ ଗାନ୍ଧାରୀଙ୍କୁ ଧର୍ମର ଉପଦେଶ ଦେଇ ତାଙ୍କୁ ହିମାଳୟକୁ ନେଇଗଲେ। ସେଠାରେ ଉଭୟଙ୍କୁ ମୁକ୍ତି ମିଳିଲା। ଏହା ପରେ ବିଦୁର ଙ୍କ ପ୍ରସଂଗ ଆସେ। ବିଦୁର ମୈତ୍ରେୟ ଋଷିଙ୍କୁ ଭେଟିଲେ ଯାହା ତୃତୀୟ ସ୍କନ୍ଧରେ ବିସ୍ତୃତ ରୂପେ କୁହାଯାଇଛି। ତେଣୁ ଆମେ ପରୀକ୍ଷିତଙ୍କ ବିଷୟକୁ ଆସିବା।

ଯେତେବେଳେ ଯୁଧିଷ୍ଠିର ଦେଖିଲେ ଯେ ଚାରି ଆଡ଼େ ଭୟଙ୍କର ଉତ୍ପାତ ଆରମ୍ଭ ହୋଇଗଲାଣି ତାଙ୍କ ମନ ଶଂକିତ ହୋଇ ଉଠିଲା। ସେହି ସମୟରେ ଅର୍ଜୁନ ଦ୍ୱାରିକାରୁ ଫେରି ଆସିଲେ। ଯୁଧିଷ୍ଠିର ତାଙ୍କଠାରୁ ଶ୍ରୀକୃଷ୍ଣଙ୍କର ସଂସାର ତ୍ୟାଗ କଥା ଶୁଣିଲେ। ସେ କହିଲେ - ଆଉ ଏଠି ରହି କିଛି ଲାଭ ନାହିଁ। ଏଠି କଳିର ପ୍ରଭାବ ବହୁତ ବଢ଼ିଗଲାଣି। ତେଣୁ ପରୀକ୍ଷିତଙ୍କୁ ସିଂହାସନରେ ବସାଇ ଯୁଧିଷ୍ଠିର ରାଜ୍ୟ ଛାଡ଼ି ଦେଲେ ଓ ତାଙ୍କ ପଛେ ପଛେ ଚାରିଭାଇ ଏବଂ ଦ୍ରୌପଦୀ ମଧ୍ୟ ବାହାରିଗଲେ। ସମସ୍ତେ ହିମାଳୟ କୁ ଚାଲିଗଲେ। କିନ୍ତୁ ଏମାନେ କଥାର ମୁଖ୍ୟ ପାତ୍ର ନୁହଁନ୍ତି। ସେମାନଙ୍କ ବିଷୟରେ ମହାଭାରତରେ ବିସ୍ତୃତ ରୂପେ କୁହାଯାଇଛି। ରାଜା ପରୀକ୍ଷିତ ସୁଚାରୁ ରୂପେ ରାଜ୍ୟ ଶାସନ କରୁଥିଲେ। ସେ କଳିର ମଧ୍ୟ ନିଗ୍ରହ କରିଥିଲେ।

ଶୌନକ ଋଷି ସୂତ ମୁନିଙ୍କୁ  କହୁଛନ୍ତି ଯେ ରାଜା ପରୀକ୍ଷିତଙ୍କ କଥା ଆପଣ ସଂକ୍ଷେପରେ ନୁହଁ, ବିସ୍ତୃତ ରୂପେ ଶୁଣାନ୍ତୁ। ଏଠାରେ ରାଜା ପରୀକ୍ଷିତଙ୍କ କଥା ହିଁ ମୁଖ୍ୟ ବିଷୟ ଅଟେ। ତେଣୁ ଆମେ ଏବେ ସେ ବିଷୟକୁ ଆସିବା. ମନ ଦେଇ ଶୁଣନ୍ତୁ। ରାଜା ପରୀକ୍ଷିତ ଜାଣିଲେ ଯେ ଭଗବାନ ଶ୍ରୀକୃଷ୍ଣ ଯିବା ପରେ କଳିର ରାଜ୍ୟ ଆରମ୍ଭ ହେବ। ପ୍ରତ୍ୟେକ ଯୁଗ ର ଜଣେ ଅଧିଷ୍ଠାତା ପୁରୁଷ ଥାଆନ୍ତି। କଳି ଅର୍ଥ କଳହ, ଯୁଦ୍ଧ। ତେଣୁ କଳିଯୁଗରେ ବେଶୀ କଳହ ହୁଏ। କଳିଯୁଗ ର ଏହା ମଧ୍ୟ ଅର୍ଥ ଯେ ଏହା ମେଶିନ ବା ଯନ୍ତ୍ର ର ଯୁଗ। ମନ୍ତ୍ରର ଯୁଗ ନୁହେଁ। ଏହି ଯୁଗରେ ଲୋକମାନେ ମନ୍ତ୍ର-ତନ୍ତ୍ର କିଛି ଜାଣନ୍ତି ନାହିଁ, କଳ-କଳ କରୁଥିବା ଯନ୍ତ୍ର ମାନଙ୍କଦ୍ୱାରା ସବୁ କର୍ମ ହୁଏ। ତେଣୁ ଏହା କଳି-କଜିଆ, ଯୁଦ୍ଧ ଏବଂ ଯନ୍ତ୍ର ର ଯୁଗ।

ରାଜା ପରୀକ୍ଷିତ  ଭାବିଲେ, ଏଠାରେ କଳିର ରାଜ୍ୟ ଚାଲୁଛି, ଏହା ବହୁତ ଅଧର୍ମର କଥା। ତାକୁ ନିୟନ୍ତ୍ରିତ କରିବାକୁ ପଡ଼ିବ। ଏହା ଭାବି ସେ ବାହାରିଲେ କାରଣ ରାଜାର କର୍ତ୍ତବ୍ୟ ସେ ବିଭିନ୍ନ ସ୍ଥାନ ବୁଲି-ବୁଲି ଦେଖିବା ଯେ ତା ରାଜ୍ୟରେ କେହି ଅସନ୍ତୁଷ୍ଟ ତ ନାହାନ୍ତି ? ପାପ ତ ହେଉ ନାହିଁ ? ରାଜା ଏମିତି କହି ପାରିବେନି ଯେ ମୁଁ ତ ଜାଣି ପାରିଲି ନାହିଁ। ରାଜାର କାମ ସବୁ କିଛି ଜାଣିବା। ତେଣୁ ରାଜା ନିଜେ ଗଲେ। ମାର୍ଗରେ ସେ ଅନେକ ରାଜ୍ୟ ଉପରେ ବିଜୟ ପ୍ରାପ୍ତ କଲେ। ଗୋଟିଏ ସ୍ଥାନରେ ସେ ଏକ ବିଚିତ୍ର ଦୃଶ୍ୟ ଦେଖିଲେ। ଆସନ୍ତୁ ଆମେ ସମସ୍ତେ ସେହି ଦୃଶ୍ୟ ଦେଖିବା।

## ଧର୍ମ ଓ ପୃଥିବୀ ସଂବାଦ

ସେ ଗୋଟିଏ ଗାଈ ଏବଂ ଗୋଟିଏ ବଳଦ ଦେଖିଲେ। ଗାଈଟି ଅତ୍ୟନ୍ତ ଦୁଃଖୀ ହୋଇ ଠିଆହୋଇ କାନ୍ଦୁଥିଲା। ବଳଦର ତିନୋଟି ଗୋଡ଼ ଭାଙ୍ଗି ଯାଇଥିଲା। ଗୋଟିଏ ଗୋଡ଼ ଘୋଷାରି ଘୋଷାରି କୌଣସି ମତେ ସେ ଗାଈ ପାଖକୁ ଗଲା। ତାକୁ ଦେଖି ଗାଈ ବେଶୀ ଜୋରରେ କାନ୍ଦିବାକୁ ଲାଗିଲା। ଏ ଦୁହେଁ କିଏ ? ଗାଈ ପୃଥିବୀ ମାତା ଏବଂ ବଳଦ ଧର୍ମ ବା ଧର୍ମର ପ୍ରତୀକ ଅଟେ। ଭଗବାନ ଶିବ ନନ୍ଦୀ ବଳଦ ଉପରେ ବସନ୍ତି ଅର୍ଥାତ୍ ଧର୍ମ ଉପରେ ଆରୂଢ଼ ଥାନ୍ତି।  ସେହି ବଳଦ ବା ବୃଷଭ ରୂପୀ ଧର୍ମ ପୃଥିବୀ ପାଖକୁ ଯାଇ ତାଙ୍କୁ ଚିହ୍ନି ପ୍ରଶ୍ନ ପଚାରୁଛନ୍ତି। କହିଲେ , "ମାତା ଆପଣ ଦୁଃଖୀ କାହିଁକି ? ମୋର ଗୋଟିଏ ଗୋଡ଼ ଦେଖି  ଆପଣ ଦୁଃଖ କରୁଛନ୍ତି କି ସବୁ ସାଧୁମାନେ ଚାଲିଗଲେ

ଏବଂ ଆପଣଙ୍କୁ ବର୍ତ୍ତମାନ କେବଳ ଦୁଷ୍ଟମାନେ ହିଁ ଭୋଗ କରୁଛନ୍ତି, ଆଗକୁ ମଧ୍ୟ କରିବେ। କିମ୍ବା ଆପଣଙ୍କ ସ୍ୱାମୀ ଶ୍ରୀକୃଷ୍ଣ ଚାଲିଗଲେଣି, ଆପଣ ତାଙ୍କୁ ମନେ ପକାଇ କାନ୍ଦୁଛନ୍ତି ?

ଭଗବାନଙ୍କର ଦୁଇଟି ପତ୍ନୀ - ଶ୍ରୀଦେବୀ ଏବଂ ଭୂଦେବୀ। ଶ୍ରୀଦେବୀ ଲକ୍ଷ୍ମୀ ଏବଂ ଭୂଦେବୀ ପୃଥିବୀ ମାତା। ଭଗବାନ ତାଙ୍କ ଦୁଃଖ ଦୂର କରିବା ପାଇଁ ଏଠାକୁ ଆସନ୍ତି। ଏବେ ସେ ଫେରି ଗଲେଣି। ତେଣୁ ବୃଷଭ ପଚାରିଲେ "ଆପଣ ଧରଣୀ, ପୃଥିବୀ ମାତା, କୁହନ୍ତୁ କ'ଣ ହୋଇଛି ?" ସେ କହିଲେ- '**ଭବାନ୍ ହି ଧର୍ମ**'। ଆପଣତ ଧର୍ମ, ଆପଣ ସବୁ କିଛି ଜାଣିଛନ୍ତି। ଆପଣ ସତ କହିଲେ, ସବୁ ସଦ୍‌ଗୁଣ ର ଘର ଯେଉଁ ଭଗବାନ, ଯାହାଙ୍କର ଚରଣ ସ୍ପର୍ଶ ମୋତେ ନିରନ୍ତର ପ୍ରାପ୍ତ ହେଉଥିଲା ସେ ଏଠାରୁ ଚାଲିଗଲେଣି। ତାଙ୍କ ସ୍ମୃତି ମୋତେ ବହୁତ ଦୁଃଖ ଦେଉଛି।

**ତେନାହଂ ଗୁଣପାତ୍ରେଣ ଶ୍ରୀନିବାସେନ ସାମ୍ପ୍ରତମ୍।**
**ଶୋଚାମି ରହିତଂ ଲୋକଂ ପାପ୍ମନା କଲିନେକ୍ଷିତମ୍॥ (୧.୧୬.୩୦)**

ଯେଉଁ ଭଗବାନ ମୋତେ ନିରନ୍ତର ଆନନ୍ଦ ଦେଲେ, ତାଙ୍କର ବିରହ ମୁଁ କେମିତି ସହିବି ? ଏହା ସହିତ ଏହା ମଧ୍ୟ ଦେଖି ଯେ ଆପଣ ଏକ ପାଦରେ ଚାଲୁଛନ୍ତି ମୋତେ ଅତ୍ୟନ୍ତ ଦୁଃଖ ହେଉଛି। ସେମାନଙ୍କ ମଧ୍ୟରେ ଏପରି ବାର୍ତ୍ତାଳାପ ଚାଲୁଥିବା ସମୟରେ ଏକ ଶୁଦ୍ର ବ୍ୟକ୍ତି ସେଠି ଆସି ପହଞ୍ଚିଲା। ସେ କେମିତି ଦିଶୁଥିଲା ? ରାଜାଙ୍କ ପରି ମୁକୁଟ ଧାରଣ କରିଥିଲା ଏବଂ ହାତରେ ଥିଲା ଏକ ଖଣ୍ଡା। ସେ ସେହି ଗାଈ ଏବଂ ବଳଦ ଉଭୟଙ୍କୁ କଷ୍ଟ ଦେବାରେ ଲାଗିଲା। ସେହି ସମୟରେ ରାଜା ପରୀକ୍ଷିତ ମଧ୍ୟ ସେଠାରେ ଆସି ପହଞ୍ଚିଲେ। ସେ କହିଲେ - ତୁମେ କିଏ ? ତୁମେ କଣ ଜାଣିନକି ପାଣ୍ଡବ ବଂଶର ଏକ ବ୍ୟକ୍ତି ଏପର୍ଯ୍ୟନ୍ତ ଏଠାରେ ରାଜ୍ୟ ଶାସନ କରୁଛି ? ତାର ଶାସନ କାଳ ମଧ୍ୟରେ ତୁମେ ଏଠାରେ ଅଧର୍ମ କରିବାର ସାହାସ କଲ କେମିତି ? ମୁଁ ତୁମକୁ ଛାଡ଼ିବିନି, କାରଣ-

**ଏଷ ରାଜ୍ଞାଂ ପରୋ ଧର୍ମୋ ହ୍ୟାର୍ତାନାମାର୍ତି ନିଗ୍ରହଃ। (୧.୧୭.୧୧)**

ଦୁଃଖୀ ଲୋକମାନଙ୍କର ଦୁଃଖ ଦୂର କରିବା, ଦୁଷ୍ଟ ଲୋକ ମାନଙ୍କୁ ଦଣ୍ଡ ଦେବା ଏହା ହିଁ ରାଜାର କର୍ତ୍ତବ୍ୟ। ସ୍ୱୟଂ ଧର୍ମର ପାଳନ କରିବା, ଅନ୍ୟ ଦ୍ୱାରା ଧର୍ମର ପାଳନ କରାଇବା, ଏବଂ ଯଦି କେହି ଧର୍ମର ପାଳନ କରୁ ନାହିଁ ତ ତାକୁ ଦଣ୍ଡ ଦେବା -ଏହା ହିଁ

ରାଜାର କର୍ତ୍ତବ୍ୟ ଅଟେ। ତା ପରେ ସେ (ରାଜା ପରୀକ୍ଷିତ) ଧର୍ମଙ୍କୁ ପଚାରୁଛନ୍ତି - ଆପଣ କିଏ ? ଆପଣ ଙ୍କୁ କିଏ ଦୁଃଖ ଦେଉଁଛି ? ଆପଣ କାହିଁକି ଦୁଃଖୀ ? ଏଠାରେ ଧର୍ମ ବହୁତ ଭଲ ପ୍ରଶ୍ନ ଟିଏ ପଚାରିଛନ୍ତି ଯାହା ଆମ ପାଇଁ ମଧ୍ୟ ମହତ୍ୱପୂର୍ଣ୍ଣ ଏବଂ ବିଚାରଣୀୟ ଅଟେ। ଧର୍ମ କହିଲେ - ଆପଣ ମୋତେ ପଚାରୁଛନ୍ତି ମୋତେ କିଏ ଦୁଃଖ ଦେଲା ? କିନ୍ତୁ ମୁଁ ଆପଣଙ୍କୁ ପଚାରୁଛି ଯେ ଆପଣ ମୋତେ କୁହନ୍ତୁ ଯେ ମୋତେ ଦୁଃଖ ଦେବା ବାଲା କିଏ ହୋଇପାରେ ?

**ନ ବୟଂ କ୍ଲେଶବୀଜାନି ଯତଃ ସ୍ୟୁଃ ପୁରୁଷର୍ଷଭ।**
**ପୁରୁଷଂ ତଂ ବିଜାନୀମୋ ବାକ୍ୟଭେଦବିମୋହିତାଃ ॥ (୧.୧୭.୧୮)**

ଆମେ ସମସ୍ତେ ଅତ୍ୟନ୍ତ ଅଜ୍ଞାନୀ ଓ ମୋହିତ ଅଟୁ। ତେଣୁ ଯେଉଁ କାରଣରୁ ଆମ ଭିତରକୁ ଦୋଷ ଆସେ, ଦୁଃଖ ହୁଏ ଆମେ ତାକୁ ଜାଣି ପାରୁ ନାହୁଁ। କେହି - କେହି କୁହନ୍ତି ଦୈବୀ କାରଣ ରୁ ଦୁଃଖ ଆସେ। କିଏ କୁହେ ନିଜ କର୍ମ ଯୋଗୁଁ ଆସେ, କେହି କୁହେ ନିଜ ସ୍ୱଭାବ ଯୋଗୁଁ ଆସେ , କିଏ କୁହେ ଯେ ଏହାର କୌଣସି ତର୍କ ଦିଆ ଯାଇ ପାରିବ ନାହିଁ, ଆମ ଦୁଃଖ ର କାରଣ କଣ ? ଏହା କୁହା ଯାଇ ପାରିବ ନାହିଁ। ଆପଣ ତ ଜଣେ ବୁଦ୍ଧିମାନ ରାଜା, ଆପଣ ହିଁ ବିଚାର କରି କୁହନ୍ତୁ ଯେ, ମୋ ଦୁଃଖ ର କାରଣ କଣ ? ଯେତେବେଳେ ସେ ଏହି କଥା କହିଲେ ରାଜା ପରିକ୍ଷିତ ତାଙ୍କୁ ଚିହ୍ନି ପାରିଲେ। କହିଲେ, ମୁଁ ବୁଝିଗଲି ଯେ ତୁମେ ସାକ୍ଷାତ୍ ଧର୍ମ ଅଟ। ତେଣୁ , ତୁମେ କାହାର ଚୁଗୁଲି କଲ ନାହିଁ।

**ଧର୍ମ ବ୍ରବୀଷି ଧର୍ମଜ୍ଞ ଧର୍ମୋଽସି ବୃଷରୂପଧୃକ୍। (୧.୭.୨୨)**

ଦେଖନ୍ତୁ, ନିଜ ଦୁଃଖ ପାଇଁ ଅନ୍ୟ କାହାରିକୁ ଦୋଷ ଦେବା ମଧ୍ୟ ଅଧର୍ମ ହିଁ ଅଟେ। ତେଣୁ, କାହାକୁ ଦୋଷ ଦିଅ ନାହିଁ। ଧର୍ମର ଚାରିଟି ପାଦ- ତପ, ଶୌଚ-ଶୁଦ୍ଧତା, ଦୟା ଏବଂ ସତ୍ୟ। ଏହି ଚାରି ପାଦରେ ଧର୍ମ ଚାଲେ। ତପ ମାନେ ଇନ୍ଦ୍ରିୟ ସଂଯମ -ଇନ୍ଦ୍ରିୟ ବିଜୟ, ମନର ଏକାଗ୍ରତା; ଶୌଚମାନେ ମନ ତଥା ବାହାରର ଶୁଦ୍ଧତା, ଦୟା ମାନେ ପ୍ରାଣୀ ମାତ୍ର ପ୍ରତି କଲ୍ୟାଣର ଭାବନା ଏବଂ ସତ୍ୟ; ଏହି ଚାରିଟିର ପାଳନ ଯେଉଁ ଠାରେ ହୁଏ ସେଠି ଧର୍ମର ନିଷ୍ଠା ଥାଏ। ଯେଉଁଠି ଏହି ଚାରିଟି ଯାକ ନ ଥାନ୍ତି ସେଠି ଧର୍ମ ଆଦି କିଛି ନ ଥାଏ। ଯଦି କେହି କୁହେ ଯେ ମୁଁ ଅତ୍ୟନ୍ତ ଧାର୍ମିକ ବ୍ୟକ୍ତି କିନ୍ତୁ

କାହାକୁ ମାରିବା ପିଟିବା ରେ ସେ ସଂକୋଚ କରେ ନାହିଁ ତେବେ ସେ ପ୍ରକୃତରେ ଧାର୍ମିକ ନୁହଁ।

## ପରୀକ୍ଷିତଙ୍କ ଦ୍ୱାରା କଳିର ନିଗ୍ରହ

ରାଜା ପରୀକ୍ଷିତ କହିଲେ - ଏହି ଶୁଦ୍ର ତୁମକୁ ପୀଡ଼ା ଦେଉଛି, ତେଣୁ ମୁଁ ତାକୁ ମାରି ଦେବି। ଏପରି କହି ରାଜା ବେଶଧାରୀ ଶୁଦ୍ରକୁ ମାରିବା ପାଇଁ ଆଗକୁ ଚାଲିଲେ। ସେ ତ କଳି, ତେଣୁ ବଡ଼ ଚତୁର। ସାଂଗେ ସାଂଗେ ରାଜା ପରୀକ୍ଷିତଙ୍କ ପାଦ ତଳେ ପଡ଼ିଗଲା। କହିଲା -ମହାରାଜ, ମୁଁ ଆପଣଙ୍କର ଶରଣାଗତ। ମୁଁ ଦୀନ, ମୋତେ ମାରନ୍ତୁ ନାହିଁ। ପରୀକ୍ଷିତ କହିଲେ -ଶରଣାଗତ କୁ ନ ମାରିବା ତ ମୋ ଧର୍ମ। କିନ୍ତୁ ତୁମେ ସମସ୍ତଙ୍କୁ ଅଧର୍ମ ମାର୍ଗରେ ନେଇ ଯାଉଛ, ତେଣୁ ମୋ ରାଜ୍ୟରେ ରହି ପାରିବ ନାହିଁ, ଏଠୁ ବାହାର। ମୁଁ ତୁମକୁ ସୀମା ବାହାରକୁ ପଠଉଛି। କଳି କହିଲା, 'ରାଜନ୍, ଆପଣ ବଡ଼ ବିଚିତ୍ର କଥା କହୁଛନ୍ତି ଯେ ରାଜ୍ୟର ସୀମା ବାହାର କୁ ଯାଅ। ଆପଣ ତ ସମ୍ପୂର୍ଣ୍ଣ ପୃଥିବୀର ଚକ୍ରବର୍ତ୍ତୀ ସମ୍ରାଟ। ମୁଁ ଯେଉଁ ଆଡ଼େ ଦେଖୁଛି ଆପଣଙ୍କ ରାଜ୍ୟ ଦେଖାଯାଉଛି। ମୁଁ କୁଆଡ଼େ ଯିବି ? ରାଜ୍ୟ ବାହାରକୁ ଯାଇ ପାରିବି ନାହିଁ। ମୁଁ ମଧ୍ୟ ଆପଣଙ୍କର ଏକ ପ୍ରଜା, ମତେ ରହିବା ପାଇଁ କୌଣସି ସ୍ଥାନ ଦିଅନ୍ତୁ।

## କଳିର ପାଞ୍ଚୋଟି ନିବାସ- ସ୍ଥାନ

ରାଜା ପରୀକ୍ଷିତ କହିଲେ , "ଠିକ୍ ଅଛି, ମୁଁ ତୁମକୁ ଚାରୋଟି ସ୍ଥାନ ଦେଉଛି, ଦ୍ୟୁତଂ ଅର୍ଥାତ୍ ଜୁଆ, ପାନଂ ଅର୍ଥାତ୍ ମଦିରା, ସ୍ତ୍ରୀ ଅର୍ଥାତ୍ କାମ ବାସନା, ସୂନ ଅର୍ଥାତ୍ କଂସେଇ ଖାନା। ତୁମେ ଏହି ସ୍ଥାନଗୁଡ଼ିକରେ ରହିବ।"

କଳି କହିଲା, "ଏତିକି ସ୍ଥାନ ମୋ ପାଇଁ ଯଥେଷ୍ଟ ନୁହଁ। ଆଉ ଟିକିଏ ଅଧିକା ଦିଅନ୍ତୁ।" ପରୀକ୍ଷିତ କହିଲେ ତୁମକୁ ଆଉ ଅଧିକ ଜାଗା ଦରକାର ? ରାଜାଙ୍କ ମନରେ ଦୟା ଆସିଲା। ସେ କହିଲେ ଠିକ୍ ଅଛି, ଆଉ ଗୋଟିଏ ସ୍ଥାନ ନିଅ। ତୁମେ ସୁବର୍ଣ୍ଣ ବା ସୁନାରେ ବାସ କର, ଧନ ରେ ବାସ କର। ଏବେ ଦେଖିବା ଏହି ପାଞ୍ଚୋଟି ସ୍ଥାନର ଅର୍ଥ କ'ଣ ? ଏଗୁଡ଼ିକ କଳି ଅର୍ଥାତ୍ କଳହ ର ନିବାସ ସ୍ଥାନ। କିପରି ?

**ଦ୍ୟୁତଂ** - ଦ୍ୟୁତଂ ଅର୍ଥ ଜୁଆ। ଆମେରିକାରେ ଗୋଟିଏ ପୁରା ସହର ଜୁଆ ପାଇଁ ତିଆରି ହୋଇଛି। ଲାସ ଭେଗାସ ନାମକ ସେହି ସହରକୁ ଲୋକମାନେ କେବଳ ଜୁଆ ଖେଳିବା ପାଇଁ ଯାଆନ୍ତି। ଜୁଆ ଖେଳା ଯାଉଥିବା ସ୍ଥାନରେ ସତ୍ୟ ତ ରହି ପାରିବ ନାହିଁ।

ସେଠାରେ ଅନୃତ ଅର୍ଥାତ୍ ଅସତ୍ୟ, ମିଛ ଥିବ। ମିଛ ପାଇଁ କଳି -କଜିଆ ତ ହେବ ହିଁ ହେବ। ଏହିପରି ଏହା କଳିର ନିବାସ ସ୍ଥାନ।

**ପାନଂ** - ସେହିପରି ମଦ ପିଇଦେଲେ ବ୍ୟକ୍ତି କୁ ନିଶା ହୋଇଯାଏ। ନିଶା ହୋଇଗଲେ, ବିବେକ ଥାଏ କି ? ଜୁଆ ସତ୍ୟର ବିନାଶ କରେ ତ ମଦ ବିବେକର। ଯିଏ ପାନ କରେ ତା'ର ଅଭିମାନ ହୁଏ, ଯାହା ପାଇଁ ସେ ଧର୍ମର ଅତିକ୍ରମଣ କରେ।

**ସ୍ତ୍ରୀ** - ଆଉ ଯେଉଁ ତୃତୀୟ ସ୍ଥାନ 'ସ୍ତ୍ରୀ' କୁହାଯାଇଛି ତାର ଅର୍ଥ କାମ ବାସନା, ସ୍ତ୍ରୀ କୁ ଦେଖି ପୁରୁଷ ମନରେ ଏବଂ ପୁରୁଷ କୁ ଦେଖି ସ୍ତ୍ରୀ ମନରେ କାମ ବାସନା ଜାଗ୍ରତ ହୁଏ। ମନରେ କାମ ବାସନା ପ୍ରବଳ ହେଲେ - **'କାମାତୁରାଣାଂ ନ ଭୟଂ ନ ଲଜ୍ଜା'** ସେହି ବ୍ୟକ୍ତି ର ନା କାହା ପ୍ରତି ଭୟ ରହେ ନା ଲଜ୍ଜା ଲାଗେ। କାମବାସନା ଯେ କୌଣସି ପ୍ରକାରେ ତାଠାରୁ ଅଧର୍ମ ର କାମ କରେଇ ନିଏ। କାମବାସନା ଯୋଗୁଁ ବ୍ୟକ୍ତି ଅନ୍ଧ ହୋଇଯାଏ। ତେଣୁ ଏଠାରେ 'ସ୍ତ୍ରୀ'ର ଅର୍ଥ ହେଲା କାମବାସନା। କାମ ବାସନା ରେ କଳିର ନିବାସ ସ୍ଥାନ ଅଟେ। ସେହି କାମବାସନା ସ୍ତ୍ରୀ ହୃଦୟରେ ଥାଉ ବା ପୁରୁଷ ହୃଦୟରେ ଥାଉ।

**ସୂନ** - ଅର୍ଥାତ୍ କଂସେଇ ଖାନା। କଳିର ଏହି ଚତୁର୍ଥ ସ୍ଥାନଟି ରଜୋ ଗୁଣୀ ସ୍ଥାନ ଅଟେ। ରଜୋ ଗୁଣ ବିକ୍ଷେପକାରୀ ଅଟେ। ଦୟା ନାମକ ବସ୍ତୁ ତ ସେଠାରେ ରହି ପାରିବ ନାହିଁ। କେବଳ କ୍ରୁରତା ଏବଂ ହିଂସା ରହିବ। ତେଣୁ ସୂନ ବା କଂସେଇଖାନାର ଅର୍ଥ ହିଂସା।

**ସୁବର୍ଣ୍ଣ** - ଏହି ଯେଉଁ ପଞ୍ଚମ ସ୍ଥାନଟିର କଥା କୁହାଯାଇଛି -ସୁନା ବା ଧନ ତାର ଅର୍ଥ ହେଲା ଶତ୍ରୁତା, ଲୋଭ। ଯେଉଁଠି ଧନ ଏବଂ ଲୋଭ ଥାଏ ସେଠାରେ ଶତ୍ରୁତା ଭାବ ରହିବ ହିଁ ରହିବ।

ଏହି ପରି ଏହି ସବୁ ସ୍ଥାନ କଳିର କାରଣ ହେଇ ଯାଅନ୍ତି। ତେଣୁ ସ୍ୱାଭାବିକ ରୂପେ ଏଗୁଡ଼ିକ କଳିର ନିବାସ ସ୍ଥାନ। ଯେଉଁ ମାନେ ନିଜର କଲ୍ୟାଣ ଚାହାଁନ୍ତି ସେମାନେ ଏଥିରୁ ଅଲଗା ରହିବାକୁ ଚେଷ୍ଟା କରିବା ଉଚିତ୍। ସେମାନଙ୍କ ଅଧୀନରେ ରହିବା ଉଚିତ୍ ନୁହେଁ। ଏହା ସମସ୍ତଙ୍କ ପାଇଁ ସମାନ ରୂପେ ପ୍ରଯୁଜ୍ୟ, କିନ୍ତୁ ବିଶେଷ ଭାବରେ ସମାଜ ବା ଦେଶର ନେତୃବୃନ୍ଦ ଏଥି ପ୍ରତି ଦୃଷ୍ଟି ଦେବେ। ଏଗୁଡ଼ିକୁ ଛାଡ଼ନ୍ତୁ। ଯେଉଁମାନେ ଏହି ପାଞ୍ଚଟିକୁ ଛାଡ଼ି ଛନ୍ତି, ସେମାନଙ୍କ ଅଧୀନରେ ନାହାଁନ୍ତି, କଳି ତାଙ୍କୁ ସ୍ପର୍ଶ ମଧ୍ୟ କରି ପାରେ ନାହିଁ। ରାଜା ପରୀକ୍ଷିତ କଳିଯୁଗ କୁ ଛାଡ଼ିଦେଲେ। କାରଣ ଯଦିଓ କଳିଯୁଗରେ

ଅନେକ ଦୋଷ ରହିଛି ତଥାପି ଏଥିରେ ମଧ୍ୟ ଏକ ମହତ୍ତ୍ୱ ପୂର୍ଣ୍ଣ ଗୁଣ ରହିଛି । ଏଠି ଥରେ ମାତ୍ର ଭଗବାନଙ୍କ ନାମ ନେଲେ ମୁକ୍ତି ମିଳିଯିବ । ଏହି କଳି ନିଗ୍ରହ ପ୍ରସଙ୍ଗ ପରେ ରାଜା ପରିକ୍ଷିତ କଳି ଦ୍ୱାରା ପ୍ରତାଡ଼ିତ ବଳଦ ଅର୍ଥାତ୍ ଧର୍ମ ର ତିନୋଟି ଯାକ ପାଦକୁ -ତପ, ଶୌଚ ଏବଂ ଦୟା କୁ ଯୋଡ଼ି ଦେଲେ, ଏବଂ ଗାଈ ରୂପୀ ପୃଥିବୀମାତାଙ୍କୁ ମଧ୍ୟ ଆଶ୍ୱସ୍ତ କଲେ ।

## ରାଜା ପରୀକ୍ଷିତଙ୍କୁ ଋଷି ପୁତ୍ରଙ୍କ ଅଭିଶାପ

ରାଜା ପରୀକ୍ଷିତ ଥରେ ଶିକାର କରିବା ପାଇଁ ବାହାରିଲେ ଏବଂ ଜଂଗଲ ରେ ଦୂରକୁ ଚାଲିଗଲେ । ଭୋକ -ଶୋଷ ରେ ତ୍ରସ୍ତ ହୋଇ ସେ ଗୋଟିଏ ଆଶ୍ରମରେ ପହଞ୍ଚିଲେ ଯେଉଁଠି ଜଣେ ଋଷି ଧ୍ୟାନ-ମଗ୍ନ ଥିଲେ । ଦେଖନ୍ତୁ ଭୋକ -ଶୋଷ ରେ ବ୍ୟାକୁଳ ବ୍ୟକ୍ତିର ବୁଦ୍ଧି ଭ୍ରମିତ ହୋଇଯାଏ ଏବଂ ତାର ବୁଦ୍ଧି କାମ କରେ ନାହିଁ । ତେଣୁ ଭୋକ ଲାଗିଲେ ସେ ଭାବେ କଣ କରିବ, କାହାକୁ ଖାଇବ, କାହାକୁ ଭାଙ୍ଗିଦେବ କି ମାରିଦେବ । ଭୋକ ଲାଗିଲେ ପିଲାମାନେ କେତେ କ୍ରୋଧ କରନ୍ତି ? ଖାଇ ପିଇ ସାରିଲେ ଶାନ୍ତ ହୋଇ ଯାଆନ୍ତି । କିନ୍ତୁ ତା ପୂର୍ବରୁ କେଜାଣି କେଉଁ ରାକ୍ଷସ ର ଅବତାର ନେଇ ଯାଆନ୍ତି ।

ରାଜା ପରୀକ୍ଷିତ ଧ୍ୟାନସ୍ଥ ଋଷିଙ୍କ ସମ୍ମୁଖରେ ଛିଡ଼ା ହୋଇ ତାଙ୍କୁ ପିଇବା ପାଇଁ ପାଣି ମାଗିଲେ । ସେତେବେଳେ ଋଷି ସମାଧିସ୍ଥ ଥିଲେ, କିଛି ଶୁଣି ପାରିଲେନି । ତେଣୁ ରାଜା ପରୀକ୍ଷିତଙ୍କୁ କିଛି ଉତ୍ତର ମିଳିଲା ନାହିଁ । ତାଙ୍କୁ ଲାଗିଲା ତାଙ୍କର ବହୁତ ଅପମାନ ହେଲା । ତେଣୁ ରାଜାଙ୍କୁ କ୍ରୋଧ ଆସିଲା । ଭାବିଲେ ଏ ଋଷି ତ ବଡ଼ ଅହଂକାରୀ । ମୁଁ ଚକ୍ରବର୍ତ୍ତୀ ରାଜା , ଏଠିକି ଆସିଛି ଆଉ ଇଏ ମୋର ସମ୍ମାନ କରୁନାହାଁନ୍ତି ? ରାଜାଙ୍କୁ ଏତେ ଅଧିକ କ୍ରୋଧ ଆସିଲା ଯେ ସେ ପାଖରେ ପଡ଼ିଥିବା ଗୋଟିଏ ମୃତ ସର୍ପକୁ ନିଜର ଶର ସାହାଯ୍ୟରେ ଆଣି ଋଷିଙ୍କ ଗଳାରେ ପକେଇ ଦେଲେ । ଦେଖନ୍ତୁ, ପରୀକ୍ଷିତଙ୍କ ପରି ଉଚ୍ଚ ଚରିତ୍ରବାନ୍, ପରମ ଧାର୍ମିକ ବ୍ୟକ୍ତି ଏପରି କାର୍ଯ୍ୟ କଲେ । ଏହାର ଅର୍ଥ କ'ଣ ? ଯେ ମନୁଷ୍ୟକୁ ସର୍ବଦା ସାବଧାନ ରହିବା ଉଚିତ୍ । କିଏ କେତେ ମହାନ୍ ହେଲେ ମଧ୍ୟ କେବେ- କେବେ ତାର ମନ ଏମିତି ଓଲଟିଯାଏ ଯେ ତା ଦ୍ୱାରା ଅତ୍ୟନ୍ତ ନିକୃଷ୍ଟ କାମ ହେଇଯାଏ ।

ଏପରି କାମ କରୁଥିବା କିଛି ଲୋକ ଏପରି ମଧ୍ୟ କୁହନ୍ତି ଯେ ରାଜା ପରୀକ୍ଷିତ ତ ପୁଣି ଏମିତି କାମ କରିଥିଲେ । ମୁଁ କଲି ତ କ'ଣ ହୋଇଗଲା ? ନିଜର ତୁଳନା ପରୀକ୍ଷିତ

ଙ୍କ ସହିତ କେବେହେଲେ କରିବ ନାହିଁ। କାରଣ ପ୍ରଥମେ ଦେଖିବ ଯେ ରାଜା ପରୀକ୍ଷିତ କିପରି ରହୁଥିଲେ ? ଜୀବନରେ କେବଳ ଥରକ ପାଇଁ ତାଙ୍କ ଦ୍ୱାରା ଏପରି ଅପରାଧ ହୋଇଗଲା। ଆମ ଦ୍ୱାରା ତ ଏପରି ଅପରାଧ ନିରନ୍ତର ହଉଛି। ଆମ ସହିତ ତାଙ୍କର ତୁଳନା କେମିତି କରିବା ? ଏଠି କେବଳ ସେହି କଥା ମାତ୍ର କୁହାଯାଇ ନାହିଁ। ଏହି ଘଟଣା ପରର କଥା ଅଧିକ ମହତ୍ତ୍ୱପୂର୍ଣ୍ଣ ଅଟେ। ପ୍ରକୃତରେ ପରୀକ୍ଷିତ ଙ୍କ ପରି ବ୍ୟକ୍ତିଙ୍କ ମନରେ ଏପରି କୌଣସି ଭାବ ଆସିବାର ଅର୍ଥ ତାହା ଭଗବାନଙ୍କର ହିଁ ସଂକଳ୍ପ ଅଟେ। ଯେପରି ଯୁଦ୍ଧ ଭୂମିରେ ଅର୍ଜୁନର ମୋହ ହେଲା ତାହା କଣ ପ୍ରକୃତରେ ଅର୍ଜୁନର ମୋହ ଥିଲା ? ଭଗବାନ ତାଙ୍କୁ ମୋହିତ କରିଦେଲେ। କାରଣ ଏହି ଭଗବତ୍‌ଗୀତାର ଜ୍ଞାନ ସେ ସମ୍ପୂର୍ଣ୍ଣ ବିଶ୍ୱ କୁ ଦେବାକୁ ଚାହୁଁଥିଲେ। ସେଥିପାଇଁ ସେ ଅର୍ଜୁନଙ୍କୁ ନିମିତ୍ତ ବନେଇଲେ ଯେ ତୁମେ ନିମିତ୍ତ ହୁଅ। ଅର୍ଜୁନ ନିଜ ଅଜାଣତରେ ମୋହିତ ହୋଇଗଲେ। ପୁଣି ଭଗବାନ ତାଙ୍କ ମୋହକୁ ଦୂର ମଧ୍ୟ କରିଦେଲେ। ସେହିପରି, ଭଗବାନ ପରୀକ୍ଷିତଙ୍କୁ ମଧ୍ୟ ଅଳ୍ପସମୟ ପାଇଁ ମୋହିତ କରି ଦେଲେ ଏବଂ ଆମକୁ ଏତେ ମହାନ୍ ଭାଗବତ ଗ୍ରନ୍ଥ ଦେଲେ। ଭକ୍ତ ମାନଙ୍କର ମୋହ ମଧ୍ୟ ସଂସାର ପାଇଁ କଲ୍ୟାଣକାରୀ ସିଦ୍ଧ ହୁଏ।

ରାଜା ପରୀକ୍ଷିତ ତ ଋଷିଙ୍କ ଗଳାରେ ସାପ ପକେଇ ଚାଲିଗଲେ। ତାଙ୍କ ନାମ ଶମିକ ଋଷି ଏବଂ ତାଙ୍କ ପୁତ୍ରଙ୍କ ନାମ ଶୃଙ୍ଗୀ। ସେହି ପୁତ୍ର ଯେତେ ବେଳେ ଜାଣିଲେ ଯେ ରାଜା ଆସି ତାଙ୍କ ପିତାଙ୍କ ଗଳାରେ ମୃତ ସର୍ପ ପକେଇ ଦେଇଛନ୍ତି ପ୍ରଥମେ ତାଙ୍କୁ ଦୁଃଖ ହେଲା , ତାପରେ କ୍ରୋଧ ଆସିଲା। କହିଲେ, କ୍ଷତ୍ରୀୟ ରାଜା ତ ବ୍ରାହ୍ମଣ ଋଷିର ସେବକ, ଦାସ, ପହରା ଦେବା ବାଲା, ଦ୍ୱାରପାଳ ଅଟେ। ସ୍ୱାମୀର ଏପରି ଅପମାନ। ତୁମେ ମୋ ପିତାଙ୍କ ଗଳାରେ ମୃତ ସର୍ପ ପକେଇ ଦେଲ ତ ଆଜିଠାରୁ ସପ୍ତମ ଦିନ ତକ୍ଷକ ନାଗ ଆସି ତୁମକୁ ଦଂଶନ କରିବ ଏବଂ ତୁମର ମୃତ୍ୟୁ ହେବ। ଋଷିପୁତ୍ର ଏପରି ଅଭିଶାପ ଦେଲେ ଏବଂ ଋଷିଙ୍କ ଗଳାରେ ମୃତ ସର୍ପକୁ ଦେଖି କାନ୍ଦିବାକୁ ଲାଗିଲେ। ସେତେବେଳେ ଋଷି ଆଖି ଖୋଲିଲେ।

ଦେଖନ୍ତୁ, ରାଜା ପରୀକ୍ଷିତ ଙ୍କ କଥା ଶୁଣି ତାଙ୍କ ସମାଧି ଭଙ୍ଗ ହେଲା ନାହିଁ, କିନ୍ତୁ ଏବେ ହେଲା, ଏହା ମଧ୍ୟ ଭଗବାନଙ୍କ ସଂକଳ୍ପ। ଆଖି ଖୋଲି ଦେଖିଲେ ଯେ ବେକରେ ସାପ, ତାକୁ କାଢ଼ି ଦେଲେ ଏବଂ ପୁତ୍ରକୁ କାନ୍ଦିବାର କାରଣ ପଚାରିଲେ। କାହିଁକି କାନ୍ଦୁଛୁ ? କ'ଣ ହେଲା ତୋର ? ସେ ସମସ୍ତ ବୃତାନ୍ତ ଶୁଣେଇ ସାରି କହିଲା ଯେ ମୁଁ ତାଙ୍କୁ ସର୍ପ ଦଂଶନ ଦ୍ୱାରା ମୃତ୍ୟୁ ହେବାର ଅଭିଶାପ ଦେଇଛି। ଦେଖନ୍ତୁ ଋଷି କେତେ ମହାନ୍

ଥିଲେ। ଋଷି କହିଲେ - ପୁତ୍ର ତୁ ଅତ୍ୟନ୍ତ ଭୁଲ କାମ କଲୁ। ରାଜା ଅତ୍ୟନ୍ତ ଧର୍ମାତ୍ମା ଅଟନ୍ତି। ତାଙ୍କ ଯୋଗୁଁ କଳି ଏଠି ନିଜର ପ୍ରଭାବ ଦେଖେଇ ପାରୁନି। ତାଙ୍କ ଯୋଗୁଁ ରାଜ୍ୟ ବ୍ୟବସ୍ଥା ଠିକ୍ ଚାଲୁଛି। ସମସ୍ତେ ଧର୍ମ ପାଳନ କରୁଛନ୍ତି। କଦାଚିତ୍ କୌଣସି କାରଣରୁ ତାଙ୍କ ଦ୍ୱାରା କୌଣସି ଭୂଲ ହୋଇ ଯାଇଛି, ସେଥିପାଇଁ ତୁ ତାଙ୍କୁ ଏତେ ବଡ଼ ଅଭିଶାପ ଦେଇ ଦେଲୁ । କେହି ପାଞ୍ଚ ଟଙ୍କା ଚୋରୀ କଲେ ତାକୁ ସାଙ୍ଗେ ସାଙ୍ଗେ ଫାଶୀ ଦଣ୍ଡ ଦିଆଯିବା କ'ଣ ନ୍ୟାୟ ? ଏକ ଛୋଟ ଅପରାଧ ପାଇଁ ଏତେ ବଡ଼ ଦଣ୍ଡ। ତୁମର ଏହା ଅତ୍ୟନ୍ତ ଅନୁଚିତ କାର୍ଯ୍ୟ। ଏବେ ଅତିକମରେ ରାଜାଙ୍କୁ ସୂଚନା ପଠାଇ ଦିଅ ଯେ ତାଙ୍କୁ ଏପରି ଅଭିଶାପ ମିଳିଛି, ତେବେ ଅନ୍ତତଃ ସେ ଯାହା କରିବାକୁ ଚାହିଁବେ କରିପାରିବେ। ଦେଖିଲେ ଶମିକ ଋଷିଙ୍କ ସାଧୁତା ! ରାଜା ତାଙ୍କ ବେକରେ ସାପ ପକେଇଲେ । ସେ ସେଥିପାଇଁ ଟିକିଏ ବି ଖରାପ ଭାବିଲେନି। କିନ୍ତୁ ତାଙ୍କରି ପୁତ୍ର ଜଣେ ମହାନ୍ ରାଜାଙ୍କୁ ଅଭିଶାପ ଦେଲେ, ଏହା ତାଙ୍କୁ ଖରାପ ଲାଗିଲା। ଏହାର ଅର୍ଥ ତାଙ୍କ ମନରେ କୌଣସି ପ୍ରକାରର ଆସକ୍ତି -ମମତା ନ ଥିଲା।

### ପରୀକ୍ଷିତଙ୍କ ପଶ୍ଚାତାପ ଏବଂ ଦଣ୍ଡ - ଯାଚନା

ଏବେ ପରୀକ୍ଷିତ ଙ୍କ ସ୍ଥିତି କ'ଣ ? ଦେଖିବା। ପରୀକ୍ଷିତ ଘରକୁ ଫେରି ଭୋଜନ କରି ସାରିବା ପରେ ତାଙ୍କର ସବୁ ମନେ ପଡ଼ିଲା, କାରଣ ସେ ତ ଧର୍ମାତ୍ମା ଥିଲେ।

**'ଅହୋ ମୟା ନୀଚମନାର୍ଯ୍ୟବତ୍କୃତଂ'। (୧.୧୯.୧)**

ମୁଁ କେତେ ନୀଚ ସତେ ! ମୋତେ ସମସ୍ତେ ଆର୍ଯ୍ୟ କୁହନ୍ତି, ଶ୍ରେଷ୍ଠ ପୁରୁଷ କୁହନ୍ତି, ମୁଁ ଜଣେ ଅନାର୍ଯ୍ୟ ବ୍ୟକ୍ତି ପରି କାମ କଲି। **"ନିରାଗସି ବ୍ରହ୍ମଣି ଗୂଢ଼ ତେଜସି" (୧.୧୯.୧)**। ବ୍ରହ୍ମ ସ୍ୱରୂପ ରେ ସ୍ଥିତ, ନିଷ୍ପାପ ସେହି ବ୍ରାହ୍ମଣର ମୁଁ ଏପରି ଅପମାନ କଲି। ଏହା ତ ଅତ୍ୟନ୍ତ ଜଘନ୍ୟ ଅପରାଧ। ଏବେ ପରୀକ୍ଷିତ ଙ୍କ ହୃଦୟର ମହାନତା ଦେଖ। ସେ ଭାବିଲେ --

**ତଦସ୍ତୁ କାମଂ ତ୍ୱଘନିଷ୍କୃତାୟ ମେ**
**ଯଥା ନ କୁର୍ଯ୍ୟାଂ ପୁନରେବମଦ୍ଧା ॥ (୧.୧୯.୨)**

ମୁଁ ପାପ କରିଛି। ମୋତେ ଏପରି ଦଣ୍ଡ ମିଳିବା ଉଚିତ ଯାହାଦ୍ୱାରା କି ମୋ ପ୍ରବୃତ୍ତି ପୁନଃ ପାପରେ କେବେ ମଧ୍ୟ ହେବ ନାହିଁ। ଏପରି ଭାବି ସେ ନିଜ ପାଇଁ ଦଣ୍ଡ ର

ପ୍ରତୀକ୍ଷା କରିବାକୁ ଲାଗିଲେ । ଦେଖନ୍ତୁ, କେତେ ବଡ଼ କଥା । ଆମେ ତ ଅପରାଧ କରି ମଧ୍ୟ ଭାବୁ ଯେ ମୁଁ କିଛି ଭୁଲ କରିନି, ଆଉ ଦଣ୍ଡ ମିଳିଲେ ଭାବୁ ଯେ କାହିଁକି ମିଳୁଛି । ମୁଁ କ'ଣ ଏମିତି ଭୁଲ କଲି କି ? ଆଉ ଏଠି ଦେଖ ଯେ ସେ ଦଣ୍ଡର ପ୍ରତୀକ୍ଷା କରୁଛନ୍ତି, ଯେପରି ପୁଣି କେବେ କୌଣସି ଭୁଲ କାମ ନ କରେ । ତେଣୁ ଯଦି ଆମେ ଭୁଲ କାମ କରିବା ଆଉ କୌଣସି ଦଣ୍ଡ ମିଳିଲା ତ ଆମର ଖୁସୀ ହେବା ଉଚିତ୍ । କେତେ ଲୋକ ଟ୍ରେନରେ ବିନା ଟିକଟ ରେ ଯାଆସ କରୁଛନ୍ତି । ମୁଁ ବି ଦିନେ ସେମିତି କରିବି ଭାବି ଯଦି ବିନା ଟିକଟରେ ଯାତ୍ରା କଲି ଆଉ ଧରା ପଡ଼ି ଗଲି ତ ଖୁସୀ ହେବା କଥା । କିନ୍ତୁ ଆମେ ଭାବୁ ଏତେ ଲୋକ ସବୁଦିନ ଏଇଆ କରୁଛନ୍ତି, ଧରା ପଡୁ ନାହାଁନ୍ତି ଆଉ ମୁଁ ପ୍ରଥମ ଥରରେ ଧରା ପଡ଼ି ଗଲି । ଆରେ ! ତୁମ ଉପରେ ଭଗବାନ ପ୍ରସନ୍ନ ଅଛନ୍ତି । ତେଣୁ ପ୍ରଥମ ଥର ରୁ ହିଁ ଭୂଲ କାମ କରିବାକୁ ସେ ବାଧା ଦେଲେ । ଏକଥା ଆମେ ଜଲଦି ବୁଝି ପାରୁନାହୁଁ ।

ମୁଁ ଆପଣଙ୍କୁ ସତ କହୁଛି ଯେ ଯେତେବେଳେ ଆମକୁ ଅପରାଧ ର ଦଣ୍ଡ ତୁରନ୍ତ ମିଳେ ସେତେବେଳେ ବୁଝିବେ ଯେ ଆମ ଉପରେ ଭଗବାନ୍ ଅତି ପ୍ରସନ୍ନ ଅଛନ୍ତି । ଯେତେବେଳେ ଆମେ ଅପରାଧ କରି ମଧ୍ୟ ଦଣ୍ଡ ନ ପାଉ ବୁଝିବାକୁ ହେବ ଯେ ଭଗବାନ ଆମ ଉପରେ ରାଗିଛନ୍ତି । କାରଣ ଯାହା ଉପରେ ପ୍ରସନ୍ନ ଥାଆନ୍ତି, ତାକୁ ଜଲଦି ସୁଧାରି ଦିଅନ୍ତି । ରାଜା ପରୀକ୍ଷିତ ଏହା ବିଚାର କରିବା ସମୟରେ ସୂଚନା ପାଇଲେ ଯେ ଋଷିପୁତ୍ର ତାଙ୍କୁ ଅଭିଶାପ ଦେଇଛନ୍ତି, ଏବଂ ଅଭିଶାପ ଅନୁସାରେ ସପ୍ତମ ଦିନ ତକ୍ଷକ ଆସି ତାଙ୍କୁ ଦଂଶନ କରିବ । ରାଜା ଅତ୍ୟନ୍ତ ପ୍ରସନ୍ନ ହେଲେ ଯେ ଭଗବାନ୍‌ଙ୍କର ମୋ ଉପରେ ଅସୀମ କୃପା ଯେ ମୋତେ ଦଣ୍ଡ ମିଳିଲା । କିନ୍ତୁ ତାହା ବହୁତ କମ୍ । ଅଧିକ ଦଣ୍ଡ ମିଳିବା ଉଚିତ୍ । ଦେଖନ୍ତୁ ସେ ଏହା ଭାବିଲେ ନାହିଁ ଯେ ଏହି ଅଭିଶାପର ନିବୃତ୍ତିର ଉପାୟ କଣ ? ଅନେକ ଡାକ୍ତର ମାନଙ୍କୁ ଡାକିବି କି ? ଯାହା ଦ୍ୱାରା ତକ୍ଷକ ଦଂଶନ କଲେ ସେମାନେ ମୋତେ ବିଷ ନଷ୍ଟ କରିବା ପାଇଁ ଇଂଜେକ୍ସନ ଦେବେ - ଏପରି କୌଣସି ବିଚାର ତାଙ୍କ ମନକୁ ଆସିଲା ନାହିଁ, ବରଂ ଅଭିଶାପ ର ସୂଚନା ପାଇ ସେ ଅତ୍ୟନ୍ତ ପ୍ରସନ୍ନ ହେଲେ । **'ସ ସାଧୁ ମେନେ' (୧.୯.୪)** କହିଲେ ଭଲ କଥା ।

ଦେଖନ୍ତୁ , ଯେ କୌଣସି ଦିନ, ସପ୍ତମ- ଦିନ, ଆମ ସମସ୍ତଙ୍କୁ ମଧ୍ୟ ମୃତ୍ୟୁ ରୂପୀ ସର୍ପର -କାଳସର୍ପର ଦଂଶନ ହେବ । ତେଣୁ ତା ପୂର୍ବରୁ ଆମର ତତ୍ତ୍ୱକୁ ଜାଣିବାକୁ ପଡ଼ିବ । ରାଜା ପରୀକ୍ଷିତ କ'ଣ କଲେ ? ଅଭିଶାପ କଥା ଜଣା ପଡ଼ିବା ମାତ୍ରେ ସେ

ନିଜର ଚାରିପୁତ୍ର ଙ୍କ ମଧ୍ୟରୁ ଜ୍ୟେଷ୍ଠ ପୁତ୍ର ଜନ୍ମେଜୟଙ୍କୁ , ଯିଏ ଇରାବତୀ ନାମକ ପତ୍ନୀଙ୍କ ର ପୁତ୍ର ଥିଲେ, ରାଜ୍ୟ ଦେଇ ଦେଲେ ଏବଂ ବିରକ୍ତ ହେଇଗଲେ, କ୍ଷଣ ମାତ୍ରକେ ସବୁ କିଛି ତ୍ୟାଗ କଲେ। ଯଦି କେହି ପରୀକ୍ଷିତଙ୍କ ସମାନ ହେବାକୁ ଚାହିଁବ ତେବେ ଏହି ସବୁ ରେ ମଧ୍ୟ ସମାନ ହେବାକୁ ପଡ଼ିବ। ଆମେ ତ କେବଳ ଅପରାଧ କରିବାରେ ସମାନ ହେଉଛୁ। ସେ ଜୀବନରେ କେବଳ ଗୋଟିଏ ଥର ମାତ୍ର ଅପରାଧ କଲେ କିନ୍ତୁ ଆମେ ତ ନିରନ୍ତର କରିଚାଲିଛୁ।

## ପରୀକ୍ଷିତ ଙ୍କ ବିରକ୍ତି ଏବଂ ଶୁକଦେବଙ୍କ ଆଗମନ

ଅପରାଧର ଦଣ୍ଡ ମିଳିଛି ଜାଣି ସେ ଅତି ପ୍ରସନ୍ନ ହେଲେ। ସବୁ ତ୍ୟାଗ କରି ଗଙ୍ଗା କୂଳରେ ଆସି ବସିଲେ। କହିଲେ ଏବେତ ମୃତ୍ୟୁ ଆସିବ। ଗଙ୍ଗା କୂଳରେ ବସି ଭଗବାନଙ୍କ ନାମ ସ୍ମରଣ କରି ଦେହ ତ୍ୟାଗ କରି ଦେବି। ଅତି ଆଶ୍ଚର୍ଯ୍ୟର କଥା ଯେ ରାଜା ପରୀକ୍ଷିତ ଙ୍କ ଏହି ନିଶ୍ଚୟ ଶୁଣିବା ମାତ୍ରେ ସମସ୍ତ ଶ୍ରେଷ୍ଠ ମହାପୁରୁଷ, ଋଷିଗଣ ନିଜ ନିଜର ଶିଷ୍ୟ ସହିତ ସେଠି ଆସି ପହଞ୍ଚିଗଲେ। କହିଲେ ଦେଖି, ପରୀକ୍ଷିତ ଙ୍କ ଭାଗ୍ୟ କେମିତି ହୋଇଥିବ। ସେହି ଋଷି ମାନେ କିଏ ? ତାଙ୍କ ନାମ ଶୁଣନ୍ତୁ - ଅତ୍ରି, ବଶିଷ୍ଠ, ଚ୍ୟବନ, ଶରଦ୍ୱାନ୍, ଅରିଷ୍ଟନେମି, ଭୃଗୁ, ଅଂଗିରା, ପରାଶର, ଗାଧିସୁତ ବିଶ୍ୱାମିତ୍ର, ପରଶୁରାମ, ଉତଥ୍ୟ, ଇନ୍ଦ୍ରପ୍ରମଦ, ଇଧ୍ମବାହୁ, ମେଧାତିଥି, ଦେବଲ, ଆର୍ଷ୍ଟିଷେଣ, ଭାରଦ୍ୱାଜ, ଗୌତମ, ପିପ୍ପଲାଦ, ମୈତ୍ରେୟ, ଔର୍ବ, କବଷ, ଅଗସ୍ତ୍ୟ, ଭଗବାନ ବ୍ୟାସ ଏବଂ ନାରଦ। କହିଲେ ଆମେ ଏହାଙ୍କ ମୃତ୍ୟୁ ଦେଖିବୁ। ପରୀକ୍ଷିତ ସତ୍‌ସଂଗ ପାଇଁ ବସିଛନ୍ତି ଏବଂ ସମସ୍ତେ ସତ୍‌ସଂଗ କରେଇବା ପାଇଁ ପହଞ୍ଚିଛନ୍ତି। ଦେଖନ୍ତୁ ଭଗବାନ୍‌ଙ୍କର କିପରି ସଂକଳ୍ପ ? ରାଜା ପରୀକ୍ଷିତଙ୍କ ପରି ମରଣତ କାହାରି ହେଇନି।

ଏତେ ଋଷି ମୁନି ତାଙ୍କୁ ଆର୍ଶିବାଦ ଦେବା ପାଇଁ ସ୍ୱୟଂ ସେଠାକୁ ଆସିଗଲେ। ମୃତ୍ୟୁ ହେବ ତ ପରୀକ୍ଷିତ ଙ୍କ ପରି ? ନ ହେଲେ କି ମୃତ୍ୟୁ। ଏତେ ଋଷି ମାନଙ୍କୁ ଦେଖି ରାଜା ବୁଝିପାରିଲେ ନାହିଁ ଯେ ଏମାନେ ମୋ ଉପରେ ଏତେ କୃପା ବର୍ଷା କରୁଛନ୍ତି କାହିଁକି ? ମୁଁ ତ ଏତେ ନୀଚ କର୍ମ କରିଛି ? ଦେଖନ୍ତୁ ରାଜା ନିଜର ଶ୍ରେଷ୍ଠ କର୍ମଗୁଡ଼ିକୁ ମନେ ପକାଇ ପାରିଲେ ନାହିଁ, ଗୋଟିଏ ନୀଚ କର୍ମ କରିଥିଲେ ଯେ ତାହାହିଁ ମନେ ରହିଲା। ରାଜା ପରୀକ୍ଷିତ ସେମାନଙ୍କୁ ପ୍ରଣାମ କଲେ। ସେମାନଙ୍କର ପୂଜା କଲେ।

ପୁଣି କହିଲେ -

**ଅହୋ ବୟଂ ଧନ୍ୟତମା ନୃପାଣାଂ**

**ମହତ୍ତମାନୁଗ୍ରହଣୀୟଶୀଲାଃ ।**

**ରାଜ୍ଞା କୁଳଂ ବ୍ରାହ୍ମଣପାଦଶୌଚାଦ୍**

**ଦୂରାଦ୍ ବିସୃଷ୍ଟଂ ବତ ଗର୍ହ୍ୟକର୍ମ ॥ (୧.୬.୧୩)**

ସବୁ ରାଜା ମାନଙ୍କ ମଧ୍ୟରେ ମୁଁ ସବୁଠାରୁ ଭାଗ୍ୟବାନ ! ଧନ୍ୟଭାଗ କାରଣ ଆପଣମାନଙ୍କ ପରି ମହାପୁରୁଷ ମାନେ ସ୍ୱୟଂ ଏଠାରେ ଆସି ପହଞ୍ଚିଛନ୍ତି । ସେ ବି ମୋ ପରି ବ୍ୟକ୍ତି ଉପରେ କୃପା କରିବା ପାଇଁ ଯିଏ ଏପରି ଏକ ନୀଚ କର୍ମ କରି ସାରିଛି । ପୁଣି କହିଲେ - ମୋର ଆଉକିଛି ଚିନ୍ତା ନାହିଁ । **'ଗାୟତ ବିଷ୍ଣୁଗାଥା' (୧.୧୬.୧୫)** । ସାପ ଆସିବ, ଆଉ କାମୁଡ଼ିବ, ଦଂଶନ କରିବ ତ, କରୁ । ଏବେ ଆପଣ ଭଗବାନଙ୍କ ମହିମା ଗାନ କରନ୍ତୁ, ମତେ ତାଙ୍କର କଥା ଶୁଣାନ୍ତୁ । ମୁଁ ଅନ୍ୟ କିଛି ଶୁଣିବାକୁ ଚାହୁଁନି ।

**ସର୍ବେ ବୟଂ ତାବଦିହାସ୍ମହେଽଦ୍ୟ**

**କଲେବରଂ ଯାବଦସୌ ବିହାୟ ।**

**ଲୋକଂ ପରଂ ବିରଜସ୍କଂ ବିଶୋକଂ**

**ଯାସ୍ୟତ୍ୟୟଂ ଭାଗବତ ପ୍ରଧାନଃ ॥ (୧.୧୯.୨୧)**

ରାଜା ପରୀକ୍ଷିତଙ୍କର ନିଶ୍ଚୟ ଶୁଣି ସମସ୍ତ ଋଷି ଅତ୍ୟନ୍ତ ପ୍ରସନ୍ନ ହେଲେ । କହିଲେ, ଏ ଭାଗବତ ମାନଙ୍କ ମଧ୍ୟରେ, ଭକ୍ତ ମାନଙ୍କ ମଧ୍ୟରେ ମୁଖ୍ୟ, ଯେଉଁ ପର୍ଯ୍ୟନ୍ତ କେହି ତକ୍ଷକ ନ ଆସିଛି, ଯେଉଁ ପର୍ଯ୍ୟନ୍ତ ଏହାଙ୍କୁ ଅମରଗତି ପ୍ରାପ୍ତ ନ ହୋଇଛି, ସେ ପର୍ଯ୍ୟନ୍ତ ଆମେ ଏଠି ବସି ରହିବୁ । ଦେଖନ୍ତୁ କେତେ କୃପା ! ଏତିକି କହି ସମସ୍ତେ ବସି ପଡ଼ିଲେ । ରାଜା ପରୀକ୍ଷିତ କହିଲେ, "କୃପା ପୂର୍ବକ ଆପଣମାନେ ମତେ କୁହନ୍ତୁ ଯେ ନିଜର କଲ୍ୟାଣ ଚାହୁଁଥିବା ମନୁଷ୍ୟ, ବିଶେଷତଃ ମରଣାସନ୍ନ ମନୁଷ୍ୟ କୁ ନିଜର ତନ-ମନ ଦ୍ୱାରା କେଉଁ କର୍ମ କରିବା ଉଚିତ୍ ? ଆଉ ସେତେବେଳେ କ'ଣ ହେଲା ?

**ତତ୍ରାଭବଦ୍ଭଗବାନ୍ ବ୍ୟାସପୁତ୍ରୋ**
**ଯଦୃଚ୍ଛୟା ଗାମଟମାନୋଽନପେକ୍ଷଃ ।**
**ଅଲକ୍ଷଲିଂଗୋ ନିଜଲାଭତୁଷ୍ଟୋ**
**ବୃତଶ୍ଚ ବାଲୈରବଧୂତବେଷଃ ॥ (୧.୧୯.୨୫)**

ସେତେବେଳେ ଭଗବାନ ବେଦବ୍ୟାସଙ୍କ ପୁତ୍ର ଶୁକଦେବ, ଯିଏ ଅବଧୂତ ବେଶ ଧାରଣ କରିଛନ୍ତି- କୌଣସି ବସ୍ତ୍ର ପିନ୍ଧିନାହାଁନ୍ତି, ଯାହାଙ୍କ ଆୟୁ ଷୋହଳ ବର୍ଷ, 'ଅଲକ୍ଷଲିଂଗୋ' ଯାହାଙ୍କ ପାଖେ ବର୍ଣ୍ଣାଶ୍ରମର କୌଣସି ଚିହ୍ନ ନାହିଁ, ତେଣୁ ଯାହାଙ୍କୁ ଚିହ୍ନିବା କଷ୍ଟକର, **'ନିଜ ଲାଭ ତୁଷ୍ଟଃ'** ଯିଏ ନିଜ ସ୍ୱରୂପ ରେ ସ୍ଥିତ, ଆତ୍ମ ସନ୍ତୁଷ୍ଟ, ସେ ବୁଲୁବୁଲୁ ସେଠି ଆସି ପହଞ୍ଚି ଗଲେ । ଭଗବାନ ତାଙ୍କୁ ପଠେଇଲେ କି ଯାଅ, ପରୀକ୍ଷିତ ଅତ୍ୟନ୍ତ ଯୋଗ୍ୟ ଏବଂ ବିରକ୍ତ, ତାଂକୁ ସେତିକି ଯୋଗ୍ୟ ଗୁରୁ ଦରକାର । **'ଦଦାମି ବୁଦ୍ଧିଯୋଗଂ ତଂ ୟେନ ମାମୁପୟାନ୍ତି ତେ' । (ଭ.ଗୀତା ୧୦.୧୦)** । ଗୀତାରେ ଭଗବାନ କହିଲେ, ଯିଏ ମୋ ପାଖରେ ମନ ଲଗେଇ ସାରିଛି ତାକୁ ମୁଁ ବୁଦ୍ଧିଯୋଗ ପ୍ରଦାନ କରେ । ଏଠାକୁ ଶୁକଦେବଙ୍କୁ ପଠାଇଲେ । ଶୁକଦେବଙ୍କ ଭିତରେ ଏତେ ଆକର୍ଷଣ ଥିଲା ଯେ ଅନେକ ଛୋଟପିଲା ଯେଉଁ ମାନେ ତାଙ୍କୁ ଜାଣି ମଧ୍ୟ ନଥିଲେ, ତାଙ୍କୁ ଘେରିକରି ଠିଆ ହୋଇଥିଲେ । ଶୁକଦେବ ଅତ୍ୟନ୍ତ ସୁନ୍ଦର ଥିଲେ । ତାଙ୍କର ବର୍ଣ୍ଣ ନୀଳ ଏବଂ ତାଙ୍କର ସମସ୍ତ ଅଂଗ ଅତ୍ୟନ୍ତ ସୁଦୃଢ଼ ଏବଂ ସୁନ୍ଦର ଥିଲା । ଭଗବାନ କୃଷ୍ଣଙ୍କ ପରି ତାଙ୍କର କାନ୍ତି ଥିଲା । ଶରୀର ରେ ଧୂଳି ଲାଗିଥିଲା । ନଗ୍ନ ଅବସ୍ଥା ରେ ଥିଲେ । କିନ୍ତୁ ତାଙ୍କର ସୌନ୍ଦର୍ଯ୍ୟ ଏପରି ଥିଲା ଯେ, ପିଲାମାନେ, ନବଯୁବତୀ ଏବଂ ସ୍ତ୍ରୀ ମାନେ ସ୍ୱତଃ ପଛେ ପଛେ ଚାଲିବାକୁ ଲାଗିଲେ ।। ସେମାନେ ଜାଣିପାରିଲେ ନାହିଁ ଯେ କୁଆଡ଼େ ଯାଉଛନ୍ତି । ଶୁକଦେବ ସଭାରେ ପହଞ୍ଚିବା ମାତ୍ରକେ ଆଶ୍ଚର୍ଯ୍ୟଜନକ ଘଟଣା ଘଟିଲା । ଶୁକଦେବ ସଭାରେ ପହଞ୍ଚିବା ସଂଗେ ସଂଗେ –

**ପ୍ରତ୍ୟୁତ୍ଥିତାସ୍ତେ ମୁନୟଃ ସ୍ୱାସନେଭ୍ୟ-**
**ସ୍ତଲ୍ଲକ୍ଷଣଜ୍ଞା ଅପି ଗୂଢ଼ବର୍ଚସମ୍ ॥ (୧.୧୯.୨୮)**

ସେଠାରେ ଉପସ୍ଥିତ ସମସ୍ତ ଋଷି -ମୁନି ମାନେ ଏବଂ ସ୍ୱୟଂ ଶୁକଦେବ ଙ୍କ ପିତା (ଯିଏ ସେହି ସଭାରେ ଥିଲେ) ମଧ୍ୟ ଅତ୍ୟନ୍ତ ଆଦରର ସହିତ ନିଜ- ନିଜ ସ୍ଥାନ ରୁ ଉଠି ଠିଆ ହୋଇଗଲେ । ସମସ୍ତେ ତାଙ୍କୁ ଚିହ୍ନିଥିଲେ ଏବଂ ତାଙ୍କ ମହିମା ଜାଣିଥିଲେ ।

ଦେଖନ୍ତୁ ଭାଗବତ ର ଅନେକ ବକ୍ତା ଅଛନ୍ତି କିନ୍ତୁ ଶୁକଦେବଙ୍କ ପରି କେହି ନୁହଁନ୍ତି। ସେହିପରି ଶ୍ରୋତା ମଧ୍ୟ ଅନେକ କିନ୍ତୁ ପରୀକ୍ଷିତଙ୍କ ପରି କେହି ନୁହଁନ୍ତି। କାରଣ ଉଭୟ ଏପରି ବକ୍ତା ଏବଂ ଶ୍ରୋତା ଯେ ଯିଏ ଏହାକୁ ଶୁଣିଲେ ଓ କହିଲେ କେବଳ ପ୍ରେମ ଯୋଗୁଁ। ଉଭୟଙ୍କର କଥା ଶୁଣିବା ଏବଂ କହିବାର କୌଣସି ପ୍ରୟୋଜନ ନ ଥିଲା। ବ୍ରହ୍ମାଜୀ ଯେତେବେଳେ ନାରାୟଣ ଙ୍କ ଠାରୁ କଥା ଶୁଣିଲେ ସାଙ୍ଗେ ସାଙ୍ଗେ ସୃଷ୍ଟି ରଚନା ରେ ଲାଗିଗଲେ। ବ୍ରହ୍ମାଜୀ ଯେତେବେଳେ ନାରଦଙ୍କୁ କଥା ଶୁଣାଇଲେ, ତାପରଠାରୁ ନାରଦ ପ୍ରଚାର କାର୍ଯ୍ୟ କରି ବୁଲୁଛନ୍ତି। ହେଉ ପଛେ ସମାଜ ସେବା କାର୍ଯ୍ୟ। ନାରଦ ବ୍ୟାସଦେବଙ୍କୁ ସେହି କଥା ଶୁଣାଇବାରୁ ସେ ମଧ୍ୟ ଲୋକ କଲ୍ୟାଣ କାର୍ଯ୍ୟରେ ଲାଗିଗଲେ। ଏଠାରେ ଶୁକଦେବ ଏବଂ ପରୀକ୍ଷିତ ଏହି ଦୁଇ ଜଣ ଏପରି ବ୍ୟକ୍ତି ଯେଉଁମାନଙ୍କର କେବଳ କଥା ଶୁଣିବା ଏବଂ ଶୁଣେଇବା ଛଡ଼ା ଅନ୍ୟ କିଛି ପ୍ରୟୋଜନ ନାହିଁ। କେବଳ ପ୍ରେମ ହିଁ ପ୍ରେମ। ଶୁକଦେବଙ୍କୁ ଦେଖି ପରୀକ୍ଷିତ ବୁଝିପାରିଲେ ନାହିଁ ଯେ ଆଜି କଣ ହୋଇଛି ?

ଏବେ କହିଲେ ଦେଖି ସେଇଟା ଅଭିଶାପ ଥିଲା ନା ବରଦାନ ? ଯଦି ଆମେ ନିଜ ଜୀବନର ସବୁ ପରିସ୍ଥିତି ଗୁଡ଼ିକୁ ଧ୍ୟାନପୂର୍ବକ ଦେଖିବା ତେବେ ଜାଣିବା ଯେ ବର୍ତ୍ତମାନ ଯାହାକୁ ଆମେ ଅଭିଶାପ ବୋଲି ଭାବୁଛୁ, ଆଗକୁ ତାହା ବରଦାନ ସିଦ୍ଧ ହୋଇଥାଏ। ପରୀକ୍ଷିତଙ୍କ ସ୍ଥାନରେ ଆଉ କେହି ଥିଲେ କାନ୍ଦିବା ଆରମ୍ଭ କରିଦିଅନ୍ତାଣି ଯେ ମୋତେ ସାପ କାମୁଡ଼ିଦବ। ଏମିତି କାନ୍ଦି ଥାଆନ୍ତା ଯେ ତକ୍ଷକ କାମୁଡ଼ିବା ଆଗରୁ ତୃତୀୟ ବା ଚତୁର୍ଥ ଦିନ ସେ ନିଜେ ନିଜେ ମରି ଯାଇଥାଆନ୍ତା। ଅନ୍ୟର ମରଣ ଦେଖି ବି ଲୋକମାନେ କାନ୍ଦନ୍ତି। କିନ୍ତୁ ତୁମର ବି ତ ମରଣ ହେବ। ତା ବିଷୟରେ ତ ଟିକିଏ ଭାବ। ମରିବା ଆଗରୁ କ'ଣ କରିବ ଏହା ମଧ୍ୟ ଭାବ।

**ଅହୋ ଅଦ୍ୟ ବୟଂ ବ୍ରହ୍ମନ୍ ସତ୍ସେବ୍ୟାଃ କ୍ଷତ୍ରବନ୍ଧବଃ।**
**କୃପୟାତିଥିରୂପେଣ ଭବଦ୍‌ଭିସ୍ତୀର୍ଥକାଃ କୃତାଃ ॥ (୧.୧୯.୩୨)**

ରାଜା ପରୀକ୍ଷିତ କହିଲେ - ଆପଣ ତ ସମସ୍ତ ତୀର୍ଥକ୍ଷେତ୍ର ମାନଙ୍କୁ ତୀର୍ଥତା ପ୍ରଦାନ କରନ୍ତି। ଆପଣ ନିଜେ ମୋ ପାଖରେ ପହଞ୍ଚିଛନ୍ତି, ମୁଁ ଆପଣଙ୍କୁ ପ୍ରଣାମ କରୁଛି। ଏପରି କହି ରାଜା ପରୀକ୍ଷିତ ଶୁକଦେବଙ୍କୁ ପ୍ରଣାମ କଲେ, ତାଙ୍କର ପୂଜା କଲେ।

ତାପରେ ତାଙ୍କୁ ପ୍ରଶ୍ନ ପଚାରିଲେ -

**ଅତଃ ପୃଚ୍ଛାମି ସଂସଦ୍ଧି ଯୋଗିନାଂ ପରମଂ ଗୁରୁମ୍ ।**
**ପୁରୁଷସ୍ୟେହ ଯତ୍କାର୍ଯ୍ୟଂ ମ୍ରିୟମାଣସ୍ୟ ସର୍ବଥା ॥ (୧.୧୯.୩୭)**
**ଯଚ୍ଛ୍ରୋତବ୍ୟମଥୋ ଜପ୍ୟଂ ଯତ୍ କର୍ତବ୍ୟଂ ନୃଭିଃ ପ୍ରଭୋ ।**
**ସ୍ମର୍ତବ୍ୟଂ ଭଜନୀୟଂ ବା ବ୍ରୁହି ଯଦ୍ୱା ବିପର୍ଯ୍ୟୟମ୍ ॥ (୧.୧୬.୩୮)**

ମହାତ୍ମନ୍, ମୋ ମନରେ ଏହି ଗୋଟିଏ ପ୍ରଶ୍ନ ଅଛି । **"ପୁରୁଷସ୍ୟ ମ୍ରିୟମାଣସ୍ୟ ଯତ୍କାର୍ଯ୍ୟ ?"** ମରଣାସନ୍ନ ପୁରୁଷର କର୍ତ୍ତବ୍ୟ କଣ ? ଆପଣ ମୋତେ କୁହନ୍ତୁ। ସାଂସାରିକ ବୁଦ୍ଧି ସମ୍ପନ୍ନ ଲୋକ ମାନେ ତ କହିବେ ଯେ ତୁମେ ଉଇଲ ଲେଖ, କେତେକ ତ ମରିବା ପାଇଁ ରାଜି ହିଁ ହେବେନାହିଁ। ମରିବା ସମୟ ଆସିଗଲେ ମଧ୍ୟ ଭାବିବେ ଯେ ଆଉ କୌଣସି ଡାକ୍ତରକୁ ଦେଖେଇଥିଲେ ଭଲ ହୋଇଥାଆନ୍ତା। କେତେ କଥା ଭାବିବେ। କେତେ ଦୁଃଖର କଥା। **'ଯଦ୍ୟପି ଲୋକେ ମରଣଂ ଶରଣଂ'** (ଭଜଗୋବିନ୍ଦମ୍-୨୮) ମରଣ କୁ ଦେଖନ୍ତି, ତଥାପି ତାଙ୍କ ମନରେ କୌଣସି ପ୍ରଶ୍ନ ଉଠେନାହିଁ।

କୌଣସି ଏକ ସତ୍ ସଙ୍ଗରେ କେହି ଜଣେ ପ୍ରଶ୍ନ ପଚାରିଥିଲେ ଯେ ଆମ ଜନ୍ମର ଲକ୍ଷ୍ୟ କ'ଣ ? ମୁଁ କହିଥିଲି ଯେ - ଭଲଭାବରେ ମରିବା, ଏହାହିଁ ଆମ ଜୀବନର ଲକ୍ଷ୍ୟ ଅଟେ। ଦେଖନ୍ତୁ **'ଅନ୍ତେ ନାରାୟଣ ସ୍ମୃତିଃ'** । ଭଗବାନଙ୍କ ସ୍ମରଣ କରୁ କରୁ ମରିବା। ଦେଖ, ବ୍ୟକ୍ତି ମରିବା ବେଳେ କେମିତି ମଲା, ଏହା ହିଁ ସିଦ୍ଧ କରିବ ଯେ ତାର ସମ୍ପୂର୍ଣ୍ଣ ଜୀବନ କିପରି ଥିଲା। କେମିତି ମରିବା ଉଚିତ୍, ଏହା ମଧ୍ୟ ଶିଖିବା କଥା। ଭଗବତ୍ ଗୀତା ଶିଖାଏ ଯେ କିପରି ବଞ୍ଚିବା ଏବଂ ଭାଗବତ ଶିଖାଏ ଯେ କିପରି ମରିବା ଉଚିତ୍। କିନ୍ତୁ ଭାବିବେନି ଯେ ଦୁଇଟି ଯାକ ଶାସ୍ତ୍ର ଅଲଗା ଅଲଗା କଥା କହୁଛନ୍ତି। କାରଣ ଯିଏ ବଞ୍ଚିବା ଜାଣେ, ସେହିଁ ମରିଜାଣେ। ଉଭୟ ମଧ୍ୟରେ ପାର୍ଥକ୍ୟ କେବଳ ଏତିକି ଯେ ଗୋଟିକରେ ବଞ୍ଚିବାର କଳାର ପ୍ରାଧାନ୍ୟତା ଅଛି ଏବଂ ଅନ୍ୟଟିରେ ମରିବା କଳାର ପ୍ରାଧାନ୍ୟତା ଅଛି। କର୍ମ କରି ବଞ୍ଚିବାର ଉପଦେଶ ତ ଉପନିଷଦ୍ ରେ ମଧ୍ୟ ଦିଆଯାଇଛି। **'କୁର୍ବନ୍ନେବେହ କର୍ମାଣି ଜିଜୀବିଷେଚ୍ଛତଂ ସମାଃ'** ( ଈଶୋ ଉପ-୨ ) କିନ୍ତୁ କର୍ମ କିପରି କରିବା।

'ମାମନୁସ୍ମର ୟୁଧ୍ୟ ଚ' ( ଭ.ଗୀତା ୮.୭)।

ଗୀତା ରେ ଭଗବାନ କହିଲେ -

ମୋତେ ସ୍ମରଣ କରି ମରିଯାଅ। ଉପରୁ ଦେଖିଲେ ଜଣାପଡୁଛି ଯେ ଜଣେ ବଞ୍ଚିବା ଶିଖଉଛି ତ ଆଉ ଜଣେ ମରିବା- କିନ୍ତୁ ଉଭୟେ ସମାନ।

ଏଠାରେ ପରୀକ୍ଷିତ କହିଲେ - ଆପଣ କୁହନ୍ତୁ ମରଣାସନ୍ନ ବ୍ୟକ୍ତି କିପରି ମରିବା ଉଚିତ୍ ? ତାର କର୍ତ୍ତବ୍ୟ କ'ଣ ? ତାକୁ କଣ କରିବା ଦରକାର ? କଣ ଶୁଣିବା ଉଚିତ୍ ? କାହାର ଜପ କରିବ ? କାହାର ଭଜନ କରିବ ?

**ନୂନଂ ଭଗବତୋ ବ୍ରହ୍ମନ୍ ଗୃହେଷୁ ଗୃହମେଧିନାମ୍।**
**ନ ଲକ୍ଷ୍ୟତେ ହ୍ୟବସ୍ଥାନମପି ଗୋଦୋହନମ୍ କ୍ୱଚିତ୍।**

ଭଗବାନ୍! ଗାଈ ଦୁହିଁବାରେ ଯେତିକି ସମୟ ଲାଗେ ସେତିକି ସମୟ ମଧ୍ୟ ଆପଣ କୌଣସି ସ୍ଥାନରେ ରହନ୍ତି ନାହିଁ। ଆପଣ ଅତ୍ୟନ୍ତ କୃପା ପୂର୍ବକ ଏଠାକୁ ଆସିଛନ୍ତି, କେଜାଣି କେତେ ସମୟ ରହିବେ। ଯେତିକି ସମୟ ଆପଣ ରହିବେ ସେତିକି ସମୟ ମଧ୍ୟରେ ମୋତେ ସବୁକିଛି କହି ଦିଅନ୍ତୁ। କିନ୍ତୁ ଶୁକଦେବ ଏତେ ପ୍ରସନ୍ନ ହୋଇଗଲେ ଯେ ଚକା ପକାଇ ବସି ପଡ଼ିଲେ। କହିଲେ ମୁଁ ଏଠାରୁ କୁଆଡ଼େ ଯାଉନି। ପରୀକ୍ଷିତ ଙ୍କ ଉପରେ ସେ ଏତେ ମୁଗ୍ଧ ହୋଇଗଲେ। ପ୍ରକୃତରେ ଯଦି ଗୁରୁଙ୍କୁ କେବଳ ଜଣେ ହେଲେ ମଧ୍ୟ ଏପରି ଏକ ଶିଷ୍ୟ ମିଳିଯାଏ ତେବେ ସେ ଗୁରୁ କିପରି ଅନୁଭବ କରିବେ ସେ ଗୁରୁ ହିଁ ଜାଣନ୍ତି, ଏବଂ ଶିଷ୍ୟଙ୍କୁ ଯଦି ଏହି ପରି ଜଣେ ଗୁରୁ ମିଳନ୍ତି ତେବେ ସେ କିପରି ଅନୁଭବ କରିବେ କେବଳ ସେ ଜାଣେ।

ଏହି ପ୍ରଥମ ସ୍କନ୍ଧ ହେଲା **'ଅଧିକାରୀ ସ୍କନ୍ଧ'**। ଏଠାରେ ଶ୍ରୋତାଏବଂ ବକ୍ତା ଉଭୟଙ୍କର ଅଧିକାର ଦର୍ଶା ଯାଇଛି। ଶ୍ରୋତା ବକ୍ତା ଉଭୟେ ଅଧିକାରୀ ହେବା ଉଚିତ୍। ତେଣୁ କୁହାଯାଇଛି ଯେ ଯେଉଁ ବ୍ୟକ୍ତି ମନରେ ଭଗବାନଙ୍କ ପ୍ରତି ଭକ୍ତି ନାହିଁ, ବିଷୟ ରୁ ବୈରାଗ୍ୟ ନାହିଁ, ଭଗବତ୍ କଥା ପ୍ରତି ପ୍ରେମ ନାହିଁ , ସେହି ବ୍ୟକ୍ତି ର କଥା କହିବାର ଅଧିକାର ମଧ୍ୟ ନାହିଁ। ଆମ ଆଲୋଚନା କରିବାର ପ୍ରୟୋଜନ ହେଲା ଯେ ଏପରି ଭକ୍ତି ମନକୁ ଆସିଯାଉ। ଆଲୋଚନା କରୁକରୁ ମନରେ ଭକ୍ତି ମଧ୍ୟ ଆସୁ ଏହି ଭାବନା ରଖି

ଆଲୋଚନା କରିବାଏବଂ ଶୁଣିବା ଆବଶ୍ୟକ । ରାଜା ପରୀକ୍ଷିତ ଡରୁଥିଲେ ଯେ ଶୁକଦେବ ସାଂଗେ ସାଂଗେ ଯେପରି ଚାଲି ନଯାଆନ୍ତୁ ।

କିନ୍ତୁ -

**ଏବମାଭାଷିତଃ ପୃଷ୍ଟଃ ସ ରାଜ୍ଞା ଶ୍ଲକ୍ଷ୍ଣୟା ଗିରା ।**

**ପ୍ରତ୍ୟଭାଷତ ଧର୍ମଜ୍ଞୋ ଭଗବାନ୍ ବାଦରାୟଣିଃ ॥ (୧.୧୬.୪୦)**

ଶୁକଦେବଃ ତାଙ୍କ ଉପରେ ଅତ୍ୟନ୍ତ ପ୍ରସନ୍ନ ହେଲେ । ପ୍ରସନ୍ନତା ପୂର୍ବକ ସେ କହିବା ଆରମ୍ଭ କଲେ। ସେ ଅତ୍ୟନ୍ତ ସୁନ୍ଦର କଥା କହିଲେ। ଏଇଠୁ ଦ୍ୱିତୀୟ ସ୍କନ୍ଧ ଆରମ୍ଭ ହେଲା ।



# ଦ୍ୱିତୀୟ ସ୍କନ୍ଧ

ଶ୍ରୀମଦ୍‌ଭାଗବତରେ ବାରଟି ସ୍କନ୍ଧ ଅଛି। ଇଂରାଜୀ ରେ ସ୍କନ୍ଧକୁ କାଣ୍ଟୋ କୁହାଯାଏ। ଏହି ସ୍କନ୍ଧ ଗୁଡ଼ିକରେ ଭିନ୍ନ-ଭିନ୍ନ ସଂଖ୍ୟାର ଅଧ୍ୟାୟ ଅଛି। ପ୍ରଥମ ସ୍କନ୍ଧର ନାମ **ଅଧିକାରୀ ସ୍କନ୍ଧ**। ଆମେ ସେଥିରେ ଶ୍ରୋତା ଏବଂ ବକ୍ତା ଉଭୟଙ୍କର ଅଧିକାର ଦେଖିଲେ। ପରୀକ୍ଷିତ ଶ୍ରେଷ୍ଠ ଶ୍ରୋତା ଏବଂ ଶୁକଦେବ ଶ୍ରେଷ୍ଠ ବକ୍ତା। ପ୍ରଥମ ସ୍କନ୍ଧର ଶେଷରେ ପରୀକ୍ଷିତ ପ୍ରଶ୍ନ ପଚାରିଲେ ଯେ **'ମ୍ରିୟମାଣସ୍ୟ ପୁରୁଷସ୍ୟ ଯତ୍ କାର୍ଯ୍ୟ ତତ୍ ଭବତା ବକ୍ତବ୍ୟମ୍'**। ମରଣାସନ୍ନ ପୁରୁଷର କର୍ତ୍ତବ୍ୟ କଣ ? ଆପଣ ମୋତେ କୁହନ୍ତୁ। ଏହାର ସ୍ପଷ୍ଟ ଉତ୍ତର ଦେଇ ସାରି ଶୁକଦେବ ମୌନ ହେଲେ। ଦେଖନ୍ତୁ, ଆମର ଏଠି ଏପରି ପରମ୍ପରା ଅଛି ଯେ ଶିଷ୍ୟ ଯେତିକି ପଚାରିବ, ତାକୁ ସ୍ପଷ୍ଟ ଭାବେ ସେତିକି ଉତ୍ତର ଦିଆଯିବ। ତାପରେ ଦେଖିବେ ଯେ ଅଧିକ ଜାଣିବାର ଜିଜ୍ଞାସା ଅଛି ନା ନାହିଁ। ସେ ଯଦି ଆଗକୁ କିଛି ପଚାରୁ ନାହିଁ ତେବେ ଗୁରୁ ମଧ୍ୟ ଚୁପ ହୋଇଯାଆନ୍ତି କାରଣ ତାର ଅଧିକ ଜାଣିବାର ଜିଜ୍ଞାସା ନାହିଁ। କିନ୍ତୁ ଏଠି ପରୀକ୍ଷିତ ଆହୁରି ଅଧିକ ପ୍ରଶ୍ନ ପଚାରୁଛନ୍ତି, ତେଣୁ ଶୁକଦେବଙ୍କୁ ଅଧିକ ବତେଇବାର କାରଣ ମିଳୁଛି।

ଏହି ଦ୍ୱିତୀୟ ସ୍କନ୍ଧ **ସାଧନ ସ୍କନ୍ଧ ଅଟେ**। ସର୍ବପ୍ରଥମେ ଆମେ ଏଠି ଦେଖିବା ଯେ ପରୀକ୍ଷିତଙ୍କ ପ୍ରଶ୍ନର ସେ କଣ ଉତ୍ତର ଦେଲେ:-

**ବରୀୟାନେଷ ତେ ପ୍ରଶ୍ନଃ କୃତୋ ଲୋକହିତଂ ନୃପ।**

**ଆତ୍ମବିତ୍ସମ୍ମତଂ ପୁଂସା ଶ୍ରୋତବ୍ୟାଦିଷୁ ଯଃ ପରଃ ॥**

ଶ୍ରୀ ଶୁକଦେବ କହିଲେ ଯେ, ତୁମର ପ୍ରଶ୍ନ ଅତି ଉତ୍ତମ ଅଟେ। ଉତ୍ତମ (ବା ଭଲ) ପ୍ରଶ୍ନ ର ଅର୍ଥ କଣ ? **'ଲୋକହିତଂ କୃତଃ'**- ପ୍ରଶ୍ନ ଏଥିପାଇଁ ଭଲ ଯେ ଏଥିରେ କେବଳ ବ୍ୟକ୍ତିଗତ ଜିଜ୍ଞାସା ବା କୌତୁହଳ ମାତ୍ର ନାହିଁ ପରନ୍ତୁ ସମସ୍ତ ପ୍ରାଣୀମାନଙ୍କର ହିତ ସମାବିଷ୍ଟ ହୋଇ ରହିଛି। ଏହା ଦ୍ୱାରା ଆମେ ସମସ୍ତେ ଏହା ଜାଣି ପାରିବା ଯେ ମୃତ୍ୟୁ ସମୟ ରେ କଣ କରିବା ଦରକାର। ତେଣୁ ଏହା ବହୁତ ଭଲ କଥା। **'ଆତ୍ମବିତ୍ ସମ୍ମତ'** - ଆତ୍ମଜ୍ଞାନୀ ମଧ୍ୟ ଏପରି ପ୍ରଶ୍ନ କୁ ପସନ୍ଦ କରନ୍ତି।

ସେମିତି ତ ଜଗତରେ ଜାଣିବା ପାଇଁ ବହୁତ ଜିନିଷ ରହିଛି। କିନ୍ତୁ ଏଠାରେ କୁହାଗଲା ଯେ ଏହାହିଁ ଜାଣିବା ଯୋଗ୍ୟ ସର୍ବଶ୍ରେଷ୍ଠ କଥା। ଯେଉଁମାନେ ଆତ୍ମ-ତତ୍ତ୍ୱ କୁ ଜାଣିନାହାଁନ୍ତି, ସେମାନଙ୍କ ପାଇଁ ଘରେ, ରହିବା ସମୟରେ ଜାଣିବା- ଶୁଣିବା ପାଇଁ ଅନେକ ଜିନିଷ ଅଛି। କିନ୍ତୁ ଏହି ବସ୍ତୁ ଗୁଡ଼ିକର କୌଣସି ବିଶେଷ ଅର୍ଥ ନାହିଁ। ଅଜ୍ଞାନ ମାନଙ୍କ ଦିନ ଅର୍ଥ ଉପାର୍ଜନରେ ବିତିଯାଏ ଏବଂ ରାତି ନିଦ୍ରା ଏବଂ କାମୋପଭୋଗ ରେ। ଅଜ୍ଞାନ ମାନଙ୍କ ଦିନ ଏହିପରି ବିତିଯାଏ ଏବଂ ଜ୍ଞାନୀ ମାନଙ୍କର ସମୟ ଜ୍ଞାନ ଚର୍ଚ୍ଚାରେ ବ୍ୟତୀତ ହୁଏ।

**କାବ୍ୟଶାସ୍ତ୍ରବିନୋଦେନ କାଲୋ ଗଚ୍ଛତି ଧୀମତାମ୍ ।**

**ବ୍ୟସନେନ ତୁ ମୂର୍ଖାଣାଂ ନିଦ୍ରୟା କଲହେନ ବା ॥**

**ଭର୍ତ୍ତୃହରି ସୁଭାଷିତମାଲା ॥**

ଅଜ୍ଞାନୀ ଲୋକ ମାନଙ୍କ ସମୟ ପଶା ଖେଳ, କୌଣସି ବ୍ୟସନ ବା ନିଦ୍ରାରେ ହିଁ ବ୍ୟତୀତ ହୁଏ। ସେମାନେ ଦେହ ରେ ଗୃହରେ, ପରିବାରରେ ଏପରି ମସ୍ତ ହୋଇ ଯାଆନ୍ତି ଯେ, ମରଣକୁ ଦେଖି ମଧ୍ୟ ଦେଖିପାରନ୍ତି ନାହିଁ। **'ପଶ୍ୟନ୍ନପି ନ ପଶ୍ୟତି'**। ଲୋକମାନେ କେତେ ଲୋକଙ୍କୁ ଶ୍ମଶାନକୁ ବୋହି ନେଇଥିବେ, କେବେ ତ ବୃଦ୍ଧ ପିତା ନିଜର ଯୁବକ ପୁତ୍ରର ଚିତାରେ ଅଗ୍ନି ଦେଇ ଫେରିଥିବେ, ତଥାପି ତାଙ୍କୁ ନିଜର ମରଣ ଦିଶେନି। ସଂସାର ର ଏହି ସ୍ଥିତି କେତେ ବିଚିତ୍ର ସତେ ! ଏଠି ସେଇଆ ହିଁ କୁହାଯାଉଛି ଯାହା ସଂସାର ରେ ଦେଖାଯାଏ। ପ୍ରତିକ୍ଷଣରେ କେତେ ଲୋକ ମରୁଛନ୍ତି, ଲୋକେ ତାଙ୍କ ଚିତାରେ ଅଗ୍ନି ଦେଇ ଫେରି ଆସି ପୁଣି ଭାବୁଛନ୍ତି ଯେ ଏବେ କଣ ଖାଇବା ? ଆମେ ସବୁ ସେଇପରି । କାହାର ମୃତ୍ୟୁ ଖବର ପାଇଲେ ଭାବୁ ଯେ ଶ୍ମଶାନକୁ ଯିବା ପୂର୍ବରୁ ଭଲକରି ଖାଇବା କଥା। ସେଠାରେ କେତେ ସମୟ ଲାଗିବ କେଜାଣି। କଥାଟି ସତ କିନ୍ତୁ ଏହା ବ୍ୟାବହାରିକ ଦୃଷ୍ଟିକୋଣ ମାତ୍ର। ଏଠି ଏକଥା କହିବାର ଅର୍ଥ ହେଲା ଯେ ଲୋକ ମରଣ କୁ ଦେଖି ମଧ୍ୟ ଦେଖନ୍ତି ନାହିଁ।

## ପରୀକ୍ଷିତଙ୍କ ପ୍ରଶ୍ନ ର ଉତ୍ତର

**ତସ୍ମାଦ୍‌ଭାରତ ସର୍ବାତ୍ମା ଭଗବାନୀଶ୍ୱରୋ ହରିଃ ।**

**ଶ୍ରୋତବ୍ୟଃ କୀର୍ତିତବ୍ୟଶ୍ଚ ସ୍ମର୍ତବ୍ୟଶ୍ଚେଚ୍ଛାତାଭୟମ୍ ॥ (୨.୧.୫)**

ତେଣୁ ହେ ପରୀକ୍ଷିତ, ଯଦି ଅଭୟ ଅବସ୍ଥା ପ୍ରାପ୍ତ କରିବା ପାଇଁ ଚାହୁଁଛ, ତେବେ ଯେଉଁ ସର୍ବାତ୍ମା ଭଗବାନ ଈଶ୍ୱର ଅଛନ୍ତି, ଯାହାଙ୍କୁ ହରି ମଧ୍ୟ କୁହାଯାଏ, ସେହି ଭଗବାନଙ୍କ ନାମ, ରୂପ, ଗୁଣ, କଥା, ଲୀଳା, ଆଦିର ଶ୍ରବଣ କରା ଉଚିତ୍ । ସ୍ମରଣ ମଧ୍ୟ ତାଙ୍କରି କରିବା ଉଚିତ୍। କୀର୍ତନ ମଧ୍ୟ ତାଙ୍କରି କରିବା ଉଚିତ୍। କିନ୍ତୁ ଯଦି ପୂର୍ବବତ୍ ରହିବା ପାଇଁ ଇଚ୍ଛା ତେବେ କିଛି ବି କରିବା ଦରକାର ନାହିଁ। ମୂର୍ଖତା ପୂର୍ଣ୍ଣ ଜୀବନ ବଞ୍ଚିଲେ ଦୁଃଖ ରହିବ କିନ୍ତୁ ଯଦି ଅଭୟ ପ୍ରାପ୍ତି ଚାହୁଁଛ, ପୂର୍ଣ୍ଣ ଆନନ୍ଦ ପ୍ରାପ୍ତ କରିବା ପାଇଁ ଚାହୁଁଛ, ତେବେ ଭଗବାନ୍ ଙ୍କର ହିଁ ଶ୍ରବଣ, କୀର୍ତନ, ସ୍ମରଣ କରିବା ଉଚିତ୍।

**ଏତାବାନ୍ ସାଂଖ୍ୟଯୋଗାଭ୍ୟାଂ ସ୍ୱଧର୍ମପରିନିଷ୍ଠୟା ।**

**ଜନ୍ମଲାଭଃ ପରଃ ପୁଂସାମନ୍ତେ ନାରାୟଣଃ ସ୍ମୃତିଃ ॥ (୨.୧.୬)**

ଆମେ ସମସ୍ତେ ଯେଉଁ ଜ୍ଞାନାର୍ଜନ, ଯୋଗ, ସ୍ୱଧର୍ମାଚରଣ ଆଦି କରୁଛୁ, ଏହାର ପ୍ରକୃତ ଲାଭ କଣ ? ତାର ରହସ୍ୟ କେଉଁଠି ଲୁଚି ରହିଛି। କୁହାଯାଇଛି - ଜୀବନର ସବୁଠାରୁ ବଡ଼ ଲାଭ ହେଲା ଏହି କି ଯେ **"ମରଣ ସମୟରେ ଭଗବାନଙ୍କର ସ୍ମରଣ ରହୁ"**। ସେହି କାରଣ ରୁ ଯେତେବେଳେ ଜଟାୟୁଙ୍କର ଶେଷ ସମୟ ଆସିଲା ତ ଭଗବାନ କହିଲେ ଯେ ତୁମେ ଦେହ ଧାରଣ କରିଥାଅ। କିନ୍ତୁ ସେ କହିଲେ - ଭଗବାନ, ଶେଷ ସମୟରେ ଯାହାର ନାମ ସ୍ମରଣ କରିବା ମାତ୍ରକେ ମୁକ୍ତି ମିଳି ଯାଏ, ସେ ସ୍ୱୟଂ ସାକାର ରୂପରେ ମୋ ସମ୍ମୁଖରେ ଉପସ୍ଥିତ, ଦୃଶ୍ୟମାନ। ଏବେ ଏହି ଦେହ କୁ ଧାରଣ କରି ମୁଁ କଣ କରିବି। ଜନ୍ମ ର ଲାଭ ତ କେବଳ ଏତିକି ଯେ **'ଅନ୍ତେ ନାରାୟଣ ସ୍ମୃତି'**। ଅନ୍ତ କାଳରେ ନାରାୟଣଙ୍କର ସ୍ମରଣ ହଉ। ସ୍ମୃତି ତ ପରୋକ୍ଷରେ ହୁଏ। ଯିଏ ପ୍ରତ୍ୟକ୍ଷ ତାଙ୍କର ସ୍ମୃତିର ଆବଶ୍ୟକତା ବା କ'ଣ ? ଏଠାରେ ଭଗବାନ ସାମନାରେ ଠିଆ ହୋଇଛନ୍ତି। ତାଙ୍କୁ ମନେ ପକାଇବାର ମଧ୍ୟ ଆବଶ୍ୟକତା ନାହିଁ। ଏହା ହିଁ ଜନ୍ମର ଲାଭ, ଏବେ ମୁଁ ଦେହ ଧାରଣ କରି କଣ କରିବି ?

ଗୀତା ଆମକୁ କିପରି ବଞ୍ଚିବା ଶିଖାଏ ଏବଂ ଭାଗବତ ଶିଖାଏ କିପରି ମରିବା ? ଉଭୟ ର ଅର୍ଥ ଏକ। କାରଣ ସ୍ମରଣ ତାର ହୁଏ ଯାହାକୁ ପୂର୍ବରୁ (ଶ୍ରବଣ ଦ୍ୱାରା) ଗ୍ରହଣ

କରା ଯାଇଥାଏ। ଯାହା କୁ ପୂର୍ବରୁ କେବେ ଗ୍ରହଣ କରାଯାଇ ନଥାଏ ତାର ସ୍ମରଣ ହୁଏ ନାହିଁ। ଦିନ ରାତି ଯାହାକୁ ଆମେ ଗ୍ରହଣ କରିବା, ତାର ହିଁ ସ୍ମରଣ ହେଇପାରିବ।

ଏବେ ଶୁକଦେବ କହୁଛନ୍ତି ଯେ, ପ୍ରାୟତଃ ଆତ୍ମଜ୍ଞାନୀ ସମାଧିସ୍ଥ ପୁରୁଷ ସମାଧିରେ ରମଣ କରନ୍ତି। ମୁଁ ମଧ୍ୟ ନିର୍ଗୁଣବାଦୀ, ନିଜର ଆତ୍ମ ସ୍ୱରୂପରେ ସ୍ଥିତ, କିନ୍ତୁ କଣ କରିବି ?

**ପରିନିଷ୍ଠିତୋଽପି ନୈର୍ଗୁଣ୍ୟ ଉତ୍ତମଶ୍ଳୋକଲୀଲୟା।**
**ଗୃହୀତଚେତା ରାଜର୍ଷେ ଆଖ୍ୟାନଂ ଯଦଧୀତବାନ୍ ॥ (୨.୧.୯)**

ଉତ୍ତମ ଶ୍ଲୋକ ଭଗବାନଙ୍କ ଲୀଳା ଏହିପରି ଯେ ମୁଁ ତାଙ୍କ ଆଡ଼କୁ ଆକର୍ଷିତ ହେଇଗଲି। ଏପରି ଆକର୍ଷିତ ହେଲି, ଯେ ମୋର ପିତା ମୋତେ ଏହାର ଶ୍ରବଣ କରେଇଲେ ଏବଂ ମୁଁ ପୂର୍ଣ୍ଣ ରୂପେ ଏହାକୁ ହୃଦୟଙ୍ଗମ କରିନେଲି। ଥରେ ଏହା ପ୍ରତି ଆକର୍ଷିତ ହୋଇଗଲେ ବୁଦ୍ଧି ସ୍ଥିର ହୋଇଯାଏ। ଦୁଇମିନିଟ୍ ବି ମନ ଏଥିରେ ଲାଗିଗଲେ ଏବଂ ବିଶେଷଭାବରେ ମୃତ୍ୟୁ ସମୟରେ ଲାଗିଗଲେ, ଖୁବ୍ ଭଲ। ଅଜ୍ଞାନୀ ମାନେ ଅନେକ ବର୍ଷ ପର୍ଯ୍ୟନ୍ତ ଏଠାରେ ଜୀବିତ ରୁହନ୍ତି। ତାର ଲାଭ କଣ ? ଭଗବାନଙ୍କୁ ଭୂଲି ଏଠାରେ ଦୀର୍ଘାୟୁ ହେଲେ ତ କଣ କଲେ ? **'ବରଂ ମୂହୁର୍ତ୍ତ ବିଦିତଂ ଘଟେତ ଶ୍ରେୟସେ ଯତଃ'** – ଭଗବାନଙ୍କ ସ୍ମରଣ କରି ଯଦି କେହି ଅଳ୍ପ ସମୟ ମଧ୍ୟ ବଞ୍ଚେ ତେବେ ତାହା ସାର୍ଥକ। ଶ୍ରୀ ଶୁକଦେବ ଏଠାରେ ଖଟ୍ୱାଙ୍ଗ ରାଜାଙ୍କୁ ସ୍ମରଣ କରୁଛନ୍ତି, ଯାହାଙ୍କ କଥା ନବମ ସ୍କନ୍ଧ ରେ ଅଛି।

**ଖଟ୍ୱାଙ୍ଗୋ ନାମ ରାଜର୍ଷିର୍ଜ୍ଞାତ୍ୱେୟତ୍ତାମିହାୟୁଷଃ।**
**ମୁହୂର୍ତାତ୍ସର୍ବମୁତ୍ସୃଜ୍ୟ ଗତବାନଭୟଂ ହରିମ୍ ॥ ( ୨.୧.୧୩)**

ଖଟ୍ୱାଂଗ ରାଜା ଏତେ ମହାନ୍ ଥିଲେ ଯେ ସେ ସ୍ୱର୍ଗର ଦେବତା ମାନଙ୍କୁ ମଧ୍ୟ ସାହାଯ୍ୟ କରୁଥିଲେ। ଦେବତା ପ୍ରସନ୍ନ ହୋଇ ପଚାରିଲେ "ଆପଣଙ୍କର କଣ ଦରକାର ? ମାଗନ୍ତୁ"। ଖଟ୍ୱାଂଗ କହିଲେ, "ଆପଣ ମୋତେ କଣ ବର ଦେବେ, ଆପଣ ତ ମୋର ସାହାଯ୍ୟ ନିଅନ୍ତି। କିନ୍ତୁ ଆପଣ ମୋତେ କେବଳ ଗୋଟିଏ କଥା କୁହନ୍ତୁ – ମୋର ମୃତ୍ୟୁ କେବେ ହେବ ?" ଦେବତା ମାନେ କହିଲେ, "ଆପଣ ଏପରି ପ୍ରଶ୍ନ ପଚାରିଲେ ଯେ ଆମକୁ କହିବାକୁ ସଂକୋଚ ହେଉଛି। "କାହିଁକି ?" "କେବଳ ମାତ୍ର ଦୁଇଘଣ୍ଟା ମାତ୍ର ବାକି ଅଛି।" "ଦୁଇ ଘଣ୍ଟା ! ଧନ୍ୟବାଦ, ଦୁଇଘଣ୍ଟା ତ ବହୁତ ହେଲାଣି।" ସେ

ଫେରିଆସିଲେ। ଫେରିଯାଇ ସର୍ବସ୍ୱ ତ୍ୟାଗ କରି ମୁକ୍ତ ହୋଇଗଲେ। ସେ ଏହା ମଧ୍ୟ କହିଲେ ନି ମୋତେ ଆଉ ଟିକିଏ ସମୟ ଦିଅନ୍ତୁ। କ୍ଷଣକରେ ସବୁ କିଛି ତ୍ୟାଗ କରିଦେଲେ। ରାଜା ପରୀକ୍ଷିତ ଙ୍କୁ ତ ସାତଦିନ ସମୟ ମିଳିଥିଲା। କିନ୍ତୁ ରାଜା ଖଟ୍ୱାଂଗ ଙ୍କୁ କେବଳ ଦୁଇଘଣ୍ଟା ମିଳିଥିଲା। ଏମିତି ଲୋକ ମଧ୍ୟ ହୋଇଛନ୍ତି, ଏଥିରୁ ଶିଖିବାର କଥା କେବଳ ଏତିକି ଯେ ଅଳ୍ପ ସମୟ ହେଲେ ମଧ୍ୟ ଏମିତି ବଞ୍ଚିବା। ଅନ୍ୟଥା ଆମେ ବଞ୍ଚିଚାଲିଛୁ ଆଉ ଅନ୍ୟ ମାନେ ପ୍ରତୀକ୍ଷା କରି ରହିଛନ୍ତି ଏବଂ ଭାବୁଛନ୍ତି ଯେ ଇଏତ ଜମା ଯାଉନି। ଏମିତି ବଞ୍ଚିକରି ଲାଭ କଣ? କେହି କେହି ତ ବର୍ଷ ବର୍ଷ କୋମାରେ ପଡ଼ି ରହନ୍ତି। ଅନ୍ୟମାନେ ଫୋନ କରି ପଚାରନ୍ତି - " କ'ଣ ଖବର।" ଅର୍ଥାତ୍ ବଞ୍ଚିଛି ନା ମରି ଗଲାଣି? ଉତ୍ତର ମିଳେ - "ନାହିଁ ଅଛନ୍ତି, ନିଶ୍ୱାସ ଗଣୁଛନ୍ତି।" କେତେ ବିଚିତ୍ର ସ୍ଥିତି ସତେ!

## ବିରାଟଙ୍କ ଧ୍ୟାନ

**ଗୃହାତ୍ ପ୍ରବ୍ରଜିତୋ ଧୀରଃ ପୁଣ୍ୟତୀର୍ଥଜଲାପ୍ଲୁତଃ।**
**ଶୁଚୌ ବିବିକ୍ତ ଆସୀନୋ ବିଧିବତ୍କଲ୍ପିତାସନେ ॥ (୨.୧୧୬)**

ତେଣୁ ମରଣ ସମୟରେ କଣ କରିବା ଉଚିତ୍? କୁହାଗଲା - ଘରୁ ବାହାରି ଯାଅ। ସେମିତି ବି ଘର ଲୋକ ମାନେ ଆମେ ମରିବା ଜାଣିଗଲେ ଆଉ ଖଟରେ ଶୋଇବାକୁ ଦେବେନି। ତଳେ ରଖିଦେବେ। ତେଣୁ କୁହାଗଲା -

**'ଶୁଚୌ ବିବିକ୍ତ ଆସୀନୋ ବିଧିବତ୍କଲ୍ପିତାସନେ'** - ଘରୁ ବାହାରି କୌଣସି ପବିତ୍ର ସ୍ଥାନରେ ବସିବ ଏବଂ ଧାରଣା କରି ମନକୁ ଜିତିବ। ବ୍ୟକ୍ତି ପ୍ରତିଦିନ ଧ୍ୟାନାଭ୍ୟାସ କରିବା ଉଚିତ୍। କିପରି?

**ଜିତାସନୋ ଜିତଃଶ୍ୱାସୋ ଜିତସଂଗୋ ଜିତେନ୍ଦ୍ରିୟଃ।**
**ସ୍ଥୂଲେ ଭଗବତୋ ରୂପେ ମନଃ ସନ୍ଧାରୟେଦ୍ଧିୟା ॥ (୨.୧.୨୩)**

ଚାରୋଟି କଥା ପ୍ରତି ଦୃଷ୍ଟି ଦେବା ଆବଶ୍ୟକ -

ଜିତାସନ - ଗୋଟିଏ ସ୍ଥାନରେ ଗୋଟିଏ ଆସନରେ ସ୍ଥିର ହୋଇ ବସିବା।

ଜିତଶ୍ୱାସ - ଶ୍ୱାସ କୁ ସଂଯମିତ କରିବା ।

ଜିତ ସଂଗ- କୌଣସି ବିଷୟର ସଂଗ, ସାଂସାରିକ ସଂବନ୍ଧ ର ସଂଗ ଯୋଗୁଁ ମନ ସେହି ଦିଗକୁ ଆକର୍ଷିତ ନ ହେବା।

ଜିତେନ୍ଦ୍ରିୟ - ଇନ୍ଦ୍ରିୟ ମାନଙ୍କ ଯୋଗୁଁ ମନ କ୍ଷୁବ୍‌ଧ ନ ହେବା ।

ଶୁକଦେବ କହୁଛନ୍ତି - ଆସନ,ଶ୍ୱାସ, ସଂଗ, ଏବଂ ଇନ୍ଦ୍ରିୟମାନଙ୍କ ଉପରେ ବିଜୟ ପ୍ରାପ୍ତକରି ତା ପରେ ନିଜ ମନକୁ ଭଗବାନଙ୍କ ସ୍ଥୁଳ ବିରାଟ ରୂପ ଉପରେ ସ୍ଥିର କରିବା ଆବଶ୍ୟକ । ଭଗବାନ୍‌ଙ୍କ ବିରାଟ ରୂପର ବର୍ଣ୍ଣନ ଭାଗବତର କେଜାଣି କେତେ ଅଧ୍ୟାୟ ରେ ହୋଇଛି । ଏଠାରେ ଆମେ ଥରେ ବିସ୍ତାର ରେ ଏହାକୁ ଦେଖି ନେବା । ତା' ପରେ ପୁନଃ ପୁନଃ ଆବୃତ୍ତି କରିବାର ଆବଶ୍ୟକତା ହେବ ନାହିଁ । ମନୁଷ୍ୟ ର ଶରୀର ଅତ୍ୟନ୍ତ ଛୋଟ । ଭଗବାନଙ୍କ ବିରାଟ ଶରୀର କେମିତି ହୋଇଥିବ ? କେତେ ବଡ ହୋଇଥିବ୍ ? ଏଠି ତ କେବଳ ଗୋଟିଏ ବ୍ରହ୍ମାଣ୍ଡ ଦୃଷ୍ଟିରୁ କୁହା ଯାଉଛି । ଏପରି ଅନେକ ବ୍ରହ୍ମାଣ୍ଡ ଅଛି । ତୁଲସୀ ରାମାୟଣ ରେ ମନ୍ଦୋଦରୀ ରାବଣକୁ କହିଲେ-"ଶ୍ରୀରାମଙ୍କୁ ଆପଣ ସାଧାରଣ ପୁରୁଷ ଭାବନ୍ତୁ ନାହିଁ ।" **'ପଦ ପାତାଳ ଶୀଶ ଅଜଧାମା' (୬.୧୪.୧)** । ପାତାଳ ତାଙ୍କର ଚରଣ ସ୍ଥାନୀୟ ହେଲେ ବ୍ରହ୍ମଲୋକ ଶୀର୍ଷ ସ୍ଥାନୀୟ (୬.୧୪.୧) ଏହି ବର୍ଣ୍ଣନା ଏହି ଶ୍ଳୋକଗୁଡ଼ିକ ଉପରେ ଆଧାରିତ ।

**ପାତାଳମେତସ୍ୟ ହି ପାଦମୂଳଂ**
**ପଠନ୍ତି ପାର୍ଷ୍ଣିପ୍ରପଦେ ରସାତଳମ୍**
**ମହାତଳଂ ବିଶ୍ୱସୃଜୋଽଥ ଗୁଲ୍‌ଫୌ**
**ତଳାତଳଂ ବୈ ପୁରୁଷସ୍ୟ ଜଂଘେ ॥ (୨.୧.୨୬)**

ଏଠାରେ ସଂକ୍ଷେପରେ ଏକ କଳ୍ପନା କରେଇଛନ୍ତି । କୁହାଗଲା ଯେ ଭଗବାନଙ୍କ ପାଦଠାରୁ କଟି ପର୍ଯ୍ୟନ୍ତ ସପ୍ତ ଅଧୋଲୋକ ଅଟେ । କଟିଭାଗରେ ଭୂଲୋକ, ନାଭି ରୂପରେ ଆକାଶ, ହୃଦୟ ସ୍ୱର୍ଗଲୋକ, ଏହି କ୍ରମରେ ଉପରକୁ ଶୀର୍ଷ ପର୍ଯ୍ୟନ୍ତ ସପ୍ତ ଊର୍ଦ୍ଧ୍ୱଲୋକ ଅଛି । ଏହି ପରି ବିରାଟ ପୁରୁଷରେ ଚଉଦ ଲୋକ ଅଛି । ପୁଣି ଦାନ୍ତ, ହାତ, ନାଡ଼ି ଏବଂ ରୋମ ଅଛି । ତାର ବି ବର୍ଣ୍ଣନା କରାଯାଇଛି । ପାତାଳ ଭଗବାନଙ୍କ ପାଦମୂଳ ଅଟେ । ଏଡ଼ି ଏବଂ ପଞ୍ଝା ରସାତଳ । ମହାତଳ କାହିଁ ? ଘୁଂଘୁର ବାନ୍ଧିବା ସ୍ଥାନ ହେଲା ମହାତଳ । ଆଣ୍ଠୁ ତଳକୁ ତଳାତଳ । ଭଗବାନଙ୍କ ଆଣ୍ଠୁରେ ସୁତଳ ଲୋକ ଅଛି । ଜଂଘ ଦୁଇଟି ହେଲା ଅତଳ - ବିତଳ ଲୋକ । ତାଙ୍କର କଟି ଭାଗ ଭୁଲୋକ ଅର୍ଥାତ୍ ମହାତଳ, ନାଭି ଆକାଶ ଅଟେ । ତାଙ୍କର ଛାତି ସ୍ୱର୍ଗଲୋକ, ଗ୍ରୀବା ମହଲୋକ, ମୁଖ ଜନଲୋକ, କପାଳ ତପଲୋକ ଏବଂ ଶୀର୍ଷ ବ୍ରହ୍ମଲୋକ ଅଟେ । ଭଗବାନଙ୍କ ମୁଣ୍ଡ କାହିଁ ? ଖୋଜନ୍ତୁ । ଏହା ହିଁ ଭଗବାନଙ୍କ ବିରାଟ ରୂପ । ଏହାର ଆଗକୁ ମଧ ବର୍ଣ୍ଣନା କରା ଯାଇଛି । ଇନ୍ଦ୍ର

ଆଦି ଦେବତା ତାଙ୍କର ବାହୁ। ପଞ୍ଚତତ୍ତ୍ୱ ଏବଂ ସେମାନଙ୍କର ଅଧିଷ୍ଠାତା ଦେବତା ମାନେ ହେଲେ ଇନ୍ଦ୍ରିୟ। ଦାନ୍ତ ଯମରାଜ ଏବଂ ଭଗବାନଙ୍କ ମାୟା ହାସ୍ୟ ଅଟେ।

ଭଗବାନଙ୍କ ହାସ୍ୟ ଧ୍ୟାନ ଦେବା ଯୋଗ୍ୟ। ଭଗବାନଙ୍କର ହସ ବା ମାୟା ଦୁଇ ପ୍ରକାରର। ଗୋଟିଏ ସ୍ୱଜନ ମୋହିନୀ -ଯାହା ଭକ୍ତଙ୍କୁ ମୋହିତ କରେ। ଭଗବାନଙ୍କ ଭକ୍ତଜନ ମାନଙ୍କୁ ମଧ୍ୟ ହସି କରି ମୋହିତ କରୁଥାନ୍ତି। ଆହୁରି ମଧ୍ୟ ଭଗବାନ ହସିକରି କେତେବେଳେ ମୋହିତ କରିଦିଅନ୍ତି କେତେବେଳେ ମୋହ କୁ ଦୂର କରିଦିଅନ୍ତି। ଅର୍ଜୁନଙ୍କୁ ମୋହିତ କଲେ, ପରୀକ୍ଷିତଙ୍କୁ ମୋହିତ କଲେ, ନାରଦଙ୍କୁ ମୋହିତ କଲେ। କିନ୍ତୁ ଏମାନଙ୍କ ମୋହ ଦ୍ୱାରା ଅନ୍ୟମାନଙ୍କର କଲ୍ୟାଣ ମଧ୍ୟ ହେଲା ଏବଂ ତାଙ୍କ ନିଜର ମଧ୍ୟ ହେଲା। ଏହାର ବିପରୀତ ଯେତେବେଳେ ଭଗବାନ ଅଭକ୍ତ ମାନଙ୍କୁ ଦେଖିକରି ହସନ୍ତି, ତା କଥା କ,ଣ କହିବା ? ଯେମିତି ଆମେ ସମସ୍ତେ ଭଗବାନଙ୍କ ଦ୍ୱିତୀୟ ମାୟାରେ ପଡ଼ିଯାଇଛେ। ଯଦି ହେହ ପ୍ରତି ଆସକ୍ତି ବଢୁଛି, ତେବେ ବୁଝିବାକୁ ହେବ ଯେ ଏହା ଭଗବାନଙ୍କ ଦ୍ୱିତୀୟ ମାୟାର ପ୍ରଭାବ। ଯେତେବେଳେ ଦେହାଦିଠାରୁ ବୈରାଗ୍ୟ ହେବା ଆରମ୍ଭ ହେବ, ସେତେବେଳେ ବୁଝିବାକୁ ହେବ ଯେ ଏହା ଭଗବାନଙ୍କ ପ୍ରଥମ ମାୟାର ପ୍ରଭାବ ଯାହା ଦ୍ୱିତୀୟ ମାୟାକୁ ଦୂର କରିବା ପାଇଁ ହୋଇଥାଏ।

ଆଗକୁ କୁହାଯାଇଛି ଯେ ଲଜ୍ଜା ଭଗବାନଙ୍କ ଉପର ଓଠ ଏବଂ ଲୋଭ ଭଗବାନଙ୍କ ତଳ ଓଠ। ପୁଣି କୁହାଗଲା **'ଧର୍ମ ସ୍ତନୋଽଧର୍ମପଥୋଽସ୍ୟ ପୃଷ୍ଠମ୍'** - ଭଗବାନଙ୍କ ହୃଦୟ -ବକ୍ଷ ସ୍ଥଳ ଧର୍ମ ଏବଂ ପିଠି ଅଧର୍ମ ଅଟେ। ତେଣୁ ଅଧର୍ମର ଆଶ୍ରୟ ମଧ୍ୟ ଭଗବାନଙ୍କ ହିଁ ଅଟନ୍ତି। ସଂସାରରେ ମଧ୍ୟ ସବୁ ଭଲ କାମ ସାମନାରେ ହୁଏ ଏବଂ ସବୁ ଅଧର୍ମ କାମ ପଛରେ ଲୁଚାଇ କରି କରାଯାଏ। ତେଣୁ କୁହାଯାଏ ଯେ ଭଗବାନଙ୍କୁ ପିଠି ଦେଖାଇବା ଉଚିତ୍ ନୁହେଁ। କୁହାଯାଇଛି ଯେ ବ୍ରାହ୍ମଣ ଏହାଙ୍କ ମୁଖ, କ୍ଷତ୍ରୀୟ ଭୂଜ, ବୈଶ୍ୟ ଜଂଘ ଏବଂ ଶୁଦ୍ର ବିରାଟ ପୁରୁଷ ଙ୍କ ଚରଣ ଅଟନ୍ତି। ପୃଥିବୀ ଉପରେ ଯେଉଁ ଜଙ୍ଗଲ ଅଛି ଏବଂ ସେଥିରେ ଯେଉଁ ବନସ୍ପତି ଆଦି ଅଛନ୍ତି, ସେମାନେ ସେହି ବିରାଟ ପୁରୁଷଙ୍କର ରୋମାବଳୀ ଏବଂ ନଦୀ ଗୁଡ଼ିକ ତାଙ୍କର ନାଡ଼ି ଅଟନ୍ତି।

ଏହାର ଅର୍ଥ ହେଲା ଯେ ଭଗବାନଙ୍କର ଏହି ବିରାଟ ରୂପରେ ମନକୁ ଲଗାନ୍ତୁ। ଏ ପ୍ରଶ୍ନ ଉଠେ ଯେ ବିରାଟ ରେ ନିଜ ମନକୁ ଲଗେଇବାର ଅର୍ଥ କ'ଣ ? ଅର୍ଥ ହେଲା ଯେ ଆଜି ଆମେ ନିଜକୁ ସମ୍ପୂର୍ଣ୍ଣ ବିଶ୍ୱରୁ ଅଲଗା ଭାବୁଛୁ। କିନ୍ତୁ ପ୍ରକୃତରେ ଆମର ଏହି ଶରୀର ପଞ୍ଚଭୂତର ସୃଷ୍ଟି ଠାରୁ ଅଲଗା ହୋଇରହିପାରିବ ନାହିଁ। ଯଦି ଭଗବାନଙ୍କ ଗୋଡ଼

ପାତାଳ ଲୋକ ଏବଂ କଟିଭାଗ ଭୂଲୋକ ଅଟେ, ତେବେ ମୁଁ ମଧ୍ୟ ସେଥିରେ ଆସିଗଲି କି ନାହିଁ ? ମୁଁ ଭଗବାନଙ୍କ ଗୋଟିଏ ଅଙ୍ଗ ହେଲି । ତାଙ୍କଠାରୁ ଅଲଗା କେଉଁଠି ହେଲି ? ଭଗବାନଙ୍କ ବିରାଟ ରୂପରେ ମନ ଲଗେଇବାର ଅର୍ଥ ହେଉଛି ମୁଁ ଭଗବାନଙ୍କ ଅଂଶ ଅଟେ । ଏପରି ବୁଝିବା ।

ଯେପରି ଗୋଟିଏ ଆଙ୍ଗୁଠି କୁ କହିବା ଶରୀରର ଧ୍ୟାନ କର ତେବେ ଏହାର ଅର୍ଥ କ'ଣ ହେବ ? ଆଙ୍ଗୁଠିକୁ ବୁଝିବାକୁ ହେବ ଯେ ଏହା ଶରୀରର ଏକ ଅଂଶ ଅଟେ । ତାକୁ କାଟି ଅଲଗା କରିଦେଲେ ସେ ଅଶୁଭ ହେଇଯିବ । ଆଙ୍ଗୁଠି ରେ ଥିଲା ପର୍ଯ୍ୟନ୍ତ କିଛି ଲୋକଙ୍କ ନଖ କେତେ ସୁନ୍ଦର ଦିଶେ । କିନ୍ତୁ ଖାଇବା ସମୟରେ ଭାଂଗିଯାଇ ଖାଦ୍ୟରେ ମିଶିଗଲେ କ'ଣ ହେବ ? ଆମେ ମଧ୍ୟ ଯେଉଁ ପର୍ଯ୍ୟନ୍ତ ଭଗବାନଙ୍କ ସହିତ ଯୋଡ଼ି ହୋଇ ଅଛୁ, ସେ ପର୍ଯ୍ୟନ୍ତ ଶିବ ସ୍ୱରୂପ ହୋଇ ରହୁ, କିନ୍ତୁ ଅଲଗା ହୋଇ ଗଲା ପରେ ଶବ କୁହାଯାଏ, ମରି ଯାଉ, ଅଶୁଭ ହୋଇଯାଉ । ତେଣୁ କୁହାଯାଇଛି ଯେ ଭଗବାନଙ୍କ ସହିତ ଏକରୂପ ହୋଇଯାଅ, ତେବେ ମନ ମଧ୍ୟ ଶୁଦ୍ଧ ହୋଇଯିବ ।

**ସ ସର୍ବଧୀବୃତ୍ତ୍ୟନୁଭୂତସର୍ବ**

**ଆତ୍ମା ଯଥା ସ୍ୱପ୍ନଜନେକ୍ଷିତୈକଃ ॥**

**ତଂ ସତ୍ୟସାନନ୍ଦନିଧିଂ ଭଜେତ**

**ନାନ୍ୟତ୍ର ସଜ୍ଜେଦ୍ ଯତ୍ ଆତ୍ମପାତଃ ॥ (୨.୧.୩୯)**

ସାଧକ ଯେତେବେଳେ ନିଜର ଏହି ଛୋଟ ଦେହଟିର ଆସକ୍ତି ରୁ ଉର୍ଦ୍ଧ୍ୱକୁ ଉଠିଯାଏ, ସେତେବେଳେ ତାର ମନ ଶୁଦ୍ଧ ହୋଇଯାଏ ଏବଂ ଯେତେବେଳେ ମନ ଶୁଦ୍ଧ ହୋଇଯାଏ, ସେତେବେଳେ ତାକୁ ନିଜର ନିର୍ଗୁଣ ସ୍ୱରୂପ, ସଚ୍ଚିଦାନନ୍ଦ ସ୍ୱରୂପ, ନିର୍ବିଶେଷ ମୂଳସ୍ୱରୂପ ର ବୋଧ ହୋଇଥାଏ । ତେଣୁ ଏଠି କୁହାଗଲା - '**ତଂ ସତ୍ୟମାନନ୍ଦନିଧିଂ ଭଜେତ,**' ସଚ୍ଚିଦାନନ୍ଦଙ୍କ ଭଜନ କର । କୌଣସି ଏପରି ବସ୍ତୁ ବା ସ୍ଥାନରେ ଅଟକି ଯାଅନି ଯେଉଁ ଠାରୁ ଖସିବାକୁ ପଡ଼ିବ ।

ପୁଣି କୁହାଗଲା ଯେ ବ୍ରହ୍ମା ମଧ୍ୟ ଏହି ରୂପର ଧ୍ୟାନ କରିଥିଲେ । ତାଙ୍କ ମନରେ ଯେତେବେଳେ ସୃଷ୍ଟି ନିର୍ମାଣ ର ସଂକଳ୍ପ ଆସିଲା, ସେତେବେଳେ କଣ କରିବେ, ଭାବିପାରୁ ନ ଥିଲେ । ତେଣୁ ସେ ଭଗବାନଙ୍କୁ ଧ୍ୟାନ କଲେ ତ ଭଗବାନ ସେଠି ପ୍ରକଟ ହେଲେ ଏବଂ ସେ ବ୍ରହ୍ମାଙ୍କୁ ଜ୍ଞାନ ଦେଲେ ।

ଦେଖନ୍ତୁ, ସାର କଥା ଗ୍ରହଣ କରିବା ଉଚିତ୍। ମୂଳତତ୍ତ୍ୱ ହେଲେ ସଚ୍ଚିଦାନନ୍ଦ, ଏବଂ ବିରାଟ ରୂପ ସବୁ କେବଳ ନାମ ରୂପର ବିସ୍ତାର ମାତ୍ର, ପରମାର୍ଥିକ ସତ୍ୟ ନୁହଁ। ତେଣୁ ଶବ୍ଦ ଭିତରେ ଗୁଡ଼େଇ ହୋଇ ଅଡୁଆ ହେବା ଅନୁଚିତ। ତେଣୁ ଏଠି ମଧ୍ୟ ସାବଧାନତାର ସହିତ ବର୍ଣ୍ଣନା କରାଯାଇଛି। ଶବ୍ଦ ସହିତ ଯେତିକି ଆବଶ୍ୟକ ସେତିକି ସମ୍ବନ୍ଧ ରଖିବା ଦରକାର। ଏହା ଅତି ଗୁରୁତ୍ୱ ପୂର୍ଣ୍ଣ କଥା। ଯେତିକି ଆବଶ୍ୟକ ସେତିକି କଥା କହିବା ବା ଶୁଣିବା। ଜଗତର ବସ୍ତୁ ମାନଙ୍କ ସହିତ ମଧ୍ୟ ଯେତିକି ଦରକାର ସେତିକି ସମ୍ବନ୍ଧ ରଖିବା ଆବଶ୍ୟକ।

କୁହାଯାଏ ଯେ ଯଦି ଟିକିଏ ଭୂଇଁ ମିଳିଛି ତେବେ ବଡ଼ ଗଦି କଣ ଦରକାର ? ନିଜର ହାତ ଅଛିତ ତକିଆ କଣ ହେବ ? କିନ୍ତୁ ତକିଆ ନ ହେଲେ ନିଦ ଆସିବନି। ପୁଣି ନିଜର ତକିଆହିଁ ଦରକାର। ଆପଣଙ୍କ ପାଖରେ ଦୁଇଟା ହାତ ଅଛି ତ ଗିନା –ଚାମୁଚ କଣ ହେବ ? କିନ୍ତୁ ଏହି ଜିନିଷ ଗୁଡ଼ିକ ଆମପାଇଁ ଅତି ଆବଶ୍ୟକ ହେଇଗଲେ ମନୁଷ୍ୟ ନାଚାର ହୋଇଯାଏ ଏବଂ ଅନ୍ୟ ମାନଙ୍କୁ ଭିକମାଗିବାକୁ ଲାଗେ ଯେ ମୋତେ ଏଇଟା ଦିଅ, ସେଇଟା ଦିଅ, କାରଣ ସେଗୁଡ଼ିକ ବିନା ରହି ପାରିବ ନାହିଁ। ଏହି ସ୍ଥିତିରେ ଭିକାରୀ ଏବଂ ଧନୀ ମଧ୍ୟରେ କୋଣସି ପାର୍ଥକ୍ୟ ନଥାଏ।

**କସ୍ମାଦ୍ ଭଜନ୍ତି କବୟୋ ଧନଦୁର୍ମଦାନ୍ଧାନ୍ । (୨.୨.୫)**

ଅର୍ଥାତ୍ ଜଣେ ଧନୀ ମଧ୍ୟ ଅନ୍ୟ ଆଗରେ ହାତ ପତେଇ ପାରେ, କେବଳ ଅଳ୍ପଟିକିଏ ସୁଖ ପାଇଁ। ସେହି ସୁଖ ପାଇଁ ଆମେ ନିଜର ପ୍ରକୃତ ପ୍ରିୟତମ –ନିଜର ଆତ୍ମାକୁ ତ୍ୟାଗ କରି ଚାଲିଛୁ।

**ଏବଂ ସ୍ୱଚିତ୍ତେ ସ୍ୱତ ଏବ ସିଦ୍ଧ**
**ଆତ୍ମା ପ୍ରିୟୋଽର୍ଥୋ ଭଗବାନନନ୍ତଃ।**
**ତଂ ନିର୍ବୃତୋ ନିୟତାର୍ଥୋ ଭଜେତ୍**
**ସଂସାରହେତୁପରମଶ୍ଚ ଯତ୍ରଃ ॥ (୨.୨.୬)**

ଆମ ହୃଦୟରେ ଆନନ୍ଦସ୍ୱରୂପ ଆତ୍ମା ଅଛି। ବାସ, ଆମର ଧ୍ୟାନ ସେହିଦିଗକୁ ମୋଡ଼ି ହେଇଗଲେ ଆନନ୍ଦ ହିଁ ଆନନ୍ଦ। ତା ପରେ ସଂସାର ସଦ୍ୟଃ ନିବୃତ୍ତଃ ହେଇଯିବ। ତେଣୁ ଏଠି କୁହାଯାଇଛି ଯେ, ଆତ୍ମତତ୍ତ୍ୱର ଭଜନ କର। ସଂସାର ରେ ଅଧିକ ଗୁଡ଼େଇ ହେବାର ଆବଶ୍ୟକତା ହିଁ ନାହିଁ। କେହି କେହି କୁହନ୍ତି ଏହି ବିରାଟ ରୂପରେ ଆମର ମନ

ଲାଗୁନାହିଁ। ମନ ଲାଗୁନି ? ଖରାପ ଜିନିଷରେ ଜିନିଷରେ ତ ଖୁବ୍ ମନ ଲାଗେ। ପ୍ରକୃତରେ ଆମେ ଏତେ ବଡ଼ ବିଶାଳ ରୂପର କଳ୍ପନା କରିପାରିବା ନାହିଁ ? ଦେଖ ଆମ ସ୍ଥିତି କିପରି ହେଇଗଲାଣି।

## ସୂକ୍ଷ୍ମ ରୂପର ଧ୍ୟାନ

ଏପରି ମଧ୍ୟ କୁହାଗଲା ଯେ ଯଦି ବିରାଟ ରୂପର ଧ୍ୟାନ କରି ପାରୁନ, ତେବେ ଭଗବାନଙ୍କର ଯେଉଁ ରୂପ ତୁମକୁ ପ୍ରିୟ ଲାଗୁଛି- ଗଣେଶ, ଶ୍ରୀକୃଷ୍ଣ, ଶିବ ବା ରାମଚନ୍ଦ୍ର -ସେହି ରୂପରେ ଭଗବାନ ତୁମ ହୃଦୟରେ ବିରାଜମାନ ଅଛନ୍ତି, ଏହା ଭାବି ତାଙ୍କର ଧ୍ୟାନ କର। ଏପରି କଳ୍ପନା କର।

**କେଚିତ୍ ସ୍ୱଦେହାନ୍ତର୍ହୃଦୟାବକାଶେ**
**ପ୍ରାଦେଶମାତ୍ରଂ ପୁରୁଷଂ ବସନ୍ତମ୍।**
**ଚତୁର୍ଭୂଜଂ କଞ୍ଜରଥାଙ୍ଗଶଙ୍ଖ -**
**ଗଦାଧରଂ ଧାରଣୟା ସ୍ମରନ୍ତି ॥ (୨.୨.୮)**

ଯଦି ବିଷ୍ଣୁଙ୍କ ଧ୍ୟାନ କରିବାକୁ ଚାହୁଁଛ ତ ଶଙ୍ଖ -ଚକ୍ର -ଗଦା-ପଦ୍ମ ଧାରୀ ଭଗବାନ୍ ମୋ ହୃଦୟରେ ବିରାଜମାନ ଅଛନ୍ତି, ସେ ମନ୍ଦ-ମନ୍ଦ ହାସ୍ୟ ସହ ମୋଆଡ଼କୁ ଦେଖୁଛନ୍ତି, ଏପରି ଧ୍ୟାନ କର। କେହି କେତେ ଦୁଃଖୀ ହେଲେ ମଧ୍ୟ, ଯଦି ଏପରି ଧ୍ୟାନ କରିବ ଯେ ଭଗବାନ ମୋଆଡ଼କୁ ଚାହିଁ ମଧୁର ହସ ହସୁଛନ୍ତି, ତେବେ ତାର ଦୁଃଖ ପଳେଇଯିବ। ଇଏ ହେଲା ସୁଖୀ ହେବାର ସବୁଠୁ ସରଳ ଉପାୟ। ନ ହେଲେ ଶ୍ରୀକୃଷ୍ଣଙ୍କୁ ଧ୍ୟାନ କର। ଭଗବାନ ଯମୁନା କୂଳରେ ଠିଆ ହୋଇଛନ୍ତି, ତାଙ୍କ ତିନି ପାଖରେ ଗାଈ, ବାଛୁରୀ ଅଛନ୍ତି। ମୟୁର ମାନେ ମଧ୍ୟ ନୃତ୍ୟ କରୁଛନ୍ତି। ଟିକିଏ ଏପରି ଧ୍ୟାନ କଲେ ଦେଖି। କଣ ହେଲା ? ମୁଁ କଣ କହିବି ? ଆପଣ ନିଜେ କରି ଦେଖନ୍ତୁ। ରାମଭକ୍ତ ହୋଇଥିଲେ, ଏପରି କଳ୍ପନା କରନ୍ତୁ ଯେ ମୁଁ ଶ୍ରୀ ରାମଚନ୍ଦ୍ରଙ୍କ ଚରଣ ତଳେ ପଡ଼ିଛି। ଭଗବାନ ମତେ ଉଠେଇ ନେଇ ମୋର ଆଲିଙ୍ଗନ କରୁଛନ୍ତି। ଭଗବାନ କଣ କେବଳ ହନୁମାନଙ୍କୁ ଆଲିଙ୍ଗନ କରିପାରିବେ, ଆଉ କୌଣସି ଭକ୍ତ କୁ କରିପାରିବେ ନାହିଁ। କହିବାର ଅର୍ଥ ଏହା ଯେ, ଯଦି ବିରାଟ ର ଧ୍ୟାନ କରି ପାରୁନ ତେବେ ଭଗବାନଙ୍କ ଯେଉଁ ରୂପଟି ତୁମର ହୃଦୟରେ ବସିରହିଛି, ତାରି ଧ୍ୟାନ କର। ଧ୍ୟାନ କରୁ କରୁ ମନ ପ୍ରସନ୍ନ, ନିର୍ମଳ ହୋଇଯିବ।

## ସଗୁଣ ସାକାର ଧ୍ୟାନ

ଯଦି ହୃଦୟରେ ମଧ୍ୟ ଧ୍ୟାନ କରି ହେଉନି ତେବେ ବାହାରେ ପୂଜା-ସ୍ଥାନରେ ଭଗବାନଙ୍କର ଏକ ମୂର୍ତ୍ତି ବା ଚିତ୍ର ରଖ। ସର୍ବ ପ୍ରଥମେ ତାଙ୍କ ଚରଣରେ ନିଜ ଦୃଷ୍ଟି ସ୍ଥିର କର। ତା ପରେ ନିଜ ଦୃଷ୍ଟି କୁ ଧୀରେ -ଧୀରେ ଉପରକୁ ଉଠାଇ-ଉଠାଇ ତାଙ୍କ ଓଠ ପର୍ଯ୍ୟନ୍ତ ନିଅ। ତା ପରେ ଆଖି ଆଡ଼କୁ ଦେଖ ଯେ ଭଗବାନ କେତେ ପ୍ରେମର ସହିତ ଦେଖୁଛନ୍ତି। ତା ପରେ ଆଖି ବନ୍ଦ କରି ସେହି ରୂପକୁ ଧ୍ୟାନକର। ତା ଦ୍ୱାରା ମଧ୍ୟ ମନ ଶୁଦ୍ଧ ହେବ। ଶୁଦ୍ଧ ହୋଇ ମନ ନିର୍ଗୁଣରେ ସ୍ଥିତ ହେବ। ଦେଖନ୍ତୁ ଏଠାରେ ଶୁକଦେବ କେଉଁ ପ୍ରଶ୍ନର ଉତ୍ତର ଦେଉଛନ୍ତି ? ମରଣାସନ୍ନ ପୁରୁଷର କର୍ତ୍ତବ୍ୟ କଣ ? ଏହି ପ୍ରଶ୍ନ ର ଉତ୍ତର। ପୂଜା କର କି ଧ୍ୟାନ, ସ୍ମରଣ କର କି ଚିନ୍ତନ, ଯୋଗାଭ୍ୟାସ କର କି ପ୍ରାଣାୟାମ, ମୂଳ କଥା ହେଲା ଯେ, **'ଯେନ-କେନ ପ୍ରକାରେଣ ମନଃ କୃଷ୍ଣ ନିବେଶୟେତ୍'** ମନକୁ ଭଗବାନଙ୍କ ପାଖରେ ଲାଗାଅ।

**ଭଗବାନ ସର୍ବଭୂତେଷୁ ଲକ୍ଷିତଃ ସ୍ୱାତ୍ମନା ହରିଃ।**
**ଦୃଶୈର୍ବୁଦ୍ଧ୍ୟାଦିଭିର୍ଦ୍ରଷ୍ଟା ଲକ୍ଷଣୈରନୁମାପକୈଃ ॥ (୨.୨.୩୫)**
**ତସ୍ମାତ୍ ସର୍ବାତ୍ମନା ରାଜନ୍ ହରିଃ ସର୍ବତ୍ର ସର୍ବଦା।**
**ଶ୍ରୋତବ୍ୟଃ କୀର୍ତ୍ତିତବ୍ୟଶ୍ଚ ସ୍ମର୍ତବ୍ୟୋ ଭଗବାନ୍ନୃଣାମ୍ ॥ (୨.୨.୩୬)**

ଭଗବାନ ହୃଦୟରେ କିପରି ଭାବରେ ବସିଛନ୍ତି ? ମନରେ ଉଠୁଥିବା ସମସ୍ତ ବୃତ୍ତି ମାନଙ୍କର ଦ୍ରଷ୍ଟା ରୂପେ ବସିଛନ୍ତି। ଅତଃ ପାଖରେ ଦୃଶ୍ୟ ଠାରୁ ଧ୍ୟାନ ଦୂର କରି ଦ୍ରଷ୍ଟା ଧ୍ୟାନ ଲଗାଇବା ଉଚିତ୍। ଅର୍ଥାତ୍ ସ୍ମରଣ, କୀର୍ତନ, ଶ୍ରବଣ, ମନନ, ନିଦିଧ୍ୟାସନ ସବୁପ୍ରକାରରେ ଭଗବାନଙ୍କ ଭଜନ କର।

**ପିବନ୍ତି ଯେ ଭଗବତ ଆତ୍ମନଃ ସତାଂ**
**କଥାମୃତଂ ଶ୍ରବଣପୁଟେଷୁ ସମ୍ଭୃତମ୍ ।**
**ପୁନନ୍ତି ତେ ବିଷୟବିଦୂଷିତାଶୟଂ**
**ବ୍ରଜନ୍ତି ତଚ୍ଚରଣସରୋରୁହାନ୍ତିକମ୍ ॥ (୨.୨.୩୭)**

ଯେଉଁମାନେ ଭଗବାନଙ୍କ ଗୁଣ ର ଶ୍ରବଣ କରନ୍ତି ଏବଂ ନିଜ ମନ କୁ ବିଷୟରୁ ଦୂର କରି ଭଗବାନ ଙ୍କ ପାଖରେ ଲଗାନ୍ତି, ସେମାନେ ପବିତ୍ର ହୋଇ ଥାଆନ୍ତି । ଶୁକଦେବ କହୁଛନ୍ତି, ତୁମ ପ୍ରଶ୍ନର ଉତ୍ତର ମୁଁ ଦେଇ ଦେଲି । ମରଣାସନ୍ନ ପୁରୁଷ ନିରନ୍ତର ଭଗବାନଙ୍କ ସ୍ମରଣ କରିବା ଉଚିତ୍, ଏବଂ ଅନ୍ୟ କୌଣସି ପ୍ରକାରର ଚିନ୍ତା କୁ ମନକୁ ଆସିବାକୁ ଦେବା ଆଦୌ ଉଚିତ୍ ନୁହଁ । ଯଦି କେହି ଅନ୍ୟ ବ୍ୟକ୍ତି ଅନ୍ୟ କାହାର ସ୍ମରଣ କରିବାକୁ କହିବେ ତେବେ ସେ ଦିଗକୁ ଧ୍ୟାନ ଦେବା ଅନୁଚିତ ।

ତା'ପରେ କହିଲେ - ଜଗତରେ ଭିନ୍ନ-ଭିନ୍ନ ପ୍ରକାର ର ଲୋକ ଅଛନ୍ତି । ସେମାନଙ୍କର ଇଚ୍ଛା ମଧ୍ୟ ଭିନ୍ନ -ଭିନ୍ନ ପ୍ରକାରର ହୋଇଥାଏ । ଭଗବାନଙ୍କର ଅନେକ ଉପାଧି ଅଛି, ଦେବତା ମାନେ ଅଛନ୍ତି । ସେମାନେ ଆମର କୌଣସି ନା କୌଣସି ଇଚ୍ଛା ବିଶେଷ କୁ ହିଁ ପୂର୍ଣ୍ଣ କରିଥାନ୍ତି । ତେଣୁ ଯିଏ ପ୍ରଜାର କାମନା କରୁଛି ସେ ପ୍ରଜାପତି ଙ୍କୁ ପୂଜା କରିବ । ଧନ -ସମ୍ପତିର କାମନା ଥିଲେ ଦେବୀଙ୍କୁ ପୂଜା କରିବ । ସ୍ୱର୍ଗକାମନା ପାଇଁ ଦେବତା ମାନଙ୍କୁ , ସୁନ୍ଦର ରୂପ ପାଇଁ ଗନ୍ଧର୍ବଙ୍କୁ ଏବଂ ଭଲ ସ୍ତ୍ରୀ ପାଇଁ ଅପ୍ସରାଙ୍କୁ ପୂଜା କରିବା ଦରକାର । ଶ୍ରେଷ୍ଠ ବିଦ୍ୟା ପାଇଁ ଶିବଙ୍କୁ ଧ୍ୟାନ କରିବ, ଭଲ ବୈବାହିକ ସମ୍ବନ୍ଧ ପାଇଁ ପରସ୍ପର ସହ ପ୍ରେମ ପାଇଁ ତାଙ୍କ ପତ୍ନୀ ଉମାଙ୍କୁ ପୂଜା କରିବା ଉଚିତ୍ । ସେଥିପାଇଁ ସୀତା ମଧ୍ୟ ପାର୍ବତୀଙ୍କୁ ପୂଜା କରିଥିଲେ । ସେ ସ୍ୱାମୀ ରୂପରେ ଶ୍ରୀରାମଚନ୍ଦ୍ରଙ୍କୁ ହିଁ ଚାହୁଁଥିଲେ । ଯଦି ଭୋଗର କାମନା ଥିବ ତେବେ ସୋମଦେବ ଙ୍କୁ ଉପାସନା କରିବ । କିନ୍ତୁ ଯିଏ ନିଷ୍କାମ ପୁରୁଷ, ତାଙ୍କୁ ପରମାତ୍ମାଙ୍କ ପୂଜା କରିବା ଉଚିତ୍ । ଦେଖନ୍ତୁ ଅନ୍ୟ ଦେବତା ମାନଙ୍କ ପାଖରେ ଏହି ସାମର୍ଥ୍ୟ କେଉଁଠୁ ଆସିଲା ? ସେହି ପରମାତ୍ମାଙ୍କ ଠାରୁ । ତେଣୁ ସେହି ପରମାତ୍ମାଙ୍କ ଭଜନ କର । ଆପଣ ଯାହା କିଛି ବି ଚାହୁଁଛନ୍ତି ସବୁ ପରମାତ୍ମାଙ୍କ ଠାରୁ ପ୍ରାପ୍ତ ହେବ ।

**'ତୀବ୍ରେଣ ଭକ୍ତିଯୋଗେନ ଯଜେତ ପୁରୁଷଂ ପରମ୍'। (୨.୩.୧୦)**

ସବୁଠାରୁ ବଡ଼ ଲାଭ, ସବୁଠାରୁ ବଡ଼ ଶ୍ରେୟ ହେଲା ଯେ ଭଗବାନ୍‌ଙ୍କ ଠାରୁ ଅଚଳ ଭକ୍ତି ପ୍ରାପ୍ତ ହେଉ। ବୁଦ୍ଧି ସ୍ଥିର ହେଉ। **'ଏତାବାନ୍'** – ଏହାହିଁ **'ପରମ ପୁରୁଷାର୍ଥ'** ଅଟେ। ଭଗବାନଙ୍କ କଥାରେ ଯାହାର ମନ ରମଣ କରୁନାହିଁ ଏପରି ବା କିଏ ଅଛି ? ଯେଉଁ ମହାପୁରୁଷ ମାନେ ସମସ୍ତ ପ୍ରକାର ର କର୍ମରୁ ନିବୃତ୍ତ ହୋଇ ଯାଇଛନ୍ତି, କେବଳ ବ୍ରହ୍ମରେ ରମଣ କରୁଛନ୍ତି, ସେମାନେ ମଧ୍ୟ ଭଗବାନଙ୍କ କଥାରେ ରମଣ କରନ୍ତି। ଏତିକି କହି ଶୁକଦେବ ଚୁପ୍ ହୋଇଗଲେ।

ଏବେ ଶୌନକ ମୁନି ପଚାରିଲେ, "ପରୀକ୍ଷିତ ଆଉ କିଛି ପଚାରିଲେ କି ନାହିଁ ? ମୋର ତ ଭଗବାନଙ୍କ କଥାଶୁଣିବାକୁ ମନ ହେଉଛି। ମୋତେ ଲାଗୁଛି, ଭଗବାନଙ୍କ କଥା ସ୍ମରଣ ବା ଚିନ୍ତନ ନ କରି ଯେଉଁ କ୍ଷଣ ବ୍ୟତୀତ ହୋଇଗଲା ତାହା ବ୍ୟର୍ଥ ହୋଇଗଲା। ଗଛ –ଲତା କଣ ବଞ୍ଚୁନାହାଁନ୍ତି ? କୀଟ –ପତଙ୍ଗ କଣ ଶ୍ୱାସ ନେଉ ନାହାଁନ୍ତି ? ପଶୁ ମାନେ କଣ ଖାଉନାହାଁନ୍ତି ? ଛୁଆ ଜନ୍ମ କରୁ ନାହାଁନ୍ତି ? ଆମର ସମ୍ପୂର୍ଣ୍ଣଜୀବନ କେବଳ ଭଗବାନ କେନ୍ଦ୍ରିତ ହେବା ଉଚିତ୍। ଏହି କଥାର ମହତ୍ତ୍ୱ ଦର୍ଶାଇବାକୁ ଯାଇ ସେ କହୁଛନ୍ତି ଯେ – ଯେଉଁ କାନ ଭଗବାନଙ୍କ ଗୁଣ ଶୁଣେନାହିଁ, ସେ ସାପଗାତ ପରି, ଯେଉଁ ଜିଭ ଭଗବାନଙ୍କ ଗୁଣଗାନ କରେନାହିଁ, ସେ ବେଙ୍ଗ ଜିଭ ପରି , ବ୍ୟର୍ଥରେ ଟର୍ର–ଟର୍ର କରୁଥାଏ। ମୁକୁଟଧାରୀ ରାଜା ହେଲେ ମଧ୍ୟ, ଯଦି ତାର ମୁଣ୍ଡ ଭଗବାନଙ୍କ ଚରଣ ରେ ନ ନଇଁଲା ତେବେ ସେହି ମୁକୁଟ ତା ମୁଣ୍ଡର ବୋଝ ସ୍ୱରୂପ, ଯେଉଁ ହାତ ଭଗବାନଙ୍କ ପୂଜା କରେ ନାହିଁ, ତା ହାତରେ କଂକଣ ଆଦି ଯେତେ ଆଭୂଷଣ ଥିଲେ ମଧ୍ୟ, ସେହି ହାତ ଶବ ର ହସ୍ତ – ପ୍ରେତର ହାତ, ଯାହାର ଆକ୍ଷି ଭଗବାନଙ୍କ ରୂପକୁ, ତାଙ୍କ ଚିହ୍ନ ଗୁଡ଼ିକୁ ଦେଖେ ନାହିଁ, ସେ ମାତ୍ର ମୟୁର ପରରେ ଥିବା ଆଖି ପରି ଅର୍ଥାତ୍ କୌଣସି କାମର ନୁହଁ। ଯାହାର ପାଦ ଚାଲି କରି ଭଗବାନଙ୍କ ଦର୍ଶନ ପାଇଁ ଯାଏ ନାହିଁ ସେହି ପାଦ ଗଛ ପରି।

ଦେଖନ୍ତୁ, କଥା କହିବାର ଏହା କେତେ ବଢ଼ିଆ ଉପାୟ। କହିବାର ଅର୍ଥ ହେଲା ଯେ ଆମର ସମସ୍ତ ଇନ୍ଦ୍ରିୟ ଦ୍ୱାରା ଆମେ ଭଗବାନଙ୍କର ସେବା କରିବା। ଦେଖିବାର ଅଛି ତ ଭଗବାନଙ୍କୁ ଦେଖ, ଶୁଣିବାର ଅଛି ତ ଭଗବାନଙ୍କ ବିଷୟରେ ହିଁ ଶୁଣ, ସ୍ପର୍ଶ କରିବାର ଅଛି ତ ଭଗବାନଙ୍କୁ ହିଁ ସ୍ପର୍ଶ କର। ପୁଣି କହିଲେ –ଯେଉଁ ବ୍ୟକ୍ତି ଭଗବାନଙ୍କ ଚରଣ ଧୂଳି ପ୍ରାପ୍ତ କରେ ନାହିଁ, ଯିଏ ଭଗବାନଙ୍କ ଚରଣ–କମଳ ଉପରେ ଥିବା ତୁଳସୀ ବା ଫୁଲ କୁ ଶୁଙ୍ଘେ ନାହିଁ ସେ ବଞ୍ଚି ଥାଉ–ଥାଉ ମରିଗଲାଣି ।

**ତଦଶ୍ମସାରଂ ହୃଦୟଂ ବତେଦଂ**
**ଯଦ୍ ଗୃହ୍ୟମାଣୈର୍ହରିନାମଧେୟୈଃ ।**
**ନ ବିକ୍ରିୟେତାଥ ଯଦା ବିକାରୋ**
**ନେତ୍ରେ ଜଲଂ ଗାତ୍ରରୁହେଷୁ ହର୍ଷଃ ॥ (୨.୩.୨୪)**

ସେହି ହୃଦୟ ପଥର ପରି, ଯିଏ ଭଗବାନଙ୍କ କଥା ଶୁଣି ତରଳେ ନାହିଁ। ଯାହାର ଆଖିରେ କେବେ ପ୍ରେମାଶ୍ରୁ ଆସେ ନାହିଁ, ଯାହା ର କଣ୍ଠ କେବେ ଗଦ୍‌ଗଦ୍ ହୁଏ ନାହିଁ ସେ ପଥର ଠାରୁ ମଧ୍ୟ କଠୋର ଅଟେ।

ଭଗବାନ ! ତେଣୁ ଆପଣ ମୋତେ ଏହାପରର କଥା କୁହନ୍ତୁ। ସୂତମୁନି କହିଲେ – ଆପଣ ଭଲ ପ୍ରଶ୍ନ ପଚାରିଲେ। ପରୀକ୍ଷିତ ମଧ୍ୟ ଏଇ କଥା ରେ ସନ୍ତୁଷ୍ଟ ହେଲେ ନାହିଁ। ପରୀକ୍ଷିତ ଶୁକଦେବଙ୍କୁ କହିଲେ ଆପଣ କହିଲେ ଯେ ଭଗବାନଙ୍କ ସ୍ମରଣ ନିରନ୍ତର କରିବା ଆବଶ୍ୟକ। ତେଣୁ ମୁଁ ପ୍ରାର୍ଥନା କରୁଛି ଯେ ଆପଣ ଏମିତି କହୁଥାନ୍ତୁ ଯାହାଦ୍ୱାରା ଅନାୟାସ ସ୍ମରଣ ଏବଂ ଅନ୍ୟ ସବୁବିଷୟରୁ ମୋ ମନ ଦୂରେଇ ଯିବ।

## ପରୀକ୍ଷିତଙ୍କର ସୃଷ୍ଟି ବିଷୟକ ପ୍ରଶ୍ନ

ପୁଣି ପରୀକ୍ଷିତ ଶୁକଦେବଙ୍କୁ ପଚାରିଲେ- ଆପଣ ମତେ ବୁଝେଇ କରି କୁହନ୍ତୁ ଯେ ଭଗବାନ ସୃଷ୍ଟିର ରଚନା କିପରି କରନ୍ତି, ଧାରଣ କିପରି କରନ୍ତି ଏବଂ ପୁଣି ତାଙ୍କୁ କିପରି ନିଜ ଭିତରେ ଲୀନ କରି ଦିଅନ୍ତି ? ଏହି ସୃଷ୍ଟି ଏକା ଥରକେ ରଚିତ ହୁଏ କି କ୍ରମାନୁଯାୟୀ ହୁଏ ? ଭଗବାନ ଗୁଣ ଗୁଡ଼ିକୁ କିପରି ଧାରଣ କରନ୍ତି ? ଆପଣ ବିସ୍ତୃତ ଭାବେ କୁହନ୍ତୁ। କାରଣ ଆପଣ ବେଦ -ବେଦାନ୍ତରେ ଦୃଢ଼ ପରବ୍ରହ୍ମରେ ସ୍ଥିତ। ଆପଣଙ୍କୁ ଏହି ସମସ୍ତ ରହସ୍ୟ ଜଣା ଅଛି।

ଉତ୍ତର ଦେବା ପୂର୍ବରୁ ଶୁକଦେବ ଭଗବାନଙ୍କୁ ନମସ୍କାର କରୁଛନ୍ତି । ଏହି ସମଗ୍ର ଅଧ୍ୟାୟ ରେ ନମସ୍କାର କରାଯାଇଛି-

**ଯତ୍କୀର୍ତନଂ ଯତ୍ସ୍ମରଣଂ ଯଦୀକ୍ଷଣଂ**
**ଯଦ୍ୱନ୍ଦନଂ ଯତ୍ଶ୍ରବଣଂ ଯଦର୍ହଣମ୍ ।**
**ଲୋକସ୍ୟ ସଦ୍ୟୋ ବିଧୁନୋତି କଲ୍ମଷଂ ।**
**ତସ୍ମୈ ସୁଭଦ୍ରଶ୍ରବସେ ନମୋ ନମଃ ॥ (୨.୪.୧୫)**

ଯାହାଙ୍କ ଯଶ ଅତ୍ୟନ୍ତ ଶୁଭଙ୍କର, ଯାହାଙ୍କ ଶ୍ରବଣ, ଭଜନ, କୀର୍ତନ, ସ୍ମରଣ ଆମର ସମସ୍ତ ପାପକୁ ଧୋଇଦିଏ ସେହି ଭଗବାନଙ୍କୁ ନମସ୍କାର ।

**କିରାତହୁଣାନ୍ଧ୍ରପୁଲିନ୍ଦପୁଲ୍କସା**
**ଆଭୀରକଙ୍କା ଯବନାଃ ଖସାଦୟଃ ।**
**ୟେଽନ୍ୟେ ଚ ପାପା ଯଦୁପାଶ୍ରୟାଶ୍ରୟାଃ**
**ଶୁଧ୍ୟନ୍ତି ତସ୍ମୈ ପ୍ରଭବିଷ୍ଣବେ ନମଃ ॥ (୨.୪.୧୮)**

ଯିଏ ଅତ୍ୟନ୍ତ ଦୀନ-ହୀନ ମଳିନ, ଯାହାଙ୍କର ଅନ୍ୟ କୌଣସି ଆଶ୍ରୟ ନାହିଁ, ସେମାନେ ମଧ୍ୟ ଯେଉଁ ଭଗବାନଙ୍କ ଆଶ୍ରୟ ନେଇ ପବିତ୍ର ହୁଅନ୍ତି, ସେହି ଭଗବାନଙ୍କୁ ନମସ୍କାର ।

**ଶ୍ରିୟଃ ପତିର୍ୟଜ୍ଞପତିଃ ପ୍ରଜାପତି-**
**ର୍ଧିୟାଂ ପତିର୍ଲୋକପତିର୍ଧରାପତିଃ ।**
**ପତିର୍ଗତିଶ୍ଚାନ୍ଧକବୃଷ୍ଣିସାତ୍ୱତାଂ**
**ପ୍ରସୀଦତାଂ ମେ ଭଗବାନ୍ ସତାଂ ପତିଃ ॥ (୨.୪.୨୦)**

ଲକ୍ଷ୍ମୀ-ପତି, ଯଜ୍ଞପତି, ପ୍ରଜାପତି, ସମସ୍ତଙ୍କର ଅନ୍ତର୍ଯାମୀ, ଲୋକ-ପତି, ଯିଏ ଯଦୁବଂଶରେ ପ୍ରକଟ ହେଇ ଅନ୍ଧକ, ବୃଷ୍ଣି ଏବଂ ଯଦୁବଂଶ କୁ ରକ୍ଷାକଲେ, ଏପରି ଭଗବାନ ଶ୍ରୀକୃଷ୍ଣ ମୋ ଉପରେ ପ୍ରସନ୍ନ ହୁଅନ୍ତୁ । ବ୍ରହ୍ମାଙ୍କ ହୃଦୟରେ ବେଦମାନଙ୍କୁ ପ୍ରକଟ କରିଲାବାଲା, ସମସ୍ତ ଋଷିମାନଙ୍କ ମଧ୍ୟରେ ଶ୍ରେଷ୍ଠ ନାରାୟଣ ଋଷି ମୋ ଉପରେ ସନ୍ତୁଷ୍ଟ ହୁଅନ୍ତୁ ।

## ପୁରାଣରେ ଉତ୍ତର ଦେବାର ବିଶିଷ୍ଟ ଶୈଳୀ

ଆମ ପୁରାଣ ମାନଙ୍କର ଏକ ନିଜସ୍ୱ ଶୈଳୀ ଅଛି। କୌଣସି ଶ୍ରୋତା ଯଦି କୌଣସି ବକ୍ତାକୁ ପ୍ରଶ୍ନ ପଚାରେ ତେବେ ବକ୍ତା ତାର ସିଧା ଉତ୍ତର ଦିଏ ନାହିଁ। ସେ ସବୁବେଳେ କୁହେ ଏପରି ପ୍ରଶ୍ନ ପ୍ରଥମେ ଅମୁକ ବ୍ୟକ୍ତି ଅମୁକ ବ୍ୟକ୍ତିକୁ ପଚାରିଥିଲା। ଆମେ ଭାବୁ, ଆମକୁ ଏତେ କଥା କହିବା କଣ ଦରକାର ? ଆମେ ଆପଣଙ୍କୁ ପ୍ରଶ୍ନ ପଚାରିଲୁ, ତ ଆପଣ ଉତ୍ତର ଦେଇଦେବେ। କିନ୍ତୁ ପ୍ରଥମେ ଏହି ପ୍ରଶ୍ନ କିଏ କାହାକୁ ପଚାରିଥିଲେ ଏହା ର ବର୍ଣ୍ଣନ ଅତ୍ୟନ୍ତ ଆବଶ୍ୟକ, ବହୁତ ଦରକାରୀ। ଥରେ -ଥରେ ପ୍ରଶ୍ନ କର୍ତ୍ତା ପ୍ରଶ୍ନ ପଚାରି ଭାବେ ଯେ ମୁଁ ଅତ୍ୟନ୍ତ ବୁଦ୍ଧିମାନ। ମୁଁ ଅପୂର୍ବ ପ୍ରଶ୍ନ ପଚାରିଛି। ତେଣୁ କହିଲେ ଯେ ଆପଣ ପ୍ରଥମ ଥର ଏହି ପ୍ରଶ୍ନ ପଚାରି ନାହାଁନ୍ତି, ପୂର୍ବରୁ ମଧ୍ୟ ପଚରା ଯାଇଛି। ଏତେ ଅଭିମାନ କରିବାର ଆଦୌ ଆବଶ୍ୟକତା ନାହିଁ।

କେବେ କେବେ ବକ୍ତା ସହିତ ମଧ୍ୟ ଏଇଆ ହୋଇପାରେ । ବକ୍ତାକୁ ମଧ୍ୟ ଅନୁଭବ ହୁଏ ଯେ ମୁଁ ଏହି ପ୍ରଶ୍ନର ଏକଦମ୍ ଠିକ୍ ଏବଂ ମୌଳିକ ଉତ୍ତର ଦେଲି। ତେଣୁ କୁହାଗଲା ଯେ ଏହି ପ୍ରଶ୍ନ ପୂର୍ବରୁ ପଚରା ଯାଇଛି ଏବଂ ଉତ୍ତର ଦିଆଯାଇଛି। ଆପଣ କୌଣସି ବହୁତ ବଡ଼ ବା ନୂଆ କଥା କହିବାକୁ ଯାଉନାହାଁନ୍ତି। ଆପଣ ଏବେ ଭଲ ଭାବରେ ପଢ଼ି ନାହାଁନ୍ତି। ଯଦି କୌଣସି ସଦ୍‌ଗ୍ରନ୍ଥ ରେ ସେହି କଥା ପଢ଼ିବାକୁ ମିଳେ, ତେବେ ଦେଖାଯାଏ ଯେ ସେହି ପ୍ରଶ୍ନ ର ଉତ୍ତର ସେଠି ଭଲ ରୂପେ ଲେଖାଯାଇଛି। ଆମେ ମିଛ ଟାରେ ଭାବୁ ଯେ ମୁଁ ହିଁ ଏତେ ଭଲ ଭାବିଲି। ତୁମେ କଣ ଭାବିଲ ? ଆଗରୁ ତ ସେଇଆ କୁହା ସରିଛି। ଏହା ଦ୍ୱାରା ବକ୍ତାର ଅହଂକାର ହୁଏ ନାହିଁ। ଆଜିକାଲି 'ମୌଳିକତା' ବା ମୂଳ ଉପରେ ଜୋର ଦିଆଯାଉଛି। ତୁମେ କଣ ଅସଲି ? ନା ସମସ୍ତେ ପୁରା- -ପୁରି କାର୍ବନ କପି। ମୌଳିକ କେବଳ ଭଗବାନ ଅଟନ୍ତି। ବାକି ସମସ୍ତେ କପି। ତେଣୁ ଅହଂକାର କର ନାହିଁ। ତେଣୁ ଏହି ଶୈଳୀର ପ୍ରୟୋଜନ ଏଇଆ ଯେ ଶ୍ରୋତା ଓ ବକ୍ତା ଉଭୟଙ୍କର ଅହଂକାର ନହେଉ।

ଦ୍ୱିତୀୟ କଥା, ଯେତେବେଳେ ପୂର୍ବର ଲୋକଙ୍କ ବିଷୟରେ ଏପରି କୁହାଯାଏ ତ ଆମ ଅହଂକାର ସମାପ୍ତ ହୁଏ। ଆଗରୁ ମଧ୍ୟ ଏପରି କୁହାଯାଇଛି, ଜାଣିଗଲେ, ସେହି ଜ୍ଞାନ ଏବଂ ତାର ପରମ୍ପରା ର ଶକ୍ତି ମଧ୍ୟ ଆମକୁ ପ୍ରାପ୍ତ ହୁଏ। କେତେଥର ଆମ ମନରେ କୌଣସି ନୂଆ ବିଚାର ଆସିଲେ , ଆମକୁ କହିବା ପାଇଁ ସାହାସ ହୁଏ ନାହିଁ। କିନ୍ତୁ ଯଦି ଜାଣି ଯିବା ଯେ ବ୍ୟାସଦେବ ମଧ୍ୟ ଏଇଆ କହିଛନ୍ତି ତେବେ ଏକ ପ୍ରକାର ଉ

ବଳ ମିଳେ। ତେଣୁ ବ୍ୟବହାର ରେ ଦେଖାଯାଏ ଯେ ଯଦି କାହାକୁ କିଛି କହିବାର ଥାଏ ତେବେ ସେ କୁହେ ଯେ ଅମୁକ ବ୍ୟକ୍ତି ମଧ୍ୟ ଏଇଆ କହିଥିଲେ। କିନ୍ତୁ ଯଦି ସେ କୁହେ ଯେ ଏହା ମୋର ନିଜର କଥା, ତାହାହେଲେ ଅନ୍ୟମାନେ କହିବେ - ତୁମ ନିଜ କଥା ନିଜ ପାଖରେ ରଖ। ତେଣୁ ପରମ୍ପରା ଦ୍ୱାରା ଶକ୍ତି ମିଳେ। ଆହୁରି ମଧ୍ୟ ଏହାଦ୍ୱାରା ଆମକୁ ନିଜର ଜ୍ଞାନୀ ପୂର୍ବଜ ମାନଙ୍କ ପରିଚୟ ମିଳିଥାଏ।

## ଶୁକଦେବଙ୍କ ଉତ୍ତର

ଆହୁରି ଏକ ଗୁରୁତ୍ୱପୂର୍ଣ୍ଣ କଥା ହେଲା ଯେ ଏହି ଜ୍ଞାନ ଆମକୁ ନିଜ ବୁଦ୍ଧି ଦ୍ୱାରା ମିଳିପାରିବ ନାହିଁ। ଏହା କେବଳ ଗୁରୁ -ଶିଷ୍ୟ ପରମ୍ପରା ଦ୍ୱାରା ପ୍ରାପ୍ତ ହୁଏ। ତେଣୁ, ପୂର୍ବର ପରମ୍ପରା ଏବଂ ସମ୍ପ୍ରଦାୟ ବିଷୟରେ କୁହାଯାଏ। ଏହା ବ୍ୟର୍ଥ ନୁହଁ। ଏହି ରହସ୍ୟ କୁ ବୁଝିବା ଉଚିତ୍।

ଶୁକଦେବ କହୁଛନ୍ତି ଏପରି ପ୍ରଶ୍ନ ବ୍ରହ୍ମାଙ୍କୁ ନାରଦ ପଚାରି ଥିଲେ। ନାରଦ କଣ ପଚାରିଲେ ? ନାରଦ ଅତ୍ୟନ୍ତ ଆଦରର ସହିତ ବ୍ରହ୍ମାଙ୍କୁ ପଚାରିଲେ- 'ଭଗବାନ୍, ଆପଣ ଏତେ ବଡ଼ ସୃଷ୍ଟିର ରଚନା -କାର୍ଯ୍ୟ କରୁଛନ୍ତି ତାକୁ ସମ୍ଭାଳୁଛନ୍ତି, ଏସବୁ କାହା ଶକ୍ତି ଦ୍ୱାରା କରୁଛନ୍ତି ? ଆପଣ କେବେ ବି ଥକିଗଲା ପରି ଦିଶନ୍ତି ନାହିଁ। ସମ୍ପୂର୍ଣ୍ଣ ବିଶ୍ୱ ଆପଣଙ୍କ ସମ୍ମୁଖରେ ପ୍ରକଟିତ, ଆପଣ ସବୁ ରହସ୍ୟ ଜାଣିଛନ୍ତି। ଆତ୍ମତତ୍ତ୍ୱ କୁ ମଧ୍ୟ ଜାଣିଛନ୍ତି। ମୋତେ ମଧ୍ୟ ସେହି ଆତ୍ମଜ୍ଞାନ ଦିଅନ୍ତୁ। ଆପଣ ଏହି ସବୁ କାର୍ଯ୍ୟ କିପରି କରୁଛନ୍ତି, ତାହା ମଧ୍ୟ ମୋତେ କୁହନ୍ତୁ।' ନାରଦ ବ୍ରହ୍ମାଙ୍କର ମାନସ ପୁତ୍ର। ତାଙ୍କ କଥା ଶୁଣି ବ୍ରହ୍ମା ତାଙ୍କ ଉପରେ ପ୍ରସନ୍ନ ହେଲେ। ପ୍ରସନ୍ନ ହୋଇ କହିଲେ **'ସମ୍ୟକ୍ କାରୁଣିକସ୍ୟେଦଂ ବତ୍ସ ତେ ବିଚିକିତ୍ସିତମ୍'** - ତୁମେ ବହୁତ ଭଲ ପ୍ରଶ୍ନ ପଚାରିଲ। କାରଣ ତୁମ ପ୍ରଶ୍ନ ପରମାତ୍ମାଙ୍କ ସ୍ମରଣ କରେଇ ଦଉଛି। ଏହା ସତ୍ୟ ଯେ ମୁଁ ସବୁ କିଛି ଜାଣେ, ବିଶ୍ୱ ରଚୟିତା, କିନ୍ତୁ ଏହା ମୋର ଶକ୍ତି ନୁହଁ। **'ଯେନ ସ୍ୱରୋଚିଷାଂ ବିଶ୍ୱଂ ରୋଚିତଂ ରୋଚୟାମ୍ୟହମ୍।'(୨.୫.୧୧)**

ଯିଏ ନିଜର ଦୃଷ୍ଟିର ପ୍ରକାଶ ଦ୍ୱାରା ଏହି ସମ୍ପୂର୍ଣ୍ଣ ବିଶ୍ୱର ରଚନା କରିଛନ୍ତି, ପ୍ରକୃତରେ ସେ ହିଁ ନିଜର ଅଂଶ ଶକ୍ତି ମୋତେ ମଧ୍ୟ ଦେଇଛନ୍ତି। ତାଙ୍କ ଶକ୍ତି ଦ୍ୱାରା ମୁଁ ଏହା ସବୁ କରୁଛି। ଏହା ମୋ ନିଜ ଶକ୍ତି ନୁହଁ।

## ଭଗବାନ ନାରାୟଣ ଏବଂ ବ୍ରହ୍ମା

ଏବେ ନାରାୟଣ ଏବଂ ବ୍ରହ୍ମାଙ୍କ ମଧ୍ୟରେ ଥିବା ପାର୍ଥକ୍ୟକୁ ବୁଝିବା, ଏବଂ ତାପରେ ବ୍ରହ୍ମାଙ୍କ ସୃଷ୍ଟି ଏବଂ ଆମ ସୃଷ୍ଟି ମଧ୍ୟରେ ଥିବା ପାର୍ଥକ୍ୟ ଯାହାର ବର୍ଣ୍ଣନା ଆଗକୁ କରାଯାଇଛି, ତାକୁ ଦେଖିବା। ବ୍ରହ୍ମା ସୃଷ୍ଟି ନିର୍ମାଣ ତ କରନ୍ତି କିନ୍ତୁ ସେ କେବଳ ସେହି ସୃଷ୍ଟିର ନିର୍ମାଣ କରି ପାରିବେ ଯାହାପାଇଁ ପୂର୍ବରୁ ସାମଗ୍ରୀ ଉପଲବ୍ଧ ଅଛି। ପୂର୍ବରୁ ଯେଉଁ ଜୀବ ମାନେ ଅଛନ୍ତି ଏବଂ ସେମାନେ ଯେଉଁ କର୍ମ କରିଛନ୍ତି, ସେହି କର୍ମ ଅନୁସାରେ ବ୍ରହ୍ମା ସୃଷ୍ଟି ନିର୍ମାଣ କରନ୍ତି। ତାଙ୍କ ପାଖରେ ଉପାଦାନ ଥିଲେ ହିଁ ଯାଇ ସେ ସୃଷ୍ଟି ରଚନା କରି ପାରିବେ ନ ହେଲେ ସୃଷ୍ଟି ତିଆରି କରି ପାରିବେ ନାହିଁ। କିନ୍ତୁ ଭଗବାନ ନାରାୟଣଙ୍କୁ କୌଣସି ଜୀବର ଆବଶ୍ୟକତା ହୁଏ ନାହିଁ, ସେମାନଙ୍କର କର୍ମର ମଧ୍ୟ ଆବଶ୍ୟକତା ନାହିଁ, ଅନ୍ୟ କୌଣସି  ପଦାର୍ଥର ମଧ୍ୟ ଆବଶ୍ୟକତା ନାହିଁ। ସେ ତ ସ୍ୱୟଂ ସୃଷ୍ଟିକର୍ତ୍ତା। ବ୍ରହ୍ମାଙ୍କୁ ମଧ୍ୟ ପ୍ରକଟ କରନ୍ତି।

ଶ୍ରୀକୃଷ୍ଣ ଚରିତ୍ରରେ କୁହାଯାଇଛି ଯେ ବ୍ରହ୍ମା ଯେତେବେଳେ ଭଗବାନ୍ ବାଛୁରୀ ଏବଂ ଗୋପ-ବାଳକ ମାନଙ୍କୁ ଚୋରାଇନେଲେ, ସେତେବେଳେ ଭଗବାନ୍ ସ୍ୱୟଂ ଗାଈ - ବାଛୁରୀ ଏବଂ ଗୋପ - ବାଳକ ବନିଗଲେ। ଭଗବାନ୍ ଙ୍କ ସୃଷ୍ଟି ରଚନାରେ ପୂର୍ବପଦାର୍ଥ ମାନଙ୍କର ଆବଶ୍ୟକତା ନ ଥାଏ, କିନ୍ତୁ ବ୍ରହ୍ମା ପୂର୍ବ ପଦାର୍ଥ ବିନା ସୃଷ୍ଟି ରଚନା କରିପାରିବେ ନାହିଁ। ଭଗବାନ ନାରାୟଣ ତ ବ୍ରହ୍ମାଙ୍କର ମଧ୍ୟ ସ୍ୱାମୀ। ତେଣୁ ବ୍ରହ୍ମା କହୁଛନ୍ତି ଯେ ଭଗାବାନ ନାରାୟଣ ଙ୍କ ଶକ୍ତି ଦ୍ୱାରା ହିଁ ମୁଁ ସୃଷ୍ଟି ର ରଚନା କରୁଛି। ସମସ୍ତେ ଯେଉଁ ମାୟା ଦ୍ୱାରା ମୋହିତ ହେଉଛନ୍ତି, ସେହି ମାୟା ଡରି-ଡରି ଭଗବାନଙ୍କ ପାଦ ତଳେ ଠିଆ ହୋଇଥାଏ। ତାଙ୍କ ମାୟା କୁ ମୋ ସହିତ ରୁଦ୍ର, ବରୁଣ, କୁବେର ଆଦି ଅଳ୍ପ-ଅଳ୍ପ ଜାଣନ୍ତି । ତାଙ୍କ ଶକ୍ତି ଦ୍ୱାରା ହିଁ ଆମେ ସମସ୍ତେ ନିଜ-ନିଜର କାମ କରୁଛୁ।  ସେ ହିଁ ସର୍ବଶ୍ରେଷ୍ଠ। ।

ଦେଖନ୍ତୁ, ଏହି ନାରାୟଣ ନାମର ଅର୍ଥ କଣ ? **ନରାଣାଂ ଅୟନଂ** -ଯିଏ ସମସ୍ତ ଜୀବ ମାନଙ୍କର ପରମଧାମ, ସ୍ୱାମୀ, ଲକ୍ଷ୍ୟ, ସେ ହିଁ ନାରାୟଣ। 'ନାର' ଶବ୍ଦର ଅର୍ଥ ହେଲା ପାଣି। ପାଣିରେ ଯାହାଙ୍କ ସ୍ଥାନ, ଅୟନ, ଶୟନ, ନିବାସ, ତାଙ୍କୁ  ନାରାୟଣ କୁହାଯାଏ। ସମସ୍ତ ଜୀବ ମାନଙ୍କ ଉତ୍ପତ୍ତି ପାଣି ର ସେହି ବିନ୍ଦୁରୁ ଯାହାକୁ ବୀର୍ଯ୍ୟ କୁହାଯାଏ। ସେଥିରେ ତାଙ୍କର ନିବାସ। ଯିଏ ଆଦି ବାରି, ସମସ୍ତେ ବୀଜ ମାନଙ୍କର ମୂଳ କାରଣ, ତାଙ୍କୁ ନାରାୟଣ କୁହାଯାଏ। ତାଙ୍କ ଠାରୁ ସମସ୍ତ ଜୀବମାନଙ୍କର ସୃଷ୍ଟି।

ଭାଗବତରେ ଅନେକ ସ୍ଥାନରେ ସୃଷ୍ଟି-ପ୍ରକ୍ରିୟା ଦେଖିବାକୁ ମିଳେ। ଯାହା କିଛି ସ୍ଥୁଳ ରୂପରେ ଦେଖା ଯାଉଛି ତାହା ସୂକ୍ଷ୍ମ ରୂପରେ ପ୍ରକଟ ହୁଏ ଏବଂ ସୂକ୍ଷ୍ମ ରୂପରେ ଆସିବା ପୂର୍ବରୁ ତାହା କାରଣ ରେ ଅବ୍ୟକ୍ତ ହୁଏ। ଏତିକି ସିଦ୍ଧାନ୍ତ ବୁଝିବାକୁ ହେବ। ବେଶୀ ଜାଣିବା ଦରକାର ନାହିଁ ଯଥା, - କିଛି ଲୋକ ସାଙ୍ଗ ହୋଇ ବସିଛନ୍ତି ଏବଂ ଜଣେ ହଠାତ୍ ଉଠି ଅନ୍ୟ ଜଣଙ୍କୁ ଗୋଟିଏ ଚଟକଣି ପକାଇଲା, ତେବେ ଅନ୍ୟ ମାନେ ଭାବିବେ ଯେ ହଠାତ୍ କଣ ହେଲା ? କିନ୍ତୁ ଚଟକଣୀ ମାରିଥିବା ଏହି ସ୍ଥୁଳ କ୍ରିୟା ପାଞ୍ଚମିନିଟ୍ ପୂର୍ବରୁ ସେହି ମାରିବା ବାଲା ମନରେ ଚାଲୁଥିଲା। ତା ମନତ ପାଞ୍ଚ ମିନିଟ୍ ପୂର୍ବରୁ ତାକୁ ଚଟକଣୀ ମାରିସାରିଥିଲା। ମନରେ ଏହି କ୍ରିୟା ସୂକ୍ଷ୍ମ ରୂପରେ ଚାଲୁଥିଲା, ତା ପୂର୍ବରୁ ତାହା ଅବ୍ୟକ୍ତ ଅବସ୍ଥାରେ ଥିଲା। ସ୍ଥୁଳ ବସ୍ତୁ ପ୍ରଥମେ ସୂକ୍ଷ୍ମ ଅବସ୍ଥାରେ ଥାଏ। ପାଖରେ ବସିବା ମାତ୍ରେ ସେ ଭାବିନେଲା ଯେ ଆଜି ମଉକା ମିଳିଛି।

ଠିକ୍ ସେହିପରି, ଏହି ସମ୍ପୂର୍ଣ୍ଣ ବ୍ରହ୍ମାଣ୍ଡ , ଯିଏ ଆଜି ଆମ ସମ୍ମୁଖରେ ସ୍ଥୁଳ ରୂପରେ ଦେଖା ଯାଉଛି, ପ୍ରଥମେ ସୂକ୍ଷ୍ମ ରୂପରେ ଏବଂ ତାର ପୂର୍ବରୁ ମଧ୍ୟ ଅବ୍ୟକ୍ତ ଅବସ୍ଥାରେ ଥିଲା। ଅବ୍ୟକ୍ତ ର ଉର୍ଦ୍ଧ୍ୱରେ ଯେଉଁ ଚୈତନ୍ୟ ସ୍ୱରୂପ, ନିର୍ଗୁଣ, ନିର୍ବିଶେଷ ଭଗବାନ ଅଛନ୍ତି। ସେ ହିଁ ପରମସତ୍ୟ। ପ୍ରକୃତରେ ସେଠି ସୃଷ୍ଟି ଆଦି କିଛି ବି ନାହିଁ। ସେହି ପରମାତ୍ମା ଯେତେ ବେଳେ ଅବ୍ୟକ୍ତ ପ୍ରକୃତି ସହିତ ତାଦାତ୍ମ୍ୟ କରି ରହନ୍ତି ସେତେବେଳେ ତାଙ୍କୁ **'ଈଶ୍ୱର'** କୁହାଯାଏ। ଯେତେବେଳେ ସମ୍ପୂର୍ଣ୍ଣ ସୃଷ୍ଟି ସୂକ୍ଷ୍ମ ରୂପରେ ପ୍ରକଟ ହୁଏ ତାଙ୍କୁ 'ହିରଣ୍ୟ ଗର୍ଭ' କୁହାଯାଏ ଏବଂ ସୃଷ୍ଟି ଯେତେବେଳେ ସ୍ଥୁଳ ସ୍ୱରୂପ ଧାରଣ କରେ ତାଙ୍କୁ **'ବିରାଟ'** କୁହାଯାଏ। ଜଣେ ପରମାତ୍ମା ଙ୍କର ଏତକ ସବୁ ନାମ। କିନ୍ତୁ ଏହି ସ୍ଥୁଳ-ସୂକ୍ଷ୍ମ-ଅବ୍ୟକ୍ତ ସବୁ ଭଗବାନଙ୍କ ଦୃଷ୍ଟିରେ ଅଛି। ଯେପରି ଆପଣଙ୍କ ସ୍ୱପ୍ନତ ଆପଣଙ୍କ ମନ ଏବଂ ଦୃଷ୍ଟିରେ ଥାଏ, କିନ୍ତୁ ପ୍ରକଟ ରୂପରେ ବାହାରେ ଦେଖାଯାଏ। ଯେପରି ଆପଣ ଦୃଷ୍ଟିରେ ହିଁ ସ୍ୱପ୍ନ ର ସୃଷ୍ଟି କରନ୍ତି, ସେହି ପରି ଭଗବାନ ଦୃଷ୍ଟି ମାତ୍ରକେ ବ୍ରହ୍ମାଣ୍ଡ ରଚନା କରି ଦିଅନ୍ତି। ଏଠି ତାର ବିସ୍ତାର କରାଯାଇଛି। ପ୍ରଥମେ ଅବ୍ୟକ୍ତ, ତାପରେ ମହତତ୍ତ୍ୱ, ତା ପରେ ସମଷ୍ଟି ବୁଦ୍ଧି, ତା ପରେ ଅହଂକାର, ମନ, ସୂକ୍ଷ୍ମ ପଞ୍ଚମହାଭୂତ, ତା ପରେ ସ୍ଥୁଳ ପଞ୍ଚମହାଭୂତ, ତା ପରେ ସେମାନଙ୍କ ମିଶ୍ରଣ ରୁ ଜଗତ, ଏବଂ ସେଥିରୁ ଏହି ଭିନ୍ନ -ଭିନ୍ନ ଶରୀର ଆଦି ସବୁ ଦେଖା ଯାଉଛନ୍ତି। ଏହି ସୃଷ୍ଟିରେ ଅଲଗା -ଅଲଗା ରୂପ ରେ ଯାହାବି କିଛି ଦେଖା ଯାଉ ଅଛି, ସେ ସବୁ ପ୍ରକୃତରେ ଗୋଟିଏ ତତ୍ତ୍ୱର ଭିନ୍ନ ଭିନ୍ନ ଆକାର ମାତ୍ର। ତେଣୁ ବ୍ରହ୍ମାଣ୍ଡର ଚଉଦ ଲୋକର କଳ୍ପନା କରା ଯାଇଛି। ସୃଷ୍ଟି - କ୍ରମ ର ଯେଉଁ ବର୍ଣ୍ଣନା ଆମ ପୁରାଣ ମାନଙ୍କରେ ମିଳେ ଯେ

ଭଗବାନ କ୍ଷୀର - ସାଗରେ ଶୟନ କରୁଛନ୍ତି, ସେ ଆଦିବାରି, ମୂଳ କାରଣ। ତାଙ୍କ ନାଭିରୁ ଗୋଟିଏ ପଦ୍ମ ବାହାରିଲା ଯାହା ଉପରେ ବ୍ରହ୍ମା ବସିଛନ୍ତି। ଏପରି ଶୁଣି କିଛି ଲୋକ ଭାବୁ ଥିବେ ଯେ ଭଗବାନ ନାରାୟଣଙ୍କ ନାଭିରୁ ପଦ୍ମ ବାହାରିଲା। ସେ ପଦ୍ମ ଉପରେ ବ୍ରହ୍ମା ବସିଛନ୍ତି ତ ପଦ୍ମଟି ଟଳମଳ ହେଉଥିବ। ଆରେ ନା-ନା, ଭଗବାନ ଙ୍କ ନାଭି ସମସ୍ତ ସୃଷ୍ଟି ର କେନ୍ଦ୍ର। ସେଥିରୁହିଁ ପ୍ରଥମ ବୃତ୍ତି ଉତ୍ପନ୍ନ ହେଲା, ଅର୍ଥାତ୍ ଚତୁର୍ଭୂଜ ବ୍ରହ୍ମା ପ୍ରକଟ ହେଲେ। ଆମେ ସମସ୍ତେ ମଧ୍ୟ ଶୟନ କରୁ । ଆମର ଶୟନ କିନ୍ତୁ ନିଦ୍ରା ରୂପରେ ହୁଏ। ପ୍ରାତଃକାଳରେ ନାଭିରୁ ଗୋଟିଏ ପଦ୍ମ ବାହାରେ କି ନାହିଁ? ବିଚାର କରନ୍ତୁ।

ଟିକିଏ ଭାବିଲେ ଦେଖି। ନିଦ ଭାଙ୍ଗିଲା ମାତ୍ରେ ସବୁଠୁ ପ୍ରଥମେ ଭାବନା ଆସେ- 'ମୁଁ ଅଛି'। ତା ପରେ ଆସେ ସଂକଳ୍ପ - 'ଏବେ ଉଠିବା କଥା'। ତା ପରେ ନିଶ୍ଚୟ - 'ଉଠିଯିବା', କାହିଁକି ଉଠିବା? ସେତେବେଳେ ନ ଉଠିଲେ କଣ ହେବ ସେ ଭାବନା ମଧ୍ୟ ଆସେ। ତା ପରେ, ମୁଁ ଏଇ ଏଇ କାର୍ଯ୍ୟସବୁ କରିବି ଏହି ଅହଂକାର ଆସେ। ଏହା ପ୍ରତିଦିନ ହୁଏ। ଉପନିଷଦରେ ନାଭି, ପଦ୍ମ ଆଦିର ବର୍ଣ୍ଣନ ନାହିଁ। ସେଠି କୁହା ଯାଇଛି - 'ଏକୋହଂ ବ୍ରହୁସ୍ୟାମ୍'। 'ସୋଽକାମୟତ'।

ପୁରାଣ ଗୁଡ଼ିକରେ କୁହାଯାଇଛି ଯେ ଭଗବାନଙ୍କ ନାଭି କମଳ ରୁ ବ୍ରହ୍ମା ପ୍ରକଟ ହେଲେ, କିନ୍ତୁ ବେଦାନ୍ତ ରେ କୁହାଯାଇଛି ଯେ ବ୍ରହ୍ମ ବିଚାର କଲେ, ସେ ହିଁ ତପସ୍ୟା କଲେ। ପୁରାଣ ଗୁଡ଼ିକର ନିଜସ୍ୱ ଶୈଳୀ ଏବଂ ଉପନିଷଦ ମାନଙ୍କର ନିଜସ୍ୱ ଶୈଳୀ। କିନ୍ତୁ କଥା ସେଇ ଗୋଟିଏ -ବ୍ରହ୍ମ ହିଁ ସଚ୍ଚିଦାନନ୍ଦ। ତାଙ୍କଠାରୁ ବ୍ରହ୍ମା ପ୍ରକଟ ହେଲେ। ଯେତେବେଳେ ଆମେ ସୃଷ୍ଟିର ପ୍ରଭେଦକୁ ଦେଖିବା ସେତେବେଳେ ନାରାୟଣ ଏବଂ ବ୍ରହ୍ମା ଙ୍କ ଭିତରେ ପାର୍ଥକ୍ୟ ଦେଖାଯିବ। ତେଣୁ ପାର୍ଥକ୍ୟ କଥା କୁହାଯାଇଛି। କିନ୍ତୁ ଯେତେବେଳେ ଏକ ଆଡ଼କୁ ଦୃଷ୍ଟି ଯିବ, ସେତେବେଳେ ସବୁ ପାର୍ଥକ୍ୟ ସମାପ୍ତ ହୋଇଯିବ। ଯେତେବେଳେ ଦୁଇ ବା ଅନେକ ଆଡ଼କୁ ଦୃଷ୍ଟି ଯାଏ ଏବଂ ଆମେ ପ୍ରଶ୍ନ ପଚାରୁ ଯେ ଏମାନଙ୍କ ମଧ୍ୟରେ ପାର୍ଥକ୍ୟ କ'ଣ? ସେତେବେଳେ ଉତ୍ତର ମଧ୍ୟ ଦିଆଯାଏ। ଉତ୍ତର ଦିଆଯିବାର କାରଣ ହେଲା ଯେ ଏପର୍ଯ୍ୟନ୍ତ ଭେଦଦୃଷ୍ଟି ଅଛି। ଅଭେଦ ଦୃଷ୍ଟି ରେ ତ ପ୍ରଶ୍ନ ହିଁ ନାହିଁ। ଏହି ପରି, ଅନେକ ଅଂଶ ର କଳ୍ପନା କରା ଯାଇଛି। ବ୍ରହ୍ମା ତପସ୍ୟାକଲେ, ଭଗବାନ ଖୁସି ହେଲେ। ତାଙ୍କଠାରୁ ବ୍ରହ୍ମାଙ୍କୁ ସୃଷ୍ଟି ରଚନାର ଶକ୍ତି ମିଳିଲା ଏବଂ ବ୍ରହ୍ମା ସୃଷ୍ଟି ରଚନା କଲେ।

**ସର୍ବଂ ପୁରୁଷ ଏବେଦଂ ଭୂତଂ ଭବ୍ୟଂ ଭବଶ୍ଚ ଯତ୍।**

**ତେନେଦମାବୃତଂ ବିଶ୍ୱଂ ବିତିସ୍ତିମଧିତିଷ୍ଠତି ॥ (୨.୬.୧୫)**

ଏତେ ଗୁଡ଼ିଏ ଭେଦ କହିବା ପରେ କହିଲେ ଯେ ପ୍ରକୃତରେ ଏଠାରେ ପୁରୁଷ ହିଁ ସବୁକିଛି। ଯେପରି ସ୍ୱର୍ଣ୍ଣ ରୁ ଆଭୂଷଣ ତିଆରି କରାଯାଏ, ତାପରେ କୁହାଯାଏ ଯେ ଏହା ଚୁଡ଼, ଏହା ହାର, ଏଥିରେ ପାର୍ଥକ୍ୟ କଣ ? କିଛି ନାହିଁ। ପ୍ରକୃତରେ **'ସୁବର୍ଣ୍ଣମେବ' ଇଦଂ ସର୍ବମ୍'**। ସବୁ ସୁନା ଅଟେ, ରୂପ - ଆକାର ଦୃଷ୍ଟି ରୁ ସେଗୁଡ଼ିକ ଅଲଗା - ଅଲଗା ଦିଶୁଛନ୍ତି।

**ନ ଭାରତୀ ମେଽଙ୍ଗ ମୃଷୋପଲକ୍ଷ୍ୟତେ**

**ନ ବୈ କ୍ୱଚିନ୍ମେ ମନସୋ ମୃଷା ଗତିଃ।**

**ନ ମେ ହୃଷିକାଣି ପତନ୍ତ୍ୟସତ୍ପଥେ**

**ଯନ୍ମେ ହୃଦୌତ୍କଣ୍ଠ୍ୟବତା ଧୃତୋ ହରିଃ ॥ (୨.୬.୩୩)**

ବ୍ରହ୍ମା କହୁଛନ୍ତି ଯେ ମୋ ବାଣୀ କେବେ ହେଲେ ମିଥ୍ୟା ଭାଷଣ କରେ ନାହିଁ। ମୋର ମନ ମିଥ୍ୟା ବସ୍ତୁ ଦିଗକୁ ଯାଏ ନାହିଁ। ମୋର ଇନ୍ଦ୍ରିୟମାନେ ଅସତ୍ ମାର୍ଗ ରେ ଯାଆନ୍ତି ନାହିଁ କାରଣ ମୁଁ ଭଗବାନଙ୍କୁ ନିଜ ହୃଦୟ ରେ ବସେଇ ରଖିଛି। ଏହାର ଅର୍ଥ କଣ ? ଏଇଆ ଯେ ଆମର ମନ ଏପଟ - ସେପଟ ହୋଇ ମିଥ୍ୟା ବସ୍ତୁ ଆଡ଼କୁ ଯାଏ। ଆମ ଇନ୍ଦ୍ରିୟ ମାନେ ବି ମିଥ୍ୟା ବସ୍ତୁ ଆଡ଼କୁ ଦୌଡୁଥାନ୍ତି ଏବଂ ବାଣୀ ମଧ୍ୟ ବହୁତ ମିଛ କଥା କହୁଥାଏ, ତାର କାରଣ ହେଲା ଆମେ ଭଗବାନଙ୍କୁ ନିଜ ହୃଦୟରେ ବସେଇ ନାହୁଁ। ସିଧା କଥା କେବଳ ଏତିକି । ଯେତେବେଳ ହୃଦୟରେ ଭଗବାନଙ୍କ ନିବାସ ହେବ ସେତେବେଳେ ମନ, ବାଣୀ ବା ଇନ୍ଦ୍ରିୟ ଦ୍ୱାରା କୌଣସି ଭୁଲ କାମ ହେବ ନାହିଁ। ବ୍ରହ୍ମା କହିଲେ, "ଭଗବାନଙ୍କର ମୋ ଉପରେ ଅସୀମ କୃପା, ତା ଦ୍ୱାରା ମୁଁ ଏହା ସବୁ କରି ପାରୁଛି ଏବଂ କରକୁଛି"।

**ଯସ୍ୟାବତାରକର୍ମାଣି ଗାୟନ୍ତି ହ୍ୟସ୍ମଦାଦୟଃ ।**

**ନ ଯଂ ବଦନ୍ତି ତତ୍ତ୍ୱେନ ତସ୍ମୈ ଭଗବତେ ନମଃ ॥ (୨.୬.୩୭)**

ଆମ ପରି ବ୍ରହ୍ମା, ବିଷ୍ଣୁ, ମହେଶ ଆଦି ମଧ୍ୟ ଭଗବାନଙ୍କ ଅବତାର ମାନଙ୍କର, ସେମାନଙ୍କ କାର୍ଯ୍ୟର ମହିମା ଗାନ କରନ୍ତି, କିନ୍ତୁ ସେମାନେ ମଧ୍ୟ ତାଙ୍କ ମହିମା ପୂର୍ଣ୍ଣରୂପେ ଗାନ କରିପାରନ୍ତି ନାହିଁ। ଏପରି ଭଗବାନଙ୍କୁ ନମସ୍କାର। ତାଙ୍କର ପୂର୍ବ- ପୂର୍ବର ଅବତାର ମାନେ ହେଲେ ଗୁଣାବତାର। ଯେପରି ତ୍ରିଗୁଣ, କାଳ, ସ୍ୱଭାବ, ଦେଶ, ଦ୍ରବ୍ୟ, ବିକାର, ମନ, ପଞ୍ଚମହାଭୂତ, ଇନ୍ଦ୍ରିୟ, ଆଦି। ଦଶାବତାର ଆଦି ଭଗବାନଙ୍କର ପରବର୍ତ୍ତୀ ଅବତାର। ଏଠାରେ ବ୍ରହ୍ମା ନାରଦଙ୍କୁ ଭଗବାନଙ୍କ ବିଭିନ୍ନ ଅବତାର ମାନଙ୍କ ବିଷୟରେ ସଂକ୍ଷେପରେ କହୁଛନ୍ତି। ଆହୁରି ମଧ୍ୟ କହୁଛନ୍ତି ଯେ ଶେଷ ନାଗ ନିଜର ସହସ୍ର ମୁଖ ଦ୍ୱାରା ଅନନ୍ତ କାଳ ପର୍ଯ୍ୟନ୍ତ ବର୍ଣ୍ଣନା କଲେ ମଧ୍ୟ ଭଗବାନ ଙ୍କ ବିଷୟ ରେ ପୁରା କହି ପାରିବେ ନାହିଁ. । ଯଦି କଥା ଏଇଆ ତେବେ ସେହି ଅବତାର ମାନଙ୍କୁ କେଉଁ ମାନେ ଜାଣି ପାରିବେ ? କୁହାଯାଇଛି ଯେ-

**ଯେଷାଂ ସ ଏବ ଭଗବାନ୍ ଦୟୟେଦନନ୍ତଃ**

**ସର୍ବାତ୍ମନାଽଽଶ୍ରିତପଦୋ ଯଦି ନିର୍ବ୍ୟଲୀକମ୍।**

**ତେ ଦୁସ୍ତରାମତିତରନ୍ତି ଚ ଦେବମାୟାଂ**

**ନୈଷାଂ ମମାହମିତି ଧୀଃ ଶ୍ୱଶୃଗାଲଭକ୍ଷ୍ୟେ ॥ (୨.୭.୪୨)**

ଭଗବାନ ଯାହାଉପରେ ଦ୍ରବିତ ହେଇଯାଇଥାନ୍ତି, ତାଙ୍କ ପାଖରେ ସେ ନିଜର ରହସ୍ୟ ପ୍ରକଟ କରିଦିଅନ୍ତି। କିନ୍ତୁ ସେ କାହା ଉପରେ ଦ୍ରବିତ ହୁଅନ୍ତି ? ଯିଏ ପୂର୍ଣ୍ଣ ରୂପେ ତାଙ୍କର ହିଁ ଆଶ୍ରୟ ନିଏ ଏବଂ -ଅର୍ଥାତ୍ ମନରେ କୌଣସି କପଟ ରଖେ ନାହିଁ, ତା ଉପରେ ଆମେ ମାନେ ଗୋଟିଏ ପଟରେ କହୁ ଯେ, "ତେରା ତୁଝକୋ ଅର୍ପଣ କ୍ୟା ଲାଗେ ମେରା" ମୁଁ ନିଜକୁ , ଆପଣଙ୍କ ଚରଣରେ ଅର୍ପଣ କରିଛି। ଅନ୍ୟ ପଟରେ ଏହା ମଧ୍ୟ କହୁ ଯେ ଆପଣ ଟିକିଏ ମୋ ଘର ଆଡ଼କୁ ନଜର କରିଥିବେ। ଏଇଟା ବଡ଼ ଆଶ୍ଚର୍ଯ୍ୟର କଥା ଯେ ନିଜକୁ ଭଗବାନଙ୍କ ଚରଣରେ ଅର୍ପିତ କରି ଦେଲ। ନିଜେ ନିଜର ହେଇ ନାହିଁ, କିନ୍ତୁ ତଥାପି ଘର ତୁମର କେମିତି ହେଲା ? ଏବେ ସେଇଟା ତୁମ ଘର ନୁହଁ, ଭଗବାନଙ୍କ ଘର। ତେଣୁ ଯିଏ ନିର୍ବ୍ୟଲୀକ ମାନେ ଯାହାମନରେ ଟିକିଏ ହେଲେ ଛଳ-କପଟ ନାହିଁ, ଯିଏ ମିଥ୍ୟା ଭାଷଣ କରେ ନାହିଁ ସେହି ମାନେ '**ତେ ଦୁସ୍ତରାମତିତରନ୍ତି**

**ଦେବମାୟାଂ'** ଦେବମାୟା କୁ ପାରି ହେଇ ପାରନ୍ତି। ନିଜ ଦେହକୁ ଏଠାରେ 'ଶ୍ୱଶୃଗାଳଭକ୍ଷ୍ୟ' ଅର୍ଥାତ୍ କୁକୁର -ବିଲୁଆଙ୍କ ଖାଦ୍ୟ କୁହାଯାଇଛି। ଏପରି କୁକୁର - ଶୃଗାଳଭକ୍ଷ୍ୟ ଶରୀର ରେ ଯିଏ ଅହଂ-ମମ ଭାବନା ରଖନ୍ତି ନାହିଁ, ସେ ହିଁ ମାୟାକୁ ପାର କରିପାରନ୍ତି। ଏହାର ଅର୍ଥ ଅହଂ - ମମ ଭାବ ହିଁ ମାୟା ଅଟେ। ଏହି ଦେହ କୁ **'ଏହା ମୁଁ ଅଟେ'** ଭାବିବା ହିଁ ମାୟା। ଏହିପରି ବ୍ରହ୍ମା ନାରଦଙ୍କୁ କହୁଛନ୍ତି ଯେ ଏହି ଭାଗବତର ଜ୍ଞାନ ଯାହା ମୁଁ ଭଗବାନ ନାରାୟଣଙ୍କ ଠାରୁ ପ୍ରାପ୍ତ କରିଥିଲି, ତୁମକୁ ମୁଁ ସଂକ୍ଷେପରେ କହିଲି।

**ଇଦଂ ଭାବଗତଂ ନାମ ଯନ୍ମେ ଭଗବତୋଦିତମ୍।**
**ସଂଗ୍ରହୋଽୟଂ ବିଭୁତୀନାଂ ତ୍ୱମେଦତ୍ ବିପୁଲୀକୁରୁ ॥ (୨.୭.୫୧)**
**ଯଥା ହରୌ ଭଗବତି ନୃଣାଂ ଭକ୍ତିର୍ଭବିଷ୍ୟତି।**
**ସର୍ବାତ୍ମନ୍ୟଖିଳାଧାରେ ଇତି ସଂକଲ୍ପ୍ୟ ବର୍ଣୟ ॥ (୨.୭.୫୨)**

ତାପରେ ବ୍ରହ୍ମା କହିଲେ ଯେ - ଏବେ ତୁମେ ଏହାର ବିସ୍ତାର କର।

**'ବିପୁଲୀକୁରୁ'** ଏବଂ ସଂକଳ୍ପ କର ଯେ ଏହି ଜ୍ଞାନର ପ୍ରଚାର ମୁଁ ଏପରି ଭାବରେ କରିବି ଯାହାଦ୍ୱାରା ସମସ୍ତଙ୍କ ମନରେ ଭଗବାନଙ୍କ ପ୍ରତି ଭକ୍ତି ଭାବ ଜାଗ୍ରତ ହେବ। ଯିଏ ସର୍ବଦ୍ରଷ୍ଟା ଏବଂ ଅଧିଷ୍ଠାନ ରୂପ ଭଗବାନ- **'ସର୍ବାତ୍ମନି ଅଖିଳାଧାରେ'** ତାଙ୍କ ପ୍ରତି ସମସ୍ତଙ୍କ ମନରେ ଭକ୍ତି ହେଉ, ଏପରି ସଂକଳ୍ପ କରି ବର୍ଣ୍ଣନ କର, ଧନ ରୋଜଗାର ପାଇଁ ବା ନାମ ଅର୍ଜନ ପାଇଁ ନୁହଁ। କୀର୍ତ୍ତି ବା ନୋବେଲ ପ୍ରାଇଜ ପାଇଁ ନୁହଁ। କେବଳ ଭଗବାନଙ୍କ ଭକ୍ତି ହୃଦୟକୁ ଆସୁ ସେଥିପାଇଁ କର। ଏଠାରେ ଗୋଟିଏ ଭଲ କଥା କୁହାଯାଇଛି। ଆମେ ସମସ୍ତେ ଭଗବାନଙ୍କ ମାୟାପାଖରେ ପଡ଼ିଛୁ, ତା ଠାରୁ ଅଲଗା ହେବା କିପରି? କୁହାଗଲା ଯେ ଭଗବାନଙ୍କ ମାୟାର ବର୍ଣ୍ଣନା କରିଚାଲ, ତେବେ ଅନାୟାସ ଭଗବାନଙ୍କ ମଧ୍ୟ ଧ୍ୟାନହେଉଥିବ। ଆମେ କେବଳ ମାୟା ର ହିଁ ଧ୍ୟାନ କରୁ କିନ୍ତୁ ଭଗବାନଙ୍କ ମାୟାର ଧ୍ୟାନ କରୁନା। ଭଗବାନଙ୍କ ମାୟାର ବର୍ଣ୍ଣନ ଭଗବାନଙ୍କୁ ଛାଡ଼ି କରି ପାରିବା ନାହିଁ। ସେତେବେଳେ ସେହି ମାୟା ଆମକୁ ମୋହିତ କରିବ ନାହିଁ। ଏହିପରି ବ୍ରହ୍ମା ନାରଦ ଙ୍କୁ ଉପଦେଶ ଦେଇଥିଲେ।

## ପରୀକ୍ଷିତଙ୍କ ପ୍ରଶ୍ନ

ପରୀକ୍ଷିତ ଶୁକଦେବଙ୍କୁ ପଚାରିଲେ ଯେ, ବ୍ରହ୍ମା ନାରଦଙ୍କୁ ଏହି ଜ୍ଞାନ ର ପ୍ରଚାର କରିବା ପାଇଁ କହିବାରୁ ସେ ଏହି ଜ୍ଞାନ କାହାକୁ କହିଲେ ? ଶ୍ରବଣ ମାତ୍ରକେ ଭଗବାନ ହୃଦୟରେ ପ୍ରକଟ ହେଇ ଯାଆନ୍ତି ଏବଂ ମନରୁ ଅଶୁଦ୍ଧତାକୁ ଧୋଇ ଦିଅନ୍ତି । ତେଣୁ ମୁଁ ମଧ୍ୟ ଏହା ଶୁଣିବାକୁ ଚାହୁଁଛି । ଏପରି କହି ରାଜା ପରୀକ୍ଷିତ ଶୁକଦେବଙ୍କ ସମ୍ମୁଖରେ ପ୍ରଶ୍ନ ର ଏକ ଲମ୍ବା ତାଲିକା ରଖିଦେଲେ । କିପରି ଭଗବାନ ସୃଷ୍ଟି ରଚନା କରନ୍ତି, ପାଳନ କରନ୍ତି, ଏବଂ ବିଲୟ କରନ୍ତି ? କେତୋଟି ଲୋକ ଅଛି ? ଲୋକପାଳ ଅଛନ୍ତି ? ଦେବତା ଆଦି ଅଛନ୍ତି ? କାଳ କାହାକୁ କୁହାଯାଏ ? କାଳର ଗତି କେତୋଟି ? କର୍ମ କେତେ ପ୍ରକାର ର ? କର୍ମର ଗତି କଣ ? ସେହିପରି ଗୁଣ ଏବଂ ଗୁଣୀ ମାନଙ୍କର କେତେ ନାମରୂପ ? ବ୍ରହ୍ମାଣ୍ଡ କଣ ? ତାର ମାପ କଣ ? ତାର ସୀମା କଣ ? କେଉଁ ଯୁଗର ଧର୍ମ କଣ ? ଅବତାର ମାନଙ୍କ ସଂଖ୍ୟା କେତେ ? ତାଙ୍କ ବିଷୟକ କଥା କଣ ? ମନୁଷ୍ୟମାନଙ୍କର ସାଧାରଣ ଧର୍ମ ଏବଂ ବିଶେଷ ଧର୍ମ କଣ - କଣ ? ସେହିପରି ଗୃହାସ୍ଥାଶ୍ରମ, ବ୍ରହ୍ମଚର୍ଯ୍ୟାଶ୍ରମ , ବାନପ୍ରସ୍ଥାଶ୍ରମ ଏବଂ ସନ୍ୟାସାଶ୍ରମ ର ଧର୍ମ କଣ-କଣ ? ସାଂଖ୍ୟ କଣ ? ଯୋଗ କଣ ? ବେଦ କଣ ? ସ୍ମୃତି କଣ ? ପୁରାଣ କଣ ? ଇତିହାସ କଣ ? ଇଷ୍ଟାପୂର୍ତ୍ତ କାହାକୁ କୁହାଯାଏ ? ବନ୍ଧ ଏବଂ ମୋକ୍ଷ କଣ ?

**ସର୍ବମେତଚ୍ଚ ଭଗବନ ପୃଚ୍ଛତେ ମେଽନୁପୂର୍ବଶଃ ।**

**ତତ୍ତ୍ୱତୋଽର୍ହସ୍ୟୁଦାହର୍ତ୍ତୁଂ ପ୍ରପନ୍ନାୟ ମହାମୁନେ ॥ (୨.୮.୨୪)**

ଯଦି କିଛି ଛାଡ଼ିଦେଇଥିବି, ତାକୁ ମଧ୍ୟ ଆପଣ କହିବେ । କେହିଯଦି କୁହେ ଯେ ଆରେ ପରୀକ୍ଷିତ, କଥା ଶୁଣିବା ପାଇଁ ସମୟ ଦରକାର, କିଛି ଖାଇନିଅ । ପରୀକ୍ଷିତ କହୁଛନ୍ତି -**'ନ ମେଽସବଂ ପରାୟନ୍ତି ବ୍ରହ୍ମନ୍ନନଶନାଦମୀ'** (୨.୮.୨୬) ଭୋକ ଏବଂ ଶୋଷ ଯୋଗୁଁ ମୋର ପ୍ରାଣ ଯିବ ନାହିଁ, ବ୍ରାହ୍ମଣ ର ଅଭିଶାପ ପଡ଼ିଛି, ତେଣୁ ଏବେତ ତକ୍ଷକର ଦଂଶନରେ ହିଁ ମୋ ପ୍ରାଣ ଯିବ । ମୁଁ ଆପଣଙ୍କ ଅମୃତ ବଚନ ଶୁଣୁଛି, ଭଗବାନଙ୍କର ଅମୃତମୟୀ କଥା ଶୁଣୁଛି, ତେଣୁ ନା ମୋତେ ଭୋକ ଲାଗୁଛି ନା ଶୋଷ । ଦେଖନ୍ତୁ ପରୀକ୍ଷିତ ଭଗବାନଙ୍କର ଅମୃତମୟୀ କଥା ଶୁଣି ଦେହ -ଗୃହ କୁ ଭୁଲି ଯାଇଥିଲେ । କହିଲେ - ମୋର ଏବେ ଖାଇବା ପିଇବା ର ନାହିଁ କି ଆଉ କିଛି କରିବାର ନାହିଁ, ଆପଣ କେବଳ କଥା ଶୁଣାନ୍ତୁ । ଶୁକଦେବ ଏତେ ଜିଜ୍ଞାସୁ ଶିଷ୍ୟ କୁ ଦେଖି ଅତ୍ୟନ୍ତ ପ୍ରସନ୍ନ ହେଲେ । ଏତେ କଥା ଜାଣିବାକୁ ଚାହୁଁଛି । କହିଲେ ଭଲ କଥା ।

ଦେଖନ୍ତୁ, ଲୋକମାନେ ଗପ ଶୁଣୁ-ଶୁଣୁ ଭାଗବତର ମୂଳ ସିଦ୍ଧାନ୍ତ କୁ ହିଁ ଭୁଲି ଯାଆନ୍ତି। ଏଠାରେ ଏହି ବିସ୍ତୃତ ସୃଷ୍ଟିର ବର୍ଣ୍ଣନା କରିବା ପୂର୍ବରୁ ହିଁ ଶୁକଦେବ କହୁଛନ୍ତି ଯେ ମୁଁ ଯେଉଁ ସୃଷ୍ଟିର ବର୍ଣ୍ଣନା କରିବାକୁ ଯାଉଛି **"ତାହା କୌଣସି ପାରମାର୍ଥିକ ସତ୍ୟ ନୁହଁ, କେବଳ ଆଭାସ ରୂପ ମାତ୍ର।"**

**ଆତ୍ମାମାୟାମୃତେ ରାଜନ୍ ପରସ୍ୟାନୁଭବାତ୍ମନଃ।**

**ନ ଘଟେତାର୍ଥସମ୍ବନ୍ଧଃ ସ୍ୱପ୍ନଦ୍ରଷ୍ଟୁରିବାଞ୍ଜସା ॥ (୨.୯.୧)**

ପରମାତ୍ମା ସଚ୍ଚିଦାନନ୍ଦ ସ୍ୱରୂପ। ସେଠି ମାୟା କେଉଁଠାରୁ ଆସିପାରିବ ? ତାଙ୍କ ଭିତରେ ତ ନାହିଁ। ତେବେ ଏହି ସୃଷ୍ଟିର ରଚନା କିପରି ହେଲା ? ଏହି ସୃଷ୍ଟିର ରଚନା ହେତୁ ମୂଳବସ୍ତୁ ରେ ବିକାର ଆସିବା ଆବଶ୍ୟକ। ତେବେ ତ ସୃଷ୍ଟି ରଚନା ହେବ। ଯେମିତି କ୍ଷୀର ନ ଛିଣ୍ଡିଲେ ଛେନା ହେବନି। କହିବାର ଅର୍ଥ ହେଲା ଯେ ବିକାର ବିନା ସୃଷ୍ଟି ରଚନା ହୁଏ ନାହିଁ। ଦେଖନ୍ତୁ, ଜଗତର ମୂଳରେ କିଏ ? ଅବିକାରୀ ପରମାତ୍ମ ତତ୍ତ୍ୱ। ପରମାତ୍ମ ତତ୍ତ୍ୱରେ ତ ବିକାର ନାହିଁ। ତେବେ ଏହି ସୃଷ୍ଟି ର ଉତ୍ପତ୍ତି ହେଲା କିପରି ? ଯଦି ସୃଷ୍ଟି ର ଉତ୍ପତ୍ତି ହୋଇଛି ତେବେ ମାୟା ସହ ସମ୍ବନ୍ଧ ଦ୍ୱାରା ହିଁ ସମ୍ଭବ ହୋଇପାରିବ। କିନ୍ତୁ ପରମାତ୍ମ ତତ୍ତ୍ୱ ଭିନ୍ନ, ଅନ୍ୟକୌଣସି ବସ୍ତୁ ଯେତେବେଳେ ନାହିଁ, ସେତେବେଳେ ମାୟାସହ ସମ୍ବନ୍ଧ କିପରି ସମ୍ଭବ ? ତେଣୁ କୁହାଯାଏ ଯେ ଯାହା କିଛି ଦିଶୁଛି ତାହା କେବଳ ଆଭାସ ମାତ୍ର, ପ୍ରକୃତ ନୁହେଁ।

ପ୍ରକୃତରେ ଏହି ତତ୍ତ୍ୱ କୁ ବୁଝିବା ବଡ଼ କଠିନ। ବୈରାଗ୍ୟ ନ ଆସିବା ପର୍ଯ୍ୟନ୍ତ, ଜିଜ୍ଞାସା ନ ହେଲେ, ଭଲ ଭାବରେ ସାଧନା ନ କଲେ ମହାପୁରୁଷଙ୍କ ଆଶ୍ରୟ ନ ମିଳିଲେ ଏହି ତତ୍ତ୍ୱ କୁ ବୁଝି ପାରିବା ନାହିଁ। କିନ୍ତୁ କେବେବି ତତ୍ତ୍ୱ କୁ ଭୂଲିବେନି କାରଣ ଏହି ସୃଷ୍ଟିକୁ ସତ୍ୟ ମାନିବା ପର୍ଯ୍ୟନ୍ତ ଦୁଃଖ ମଧ୍ୟ ହେଉଥିବ ଏବଂ କେବଳ ସୃଷ୍ଟି ହିଁ ଦେଖୁଥିବା। ଯାହାର ଦୃଷ୍ଟି ରେ ଏହି ସୃଷ୍ଟି ରହିଛି ସେହି ଦ୍ରଷ୍ଟା କୁ ଧର। ଭାଗବତ ର ଏହା ହିଁ ସହଜ ଏବଂ ସିଧା କଥା। ସ୍ୱପ୍ନ କେବଳ ଜାଗ୍ରତ ପୁରୁଷର ଦୃଷ୍ଟି ରେ ହିଁ ଥାଏ। ତେଣୁ ଜାଗ୍ରତ ହୁଅ। ଜାଗ୍ରତ ହୋଇଗଲେ ସ୍ୱପ୍ନ ସ୍ୱତଃ ସମାପ୍ତ ହୋଇଯିବ। କାରଣ ସ୍ୱପ୍ନ ତ ଜାଗ୍ରତ ପୁରୁଷର ଦୃଷ୍ଟି ଥାଏ। ସିଦ୍ଧାନ୍ତ ଏଇଆ ଯେ - **ଜଣେ ମାତ୍ର ଚୈତନ୍ୟ ଦ୍ରଷ୍ଟା ଅଛି ତାରି ଦୃଷ୍ଟିରେ ଏହି ସୃଷ୍ଟି ରହିଛି।** ବାସ ଆଉ କିଛି ନାହିଁ। ଆପଣ ଧୀରେ-ଧୀରେ ସୃଷ୍ଟିରୁ ଦୃଷ୍ଟି ଅପସରଣ କରି, ସେହି ଦ୍ରଷ୍ଟାରେ ଲଗାନ୍ତୁ ଯାହାର ଦୃଷ୍ଟିରେ ଏହି ସବୁ ରହିଛି।

ବର୍ଣ୍ଣନା କରା ଯାଇଛି ଯେ ବ୍ରହ୍ମା ଯେତେବେଳେ ପ୍ରକଟ ହେଲେ, ସେ ଚାରି ଦିଗ କୁ ଦେଖିବାକୁ ଲାଗିଲେ। ସେ ବୁଝିପାରିଲେ ନାହିଁ ଯେ ମୁଁ ଏବେ କ'ଣ କରିବି ? କେବେ-କେବେ ଆମ ମନରେ ମଧ୍ୟ ଏହି ଭାବନା ଉଠେ। ମୁଁ କଣ କରିବି ?କିଛି ବୁଝିହୁଏନା। ସେ ମଧ୍ୟ ବୁଝିପାରିଲେ ନାହିଁ ଯେ ମୁଁ କିଏ, ମୁଁ କଣ - ସେତେବେଳେ ସେ ଗୋଟିଏ ଧ୍ୱନି ଶୁଣିଲେ ଏବଂ ସେହି ଧ୍ୱନି ହେଲା - ତପ, ତପ, ତପ। ସେ ଧ୍ୱନି କେଉଁଠାରୁ ଆସୁଛି ଜାଣିବାକୁ ଚାହିଁଲେ କିନ୍ତୁ କିଛି ଦେଖି ପାରିଲେ ନାହିଁ କିନ୍ତୁ ଏତିକି ବୁଝିଗଲେ ଯେ ମତେ ତପସ୍ୟା କରିବାଲା ପାଇଁ କୁହା ଯାଉଛି। ତପ ଶବ୍ଦ ର ଅର୍ଥ ଗୋଟିଏ ଗୋଡ଼ ରେ ଛିଡ଼ା ହେବା ଆଦି ନୁହଁ। ଏଠାରେ 'ତପ' ଶବ୍ଦ ର ଅର୍ଥ ହେଲା- ଆଲୋଚନା ଅର୍ଥାତ୍ ଏକାଗ୍ର ଚିନ୍ତନ। ଦେଖନ୍ତୁ କେବେ କେବେ ଆମେ ଯେତେବେଳେ ଭୋରରୁ ଉଠୁ, ତ ଜାଣି ପାରୁ ନାହିଁ ଯେ ମୁଁ କୋଉଠି ଅଛି, ମୁଁ କଣ କରିବି। ସେତେବେଳେ ଆମେ ସମସ୍ତେ କେବଳ ତପସ୍ୟା ହିଁ କରୁ।

ପ୍ରଥମେ -ପ୍ରଥମେ ଯେତେବେଳେ ମୁଁ ପ୍ରଚାର କାର୍ଯ୍ୟରେ ନିରନ୍ତର ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଯାଉଥିଲି ତ ସାତଦିନ ଗୋଟିଏ ଜାଗାରେ ରହୁଥିଲି ତ ସାତଦିନ ଅନ୍ୟ ଜାଗାରେ ରହୁଥିଲି। କେବେ-କେବେ ହଠାତ୍ ଜାଣିପାରୁନଥିଲି ଯେ ମୁଁ ଭୋପାଳ ରେ ଅଛି ନା କାନପୁର ରେ, ଟିକିଏ ତପସ୍ୟା ପରେ ଜାଣି ପାରୁଥିଲି ଯେ ମୁଁ କାନପୁର ରେ ହିଁ ଅଛି।

ତପ କରିବାକୁ କୁହାଗଲା ପରେ ବ୍ରହ୍ମା ଏକ ହଜାର ବର୍ଷ ପର୍ଯ୍ୟନ୍ତ ତପସ୍ୟା କଲେ। ତା ପରେ ଭଗବାନ୍ ନାରାୟଣ ତାଙ୍କ ସମ୍ମୁଖରେ ପ୍ରକଟ ହେଲେ। ତାଙ୍କର ଅତ୍ୟନ୍ତ ସୁନ୍ଦର ରୂପ କୁ ଦେଖି ବ୍ରହ୍ମା ଅତ୍ୟନ୍ତ ପ୍ରସନ୍ନ ହୋଇ ଭଗବାନଙ୍କ ସ୍ତୁତି କଲେ। ଭଗବାନ କହିଲେ -ତୁମର ତପ ଦ୍ୱାରା ମୁଁ ଅତ୍ୟନ୍ତ ସନ୍ତୁଷ୍ଟ ହେଲି। ମୁଁ ହିଁ ତୁମକୁ କହିଥିଲି ଯେ ତପସ୍ୟା କର - ଚିନ୍ତନ କର। କାରଣ ମୁଁ ତପ ଦ୍ୱାରା ହିଁ ସୃଷ୍ଟି ରଚନା କରେ ଏବଂ ତାକୁ ସ୍ଥିର କରି ରଖେ। ତପ ଅତ୍ୟନ୍ତ ଶ୍ରେଷ୍ଠ ବସ୍ତୁ। ଏବେ କୁହ ତୁମେ କଣ ଚାହୁଁଛ ? ବ୍ରହ୍ମା କହିଲେ - ଆପଣ ଦର୍ଶନ ମିଳିଲା। ଏବେ ମୋର କଣ ବା ଦରକର। କିନ୍ତୁ ଆପଣଙ୍କର ଯେଉଁ ପର-ଅପର, ନିର୍ଗୁଣ-ସଗୁଣ, ପରାପର ସ୍ୱରୂପ ତାକୁ ମୋତେ ବୁଝାନ୍ତୁ । ଆପଣ ସୃଷ୍ଟିର ରଚନା କିପରି କରନ୍ତି ? ତାକୁ ମଧ୍ୟ କୁହନ୍ତୁ। ମୁଁ ଏହା ପରେ ସୃଷ୍ଟିର ରଚନା କିପରି କରିବି ଯେ ଥକିବି ନାହିଁ କି ଆପଣଙ୍କୁ ଭୁଲିବି ନାହିଁ। ସବୁଠାରୁ ମୁଖ୍ୟ କଥା ହିଁ ଏହା ଯେ ମୁଁ କିପରି କରିବି ?

ତେଣୁ କୁହାଯାଏ ଯେ ବାହାହୁଅ, ଘର କର, ସବୁ ଭଜନ-ପୂଜନ ଶେଷ ହୋଇଯିବ। ସିମେଣ୍ଟ ବସ୍ତା ହିଁ ଗଣୁଥିବ। ଜପ -ନାମସ୍ମରଣ କିଛି ହୋଇ ପାରିବ ନାହିଁ। ତେଣୁ କାମ ବି କରୁଥିବା ଏବଂ ଭଗବାନଙ୍କ ସ୍ମରଣ ବି ରହିବ, ଏହ ଅତ୍ୟନ୍ତ କଠିନ କାର୍ଯ୍ୟ, ରଜୋଗୁଣ ସବୁ କିଛି ଭୁଲେଇ ଦିଏ। ଅର୍ଥାତ୍ ଭଗବାନଙ୍କ ସ୍ମରଣ ରହିବ ଏହା ହିଁ ସର୍ବାଧିକ ମହତ୍ତ୍ୱପୂର୍ଣ୍ଣ ବିଷୟ ଅଟେ।

## ଚତୁଃଶ୍ଳୋକୀ ଭାଗବତ

ଭଗବାନ ବ୍ରହ୍ମାଙ୍କୁ ଜ୍ଞାନ ପ୍ରଦାନ କଲେ କେବଳ ଚାରିଟି ଶ୍ଳୋକରେ। ଏହାକୁ **'ଚତୁଃଶ୍ଳୋକୀ ଭାଗବତ'** କୁହାଯାଏ। ଯେ କେହି ହେଲେ କହିବ ଯେ – ଆପଣଙ୍କୁ ତାହାହେଲେ ସେହି ଚାରିଗୋଟି ଶ୍ଳୋକ କହିବା ଦରକାର। ଅଠର ହଜାର ଶ୍ଳୋକର କ'ଣ ଆବଶ୍ୟକତା ଅଛି ? ଉତ୍ତର ହେଲା ଯେ ସେହି ଚାରୋଟି ଶ୍ଳୋକକୁ ବୁଝିବାପାଇଁ ଅଠର ହଜାର ଶ୍ଳୋକର ଆବଶ୍ୟକତା ହୋଇଥାଏ। ଆମେ ପ୍ରଥମେ ଏହି ଚାରୋଟି ଉପରେ ବିଚାର କରିବା। ଚତୁଃଶ୍ଳୋକୀ ରେ **ବ୍ରହ୍ମ, ମାୟା, ଜଗତ,** ତଥା ବ୍ରହ୍ମ ପ୍ରାପ୍ତି ର **ସାଧନ** ଏହି ଚରିଟି ବିଷୟରେ ବର୍ଣ୍ଣନା କରା ଯାଇଛି।

ପ୍ରଥମ ଶ୍ଳୋକରେ ବ୍ରହ୍ମ ର ସ୍ୱରୂପ ଦର୍ଶା ଯାଇଛି।

ଦ୍ୱିତୀୟ ଶ୍ଳୋକରେ ମାୟା ର ସ୍ୱରୂପ ନିରୂପିତ ହୋଇଛି।

ତୃତୀୟ ଶ୍ଳୋକରେ ଜଗତ କ'ଣ କୁହାଯାଇଛି।

ଚତୁର୍ଥ ଶ୍ଳୋକରେ ବ୍ରହ୍ମସ୍ୱରୂପ ପ୍ରାପ୍ତି ର ସାଧନ କୁହାଯାଇଛି।

**ଅହମେବାସମେବାଗ୍ରେ ନାନ୍ୟଦ୍ ଯତ୍ ସଦସତ୍ ପରମ୍।**
**ପଶ୍ଚାଦହଂ ଯଦେତଚ୍ଚ ଯୋଽବଶିଷ୍ୟେତ୍ ସୋଽସ୍ମ୍ୟହମ୍॥ (୨ଦ.୯.୩୨)**

'ଅହଂ ଏବ ଆସମ୍' ଏବଂ 'ଆସମ୍ ଏବ ଅଗ୍ରେ' କେତେ ସୁନ୍ଦର ସୁନ୍ଦର କଥା ସୃଷ୍ଟି ପୂର୍ବରୁ କେବଳ ମୁଁ ହିଁ ଥିଲି। କିପରି ଥିଲି ? କଣ ଥିଲି ? କିଛି ନାହିଁ କେବଳ ଥିଲି। 'ଥିଲି' ଶବ୍ଦ ଏଇଥିପାଇଁ ଯେ ଆମେ ବର୍ତ୍ତମାନ ଯେଉଁ ସୃଷ୍ଟି କୁ ଦେଖୁଛୁ, ଏହା ତା ପୂର୍ବର କଥା। ଅନ୍ୟଥା 'ଥିଲି' ର ପ୍ରଶ୍ନ ହିଁ ନାହିଁ। କେବଳ ମୁଁ ହିଁ ଅଛି।

ଅହଂ ଏବ – ଏଠରେ 'ଅହଂ' ଶବ୍ଦ ଦ୍ୱାରା ଚେତନାର ପ୍ରକଟ ହେଉଛି ଏବଂ 'ଇଦଂ' ଶବ୍ଦ ଦ୍ୱାରା 'ଜଡ଼ତା'। ସର୍ବ ପ୍ରଥମେ 'ମୁଁ' ଅର୍ଥାତ୍ ଚୈତନ୍ୟ ସ୍ୱରୂପ ଥିଲା।

ଆଉ କେବଳ ଥିଲା । 'ନ ଅସତ୍' ଅର୍ଥାତ୍ ସ୍ଥୁଳ ନ ଥିଲା କି 'ନ ଅସତ୍' ଅର୍ଥାତ୍ ସୂକ୍ଷ୍ମ ନ ଥିଲା ଏବଂ ସତ୍ - ଅସତ୍ ଉର୍ଦ୍ଧ୍ୱରେ ଅର୍ଥାତ୍ ଅବ୍ୟକ୍ତରେ ମଧ୍ଯ ନ ଥିଲା । କେବଳ 'ମୁଁ' ନିର୍ବିଶେଷ ସତ୍ତା ମାତ୍ର ଥିଲା ।

ଭଗବାନ ପ୍ରଥମେ ଏକୁଟିଆ ଥିଲେ । ସଜାତୀୟ - ବିଜାତୀୟ -ସ୍ୱଗତଭେଦ - ରହିତ ଏକୁଟିଆ ଥିଲେ, ଠିକ୍ ଅଛି, କିନ୍ତୁ ସୃଷ୍ଟି ରଚନା ପରେ ତ ଲାଗୁଛି ସେ ଅନେକ ହୋଇଯାଇଛନ୍ତି । କିନ୍ତୁ ନା -ଯେତେବେଳେ ପ୍ରଥମେ ମୋ ବ୍ୟତୀତ ଅନ୍ୟ କିଛି ନଥିଲା ତ ଏବେ ଯେତେବେଳେ ମୁଁ ହିଁ ସର୍ବରୂପ ବନି ଯାଇଛି, ଏବେ ମଧ୍ଯ ଅନ୍ୟ କୌଣସି ବସ୍ତୁ ରହି ପାରିବ ନାହିଁ ।

**ପଶ୍ଚାଦହଂ ଯଦେତଚ୍ଚ ଯୋଽବଶିଷ୍ୟେତ ସୋଽସ୍ମ୍ୟହମ୍ ।। (୨.୯.୩୨)**

ଯାହା ସମ୍ମୁଖରେ ଦେଖୁଛ ତାହା ବି ମୁଁ ଏବଂ ଏହି ସୃଷ୍ଟି ଯେତେବେଳେ ଲୀନ ହୋଇଯିବ ସେତେବେଳେ ମଧ୍ଯ ମୁଁ ହିଁ ରହିବି । **'ଯୋଽବଶିଷେତ୍ୟ ସୋଽସ୍ମ୍ୟହମ୍'**, ଯାହା ବାକି ରହିଯିବ ତାହା ମଧ୍ଯ ମୁଁ ହିଁ ଅଟେ । ଦେଖନ୍ତୁ ଏଠାରେ ମୁଁ କହିଦେଉଛି ଯେ ପ୍ରକୃତରେ ବେଦାନ୍ତ ର ଜ୍ଞାନ ପାଇଁ ଏହି ଗୋଟିଏ ଶ୍ଳୋକ ହିଁ ଯଥେଷ୍ଟ ।

**ଅହମେବାସମେବାଗ୍ରେ ନାନ୍ୟଦ୍ ଯତ୍ ସଦସତ୍ ପରମ୍ । (୨.୯.୩୨)**

**'ଅହମେବାସମ୍'** ଏବଂ **'ଆସମେବାଗ୍ରେ'** ଯଦି ବେଦାନ୍ତର ଜ୍ଞାନ ଥିବ, ତେବେ ଏହି ଶ୍ଳୋକ ଆପଣଙ୍କ ମନକୁ ମୁଗ୍ଧ କରିଦେବ । ଯା ଆଗକୁ କିଛି କହିବା ଦରକାର ବି ହେବନାହିଁ । 'ଅହମ୍ ଏବ ଆସମ୍' ଏବଂ 'ଆସମେବାଗ୍ରେ' । କେବଳ ଆତ୍ମା ହିଁ ଥିଲା, ଅନ୍ୟ କିଛି ହିଁ ନ ଥିଲା । ସତ୍ତାମାତ୍ର ଚୈତନ୍ୟ, ଚେତନ ସତ୍ତା, ଏହା ହିଁ ଥିଲା, ଅନ୍ୟ କିଛି ହିଁ ନଥିଲା । ସତ୍ତାମାତ୍ର ଚୈତନ୍ୟ , ଚେତନ,ସତ୍ତା ଏହା ହିଁ ଭଗବାନଙ୍କ ସର୍ବୋତ୍କୃଷ୍ଟ ସ୍ୱରୂପ, ଭଗବାନଙ୍କ ବ୍ରହ୍ମସ୍ୱରୂପ ଅଟେ । ବ୍ରହ୍ମଙ୍କ ସ୍ୱରୂପ ଦର୍ଶାଇବା ପରେ ଏବେ କହୁଛନ୍ତି ଯେ ମାୟା କଣ ?

ଭଗବାନ୍ ନାରାୟଣଙ୍କ ପରି ଗୁରୁଦେବ ଏବଂ ବ୍ରହ୍ମାଙ୍କ ପରି ଶିଷ୍ୟ, ତେଣୁ ଚାରିଟି ଶ୍ଳୋକ ଯଥେଷ୍ଟ ଥିଲା । ଏହି ଚାରୋଟି ଶ୍ଳୋକ ନାରଦଙ୍କ ପାଇଁ ମଧ୍ଯ ଯଥେଷ୍ଟ ଥିଲା । କିନ୍ତୁ ନାରଦଙ୍କୁ ବ୍ରହ୍ମା କହିଲେ ଯେ - 'ବିପୁଲୀକୁରୁ' - ଏହାର ବିସ୍ତାର କର, ବୃଦ୍ଧି କର । ପୁଣି ନାରଦ ବ୍ୟାସଙ୍କୁ ସେଇଆ କହିଲେ । ବ୍ୟାସ ଭଗବାନ୍ ତ ଏହି କାର୍ଯ୍ୟରେ ଅତ୍ୟନ୍ତ କୁଶଳ । ସେ ବିସ୍ତୃତ କରି ଦେଲେ ଏବଂ ଶୁକଦେବଙ୍କୁ ଆହୁରି ବିସ୍ତାର କରିବା

ପାଇଁ କହିଲେ। ଏହି ବିସ୍ତାର କାର୍ଯ୍ୟରେ ତ ଶୁକଦେବ ବ୍ୟାସଦେବଙ୍କ ଠାରୁ ଅଧିକ କୁଶଳୀ ହେଇଗଲେ। ଏହି ପରି ଏହା ବଢ଼ି-ବଢ଼ି ଚାଲିଲା। କିନ୍ତୁ ମୂଳରେ କେବଳ ଚାରିଟି ଶ୍ଳୋକ ଥିଲା।

**ଋତେଽର୍ଥଂ ଯତ୍ ପ୍ରତୀୟେତ ନ ପ୍ରତୀୟେତ ଚାତ୍ମନି।**

**ତଦ୍ୱିଦ୍ୟାଦାତ୍ମନୋ ମାୟାଂ ଯଥାଽଽଭାସୋ ଯଥା ତମଃ॥ (୨.୯.୩୩)**

ପରମାତ୍ମାଙ୍କ ମାୟା ସେହି ଶକ୍ତି ଯାହା ଯୋଗୁଁ ସତ୍ତାହୀନ ପଦାର୍ଥ ସତ୍ ଅର୍ଥାତ୍ 'ଥିଲା ପରି' ଲଗୁଛି ଏବଂ ଯାହା ପ୍ରକୃତରେ ଅଛି ତାର ଅନୁଭବ ହେଉନାହିଁ। ଆତ୍ମା ଲୁଚିଗଲା ଏବଂ ଜଗତର ପ୍ରତୀତି ହେଉଛି। ଏହାହିଁ ମାୟା। ପଦାର୍ଥ ନ ଥିଲେ ମଧ୍ଯ ଦୃଶ୍ୟମାନ -ଯେପରି ଦଉଡ଼ି ରେ ସର୍ପର ପ୍ରତୀତି। ସେଠାରେ ସାପ ନାହିଁ । 'ଋତେଽର୍ଥଂ ଯତ୍ ପତୀୟତ' ତାହା ପଦାର୍ଥ ନଥିଲେ ମଧ୍ଯ ଦେଖାଯିବ। କିନ୍ତୁ **'ନ ପ୍ରତିୟେତ୍ ଚାତ୍ମନି'** - ଏହା କାହିଁକି ଦେଖାଯାଏ? ଦଉଡ଼ି ର ଅଜ୍ଞାନ ଯୋଗୁଁ। ଅଜ୍ଞାନକୁ ଆପଣ ଦେଖି ପାରୁଛନ୍ତି କି? ନା କିନ୍ତୁ ସେ ଅଛି କି? ହିଁ ଅଛି। ସେଥିପାଇ ପଦାର୍ଥ ଦିଶୁଛି। ପଦାର୍ଥ ନାହିଁ କିନ୍ତୁ ଦିଶୁଛି, **'ଯଥାଽଽଭାସଃ'** ଅଜ୍ଞାନ ଅଟେ କିନ୍ତୁ ଦେଖା ଯାଉନି, **'ଯଥା ତମଃ'**। ଏହା ହିଁ ଭଗବାନଙ୍କ ମାୟା - **'ତଦ୍ୱିଧ୍ୟାଦାତ୍ମନୋ ମାୟାଂ ଯଥାଽଽଭାସୋ ଯଥା ତମଃ'**।

'ତମ' ମାନେ ଅଜ୍ଞାନ, ଅନ୍ଧକାର। ସେ ଅଛି କିନ୍ତୁ ଦିଶୁନି। ଦଉଡ଼ିର ଅଜ୍ଞାନ ଯୋଗୁଁ ସାପ ଦେଖା ଯାଉଛି। ଆମକୁ ନା ଅଜ୍ଞାନ ଦିଶୁଛି, ନା ଦଉଡ଼ି, କେବଳ ସାପ - ଦେଖା ଯାଉଛି, ଯାହା ପ୍ରକୃତରେ ନାହିଁ। ମାୟା ବିସ୍ମୟକାରୀ ନା ନାହିଁ। ଏହାହିଁ ଭଗବାନଙ୍କ ମାୟା । ଯେତେବେଳେ ଆମେ କେବଳ ଭଗବାନଙ୍କୁ ହିଁ ଦେଖିବା ସେତେବେଳେ ବୁଝି ପାରିବା ଯେ ମାୟା ବୋଲି କିଛି ନାହିଁ। ସେବେ ଅଜ୍ଞାନ ଅଛି, ଏହା କହିଲେ ମଧ୍ଯ ବିଚିତ୍ର କଥା ହେବ। ଯେତେବେଳେ ପଦାର୍ଥ ନ ଥିଲେ ମଧ୍ଯ ଥିଲା ପରି ଦିଶେ ସେତେବେଳେ ବୁଝେଇବା ପାଇଁ କୁହାଯାଏ ଯେ ଏହା ମାୟା ଅଟେ। ଅନ୍ୟଥା ମାୟା ବୋଲି ହିଁ କିଛି ନାହିଁ। ଏହା ବଡ଼ ବିଚିତ୍ର କଥା ଯେ ଏହି ମାୟା କେବଳ ଆଭାସସ୍ୱରୂପ ଅଟେ। କେଉଁଠି ହେଲେ ଦେଖାଯାଏନି। କେଜାଣି କେଉଁଠି ଅଛି କିନ୍ତୁ ସବୁ ନାଟ ତାରି। ଏହା ମାୟା ବିଷୟକ ଦ୍ୱିତୀୟ ଶ୍ଳୋକ।

ଏବେ ତୃତୀୟ ଶ୍ଳୋକରେ ଜଗତର ରୂପ କରାଯାଇଛି। ପ୍ରଶ୍ନ ହେଲା - ଜଗତ କଣ ? ଜଗତର ବର୍ଣ୍ଣନା କରିବା ବି ଅତ୍ୟନ୍ତ କଠିନ କାର୍ଯ୍ୟ। କେଜାଣି ଅଛି କି ନାହିଁ ? ଥିଲେ ତାହା କିପରି ଅଟେ ?

**ଯଥା ମହାନ୍ତି ଭୂତାନି ଭୂତେଷୂଚ୍ଚାବଚେଷ୍ୱନୁ।**
**ପ୍ରବିଷ୍ଟାନ୍ୟପ୍ରବିଷ୍ଟାନି ତଥା ତେଣୁ ନ ତେଷ୍ୱହମ୍ ।। (୨.୯.୩୪)**

ଏହି ଜଗତ କିପରି ଅଟେ? କେଉଁଥିରୁ ତିଆରି ହୋଇଛି। ପଞ୍ଚ ମହାଭୂତରୁ ତିଆରି ହୋଇଛି। ଏଠାରେ ଯେତେ ଜିନିଷ ଅଛି, ସେମାନଙ୍କ ମଧ୍ୟରେ ପଞ୍ଚମହାଭୂତ ଅଛନ୍ତି ନା ନାହିଁ? ଉତ୍ତର ମିଳିଲା - ହଁ ଅଛି। କଣ ପ୍ରକୃତରେ ପଞ୍ଚମହାଭୂତ ସବୁ ପଦାର୍ଥ ଭିତରେ ପ୍ରବେଶ କରିଛନ୍ତି ? ପ୍ରବେଶ କରିଛନ୍ତି -ଏମିତି କହିପାରିବାନି। ମାଟିରୁ ମାଠିଆ ତିଆରି କରିଲେ। ଏମିତି କହିବାନି ଯେ ଆଗ ମାଠିଆ ତିଆରି କରିଲେ ଓ ତାପରେ ମାଟି ପ୍ରବେଶ କଲା। ମାଠିଆ ନ ଥିଲା ବେଳେ ମଧ୍ୟ ମାଟି ଥିଲା। ଆଉ ମାଠିଆ ରୂପରେ ମଧ୍ୟ ମାଟି ହିଁ ଅଛି। ତେଣୁ ଏମିତି କହିବାନି ଯେ ମାଟି ମାଠିଆ ରେ ପ୍ରବେଶ କଲା। ଆଛା, ତାହାହେଲେ ପ୍ରବେଶ କଲା ନାହିଁ ଏପରି ମଧ୍ୟ କହିପାରିବାନି। ପ୍ରବେଶ କରିନାହିଁ ତ ମାଠିଆ କେମିତି ଅଛି? ପ୍ରବେଶ କରିଛି, ଏପରି କହିବାକୁ ହେଲେ ମାଠିଆ କୁ ମାଟିରୁ ଅଲଗା ଆଉ କିଛି ହେବାକୁ ପଡ଼ିବ । ଏହାର ଅର୍ଥ ହେଲା 'ମାଠିଆ' ଏକ ନାମ ମାତ୍ର, କିନ୍ତୁ ସେ ବି କେବଳ ମାଟି ହିଁ ଅଟେ। ଭଗବାନ ନାରାୟଣ ବ୍ରହ୍ମାଙ୍କୁ କହୁଛନ୍ତି ଯେ, ଠିକ୍ ସେହିପରି କେବଳ 'ମୁଁ' ହିଁ ଅଛି। ମୋତେ ଆପଣ ଗୋଟେ ନାମ ଦେଲେ- ଜଗତ। ବାସ୍ ସମ୍ପୂର୍ଣ୍ଣ ଜଗତ ରେ କେବଳ ମୁଁ ହିଁ ପ୍ରବେଶ କଲି।

ଏହି ସଂଦର୍ଭରେ ଗୀତାରେ ଅତ୍ୟନ୍ତ ସୁନ୍ଦର କଥା କୁହାଯାଇଛି - **'ମୟା ତତମିଦଂ ସର୍ବଂ'** ଏହି ଜଗତ ମୋ ଦ୍ୱାରା ବ୍ୟାପ୍ତ ଅଟେ। ମୋ ଭିତରେ ସମସ୍ତେ ଅଛନ୍ତି। ପରେ ପୁଣି କହୁଛନ୍ତି ମୋ ଭିତରେ କିଛି ନାହିଁ। ଏହାର ଅର୍ଥ ହେଲା ଯେ, ଯାହାକୁ ଜଗତ କହୁଛ, ତାହା ମଧ୍ୟ କେବଳ ଆଭାସ ମାତ୍ର। ଯାହାକୁ ମାୟା କହୁଛ, ତା ମଧ୍ୟ ଆଭାସ ମାତ୍ର। ଯାହାକୁ ଜୀବ କହୁଛ ସେ ଜଗତର ଅନ୍ତର୍ଗତ, ତେଣୁ ଜୀବମଧ୍ୟ ଆଭାସ ମାତ୍ର। ଆଭାସ ହିଁ କେବଳ ଆଭାସ ମାତ୍ର। ସେହି ପରମାତ୍ମା ଙ୍କ ଅନୁଭବ ତ କେଉଁଠାରେ ହେଲେ ହେଉନାହିଁ। ତେବେ ସେହି ପରମାତ୍ମା ଙ୍କ ଅନୁଭବ କିପରି କରି ହବ ? ତା ପାଇଁ ସାଧନ କଣ ?

**ଏତାବଦେବ ଜିଜ୍ଞାସ୍ୟଂ ତତ୍ତ୍ୱଜିଜ୍ଞାସୁନାଽଽତ୍ମନଃ ।**

**ଅନ୍ୱୟବ୍ୟତିରେକାଭ୍ୟାଂ ଯତ୍ ସ୍ୟାତ୍ ସର୍ବତ୍ର ସର୍ବଦା ॥ (୨.୯.୩୫)**

କୁହାଗଲା ଯେ ଅନ୍ୱୟ ବ୍ୟତିରେକ ପ୍ରକ୍ରିୟା ଦ୍ୱାରା ଏହି ପରମ-ତତ୍ତ୍ୱକୁ ଜାଣିବା ଦରକାର। ଦୁନିଆରେ ଏହା ଠାରୁ ଅଧିକ ଜାଣିବା ଯୋଗ୍ୟ ଜିନିଷ ଆଉ କିଛି ନାହିଁ। ଅନ୍ୱୟ -ବ୍ୟତିରେକ ଅର୍ଥ ହେଲା - ଯଦି ଘଟ ଅଛିତ ମାଟି ମଧ୍ୟ ଅଛି। ଏହା ହେଲା ଅନ୍ୱୟ। 'ଅନ୍ୱୟ'ମାନେ ହେବା। ଯଦି ମାଠିଆ ନାହିଁ ତାହାହେଲେ ମଧ୍ୟ ମାଟି ଅଛି, ଏହା ହେଲା ବ୍ୟତିରେକ। ଘଟର ବ୍ୟତିରେକ- ଅଭାବ ହେଲେ ମଧ୍ୟ ମାଟି ତ ଅଛି। ଏବେ ଘଟକୁ ମାଟିଠାରୁ ଅଲଗା କେମିତି କହିବା। ଘଟ ଥିଲେ ମାଟି ଅଛି, କିନ୍ତୁ ଘଟ ନ ଥିଲେ ମଧ୍ୟ ମାଟି ତ ଅଛି, ଅନ୍ୱୟ- ବ୍ୟତିରେକ ଏହା ଗୋଟିଏ ପ୍ରକ୍ରିୟା। ଅନ୍ୟଟି ହେଲା- ଯେବେ ମାଟି ଅଛିତ ଘଟ ଅଛି। ମାଟି ନାହିଁ ତ ଘଟ ମଧ୍ୟ ନାହିଁ। ଅର୍ଥାତ୍ ଯାହାର ଉପସ୍ଥିତିରେ ବସ୍ତୁଥାଏ ଏବଂ ଅଭାବ ଅନୁପସ୍ଥିତିରେ ବସ୍ତୁ ମଧ୍ୟ ନଥାଏ। କିନ୍ତୁ ମାଟି ପାଇଁ କହି ପାରିବା ଯେ ଯାହାର ଅଭାବରେ ବସ୍ତୁନଥାଏ କାରଣ ମାଟି ନଥିବାର ସମ୍ଭାବନା ଥାଇ ପାରେ କିନ୍ତୁ ଆତ୍ମା ବିଷୟରେ ଏପରି କହି ପାରିବା ନାହିଁ।

ଆତ୍ମା ନାହିଁ, ଏପରି କହି ପାରିବା ନାହିଁ। କହିବ କିଏ ? ଆତ୍ମା ହିଁ କହିବ। ତେଣୁ ଏପରି ବାକ୍ୟ ତିଆରିହୋଇ ପାରିବ ନାହିଁ। କିନ୍ତୁ ଏହା ମଧ୍ୟ ସତ ଯେ ଯେବେ ଲାଗିବ ଯେ ଜଗତ ଅଛି ସେତେବେଳେ 'ମୁଁ ଅଛି' ର ଅନୁଭବ ମଧ୍ୟ ହେବ। କିନ୍ତୁ ଜଗତର ଅଭାବ ହେଲେ ମଧ୍ୟ 'ମୁଁ ଅଛି' ର ଅନୁଭବ ହୁଏ। ଆପଣଙ୍କ ଜାଗ୍ରତ ଅବସ୍ଥାରେ ଚେତନତା ଅଛି ନା ନାହିଁ ? ନିଦ୍ରାବସ୍ଥାରେ ମଧ୍ୟ ଚେତନତା ଅଛି କିନ୍ତୁ ଜାଗ୍ରତ ଅବସ୍ଥା ଅଛି ? ନାହିଁ। ଆପଣ ନିଦ୍ରାବସ୍ଥାରେ ଥିଲାବେଳେ ଚେତନତା ଅଛି, କିନ୍ତୁ ଜାଗ୍ରତ ଅବସ୍ଥା ନାହିଁ। ସ୍ୱପ୍ନ ଅବସ୍ଥା ଅଛି ? ନାହିଁ। କିନ୍ତୁ ଚେତନତା ଅଛି। ଅର୍ଥାତ୍ ନିଦ୍ରାବସ୍ଥା ରେ ନା ଜାଗ୍ରତ ଅବସ୍ଥା ଥାଏ ନା ସ୍ୱପ୍ନାବସ୍ଥା କେବଳ ଚୈତନ୍ୟ ଥାଏ। କାରଣ ଚେତନ ହିଁ ସମସ୍ତ ଅଭାବ ମାନଙ୍କୁ ପ୍ରକାଶିତ କରେ। ସେହିପରି ସମାଧି ଅବସ୍ଥା ରେ ତ ନିଦ୍ରାବସ୍ଥା ମଧ୍ୟ ନ ଥାଏ କିନ୍ତୁ 'ମୁଁ' ସବୁବେଳେ ଥାଏ।

ଆପଣ ସମ୍ପୂର୍ଣ୍ଣ ଭାଗବତ ନ ପଢ଼ି, ଏହି ଚାରି ଶ୍ଳୋକକୁ ପ୍ରତିଦିନ ପଢୁଥାନ୍ତୁ। ଏହା କୁ ମୁଖସ୍ଥ କରି ଦିଅନ୍ତୁ। ଏହି ପରି ଭଗବାନ ନାରାୟଣ ବ୍ରହ୍ମାଙ୍କୁ ଏହି ଜ୍ଞାନ ଦେଲେ। ତା' ପରେ ହିଁ ବ୍ରହ୍ମା ସମ୍ପୂର୍ଣ୍ଣ ଭାବରେ ସୃଷ୍ଟି କାର୍ଯ୍ୟ କରିବା ପାଇଁ ସମର୍ଥ ହେଲେ। ତା' ପରେ ସେ ଏହି ଜ୍ଞାନ ନାରଦଙ୍କୁ ଦେଲେ। ଶୁକଦେବ ପରୀକ୍ଷିତଙ୍କୁ କହିଲେ - ତୁମେ ପଚାରି ଥିଲ ନାରଦ ଏହି ଜ୍ଞାନ କାହାକୁ ଦେଲେ ? ନାରଦ ଏହି ଜ୍ଞାନ

ମୋ ପିତା ବ୍ୟାସଦେବଙ୍କୁ ଦେଲେ ଏବଂ ପିତା ମୋତେ ଦେଲେ। ଏହା ହିଁ ସେହି ଭାଗବତ ପୁରାଣ ଅଟେ।

ଏବେ ପ୍ରଶ୍ନ ଉଠେ ଯେ ଏହି ଭାଗବତ ପୁରାଣର ବିଷୟ କଣ ? ସର୍ବପ୍ରଥମେ ଏଥିରେ ଅଧିକାରୀ ନିରୂପଣ କରାଯାଇଛି। ପ୍ରଥମ ସ୍କନ୍ଧ ହେଲା - **ଅଧିକାରୀ ସ୍କନ୍ଧ,** ତା ପରେ ଏଥିରେ ସାଧନ ବିଷୟ ରେ କୁହାଯାଇଛି। ତେଣୁ ଦ୍ୱିତୀୟ ସ୍କନ୍ଧ ହେଲା - **ସାଧନ ସ୍କନ୍ଧ**।

**ଭାଗବତ ପୁରାଣର ଦଶଟି ବିଷୟ**

ତା' ପରେ ଶୁକଦେବ କହିଲେ ଯେ ଏହି ଭାଗବତ ପୁରାଣରେ ଦଶଟି ବିଷୟ କୁହାଯାଇଛି।

**ଅତ୍ର ସର୍ଗୋ ବିସର୍ଗଶ୍ଚ ସ୍ଥାନଂ ପୋଷଣମୂତୟଃ।**
**ମନ୍ୱନ୍ତରେଶାନୁକଥା ନିରୋଧୋ ମୁକ୍ତିରାଶ୍ରୟଃ ॥ (୨.୧୦.୧)**

ଏଠାରେ ପର ଅଧ୍ୟାୟର ପ୍ରଥମ ଶ୍ଳୋକରେ ଦଶଟି ବିଷୟ କୁ କୁହାଯାଇଛି। ସର୍ବପ୍ରଥମେ ହେଲା **ସର୍ଗ - ସୃଷ୍ଟି**। ତା' ପରେ **ବିସର୍ଗ - ବିଶେଷ ସର୍ଗ**। ସର୍ଗ ଏବଂ ବିସର୍ଗରେ ପାର୍ଥକ୍ୟ କଣ ? ଏଠାରେ ସବୁର ପରିଭାଷା ଦିଆଯାଇଛି।

ସରଳଭାଷାରେ କହିବାକୁ ଗଲେ ପଞ୍ଚମହାଭୂତ - ଯାହା ଦେଖାଯାଉଛି ତାହା ହେଲା ସର୍ଗ। ଆମ ଭିତରେ ଯେଉଁ ପଞ୍ଚମହାଭୂତ, ମନ, ବୁଦ୍ଧି ଅଛି ଏଗୁଡ଼ିକ ମଧ୍ୟ ସର୍ଗ। କିନ୍ତୁ ଏହି ପଞ୍ଚମହାଭୂତ ଦ୍ୱାରା ଆମେ ଯାହା ରଚନା କରୁଛୁ ତାହା ବିସର୍ଗ। ଯଥା, କୁମ୍ଭାର ମାଟିରୁ ମାଠିଆ ତିଆରି କରେ। ମାଟିରୁ କୁମ୍ଭାର ମାଠିଆ ତିଆରି କରେ କିନ୍ତୁ ମାଟି ତିଆରି କରେ କି ? କୌଣସି କୁମ୍ଭାର ବା ବୈଜ୍ଞାନିକ ମାଟି ବା ଫୁଲ ଆଦି ବନେଇ ପାରିବେ ନାହିଁ ? ଏଠାରେ ପ୍ଲାଷ୍ଟିକ ଫୁଲ କଥା କୁହାଯାଉନାହିଁ। ବାୟୁମଣ୍ଡଳ, ଆକାଶ, ପୃଥିବୀ - ଏମାନଙ୍କ ଉତ୍ପତ୍ତି କୁ ସର୍ଗ କୁହାଯାଏ। ସେଥିରୁ ମନୁଷ୍ୟ ଯେଉଁ ସୃଷ୍ଟି କରେ, ପ୍ରତ୍ୟେକ ଜୀବ ନିଜ-ନିଜ ବାସନା ଅନୁସାରେ ଯେଉଁ ସୃଷ୍ଟି କରନ୍ତି , ତାକୁ ବିଶେଷ ସର୍ଗ -ବିସର୍ଗ -ପୌରୁଷ ସର୍ଗ କୁହାଯାଏ।

ତା'ପରେ ହେଲା '**ସ୍ଥାନ**'। ସୃଷ୍ଟି ରଚନା ପରେ ସେ କେଉଁଠି ରହେ ? ତେଣୁ ସେ ଯେଉଁଠି ରହେ ତାହା '**ସ୍ଥାନ**' ଅଟେ। ଚତୁର୍ଥ ବିଷୟ ହେଲା '**ପୋଷଣ**'। ପିଲା ଜନ୍ମ ହେଲେ ତାର ପୋଷଣ ମଧ୍ୟ କରିବାକୁ ହୁଏ। ଅନ୍ୟଥା ସିଏ ରୋଗା ହୋଇଯିବ,

ମରିଯିବ। ସବୁ ଜୀବ ମାନଙ୍କର ପୋଷଣ କିଏ କରେ ? ଉତ୍ତର ହେଲା ଭଗବାନଙ୍କର କୃପା, ଅନୁଗ୍ରହ ସମସ୍ତଙ୍କୁ ଜୀବିତ ରଖେ ତାହାହିଁ ପୋଷଣ। ଯଦି ଭଗବାନ ଏତେ ଦୟାଳୁ ତେବେ ସୃଷ୍ଟିରେ ଏତେ ପ୍ରଭେଦ କାହିଁକି ଦିଶୁଛି ? କାରଣ ହେଲା କର୍ମ ବାସନା। ପଞ୍ଚମ ହେଲା- ଉତୟଃ - ଉତୀ - ଅର୍ଥାତ୍ କର୍ମବାସନା। ଷଷ୍ଠ ହେଲା ମନ୍ୱନ୍ତର। ଜଣେ ମନୁଙ୍କ ଶାସନ କାଳକୁ ମନ୍ୱନ୍ତର କୁହାଯାଏ। ଯେମିତି ଆମ ସରକାରଙ୍କ ଶାସନକାଳ ପାଞ୍ଚବର୍ଷ ସେମିତି ଜଣେ ମନୁଙ୍କ ଶାସନ କାଳ ଏକସ୍ତରୀ ରୁ ଟିକିଏ (୬,୧୪) ଅଧିକ ମହାଯୁଗ ର ହୋଇଯାଏ। ଆଗକୁ ବିସ୍ତୃତ ଭ୍ାବେ ଦେଖିବା। ତା' ପରେ ସପ୍ତମ ହେଲା ଇଶାନୁ କଥା - ଭଗବାନଙ୍କ ଭିନ୍ନ ଭିନ୍ନ ଅବତାର ମାନଙ୍କର କଥା। ଅଷ୍ଟମ ହେଲା ନିରୋଧ - ନିରୋଧ ର ଅର୍ଥ ପ୍ରଳୟ। ସୃଷ୍ଟି ରଚନା ହେଇଛି ତ ପ୍ରଳୟ ମଧ୍ୟ ହେବ। ଯଦି ସୃଷ୍ଟି ଖାଲି ଚାଲୁଥିବ ତା'ହେଲେ ? ଯଦି ଆପଣଙ୍କୁ ନିଦ ଆସିବନି ତା'ହେଲେ ? ଗଡ଼ବଡ଼ ହେବ ନା ନାହିଁ ? ଖାଲି କାମ କରି ଚାଲିଥିବେ ଆଉ ନିଦ ଆସିବନି ? ଆମ ସମସ୍ତଙ୍କର ପ୍ରତ୍ୟେକ ଦିନ ପ୍ରଳୟ ହୁଏ, ସେଥିପାଇଁ ପରଦିନ ଆମେ ପୁଣି କାମ ମଧ୍ୟ କରିପାରୁ।

ପ୍ରଳୟ ହେବା ଭଲ କଥା କିନ୍ତୁ ପ୍ରବଚନ ବେଳେ ନୁହେଁ। ନିଦ୍ରାଦେବୀଙ୍କର ଏହା ବିଶେଷ ବରଦାନ ଆମକୁ ମିଳିଛି। ବ୍ରହ୍ମା ତାଙ୍କୁ ପଚାରିଥିଲେ ଯେ ମୁଁ କେଉଁଠି ରହିବି ? ହରିକଥାରେ, ଯେଉଁଠି ଭଗବାନଙ୍କ ପ୍ରବଚନ ଚାଲିଥିବ ସେଇଠି !ଏହି ନିଦ୍ରା ପୂର୍ବପାପର ଲକ୍ଷଣ, ପ୍ରବଚନ ଶୁଣେଇ ଦିଏ ନାହିଁ, ଶୁଏଇ ପକାଏ। ନିଦ୍ରା ହେଉ ବା ଲୟ ହଉ କି ବିକ୍ଷେପ ହେଉ। କେହି କେହି ତ ଶୁଅନ୍ତି ନାହିଁ କିନ୍ତୁ ମନ ରେ ବିକ୍ଷେପ ଆସେ। ମନ ରେ ବିକ୍ଷେପ ଆସିବା ମଧ୍ୟ ପାପର ଫଳ, କାରଣ ସେ ମଧ୍ୟ ଆମକୁ କଥା ଶୁଣିବାକୁ ଦିଏ ନାହିଁ। ଲୟ ତ ପ୍ରତିଦିନ ହେଉଥାଏ। ସମ୍ପୂର୍ଣ୍ଣ ସୃଷ୍ଟିର ଲୟ କିପରି ହୁଏ ? ସେହି ନିରୋଧ ର ବର୍ଣ୍ଣନା ଦ୍ୱାଦଶ ସ୍କନ୍ଧରେ ବହୁତ ଭଲ ଭାବରେ କରାଯାଇଛି। ଏହା ପରେ ନବମ ବିଷୟ ହେଲା **'ମୁକ୍ତି'**, ଏବଂ ଅନ୍ତିମ ବା ୧୦ମ ବିଷୟ ହେଲା **'ଆଶ୍ରୟ ତତ୍ତ୍ୱ'**। ଏବେ ବୁଝନ୍ତୁ ବିଷୟ ତ କେବଳ ଗୋଟିଏ, ସେ ହେଲା ଆଶ୍ରୟ ତତ୍ତ୍ୱ।

**ଦଶମସ୍ୟ ବିଶୁଦ୍ଧ୍ୟର୍ଥଂ ନବାନାମିହ ଲକ୍ଷଣମ୍। (୨.୧୦.୨)**

ଏହି ଆଶ୍ରୟ ତତ୍ତ୍ୱ କୁ ବୁଝିବା ପାଇଁ ପୂର୍ବୋକ୍ତ ନଅଟି ଯାକ ବିଷୟର ବର୍ଣ୍ଣନା କରାଯାଇଛି। ସୃଷ୍ଟି କିପରି ରଚନା ହୁଏ ? ବିସର୍ଗ କଣ ? ସୃଷ୍ଟି ର ସ୍ଥାନ କେଉଁଠି ? ତାର ପୋଷଣ କିଏ କରେ ? ଉତ୍ତର ହେଲା - ସବୁ କିଛି ହେଲେ ଭଗବାନ। ସର୍ଗ ହେଉ କି ବିସର୍ଗ ହେଉ, ସ୍ଥାନ ର ବର୍ଣ୍ଣନା ହେଉ କି ପୋଷଣ ର, ମନ୍ୱନ୍ତର ହେଉ କି ଇଶାନୁକଥା।

ପ୍ରଳୟ ବର୍ଣ୍ଣନା ହେଉ କି ମୁକ୍ତିର -ସବୁ ର ପ୍ରୟୋଜନ କେବଳ ମାତ୍ର ହେଲା ଆଧାର ତତ୍ତ୍ୱକୁ ପ୍ରକଟ କରିବା। ଆଉ ସେହି ଆଧାର ତତ୍ତ୍ୱ ପ୍ରକଟ ହୋଇଗଲେ, ସେହି ପରମାତ୍ମା ହିଁ ସର୍ଗ, ବିସର୍ଗ, ସ୍ଥାନ ଏବଂ ପୋଷଣ ରୂପରେ ଦେଖାଯିବେ। ଏତିକି ବୁଝିଗଲେ ଆଗକୁ ବୁଝିବାରେ କିଛି ବିଶେଷ କଷ୍ଟ ରହିବ ନାହିଁ।

ଏହାକୁ ବୁଝିବାର ଏକ ପ୍ରଣାଳୀ ଅଛି। କ'ଣ ? ସୃଷ୍ଟିର ବର୍ଣ୍ଣନା ବୁଝି ହେଉ କି ନ ବୁଝି ହେଉ, ଆପଣ ନିଜେ ନିଜ ଦୃଷ୍ଟି ଦ୍ୱାରା ବର୍ଣ୍ଣନା କରନ୍ତୁ। ଗୋଟିଏ ସ୍ଥାନରେ ଚୁପଚାପ ବସି ଭାବନ୍ତୁ, କଳ୍ପନା କରନ୍ତୁ। ତାହାହେଲେ କଳ୍ପନାରୁ ସୃଷ୍ଟି ତିଆରି ହେଲା ନା ନାହିଁ। ଏହା ହେଲା ଗୋଟିଏ ସର୍ଗ। ଏବେ ଏହି ସର୍ଗ, ବିସର୍ଗର ସ୍ଥାନ କେଉଁଠି ଥିଲା ? କଳ୍ପନା କିଏ କଲା ? ଆପଣ। ତେବେ ତାର ସ୍ଥାନ କେଉଁଠି ? କଳ୍ପନା କେଉଁଠି ହେଲା ? ମନରେ । ସେହି କଳ୍ପନା ର ପୋଷଣ କିଏ କଲା ? ଆପଣ ଯେତେ ସମୟ ପର୍ଯ୍ୟନ୍ତ ଚାହିଁବେ ସେହି କଳ୍ପନା କରିପାରିବେ। ସେଥିରେ ମନ୍ୱନ୍ତର, ଇଶାନୁକଥା ଆଦି ଯେତେ ଇଚ୍ଛା ସେତେ ବିଷୟ ରହି ପାରିବ। ଆଚ୍ଛା ପ୍ରଳୟ କିଏ କରେ ? ନିଜ କଳ୍ପନା ଆପଣ ନିଜେ ହିଁ ସମାପ୍ତ କରି ଦିଅନ୍ତୁ। କଳ୍ପନା ଶେଷ ତ ମୁକ୍ତି ମିଳିଗଲା। କିନ୍ତୁ ଯଦି କଳ୍ପନା କୁ ସମାପ୍ତ କରି ପାରୁ ନାହାଁନ୍ତି ତାହେଲେ ସେତେବେଳେ ବିରାଟ ବନ୍ଧନ ହୋଇଯିବ।

ଜଣେ ସାଧୁବାବା ଗୋଟିଏ କୂଅ ପାଖରେ ବସିଥିଲେ। ବାଜା ବଜେଇ ଗୋଟିଏ ବରଯାତ୍ରୀ ଦଳ ଯାଉଥିଲେ। ତାକୁ ଦେଖି ସେ ଭାବିଲେ - ମୋ ବାହାଘର ହେଲେ କଣ ହେବ ? ବର ବାହାରିବ, ବାଜା ବାଜିବ, ଲୋକ ନାଚିବେ, ବିବାହ ହେବ, ପିଲା ହେବ, ତା'ପରେ ସ୍ତ୍ରୀ ସାଙ୍ଗରେ କି ପିଲାଙ୍କ ସାଙ୍ଗରେ ମୋର କଳି ହେବ। ସ୍ତ୍ରୀ ମୋତେ ଧକ୍କାଦେବ ଆଉ ମୁଁ ତଳେ ପଡ଼ିଯିବି। ଭାବୁ ଭାବୁ କୂଅରେ ଧୂମକରି ପଡ଼ିଗଲେ। ଭଲ କଥା ହେଲା ଯେ କୂଅଟି ଅଧିକ ଗଭୀର ନଥିଲା। ଲୋକମାନେ ତାଙ୍କୁ ବାହାର କରି ଆଣିଲେ ଏବଂ ପଚାରିଲେ ଯେ କ'ଣ ହେଲା ? କୂଅ ଭିତରେ କିପରି ପଡ଼ିଲେ ? ସେ କିଛି ନୁହେଁ - ଏମିତି ଭାବୁଥିଲି। ବର ଗଲାରୁ ଭାବି ବସିଲି ଯେ ମୋ ବାହାଘର ହେଲେ କଣ - କଣ ହେବ ? ଲୋକମାନେ କହିଲେ ବାହା ହୁଅ। ସେ କହିଲେ ନା, ଖାଲି କଳ୍ପନା ର ପତ୍ନୀ ତ କୂଅରେ ପକେଇଦେଲା। ଅସଲି ପତ୍ନୀ କେଜାଣି କ'ଣ କରିବ ? ତେଣୁ କଳ୍ପନାର ତ୍ୟାଗ କରିଦେଲି, ମୁକ୍ତି ମିଳିଗଲା। ଏବେ ମୁକ୍ତିର ପରିଭାଷା ଦେଖିବା।

**ମୁକ୍ତିର୍ହିତ୍ୱାନ୍ୟଥାରୂପଂ ସ୍ୱରୂପେଣ ବ୍ୟବସ୍ଥିତିଃ।**

ଆମେ ଯାହା ସବୁ କଳ୍ପନା କରୁ ସେ ସବୁର ପରିତ୍ୟାଗ କରି ନିଜ ସ୍ୱରୂପରେ ରହିବା ହିଁ ମୁକ୍ତି ଅଟେ। ତେଣୁ ପ୍ରକୃତରେ ଡରିବାର କିଛି ନାହିଁ। ସର୍ଗ, ବିସର୍ଗ-ଅନେକ ବିଷୟ ନୁହେଁ, ଦଶ ନୁହଁ କେବଳ ଏକ।

ଏଠି ଏକ ବିଶେଷ କଥା ଉପରେ ଦୃଷ୍ଟି ଦେବାକୁ ହେବ। ପରୀକ୍ଷିତ ମରଣାସନ୍ନ ଥିଲେ। ପୁଣି ତାଙ୍କର ଜାଣିବା କ'ଣ ଦରକାର? ଉତ୍ତର ହେଲା - ଇଏ ଅନେକ ପ୍ରଶ୍ନ ନୁହଁ, ସବୁ ପ୍ରଶ୍ନ ପରମାତ୍ମାଙ୍କ ସହ ସମ୍ବନ୍ଧିତ। ସୃଷ୍ଟିର ବର୍ଣ୍ଣନା ମଧ୍ୟ ସୃଷ୍ଟି ପାଇଁ ନୁହେଁ। ଏହି ସୃଷ୍ଟି ଏତେ ବିଶାଳ ଏବଂ ବିଚିତ୍ର, ତେବେ ସେହି ପରମାତ୍ମା ଯିଏ ଏହାକୁ ରଚନା କରିଛନ୍ତି, ସେହି ପରମାତ୍ମା କିପରି ହୋଇଥିବେ- ଏହା ଜାଣିବା ପାଇଁ । ତେଣୁ ଆମେ ଯେତେବେଳେ ରେଡ଼ିଓ ଆଦି ରେ କୌଣସି ଭଲ ଗୀତ ଶୁଣୁ, ସେତେବେଳେ ଗୀତ ସହ ଗାୟକ ପ୍ରତି ମଧ୍ୟ ଆମ ଧ୍ୟାନ ଯାଏ। ସେତେବେଳେ ଗାୟକକୁ ମଧ୍ୟ ଜାଣିବା ପାଇଁ ଇଚ୍ଛା ହୁଏ। ତେଣୁ ପ୍ରାୟଃ ଘରମାନଙ୍କରେ ବୟସ୍କ ଲୋକମାନେ ଯେତେବେଳେ ଟି.ଭି ଦେଖନ୍ତି, ନିଜ ପୁଅ - ନାତି ମାନଙ୍କୁ ପଚାରୁ ଥାନ୍ତି - ଇଏ କିଏ, ସେ କାହିଁକି ଦୌଡୁଛି ଆଦି ଆଦି। ତେଣୁ କେବଳ ଦେଖିବା ମାତ୍ରକେ ତାକୁ ଜାଣିବା ପାଇଁ ମଧ୍ୟ ଇଚ୍ଛା ହୁଏ। ସେମିତି, ଯେତେବେଳେ ସୃଷ୍ଟିକୁ ଦେଖୁ , ସୃଷ୍ଟିକର୍ତ୍ତା କିଏ ହୋଇଥିବେ ଜାଣିବା ପାଇଁ ଇଚ୍ଛା ହୁଏ। ଅର୍ଥାତ୍ ସୃଷ୍ଟି ବର୍ଣ୍ଣନର ମୂଳ ଉଦ୍ଦେଶ୍ୟ ପରମାତ୍ମାଙ୍କୁ ଦର୍ଶାଇବା ହିଁ ଅଟେ। କେବଳ ଏତିକି ମାତ୍ର ନୁହଁ ବରଂ ବିସର୍ଗ, ସ୍ଥାନ, ପୋଷଣ, ମନ୍ୱନ୍ତର ଏବଂ ଇଶାନୁକଥା ଗୁଡ଼ିକ ମଧ୍ୟ ପରମାତ୍ମା ଦର୍ଶନ ପାଇଁ। ପ୍ରକୃତରେ ଏଠି କେବଳ ପରମାତ୍ମା ହିଁ ଅଛନ୍ତି ଏବଂ ସେ ନିଜର ଶୁଦ୍ଧ ଚୈତନ୍ୟସ୍ୱରୂପ ରେ ହିଁ ଅଛନ୍ତି।

ରାଜା ପରିକ୍ଷିତ ସୃଷ୍ଟି ବିଷୟକ ଅନେକ ପ୍ରଶ୍ନ ପଚାରି ଥିଲେ। ଗୁଣ -ବିଷୟରେ, କର୍ମ ତଥା ଅବତାର ମାନଙ୍କ ବିଷୟରେ, ଜୀବ ମାନଙ୍କ ବିଷୟରେ, ଏବଂ ତାଙ୍କର ବର୍ଣ୍ଣ, ଆଶ୍ରମ, ଧର୍ମ ଆଦି ବିଷୟରେ ମଧ୍ୟ ପଚାରିଥିଲେ ଏହି ପ୍ରଶ୍ନଗୁଡ଼ିକୁ ବିଦୁର ମଧ୍ୟ ମୈତ୍ରେୟ ଋଷିଙ୍କୁ ପଚାରିଥିଲେ ଏବଂ ମୈତ୍ରେୟ ଋଷି ମଧ୍ୟ ସେତେବେଳେ ଏହି ପ୍ରଶ୍ନ ଗୁଡ଼ିକର ଉତ୍ତର ଦେଇଥିଲେ। ତେଣୁ କଥା ଏବେ ଧୀରେ -ଧୀରେ ମୈତ୍ରେୟ ଋଷିଙ୍କ ଆଡ଼କୁ ଯାଉଛି।

ଏବେ ଶୌନକ ଋଷି ସୂତ ମୁନିଙ୍କୁ ପଚାରୁଛନ୍ତି - ଆପଣ ତ ପୂର୍ବରୁ ଥରେ କହିଥିଲେ ଯେ ମହାଭାରତ ଯୁଦ୍ଧ ସମୟରେ ବିଦୁର ଘରୁ ଚାଲିଯାଇଥିଲେ। ସେ ପୁଣି

ମୈତ୍ରେୟ ଋଷିଙ୍କୁ କିପରି ଭେଟିଲେ ? ଏହି ସମ୍ପୂର୍ଣ୍ଣ ପ୍ରସଂଗ ଆପଣ ମୋତେ କୁହନ୍ତୁ। ଏବେ ସୂତ ମୁନି କହିଲେ ଯେ ଏହି ପ୍ରଶ୍ନ ଗୁଡ଼ିକ ପରୀକ୍ଷିତ ମଧ୍ୟ ଶୁକଦେବଙ୍କୁ ପଚାରି ଥିଲେ। ଶ୍ରୀ ଶୁକଦେବ ତାଙ୍କୁ ଯାହା -ଯାହା କହିଥିଲେ ମୁଁ ସେହି ସମସ୍ତ ବିଷୟ ଏବେ ଆପଣ ସମସ୍ତ ଋଷି ମାନଙ୍କୁ କହିବି। ଦେଖନ୍ତୁ , ପରୀକ୍ଷିତଙ୍କର ଏହି ପ୍ରଶ୍ନ ଗୁଡ଼ିକୁ ବିଦୁର ମଧ୍ୟ ମୈତ୍ରେୟ ଋଷିଙ୍କୁ ପଚାରି ଥିଲେ। ତେଣୁ ଏବେ ଧ୍ୟାନ ପୂର୍ବକ ଶୁଣିବେ।

ଏହି ପୁରାଣ ରେ ବାରଟି ସ୍କନ୍ଧ ଅଛି। ସେଥିରେ ପ୍ରଥମ ହେଲା ଅଧିକାରୀ ସ୍କନ୍ଧ, ଦ୍ୱିତୀୟରେ ସାଧନ ସ୍କନ୍ଧ ଏବଂ ପରବର୍ତ୍ତୀ ଦଶଟି ସ୍କନ୍ଧ ରେ **ସର୍ଗ, ବିସର୍ଗ, ସ୍ଥାନ, ପୋଷଣ, ଉତୟଃ, ମନ୍ୱନ୍ତର, ଇଶାନୁକଥା, ନିରୋଧ, ମୁକ୍ତି ଏବଂ ଆଶ୍ରୟ** ଏହି ଦଶ ବିଷୟ ର ବର୍ଣ୍ଣନା ହୋଇଛି। ଏତିକି କଥା ବୁଝି ଭାଗବତ ପଢ଼ିବେ ବା ଶୁଣିବେ ତେବେ ଆଗକୁ ବୁଝିବାରେ ସହଜ ହେବ, ଅନ୍ୟଥା କୁଆଡ଼େ ଚାଲିଯିବେ କିଛି ଜାଣିହେବନି।



# ତୃତୀୟ ସ୍କନ୍ଧ

ତୃତୀୟ ସ୍କନ୍ଧରେ ଓ ସର୍ଗ ବା ସୃଷ୍ଟି ର ବର୍ଣ୍ଣନ ଅଛି। ସୂକ୍ଷ୍ମ ମହାଭୂତ, ପ୍ରାଣ, ମନ, ଇନ୍ଦ୍ରିୟ ଆଦି ର ସୃଷ୍ଟି କିପରି ହୁଏ। ତାର ବର୍ଣ୍ଣନ ଅଛି। ଶ୍ରୀ ଶୁକଦେବ ପରୀକ୍ଷିତଙ୍କୁ କହୁଛନ୍ତି ଯେ ତୁମେ ଯେଉଁ ପ୍ରଶ୍ନ ଗୁଡ଼ିକ ପଚାରିଛ, ସେହି ସବୁ ପ୍ରଶ୍ନ ବିଦୁର ମଧ୍ୟ ମୈତ୍ରେୟ ଋଷିଙ୍କୁ ପଚାରିଥିଲେ। ପୂର୍ବ ଅଧ୍ୟାୟରେ କୁହାଯାଇଛି ଯେ ମହାଭାରତ ଯୁଦ୍ଧ ସମୟରେ ବିଦୁର ତୀର୍ଥଯାତ୍ରାରେ ଚାଲି ଯାଇଥିଲେ। ତୀର୍ଥଯାତ୍ରାରୁ ଫେରିଲା ପରେ ତାଙ୍କୁ ଜ୍ଞାତ ହୋଇଥିଲା ଯେ କୌରବ ବଂଶ ନାଶ ହୋଇଯାଇଛନ୍ତି। ଫେରିବା ସମୟରେ ରାସ୍ତାରେ ଯମୁନା କୂଳରେ ତାଙ୍କର ଭେଟ ଉଦ୍ଧବଙ୍କ ସହିତ ହୋଇଗଲା। ସେତେବେଳେକୁ ସମସ୍ତ ଯଦୁବଂଶର ସଂହାର ହୋଇ ସାରିଲାଣି। ଭଗବାନ ଶ୍ରୀକୃଷ୍ଣ ନିଜର ବୈକୁଣ୍ଠ ଧାମକୁ  ଯାଇସାରିଛନ୍ତି। କିନ୍ତୁ ବିଦୁର ଏସବୁ ଜାଣି ନ ଥିଲେ। ଏହି କଥା ଆଗକୁ ଏକାଦଶ ସ୍କନ୍ଧ ରେ ଆସିବ। ଉଦ୍ଧବ ଭଗବାନଙ୍କର ଅନନ୍ୟ ଭକ୍ତ। ବିଦୁର ତାଙ୍କୁ ଆଲିଙ୍ଗନ କରିଲେ। ଉଭୟ ପରମ ଭକ୍ତ, ଜଣେ ଅନ୍ୟ ଜଣଙ୍କ ସହ ଭେଟ କଲେ କ'ଣ ହେବ ?

**କଣ୍ଠାବରୋଧରୋମାଞ୍ଚାଶ୍ରୁଭିଃ ପରସ୍ପରଂ ଲପମାନାଃ।**

**ପାବୟନ୍ତି କୁଲାନି ପୃଥିବୀଂ ଚ ॥ (ନା.ଭ.ସୂ )**

କଣ୍ଠାବରୋଧ ହୋଇଯାଏ, ଶରୀରରେ ରୋମାଂଚ ଆସେ। ଆଖିରୁ ଅଶ୍ରୁ ବୁହେ ଏବଂ ଉଭୟେ ଭଗବାନଙ୍କ ଚର୍ଚ୍ଚା କରନ୍ତି। ଯଦୁକୁଳ ସଂହାର କଥା ବିଦୁରଙ୍କୁ ଜଣା ନ ଥିଲା। ତେଣୁ ସେ ଉଦ୍ଧବଙ୍କୁ ପଚାରୁଛନ୍ତି - ଦ୍ୱାରିକାରେ ସବୁ କୁଶଳ ତ ? ମୋ ଭଗବାନ୍ ଠିକ୍ ଅଛନ୍ତି ତ ? ଏପରି ପ୍ରଶ୍ନ ପଚାରିବାରୁ ଉଦ୍ଧବ କାନ୍ଦିବାକୁ ଲାଗିଲେ। ଉଦ୍ଧବଙ୍କ ବିଷୟରେ କୁହାଯାଏ ଯେ,

**ୟଃ ପଞ୍ଚହାୟନୋ ମାତ୍ରା ପ୍ରାତରାଶାୟ ୟାଚିତଃ।**

**ତନ୍ନୈଚ୍ଛଦ୍ରଚୟନ୍ ୟସ୍ୟ ସପର୍ୟାଂ ବାଲଲୀଲୟା ॥ (୩.୨.୨)**

ଉଦ୍ଧବ ଯେତେବେଳେ ପାଞ୍ଚବର୍ଷର ଥିଲେ ସେତେବେଳେ ମଧ୍ୟ ଅନ୍ୟ ପିଲାମାନଙ୍କ ସହିତ ଖେଳୁ ନ ଥିଲେ। ପିଲାଦିନରୁ ସେ କେବଳ ଭଗବାନଙ୍କର ହିଁ ପୂଜା କରୁଥିଲେ।

ମା ଯେତେବେଳେ ତାଙ୍କୁ ଖାଇବା ପାଇଁ ଡାକିବାକୁ ଆସୁଥିଲେ, ତାଙ୍କୁ ଭଲ ଲାଗୁ ନ ଥିଲା, ସେ ଯାଉ ନଥିଲେ। ଏହିପରି ଉଦ୍ଧବ ଦୀର୍ଘ ସମୟ ପର୍ଯ୍ୟନ୍ତ ଭଗବାନଙ୍କ ସାଥିରେ ରହୁଥିଲେ। ଭଗବାନଙ୍କ ସେବା କରୁ କରୁ ସେ ବୁଢ଼ା ହୋଇଗଲେ।

**ସ କଥଂ ସେବୟା ତସ୍ୟ କାଲେନ ଜରସଂ ଗତଃ।**
**ପୃଷ୍ଟୋ ବାର୍ତ୍ତାଂ ପ୍ରତିବ୍ରୂୟାଦ୍‌ଭର୍ତୃଃ ପାଦାବନୁସ୍ମରନ୍ ॥ (୩.୨.୩)**

ଏହି ସବୁ କଥା ସ୍ମରଣ କରି ସେ ଭାବିଲେ ଯେ ଏବେ ଭଗବାନଙ୍କୁ କିପରି ସ୍ମରଣ କରିବା ? କେମିତି କହିବି ଯେ ଭଗବାନ ଏଠୁ ଚାଲିଗଲେଣି। କହିଲେ - ବିଦୁର ଆମ ଆଖିର ଜ୍ୟୋତି ଚାଲି ଗଲାଣି ଆଉ ଆପଣ କୁଶଳତା ପଚାରୁଛନ୍ତି ? ଏହି ଯଦୁବଂଶ ଭାଗ୍ୟହୀନ, ଏହି ବଂଶରେ ଭଗବାନ ଜନ୍ମ ନେଲେ, କିନ୍ତୁ ସବୁବେଳେ ସାଥିରେ ରହି ମଧ୍ୟ, ସେମାନେ ଭଗବାନଙ୍କୁ ଚିହ୍ନି ପାରିଲେ ନାହିଁ। ସେମାନେ ସମସ୍ତେ ଅଭାଗା। ଏପରି କହି ଉଦ୍ଧବ ଭଗବାନଙ୍କର ବାଲ୍ୟଲୀଳା, ଗୋକୁଳ - ବୃନ୍ଦାବନ ର ଲୀଳା, ମଥୁରା -ଗମନ ଏବଂ ସ୍ୱଧାମ ଗମନ ଆଦିର ବର୍ଣ୍ଣନ କରିବାକୁ ଲାଗିଲେ। ତାକୁ ଆମେ ଏକାଦଶ ସ୍କନ୍ଧରେ ଦେଖିବା। ପୁଣି କହିଲେ, ଭଗବାନ ଯେତେବେଳେ ବୈକୁଣ୍ଠ ଧାମ ଯାଉଥିଲେ, ମୁଁ ବି ତାଙ୍କ ସହିତ ଯିବାକୁ ଚାହୁଁଥିଲି, କିନ୍ତୁ ଭଗବାନ୍ ମନାକରିଦେଲେ। ମୁଁ ବି ଭାବିଲି ଯେ ତାହାଲେ ଏଇଠି ରହି ଭଗବାନଙ୍କ ଗୁଣଗାନ କରିବି। ଶ୍ରୀ ରାମାବତାରରେ ମଧ୍ୟ ଅଛି ଯେ ଶ୍ରୀରାମଚନ୍ଦ୍ରଙ୍କର ସ୍ୱଧାମ ଗମନ ପରେ ହନୁମାନ ମଧ୍ୟ ଏଇଠି ରହିଗଲେ, ତାଙ୍କ ଗୁଣଗାନ କରିବା ଏବଂ କରେଇବା ପାଇଁ, କଥା ଶୁଣିବା ଓ ଶୁଣେଇବା ପାଇଁ। ଆଉ ଶ୍ରୀକୃଷ୍ଣ ଅବତାରରେ ଉଦ୍ଧବ ଏଠି ରହିଗଲେ। ଆଗକୁ ବର୍ଣ୍ଣନ ଅଛି ଯେ ଶ୍ରୀକୃଷ୍ଣ କହୁଛନ୍ତି ଯେ, ଉଦ୍ଧବ ମୋ ତୁଳନାରେ କୌଣସି ପ୍ରକାରରେ କମ୍ ନୁହଁନ୍ତି। ଦେଖନ୍ତୁ, ଭଗବାନ ଉଦ୍ଧବଙ୍କୁ କେତେ ସମ୍ମାନ ଦେଇଛନ୍ତି।

ଉଦ୍ଧବ କହିଲେ -ଭଗବାନ୍ ଙ୍କ ପ୍ରସ୍ଥାନ ପୂର୍ବରୁ ମୁଁ ଅତ୍ୟନ୍ତ ଶୋକାକୁଳ ଥିଲି। ତେଣୁ ଭଗବାନ୍ ମତେ ଆତ୍ମଜ୍ଞାନ ଦେଲେ। ଏହା ଶୁଣି ବିଦୁର କହିଲେ - ହେ ଉଦ୍ଧବ, ଭଗବାନ ଆପଣଙ୍କୁ ଯେଉଁ ଜ୍ଞାନ ଦେଇଛନ୍ତି, କୃପା କରି ମୋତେ ମଧ୍ୟ ଆପଣ ସେହି ଜ୍ଞାନ ଦିଅନ୍ତୁ। ଏହା ଶୁଣି ଉଦ୍ଧବ କହିଲେ ଯେ ମୋତେ ତ ବଦରିକାଶ୍ରମ ଯିବାର ଆଦେଶ ମିଳିସାରିଛି। କିନ୍ତୁ ସେତେବେଳେ ମୈତ୍ରେୟ ଋଷି ମଧ୍ୟ ସେଠାରେ ଥିଲେ। ଭଗବାନ ଯିବା ସମୟରେ ବିଶେଷ ଭାବରେ ଆପଣଙ୍କର ସ୍ମରଣ କଲେ ଏବଂ- ମୈତ୍ରେୟ ଋଷିଙ୍କୁ ଆଜ୍ଞା ଦେଲେ ଯେ ସେ ଏହି ଜ୍ଞାନ ବିଦୁରଙ୍କୁ ଦେବେ। ଏତିକି କହି ଉଦ୍ଧବ

ସେଠାରୁ ବଦରିବନ ଆଡ଼କୁ ଚାଲିଗଲେ। ଲୀଳା ସଂକରଣ ପୂର୍ବରୁ ଭଗବାନ୍ ତାଙ୍କୁ ସ୍ମରଣ କରିଥିଲେ। ଏହି କଥା ଶୁଣି ବିଦୁରଙ୍କୁ ପ୍ରେମ ବିହ୍ୱଳ ହୋଇ କାନ୍ଦି ପକାଇଲେ।

**ଆତ୍ମାନଂ ଚ କୁରୁଶ୍ରେଷ୍ଠ କୃଷ୍ଣେନ ମନସେକ୍ଷିତମ୍।**
**ଧ୍ୟାୟନ୍ ଗତେ ଭାଗବତେ ରୁରୋଦ ପ୍ରେମବିହ୍ୱଳଃ ॥ (୩.୪.୩୫)**

ପୁଣି ପରୀକ୍ଷିତ ପ୍ରଶ୍ନ କଲେ ଯେ ଯେତେବେଳେ ସମ୍ପୂର୍ଣ୍ଣ ଯଦୁବଂଶ ନାଶ ହୋଇଗଲା, ସେତେବେଳେ ଉଦ୍ଧବ କିପରି ବଞ୍ଚି ଗଲେ? ତାଙ୍କର ସଂହାର କାହିଁକି ହେଲା ନାହିଁ? ଉତ୍ତର ରେ କହିଲେ -ଭଗବାନ୍ ଭାବିଲେ ଯେ ଏବେ ମୁଁ ଏହି ଅବତାରକୁ ସମାପ୍ତ କରି ଚାଲି ଗଲେ, ମୋ ଆଶ୍ରୟରେ ଥିବା ଏହି ଜ୍ଞାନ ବି ରହିବନି। ତେଣୁ, ଏହି ଜ୍ଞାନ କୁ ଏଠାରେ ରକ୍ଷାକରିବା ପାଇଁ, ସେ ଉଦ୍ଧବଙ୍କୁ ଏଠି ରଖିଲେ। **"ନୋଦ୍ଧବୋଽଣ୍ୱପି ମନ୍ନ୍ୟୂନୋ"**। ଉଦ୍ଧବ ମୋ ସମକକ୍ଷ। ତେଣୁ ଉଦ୍ଧବଙ୍କୁ ସେ ଏଠାରେ ଛାଡ଼ିଦେଲେ। ଏପରି ନିଶ୍ଚୟ କରି ଭଗବାନ୍ ସ୍ୱୟଂ ସେଠାରୁ ଚାଲିଗଲେ।

## ବିଦୁର ଏବଂ ମୈତ୍ରେୟ ଋଷିଙ୍କ ସଂବାଦ

ଏବେ ଶୁକଦେବ କହିଲେ -ତା ପରେ ବିଦୁର ମୈତ୍ରେୟ ଋଷିଙ୍କ ପାଖରୁ ଏହି ଜ୍ଞାନ ପ୍ରାପ୍ତ କରିବା ପାଇଁ ଚାଲିଲେ। କିନ୍ତୁ ମୈତ୍ରେୟ ଋଷି କୋଉଠି ଅଛନ୍ତି, ତାହା ତାଙ୍କୁ ଜଣା ନଥିଲା। ମୈତ୍ରେୟ ଋଷି ହରିଦ୍ୱାରରେ ଗଙ୍ଗାନଦୀ କୂଳରେ ବସିଥିଲେ। ସେଠି ପହଞ୍ଚି ବିଦୁର ତାଙ୍କୁ ଦେଖିଲେ ତ ବହୁତ ଖୁସୀ ହୋଇଗଲେ। ତାଙ୍କ ପାଖକୁ ଯାଇ ପ୍ରଶ୍ନ ପଚାରିଲେ ଯେ -

**ସୁଖାୟ କର୍ମାଣି କରୋତି ଲୋକୋ**
**ନ ତୈଃ ସୁଖଂ ବାନ୍ୟଦୁପାରମଂ ବା।**
**ବିନ୍ଦେତ ଭୂୟସ୍ତତ ଏବ ଦୁଃଖଂ**
**ୟଦତ୍ର ୟୁକ୍ତଂ ଭଗବାନ୍ ବଦେନ୍ନଃ ॥ (୩.୫.୨)**

ସଂସାରରେ ସମସ୍ତେ ସୁଖ ଚାହଁନ୍ତି। ସୁଖପ୍ରାପ୍ତି ପାଇଁ ଅତ୍ୟନ୍ତ ପରିଶ୍ରମ ମଧ୍ୟ କରନ୍ତି, କିନ୍ତୁ ସେମାନଙ୍କୁ ସୁଖ ମିଳେନି। ସୁଖ ମିଳେନି ତ ମିଳେନି , **'ବିନ୍ଦେତ ଭୂୟସ୍ତତ ଏବ ଦୁଃଖୀ'** ଆହୁରି ଅଧିକାଧିକ ଦୁଃଖ ହିଁ ମିଳୁ ଥାଏ। ତେଣୁ ସୁଖ ପ୍ରାପ୍ତି କରିବା ପାଇଁ ହେଲେ ଯେଉଁ ୟୁକ୍ତି ୟୁକ୍ତ -ସମୀଚୀନ କଥା ଅଛି, ତାହା ମୋତେ କୁହନ୍ତୁ, କାରଣ ମୋ ପାଇଁ ଆପଣ ଓ ଭଗବାନଙ୍କ ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ।

ଆପଣଙ୍କ ପରି ଭକ୍ତଙ୍କ ଦର୍ଶନ, ସଂଗ ଅତ୍ୟନ୍ତ ଦୁଲର୍ଭ। ତେଣୁ ଆପଣ ମୋତେ ଭଗବାନଙ୍କ ବିଷୟରେ ସବୁ କିଛି କହନ୍ତୁ। ଏତିକି ତ ମୁଁ ଜାଣେ ଯେ, ଭଗବାନଙ୍କୁ ପ୍ରେମ ନ କଲେ , ସୁଖ ପ୍ରାପ୍ତ ହୋଇ ପାରିବ ନାହିଁ। କିନ୍ତୁ ଏହାକୁ ସାମାନ୍ୟ ଭାବେ ଏବଂ ବିଶେଷ ଭାବରେ ଜାଣିବା ଦୁଇଟି ଅଲଗା-ଅଲଗା କଥା। ଆପଣ ବିଶେଷ ଭାବରେ ଏହି କଥା ମୋତେ କୁହନ୍ତି।

**କସ୍ତୃପ୍ନୁୟାତ୍ତୀର୍ଥପଦୋଽଭିଧାନାତ୍**

**ସତ୍ରେଷୁ ବଃ ସୂରିଭିରୀଡ୍ୟମାନାତ୍।**

**ୟ କର୍ଣନାଡୀଂ ପୁରୁଷସ୍ୟ ୟାତୋ**

**ଭବପ୍ରଦାଂ ଗେହରତିଂ ଛିନତ୍ତି ॥ (୩.୫.୧୧)**

ଯେଉଁ ଭଗବାନ୍ କର୍ଣ୍ଣଦ୍ୱାରା ପ୍ରବେଶ କରି, ମନର ମଇଳା କୁ ଦୂର କରି ଦିଅନ୍ତି, ପ୍ରେମ ଉତ୍ପନ୍ନ କରିନ୍ତି, ତାଙ୍କ କଥାରୁ ବୈରାଗ୍ୟ କିପରି ହେବ। କିଏ ବା ସେହି କଥା ଶୁଣିବାକୁ ଚାହିଁବନି। ଆପଣ ମୋତେ ତାଙ୍କ ବିଷୟରେ ସବୁକଛି କୁହନ୍ତୁ। ଏହା ଶୁଣି ମୈତ୍ରେୟ ଋଷି ଅତ୍ୟନ୍ତ ପ୍ରସନ୍ନ ହେଲେ। ଅତ୍ୟନ୍ତ ପ୍ରସନ୍ନତାପୂର୍ବକ ସେ କହିଲେ , "ତୁମେ ଏତେ ସୁନ୍ଦର ପ୍ରଶ୍ନ ପଚାରିଲ ଯାହାଦ୍ୱାରା ଭଗବାନ୍‌ଙ୍କ ଯଶ ଚର୍ତୁଦିଗ ରେ ଖେଳିଯିବ। ତେଣୁ ଶାସ୍ତ୍ରରେ କୁହାଯାଇଛି ଯେ, ଭଗବାନଙ୍କ ଠାରୁ ତାଙ୍କର ଭକ୍ତ ମହାନ। ଭଗବାନ ଚନ୍ଦନ ଗଛ ପରି ହେଲେ ଭକ୍ତ ବାୟୁପରି – **'ଚନ୍ଦନ ତରୁ ହରି ସନ୍ତ ସମୀରା'** (ଶ୍ରୀରାମଚରିତ ମାନସ, ୭.୧୧୯.୧୭)। ପବନ ବୋହିଲେ ଚନ୍ଦନର ସୁଗନ୍ଧ ଚାରିଆଡ଼େ ଖେଳେଇ ଦିଏ। ଭକ୍ତ ମଧ ଭଗବାନଙ୍କ ଯଶ କୁ ସବୁଆଡ଼େ ଖେଳେଇଦିଏ। ଆପଣ ମଧ ସେହିପରି ଭକ୍ତ।

ଆଗକୁ ସୃଷ୍ଟି ର ବର୍ଣ୍ଣନା ହେଇଛି। ଅନ୍ୟ ଦେବତାମାନଙ୍କର ଏହି ଶକ୍ତି ନଥିଲା ଯେ ସେମାନେ ସ୍ୱୟଂ କିଛି କାମ କରିପାରିବେ। ତେଣୁ ସେମାନେ ଭଗବାନଙ୍କୁ ପ୍ରାର୍ଥନା କଲେ ଯେ ଭଗବାନ ଆମେ କଛି କରିବାକୁ ତ ଚାହୁଁଛୁ କିନ୍ତୁ କରିପାରୁନାହୁଁ। ସେତେବେଳେ ଭଗବାନ ନିଜର କାଳଶକ୍ତି ପ୍ରେରିତ କରି ଏହି ଦେବତା ମାନଙ୍କୁ ମଧ ସାମର୍ଥ୍ୟ ପ୍ରଦାନ କରନ୍ତି, ଯାହାଦ୍ୱାରା ସେମାନେ ସୃଷ୍ଟି ନିର୍ମାଣ କରି ପାରିବେ।

**ସ ଏବଂ ଭଗବାନ ପୃଷ୍ଟଃ କ୍ଷତ୍ତ୍ରା କୌଷାରବିର୍ମୁନିଃ । (୩.୫.୧୭)**

ଭଗବାନଙ୍କର ଏହ ଶକ୍ତିର -ମାୟାଶକ୍ତିର ବର୍ଣ୍ଣନା କିଏ କରିପାରବ ? ଏହି ପରି ବର୍ଣ୍ଣନା କରୁ କରୁ ସେ ଏକ ବିଚିତ୍ର କଥା କହିଲେ -

**ଅତୋ ଭଗବତୋ ମାୟା ମାୟିନାମପି ମୋହିନୀ।**

**ୟତ୍ସ୍ୱୟଂ ଚାତ୍ମବର୍ତ୍ମାତ୍ମା ନ ବେଦ କିମୁତାପରେ ।। (୩.୬.୩୯)**

ଭଗବାନଙ୍କ ମାୟା ସମସ୍ତଙ୍କୁ ମୋହିତ କରେ। ନିଜ ମାୟାର ଗତିକୁ ସ୍ୱୟଂ ଭଗବାନ ମଧ୍ଧ ଜାଣନ୍ତି ନାହିଁ। ଏମିତି କଥା ଶୁଣିଲେ ଆଶ୍ଚର୍ଯ୍ୟ ହେବା ନା ନାହିଁ। ଭଗବାନ ଙ୍କ ମାୟା ଅତ୍ୟନ୍ତ ଶ୍ରେଷ୍ଠ ମହାପୁରୁଷମାନଙ୍କୁ ମଧ୍ଧ ମୋହିତ କରିଦିଏ, ଏକଥା ତା ବୁଝି ହେଉଛି। କିନ୍ତୁ ଏଠି କୁହାଯାଇଛି ଯେ, ନିଜ ମାୟାର ଗତି କୁ ତ ସ୍ୱୟଂ ଭଗବାନ୍ ମଧ୍ଧ ଜାଣନ୍ତି ନାହିଁ। ଏହାର ଅର୍ଥ ଯେ ଭଗବାନ ହିଁ ଅଜ୍ଞାନ, ଏମିତି ଅର୍ଥତ ବାହାର କରିହେବନି। ଏଠାରେ ଯାହା କୁହାଯାଇଛି ତା'ର ଅର୍ଥ ବୁଝିବାପାଇଁ ଚେଷ୍ଟା କରନ୍ତୁ। ଯେତେବେଳେ କୁହାଗଲା ଯେ ନିଜ ମାୟାର ଗତିକୁ ଭଗବାନ ବି ଜାଣନ୍ତି ନାହିଁ, ତାର ଅର୍ଥ ହେଲା ଯେ ଭଗବାଙ୍କ ମାୟା କେତେ ପ୍ରବଳ। ଇଏତ ଗୋଟିଏ କଥା, ଆଉ ଗୋଟିଏ କଥା ହେଲା ଯେ 'ଅନନ୍ତତ୍ୱାତ୍'- ସେ ଅନନ୍ତ ନିମିତ୍ତ ଦ୍ୱାରା ଆମକୁ ମୋହିତ କରିଦିଏ। ତାର ଗତି ଅନନ୍ତ। ତାକୁ ଭଗବାନ ମଧ୍ଧ ଜାଣନ୍ତି ନାହିଁ। ଏଇଟା କଥା କହିବାର ଗୋଟେ ଢ଼ଙ୍ଗ। ଯେମିତି ମୋଟର କାର ଚଲଉ ଥିବେ ଆଉ ଷ୍ଟିୟରିଗଂ ଛାଡ଼ି ଦେବେ, କହି ପାରିବେକି କାର କେଉଁଆଡ଼େ ଯିବ ? ସେତେବେଳେ କହିବେ, ନା କହି ପାରିବିନି, ଥରେ ଷ୍ଟିୟରିଂଗ ହ୍ୱିଲ୍ ରୁ ହାତ ଛାଡ଼ିଦେଲେ, ତା' ପରେ କିଛି କହି ହବନି। ଭଗବାନଙ୍କ ମାୟାର ଗତି ଅନନ୍ତ, ପ୍ରବଳ, ଏହାହିଁ ଏହାର ପ୍ରକୃତ ଅର୍ଥ। ତେଣୁ ମାୟାପତି ଭଗବାନଙ୍କର ଭଜନ କରିବା ପାଇଁ କୁହାଯାଇଛି।

ଏହା ପରେ ବିଦୁର ଏକ ଶାସ୍ତ୍ରୀୟ ଏବଂ ପାରିଭାଷିକ ପ୍ରଶ୍ନ ପଚାରିଲେ । ସେ କହିଲେ -ଭଗବନ ! ଆପଣ କହିଲେ ଭଗବାନ ଅବିକାରୀ ଏବଂ ସେ ମାୟା ର ଶକ୍ତି ଦ୍ୱାରା ହିଁ ସମ୍ପୂର୍ଣ୍ଣ ସୃଷ୍ଟିର ରଚନା କରନ୍ତି। ଯିଏ ଅବିକାରୀ ସଚ୍ଚିଦାନନ୍ଦ ଭଗବାନ, ତାଙ୍କୁ ମାୟା କିପରି ସ୍ପର୍ଶ କରି ପାରିବ ? ତାଙ୍କ ସହିତ ମାୟାର ସମ୍ବନ୍ଧ କିପରି ହେଇ ପାରିବ ? ଏହା ଶୁଣି ମୈତ୍ରେୟ ଋଷି ହସି କରି କହିଲେ - ତୁମେ ବହୁତ ଭଲ କଥା କହିଲ, ଏହା ହିଁ ତ ମାୟା।

**ସେୟଂ ଭଗବତୋ ମାୟା ଯନ୍ନୟେନ ବିରୁଧ୍ୟତେ।**
**ଈଶ୍ୱରସ୍ୟ ବିମୁକ୍ତସ୍ୟ କାର୍ପଣ୍ୟମୁତ ବନ୍ଧନମ୍ ॥(୩.୭.୯)**

ମାୟାର ଏହା ହିଁ ସବୁଠାରୁ ଭଲ ପରିଭାଷା। ଏହି ମାୟା ସବୁ ତର୍କକୁ ଉଠାଇ ଫିଙ୍ଗିଦିଏ। ତର୍କ ଦ୍ୱାରା ଯାହା ବୁଝି ହୁଏନାହିଁ ତାହା ହିଁ ମାୟା। ପରମାତ୍ମା ଅବିକାରୀ। ତାଙ୍କ ଭିତରେ ବିକାର କିପରି ରହିପାରିବ। ମାୟାର ସମ୍ବନ୍ଧ ତାଙ୍କ ସହିତ ହେଇ ପାରିବ ନାହିଁ, ତେଣୁ ସମ୍ବନ୍ଧ ମଧ୍ୟ ନାହିଁ, ତଥାପି କେବଳ ପ୍ରତୀତ ହେଉଛି। ତେଣୁ ତାକୁ ସତ୍ କହି ପାରିବା ନା ଅସତ୍। ଏଠାରେ ତର୍କ କିଛି କାମ ଦିଏନି, କୌଣସି ବସ୍ତୁ ଥାଇ ମଧ୍ୟ ନ ଦିଶିବା ଏବଂ ନଥାଇ ମଧ୍ୟ ଦିଶିବା, ଏହା ହିଁ ମାୟା। କିନ୍ତୁ ଆମେ ଏହି ସବୁ ପ୍ରଶ୍ନ ମାୟା ଭିତରେ ଥାଇ ପଚାରୁଛୁ, ତେଣୁ ତାର ଉତ୍ତର ମଧ୍ୟ ମିଳୁନାହିଁ, କିନ୍ତୁ ଯେଉଁଠି ପରମାତ୍ମା ତତ୍ତ୍ୱ ଜାଗ୍ରତ ସେଠାରେ ମାୟା ରହେ ନାହିଁ। ଯେପରି ସ୍ୱପ୍ନରୁ ଉଠିଲେ ଆଉ ସ୍ୱପ୍ନ ର ମାୟା ନଥାଏ। କିନ୍ତୁ ସ୍ୱପ୍ନରେ ରହି ସ୍ୱପ୍ନ ବିଷୟରେ ପଚାରିଲେ କୌଣସି ଉତ୍ତର ମିଳିପାରିବ ନାହିଁ। ସେହି ଅନିର୍ବଚନୀୟ ମାୟା ରେ ଯୁକ୍ତ ହୋଇ ଭଗବାନ ସୃଷ୍ଟି ରଚନା କରନ୍ତି।

ଏବେ ଆମେ ଦେଖିଲେ ଯେ, ରାଜା ପରୀକ୍ଷିତ ଶୁକଦେବଙ୍କୁ ପ୍ରଶ୍ନର ଗୋଟିଏ ଲମ୍ବା ତାଲିକା ଦେଇଥିଲେ। ଏବେ ପୁଣି ବର୍ଣ୍ଣନା କରାଗଲା ଯେ, ବିଦୁର ମଧ୍ୟ ମୈତ୍ରେୟ ଋଷିଙ୍କୁ ସେହି ସବୁ ପ୍ରଶ୍ନଗୁଡ଼ିକ ପଚାରୁଛନ୍ତି – ସୃଷ୍ଟି, ଲୋକ, ଦେବତା ଆଦିଙ୍କ ବିଷୟରେ। ମୈତ୍ରେୟ ଋଷି କହିଲେ – ଏହି ପ୍ରଶ୍ନ ଗୁଡ଼ିକ ପୂର୍ବରୁ ମଧ୍ୟ ପଚରା ସରିଛି। ଆଦିଶେଷ ସଂକର୍ଷଣ ଭଗବାନ୍ ଏହି ଜ୍ଞାନ ସନତ୍‌କୁମାର ଙ୍କୁ ଦେଲେ। ସନତ୍ କୁମାର ସାଂଖ୍ୟାୟନ ଋଷିଙ୍କୁ, ସାଂଖ୍ୟାୟନ ଋଷି ବ୍ୟାସଦେବଙ୍କୁ ଏବଂ ବ୍ୟାସଦେବ ଯିଏ ଆମ ଗୁରୁ, ସେ ମୋତେ ଏହି ଜ୍ଞାନ ଦେଲେ। ପୁଲସ୍ତ୍ୟ ଋଷି ବ୍ୟାସଦେବଙ୍କୁ କହିଥିଲେ ଯେ ମୈତ୍ରେୟ ଋଷି ଶ୍ରେଷ୍ଠ ଶିଷ୍ୟ, ତାଙ୍କୁ ଏହି ଜ୍ଞାନ ଦେବେ। ସେହି ଜ୍ଞାନ ମୁଁ ଏବେ ତୁମକୁ ଦେଉଛି।

ପ୍ରଥମେ ଭଗବାନ୍ ବ୍ରହ୍ମାଙ୍କୁ ସୃଷ୍ଟି ରଚନାର ଆଦେଶ ଦେଲେ, ତା'ପରେ ତାଙ୍କୁ ଆଶ୍ୱସ୍ତ କଲେ ଯେ ମୋ ମାୟା ଆପଣଙ୍କୁ ହଇରାଣ କରିବ ନାହିଁ। ତା'ପରେ ବ୍ରହ୍ମା ସୃଷ୍ଟି ନିର୍ମାଣ କାର୍ଯ୍ୟରେ ଲାଗିଗଲେ। ଏବେ ଏଠି ଏକାଦଶ ଅଧ୍ୟାୟରେ କାଳର ଗଣନା କରାଯାଇଛି। ସବୁଠାରୁ ଛୋଟ କାଳ ହେଲା ପରମାଣୁ। ତା'ପରେ ଅଣୁ, ତ୍ରସରେଣୁ, ତ୍ରୁଟି, ଲବ, ନିମିଷ, କ୍ଷଣ, କାଷ୍ଠା, ଲଘୁ, ମୂହୁର୍ତ୍ତ। ପ୍ରହର, ଦିନ-ରାତି, ସପ୍ତାହ, ପକ୍ଷ, ମାସ, ଅୟନ ଏବଂ ବର୍ଷ। ମନୁଷ୍ୟର ଆୟୁ ଶହେ ବର୍ଷ। ସତ୍ୟଯୁଗ ରେ ସତର ଲକ୍ଷ

ଅଠାଇଶ ହଜାର ବର୍ଷ ହୁଏ। ତ୍ରେତା ଯୁଗରେ ବାର ଲକ୍ଷ ଛୟାନବେ ହଜାର ବର୍ଷ ଦ୍ୱାପରରେ ଆଠଲକ୍ଷ ଚୌଷଠି ହଜାର ବର୍ଷ ଏବଂ କଳିଯୁଗ ରେ ଚାରିଲକ୍ଷ ବତିସ ହଜାର ବର୍ଷ ହୋଇଥାଏ। ଚାରି ଯୁଗ କୁ ମିଶାଇ ତେୟାଳିଶ ଲକ୍ଷ କୋଡ଼ିଏ ହଜାର ବର୍ଷ ଯାହାକୁ ଗୋଟିଏ ମହାଯୁଗ କୁହାଯାଏ। ଏପରି ଏକ ହଜାର ମହାଯୁଗ ଯେତେବେଳେ ବିତିଯାଏ ସେତେବେଳେ ବ୍ରହ୍ମାଙ୍କର ଗୋଟିଏ ଦିନ ହୁଏ। ବ୍ରହ୍ମା ଙ୍କ ଗୋଟିଏ ଦିନରେ ଚଉଦ ମନୁ ହୁଅନ୍ତି। ପ୍ରତ୍ୟେକ ମନୁଙ୍କ ସମୟକୁ ମନ୍ୱନ୍ତର କୁହାଯାଏ। ତାହା ଏକସ୍ତରି ମହାଯୁଗ (ଚାରିଯୁଗ ମିଶି) ରୁ କିଛି ଅଧିକା (୬.୧୪) ହୁଏ। ସେହିପରି ଏକସ୍ତରୀ ମହାଯୁଗ ମନୁଙ୍କର ରାତି। ବ୍ରହ୍ମାଙ୍କର ଆୟୁ ୧୦୦ ବର୍ଷ। ବ୍ରହ୍ମାଙ୍କର ଏହି ୧୦୦ବର୍ଷ ର ଆୟୁ ଭଗବାନ ନାରାୟଣଙ୍କର ଆଖି ବନ୍ଦ କରିବା ଏବଂ ଖୋଲିବା। ବ୍ରହ୍ମା ମଧ୍ୟ ଲୁପ୍ତ ହେଇଯାଆନ୍ତି। ଅର୍ଥାତ୍ କାଳର ଅନୁସନ୍ଧାନ କରିବାକୁ ଗଲେ ପରମାତ୍ମାଙ୍କ ପର୍ଯ୍ୟନ୍ତ ପହଞ୍ଚିବା ଯିବେ। କାଳ ନାମକ କୌଣସି ପୃଥକ୍ ବସ୍ତୁ ନଥିବ, କାଳତୀତ ହେଇଯିବେ। ପ୍ରକୃତରେ ଏହି କାଳ ପରମାତ୍ମା ପରମବ୍ରହ୍ମଙ୍କର ହିଁ ସ୍ୱରୂପ ଅଟେ।

ଏବେ ଗୋଟିଏ ବିଚିତ୍ର କଥା ଦେଖିବାକୁ ମିଳେ ଯେ ବ୍ରହ୍ମା ଯେବେ ସୃଷ୍ଟି ରଚନା କରନ୍ତି, ନିଜର କାନ- ଆଖି -ଜଂଘ ଆଦିରୁ ରଚନା କରନ୍ତି। ପ୍ରାୟଃ ଆମେ ଯେତେବେଳେ ଏପରି କଥା ପଢୁ ବା ଶୁଣୁ ତାକୁ ସ୍ୱୀକାର କରି ପାରୁନି। ଆମକୁ ଲାଗେ ଯେ,ଏଗୁଡ଼ାକ କଣ? ଏହା ମାନସ ସୃଷ୍ଟି। ଆମେ ଯେତେବେଳେ ସ୍ୱପ୍ନାବସ୍ଥାରେ ଥାଉ, ଭାବିଲେ ଦେଖି, କେଉଁଠାରୁ ଆମେ ସ୍ୱପ୍ନର ରଚନା କରୁ? କେହି କହି ପାରିବେ କି? କାନ-ନାକ, କେଉଁ ଠାରୁ ବି କୁହନ୍ତୁ, କଣ ଫରକ ପଡ଼ିବ।

ଆଗକୁ କୁହାଯାଇଛି ଯେ ବ୍ରହ୍ମା ଯେତେବେଳେ ସୃଷ୍ଟି ରଚନା କଲେ, ପ୍ରଥମେ ସନତ କୁମାରମାନଙ୍କୁ ରଚନା କଲେ, ସେମାନଙ୍କୁ ସୃଷ୍ଟି ର ବୃଦ୍ଧି କରିବାକୁ କହିବାରୁ ସେମାନେ କହିଲେ - ନା ଆମେ ତ ଭଗବାନଙ୍କ ଧ୍ୟାନ କରିବୁ। ବ୍ରହ୍ମା ଙ୍କୁ କ୍ରୋଧ ଆସିଲା। କ୍ରୋଧକୁ ମଧ୍ୟ ସେ ତିଆରି କରିଛନ୍ତି। ପୁତ୍ର ପିତାର କଥା ନ ଶୁଣିଲେ ପିତାକୁ କ୍ରୋଧ ମାଡ଼ିବ। କ୍ରୋଧରେ ଭ୍ରୁକୁଟିଞ୍ଚନ ହେଲା। ସେଥିରୁ ଏକ ନୀଳ-ଲୋହିତ ରଂଗର ବାଳକ ପ୍ରକଟ ହେଲା। ପ୍ରକଟ ହେଲା ମାତ୍ରେ ସେ କାନ୍ଦିବାକୁ ଲାଗିଲା। ବ୍ରହ୍ମା ତାକୁ ପଚାରିଲେ - 'ତୁ କାହିଁକି କାନ୍ଦୁଛୁ?' ସେ କହିଲା -ମୋ ନାମ କୁହନ୍ତୁ, ଏବଂ ମୁଁ କେଉଁଠି ରହିବି କୁହନ୍ତୁ। ବ୍ରହ୍ମା ତାକୁ କହିଲେ -ଜନ୍ମ ନେବା କ୍ଷଣି ତୁମେ କାନ୍ଦିବାକୁ ଲାଗିଲଣି, ତେଣୁ ତୁମ ନାମ 'ରୁଦ୍ର'। ବ୍ରହ୍ମା ତାଙ୍କୁ ରହିବା ପାଇଁ ସ୍ଥାନ ଦେଲେ ଏବଂ ଅନେକ ପତ୍ନୀ ମଧ୍ୟ ଦେଲେ। ପୁଣି କହିଲେ ଯାଅ ଏବେ ସୃଷ୍ଟି କର। ତାର ସୃଷ୍ଟି ଅତ୍ୟନ୍ତ

ଭୟଙ୍କର ହେଲା ଏବଂ ସମସ୍ତଙ୍କୁ କଷ୍ଟ ହେଲା। ବ୍ରହ୍ମା କହିଲେ – ଇଯେ କଣ ହେଲା ? କେବେ ସୃଷ୍ଟି କରିବାକୁ କହିବାକୁ ପଡୁଛି ତ କେବେ ସୃଷ୍ଟି ବନ୍ଦ କରିବା ପାଇଁ। ପୁଣି ବ୍ରହ୍ମା ତାକୁ କହିଲେ ତୁମେ ଏପରି ସୃଷ୍ଟି ରଚନା ବନ୍ଦ କର ଏବଂ ଯାଇ କିଛି ସମୟ ପର୍ଯ୍ୟନ୍ତ ତପସ୍ୟା କର। ଏହା ଶୁଣି ସେ ନମସ୍କାର କଲା ଏବଂ ଧ୍ୟାନ କରିବା ପାଇଁ ଚାଲିଗଲା।

**ମରିଚିରତ୍ର୍ୟଙ୍ଗିରସୌ ପୁଲସ୍ତ୍ୟଃ ପୁଲହଃ କ୍ରତୁଃ।**
**ଭୃଗୁର୍ବସିଷ୍ଠୋ ଦକ୍ଷଶ୍ଚ ଦଶମସ୍ତତ୍ର ନାରଦଃ ॥ (୩.୧୨.୨୨)**

ତା'ପରେ ବ୍ରହ୍ମା ସଂକଳ୍ପ ଦ୍ୱାରା ହିଁ ମରୀଚି, ଅତ୍ରି, ଅଙ୍ଗିରସ, ପୁଲସ୍ତ୍ୟ, ଆଦି ଦଶ ପୁତ୍ରଙ୍କୁ ଉତ୍ପନ୍ନ କଲେ ଏବଂ ତାଙ୍କୁ କହିଲେ ତୁମେ ସମସ୍ତେ ସୃଷ୍ଟି କୁ ବୃଦ୍ଧି କର।

ଗୋଟିଏ ସ୍ଥାନରେ ବର୍ଣ୍ଣନ ଅଛି ଯେ, ସୃଷ୍ଟି ନିର୍ମାଣ ସମୟରେ ବ୍ରହ୍ମା ଦେବୀ ସରସ୍ୱତୀଙ୍କୁ ରଚନା କଲେ। ସରସ୍ୱତୀ ତେବେ ହେଇଗଲେ ତାଙ୍କର କନ୍ୟା। କିନ୍ତୁ ସେ ତାଙ୍କ ଉପରେ ମୋହିତ ହେଇଗଲେ। ଏହା ଦେଖି ତାଙ୍କର ପୁତ୍ର ମରୀଚି ଆଦି ଋଷି ମାନେ ତାଙ୍କୁ ବୁଝେଇ କହିଲେ – ଆପଣ କିପରି ଏପରି ଅନର୍ଥକାରୀ ସଂକଳ୍ପ କରୁଛନ୍ତି। ଏପରି ତ ପୂର୍ବରୁ କୌଣସି ବ୍ରହ୍ମା କରିନାହାଁନ୍ତି। ଲୋକମାନେ ଏପରି ବର୍ଣ୍ଣନା ପଢ଼ି ଭ୍ରମିତ ହୋଇଯାଆନ୍ତି। ସେମାନେ ଭାବନ୍ତି -ସ୍ୱୟଂ ବ୍ରହ୍ମା ଆଉ ଏପରି କଥା ! ଇଏ କି କାମ ? ଦେଖନ୍ତୁ ଭଗବାନ ନାରାୟଣ ତାଙ୍କୁ ଆର୍ଶୀବାଦ ଦେଇଥିଲେ ଯେ ମୋ ମାୟା ତୁମକୁ ମୋହିତ କରିବ ନାହିଁ। ତେଣୁ ପୁରାଣର ଏହି କଥା ଗୁଡ଼ିକୁ ବିଚାରପୂର୍ବକ ବୁଝିବାର ଆବଶ୍ୟକତା  ରହିଛି। ଏହି ପ୍ରସଂଗ ରେ କୁହାଯାଇଛି ଯେ, ଆମକୁ ନିଜ ମନ ଉପରେ କେବେ ହେଲେ ବିଶ୍ୱାସ କରିବା ଉଚିତ୍ ନୁହେଁ। ଆମେ କାହା ଉପରେ ହେଲେ ମୋହିତ ହୋଇପାରିବା। **'ବଲ୍‌ବାନ୍ ଇନ୍ଦ୍ରିୟଗ୍ରାମଃ ବିଦ୍ୱାଂସମପି କର୍ଷତି'**– ବିଦ୍ୱାନ ମାନେମଧ ମୋହିତ ହୋଇ ଯାଆନ୍ତି, ସେମାନେ କାହା ଉପରେ ବି ମୋହିତ ହେଇ ପାରିବେ।

ଦେଖନ୍ତୁ ବ୍ରହ୍ମା କଣ ? ସୂକ୍ଷ୍ମ ସମଷ୍ଟି ହିଁ ବ୍ରହ୍ମାଙ୍କ ଶରୀର । ତେଣୁ ତାଙ୍କ ଠାରୁ ସମଷ୍ଟିର ସମସ୍ତ ସଂସ୍କାର ବ୍ୟକ୍ତ ହୁଅନ୍ତି, ସମଷ୍ଟି ସଂସ୍କାର ହିଁ ତାଙ୍କର ଉପାଧି ଅଟେ। ତେଣୁ ସୃଷ୍ଟିରେ ଏପରି ଲୋକ -ଯିଏ କାହା ଉପରେ ହେଲେ ମଧ ମୋହିତ ହୋଇଯିବେ – ହେବେ ନା ନାହିଁ ? ଏମିତି କହି ପାରିବାନି ଯେ ନା ହେଇନଥିବେ। ମହା ଭୟଙ୍କର ଲୋକ ହୋଇଛନ୍ତି। ତାଙ୍କ ମନରେ ମଧ ସଂସ୍କାର ପ୍ରକଟ ହୁଅନ୍ତି। ଆମ ସ୍ୱପ୍ନରେ ମଧ

ସେଇମିତି ପ୍ରକଟ ହୁଅନ୍ତି କି ନା ? ସେଥିରେ ଖରାପ ସଂସ୍କାର ମଧ୍ୟ ଥାଆନ୍ତି। ଯିଏ ସଂସ୍କାର ର ଭଣ୍ଡାର, କୋଷ, ସେଇଠୁ ସମସ୍ତ ସଂସ୍କାର ପ୍ରକଟ ହେବେ, ସୃଷ୍ଟି ପ୍ରକଟ ହେବ। ତେଣୁ କାମ, କ୍ରୋଧ ଆଦି ସଂସ୍କାର ପ୍ରକଟ ହେଲେ। ବେଦ, ଉପନିଷଦ, ଇତିହାସ- ପୁରାଣ, ବିଦ୍ୟା, ବ୍ୟାହୃତି, ପ୍ରଣବ ଅକ୍ଷର, ସ୍ୱର, ଯଜ୍ଞ, ଦାନ, ତପ, ଧର୍ମ, ଆଶ୍ରମ ଆଦି ସମସ୍ତେ ବ୍ରହ୍ମାଙ୍କ ଦ୍ୱାରା ହିଁ ପ୍ରକଟିତ ହୋଇଛନ୍ତି।

ଭଗବାନ୍ ନାରାୟଣଙ୍କ ଠାରୁ ଶକ୍ତି ପ୍ରାପ୍ତ କରି, ବ୍ରହ୍ମା ଅନେକ ପ୍ରକାରର ସୃଷ୍ଟି ରଚନା କରନ୍ତି। ତଥାପି ଯେତେବେଳେ ସେ ଦେଖିଲେ ଯେ ମାନସ ସୃଷ୍ଟି ରହି ପାରୁନି, ସେ ଅନୁଭବ କଲେ ଯେ ଭୌତିକ ଆଧାର ବିନା ଏହି ସୃଷ୍ଟି ସ୍ଥିର ହୋଇ ରହି ପାରିବ ନାହିଁ। ସୃଷ୍ଟିର ଅଧିକ ବିସ୍ତାର ହେଇ ପାରୁନି - ଏଥି ପାଇଁ ସେ ଚିନ୍ତିତ ଥିଲେ। ଏହି ବିଷୟରେ ଭାବୁ-ଭାବୁ ତାଙ୍କ ଶରୀର ଦୁଇ ଭାଗରେ ବିଭକ୍ତ ହୋଇଗଲା। ଏବଂ ସେହି ଭାଗରୁ ମନୁ ଏବଂ ଶତରୂପା ପ୍ରକଟ ହେଲେ। ସେତେବେଳେ ବ୍ରହ୍ମା ତାଙ୍କୁ ଆଦେଶ ଦେଲେ ଯେ ତୁମେମାନେ ସୃଷ୍ଟିର ବିସ୍ତାର କର।

## ବରାହ ଅବତାର

ମନୁ ଭଗବାନ ବ୍ରହ୍ମାଙ୍କୁ ନମସ୍କାର କରି କହିଲେ, "ଆପଣଙ୍କ ଆଦେଶ ପାଳନ ନିମନ୍ତେ ମୁଁ ପ୍ରସ୍ତୁତ, କିନ୍ତୁ ଆମକୁ ଆଗ ରହିବା ପାଇଁ ସ୍ଥାନ ଦିଅନ୍ତୁ।" ଏମିତି ବି ହୁଏ କି ନାହିଁ? ଆଜିକାଲି ପୁଅ କୁ ଖାଲି ବାହାକଲେ ଚଳିବନି, ତା ପାଇଁ ଫ୍ଲାଟ ବି ଦବାକୁ ପଡୁଛି। ତା ମା' ବାପାଙ୍କ ଚିନ୍ତା ଯେ ପୁଅ ପାଇଁ ଘରଟେ ବି ଦରକାର। କହିଲେ ପୃଥିବୀକୁ ତ ହିରଣ୍ୟାକ୍ଷ ନାମକ ଅସୁର ରସାତଳକୁ ନେଇଗଲାଣି, ଆଉ ତ କୋଉଠି ରହିବା ପାଇଁ ଜାଗା ଖଣ୍ଡେ ନାହିଁ। କ'ଣ କରିବା ? ବ୍ରହ୍ମା ମଧ୍ୟ ଚିନ୍ତିତ ହୋଇଗଲେ ଯେ ହିରଣ୍ୟାକ୍ଷ କୁ ତ ମୁଁ ନିଜେ ହିଁ ବରଦାନ ଦେଇଛି, ମୁଁ ତ ତା'ର କିଛି କରିପାରିବିନି। ସେ କଥା ଆଗକୁ ଆସିବ। ବ୍ରହ୍ମା ଚିନ୍ତିତ ଥିବା ବେଳେ ତାଙ୍କ ନାକରୁ ଗୋଟିଏ ଛୋଟ ବରାହ ବାହାରିଲା। ଶୁଣିଲେ ଆମକୁ ଲାଗୁଛି ଯେ ପୁରାଣ ରେ କେମିତି କଥା ସବୁ ଲେଖା ହୋଇଛି କେଜାଣି, ଗୁରୁ ଶିଷ୍ୟ ପରମ୍ପରାରେ ଜ୍ଞାନ ପ୍ରାପ୍ତି ନ ହେବା ପର୍ଯ୍ୟନ୍ତ ଲାଗେ ଯେ କେଜାଣି କେମିତି ଯାଡୁ ସ୍ୟାଡୁ ଗୁଡ଼େ କଥା ଲେଖିଛନ୍ତି। ଦେଖୁ ଦେଖୁ ସେହି ଛୋଟ ବରାହ ଟି ଗୋଟିଏ ବିଶାଳକାୟ ହାତୀ ଭଳି ହୋଇଗଲା, ତଥା ସେଠୁ ଖସିଗଲା। ସେଠୁ ଯାଇ ସିଧା ସମୁଦ୍ରରେ ପ୍ରବେଶ କଲା। ସମୁଦ୍ର ଭିତର କୁ ଯାଇ ପୃଥିବୀ କୁ ଉଠାଇ ଉପରକୁ ଆଣିବା ମାତ୍ରେ ହିରଣ୍ୟାକ୍ଷ ତାକୁ ବାଧା ଦେଇ ମାରିବାକୁ

ଲାଗିଲା । କିନ୍ତୁ ବରାହ -ଭଗବାନ ତା ପୂର୍ବରୁ ପୃଥିବୀକୁ ସମୁଦ୍ରରୁ ବାହାର କରି ରଖିଥିଲେ, ତାକୁ ସ୍ଥାପିତ କରିଦେଲେ । ସେହି ବରାହ ଅବତାର ଦ୍ୱାରା ହିରଣ୍ୟାକ୍ଷ ବଧ ହେଲା, ତାପରେ ସବୁ ଦେବତା, ଋଷି-ମୁନି ସମସ୍ତେ ବରାହ ଭଗବାନଙ୍କୁ ସ୍ତୁତି କରିବାକୁ ଲାଗିଲେ ।

**ଜିତଂ ଜିତଂ ତେଽଜିତ ଯଜ୍ଞଭାବନ**

**ତ୍ରୟୀଂ ତନୁଂ ସ୍ୱାଂ ପରିଧୁନ୍ୱତେ ନମଃ ।**

**ଯଦ୍ରୋମଗର୍ତ୍ତେଷୁ ନିଲିଲ୍ୟୁରଧ୍ୱରା -**

**ସ୍ତସ୍ମୈ ନମଃ କାରଣସୂକରାୟ ତେ ॥ (୩.୧୩.୩୪)**

ଆପଣ ଜିତିଗଲେ, । '**ନମଃ କାରଣସୂକାରାୟ**' । ଆପଣ କାରଣ ସୂକର ଅଟନ୍ତି । କାରଣସୂକରର ଦୁଇଟି ଅର୍ଥ ଗୋଟିଏ ହେଲା -ଯିଏ ବରାହ ରୂପରେ -ସୁକର ରୂପରେ, କାର୍ଯ୍ୟ ରୂପରେ ଦେଖା ଯାଉଛନ୍ତି କିନ୍ତୁ ସେ କାର୍ଯ୍ୟ ନୁହଁ - ସମସ୍ତ ଜଗତର କାରଣ ଅଟନ୍ତି । ତା ଅର୍ଥ ଶୁକର ରୂପରେ ଦେଖା ଯାଉଥିଲେ ମଧ୍ୟ ସେ ଜଗତର କାରଣ । ଅନ୍ୟ ଅର୍ଥଟି ହେଲା ସେ କୌଣସି କାରଣ ପାଇଁ ଶୂକର ବନିଥିଲେ ମଧ୍ୟ ଶୂକର ନୁହଁନ୍ତି । ଶୂକର ରୂପରେ ଦିଶୁଥିଲେ ମଧ୍ୟ ଜଗତର ଆଦି କାରଣ ଅଟନ୍ତି, ସମସ୍ତେ ତାଙ୍କର ପ୍ରଶଂସା କଲେ, ସ୍ତୁତି କଲେ ।

ଏବେ ଏହି ପ୍ରସଂଗକୁ ଟିକିଏ ବିସ୍ତୃତ ଭାବେ ଦେଖିବା । ନାକରୁ ଶୂକର ପ୍ରକଟ ହେଲେ, ଏଇଟା କ'ଣ ? କି କଥା ଇଏ ? ଏହାର ରହସ୍ୟ ହେଲା ଯେ ଆକାଶ ର ଗୁଣ ଶବ୍ଦ, ବାୟୁର ସ୍ପର୍ଶ, ଅଗ୍ନିର ରୂପ, ଜଳ ର ରସ ଏବଂ ପୃଥିବୀର ଗନ୍ଧ । ଆଚ୍ଛା ଗନ୍ଧ କୁ କେମିତି ଗ୍ରହଣ କରନ୍ତି ? ନାକ ଦ୍ୱାରା କି ନାହିଁ ? ତା' ପାଇଁ ତ କିଛି ଅନ୍ୟ ଉପାୟ ନାହିଁ । ଇନ୍ଦ୍ରିୟ ଗୁଡ଼ିକୁ ଭଗବାନ ଏମିତି ତିଆରି କରିଛନ୍ତି ଯେ ଗୋଟିଏ ଇନ୍ଦ୍ରିୟ ଦ୍ୱାରା ଗୋଟିଏ ବିଷୟ ଗ୍ରହଣ କରିହେବ, ଅନ୍ୟ ବିଷୟର ନୁହଁ । ତେଣୁ ଏହି ପୃଥିବୀ ହେଲା ଗନ୍ଧବତୀ । ଯଦି ଭଗବାନ୍‌ଙ୍କୁ ପୃଥିବୀର ଉଦ୍ଧାର କହିବାକୁ ପଡ଼ିବ ତାହାହେଲେ ସେ ପୃଥିବୀ ପ୍ରେମୀ ହେଇ ଆସିବେ କି ନାହିଁ ? ଦେଖନ୍ତୁ, ପୃଥିବୀ କୁ ସବୁଠାରୁ ବେଶୀ କିଏ ଭଲପାଏ - ଶୂକର । ଟିକିଏ ବିଚାର କରି ଦେଖନ୍ତୁ । ତା ନାମ ଶୂକର କାହିଁକି ହେଲା ? କାରଣ - "**ସୂ ସୂ କରୋତି ଇତି ସୂକରଃ**" । ସେ ସୁଁ ସୁଁ କରେ । ତାକୁ କେବେ ମନ ଦେଇ ଦେଖିଛନ୍ତି ? ତା ବେକ ପୃଥିବୀ ଆଡ଼କୁ ଥାଏ, କେତେବେଳେ ବି ଉପର କୁ ଉଠେନି । ସେ ମୁଣ୍ଡ ତଳକୁ ପୋତି ଚାଲୁଥାଏ । ପୃଥିବୀର ସବୁଠାରୁ ଅଧିକ ମଇଳା -

ତ୍ୟାଜ୍ୟ ଅଂଶକୁ ମଧ୍ୟ ନିଜର ଭକ୍ଷ୍ୟ କରିନିଏ। ସେଇଥିରୁ ଜଣାପଡ଼େ ଯେ, ପୃଥିବୀ ପ୍ରତି ତାର ପ୍ରେମ କେତେ। ଏଠାରେ ତତ୍ତ୍ୱ କୁ ବୁଝିବାକୁ ପଡ଼ିବ। ଗାଈ ର ଛୁଆ ହେଲା ବେଳେ ସେ ମଧ୍ୟ ବହୁତ ମଇଳା ହୋଇ ଥାଏ କିନ୍ତୁ ଗାଈ ସବୁ ମଇଳା ଚଟି ସଫା କରିଦିଏ। ତାହା କ'ଣ ? ଖାଲି ପ୍ରେମର ଅଭିବ୍ୟକ୍ତି ଆଉ କିଛି ନୁହଁ।

ନିଜ ଛୁଆ ଆପଣଙ୍କ ଉପରେ ମଇଳା କରିଦେଲେ ବି ଆପଣଙ୍କୁ ଖରାପ ଲାଗେ କି ? ଆପଣ ତାକୁ ପିଟନ୍ତି କି ? ଥରେ ମୁଁ ଜଣେ ବାପାଙ୍କୁ କହି ଦେଲି ଛି କି ଗନ୍ଧିଆ ପିଲା। ତା' ବାପା କହିଲେ - ସ୍ୱାମୀଜୀ ଏହି ଦିନଟି କୁ ଦେଖିବା ପାଇଁ ତ ମୁଁ ବାହା ହେଲି । ଆପଣ ଯାକୁ ଗନ୍ଧିଆ ପିଲା କହୁଛନ୍ତି ? ଏହା ର ଅର୍ଥ ହେଲା ଏଇଟା ହିଁ ପ୍ରେମ।

ଦେଖନ୍ତୁ ପୃଥିବୀର ଗୁଣ ହେଲା ଗନ୍ଧ, ଆଉ ଗନ୍ଧର ଗ୍ରହଣ ନାକ ଦ୍ୱାରା ହୁଏ। ତେଣୁ ପୃଥିବୀ ର ଉଦ୍ଧାର କରିବାକୁ ହେଲେ ପୃଥିବୀ ର ପ୍ରେମୀ -ଶୁକର ହେଇ ଆସିବାକୁ ପଡ଼ିବ ଯାହାର ପ୍ରଧାନ ହେଲା ନାକ। ତେଣୁ ଏଠାରେ କୁହାଯାଇଛି ଯେ ବ୍ରହ୍ମାଙ୍କ ନାକରୁ ଭଗବାନ ବରାହ ରୂପରେ ପ୍ରକଟ ହେଲେ, ଯାହାଦ୍ୱାରା ଜଣା ଗଲା ଯେ ସେ ପୃଥିବୀ ପ୍ରେମୀ। ପୃଥିବୀ ର ଉଦ୍ଧାର ସେ ନିଜେ କରିବେ। ଏହା ମଧ୍ୟ ଦର୍ଶାଇଦିଆଯାଇ ଗଲା ଯେ ମୀନ ହେଉ ବା କଚ୍ଛପ ରୂପ ହେଉ ଭଗବାନ ଯେମିତି ସେମିତି ଥାଆନ୍ତି। ଜଣେ ହିଁ ଅଲଗା ଅଲଗା ରୂପରେ ଆସନ୍ତି। କବୀର ଦାସ ଗୋଟିଏ ସୁନ୍ଦର ପଦ ଲେଖିଛନ୍ତି ଯାହାର ଶେଷରେ ଲେଖା ହୋଇଛି-

**ଠାକୁର ଦ୍ୱାରେ ବ୍ରାହ୍ମଣ ବୈଠା ମକ୍କା ମେଁ ଦରବେସା।**

**କହତ କବୀର ସୁନୋ ଭଇ ସାଧୋ ହରି ଜୈସେକା ତୈସା ॥**

**ସାଧୋ ହରି କୋ ହର ମେଁ ଦେଖା....**

**'ସାଧୋ ହରି କୋ ହର ମେଁ ଦେଖା'**। ହରି ଙ୍କୁ ପ୍ରତ୍ୟେକ ରୂପରେ ଦେଖିଲେ। ସେ ଅଲଗା ଅଲଗା ରୂପରେ ଆସନ୍ତି - କେବେ ମୀନ ତ କେବେ କଚ୍ଛପ ହେଇ ତ କେବେ ବରାହ ହୋଇ। କିନ୍ତୁ ପ୍ରତ୍ୟେକ ରୂପରେ - "ହରି ଜୈସେ କା ତୈସା, ସେ ସମାନ ରୂପରେ ରହନ୍ତି। ତେଣୁ କୁହାଗଲା ଯେ, 'ନମଃ କାରଣ ସୂକରାୟ' ଏହା ବେଦାନ୍ତର କଥା। ଭଗବାନ ବରାହ ରୂପରେ ପୃଥିବୀ ର ଉଦ୍ଧାର କରନ୍ତି କାରଣ ଏହି କାର୍ଯ୍ୟ ପାଇଁ ସେହିଁ ଯୋଗ୍ୟ।

## ଦିତି ଙ୍କ ଯାଚନା

ହିରଣ୍ୟାକ୍ଷଙ୍କ ସାଂଗରେ ଭଗବାନଙ୍କ ଯୁଦ୍ଧ ହେଲା, ଏମତି ଶୁଣିଲେ ଯେମିତି ଆମ ମନରେ ସେହି ବିଷୟରେ ଅଧିକା ଶୁଣିବା ପାଇଁ ଇଚ୍ଛା ହେଉଛି , ଠିକ୍ ସେମିତି ବିଦୁରଙ୍କ ମନରେ ମଧ୍ୟ ଜିଜ୍ଞାସା ଜାତ ହେଲା, ତେଣୁ ସେ ପ୍ରଶ୍ନ କଲେ ଯେ ହିରଣ୍ୟାକ୍ଷ କାହିଁକି ପୃଥିବୀକୁ ରସାତଳକୁ ନେଇ ଯାଇଥିଲା ? ଭଗବାନ କାହିଁକି ଅବତାର ନେଲେ ? କାହିଁକି ଯୁଦ୍ଧ କରିଲେ ଏହା ସବୁ ମୋତେ କହନ୍ତୁ। ମୈତ୍ରେୟ ଋଷି କହିବା ଆରମ୍ଭ କଲେ।

**ଦିତିର୍ଦାକ୍ଷାୟଣୀ କ୍ଷତ୍ତର୍ମାରୀଚଂ କଶ୍ୟପଂ ପତିମ୍। (୩.୧୪.୭)**

କଶ୍ୟପ ଋଷିଙ୍କ ସହିତ ଦିତି ଏବଂ ଅଦିତି ଉଭୟଙ୍କର ବିବାହ ହୋଇଥିଲା। **'ଦିତି'** ଶବ୍ଦର ଅର୍ଥ ହେଲା - ଯିଏ ଖଣ୍ଡ ଖଣ୍ଡ କରିଦେବ - ସେ ଦିତି। ଆଉ **'ଅଦିତି'** ର ଅର୍ଥ ହେଲା ଯିଏ ଖଣ୍ଡ - ବିଖଣ୍ଡ କରିବ ନାହିଁ। ତେଣୁ ଦିତି ଙ୍କ ପୁତ୍ର ହେଲେ **'ଦୈତ୍ୟ'** - ସବୁ ଅସୁର ମାନେ ଏବଂ ଅଦିତି ଙ୍କ ପୁତ୍ର ହେଲେ **'ଆଦିତ୍ୟ'** ସବୁ ଦେବତାମାନେ। ଦିତି ଓ ଅଦିତି ଦୁଇ ଭଉଣୀ ଏବଂ କଶ୍ୟପ ଋଷିଙ୍କ ପତ୍ନୀ ମଧ୍ୟ। କଶ୍ୟପ ପ୍ରଜାପତି, ଯାହାଙ୍କ ପାଖରୁ ସମ୍ପୂର୍ଣ୍ଣ ସୃଷ୍ଟିର ଉତ୍ପତ୍ତି ହୋଇଛି।

ଥରେ ସନ୍ଧ୍ୟା ସମୟରେ କଶ୍ୟପଋଷି ସଂଧ୍ୟାବନ୍ଦନ ପାଇଁ ବସିଥିଲେ। ସେ ସମୟରେ ଦିତିଙ୍କ ମନରେ ଭୟଙ୍କର କାମବାସନା ଜାଗୃତ ହେଲା। କଶ୍ୟପ ଋଷିଙ୍କୁ ସେ କହିଲେ ମୋ ଇଚ୍ଛା ପୂର୍ଣ୍ଣ କରନ୍ତୁ। କଶ୍ୟପ କହିଲେ ତୁମ ଇଚ୍ଛା ପୂର୍ତ୍ତି ପାଇଁ ଏହି ସଂଧ୍ୟାସମୟ ଅନୁପଯୁକ୍ତ। ଏହି ସମୟରେ ରୁଦ୍ରାଦି ଦେବତା ବିଚରଣ କରନ୍ତି। ଏହି ସମୟରେ ଏପରି କର୍ମ ଅଧର୍ମ। ଏହା ଦ୍ୱାରା ସେମାନେ ରୁଷ୍ଟ ହେଇଯାଆନ୍ତି। ଏହା ଯୋଗ୍ୟ ସମୟ ନୁହଁ। କିନ୍ତୁ **'କାମାତୁରାଣାଂ ନ ଭୟଂ ନ ଲଜ୍ଜା'**। ଥରେ କାମନା ଆସିଗଲେ ନା ଭୟ ନା ଲଜ୍ଜା ଲାଗେ। ପରେ ଭୟ ଏବଂ ଲଜ୍ଜା ଆସେ। କିନ୍ତୁ ସେ ସମୟରେ ନୁହଁ। ସେ ସଂଧ୍ୟା ବନ୍ଦନା କରିବା ସମୟରେ ଦିତି ତାଙ୍କ ଉତ୍ତରୀୟ ବସ୍ତ୍ର ଟାଣିବାକୁ ଲାଗିଲେ। କାଶ୍ୟପ ଋଷି ଭଗବାନଙ୍କୁ ନମସ୍କାର କଲେ। ଭାବିଲେ, କେମିତି ସ୍ତ୍ରୀ ଇଏ, ଏତେ ବୁଝେଇଲେ ବି ବୁଝୁନି। ଲାଗୁଛି ଭଗବାନ ଏଥିରେ ଆପଣଙ୍କର କୌଣସି ପ୍ରବଳ ସଂକଳ୍ପ ଅଛି, ଅନ୍ୟଥା ଏଇ କଥା ଦିତି କାହିଁକି ବୁଝୁପାରୁନି। ତା ପାଖରେ କ'ଣ ଏତିକି ବୁଦ୍ଧି ନାହିଁ।

ଏହା ଭାବି ସଂଧ୍ୟା ବନ୍ଦନା ରୁ ଉଠି ଗଲେ।

ପ୍ରକୃତରେ କଶ୍ୟପ ଋଷି ଅତ୍ୟନ୍ତ ବିରକ୍ତ ଥିଲେ। ତାଙ୍କ ପାଖରେ କୌଣସି କଥାର କିଛି ମୂଲ୍ୟ ନ ଥିଲା। ଆଗକୁ ଆମେ ଦେଖିବା ସେ କିପରି ଅନାସକ୍ତ ଥିଲେ। ଦିତିର କାମନା ସେ ପୂରଣ କଲା ପରେ ଦିତି ଙ୍କୁ ଲାଜବି ମାଡ଼ିଲା ଏବଂ ଭୟ ମଧ୍ୟ ହେଲା ଯେ, ମୁଁ କେତେ ବଡ଼ ଭୂଲ କଲି। ସେ ନିଜ ପତିଙ୍କ ପାଖକୁ ଯାଇ ପଚାରିଲେ, "ଭଗବନ୍ ! ମୋ ଗର୍ଭସ୍ଖଳିତ ନ ହେଉ।" ଋଷି କହିଲେ -ତୁମେ ମୋ କଥା ଶୁଣିଲ ନାହିଁ, ଏବଂ ବଡ଼ ଭୁଲ କାମ କଲ। ତଥାପି ତୁମର ଗର୍ଭନଷ୍ଟ ହେବନି କିନ୍ତୁ ତୁମର ଦୁଇଟି ପୁତ୍ର ହେବେ ଯେଉଁମାନେ ଅତ୍ୟନ୍ତ ଭୟଙ୍କର ଅସୁର ହେବେ। କଶ୍ୟପ ଋଷି ଅନାସକ୍ତ ଥିଲେ। କହିଲେ, "ତୁମର ଇଚ୍ଛା ଥିଲା, ମୁଁ ପୂର୍ଣ୍ଣକଲି। କିନ୍ତୁ ମନେ ରଖ ଭୁଲ କାମର ପରିଣାମ ମଧ୍ୟ ଭୁଲ ହେବ। ଅତ୍ୟନ୍ତ ଭୟଙ୍କର ପୁତ୍ର ହେବେ ଏବଂ ସମ୍ପୂର୍ଣ୍ଣ ଦୁନିଆ କୁ କଷ୍ଟ ଦେବେ। ଯେତେବେଳେ ସେମାନେ ସମସ୍ତଙ୍କୁ କଷ୍ଟ ଦେବେ ସେତେବେଳେ ଭଗବାନ ସ୍ୱୟଂ ତାଙ୍କର ବଧ କରିବା ପାଇଁ ଆସିବେ। ଅନ୍ୟ କେହି ତାଙ୍କୁ ମାରି ପାରିବେ ନାହିଁ।

ଏହି କଥା ଶୁଣି ଦିତି ପ୍ରସନ୍ନ ହେଲେ। କୋଉ କଥାରେ ପ୍ରସନ୍ନ ହେଲେ ? ଅସୁର ପୁତ୍ର ହେବେ, ଏହା ଶୁଣି ନୁହଁ। କହିଲେ ମୋ ପିଲାମାନଙ୍କୁ ଭଗବାନ ମାରିବେ, ତା ହେଲେ ଠିକ୍ ଅଛି। କେବଳ ଏମାନଙ୍କ ଉପରେ ବ୍ରାହ୍ମଣଙ୍କ ଅଭିଶାପ ନ ପଡୁ। ବ୍ରାହ୍ମଣଙ୍କ ଅଭିଶାପ ପଡ଼ିଲେ ନର୍କକୁ ଯିବେ। ଯିଏ ଭଗବାନଙ୍କ ହାତରେ ମରେ ତାର ଉଦ୍ଧାର ହୁଏ। ମୁଁ ଭୁଲ କରିଛି, ପିଲାମାନେ ଦୁଷ୍ଟ ହେବେ, ଏହାତ ଠିକ୍ କଥା । ଏବେ କ'ଣ କରାଯିବ ? ଭଗବାନଙ୍କ ପ୍ରତି ତାଙ୍କର ଭକ୍ତି ଦେଖି କଶ୍ୟପ ଋଷି ପ୍ରସନ୍ନ ହେଲେ ଏବଂ କହିଲେ, "ତୁମେ ନିଜ କୃତକର୍ମ ପ୍ରତି ପଶ୍ଚାତାପ କରୁଛ, ଏବଂ ଭଗବାନଙ୍କ ପ୍ରତି ତୁମର ଭକ୍ତି ଅଛି ଦେଖି ମୁଁ ତୁମକୁ ଏକ ବରଦାନ ଦେଉଛି। ତୁମ ପିଲାମାନେ ତ ଅସୁର ହେବେ, କିନ୍ତୁ ସେମାନଙ୍କ ମଧ୍ୟରୁ ଜଣଙ୍କର ପୁତ୍ର ମହାଭାଗବତ, ପ୍ରହ୍ଲାଦ ହେବେ।" ସେ କେମିତି ହେବେ ?

**ଅଲଂପଟ ଶୀଲଧରୋ ଗୁଣାକରୋ**

**ହୃଷ୍ଟଃ ପରର୍ଦ୍ଧ୍ୟା ବ୍ୟଥିତୋ ଦୁଃଖିତେଷୁ।**

**ଅଭୂତଶତ୍ରୁର୍ଜଗତଃ ଶୋକହର୍ତା**

**ନୈଦାଧୀକଂ ତାପମିବୋଡୁରାଜଃ ॥ (୩.୧୪.୪୮)**

ଅଲଂପଟ - ଅର୍ଥାତ୍ ସେ ବିଷୟ ମାନଙ୍କରେ ଟିକିଏ ବି ଆସକ୍ତ ହେବନାହିଁ। ଚରିତ୍ରବାନ୍ ହେଇଥିବ ଏବଂ ଗୁଣର ଆଗାର ହୋଇଥିବ। ଅନ୍ୟର ଉନ୍ନତି ଦେଖି ପ୍ରସନ୍ନ ହେଉଥିବ, କିନ୍ତୁ ଅନ୍ୟର ଦୁଃଖରେ ଦୁଃଖୀ ହେବ। ଜଗତରେ ତାର କେହି ଶତ୍ରୁ ନଥିବେ। ସେ ଲୋକ ମାନଙ୍କର ଶୋକ ଦୂର କରିବ। ଚନ୍ଦ୍ରମା ପରି ଚମକୁଥିବ, ଏବଂ ତା ସହିତ ସୌମ୍ୟ ଏବଂ ଶୀତଳ ମଧ୍ୟ ହେବ ଅର୍ଥାତ୍ ସମସ୍ତଙ୍କର ତାପ କୁ ଦୂର କରିବ।

ଏତେ ସବୁ ବିଶେଷତା ସମ୍ପନ୍ନ ସେହି ପ୍ରହ୍ଲାଦ ମହାଭଗବତ ହେବ। ଏବେ ଦିତି ଅତ୍ୟନ୍ତ ପ୍ରସନ୍ନ ହେଲେ କାରଣ ଜଣେ ମହାଭାଗବତ  ଘରେ ଜନ୍ମ ନେବ। ସେ ସମ୍ପୂର୍ଣ୍ଣ କୁଳର ଉଦ୍ଧାର କରି ଦେବ। ଏକୋଇଶ ପୀଢ଼ିର ଉଦ୍ଧାର କରି ଦେବ।

ଏବେ ଦିତି ଗର୍ଭ ଧାରଣ କଲେ। ତାଙ୍କ ଗର୍ଭରେ ଦୁଇଟି ପୁତ୍ର ଥିଲେ। ଗର୍ଭାବସ୍ଥାରେ ତାଙ୍କର ତେଜ ଦେଖି ଦେବତା ମାନେ ଡରିଗଲେ। ଏପର୍ଯ୍ୟନ୍ତ ପୁତ୍ରମାନେ ଜନ୍ମ ନେଇ ନ ଥିଲେ, ତା ପୂର୍ବରୁ ଅମଙ୍ଗଳ ହେବାକୁ ଲାଗିଲା। ଦେବତା ମାନଙ୍କ ମନ ଉଦ୍‌ବିଗ୍ନ ହେବାକୁ ଲାଗିଲା, ବ୍ୟାକୁଳ ହୋବାକୁ ଲାଗିଲା, ତାଙ୍କୁ ଡର ମଧ୍ୟ ମାଡ଼ିଲା। ତେଣୁ ସବୁ ଦେବତା ମାନେ ବ୍ରହ୍ମାଙ୍କ ପାଖକୁ  ଯାଇ ପଚାରିଲେ, ଭଗବାନ୍ ଜଗତରେ କ'ଣ ସବୁ ଘଟୁଛି, ଆମେ କିଛି ବି ବୁଝିପାରୁ ନାହୁଁ। ଆମେ ତ ବ୍ୟାକୁଳ ହେଇଯାଇଛୁ। ଏହାର କାରଣ କ'ଣ ? ବ୍ରହ୍ମା ହସିବାକୁ ଲାଗିଲେ। କହିଲେ - ଏହାର କାରଣ ହେଲା ଦିତି ଙ୍କ ଗର୍ଭରେ ଦୁଇଟି ସନ୍ତାନ ଅଛନ୍ତି। ସେମାନେ ମହାଭୟଙ୍କର ଅସୁର ହେବେ। ସେମାନେ ତପସ୍ୟା କରି ମୋ ଠାରୁ ବରଦାନ ପ୍ରାପ୍ତ କରିବେ। ଏଥିରେ ମୁଁ ବି କିଛି ପାରିବି ନାହିଁ। ଏବେ ଏହି କଥାର ବିସ୍ତୃତ ବର୍ଣ୍ଣନକୁ ଦେଖିବା।

# ଜୟ-ବିଜୟ ଙ୍କୁ ଆସୁରୀ ଯୋନିର ପ୍ରାପ୍ତି

ଭଗବାନ ନାରାୟଣ ବୈକୁଣ୍ଠ ଲୋକରେ ରୁହନ୍ତି । ଶ୍ରୀ ଦେବୀ ଲକ୍ଷ୍ମୀ ତାଙ୍କର ପତ୍ନୀ । ତାଙ୍କର ଦୁଇଟି ଦ୍ୱାରପାଳ -ଜୟ ଏବଂ ବିଜୟ । ଯେଉଁମାନେ ଭଗବାନଙ୍କର ଶ୍ରେଷ୍ଠ ଉଚ୍ଚକୋଟୀର ଭକ୍ତ ସେହି ମାନଙ୍କୁ ଏପରି ସ୍ଥାନ ପ୍ରାପ୍ତ ହୁଏ । ପ୍ରକୃତରେ **'ଜୟ - ବିଜୟର'** ଅର୍ଥ ହେଲା, **'ଇନ୍ଦ୍ରିୟ ଜୟ ଏବଂ ମନୋବିଜୟ'** । ଦେଖନ୍ତୁ ଭଗବାନ୍ ଙ୍କ ପାଖରେ ବି ସେହି ମାନେ ହିଁ ଦ୍ୱାରପାଳ ହେବେ ନା ! ଭଗବାନଙ୍କ ପାଖରେ, ତାଙ୍କୁ ଦେଖା କରିବା ପାଇଁ, ଏମିତି ଯାଇ ହେବ କି ? ସେ ପଚାରିବେ ନିଜ ଇନ୍ଦ୍ରିୟ ଉପରେ ବିଜୟ ପ୍ରାପ୍ତ କରିଛ ? ନିଜ ମନ ଉପରେ ବିଜୟ ପ୍ରାପ୍ତ କରିଛ ? ତେଣୁ ଯେଉଁ ପର୍ଯ୍ୟନ୍ତ ଜୟ-ବିଜୟଙ୍କର ଅନୁମତି ନ ମିଳିଛି, ସେ ପର୍ଯ୍ୟନ୍ତ ଭଗବତ୍ ଧାମରେ ପ୍ରବେଶ ମିଳି ପାରିବ ନାହିଁ । ଏପରି ନିୟମ ଅଛି । କିନ୍ତୁ ଏମାନଙ୍କ ମନରେ ଅଭିମାନ ଆସିଲା । କେବେ କେବେ ଆମର ମଧ୍ୟ ମନୋଜୟ ଏବଂ ଇନ୍ଦ୍ରିୟ ଜୟ ର ଅଭିମାନ ହୁଏ । ଆମକୁ ଲାଗେ ଆମେ ଇନ୍ଦ୍ରିୟ ମାନଙ୍କୁ ଜିତି ଯାଇଛୁ । ମନକୁ ଜିତି ଯାଇଛୁ । ଏମିତି ଭାବିବା ମାତ୍ରକେ ବୈକୁଣ୍ଠରୁ ତଳକୁ ଖସି ପଡ଼ିବା ।

ପୁରାଣର ଏହି କାହାଣୀ ଗୁଡ଼ିକ ଅତ୍ୟନ୍ତ ରୋଚକ । ସେଥିରେ ଶ୍ରେଷ୍ଠ ମନୋବିଜ୍ଞାନ ଏବଂ ଆଧ୍ୟାତ୍ମିକଜ୍ଞାନ ଭରି ରହିଥାଏ । ଜୟ-ବିଜୟଙ୍କୁ ବଡ଼ ଅଭିମାନ ହୋଇଗଲା ଯେ ଆମ ଅନୁମତି ନ ନେଇ କେହି ଭିତରକୁ ଯାଇପାରିବେ ନାହିଁ । ଥରେ ମହାଲକ୍ଷ୍ମୀ ଙ୍କୁ ମଧ୍ୟ ଯିବାକୁ ଦେଲେନି, ମହାଲକ୍ଷ୍ମୀ ରାଗି ଗଲେ ଯେ ମୋତେ ବି ଯିବାକୁ ଦଉନାହାଁନ୍ତି ! ସେ ରାଗିକରି ଭିତରକୁ ଗଲେ ଏବଂ ଭଗବାନଙ୍କୁ କହିଲେ ଆଗ ଏ ଦୁହିଁଙ୍କୁ ବାହାର କରନ୍ତୁ । ଭଗବାନ କହିଲେ – କ'ଣ ହେଲା ? ଆଗ କୁହତ । ମୋତେ ବି ବାଧା ଦେଉଛନ୍ତି । ଭଗବାନ କହିଲେ ଏଇଟା ତ ବଡ଼ ଭୁଲ କଥା । କିନ୍ତୁ ତୁମ କହିବାରେ ବାହାର କରିଦେଲେ ସମସ୍ତେ କହିବେ ଇଏ ସ୍ତ୍ରୀ ବୋଲକାରା । ଏମିତି ହୋଇ ପାରିବନି । ତେଣୁ ଯେମିତି ସେମାନେ କୌଣସି ବ୍ରାହ୍ମଣ ବା ସନ୍ଥଙ୍କ ଅପମାନ କରିବେ, ସାଙ୍ଗେ ସାଙ୍ଗେ ମୁଁ ସେମାନଙ୍କୁ ବାହାର କରିଦେବି । ଭଗବାନଙ୍କ କହିବାର ଅର୍ଥ ହେଲା ଯେ ମୋତେ ବା ମୋର କୌଣସି ବନ୍ଧୁ-ବାନ୍ଧବଙ୍କ କଥାରେ ସେମାନଙ୍କୁ ବାହାର କରିଦେଲେ ଲୋକେ କହିବେ ଖାଲି ନିଜ ବନ୍ଧୁ -ବାନ୍ଧବଙ୍କ କଥା ଭାବୁଛନ୍ତି । ଅନ୍ୟ ମାନଙ୍କୁ ବାଧା ଦେଲା ବେଳକୁ ତ ଆପଣଙ୍କୁ କିଛି ଲାଗୁନି । ଏଇଟା ଆଦୌ ସମ୍ମାନର କଥା ହେବନାହିଁ । କିନ୍ତୁ ସାଧୁ -ସନ୍ଥ

ମାନଙ୍କର ଅପମାନ ପାଇଁ ବାହାର କରିଦେଲେ, ଏହି କଥା ସିଦ୍ଧ ହେବ ଯେ ଭଗବାନ ସାଧୁ-ସନ୍ଥ ମାନଙ୍କୁ କେତେ ସମ୍ମାନ ଦିଅନ୍ତି।

ମହାଲକ୍ଷ୍ମୀ ମଧ୍ୟ ଅପେକ୍ଷା କରିବାକୁ ଲାଗିଲେ ଯେ କେବେ ସେମାନେ ସାଧୁ ସନ୍ଥଙ୍କର ଅପମାନ କରିବେ। କାରଣ ଦେଖନ୍ତୁ ଯଦି ଜଣେ ଥରେ କାହାଉପରେ ଚିଡ଼ିଗଲା, ଆଉ ତାକୁ ବାରମ୍ବାର ଦେଖିବାକୁ ପଡ଼େ ତେବେ ବହୁତ ରାଗ ଲାଗେ। ଯେବେ ବି ଲକ୍ଷ୍ମୀ ବାହରକୁ ଯିବେ, ବା ଭିତରକୁ ଆସିବେ ସେ ଦୁହିଁଙ୍କୁ ଦେଖିବାକୁ ପଡୁଥିବ। ଆଉ ସେମାନେ କ'ଣ ଭାବୁଥିଲେ ଜାଣିଛନ୍ତି? ସେମାନେ ଭାବିଲେ ଭଗବାନ ତ ଆମକୁ କିଛି କହିଲେନି, ତା ଅର୍ଥ ଆମେ କିଛି ଭୁଲ୍ କରିନାହୁଁ। ତାଙ୍କ ସାହାସ ଆହୁରି ବଢ଼ିଗଲା। ସେମାନେ ତ ପୁରା ସିଂହ ପାଲଟିଗଲେ।

ଏବେ ଭଗବାନ୍ ଙ୍କ ସଂକଳ୍ପ ଯୋଗୁଁ ସନତ୍ କୁମାର ଙ୍କୁ ବୈକୁଣ୍ଠ ଯିବାକୁ ଇଚ୍ଛା ହେଲା। ସନତ୍ କୁମାର ଭାଇମାନେ ଛୋଟ ଛୋଟ ଦିଶନ୍ତି, କିନ୍ତୁ ସେମାନେ ଦୀର୍ଘକାଳର, ଦୀର୍ଘାୟୁ। ଏମାନେ ଚାରିଭାଇ - ସନକ, ସନନ୍ଦନ, ସନତ, ସନାତନ। ୟାଙ୍କର ବୈକୁଣ୍ଠ ଯିବା ପାଇଁ କାହିଁକି ଇଚ୍ଛା ହେଲା? ଭକ୍ତ ସେମାନେ, ତାଙ୍କୁ ଭଲା କିଏ ବାଧା ଦେବ? ବୈକୁଣ୍ଠ ଲୋକର ଶୋଭା ଦେଖି ଦେଖି -ଏଠି ବୈକୁଣ୍ଠ ର ଦୀର୍ଘ ବର୍ଣ୍ଣନ ଦିଆ ଯାଇଛି- ସେମାନେ ବୈକୁଣ୍ଠରେ ପହଞ୍ଚିଲେ, ସେଠାରେ ଦ୍ୱାରପାଳ ଦେଖି ଭାବିଲେ ଭଗବାନଙ୍କ ପାଖକୁ ଯିବା ପାଇଁ ମଝିରେ ଦ୍ୱାରପାଳ କ'ଣ ଦରକାର? ଦ୍ୱାରପାଳ ମାନେ ବାଡ଼ି ଦ୍ୱାରା ତାଙ୍କୁ ବାଧା ଦେଇ କହିଲେ, " ଏଇ ଆପଏଣ୍ଟମେଣ୍ଟ ଅଛି କି?" ସେମାନେ କହିଲେ "ଏପଏଣ୍ଟମେଣ୍ଟ? ଭଗବାନ ଙ୍କ ଧାମ କୁ ଆସିବା ପାଇଁ ଏପଏଣ୍ଟମେଣ୍ଟ? ଆମକୁ ଅନ୍ୟ କେଉଁଠି ହେଲେ ଅନ୍ୟ କେହି ବି ବାଧା ଦିଅନ୍ତି ନାହିଁ। ଏଠି କାହିଁକି ବାଧା ଦେଉଛ?" ଜୟ-ବିଜୟଙ୍କୁ ତ ଅଭିମାନ ହୋଇଯାଇଥିଲା। ପ୍ରକୃତରେ ସେମାନେ ନିରାଭିମାନୀ। ସେଥିପାଇଁ ତ ସେମାନଙ୍କୁ ବୈକୁଣ୍ଠ ରେ ଭଗବାନଙ୍କ ପାଖରେ ସ୍ଥାନ ମିଳିଛି। ଯେଉଁ ଗୁଣ ପାଇଁ ତାଙ୍କୁ ସେଠି ସ୍ଥାନ ମିଳିଛି ସେହି ଗୁଣର ଅହଂକାର ସେମାନଙ୍କୁ ହେଇଗଲା। ତେଣୁ ସେମାନଙ୍କ ମନରେ ଏହି ରାକ୍ଷସୀବୃତ୍ତି ଆସିଗଲା ନା? ଆଚ୍ଛା, ସେମାନେ ତ ଯାହା ଅପରାଧ କଲେ ତ କଲେ, କିନ୍ତୁ ସନତ୍ କୁମାର ଙ୍କୁ ମଧ୍ୟ ଅତ୍ୟଧିକ କ୍ରୋଧ ଆସିଗଲା।

ଦେଖନ୍ତୁ, ସନତ୍କୁମାର ଆଦି ପ୍ରକୃତରେ ପରମ ଜ୍ଞାନୀ, ତାଙ୍କୁ କାହିଁକି କ୍ରୋଧ ଆସିବ? କିନ୍ତୁ ସେ ରାଗିଗଲେ, ବଡ଼ ଗଡ଼ବଡ଼ ହୋଇଗଲା। ସେ ଜୟ -ବିଜୟଙ୍କୁ ଅଭିଶାପ ଦେଇ ଦେଲେ। ତୁମେ ମାନେ ଏଠି ବାଧା ଦେଉଛ? ଯାଅ, ତୁମେ ରାକ୍ଷସ

ହୋଇ ପତିତ ହୁଅ। ତୁମେ ବୈକୁଣ୍ଠରେ ରହିବା ଯୋଗ୍ୟ ନୁହେଁ। ବୈକୁଣ୍ଠ କୁ ସିଏ ହିଁ ଆସି ପାରିବ ଯିଏ ମାୟା ମୁକ୍ତ ହୋଇଥିବ। ଅହଂକାର ତ ମାୟା ର ଲକ୍ଷଣ। ତେଣୁ ଯେତେବେଳେ ନାରଦଙ୍କୁ ମୋହ ହେଇଯାଇଥୀଲା ଯେ ମୁଁ ମାୟା କୁ ଜିତିଗଲି, ସେ କେମିତି ଖସି ପଡ଼ିଲେ। ଏମିତି ତ ହୁଏ। ଦୁହେଁ ଡରି ଗଲେ କାରଣ ସନତ କୁମାରମାନଙ୍କ ପରି ଋଷିଙ୍କ ଅଭିଶାପ ଅତ୍ୟନ୍ତ କଠୋର। ଏମିତି ବି ହବନି ଯେ ଅଭିଶାପ କେବେ ଫଳିବ ଓ ଆଉ କେବେ ଫଳିବନି। (ଥରେ ମୁଁ ଜଣେ ଲୋକ କୁ ଅଭିଶାପ ଦେଲି ଯେ ତୁ ନର୍କକୁ ଯା, ସେ ଲୋକ କହିଲା ମୁଁ ଆପଣଙ୍କୁ ସେଇଠି ଭେଟିବି। ମୋ ଅଭିଶାପ ଦ୍ୱାରା କାହାର କିଛି କ୍ଷତି ହେବନି) । ସନତ କୁମାର ଙ୍କ ଅଭିଶାପ ତ ଅତ୍ୟଧିକ ପ୍ରବଳ। ତେଣୁ ସେମାନେ କ୍ଷମା ମାଗିବାକୁ ଲାଗିଲେ।

ଭଗବାନ ବିଷ୍ଣୁ ଏତେ ପାଟିତୁଣ୍ଡ ଶୁଣି ବାହାର କୁ ଆସିଲେ। ଭଗବାନଙ୍କୁ ଦେଖି ଜୟ-ବିଜୟ ଡରିଗଲେ ଏବଂ ସନତ୍ କୁମାର ଙ୍କୁ ମଧ୍ୟ ବହୁତ ଖରାପ ଲାଗିଲା। ସନତ୍ କୁମାର ଭାବିଲେ ଯେ, ଠିକ୍ ଅଛି ଯେ,ଏମାନେ ଭୁଲ କରିଦେଲେ କିନ୍ତୁ ଏଠାରୁ ସେମାନଙ୍କୁ ବାହାର କରିବାକୁ ଆମେ କିଏ। ଇଏ ତ ସେଇକଥା  ହେଲା ଯେମିତି  ଯଦି କିଏ ପ୍ରଧାନମନ୍ତ୍ରୀ ଙ୍କୁ ଭେଟିବାକୁ ଯିବ, ଆଉ ସେଠି ତାଙ୍କ ସେକ୍ରେଟାରୀ ତାକୁ ବାଧା ଦିଏ, ତ ସେ ସେକ୍ରେଟାରୀ ଙ୍କୁ ବରଖାସ୍ତ କରିଦେବ। ଆରେ, ସେ ତ ପ୍ରଧାନମନ୍ତ୍ରୀ ଙ୍କ ନିବାସ ସ୍ଥାନର ସଚିବ। ତାଙ୍କୁ ବରଖାସ୍ତ କରିବାର ଅଧିକାର ତୁମକୁ ଦେଲା କିଏ ? ଯଦି କିଛି କହିବାର ଅଛି ତ ପ୍ରଧାନମନ୍ତ୍ରୀଙ୍କୁ କୁହ ଯେ ଏମିତି ଏମିତି କଥା। ତେଣୁ ସନତ୍ କୁମାରଙ୍କୁ ମଧ୍ୟ ଅନୁଭବ ହେଲା ଯେ ଆମର ବଡ଼ ଭୁଲ ହୋଇଗଲା। ଆମର ଭଗବାନଙ୍କୁ ଜଣେଇବା ଉଚିତ୍ ହୋଇଥାନ୍ତା। ତା'ପରେ କ'ଣ କରାଯିବ ତାହା ଭଗବାନ ଭାବିଥାନ୍ତେ। ତେଣୁ ସେ ଭଗବାନଙ୍କୁ ପ୍ରଣାମ କରି କ୍ଷମା ମାଗିବାକୁ ଲାଗିଲେ।

ଭଗବାନଙ୍କ ଶୀଳତା ଦେଖନ୍ତୁ, ସନତକୁମାରଙ୍କୁ କହିଲେ, ଆପଣ ମାନଙ୍କ ପରି ବ୍ରାହ୍ମଣ ଦେବତା ଏଠାରେ ପଦାର୍ପଣ କଲେ। ଆପଣ ମୋ ପାଇଁ ଭଗବାନ। ଜଗତରେ ଲୋକମାନେ ମୋର ପୂଜା କରନ୍ତି, କିନ୍ତୁ ମୁଁ ତ ବ୍ରାହ୍ମଣମାନଙ୍କୁ ପୁଜା କରେ। ମୁଁ ବ୍ରାହ୍ମଣ ମାନଙ୍କର ମୁଖରେ ଥାଏ। ଆପଣଙ୍କୁ କୌଣସି ପ୍ରକାରର କଷ୍ଟ ହେବା ଉଚିତ୍ ନୁହଁ। ଯଦି ମୋର ଏହି ହାତ ମଧ୍ୟ ଆପଣଙ୍କୁ କୌଣସି କଷ୍ଟ ଦେବ ତ ମୁଁ ଏହାକୁ କାଟି ଫୋପାଡ଼ି ଦେବି ! ଭଗବାନ ପୁଣି କହିଲେ- ଏମାନେ ଅସୁର ପରି କାମ କଲେ ତ ଆପଣ ଅଭିଶାପ ଦେଲେ, ଠିକ୍ ହେଲା। ଦେଖନ୍ତୁ ଭଗବାନ ବି ଏକଥା କହିଲେ ନାହିଁ ଯେ ଏମାନେ ମୋ ସେବକ, ଆପଣ ଏମାନଙ୍କୁ ଅଭିଶାପ ଦେବାକୁ କିଏ ? ଆପଣ ମୋତେ

କହିଥାନ୍ତେ । କହିଲେ - ଆପଣ ଠିକ୍ କଲେ । ପୁଣି ଭଗବାନ ଆହୁରି ଗୋଟିଏ ଅତ୍ୟନ୍ତ ଶ୍ରେଷ୍ଠ କଥା ମଧ୍ୟ କହିଲେ - ଯଦି ସେବକ ଦ୍ୱାରା କୌଣସି ଅପରାଧ ହୁଏ ତେବେ କେବଳ ସେବକ କୁ ହିଁ ନୁହଁ ; ସ୍ୱାମୀ କୁ ମଧ୍ୟ ତା'ର ଦଣ୍ଡ ମିଳିବା ଉଚିତ୍ । କାରଣ ଯେତେବେଳେ ସେବକର ଏତେ ସାହାସ ବଢ଼ିଯିବ ତାର ଅର୍ଥ ହେଲା ଯେ ସ୍ୱାମୀ ର ଦୃଷ୍ଟି ଏପଟକୁ ନାହିଁ । ଏହା ତ କର୍ତ୍ତବ୍ୟର ଉପେକ୍ଷା ହେଲା । ସେବକ କୁ ଠିକ୍ କରି ରଖିବା ସ୍ୱାମୀର ହିଁ କର୍ତ୍ତବ୍ୟ । ପୁଣି କହଲେ ତାଙ୍କୁ ଦଣ୍ଡ ମିଳିଲା ତ ମୋତେ ମଧ୍ୟ ଦଣ୍ଡ ମିଳିବା ଆବଶ୍ୟକ । ଆପଣ ତାଙ୍କୁ କହିଲେ ଯେ ତିନି ଜନ୍ମ ପର୍ଯ୍ୟନ୍ତ ତୁମକୁ ଅସୁର ହେବାକୁ ପଡ଼ିବ ତ ସେମାନେ ତିନି ଜନ୍ମ ନେବେ । ଆଉ ସେମାନେ ଯେତେବେଳେ ତଳକୁ ଯିବେ ତ ମୁଁ ବି ଏଠାରେ ରହି ପାରିବି ନାହିଁ । ମୁଁ ମଧ୍ୟ ତଳକୁ ଯିବି । ସେମାନେ ତିନି ଜନ୍ମ ନେଲେ ମୁଁ ଋରି ଜନ୍ମ ନେବି ।

ଏକଥା ଶୁଣି ସନତ କୁମାର ଡରିଗଲେ । ବାରମ୍ବାର କ୍ଷମା ମାଗିବାକୁ ଲାଗିଲେ । ଭଗବାନ ଆପଣ ଏପରି କଥା କୁହନ୍ତୁ ନାହିଁ । ଆମ ବୁଦ୍ଧିକୁ କ'ଣ ହୋଇଯାଇଥିଲା କେଜାଣି, ତାହା ମୋହିତ ହେଇଯାଇଥିଲା । ଆଉ ଆମେ ଅଭିଶାପ ଦେଇ ଦେଲୁ । ଭଗବାନ ! ଆପଣ ଆମର ଏହି ଅଭିଶାପକୁ କାଟି ଦିଅନ୍ତୁ । ଭଗବାନ କହିଲେ -କାଟି ଦେବା ପାଇଁ କଣ ଆମେ କଥା କହୁ । ସେ କଣ ଭାରତ ସରକାର ଯେ ସଂଶୋଧନ କରି ଚାଲିଥିବେ ପୁଣି ତାକୁ କାଟି ଦେଉଥିବେ । ଆପଣ ଥରେ କହିଦେଲେ ତ ହେଇଗଲା, ଆଉ ତା'ପରେ ମୁଁ ଯାହା କହିଲି ତା ମଧ୍ୟ ଠିକ୍ । ବାରମ୍ବାର ତ ସଂବିଧାନ ରେ ପରିବର୍ତ୍ତନ କରାଯାଏନି । ଓ ହୋ ! ଏବେ କଣ ହେବ ? ଏବେ ଏମାନେ ତିନି ଜନ୍ମ ନେବେ ଏବଂ ମୁଁ ଋରିଜନ୍ମ ନେବି । ସଂକ୍ଷେପରେ ଯିଏ ଜୟ-ବିଜୟ ଥିଲେ, ସେହିମାନେ ଅଭିଶାପ ଯୋଗୁଁ ହିରଣ୍ୟାକ୍ଷ- ହିରଣ୍ୟକଶିପୁ ହେଲେ ।

ସନତ୍ କୁମାରଙ୍କ ଅଭିଶାପ କୁ ସିଦ୍ଧ କରିବା ପାଇଁ ସ୍ତ୍ରୀ-ପୁରୁଷଙ୍କ ଭୂଲ ସଂଯୋଗ, ଅଧର୍ମ ହେବା ଅନିବାର୍ଯ୍ୟ ଥିଲା, ତେଣୁ ଏପରି ପିଲା ଜନ୍ମ ନେଲେ । ତେଣୁ ଦିତି ଙ୍କ ମନରେ ଅସମୟରେ କାମ ବାସନା ଜନ୍ମ ନେଲା । ଦେଖନ୍ତୁ, ଦୁନିଆରେ କାର୍ଯ୍ୟ-କାରଣ ପରମ୍ପରା ଦେଖିଲେ ଦୀର୍ଘ ପରମ୍ପରା ମିଳିବ । ତେଣୁ ତାଙ୍କ ମନରେ ଏପରି ବୃତ୍ତି ଆସିଲା । କଶ୍ୟପ ଋଷି ଙ୍କ ମନରେ ମଧ୍ୟ ତାଙ୍କ ବୃତ୍ତି ପୂର୍ତ୍ତିର କାମନା ହେଲା । ଅଧର୍ମ ଦ୍ୱାରା ପୁତ୍ର ଦୁଇଟି ସେଇଠି ଜନ୍ମ ହେଲେ । ହିରଣ୍ୟାକ୍ଷ ଏବଂ ହିରଣ୍ୟକଶିପୁ । ହିରଣ୍ୟାକ୍ଷ ର ଉଦ୍ଧାର ପାଇଁ ଭଗବାନ **ବରାହ** ଅବତାର ନେଲେ । ହିରଣ୍ୟକଶିପୁ ର ଉଦ୍ଧାର ପାଇଁ ଭଗବାନ୍ **ନୃସିଂହ** ଅବତାର ନେଲେ । ଏହି ପ୍ରସଙ୍ଗକୁ ଆମେ ସପ୍ତମ ସ୍କନ୍ଧ ରେ ଦେଖିବା । ତା'ପରେ

ଦୁହେଁ ରାବଣ – କୁମ୍ଭକର୍ଣ୍ଣ ରୂପେ ଜନ୍ମ ନେଲେ। ସେତେବେଳେ ଭଗବାନ **ଶ୍ରୀରାମ ଚନ୍ଦ୍ର** ରୂପେ ଜନ୍ମ ନେଲେ। ଅନ୍ତିମ ଜନ୍ମରେ ସେ ଦୁହେଁ ଶିଶୁପାଳ – ବକ୍ରଦନ୍ତ ହେଲେ ଏବଂ ଭଗବାନ **ଶ୍ରୀକୃଷ୍ଣ** ଅବତାର ନେଇ ସେମାନଙ୍କର ଉଦ୍ଧାର କଲେ।

ଏବେ ଏହି ପ୍ରସଙ୍ଗକୁ ଭଲ ଭାବରେ ବୁଝିବା ଦରକାର। ଯେଉଁଠି ଅଭିମାନ ଆସିଲା ଆମେ ବୈକୁଣ୍ଠ ରୁ ଖସିବା ଯୋଗ୍ୟ ହୋଇଯିବା। ସନତ୍ କୁମାରଙ୍କୁ ସେଠି କ୍ରୋଧ ଆସିଗଲା, ଏହା ମଧ୍ୟ ଉଚିତ୍ ନ ଥିଲା। କିନ୍ତୁ ଭଗବାନଙ୍କ ଉଦାରତା ଦେଖନ୍ତୁ – ସେ ଏହି ଅଭିଶାପକୁ ସ୍ୱୀକାର କରି ନେଲେ ଏବଂ ନିଜକୁ ଦଣ୍ଡ ମଧ୍ୟ ଦେଲେ। ଭଗବାନ ଚାହିଁ ଥିଲେ ଏହି ଅଭିଶାପକୁ ଖାରଜ ମଧ୍ୟ କରି ପାରିଥାଆନ୍ତେ, କାଟି ମଧ୍ୟ ପାରି ଥାଆନ୍ତେ। କିନ୍ତୁ କାଟିଲେନି । ତେଣୁ ପ୍ରଥମ ଦୃଷ୍ଟିରେ ଦେଖିଲେ ଲାଗିବ ଯେ ଭଗବାନ ନିଜ ଭକ୍ତ, ସେବକଙ୍କୁ ହିଁ ତଳକୁ ଫୋପାଡ଼ି ଦେଲେ। କିନ୍ତୁ ସତକଥା ଯେ ନିଜ ଭକ୍ତ ମାନଙ୍କୁ କେବେହେଲେ ଛାଡ଼ନ୍ତିନି। ସେ ତ କହନ୍ତି ସେମାନେ ଆସୁରୀ ଯୋନି ପାଇଲେ ମଧ୍ୟ, ମୁଁ ସେମାନଙ୍କୁ ଛାଡ଼ିଦେବା ଲୋକ ନୁହଁ। ମୁଁ ମଧ୍ୟ ତାଙ୍କ ପଛେ –ପଛେ ଚାଲିଲି।

ଦେଖନ୍ତୁ ଭଗବାନ ସନତ୍ କୁମାରଙ୍କ ଅଭିଶାପ କୁ ଯଥାସ୍ଥିତି ରଖିଲେ। ଏହା ଦେଖି ଲାଗୁଛି ଯେ, ସନତ କୁମାରଙ୍କୁ ଭଗବାନ ବେଶୀ ଭଲ ପାଉଛନ୍ତି। ଆଉ ଜୟ-ବିଜୟଙ୍କୁ ମୁକ୍ତ କରିବାକୁ ଚାହୁଁ ନାହାଁନ୍ତି। କିନ୍ତୁ ବିଚାର କଲେ ଜଣାଯାଏ ଯେ ଜୟ-ବିଜୟଙ୍କୁ ମଧ୍ୟ ଭଗବାନ କମ ଭଲ ପାଉ ନ ଥିଲେ। ନିଜ କହିଲେ –ଏମାନେ ରାକ୍ଷସ ହେଲେ, ଏମାନଙ୍କୁ ଉଦ୍ଧାର କରିବା ପାଇଁ ମୁଁ (ଭଗବାନ) ନିଜେ ଯିବି। ଅର୍ଥାତ୍ – " ନ ମେ ଭକ୍ତଃ ପ୍ରଣଶ୍ୟତି।" (ଭ.ଗୀତା ୯.୩୧) ଭଗବାନ କହିଲେ – ମୋ ଭକ୍ତ କେବେହେଲେ ନଷ୍ଟ ହୁଏ ନାହିଁ। ସେ ଆସୁରୀ ଯୋନୀକୁ ଚାଲିଗଲେ ମଧ୍ୟ ମୁଁ ତାକୁ ଉଦ୍ଧାର କରିବି, ଛାଡ଼ିଦେବି ନାହିଁ। କେତେ ବଢ଼ିଆ କଥା। ଦ୍ୱିତୀୟ କଥା ହେଲା ଯେ ଭଗବାନଙ୍କ ଭକ୍ତ ରାକ୍ଷସ ହୋଇଗଲେ ମଧ୍ୟ ସେ ଏତେ ଶକ୍ତିଶାଳୀ ହେବ ଯେ ମନୁଷ୍ୟ ଲୋକରେ ସମସ୍ତଙ୍କଠାରୁ ତା'ର ଶକ୍ତି ଅଧିକ ହୋଇଥିବା। ତେଣୁ ଜୟ-ବିଜୟ ଉଭୟେ ରାକ୍ଷସ ହଲେ ଏବଂ ଭଗବାନ୍ ମଧ୍ୟ ଅବତାର ଗ୍ରହଣ କଲେ। କୋଉ ଅବତାର ? ଉତ୍ତର ହେଲା – **ବରାହ ଅବତାର**।

ସନତ୍ କୁମାରଙ୍କୁ ବହୁତ ଖରାପ ଲାଗିଲା। କହିଲେ ଆମ ଯୋଗୁଁ ହିଁ ସବୁ ଅସୁବିଧା ହୋଇଗଲା। ଏବେ ଭଗବାନ ଅବତାର ନେବେ ତ ଆମେ ମଧ୍ୟ ଅବତାର ନେବୁ। ଏପରି କୁହାଯାଏ ଯେ ଜୟ-ବିଜୟ ଯେତେବେଳେ ହିରଣ୍ୟକଶିପୁ –ହିରଣ୍ୟାକ୍ଷ

ହୋଇ ଜନ୍ମ ନେଲେ ତ ସନତ୍ କୁମାର ପ୍ରହ୍ଲାଦ ରୂପରେ ଆସିଲେ। ସେମାନେ ରାବଣ-କୁମ୍ଭକର୍ଣ୍ଣ ହେଲେ ତ ସନତ କୁମାର ବିଭୀଷଣ ହୋଇ ଜନ୍ମ ନେଇଥିଲେ ଏବଂ ବାରମ୍ବାର ସେମାନଙ୍କୁ ଭକ୍ତିର ସ୍ମରଣ କରାଉ ଥିଲେ। ଆଉ ଯେତେବେଳେ ସେମାନେ ଶିଶୁପାଳ-ବକ୍ରଦନ୍ତ ହେଲେ ତ ସନତକୁମାର ଆଉ ଆସିଲେ ନାହିଁ। କାରଣ ତାଙ୍କୁ ଜଣା ଥିଲା ଯେ ଏହି ତୃତୀୟ ଜନ୍ମରେ ତାଙ୍କର ଉଦ୍ଧାର ହେବ। ଦେଖନ୍ତୁ ଭଗବାନ ଯଦି କାହାକୁ ମାରିବାକୁ ଚାହିଁବେ ତେବେ ତାଙ୍କର ମାରିବା ବି ତାରିବା ସହିତ ସମାନ। ତାର ଉଦ୍ଧାର ତ ହୋଇଯିବ ହିଁ ଯିବ, କିନ୍ତୁ ଦେଖନ୍ତୁ ଏଠି ଭଗବାନ ସନତ୍ କୁମାରଙ୍କୁ ମଧ୍ୟ କେତେ ସମ୍ମାନ ଦେଲେ। ଭଗବାନ ଥରେ ମାରି ଦେଲେ ତାଙ୍କର ମୁକ୍ତି ହେବନାହିଁ। ଭଗବାନ ସ୍ୱୟଂ ମାରିଲେ ମଧ୍ୟ ସେମାନଙ୍କୁ ତିନି ଥର ଜନ୍ମ ନେବାକୁ ପଡ଼ିବ। ଭକ୍ତ ର ବଚନ କୁ ଭଗବାନ କେତେ ସମ୍ମାନ ଦିଅନ୍ତି ଯେ ନିଜ ନିୟମକୁ ମଧ୍ୟ ନିଜେ କାଟି ପକେଇଲେ। କିନ୍ତୁ ସନ୍ଥ ବା ଭକ୍ତ ଯଦି କିଛି କହି ଦେଇଛନ୍ତି, ତ ସେ କଥା ସତ୍ୟ ହେବା ଜରୁରୀ। ଭଗବାନ ନିଜ କଥା କୁ ମଧ୍ୟ ସମ୍ମାନ ର ବିଷୟ କଲେନାହିଁ। ଭକ୍ତ ର କଥାର ସମ୍ମାନ ରହିବା ଦରକାର। ଏହି ପ୍ରସଂଗ ରେ ଏତେ ସବୁ କଥା ଜଣା ପଡ଼ିଲା।

## ହିରଣ୍ୟକଶିପୁ ଏବଂ ହିରଣ୍ୟାକ୍ଷଙ୍କ ଜନ୍ମ

ପୁଣି ବ୍ରହ୍ମା ଦେବତା ମାନଙ୍କୁ କହିଲେ – ଦିତି ଗର୍ଭରେ ଥିବା ହିରଣ୍ୟାକ୍ଷ ଏବଂ ହିରଣ୍ୟକଶିପୁ ଙ୍କ ଯୋଗୁଁ ଆପଣ ମାନଙ୍କୁ ଏହି କଷ୍ଟ ହେଉଛି। କିନ୍ତୁ ଚିନ୍ତା କରନ୍ତୁ ନାହିଁ, ଭଗବାନ ସବୁ ଠିକ୍ କରିଦେବେ। ହିରଣ୍ୟାକ୍ଷ ଏବଂ ହିରଣ୍ୟକଶିପୁଙ୍କ ଜନ୍ମ ହେଲା। ହିରଣ୍ୟକଶିପୁ ବଡ଼ ଭାଇ ଓ ହିରଣ୍ୟାକ୍ଷ ଛୋଟ ଭାଇ। ପରସ୍ପର ଭିତରେ ବହୁତ ଭଲପାଇବା ଥିଲା। ହିରଣ୍ୟାକ୍ଷ ର ଅର୍ଥ ହେଲା – ଅକ୍ଷ ମାନେ ଆଖି – ଯେ ଯାହାର ଆଖି ସବୁବେଳେ ସୁନା ଉପରେ ରହିଥାଏ ସେ ହିରଣ୍ୟାକ୍ଷ। ତାକୁ ଆଉ କିଛି ଦେଖାଯାଏ ନାହିଁ। ସୁନା ଦେଖିଲା ମାତ୍ରେ ଝାମ୍ପିନିଏ। ସେ ପୃଥିବୀକୁ ରସାତଳକୁ ନେଇଗଲା, ଯାର ଅର୍ଥ କଣ ? ପୃଥିବୀ ରେ ଯେତେ ଧନ ଅଛି ସବୁ ମୋର ଆଉ କାହାର ନୁହଁ। ସେ ଆଉ କାହାକୁ କିଛି ହେଲେ ନବାକୁ ଦେଉ ନଥିଲା। କାହାକୁ ଭୋଗ କରିବାକୁ ମଧ୍ୟ ଦେଉ ନଥିଲା। ତା ହାତରେ ସବୁବେଳେଳ ଗୋଟିଏ ଗଦା ରହୁଥିଲା। ସେ ଅତ୍ୟଧିକ ଭୟଙ୍କର ଥିଲା। କାରଣ ବ୍ରହ୍ମା ତାକୁ ବର ଦେଇ ଥିଲେ ଯେ ସୃଷ୍ଟିର କୋଣସି ପ୍ରାଣୀ ତାକୁ ମାରିପାରିବେ ନାହିଁ। ବାସ୍ ଗଦା ଧରି ସେ ବୁଲୁଥିଲା, ଯୁଦ୍ଧ କରିବାର ବାହାନା ଖୋଜୁଥିଲା ଯେ କାହାକୁ ମାରିବ। ଆଉ ସେ ଯେତେବେଳେ ସ୍ୱର୍ଗକୁ ଯାଉଥିଲା ଇନ୍ଦ୍ର ଆଦି ଦେବତା ସେଠାରୁ ପଳାଉଥିଲେ। ତା ସାମ୍ନାରେ କେହି ରହିପାରୁ ନ ଥିଲେ।

ଏହି ହିରଣ୍ୟାକ୍ଷ ଅତ୍ୟନ୍ତ ଲୋଭୀ, ଶକ୍ତିଶାଳୀ ଏବଂ କ୍ରୋଧୀ ଥିଲା ଏବଂ ହିରଣ୍ୟକଶିପୁ ଅତ୍ୟନ୍ତ କାମୀ ଏବଂ ଭୋଗୀ। କଶିପୁ ମାନେ ଶେଯ ଆଉ ହିରଣ୍ୟ ମାନେ ସୁନା। ଅର୍ଥାତ୍ ଯିଏ ସୁନାର ଶେଯ ଉପରେ ଶୋଇବ ସେ ହିରଣ୍ୟକଶିପୁ ଅର୍ଥାତ୍, ମହାକାମୀ-ଭୋଗୀ। ଦୁଇ ଭାଇ କାମ ଏବଂ ଲୋଭ ର ପ୍ରତୀକ। ହିରଣ୍ୟକଶିପୁ କାମ-ଭୋଗ ରେ ବୁଡ଼ିକରି ରହୁଥିଲା ତ ହିରଣ୍ୟାକ୍ଷ ଥିଲା ଲୋଭର ସାକାର ରୂପ। ନିଜ ଭାଇ ପାଇଁ ସେ ଚାରିଆଡୁ ଧନ ସଂଗ୍ରହ କରି ଆଣୁଥିଲା। ତାକୁ ଖାଲି ଯୁଦ୍ଧ କରିବା ପାଇଁ ଇଚ୍ଛା ହେଉଥିଲା। ସେ ଭାବୁଥିଲା ମୋ ପରି ଯୁଦ୍ଧ କଳାବାଲା ଆଉ କେହି ନାହାଁନ୍ତି। ଦିନେ ସେ ବରୁଣ ଦେବଙ୍କ ସହିତ ଯୁଦ୍ଧ କରିବା ପାଇଁ ସମୁଦ୍ର ଭିତରକୁ ଗଲା। ମିଛିମିଛିକା ତାଙ୍କ ଗୋଡ଼ତଳେ ପଡ଼ି ନମସ୍କାର କଲା ଆଉ କହିଲା, "ମହାରାଜ, ମୋ ସହିତ ଯୁଦ୍ଧ କରନ୍ତୁ। ବରୁଣ ଦେବ ବୁଢ଼ା ହୋଇଯାଇଥିଲେ। ତାକୁ ଦେଖି ଡରିଗଲେ। କହିଲେ ହିରଣ୍ୟାକ୍ଷ, ମୁଁ ତ ବୁଢ଼ା ହୋଇଗଲଣି, ତୁମ ସଙ୍ଗରେ ତ କେହି ହେଲେ ଯୁଦ୍ଧ କରିପାରିବେ ନାହିଁ। ସେ କହିଲା, "ତାହା ହେଲେ ମୁଁ କାହା ସାଙ୍ଗରେ ଯୁଦ୍ଧ କରିବି ?" ତାପରେ ବରୁଣ ଦେବ କହିଲେ ଯେଉଁ ଆଦି ପରମାତ୍ମା ଅଛନ୍ତି ସେ ତୁମ ସହିତ ଯୁଦ୍ଧ କରିବେ, ସେହିଁ କେବଳ ତୁମ ପାଇଁ ଯୋଗ୍ୟ, ସେ ତୁମକୁ ଭଲ କଥା ଶିଖେଇବେ। ସେ ତୁମରି ପାଇଁ ବିଶେଷଭାବେ ଆସିଛନ୍ତି ସେ ତୁମକୁ ଭଲ କଥା ଶିଖେଇବେ।

## ବରାହ ଭଗବାନଙ୍କ ସହିତ ହିରଣ୍ୟାକ୍ଷ ର ଯୁଦ୍ଧ

ଏହା ଶୁଣି ତାକୁ ଟିକେ ରାଗ ମାଡ଼ିଲା, ତଥାପି ସେ କହିଲା ସେ କିଏ ? ଆପଣ କେଉଁ ପରମାତ୍ମାଙ୍କ କଥା କହୁଛନ୍ତି ? ସେତେବେଳେ ନାରଦ ମଧ୍ୟ ସେଠାରେ ଆସି ପହଞ୍ଚିଲେ। ସେ ସବୁବେଳେ ପ୍ରସ୍ତୁତ ହେଇଥାଆନ୍ତି। କହିଲେ - ମୁଁ ତମକୁ କହୁଛି ସେ ପରମାତ୍ମା କିଏ ? ସେ ତ ଶୁକର ରୂପରେ ଆସିଛନ୍ତି ଆଉ ତମ ପୃଥିବୀକୁ ଉଠାଇ ନେଇ ଚାଲିଗଲେଣି। ନାରଦ ଙ୍କ କଥା ଶୁଣି ସେ ଖୁବ୍ ରାଗି ଗଲା। କାହିଁ ସେ ? ସେ ଦେଖିଲା ଭଗବାନ ପୃଥିବୀ କୁ ନିଜ ମୁହଁ ଉପରେ ଧରି ନେଇ ଚାଲିଯାଉଛନ୍ତି। ସେ ପଛରୁ ପାଟି କରି ଦୌଡ଼ି ଆସିଲା, "ଡରୁଆ, ଭୀରୁ, ରହ କୁଆଡ଼େ ଦୌଡ଼ି ପଳଉଛୁ। ମୋ ସହିତ ଯୁଦ୍ଧ କର"। କିନ୍ତୁ ଭଗବାନ ତା କଥା ଶୁଣିଲେନି, କାରଣ ବୁଦ୍ଧିମାନ ଲୋକଙ୍କ ସ୍ୱଭାବ ହେଲା ଯେ ସେମାନେ ଆଗ ନିଜ କାମ ପୁରା କରନ୍ତି। ଅନ୍ୟ ମାନେ ଫାଲତୁ ରେ ମଝିରେ-ମଝିରେ ୟାଡୁ- ସ୍ୟାଡୁ କହୁଥାନ୍ତି, ସେମାନେ ସେ ଗୁଡ଼ା ଶୁଣନ୍ତିନି। ଆଗ ନିଜ କାମ ସାରି ଦିଅନ୍ତି। ଏଠି ସେ ଭଗବାନଙ୍କୁ ଭୀରୁ, ଶଠ ଏବଂ ଦୁଷ୍ଟ ବୋଲି କହୁଛି। ଭଗବାନ ସବୁ ଗାଳି ସହନ କଲେ। ପୃଥିବୀ କୁ ସମୁଦ୍ର ଠାରୁ ଉପରେ ରଖି ତାକୁ ନିଜର

ଶକ୍ତି ପ୍ରଦାନ କଲେ ଯାହା ଦ୍ୱାରା ସେ ନିଜେ ନିଜକୁ ଧାରଣ କରିପାରିବ। ତାପରେ ପଛକୁ ବୁଲି ହିରଣ୍ୟାକ୍ଷକୁ କହିଲେ, "ଏବେ ଆସ, ତୁମ ପାଇଁ ତ ମୁଁ ଏଠାକୁ ଆସିଛି।" ସେ ଗଦା ଉଠାଇଲା ଏବଂ ଉଭୟଙ୍କ ମଧ୍ୟରେ ଯୁଦ୍ଧ ଆରମ୍ଭ ହେଲା। ଏଠାରେ ତାର ଅତ୍ୟନ୍ତ ସୁନ୍ଦର ବର୍ଣ୍ଣନା ଅଛି।

ସମସ୍ତେ ଦେବତା ମାନେ ଆକାଶରେ ଏକତ୍ରିତ ହୋଇଗଲେ। ସେମାନଙ୍କୁ ଏପରି ଦୃଶ୍ୟ ଦେଖିବାକୁ ଅତ୍ୟନ୍ତ ଭଲ ଲାଗେ। ଯେତେବେଳେ ଯେଉଁଠି ଯୁଦ୍ଧ ହେଲେ, ସେମାନେ ସମସ୍ତେ ଆକାଶରେ ଏକତ୍ରିତ ହୋଇ ଦେଖୁ ଥାଆନ୍ତି ଯେ ଆଗକୁ କ'ଣ ହେବ ? ଏବେ ବରାହ ଭଗବାନ ଏବଂ ହିରଣ୍ୟାକ୍ଷ ଯୁଦ୍ଧ କରିବାକୁ ଲଗିଲେ। ଉଭୟ ଉଭୟଙ୍କ ଉପରେ ପ୍ରହାର କରିବାକୁ ଲଗିଲେ। ଭଗବାନ ଗଦା ନେଇ ତାକୁ ମାରିବାକୁ ଗଲା ବେଳକୁ ସେ ଭଗବାନଙ୍କ ହାତରୁ ଗଦାକୁ ମଧ୍ୟ ଉଡ଼ାଇଦେଲା। ଯେତେବେଳେ ଭଗବାନଙ୍କ ହାତରୁ ଗଦା ପଡ଼ି ଯାଉଛି ସବୁ ଦେବତା ହା ହାକାର କରିବାକୁ ଲଗିଲେ ଯେ ଭଗବାନଙ୍କ ହାତରୁ ତ ଗଦା ଚାଲିଗଲାଣି, ତେବେ କଣ ହେବ ? ଦେଖନ୍ତୁ ହିରଣ୍ୟାକ୍ଷ ପାଖରେ ଆଘାତ ଦେବାର ସୁଯୋଗ ଥିଲା କିନ୍ତୁ ସେ କହିଲା, "ନିଜ ଶସ୍ତ୍ର ଉଠାଅ। ମୁଁ ନିଃଶସ୍ତ୍ର ଉପରେ ଆକ୍ରମଣ କରେ ନାହିଁ।"

ଭଗବାନ ତାର ପ୍ରଶଂସା କଲେ ଯେ ତୁ ତ ବଡ଼ ଧର୍ମ ଯୁଦ୍ଧ ଜାଣିବା ବାଲା। ଭଗବାନ ସଂକଳ୍ପ କଲେ ଏବଂ ସୁଦର୍ଶନ ଚକ୍ର ଚାଲି ଆସିଲା। ସୁଦର୍ଶନ ଚକ୍ର ଦ୍ୱାରା ତାର ଗଦା କଟିଗଲା। ସେ ତ୍ରିଶୂଳ ଫିଙ୍ଗିଲା, ତ୍ରିଶୂଳ ପଡ଼ିଗଲା। ସେ ଭାବିଲା ଯେ ଏବେ ସବୁ ସମାପ୍ତ ହୋଇଯିବ। ସେ ତ ରାକ୍ଷସ, ନିଜର ମାୟା ଦେଖାଇବାକୁ ଲାଗିଲା। ଭଗବାନ ତାର ମାୟାକୁ ମଧ୍ୟ ସୁଦର୍ଶନ ଚକ୍ର ଦ୍ୱାରା କାଟିଦେଲେ। ଦେଖନ୍ତୁ ତା'ର ନାମ କଣ -ସୁଦର୍ଶନ ଅର୍ଥାତ୍ ସୁନ୍ଦର ଦର୍ଶନ। ଭଗବାନଙ୍କ ଦର୍ଶନ ହେଲେ ମାୟା-ମୋହ ରହି ପାରିବେକି ? ତଥାପି ସେ ଭଗବାନଙ୍କ ଆଡ଼କୁ ଦୌଡ଼ି ଆସିଲା। ଏଠାରେ ଗୋଟିଏ ଅତି ଆଶ୍ଚର୍ଯ୍ୟ ଜନକ ଘଟଣା ଘଟିଗଲା। ଭଗବାନ ତା କାନମୁଣ୍ଡାରେ ଗୋଟିଏ ଚଟକଣି ପକାଇଲେ ଆଉ ସେ ଓଲଟା -ପୋଲଟା ହେଇ ପଡ଼ିଗଲା ଏବଂ ମରିଗଲା। ଦେଖନ୍ତୁ , କେତେ ଆଶ୍ଚର୍ଯ୍ୟର କଥା ଯେ ଯେଉଁ କାମ ଅସ୍ତ୍ର-ଶସ୍ତ୍ର ଦ୍ୱାରା ହୋଇ ପାରିଲା ନାହିଁ, ସେହି କାମ ଭଗବାନଙ୍କ ଗୋଟିଏ ଚଟକଣା କରିଦେଲା। ଭଗବାନ କହିଲେ - ମୋର ଗୋଟିଏ ହାତ ଅସ୍ତ୍ର-ଶସ୍ତ୍ର ଠାରୁ ଅଧିକ ଶକ୍ତି ଶାଳୀ। ମୋର ଅସ୍ତ୍ର-ଶସ୍ତ୍ରର ଆବଶ୍ୟକତା ନାହିଁ। ଗୋଟେ ଚୋଟରେ ସେ ମଲା। ଏହି ପରି ହିରଣ୍ୟାକ୍ଷର ବଧ ହେଲା। ହିରଣ୍ୟକଶିପୁର କଥା ଆମେ ଆଗକୁ ଦେଖିବା।

ହିରଣ୍ୟାକ୍ଷ ସହିତ ଯେତେବେଳେ ଯୁଦ୍ଧ ହେଲା ସେହି ସମୟରେ ଭଗବାନଙ୍କ ଲାଞ୍ଜ ଆଦି ଦ୍ୱାରା ସମୁଦ୍ରର ଜଳ ବାହାରି ଯାଇ ଉପରର ଲୋକ ଗୁଡ଼ିକରେ ପଡ଼ିବାରୁ ସେ ସମସ୍ତ ପବିତ୍ର ହୋଇଗଲେ। ଏହି **ବରାହ ଅବତାର** ଭଗବାନଙ୍କର **ଯଜ୍ଞାବତାର** ଅଟନ୍ତି। ବରାହ ଭଗବାନଙ୍କ ଅଂଗ -ପ୍ରତ୍ୟେଙ୍ଗରେ ଯଜ୍ଞ ସାମଗ୍ରୀ ଅଛି, ସେ ଯଜ୍ଞାବତାର, ଯଜ୍ଞସ୍ୱରୂପ। ସମସ୍ତେ ତାଙ୍କ ପ୍ରଶଂସା କଲେ, ତାଙ୍କର ସ୍ତୁତି କଲେ। ଏହି ପରି ମନୁ ମହାରାଜାଙ୍କ ପାଇଁ ସେ ପୃଥିବୀ କୁ ଉପରକୁ ଆଣି ରଖିଦେଲେ। ମଝିରେ ଆମେ ବରାହ ଅବତାର ର ପ୍ରସଂଗ ମଧ୍ୟ ଦେଖିଲେ। ଏବେ ଆମେ ପୁଣି ପୂର୍ବ ପ୍ରସଂଗ କୁ ଫେରିବା। ଦେଖନ୍ତୁ ଭଗବାନ ହିଁ ସବୁ କାମ କରନ୍ତି । ବ୍ରହ୍ମାଙ୍କୁ ଚିନ୍ତା ହେଲା ତ ଭଗବାନ ବରାହ ଅବତାର ନେଲେ ଏବଂ ପୃଥିବୀକୁ ପୁନଃ ସ୍ଥାପନ କଲେ।

ହିରଣ୍ୟାକ୍ଷ ବାଧା ଉତ୍ପନ୍ନ କଲା, ଅବରୋଧ କଲା, ତା ତାକୁ ବି ମାରି ଦେଲେ। ଆମେ ଯଦି ନିଜ ଜୀବନକୁ ମନଦେଇ ଦେଖିବା ତ ଜାଣିଯିବା ଯେ ଆମର ସବୁ କାର୍ଯ୍ୟ ମଧ୍ୟ ଭଗବାନ ହିଁ କରନ୍ତି। ଆମେ ବ୍ୟର୍ଥରେ ଅଭିମାନ କରୁ ଯେ ମୁଁ କଲି। ତେଣୁ ଚିନ୍ତା ମଧ୍ୟ ହୁଏ । ଦିଟା କଥା ହୁଏ- କାମ ହୋଇଗଲେ ଲାଗେ ଯେ ମୁଁ କଲି। ସେତେବେଳେ ଅହଂକାର ହୁଏ। କାମ ନ ହେଲେ -ଚିନ୍ତା କରୁ। ଅହଂକାର ଏବଂ ଚିନ୍ତା ଉଭୟ ମୂର୍ଖତା ର ଲକ୍ଷଣ। ତେଣୁ ଏହା ବୁଝିବାକୁ ହେବ ଯେ ସବୁକାମ ତ ଭଗବାନ ହିଁ କରୁଛନ୍ତି। ବୁଝିସାରି ପୁଣି ତା ଉପରେ ବିଶ୍ୱାସ କରିବାକୁ ହେବ। ଶ୍ରଦ୍ଧା କରିବାକୁ ପଡ଼ିବ।

## ଭଗବାନଙ୍କ ଜ୍ଞାନବତାର (କପିଳାବତାର)

ଆଗକୁ ବର୍ଣ୍ଣନ ଅଛି ଯେ ସ୍ୱାୟଂଭୁବ ମନୁ ଏବଂ ଶତରୂପାଙ୍କ ବିବାହ ହେଲା ଏବଂ ତାଙ୍କର ଦୁଇଟି ପୁତ୍ର ଏବଂ ତିନୋଟି କନ୍ୟା ହେଲେ । ଦୁଇଟି ପୁତ୍ର ହେଲେ ପ୍ରିୟବ୍ରତ ଏବଂ ଉତ୍ତାନପାଦ (ଯାହାଙ୍କ କଥା ଚତୁର୍ଥ ସ୍କନ୍ଧରେ ଆସିବ) ଏବଂ ତିନୋଟି କନ୍ୟା ହେଲେ ଦେବହୂତି, ଆକୂତି ଓ ପ୍ରସୂତି। ଦେବହୂତିଙ୍କ ବିବାହ କର୍ଦମ ଋଷି ଙ୍କ ସହିତ ହେଲା। ଏହିକଥା ମଧ୍ୟ ଆଗକୁ ଆସିବ। କୁହାଯାଏ ଯେ କର୍ଦମ ଋଷି ମହା ତପସ୍ୱୀ, ମହା ଯୋଗୀ ଥିଲେ। ବ୍ରହ୍ମା ତାଙ୍କୁ କହିଲେ ଯାଅ ପ୍ରଜା ଉତ୍ପନ୍ନ କର। ବ୍ରହ୍ମାଙ୍କ ଚିନ୍ତା ଥିଲା ଯେ ଉତ୍ତମ ପ୍ରଜାହେବା ଦରକାର। ଅଯୋଗ୍ୟ ସନ୍ତାନ ଜନ୍ମ କରିବା ରେ ବା ଲାଭ କଣ? ତେଣୁ କର୍ଦମ ଋଷିଙ୍କ ପ୍ରଶଂସା ଶୁଣିଲେ ଯେ ସେ ଜଣେ ମହାନ ଋଷି। ପ୍ରଶଂସା ଶୁଣି ଦେବହୂତିଙ୍କ ମନରେ ତାଙ୍କୁ ପତି ରୂପେ ପାଇବା ପାଇଁ ଇଚ୍ଛା ହେଲା।

କର୍ଦ୍ଦମ ଋଷିଙ୍କ ତପସ୍ୟା ରେ ପ୍ରସନ୍ନ ହୋଇ ଭଗବାନ ନାରାୟଣ ତାଙ୍କ ସମ୍ମୁଖରେ ପ୍ରକଟ ହେଲେ। ସେ ଭଗବାନ ନାରାୟଣ ଙ୍କୁ କହିଲେ – ଆପଣ ତ କଳ୍ପବୃକ୍ଷ। ଆପଣଙ୍କ ପାଖରେ ଯିଏ ଯାହା ମାଗେ, ତାକୁ ତାହା ମିଳିଯାଏ। ମୁଁ କେମିତି ମୂଢ଼ ଯେ ମୁଁ ମୋକ୍ଷ ବି ମାଗି ପାରନ୍ତି କିନ୍ତୁ ମୁଁ ବିବାହ ପାଇଁ ଇଚ୍ଛା କରୁଛି। ଇଏ ଗୋଟିଏ କି କଥା, କିନ୍ତୁ ମୁଁ ଏଇଆ ଚାହେଁ। ଭଗବାନ କହିଲେ, "ଇଏ ତୁମ ନିଜ ମନ କଥା ନୁହଁ। ତୁମ ନିଜର ମନ ଏବଂ ଭାବନା କୁ ମୁଁ ଜାଣେ। ସ୍ୱାୟଂଭୁବ ମନୁ ରାଜା, ଚକ୍ରବର୍ତ୍ତୀ ସମ୍ରାଟ। ସେ ନିଜର କନ୍ୟା ଦେବହୂତିଙ୍କୁ ନେଇ ତୁମ ପାଖକୁ ଆସିବେ। ଦେବହୂତି ମଧ୍ୟ ତୁମକୁ ପତି ରୂପରେ ଚହେଁ। ସେ ସମୟରେ ନିଜକୁ ଦୀନ-ହୀନ ବୋଲି ଭାବିବନି, ଏମିତି ଭାବିବନି ଯେ ଇଏ ତ ଏତେ ବଡ଼ ଚକ୍ରବର୍ତ୍ତୀ ସମ୍ରାଟ, ନିଜ କନ୍ୟାକୁ ନେଇ ମୋ ପାଖକୁ ଆସିଛନ୍ତି, କିନ୍ତୁ ମୋ ପାଖରେ ତ କିଛି ନାହିଁ। ଏପରି ଭାବି ନିଜକୁ ଛୋଟ ବୋଲି ଭାବିବନି। ସେ ଆସି ଯେତେବେଳେ ନିଜ ପୁତ୍ରୀ ର ବିବାହ ପ୍ରସ୍ତାବ ଦେବେ, ତାକୁ ସ୍ୱୀକାର କରିବ। ତା' ପରେ ମୁଁ ତୁମ ପୁତ୍ର ରୂପେ ଜନ୍ମ ନେବି କାରଣ ମୁଁ ଦେଖିପାରୁଛି ଯେ ଏହି ସମୟରେ ସାଂଖ୍ୟଯୋଗ – ଜ୍ଞାନ ଯୋଗ ସବୁ ନଷ୍ଟ ହୋଇ ଯାଉଛି, ତେଣୁ ମୁଁ ତୁମ ପୁତ୍ର ହେବି। ତା ପରେ ତୁମେ ସନ୍ନ୍ୟାସ ନେଇ ଚାଲିଯିବ। ତା ପରେ ମୁଁ ସେହି ଜ୍ଞାନ ର ଉପଦେଶ ନିଜ ମା'ଙ୍କୁ ଦେବି। ପୁନଃ ଜ୍ଞାନର ସ୍ଥାପନା ହେବ। ଏହା ଭଗବାନଙ୍କ **ଜ୍ଞାନାବତାର,** କିନ୍ତୁ ବରାହ ଅବତାର ହେଲା **କର୍ମାବତାର।**

ଦେଖନ୍ତୁ ଭଗବାନ ଦୁଇଟି ଶକ୍ତି – ଗୋଟିଏ କର୍ମ ଶକ୍ତି ଏବଂ ଅନ୍ୟଟି ଜ୍ଞାନ ଶକ୍ତି। ଜ୍ଞାନ ବି ପ୍ରକଟ ହୁଏ ଏବଂ କର୍ମ ବି ପ୍ରକଟ ହୁଏ। କର୍ମର ଶକ୍ତିଦ୍ୱାରା ସେ ହିରଣ୍ୟାକ୍ଷକୁ ବଧ କଲେ ଏବଂ ଜ୍ଞାନର ଶକ୍ତି ଦ୍ୱାରା ଏବେ ଜ୍ଞାନର ପ୍ରଚାର କରିବେ। **କପିଳାବତାର** ଜ୍ଞାନାବତାର ଅଟେ ଏବଂ ଅତ୍ୟନ୍ତ ପ୍ରସିଦ୍ଧ ଅବତାର ମଧ୍ୟ। 'ମୁଁ ଜନ୍ମ ନେବି ଏବଂ ମାତା ଦେବହୂତିଙ୍କୁ ଜ୍ଞାନ ଦେବି ତ ସେ ମଧ୍ୟ ମୁକ୍ତ ହୋଇଯିବେ, ଜ୍ଞାନର ସ୍ଥାପନା ହେବ", ଏପରି ବର ଦେଇ ଭଗବାନ ଅନ୍ତର୍ଦ୍ଧାନ ହୋଇଗଲେ।

କର୍ଦ୍ଦମ ଋଷି ନିଶ୍ଚିତ ହୋଇ ବସିଗଲେ। ତା'ପରେ ସମ୍ରାଟ ମନୁ ନିଜର ପତ୍ନୀ ଶତରୂପା ଏବଂ କନ୍ୟା ଦେବହୁତି ଙ୍କ ସହ ରଥରେ ବସି ତାଙ୍କ ପାଖକୁ ଆସିଲେ। କର୍ଦ୍ଦମ ଋଷି ତାଙ୍କୁ ସ୍ୱାଗତ କରି କହିଲେ – "ମହାରାଜ, ଆପଣ ଏଠାକୁ କାହିଁକି ଆସିଛନ୍ତି ? ଆପଣଙ୍କ ଇଚ୍ଛା କଣ କୁହନ୍ତୁ । ମୁଁ ଆପଣଙ୍କ ଇଚ୍ଛା ପୂର୍ଣ୍ଣ କରିବି।" ସେମିତି ସେ ଜାଣିଛନ୍ତି ତାଙ୍କ ଇଚ୍ଛା କଣ। ମନୁ ମହାରାଜ କହିଲେ- "ଇଏ ମୋର କନ୍ୟା ଦେବହୂତି। ଯାର ବିବାହ ମୁଁ ଆପଣଙ୍କ ସହିତ କରିବା ପାଇଁ ଚାହୁଁଛି। ଋଷି କହିଲେ- ଭଲ କଥା ମୁଁ

ପ୍ରସ୍ତୁତ । ମୁଁ ବି ବିବାହ କରିବାକୁ ଚାହୁଁଛି । ଦେଖନ୍ତୁ ମନୁ ଏତେ ବଡ଼ ରାଜା, ଚକ୍ରବର୍ତ୍ତୀ ସମ୍ରାଟ, କିନ୍ତୁ ସେ ନିଜ କନ୍ୟାର ବିହାହ ସେହି ସମୟରେ ସେଇଠି କରିଦେଲେ, କୌଣସି ପ୍ରକାରର ଆଡମ୍ବର ବିନା । ମନ୍ତ୍ରାଦି ସହିତ ତାଙ୍କର ବିବାହ ହୋଇଗଲା । ଦେବହୂତି ଙ୍କୁ ସେଇଠି ଋଷି ଙ୍କ ଆଶ୍ରମରେ ଛାଡ଼ି ଦେଲେ ଓ ଘରକୁ ଫେରିଗଲେ । ଏତେ ଯୋଗ୍ୟ ବର ମିଳିଗଲା ବୋଲି ସେ ବହୁତ ଖୁସୀ ଥିଲେ । ଏମିତି ଆଦୌ ଭାବିଲେନି ଯେ ଏଠି ତ ଗୋଟେ ତପସ୍ୱୀ ରହୁଛି ମୋ ଝିଅକୁ ଏଠି କଣ ବା ମିଳିବ ।

କର୍ଦ୍ଦମ ଋଷି ବି ବିଚିତ୍ର ଥିଲେ, ବାହା ତ ହୋଇଗଲେ, ଆଉ ତପସ୍ୟା କରିବାକୁ ଲାଗିଲେ । ସେ ଦେବହୂତିଙ୍କ ଆଡ଼କୁ ଚାହିଁ ଲେ ନାହିଁ । କି ବିଚିତ୍ର କଥା । ଲାଗୁଥିଲା ଯେମିତି ବହୁତ ପ୍ରେମ କରନ୍ତି, ପୁଣି ଦେଖିଲା ବେଳକୁ ଆଡ଼ ଆଖିରେ ଚାହୁଁ ନ ଥିଲେ । ଏଠି ବୁଝିବାକୁ ହେବ ଯେ - ଇଏ ବି ଗୋଟିଏ ପରୀକ୍ଷା, ଦେବହୂତି ରାଜା ଝିଅ । କର୍ଦ୍ଦମ ଋଷି ଦେଖିବାକୁ ଚାହୁଁଥିଲେ ଯେ ତାଙ୍କର ଧୈର୍ଯ୍ୟ କେତେ ? ତାଙ୍କ ଗର୍ଭରୁ ସ୍ୱୟଂ ଭଗବାନ ଜନ୍ମ ନେବେ ତ ତାଙ୍କୁ ପ୍ରସ୍ତୁତ ହେବାକୁ ପଡ଼ିବ ନା ନାହିଁ । ଏମିତି -ସେମିତି ଗର୍ଭରୁ ତ ଭଗବାନଙ୍କ ଜନ୍ମ ହୁଏନି । ଅନେକ ଲୋକ କହନ୍ତି ଯେ ଅଧର୍ମ ଏତେ ବଢ଼ିଗଲାଣି, ଭଗବାନଙ୍କୁ ଅବତାର ନେବାର ସମୟ ହୋଇଗଲାଣି । କିନ୍ତୁ ପ୍ରଶ୍ନ ଉଠେ ଯେ ଭଗବାନଙ୍କ ମାତା - ପିତା କିଏ ହେବ ? କାହା ପାଖରେ ଏପରି ଯୋଗ୍ୟତା ଅଛିକି ? ଏଠି ତା ଲୋକଙ୍କୁ ଖାଇବା -ପିଇବାରୁ ଫୁରସତ୍ ମିଳୁନି ।

ଦେଖନ୍ତୁ, ଏହା ଦେବହୂତିଙ୍କ ଉପେକ୍ଷା ନୁହେଁ, ତାଙ୍କୁ ଯୋଗ୍ୟା ବନେଇବାକୁ ହେବ । ସେ କେତେ ନିରପେକ୍ଷ, ନିରାଭିମାନୀ ଏବଂ ସେବା ପରାୟଣ, ଋଷି ଦେଖିବାକୁ ଚାହୁଁ ଥିଲେ । ଦେବହୂତି ଏତେ ବଡ଼ ସମ୍ରାଟଙ୍କର କନ୍ୟା ହେଲେ ମଧ୍ୟ ପାଟି ଖୋଲିଲେନ । ଦିନ-ରାତି ସେବା କରିଚାଲିଥିଲେ, କରିଚାଲିଥିଲେ । ଏମିତି କରୁ କରୁ ସେ ଦୁର୍ବଳ ହୋଇଗଲେ ।

ସେବା କରୁ କରୁ ଅନେକ ସମୟ ବିତିଗଲା ପରେ କର୍ଦ୍ଦମ ଋଷି ତାଙ୍କ ଉପରେ ପ୍ରସନ୍ନ ହେଲେ । ଦେବହୂତି ଙ୍କୁ କହିଲେ - ମୁଁ ତୁମ ଉପରେ ଅତିପ୍ରସନ୍ନ ହୋଇଛି । କୁହ କଣ ଦରକାର । ଏବେ ଦେବହୂତି କଣ କହିବେ ? କହିଲେ ଗୃହସ୍ଥାଶ୍ରମକୁ ଆସିଛି ତ ଗୃହସ୍ଥାଶ୍ରମ ର କିଛି ସୁଖ ତ ମିଳିବା ଦରକାର । କର୍ଦ୍ଦମ ଋଷି କହିଲେ ଠିକ୍ ଅଛି । ସେ ତ ଜଣେ ମହାନ ତପସ୍ୱୀ ଆଉ ଯୋଗୀ ଥିଲେ । ସେ ଏକ ଅସାଧାରଣ ବିମାନ ଯାହାର ନାମ 'କାମଗ' ତିଆରି କଲେ । ସେହି ବିମାନ ଆକାଶରେ ଉଡ଼ି ପାରୁଥିଲା, ପାଣିରେ

ଏବଂ ଭୂମିରେ ମଧ୍ୟ ଚାଲି ପାରୁଥିଲା। ଇଚ୍ଛାନୁସାରେ ଛୋଟ-ବଡ଼ ହେଇ ପାରୁଥିଲା। ସେଥିରେ ଏକ ସରୋବର ମଧ୍ୟ ଥିଲା। ଇଏ ପରିହାସର କଥା ନୁହଁ, ଭାଗବତ ରେ ଏହାର ଲମ୍ବା -ଚଉଡ଼ା ବର୍ଣ୍ଣନା ଅଛି। ଏଠି ଆମେ ସଂକ୍ଷେପରେ ଦେଖୁଛେ। ସେଥିରେ ଆହୁରି ଅନେକ କିଛି ଥିଲା। ଉପବନ ଆଦି ମଧ୍ୟ ଥିଲା।

ସେହି କାମଗ ବିମାନକୁ ଦେଖି ଦେବହୁତିଙ୍କ ମନରେ କୌଣସି ବିଶେଷ ଖୁସୀ ଉତ୍ପନ୍ନ ହେଲା ନାହିଁ ତ କର୍ଦମ ଋଷି ତାଙ୍କ ମନର କଥା ବୁଝିଗଲେ। ସେ ଦେବହୂତିଙ୍କୁ କହିଲେ ଯାଅ, ଭଗବାନ ବିଷ୍ଣୁଙ୍କ ଦ୍ୱାରା ରଚିତ ବିନ୍ଦୁ ସରୋବର ରେ ସ୍ନାନ କରି ଆସ। ସେହି ସରୋବରରେ ଅନେକ ଦେବୀ ମାନେ ଥିଲେ। ସେମାନେ ତାଙ୍କୁ ଭଲକରି ଗାଧୋଇ ଦେଲେ, ଅଳଂକାର ପିନ୍ଧେଇଲେ, ଖୁବ୍ ସଜେଇ ଦେଲେ। ସେ ସୁନ୍ଦର ଥିଲେ କିନ୍ତୁ ଆହୁରି ସୁନ୍ଦର ଏବଂ ହୃଷ୍ଟ ପୃଷ୍ଟ ବନିଗଲେ। ସେହିପରି କର୍ଦମ ଋଷି ମଧ୍ୟ ସେହିଠାରୁ ସୁନ୍ଦର ନବଯୁବକ ରୂପେ ବାହାରିଲେ। ତାପରେ ସେହି ବିମାନ ରେ ବସି ଋଷି ଦେବହୂତିଙ୍କୁ ବିଭିନ୍ନ ଲୋକ ବିହାର କରେଇଲେ। ତାଙ୍କର ନଅ କନ୍ୟା ହେଲେ। ସମସ୍ତେ ଏକୁ ଆରେକ ବଳି ସୁନ୍ଦରୀ ଥିଲେ। ପରେ ସେମାନଙ୍କର ବିବାହ ମଧ୍ୟ ସେମାନଙ୍କ ପରି ଶ୍ରେଷ୍ଠ ବର ମାନଙ୍କ ସହିତ ହେଲା। ଏହାର ବର୍ଣ୍ଣନା ଆଗକୁ ଅଛି।

ଏତେସବୁ ହେବାପରେ, ଏତେ ଭୋଗ କରି ସାରିବା ପରେ ଦେବହୂତିଙ୍କୁ ସଂସାର ଠାରୁ ବୈରାଗ୍ୟ ହେବାକୁ ଲାଗିଲା। ତାଙ୍କୁ ଜଣା ଥିଲା ଯେ ମୋ ପତି ବର୍ତ୍ତମାନ ମୋ ସହିତ ବିହାର ତ କରୁଛନ୍ତି କିନ୍ତୁ ଦିନେ ସେ ସନ୍ୟାସ  ନେଇଯିବେ ଓ ଚାଲିଯିବେ। ତାଙ୍କର କୌଣସି ବସ୍ତୁରେ ଟିକିଏ ହେଲେ ଆସକ୍ତି ନାହିଁ। ମୋ ଝିଅ ମାନଙ୍କର ବାହାଘର ହୋଇଯିବ ଆଉ ସେମାନେ ମଧ୍ୟ ଚାଲିଯିବେ। ମୁଁ ସେଇମିତି ଏକୁଟିଆ ରହିଯିବି। ସେ କହିଲେ - ଭଗବାନ ମୁଁ ଆପଣଙ୍କ ପ୍ରଭାବକୁ ଜାଣିପାରିଲି ନାହିଁ। ଏତେ ବଡ଼ ସନ୍ଥଙ୍କ ସହିତ ରହି ମଧ୍ୟ ମୁଁ କେବଳ ଶାରିରୀକ ଇଚ୍ଛାର ପୂର୍ତ୍ତୀ ହିଁ କରି ଚାଲିଲି। ମୁଁ ବଡ଼ ଦୁଷ୍ଟ, ଅଭାଗିନୀ ଓ ମୂଢ଼ ଅଟେ।

'ଅଜାନନ୍ତ୍ୟା ପରଂ ଭାବଂ ତଥାପ୍ୟସ୍ତ୍ୱମୟାୟ ମେ।'(୩.୨୩.୫୪)

ଯଦ୍ୟପି ମୁଁ ସେହି ମହିମାକୁ ବୁଝିପାରିଲି ନାହିଁ, ତଥାପି ସାଧୁଙ୍କ ସଙ୍ଗତ ମୋକ୍ଷଦାୟକ ହେବା ଉଚିତ୍।

**ସଂଗୋ ଯଃ ସଂସୃତେର୍ହେତୁରସତ୍ସୁ ବହିତୋଽଧିୟା ।**
**ସଏବ ସାଧୁଷୁ କୃତୋ ନିଃ ସଂଗତ୍ୱାୟ କଳ୍ପତେ ॥ (୩.୨୩.୫୫)**

ମୁଁ ଆସକ୍ତ ହେଲି କିନ୍ତୁ ମୁଁ ଅନାସକ୍ତ ପ୍ରତି ଆସକ୍ତ । ଆସକ୍ତି ଯଦି ରାଗୀ ବା କାମୀ ମାନଙ୍କ ସହିତ ହୁଏ ତେବେ ବନ୍ଧନର କାରଣ ହୋଇଯାଏ । କିନ୍ତୁ ଅନାସକ୍ତ ପ୍ରତି ଆସକ୍ତି ମୋକ୍ଷର କାରଣ ହୋଇଯାଏ । ଏବେ ମୋତେ ଏହାର ଫଳ ମିଳିବା ଉଚିତ୍ । ଆମ ନଅଟି ଯାକ କନ୍ୟାଙ୍କର ବିବାହ ହୋଇଯିବ, ଆପଣ ସନ୍ୟାସ ନେଇ ଚାଲିଯିବେ, ତା ପରେ ମୋର କଣ ହେବ ? ମୁଁ କେମିତି ମୂଢ଼ ଯେ ଆପଣଙ୍କ ଠାରୁ ଯେଉଁ ଜ୍ଞାନ ପାଇବା କଥା ତାହା ନେଲି ନାହିଁ । ଭାଗ୍ୟ ମୋତେ ବହୁତ ବଡ଼ ଧୋକା ଦେଇ ଦେଲା ।

**ସାହଂ ଭଗବତୋ ନୂନଂ ବଞ୍ଚିତା ମାୟୟା ଦୃତମ୍ । (୩.୨୩.୫୬)**

କର୍ଦ୍ଦମ ଋଷି କହିଲେ, "ଚିନ୍ତା କର ନାହିଁ" । ତୁମେ ଏକ ବିଶେଷ ବ୍ରତ କର । ତା'ପରେ ଭଗବାନଙ୍କ ଅବତାର ଜନ୍ମ ନେବେ । ଦେଖନ୍ତୁ ଯେତେବେଳେ ଦେବହୂତିଙ୍କ ମନରେ ବୈରାଗ୍ୟ ଉତ୍ପନ୍ନ ହେଲା ସେତେବେଳେ କର୍ଦ୍ଦମ ଋଷି ଏପରି କହିଲେ । ତା'ପୂର୍ବରୁ କହି ନାହାଁନ୍ତି । **'ବିରକ୍ତସ୍ୟ ଅନ୍ତଃକରଣେ ବ୍ରହ୍ମ ଜିଜ୍ଞାସା ଯୋଗ୍ୟତା ମତା'** । ବିରକ୍ତ ପୁରୁଷ ହିଁ ବ୍ରହ୍ମ ବିଚାର କରିବା ଯୋଗ୍ୟ । ସେହି ସିଦ୍ଧାନ୍ତ ଏଠି ମଧ୍ୟ ଦର୍ଶାଯାଇଛି । ତା' ପରେ ଦେବହୂତି ବ୍ରତ ପାଳନ କଲେ । ଭଗବାନଙ୍କ ତେଜ ପ୍ରଥମେ କର୍ଦ୍ଦମ ଋଷିଙ୍କ ଶରୀରରେ ପ୍ରକଟ ହେଲା, ସେହି ତେଜକୁ ପୁଣି ଦେବହୂତି ଧାରଣ କଲେ । ଯେତେବେଳେ ଭଗବାନ ପ୍ରକଟ ହେଲେ ସେତେବେଳେ ବ୍ରହ୍ମା ଏବଂ ଅନ୍ୟ ଦେବତାମାନେ ସେଠାକୁ ଆସିଲେ ଏବଂ ଭଗବାନଙ୍କ ସ୍ତୁତି କରି ଫେରିଗଲେ । ଦେଖନ୍ତୁ ଏଇ ହେଲା ଦ୍ୱିତୀୟ ଅବତାର **'କପିଳାବତାର'** ।

ତା ପରେ କର୍ଦ୍ଦମ ଋଷି ଏକାନ୍ତରେ ଭଗବାନଙ୍କ ସହିତ କଥାବାର୍ତ୍ତା କଲେ । ଭଗବାନ ତାଙ୍କୁ କହିଲେ, "ତୁମେ ମୋର ସମସ୍ତ ଆଦେଶ ଗୁଡ଼ିକୁ ଅତ୍ୟନ୍ତ ସୁଚାରୁ ରୂପେ ପାଳନ କରିଛ । ମୁଁ ତୁମ ଉପରେ ଅତି ପ୍ରସନ୍ନ ହେଲି । ତୁମେ ସେମିତି ବି ମୁକ୍ତ, ଏବେ ତୁମେ ସନ୍ୟାସ ନେଇ ଏଠାରୁ ଚାଲିଯାଅ । "ଦେଖନ୍ତୁ ଯେଉଁଠି ସାଂଗେ ସାଙ୍ଗେ ଭଗବାନ ଅବତାର ନେଇ ଆସିଛନ୍ତି, ସେଠାରୁ ସନ୍ନ୍ୟାସ ନେଇ ଚାଲିଯିବା, ଏହି କଥାରୁ ସିଦ୍ଧ ହେଲା ଯେ ସନ୍ନ୍ୟାସ କେତେ ଶ୍ରେଷ୍ଠ । ଭଗବାନଙ୍କୁ ପ୍ରଣାମ କରି କର୍ଦ୍ଦମ ଋଷି ସେଠାରୁ ଚାଲିଗଲେ ।

## କପିଳ ଭଗବାନଙ୍କ ଠାରୁ ମାତା ଦେବହୂତିଙ୍କ ଜ୍ଞାନାର୍ଜନ

ସର୍ଗର ବର୍ଣ୍ଣନ ଭାଗବତରେ ଅନେକ ଥର ହୋଇଛି । ଏହି ବର୍ଣ୍ଣନ ଦ୍ୱାରା ଏଠାରେ ଭଗବାନଙ୍କୁ ହିଁ ସଂକେତ କରାଯାଇଛି। ଆଗକୁ ଦେବହୂତି ଏବଂ କପିଳଙ୍କ ସଂବାଦ ଅଛି। ଏହାହିଁ ତୃତୀୟ ସ୍କନ୍ଧର ବିଶେଷତ୍ୱ ମଧ୍ୟ। ଏବେ ସର୍ବ ପ୍ରଥମେ ଦେବହୂତି ହାତ ଯୋଡ଼ି ନିଜର ପୁତ୍ର ସାକ୍ଷାତ୍ ଭଗବାନ୍ କପିଳ ଙ୍କୁ କହୁଛନ୍ତି -

**ନିର୍ବିଣ୍ଣା ନିତରାଂ ଭୂମନ୍ନସଦିନ୍ଦ୍ରିୟତର୍ଷଣାତ୍ ।**

**ଯେନ ସମ୍ଭାବ୍ୟମାନେନ ପ୍ରପନ୍ନାନ୍ଧଂ ତମଃ ପ୍ରଭୋ ॥ (୩.୨୫.୭)**

ମୁଁ ଏହି ମିଛ ଇନ୍ଦ୍ରିୟମାନଙ୍କୁ ପ୍ରସନ୍ନ କରିବାରେ ଲାଗି ରହିଲି। ମୁଁ ବହୁତ ବଡ଼ ଧୋକା ଖାଇଲି। କିନ୍ତୁ ଏବେ ମୋତେ ସେମାନଙ୍କଠାରୁ ବୈରାଗ୍ୟ ହୋଇ ଗଲାଣି। ଆଜି ମତେ ଆପଣଙ୍କ ଆଶୀର୍ବାଦ ରୂପରେ ନୂଆ ଦୃଷ୍ଟି ପ୍ରାପ୍ତ ହେଲା। ଆପଣ ମୋର ମୋହ ଦୂର କରୁନ୍ତୁ। ମୁଁ ଅନେକ ସମୟ ପର୍ଯ୍ୟନ୍ତ ଏହି ଅଜ୍ଞାନ ଅନ୍ଧକାରରେ ବୁଡ଼ି ରହିଲି। ଏହି ପରି ଅତ୍ୟନ୍ତ ସୁନ୍ଦର ବର୍ଣ୍ଣନ ଏଠାରେ କରାଯାଇଛି।

**ତଂ ତ୍ୱା ଗତାହଂ ଶରଣଂ ଶରଣ୍ୟଂ**

**ସ୍ୱଭୃତ୍ୟସଂସାରତରୋଃ କୁଠାରମ୍। (୩.୨୫.୧୧)**

ଆଜି ମୁଁ ଆପଣଙ୍କ ଶରଣକୁ ଆସିଛି। ନିଜ ଭୃତ୍ୟର ସଂସାର ରୂପୀ ବୃକ୍ଷପାଇଁ ଆପଣ କୁରାଢ଼ୀ ସଦୃଶ୍ୟ। ଏହି ସଂସାର ରୁପୀ ବୃକ୍ଷକୁ ଆପଣ କାଟି ପକେଇବେ। ଏହା ଶୁଣି ଭଗବାନ ଅତି ପ୍ରସନ୍ନ ହେଲେ। ନିଜ ମାତାଙ୍କୁ ଜ୍ଞାନ ଦେବା ପାଇଁ ତତ୍ପର ହୋଇ ସେ କହିଲେ, "ଏବେ ମୁଁ ତୁମକୁ ଆଧ୍ୟାତ୍ମ ଯୋଗ ର ଉପଦେଶ ଦେବି।" ଦେଖନ୍ତୁ ଏବେ ସେହି ଆଧ୍ୟାତ୍ମ ଯୋଗ କ'ଣ ? ଭଗବାନ କହିଲେ - ଆମେ ଏଇ ଯେଉଁ ସବୁ ବନ୍ଧନ -ବନ୍ଧନ କହୁଛୁ , ପ୍ରକୃତରେ ସେ ସବୁର କାରଣ ଆମ ମାନଙ୍କର ନିଜ ମନ।

**'ମନ ଏବ ମନୁଷ୍ୟାଣାଂ କାରଣଂ ବନ୍ଧମୋକ୍ଷୟୋଃ'**

**( ଅମୃତ ବିନ୍ଦୁ ଉପ.୨)**

**ଚେତଃ ଖଲ୍ୱସ୍ୟ ବନ୍ଧାୟ ମୁକ୍ତୟେ ଚାତ୍ମନୋ ମତମ୍। (୩.୨୫.୧୫)**

ମନ ହିଁ ବନ୍ଧନ ଏବଂ ମୋକ୍ଷ। ଉଭୟର କାରଣ ଅଟେ। କିପରି ?

**'ଗୁଣେଷୁ ସକ୍ତଂ ବନ୍ଧାୟ'**। ଆମ ମନ ଯେତେବେଳେ ପ୍ରକୃତିର ପଦାର୍ଥ ମାନଙ୍କ ପ୍ରତି ଆସକ୍ତ ହୁଏ, ସେତେବେଳେ ସେ ହିଁ ବନ୍ଧନର କାରଣ ହୁଏ।

'ରତଂ ବା ପୁସି ମୁକ୍ତୟେ'। ଆଉ ଯେତେବେଳେ ସେହି ମନ ଭଗବାନଙ୍କ ପାଖରେ ରମଣ କରେ ତ ସେହି ମୁକ୍ତିର କାରଣ ମଧ୍ୟ ହୋଇଥାଏ। ବାସ୍ ଏତିକି କଥା। ଏହା ହିଁ ଆଧ୍ୟାତ୍ମ ଯୋଗ ଅଟେ। ଆଉ ଅନ୍ୟ କିଛି ନୁହଁ ? ଏବେ ଆମ ମନ ବିଷୟରେ, ବା ଭୌତିକ ପଦାର୍ଥରେ ଆସକ୍ତ ହୋଇ ଯାଇଛି। ତାକୁ ସେଇଠୁ ହଟାଇ, ଆତ୍ମ ସ୍ୱରୂପ ରେ ସ୍ଥିର କରି ଦେବାର ଯେଉଁ ଅଭ୍ୟାସ ତାକୁ ହିଁ ଆଧ୍ୟାତ୍ମ ଯୋଗ କୁହଯାଏ। ଅହଂତା-ମମତା କୁ ଛାଡ଼ିବାକୁ ପଡ଼ିବ, ଧୀରେ-ଧୀରେ ବିଷୟାସକ୍ତି କୁ ଛାଡ଼ିବାକୁ ପଡ଼ିବ। ଏହା କିପରି ହେବ ? ଏଠାରେ ତାର ଉତ୍ତର ଦିଆ ଯାଇଛି ଯେ ସତ୍‌ସଙ୍ଗ ହିଁ ତାର ସର୍ବଶ୍ରେଷ୍ଠ ସାଧନ।

**ସତ୍‌ସଙ୍ଗତ୍ୱେ ନିସ୍ସଙ୍ଗତ୍ୱଂ ନିସଂଗତ୍ୱେ ନିର୍ମୋହତ୍ୱମ୍।**
**ନିର୍ମୋହତ୍ୱେ ନିଶ୍ଚଲତତ୍ତ୍ୱଂ ନିଶ୍ଚଲତତ୍ତ୍ୱେ ଜୀବନ୍ମୁକ୍ତିଃ ॥**

**(ଭଜଗୋବିନ୍ଦମ୍ ୬)**

ସତ୍‌ସଙ୍ଗ କଲେ ଧୀରେ- ଧୀରେ ବିଷୟସଙ୍ଗ ଛାଡ଼ିହେବ। ମନ ଶୁଦ୍ଧ ହେଲେ ବିବେକ ପ୍ରକଟ ହେବ। ଯେତେବେଳେ ବିବେକ ପ୍ରକଟ ହେବ ବନ୍ଧନ ମଧ୍ୟ କଟି ଯିବ। କାରଣ ଅବିବେକ ଦ୍ୱାରା ହିଁ ସମସ୍ତ ବନ୍ଧନ ଜଣା ପଡ଼ିଥାଏ। ସେମିତି ବି ସବୁ ପ୍ରକାରର ସଂଗହିଁ ବନ୍ଧନର କାରଣ, କିନ୍ତୁ ଅସଂଗ ପୁରୁଷ ଙ୍କ ସହିତ ଯେଉଁ ସଂଗ ହୁଏ, ତାହା ମୋକ୍ଷ ପ୍ରଦାୟକ ହୋଇଥାଏ।

**ସଂଗସ୍ତେଷ୍ୱଥ ତେ ପ୍ରାର୍ଥ୍ୟଃ ସଂଗଦୋଷହରା ହି ତେ ॥**
**(୩.୨୫.୨୪)**

କାରଣ ସାଧୁମାନେ ଆମ ବିଷୟାସକ୍ତିକୁ ଦୂର କରି ଦିଅନ୍ତି । ତେଣୁ ଦ୍ୱିତୀୟ ସ୍କନ୍ଧର ପ୍ରାରମ୍ଭରେ ହିଁ ଏହି ସାଧନ ମାର୍ଗ ବିଷୟରେ ବତେଇ ଦିଆ ଯାଇଛି ।

ଏଠାରେ ଏବେ ଆମେ ଟିକିଏ ଭାଗବତର ବିଷୟ ପ୍ରଣାଳୀ କୁ ସଂକ୍ଷେପରେ ଦେଖିନେବା । ଦେଖନ୍ତୁ କେବେ-କେବେ ଗ୍ରନ୍ଥ ଅତ୍ୟନ୍ତ ବିଶାଳ ହୋଇ ଥାଏ କିନ୍ତୁ ସବୁ ବିଷୟ, ସମସ୍ତ ବିବେଚନା ମୁଖ୍ୟ ବିଷୟର ଚାରିପଟେ ବୁଲୁଥାଏ । ଭାଗବତ ଏକ ଭକ୍ତି ଶାସ୍ତ୍ର । ଏହାର ସାର କଣ ? ଉତ୍ତର ହେଲା - ଆମର ଧର୍ମ-କର୍ମ, ଉପାସନା, ଯୋଗାଭ୍ୟାସ, ଜ୍ଞାନ ସବୁ ଉଚିତ କଥା କିନ୍ତୁ ଏହି ସବୁର ପର୍ଯ୍ୟାବସାନ ଏମାନଙ୍କ ସମପ୍ତି ଭଗବାନଙ୍କ ଦୃଢ଼ଭକ୍ତି-ଦୃଢ଼ ପ୍ରେମରେ ହେବା ଉଚିତ୍ ।

ତେଣୁ ଗୋଟିଏ ସିଦ୍ଧାନ୍ତ ହେଲା ଯେ ଭଗବାନ ଙ୍କ ପାଇଁ ଆମ ମନରେ ଶୁଦ୍ଧ ଦୃଢ଼ ଅନୁରାଗ ଉତ୍ପନ୍ନ ହେଉ । ଅନ୍ୟ ପକ୍ଷରେ ବିଷୟ ପ୍ରତି ବୈରାଗ୍ୟ ଆସୁ । ବିଷୟ ମାନଙ୍କରୁ ଦୂର ହୋଇ ଆମ ମନ ଭଗବାନଙ୍କ ସ୍ଥିର ହେଉ । ସେଥିପାଇଁ ଏଠାରେ ଏହି ସବୁ ବର୍ଣ୍ଣନା କରାଯାଇଛି । ଜ୍ଞାନର ଭାଷାରେ କହିବାତ ମନକୁ ବିଷୟ ଗୁଡ଼ିକରୁ ଦୂର କରି ଆତ୍ମ ସ୍ୱରୂପରେ ସ୍ଥିତ କର । ଏଠାରେ ଆତ୍ମସ୍ଥିତିର କଥା କୁହାଯାଇଛି, ଖାଲି ସ୍ଥିତିର କଥା ନୁହେଁ । 'ସ୍ଥିତି' ଶବ୍ଦ ଦ୍ୱାରା ଆମକୁ ଲାଗେ ଯେମିତି ସବୁ କିଛି ସ୍ଥିର ହୋଇ ଯାଇଛି । ତେଣୁ ଅନେକ ଲୋକଙ୍କୁ ଏପରି ଲାଗେ ଯେ ସମାଧିରେ ମନ ଏପରି ହୋଇଗଲେ, ତା' ପରେ କଣ ହେବ ? କିନ୍ତୁ ଭକ୍ତିଶାସ୍ତ୍ର ରେ କୁହାଯାଇଛି ଯେ ନିଜ ମନକୁ ବିଷୟରୁ ଦୂର କରି ଭଗବାନଙ୍କ ପାଖରେ ଲଗାଅ । ଭକ୍ତି ଦ୍ୱାରା ମନ ଭଗବାନଙ୍କ ପାଖରେ ଲାଗିଯାଏ ।।

ଶ୍ରୀ ମଧୁସୂଦନ ସରସ୍ୱତୀ **'ଭକ୍ତି ରସାୟନ'** ରେ **'ସ୍ଥିତି'**ଏବଂ **'ରତି'** ର ସୁନ୍ଦର ବିବେଚନ କରିଛନ୍ତି । କେବଳ ପରମାତ୍ମା ଙ୍କ ଠାରେ ସ୍ଥିତିକୁ ଭକ୍ତି କୁହାଯାଏନାହିଁ । ପରମାତ୍ମା ସ୍ୱରୂପ ରେ ଯେଉଁ ରତି ହୁଏ ତାକୁ ଭକ୍ତି କୁହନ୍ତି । ତାହା ରସର ସ୍ୱାଦ । ତାହାଲେ ଗୋଟିଏ ପଟେ ଭଗବଦ୍ ଭକ୍ତି ଏବଂ ଅନ୍ୟପଟେ ଅନ୍ୟ ବିଷୟ ଗୁଡ଼ିକରୁ ବିରକ୍ତି ହେବା ଆବଶ୍ୟକ । ଭାଗବତରେ ବାରମ୍ବାର ଏହି ଉପଦେଶ ବିଷୟରେ କୁହାଯାଇଛି । ତେଣୁ ପ୍ରଥମେ ମନୁଷ୍ୟ ଜନ୍ମ ଦୁର୍ଲଭ ବୋଲି କୁହାଯାଏ, ତାପରେ କୁହାଯାଏ ଯେ ଏହ ଦୁର୍ଲଭ ଜନ୍ମ ରେ ହିଁ ଭକ୍ତି ପ୍ରାପ୍ତ କରାଯାଇ ପାରେ, ତେଣୁ ତାକୁ ହିଁ ପ୍ରାପ୍ତ

କର। ଏଠି କୁହାଯାଇଛି ଯେ ବ୍ୟର୍ଥ ରେ ସମୟ ନଷ୍ଟ କର ନାହିଁ। ତେଣୁ ଆଧ୍ୟାତ୍ମ ଯୋଗ ଆମକୁ କହୁଛି ତୁମେ ସତ୍‌ସଙ୍ଗ କର। ସତ୍‌ସଙ୍ଗ ଦ୍ୱାରା ହିଁ ଏହି ସବୁ କଥା ବୁଝି ହୋଇଯିବ।

ଏବେ ମାତା ଦେବହୂତି କହୁଛନ୍ତି ଯେ, 'ଆପଣ ଯେଉଁ ଭକ୍ତି କଥା କହୁଛନ୍ତି, ତାକୁ ମୁଁ କିପରି ଅନୁଭବ କରିପାରିବି, ମୋତେ ତାର କୌଣସି ଏକ ଉପାୟ ବତେଇ ଦିଅନ୍ତୁ"। କପିଳ ଦେବ ଏହା ଉପାୟ କହୁଛନ୍ତି, "ଏହାର ଏକମାତ୍ର ଉପାୟ ହେଲା, ତୁମେ ନିଜର ସବୁ ଇନ୍ଦ୍ରିୟ ଗୁଡ଼ିକୁ ଭଗବାନଙ୍କର ନାମ, ରୂପ ଓ ଗୁଣରେ ଲଗେଇ ଦିଅ"। ଏହାର ଅର୍ଥ କଣ ? ଦେଖନ୍ତୁ, ଆଖିରେ ଆମେ ଅନେକ ବିଷୟ ଦେଖୁଥାଉ। କହିଲେ, ଆଖିରେ ତୁମେ କେବଳ ଭଗବାନଙ୍କୁ ହିଁ ଦେଖ। ଭଗବାନଙ୍କ ରୂପ କୁ ଦେଖ। ଯେ ପର୍ଯ୍ୟନ୍ତ ଭଗବାନ ସର୍ବତ୍ର ଦେଖାଯାଉ ନାହାଁନ୍ତି, ସେ ପର୍ଯ୍ୟନ୍ତ ମନ୍ଦିରରେ ବା ଘରେ ପୂଜା ଦ୍ୱାରା ନିଜକୁ ଭଗବାନଙ୍କ ଭିତରେ ସ୍ଥିର କରିବା ପାଇଁ ଚେଷ୍ଟା କର। ନିଜ କାନ ଦ୍ୱାରା ଅନ୍ୟର ବ୍ୟର୍ଥ କଥା ଶୁଣ ନାହିଁ। କୋଉ କଥା ?

**'ସ୍ତ୍ରୀ, ଧନ,ନାସ୍ତିକ, ବୈର, ଚରିତ୍ରଂ ନ ଶ୍ରବଣୀୟଂ'।** ଅର୍ଥାତ୍ ମନରେ କାମ,କ୍ରୋଧ,ଭୟ ଆଦି ବିକାର ଉତ୍ପନ୍ନ କରୁଥିବା କଥା ଶୁଣ ନାହିଁ। କେବଳ ଭଗବାନଙ୍କର ହିଁ ଗୁଣ ଶୁଣ। ବାଣୀ ଦ୍ୱାରା ଭଗବାନଙ୍କର ହିଁ ନାମ ନିଅ। ପୁଣି କହିଲେ ଯେଉଁ କାନ ଭଗବାନଙ୍କର ନାମ ଶୁଣେ ନାହିଁ ସେ ସାପ ଗାତ ସହ ସମାନ। ଯେଉଁ ହାତ ଭଗବାନଙ୍କ ପୂଜା କରେ ନାହିଁ , ସେ ପ୍ରେତର ହାତ ଅଟେ। ଏହି ପରି ଭକ୍ତି ଯୋଗକୁ ସେ ସୁଲଭ କରି ଦେଲେ। ଦେଖନ୍ତୁ ଜ୍ଞାନଯୋଗ ରେ କୁହାଯାଏ ଯେ ଧ୍ୟାନଭ୍ୟାସ ସମୟରେ ସବୁ ଇନ୍ଦ୍ରିୟ ଗୁଡ଼ିକୁ ବିଷୟରୁ ଟାଣିଆଣ। ଏଠାରେ ଏହି **ଆଧ୍ୟାତ୍ମ ଯୋଗ**ରେ କୁହାଯାଇଛି ଯେ - ତୁମେ ନିଜର ସମସ୍ତ ଇନ୍ଦ୍ରିୟ ଗୁଡ଼ିକର ବିଷୟ ଭଗବାନଙ୍କୁ ହିଁ କର। ଭକ୍ତି ଯୋଗ ର ଏହି ସୁନ୍ଦର କଥାକୁ ଏଠାରେ ଏହି ପରି କହିଛନ୍ତି -

**ଏତାବାନେବ ଲୋକେଽସ୍ମିନ ପୁଂସାଂ ନିଃଶ୍ରେୟସୋଦୟଃ।**
**ତୀବ୍ରେଣ ଭକ୍ତିଯୋଗେନ ମନୋ ମୟ୍ୟର୍ପିତଂ ସ୍ଥିରମ୍॥ (୩.୨୫.୪୪)**

ମନୁଷ୍ୟର ପରମ ପୁରୁଷାର୍ଥ, ପରମ ଶ୍ରେୟ ହେଲା ଯେ ତ୍ରୀବ୍ର-ଠାରୁ -ତୀବ୍ର ଭକ୍ତିଯୋଗ ଦ୍ୱାରା ସେ ନିଜ ମନକୁ ଭଗବାନଙ୍କ ପାଖରେ ଲଗାଇଦେବ। ଏହାହିଁ ହେଲା 'ତୀବ୍ର' ଭକ୍ତି ଯୋଗ। ଆମର କିପରି ? ମନ୍ଦ, ମନ୍ଦ ମଧ୍ୟ ନୁହେଁ ଅତି ମନ୍ଦ, ମନ୍ଦାତିମନ୍ଦ। ଆମ ଭକ୍ତି ଯୋଗ ଏପରି ବିଚିତ୍ର ଯେ କିଛି କରୁଥିବା ସମୟରେ ମନକୁ ଆସେ ଯେ ଗୋଟେ କପ୍ ଚା ପିଇନେବା, ତା ପରେ ଜପ କରିବା। ଉଠିଗଲେ, ଚା ପିଇଲେ,

ତାପରେ ଲାଗେ ମୁହଁଟା କେମିତି -କେମିତି ଲାଗିଲାଣି, ଟିକିଏ ପାନ-ବହାର ପକେଇ ଦେବା, ଆମର ଏହି ପରି ମନ୍ଦ ଭକ୍ତିଯୋଗ । **"ତୀବ୍ରେଣ ଭକ୍ତିଯୋଗେନ ମନୋ ମୟ୍ୟର୍ପିତ ସ୍ଥିରମ୍'** । ଯିଏ ତୀବ୍ର ଭକ୍ତି ଯୋଗ ଦ୍ୱାରା ମନକୁ ଭଗବାନଙ୍କ ପାଖରେ ସ୍ଥିର କରି ଦିଏ, ସେ ଜୀବନରେ ପରମ କଲ୍ୟାଣକୁ ପ୍ରାପ୍ତ କରିନିଏ।

ଏହାପରେ ଭଗବାନ କହିଲେ ଏବେ ମୁଁ ତୁମକୁ ତତ୍ତ୍ୱର ଲକ୍ଷଣ କହିବି। ଆମେ ପୂର୍ବରୁ ସୃଷ୍ଟି ତତ୍ତ୍ୱର ଲକ୍ଷଣ ଦେଖି ସାରିଛେ। ଭଗବାନଙ୍କ ଠାରୁ ଅବ୍ୟକ୍ତ, ଅବ୍ୟକ୍ତରୁ ମହତ ତତ୍ତ୍ୱ, ମହତ୍ ତତ୍ତ୍ୱରୁ ପଞ୍ଚଭୂତର ସୃଷ୍ଟି ପ୍ରକଟ ହୁଏ। ଏହାର ବିସ୍ତୃତ ବର୍ଣ୍ଣନ ଭଗବାନ ଆଗକୁ ତତ୍ତ୍ୱ ବିଚାରରେ କରିବେ। ସେହି ତତ୍ତ୍ୱ ବିଚାର ର ବର୍ଣ୍ଣନ ମଧ୍ୟ ଭଗବାନଙ୍କ ସ୍ୱରୂପ କୁ ପ୍ରକଟ କରିବା ପାଇଁ କରାଯାଇଛି। ତା'ପରେ କହିଲେ - ଗୋଟିଏ ହେଲା ପ୍ରକୃତି ଅନ୍ୟଟି ହେଲା ପୁରୁଷ। ଏଠାରେ ଭଗବାନ କପିଳ ଦେବ ପ୍ରକୃତି-ପୁରୁଷର ଯେଉଁ ବିବେଚନ କରିଛନ୍ତି ତାକୁ ସାଂଖ୍ୟଶାସ୍ତ୍ର କୁହାଯାଏ। କିନ୍ତୁ ମନେ ରଖନ୍ତୁ ସାଂଖ୍ୟ ନାମରେ ପ୍ରସିଦ୍ଧ ଯେଉଁ କପିଳମୁନିଙ୍କ ଦର୍ଶନ ଅଛି ତାହା ଏଥିରୁ ଅଲଗା, ତାହା ନୀରଶ୍ୱର ବାଦୀ। ଏଠାରେ ତ ଭଗବାନଙ୍କ ଭକ୍ତିର ହିଁ ବିସ୍ତୃତ ବର୍ଣ୍ଣନା କରାଯାଇଛି। ସେହି ଅନ୍ୟ ସାଂଖ୍ୟଶାସ୍ତ୍ରର ଗଣନା ଷଟ୍ ଦର୍ଶନ ମଧ୍ୟରେ କରାଯାଏ। ତାର ପ୍ରଣେତା ମଧ୍ୟ କପିଳ ମୁନି କିନ୍ତୁ ସେ ଅନ୍ୟ ଜଣେ ।

ଏଠାରେ ଦେବହୂତିଙ୍କ ପୁତ୍ର ରୂପେ ଜନ୍ମ ନେଇଥିବା କପିଳ ଦେବ ସାକ୍ଷାତ୍ ଭଗବାନଙ୍କ ଅବତାର, ସେ ମହାମୁନି। ସେଭଗବଦ୍ ଭକ୍ତିର ମଧ୍ୟ ବର୍ଣ୍ଣନା କରିଛନ୍ତି ଏବଂ ପ୍ରକୃତି -ପୁରୁଷଙ୍କ ବିବେଚନ ମଧ୍ୟ କରିଛନ୍ତି। ସେ କହିଲେ ଯେଉଁ ଚେତନତତ୍ତ୍ୱ ଦେଖାଯାଉଛି ସେ ପୁରୁଷ ଏବଂ ଯେଉଁ ଜଡ଼ ପ୍ରକୃତି ଦେଖାଯାଉଛି ସେ ସବୁ କିଛି ପ୍ରକୃତି ଅଟେ। ପ୍ରକୃତରେ ଯେଉଁ ଜଡ଼ ପ୍ରକୃତି ଦେଖାଯାଉଛି ତାହା ମଧ୍ୟ ଚେତନରୁ ଅଲଗା - ସ୍ୱତନ୍ତ୍ର ନୁହଁ। କିନ୍ତୁ ବର୍ତ୍ତମାନ ଆମକୁ ଭ୍ରମ ହୋଇ ଯାଇଛି। ତେଣୁ ଆମକୁ ଲାଗୁଛି ଯେ ଜଡ଼ ପ୍ରକୃତି ଚେତନ ତତ୍ତ୍ୱ ରୁ ଅଲଗା। ଏହି ସମସ୍ତ ଉପାଧି ସେଥିରୁ ନିର୍ମିତ ଏବଂ ମୁଁ ମଧ୍ୟ । ଆମେ ଏମିତି ମାନି ନେଇଛୁ।

ଜଗତର ନିର୍ମାଣ ପ୍ରକୃତିରୁ ହୁଏ,କିନ୍ତୁ ତାହା ପୁରୁଷର ଉପସ୍ଥିତିରେ ହିଁ ହୁଏ। ପୁରୁଷ ସବୁବେଳେ ଅସଂଗ। ସେ କେବେହେଲେ ପ୍ରକୃତିରେ ବାନ୍ଧି ହୁଏ ନାହିଁ। କିନ୍ତୁ ଏବେ ଆମକୁ ଏହା ହିଁ ଲାଗୁଛି ଯେ ସେ ବାନ୍ଧି ହୋଇ ଯାଇଛି। ଏହା କେମିତି ବନ୍ଧନ ? ନିଜ ଦେହ କୁ ହିଁ , 'ଏହା ମୁଁ, ଆମେ ଏପରି ମାନି ନେଇଛୁ ଏବଂ ଯିଏ ଦେହ କୁ ହିଁ

'ଏହା ମୁଁ' ଏମିତି ମାନି ନିଏ, ସେ ବିଷୟର ବନ୍ଧନରେ ବାରମ୍ବାର ଆସୁଥାଏ କାରଣ ଏସେ କଳ୍ପନା କରି ନିଏ ଯେ ବିଷୟରେ ବଡ଼ ସୁଖ। କିପରି ?

**ଦେହାଦିସର୍ବବିଷୟେ ପରିକଳ୍ପ୍ୟ ରାଗଂ।**

**ବଧ୍ନାତି ତେନ ପୁରୁଷଂ ପଶୁବଦ୍ ଗୁଣେନ ॥ (ବି.ଚୂ.୧୭୩)**

ଯେମିତି ଜଙ୍ଗଲରେ କୌଣସି ଗାଈ ଥିଲେ ସେ ବଡ଼ ଆରାମ ରେ ଯୁଆଡ଼େ ଇଚ୍ଛା ବୁଲା ଚଲା କରୁଥାଏ। ପୁଣି କେହି ଜଣେ ଆସି ତା ବେକରେ ଗୋଟିଏ ଦଉଡ଼ି ପକେଇ ତାକୁ ନେଇ ଗୋଟିଏ ଖୁଣ୍ଟରେ ବାନ୍ଧିଦିଏ। ଆଗକୁ ସେହି ଗାଈ ଟି ଆରାମରେ ଚାରିଆଡ଼େ ବୁଲି ପାରୁଥିଲା କିନ୍ତୁ ଏବେ ଏକ ସୀମିତ ସ୍ଥାନରେ ବୁଲୁଛି. ଅଧିକ ନୁହଁ। ସେହି ପରି ଆମର ମନ ମଧ୍ୟ ସ୍ୱତନ୍ତ୍ର। କିନ୍ତୁ ସେ କଳ୍ପନା କରିନିଏ ଯେ ବିଷୟ ଗୁଡ଼ିକରେ ସୁଖ ଅଛି ଏବଂ ନିଜକୁ ବିଷୟ ଗୁଡ଼ିକ ସହିତ ବାନ୍ଧି ଦିଏ, ଯେପରି ଜଣେ ବ୍ରହ୍ମଚାରୀ ଥିବା ପର୍ଯ୍ୟନ୍ତ ବଡ଼ ଆରାମରେ ବୁଲାବୁଲି କରିପାରେ। ଅଯଥାଟାରେ ସେ ଭାବେ ଯେ ମୋର ବିବାହ ହେଉ। କାରଣ ସେ ଭାବେ ଯେ ଏଥିରେ ବଡ଼ ସୁଖ। ବାସ୍, ତାପରେ ସେ ନିଜକୁ ନିଜେ ଗୋଟିଏ ଖୁଣ୍ଟରେ ବାନ୍ଧିଦିଏ। ସେ କଥା ବୁଝିପାରେନି। ବଢ଼ିଆ ଭ୍ାବେ ସ୍ୱତନ୍ତ୍ର ଥିଲା, କିନ୍ତୁ ନିଜକୁ ନିଜେ ବାନ୍ଧି ଦେଲା। ଏବେ ଚାକିରୀ ଖୋଜ, ଘର ଖୋଜ, ସ୍ତ୍ରୀ ପିଲାଙ୍କ ଯତ୍ନ ନିଅ, ସବୁ ଆରମ୍ଭ ହୋଇଗଲା।

ଦେଖନ୍ତୁ, ଏଠି ଗୃହାସ୍ଥାଶ୍ରମର ବିରୋଧ କରାଯାଉ ନାହିଁ, କିନ୍ତୁ କୁହାଯାଉଛି ଯେ ଆମେ କିପରି ଆସକ୍ତ ହୋଇ ଯାଉଛୁ। ଆଗକୁ କୁହା ଯାଇଛି ଯେ ଯେଉଁ ମାନେ ଗୃହାସ୍ଥାଶ୍ରମରେ ଅଛନ୍ତି ସେମାନେ କିପରି ମୁକ୍ତ ହେବେ, ତା'ପାଇଁ ସେମାନେ କଣ କରିବେ। କିନ୍ତୁ ଏଠାରେ କୁହାଯାଇଛି ଯେ ଯେଉଁମାନେ ଗୃହସ୍ଥାଶ୍ରମରେ ନାହାଁନ୍ତି ସେମାନେ ସେଥିରେ ପ୍ରବେଶ କରିବା କଣ ଦରକାର ? ଏଥିରେ ବହୁତ ସୁଖ, ଏହା କଳ୍ପନା କରି ବ୍ୟକ୍ତି ପ୍ରକୃତିରେ ଆସକ୍ତ ହୋଇଯାଏ। ତେଣୁ ତାପରେ ତାକୁ ନିଜକୁ ମୁକ୍ତ କରିବା ପାଇଁ ଚେଷ୍ଟା ମଧ୍ୟ କରିବାକୁ ପଡ଼ିଥାଏ।

**ବୈରସ୍ୟମତ୍ର ବିଷବତ୍ ସୁବିଧାୟ ପଶ୍ଚାତ୍।**

**ଏନଂ ବିମୋଚୟତି ତନ୍ମନ ଏବ ବନ୍ଧାତ୍ ॥ (ବି.ଚୂ.୧୭୩)**

ଅର୍ଥାତ୍ ସେହି ମନ ଯେତେବେଳେ ଏହା ବୁଝିବାକୁ ଲାଗେ ଯେ ଏଥିରେ କୌଣସି ରସ ନାହିଁ, ସେ ନିଜକୁ ସେଥିରୁ ବାହାର କରି ନିଏ, ମୁକ୍ତ କରି ନିଏ। ଦେବହୂତି ପ୍ରଶ୍ନ ପଚାରିଲେ - ଭଗବନ୍ , ଆପଣ କହିଲେ ଯେ ସ୍ୱରୂପ ରେ ପୁରୁଷ ଅସଂଗ କିନ୍ତୁ ଏବେ ସେ ପ୍ରକୃତି ସହିତ ମାୟାରେ ଆସକ୍ତ ହୋଇଯାଇଛି। ବନ୍ଧନ ରେ ଆସି ଯାଇଛି। ଯଦି କୌଣସି ପ୍ରକାରେ ଏବେ ସେ ସେହି ବନ୍ଧନରୁ ମୁକ୍ତ ହୋଇଗଲେ ମଧ୍ୟ ଯଦି ସେହି ମାୟା ଏବଂ ତାର ବନ୍ଧନ ପୁଣିଥରେ ଫେରି ଆସେ ତେବେ? ଅତ୍ୟନ୍ତ ଚେଷ୍ଟା କରି ଆମେ ତାକୁ କାଟିବା ଆଉ ସେ ପୁଣି ଫେରିଆସିବ ତାହେଲେ? ଉତ୍ତର ହେଲା - ଏମିତି ହୁଏ ନାହିଁ। ଏହି ମାୟା ହେଲା ଅଜ୍ଞାନ ରୂପ। ଅଜ୍ଞାନ ଥରେ ଗଲେ ପୁଣି ଫେରେ ନାହିଁ। କିନ୍ତୁ ଆମେ ଅନେକଥର ଅନୁଭବ କରି ଯେ ମାୟା ଫେରି ଆସିଛି। ଆମେ ବୋଧହୁଏ ତାର ତତ୍ତ୍ୱକୁ ଭଲ ରୂପେ ଜାଣିପାରି ନ ଥିବା, ସେଥିପାଇଁ ଏପରି ଭ୍ରମ ଅନୁଭବ ହୁଏ।

**ଭୁକ୍ତଭୋଗା ପରିତ୍ୟକ୍ତା ଦୃଷ୍ଟଦୋଷା ଚ ନିତ୍ୟଶଃ।**

**ନେଶ୍ୱରସ୍ୟାଶୁଭଂ ଧତ୍ତେ ସ୍ୱେ ମହିମ୍ନି ସ୍ଥିତସ୍ୟ ଚ ॥ (୩.୨୭.୨୪)**

ଦେଖନ୍ତୁ ଯଦି କିଏ ଜଣେ ଗୋଟେ ବଢ଼ିଆ ଆମ୍ବ ଖାଉ-ଖାଉ ଆମ୍ବଟି ତା ହାତରୁ ଖସିଯାଇ ତଳେ ପଡ଼ିଯିବ ତ ତାକୁ କେମିତି ଲାଗିବ? ତା ବୁଦ୍ଧି ତ କହିବ ଯେ ତଳେ ପଡ଼ିଯାଇଥିବା ଜିନଷକୁ ଉଠେଇବା ଠିକ୍ ହେବନି। ଯଦି ଅଳ୍ପ ସମୟ ପାଇଁ ଏହି ବିଚାର ଦ୍ୱାରା ସେ ନିଜ ମନକୁ ସଂଯତ କରିନେବ, ତେବେ ମଧ୍ୟ କିଛି ସମୟ ପରେ ତା ମନ କହିବ ଯେ ମୁଁ ଥରେ ମାତ୍ର ଆମ୍ବଟିକୁ ଖାଇଥିଲି, କେମିତି ଫିଙ୍ଗିଦେବି? ଠିକ୍ ଅଛି ମ, ପାଣିରେ ଧୋଇ ଦେବି ଓ ଖାଇଦେବି। କିନ୍ତୁ ଯେତେବେଳେ ସେ ସେହି ଆମ୍ବଟିକୁ ପୁରାପୁରି ଖାଇସାରି ଫିଙ୍ଗି ଦିଏ, ତା ପରେ ଦେଖେ କି ଚୋପାକୁ ଗାଈ ଖାଇଲା ବା ଛେଳି। ନା, କାରଣ ଏବେ ସେ '**ଭୁକ୍ତଭୋଗା**' ଏବଂ ଯାହାକୁ ସେ ପୁରାପୁରି ଛାଡ଼ିଦେଲାଣି ସେ '**ପରିତ୍ୟକ୍ତା**'। ତାହା ଖସି ପଡ଼ିନି ବରଂ ସେ ନିଜେ ତାକୁ ପୂର୍ଣ୍ଣରୂପେ ଭୋଗ କରି ଫିଙ୍ଗି ଦେଇଛି। '**ଦୃଷ୍ଟ ଦୋଷ**' ଏବେ ତାକୁ ଚୋପାରେ ବି ଦୋଷ ଦିଶିବ

ଯେ ଯଦି ସେପାକି ଟାକୁଆ ଖାଇବି ତାହେଲେ ପେଟକାଟିବ, ତା ସହିତ ରସର ସମ୍ପୂର୍ଣ୍ଣ ସ୍ୱାଦର ଆନନ୍ଦ ମଧ୍ୟ ଚାଲିଯିବ। ତେଣୁ ଯେଉଁ ଦୋଷ ଦିଶିଲା **'ଦୃଷ୍ଟଦୋଷା'**।

ସେହିପରି କୁହାଗଲା ଯେ, **'ନେଶ୍ୱରସ୍ୟାଶୁଭଂ ଧତ୍ତେ'**। ଯେ ପରି ଖିଆସାରିଥିବା ସେହି ଚୋପା ବା ଟାକୁଆ ସେହି ଭୁକ୍ତଭୋଗୀ କୁ ଦୁଃଖ ଦେଇ ସାରିଛି, ସେହି ପରି ଯିଏ ଏହି ପ୍ରକୃତିକୁ ଜାଣି କରି ଭଲଭାବରେ ଭୋଗକରି ସାରିଛି, ତାର ଦୋଷ ମଧ୍ୟ ଦେଖି ସାରିଛି ଏବଂ ସେଥିପାଇଁ ତାକୁ ତ୍ୟାଗକରି ଯିଏ **'ସ୍ୱେ ମହିମ୍ନି ପ୍ରତିଷ୍ଠିତଃ'** ନିଜ ମହିମାରେ ସ୍ଥିର ହୋଇ ସାରିଛି, ତାଙ୍କ (ଈଶ୍ୱର)ଙ୍କ ପାଖକୁ ଏହି ମାୟା ପୁଣିଥରେ ଆସି ପାରିବ ନାହିଁ। ତାଙ୍କୁ ଛୁଇଁ ପାରିବ ନାହିଁ। ଥରେ ହୋଇଗଲା ତ ହୋଇଗଲା। ବାରମ୍ବାର ହେବକି ? କିନ୍ତୁ ଗୋଟିଏ କଥା ଯେ ଏହି ମାୟା ମିଥ୍ୟା, କିନ୍ତୁ ଯେଉଁ ପର୍ଯ୍ୟନ୍ତ ସାଧୁ ସେବା ଦ୍ୱାରା ଅନ୍ତଃକରଣ ଶୁଦ୍ଧ ନ ହୋଇଛି, ସେ ପର୍ଯ୍ୟନ୍ତ ସେ ନିଜ ପ୍ରଭାବକୁ ଶୀଘ୍ର ଦୂର କରେ ନାହିଁ। ବହୁତ ନଚାଏ। କିନ୍ତୁ ଯିଏ ଅତି ତୀବ୍ର ସାଧନା କରିସାରିଛି, ତାର ଡରିବାର ନାହିଁ।

ଏତିକି କହିବା ପରେ ପର ଅଧ୍ୟାୟ ରେ କପିଳଦେବ ସବୀଜ ସମାଧି ର ଲକ୍ଷଣ କହୁଛନ୍ତି। **'ସବୀଜ ସମାଧି'** ରେ ଅର୍ଥ ହେଲା ସଗୁଣ ଧ୍ୟାନ। ଦ୍ୱିତୀୟ ସ୍କନ୍ଧର ପ୍ରାରମ୍ଭ ରେ ପ୍ରଥମେ ବିରାଟ ପୁରୁଷର ଧ୍ୟାନ ଏବଂ ତା ପରେ ନିଜ ହୃଦୟରେ ସେହି ପୁରୁଷର ଏକ ଛୋଟ -ରୂପର କଳ୍ପନା କରି ତାର ଧ୍ୟାନ କରିବା ପାଇଁ କୁହାଯାଇଥିଲା। ତାହା ହିଁ ସବୀଜ ଧ୍ୟାନ। ନିଜର ଧର୍ମାଚରଣ ଦ୍ୱାରା, ତପ ଏବଂ ବ୍ରତ ଦ୍ୱାରା ମନ କୁ ଶୁଦ୍ଧ କରି, ତାକୁ ଭୋଗ ରୁ ଦୂର କରି, ଏକାନ୍ତ ସ୍ଥାନରେ ସ୍ନାନ -ଧ୍ୟାନ କରି, ଜିତାସନ, ଜିତଶ୍ୱାସଃ ଆଦି ପରେ ଭଗବାନଙ୍କ ସଗୁଣ ଧ୍ୟାନ କରିବା ହେଲା, **'ସବୀଜ ସମାଧି'**। ସବୀଜ ଯୋଗ ହେଲା ସଗୁଣ ଯୋଗ ଏବଂ ଏହାକୁ କରୁକରୁ ମନ ଯେତେବେଳେ ଅତ୍ୟନ୍ତ ଶୁଦ୍ଧ ହୋଇଯିବ, ସେତେବେଳେ ସେହି ମନ ନିର୍ଗୁଣ ସ୍ୱରୂପରେ ସ୍ଥିତ ହୋଇଯାଏ। ତା'ପରେ ସ୍ଥିତି କିପରି ହୁଏ ? କୁହାଯାଇଛି -

**ଦେହଂ ଚ ନ ଚରମଃ ସ୍ଥିତମୁତ୍ଥିତଂ ବା**
**ସିଦ୍ଧୋ ବିପଶ୍ୟତି ଯେତୋଽଧ୍ୟଗମସ୍ୱରୂପମ୍।**
**ଦୈବାଦୁପେତମଥ ଦୈବବଶାଦପେତଂ**
**ବାସୋ ଯଥା ପରିକୃତଂ ମଦିରାମଦାନ୍ଧଃ ॥ (୩.୨୮.୩୭)**

ଯେତେବେଳେ ସେହି ଚରମ ସ୍ଥିତିରେ, ନିର୍ବୀଜରେ, ନିର୍ଗୁଣରେ, ନିର୍ବିକଳ୍ପରେ ମନ ସ୍ଥିତ ହୋଇଯାଏ, ସେତେବେଳେ ସେହି ପୁରୁଷର ନିଜର କୌଣସି ପ୍ରକାରର ଦେହାଭିମାନ ରହେ ନାହିଁ। ଯଥା, ଯେତେବେଳେ କୌଣସି ବ୍ୟକ୍ତି ମଦ୍ୟପାନ କରି ମଦିରାନ୍ଧ ହୋଇଯାଏ ସେତେବେଳେ ତା ଦେହରୁ ଲୁଗା ଖସି ପଡ଼ିଲେ ମଧ୍ୟ ସେ କିଛି ଜାଣିପାରେ ନାହିଁ। ସେହିପରି ବ୍ୟକ୍ତି ଯେତେବେଳେ ସମାଧି ରେ ରମଣ କରେ. ସେତେବେଳେ ତାର ଦେହ -ଗୃହରୁ ମନ ଆଦି ସମସ୍ତେ ଦୂରେଇ ଯାଆନ୍ତି, ତା ପରେ ତାର ଆଖି ଖୋଲାଥାଉ ବା ବନ୍ଦ ଥାଉ ତା'ପାଇଁ ସମାନ।

**ସର୍ବଭୂତେଷୁ ଚାତ୍ମାନଂ ସର୍ବଭୂତାନି ଚାତ୍ମନି।**

**ଈକ୍ଷେତାନନ୍ୟ ଭାବେନ ଭୂତେଷ୍ୱିବ ତଦାତ୍ମତାମ୍ ॥ (୩.୨୮.୪୨)**

ସେ ସମସ୍ତ ପ୍ରାଣୀମାନଙ୍କ ଭିତରେ ଆତ୍ମା କୁ ହିଁ ଦେଖେ ଏବଂ ସମସ୍ତ ପ୍ରାଣୀ ମାନଙ୍କୁ ଆତ୍ମା ମଧ୍ୟରେ ଦେଖେ। ଏହିପରି ସେ ଅଦ୍ୱୈତରେ ସ୍ଥିତ ହୋଇ ଯାଏ। ଏପରି ସ୍ଥିତି ସବୀଜ ସମାଧି ଦ୍ୱାରା ପ୍ରାପ୍ତ ହୁଏ। ମାତା ଦେବହୂତି କହିଲେ - ଭଗବନ୍ ଆପଣ ଏହି ସବୀଜ ସମାଧିର ଅତ୍ୟନ୍ତ ସୁନ୍ଦର ବର୍ଣ୍ଣନ କଲେ, ତତ୍ତ୍ୱ ଗୁଡ଼ିକୁ ମଧ୍ୟ ଭଲ ଭାବରେ ବୁଝେଇଲେ। ଏବେ ଭକ୍ତି ଯୋଗର ବିସ୍ତୃତ ବର୍ଣ୍ଣନ କରନ୍ତୁ।

**ଭକ୍ତିଯୋଗସ୍ୟ ମେ ମାର୍ଗଂ ବ୍ରୂହି ବିସ୍ତରଶଃ ପ୍ରଭୋ ॥ (୩.୨୯.୨)**

ଭଗବାନ କହିଲେ ଭକ୍ତି ତ ସମସ୍ତେ କରନ୍ତି କିନ୍ତୁ କାହାର ଭକ୍ତି ତାମସିକ, କାହାର ରାଜସିକ ତ କାହାର ସାତ୍ତ୍ୱିକ। କେହି କେହି ଭୂତ-ପ୍ରେତଙ୍କର ପୂଜା କରନ୍ତି। ସେମାନେ କାହାକୁ ମାରିବା ପାଇଁ ବା ଲୁଟିବା ପାଇଁ ତାମସିକ ପୂଜା କରନ୍ତି। ନିଜର କାମନା ପୂର୍ତ୍ତି ପାଇଁ କେହି କେହି ଦେବତାଙ୍କୁ ପୂଜା କରନ୍ତି। ସେମାନେ ରାଜସିକ ଭକ୍ତ। ଏବଂ ଯିଏ ନିଃସ୍ୱାର୍ଥପର ହୋଇ ଭଗବାନଙ୍କର ଉପାସନା କରନ୍ତି ସେମାନେ ସାତ୍ତ୍ୱିକ ଭକ୍ତ। ନିର୍ଗୁଣ ଭକ୍ତି ହିଁ ସର୍ବଶ୍ରେଷ୍ଠ ଭକ୍ତି। ତା'ର ବର୍ଣ୍ଣନା କରି ଭଗବାନ କହିଲେ ଯେ ଅସଲି ଭକ୍ତ ସିଏ ଯାହାକୁ ମୁକ୍ତି ଯାଚିଲେ ମଧ୍ୟ ନିଏ ନାହିଁ।

**ଦୀୟମାନଂ ନ ଗୃହ୍ଣନ୍ତି ବିନା ମତ୍ସେବନଂ ଜନା ॥ (୩.୨୯.୧୩)**

ସେ କୁହେ - ମୋତେ ଭଗବାନଙ୍କ ସେବା କରିବାକୁ ଅଛି। ଯଦି କିଏ କୁହେ ଯେ ତୁମେ ଭଗବାନଙ୍କର ବହୁତ ସେବା କଲଣି, ଏବେ ଭଗବାନଙ୍କ ବୈକୁଣ୍ଠ କୁ ଯାଇ

ଆରାମ ରେ ରୁହ, ସେ କହିବ, ନା ମତେ ଏପରି ସାଲୋକ୍ୟ ମୁକ୍ତି ଦରକାର ନାହିଁ। ଆଚ୍ଛା, ତାହା ହେଲେ ତୁମେ ଭଗବାନଙ୍କ ପରି ଶଙ୍ଖ-ଚକ୍ର-ଗଦା -ପଦ୍ମ ଧାରୀ ଚତୁର୍ଭୂଜ ରୂପଧାରୀ ହୋଇଯାଅ। କହିବ -ଏପରି ରୂପ ନେଇ ମୁଁ କ'ଣ କରିବି ? ସବୁବେଳେ ଶସ୍ତ୍ର ଉଠେଇ ଠିଆ ହେବାକୁ ପଡ଼ିବ। ଏପରି ସାରୂପ୍ୟ ମୁକ୍ତି ମୋର ଦରକାର ନାହିଁ। ଆଚ୍ଛା, ତା'ହେଲେ ଭଗବାନଙ୍କ ବ୍ୟକ୍ତିଗତ ସଚିବ ବନି ଯାଅ। ଆଉ ତାଙ୍କ ପାଖେ ପାଖେ ରୁହ। କହିବ ନା ସ୍ୱାମୀଙ୍କର ଏପରି ସାମୀପ୍ୟ ମଧ୍ୟ ତାର ଦରକାର ନାହିଁ। ଭଗବାନଙ୍କ ପରି ଐଶ୍ୱର୍ଯ୍ୟ ନିଅ। ସେ କହିବ ନା', ଭଗବାନଙ୍କ ସହ ଏକରୂପ ହୁଅ। କହିବ -ନା', ସବୁଯାକ ମୁକ୍ତି ଏକାସହିତ ଦେବା ପାଇଁ ଚାହିଁଲେ ମଧ୍ୟ କହିବ -ନା' ସେ ନେବ ନାହିଁ। ତା ହେଲେ କଣ କରିବାକୁ ଚାହୁଁଛ ? ମୁଁ ତାଙ୍କ ଗୋଡ଼ ମୋଡ଼ିଦେବି। ଭଗବାନଙ୍କ ସେବା କରିବି। ଏହା ହିଁ ନିର୍ଗୁଣ ଭକ୍ତି - ଏହା ହିଁ ସର୍ବଶ୍ରେଷ୍ଠ ଭକ୍ତି । ଭଗବାନ କହିଲେ-

**ଅହଂ ସର୍ବେଷୁ ଭୂତେଷୁ ଭୂତାତ୍ମାବସ୍ଥିତଃ ସଦା।**
**ତମବଜ୍ଞାୟ ମାଂ ମର୍ତ୍ତ୍ୟଃ କୁରୁତେଽର୍ଚ୍ଚବିଡ଼ମ୍ବନମ୍॥ (୩.୨୯.୨୧)**

ଭଗବାନ ଏଠାରେ ସେହି ଲୋକମାନଙ୍କର ନିନ୍ଦା କରୁଛନ୍ତି ଯେଉଁମାନେ ମୂର୍ତ୍ତି ପୂଜାରେ ହିଁ ଅଟକି ଯାଉଛନ୍ତି ଏବଂ ସମସ୍ତଙ୍କ ହୃଦୟ ରେ ରହିଥିବା ପ୍ରଭୂଙ୍କର ଉପେକ୍ଷା କରୁଛନ୍ତି। ମନେ ରଖନ୍ତୁ , ଏହା ମୂର୍ତ୍ତି ପୂଜା ର ନିନ୍ଦା ନୁହେଁ, ଏହା ସେହି ମନ୍ଦବୁଦ୍ଧି ମାନଙ୍କର ନିନ୍ଦା ଯେଉଁମାନେ ଗୋଟିଏ ମୂର୍ତ୍ତିରେ, ପଥର ରେ, କାଠରେ ତ ଭଗବାନଙ୍କୁ ଦେଖିପାରୁଛନ୍ତି, ତାଙ୍କର ପୂଜା ମଧ୍ୟ କରୁଛନ୍ତି, କିନ୍ତୁ ଏଠି ଯେଉଁ ଏତେ ଦୁଃଖୀ ଲୋକ ଅଛନ୍ତି, ତାଙ୍କର କୌଣସି ସେବା କରୁ ନାହାଁନ୍ତି। ଭଗବାନ କହିଲେ ଏହା ଅର୍ଚ୍ଚନା ନୁହେଁ, ଅର୍ଚ୍ଚନା ର ଏକ ବିଡ଼ମ୍ବନା। ଖାଲି ଦେଖେଇହେବା, ବାସ୍ ଆଉ କିଛି ନୁହେଁ।

**ୟୋ ମାଂ ସର୍ବେଷୁ ଭୂତେଷୁ ସନ୍ତମାତ୍ମାନମୀଶ୍ୱରମ୍।**
**ହିତ୍ୱାର୍ଚ୍ଚାଂ ଭଜତେ ମୌଢ୍ୟାଦ୍‌ଭସ୍ମନ୍ୟେବ ଜୁହୋତିଃ ସଃ॥ (୩.୨୯.୨୨)**

କହିଲେ, ସର୍ବଭୂତ ହୃଦୟ ରେ ସ୍ଥିତ - ମୋର ଉପେକ୍ଷା କରି, ମୂଢ଼ତାବଶ ଯିଏ କେବଳ ପୂଜା କରୁଛି, ସେ ଯେପରି ଅଗ୍ନି ରେ ଆହୁତି ନ ଦେଇ କେବଳ ପାଉଁଶରେ, ବିଭୂତି ରେ, ଭସ୍ମରେ ସ୍ୱାହା -ସ୍ୱାହା କରି ଚାଲିଛି। ଆରେ, ପାଉଁଶ ରେ ଆହୁତି ଦେଲେ କଣ ଲାଭ ?

**ଦ୍ୱିଷତଃ ପରକାୟେ ମାଂ ମାନିନୋ ଭିନ୍ନଦର୍ଶିନଃ ।**
**ଭୂତେଷୁ ବଦ୍ଧବୈରସ୍ୟ ନ ମନଃ ଶାନ୍ତିମୃଚ୍ଛତି ॥ (୩.୨୯.୨୩)**

ଯିଏ ଅନ୍ୟସହିତ ଶତ୍ରୁତା ରଖେ ତାକୁ କେବେହେଲେ ଶାନ୍ତି ମିଳେ ନାହିଁ । ସେହି ମନୁଷ୍ୟଙ୍କ ଭିତରେ ସେ ମୋର ହିଁ ଉପେକ୍ଷା କରୁଛି, ମୋର ଅପମାନ କରୁଛି । ଏଠାରେ କପିଳଦେବ ଏକ ଅତ୍ୟନ୍ତ ମହତ୍ୱପୂର୍ଣ୍ଣ କଥା କହିଛନ୍ତି - ମୂର୍ତ୍ତିପୂଜା ଆଦି ଯେଉଁ ସାଧନା, ସେମାନଙ୍କର ମହତ୍ୱ କେବଳ ସେହି ପର୍ଯ୍ୟନ୍ତ, ଯେଉଁ ପର୍ଯ୍ୟନ୍ତ -

**"ଯାବନ୍ନ ବେଦ ସ୍ୱହୃଦି ସର୍ବଭୂତେଷ୍ୱବସ୍ଥିତମ୍ ॥ (୩.୨୯.୨୫)"**

ସେହି ପରମାତ୍ମାଙ୍କୁ ନିଜ ହୃଦୟରେ ଅନୁଭବ ନ କରିଛ । ସେହି ପରମାତ୍ମା ସମସ୍ତଙ୍କ ହୃଦୟରେ ଅଛନ୍ତି, ଏପରି ନ ଦେଖିଲା ପର୍ଯ୍ୟନ୍ତ ମୂର୍ତ୍ତିପୂଜା ର ମହତ୍ତ୍ୱ ଅଛି । ତା ପରେ ମୂର୍ତ୍ତିପୂଜା ନ କଲେ ମଧ୍ୟ ଚଳିବ ।

ଲୋକମାନ୍ୟ ତିଳକଙ୍କ ସମ୍ବନ୍ଧରେ ଗୋଟିଏ ଗପ ଅଛି । ସେ ଜଣେ ଭଲ ଓ ବଡ଼ ନେତା ଏବଂ ଉତ୍ତମ ଦେଶଭକ୍ତ ଥିଲେ । ସେ ଥରେ ଜଣେ ସାଂଗ ଘରକୁ ଗଲେ ଏବଂ କଥାବାର୍ତ୍ତା କରିବାକୁ ଲାଗିଲେ । ସାଂଗଙ୍କ ସ୍ତ୍ରୀ ନିଜପୁଅକୁ କହିଲେ- "ବାପାଙ୍କୁ ଆଜି ସମୟ ନାହିଁ, ତୁମେ ଟିକିଏ ଭଗବାନଙ୍କ ମୂର୍ତ୍ତିର ପୂଜା କରିଦିଅ" । ପୁଅ କହିଲା - ତିଳକ ଜୀ ତ ପୂଜା କରୁନାହାଁନ୍ତି । "ମାଁ କହିଲେ -ଚୁପ୍ କର, ଚୁପକର । କାରଣ ପାଖ କୋଠରୀରେ ତିଳକ ବସିଥିଲେ । କିନ୍ତୁ ସେ ଏକଥା ଶୁଣି ପାରିଲେ । ସେ ଭିତରକୁ ଆସି କହିଲେ, "ଦେଖ ପୁଅ, ମା'ଙ୍କ କଥା ମାନିବା ଉଚିତ୍ । ସେ କହିଲେ ପୂଜା କର, ତ କର ।" ପୁଅ କହିଲା, "ଆପଣ ତ ପୂଜା କରୁ ନାହାଁନ୍ତି" । "ତିଳକ କହିଲେ ,"ମୁଁ ମଧ୍ୟ ପୂଜା କରେ ।" ସେ କହିଲା "ଆପଣ କରନ୍ତି ? ତା'ହେଲେ ଆପଣଙ୍କ ଭଗବାନ କାହାନ୍ତି ?" ତିଳକ ତାକୁ କହିଲେ, "ମୋ ସାଂଗରେ ଚାଲ" । ସେ ତାକୁ ଛାତ ଉପରକୁ ନେଇଗଲେ । ତଳେ ଅନେକ ଲୋକ ରାସ୍ତାରେ ଯା ଆସ କରୁଥିଲେ । ସେମାନଙ୍କ ଆଡ଼କୁ ଇଂଗିତ କରି କହିଲେ, "ଏମାନେ ମୋର ଭଗବାନ । ଆଉ ଯେତେବେଳେ ତୁମେ ଏମାନଙ୍କର ପୂଜା କରିବା ଶିଖିନେବ, ସେତେବେଳେ ମୂର୍ତ୍ତିପୂଜା ନ କଲେ ବି ଚଳିବ । କିନ୍ତୁ ନା ଏମାନଙ୍କ ପୂଜା କରୁଛ ନା ମୂର୍ତ୍ତିପୂଜା, ଏଇଟା ତ ଠିକ୍ କଥା ନୁହେଁ ।"

ଆମେମାନେ ଏତେ ବିଚିତ୍ର ଯେ ଯଦି ଆମକୁ କୁହାଯିବ ସାକାରର ପୂଜା କର ତେବେ ଆମେ କହୁ ଭଗବାନ କଣ ସାକାର ? ସେ ତ ସର୍ବବ୍ୟାପୀ । ସେ କ'ଣ କୌଣସି ମୂର୍ତ୍ତିରେ ଥାଆନ୍ତି ? ମନ୍ଦିର ରେ ଥାଆନ୍ତି ? ସେ ତ ନିର୍ଗୁଣ, ଆଚ୍ଛା ତା ହେଲେ ନିର୍ଗୁଣରେ ମନ ଲଗାଅ । ଦେଖନ୍ତୁ, ନିର୍ଗୁଣରେ ମନ ଲାଗୁଛିକି ? ବରା -ପକୁଡ଼ି ହିଁ ମନେ ପଡ଼ିବ । ନିର୍ଗୁଣ ରେ କୋଉଠି ମନ ଲାଗିବ ? ତେଣୁ ଆଜି ସ୍ଥିତି ଏପରି ଯେ ନା ନିର୍ଗୁଣରେ ମନ ଲାଗୁଛି ନା ସଗୁଣରେ ବିଶ୍ୱାସ ଆସୁଛି । ତା ହେଲେ ନିର୍ଗୁଣ ବି ଗଲା ଆଉ ସଗୁଣ ବି ଗଲା । ଖାଲି ଦୁର୍ଗୁଣ ରହିଲା । ଅବଗୁଣ ବଢ଼ିଲା । ନିଜକୁ ଏପରି ମୂର୍ଖ ବନାଅନି । ଭ୍ରାନ୍ତିରେ ରଖନି । ଦେହାତ୍ମଭାବ ବି ରଖିବ, ଆଉ ଭଗବାନଙ୍କ ପୂଜା ବି କରିବାନି, ଏଇଟା ଭୁଲ କଥା । ଭଗବାନଙ୍କ ପୂଜା କର ଆଉ ସେହି ମୂର୍ତ୍ତିର କୀର୍ତ୍ତୀ ମଧ୍ୟ ଜଗତରେ ଚାରିଆଡ଼େ ଦେଖ । ପ୍ରଥମେ ତାର ପୂଜା କରିବା ତ ଶିଖ । ତା ପରେ ଏପରି କରୁ-କରୁ ଯେତେବେଳେ ସେହି ଭଗବାନଙ୍କୁ ସମସ୍ତଙ୍କ ଭିତରେ ଦେଖିବା ଜାଣିଯିବ, ସେତେବେଳେ ମୂର୍ତ୍ତି ପୂଜା ଯଦି ନ ହୋଇ ପାରିଲା ତେବେ ଚଳିବ ।

ତା'ପରେ ଜଗତର ପ୍ରାଣୀମାନଙ୍କ ର ଶ୍ରେଷ୍ଠତା ର ତାରତମ୍ୟ ବିଷୟ ରେ କହୁଛନ୍ତି ଯେ ପଥର ରୁ ବନସ୍ପତି, ବନସ୍ପତିରୁ ଯୁକ୍ତ-ପଶୁ, ପଶୁମାନଙ୍କ ମଧ୍ୟରେ ଏକ ଇନ୍ଦ୍ରିୟ ଠାରୁ ଦୁଇ ଇନ୍ଦ୍ରିୟ ଶ୍ରେଷ୍ଠ - ଏହି ପରି କହି ଆଗକୁ କହିଲେ ଯେ ବ୍ରହ୍ମଜ୍ଞାନୀ ମାନଙ୍କ ମଧ୍ୟରେ ମଧ୍ୟ ଯିଏ ମୋର ସେବା କରିବାକୁ ଭଲ ପାଏ ସେ ସବୁଠାରୁ ଶ୍ରେଷ୍ଠ, ତା'ଠାରୁ ବଳି କେହି ନାହାଁନ୍ତି ।

**ତସ୍ମାନ୍ମୟ୍ୟର୍ପିତାଶେଷକ୍ରିୟାର୍ଥାତ୍ମା ନିରନ୍ତରଃ ।**
**ମୟ୍ୟର୍ପିତାତ୍ମନଃ ପୁଂସୋ ମୟି ସଂନ୍ୟସ୍ତକର୍ମଣଃ ॥**
**ନ ପଶ୍ୟାମି ପରଂ ଭୂତମକର୍ତ୍ତୁଃ ସମଦର୍ଶନାତ୍ ॥ (୩.୨୯.୩୩)**

ଏହି ପରି କପିଳ ଭଗବାନ୍ ଭକ୍ତିଯୋଗ ର ବର୍ଣ୍ଣନ କଲେ ଏବଂ କହିଲେ ଯେ ମନରେ ସାତ୍ତ୍ୱିକ ଭକ୍ତିକୁ ବଢ଼ାଅ । ତାଙ୍କ ଉପଦେଶ ର ସାର କେବଳ ଏତିକି ଯେ ଆମେ ମୂର୍ତ୍ତିପୂଜା କରିବା ଏବଂ ତାର କୀର୍ତ୍ତି ଚାରିଆଡ଼େ ଦେଖିବା, ଏବଂ ଜାଣିବା ଯେ ଆମେ ବାହାରେ ଯାହାର ପୂଜା କରୁଛୁ ସେହିଁ ସମସ୍ତଙ୍କ ଭିତରେ ଅଛନ୍ତି । ଯେମିତି ଆମେ ଦର୍ପଣ ଦେଖିଲା ବେଳେ କାଚକୁ ଚାହୁଁଛୁ, କିନ୍ତୁ କାଚ କୁ ନ ଦେଖି ନିଜକୁ ଦେଖୁଛୁ । ସେହିପରି ମୂର୍ତ୍ତିକୁ ମଧ୍ୟ ଦର୍ପଣ ପରି ଭାବିବେ । ସେଥିରୁ ନିଜ ସ୍ୱରୂପ କୁ ହିଁ ପ୍ରକଟ

ହେବାର ଦେଖିବେ। ଯେତେବେଳେ ଏପରି ହେବ ସେତେବେଳେ ହିଁ ସେହି ପୂଜାର ମହତ୍ତ୍ୱ ଅଛି, ସେହି ପୂଜା ସେତେବେଳେ ଯାଇଁ ସାର୍ଥକ ହେବ।

ଏହାପରେ ଅଧାର୍ମିକ, ସାଧନ ବିହୀନ ଜୀବନର ପରିଣାମର ବର୍ଣ୍ଣନା କରିଛନ୍ତି। ଦେଖନ୍ତୁ, କୌଣସି କଥା କୁ କହିବାର ଦୁଇଟି ରୀତି ବା ପଦ୍ଧତି ଅଛି। ଗୋଟିଏ ବିଧେୟାତ୍ମକ ପଦ୍ଧତି - (Positive Method) ଏବଂ ଅନ୍ୟଟି ନିଷେଧାତ୍ମକ -(Negative Method)। ସେ କହିଲେ ଯେ ଏହି ପରି ସାଧନା କଲେ ଶ୍ରେଷ୍ଠ ଫଳ ପ୍ରାପ୍ତ ହେବ ଏବଂ ଯଦି କରିବନି ତ ଦଣ୍ଡ ପାଇବ। ତେଣୁ ପର ଅଧ୍ୟାୟ ରେ ନର୍କର ବର୍ଣ୍ଣନା କରାଯାଇଛି। ତାକୁ ସେତେବେଳେ ଦେଖିବା । ତେଣୁ ଏବେ ତାକୁ ଛାଡ଼ିଦେବା। ପୁଣି କହିଲେ ଯେ ଯେଉଁମାନେ କୌଣସି ପ୍ରକାରେ ହେଲେ ମଧ୍ୟ ଧର୍ମ ଉପାସନା, ଭକ୍ତି ଏବଂ ଜ୍ଞାନର ଆଶ୍ରୟ ନେଉ ନାହାଁନ୍ତି, **"ତଂ ତଂ ଧୁନୋତି ଭଗବନ୍"** ସେମାନଙ୍କୁ ଯେମିତି ଭଗବାନ କନ୍ଦଉଛନ୍ତି। ଦେଖନ୍ତୁ ଯିଏ କୌଣସି ସଂକଳ୍ପ କରି ତାକୁ ପୁରା କରି ପାରେ ନାହିଁ, ତା'ର ବୁଝିବା ଦରକାର ଯେ ଭଗବାନ ତାକୁ ନିଜ ଆଡ଼କୁ ଟାଣିବାକୁ ଚାହୁଁଛନ୍ତି। ଏଠି ଭଗବାନ ସ୍ପଷ୍ଟ କହିଛନ୍ତି ଯେ ମୁଁ ଯାହାକୁ ନିଜ ଆଡ଼କୁ ଟାଣିବାକୁ ଚାହୁଁଛି, ତା'ର ହରଣ କରିନିଏ, ତାକୁ ଦୁଃଖୀ କରିଦିଏ। କିନ୍ତୁ ତଥାପି ଆମେ ଏକଥା କୁ ଶୀଘ୍ର ବୁଝିପାରୁନେ। ଏଠିକହିଲେ ଯିଏ କର୍ମ, ଭକ୍ତି, ଉପାସନା, ଜ୍ଞାନାର୍ଜନ ଆଦି କିଛି ବି କରେ ନାହିଁ, ସେ ନର୍କକୁ ଯାଏ।

**ଅତ୍ରୈବ ନରକଃ ସ୍ୱର୍ଗ ଇତି ମାତଃ ପ୍ରଚକ୍ଷତେ।**

**ୟା ୟାତନା ବୈ ନାରକ୍ୟସ୍ତା ଇହାପ୍ୟୁପଲକ୍ଷିତାଃ ॥ (୩.୩୦ ୨୯)**

ତେଣୁ ଏଠି ଧ୍ୟାନଦିଅନ୍ତୁ ଯେ ନରକ ଲୋକ ବି ଅଛି। ତା ବର୍ଣ୍ଣନ ଆଗକୁ ଆସିବ। ସେହି ନରକ ମାନଙ୍କରେ ଯାହା ଦୁଃଖଅଛି ତା ତ ରହିବ, କିନ୍ତୁ ଏବେ ଏଠି କଣ କଣ ଅଛି ? ଲୋକଙ୍କ ମୁଁହ କୁ ଦେଖ, ଜଣା ପଡ଼ିଯିବ ଯେ କିଏ ସ୍ୱର୍ଗରୁ ଆସିଛି ଓ କିଏ ନର୍କରୁ ଆସିଛି।

ଜଣେ ପାଦ୍ରୀ ଥିଲେ। ସେ ନିଜ ଶିଷ୍ୟ ମାନଙ୍କୁ ପଢ଼ାଇଲେ ଏବଂ କହିଲେ ଯାଅ, ଏବେ ତୁମେ ଲୋକଙ୍କ ଭିତରେ ପ୍ରଚାର କର। ଗୋଟିଏ କଥା ମନେ ରଖିବ ଯେ ସ୍ୱର୍ଗର ବର୍ଣ୍ଣନା କରିବା ସମୟରେ, ମୁହଁ ରେ ଖୁସୀ ଥିବ ଏବଂ ଆଖିରେ ଚମକ ଥିବା। ଏପରି ଭାବ ଭଂଗିମା ସହିତ ହାତ ଉଚ୍ଚାକରି ହସି ହସି ବର୍ଣ୍ଣନା କରିବ। ଜଣେ ପଚାରିଲା, "ଆଉ ଯେତେବେଳେ ଆମେ ନର୍କର ବର୍ଣ୍ଣନା କରିବୁ ତେବେ କଣ କରିବୁ ?" କହିଲେ

ତୁମେ କିଛି କରିବନି, ତୁମେ ଯେମିତି ଅଛ ସେମିତି ଠିଆହୁଅ, ଲୋକ ମାନେ ମନକୁ ମନ ବୁଝିଯିବେ। ବିଶେଷ କିଛି କରିବା ଦରକାର ନାହିଁ। ଆରେ! ଏଠି ସମସ୍ତେ ନର୍କ ଯାତନା ଭୋଗ କରୁଛନ୍ତି, ରାତି -ଦିନ ନିଜ କୁଟୁମ୍ବ ପାଳନ କରିବା ପାଇଁ କେତେ-କେତେ ପାପ କର୍ମ କରୁଛନ୍ତି, କେତେ-କେତେ ଦୁଃଖ ପାଉଛନ୍ତି, ଏବେ ଆଉ କୋଉ ନର୍କ ଦରକାର ? ରାତି-ଦିନ ଅଶାନ୍ତି ଲାଗି ରହିଛି, ନିଦ ଆସୁନି, ନିଦ ବଟିକା ଖାଇକରି ମଧ୍ୟ ନିଦ ଆସୁନି।

**ଅଧସ୍ତାନ୍ନରଲୋକସ୍ୟ ଯାବତୀର୍ୟାତନାଦୟଃ।**
**କ୍ରମଶଃ ସମନୁକ୍ରମ୍ୟ ପୁନରତ୍ରାବ୍ରଜେଚ୍ଛୁଚିଃ ॥ (୩.୩୦.୩୪)**

କିନ୍ତୁ ଆମ ଶାସ୍ତ୍ର ଗୁଡ଼ିକରେ ଗୋଟିଏ ଅତ୍ୟନ୍ତ ଭଲ କଥା କୁହାଯାଇଛି ଯେ ଆମ ମାନଙ୍କ ନରକ ଶାଶ୍ୱତ ନୁହଁ। ବଡ଼ ଦୟା! କୌଣସି ନର୍କ ସବୁଦିନ ପାଇଁ ରହିବନି। କୁହାଯାଇଛି ଯେ ଯେମିତି ବାସନ ବହୁତ ମଇଳା ହୋଇଗଲେ ବା ଲୁଗାପଟା ଅତି ମଇଳା ହୋଇଗଲେ ଯେମିତି ତାକୁ ଫୁଟୁଥିବା ପାଣିରେ ପକେଇ ଦିଅନ୍ତି, ରଗଡ଼ି - ରଗଡ଼ି ସଫା କରନ୍ତି, ସଫା କରି ସାରି ବାହାର କରି ଆଣନ୍ତି, ଠିକ୍ ସେହିପରି ନର୍କରେ ମଧ୍ୟ ସମସ୍ତଙ୍କୁ ସଫା କରିବା ପାଇଁ ପକେଇ ଦିଆ ଯାଇଥାଏ, କିନ୍ତୁ ନର୍କର ସଫେଇ ଅତ୍ୟନ୍ତ ଭୟଙ୍କର। ନର୍କର ବର୍ଣ୍ଣନ ପଢ଼ିଲେ ତ ସେଇଆ ଲାଗୁଛି।

ଆଗକୁ କୁହାଯାଇଛି ଯେ ଏହି ଜୀବ ଯଦି ଦୈବାତ୍ ନରକ କୁ ଯାଏ, ତେବେ ପୁଣି ସେଠାରୁ ବାହାରି ଆସେ ଏବଂ ସର୍ବପ୍ରଥମେ ସେହି ଜୀବ ପୁରୁଷ ଶରୀର ରେ ବୀର୍ଯ୍ୟ ରୂପରେ ଆସେ। ତା'ପରେ ସେହି ବୀର୍ଯ୍ୟର ସ୍ଥାପନା ସ୍ତ୍ରୀ ର ଶରୀର ରେ ହୁଏ। ତା'ପରେ ଗର୍ଭାଧାନ ହୁଏ। ଏଠାରେ ଗର୍ଭର ସମ୍ପୂର୍ଣ୍ଣ ବର୍ଣ୍ଣନ କରାଯାଇଛି। ପ୍ରଥମ ଦିନ କଣ ହୁଏ, ତୃତୀୟ ଦିନ କଣ ହୁଏ, ତା'ପରେ ଏକ ଏକ ମାସ ରେ କଣ ହୁଏ, ପିଣ୍ଡ କେତେ ତିଆରି ହୁଏ, ଇନ୍ଦ୍ରିୟମାନେ କେବେ ପ୍ରକଟ ହୁଅନ୍ତି ଆଦି ଆଦି। ଏଠାରେ ଗର୍ଭାବସ୍ଥାର ବର୍ଣ୍ଣନ କୁ ଦେଖି ଚିକିତ୍ସାଶାସ୍ତ୍ରୀ ମଧ୍ୟ ଆଶ୍ଚର୍ଯ୍ୟ ଚକିତ ରହିଯାଆନ୍ତି। ଏତେ ବିସ୍ତୃତ ବର୍ଣ୍ଣନ କରାଯାଇଛି। ପୁଣି କୁହାଯାଇଛି ଯେ ଜୀବ ଗର୍ଭାବସ୍ଥାରେ ଋଷି ପରି ହୋଇଥାଏ। କେଉଁ କେଉଁ ଜନ୍ମରେ ସେ କଣ ଯନ୍ତ୍ରଣା ଭୋଗକରିଛି ତାର ସବୁ ଜ୍ଞାନ ଥାଏ।

ଏବଂ -

**ସୋଽହଂ ବସନ୍ନପି ବିଭୋ ବହୁଦୁଃଖବାସଂ**
**ଗର୍ଭାନ୍ନ ନିର୍ଜିଗମିଷେ ବହିରନ୍ଧକୂପେ।**
**ୟତ୍ରୋପୟାତମୁପସର୍ପତି ଦେବମାୟା**
**ମିଥ୍ୟାମତିର୍ୟଦନୁ ସଂସୃତି ଚକ୍ରମେତତ୍ ॥ (୩.୩୧.୨୦)**

**ତସ୍ମାଦହଂ ବିଗତବିକ୍ଲବ ଉଦ୍ଧରିଷ୍ୟ**
**ଆତ୍ମାନମାଶୁତମସଃ ସୁହୃଦାଽଽତ୍ମନୈବ।**
**ଭୂୟୋ ୟଥା ବ୍ୟସନମେତଦନେକରନ୍ଧ୍ରଂ**
**ମା ମେ ଭିବିଷ୍ୟଦୁପସାଦିତବିଷ୍ଣୁପାଦଃ ॥ (୩.୩୧.୨୧)**

ସେତେବେଳେ ଏହି ଜୀବ ଭଗବାନଙ୍କୁ କହେ ଯେ ମୁଁ ଅନେକାନେକ ଗର୍ଭ ରୁ ବାହାରିଛି ଏବଂ ସେହି ସମସ୍ତ ଗର୍ଭରେ ମୁଁ ଅନେକ ଯାତନା ଭୋଗ କରିଛି, କିନ୍ତୁ ଭଗବାନ ଏବେ ଆପଣମୋତେ ଏହି ଅନ୍ଧକୂପରୁ ବାହାର କରି ଦିଅନ୍ତୁ। ଏଠାରୁ ବାହାରି ମୁଁ କେବଳ ଆପଣଙ୍କର ଭଜନ କରିବି। ପୁଣି ଏହି ମାୟାର ଚକ୍ରରେ ଫଶିବିନି। ମୋତେ ଶୀଘ୍ର ଏଠାରୁ ମୁକ୍ତ କରନ୍ତୁ। ଏହିପରି ସେ ଋଷି ମାନଙ୍କ ପରି କଥା କୁହେ **ଏବଂ ‘କୃତମତିଗର୍ଭେ ଦଶମାସ୍ୟଃ ସ୍ତୁବନ୍ନୃଷି। (୩.୩୧.୨୨)’**। ତାକୁ ଏଠି ଋଷି କୁହାଯାଇଛି। ତାର ସେ ସମୟରେ ସବୁ ମନେ ପଡ଼େ। ଦେଖନ୍ତୁ ଯଦି ଜନ୍ମ ସମୟରେ ପିଲା କାନ୍ଦେ ନାହିଁ ତ ନର୍ସ ତାକୁ ଗୋଟେ ଚଟକଣୀ ବସାଏ। ତା’ପରେ ସେ ଜୋର-ଜୋର ରେ କାନ୍ଦେ। ଆଉ ଗୋଟେ ଚଟକଣୀ ରୁ ଜୀବନ ଆରମ୍ଭ ହେଲାତ ସାରା ଜୀବନ ସେ ଚଟକଣୀ ଖାଉଥାଏ। ତା ପରେ ପୋକ କାମୁଡୁ କି ପିମ୍ପୁଡ଼ି ତାକୁ କିଛି ଜଣା ପଡ଼େ ନାହିଁ। ଖାଲି କାନ୍ଦୁଥାଏ। ଆଉ ତା ମା ମଧ୍ୟ ବୁଝିପାରେ ନାହିଁ ଯେ ପିଲାଟି କାହିଁକି କାନ୍ଦୁଛି। ସେ ଚିଲ୍ଲଉଥାଏ, ଦୁଃଖ ଭୋଗ କରୁଥାଏ। ଏଠାରେ ସେହି ସବୁ ଦୁଃଖର ବର୍ଣ୍ଣନା କରାଯାଇଛି।

**ନ ତଥାସ୍ୟ ଭବେନ୍ମୋହୋ ବନ୍ଧଶ୍ଚାନ୍ୟପ୍ରସଙ୍ଗତଃ ।**
**ଯୋଷିତ୍ସଙ୍ଗାଦ୍ୟଥା ପୁଂସୋୟଥା ତତ୍ସଙ୍ଗିସଙ୍ଗତଃ ॥ (୩.୩୧.୩୫)**

ପୁଣି କହୁଛନ୍ତି ଯେ ଜୀବ ଏଠି ଅନେକ ପ୍ରକାର ର ଆସକ୍ତି ରେ ବୁଡ଼ି ଯାଏ। କିନ୍ତୁ ସବୁ ଆସକ୍ତି ମଧ୍ୟ ରେ ପୁରୁଷର ସ୍ତ୍ରୀରେ ଆସକ୍ତି ଏବଂ ସ୍ତ୍ରୀର ପୁରୁଷରେ ଆସକ୍ତି ସର୍ବାଧିକ କଷ୍ଟପ୍ରଦ। ଅନ୍ୟ ଆସକ୍ତି ଏତେ କଷ୍ଟ ଦିଅନ୍ତି ନାହିଁ। ଆମେ ସମସ୍ତେ ଦେଖିଛେ ଏବଂ ଜାଣିଛେ ଯେ ଯେତେବେଳେ କୌଣସି ଝିଅ କୁ କୌଣସି ପୁଅ ସହିତ ପ୍ରେମ ବା ଆସକ୍ତି ହୋଇଯାଏ ସେତେବେଳେ ସେମାନେ ଜନ୍ମ ସମ୍ବନ୍ଧକୁ -ବାପା ମାଙ୍କ ସହିତ ଜନ୍ମରୁ ଯେଉଁ ଏକ ସମ୍ବନ୍ଧ ତିଆରି ହୋଇଯାଏ- ପ୍ରେମ ହୋଇଗଲେ ତାକୁ ମଧ୍ୟ ତ୍ୟାଗ କରିବା ପାଇଁ ପ୍ରସ୍ତୁତ ହୋଇ ଯାଆନ୍ତି। ଠିକ୍ ନା ନାହିଁ? କୁହାଯାଇଛିଯେ - ସ୍ତ୍ରୀ ର ସଙ୍ଗ ଏବଂ ସ୍ତ୍ରୀ ସହିତ ରହୁଥିବା ଲୋକ ମାନଙ୍କ ସଂଗ ଠାରୁ ବଳି ଦୁଃଖଦାୟକ ସଂଗ ଏହି ସଂସାର ରେ ଆଉ କିଛି ନାହିଁ। ତେଣୁ ତାଙ୍କ ହାତ ର ଖେଳନା କେବେ ବି ହୁଅନାହିଁ।

**ସ୍ତ୍ରୀତ୍ୱଂ ସ୍ତ୍ରୀସଂଗତଃ ପ୍ରାପ୍ତୋ ବିତ୍ତାପତ୍ୟଗୃହପଦମ୍ ॥ (୩.୩୧୪୧)**

କପିଳଦେବ ଏଠି ସ୍ପଷ୍ଟ ଶବ୍ଦରେ କହୁଛନ୍ତି ଯେ ଯେଉଁ ପୁରୁଷ ସ୍ତ୍ରୀ ରେ ଅତି ଆସକ୍ତ, ଖାଲି ମୋ ସ୍ତ୍ରୀ -ମୋ ସ୍ତ୍ରୀ ହେଉଛି ସେ ପୁରୁଷ ପୂର୍ବରୁ ସ୍ତ୍ରୀ ଥିଲା। ଅର୍ଥାତ୍ ଆଜି ଯିଏ ପୁରୁଷ ସେ ପୂର୍ବ ଜନ୍ମ ରେ ସ୍ତ୍ରୀ ହିଁ ଥିଲା ଏବଂ ସେତେବେଳେ ପୁରୁଷ ଦେହ ପ୍ରତି ଆସକ୍ତି ଯୋଗୁଁ ସ୍ତ୍ରୀ ଦେହ ଛାଡ଼ି ପୁରୁଷ ବନିଗଲା। ଯାହାକୁ ଆଜି ସ୍ତ୍ରୀ ଶରୀର ରେ ଦେଖୁଛ ସେ ପ୍ରଥମେ ପୁରୁଷ ଥିଲା। ସ୍ତ୍ରୀ ପ୍ରତି ଆସକ୍ତି ଯୋଗୁଁ ସ୍ତ୍ରୀ ଦେହ ଛାଡ଼ି ପୁରୁଷ ବନିଗଲା। ସେମାନେ ସ୍ତ୍ରୀ ପ୍ରତି ଆସକ୍ତି ଯୋଗୁଁ ସେହି ପୁରୁଷ ଏବେ ସ୍ତ୍ରୀ ହୋଇ ଜନ୍ମ ନେଇଛନ୍ତି। କିଏ ସ୍ତ୍ରୀ କିଏ ପୁରୁଷ? ଏଠି କିଛି ଠିକଣା ଅଛି କାହାରି? ବେଦାନ୍ତ ଦୃଷ୍ଟି ଦେଖିଲେ ହସ ମାଡୁଛି। ଏଠି ସ୍ପଷ୍ଟ ଭାବରେ ଲେଖା ହୋଇଛି ଯେ ଯିଏ ସ୍ତ୍ରୀ ଦେହ ପ୍ରତି ଆସକ୍ତ ହୁଏ ସେ ସ୍ତ୍ରୀ ହୋଇଯାଏ। ସ୍ତ୍ରୀ ର ପୁରୁଷ ଦେହ ପ୍ରତି ଆସକ୍ତି ଥିଲେ ସେ ପୁରୁଷ ହୋଇଯାଏ। ଏହି ଚକ୍ର ଚାଲୁଥାଏ।

**ତସ୍ମାନ୍ନ କାର୍ଯ୍ୟଃ ସନ୍ତ୍ରାସୋ ନ କାର୍ପଣ୍ୟଂ ନ ସମ୍ଭ୍ରମଃ ।**
**ବୁଦ୍ଧ୍ୱା ଜୀବଗତିଂ ଧୀରୋ ମୁକ୍ତସଂଗଶ୍ଚରେଦିହ ॥ (୩.୩୧.୪୭)**

ଗୃହସ୍ଥାଶ୍ରମ ମଧ୍ୟ ଗୃହ ରେ ଆସକ୍ତ ହେବା ପାଇଁ ହୋଇନାହିଁ। ଯେଉଁମାନେ ଗୃହସ୍ଥାଶ୍ରମରେ ଅଛନ୍ତି, ସେମାନେ ମଧ୍ୟ ନିଜର ଜୀବନ ଏପରି ଭାବରେ ତିଆରି କରିବା ଉଚିତ୍ ଯେପରି ନିଜର ପ୍ରତ୍ୟେକ କାର୍ଯ୍ୟ ଦ୍ୱାରା ସେମାନେ ଭଗବାନଙ୍କର ପୂଜା କରୁଛନ୍ତି। ଯଦି ଆମେ ନିଜ ଘର ର କାମ କୁ ମଧ୍ୟ ଭଗବାନଙ୍କ ପୂଜା କରୁଛୁ ଭାବି କରିପାରିବା, ତା'ହେଲେ ଆଉ କଣ କହିବା। ସେହି ବ୍ୟକ୍ତି ଗୃହସ୍ଥାଶ୍ରମ ରେ ଥାଇ ମଧ୍ୟ ମୁକ୍ତ ହୋଇଯିବ, ତାକୁ ମଧ୍ୟ ଜ୍ଞାନ ପ୍ରାପ୍ତ ହୋଇଯିବ। ସେହି ଜ୍ଞାନ ଯାହା ସନ୍ନ୍ୟାସୀ ମାନଙ୍କୁ ପ୍ରାପ୍ତ ହୁଏ। କିନ୍ତୁ ଗୋଟିଏ କଥା ଯେ, ଲୋକମାନେ ପଚାରୁ ଥାଆନ୍ତି,"ଘରେ ରହି କଣ ଜ୍ଞାନ ପ୍ରାପ୍ତ ହୋଇପାରିବ, କିନ୍ତୁ ତାକୁ ପ୍ରାପ୍ତ ହୋଇ ପାରିବ ନାହିଁ ଯିଏ ଚାହୁଁଛି ଯେ ତାକୁ ଏହି ଜ୍ଞାନ ଘରେ ରହି କରି ହିଁ ପ୍ରାପ୍ତ ହେଉ। କାରଣ ସେ ଘର ଛାଡ଼ିବା ପାଇଁ ପ୍ରସ୍ତୁତ ନୁହେଁ। ଯେଉଁ ବ୍ୟକ୍ତି ଘର ପ୍ରତି ଆସକ୍ତ, ଘର ଛାଡ଼ିବା ପାଇଁ ପ୍ରସ୍ତୁତ ନୁହେଁ, ଡରୁଛି, ସେହି ବାରମ୍ବାର ପଚାରୁଥାଏ ଯେ ଘରେ ରହି କରି ଏହି ଜ୍ଞାନ ର ପ୍ରାପ୍ତି ହୋଇ ପାରିବ କି ? ନା, ହୋଇ ପାରିବ ନାହିଁ। କିନ୍ତୁ ଯିଏ ଘର ପ୍ରତି ଆସକ୍ତ ନୁହେଁ, ଯାହାକୁ ଘର ଚାଲିଯିବାର ବା ଘର ଛାଡ଼ି ଚାଲିଯିବାର ଭୟ ନଥାଏ, ସେ ତ ଯେତେବେଳେ ଘର ଛାଡ଼ି ପାରିବ ଓ ଘର ଛାଡ଼ି ଚାଲିଯିବ। ଆରେ ବିଦୁର ଯେଉଁ ଘର ତ୍ୟାଗ କରିଥିଲେ ସେ କଣ କୌଣସି ସାଧାରଣ ଘର ଥିଲା। ସେହି ଘରେ ତ ସ୍ୱୟଂ ଭଗବାନ ଆସି ଭୋଜନ କରି ଯାଇଥିଲେ। ବିଦୁର ତ ଏପରି ଘରକୁ ଛାଡ଼ି ଚାଲି ଯାଇ ପାରିଲେ। ଛାଡ଼ିବା ଦରକାର ହେଲେ ଛାଡ଼ି ଦେବା ଉଚିତ୍। ଠିକ୍ ତୃଣ ପରି, ଯେମିତି କୌଣସି ଘାସକୁ ଉଠେଇ ପୁଣି ତାକୁ ପୋତି ଦିଆଯାଏ। ଏପରି ବ୍ୟକ୍ତି ଘରେ ରହିଲେ ମଧ୍ୟ ଭଗବାନଙ୍କୁ ପ୍ରାପ୍ତ କରିପାରିବ।

ଏହିପରି ଏହି ସବୁ ଜ୍ଞାନ ଦେଇ ସାରିବା ପରେ ଭଗବାନ କପିଳ ଦେବ ନିଜ ମାତାଙ୍କୁ କହୁଛନ୍ତି -

**ନୈତତ୍‌ଖଲାୟୋପଦିଶେନ୍ନାବିନୀତାୟ କର୍ହିଚିତ୍।**
**ନ ସ୍ତବ୍ଧାୟ ନ ଭିନ୍ନାୟ ନୈବ ଧର୍ମଧ୍ୱଜାୟ ଚ ॥ (୩.୩୨.୩୯)**

ଯିଏ ଦୁଷ୍ଟ, ନମ୍ର ନୁହେଁ, ଯାହା ମନରେ ଭକ୍ତି ନାହିଁ ତାକୁ ଏହି ଜ୍ଞାନ ଦେବ ନାହିଁ ଅର୍ଥାତ୍ ଅନଧିକାରୀ ବ୍ୟକ୍ତି କୁ ଏହି ଜ୍ଞାନ ଦେବ ନାହିଁ।

**ନା ଭକ୍ତାୟ ଚ ମେ ଜାତୁ ନ ମଦ୍‌ଭକ୍ତଦ୍ୱିଷାମପି । (୩.୩୨.୪୦)**

ଯିଏ ମୋ ପ୍ରତି ବା ମୋ ଭକ୍ତଙ୍କ ପ୍ରତି ଦ୍ୱେଷ କରୁଥିବ ତାକୁ ମଧ୍ୟ ଏହି ଜ୍ଞାନ ଦେବ ନାହିଁ। ସେ ଖାଉ-ପିଉ, ଭୋଗ କରୁ ଥାଉ। ତା ପାଖରେ ଗୋଟିଏ ପ୍ରାସାଦ ଥିଲେ, "ତୁମର ଦଶଟି ପ୍ରାସାଦ ହେଉ" ଏପରି ଆର୍ଶୀବାଦ ଦିଅ। ତାଙ୍କୁ ଏହି ଜ୍ଞାନ ଦେବାର ଆବଶ୍ୟତା ନାହିଁ। କିନ୍ତୁ **"ଶ୍ରଦ୍ଧଧାନାୟ ଭକ୍ତାୟ"** ଯିଏ ମୋ ଭକ୍ତ, ଯାହାର ଚିତ୍ତ ଶ୍ରଦ୍ଧା ଯୁକ୍ତ , ଯିଏ ସବୁ ପ୍ରାଣୀ ମାନଙ୍କ ସହିତ ମିତ୍ରତା ଭାବ ରଖେ, ସେବାରତ, ଶାନ୍ତ, ତାକୁ ଏହି ଜ୍ଞାନ ଦେବ। ତା ପରେ କହିଲେ ମାତା, ଆପଣଙ୍କୁ ଏହି ଜ୍ଞାନ ଦେଲି ଆପଣ ଶୁଣିଲେ, ଏବେ ଆପଣ ଏହାର ଚିନ୍ତନ -ମନନ କରନ୍ତୁ। ଏହା ଦ୍ୱାରା ଆପଣଙ୍କ ମନର ସମସ୍ତ ଶଂକା ଦୂର ହେବ, ଆପଣଙ୍କୁ ମୁକ୍ତି ପ୍ରାପ୍ତ ହେବ। ତା'ପରେ କହିଲେ - ନମସ୍କାର, ମୁଁ ଚାଲିଲି। ଦେଖନ୍ତୁ, କପିଳ ଦେବ ହେଲେ **ଜ୍ଞାନାବତାର।** ଆଉ ସେ ମା ଙ୍କୁ ଦେଖ ସେ ବି କେମିତି, ତାଙ୍କର ମୋହ ଦୂର ହୋଇ ଯାଇଥିଲା, ତେଣୁ **"ବିସ୍ରସ୍ତମୋହପଟଲା ତମଭିପ୍ରଣମ୍ୟ"** ସେ, ଭଗବାନ କପିଳଦେବ,ନିଜର ପୁତ୍ରଙ୍କୁ ପ୍ରଣାମ କଲେ ଏବଂ କହିଲେ, "ଆପଣ ମୋତେ ଏହି ସଂସାରର ବନ୍ଧନରୁ ମୁକ୍ତ କଲେ। ମୁଁ ଆପଣଙ୍କୁ  କିପରି ଧନ୍ୟବାଦ ଦେବି ?"  ସେ ପୁଣି ତାଙ୍କୁ ପ୍ରଣାମ କଲେ। ତାଙ୍କୁ ପ୍ରସନ୍ନ କରି କପିଳଦେବ ଚାଲିଗଲେ, କୁହାଯାଏ ଯେ ସେ ପଶ୍ଚିମବଂଗର ଗଂଗା ସାଗର କୁ ଚାଲି ଯାଇଥିଲେ।

ଏଠାରେ ତାଙ୍କ ମାତା ଦେବହୂତି ସେହି ଆଶ୍ରମରେ ରହି ଏପରି ଧ୍ୟାନମଗ୍ନ ହେଲେ ଯେ ଅନେକଦିନ ପର୍ଯ୍ୟନ୍ତ ତାଙ୍କୁ ନିଜର ଦେହର ଜ୍ଞାନ ମଧ୍ୟ ରହିଲା ନାହିଁ। ଦେବୀ - ଦେବତା ମାନେ ଆସି ତାଙ୍କ ଦେହର ଜ୍ଞାନ କରୁଥିଲେ। ଏହିପରି ଶେଷରେ ସେ ନିଜ ଦେହକୁ ବିଲୀନ କରିଦେଲେ।

**ୟ ଇଦମନୁଶୃଣୋତି ୟୋଽଭିଧତ୍ତେ**
**କପିଲମୁନେର୍ମତମାତ୍ମୟୋଗ ଗୁହ୍ୟମ୍।**
**ଭଗବତି କୃତଧୀଃ ସୁପର୍ଣ୍ଣକେତା**
**ବୁପଲଭତେ ଭଗବତ୍‌ପଦାରବିନ୍ଦମ୍॥ (୩.୩୩.୩୭)**

କପିଳ ମୁନିଙ୍କ ଦ୍ୱାରା ଦିଆଯାଇଥିବା ଏହି ଜ୍ଞାନ ର ଯିଏ ବର୍ଣ୍ଣନା କରେ, ଶ୍ରବଣ କରେ, ଚିନ୍ତନ କରେ, ତାକୁ ଭଗବାନଙ୍କ ଶ୍ରୀଚରଣ ରେ ଦୃଢ଼ ଭକ୍ତି ପ୍ରାପ୍ତ ହୁଏ। ଏପରି ଫଳଶ୍ରୁତି ଅଛି। ଏହି ପ୍ରସଙ୍ଗ ସହିତ ଏହି ତୃତୀୟ ଅଧ୍ୟାୟ ସମାପ୍ତ ହେଲା। ଏଠାରେ ସର୍ଗର ବର୍ଣ୍ଣନା କରାଗଲା, ପର ସ୍କନ୍ଧରେ ବି ବିସର୍ଗର ବର୍ଣ୍ଣନା ହୋଇଛି।



# ଚତୁର୍ଥ ସ୍କନ୍ଧ

ଏହି ମହାପୁରାଣ ରେ ସର୍ଗ, ବିସର୍ଗ, ସ୍ଥାନ,ପୋଷଣ, ଊତି, ମନ୍ୱନ୍ତର, ଈଶାନୁକଥା, ନିରୋଧ, ମୁକ୍ତି ଏବଂ ଆଶ୍ରୟ ଏହି ଦଶଟି ବିଷୟର ବର୍ଣ୍ଣନା କରାଯାଇଛି। ପ୍ରଥମ ହେଲା ଅଧିକାରୀ ସ୍କନ୍ଧ, ଦ୍ୱିତୀୟ ସାଧନ ସ୍କନ୍ଧ,ତୃତୀୟ ର ନାମ **ସର୍ଗ**। ସେଠାରେ ସର୍ଗ ଦ୍ୱାରା ଭଗବାନଙ୍କର ବର୍ଣ୍ଣନା ହୋଇଛି। ଏବେ **ବିସର୍ଗ** ଅର୍ଥାତ୍ ପୁରୁଷ ଦ୍ୱାରା ନିର୍ମିତ ସୃଷ୍ଟି ର ବର୍ଣ୍ଣନ କରାଯାଇଛି।

ଏହି ଚତୁର୍ଥ ସ୍କନ୍ଧରେ ଧର୍ମ-ଅର୍ଥ-କାମ-ମୋକ୍ଷ ଚାରିଟି ଯାକ ପୁରୁଷାର୍ଥ ର ସମ୍ୟକ୍ ବର୍ଣ୍ଣନ କରାଯାଇଛି। ଅର୍ଥ ଏବଂ କାମର ପ୍ରୟୋଜନ କଣ ? ଆମେ ଦେଖି ସାରିଛୁ। ଏଠାରେ ଆରମ୍ଭର କିଛି ଅଧ୍ୟାୟ ଗୁଡ଼ିକରେ ଧର୍ମର ବର୍ଣ୍ଣନ କରାଯାଇଛି, କିଛି ଅଧ୍ୟାୟ ରେ ଅର୍ଥର । ତା'ପରେ କାମର ଶେଷରେ ମୋକ୍ଷର । ସବୁଠି ଗୋଟିଏ କଥା କୁହାଯାଇଛି ଯେ ଯେଉଁ ଧର୍ମର ପାଳନ ଈଶ୍ୱର ଙ୍କ ପୂଜା ପାଇଁ କରାଯାଏ, ତାହାହିଁ ମୋକ୍ଷଦାୟକ ଅଟେ। କାରଣ ତାହା ଆମ ଅନ୍ତକରଣ କୁ ଶୁଦ୍ଧ କରେ। ଯଦି ଧର୍ମପାଳନ ଦ୍ୱାରା ଈଶ୍ୱର ଙ୍କ ପୂଜା କରାଯାଇନାହିଁ, ତା ହେଲେ ସେ କେତେବଡ଼ ଯାଗ-ଯଜ୍ଞ ଆଦି ହେଲେ ମଧ୍ୟ ସଫଳ ହୋଇପାରିବ ନାହିଁ, ସାର୍ଥକ ହେବନାହିଁ। ଆହୁରି ମଧ୍ୟ ସେହି ଯଜ୍ଞ ଗୁଡ଼ିକୁ - ଯେଉଁଥିରେ ଭଗବାନଙ୍କ ଆରାଧନାର ଭାବ ନିହିତ ନୁହେଁ - କରିବାବାଲା ର ମଧ୍ୟ ବିନାଶ ହୋଇଥାଏ। ଏହିପରି ଏଠାରେ କୁହାଯାଇଛି।

ସେହିପରି ଏଠାରେ ଅର୍ଥ ପୁରୁଷାର୍ଥର ମଧ୍ୟ ବର୍ଣ୍ଣନା କରାଯାଇଛି। ପ୍ରଥମେ ବ୍ୟକ୍ତି ର ମନରେ ଧର୍ମ କାର୍ଯ୍ୟ ପାଇଁ ଅର୍ଥ ପ୍ରାପ୍ତିର ଇଚ୍ଛା ହେଲେ ମଧ୍ୟ, ଅର୍ଥ ପ୍ରାପ୍ତି ପରେ ଭଗବାନ ଙ୍କ ପାଖରେ ମନ ଲଗେଇବା ଉଚିତ୍। ଜୀବନରେ କୌଣସି ପ୍ରକାର ର ଅଭାବ ଦେଖାଗଲେ, ଆମେ ଆରମ୍ଭରେ ଅର୍ଥ ପାଇଁ ଭଗବାନଙ୍କ ପାଖକୁ ଯାଇ ପାରିବା, ସେଥିରେ ଦୋଷ ନାହିଁ। କିନ୍ତୁ ପଇସା ବା ସେହି ବସ୍ତୁ ମିଳିଗଲା ପରେ ଭଗବାନଙ୍କୁ ଭୁଲିଗଲେ ତାହା ବହୁତ ବଡ଼ ଦୋଷ ହୋଇଯିବ। ଅର୍ଥପ୍ରାପ୍ତି ହେବା ପରେ ତା'ର ସମାପ୍ତି ଭଗବତ୍ ଭକ୍ତି ରେ ହେବା ଉଚିତ୍। ସେହି ପରି କାମ ପୁରୁଷାର୍ଥକୁ ମଧ୍ୟ ବୁଝିବା ଦରକାର, ଏବଂ ମୋକ୍ଷ ର ପୂର୍ଣ୍ଣତା ମଧ୍ୟ ଭଗବଦ୍ ଭକ୍ତିରେ ହିଁ ମିଳିଥାଏ। ଏହିପରି ଧର୍ମ, ଅର୍ଥ,କାମ ଏବଂ ମୋକ୍ଷ ର ଏଠାରେ ବର୍ଣ୍ଣନା କରାଯାଇଛି।

ଧର୍ମର ବର୍ଣ୍ଣନା କରିବା ସମୟରେ ଦକ୍ଷ ଯଜ୍ଞର କଥା କୁହାଯାଇଛୀ। ଅର୍ଥର ବର୍ଣ୍ଣନା କରିବା ସମୟରେ ଭକ୍ତ ଧ୍ରୁବର କଥା, କାମ ପୁରୁଷାର୍ଥ ଏବଂ ଭକ୍ତିର ବର୍ଣ୍ଣନା ସଂଦର୍ଭରେ ରାଜା ପୃଥୁଙ୍କ ବର୍ଣ୍ଣନା କରାଯାଇଛି ଏବଂ ମୋକ୍ଷ ପୁରୁଷାର୍ଥ ସଂଦର୍ଭରେ ନାରଦଙ୍କ ଦ୍ୱାରା ପ୍ରାଚୀନବର୍ହି କୁ କୁହାଯାଇଥିବା ପୁରଞ୍ଜନ ଉପାଖ୍ୟାନର ବର୍ଣ୍ଣନା କରାଯାଇଛି।

ଏବେ ଆମେ ଆରମ୍ଭ କରିବା ଧର୍ମ ପୁରୁଷାର୍ଥର କଥାରୁ। ରାଜା ମନୁ ଙ୍କର ଦୁଇଟି ପୁତ୍ର ଏବଂ ତିନୋଟି କନ୍ୟା ଥିଲେ। କନ୍ୟା ମାନଙ୍କ ମଧ୍ୟରୁ ଦେବହୂତି ଙ୍କ ବିବାହ କର୍ଦମ ଋଷିଙ୍କ ସହିତ ହୋଇଥିଲା। ତାଙ୍କର ପୁତ୍ର ହେଲେ କପିଳ ମୁନି , ଯିଏ ଥିଲେ ସାକ୍ଷାତ୍ ଭଗବାନଙ୍କ ଅବତାର। ଆମେ ସେହି ବିଷୟକୁ ଦେଖି ସାରିଛେ। ଦ୍ୱିତୀୟ କନ୍ୟା ଥିଲା ପ୍ରସୂତି, ଯାହାଙ୍କ ବିବାହ ପ୍ରଜାପତି ରୁଚିଙ୍କ ସହ ହୋଇଥିଲା। ତୃତୀୟ କନ୍ୟା ଥିଲା ଆକୂତି, ଯାହାଙ୍କ ବିବାହ ଦକ୍ଷ ପ୍ରଜାପରି ଙ୍କସହ ହୋଇଥିଲା। ତାଙ୍କର ଷୋହଳ କନ୍ୟା ହେଲେ। ସେମାନଙ୍କ ମଧ୍ୟରୁ ଜଣକ ବିବାହ ଧର୍ମ ସହିତ ହେଲା, ଏବଂ ସତୀଙ୍କ ବିବାହ ଶିବଙ୍କ ସହିତ ହୋଇଥିଲା। ଶିବ-ସତୀ ଙ୍କ ବିଷୟରେ ତୁଳସୀ ରାମାୟଣ ରେ ଅତ୍ୟନ୍ତ ବିସ୍ତୃତ ବର୍ଣ୍ଣନା ମିଳେ।

ଏଠି ମଧ୍ୟ ଆରମ୍ଭରେ ଅତ୍ୟନ୍ତ ବିସ୍ତୃତ ବର୍ଣ୍ଣନା କରାଯାଇଛି। ପୁଣି କହିଲେ ଯେ ଦକ୍ଷ ଏବଂ ତାଙ୍କ ଜ୍ୱାଇଁ ଶିବଙ୍କ ମଧ୍ୟରେ ଝଗଡ଼ା ହୋଇଗଲା। ଯଦିଓ ଶିବଙ୍କର କିଛି ଦୋଷ ନ ଥିଲା ତଥାପି ଦକ୍ଷ ତାଙ୍କ ପ୍ରତି ଦ୍ୱେଷଭାବ ରଖିଲେ। ବିଦୁରଙ୍କ ମନରେ ଜିଜ୍ଞାସା ହେଲା ଯେ ଶ୍ୱଶୁର ଏବଂ ଜ୍ୱାଇଁ ମଧ୍ୟରେ ଦ୍ୱେଷ କେମିତି ହୋଇଗଲା ? ସେ କହିଲେ - ଆପଣ ମୋତେ ସେହି ବିଷୟ କୁହନ୍ତୁ। ଏବେ ଏହି ବିଷୟ ମାଧ୍ୟମରେ ସ୍ୱାୟଂଭବ ମନୁଙ୍କ ବଂଶ ବିଷୟରେ ମଧ୍ୟ କୁହାଯାଇଛି। ଏହା ମାଧ୍ୟମରେ **ଧର୍ମର** ବର୍ଣ୍ଣନା ମଧ୍ୟ କରାଯାଇଛି, ଏବଂ ଏହା ଦ୍ୱାରା **ସାଧନ** ମାର୍ଗର ଉପଦେଶ ମଧ୍ୟ ଆମକୁ ମିଳୁଛି। ଦେଖନ୍ତୁ ଗୋଟିଏ ବିଷୟ ମଧ୍ୟମରେ ସବୁ ବିଷୟ ବୋଧ ହୋଇ ପାରୁଛି।

## ଦକ୍ଷ ପ୍ରଜାପତି ଏବଂ ଶିବଙ୍କ ବୈମନସ୍ୟ

ଦକ୍ଷ ନିଜର କନ୍ୟା ସତୀଙ୍କ ବିବାହ ଶିବଙ୍କ ସହିତ କରିଥିଲେ। ଦକ୍ଷଙ୍କୁ ପ୍ରଥମରୁ ହିଁ ଶିବ ବିଶେଷ ଭଲ ଲାଗୁ ନ ଥିଲେ କାରଣ ସେ ଶ୍ମଶାନରେ ରହନ୍ତି ଏବଂ ବିଭୂତି ଲଗାନ୍ତି। ତାଙ୍କର ଘର ଖଣ୍ଡିଏ ନାହିଁ। ଯେତେବେଳେ ଦେଖ ବଟବୃକ୍ଷ ତଳେ ବସିଥିବେ। ଦେଖନ୍ତୁ, ପ୍ରକୃତରେ ଯାହାର ଗୃହସ୍ଥାଶ୍ରମ ପ୍ରତି ଅତ୍ୟନ୍ତ ଆସକ୍ତି ଥିବ ତାଙ୍କୁ ସାଧୁ-ମହାତ୍ମା ଭଲ ଲାଗନ୍ତିନି ଏବଂ ସୁଟ -ବୁଟ ପିନ୍ଧୁଥିବା ଲୋକମାନେ ମହାତ୍ମା ମାନଙ୍କୁ ଭଲ ପାଆନ୍ତିନି। ଯେପରି ଚର୍ଚ୍ଚିଲ କେବେହେଲେ ମହାତ୍ମା ଗାନ୍ଧୀଙ୍କ ସହିତ ଦେଖା ହିଁ କଲେନି। କହିଲେ ଇଏ ଗୋଟେ କଣ ? ଖଦର ଘୋଡ଼ି ହେଉଛନ୍ତି, ଧୋତି ପିନ୍ଧୁଛନ୍ତି, ମୁଁ ତାଙ୍କ ସହ ଦେଖା କରିବିନି।

ଦେଖନ୍ତୁ ଦକ୍ଷପ୍ରଜାପତି ପ୍ରବୃତ୍ତି ମାର୍ଗରେ ଚାଲିବାବାଲା ଆଉ ଶିବ ନିବୃତ୍ତି ମାର୍ଗରେ। ସେ ସର୍ବଦା ଧ୍ୟାନମଗ୍ନ ହୋଇ ବସିଥାନ୍ତି। ପ୍ରକୃତରେ ରାମାୟଣ ର କେବଳ ସେହିଁ ବକ୍ତା। ଭାଗବତର ବକ୍ତା ମଧ୍ୟ ସିଏ। କୃଷ୍ଣକଥା ରେ ତାଙ୍କ ମନ ଲାଗେ। ସେ ସେଥିରେ ରମଣ କରନ୍ତି। କେବଳ ଏତିକି ନୁହେଁ ସେତ ଗୋପୀଙ୍କ ରୂପ ଧାରଣ କରି ବ୍ରଜକୁ ଆସନ୍ତି। କାରଣ ଗୋପୀ ମାନଙ୍କ ସହିତ ହୋଇଥିବା ରାସ ରେ ଭାଗ ନେବାକୁ ହେଲେ ଗୋପୀ ବନିକରି ଯିବାକୁ ହୁଏ। ଅର୍ଥାତ୍ ସେ ଅତ୍ୟନ୍ତ ପ୍ରେମୀ। ଦେଖନ୍ତୁ ପ୍ରବୃତ୍ତି ମାର୍ଗ ଲୋକମାନଙ୍କୁ ଜ୍ଞାନ ର ଚର୍ଚ୍ଚା କରିବା ମନ୍ଦିର କୁ ଯିବା ଆଦି ବହୁତ ଭଲ ଲାଗେ କି ? ସେମାନେ କହନ୍ତି କର୍ମକରିବା ଉଚିତ୍। ସେମାନେ ଖାଲି କର୍ମ କଥା କୁହନ୍ତି। 'ଦକ୍ଷ' ମାନେ କୁଶଳ, ପ୍ରବୃତ୍ତି ମାର୍ଗ ମାନେ ନିଜର ବୁଦ୍ଧିକୁ ବହୁତ ଚଳାନ୍ତି। 'ଦକ୍ଷ' କନ୍ୟାହେଲେ ସତୀ, ଶିବ ତ ବିଶ୍ୱାସ ସ୍ୱରୂପ। ଏବେ ସତୀଙ୍କର ଅତି ବିଚିତ୍ର ସ୍ଥିତି ହୋଇଗଲା। ସେ ତର୍କବାଦୀ ଦକ୍ଷର କନ୍ୟା ଆଉ ପତ୍ନୀ ହେଲେ ବିଶ୍ୱାସରୂପୀ ଶିବଙ୍କର। ତେଣୁ କେତେବେଳେ ତାଙ୍କ ମନରେ ପିତାଙ୍କ ସଂସ୍କାର ଜାଗ୍ରତ ହୋଇ ଯାଉଥିଲା ତ କେବେ ପତିଙ୍କର । ପତିଙ୍କର ସଂସ୍କାର ଥିବା ପର୍ଯ୍ୟନ୍ତ ସେ ଶାନ୍ତିରେ ରହୁଥିଲେ। କିନ୍ତୁ ପିତାଙ୍କ ସଂସ୍କାର ଜାଗ୍ରତ ହେଲେ ସବୁ ଗଡ଼ ବଡ଼ ହୋଇଯାଉଥିଲା। ଆମ ମାନଙ୍କର ମନ ମଧ୍ୟ କେତେବେଳେ ସଂଶୟ ଗ୍ରସ୍ତ ତ କେତେବେଳେ ଶ୍ରଦ୍ଧା ବିଶ୍ୱାସ ରେ ପରିପୂର୍ଣ୍ଣ ରହେ। ମନରେ ବିଶ୍ୱାସ ଥିଲେ ଶାନ୍ତି ମିଳେ କିନ୍ତୁ ସଂଶୟ ଆସିଗଲେ ତର୍କ-ବିତର୍କ ଲାଗିରହେ ଏବଂ ସେତେବେଳେ ବହୁତ ଅଶାନ୍ତି ମିଳେ। ସତୀ ଶିବଙ୍କୁ ଚାହୁଁଥିଲେ ତେଣୁ ତାଙ୍କର ବିବାହ ହେଲା।

ଏବେ ବିଦୁର ମୈତ୍ରେୟ ଋଷିଙ୍କୁ ପଚାରିଲେ ଯେ ଶିବ ଏବଂ ଦକ୍ଷଙ୍କ ମଧ୍ୟରେ ଦ୍ୱେଷର କାରଣ କଣ ? ସେତେବେଳେ ମୈତ୍ରେୟ ଋଷି କହିଲେ ଯେ ଥରେ ପ୍ରଜାପତି ମାନଙ୍କର ଯଜ୍ଞ ରେ ସମସ୍ତେ ପ୍ରଜାପତି, ଦେବତାଗଣ, ଋଷି ଆଦି ଏକତ୍ରିତ ହେଲେ। ସଭାରେ ସମସ୍ତେ ବସି ଥିଲେ। ସେଠାରେ ବ୍ରହ୍ମା ଏବଂ ଶିବ ମଧ୍ୟ ଥିଲେ। ଶିବ ଆଖି ବନ୍ଦ କରି ବସିଥିଲେ। ସେ କହିଲେ, ଆଖି ଖୋଲି କଣ ଦେଖିବା, ଦେଖିବା ପରି କିଛି ନାହିଁ। ସେ ଶାନ୍ତ ଚିତ୍ତ ରେ ଆଖିବନ୍ଦ କରି ବସିଥିଲେ। ସେହି ସମୟରେ ସେହି ସଭାରେ ଦକ୍ଷ ପ୍ରବେଶ କଲେ। ଏହି ଦକ୍ଷ ବ୍ରହ୍ମାଙ୍କର ମାନସପୁତ୍ର କିନ୍ତୁ ଅତ୍ୟନ୍ତ ଅହଂକାରୀ ମଧ୍ୟ। ସେ ସଭାରେ ପ୍ରବେଶ କଲା ମାତ୍ରେ ସମସ୍ତେ ଉଠି ଠିଆ ହେଲେ କିନ୍ତୁ ବ୍ରହ୍ମା ଉଠିଲେ ନାହିଁ। ତାଙ୍କର ତ ନିଜର ପୁତ୍ର, ତା ପାଇଁ କଣ ଠିଆ ହେବେ। ତା ସହିତ ଶିବ ମଧ୍ୟ ଉଠିଲେ ନାହିଁ କାରଣ ସେ ଧ୍ୟାନସ୍ଥ ହୋଇଯାଇଥିଲେ। ଏଥିରେ ଦକ୍ଷ ବ୍ରହ୍ମାଙ୍କ ଉପରେ ତ ରାଗିଲେନି, କିନ୍ତୁ ଶିବଙ୍କ ଉପରେ ରାଗିଗଲେ।

**ଅୟଂ ତୁ ଲୋକପାଲନାଂ ଯଶୋଘ୍ନୋ ନିରପତ୍ରପଃ। (୪.୨.୧୦)**

ଦକ୍ଷ କହିଲେ, 'ଇଏ ତ ବଡ଼ ନିର୍ଲଜ'। ଦେଖନ୍ତୁ ଶିବଙ୍କୁ ନିଲର୍ଜ କହିଲେ। ଏହି ଲୋକପାଳ ମାନଙ୍କ ମଧ୍ୟରେ ଏହି ବେଢ଼ଙ୍ଗ ବ୍ୟକ୍ତି ଆସି ଏଠି ବସି ଯାଇଛି। ଏହାକୁ ଟିକିଏ ହେଲେ ରୀତି -ନୀତି, ନିୟମ, ମର୍ଯ୍ୟଦାର ଜ୍ଞାନ ନାହିଁ। ଇଏ ମୋ କନ୍ୟାର ପାଣିଗ୍ରହଣ କରିଛି। ତେଣୁ ମୋର ଶିଷ୍ୟପରି। କିନ୍ତୁ ଏଠି ତ ଟିକିଏ ଠିଆ ବି ହେଉନି।" ପୁଣି ଦକ୍ଷ ତାଙ୍କୁ ମର୍କଟ -ଲୋଚନ ମଧ୍ୟ କହିଦେଲେ। ଶିବ ତ ଶିବାନନ୍ଦ, ସଚ୍ଚିଦାନନ୍ଦ ସ୍ୱରୂପ ସ୍ୱୟଂ ପରମାତ୍ମା। ଏହା ତାଙ୍କ ପ୍ରତି ବହୁତ ବଡ଼ ଅପମାନ ଥିଲା। ସେ ତ ନିତ୍ୟ ଶୁଦ୍ଧ ସ୍ୱରୂପ କିନ୍ତୁ ଏଠି ଦକ୍ଷ କହିଲେ -ଇଏ ଅଶୁଦ୍ଧ, ଶ୍ମଶାନରେ ରହେ, ଭସ୍ମ ଲେପନ କରେ। ଏହି ପରି ସମସ୍ତଙ୍କ ସମ୍ମୁଖରେ ଦକ୍ଷ ଶିବଙ୍କୁ ଅନେକ ଅପମାନ ଜନକ ବଚନ କହିଲେ। କିନ୍ତୁ ତଥାପି ତାଙ୍କୁ ନା କେହି ମନା କଲେ ନା ବାଧା ଦେଲେ, କିଛି କହିଲେନି ମଧ୍ୟ। ଶିବ ତଥାପି ଶାନ୍ତ ଭାବେ ବସିରହିଲେ। ସେହି ପରି ଯଦି ଦକ୍ଷ ମଧ୍ୟ ଶାନ୍ତ ହୋଇ ବସି ରହିଥାନ୍ତେ ତେବେ କଥା ଆଗକୁ ବଢ଼ି ନଥାନ୍ତା। କିନ୍ତୁ ନା, ଦକ୍ଷ କହଲେ ଏବେ ଏହାକୁ ଅଭିଶାପ ଦେଉଛି ଯେ ଯାଗ-ଯଜ୍ଞାଦି ରେ ଅନ୍ୟ ଦେବତା ମାନଙ୍କ ସହିତ ଯାକୁ ଆହୁତି ନ ମିଳୁ। ଯାକୁ ନିଜର ଉପହାର ମଧ୍ୟ ନ ମିଳୁ। ଏପରି ଅଭିଶାପ ଦେଇ ଦକ୍ଷ ସେଠାରୁ ଚାଲିଗଲେ।

ଭଗବାନ ଶିବ ଶାନ୍ତ ହୋଇ ବସି ରହିଲେ। କହିଲେ -ପିଲାଲୋକ, ଏମିତି ଯାଉ -ସ୍ୟାଉ ଗୁଡ଼େ କହନ୍ତି। ସେ ଗୁଡ଼ାକ ଶୁଣନ୍ତୁନି। କିନ୍ତୁ ଭଗବାନଙ୍କର ଏପରି ଅପମାନ ଦେଖି ତାଙ୍କ ବାହନ ନନ୍ଦୀଙ୍କୁ କ୍ରୋଧ ଆସିଗଲା। ସେ କହିଲେ ମୋ ସ୍ୱାମୀଙ୍କୁ ଏ ଅଭିଶାପ ଦେବାବାଲା ଇଏ କିଏ ? ପୁଣି ନନ୍ଦୀ ମଧ ଦକ୍ଷଙ୍କୁ ଅଭିଶାପ ଦେଇ ଦେଲେ - **'ଦକ୍ଷାୟ ଶାପଂ ବିସସର୍ଜ ଦାରୁଣଂ'**, କହିଲେ ଭଗବାନ ଶିବ ତା ଅଦ୍ୱୈତ ତତ୍ତ୍ୱ ରେ ରମଣ କରନ୍ତି। ତାଙ୍କ ଭିତରେ ଏହି ଦକ୍ଷ ଦୋଷ ଦେଖୁଛି। ଆରେ! ଯିଏ ଗୃହସ୍ଥିରେ , ସ୍ତ୍ରୀ ରେ ରମଣ କରୁଛି, ଭୋଗରେ ବୁଡ଼ି ରହିଛି, ସେ ଭଲା ଶିବଙ୍କୁ କେମିତି ଜାଣିବ, କେମିତି ବୁଝପାରିବ ? ଏହା ବୁଦ୍ଧି ବିଗିଡ଼ି ଗଲାଣି । ବହୁତ ମେଁ- ମେଁ କରୁଛି।.ତେଣୁ ଯାର ମୁଣ୍ଡ ଆଉ ମୁହଁ ଛେଳିର ହୋଇଯାଉ। ନନ୍ଦୀ ର ଏପରି ଅଭିଶାପ କୁ ଶୁଣି ସେଠାରେ ଉପସ୍ଥିତ ଭୃଗୁଋଷିଙ୍କୁ ବହୁତ ରାଗ ମାଡ଼ିଲା। ସେ ବି ପ୍ରବୃତ୍ତି ମାର୍ଗରେ ଏବଂ ଦକ୍ଷର ସମର୍ଥକ ଥିଲେ। ଭୃଗୁ ଋଷି ଶିବଗଣଙ୍କୁ ତଥା ତାଙ୍କ ଅନୁଚର ବର୍ଗଙ୍କୁ ଅଭିଶାପ ଦେଲେ ଯେ ତୁମେ ସମସ୍ତେ ମଧ ଅମଙ୍ଗଳ ରୂପ ହୁଅ, ନଗ୍ନ -ଭଗ୍ନ ହେଇ ବୁଲୁ ଥାଅ। ଜଗତରେ ତୁମକୁ କୌଣସି ସମ୍ମାନ ନ ମିଳୁ। ତୁମମାନଙ୍କୁ ଜଗତରେ ଅଯଥାରେ ବୁଲିବାକୁ ପଡୁ। ସେ ଏପରେ ଅଭିଶାପ ଦେଲେ ଏବଂ କହିଲେ ଯେ ଶିବଦୀକ୍ଷା ନେଉଥିବା ସମସ୍ତେ ମଧ ଏହି ପ୍ରକାର ର ହେବେ।

**ନଷ୍ଟଶୌଚ୍ଚ ମୂଢ଼ଧିୟୋ ଜଟାଭସ୍ମାସ୍ଥିଧାରିଣଃ। (୪.୨.୨୯)**

ଦକ୍ଷ ଶିବଙ୍କୁ ଅଭିଶାପ ଦେଲେ, ନନ୍ଦୀ ଦକ୍ଷଙ୍କୁ ଅଭିଶାପ ଦେଲେ, ଆଉ ଭୃଗୁଋଷି ନନ୍ଦୀଙ୍କୁ ଅଭିଶାପ ଦେଲେ। ଏହିପରି ସେଠାରେ ଅଭିଶାପ ଦିଆ ନିଆ ଚାଲିଲା। କଳିକଜିଆ ଲାଗିଲା। ଏହି ସଂଦର୍ଭରେ ଏଠି କୁହାଯାଇଛି ଯେ, କେବେ-କେବେ ଆମେ ବଡ଼ ବଡ଼ ପଦ-ପଦବୀରେ ରହିଥିଲେ ମଧ ଦକ୍ଷଙ୍କ ପରି ଆମ ବୁଦ୍ଧି ଛୋଟ -ହୀନ ହୋଇ ରହିଥାଏ। ଜଣେ କଳି କଲା, ଆଉ ଜଣକ କଥା ବଢ଼େଇଲା ତ ତୃତୀୟ ଜଣକ ବି ଆରମ୍ଭ କରିଦେଲା। ଏହିପରି ଅଭିଶାପ ଦିଆନିଆ ଚାଲିଲା ଏବଂ ଦୁର୍ଭାଗ୍ୟ ବଶତଃ ସମସ୍ତେ ଶକ୍ତିଶାଳୀ ଥିଲେ, ତେଣୁ ସମସ୍ତଙ୍କ ଅଭିଶାପ ର ପ୍ରଭାବ ପଡ଼ିଲା। ଏହି ଘଟଣା ରେ ସ୍ତବ୍ଧ ହୋଇ ଭଗବାନ ଶିବ ନିଜ ଅନୁଚର ମାନଙ୍କ ସହିତ ସେଠାରୁ ଚାଲିଗଲେ।

## ଦକ୍ଷ ଯଜ୍ଞରେ ସତୀଙ୍କ ଆତ୍ମ - ଦହନ

ଏହି ଘଟଣା ପରେ ବହୁତ ସମୟ ବିତିଗଲା। କୈଳାସରେ ଶିବ ଏବଂ ନିଜ ଘରେ ଦକ୍ଷ ଉଭୟଙ୍କ ମନରେ ଏହି କଥା ରହିଗଲା। ଏହା ମଧ୍ୟରେ ବ୍ରହ୍ମା ଦକ୍ଷଙ୍କୁ ସମସ୍ତ ପ୍ରଜାପତି ମାନଙ୍କର ଅଧିପତି କରିଦେଲେ। ତେଣୁ ଦକ୍ଷର ଅହଂକାର ଆହୁରି ବଢ଼ିଗଲା। ପ୍ରଥମେ ସେ ବାଜପେୟ ଯଜ୍ଞ କଲେ, ତା ପରେ ବୃହସ୍ପତିସବ ନାମକ ମହାଯଜ୍ଞ ଆରମ୍ଭ କଲେ। ସେହି ଉତ୍ସବକୁ ସମସ୍ତ ବ୍ରହ୍ମର୍ଷି, ଦେବର୍ଷି, ପିତୃ, ଦେବତା ଆଦି ନିଜ-ନିଜ ପତ୍ନୀ ମାନଙ୍କ ସହିତ ସାଜସଜ୍ଜା ରେ ଯାଉଥିଲେ। ଆକାଶରେ ସେମାନଙ୍କ ବିମାନକୁ ଯାଉଥିବାର ସତୀ ଦେଖିଲେ। ଯାଉ-ଯାଉ ଦେବତାମାନେ ସେହି ଯଜ୍ଞର ଚର୍ଚ୍ଚା କରୁଥିଲେ। ସତୀ ସବୁ ଶୁଣିଲେ। ସବୁ ଦେଖି ଶୁଣି କରି ତାଙ୍କ ମନରେ ମଧ୍ୟ ନିଜ ପିତାଙ୍କ ଘରକୁ ସେହି ଯଜ୍ଞ ଉତ୍ସବକୁ ଯିବା ପାଇଁ ଇଚ୍ଛା ଉତ୍ପନ୍ନ ହେବାରୁ ସେ ଶିବ ଙ୍କୁ କହିଲେ, "ସ୍ୱାମୀ, ମୋର ମଧ୍ୟ ପିତାଙ୍କ ଘରକୁ ଯିବା ପାଇଁ ପ୍ରବଳ ଇଚ୍ଛା ହେଉଛି। ମୁଁ ସେଠାକୁ ଗଲେ ନିଜ ମା' ଭଉଣୀ ଓ ଅନ୍ୟ ପ୍ରିୟଜନ ମାନଙ୍କୁ ଭେଟି ପାରିବି। ତେଣୁ ଯଦି ଆପଣ ଚାହିଁବେ ତାହେଲେ ଆମେବି ଏହି ଯଜ୍ଞ ଉତ୍ସବକୁ ଯାଇ ପାରନ୍ତେ। ଆପଣତ କରୁଣାମୟ, ଦୟା କରି ମୋର ଏହି ଯାଚନା ପ୍ରତି ଦୃଷ୍ଟି ଦିଅନ୍ତୁ ଏବଂ ମୋ ଇଚ୍ଛା ପୂର୍ଣ୍ଣ କରି ମତେ ଅନୁଗୃହୀତ କରନ୍ତୁ।" ଏହା ଶୁଣି ମଧ୍ୟ ଶିବ ଚୁପ ରହିବାରୁ ସେ ପୁଣି କହିଲେ, " ସେ ଆମକୁ ନିମନ୍ତ୍ରଣ କରି ନାହାଁନ୍ତି, ଏହା ସତ୍ୟ, କିନ୍ତୁ ବାପଘରକୁ ଯିବା ପାଇଁ ନିମନ୍ତ୍ରଣର କ'ଣ ଦରକାର ? ନିମନ୍ତ୍ରଣ କୁ କାହିଁକି ଅପେକ୍ଷା କରିବା ?"

ଶିବ କହିଲେ "ତୁମେ କହୁଛ ମା' କୁ ଭେଟିବ, ଠିକ୍ କଥା। ନିମନ୍ତ୍ରଣ ମଧ୍ୟ ଦରକାର ନାହିଁ , ସେ ମଧ୍ୟ ଠିକ୍। କିନ୍ତୁ ଦକ୍ଷ ମନରେ ମୋ ବିରୁଦ୍ଧରେ ଦ୍ୱେଷ ଭାବ ଅଛି।" ଦେଖନ୍ତୁ, ଏପର୍ଯ୍ୟନ୍ତ ସତୀଙ୍କୁ ଏ ବିଷୟରେ କିଛି ଜଣା ନଥିଲା। ଶିବ କେବେବି ତାଙ୍କୁ ଏହି କଥା କହି ନଥିଲେ ଯେ କେବେ ପ୍ରଜାପତି ମାନଙ୍କ ଯଜ୍ଞରେ ଦକ୍ଷ ତାଙ୍କୁ କିପରି ଅପମାନ ଦେଇଥିଲେ। ଏବେ ସମୟ ଦେଖି କହିଲେ, କିନ୍ତୁ ସେ ମୋର ଅପମାନ କରିଛି ଏକଥା ମଧ୍ୟ କହିଲେ ନାହିଁ। ଖାଲି କହିଲେ ଦକ୍ଷଙ୍କ ମନରେ ମୋ ପ୍ରତି ଦ୍ୱେଷ ଭାବ ଅଛି ତେଣୁ ସେ ଜାଣିଶୁଣି ଆମକୁ ନିମନ୍ତ୍ରିତ କରି ନାହାଁନ୍ତି। ଯେତେବେଳେ ଜାଣିଶୁଣି ନିମନ୍ତ୍ରଣ କରି ନାହାଁନ୍ତି, ସେତେବେଳେ କେମିତି ଭଲା ଯିବା ? ଏପରି ସ୍ଥିତିରେ ଗଲେ ଅତ୍ୟନ୍ତ ଅପମାନ ହିଁ ପାଇବା। ତେଣୁ ତୁମେ ଯାଅନି।

ଦେଖନ୍ତୁ, ଥରେ ଆମ ମନରେ କୌଣସି କଥା ପାଇଁ ଇଚ୍ଛା ହେଲେ, ଠିକ୍ କଥା ବି ବୁଝି ହୁଏନି। ସତୀ ମଧ୍ୟ ଠିକ୍ କଥା ଟି ବୁଝି ପାରିଲେ ନାହିଁ। ନିଜ ବନ୍ଧୁ ବାନ୍ଧବ ମାନଙ୍କୁ ଭେଟିବାର ଇଚ୍ଛା ତାଙ୍କ ମନରେ ଉଠି ସାରିଥିଲା। ସେହି ଇଚ୍ଛା ପୂର୍ଣ୍ଣ ନ ହେବାର ସଂଭାବନା ଯୋଗୁଁ ତାଙ୍କ ଆଖିରେ ଲୁହ ଆସିଲା, ଏବଂ ତା'ପରେ ଶ୍ୱାସ ତୀବ୍ର ହୋଇଗଲା। ଏହି ଶୋକ ପରେ ଶିବଙ୍କ ଉପରେ ଅତ୍ୟନ୍ତ କ୍ରୋଧିତ ହୋଇ ତାଙ୍କୁ ଏପରି ଚାହିଁଲେ ସତେ ଯେପରି ତାଙ୍କୁ ନିଜ ଆଖି ଦ୍ୱାରା ହିଁ ଭସ୍ମ କରିଦେବେ। ନିଜ ଇଚ୍ଛା ପୂର୍ତ୍ତି ରେ ବିଘ୍ନ ଆସିଲେ ଦେଖନ୍ତୁ ମନର ଦଶା କିପରି ହୋଇଯାଏ। ତାପରେ କହିଲେ, " ଆପଣ ନ ଯାଆନ୍ତୁ ମୁଁ ତ ଯିବି।" ଶିବ କହିଲେ, " ଠିକ୍ ଅଛି ଯାହା ତୁମ ଇଚ୍ଛା କର।" ଶିବ ଙ୍କ ମନରେ ତାଙ୍କ ପ୍ରତି କୌଣସି ଆସକ୍ତି ନ ଥିଲା। ସେ ରହିଲେ କେତେ ଗଲେ କେତେ ? ଏହା ଦ୍ୱାରା ତାଙ୍କୁ କଣ ଫରକ ପଡ଼ିବ। ସତୀ କହିଲେ, "ମୁଁ ତ ଯାଉଛି ।" କହି ଚାଲିଗଲେ। ଏବେ ନନ୍ଦୀ ଦେଖିଲେ ସ୍ୱାମୀନୀ ଏକୁଟିଆ ଯାଉଛନ୍ତି, ତ ସେ ମଧ୍ୟ ଅନ୍ୟମାନଙ୍କୁ ସାଙ୍ଗରେ ନେଇ ତାଙ୍କ ସହ ଚାଲିଲେ। ମୁଣ୍ଡ ଉପରେ ଛତା, ସତୀଙ୍କ ଶୁଆ, ତାଙ୍କର ସଂଗୀତ ର ବାଦ୍ୟ ଯନ୍ତ୍ର ଆଦି ସାଙ୍ଗରେ ନେଇ ସତୀ ଚାଲିଲେ। ସମସ୍ତ ଶିବଗଣ ମଧ୍ୟ ତାଙ୍କ ସହ ଚାଲିଲେ।

ସେମାନଙ୍କ ସହ ସତୀ ଯଜ୍ଞଶାଳାରେ ପହଞ୍ଚିଲେ। ସେଠାରେ ଦକ୍ଷ ତାଙ୍କର ଅତ୍ୟଧିକ ଅବହେଳା କଲେ। ସତୀଙ୍କ ପ୍ରତି ନିଜ ପିତାଙ୍କ ବ୍ୟବହାର ଦେଖି ଅନ୍ୟ କେହି ହେଲେ ବି ତାଙ୍କୁ ଭେଟିବାର ସାହାସ କଲେ ନାହିଁ ନା କେହି ତାଙ୍କର ଆଦର ସତ୍କାର କଲେ। କେବଳ ତାଙ୍କ ମା' ଅବଶ୍ୟ ତାଙ୍କୁ ଅତ୍ୟନ୍ତ ପ୍ରେମର ସହିତ ଭେଟିଲେ କିନ୍ତୁ ଅନ୍ୟ କେହି ହେଲେ ବି ତାଙ୍କ ସହ କଥା ପଦେ ବି ହେଲେ ନାହିଁ। ତା ପରେ ସତୀ ଦେଖିଲେ ଯେ ସେଠି ଯଜ୍ଞମଣ୍ଡପରେ ସମସ୍ତ ଦେବତା ମାନଙ୍କ ପାଇଁ ସ୍ଥାନ ଅଛି କିନ୍ତୁ ଶିବଙ୍କ ପାଇଁ କୌଣସି ଯଜ୍ଞ -ଭାଗ ରଖା ଯାଇ ନାହିଁ। ଦେଖନ୍ତୁ ପତି ପାଖରେ ଥିଲା ବେଳେ ତାଙ୍କ ହୃଦୟରେ ପିତୃ ପ୍ରେମ ଥିଲା, ଏବେ ପିତାଙ୍କ ପାଖକୁ ଯାଇ ସେଠାରେ ସ୍ଥିତି ଦେଖି ପତି ପ୍ରେମ ଆସିଗଲା। ପ୍ରକୃତରେ ତାଙ୍କ ହୃଦୟରେ ପତି ପ୍ରେମ ଥିଲା। ପୂର୍ବରୁ ଶିବଙ୍କ କହିବା କଥା ତାଙ୍କର ମନେ ପଡ଼ିଗଲା।

ଏବେ ପତିଙ୍କ ଏପରି ଅପମାନ ହେଉଥିବାର ଦେଖି ତାଙ୍କୁ ଏତେ କ୍ରୋଧ ଆସିଲା ଯେ ସେ ଦକ୍ଷଙ୍କୁ ସେହି ପୂର୍ଣ୍ଣ ସଭାରେ କହିଲେ -ମୋତେ ଏବେ ଲାଜ ମାଡୁଛି ଯେ ମୁଁ ତୁମର କନ୍ୟା ଏବଂ ତୁମେ ମୋର ପିତା। ଏବେ ମୁଁ କୋଉ ମୁହଁ ନେଇ ନିଜ ସ୍ୱାମୀ ଙ୍କ ପାଖକୁ ଫେରିବି ? ସେ ମୋତେ ସମ୍ବୋଧନ କହିବେ - 'ହେ ଦାକ୍ଷାୟଣୀ,'

ତୁମ ସହ ସମ୍ବନ୍ଧକୁ ନେଇ ମୋତେ ସମ୍ବୋଧନକଲେ ମୋତେ ଆଦୌ ଭଲ ଲାଗିବ ନାହିଁ। ମୁଁ ତାଙ୍କ କଥା ମାନିଲି ନାହିଁ। ପୁଣି କହିଲେ, " ତୁମେ ଶିବଙ୍କ ପାଖରେ ଦୋଷ ଦେଖୁଛ ? ଯିଏ ନିର୍ଗୁଣ, ନିର୍ବିଶେଷ, ନିରାକାର, ନିର୍ବିକଳ୍ପ ସ୍ୱରୂପ ପରମାତ୍ମା, ନିତ୍ୟ ଶୁଦ୍ଧ, ତାଙ୍କୁ ତୁମେ ଅଶୁଦ୍ଧ ମାନୁଛ ? ସେ କାହାଠାରୁ କିଛି ଚାହାଁନ୍ତିନି। ତୁମେ ତାଙ୍କ ସୁଖ ଦେଖି ପାରୁନ। ସତ କହିବାକୁ ଗଲେ ଏଇଆ ଯେ ତୁମେ ତାଙ୍କୁ ଈର୍ଷା କରୁଛ ଯେ କୌଣସି ବସ୍ତୁର ଇଚ୍ଛା ନକରି ସେ ଆନନ୍ଦରେ ମଗ୍ନ ରହୁଛନ୍ତି, ଏବଂ ତୁମ ପାଖରେ ସବୁ କିଛି ଥାଇ ମଧ୍ୟ ତୁମେ ସବୁବେଳେ ଦୁଃଖ କରୁଛ। ତେଣୁ ତୁମେ ତାଙ୍କୁ ଦ୍ୱେଷ କରୁଛ, ଈର୍ଷା କରୁଛ। ଏବେ ମୁଁ ଏହି ଦେହକୁ ଆଉ ଧାରଣ କରିପାରିବି ନାହିଁ ଯାହାର ସମ୍ବନ୍ଧ ତୁମ ସହିତ ଅଛି।" ଦେଖନ୍ତୁ ସେ କେତେ ରାଗିଗଲେ । ଆଉ ସେହି ସମୟରେ ସେ ନିଜ ଦେହକୁ ଯୋଗଅଗ୍ନିରେ ଜଳେଇ ଦେଲେ। ଯେତେବେଳେ ଶିବଗଣ ଦେଖିଲେ ଯେ ଆମ ସ୍ୱାମିନୀ ତ ଦେହତ୍ୟାଗ କରିଦେଲେ, ସେତେବେଳେ ନନ୍ଦୀ ଙ୍କ ସଂକେତ ପାଇ ସବୁ ଶିବଗଣ ଯଜ୍ଞଶାଳ କୁ ମାଡ଼ିଗଲେ। ସବୁ ଭାଂଗି ଦେଲେ। ଏବଂ ଯଜ୍ଞ କୁ ଧ୍ୱଂସ୍ତ କରିଦେଲେ। ଭୃଗୁ ଋଷିଙ୍କୁ ଏହା ଦେଖି ରାଗ ମାଡ଼ିଲା। ସେ ବହୁତ ଶକ୍ତିଶାଳୀ ଥିଲେ। ତପୋବଳ ଦ୍ୱାରା ସେ ଋଭୁ ନାମକ ସହସ୍ର ଦେବତାମାନଙ୍କୁ ଉତ୍ପନ୍ନ କଲେ। ସେମାନେ ଯେତେବେଳେ ରୁଦ୍ରଗଣଙ୍କୁ ଖୁବ୍ ପିଟିଲେ ତ ସମସ୍ତେ ପଳାଇଗଲେ।

## ଦକ୍ଷ ଯଜ୍ଞ ର ବିଧ୍ୱଂସ

ଏହା ସବୁ ହେଉଥିବା ସମୟରେ ନାରଦ ମୁନି ଦେବଙ୍କ ଶିବଙ୍କ ପାଖରେ ପହଞ୍ଚିଗଲେ। ନାରଦ ବଡ଼ ଚତୁର, ବହୁତ ଶୀଘ୍ର ଏଠା ଖବର ସେଠି ପହଞ୍ଚେଇ ଦିଅନ୍ତି। ସେ ଶିବଙ୍କ ପାଖକୁ ଯାଇ ତାଙ୍କୁ ଖବର ଦେଲେ। କହିଲେ, ଆଜ୍ଞା, ଆପଣଙ୍କ ପତ୍ନୀଙ୍କର ଦକ୍ଷ ଯଜ୍ଞରେ ବଡ଼ ଅପମାନ ହେଲା। ସେ ନିଜ ଦେହକୁ ଯୋଗ ଅଗ୍ନିରେ ଜଳେଇ ଦେଲେଣି। ଶିବ ନାରଦଙ୍କ କଥା ଶୁଣି - **'ଅସତ୍କୃତାୟା ଅବଗମ୍ୟ ନାରଦାତ୍'** କ୍ରୋଧିତ ହେଲେ। ଅତ୍ୟନ୍ତ ଉଗ୍ର ରୂପ ଧାରଣ କରି ସେ ନିଜ ଜଟରୁ ଗୋଟିଏ କେଶ ଉପାଡ଼ି ତଳେ ଫୋପାଡ଼ି ଦେଲେ। ସେଥିରୁ ସହସ୍ର ଭୂଜା ଏବଂ ତିନିଆଖି ବାଲା ଏକ ଭୟଙ୍କର ପ୍ରାଣୀ ବାହାରିଲା। ତାର ନାମ ବୀରଭଦ୍ର। ବୀରଭଦ୍ର ହାତଯୋଡ଼ି କହିଲେ - ଭଗବନ୍, ମୁଁ କ'ଣ କରିବି ? ଶିବ କହିଲେ, "ଯାଅ, ମୋ ପାର୍ଷଦ ମାନଙ୍କ ସହିତ ତୁମେ ସେଠାକୁ ଯାଇ ଦକ୍ଷକୁ ଏବଂ ଦକ୍ଷ ଯଜ୍ଞରେ ଯାହାବି ବାକି ରହିଯାଇଛି, ତାକୁ ମଧ୍ୟ ନଷ୍ଟ କରିଦିଅ।"

ଦେଖନ୍ତୁ, ଏଠାରେ ଏକ ବିଶେଷ ଧ୍ୟାନ ଦେବା ଯୋଗ୍ୟ କଥା ଅଛି। ଦକ୍ଷ ଯେତେବେଳେ ନିଜେ ଶିବଙ୍କ ଉପରେ କ୍ରୋଧକଲେ ଶିବ ରାଗିଲେନି କିନ୍ତୁ ଯେତେବେଳେ ସେ ସତୀଙ୍କର ଅପମାନ କଲେ, ଏତେ ରାଗିଗଲେ ଯେ ବୀରଭଦ୍ରକୁ ଉତ୍ପନ୍ନ କରିଦେଲେ ଏବଂ ତାକୁ ସେଇଠିକି ପଠେଇ ଦେଲେ। କାରଣ ସତୀ ହେଲେ **ଭକ୍ତ**। ପୁଣି ଦେଖନ୍ତୁ, ସତୀ କାହିଁକି ରାଗିଲେ ? ପତିଙ୍କର ଅପମାନ ଦେଖି ରାଗିଗଲେ। ନନ୍ଦୀ ମଧ୍ୟ ସେଠି କହିଲେ, "ତୁମେ ସବୁ ଠିଆ ହୋଇ ଏଠି ଭଗବାନଙ୍କ ନିନ୍ଦା ଶୁଣୁଛ।" ଏଇଆ ନିୟମ ଅଛି ଯେ ଯିଏ ଭଗବାନଙ୍କ ନିନ୍ଦା କରେ ସେମାନଙ୍କୁ ତ ପାପ ଲାଗେ କିନ୍ତୁ ଯିଏ ଭଗବାନଙ୍କ ନିନ୍ଦା ଶୁଣେ ସେମାନଙ୍କୁ ମଧ୍ୟ ପାପ ଲାଗେ।

## ଭଗବାନ ଶଙ୍କରଙ୍କ ଦ୍ୱାରା ଦକ୍ଷ ଯଜ୍ଞର ପୂର୍ତ୍ତି

ଏଣେ ବୀରଭଦ୍ର ରୁଦ୍ରଗଣଙ୍କୁ ନେଇ ଯଜ୍ଞ ସ୍ଥଳରେ ପହଞ୍ଚି ସମସ୍ତଙ୍କୁ ବହୁତ ପିଟିଲେ। ଏଠାରେ ତାର ବିସ୍ତୃତ ବର୍ଣ୍ଣନ କରାଯାଇଛି। ବୀରଭଦ୍ର ଦକ୍ଷର ମୁଣ୍ଡ କୁ ଗଣ୍ଡିରୁ କାଟି ଅଲଗା ମୁଣ୍ଡକୁ ଯଜ୍ଞ କୁଣ୍ଡକୁ ଫୋପାଡ଼ି ଦେଲେ। ଭୃଗୁ ଋଷି ଙ୍କର ଦାଢ଼ି ହଲେଇ କଥା କହିବାର ଅଭ୍ୟାସ ଥିଲା ତାଙ୍କ ଦାଢ଼ୀରୁ ସବୁ ବାଳ ଉପାଡ଼ି ଦେଲେ। ସେଠାରେ ଭଗ ନାମକ ଜଣେ ବ୍ୟକ୍ତି ଥିଲେ ଯିଏ ବହୁତ ଆଖି ଦେଖାଉଥିଲେ। ତେଣୁ ତାଙ୍କ  ଆଖି ଫୁଟେଇ ଦେଲେ। ଜଣେ ପୁଷା ନାମକ ବ୍ୟକ୍ତ ଥିଲେ, ସେ ଦାନ୍ତ ଦେଖେଇ-ଦେଖେଇ ହସୁଥିଲେ। ପ୍ରଜାପତି ମାନଙ୍କ ଯଜ୍ଞରେ ଦକ୍ଷ ଶିବଙ୍କର ଅପମାନ କଲାବେଳେ ମଧ୍ୟ ସେ ହସିଥିଲେ, ତେଣୁ ତାଙ୍କ ଦାନ୍ତ ଓପାଡ଼ି ଦେଲେ। ଏହି ପରି ସମ୍ପୂର୍ଣ୍ଣ ଯଜ୍ଞ ଧ୍ୱଂସ ହେଲା।

ସେଠାରେ ଥିବା ସମସ୍ତେ ଡରିକରି ବ୍ରହ୍ମାଙ୍କ ପାଖକୁ ଗଲେ। ବ୍ରହ୍ମା କହିଲେ ଚାଲ ଶିବଙ୍କ ପାଖକୁ ଯିବା। ଦେଖନ୍ତୁ -ପ୍ରକୃତରେ ଶିବଙ୍କର ଶାନ୍ତ ସ୍ୱଭାବ କିନ୍ତୁ ସେ ଶିବ ରୁଦ୍ର ମଧ୍ୟ। ଏବେ ତ ଏମିତି ଗୋଟେ ଘଟଣା ଘଟି ସାରଲାଣି, ଆଉ ତ ଆମେ   କିଛି କରିପାରିବା ନାହିଁ, ତାଙ୍କୁ କେବଳ କ୍ଷମା ମାଗି ପାରିବା। " ତେଣୁ ସମସ୍ତେ ଶିବଙ୍କ ପାଖକୁ ଯାଇ କହିଲେ - ଭଗବନ୍ ! ଆମେ ଅତ୍ୟନ୍ତ ଛୋଟ ଛୋଟ ଜୀବ, ଆମର ଭୁଲ ହୋଇଗଲା। ଆପଣ  ରାଗନ୍ତୁନି। ଶିବ କହିଲେ -ଆରେ ! ଆରେ ପିଲାଙ୍କ ଉପରେ କଣ ରାଗିବା କଥା ? ତାଙ୍କୁ ଖାଲି ଶିଖେଇବା ପାଇଁ ମୁଁ ଏ ସବୁ କଲି। ମୋର ତା ପ୍ରତି କୌଣସି ଦ୍ୱେଷ ନାହିଁ। ତା ସହିତ ଦ୍ୱେଷ କରି ମୁଁ କଣ ବା କରିବି ?

ତା ପରେ ବ୍ରହ୍ମା ଭଗବାନ ଶଙ୍କରଙ୍କ ମହିମା ଗାନ କଲେ ଏବଂ କହିଲେ ଯେ କର୍ମ କରୁଥିବା ଲୋକମାନଙ୍କ ଦ୍ୱାରା ଭୂଲ ହୋଇଯାଏ। ଯଜ୍ଞରେ ଆପଣଙ୍କର ଭାଗ ରଖାଗଲା ନାହିଁ, ଏହା ଏକ ବହୁତ ବଡ଼ ଅପରାଧ। ଯଜ୍ଞରେ ଯାହା ବଳି ପଡ଼ିବ ସେ ସବୁ ଆପଣଙ୍କ ଭାଗ। ଏମାନଙ୍କ ଅପରାଧ ହୋଇଥିଲେ ମଧ୍ୟ ସେମାନଙ୍କୁ କ୍ଷମା କରନ୍ତୁ। କୃପା କରନ୍ତୁ। ଏହା ହିଁ ଆପଣଙ୍କ ସ୍ୱଭାବ, ଏବେ ଆପଣ ଆମ ସହିତ ଆସି ଯଜ୍ଞ କୁ ପୂର୍ଣ୍ଣ କରନ୍ତୁ। ଆଚ୍ଛା ଠିକ୍ ଅଛି କହି ଶିବ ତାଙ୍କ ସହିତ ଯାଇ ଦକ୍ଷ ଯଜ୍ଞକୁ ପୂର୍ଣ୍ଣ ମଧ୍ୟ କଲେ। ଆଚ୍ଛା, ଦକ୍ଷଙ୍କର ତ ଆଉ ମୁଣ୍ଡ ନାହିଁ , କଣ କରାଯିବ ? ଭଗବାନ ଶିବ କହିଲେ -ଆଚ୍ଛା ତ ଗୋଟିଏ କାମ କର, ତା' ଗଣ୍ଡି ରେ ଗୋଟିଏ ଛେଳି ମୁଣ୍ଡ ଲଗେଇ ଦିଅ। କାରଣ ସେ ସବୁବେଳେ 'ମେଁ ମେଁ' କରୁଛି। ଆଉ ଇଏ ଯୋଉ ଭଗ ଅନ୍ଧ ହୋଇ ଯାଇଛନ୍ତି ତାଙ୍କ ମଙ୍ଗଳ ପାଇଁ କଣ କରାଯିବ ? କହିଲେ ସେ ଆଧିଦୈବିକ ଦୃଷ୍ଟି ରେ ଦେଖିବେ। ଉପରକୁ ଅନ୍ଧ ପରି ଜଣାଗଲେ ମଧ୍ୟ ସେ ସୂର୍ଯ୍ୟଙ୍କ ପ୍ରକାଶରେ ଦେଖି ପାରିବେ। ପୁଣି କହିଲେ ପୁଷା ଙ୍କର ଦାନ୍ତ ନାହିଁ। ଶିବ କହିଲେ -ଦାନ୍ତ ନାହିଁ ତ ନ ଥାଉ। ସେ ଯଜମାନର ମୁହଁ ଦ୍ୱାରା ଖାଇବେ। ଏହା ପରେ ସେହି ଯଜ୍ଞ ରେ ସାକ୍ଷାତ୍ ନାରାୟଣ ଭଗବାନ ପ୍ରକଟ ହେଲେ। ସେଠି ଉପସ୍ଥିତ ସମସ୍ତ ଋଷିଗଣ , ଋତ୍ୱିଜ,ଭଗବାନ ଶଙ୍କର, ବ୍ରହ୍ମ, ଇନ୍ଦ୍ର, ଆଦି ସମସ୍ତେ ଭଗବାନ ନାରାୟଣଙ୍କ ସ୍ତୁତି କଲେ।

ଏଠାରେ ବିଶେଷ କଥା ଏଇଆ ହେଲା ଯେ, ଦକ୍ଷଙ୍କର ଅହଂକାର ନଷ୍ଟ ହୋଇଗଲା। ସେ ଶିବଙ୍କ ଚରଣ ଛୁଇଁଲେ ଏବଂ କହିଲେ, " ଭଗବନ୍, ଆପଣ ମୋ ଉପରେ ବଡ଼ ଉପକାର କଲେ"। ଏହି ପରି ତାଙ୍କର ହୃଦୟ ପରିବର୍ତ୍ତନ ହେଲା ଏବଂ ସେ ଭଗବାନଙ୍କ ଭକ୍ତ ହୋଇଗଲା। ଏହା ସହିତ ଏହି ବିଷୟଟି ଏଇଠି ସମାପ୍ତ ହେଲା। ଏହାର ସାର ମର୍ମ କେବଳ ଏତିକି ଯେ ଯଜ୍ଞ କର୍ମ ଅତ୍ୟନ୍ତ ପୁଣ୍ୟର କର୍ମ, କିନ୍ତୁ ସେଠି ଯଦି ଭଗବାନ ଶିବଙ୍କର ଅପମାନହେବ, ତାଙ୍କୁ ଉଚିତ୍ ସମ୍ମାନ ନ ଦିଆଯିବ, ତେବେ ତାହା ଆଉ ଧର୍ମ ହୋଇ ରହେ ନାହିଁ ଅଧର୍ମ ହୋଇଯାଏ। ତେଣୁ ପ୍ରଥମେ ଧର୍ମକୁ ଭଲଭାବରେ ବୁଝିବା ଦରକାର।

ଧର୍ମର ରହସ୍ୟ ହେଲା ଯେ -

**ଯଜ୍ଞାର୍ଥାତ୍କର୍ମଣୋଽନ୍ୟତ୍ର ଲୋକୋଽୟଂ କର୍ମବନ୍ଧନଃ।**

**ତଦର୍ଥ କର୍ମ କୌନ୍ତେୟ ମୁକ୍ତ ସଂଗ ସମାଚର॥ (ଭ.ଗୀତା ୩.୯)**

**ସ୍ୱକର୍ମଣା ତମଭ୍ୟର୍ଚ୍ୟ ସିଦ୍ଧଂ ବିନ୍ଦିତି ମାନବଃ। (ଭ.ଗୀତା ୧୮.୪୬)**

ନିଜ ନିଜର କର୍ତ୍ତବ୍ୟ କର୍ମକୁ ଯଦି ଭଗବାନଙ୍କ ପୂଜା ଭାବି କରିବା, ତେବେ ତାହା ଧର୍ମ ହୋଇଯିବ। ଏବଂ ଯଦି ଆମର କର୍ମରେ ଈଶ୍ୱର ଅର୍ପଣର ଭାବ ନ ଥିବ ତେବେ ତାହା ଅଧର୍ମ ହୋଇଯିବ, ତାହା ପଛେ ଯଜ୍ଞ କର୍ମ ହେଉ। ଅର୍ଥାତ୍ 'ଧର୍ମ' କୌଣସି କର୍ମ ବିଶେଷର ନାମ ନୁହଁ। ଅଭିମାନ ଏବଂ ମମତା କୁ ବାଦ ଦେଇ, ଈଶ୍ୱରାର୍ପଣ ବୁଦ୍ଧି ଦ୍ୱାରା କରା ଯାଇଥିବା ସମସ୍ତ କର୍ମ, ସେ କର୍ତ୍ତବ୍ୟ କର୍ମ ହେଉ କି ଯଜ୍ଞ କର୍ମ ହେଉ ସବୁକିଛି ଧର୍ମ ହୁଏ ଏବଂ ତାର ସମାପ୍ତି ପରେ ସାକ୍ଷାତ୍ ଭଗବାନ ନାରାୟଣ ପ୍ରକଟ ହୁଅନ୍ତି। ଆଉ କଣ ଦରକାର? ଦକ୍ଷ ଯଜ୍ଞ ପୂର୍ଣ୍ଣ ହେଲା। ଏହା ଧର୍ମର ବର୍ଣ୍ଣନ। ତେଣୁ ଧର୍ମ କୌଣସି ପଦ-ପଦବୀ, ଅଧିକାର ବା ବୈଭବ ପାଇଁ କରାଯାଏ ନାହିଁ। କିନ୍ତୁ ଆରମ୍ଭରେ ଦକ୍ଷ ଏହି ଯଜ୍ଞ ରୂପୀ ଧର୍ମ କାର୍ଯ୍ୟ ମଧ୍ୟ ନିଜର ବୈଭବ ପ୍ରଦର୍ଶନ ପାଇଁ କରିଥିଲେ। ସେଥିରେ ଦେଖେଇହେବା ପ୍ରବୃତ୍ତି ଥିବା ଯୋଗୁଁ ତାହା ଧର୍ମ ହୋଇ ପାରିଲା ନାହିଁ। ଧର୍ମର ପ୍ରସଂଗ ଏହିଠାରେ ସମାପ୍ତ ହେଲା।

## ଧ୍ରୁବଙ୍କ ମାନଭଂଗ

ସ୍ୱାୟଂଭୁବ ମନୁ ମହାରାଜା ଙ୍କ କୁଳ ପରମ୍ପରା ର ବର୍ଣ୍ଣନ କରି ମୈତ୍ରେୟ ଋଷି କହିଲେ -ବିଦୁର, ସ୍ୱାୟମ୍ଭୁବ ମନୁଙ୍କ କନ୍ୟା ମାନଙ୍କ ବିଷୟରେ ତ ଆମେ ଚର୍ଚ୍ଚା କଲେ। ଏବେ ପୁତ୍ର ମାନଙ୍କ ବିଷୟରେ କରିବା। ମହାରାଜା ସ୍ୱାୟଂଭୂବ ମନୁ ଏବଂ ମହାରାଣୀ ଶତରୂପାଙ୍କ ଦୁଇଟି ପୁତ୍ର ହେଲେ - ପ୍ରିୟବ୍ରତ ଏବଂ ଉତ୍ତାନପାଦ। ପ୍ରଥମେ ଉତ୍ତାନ ପାଦ ରାଜା ହେଲେ। ରାଜା ଉତ୍ତାନପାଦଙ୍କର ଦୁଇଜଣ ରାଣୀ ଥିଲେ। ଜଣଙ୍କ ନାମ ସୁନୀତି ଏବଂ ଅନ୍ୟଙ୍କର ନାମ ସୁରୁଚି। ଦେଖନ୍ତୁ ସୁନୀତି ର ଅର୍ଥ ହେଲା ଭଲ ନୀତି, ସୁନ୍ଦର ନୀତି ଏବଂ ସୁରୁଚି ର ଅର୍ଥ ହେଲା ଯାହା ଆମକୁ ରୁଚିକର ବା ଭଲଲାଗେ। ରାଜା ଉତ୍ତାନପାଦ ସୁରୁଚିଙ୍କ ନିୟନ୍ତ୍ରଣରେ ଥିଲେ। ଆମେ ମାନେ ମଧ୍ୟ ରାଜା ଉତ୍ତାନପାଦ ପରି, ନିଜ ରୁଚି ର ଅଧୀନରେ ରହୁ। ଖାଇଲେ ମଧ୍ୟ ପେଟ ଆଡ଼କୁ ନ ଦେଖି ଜିଭ ଆଡ଼କୁ ଦେଖୁ। ସବୁ ଆଡ଼େ ଆଗେ ନିଜ ରୁଚି ଅନୁସାରେ ବ୍ୟବହାର କରୁ। ନୀତି ଆଡ଼କୁ

କିଏ ଦେଖେ ? ତେବେ ସୁରୁଚି ଙ୍କ ପୁଅ ଉତ୍ତମ ଆଉ ସୁନୀତିଙ୍କ ପୁଅ ଧ୍ରୁବ । ସଂଭବତଃ ସୁରୁଚି ଅତ୍ୟଧିକ ସୁନ୍ଦର ହୋଇଥିବେ ବା ଚତୁର ହୋଇଥିବେ, ସେ ରାଜାଙ୍କୁ ପୂର୍ଣ୍ଣତଃ ନିଜ ନିୟନ୍ତ୍ରଣରେ ରଖିଥିଲେ । ରାଜା ଉତ୍ତାନପାଦ ସୁନୀତିଙ୍କୁ ଆଡ଼ ଆଖିରେ ଦେଖୁ ନ ଥିଲେ । ସେ ସୁନୀତିଙ୍କୁ ଗୋଟିଏ ଅଲଗା ମହଲରେ ରଖିଦେଇଥିଲେ ।।

ଦିନକର କଥା । ପାଞ୍ଚ ବର୍ଷର ଛୋଟ ପିଲା ଧ୍ରୁବ ଖେଳୁ ଖେଳୁ ରାଜପ୍ରାସାଦରେ ପହଞ୍ଚିଗଲା । ସେଠି ସିଂହାସନରେ ରାଜା ବସିଥିଲେ । ରାଣୀ ମଧ୍ୟ ଥିଲେ । ରାଜା ଉତ୍ତାନପାଦ ସୁରୁଚିଙ୍କୁ ଦେଖି ଧ୍ରୁବ ଦୌଡ଼ିକରି ତାଙ୍କ ପାଖକୁ ଆସିଲା ଏବଂ ତାଙ୍କ କୋଳରେ ବସିବାକୁ ଚାହିଁଲା । କିନ୍ତୁ ସୁରୁଚିଙ୍କ ଡର ଯୋଗୁଁ ରାଜା ତାକୁ କୋଳକୁ ନେଲେ ନାହିଁ । ଏହା ଦିଖି ସୁରୁଚିଙ୍କ ସାହାସ ଆହୁରି  ବଢ଼ିଗଲା । ତା ପରେ ତାକୁ କ୍ରୋଧରେ ଚାହିଁଲେ ଏବଂ ଗର୍ବପୂର୍ଣ୍ଣ ବଚନ ଦ୍ୱାରା ଗାଳି ଦେବାକୁ ଲାଗିଲେ । ଆହୁରି ମଧ୍ୟ ସେ ତା ପରେ ଯେଉଁ କଥା କହିଲେ ତାହା ଥିଲା ଅତ୍ୟନ୍ତ କଠୋର ଏବଂ ଭୁଲ କଥା । ସେ କହିଲେ -

**ନ ବତ୍ସ ନୃପତେର୍ଧିଷ୍ଣ୍ୟଂ ଭବାନାରୋଢୁମର୍ହତି ।**
**ନ ଗୃହୀତୋ ମୟା ଯତ୍ତ୍ୱଂ କୁକ୍ଷାବପି ନୃପାତ୍ମଜଃ ॥ (୪.୮.୧୧)**

**ବାଲୋଽସି ବତ ନାତ୍ମାନମନ୍ୟସ୍ତ୍ରୀଗର୍ଭସମ୍ଭୃତମ୍ ।**
**ନୂନଂ ବେଦ ଭବାନ୍ ଯସ୍ୟ ଦୁର୍ଲଭେଽର୍ଥେ ମନୋରଥଃ ॥ (୪.୮.୧୨)**

**ତାପସାଽଽରାଧ୍ୟ ପୁରୁଷଂ ତସ୍ୟୈବାନୁଗ୍ରହେଣ ମେ ।**
**ଗର୍ଭେ ତ୍ୱଂ ସାଧୟାତ୍ମାନଂ ଯଦୀଚ୍ଛସି ନୃପାସନମ୍ ॥ (୪.୮.୧୩)**

ପୁତ୍ର, ତୁମେ ରାଜାଙ୍କ କୋଳ ରେ ବସିବା ର ଅଧିକାରୀ ନୁହେଁ । କାହିଁକି ? କାରଣ ତୁମେ ମୋ ଗର୍ଭରୁ ଜନ୍ମ ନେଇନାହିଁ । ଆଚ୍ଛା ଠିକ୍ ଅଛି , ଏପର୍ଯ୍ୟନ୍ତ ତ ତା କଥା ଠିକ୍ କିନ୍ତୁ ଦେଖନ୍ତୁ ସେ ଆଗକୁ କଣ କହୁଛି - ଯଦି ତମେ ରାଜାଙ୍କ କୋଳରେ ବସିବାକୁ ଚାହୁଁଛ, ତେବେ ପ୍ରଥମେ ତୁମକୁ ମୋ ଗର୍ଭରୁ ଜନ୍ମ ନେବାକୁ ପଡ଼ିବ । ତା ପାଇଁ ତୁମେ ତପସ୍ୟା କରି, ପ୍ରାର୍ଥନା କରି ଭଗବାନଙ୍କୁ ପ୍ରସନ୍ନ କର । ଆଚ୍ଛା ? ସୁରୁଚି ଗର୍ଭରେ ଆସିବା, କଣ ଏହାହିଁ ଭଗବାନଙ୍କ ଭକ୍ତି, ତପସ୍ୟାର ଫଳ ଅଟେ ? ଦେଖନ୍ତୁ -ତପସ୍ୟା ର , ଭଗବାନଙ୍କ ପୂଜା ଆରାଧନାର କେତେ ବଡ଼ ଅପମାନ ଇଏ । ତା'ର ଗର୍ବ ଦେଖନ୍ତୁ କେତେ, ତା ଗର୍ଭରୁ ଜନ୍ମ ନେବା -ଏଇ କଥାକୁ ସେ ଏତେ ମହତ୍ତ୍ୱପୂର୍ଣ୍ଣ ଭାବୁଛି ଯେ ତା ଲାଗି ଭଗବାନଙ୍କୁ ପ୍ରସନ୍ନ କରିବା ପାଇଁ କହୁଛି । କହିଲା ଯେ - "ତେବେ ଯାଇଁ ତୁମେ

ରାଜାଙ୍କ କୋଳରେ ବସିବାର ଅଧିକାରୀ ହୋଇପାରିବ।" ଆରେ! ରାଜାଙ୍କ କୋଳ କଣ ଏତେ ବଡ଼ ହୋଇଗଲା ? ଆଉ ସୁରୁଚି ର ଗର୍ଭରେ ଆସିବା ଏତେ ବଡ଼ କଥା ଯେ ତା ପାଇଁ ଭଗବାନଙ୍କ ଆରାଧନା ଉପସନାକୁ ସାଧନ କରିବା ?

## ଧ୍ରୁବଙ୍କ ବନ-ଗମନ

**ମାତୁଃ ସପତ୍ନ୍ୟାଃ ସ ଦୁରୁକ୍ତିବିଦ୍ଧଃ**

**ଶ୍ୱସନ ରୁଷା ଦଣ୍ଡହତୋ ଯଥାହିଃ। (୪.୮.୧୪)**

କହିଲେ ଦେଖି, ସାପ କୁ ମାରିଲେ ସେ କେମିତି ଫୁଙ୍କାର କରେ ? ଧ୍ରୁବ ମଧ୍ୟ କ୍ଷତ୍ରିୟ ବାଳକ। ସାବତ ମା'ର କଥା ତା ହୃଦୟ କୁ ବିଦ୍ଧ କଲା। ଆଉ ସେ ଯେତେବେଳେ ଦେଖିଲା ଯେ ବାପା ମଧ୍ୟ କିଛି କହୁନାହାଁନ୍ତି, ସେଠାରୁ ସେ ବାହାରି ଆସିଲା। ତା'ର ମନ ଥିଲା ଦୁଃଖୀ ଆଉ କ୍ରୋଧୀ ମଧ୍ୟ। କାନ୍ଦି -କାନ୍ଦି ସେ ନିଜ ମାତା ଙ୍କ ପାଖକୁ ଆସିଲା। ମା କହିଲେ -ପୁଅ, କଣ ହେଲା ? ସେଠାରେ ଥିବା ଅନ୍ୟ ଲୋକମାନେ ତାଙ୍କୁ ସବୁକଥା କହିଲେ। ଦେଖନ୍ତୁ , ସୁନୀତି ଅତ୍ୟନ୍ତ ବୁଦ୍ଧିମତୀ ଥିଲେ। ତାଙ୍କୁ ଅତ୍ୟନ୍ତ ଦୁଃଖ ହେଲା, କିନ୍ତୁ ସେ ପୁଅକୁ କହିଲେ -

**ମାମଂଗଲଂ ତାତ ପରେଷୁ ମଂସ୍ଥା**

**ଭୁଂକ୍ତେ ଜନୋ ଯତ୍ପରଦୁଃଖଦସ୍ତତ୍। (୪.୮.୧୭)**

ପୁତ୍ର, ଏଥିପାଇଁ କାହକୁ ଦୋଷ ଦିଅ ନାହିଁ। ଏଠାରେ ଆମେ ସମସ୍ତେ ନିଜ ନିଜ କର୍ମର ଫଳ ଭୋଗ କରୁଛୁ। ସେ ସାବତ ମା ହେଲେ କଣ ହେଲା ? ସେ କଥା ତ ଠିକ୍ କହିଲେ ଯେ ଭଗବାନଙ୍କ ଆରାଧନା କରିବା ଉଚିତ୍। ଦେଖନ୍ତୁ, କେତେ ଭଲ ସ୍ତ୍ରୀ ସେ, କେବଳ ସେତିକି କଥା ଗ୍ରହଣ କରି ଅନ୍ୟ ସବୁ ଛାଡ଼ିଦେଲେ। ଏହା ହିଁ ତାଙ୍କର ବୁଦ୍ଧିମତ୍ତା। କହିଲେ - ପୁଅ, ତା କଥା ଠିକ୍। ଏବେ ତୁମ ଉପରେ ରାଜାଙ୍କର କୃପା ନାହିଁ। କିନ୍ତୁ ଯେମିତି ତୁମ ସାବତ ମା କହିଲେ, ତୁମେ ସେହି ଅଖିଳ ବ୍ରହ୍ମାଣ୍ଡପତି ପରମାତ୍ମାଙ୍କୁ ପୂଜା କର। ତାଙ୍କୁ ପ୍ରସନ୍ନ କର। ସେ ପ୍ରସନ୍ନ ହୋଇଗଲେ ତୁମକୁ ସେହି ପରମାତ୍ମାଙ୍କ କୋଳରେ ସ୍ଥାନ ମିଳି ଯିବ। ତୁମକୁ ଏପରି ଧ୍ରୁବ ସ୍ଥାନ ମିଳିବ ଯେଉଁଠାରୁ ତୁମକୁ କେବେ କେହି ଛାଡ଼ିଚାଲିଯିବା ପାଇଁ କହିବେ ନାହିଁ। ଦେଖନ୍ତୁ, ତେଣୁ କୁହାଯାଏ ଯେ ଏପରି ଜାଗାରେ ବସ ଯେଉଁଠୁ କେହି ଆମକୁ ଉଠିଯିବା ପାଇଁ କହିବେନି। ପୁଅ,

ଏବେ ତୁମେ ଯାଅ, ଭଗବାନଙ୍କର ଆରାଧନା କର। ମୋର ଆଶୀର୍ବାଦ ତୁମ ସହିତ ଅଛି। ବାଳକଟି ସାଙ୍ଗେ ସାଙ୍ଗେ ବାହାରି ଗଲା। କୁଆଡ଼େ ଯିବ, କଣ କରିବ, କିଛି ଜାଣିନି। ଏମିତି କୋଣସି ପିଲା ଯଦି ଘରୁ ବାହାରି ଯିବ ତ ଭଗବାନଙ୍କୁ ମଧ୍ୟ ଚିନ୍ତା ହୋଇଯାଏ ଯେ ମୋ ପିଲାଟି ଘରୁ ଚାଲିଗଲା। ତା ପାଇଁ ମୁଁ କଣ କରିବି ? କହିଲେ - ନାରଦ, କଣ କରୁଛ ? ତା ପାଖକୁ ଶୀଘ୍ର ଯାଅ।

**ନାରଦସ୍ତଦୁପାକର୍ଣ୍ୟ ଜ୍ଞାତ୍ୱା ତସ୍ୟ ଚିକୀର୍ଷିତମ୍। (୪.୮.୨୫)**

ନାରଦ ଯେତେବେଳେ ଜାଣିଲେ ଯେ ଗୋଟିଏ ଛୋଟ ବାଳକ ଭଗବାନଙ୍କୁ ପାଇବା ପାଇଁ, ତାଙ୍କୁ ପ୍ରସନ୍ନ କରିବା ପାଇଁ ଘରୁ ବାହାରି ଗଲାଣି, ସେ କହିଲେ, ତା ପାଖକୁ ତ ମତେ ଜଲଦି ଯିବା କଥା। ସେ ତ ମୋର ସବୁଠାରୁ ଭଲ ଶିଷ୍ୟ ହେବ। କ୍ଷଣ ମାତ୍ରକେ ସବୁ ଛାଡ଼ି ଦେଲା, ଆଉ ଚାଲିଗଲା। କି ତେଜରେ ବାବା ?

**ଅହୋ ତେଜଃ କ୍ଷତ୍ରିୟାଣାଂ ମାନଭଙ୍ଗମମୃଷ୍ୟତାମ୍।**

**ବାଲୋଽପ୍ୟୟଂ ହୃଦା ଧତ୍ତେ ଯତ୍ସମାତୁରସଦ୍ୱଚଃ ॥ (୪.୮.୨୬)**

କ୍ଷତ୍ରିୟ ର ତେଜ ଦେଖ ! ପାଞ୍ଚ ବର୍ଷର ପିଲା। କିନ୍ତୁ ଟିକିଏ କଥା ସହି ପାରିଲା ନାହିଁ। ନାରଦ ତା ପାଖରେ ପହଞ୍ଚିଲେ। ସେ ତାର ମୁଣ୍ଡକୁ ଆଉଁସି ଦେଲେ। ପୁଣି କହିଲେ - ପୁଅ ତୁ ତ ଜମା ପାଞ୍ଚବର୍ଷର ପିଲାଟେ। ସାବତ ମା ଟିକିଏ କଣ କହିଦେଲା ବୋଲି ଏତେ ଖରାପ ଭାବିବାର ବା ଦୁଃଖୀ ହେବାର କଣ ଅଛି ? ତୁମର ବୟସ ବି ହୋଇନି, ତୁମର ତ ଏବେ ଖେଳିବା ସମୟ। (କ୍ରିକେଟ ଖେଳ, କମେଣ୍ଟ୍ରି ଶୁଣ, ଟି.ଭି ଦେଖ)। ଆଜିଠାରୁ ଏମିତି ବଣ କୁ ଯିବା କଣ ସାଧାରଣ କଥା ? କହିଲ ଦେଖି ?

**ଲକ୍ଷୟାମଃ କୁମାରସ୍ୟ ସକ୍ତସ୍ୟ କ୍ରୀଡ଼ନାଦିଷୁ। (୪.୮.୨୭)**

ତୁମେ ଭଗବାନଙ୍କୁ ଖୁସି କରିବାକୁ ଚାହୁଁଛ ? ଆରେ ! ଇଏ କଣ ବଜାର ରୁ ଚକଲେଟ୍ କିଣି ଆଣିବା ପରି କଥା କି ?

**ଯତ୍ପ୍ରସାଦଂ ସର୍ବେ ପୁଂସାଂ ଦୁରାରାଧ୍ୟୋ ମତୋ ମମ ॥ (୪.୮.୨୭)**

ଭଗବାନଙ୍କ ଆରାଧନା କରିବା  ଅତ୍ୟନ୍ତ କଠିନ କାର୍ଯ୍ୟ।

**ଅତୋ ନିବର୍ତତାମେଷ ନିର୍ବନ୍ଧସ୍ତବ ନିଷ୍ଫଳଃ ।**

**ଯତିଷ୍ୟତି ଭବାନ୍ କାଲେ ଶ୍ରେୟସଂ ସମୁପସ୍ଥିତେ ॥ (୪.୮.୩୫)**

ତେଣୁ ମୁଁ ତୁମକୁ କହୁଛି ଯେ ତୁମେ ଏଠାରୁ ହିଁ ଫେରିଯାଅ। ଏବେ ଏହା ପାଇଁ ଠିକ୍ ସମୟ ଆସିନାହିଁ। ଏବେ ତୁମେ ଘରେ ରୁହ, ପାଠ ପଢ଼, ସ୍କୁଲ ଯାଅ, କିଛି କାମ କର, ବିବାହ କର, ଦୁନିଆ କୁ ଭଲ ଭାବେ ଦେଖିନେବା ପରେ ସେଥିରୁ ବୈରାଗ୍ୟ ଆସିଲେ , ତାକୁ ଛାଡ଼ି ଦେବ। ସେତେବେଳେ ଇଛା ହେଲେ ବଣକୁ ମଧ୍ୟ ଚାଲିଯାଇପାର। ସେଠି ତପସ୍ୟା କରି ଭଗବାନଙ୍କୁ ପ୍ରସନ୍ନ କରିବ। ସେଥିରେ କଣ ମନା ଅଛି। ଏକଥା ଶୁଣି ଧ୍ରୁବ କହିଲା -

**ସୋଽୟଂ ଶମୋ ଭଗବତା ସୁଖଦୁଃଖହତାତ୍ମନାମ୍।**

**ଦର୍ଶିତଃ କୃପୟା ପୁଂସା ଦୁର୍ଦର୍ଶୋଽସ୍ମଦ୍ୱିଧୈସ୍ତୁ ଯଃ ॥ (୪.୮.୩୫)**

**ଅଥାପି ମେଽବିନୀତସ୍ୟ କ୍ଷାତ୍ତ୍ରଂ ଘୋରମୁପେୟୁଷଃ।**

**ସୁରୁଚ୍ୟା ଦୁର୍ବଚୋବାଣୈର୍ନ ଭିନ୍ନେ ଶ୍ରୟତେ ହୃଦି ॥ (୪.୮.୩୬)**

ଭଗବାନ୍ ! ଆପଣ ଯାହା କହୁଛନ୍ତି ତାହା ସତ। କିନ୍ତୁ ଆପଣ ଖରାପ ଭାବିବେନି। ମା ସୁରୁଚିଙ୍କ ବଚନ ମୋ ମନ ଭିତରେ ବାଣ ପରି ପଶି ଯାଛି। ମୋ ମନରେ ଶାନ୍ତି ନାହିଁ। ଫେରିଗଲେ ମଧ୍ୟ ମୁଁ ଶାନ୍ତି ରେ କିଛି କରିପାରିବି ନାହିଁ। ତେଣୁ ମୁଁ ଯିବିନି। ଆଉ ଆପଣ ଏବେ ଯେଉଁ କଥା କହିଲେ ଯେ ଭଗବାନଙ୍କ ଆରଧନା କରିବା ଏବଂ ତାଙ୍କ କୃପା ପ୍ରାପ୍ତ କରିବା ଅତ୍ୟନ୍ତ କଠିନ କଥା, କିନ୍ତୁ ମୋତେ ଏହି କଥାରେ ବିଶ୍ୱାସ ହେଉନି। କାହିଁକି ? କାରଣ ଏହି ମାର୍ଗରେ ଚାଲିବା ଆରମ୍ଭ କରୁ କରୁ ଆପଣଙ୍କ ପରି ସନ୍ଥ ମୋତେ ଅନାୟାସରେ ମିଳିଗଲେ, ଏହା କଣ ଭଗବାନଙ୍କ କୃପା ନୁହେଁ ? ଭଗବାନଙ୍କ କୃପା କଠିନ ହେବ ? ଏତିକି ହେଲାଣି ମାନେ ଆଗକୁ ସବୁକାମ ମଧ୍ୟ ହୋଇଯିବ। ସନ୍ଥ ମିଳନ ହୋଇଗଲାଣି ତ ଆଗକୁ ସବୁକାମ ମଧ୍ୟ ହୋଇଯିବ। ମୋର ପୂର୍ଣ୍ଣ ବିଶ୍ୱାସ ଅଛି।

**ନୂନଂ ଭବାନ୍ ଭଗବତୋ ଯୋଽଙ୍ଗଜଃ ପରମେଷ୍ଠିନଃ ।**

**ବିତୁଦନ୍ନଟତେ ବୀଣାଂ ହିତାର୍ଥଂ ଜଗତୋଽର୍କବତ୍ ॥ (୪.୮.୩୮)**

ଆପଣ ନିଜେ ଚାଲିକରି ମୋ ପାଖକୁ ଆସିଛନ୍ତି । ଘରୁ ବାହାରିବା ମାତ୍ରକେ ଆପଣଙ୍କ ଦର୍ଶନ ମିଳିଗଲା । ଏଥିରୁ ଅଧିକ ଭଗବାନଙ୍କ କୃପା ଆଉ କଣ ବା ହୋଇପାରେ ? ନାରଦ ଭାବିଲେ ଛୋଟ ବାଳକ ଟିଏ କିନ୍ତୁ ଦୃଢ ନିଶ୍ଚୟ ଅଛି । ସେ ତା ଉପରେ ପ୍ରସନ୍ନ ହେଲେ ଏବଂ କହିଲେ -

## ଧ୍ରୁବଙ୍କୁ ନାରଦଙ୍କ ଉପଦେଶ

**ଜନନ୍ୟାଭିହିତଃ ପନ୍ଥାଃ ସ ବୈ ନିଃଶ୍ରେୟସସ୍ୟ ତେ ।**

**ଭଗବାନ୍ ବାସୁଦେବସ୍ତଂ ଭଜ ତତ୍ପ୍ରବଣାତ୍ମନା ॥ (୪.୮.୪୦)**

ପୁତ୍ର, ତୁମ ମା' ତୁମକୁ ଯେଉଁ ଉପଦେଶ ଦେଇଛନ୍ତି ତାହା ଶ୍ରେଷ୍ଠ ଉପଦେଶ । ଏବେ ତୁମେ ସେହି ମାର୍ଗରେ ଚାଲ । ଏହାହିଁ ନିଃଶ୍ରେୟସ୍କର ମାର୍ଗ । ଏଠାରୁ ଏବେ ତୁମେ ମଧୁବନ କୁ ଯାଅ, ଯମୁନା କୂଳକୁ । ସେଠି ପ୍ରତିଦିନ ସକାଳୁ ଯମୁନା ରେ ସ୍ନାନ କରିବ । ତା'ପରେ ସ୍ଥିର ହୋଇ ଆସନରେ ବସିବ । ତା ପରେ ପ୍ରାଣାୟାମ ଦ୍ୱାରା ନିଜ ଶ୍ୱାସକୁ ନିୟନ୍ତ୍ରିତ କରିବ । ସର୍ବ ସଂଗ ତ୍ୟାଗ କରି ଇନ୍ଦ୍ରିୟ ମାନଙ୍କୁ ନିୟନ୍ତ୍ରିତ କରିବ । ତା ପରେ ଭଗବାନଙ୍କ ଅତ୍ୟନ୍ତ ମନୋରମ ରୂପକୁ ଧ୍ୟାନ କରିବ । ଶଂଙ୍ଖ-ଚକ୍ର-ଗଦା-ପଦ୍ମ ଧାରୀ ଭଗବାନ ବିଷ୍ଣୁ, ତାଙ୍କ ଗଳାରେ ବନମାଳା, କୌସ୍ତୁଭ ମଣି, କାନରେ ମକର କୁଣ୍ଡଳ, ପିତାମ୍ବରୀ ଧାରୀ, ଆଉ ଅଳ୍ପ ହାସ୍ୟ ତାଙ୍କ ମୁଖରେ ସବୁବେଳେ ଥାଏ । ଏହି ପରି ନାରଦ ଭଗବାନଙ୍କ ରୂପର ବର୍ଣ୍ଣନା କଲେ ଏବଂ କହିଲେ - **'ଓଁ ନମଃ ଭଗବତେ ବାସୁଦେବାୟ'** । ଏହି ମନ୍ତ୍ରକୁ ନିରନ୍ତର ଜପୁଥିବ । କନ୍ଦ-ମୂଳ ଆଦି ସଂଯମସହ ଆହାର କରି ନିଜ ଚିତ୍ତକୁ ଶାନ୍ତ ଏବଂ ମନନଶୀଳ କରିନେବ । ଏବେ ତୁମେ ବନକୁ ଯାଇ ତପସ୍ୟା କରିବା ଆରମ୍ଭ କର ।

ଏବେ ଆମେ ଭକ୍ତ ଧ୍ରୁବଙ୍କୁ ମଧୁବନରେ ଛାଡ଼ିଦେବା ଏବଂ ସେପଟେ ରାଜା ଉତ୍ତାନପାଦଙ୍କ ପାଖକୁ ଯିବା । ଧ୍ରୁବ ବଣକୁ ଚାଲି ଯିବା ପରେ ରାଜା ଉତ୍ତାନପାଦଙ୍କୁ ଅତ୍ୟନ୍ତ ଦୁଃଖ ହେଲା । ସେ ନିଜକୁ ଦୋଷ ଦେବାକୁ ଲାଗିଲେ ।

**ସୁତୋ ମେ ବାଲକୋ ବ୍ରହ୍ମନ୍ ସ୍ତ୍ରୈଣେନାକରୁଣାତ୍ମନା ।**
**ନିର୍ବାସିତଃ ପଞ୍ଚବର୍ଷଃ ସହ ମାତ୍ରା ମହାନ୍‌କବିଃ ॥ ( ୪.୮.୬୫)**

ଧ୍ରୁବକୁ ମଧୁବନକୁ ପଠେଇଦେଇ ନାରଦ ରାଜା ଉତ୍ତାନପାଦଙ୍କ ପାଖରେ ପହଞ୍ଚିଲେ । ସେ ରାଜାଙ୍କୁ କହିଲେ ତୁମେ କଣ ଚିନ୍ତା କରୁଛ ? ତୁମ ମୁହଁ କାହିଁକି ଶୁଖି ଯାଇଛି । ରାଜା ଉତ୍ତାନ ପାଦ କହିଲେ -ନାରଦ, ମୁଁ କେତେ ମୁଢ଼ ସତେ । ପାଞ୍ଚବର୍ଷର ମୋର ସେହି ପୁଅଟି କୋଳରେ ବସିବା ପାଇଁ ଆସିଲା, ଆଉ ମୁଁ ସ୍ତ୍ରୀ କଥାରେ ଭଳିଗଲି । ମୋ ସ୍ତ୍ରୀ ତାକୁ ବାହାର କରିଦେଲା ଆଉ ମୁଁ ଖାଲି ଚାହିଁ ରହିଲି । ଏହି ପରି ସେ ବହୁତ ଦୁଃଖ କରିବାକୁ ଲାଗିଲା, କାନ୍ଦି କାନ୍ଦି କହିଲେ ଯେ ମୋର ଛୋଟ ପିଲା ଟା ବଣକୁ ଚାଲିଗଲା । ସେଠି ବାଘ, ସିଂହ, ଭାଲୁ ଥିବେ । ସେମାନେ ତାକୁ ମାରିଦେବେ ।

**ଅହୋ ମେ ବତ ଦୌରାତ୍ମ୍ୟଂ ସ୍ତ୍ରୀଜିତସ୍ୟୋପଧାରୟ । (୪.୮.୬୭)**

ମୁଁ କେତେ ନୀଚ । ମୁଁ ପତ୍ନୀର ଦାସ ହୋଇଗଲି । ଏହିପରି କହି ସେ ନିଜକୁ ଦୋଷ ଦେବାକୁ ଲାଗିଲେ । ଏହା ଶୁଣି ନାରଦ କହିଲେ - **'ମା ମା ଶୁଚ'**, ତୁମେ ଶୋକ କରନାହିଁ । କାରଣ - **'ସ୍ୱ ତନୟଂ ଦେବଗୁପ୍ତଂ ବିଶାମ୍ପତେ'** । ତୁମ ପୁଅ ର ରକ୍ଷା ତ ସ୍ୱୟଂ ଭଗବାନ କରିବେ । ତୁମେ ମିଛଟାରେ ଭାବୁଛ ଯେ ତୁମେ ତାକୁ ରକ୍ଷା କରିବ । ମନେ ରଖିବ ଯେ ତାର ରକ୍ଷାର ଦାୟିତ୍ୱ ଭଗବାନ ନିଜେ ବହନ କରିଛନ୍ତି । **'ତତ୍ ପ୍ରଭାବମ୍‌ବିଜ୍ଞାୟ'** । ତୁମେ ଏବେ ତାର ପ୍ରଭାବକୁ ଜାଣିନାହଁ ।

**ସୁଦୁଷ୍କରଂ କର୍ମ କୃତ୍ୱା ଲୋକପାଲୈରପି ପ୍ରଭୁଃ ।**
**ଏଷ୍ୟତ୍ୟଚିରତୋ ରାଜନ୍ ଯଶୋ ବିପୁଲୟଂ ସ୍ତବ ॥ (୪.୮.୬୯)**

ସେ ତ ଏପରି ସୁଦୁଷ୍କର କର୍ମ କରିବ ଯେପରି ପୂର୍ବରୁ କେହି କେବେ କରି ନଥିବେ । ତୁମ ଯଶ କୁ ସେ ସବୁ ଦିଗରେ ଖେଳେଇ ଦେବେ । ସେ ନିଜେ ମଧ୍ୟ ଅତ୍ୟନ୍ତ ଯଶସ୍ୱୀ ପୁତ୍ର ହେବ । ତୁମେ ତାର ଚିନ୍ତା କରନାହିଁ । ଯେତେବେଳେ ନାରଦଙ୍କ ମୁହଁରୁ ଏପରି କଥା ଶୁଣିଲେ ଉତ୍ତାନପାଦ ଙ୍କ ଚିନ୍ତା ଦୂର ହୋଇଗଲା । ଏବେ ମୈତ୍ରେୟ ଋଷି ଉକ୍ତ ଧ୍ରୁବର ତପସ୍ୟାର ବର୍ଣ୍ଣନା କରୁଛନ୍ତି ।

ଧ୍ରୁବ ଭଗବାନଙ୍କର ଭକ୍ତି ଅର୍ଥ ରୁ ଆରମ୍ଭ କଲେ, ସେ ଏକ ନିଶ୍ଚଳ ପଦ ପ୍ରାପ୍ତ କରିବା ପାଇଁ ସେ ଘରୁ ଏକୁଟିଆ ବାହାରି ଆସିଲେ । ତେଣୁ ଆମକୁ ମଧ୍ୟ କେବେ-

କେବେ ଭାବିବା ଦରକାର ଯେ ଆମ ଆୟୁ ତ ଏତେ ବର୍ଷ ହୋଇଗଲାଣି, ଆମେ ଏ ପର୍ଯ୍ୟନ୍ତ କଣ କରିଛୁ ?

ପାଞ୍ଚବର୍ଷର ବାଳକ ଧ୍ରୁବ, ତିନି ଦିନରେ ଥରେ ମାତ୍ର ବରକୋଳି ଖାଇ ରହିଲେ। ଏହି ପରି ଏକ ମାସ ବିତିଗଲା। ଦ୍ୱିତୀୟ ମାସରେ ପ୍ରତ୍ୟେକ ଷଷ୍ଠଦିନ ସେ ଥରେ ମାତ୍ର କେବଳ ଘାସ ଏବଂ ପତ୍ର ଖାଇ ରହିଲେ। ମନେ ରଖନ୍ତୁ, ସେ ତପସ୍ୟା କରୁଛନ୍ତି। ଯମୁନା ରେ ସ୍ନାନସାରି, ଏକାଗ୍ର ଚିତ୍ତ ହୋଇ ଭଗବାନଙ୍କ ନାମ ଜପ କରିବା। ଏହା ହିଁ ତାଙ୍କ ସାଧନା, କିନ୍ତୁ ଦେଖନ୍ତୁ ଯେ ସେ ତୃତୀୟ ମାସରେ ନଅ ଦିନରେ ଥରେ ଖାଲି ପାଣି ପିଇ କରି ରହିବାକୁ ଲାଗିଲେ, ଚତୁର୍ଥ ମାସରେ ପ୍ରତି ବାର ଦିନରେ ଥରେ ଖାଲି ବାୟୁ ଗ୍ରହଣ କରିଲେ। ଏବଂ ପଞ୍ଚମ ମାସରେ ଶ୍ୱାସ ଉପରେ ବିଜୟ ପ୍ରାପ୍ତ କରି ଗୋଟିଏ ଗୋଡ଼ରେ ଠିଆ ହୋଇ ବ୍ରହ୍ମଙ୍କୁ ଧ୍ୟାନ କରିବାକୁ ଲାଗିଲେ।

**ପଞ୍ଚମେ ମାସ୍ୟନୁପ୍ରାପ୍ତେ ଜିତଶ୍ୱାସୋ ନୃପାତ୍ମଜଃ।**

**ଧ୍ୟାୟନ୍ ବ୍ରହ୍ମ ପଦୈକେନ ତସ୍ଥୌ ସ୍ଥାଣୁରିବାଚଲଃ ॥ (୪.୮.୭୬)**

ନିଜର ମନ ଏବଂ ଇନ୍ଦ୍ରିୟମାନଙ୍କୁ ସମ୍ପୂର୍ଣ୍ଣ ଭାବେ ବିଷୟ ମାନଙ୍କରୁ ଦୂର କରି, ଭଗବାନଙ୍କ ପାଖରେ ଲଗେଇଦେଲେ। ଆଉ ତାଙ୍କ ତପସ୍ୟାର ପ୍ରଭାବ ଦେଖନ୍ତୁ - ଯେତେବେଳେ ସେ ନିଜର ଶ୍ୱାସ କୁ ବନ୍ଦ କଲେ ସେତେବେଳେ ସମସ୍ତ ପ୍ରାଣୀ ମାନଙ୍କର ଶ୍ୱାସ ବନ୍ଦ ହେବାକୁ ଲାଗିଲା, କାରଣ ତାଙ୍କ ଶ୍ୱାସ ସମଷ୍ଟି ବାୟୁ ସହିତ ଏକାକାର ହୋଇଯାଇଥିଲା। ଆଉ ସେ ଗୋଟିଏ ଗୋଡ଼ରେ ଠିଆ ହୋଇ ଥିଲେ ତେଣୁ ପୃଥିବୀ ସେହି ଆଡ଼କୁ ଢ଼ଳିଗଲା। ସମ୍ପୂର୍ଣ୍ଣ ବିଶ୍ୱ ହଲିବାକୁ ଲାଗିଲା, ଟଳମଳ ହେଲା।

**ୟଦୈକପାଦେନ ସ ପାର୍ଥିବାର୍ଭକ -**

**ସ୍ତସ୍ଥୌ ତଦଙ୍ଗୁଷ୍ଠ ପୀଡ଼ିତା ମହୀ।**

**ନନାମ ତତ୍ରାର୍ଧମ ଭେନ୍ଦ୍ରଧିଷ୍ଠିତା**

**ତରୀବ ସବ୍ୟେତରତଃ ପଦେ ପଦେ ॥ ( ୪.୮.୭୯)**

ଧ୍ରୁବ ତ ବିଶ୍ୱାତ୍ମା ଙ୍କ ଧ୍ୟାନ ରେ ଲୀନ ଥିଲେ। ଦେଖନ୍ତୁ, ଏହା ବିରାଟ ର ଧ୍ୟାନ, ଯାହାର ବର୍ଣ୍ଣନ ଦ୍ୱିତୀୟ ସ୍କନ୍ଧ ରେ ହୋଇଛି। ଏଠାରେ ଧ୍ରୁବ ମଧ୍ୟ ଏହି ପରି ଧ୍ୟାନ କରିବାକୁ ଲାଗିଲେ ତ ବିରାଟ ସହ ଏକାକାର ହୋଇଗଲେ। ତାଙ୍କ ଶ୍ୱାସ ସମଷ୍ଟି ସହ

ମିଶି ଏକ ହୋଇଗଲା । ସେ ଯେଉଁ ଗୋଡ଼ରେ ଠିଆ ହୋଇଥିଲେ ସେହି ପଟରେ ତାଙ୍କ ଓଜନ ବଢ଼ିଯିବାରୁ ପୃଥିବୀ ମଧ୍ୟ ସେହି ପଟକୁ ଢ଼ଳିଗଲା । ସମ୍ପୂର୍ଣ୍ଣ ବ୍ରହ୍ମାଣ୍ଡର ସ୍ଥିତି ଅତ୍ୟନ୍ତ ବିଚିତ୍ର ହୋଇଗଲା । ସେତେବେଳେ ସବୁ ଦେବତା ମାନେ ଛାନିଆ ହୋଇ ଭଗବାନ ଶ୍ରୀ ହରିଙ୍କ ପାଖରେ ପହଞ୍ଚିଲେ ଏବଂ କହିଲେ - **'ନୈବଂ ବିଦାମଃ'** ଆମେ ବୁଝି ପାରୁନାହୁଁ ଯେ ଏମିତି କାହିଁକି ହେଉଛି ? ଆମ ଶ୍ୱାସ ବନ୍ଦ ହୋଇ ଯାଉଛି, ଆମେ ବ୍ୟାକୁଳ ହୋଇ ଯାଉଛୁ । ଦୟା କରି ଆପଣ କିଛି କରନ୍ତୁ । ଭଗବାନ କହିଲେ

**ମା ଭୈଷ୍ଟ ବାଲଂ ତପସୋ ଦୁରତ୍ୟୟା**
**ନ୍ନିବର୍ତୟିଷ୍ୟେ ପ୍ରତିୟାତ ସ୍ୱଧାମ ।**
**ୟତୋ ହି ବଃ ପ୍ରାଣନିରୋଧ ଆସୀ**
**ଦୌତ୍ତାନପାଦିର୍ମୟି ସଂଗତାତ୍ମା ॥ (୪.୮.୮୨)**

କଥା କଣ କି, ଉତ୍ତାନପାଦ ଙ୍କ ପୁତ୍ର ନିଜର ସମ୍ପୂର୍ଣ୍ଣ ମନ ଏବଂ ପ୍ରାଣ ମୋ ପାଖରେ ଲଗେଇ ଦେଇଛି ଏବଂ ସେଥିପାଇଁ ସମ୍ପୂର୍ଣ୍ଣ ବ୍ରହ୍ମାଣ୍ଡର ସ୍ଥିତି ଏମିତି ହୋଇ ଯାଇଛି । ଏବେ ମୁଁ ତା ପାଖକୁ ଯାଇ ତାକୁ ତପସ୍ୟା ରୁ ନିବୃତ କରି ଘରକୁ ପଠେଇ ଦେବି । ତପସ୍ୟା କରୁ କରୁ ଛମାସ ହୋଇଗଲାଣି । ଦେଖନ୍ତୁ ଆମକୁ ମଧ୍ୟ ଲାଗୁଥିବ ଯେ ଦେବତାମାନେ କହିଲେ ବୋଲି ଭଗବାନ ଧ୍ରୁବ ଙ୍କ ପାଖକୁ ଯାଉଛନ୍ତି, କିନ୍ତୁ ପ୍ରକୃତରେ ସତ କଣ ? ଦେଖନ୍ତୁ ଏଠି ମୈତ୍ରେୟ ଋଷି କଣ କହୁଛନ୍ତି -

**ତ ଏବମୁତ୍ସନ୍ନଭୟା ଉରୁକ୍ରମେ**
**କୃତାବନାମାଃ ପ୍ରୟୟୁସ୍ତ୍ରିବିଷ୍ଟାପମ୍ ।**
**ସହସ୍ରଶୀର୍ଷାପି ତତୋ ଗରୁତ୍ମତା**
**ମଧୋର୍ବନଂ ଭୃତ୍ୟଦିଦୃକ୍ଷୟା ଗତଃ ॥ (୪.୯.୧)**

ଋଷି କହିଲେ **'ଭକ୍ତ ଦିଦୃକ୍ଷୟା'** ଭଗବାନ ବସି ପାରୁ ନ ଥିଲେ । ତାଙ୍କୁ ଲାଗୁଥିଲା ଯେ ମୁଁ କେତେବେଳେ ଯିବି ଆଉ ମୋ ଭକ୍ତ କୁ ଦେଖିବି । 'ଦର୍ଶନ ଦେବା ପାଇଁ' ଏମିତି କହିଲେ ନାହିଁ । ଭଗବାନ ନିଜ ଭକ୍ତକୁ ' ଦର୍ଶନ କରିବା ପାଇଁ' ବ୍ୟାକୁଳ ହୋଇଗଲେ । ଟିକିଏ ଭାବିଲେ ଦେଖି ଇଏ କି କଥା । ଦେଖନ୍ତୁ, ଜୀବନରେ ଭକ୍ତି ର ଆରମ୍ଭ କେହି ବ୍ୟକ୍ତି ଅର୍ଥ ରୁ କରିଥିଲେ ମଧ୍ୟ ତାହା କିପରି ପରମାର୍ଥ ଆଡ଼କୁ ନେଇଯାଏ.

ତାର ଏହା ଅତ୍ୟନ୍ତ ସୁନ୍ଦର ଉଦାହରଣ ଅଟେ। ଯଦିଓ ଧ୍ରୁବ 'ଅର୍ଥାର୍ଥି' ହୋଇ ଭକ୍ତିର ଆରମ୍ଭ କରୁଛନ୍ତି କିନ୍ତୁ ଏବେ ତାଙ୍କ ମନ ଭଗବାନଙ୍କ ପାଖରେ ଯେପରି ଲାଗିଯାଇଛି ସେଥିରେ ଆଉ ଧନ କି ରାଜ୍ୟର ତିଳେ ହେଲେ ଭାବନା ମଧ୍ୟ ନାହିଁ। ତେଣୁ ଭଗବାନ ତାଙ୍କର ଦର୍ଶନ କରିବା ପାଇଁ ଗଲେ। ଏଠାରେ ବହୁତ ସୁନ୍ଦର ବର୍ଣ୍ଣନା କରାଯାଇଛି। ଭଗବାନ ସେଠାରେ ପହଞ୍ଚିଲେ। ପହଞ୍ଚିକରି ସେ ସେହି ଛୋଟ ପିଲାଟିକୁ ଦେଖିଲେ, ଗୋଟିଏ ଗୋଡ଼ରେ ଠିଆ ହୋଇଛି, ଆଖି ବନ୍ଦ। ତାକୁ ତ ଜଣା ବି ନାହିଁ ଯେ ସ୍ୱୟଂ ଭଗବାନ ସମ୍ମୁଖରେ ଠିଆ ହୋଇଛନ୍ତି। ସେତ ଧ୍ୟାନମଗ୍ନ ହୋଇ 'ଓଁ ନମୋ ଭଗବତେ ବାସୁଦେବାୟ' ମନ୍ତ୍ର ଜପି ଚାଲିଛି। ଭଗବାନ ତାର ଦର୍ଶନ କଲେ। ବହୁତ ସମୟ ପର୍ଯ୍ୟନ୍ତ ତାକୁ ଦେଖିଲେ। ତାପରେ ଡାକିଲେ, ଶେଷରେ ତା ଚିତ୍ତ ରୁ ନିଜ ରୂପକୁ ଟାଣିଆଣିଲେ। ତା ପରେ ହଠାତ୍ ଧ୍ରୁବଙ୍କ ଆଖି ଖୋଲିଗଲା। ସମ୍ମୁଖରେ ଭଗବାନଙ୍କୁ ଦେଖି ଧ୍ରୁବ ସାଷ୍ଟାଙ୍ଗ ଦଣ୍ଡବତ ପ୍ରଣାମ କଲେ।

**ଦୃଗ୍‌ଭ୍ୟାଂ ପ୍ରପଶ୍ୟନ୍ ପ୍ରପିବନ୍ନିବାର୍ଭକଂଚୁମ୍ବନ୍ନିବାସ୍ୟେନ**

**ଭୁଜୈରିବାଶ୍ଲିଷନ୍ ॥ (୪.୯.୩)**

ଭଗବାନଙ୍କୁ ଏମିତି ଲାଗିଲା ଯେ ଏହି ବାଳକ କୁ ମୁଁ ଆଖିଦ୍ୱାରା ପିଇ ଯାଆନ୍ତି କି, ମୁହଁ ଦ୍ୱାରା ଚୁମ୍ବନ କରିବି, ବାହୁରେ ଆଲିଙ୍ଗନ କରିବି, ହୃଦୟରେ ଲଗେଇ ଦେବି। ତାର ରୂପ ମାଧୂର୍ଯ୍ୟ, ଯେମିତି ସେ ଆଖିରେ ପିଇଗଲେ।

ଧ୍ରୁବ ହାତ ଯୋଡ଼ି ଠିଆ ହୋଇଛନ୍ତି। ସେ ବୁଝି ପାରୁନାହାଁନ୍ତି ଯେ କହିବା ପାଇଁ ଚାହୁଁଛନ୍ତି, ସ୍ତୁତି କରିବା ପାଇଁ ଚାହୁଁଛନ୍ତି କିନ୍ତୁ କ'ଣ କହିବେ ଆଉ କେମିତି କହିବେ କିଛି ବୁଝିପାରୁ ନାହାଁନ୍ତି। ତାଙ୍କର ଏହି ଦଶା ଦେଖି ଭଗବାନ ନିଜ ଶଂଖ ଦ୍ୱାରା ତାଙ୍କର କପାଳ ସ୍ପର୍ଶ କରିଦେଲେ। ଶଂଖ ରେ ନାଦବ୍ରହ୍ମ ଲୁଚି ରହିଛନ୍ତି। ଭଗବାନ ଯେମିତି ଶଙ୍ଖ ସ୍ପର୍ଶ କରି ଦେଇଛନ୍ତି, ସାକ୍ଷାତ୍ ସରସ୍ୱତୀ ଯେମିତି ତାଙ୍କ ବାଣୀରେ ପ୍ରକଟ ହୋଇଗଲେ। ସେତେବେଳେ ଧ୍ରୁବ ଭଗବାନଙ୍କର ଯେଉଁ ସ୍ତୁତି କରିଛନ୍ତି ତା'ର ପ୍ରଥମ ଶ୍ଳୋକ ହିଁ ବହୁତ ସୁନ୍ଦର ଏବଂ ଅତ୍ୟନ୍ତ ପ୍ରସିଦ୍ଧ ମଧ୍ୟ।

**ଯୋଽନ୍ତଃ ପ୍ରବିଶ୍ୟ ମମ ବାଚମିମାଂ ପ୍ରସୁପ୍ତାଂ**
**ସଂଜୀବାୟତ୍ୟଖିଲଶକ୍ତିଧରଃ ସ୍ୱଧାମ୍ନା ।**
**ଅନ୍ୟାଂଶ୍ଚ ହସ୍ତଚରଣଶ୍ରବଣତ୍ୱଗାଦୀନ୍**
**ପ୍ରାଣାନ୍ନମୋ ଭଗବତେ ପୁରୁଷାୟ ତୁଭ୍ୟମ୍ ॥ (୪.୯.୬)**

ପରମ ପୁରୁଷ ଭଗବାନଙ୍କୁ ନମସ୍କାର ! କିଏ ଏହି ଭଗବାନ ? କହିଲେ - **'ଯୋଽନ୍ତଃ ପ୍ରବିଶ୍ୟ'** ଯିଏ ମୋର ଅନ୍ତଃକରଣରେ ପ୍ରବେଶ କରି ନିଜର ଚୈତନ୍ୟ ଶକ୍ତି ଦ୍ୱାରା ମୋର ଶୋଇ ପଡ଼ିଥିବା ବାଣୀକୁ ଉଠାଇ ଦିଅନ୍ତି । ସେ ପୁଣି କହିଲେ କେବଳ ବାଣୀ ନୁହେଁ - **'ତ୍ୱଗାଦୀନ୍'** ସମ୍ପୂର୍ଣ୍ଣ ଜ୍ଞାନେନ୍ଦ୍ରିୟ, କର୍ମେନ୍ଦ୍ରିୟ ଏବଂ ମୋର ପ୍ରାଣ ମାନଙ୍କୁ ମଧ୍ୟ ଉଠାଇ ଦଅନ୍ତି । ଏହି କଥା କେନୋପନିଷଦରେ ମଧ୍ୟ କୁହାଯାଇଛି । 'ଶ୍ରୋତସ୍ୟ ଶ୍ରୋତ୍ର' - ଭଗବାନ ତ କାନ ମାନଙ୍କର କାନ, ଆଖି ମାନଙ୍କର ଆଖି, ମନର ମାନଙ୍କର ମଧ୍ୟ ମନ ଏବଂ ପ୍ରାଣ ମାନଙ୍କର ମଧ୍ୟ ପ୍ରାଣ ଅଟନ୍ତି । ତାଙ୍କ ଯୋଗୁଁ କାନ ଶୁଣିବାରେ ଏବଂ ଆଖି ଦେଖିବାରେ ସମର୍ଥ ହୋଇଥାଏ । ଭଗବାନ ଙ୍କୁ ମୁଁ ନମସ୍କାର କରୁଛି । ଅଖଣ୍ଡ ଏବଂ ଏକ ହୋଇଥିଲେ ମଧ୍ୟ ଆପଣ ହିଁ ଅନେକ ରୂପରେ ପ୍ରକଟ ହୋଇଥାଅନ୍ତି ।

**ନୂନଂ ବିମୁଷ୍ଟମତୟସ୍ତବ ମାୟୟା ତେ**
**ୟେ ତ୍ୱାଂ ଭବାପ୍ୟୟବିମୋକ୍ଷଣମନ୍ୟହେତୋଃ ।**
**ଅର୍ଚ୍ଚନ୍ତି କଳ୍ପକତରୁଂ କୁଣପୋପଭୋଗ୍ୟ -**
**ମିଚ୍ଛନ୍ତି ୟତ୍ସ୍ପର୍ଶଜଂ ନିରୟେଽପି ନୃଣାମ୍ ॥**

ଯଦ୍ୟପି ଆପଣଠାରୁ ମୋକ୍ଷ ପ୍ରାପ୍ତି କରା ଯାଇପାରେ, ପରା ଭକ୍ତିର ପ୍ରାପ୍ତି ହୋଇପାରେ ତଥାପି ତା ସ୍ଥାନରେ ମହାମୂଢ଼ ଅଜ୍ଞାନ ମାନେ ଆପଣଙ୍କ ମାୟାରେ ମୋହିତ ହୋଇ ଇନ୍ଦ୍ରିୟ ର ସୁଖ ହିଁ ମାଗନ୍ତି, ଯାହାକି ନର୍କରେ ମଧ୍ୟ ପ୍ରାପ୍ତ ହୋଇପାରେ ।ଏଠାରେ ଲେଖା ହୋଇଛି ଯେ ନର୍କରେ ମଧ୍ୟ ସ୍ପର୍ଶର ସୁଖ ମିଳି ପାରେ । ତା ମାନେ, ସ୍ପର୍ଶସୁଖ ହିଁ ନର୍କ ଅଟେ, ଏହା ହିଁ ତାର ପ୍ରକୃତ ଅର୍ଥ । ଆମ ଭାଷା ଏବଂ ଶାସ୍ତ୍ରର ଭାଷାରେ ପାର୍ଥକ୍ୟ ଅଛି । ନର୍କରେ ମଧ୍ୟ ସ୍ୱର୍ଗ ସୁଖ ମିଳେ ତା ମାନେ ସ୍ୱର୍ଗ ସୁଖ ହିଁ ନର୍କ । ଭଗବନ୍ ! ଲୋକମାନେ ବୁଝିପାରୁନାହାଁନ୍ତି । ସେମାନେ ସ୍ୱର୍ଗ ଆଦି ପ୍ରାପ୍ତ

କରିବା ପାଇଁ ଚାହାଁନ୍ତି। ଆପଣଙ୍କ ଭକ୍ତି ଚାହାଁନ୍ତିନି। ବର୍ତ୍ତମାନ ମୋତେ ଆଉ ସ୍ୱର୍ଗ ପ୍ରାପ୍ତି କରେଇ ପାରୁଥିବା ଭକ୍ତି ଦରକାର ନାହିଁ, କାରଣ ମୁଁ ଦେଖିଛି ଯେ ପରେ ସେହି ଲୋକମାନେ ସ୍ୱର୍ଗରୁ ଟପାଟପ ଖସି ପଡୁଛନ୍ତି। ଟିକିଏ ପୁଣ୍ୟ ମିଳିଲେ ସ୍ୱର୍ଗକୁ ଯାଆନ୍ତି। ପୁଣି 'କ୍ଷୀଣେ ପୁଣ୍ୟେ ମର୍ତ୍ତ୍ୟ ଲୋକଂ ପତନ୍ତି'। 'ବିଶନ୍ତି' ନୁହଁ। 'ପତନ୍ତି' ବି ନୁହଁ। ପ୍ରକୃତରେ ସତ ହେଲା ଯେ ଦେବତା ମାନେ ତାଙ୍କୁ ଧକ୍କାମାରି ସେଠାରୁ ତଳକୁ ପକେଇ ଦିଅନ୍ତି। ସାଧୁ -ସନ୍ଥ ମାନେ କୁହନ୍ତି ସ୍ୱର୍ଗ ଲୋକୁ ଯିବା ତ ବେଶ୍ୟାଳୟ ଯିବା ସହ ସମାନ। ସ୍ୱର୍ଗ କଣ ଗୋଟେ ବଡ଼ କଥା ? ସ୍ୱର୍ଗବାସୀ ମାନଙ୍କୁ ତ – 'ପତତାଂ ବିମାନାତ୍' ମୁଁ ବିମାନରୁ ତଳକୁ ପଡ଼ିବାର ଦେଖିଛି, ଧ୍ରୁବ ଏପରି କହିଲେ।

**ଭକ୍ତିଂ ମୁହୁଃ ପ୍ରବହତାଂ ତ୍ୱୟି ମେ ପ୍ରସଙ୍ଗୋ।**

**ଭୂୟାଦନନ୍ତ ମହତାମମଲାଶୟାନାମ୍ ॥ (୪.୯୧୧)**

ହେ ଅନନ୍ତ ଭଗବାନ ! ଆପଣ ମୋ ହୃଦୟ କୁ ଆସି ଭକ୍ତିର ଧାରା କୁ ବଢ଼େଇ ଦିଅନ୍ତୁ। ମୋତେ ଆଉ କିଛି ଦରକାର ନାହିଁ। ଏବେ ଦେଖନ୍ତୁ, 'ଅର୍ଥ' କାହିଁକି ଦରକାର ? ଭକ୍ତି କରିବା ପାଇଁ। ମନେ ରଖିବେ, ଧ୍ରୁବ ଯଦିଓ ଅର୍ଥର କାମନା କରି ବଣକୁ ଯାଇଥିଲେ, କିନ୍ତୁ ପରେ ଯେତେବେଳେ ଭଗବାନଙ୍କ ଦର୍ଶନ ହେଇଗଲା, ସେତେବେଳେ ଅର୍ଥ ବା ରାଜ୍ୟର ବିଚାର ତାଙ୍କ ମନରେ ଆଉ ରହିଲା ନାହିଁ। ସେ ଜାଣିଛନ୍ତି ଯେ ଏହି ସବୁ ଜିନିଷ ଅନିତ୍ୟ ଅଟେ। ଏହା ଦ୍ୱାରା ଭଗବାନ ଅତ୍ୟନ୍ତ ପ୍ରସନ୍ନ ହେଲେ। ସେ ଜାଣିଗଲେ ଯେ ଧ୍ରୁବ ମନରେ ଆଉ କୌଣସି କାମନା ନାହିଁ। କିନ୍ତୁ ଯେତେବେଳେ ସେ ଘରୁ ବାହାରି ଥିଲା ତା ମନରେ ସଂକଳ୍ପ ଥିଲା। ତେଣୁ ସେହି ସଂକଳ୍ପ କୁ ସେ ପୁର୍ଣ୍ଣ କଲେ।

ଏଠି ଗୋଟିଏ କଥା ଭଲ ଭାବରେ ବୁଝିବାକୁ ହେବ। ଆମେ କୌଣସି ସଂକଳ୍ପ ନେଇ ଭଗବାନଙ୍କ ପାଖକୁ ଯିବା ଏବଂ ପୁଣି ନିଜେ ସେହି ସଂକଳ୍ପକୁ ତ୍ୟାଗ କରିଦେଲେ ମଧ୍ୟ, ଭଗବାନ ତାକୁ ପୂର୍ଣ୍ଣ କରିନ୍ତି। ଯଦି କେବେ ଭଗବାନ ନିଜ ଆଡୁ ଆମକୁ କିଛି ଦେବେ ଆଉ ଆମେ କହିବା ଯେ ମୋତେ ଦରକାର ନାହିଁ, ତଥାପି ସେ ନିଶ୍ଚୟ ଦେବେ, କାରଣ ଦେଖନ୍ତୁ, ଆମେ ନ ଚାହିଁଲେ ମଧ୍ୟ ଯଦି ଭଗବାନ କହିବେ ଯେ ଠିକ୍ ଅଛି ତାକୁ ଛାଡ଼ିଦିଅ, ତେବେ ବି ଆମକୁ ଲାଗିବ ଯେ ବୋଧହୁଏ ଭଗବାନ ବି ମୋତେ ଦେବାପାଇଁ ଚାହୁଁ ନାହାଁନ୍ତି ବୋଧେ। କେବେ-କେବେ ଆମ ଘର ମାନଙ୍କରେ ମଧ୍ୟ ଏପରି ହୁଏ ନା ନାହିଁ ? ଆମ ଘରକୁ କିଏ ଆସିଲେ, ଆମେ କହୁ ଭୋଜନ କରନ୍ତୁ। ସେ କହିବ ଯେ ନା, ମୁଁ ଖାଇକରି ଆସିଛି। ସେତେବେଳେ ଯଦି ଆମେ ତାକୁ ଖାଇବା ପାଇଁ

ଆଗ୍ରହ କରିବା ନାହିଁ ଆଉ କହିବା ଠିକ୍ ଅଛି, ତେବେ ତାର ଅର୍ଥ ହେଲା ଯେ ବୋଧହୁଏ ତାକୁ ଖାଇବାକୁ ଦେବା ପାଇଁ ଆମେ ମଧ୍ୟ ବିଶେଷ ଇଚ୍ଛା କରୁ ନଥିଲୁ। କିନ୍ତୁ ଯଦି ଆମେ ତାକୁ ପ୍ରକୃତରେ ଖାଇବାକୁ ଦବା ପାଇଁ ଚାହୁଁଛୁ ତେବେ କହିବା ଯେ ଅଳ୍ପ ଟିକିଏ ପ୍ରସାଦ ତ ଗ୍ରହଣ କରନ୍ତୁ। ଅନ୍ୟଥା ଏପରି ଲାଗିବ ନାହିଁ ଯେ ଆମ ହୃଦୟରେ ତାଙ୍କ ପ୍ରତି କୌଣସି ସ୍ନେହ ଭାବ ଅଛି।

ଏଠାରେ ଭଗବାନ କହୁଛନ୍ତି ଯେ - ଯେଉଁ ସଂକଳ୍ପ ନେଇ ତୁମେ ଏଠାକୁ ଆସିଛ, ତାହା ଅବଶ୍ୟ ପୂର୍ଣ୍ଣ ହେବ। ମୁଁ ତୁମକୁ ଏପରି ଏକ ପଦ ଦେବି ଯେଉଁଠାରୁ ତୁମକୁ କେହି କେବେ ତଡ଼ିପାରିବେ ନାହିଁ। ତାର ନାମ 'ଧ୍ରୁବ ଲୋକ'। ଭଗବାନ ତାଙ୍କ ପାଇଁ ନୂଆ ସ୍ଥାନ ତିଆରି କରିଦେଲେ, ଏପରି କୌଣସି ସ୍ଥାନ ତାଙ୍କ ବ୍ରହ୍ମାଣ୍ଡ ରେ ନ ଥିଲା। କିନ୍ତୁ ଧ୍ରୁବଙ୍କ ପାଇଁ ଗୋଟିଏ ଅଲଗା ଧ୍ରୁବଲୋକ ତିଆରି କରିଦେଲେ ଏବଂ କହିଲେ -ଚନ୍ଦ୍ର-ତାରା-ନକ୍ଷତ୍ର ସମସ୍ତେ ସେହି ଲୋକର ପରିକ୍ରମା କରୁଥିବେ ଏବଂ ତୁମେ ସେଠାରେ ନିଶ୍ଚିନ୍ତ ହୋଇ ରୁହ। ସେଠାକୁ ଯିବା ପୂର୍ବରୁ ତୁମେ ଏଠି ଛତିସ ହଜାର ବର୍ଷ ରାଜ୍ୟ କର। ଏହା ଶୁଣି ଆମ ଆଖି ବଡ଼ ବଡ଼ ହୋଇଯିବା କାରଣ ଆମେ ହେଲୁ ଛତିସ ବର୍ଷ ବଞ୍ଚିଲା ବାଲା, ଛତିସ ହଜାର ବର୍ଷ। ଦେଖନ୍ତୁ, ମିଛ ଭାବନ୍ତୁନି, ଆରେ ଭାଇ କେବେ -କେବେ ସମୟ ଆମକୁ ଛୋଟ ଲାଗେ, କିନ୍ତୁ ତାହା ଦୀର୍ଘ ହୋଇଥାଏ। ସ୍ୱପ୍ନର ସମୟ ଅଲଗା, ଜାଗ୍ରତ ର ଅଲଗା। କୌଣସି ଯୁଗରେ ଆୟୁ ଲମ୍ବା ହୋଇଥାଏ ତ, କୌଣସି ଯୁଗରେ କମ୍ -ବେଶୀ ହୋଇପାରେ।

କାହାର ଆୟୁ ଶହେ ବର୍ଷ ହୋଇଥିବ ଆଉ ସର୍ବଶକ୍ତିମାନ ତାକୁ କହିବେ ଯେ ତୁମେ ହଜାର ବର୍ଷ ବଞ୍ଚ, ତ ତାକୁ ବା କିଏ ମନା କରି ପାରିବ ? ଚାକିରୀ ରୁ ଅବସରର ଆୟୁ ପଞ୍ଚାବନ -ଛପନ ବର୍ଷ କିନ୍ତୁ ସରକାର ଯଦି କହିବେ ତୁମେ ଆଉ ଦୁଇ-ଚାରି ବର୍ଷ କାମ କର ତ ସେହି ବ୍ୟକ୍ତି କୁ କିଏ ଭଲା ମନା କରିପାରିବ, କିଏ ବାହାର କରି ପାରିବ ? କାରଣ ସରକାର ଙ୍କର ଏହି ଅଧିକାର ଅଛି ଯେ ସେ ସେବା କାଳ ବୃଦ୍ଧି କରିପାରିବେ, ପଦ ଦେଇପାରିବେ। ଭଗବାନ ଅନନ୍ତ, ସେ କିଛି ବି ଦେଇପାରିବେ। ଭଗବାନ ଙ୍କ ନାମର ପ୍ରତାପ ଅଗାଧ ଅଟେ।

**ଧ୍ରୁବଙ୍କୁ ପିତା ତଡ଼ିଦେଲେ, ହରିନାମ ରେ ମନ ଦେଲେ**

**ତାଙ୍କୁ ଅଚଳ ଧାମ ଦେଲେ, ତୁମର ମନେ ଅଛି କି ନା**

**ନାମ ର ଏହି ପ୍ରତାପର , ତୁମର ମନେ ଅଛି କି ନା ।**

ଭଗବାନ କହିଲେ, " ଏବେ ତୁମେ ଏଠାରୁ ଘରକୁ ଫେରିଯାଅ ଏବଂ ରାଜ୍ୟ କର। ତୁମକୁ କେହି ବାଧା ଦେଇ ପାରିବେ ନାହିଁ। ରାଜ୍ୟ କରି ସାରି ତୁମେ ଧ୍ରୁବ ଲୋକକୁ ଚାଲିଯିବ। ମୋ ଆଶୀର୍ବାଦ ତୁମ ସହିତ ରହିଛି"। କେବଳ ଛଅମାସରେ ଭଗବାନଙ୍କୁ ଯଦି କେହି ଦର୍ଶନ କରି ପାରିଛି ତ ସେ କେବଳ ଧ୍ରୁବ। କିନ୍ତୁ ଦେଖନ୍ତୁ କିପରି ତପସ୍ୟା କଲେ ସେ। ଧ୍ରୁବର ଅର୍ଥ ହେଲା ନିଜ ନିଶ୍ଚୟ ରେ ଅଚଳ -ଅଟଳ ରହିବା ବାଲା।, ଧ୍ରୁବ ଫେରିଆସିଲେ, ଏଠି ଆଉ୍ ଗୋଟିଏ କଥା ଦେଖାଯାଏ ଯେ ଭଗବାନଙ୍କ ଦର୍ଶନ ମିଳିଲା, ସ୍ପର୍ଶ ହେଲା, ଭଗବାନ ଙ୍କ ସାଙ୍ଗରେ କଥାବାର୍ତ୍ତା ହେଲେ, ଭଗବାନ ଏତେ ଶ୍ରେଷ୍ଠ ବରଦାନ ମଧ୍ୟ ଦେଇ ଦେଲେ। କିନ୍ତୁ ଧ୍ରୁବଙ୍କୁ ଖୁସୀ ମିଳିଲା ନାହିଁ। 'ନ ଅତି ପ୍ରୀତୋ' ବହୁତ ପ୍ରସନ୍ନ ହେଲେ ନାହିଁ।

ତେଣୁ ବିଦୁର ପଚାରିଲେ, ଏତେ ବଡ଼ ବଡ଼ କଥା ସବୁ ହେଲା କିନ୍ତୁ ଧ୍ରୁବ ପ୍ରସନ୍ନ କହିଁକି ହେଲେନାହିଁ କାହିଁକି ? ଧ୍ରୁବଙ୍କୁ ବହୁତ ଦୁଃଖ ଲଗୁଥିଲା କାରଣ ତାଙ୍କୁ ଏଇଆ ହିଁ ଲାଗୁଥିଲା ଯେ କେବଳ ଛଅ ମାସରେ ମୋତେ ଭଗବାନଙ୍କ ଦର୍ଶନ ମିଳିଗଲା,କିନ୍ତୁ ମାୟା ମୋ ବୁଦ୍ଧିକୁ ହରଣ କରିନେଲା। ମୁଁ ତ ତାଙ୍କ ପରା ଭକ୍ତି ମଧ୍ୟ ପ୍ରାପ୍ତ କରି ପାରିଥାନ୍ତି କିନ୍ତୁ ଏଇ ଧ୍ରୁବ ଲୋକ ହିଁ ପ୍ରାପ୍ତ କଲ। ଏଇଟା ଭଲା କି ବୁଦ୍ଧିମାନର କାମ ହେଲା ? ମୁଁ ଏହି ସଂକଳ୍ପ ନେଇ ବନକୁ କାହିଁକି ଗଲି ? ସାବତ ମା ମୋତେଟିକିଏ କଣ କହିଦେଲେ ତା ମତେ ଏଠିତ ଦୁଃଖ ଲାଗିଲା। ସାମାନ୍ୟ ଲୋକ ର ପ୍ରାପ୍ତି ପାଇଁ ମୁଁ ବଣ କୁ ଚାଲିଗଲି। ଯେଉଁଠି ଭଗବାନ ମୋତେ ତାଙ୍କର ନିର୍ମଳ ଭକ୍ତି ଦେଇ ପାରିଥାଆନ୍ତେ, ସେଠି ରାଜ୍ୟ ଆଜି କଣ ? ବ୍ୟର୍ଥରେ ବଙ୍କା ରାସ୍ତା ରେ ଗଲି। ମୁଁ ଭଗବାନଙ୍କ ଠାରୁ ସିଧା ପରା ଭକ୍ତି ମାଗି ପାରି ଥାଆନ୍ତି, କିନ୍ତୁ ମାଗିଲିନି। **'ମୟୈତତ୍ପ୍ରାର୍ଥିତଂ ବ୍ୟର୍ଥଂ ଚିକିତ୍ସେବ ଗତାୟୁଷି'। (୪.୯.୩୪)**

ସେ ଭାବିଲେ - ମୋ ମାଗିବା ତ ଏମିତି ହେଲା ଯେମିତି କୌଣସି ମୃତ୍ୟୁ ମୁଖରେ ଥିବା ମନୁଷ୍ୟ, ଯାହର ଆୟୁଷ ସମାପ୍ତ ହୋଇ ଯାଇଛି, ଠିକ୍ ସେତିକି ବେଳେ କୌଣସି ଦେବତା ତା ଉପରେ ପ୍ରସନ୍ନ ହୋଇ କହିବେ ମୁଁ ତୁମ ଉପରେ ପ୍ରସନ୍ନ, ତୁମର

କଣ ଦରକାର, ମାଗିନିଅ ! ସେତେବେଳେ ସେ କହିବ ମୋ ଔଷଧ-ଉପଚାର ବ୍ୟବସ୍ଥା କରିଦିଅନ୍ତୁ। ଇଏ କି କଥା ?

ଔଷଧ ଖାଇ ମରିବକି ? ଠିକ୍ ଅଛି ଔଷଧ ଖା ଆଉ ମର। ଧ୍ରୁବ ଭାବିଲେ ମୋ ମାଗିବା ମଧ୍ୟ ଠିକ୍ ଏଇମିତି ହେଲା ଏବଂ ଏହା ଭାବି ତାଙ୍କୁ ବହୁତ ଦୁଃଖ ଲାଗିଲା ଯେ କେତେ ବଡ଼ ମୂର୍ଖ ମୁଁ! ଦେଖନ୍ତୁ ଏଥିରୁ ଗୋଟିଏ କଥା ତ ସିଦ୍ଧ ହେଲା ଯେ ଭଗବତ୍ ଭକ୍ତି ଧ୍ରୁବଲୋକ ଆଦିର ପ୍ରାପ୍ତି ଠାରୁ ଅଧିକ ଶ୍ରେଷ୍ଠ। ଏହାର କୌଣସି ତୁଳନା ନାହିଁ କି ଏହାର ତୁଳନା ଅନ୍ୟ କୌଣସି ବସ୍ତୁ ସହିତ କରାଯାଇ ମଧ୍ୟ ପାରିବ ନାହିଁ। ଏହା ଅତୁଳନୀୟ ଅଟେ।

## ଭଗବତ୍ ଦର୍ଶନ କରି ଧ୍ରୁବଙ୍କର ଘରକୁ ଫେରିବା

ସେପଟେ ରାଜା ଉତ୍ତାନପାଦଙ୍କୁ କିଏ ଏହି ଖବର ଦେଲା। କିନ୍ତୁ ଏହି କଥାରେ ତାଙ୍କର ଆଦୌ ବିଶ୍ୱାସ ହେଲା ନାହିଁ। ସେତେବେଳେ ନାରଦ ଆସି ତାଙ୍କୁ କହିଲେ - ତୁମ ପୁଅ ଫେରି ଆସୁଛି। ଶୁଣିକରି ରାଜା ଉତ୍ତାନପାଦ ଦୌଡ଼ି ଆସିଲେ। ସୁରୁଚି ଏବଂ ସୁନୀତି ମଧ୍ୟ ଦୌଡ଼ି ଆସିଲେ। ସାବତ ମା ସୁରୁଚି ମଧ୍ୟ ବୁଝିସାରିଥିଲେ ଯେ ଇଏ ଛୋଟ ପିଲାଟିଏ କିନ୍ତୁ ବଡ଼ ତେଜସ୍ୱୀ ଅଟେ। ତୁଳସୀ ରାମୟଣ ରେ କୁହାଯାଇଛି - **'ତେଜବନ୍ତ ଲଘୁ ଗନିୟ ନ ରାନୀ'**। ତେଜସ୍ୱୀ ପୁରୁଷଙ୍କୁ ଛୋଟ ବୋଲି ଭାବିବେନି, ଯଦିଓ ସେ ଆୟୁରେ ବା ଉଚ୍ଚତାରେ ଛୋଟ ଦିଶୁଥାନ୍ତି। ତାଙ୍କର ସାବତ ଭାଇ ଉତ୍ତମ ସେ ମଧ୍ୟ ଦୌଡ଼ି ଆସିଲା। ସମସ୍ତେ ଧ୍ରୁବଙ୍କୁ ଦେଖା କରିବା ପାଇଁ ଗଲେ।

ଧ୍ରୁବ ନିଜେ ଆଦୌ ଖୁସୀ ନାହାଁନ୍ତି। କିନ୍ତୁ ସମସ୍ତଙ୍କୁ ଲାଗୁଛି ଯେ ଇଏ ତ ଭଗବାନଙ୍କ ଦର୍ଶନ ଓ ସ୍ପର୍ଶ କରି ଫେରିଛନ୍ତି। ନିଜେ ରାଜା ଉତ୍ତାନପାଦ ପ୍ରଥମେ ତାଙ୍କ ଚରଣ ଧୂଳି ମୁଣ୍ଡରେ ମାରି ପୁଣି ତାଙ୍କୁ କୋଳକୁ ନେଲେ। ଭାବିଲେ ମୁଁ ତ ଭଗବାନଙ୍କୁ ସ୍ପର୍ଶ କରିପାରିଲି ନାହିଁ କିନ୍ତୁ ଯିଏ ସ୍ପର୍ଶ କଲା ତାକୁ ଟିକିଏ ଛୁଇଁ ଦିଏ। ସୁରୁଚି ମଧ୍ୟ କ୍ଷମା ମାଗିଲେ। ଏବେ ତାଙ୍କ ମନ ନିର୍ମଳ ହୋଇଯାଇଛି। ଧ୍ରୁବ ମଧ୍ୟ ସୁରୁଚିଙ୍କୁ ପ୍ରଣାମ କଲେ। କିନ୍ତୁ ସୁନୀତିଙ୍କ ସ୍ଥିତି କେମିତି ହୋଇଗଲା ? ଏହାର ବର୍ଣ୍ଣନା କଣ କେହି କରି ପାରିବ। ମୋର ପ୍ରିୟ ପୁତ୍ର ମୋ କଥା ମାନି ଚାଲିଗଲା ଆଉ ଏମିତି ଅଟଳ ଅଚଳ ରହିଲା ଯେ ଛଅ ମାସରେ ତାକୁ ଭଗବାନ ଦେଖାଦେଲେ। ସୁନୀତିଙ୍କ ଆଖିରୁ ଅଶ୍ରୁ ବହି ଚାଲିଛି, ସ୍ତନ ରୁ ଦୁଗ୍ଧର ଧାର ବହି ଚାଲିଛି, ଏମିତି ସ୍ଥିତି ହୋଇଗଲା। ତା ପରେ ପୁଣି ସମସ୍ତେ ଧ୍ରୁବଙ୍କୁ ହାତୀ ପିଠିରେ ବସାଇ ରାଜ୍ୟକୁ ନେଇ ଆସିଲେ, ଏବଂ ତାଙ୍କର ସ୍ୱାଗତ କଲେ।

ଧ୍ରୁବ ଧୀରେ ଧୀରେ ବଡ଼ ହେଲେ । ରାଜା ଉତ୍ତାନପାଦ ଧ୍ରୁବଙ୍କ ପ୍ରଭାବ ଦେଖି ଭାବିଲେ ଯେ ଏବେ ଧ୍ରୁବଙ୍କୁ ରାଜସିଂହାସନ ଦେଇ ଦେବା ଉଚିତ୍ । ଏମିତି ଭାବି ସେ ଧ୍ରୁବଙ୍କୁ ରାଜ୍ୟ ଦେଇଦେଲେ ଏବଂ ସେ ନିଜେ ବନଗମନ କଲେ । ଭାଗବତ ରେ ଏଇମିତି କଥା ବାରମ୍ବାର ଦେଖିବାକୁ ମିଳିଥାଏ । ସବୁ ବଡ଼ -ବଡ଼ ଲୋକମାନେ ରାଜ-କାର୍ଯ୍ୟ ପରେ ବଣକୁ ଚାଲିଯାଆନ୍ତି ଏବଂ ସନ୍ନ୍ୟାସ ନେଇ ନିଜ ମନକୁ ଭଗବାନଙ୍କ ପାଖରେ ଲଗେଇ ଦିଅନ୍ତି । ଏଥିରୁ ଆମକୁ ମଧ୍ୟ କିଛି ବୁଝିବା ଉଚିତ୍ । ପ୍ରତ୍ୟେକ ବ୍ୟକ୍ତିଙ୍କୁ ଦିନେ ନା ଦେନେ ନିଜ ଘରୁ ଚାଲିଯିବା ଉଚିତ୍ , ଯିବା ସମୟରେ ନିଶ୍ଚିତ କରିନେବା ଦରକାର ଯେ ଯାଠୁ ବେଶୀଦିନ ରହିବି ନାହିଁ । ଘରେ ବେଶୀ ଦିନ ରହିଲେ ବେଶୀ ଘଡ଼ ଘଡ଼ ହେବେ କାରଣ ବୁଢ଼ା ହେଲେ ଘଡ଼ ଘଡ଼ ହୁଅନ୍ତି । ତେଣୁ ରାଜା ଉତ୍ତାନପାଦ ଧ୍ରୁବଙ୍କୁ ରାଜା କରି ନଜେ ବଣକୁ ଚାଲିଗଲେ ।

ଠିକ୍ ସମୟ ଦେଖି ପ୍ରଜାପରିଙ୍କ କନ୍ୟା ଭ୍ରମିଙ୍କ ସହିତ ଧ୍ରୁବଙ୍କର ବିବାହ ହେଲା । ତାଙ୍କର ଦୁଇ ପୁତ୍ର ହେଲେ କଳ୍ପ ଏବଂ ବତ୍ସର । ତାଙ୍କର ଦ୍ୱିତୀୟ ପତ୍ନୀଙ୍କ ନାମ ଥିଲା ଇଲା, ତାଙ୍କ ପୁଅଙ୍କ ନାମ ଉତ୍କଳ, ସେ ଅତ୍ୟନ୍ତ ଶକ୍ତିଶାଳୀ ଏବଂ ବୈରାଗୀ ଥିଲେ । ସେ ରାଜାହେଲେ ନାହିଁ । ପରେ ବତ୍ସର ରାଜା ହେଲେ ।

## ଧ୍ରୁବଙ୍କର ଯକ୍ଷମାନଙ୍କ ସହ ଯୁଦ୍ଧ ଏବଂ ତାଙ୍କୁ ମନୁଙ୍କର ଶିକ୍ଷା

ଧ୍ରୁବ ରାଜ୍ୟ କରିବାକୁ ଲାଗିଲେ । ଥରେ ତାଙ୍କ ଭାଇ ଉତ୍ତମ ଜଂଗଲକୁ ଯାଇଥିଲେ । ସେଠାରେ କୁବେରଙ୍କ ଯକ୍ଷ ସେବକ ମାନେ ତାଙ୍କ ଉପରେ ଆକ୍ରମଣ କଲେ ଏବଂ ତାଙ୍କୁ ମାରିଦେଲେ । ତାପରେ ତାଙ୍କ ମାତା ସୁରୁଚି ମଧ୍ୟ ଜଙ୍ଗଲରେ ନିଆଁ ରେ ପୋଡ଼ି ହୋଇ ମରିଗଲେ । ଦେଖନ୍ତୁ, କେମିତି ତାର ମୃତ୍ୟୁ ହେଲା ? ଭକ୍ତ ର ଅପମାନ କରିବା ର ଫଳ ମିଳିଲା । ଧ୍ରୁବ ଯେତେବେଳେ ଜାଣିଲେ ଯେ ଯକ୍ଷମାନେ ମୋ ଭାଇକୁ ମାରି ଦେଇଛନ୍ତି ସେ ଅତ୍ୟନ୍ତ କ୍ରୋଧିତ ହେଲେ । ଦେଖନ୍ତୁ, କେବେ-କେବେ ଭଗବତ୍ ଦର୍ଶନ ପରେ ମଧ୍ୟ କେଜାଣି କେଉଁ ସୁପ୍ତ ସଂସ୍କାର ପ୍ରକଟ ହୋଇଯିବ, କିଛି କୁହାଯାଇ ପାରିବନି । ସେ ଯକ୍ଷମାନଙ୍କର ନଗର ଉପରେ ଆକ୍ରମଣ କରିଦେଲେ । ଭୟଙ୍କର ଯୁଦ୍ଧ ଲାଗିଗଲା । ଧ୍ରୁବ ଅତ୍ୟନ୍ତ ପରାକ୍ରମୀ ଥିଲେ । ଯକ୍ଷମାନେ ଡରିଗଲେ । ସେମାନେ ଧ୍ରୁବଙ୍କର ସମ୍ମୁଖୀନ ହୋଇପାରୁ ନଥିଲେ ।

ସେହି ସମୟରେ ସ୍ୱାୟଂଭବ ମନୁ, ତାଙ୍କର ପିତାମହ ସେଠାକୁ ଆସିଲେ ଏବଂ ତାଙ୍କୁ ବାଧାଦେଲେ । କହିଲେ, "ପୁଅ ତୁ ଏତେ ତପସ୍ୟା କଲୁ- ପାଞ୍ଚବର୍ଷର ଆୟୁରେ

କେବଳ ଛଅ ମାସରେ ତୋତେ ଭଗବାନ ଦର୍ଶନ ଦେଲେ। ତଥାପି ଏଇ ଯକ୍ଷ ମାନଙ୍କ ପ୍ରତି ଏତେ ଶତ୍ରୁତା ତୋମନରେ କେଉଁଠୁ ଆସିଲା ? ସେମାନେ ତୁମର ଗୋଟିଏ ଭାଇକୁ ମାରିଦେଲେ ବୋଲି ତୁମେ ଏତେ ଲୋକଙ୍କୁ ମାରିଦେଲ। ଏହା ଆଦୌ ବୁଦ୍ଧିମାନୀର କଥା ନୁହେଁ। ତେଣୁ ଏବେ ତୁମେ ଯୁଦ୍ଧ ବନ୍ଦ କର।" ଧ୍ରୁବ ପିତାମହଙ୍କ କଥା ମାନିନେଲେ। କହିଲେ ଆପଣ ଠିକ୍ କହୁଛନ୍ତି। ମୋତେ କେଜାଣି କେମିତି ଏତେ କ୍ରୋଧ ଆସିଗଲା।

ଦେଖିଲେ, କ୍ରୋଧର ଆବେଗରେ ମନୁଷ୍ୟ କୋଉଠାରୁ କେଉଁ ପର୍ଯ୍ୟନ୍ତ ପହଞ୍ଚିଯାଏ। ସେ ଯୁଦ୍ଧରୁ କ୍ଷାନ୍ତ ହେଲେ। ଏହା ଦେଖି ଭଗବାନ କୁବେର ଅତ୍ୟନ୍ତ ପ୍ରସନ୍ନ ହେଲେ। ପ୍ରସନ୍ନ ହୋଇ ଧ୍ରୁବଙ୍କୁ କହିଲେ, " ତୁମେ ନିଜର ବଡ଼ମାନଙ୍କ କଥା, ବୃଦ୍ଧ ମାନଙ୍କ କଥା ମାନି ନେଲ, ତୁମେ ଅତ୍ୟନ୍ତ ବୁଦ୍ଧିମାନ। ତୁମେ ନିଜ ହଠରେ ଅଡ଼ିବସିଲ ନାହିଁ। ତୁମେ ଦୁରାଗ୍ରହ ଛାଡ଼ିଦେଲେ, ବହୁତ ଭଲ କଲ। ଏବେ ମୁଁ ମଧ୍ୟ ତୁମ ଉପରେ ପ୍ରସନ୍ନ। ତୁମର କ'ଣ ବର ଦରକାର ? ମାଗ।" ସେତେବେଳେ ଧ୍ରୁବ କହିଲେ - ଆପଣ ବର ଦେଉଛନ୍ତି ଯେ, ମୋତେ ଏବେ କିନ୍ତୁ ଭକ୍ତି ବ୍ୟତୀତ ଆଉ କିଛି ଦରକାର ନାହିଁ। ତେଣୁ ଆପଣ ମୋତେ ଏପରି ଆଶୀର୍ବାଦ ଦିଅନ୍ତୁ ଯେ ଭଗବାନଙ୍କ ପ୍ରତି ମୋର ଭକ୍ତି ସର୍ବଦା ରହି ଥାଉ। ମୋର ଆଉ କିଛି ଦରକାର ନାହିଁ। କୁବେର ପ୍ରସନ୍ନ ହୋଇ ସେହି ପରି ବର ଦେଲେ। ଧ୍ରୁବ ଫେରି ଆସିଲେ।

## ଧ୍ରୁବଙ୍କୁ ଧ୍ରୁବଲୋକର ପ୍ରାପ୍ତି

ତା'ପରେ ମନୁଙ୍କ ଉପଦେଶ ଏବଂ କୁବେରଙ୍କ ବରଦାନ ଯୋଗୁଁ ଧ୍ରୁବଙ୍କ ମନରେ ତ୍ରୀବ୍ର ଭଗବଦ୍‌ଭକ୍ତି ଉଦୟ ହେଲା। ସେ ସମ୍ପୂର୍ଣ୍ଣ ସୃଷ୍ଟିକୁ ଅବିଦ୍ୟାକୃତ, ସ୍ୱପ୍ନବତ୍ ଦେଖିବାକୁ ଲାଗିଲେ, ଏବଂ ଦିନେ ( ଛତିଶ ହଜାରବର୍ଷ ରାଜ୍ୟ କଲାପରେ) ବଦ୍ରୀବନ, ବିଶାଳା କ୍ଷେତ୍ରକୁ ଚାଲିଗଲେ। ସେଠି ପ୍ରଥମେ ବିରାଟ ରୂପରେ ମନ ଲଗେଇ ତା ପରେ ଭଗବାନଙ୍କ ଭିତରେ ନିଜ ମନକୁ ଲୀନ କରିଦେଲେ। ସେତେବେଳେ ଧ୍ରୁବଙ୍କୁ ନେବାପାଇଁ ବିମାନ ଆସିଲା। ଧ୍ରୁବ ସେହି ବିମାନରେ ଚଢୁଥିବା ସମୟରେ ମୃତ୍ୟୁ ସେଠାକୁ ଆସିଲା ଏବଂ କହିଲା ଦେଖନ୍ତୁ, ଏହି ମୃତ୍ୟୁ ଲୋକରୁ ଯିଏ ଯାଏ ସେ ମତେ କର ନଦେଇ କିପରି ଯାଇ ପାରିବ ? ଆପଣ ତ ମୃତ୍ୟୁ ର ମଧ୍ୟ ଉପରକୁ ଚାଲି ଯାଇଛନ୍ତି, ତେଣୁ ଆପଣଙ୍କ ଉପରେ ମୋର କୌଣସି ନିୟନ୍ତ୍ରଣ ନାହିଁ। ଆପଣ ମୋ ମସ୍ତକ ଉପରେ ପାଦଦେଇ ବିମାନରେ ଚଢ଼ିଯାଆନ୍ତୁ।

**ମୃତ୍ୟୋର୍ମୂର୍ଧ୍ନି ପଦଂ ଦତ୍ତ୍ୱା ଆରୁରୋହାଦ୍ଭୁତଂ ଗୃହମ୍। (୧୧.୪.୧୨.୩୦)**

ମୃତ୍ୟୁର ମୁଣ୍ଡ ଉପରେ ପାଦଦେଇ ଧ୍ରୁବ ସେହି ବିମାନରେ ଚଢ଼ିଗଲେ। ଅର୍ଥାତ୍ ମୃତ୍ୟୁ ତାଙ୍କୁ ସ୍ପର୍ଶ ସୁଦ୍ଧା କରିପାରିଲା ନାହିଁ। ଆଉ ଯେତେବେଳେ ବିମାନ ଉଡ଼ିବା ଆରମ୍ଭ କଲା ତ ସେ କହିଲେ- "ଆରେ କୋଉଠିକି ଉଡ଼ିକରି ଚାଲି ଯାଉଛି ? ମୋ ମା' କୁ ଆପଣ ତ ତଳେ ଛାଡ଼ି ଦେଲ।" ସେତେବେଳେ ଭଗବାନଙ୍କର ପାର୍ଷଦ ସୁନନ୍ଦ ଏବଂ ନନ୍ଦ ତାଙ୍କୁ କହିଲେ - ଆପଣ ଚିନ୍ତା କରନ୍ତୁ ନାହିଁ। ସେଇ ଆଗରେ ଯେଉଁ ବିମାନଟି ଯାଉଛି ସେଥିରେ ଆପଣଙ୍କର ମା' ପୂର୍ବରୁ ହିଁ ବସିଛନ୍ତି। ତାହେଲେ ଠିକ୍ ଅଛି। ଧ୍ରୁବ ନିଜ ମାକୁ ମଧ୍ୟ ସେହି ଲୋକକୁ ନେଇକରିଗଲେ।

**ମହିମାନଂ ବିଲୋକ୍ୟାସ୍ୟ ନାରଦୋ ଭଗବାନୃଷିଃ। (୪.୧୨.୪୦)**

ଗୋଟିଏ ପୁରାଣରେ ଲେଖାଅଛି ଯେ ବହୁତ ସମୟ ପରେ, ଥରେ ନାରଦ ଭାବିଲେ ଯେ ଟିକିଏ ଯାଇ ଦେଖିବା ଯେ ମୋ ଶିଷ୍ୟ ଧ୍ରୁବଲୋକରେ କେମିତି ଆନନ୍ଦରେ ଅଛି ? କିନ୍ତୁ ସେଠି ପହଞ୍ଚି ଦେଖିଲେ ଯେ ସିଂହାସନ ଗୋଟିଏ ପଟେ ଗଡ଼ି ପଡ଼ିଛି, ମୁକୁଟ ଆଉ ଗୋଟେପଟେ ପଡ଼ିଛି, ଆଉ ଧ୍ରୁବ ତଳେ ପଡ଼ି ଗଡ଼ି ଗଡ଼ି କାନ୍ଦୁଛନ୍ତି। ତାଙ୍କ ମନରୁ ଏହି କଥା ଆଦୌ ଯାଉ ନଥିଲା ଯେ ଭଗବାନଙ୍କୁ ପ୍ରାପ୍ତି କରି ସାରିଲା ପରେ ମୁଁ ତାଙ୍କର ଅନନ୍ୟ ଭକ୍ତି କାହିଁକି ମାଗିଲି ନାହିଁ। ଅନ୍ୟ ଜିନିଷ କାହିଁକି ମାଗିଲି ? ଦେଖନ୍ତୁ ତାଙ୍କ ମନରେ କେତେ ଦୁଃଖ ଯେ ସେ ଏକଥା ଆଦୌ ଭୁଲି ପାରୁ ନାହାଁନ୍ତି।

ଏହିପରି ତାଙ୍କ ମନରେ ନିରନ୍ତର ଭଗବାନଙ୍କ -ଚିନ୍ତନ ଚାଲିଥିଲା, ଯଦ୍ୟପି ସେ ଭଗବଦ୍ ଭକ୍ତିର ଭଗବତ୍ ସ୍ମରଣ ଚିନ୍ତନର ଆରମ୍ଭ ଅର୍ଥରୁ କରିଥିଲେ। ତେଣୁ ତାଙ୍କୁ ପରାଭକ୍ତି ସେଇମିତି ମିଳିଗଲା। ଦେଖନ୍ତୁ, ଆମେ ପ୍ରଥମେ 'ଧର୍ମ' ବିଷୟର ଚର୍ଚ୍ଚା କରିଥିଲେ। ଏବେ ଏହି 'ଅର୍ଥ' ବିଷୟରେ ମଧ୍ୟ ଚର୍ଚ୍ଚାକଲେ। ଆମ ମନରେ କେବେ କୌଣସି ଜିନିଷ ପାଇଁ ଇଚ୍ଛା ହୁଏ ଏବଂ ଆମେ ତାକୁ ଭଗବାନଙ୍କ ଠାରୁ ମାଗୁ। କିନ୍ତୁ ତା ପରେ ଆମ ସ୍ଥିତି କିପରି ହେବା ଉଚିତ୍ ଆମେ ଧ୍ରୁବଙ୍କ ଠାରୁ ଶିଖିବା ଉଚିତ୍। କାମ ପୁରା ହେଲେ। ପରେ ଆମେ ଭଗବାନଙ୍କୁ ହିଁ ଭୁଲି ଯିବା ଠିକ୍ ନୁହେଁ।

## "ଦୁଃଖ ମେଁ ସୁମିରନ ସବକରେଁ, ସୁଖମେଁ କରେଁ ନ କୋୟ"

ଏମିତି ଲୋକ ମଧ୍ୟ ଅଛନ୍ତି, ଦୁଃଖ ଆସିଲେ ଭଗବାନଙ୍କୁ ଡାକିବେ, ପୂଜା -ପାଠ କରିବେ - କରାଇବେ। ତା ପରେ କେବେ ଭଗବାନଙ୍କୁ ଟିକିଏ ମନେ ମଧ୍ୟ ପକାଇବେ ନାହିଁ। ଆହୁରି ମଧ୍ୟ ଏପରି ସ୍ଥିତି ତାଙ୍କୁ ଆଦୌ ଖରାପ ମଧ୍ୟ ଲାଗେ ନାହିଁ। ଦେଖନ୍ତୁ, ଭଗବାନଙ୍କ ପାଖକୁ ଯାଇ ଆମେ ତାଙ୍କୁ କଣ ମାଗୁଛେ ଏହା ହେଲା ମହତ୍ତ୍ୱପୂର୍ଣ୍ଣ କଥା। ଥରେ ପ୍ରଚେତା ମାନଙ୍କର ଯଜ୍ଞଶାଳା ରେ ନାରଦ ବୀଣା ବଜେଇ ଧ୍ରୁବଙ୍କ କଥା ଶୁଣେଇ ଥିଲେ, ତାଙ୍କ ମହିମା ଗାନ କରିଥିଲେ। ଧ୍ରୁବଙ୍କ ଚରିତ୍ର ଏଠାରେ ସମାପ୍ତ ହେଲା।

ଏବେ ବିଦୁର ପ୍ରଶ୍ନପଚାରିଲେ, ନାରଦ ଯେଉଁ ପ୍ରଚେତା ମାନଙ୍କ ସଭାରେ ଧ୍ରୁବଙ୍କ ମହିମା -ଗାନ କରିଥିଲେ ସେମାନେ କିଏ? ନାରଦ ସେଠାରେ କେମିତି ପହଞ୍ଚିଗଲେ? ସେଠାରେ ସେ ଧ୍ରୁବଙ୍କ ମହିମା ଗାନ କରୁ କରୁ ଭଗବାନଙ୍କର କେଉଁ-କେଉଁ ଲୀଳା ଗୁଡ଼ିକର ବର୍ଣ୍ଣନା କରିଥିଲେ, ଆପଣ ମତେ ବିସ୍ତାରରେ କୁହନ୍ତୁ। କିନ୍ତୁ ମୈତ୍ରେୟ ଋଷି ବିଦୁରଙ୍କ ଏହି ପ୍ରଶ୍ନ ଗୁଡ଼ିକର ଉତ୍ତର ଦେଲେ ନାହିଁ। ବରନ୍ ପୂର୍ବ ପ୍ରସଙ୍ଗକୁ ହିଁ ଆଗକୁ କହି ଚାଲିଲେ। କାରଣ ବଂଶାନୁକ୍ରମରେ ପ୍ରଚେତାଙ୍କ କଥା ପରେ ଆସିବ। ସେ ପରେ ସେଠି ପହଞ୍ଚିବେ ଏବଂ ବର୍ଣ୍ଣନା ମଧ୍ୟ କରିବେ। ପ୍ରଥମେ ଧ୍ରୁବଙ୍କ ବଂଶର ବର୍ଣ୍ଣନା କରିଛନ୍ତି। ପ୍ରଚେତା ମାନଙ୍କବର୍ଣ୍ଣନା ତ ପଛରେ ଆସିବ।

### ଧ୍ରୁବ ବଂଶର ରାଜା ଅଂଗ ତଥା ବେନଙ୍କ କଥା

ଧ୍ରୁବ ବଦ୍ରିକାଶ୍ରମ ଗଲା ପରେ ଉତ୍କଳ ରାଜ୍ୟ ସ୍ୱୀକାର କଲେ ନାହିଁ। ସେ ଅତ୍ୟନ୍ତ ବୈରାଗୀ ଥିଲେ। ତେଣୁ ବତ୍ସର ରାଜା ହେଲେ। ତାଙ୍କର କିଛି ପୁରୁଷ ପରେ ସେହି ବଂଶରେ ଅଂଶ ନାମକ ଏକ ରାଜା ହେଲେ, ଏବଂ ସୁନୀଥା (ସୁନୀତି ନୁହଁ) ତାଙ୍କର ପତ୍ନୀ ଥିଲେ। ରାଜାଙ୍କର ପୁତ୍ର ନ ହେବାରୁ ସେ ବହୁତ ଦୁଃଖୀ ଥିଲେ। କୌଣସି ପ୍ରକାରେ ତାଙ୍କର ଏକ ପୁତ୍ର ହେଲା, ଯାହାର ନାମ ଥିଲା ବେନ ଏବଂ ସେ ମହାଦୁଷ୍ଟ ଥିଲା। ସେ ଏପରି ପାପୀ, ଦୁରାଚାରୀ ଏବଂ କ୍ରୁର ଥିଲା ଯେ ଛୁଆମାନଙ୍କୁ ଉଠେଇ ନେଇ ନଦୀରେ ଫିଙ୍ଗି ଦେଉଥିଲା। ତାଙ୍କ ବେକ ଚିପି ଦେଉଥିଲା। କୁହାଯାଏ ଯେ ସେ ବାହାରକୁ ବାହାରିଲେ ଲୋକ କହୁଥିଲେ, "ବେନ ଆସିଗଲା," ଆଉ ସେଠାରୁ ଦୌଡ଼ି ପଳଉ ଥିଲେ। ପୁଅ ପାଇଁ ବ୍ୟାକୁଳ ନିଜର ପିତା ଅଂଗ ଙ୍କୁ ବେନ ବହୁତ କଷ୍ଟ ଦେଲା ଯେମିତି ଧୁଂଧୁଂକାରୀ ଆତ୍ମଦେବଙ୍କୁ ଦେଇଥିଲା।

ରାଜା ଅଂଗ କୁ ଏପରି ବିରକ୍ତି ଆସିଲା ଯେ ସେ ନିଜ ପତ୍ନୀ ଏବଂ ପିଲା ମାନଙ୍କୁ ଛାଡ଼ି କାହାକୁ ନ ଜଣେଇ, ରାତି ରେ ଉଠି, ଘରୁ ବାହାରିଗଲେ। କହିଲେ ଭଗବାନ ଆପଣଙ୍କୁ ଧନ୍ୟବାଦ ଯେ ଆପଣ ମୋତେ ଏପରି ପୁଅ ଦେଲେ ଯିଏ ମୋ ଆଖି ସାମନାରେ ତାରା ଦେଖେଇ ଦେଲା। ଭଲ ହେଲା ଆପଣ ମୋତେ ଏତେ ଦୁଷ୍ଟ ପୁଅ ଦେଲେ। ଭଲ ପୁଅ ହେଇଥିଲେ ମୁଁ ସଂସାର ପ୍ରତି ଆସକ୍ତି ହୋଇଯାଇଥାନ୍ତି। ଏବେ ମୁଁ ବୁଝିଗଲି ଯେ ଏହି ସଂସାର ଅତ୍ୟନ୍ତ ଅସାର। ଘରୁ ବାହାରି ସେ କୁଆଡ଼େ ଗଲେ କେହି ଜାଣିପାରିଲେ ନାହିଁ।

ରାଜା ଅଂଗ ତ ଚାଲିଗଲେ। କିନ୍ତୁ ତାଙ୍କ ଅଭାବରେ ରାଜ୍ୟରେ ସବୁ ଆଡ଼େ ଅଶାନ୍ତି, ଉପଦ୍ରବ ହେବାକୁ ଲାଗିଲା। ସମସ୍ତେ ଭାବିବାକୁ ଲାଗିଲେ ଯେ ଏବେ କଣ କରିବା ? ଏଇ ବେନ ତ ବଡ଼ ଖରାପ ପିଲାଟେ। କିନ୍ତୁକଣ କରାଯିବ। ଯାକୁ ହିଁ ରାଜା କରି ଦେଖିବା। ସଂଭବତଃ ରାଜା ହେଲ ଠିକ୍ ଭା଼ବେ ହେଇଯିବ। ଦେଖନ୍ତୁ କେବେ କେବେ ଘରେ ମାନଙ୍କରେ ମଧ ଏଇମିତି ହୁଏଯେ ବାହାଘର କରିଦେଲେ ଠିକ୍ ହୋଇଯିବ। ପୁଣି ଭାବନ୍ତି ଆଶ୍ରମକୁ ପଠେଇ ଦେବା, ସେଠି ଠିକ୍ ହୋଇଯିବ କିନ୍ତୁ ସେ ତ ଆଶ୍ରମକୁ ଯାଇ ଆହୁରି ଉତ୍ପାତ କରିବ। ଲୋକେ ଭାବିଲେ – ଯାକୁ ରାଜା କରିଦେବା, ଉତ୍ତର ଦାୟିତ୍ୱ ଯେଗୁଁ ବୋଧହୁଏ ଠିକ୍ ହୋଇଯିବ। ତେଣୁ ବେନ ରାଜା ହୋଇଗଲା। ତା ଭୟରେ ସେ ଜାଗାର ସବୁ ଡାକୁ ପଳେଇଗଲେ। କହିଲେ ଏଇ ରାଜାଏତେ ଦୁଷ୍ଟ ଯେ ଆମକୁ ବି ମାରିଦେବ। ଡାକୁ ତ ପଳେଇଗଲେ କିନ୍ତୁ ବେନ ନିଜେ ଲୋକମାନଙ୍କୁ କଷ୍ଟ ଦେବାକୁ ଲାଗିଲା।

ଋଷି ମାନେ ଭାବିଲେ ଆମେ ଏହାକୁ ରାଜା କରିଛୁ ତ ଏହାକୁ ବୁଝେଇବା ମଧ ଆମର କର୍ତ୍ତବ୍ୟ ଅଟେ। ତେଣୁ ସେମାନେ ତାକୁ ବୁଝେଇବାକୁ ଲାଗିଲେ ଯେ ତାର କର୍ତ୍ତବ୍ୟ କଣ ? କିନ୍ତୁ ସେତ ସେମାନଙ୍କୁ ଗାଳି ଦେବାକୁ ଲାଗିଲା ଯେ କଣ ଏଗୁଡ଼ା କହୁଛ ? ମୁଁ ହିଁ ଏଠାରେ ଭଗବାନ। 'ବେନାୟ ସ୍ୱାହା', 'ବେନାୟ ଇଦଂ ନ ମମ' କୁହ। ଇନ୍ଦ୍ରାୟ ସ୍ୱାହା କୁହନି, ବରୁଣାୟ ସ୍ୱାହା କୁହନି। କୋଉ ଇନ୍ଦ୍ର, ବରୁଣ ଆଉ ବିଷ୍ଣୁଙ୍କ କଥା କହୁଛ ? ମୁଁ ଏଠାର ରାଜା ଏବଂ ରାଜାହିଁ ଭଗବାନ। ତାଙ୍କୁ ହିଁ ଆହୁତି ଦେବା ଉଚିତ। ତାକୁହିଁ ଉପହାର ଦେବା ଉଚିତ୍। ସାକ୍ଷାତ୍ ଭଗବାନ ମୁଁ, ମୋତେ ଛାଡ଼ି ଯେ ଆଉ କାହାର ପୂଜା କରିବ ?

ସେମାନେ ଦେଖିଲେ ଯେ ଇଏ ଏତେ ଦୁଷ୍ଟ ହେଲାଣି। ଏବେ ଆମର କର୍ତ୍ତବ୍ୟ ଯେ ଆମେ ପ୍ରଜା ମାନଙ୍କୁ ଦୁଃଖରୁ ମୁକ୍ତ କରିବୁ। ପ୍ରକୃତ ସନ୍ନ୍ୟାସୀ ହୋଇ ଆମେ ଯଦି ପ୍ରଜା ମାନଙ୍କୁ ଦୁଃଖରେ ଦେଖୁଥିବୁ ତ ଆମର ପାପ ହେବ। ସେମିତି ତ ନା ରାଜନୀତି କରିବା ପାଇଁ ଆମର ଇଚ୍ଛା ଅଛି ନା ତାହା ଆମର ଧର୍ମ। କିନ୍ତୁ ସମସ୍ତେ ଦୁଃଖୀ ହେଉଛନ୍ତି। ତାକୁ ଦେଖୁଥିବା ବି ଆମର ଧର୍ମ ନୁହଁ। ଋଷିମାନଙ୍କର କ୍ରୋଧପୂର୍ଣ୍ଣ ହୁଁକାର ରେ ହିଁ ସେହି ରାଜା ବେନ ମରିଗଲା। ତା'ର କେହି ପୁଅ ନ ଥିଲେ। ଋଷିମାନେ କ୍ରୋଧିତ ହୋଇ ସେଠାରୁ ଚାଲିଆସିଲେ। ତା ମା ବଡ଼ ଚାଲାକ ଥିଲା। ସେ ନିଜ ପୁଅ ଶରୀରକୁ ଲୁଚେଇ କରି ରଖିଦେଲା.

ଯେମିତି ଦୁଷ୍ଟ ମାନେ ଜାଣିଲେ ଯେ ବେନ ମରିଯାଇଛି ସେମାନେ ସାଂଗେ ସାଂଗେ ପୁଣିଥରେ ଉତ୍ପାତ କରିବାକୁ ଲାଗିଲେ। ଋଷିମାନେ କହିଲେ ଇଏତ ଅସୁବିଧା ହେଲା, ଗୋଟେ ସମସ୍ୟା ଠିକ୍ କରୁ କରୁ ଆଉ ଗୋଟିଏ ବାହାରି ପଡ଼ିଲା। ଏବେ ତ ରାଜ୍ୟରେ ଅରାଜକତା ବ୍ୟାପୀ ଗଲାଣି। ସେମାନେ ଭାବିବାକୁ ଲାଗିଲେ ଏବେ କଣ କରାଯିବ ? ସେତେବେଳେ ତାଙ୍କୁ ସୂଚନା ମିଳିଲା। ଯେ ବେନର ଦେହ ସଂରକ୍ଷିତ ହୋଇକରି ଅଛି। ଦେଖନ୍ତୁ, ଋଷିମାନଙ୍କର ଅତ୍ୟନ୍ତ ବିଚକ୍ଷଣ ଶକ୍ତି ଥିଲା। ସେମାନେ ଭାବିଲେ ଯେ ଏହି ଦେହର ମନ୍ଥନ କରିବା। ଆମର ଏହି ଜୀବିତ ଶରୀର ରେ ମଧ୍ୟ ଯେଉଁ ମନ୍ଥନ ହୁଏ ତାରି ଫଳସ୍ୱରୂପ ବୀର୍ଯ୍ୟ ତିଆରି ହୁଏ। ଆମେ ଯେଉଁ ଖାଦ୍ୟ ଖାଉ ତା ଦ୍ୱାରା ରକ୍ତ ତିଆରି ହୁଏ, ରକ୍ତ ରୁ ବୀର୍ଯ୍ୟ ହୁଏ ସେ ମଧ୍ୟ ମନ୍ଥନ ହୋଇ ହୁଏ ନା ?

ଯେମିତି ଦୁଗ୍ଧ, ଦୁଗ୍ଧ ରୁ ଦହୀ, ଦହି କୁ ମନ୍ଥନ କଲେ ଲହୁଣୀ ବାହାରେ। ଲୋକେ କହିଲେ ସେଇଟା ତ ମଲା ଦେହ। ପ୍ରକୃତରେ ସେଠି କିଛି ନାହିଁ। କିନ୍ତୁ ଯାହାକୁ ଆମେ ମଲାଦେହ ବୋଲି କହୁଛୁ , ସେଠି କେତେ ଜୀବ ଜନ୍ତୁ ପ୍ରକଟ ହେଉଛନ୍ତି। ଋଷି ମାନେ ନିଜର ବିଲକ୍ଷଣ ଶକ୍ତିର ପ୍ରୟୋଗ କରି ତାର ଜଂଘ କୁ ମନ୍ଥନ କଲେ, ସେତେବେଳେ ସେଥିରୁ 'କାକକୃଷ୍ଣ', କାଉ ପରି କଳା, 'ଅତିହ୍ରସ୍ୱଃ' ଅତି ଛୋଟ । 'ହସ୍ୱବାହୁଃ' ଛୋଟ ଛୋଟ ହାତ, ବଡ଼ ଓଠ, ରକ୍ତାକ୍ଷ, ଲାଲ ଲାଲ ଆଖି ଯୁକ୍ତ ପୁରୁଷ ଉତ୍ପନ୍ନ ହେଲା। ତା କେଶର ରଂଗ ତାମ୍ର ବର୍ଣ୍ଣ ଥିଲା। ସେ କହିଲା 'କିଂ କରୋମି' – ମୁଁ କଣ କରିବି ? ଋଷି ମାନେ ଭାବିଲେ ଇଏ କେଉଁଠାରୁ ଆସିଗଲା ? ସେମାନେ କହିଲେ 'ନିଷାଦ' ତୁ ବସ, କିଛି କରନା। ସେ ତ ବସିଗଲା। ତା ପରେ କହିଲେ ଏଠୁ ପଳା, ତ ସେ ଚାଲିଗଲା। ତାଠାରୁ ନିଷାଦ ଜାତି ଉତ୍ପନ୍ନ ହେଲା।

# ପୃଥୁ - ଚରିତ୍ର

ଋଷିମାନେ ଭାବିଲେ ଯେ ଇଏ ତ ଜଙ୍ଗଲରେ ରହିବା ଜାତି। ୟା ଦ୍ୱାରା କାମ ହେବ ନାହିଁ। ଆମେ ତ ରାଜା ତିଆରି କରିବା। - **"ବାହୁରାଜନ୍ୟଃ କୃତଃ"** (ପୁରୁଷ ସୂକ୍ତ ୧.୧୨)। ବାହୁ - ଭୂଜା କ୍ଷତ୍ରୀୟର ଚିହ୍ନ ଅଟେ। ତେଣୁ ତାପରେ ବାହୁର ମନ୍ଥନ କଲେ। ତପୋବଳ. ମନ୍ତ୍ରବଳ ଏବଂ ଶକ୍ତି -ଯୋଗ ଦ୍ୱାରା ସେଥିରୁ ଜଣେ ସୁନ୍ଦର ପୁରୁଷ ଏବଂ ସ୍ତ୍ରୀର ଯୁଗଳ ବାହାରିଲେ। ତାଙ୍କ ହାତ ଏବଂ ପାଦ ରେ ଭଗବାନ ବିଷ୍ଣୁଙ୍କର ତଥା ଲକ୍ଷ୍ମୀଙ୍କ ଚିହ୍ନ ସ୍ପଷ୍ଟ ଦେଖାଯାଉଥିଲା। ସମସ୍ତ ଦେବତା ଗଣ ତାଙ୍କ ଉପରେ ପୁଷ୍ପ ବୃଷ୍ଟି କଲେ। କହିଲେ -ଏମାନେ ତ ଭଗବାନଙ୍କ ଅବତାର। ଏହି ସୁନ୍ଦର ପୁରୁଷ ହେଲେ 'ପୃଥୁ' ଏବଂ ଏହି ଲକ୍ଷ୍ମୀ ସ୍ୱରୂପା ସ୍ତ୍ରୀଙ୍କ ନାମ 'ଅର୍ଚ୍ଚି' ଅଟେ। ସେମାନେ ବିଲକ୍ଷଣ ତେଜସମ୍ପନ୍ନ। କୁବେର ଭଗବାନ ତାଙ୍କୁ ଗୋଟିଏ ସୁନାର ସିଂହାସନ ତିଆରି କରି ଦେଲେ। ରାଜ୍ୟାଭିଷେକ ପାଇଁ ଆବଶ୍ୟକ ସବୁ ଜିନିଷ ଦେବତା ମାନେ ନେଇ ଆସିଲେ। ଇନ୍ଦ୍ର ଦେବ ମୁକୁଟ, ବାୟୁଦେବତା ଚାମର, ଯମରାଜ ଦଣ୍ଡ, ଲକ୍ଷ୍ମୀ ସମ୍ପତି ଏବଂ ଶ୍ରୀହରି ନିଜର ସୁଦର୍ଶନ ଚକ୍ର ଦେଲେ। ତା ପରେ ପୃଥୁଙ୍କର ରାଜ୍ୟାଭିଷେକ ହେଲା।

ତା ପରେ ସେଠାରେ ଉପସ୍ଥିତ ସୂତ, ମାଗଧ ଏବଂ ବନ୍ଦୀଜନ ମାନେ ସମସ୍ତେ ସ୍ତୁତି କରିବା ଆରମ୍ଭ କଲେ, କାରଣ ତାଙ୍କ କାମ ସେଇଆ। କିନ୍ତୁ ପୃଥୁ ତାଙ୍କୁ ବାଧା ଦେଲେ। କହିଲେ, " ହେ ସୂତ, ହେ ମାଗଧ, ଆପଣମାନେ ଅତି ବିଚିତ୍ର। ଏବେ ମୁଁ ପ୍ରକଟ ହୋଇଛି, ଏବେ ଏବେ ମୋର ରାଜ୍ୟାଭିଷେକ ହୋଇଛି, ଆପଣ ମାନେ ନା ମୋର କର୍ମ ଦେଖିଛନ୍ତି ନା ଜୀବନ। ମୋର ସ୍ୱଭାବ, ବ୍ୟବହାର କିଛି ହେଲେ ମଧ୍ୟ ଦେଖିନାହାଁନ୍ତି ଆଉ ମୋର ପ୍ରଶଂସା କରିବା ଆରମ୍ଭ କରିଦେଲେ। ଏମିତି ପ୍ରଶଂସା କେବଳ ଛୋଟପିଲା ଟିଏ ହିଁ ଖୁସୀ ହୋଇ ପାରିବ। ଏହା କହି ପୃଥୁ ତାଙ୍କୁ ବାଧା ଦେଲେ।

**କର୍ମଭିଃ କଥମାତ୍ମନଂ ଗାପୟିଷ୍ୟାମ ବାଲବତ୍ ॥ (୪.୧୬.୧୩)**

ଏବେ ଗାୟକ ମାନେ ଇଆଡ଼େ - ସିଆଡ଼େ ଦେଖିବାକୁ ଲାଗିଲେ। ତା ପରେ ସେମାନେ କହିଲେ- କଣ କରିବା ? ଆମ କାମ ହେଲା ପ୍ରଶଂସା କରିବା, ସ୍ତୁତି କରିବା। ତାପରେ ସେମାନେ ଋଷିମାନଙ୍କ ଆଡ଼କୁ ଚାହିଁଲେ ଯେ ଏବେ ଆମେ କଣ କରିବୁ ? ଋଷିମାନେ କହିଲେ -ସ୍ତୁତି କରିବାର ଆଉ ଗୋଟିଏ ଢ଼ଙ୍ଗ ମଧ୍ୟ ଅଛି। ତୁମେ ମାନେ କୁହ -ଆପଣ ଏପରି ହେବେ। ପୁଣି ରାଜା ପୃଥୁ ଙ୍କୁ କହିଲେ - 'ଆପଣ ଏହି ପରି' ଏହା

ଆପଣଙ୍କୁ ଆକ୍ଷେପ ପରି ଲାଗୁଛି। କିନ୍ତୁ ଆପଣ ଚକ୍ରବର୍ତ୍ତି ସମ୍ରାଟ ହେବେ, ଆପଣ ଲୋକ ମାନଙ୍କୁ ରକ୍ଷା କରିବେ, ଆପଣ ସବୁ ପ୍ରକାର ର ଧନ -ସମୃଦ୍ଧି ଆଣିବେ, ଏପରି ସ୍ତୁତି କରିବା ପାଇଁ ଆପଣ ଏମାନଙ୍କୁ ମନା କରି ପାରିବେ ନାହିଁ। ତାପରେ ସେହି ବନ୍ଦୀମାନେ ପୁଣି ସ୍ତୁତି କରିବା ଆରମ୍ଭ କରି ଦେଲେ।

**ନା ଦଣ୍ଡ୍ୟଂ ଦଣ୍ଡୟତ୍ୟେଷ ସୁତମାତ୍ମଦ୍ୱିଷାମପି।**
**ଦଣ୍ଡୟତ୍ୟାତ୍ମଜମପି ଦଣ୍ଡ୍ୟଂ ଧର୍ମପଥେ ସ୍ଥିତଃ ॥ (୪.୧୬.୧୩)**

**ରଞ୍ଜୟିଷ୍ୟତି ୟଲ୍ଲୋକମୟମାତ୍ମବିଚେଷ୍ଟିତୈଃ ।**
**ଅଥାମୁମାହୁ ରାଜାନଂ ମନୋରଞ୍ଜନକୈଃ ପ୍ରଜାଃ ॥ (୪.୧୬.୧୫)**

**ଦୃଢ଼ବ୍ରତଃ ସତ୍ୟସନ୍ଧୋ ବ୍ରହ୍ମଣ୍ୟୋ ବୃଦ୍ଧସେବକଃ।**
**ଶରଣ୍ୟଃ ସର୍ବଭୂତାନାଂ ମାନଦୋ ଦୀନବତ୍ସଲଃ ॥ (୪.୧୬.୧୬)**

**ମାତୃଭକ୍ତିଃ ପରସ୍ତ୍ରୀଷୁ ପତ୍ନ୍ୟାମର୍ଧ ଇବାତ୍ମନଃ.**
**ପ୍ରଜାସୁ ପିତୃବତ୍ସ୍ନିଗ୍ଧଃ କିଂକରୋ ବ୍ରହ୍ମବାଦିନାମ୍ ॥ ( ୪.୧୬.୧୭)**

ତାଙ୍କର ଗୁଣର ବର୍ଣ୍ଣନା କରି କହିଲେ ଯେ ଆପଣଙ୍କ ପୁଅ ବି ଅପରାଧି ହେଲେ ମଧ୍ୟ ଆପଣ ତା'କୁ ଦଣ୍ଡ ଦେବେ। ନିରପରାଧକୁ ଆପଣ କେବେହେଲେ ଦଣ୍ଡିତ କରିବେ ନାହିଁ। ଆପଣ ପ୍ରଜା ରଂଜନ କରିବେ - "ରଞ୍ଜନାତ୍ ରାଜା'। ତେଣୁ ଆପଣଙ୍କ ରାଜା ହେବା ପ୍ରମାଣିତ ହୋଇଯିବ। ସିଦ୍ଧ ହେବ। ଆପଣ ଦୃଢ଼ବ୍ରତ ହେବେ, ସତ୍ୟସନ୍ଧ ହେବେ, ବ୍ରାହ୍ମଣ ଏବଂ ବୃଦ୍ଧ ମାନଙ୍କର ସେବକ ହେବେ। ଯିଏ ଆପଣଙ୍କ ଶରଣକୁ ଆସିବ, ଆପଣ ତାର ରକ୍ଷା କରିବେ। ଅନ୍ୟକୁ ସମ୍ମାନ ଦେବା ବାଲା, ଅନ୍ୟ ଉପରେ ମା'ପରି ସ୍ନେହର ବର୍ଷା କରିବାବାଲା ଏବଂ ପର ସ୍ତ୍ରୀ ପ୍ରତି ମା ପରି ଭକ୍ତି ରଖିଲା ବାଲା ହେବେ। ନିଜ ପ୍ରଜାକୁ ପିତା ସମାନ ସ୍ନେହ କରିବେ ଏବଂ ନିଜକୁ ବ୍ରହ୍ମଜ୍ଞାନୀ ମାନଙ୍କର ସେବକ ଭାବିବେ। ପୃଥୁଙ୍କର ଏପରି ବର୍ଣ୍ଣନା କରାଗଲା ଏବଂ ଏପରି ସ୍ତୁତି କରାଗଲା।

ଆଗରୁ ମହାଦୁଷ୍ଟ ରାଜା ବେନ ଶାସନ କରୁଥିଲା। ସେ କାହାରିକୁ ଯଜ୍ଞ ଆଦି ପୁଣ୍ୟକର୍ମ କରିବାକୁ ଦେଉ ନଥିଲା। ତେଣୁ ପୃଥିବୀ ମାତା ନିଜର ସବୁ ରସ ଭିତରକୁ ଟାଣି ନେଇଥିଲେ। କାରଣ ଦୁଷ୍ଟ ଲୋକ ମାନଙ୍କୁ ପୃଥିବୀ ମାତା କିଛି ଦିଏ ନାହିଁ। ସାଧୁ ସନ୍ଥ ମାନଙ୍କ ପାଇଁ ଦିଏ। ଏଠାରେ ଏହା ମନେରଖିବା ଯେ ବର୍ତ୍ତମାନ ସମୟରେ ମଧ୍ୟ

ଆମେ ଦେଖୁଛୁ ଯେ କେଉଁଠି ଦୁର୍ଭିକ୍ଷ ପଡୁଛି, କେଉଁଠି ଅଧିକ ବର୍ଷା ହେଉଛି ତା କୋଉଠି ଫସଲ ହେଉନାହିଁ। ଏହାର ଅର୍ଥ ହେଲା ଯେ ଆମେ ମାନେ ବଡ଼ ପାପୀ ଏବଂ ଦୁଷ୍ଟ ସ୍ୱଭାବର ହୋଇ ଯାଇଛୁ। ତେଣୁ ପୃଥିବୀର ସମସ୍ତ ରସ ଲୁପ୍ତ ହୋଇ ଯାଉଛି। ତେଣୁ ଜୀବନରେ ଦୁଃଖ ଆସୁଛି।

ଯେତେବେଳେ ପୃଥୁ ରାଜା ହେଲେ ସେତେବେଳେ କାହାକୁ ହେଲେ ଖାଇବା ପାଇଁ ଅନ୍ନ ମଧ୍ୟ ମିଳୁ ନ ଥିଲା। ଲୋକମାନେ ରାଜା ପୃଥୁଙ୍କ ପାଖକୁ ଆସିଲେ ଏବଂ କହିଲେ - ଆପଣଙ୍କର ଯେତେ ବଡ଼ ବଡ଼ କର୍ମ ଅଛି ଆପଣ ସେ ଗୁଡ଼ିକୁ ପରେ କରିବେ। ପ୍ରଥମେ ଆମକୁ ଖାଇବା ପାଇଁ ଅନ୍ନ ଦିଅନ୍ତୁ। ଭୋକ -ଶୋଷରେ ଆମେ ମରି ଯାଉଛୁ। ରାଜା ପୃଥୁ ସେମାନଙ୍କୁ ପଚାରିଲେ -ଫସଲ ହଉନିକି ? କଥା କଣ ? ଏପରି କହି ସେ ନିଜର ଧନୁଶର ଉଠେଇଲେ। କାରଣ ସେ ବୁଝିସାରିଥିଲେ ଯେ ପୃଥିବୀ ନିଜର ସମସ୍ତ ରସ ଭିତରକୁ ଟାଣି ନେଇଛି।

ତାଙ୍କ ଧନୁ ଶର ଧରି ଆସିବା ଦେଖି ପୃଥିବୀ ଗାଈର ରୂପ ନେଇ ଦୌଡ଼ିବାକୁ ଲାଗିଲା। ରାଜା ପୃଥୁ ମଧ୍ୟ ତା ପଛରେ ଦୌଡ଼ିବାକୁ ଲଗିଲେ। କହିଲେ, "କୁଆଡ଼େ ଯାଉଛ !" ସେ ଡରି କରି ତାଙ୍କ ଶରଣ କୁ ଆସିଲେ। କହିଲେ, "ମୁଁ ଆପଣଙ୍କ ଦାସୀ", ଆପଣ କ'ଣ ମୋତେ ହିଁ ମାରି ଦେବେ ? ମୁଁ ତ ସ୍ତ୍ରୀ ଲୋକ। ସେ କହିଲେ, "ଯିଏ ଅନ୍ୟ କୁ ଦୁଃଖ ଦିଏ ସେ ସ୍ତ୍ରୀ ହେଉ ବା ପୁରୁଷ ହେଉ ତାକୁ ଦଣ୍ଡ ମିଳିବା ଉଚିତ୍‌।" ତୁମ ନାମ ହେଲା 'ଧରା'। ଧରା, ବସୁନ୍ଧରା, ବସୁଧା। ଏହି ସବୁ ନାମ ଗୁଡ଼ିକ ତୁମକୁ କାହିଁକି ଦିଆଯାଇଛି ? ସମସ୍ତଙ୍କୁ ଧାରଣ କରିବ, ସେଇଥିପାଇଁ। ସେଠି ସବୁ ପ୍ରଜା ଭୋକରେ ମରୁଛନ୍ତି। କାହାକୁ ଅନ୍ନ ଟିକିଏ ମିଳୁନାହିଁ। ପୃଥିବୀ ମାତା କହିଲେ - ଏହି ଲୋକମାନେ ବଡ଼ ପାପୀ ହୋଇ ଗଲେଣି। ତେଣୁ ମୁଁ ସବୁ ରସ ଟାଣି ନେଲି। ଯେମିତି ଗାଈ ନିଜ ବାଛୁରୀ ପାଇଁ ଦୁଗ୍ଧ ଦିଏ, ସେମିତି ମୋ ପାଇଁ ବି ବ୍ୟବସ୍ଥା କରିଦିଅନ୍ତୁ। ମୁଁ ପୁଣି ଥରେ ସବୁ କିଛି ଦେବା ଆରମ୍ଭ କରିଦେବି। ସେତେବେଳେ ରାଜା ପୃଥୁ ସ୍ୱାୟଂଭବ ମନୁଙ୍କୁ ସ୍ମରଣ କଲେ। ରାଜା ମନୁ ପୃଥିବୀ ମାତାଙ୍କ ପୁତ୍ର। ତା'ପରେ ପୃଥିବୀ ମାତା ଧନ-ଧାନ୍ୟ ଯାହା ଲୁଚେଇ ଥିଲେ, ସବୁ କିଛି ପ୍ରକଟ କରିଦେଲେ। ଏଠାରେ ଅତ୍ୟନ୍ତ ସୁନ୍ଦର ବର୍ଣ୍ଣନ କରାଯାଇଛି - ଦେବତା ମାନେ, ପିତୃମାନେ, ଋଷିମାନେ, ସମସ୍ତେ ନିଜ-ନିଜର ଦରକାରୀ ଜିନିଷ ପୃଥିବୀରୁ ପ୍ରାପ୍ତ କଲେ। ପୃଥିବୀରେ ଯେଉଁଠି ଟିକିଏ ହେଲେ ଖାଲ-ଢ଼ିପ ଥିଲା ରାଜା ପୃଥୁ ସେଗୁଡ଼ିକୁ ମଧ୍ୟ ସମତଳ କରିଦେଲେ।

**ଗ୍ରାମାନ୍ ପୁରଃ ପତ୍ତନାନି ଦୁର୍ଗାଣି ବିବିଧାନି ଚ ।**
**ଘୋଷାନ୍ ବ୍ରଜାନ୍ ସଶିବିରାନାକରାନ୍ ଖେଟଖର୍ବଟାନ୍ ।। (୪.୧୮.୩୧)**
**ପ୍ରାକ୍ପୃଥୋରିହ ନୈବୈଷା ପୁରଗ୍ରାମାଦିକଳ୍ପନା ।**
**ଯଥାସୁଖଂ ବସନ୍ତି ସ୍ମ ତତ୍ର ତତ୍ରାକୁତୋଭୟାଃ ।। (୪.୧୮.୩୨)**

କୁହାଯାଏ ଯେ ରାଜା ପୃଥୁଙ୍କ ପୂର୍ବରୁ ନଗର, ଗ୍ରାମ ଆଦିର ବ୍ୟବସ୍ଥା ନ ଥିଲା । ରାଜା ପୃଥୁ ପ୍ରଥମ ଥର ଗ୍ରାମ, ନଗର ଆଦି ଅଲଗା -ଅଲଗା ସ୍ଥାପନ କଲେ । ସେ ଅଲଗା -ଅଲଗା ବସତି ସ୍ଥାପନ କଲେ ଯେଉଁଠି ଲୋକମାନେ ନିଜର ବୃତ୍ତି ଅନୁସାରେ ରହି ପାରିବେ । ପୂର୍ବରୁ ଲୋକେ ନିଜ ଇଚ୍ଛାନୁସାରେ ରହୁଥିଲେ । କିନ୍ତୁ ଏବେ ରାଜା ପୃଥୁ ସବୁ ବ୍ୟବସ୍ଥିତ କରିଦେଲେ ।

## ରାଜା ପୃଥୁଙ୍କ ଯଜ୍ଞରେ ଭଗବାନଙ୍କ ପ୍ରାକଟ୍ୟ

ଏବେ ରାଜ୍ୟରେ ସମ୍ପତି ମଧ୍ୟ ହୋଇଗଲା । ରାଜା ପୃଥୁ ଗୋଟିଏ ପରେ ଗୋଟିଏ, ଅନେକ ଅଶ୍ୱମେଧ ଯଜ୍ଞ କଲେ । ଅନେଶତ ଯଜ୍ଞ ପୁରା କରିବା ପରେ ଏବେ ଶତତମ ଯଜ୍ଞ ଚାଲୁଥିଲା । ଇନ୍ଦ୍ରଙ୍କୁ ଡର ମାଡ଼ିଲା ଯେ ଯାଙ୍କ ଯଜ୍ଞ ପୁରା ହୋଇଗଲେ ମୋର ପଦ ଚାଲିଯିବ, ଯଦିଓ ରାଜା ପୃଥୁ ଇନ୍ଦ୍ର ପଦ ପାଇବା ପାଇଁ ଯଜ୍ଞ କରୁନଥିଲେ । ଦେଖନ୍ତୁ, ଯିଏ ଯେତେ ବଡ଼ ପଦରେ ଥାଉ ନା କାହିଁକି, କିନ୍ତୁ ଯଦି ତା ମନରେ ଭୟ ଉତ୍ପନ୍ନ ହେଲା, ତେବେ କାମ- କ୍ରୋଧ ମଧ୍ୟ ଆସିଯିବେ ଏବଂ ସେତେବେଳେ ସେ ସେହି ପଦରୁ ତଳକୁ ଖସି ଆସିବ । ସେହି କଥାକୁ ଏଠି ଦର୍ଶାଯାଇଛି । ତା'ପରେ ଇନ୍ଦ୍ର ଯଜ୍ଞର ଘୋଡ଼ା ଚୋରାଇନେଲେ । ଘୋଡ଼ା ଚୋରାଇନେବାରୁ ପୃଥୁଙ୍କ ପୁଅ ତାଙ୍କ ପଛରେ ଗଲେ । ସେତେବେଳେ ଇନ୍ଦ୍ର ତପସ୍ୱୀ ରୂପରେ ବସିଗଲେ । ପୃଥୁଙ୍କ ପୁଅ ଭାବିଲେ ଏଇତ ତପସ୍ୱୀ, ସାଧୁ , ଯାକୁ କେମିତି ମାରିବି ? ସେ ଫେରିଗଲେ, ତାକୁ ଅତ୍ରି ଋଷି କହିଲେ, " ଆରେ ତୁମେ ଯାଅ, ସେ ତପସ୍ୱୀ ନୁହେଁ, ଇନ୍ଦ୍ର" । ସେ ପୁଣି ଥରେ ତା ପଛରେ ଯିବାରୁ ଇନ୍ଦ୍ର ଘୋଡ଼ା ଛାଡ଼ି ପଳେଇଗଲେ । ତା'ପରେ ରାଜା ପୃଥୁଙ୍କ ପୁଅ ଘୋଡ଼ା ନେଇ ଫେରିଲେ ।

ପୁଣି ଇନ୍ଦ୍ର ଦେବ ସେଠି ପହଞ୍ଚି ମାୟା କରିବାକୁ ଲାଗିଲେ । ଇନ୍ଦ୍ର ଯଜ୍ଞ ପୁରା ହେବାକୁ ଦେଉ ନଥିଲେ । ଏହା ଦେଖି ରାଜା ପୃଥୁଙ୍କୁ କ୍ରୋଧ ଆସିଲା ଏବଂ ସେ ନିଜ ଧନୁ-ଶର ବାହାର କଲେ । ସେତେବେଳେ ବ୍ରହ୍ମା ଆସି ପହଞ୍ଚିଲେ, ଏବଂ ରାଜା ପୃଥୁଙ୍କୁ

କହିଲେ, " ପୁଅ, ତୁମେ ଧର୍ମ ସଂସ୍ଥାପନା ପାଇଁ ଆସିଛ। ତୁମେ ଏହି ଏକଶତତମ ଯଜ୍ଞକୁ ନିଜ ପ୍ରତିଷ୍ଠାର ବିଷୟ କାହିଁକି କରୁଛ ? ତୁମକୁ ଇନ୍ଦ୍ରପଦ ତ ଦରକାର ନାହିଁ। ଯଦି ପଦ ଦରକାର ନାହିଁ ତେବେ ଏହି ଏକଶତତମ ଯଜ୍ଞ ପୁରା ହେଉ, ଏହି ଇଚ୍ଛା କାହିଁକି କରୁଛ ? ଇନ୍ଦ୍ର ଦୁଷ୍ଟ କର୍ମ କରିବାକୁ ଲାଗିଲାଣି। ତୁମେ ମଧ କାହିଁକି ସେହି ସ୍ତରକୁ ଓହ୍ଲାଇ ଆସୁଛ ? ସେ ତା ରାଜ୍ୟରେ ରହୁ।" ରାଜା ପୃଥୁ କହିଲେ "ଠିକ୍ ଅଛି।" ପ୍ରକୃତରେ ମୋର ଏତେ କ୍ରୋଧ କରିବା ଦରକାର ନଥିଲା। ଗୋଟିଏ ଯଜ୍ଞ ପୁରା ନ ହେଲେ କ'ଣଟା ହୋଇଯିବ ?

ଦେଖନ୍ତୁ, ତା'ପରେ କଣ ହେଲା ? ଯେମିତି ରାଜା ପୃଥୁ କଥା ମାନିଗଲେ ସାଙ୍ଗେ ସାଙ୍ଗେ ଯଜ୍ଞ ଭଗବାନ **ନାରାୟଣ** ସ୍ୱୟଂ ଇନ୍ଦ୍ରକୁ ଧରି ସେଠାକୁ ନେଇ ଆସିଲେ। ଆଉ କହିଲେ - ଦେଖ ମୁଁ ଇନ୍ଦ୍ରଙ୍କୁ ନେଇ ଆସିଛି। ମୁଁ ତୁମଉପରେ ଅତ୍ୟଧିକ ପ୍ରସନ୍ନ ଯେ ତୁମେ ଏହି ଏକଶତତମ ଯଜ୍ଞକୁ ନିଜ ପ୍ରତିଷ୍ଠାର ବିଷୟ କଲନାହିଁ । ସେତେବେଳେ ରାଜା ପୃଥୁଙ୍କ ମନରେ ଦୁଃଖ ହେଲା ଯେ ମୁଁ କାହିଁକି ଏମିତି କଲି ? ସେ ଇନ୍ଦ୍ରଙ୍କୁ ଆଲିଙ୍ଗନ କଲେ, ଏବଂ କହିଲେ, "ଏବେ ତୁମ ଆମ ଭିତରେ ଆଉ କୌଣସି ଶତ୍ରୁତା ନାହିଁ। ତୁମେ ନିଜ ସ୍ଥାନରେ ରୁହ। ମୁଁ ଏଇଠି ରହିବି।" କହିଲେ ଦେଖି ଏହି ଯଜ୍ଞ ଅଧା ରହିଗଲା ନା ପୁରା ହେଲା। ବଡ଼ ବିଚିତ୍ର କଥା। ସେମିତି ଦେଖିବାକୁ ଗଲେ ଯଜ୍ଞତ ଅନେଶତ ହେଲା, ରାଜା ପୃଥୁ ଶହେତମ ଯଜ୍ଞ ପୁରା କଲେ ନାହିଁ। କିନ୍ତୁ ପୂର୍ଣ୍ଣ ପରମାତ୍ମା ଭଗବାନ ସେଠି ପ୍ରକଟ ହେଲେ। ତେବେ କହିଲେ ତାଙ୍କ ଯଜ୍ଞ ଅସମାପ୍ତ ରହିଲା କି ? ପ୍ରକୃତରେ ତ ତାହା ପୂର୍ଣ୍ଣ ହୋଇଗଲା, ସଫଳ ହେଲା। ଆହୁରି ମଧ ଇନ୍ଦ୍ରଙ୍କୁ ଭଗବାନ ନିଜେ ଧରି ଆଣିଲେ। ସେମାନେ ପରସ୍ପର ସହ ହାତ ବି ମିଳାଇଲେ।

**ନ କାମୟେ ନାଥ ତଦପ୍ୟହଂ କ୍ୱଚିନ୍**
**ନ ଯତ୍ର ଯୁଷ୍ମଚ୍ଚରଣାମ୍ବୁଜସବଃ**
**ମହତ୍ତମାନ୍ତର୍ହୃଦୟାନ୍ମୁଖଚ୍ୟୁତୋ**
**ବିଧତ୍ସ୍ୱ କର୍ଣ୍ଣାୟୁତମେଷ ମେ ବରଃ ॥ (୪.୨୦.୨୪)**

ଏବେ ଦେଖନ୍ତୁ ରାଜା ପୃଥୁ ଭଗବାନଙ୍କ ଠାରୁ କ'ଣ ମାଗିଲେ ? କହିଲେ, "ଭଗବାନ ମୋତେ ଆଉ କିଛି ବଡ଼ ଜିନିଷଦରକାର ନାହିଁ। ମୋତେ ଆପଣ ଏକ କୋଟି କାନ ଦିଅନ୍ତୁ"। ଏକ କୋଟି କାନ କୋଉଠି ଲଗେଇବ ? ଏକ କୋଟି କାନ

କାହିଁକି ଦରକାର ? କହଲେ, ଏହି ଦୁଇଟି କାନ ଆପଣଙ୍କ ଯଶ ଶୁଣିବା ପାଇଁ ମୋତେ ପର୍ଯ୍ୟାପ୍ତ ଲାଗୁନାହାଁନ୍ତି। ମୋର ଇଚ୍ଛା ମୁଁ ନିରନ୍ତର ଯେପରି ଆପଣଙ୍କ ଯଶ ଶୁଣିପାରିବି। ଅର୍ଥାତ୍‌, ଏକ କୋଟି କାନରେ ଯେତେ ଶକ୍ତି ସବୁ ମୋର ଏହି ଦୁଇଟି କାନକୁ ଆସିଯାଉ। ନ ହେଲେ ଏକ କୋଟି କାନ ସେ କେଉଁଠି ଲଗେଇବେ। ଏହି ବର ଦ୍ୱାରା ଜଣାଗଲା ଯେ ଶ୍ରବଣ ରେ ତାଙ୍କର କେତେ ଭକ୍ତି ଅଛି।

**ଯଥା ଚେରଦ୍ବାଲହିତଂ ପିତା ସ୍ୱୟଂ।**

**ତଥା ତ୍ୱମେବାର୍ହସି ନଃ ସମୀହିତୁମ୍ ॥ (୪.୨୦.୩୧)**

ଯେପରି ପିତା ନିଜ ସନ୍ତାନର କଲ୍ୟାଣ କରନ୍ତି, ଠିକ୍ ସେହିପରି ଆପଣ ଆମ ମାନଙ୍କର କଲ୍ୟାଣ କରନ୍ତୁ। ତାପରେ ଭଗବାନ କହିଲେ, "ମୁଁ ହିଁ ଭକ୍ତି ରସ, ଯାଅ ଏବେ ତୁମକୁ ବରଦାନ ଦେଲି। ମୋର ପାଖରେ ତୁମେ ମନରେ ଭକ୍ତି ଏହି ପରି ସଦାବେଳେ ରହିବ। ଏବେ ତୁମେ ଭଲ ଭାବେ ରାଜ୍ୟ ଶାସନ କର।

ରାଜା ପୃଥୁଙ୍କ ଯଜ୍ଞ ଅଧା ରହି ମଧ୍ୟ ପୂର୍ଣ୍ଣ ହେଲା। ଏମିତି ବି କୁହାଯାଏ ଯେ ପୃଥୁଙ୍କ ପରି ରାଜା କେବେବି ହୋଇ ନାହାଁନ୍ତି। ନିଜ ରାଜ୍ୟ ରେ ସେ ଏପରି ବ୍ୟବସ୍ଥା କରିଥିଲେ ଯେ ଯିଏ ଯୋଉଠିକି ଯାଉନା କାହିଁକି ଭଗବାନ ସର୍ବଦା ତା ହୃଦୟରେ ରହିବେ। ଏପରି ଚିହ୍ନ ବା ପ୍ରତୀକ ସେ ସବୁଠାରେ ଲଗେଇ ଥିଲେ ଯାହା ଦେଖି ସମସ୍ତଙ୍କର ଭଗବାନ ହିଁ ମନେପଡୁ ଥିଲେ। ଏପରି କୌଣସି ଜିନିଷ ନ ଥିଲା ଯାହା ଦେଖି ମନରେ ବିକାର ଉତ୍ପନ୍ନ ହେବ। ଯେମିତି କି ବର୍ତ୍ତମାନ ଦେଖାଯାଉଛି। ମହାଭୟଙ୍କର ପୋଷ୍ଟର୍ସ, ଆଉ ଏକ ଦମ ସାମନାରେ ଲଗିଥିବ। ସେଗୁଡ଼ିକୁ ଦେଖି ମନରେ କାମ-କ୍ରୋଧ ଆଦି ଭାବନା ଆସିଯାଉଛି। କେବଳ ବାହାରେ କାହିଁକି ଲୋକେ ତ ନିଜ ଘରକୁ ବି ସେଇଥିରେ ସଜଉଛନ୍ତି। ଆଗରୁ ତ ଦେବୀ-ଦେବତାଙ୍କ ଚିତ୍ର ଲଗଉ ଥିଲେ। ଆଜି କାଲି ଅନ୍ୟାନ୍ୟ ଦେବୀ-ଦେବତା ମଧ୍ୟ ଆସିଗଲେଣି । ଫିଲ୍ମବାଲା ପ୍ରତ୍ୟେକର ସକାଳୁ -ସକାଳୁ ଦର୍ଶନ ହୋଇଯାଉଛି ତାଙ୍କ ବଂଶ ପରମ୍ପରା ବି ମନେଅଛି କିନ୍ତୁ କହିଲେ ରାମଚନ୍ଦ୍ରଙ୍କର କେତେ ପୁଅ ଥିଲେ ? ଉତ୍ତର ମିଳିବ 'କୋଉ ରାମଚନ୍ଦ୍ର' ? ବର୍ତ୍ତମାନ ର ତ ସ୍ଥିତି ଏଇମିତି। କିନ୍ତୁ ରାଜା ପୃଥୁଙ୍କ ରାଜ୍ୟ ସେମିତି ନଥିଲା। ରାଜା ପୃଥୁଙ୍କ ରାଜ୍ୟ କେତେ ସୁନ୍ଦର ଥିଲା। ଏଠାରେ ତାର ଅତ୍ୟନ୍ତ ସୁନ୍ଦର ବର୍ଣ୍ଣନା କରାଯାଇଛି।

## ରାଜା ପୃଥୁଙ୍କର ପ୍ରଜାଙ୍କୁ ଉପଦେଶ

ଥରେ ସେ ଏକ ସଭା ଡାକିଲେ ଏବଂ ସେଥିରେ ସମସ୍ତ ପ୍ରଜାମାନଙ୍କୁ ଡାକି କହିଲେ - ଦେଖନ୍ତୁ, ରାଜାର କର୍ତ୍ତବ୍ୟ ହେଲା ପ୍ରଜା ମାନଙ୍କୁ ନିଜର ନୀତି ସହିତ ପରିଚିତ କରେଇବା। ଯେମିତି ଆମର ଏଠି ରାଷ୍ଟ୍ର ପାଇଁ ସଂନ୍ଦେଶ ରେ ପ୍ରଧାନମନ୍ତ୍ରୀ ବା ରାଷ୍ଟ୍ରପତି ରାଷ୍ଟ୍ର ପାଇଁ ସଂନ୍ଦେଶ ପ୍ରସାରିତ କରନ୍ତି ଅଗଷ୍ଟ ପନ୍ଦର ବା ଜାନୁଆରୀ ଛବିଶିରେ। ଏଠାରେ ରାଜା ପୃଥୁ ସଭା ଡାକିଲେ ଏବଂ କହିଲେ - **ସଭ୍ୟାଃ ଶୃଣୁତ ଭଦ୍ରଂ ବଃ ସାଧବୋ ୟ ଇହାଗତାଃ। (୪.୨୧.୨୧)।**

ଆପଣ ସମସ୍ତେ ଏଠାକୁ ଆସିଛନ୍ତି। ଏବେ ମୁଁ ଆପଣ ମାନଙ୍କୁ କହିବାକୁ ଯାଉଛି ଯେ ମୁଁ କୋଉ ନୀତି କୁ ମାନୁଛି, ମୋର ଅର୍ଥାତ୍ ରାଜାର କର୍ତ୍ତବ୍ୟ କଣ ? ଆଉ ମୁଁ ତାର ନିର୍ବାହ କିପରି କରୁଛି। ତାପରେ ଆପଣ ମାନଙ୍କର ଅର୍ଥାତ୍ ପ୍ରଜାମାନଙ୍କର କର୍ତ୍ତବ୍ୟ କଣ ତାହା ମଧ୍ୟ କହିବି। ଏହା ବତେଇବା ମଧ୍ୟ ମୋର କର୍ତ୍ତବ୍ୟ ଅଟେ। ଯଦି ପ୍ରଜା ନ ଜାଣି ପାରିବ ଯେ ରାଜା ଆମ ଠାରୁ କଣ ଚାହୁଁଛି, ତାହେଲେ ସେଇଟା ଆଦୌ ଉଚିତ୍ ନୁହେଁ। ବର୍ତ୍ତମାନ ସବୁ ଏଇମିତି ଚାଲୁଅଛି। ଆମ ସରକାରଙ୍କ ଭିତରେ କାହରିକୁ ଜଣା ନାହିଁ ଯେ ସେମାନଙ୍କର କାମ କଣ ? ତେଣୁ କେହି କିଛି ନିର୍ଣ୍ଣୟ କିମ୍ବା କିଛି କରିବା ପାଇଁ ପ୍ରସ୍ତୁତ ନୁହଁନ୍ତି।

**ଅହଂ ଦଣ୍ଡଧରୋ ରାଜା ପ୍ରଜାନାମିହ ଯୋଜିତଃ। (୪.୨୧.୨୨)**

ରାଜା ଙ୍କର ମୁଖ୍ୟ ଚାରିଟି କାମ। ପ୍ରଥମ ହେଲା ରକ୍ଷତାଃ' - ଅର୍ଥାତ୍ ରାଜାର ପ୍ରଥମ କାମ ହେଲା ସମସ୍ତଙ୍କର ସୁରକ୍ଷା ବ୍ୟବସ୍ଥା କରିବା, ତାଙ୍କ ପାଇଁ ନିୟମ -କାନୁନ ମଧ୍ୟ ତିଆରି କରିବା। ଦ୍ୱିତୀୟ ହେଲା, - 'ବୃତ୍ତିଦଃ' - ରୋଜଗାର ଦେବା, ଏବଂ ତୃତୀୟ ହେଲା - **'ସ୍ୱେଷୁ- ସେତୁଷ୍ୱୁ ସ୍ଥାପିତା ପୃଥକ୍'**। ସମସ୍ତେ ନିଜ -ନିଜ ଧର୍ମ-ମର୍ଯ୍ୟାଦା, ନିଜ କାମ ନିଷ୍ଠାପୂର୍ବକ କରୁଥିବେ ଏହାର ତଦାରଖ କରିବା। ସେହିପରି ଯେଉଁମାନେ କାମ କରୁ ନଥିବେ ସେମାନଙ୍କୁ ଦଣ୍ଡ ଦେବା ଏବଂ ଯିଏ ନିଜ କାମ ଠିକ୍ ଭାବରେ କରୁଛନ୍ତି ତାଙ୍କୁ କୌଣସି ନା କୌଣସି ଉପାୟରେ ପ୍ରୋତ୍ସାହିତ କରିବା। ଏଗୁଡ଼ିକ ରାଜାଙ୍କର ମୂଖ୍ୟ କର୍ତ୍ତବ୍ୟ। ମୁଁ ଏହି କାର୍ଯ୍ୟ କରୁଛି। ଯେଉଁ ରାଜା ନିଜ ପ୍ରଜାମାନଙ୍କ ଠାରୁ କେବଳ କର ନେଉଥାଏ କିନ୍ତୁ ଧର୍ମଶିକ୍ଷା ଦିଏ ନାହିଁ ସେହି ରାଜା ପ୍ରଜା ମାନଙ୍କର ପାପ ଗ୍ରହଣ କରେ।

ସେ ଆଗକୁ କହିଲେ ଯେ ପ୍ରଜା କଣ କରିବା ଉଚିତ୍। ଏହି ପ୍ରସଂଗ ରେ କହିଲେ ଆଗ ଗୋଟିଏ କଥା ବୁଝିବାକୁ ପଡ଼ିବ। ମୁଁ ଏଠାର ରାଜା କିନ୍ତୁ ମୋତେ ରାଜା କିଏ କଲା ? ଯାଙ୍କ ନାମକ ଏକ ସଂସ୍ଥା ଅଛି ଯାହାକୁ ଆମେ ମାନେ ପରମାତ୍ମା କହୁଛୁ ସେହି ରାଜା କୁ ତିଆରି କଲେ। ଆମେ ସମସ୍ତେ ତାଙ୍କ ଅଧୀନ ରେ ଅଛୁ। ମୁଁ ବି ଏବଂ ଆପଣମାନେ ମଧ୍ୟ।

**ତମେବ ୟୁୟଂ ଭଜତାତ୍ମବୃତ୍ତିଭି**

**ର୍ମନୋବଚଃକାୟଗୁଣୈଃ ସ୍ୱକର୍ମଭିଃ।**

**ଅମାୟିନଃ କାମଦୁଘାଙ୍ଘ୍ରିପଙ୍କଜଂ**

**ୟଥାଧିକାରାବସିତାର୍ଥସିଦ୍ଧୟଃ ॥ (୪.୨୧.୩୩)**

ମୋ କାମ ହେଲା ଯେ ମୁଁ ନିଜ କର୍ମ ଦ୍ୱାରା ସେହି ଭଗବାନଙ୍କୁ ପୂଜା କରିବି। 'ସ୍ୱକର୍ମଣା ତମଭ୍ୟର୍ଚ୍ୟ' ଗୀତାରେ ମଧ୍ୟ ଭଗବାନ କହିଛନ୍ତି ଯେ ନିଜ-ନିଜ କର୍ମ ଦ୍ୱାରା ଭଗବାନଙ୍କ ପୂଜାକର। ଏହା ହିଁ ପ୍ରଜାର ମଧ୍ୟ କର୍ତ୍ତବ୍ୟ ଅଟେ। ତାପରେ କହିଲେ ଯେ-

**ସର୍ବାତ୍ମନା ବ୍ରହ୍ମକୁଲଂ ନିଷେବ୍ୟତାମ୍ ॥ (୪.୨୧.୩୪)**

ଏହା ସହିତ ଆଉ ଏକ ସେବା ମଧ୍ୟ କରିବେ। ଯିଏ ବ୍ରହ୍ମଜ୍ଞାନୀ, ବ୍ରାହ୍ମଣ, ଭଗବଦ୍‌ଭକ୍ତ ତାଙ୍କର ସେବା କରିବା ଆପଣଙ୍କ ମାନଙ୍କର କର୍ତ୍ତବ୍ୟ। ଶେଷରେ କହିଲେ ଯେ ବ୍ରାହ୍ମଣ, ଗାଈ, ଭଗବାନ ଏବଂ ଭଗବାନଙ୍କ ଭକ୍ତ ଏହି ଚାରିଜଣ ସବୁବେଳେ ମୋ ଉପରେ ପ୍ରସନ୍ନ ହୁଅନ୍ତୁ। ଏପରି ଆର୍ଶୀବାଦ କିଏ ଚାହୁଁଛନ୍ତି ? ରାଜା ପୃଥୁ । ସମସ୍ତେ ତାଙ୍କ କଥା ଶୁଣି ଅତି ପ୍ରସନ୍ନ ହେଲେ ଏବଂ କହିବାକୁ ଲାଗିଲେ ଯେ କୁହାଯାଏ ପୁତ୍ର ଦ୍ୱାରା ଶ୍ରେଷ୍ଠ ଲୋକ ଉପରେ ମଧ୍ୟ ବିଜୟ ପ୍ରାପ୍ତ କରି ହେବ। ଇଏ ସେଇ କଥା ସତ୍ୟକରି ଦେଖେଇ ଦେଲେ। ରାଜା ବେନ କେମିତି ଥିଲେ ? କିନ୍ତୁ ଏହି ରାଜା ପୃଥୁ ତାଙ୍କୁ ମଧ୍ୟ ପବିତ୍ର କରିଦେଲେ। ଆମେ ତାଙ୍କୁ ନମସ୍କାର କରୁଛୁ। ଆହୁରି କହିଲେ - ଆପଣ ଆମ ମାନଙ୍କୁ ବହୁତ ଭଲ ମାର୍ଗରେ ନେଇଯାଉଛନ୍ତି। ଆପଣଙ୍କୁ ବାରମ୍ବାର ଧନ୍ୟବାଦ, ଆମେ ଆପଣଙ୍କ ଆଦେଶ ର ପାଳନ ଅବଶ୍ୟ କରିବୁ । ଏହି ପରି ରାଜା ପୃଥୁଙ୍କ କାର୍ଯ୍ୟ ଆଗରେ ଚାଲିଲା।

## ରାଜା ପୃଥୁଙ୍କୁ ସନତ୍‌କୁମାର ମାନଙ୍କ ଉପଦେଶ

ଦିନକର କଥା । ତାଙ୍କ ସଭାରେ ସନତ୍‌କୁମାର ନିଜେ -ନିଜେ ଆସି ପହଞ୍ଚିଲେ । ଦେଖନ୍ତୁ -ତାଙ୍କ ଯଜ୍ଞ କେମିତି ହେଲା - ପୃଥିବୀମାତା ସବୁ ଜିନିଷ ଦେଲେ । ସମସ୍ତଙ୍କର ମନୋକାମନା ପୂର୍ଣ୍ଣହେଲା । ତାଙ୍କ ଯଜ୍ଞ ଅଧା ହୋଇ ମଧ୍ୟ ସମ୍ପୂର୍ଣ୍ଣ ହେଲା, କାରଣ ସାକ୍ଷାତ୍ ଭଗବାନ ସେଠାକୁ ଆସିଲେ । ଭଗବାନଙ୍କ ପରେ ଏବେ ଭକ୍ତ ମାନେ ଆସିଲେ । ସଭାରେ ସନତ୍ କୁମାରମାନଙ୍କୁ ଆସୁଥିବାର ଦେଖି ରାଜା ପୃଥୁ ଅତ୍ୟନ୍ତ ପ୍ରସନ୍ନ ହେଲେ । କହିଲେ -ଆପଣମାନଙ୍କ ପରି ସନ୍ଥ ବିନା ନିମନ୍ତ୍ରଣ ରେ ଆମ ପାଖକୁ ଆସିଲେ, ଏହା ଠାରୁ ବଳି ଆଉ କ'ଣ ଭାଗ୍ୟ ହୋଇ ପାରେ ? ମୁଁ ଆପଣମାନଙ୍କର ସେବା ପାଇଁ ସର୍ବଦା ପ୍ରସ୍ତୁତ । ଏବେ ପ୍ରଥମେ ଆପଣ ମୋତେ ଏବଂ ସମସ୍ତଙ୍କୁ ଉପଦେଶ ପ୍ରଦାନ କରନ୍ତୁ ।

**ଭବସ୍ସୁ କୁଶଲପ୍ରଶ୍ନ ଆତ୍ମାରାମେଷୁ ନେଷ୍ୟତେ ।**
**କୁଶଲାକୁଶଲା ୟତ୍ର ନ ସନ୍ତି ମତିବୃତ୍ତୟଃ ॥ (୪.୨୨.୧୪)**
**ତଦହଂ କୃତବିଶ୍ରମ୍ଭଃ ସୁହୃଦୋ ବସ୍ତପସ୍ୱିନାମ୍ ।**
**ସଂପୃଚ୍ଛେ ଭବ ଏତସ୍ମିନ୍ କ୍ଷେମଃ କେନାଞ୍ଜସା ଭବେତ୍ ॥ (୪.୨୨.୧୫)**

ଆପଣଙ୍କୁ କୁଶଳ-ମଙ୍ଗଳ ପଚାରିବା ଟା ହିଁ ମୂର୍ଖତାହେବ । ଆପଣଙ୍କ ପାଇଁ ତ କୁଶଳ-ଅକୁଶଳ ଦୁଇଟା ଯାକର ହିଁ କୌଣସି ଅର୍ଥ ନାହିଁ । ଆପଣଙ୍କୁ ମୁଁ ବା କଣ କୁଶଳ ପଚାରି ପାରିବି ? କିନ୍ତୁ ଆମର କୁଶଳ ନାହିଁ । ତେଣୁ ଆପଣ ଆମକୁ ଶ୍ରେୟ ର ମାର୍ଗ ବତେଇ ଦିଅନ୍ତୁ । ଏହା ଶୁଣି ସନତ୍ କୁମାର ପ୍ରସନ୍ନ ହେଲେ ଏବଂ କହିଲେ -

**ସଂଗମଃ ଖଲୁ ସାଧୂନାମୁଭୟେଷାଂ ଚ ସମ୍ମତଃ ।**
**ୟତ୍ସମ୍ଭାଷଣସମ୍ପ୍ରଶ୍ନଃ ସର୍ବେଷାଂ ବିତନୋତି ଶମ୍ ॥ (୪.୨୨.୧୯)**

ଦେଖନ୍ତୁ, ସତସଂଗ ଏପରି ଏକ ସୁନ୍ଦର ଜିନିଷ ଯେ ଏହା ଦ୍ୱାରା ସମସ୍ତେ ନିଜ କଲ୍ୟାଣ ର କଥା ସ୍ୱତଃ ବୁଝି ପାରନ୍ତି । ଏଠି ସନତ୍ କୁମାର ସେହି ଜ୍ଞାନ ର ଉପଦେଶ ଦେଇଛନ୍ତି ଯାହାକୁ ଆମେ ଆରମ୍ଭରୁ ଦେଖି ଆସୁଛେ । ସେଥିରେ ଏହାହିଁ କୁହା ଯାଇଛି ଯେ ନିଜ ଧର୍ମର ପାଳନ କର ଯାହାଦ୍ୱାରା ବିଷୟ ପ୍ରତି ବୈରାଗ୍ୟ ଉତ୍ପନ୍ନ ହେବ । ତାପରେ ସାଧୁ ସେବା କରିବା ଏବଂ ସେମାନଙ୍କ ପାଖରୁ ଜ୍ଞାନ ପ୍ରାପ୍ତ କରିବା, ତାଙ୍କ ଠାରୁ କଥା ଶୁଣିବା । କଥାରେ ରୁଚି ଉତ୍ପନ୍ନ ହେଲେ ଭକ୍ତି ଉତ୍ପନ୍ନ ହେବ । ଏହି ଭାବରେ

ନିଜ ଜୀବନରେ ଭକ୍ତି ବଢ଼ାନ୍ତୁ। ଏହି ଉପଦେଶ ସନତ୍ କୁମାର ଏଠାରେ ରାଜା ପୃଥୁ ତଥା ଅନ୍ୟମାନଙ୍କୁ ଦେଉଛନ୍ତି। ସନତ୍ କୁମାରଙ୍କ ଠାରୁ ଯେତେବେଳେ ରାଜା ପୃଥୁ ଏପରି ଜ୍ଞାନ ଏବଂ ଭକ୍ତିର ଉପଦେଶ ଶୁଣିଲେ, ସେ କହିଲେ - ମହାତ୍ମନ୍, ଆପଣ ଆମମାନଙ୍କ ଉପରେ ଅତ୍ୟନ୍ତ ଅନୁଗ୍ରହ କଲେ। ଆଉ ଗୋଟିଏ ଭଲ କଥା ମଧ୍ୟ ଏଠାରେ ରାଜା ପୃଥୁ କହିଛନ୍ତି-

**ପ୍ରାଣା ଦାରାଃ ସୁତା ବ୍ରହ୍ମନ୍ ଗୃହାଶ୍ଚ ସପରିଚ୍ଛଦାଃ।**
**ରାଜ୍ୟଂ ବଲଂ ମହୀ କୋଶ ଇତି ସର୍ବଂ ନିବେଦିତମ୍॥ (୪.୨୨,୪୪)**

ମୁଁ ସବୁ କିଛି ଆପଣଙ୍କ ଚରଣରେ ଅର୍ପଣ କରିଦେଇଛି। ମୋ ଶରୀର, ପ୍ରାଣ, ଘର, ପରିବାର, ମୋର ଯେତେ ବନ୍ଧୁ-ବାନ୍ଧବ, ମୋର ସମସ୍ତ ସୈନ୍ୟ, ଧନ-ଧାନ୍ୟ, ସବୁ କିଛି ଆପଣଙ୍କ ଚରଣରେ ସମର୍ପଣ କଲି। ଏହି ଶ୍ଳୋକ ଅତ୍ୟନ୍ତ ପ୍ରସିଦ୍ଧ ଅଟେ। ପଞ୍ଚଦଶୀକାର ମଧ୍ୟ ଏହି ଶ୍ଳୋକକୁ ନିଜ ପଞ୍ଚଦଶୀରେ ଉଦ୍ଧୃତ କରିଛନ୍ତି -

**ସୈନାପତ୍ୟଂ ଚ ରାଜ୍ୟଂ ଚ ଦଣ୍ଡନେତୃତ୍ୱମେବ ଚ।**
**ସର୍ବଲୋକାଧିପତ୍ୟଂ ଚ ବେଦଶାସ୍ତ୍ରବିଦର୍ହତି ॥ (୪.୨୨.୪୫)**

ଯିଏ ବେଦ ଶାସ୍ତ୍ରର ପ୍ରକୃତ ଅର୍ଥକୁ ଜାଣିଥିବ ପ୍ରକୃତରେ ତା ପାଖରେ ହିଁ ସେନା, ଧନ ର ଭଣ୍ଡାର ଏବଂ ରାଜ୍ୟ ର ନେତୃତ୍ୱ ନେବାର ଶକ୍ତି ଥାଏ। ତେବେ କେବେ ବି ଏମିତି ଭାବିବେନି ଯେ ସାଧୁଙ୍କୁ ଧନ କାହିଁକି ଦେବା ? ଟଙ୍କା ପଇସା ନେଇ ସେ କଣ କରିବେ ? ପ୍ରକୃତରେ ଧନ ନେବାର ଅଧିକାରୀ ହେଲେ କେବଳ ସାଧୁ କାରଣ ସାଧୁହିଁ ଉଚିତ୍ ଭାବରେ ଧନ ଖର୍ଚ୍ଚ କରିପାରିବେ।

ଗୋଟିଏ ପ୍ରସିଦ୍ଧ ଗପ ଅଛି। ସ୍ୱାମୀ ରାମଦାସ ଛତ୍ରପତି ଶିବାଜୀ ଙ୍କ ପାଖକୁ ଭିକ୍ଷା ପାଇଁ ଗଲେ। ଶିବାଜୀ ବୁଝିପାରିଲେ ନାହିଁ ଯେ ସେ ଗୁରୁଙ୍କୁ ଭିକ୍ଷାରେ କଣ ଦେବେ ? ସେ ଗୋଟିଏ କାଗଜରେ ଲେଖି ଦେଲେ ଯେଏହି ସମଗ୍ର ରାଜ୍ୟ ଆପଣଙ୍କର ଏବଂ ତାକୁ ତାଙ୍କ ପାତ୍ରରେ ପକାଇଦେଲେ। ଆପଣ ଭାବନ୍ତୁ ନାହିଁ ଯେ ଇଏତ ସାଧୁ, ଇଏ ଭଲା ରାଜ୍ୟ ଶାସନ କିପରି କରିପାରିବ। ସାଧୁ ରାଜ୍ୟ ଶାସନ କରିପାରିବେ। ସେ ସବୁ କାମ କରିପାରିବେ। ପ୍ରକୃତରେ ରାଜ୍ୟ ଶାସନର ଅଧିକାର କେବଳ ତା'ର। ରାମଦାସ ସ୍ୱାମୀ ସ୍ୱୀକାର କରି କହିଲେ, ଏହି ରାଜ୍ୟ ଏବେ ମୋର। ମୋ ପାଇଁ ତୁମେ ରାଜ୍ୟ ଶାସନ କର। ତେଣୁ ସେଠାରେ ସନ୍ୟାସୀ ର ଗେରୁଆ ଧ୍ୱଜ ଲାଗିଲା। ଆଜି ଯଦି ଭାରତରେ

ସନ୍ୟାସୀ ରାଜ୍ୟ ଶାସନ କରିବେ ତେବେ ଭାରତର ସ୍ଥିତି ବହୁତ ଭଲ ହୋଇଯିବ। ସନ୍ନ୍ୟାସୀ ଙ୍କ ଶାସନର ଅର୍ଥ କେବଳ ଏତିକି ହେଲା ଯେ ଯିଏ ରାଜ୍ୟ ଶାସନ କରନ୍ତି ସେ ସନ୍ନ୍ୟାସୀ ର କଥା ଶୁଣନ୍ତୁ। ଏଠି ତ ସମସ୍ତେ ସନ୍ନ୍ୟାସୀକୁ ଉପଦେଶ ଦେବା ବାଲା ଅଟନ୍ତି। ଏବେ ଏଇ ଓଲଟା କଥା ଚାଲିଛି। କିନ୍ତୁ ଯାହାର ନିଜର କିଛି ନାହିଁ, ସେ କାହାରି ପାଇଁ ମମତ୍ୱ ନାହିଁ, ସେହିଁ ପ୍ରକୃତରେ ଠିକ୍ ଭାବରେ ରାଜ୍ୟ ଶାସନ କରି ପାରିବ।

ଏହି ପରି ରାଜା ପୃଥୁ ନିଜର ସବୁ କିଛି ତାଙ୍କୁ ସମର୍ପିତ କଲେ। ଦେଖିବାକୁ ଗଲେ ସେ ଯାହାସବୁ ଦେଲେ ତା କିଛି ବଡ କଥା ନୁହେଁ। ଦୁନିଆରେ ଯେତେ ଲୋକ ଅଛନ୍ତି ସେମାନେ ଯାହାକିଛି ଭୋଗ କରୁଛନ୍ତି, ଖାଉଛନ୍ତି -ପିଉଛନ୍ତି ସେସବୁ ସନ୍ନ୍ୟାସୀ ମାନଙ୍କର ହିଁ ଦାନ। ସାଧୁ -ସନ୍ଥ ବା ସନ୍ନ୍ୟାସୀ ମାନଙ୍କର ପୁଣ୍ୟ କୁ ହିଁ ଭୋଗ କରୁଛନ୍ତି। କିନ୍ତୁ ଆମେ ତାଙ୍କୁ କିଛି ହେଲେ ବଦଳରେ ଦେଇ ପାରିବା ନାହିଁ। ଯାହାର ଆମେ ଖାଉଛୁ ତାଙ୍କୁ ଆମେ ପ୍ରତିଦାନରେ ପ୍ରତ୍ୟୁତ୍ତରରେ କଣ ଦେଇ ପାରିବା ?

**କୋ ନାମ ତତ୍ପ୍ରତିକରୋତି ବିନୋଦ ପାତ୍ରମ୍ ॥ (୪.୨୨.୪୭)**

ଶାସ୍ତ୍ରରେ କୁହାଯାଇଛି ଯେ ସାଧୁଙ୍କୁ କିଛି ଦାନ ଦେଇ ନିଜକୁ ପରିହାସ ର ପାତ୍ର ବନେଇବାକୁ ଚାହୁଁଛ କି ? ନିଜର ଉପହାସ କରେଇବାକୁ ଚାହୁଁଛ ? ଦେଖନ୍ତୁ ଏ କଥା ଆଦୌ ଭାବିବେନି ଯେ ଆମେ ତାଙ୍କୁ ଖାଇବାକୁ , ପିଇବାକୁ ଦେଉଛୁ। ଏହା ଶାସ୍ତ୍ର ର ଉକ୍ତି ଅଟେ।

ସନତ୍ କୁମାର ପ୍ରସନ୍ନ ହେଲେ। ଆର୍ଶୀବାଦ ଦେଇ ସେ ସେଠାରୁ ଚାଲି ଗଲେ। ଏହା ପରେ ରାଜା ପୃଥୁ ଅନେକ ବର୍ଷ ପର୍ଯ୍ୟନ୍ତ ବହୁତ ସୁନ୍ଦର ଶାସନ କଲେ। ତା'ପରେ ତାଙ୍କୁ ମଧ୍ୟ ସବୁ ଜିନିଷରୁ ବୈରାଗ୍ୟ ଆସିଗଲା। ଦେଖିଲେ, ଭାଗବତରେ ଶେଷକୁ ବୈରାଗ୍ୟ ହିଁ କୁହାଯାଇଛି। ପୂର୍ବରୁ ଆମେ ଦେଖିଲେ ଯେ 'ଧର୍ମ' ମଧ୍ୟ ଭକ୍ତି ରେ ବଦଳି ଗଲା। ଏବଂ 'ଅର୍ଥ' ମଧ୍ୟ ଭକ୍ତିରେ ପରିଣତ ହେଲା। ଏଠାରେ 'କାମ' ପୁରୁଷାର୍ଥ କଥା କୁହାଗଲା। ରାଜା ପୃଥୁଙ୍କୁ ସବୁ ପ୍ରକାର ର ବୈଭବ ପ୍ରାପ୍ତ ହେଲା। କିନ୍ତୁ ଅନ୍ତତଃ ତାର ସମାପ୍ତି କେଉଁଠି ହେଲା ? ନିଷ୍କାମ ଭକ୍ତିରେ । ରାଜା ପୃଥୁ କହିଲେ ବହୁତ ହେଲା । ନମସ୍କାର ! ଏବଂ ଘରୁ ବାହାରି ଗଲେ। ଦେଖନ୍ତୁ, ଭକ୍ତି ମାନେ ସନ୍ନ୍ୟାସ। ସନ୍ନ୍ୟାସ ନ ହେଲେ କଣ ଭକ୍ତି ହୁଏ ? ରାଜା ପୃଥୁ ଘରୁ ବାହାରି ଗଲେ-ଧ୍ୟାନ କରି ନିଜ ସ୍ୱରୂପରେ ସ୍ଥିତ ହେବା ପାଇଁ, ସମାଧି ରେ ମଗ୍ନ ହେବା ପାଇଁ । ଜ୍ଞାନ ପ୍ରାପ୍ତି କରି ସେ ନିଜ ଦେହ ତ୍ୟାଗ କଲେ। ତାଙ୍କର ସୁକୁମାରୀ ପତ୍ନୀ ଅର୍ଚ୍ଚି ଦେବୀ ମଧ୍ୟ ତାଙ୍କ ସହ ବଣକୁ ଯାଇଥିଲେ।

ଯେତେବେଳେ ସେ ଦେଖିଲେ ଯେ ରାଜା ଦେହ ତ୍ୟାଗ କଲେ  ସେ ମଧ୍ୟ ତାଙ୍କ ସହ ସତୀ ହୋଇଗଲେ। ଏହି ତ୍ୟାଗକୁ ଦେଖି ସମସ୍ତ ଦେବତା ଅତ୍ୟନ୍ତ ଆଶ୍ଚର୍ଯ୍ୟ ହେଲେ ଏବଂ ଅର୍ଚ୍ଚିଦେବୀ ଙ୍କର ସ୍ତୁତି କରିବାକୁ ଲଗିଲେ।

**ସ ବଞ୍ଚିତୋ ବତାମୃଧୁକ୍  କୃଚ୍ଛ୍ରେଣ ମହତା ଭୁବି।**

**ଲବ୍ଧ୍ୱାପବର୍ଗ୍ୟ ମାନୁଷ୍ୟଂ ବିଷୟେଷୁ ବିଷଜ୍ଜତେ ॥ (୪.୨୩.୨୮)**

ଯେଉଁମାନେ ଏହି ଦୁର୍ଲଭ ମନୁଷ୍ୟ ଦେହକୁ ପ୍ରାପ୍ତ କରି କେବଳ ବିଷୟରେ ରମଣ କରନ୍ତି। ତାଙ୍କର ଜୀବନ ଅତ୍ୟନ୍ତ ଦୟନୀୟ ଅଟେ। ଯାଙ୍କ ଜୀବନକୁ ଦେଖ, ସେ କିପରି ତ୍ୟାଗ କଲେ ଏବଂ କେତେ ଶ୍ରେଷ୍ଠ ଭକ୍ତି ପ୍ରାପ୍ତ କଲେ। ଗୋଟିଏ ପଟରେ ଏପରି ଲୋକ ଅଛନ୍ତି ତ ଅନ୍ୟ ପଟରେ ବିଷୟାସକ୍ତ ଲୋକ ମଧ୍ୟ ଅଛନ୍ତି।

**ଅନୁଦିନମିଦମାଦରେଣ  ଶୃଣ୍ୱନ**

**ପୃଥୁଚରିତଂ ପ୍ରଥୟନ୍ ବିମକ୍ତସଂଗଃ।**

**ଭଗବତି  ଭବସିନ୍ଧୁପୋତପାଦେ**

**ସ ଚ ନିପୁଣାଂ ଲଭତେ ରତିଂ ମନୁଷ୍ୟଃ ॥ (୪.୨୩.୩୯)**

ଏଠାରେ କୁହାଯାଇଛି ଯେ ଯେଉଁମାନେ ପୃଥୁଙ୍କର ଏହି ଚରିତ୍ରକୁ ଆଦର ପୂର୍ବକ ପଢ଼ନ୍ତି-ଶୁଣନ୍ତି, ସେମାନଙ୍କୁ ଅତ୍ୟନ୍ତ ସହଜ ଭାବରେ ଭଗବାନ୍ ଙ୍କ ଚରଣରେ ଅନୁରାଗ ହୁଏ। ଏବଂ ଯାହା ମନରେ ଅନୁରାଗ ଉତ୍ପନ୍ନ ହୁଏ ତାର ସଂସାର ସମାପ୍ତ ହୋଇଯାଏ। ସବୁ ଖେଳ ସମାପ୍ତ ହୋଇଯାଏ। ଏବଂ ଏହା ସହିତ ଏଠାରେ ପୃଥୁ ଚରିତ୍ର ମଧ୍ୟ ସମାପ୍ତ ହେଲା।

ପୃଥୁ ବଂଶର ବର୍ଣ୍ଣନା କରି ଆଗକୁ କୁହା ଯାଇଛି ଯେ ସେହି ବଂଶ ରେ 'ବର୍ହିଷଦ୍' ନାମକ ଜଣେ ବଡ଼ ରାଜା ଥିଲେ। ସେ ଅତ୍ୟନ୍ତ କର୍ମକାଣ୍ଡି ଥିଲେ। ଯାଗ-ଯଜ୍ଞରେ ତାଙ୍କର ଅତ୍ୟଧିକ ସଉକ ଥିଲା। ଏଠାରେ ମୈତ୍ରେୟ ଋଷି କହୁଛନ୍ତି ଯେ ଏତେ ଯଜ୍ଞ କରିଥିଲେ ଯେ ସେହି ଯଜ୍ଞରେ ବ୍ୟବହୃତ କୁଶକୁ ଯଦି ପୃଥିବୀ ପୃଷ୍ଠରେ ବିଛେଇ ଦିଆ ଯାଆନ୍ତା ତେବେ ସମ୍ପୂର୍ଣ୍ଣ ପୃଥିବୀ ଭରି ଯାଇଥାଆନ୍ତା। ଏତେ ଯଜ୍ଞ ସେ କରିଥିଲେ। ତେଣୁ ସବୁ ଲୋକ ତାଙ୍କୁ **'ପ୍ରାଚୀନ ବର୍ହି'** କହୁଥିଲେ।

## ପ୍ରଚେତାଗଣଙ୍କୁ ଭଗବାନ ଶଂଙ୍କରଙ୍କର ଉପଦେଶ

ପ୍ରାଚୀନବର୍ହିଙ୍କର ଦଶ ଜଣ ପୁଅ ଥିଲେ ସମସ୍ତଙ୍କର ସ୍ୱଭାବ ଏକା ପରି ଥିଲା। ପରସ୍ପର ଭିତରେ ଏତେ ସ୍ନେହ ଥିଲା ଯେ କଣ କହିବା ! ତେଣୁ ତାଙ୍କର ନାମ ମଧ୍ୟ ସମାନ ହେଲା - ପ୍ରଚେତା । ପ୍ରଚେତା -୧ , ପ୍ରଚେତା-୨ ଏହିପରି। ସେମାନେ ଅତ୍ୟନ୍ତ ଭଗବତ୍ ଭକ୍ତ ଥିଲେ, କର୍ମକାଣ୍ଡି ନୁହଁ। ପ୍ରାଚୀନବର୍ହି ଯେତେବେଳେ ସେମାନଙ୍କୁ ସନ୍ତାନ ଉତ୍ପନ୍ନ କରିବା ପାଇଁ କହିଲେ, ତାଙ୍କ ଆଦେଶ ପାଳନ କରି ସେମାନେ ଏକା ସାଂଗରେ ପ୍ରଥମେ ତପସ୍ୟା କରିବା ପାଇଁ ପଶ୍ଚିମ ଦିଗରେ ସମୁଦ୍ର ଆଡ଼କୁ ଚାଲିଲେ। ଏବଂ ଚାଲିଚାଲି ନାରାୟଣ ସରୋବରରେ ପହଞ୍ଚିଲେ। ସରୋବରର ସୌନ୍ଦର୍ଯ୍ୟ ଦେଖି ସେମାନେ ଆଶ୍ଚର୍ଯ୍ୟ ଚକିତ ହେଉଥିବା ସମୟରେ ଭଗବାନ ରୁଦ୍ର ସ୍ୱୟଂ ତାଙ୍କ ସମ୍ମୁଖରେ ଉପସ୍ଥିତ ହୋଇଗଲେ ଏବଂ ସେ ପ୍ରଚେତାଗଣଙ୍କୁ ଭକ୍ତିର ଉପଦେଶ ଦେଲେ। ଭଗବାନଙ୍କ ଆରାଧନା କିପରି କରାଯାଏ ତା ପାଇଁ ଏକ ସୁଦୀର୍ଘ ସ୍ତୋତ୍ର ମଧ୍ୟ କହିଦେଲେ ଏବଂ ଧ୍ୟାନର ବିଧି ମଧ୍ୟ ବତେଇ ଦେଲେ। ମନେରଖନ୍ତୁ, ସେମାନଙ୍କର ପରସ୍ପର ମଧ୍ୟରେ ଥିବା ସ୍ନେହ ଦେଖି ହିଁ ଭଗବାନ ସେମାନଙ୍କ ଉପରେ ଅତ୍ୟନ୍ତ ପ୍ରସନ୍ନ ହେଲେ। ପରସ୍ପର ଭିତରେ ତାଙ୍କ ମଧ୍ୟରେ ଏତେ ସ୍ନେହ ଥିଲା ଯେ ତପସ୍ୟା କରିବା ପାଇଁ ମଧ୍ୟ ସେମାନେ ଏକା ସାଂଗରେ ବାହାରି ପଡ଼ିଥିଲେ।

ଭଗବାନ ଶଙ୍କରଙ୍କର ଉପଦେଶ ଅନୁସାରେ ଏହ ପ୍ରଚେତାଗଣ ଭକ୍ତି କରିବା ଆରମ୍ଭ କଲେ କିନ୍ତୁ ପ୍ରାଚୀନବର୍ହି ତ କର୍ମକାଣ୍ଡୀ ଥିଲେ। ନାରଦଙ୍କୁ ତାଙ୍କ ଉପରେ ଦୟା ଆସିଗଲା। ସେ କହିଲେ, ଇଏତ କର୍ମ କାଣ୍ଡି, ଖାଲି କର୍ମ, କର୍ମ ହେଉଛି। ଯଜ୍ଞକୁଣ୍ଡରୁ ଯେଉଁ ଧୂଆଁ ବାହରୁଛି ସେ କେବଳ ଯେ ତା ଆଖିରେ ଭରି ଯାଉଛି ତା ନୁହେଁ। ତା ବୁଦ୍ଧିରେ ମଧ୍ୟ ଭରିଯାଇଛି। ଯାହା ଦ୍ୱାରା ତାର ବୁଦ୍ଧି ମଧ୍ୟ ଧୂମିଳ ହୋଇ ଯାଇଛି। ସେ ମଧ୍ୟ ନିଜ ଯଜ୍ଞରେ କେତେ ପଶୁଙ୍କୁ ବଳି ଚଢ଼େଇଛି। ମହା ଭୟଙ୍କର କାର୍ଯ୍ୟ କରିଚାଲିଛି। ୟାର ପିଲାମାନେ ଭକ୍ତ ହୋଇ ସାରିଲେଣି ଆଉ ଇଏ ଯେମିତି କୁ ସେମିତି ରହିଗଲେ କିଛି ଭଲକଥା ହେବନି। ତେଣୁ ସେ 'ନାରାୟଣ-ନାରାୟଣ' କହି କହି ପ୍ରାଚୀନବର୍ହିଙ୍କ ପାଖରେ ପହଞ୍ଚିଗଲେ। କହିଲେ ରାଜନ୍ ! ଦୁଃଖ କିପରି ଦୂର ହୁଏ ତୁମେ ଜାଣିଗଲକି ? ତୁମେ ତା ଦ୍ୱାରା ସୁଖୀ ହେଲକି ?

କହିଲେ ଦେଖି କିଏ ଆସି ହଠାତ୍ ଏମିତି ପ୍ରଶ୍ନ ପଚାରି ଦେଲେ ଆଉ ଲୋକର ମୁଣ୍ଡ ବୁଲେଇ ଦବନି ? ଏଠି ନାରଦ ଆସି ସିଧା ଏମିତି ପ୍ରଶ୍ନ ପଚାରି ଦେଲେ । ରାଜା କହିଲେ, 'ନା ଭଗବାନ୍, ମୋତେ ଜଣା ନାହିଁ । ଘରେ ରହି ରହି ପୁତ୍ର-ଧନ ଏବଂ କର୍ମରେ ମୁଁ ଏମିତି ଫଶି ଗଲି ଯେ ମୁଁ ଆଉ କିଛି ଭାବି ପାରିଲି ନାହିଁ ।' ମୁଁ କିଛିହେଲେ ଜାଣିନି । ଏବେ ଆପଣ ଦୟା କରି ମୋତେ କୁହନ୍ତୁ । ତା'ପରେ ସେ କହିଲେ - ତୁମେ ଯଜ୍ଞରେ ଯେତେ ପଶୁ ମାରିଛ, ସେମାନେ ସମସ୍ତ ଆକାଶରେ ପ୍ରତୀକ୍ଷା କରୁଛନ୍ତି । ମାଂସ ଖାଉଥିବା ଲୋକମାନେ ଏହା ମନେ ରଖନ୍ତୁ । ନାରଦ ପ୍ରାଚୀନବର୍ହିଙ୍କୁ ସେହି ପଶୁମାନଙ୍କର ଦର୍ଶନ କରାଇଲେ ଏବଂ କହିଲେ ଦେଖ ସେମାନେ ହାତରେ ଅସ୍ତ୍ର ନେଇ ଠିଆ ହୋଇଛନ୍ତି । ତୁମ ପାଇଁ ପ୍ରତୀକ୍ଷା କରୁଛନ୍ତି । ପ୍ରାଚୀନବର୍ହି ଅତ୍ୟନ୍ତ ଭୟଭୀତ ହୋଇ ପଡ଼ିଲେ । ଡରିକରି କହିଲେ - " ମହାରାଜ, ଆପଣ ମୋତେ ଏମାନଙ୍କ ଠାରୁ ରକ୍ଷା କରିବାର ଉପାୟ କୁହନ୍ତୁ ।

## ପୁରଞ୍ଜନ ଉପାଖ୍ୟାନ

ତା'ପରେ ନାରଦ ତାଙ୍କୁ ଗୋଟିଏ କାହାଣୀ କହିଲେ । ଏହା '**ପୁରଞ୍ଜନ ଉପାଖ୍ୟାନ**' ନାମକ ଏକ ରୂପକ । ଦେଖନ୍ତୁ, ଅନେକ ଲୋକ ଭାବନ୍ତି ଯେ ପୁରାଣ ଗୁଡ଼ିକରେ କେବଳ କାହାଣୀ ଗୁଡ଼େ ଅଛି, ଖାଲି କଳ୍ପନା ମାତ୍ର । ପ୍ରକୃତରେ କିନ୍ତୁ ସେଇଆ ନୁହେଁ । ଯେଉଁଠାରେ କଳ୍ପନା ଅଛି, ସେଠାରେ ଭାଗବତରେ ସ୍ପଷ୍ଟ କରିଦିଆ ଯାଇଛି ଯେ ଏହା କାଳ୍ପନିକ କଥା, ସତକଥା ନୁହେଁ । ସଂକ୍ଷେପରେ ସେହି କାହାଣୀ 'ପୁରଞ୍ଜନଉପାଖ୍ୟାନ' ଟି ଏହିପରି ।

ପୁରଞ୍ଜନ ନାମରେ ଜଣେ ରାଜା ଥିଲେ । ତାଙ୍କର ଜଣେ ସାଙ୍ଗ ଥିଲେ 'ଅବିଜ୍ଞାତ', ଯାହାର ନାଁ କାହାକୁ ଜଣା ନଥିଲା । ଏହି ପୁରଞ୍ଜନ ରାଜା ରାଜ୍ୟ ନିର୍ମାଣ ପାଇଁ ସମ୍ପୂର୍ଣ୍ଣ ପୃଥିବୀ ରେ ବୁଲିଲେ । ତା ପରେ ତାଙ୍କୁ ନବଦ୍ୱାର ବିଶିଷ୍ଟ ଗୋଟିଏ ନଗର ଦେଖା ଗଲା । ସେହି ସମୟରେ ସେଠାକୁ ଏକ ସୁନ୍ଦର ସ୍ତ୍ରୀ ମଧ୍ୟ ଆସିଲା, ନିଜର ଦଶ ଜଣ ସଖୀଙ୍କ ସହିତ । ତା ସହିତ ତାକୁ ରକ୍ଷା କରିବାକୁ ପାଞ୍ଚଫଣା ବିଶିଷ୍ଟ ଗୋଟିଏ ସାପ ମଧ୍ୟ ଆସିଲା । ପୁରଞ୍ଜନ ତାକୁ ଦେଖି ତା ଉପରେ ମୁଗ୍ଧ ହେଲେ । ଆଉ ତାକୁ ପଚାରିଲେ ତୁମେ କିଏ ? ଏଠାକୁ କାହିଁକି ଆସିଛ ? ତୁମେ କାହାର କନ୍ୟା ? ସେ କହିଲା , ମୁଁ ଏସବୁ ର ଉତ୍ତର ଜାଣିନାହିଁ ନା ଏହାର କିଛି ପ୍ରୟୋଜନ ଅଛି । ଆସ ମୋ ସହିତ ଗୃହସ୍ଥାଶ୍ରମର ସୁଖ ଭୋଗ କର । ସେ ତା'ର କଥା ମାନିନେଲେ । ଉଭୟେ ଅତ୍ୟନ୍ତ

ସୁଖର ସହିତ ସାଙ୍ଗରେ ରହିଲେ। ସାଂଗରେ ରହୁରହୁ ପୁରଞ୍ଜନ ତାପ୍ରତି ଏତେ ଆସକ୍ତ ହୋଇଗଲେ ଯେ ସେ ଗୀତ ଗାଇଲେ ନିଜେ ଗାଇଲେ, ସେ କାନ୍ଦିଲେ ନିଜେ କାନ୍ଦିଲେ, ସେ ବସିଲେ ନିଜେ ବସିଲେ ଏବଂ ସେ ଶୋଇଲେ ନିଜେ ମଧ୍ୟ ଶୋଇ ପଡୁଥିଲେ।

**କ୍ୱଚିତ୍ ପିବନ୍ତ୍ୟାଂ ପିବତି ମଦିରାଂ ମଦବିହ୍ୱଳଃ ॥ (୪.୨୫.୫୭)**

ସେ ମଦ୍ୟପାନ କଲେ ଇଏ ବି ମଦ୍ୟ ପିଇଲେ, ସେ ଦୌଡ଼ିଲେ ନିଜେ ମଧ୍ୟ ଦୌଡୁଥିଲେ। ଏହି ପରିଭାବରେ ସେ ସେହି ସ୍ତ୍ରୀ ଉପରେ ଏତେ ଆସକ୍ତ ହୋଇଗଲେ ଯେ ତା ହାତର 'କ୍ରୀଡ଼ାମୃଗ' ଖେଳନା ବନି ଗଲେ। ଯଦିଓ ବାହାରୁ ସେ ଅତ୍ୟନ୍ତ ବୀର ପରି ଜଣା ପଡୁଥିଲେ। ଜଙ୍ଗଲ କୁ ଯାଇ ଅନେକ ପଶୁଙ୍କୁ ଶିକାର କରୁଥିଲେ. କିନ୍ତୁ ଘରକୁ ଫେରିବା ପରେ ଯେତେବେଳେ ଜାଣୁଥିଲେ ଯେ ତାଙ୍କର ସ୍ତ୍ରୀ ରାଗିଛି ସେତେବେଳେ ଡରି ଯାଇ କାନ୍ଦିବାକୁ ଲାଗିଯଉଥିଲେ। ତାକୁ ପଚାରୁଥିଲେ "ପ୍ରିୟେ, ତୁମେ କଣ ମୋ ଉପରେ ରାଗିଛ କି ? ତାକୁ ମନେଇବା ପାଇଁ ଯଥା ସମ୍ଭବ ଚେଷ୍ଟା କରୁଥିଲେ, ଏବଂ ସେ ହସିଲେ ନିଜେ ମଧ୍ୟ ଖୁସୀ ହୋଇ ହସୁଥିଲେ। ଏହି ପରି ଭାବରେ ରହି-ରହି ସେ ବୁଢ଼ା ହୋଇଗଲେ। ଚଣ୍ଡବେଗ ନାମକ ଜଣେ ଗନ୍ଧର୍ବ ରାଜା ନିଜ ସୈନ୍ୟ ମାନଙ୍କ ସହିତ ସେହି ନଗରୀ ଉପରେ ଆକ୍ରମଣ କରିଦେଲା। ତାଙ୍କ ନଗରୀରେ ନିଆଁ ଲାଗିଗଲା। ସେ ଭାବିଲେ ଏବେ ମୋ ସ୍ତ୍ରୀ କଣ କରିବ ? ସେତେବେଳକୁ ତା ସ୍ତ୍ରୀ ନିଆଁରେ ପୋଡ଼ି ଭସ୍ମ ହୋଇଗଲା ଏବଂ ସେ ମଧ୍ୟ ଜଳିଗଲେ। ଏହି ପରି ଭାବେ ପୁରଞ୍ଜନର ମଧ୍ୟ ମୃତ୍ୟୁ ହେଲା।

ସ୍ତ୍ରୀ ରେ ଆସକ୍ତି ଯୋଗୁଁ ସେହି ପୁରଞ୍ଜନ ମୃତ୍ୟୁ ପରେ ସ୍ତ୍ରୀ ରୂପେ ଜନ୍ମ ନେଲା। ପାଣ୍ଡ୍ୟ ଦେଶର ରାଜା ମଳୟଧ୍ୱଜଙ୍କ ସହିତ ତାର ବିବାହ ହେଲା। ସେହି ରାଜା ଅତ୍ୟନ୍ତ ଭଗବତ୍ ଭକ୍ତ ଥିଲେ। ତାଙ୍କ ପିଲାମାନେ ବଡ଼ ହେଲା ପରେ ତାଙ୍କ ଭିତରେ ନିଜ ସମ୍ପତ୍ତିକୁ ବାଣ୍ଟି ଦେଇ ନିଜ ପତ୍ନୀଙ୍କ ସହିତ ତପସ୍ୟା କରିବା ପାଇଁ ବଣକୁ ଗଲେ। ସେଠାରେ ସେ ଭଗବତ୍ ଭଜନ କରିବାରେ ଲାଗିଗଲେ। ତାଙ୍କୁ ତତ୍ତ୍ୱ ଜ୍ଞାନ ପ୍ରାପ୍ତ ହେଲା ଏବଂ ସେ ସମ୍ପୂର୍ଣ୍ଣ ରୂପେ ଉପରତ ହୋଇଗଲେ। ତାଙ୍କର ପତ୍ନୀ ଯିଏ ପୂର୍ବଜନ୍ମରେ ପୁରଞ୍ଜନ ଥିଲା, ଜାଣି ପାରିଲା ନାହିଁ ଯେ ତାର ପତି ଦେହତ୍ୟାଗ କରିସାରିଲେଣି। ଜାଣିବା, ପରେ ସେ କାନ୍ଦିବାକୁ ଲାଗିଲା, ସେତେବେଳେ ତାର ସେହି 'ଅବିଜ୍ଞାତ' ନାମଧାରୀ ମିତ୍ର ସେଠାରେ ପହଞ୍ଚିଲା ଏବଂ ତାକୁ ବୁଝେଇବାକୁ ଲାଗିଲା। ଯେ ଦେଖ ଏହି ପୁରୁଷ କିଏ, ଯାହା ପାଇଁ ଏତେ କାନ୍ଦୁଛ ? ମୋତେ ଚିହ୍ନି ପାରୁଛ ? ଆମେ ଦୁହେଁ

ଏକା ସାଂଗରେ ବାହାରି ଥିଲେ। କିନ୍ତୁ ତୁମେ ତ ଗୋଟିଏ ସ୍ତ୍ରୀ କୁ ଦେଖି ଏତେ ମୁଗ୍ଧ ହୋଇଗଲ ଯେ ମୋତେ ମଧ୍ୟ ଭୁଲିଗଲ। ପ୍ରକୃତରେ ନା ତୁମେ ସ୍ତ୍ରୀ ନା ପୁରୁଷ। ତୁମେ ତ ଶୁଦ୍ଧ ଚୈତନ୍ୟ ସ୍ୱରୂପ ଅଟ। ଏହି ପରି ଅବିଜ୍ଞାତ ପୁରଞ୍ଜନଙ୍କୁ -ଯିଏ ଏବେ ସ୍ତ୍ରୀ ରୂପରେ ଅଛି - ନିଜ ସ୍ୱରୂପର ସ୍ମରଣ କରାଇଲେ ଏବଂ ତାର ସବୁ ଦୁଃଖ ଦୂର ହୋଇଗଲା।

ପ୍ରାଚୀନବର୍ହି କହିଲେ - ମହାତ୍ମନ୍ , ଆପଣ ଯେଉଁ ଗପଟି କହିଲେ ତାକୁ ମୁଁ ଭଲ ଭାବରେ ବୁଝି ପାରିଲି ନାହିଁ। କର୍ମ ରେ ରତ ହେବା ଯୋଗୁଁ ମୋ ବୁଦ୍ଧି ଭ୍ରଷ୍ଟ ହୋଇଯାଇଛି। ତେଣୁ ଏହାର ଅର୍ଥ ମତେ ବୁଝେଇ ଦିଅନ୍ତୁ।

## ପୁରଞ୍ଜନୋପାଖ୍ୟାନର ତାତ୍ପର୍ଯ୍ୟ

ଏହା ଶୁଣି ନାରଦ କହିଲେ ଯେ ପୁରଞ୍ଜନ ରୂପୀ ଜୀବ ତୁମେ ନିଜେ। ଭଗବାନହିଁ ଆମର 'ଅବିଜ୍ଞାତ ମିତ୍ର' ଅଟନ୍ତି। ନବ ଦ୍ୱାର ନଗରୀ ହେଲା ଏହି ଶରୀର। ସ୍ତ୍ରୀ ହେଲା ତୁମ ବୁଦ୍ଧି। ଜୀବର ଯେତେବେଳେ ବୁଦ୍ଧି ସହ ତାଦାତ୍ମ୍ୟ ହୁଏ, ବୁଦ୍ଧି ଖୁସୀ ହେଲେ ଜୀବ (ଆମେମାନେ) ଖୁସୀ। ବୁଦ୍ଧି ଦୁଃଖୀ ତ ଆମେ ଦୁଃଖୀ। ଅର୍ଥାତ୍ ମନରେ ଯେପରି ବୃତ୍ତି ଆସିବ ଆମେ ସ୍ୱୟଂ ସେମିତି ହେଇଯାଉ। ପୁଣି ସେମିତି କାମ ମଧ୍ୟ କରିବାକୁ ଲାଗୁ, ଯେମିତି ରାଗ ର ବୃତ୍ତି ଆସିଲେ ରାଗୀ ହେଲୁ, କାମର ବୃତ୍ତି ଆସିଲେ କାମୀ ଏବଂ କ୍ରୋଧର ବୃତ୍ତି ଆସିଲେ କ୍ରୋଧୀ ହୋଇଯାଉ। ପୁଣି ଦେଖନ୍ତୁ ସେଇ ଚଣ୍ଡବେଗ ଆଉ ତାର ସୈନ୍ୟ ମାନେ କିଏ ? କାଳ ହିଁ ସେହି ଚଣ୍ଡବେଗ ଏବଂ ବୃଦ୍ଧାବସ୍ଥା , ଜ୍ୱର ଉତ୍ତାପ ଆଦି ତାର ସୈନ୍ୟ। ଏମାନେ ଆମ ଶରୀର ଉପରେ ଆକ୍ରମଣ କରନ୍ତି। ସେତେବେଳେ ଆମେ ଦୁଃଖୀ ହୋଇଯାଉ। ଆଉ କଣ କରିପାରିବା ? ଅନ୍ତତଃ ଦେହର ତ୍ୟାଗ ମଧ୍ୟ କରିବାକୁ ପଡ଼ିଥାଏ। ତା ପରେ ଯେପରି ଆମର ସଂସ୍କାର ହୁଏ, ଯେଉଁଠି ଆମର ଆସକ୍ତି ଥାଏ, ସେହିପରି ଆମେ ପୁର୍ନଜନ୍ମ ନେଉ, କିନ୍ତୁ ମନେରଖ, ପ୍ରକୃତରେ ତୁମେ ଦେହ, ନା ଜୀବ, ମନ ନା ବୁଦ୍ଧି। ତୁମେ ତ ସଚ୍ଚିଦାନନ୍ଦ ସ୍ୱରୂପ ଅଟ। ଏହିପରି ନାରଦ ତାକୁ ବୁଝେଇଲେ। ଏହା ଶୁଣି ପ୍ରାଚୀନବର୍ହି ର ଆଖି ଖୋଲିଗଲା। ସବୁ ଧୂଆଁ ବାହାରିଗଲା - ସେ କହିଲେ "ମହାତ୍ମନ୍ , ଆପଣ ତ ମତେ ମୁକ୍ତ କରିଦେଲେ। ଦି ମିନିଟ୍ ରେ ମୁକ୍ତ କରିଦେଲେ। ଏବେ ମୁଁ ଏଇ କଥା ଉପରେ ଦୃଷ୍ଟି ଦେବି"। ଏପରି କହି ସେ ବନକୁ ଚାଲିଗଲେ। ଦେଖନ୍ତୁ ସେ ପୂର୍ଣ୍ଣ ଭାବେ ଚିନ୍ତା ମୁକ୍ତ ହେଇଗଲା ଏମିତି ବି ଭାବିଲା ନାହିଁ ଯେ ମୋରତ ଦଶଟି ଯାକ ପୁତ୍ର ଜଂଗଲ କୁ ଚାଲିଯାଇଛନ୍ତି. ଏବେ ମୁଁ ବି ଚାଲିଗଲେ

ଏ ରାଜ୍ୟର କଣ ହେବ ? ବାସ୍‌ ଗଲା ତ ଗଲା, କଥା ଶେଷ। ଯା ପରେ କଣ ହେବ ତାର ଚିନ୍ତା କରିବା ଦରକାର ନାହିଁ। ଏହା ଭାବି ସେ ତ ଚାଲିଗଲେ ଏବଂ ଭଗବାନଙ୍କ ଭକ୍ତି ରେ ସେ ନିଜ ମନକୁ ଏପରି ଭାବରେ ଲଗେଇ ଦେଲେ ଯେ ତାଙ୍କୁ ମୁକ୍ତି ମିଳିଗଲା।

ଏବେ ବିଦୁର ପଚାରିଲେ , "ମହାତ୍ମନ୍‌, ତାଙ୍କର ଦଶ ପୁତ୍ରଙ୍କର କଣ ହେଲା ?" ତାପରେ ମୈତ୍ରେୟ ଋଷି କହିଲେ ଯେ ପିତା ଆଜ୍ଞା ମାନି ସେମାନେ ତପସ୍ୟା କରିବା ପାଇଁ ବାହାରି ପଡିଥିଲେ। ସେତେବେଳେ ସେମାନଙ୍କୁ ପ୍ରଥମେ ନାରାୟଣ ତଟରେ ଶିବଙ୍କର ଆର୍ଶୀବାଦ ମିଳିଗଲା। ତପସ୍ୟାର ଫଳ ସ୍ୱରୂପ ସ୍ୱୟଂ ନାରାୟଣ ତାଙ୍କ ଉପରେ ବହୁତ ପ୍ରସନ୍ନ ହେଲେ। ସେ କହିଲେ, ତୁମ ଭିତରେ ଥିବା ପରସ୍ପର ପ୍ରତି ପ୍ରେମ ଏବଂ ମୋପ୍ରତି ଥିବା ଭକ୍ତି ଯୋଗୁଁ ମୁଁ ତୁମ ଉପରେ ବହୁତ ପ୍ରସନ୍ନ। ଏବେ ତୁମେ ମାନେ ଫେରିଯାଇ ରାଜ୍ୟ ଶାସନ କର।  ତୁମର ମୋ ପାଖରେ ସବୁବେଳେ ଭକ୍ତି ରହିବ। ସେହି ଦଶ ଜଣ ପ୍ରଚେତାଙ୍କୁ ଭଗବାନ ନାରାୟଣ ବରଦାନ ଦେଲେ। ତା ପରେ ସେମାନେ ସମୁଦ୍ର ପରି ବିଶାଳ ସେହି ନାରାୟଣ ସରୋବରରୁ ବାହାରି ଆସିଲେ।

ଫେରିଆସି ସେମାନେ ଦେଖିଲେ ଯେ ତାଙ୍କ ପିତା ପ୍ରାଚୀନବର୍ହି ତପସ୍ୟା କରିବା ପାଇଁ ଜଙ୍ଗଲକୁ ଚାଲିଯାଇଛନ୍ତି। ରାଜ୍ୟ ର ଦେଖା-ଶୁଣା ପାଇଁ କେହି ନାହାଁନ୍ତି। ସବୁ ଦିଗରୁ ବୃକ୍ଷମାନେ ପୃଥିବୀ କୁ ଯେପରି ଢାଙ୍କି ଦେଇଛନ୍ତି। ସ୍ୱର୍ଗର ରାସ୍ତା ବନ୍ଦ ଅଛି। ଦେଖନ୍ତୁ , ଏତେ ସାଧନା -ଭଜନ, ପୂଜା-ପାଠ ଏବଂ ତପ-ଜପ ପରେ ମଧ୍ୟ ଏମାନଙ୍କର ଲୁଚିଯାଇଥିବା ଜିଦ କ୍ରୋଧ ପ୍ରକଟ ହେଲା। କେଉଁ ଜନ୍ମ ର ସଂସ୍କାର କେବେ ପ୍ରକଟ ହେବ କୁହାଯାଇ ପାରିବାନାହିଁ। କ୍ରୋଧିତ ହୋଇ ସେମାନେ ଗଛ ସବୁ କାଟିବାକୁ ଲାଗିଲେ। ପୁରା ଜଗଂଲ ସମାପ୍ତ ହେବାକୁ ଲାଗିଲା। ସେତେବେଳେ ସମସ୍ତ ଜଙ୍ଗଲ ମାନଙ୍କର ରାଜା ଚନ୍ଦ୍ରଦେବ ପ୍ରକଟ ହେଲେ। ଏବଂ କହିଲେ କଣ କରୁଛ ? ବୃକ୍ଷ ନଷ୍ଟ କର ନାହିଁ ବରଂ ରକ୍ଷା କର। ଏମାନଙ୍କ ଶ୍ରେଷ୍ଠ କନ୍ୟାଙ୍କ ସହ ବିବାହ କରିନିଅ। ତା ପରେ ବିବାହ ହେଲା ଏବଂ ସବୁ ଶାନ୍ତ ହେଲା। ସମସ୍ତେ ଏକା ସାଙ୍ଗରେ ରହିଲେ। ଶେଷରେ ତାଙ୍କ ମନରେ ବୈରାଗ୍ୟ ଉତ୍ପନ୍ନ ହେଲା। କହିଲେ ଆମକୁ ରୁଦ୍ର ଗୀତ ମିଳିଲା। ଭଗବାନ ନାରାୟଣ ପ୍ରସନ୍ନ ହେଲେ। ତାପରେ ଆମେ ରାଜ୍ୟ ଶାସନରେ ଫସିଗଲେ। ଏପରି ଭାବି ସମସ୍ତେ ସେଠାରୁ ବାହାରି ଆସିଲେ। ପୁଣି ନାରଦଙ୍କୁ ସ୍ମରଣ କରିବାରୁ ନାରଦ ତାଙ୍କ ପାଖକୁ ଆସି ଉପଦେଶ ଦେଲେ। ସେମାନେ ଉପଦେଶ ପ୍ରାପ୍ତ କରି ମୁକ୍ତ ହେଲେ। ଏହି ପ୍ରସଙ୍ଗ ସହିତ ଏହି ଚତୁର୍ଥ ସ୍କନ୍ଧ ଏଠାରେ ସମାପ୍ତ ହେଲା।



# ପଞ୍ଚମ ସ୍କନ୍ଧ

ପ୍ରଥମ ସ୍କନ୍ଧରେ ଆମେ ଶ୍ରୋତା ଏବଂ ବକ୍ତାର ଅଧିକାର ଦେଖିଲେ । ଦ୍ୱିତୀୟ ସ୍କନ୍ଧରେ ସାଧନ ଦେଖିଲେ ଏବଂ ତୃତୀୟ ସ୍କନ୍ଧରୁ ଦଶ ବିଷୟଯୁକ୍ତ ପୁରାଣ ଆରମ୍ଭ ହେଲା । ଏଠାରେ ସର୍ବ ପ୍ରଥମେ 'ସର୍ଗ'ର ବର୍ଣ୍ଣନା କରାଯାଇଛି । ଭୂତମାତ୍ର ଏବଂ ପ୍ରାଣୀମାନଙ୍କର ଉତ୍ପତ୍ତିକୁ 'ସର୍ଗ'ଏବଂ ସେହି ତତ୍ତ୍ୱରୁ ଯେଉଁ ନାମରୂପ ତିଆରି ହୁଏ ତାକୁ 'ବିସର୍ଗ' କୁହାଯାଏ । ତୃତୀୟ ସ୍କନ୍ଧରେ 'ସର୍ଗ' ଏବଂ ଚତୁର୍ଥ ସ୍କନ୍ଧରେ 'ବିସର୍ଗ'ର ବର୍ଣ୍ଣନା କୁହାଯାଏ । ତୃତୀୟ ସ୍କନ୍ଧରେ 'ସର୍ଗ' ଚତୁର୍ଥ ସ୍କନ୍ଧରେ 'ବିସର୍ଗ'ର ବର୍ଣ୍ଣନା ଅଛି । ଏବେ ପଞ୍ଚମ ସ୍କନ୍ଧର ଆରମ୍ଭ ଯେଉଁଠି '**ସ୍ଥାନ**'ର ବର୍ଣ୍ଣନା ଅଛି ।

ବିଦୁର ମୈତ୍ରେୟ ଋଷିଙ୍କୁ ଅନେକ ପ୍ରଶ୍ନ ପଚାରିଥିଲେ ଯେଉଁଥିରେ ପୃଥିବୀ ଏବଂ ଆକାଶ ଆଦିର ସ୍ଥିତି ବିଷୟକ ପ୍ରଶ୍ନ ମଧ୍ୟ ଥିଲା । ସେ ସବୁର ବର୍ଣ୍ଣନା ଏପର୍ଯ୍ୟନ୍ତ ମଧ୍ୟ ମୈତ୍ରେୟ ଋଷି କରି ନଥିଲେ । କିନ୍ତୁ ବିଦୁର କହିଲେ – 'ମହାତ୍ମନ୍ ନମସ୍କାର ! ଏବେ ମୋର ଆଉ କିଛି ଶୁଣିବାର ଆବଶ୍ୟକତା ନାହିଁ । ଦେଖନ୍ତୁ , ସେ ଅନେକ ପ୍ରଶ୍ନତ ପଚାରିଥିଲେ, କିନ୍ତୁ ଧର୍ମ-ଅର୍ଥ-କାମ-ମୋକ୍ଷର ଯେପରି ବିବେଚନା ଶୁଣିଲେ, ପ୍ରଚେତାଗଣଙ୍କ ମୁକ୍ତିର ବର୍ଣ୍ଣନ ଶୁଣିଲେ, ସେଥିରେ ବିଦୁରଙ୍କ ମନରେ ଏତେ ଭଗବତ୍ ଭକ୍ତି ପ୍ରକଟ ହୋଇଗଲା ଯେ ସେ କହିପକାଇଲେ, ଆଗକୁ ଆଉ ଶୁଣିବା ପାଇଁ କଣ ବାକି ରହିଲା ? ଆଉ ଶୁଣିବା କେବଳ ମାତ୍ର ଶବ୍ଦ ସଦୃଶ । ତାଙ୍କର ଏପରି ସ୍ଥିତି ଦେଖି ମୈତ୍ରେୟ ଋଷି ପ୍ରସନ୍ନ ହେଲେ । କହିଲେ ଇଏ ତ କୃତାର୍ଥ ହେଇଗଲେ, ଏହାଙ୍କୁ ପ୍ରେମ ରସ ପ୍ରାପ୍ତ ହୋଇଗଲା । ଏବେ ଯାଙ୍କର ଆଉ ଅଧିକା ଶୁଣିବାର ପ୍ରୟୋଜନ ବା କଣ ? ଚିନିକୁ ନ ଚାଖିବା ପର୍ଯ୍ୟନ୍ତ, ଚିନି କଣ , କେମିତି ଦିଶେ , ତାହା କିପରି ଆଦିର ବର୍ଣ୍ଣନା କରିବାକୁ ପଡେ । କିନ୍ତୁ ଥରେ ଜଣେ ଚିନି ଚାଖି ସାରିଲା ପରେ ତା ସାମ୍ନାରେ ଯଦି ଚିନିର ବର୍ଣ୍ଣନା କରାଯିବ ସେ କହିବ ବାସ୍ ଏବେ ତ ମୋତେ ତା'ର ସ୍ୱାଦ ମଧ୍ୟ ଜଣା ଅଛି । ଏବେ ଆଉ ବର୍ଣ୍ଣନାର ଆବଶ୍ୟକତା ନାହିଁ ।

# ପ୍ରିୟବ୍ରତ-ଚରିତ୍ର

ବିଦୁର ନମସ୍କାର କରି ଚାଲିଗଲେ । କିନ୍ତୁ ପରୀକ୍ଷିତ ତ ବସିଛନ୍ତି । ପରୀକ୍ଷିତ କହିଲେ ,"ମହାତ୍ମନ୍ , ଆପଣ ରାଜା ମନୁଙ୍କ କନ୍ୟାମାନଙ୍କ କଥା କହିଲେ । ଉତ୍ତାନପାଦଙ୍କ ବିଷୟରେ କହିଲେ, ଏବେ ପ୍ରିୟବ୍ରତଙ୍କ ବିଷୟରେ ମଧ୍ୟ କୁହନ୍ତୁ । ମୁଁ ଶୁଣିଛି ଯେ ରାଜା ପ୍ରିୟବ୍ରତ ମଧ୍ୟ ମହାଭାଗବତ ଥିଲେ । ତାଙ୍କର ସଂସାର ବା ଗୃହସ୍ଥାଶ୍ରମ ପ୍ରତି ଆଦୌ ପ୍ରେମ ନ ଥିଲା । ତଥାପି ସେ ଗୃହସ୍ଥାଶ୍ରମରେ କିପରି ରହିପାରିଲେ ? କାରଣ ଯାହାର ମନ ବ୍ରହ୍ମରେ ଲାଗିଯାଏ ତାକୁ ଗୃହସ୍ଥାଶ୍ରମରେ କୌଣସି ରସ ମିଳେ ନାହିଁ । ତେବେ ସେ ସେଠି କାହିଁକି ରହିଲେ ?" ଶୁକଦେବ କହିଲେ , ତୁମେ ଉତ୍ତମ ପ୍ରଶ୍ନ ପଚାରିଲ । ପ୍ରକୃତରେ ପ୍ରିୟବ୍ରତଙ୍କୁ ଗୃହସ୍ଥାଶ୍ରମରେ କୌଣସି ରସ ମିଳୁ ନ ଥିଲା । ମହାରାଜା ମନୁ ତାଙ୍କୁ ରାଜା କରିବାକୁ ଚାହୁଁଥିଲେ । କିନ୍ତୁ ସେ ତ ନାରଦଙ୍କ ପାଖକୁ ଚାଲି ଗଲେ । ସେଠି ସେ ନାରଦଙ୍କ ଉପଦେଶ ଅନୁସାରେ ସୂର୍ଯ୍ୟଦେବ , ଦେବତାଗଣ , ଭଗବାନ ବିଷ୍ଣୁଙ୍କୁ ଉପାସନା କରିବାକୁ ଲାଗିଲେ । ସେତେବେଳେ ମହାରାଜ ମନୁ ବ୍ରହ୍ମାଙ୍କ ପାଖକୁ ଗଲେ । କହିଲେ, "ମୋର ପୁତ୍ର ନିବୃତ୍ତି ମାର୍ଗୀ ହେଇଗଲା । ଆପଣ ତାଙ୍କୁ ଟିକିଏ ବୁଝେଇ-ସୁଝେଇ ଗୃହସ୍ଥାଶ୍ରମକୁ ଫେରାଇ ଆଣନ୍ତୁ ।" ଏହି ଗୃହସ୍ଥାଶ୍ରମୀ ଲୋକେ ଏଇମିତି । କେହି ସନ୍ନ୍ୟାସୀ ହେଇଯାଉ ଏକଥା ସେମାନେ ଦେଖିପାରନ୍ତିନି ।

ବ୍ରହ୍ମା ଗଲେ ଆଉ ପ୍ରିୟବ୍ରତଙ୍କୁ ସେ ସେହି ଉପଦେଶ ଦେଲେ, ଯାହା ସବୁ ମାତା-ପିତା ନିଜର ପୁଅମାନଙ୍କୁ ଦିଅନ୍ତି । ପୁତ୍ର , ସାଧନା ତ ତୁମେ ସଂସାରରେ ରହିକରି ମଧ୍ୟ କରିପାରିବ । ଏହା ସର୍ବ ସାଧାରଣ ଉପଦେଶ । ଆମେ ସମସ୍ତେ ଭଗବାନଙ୍କ ଆଜ୍ଞାରେ ଚାଲୁଛୁ । ଏହାର ବିପରୀତ କିଏ ରହି ପାରିବ ଭଲା ତୁମେ ମଧ୍ୟ ଗୃହସ୍ଥାଶ୍ରମରେ ପ୍ରବେଶ କର । ଯଦି ତୁମେ ନିଜର ସମସ୍ତ କର୍ମ ଭଗବାନଙ୍କ ପୂଜା ଭାବି କରିବ ତେବେ ଏହି ଗୃହସ୍ଥାଶ୍ରମ ତୁମକୁ ବାନ୍ଧି ପାରିବ ନାହିଁ । ସେଠି ଥାଇ ମଧ୍ୟ ତୁମେ କାମ-କ୍ରୋଧ-ମଦ-ଲୋଭ- ମୋହକୁ ଜିତିପାରିବ **'ବିମୁକ୍ତ ସଂଗଃ ପ୍ରକୃତିଂ ଭଜସ୍ୱ'** (୫.୧.୧୬)। ଏବେ ତୁମେ ନିଶ୍ଚିନ୍ତ ହୁଅ । ତୁମର କିଛି ଅସୁବିଧା ହେବ ନାହିଁ । କାରଣ ତୁମେ ସୁଯୋଗ୍ୟ ବ୍ୟକ୍ତି । ପ୍ରିୟବ୍ରତ ନାରଦଙ୍କ ଆଡକୁ ଚାହିଁଲେ । ଏବେ ନାରଦ କଣ କରିବେ ? ବ୍ରହ୍ମା ତ ତାଙ୍କ ପିତା । ତେଣୁ ନାରଦ କହିଲେ - ଠିକ୍ ଅଛି, ତୁମେ ଯାଅ ଏବଂ ବ୍ରହ୍ମାଙ୍କ ଆଜ୍ଞାର ପାଳନ କର । ଏହିପରି ପ୍ରିୟବ୍ରତ ନିଜର ଇଚ୍ଛା ନ ଥିଲେ ମଧ୍ୟ ଗୃହସ୍ଥାଶ୍ରମକୁ ଆସିଲେ । ସେ ଏପରି ଏକ ଶ୍ରେଷ୍ଠ ପୁରୁଷ ଥିଲେ ଯେ ତାଙ୍କ ବିଷୟରେ କୁହାଯାଏ ଯେ

- ସେ ରଥ ଚଳେଇଲେ ତ ଚଲଉଥିବେ । ସମ୍ପୂର୍ଣ୍ଣ ବ୍ରହ୍ମାଣ୍ଡକୁ ଦେଖିନେଲେ, ରାତିଦିନ ସମାନ ହେଇଗଲା । ଅର୍ଥାତ୍ ପ୍ରିୟବ୍ରତ କାଳ ଉପରେ ବିଜୟ ପ୍ରାପ୍ତ କଲେ, ଦେଶମାନଙ୍କ ଉପରେ ମଧ୍ୟ ବିଜୟ ପ୍ରାପ୍ତ କଲେ । ସପ୍ତ-ଦ୍ୱୀପର ନିର୍ମାଣ କଲେ । ପ୍ରିୟବ୍ରତଙ୍କ ପରି ଆଉ କିଏ ହେବ ?

ତାଙ୍କର ଦଶ ପୁତ୍ର ହେଲେ - ଆଗ୍ନୀଧ୍ର, ଇଧ୍ମଜିହ୍ୱ, ଯଜ୍ଞବାହୁ, ମହାବୀର, ହିରଣରେତା, ଘୃତପୃଷ୍ଠ, ସବନ, ମେଧାତିଥି, ବୀତିହୋତ୍ର ଏବଂ କବି । ଏମାନଙ୍କ ମଧ୍ୟରୁ ତିନିପୁତ୍ର ମହାବୀର, ସବନ ଏବଂ କବି ଉର୍ଦ୍ଧ୍ୱରେତା ବ୍ରହ୍ମଚାରୀ ହେଲେ । ଅନ୍ୟ ମାନେ କର୍ମକ୍ଷେତ୍ରରେ ଲାଗିଗଲେ । ପ୍ରିୟବ୍ରତ ଭଗବାନଙ୍କ ଭକ୍ତି ପୂର୍ବକ ରାଜ୍ୟ ଶାସନ କଲେ । ତାଙ୍କର ରାଜ୍ୟ ଅତ୍ୟନ୍ତ ସମୃଦ୍ଧିଶାଳୀ ହେଲା । ଦିନେ ତାଙ୍କୁ ଲାଗିଲା "ଓହୋ ମୁଁ କୋଉଠି ଫସି ଗଲି ?" ବ୍ରହ୍ମାଙ୍କ କଥା ମାନି ମୁଁ ଏଠାକୁ ଆସିଲି । ସେ ତ କହୁଥିଲେ - ଏଠି ଗୃହସ୍ଥାଶ୍ରମରେ ରହି ମଧ୍ୟ ସାଧନା ହେଇ ପାରିବ ? କିନ୍ତୁ ଏଠି ତ ମୁଁ ଅନ୍ୟ କାମରେ ପଡ଼ି ରହିଛି । ଭଗବାନଙ୍କ ଭକ୍ତି ଯେପରି କରିବା କଥା ମୁଁ ତ କରି ପାରିଲିନି । ଏବେ ସବୁ କିଛି ଛାଡ଼ି ଦେବା ଉଚିତ୍ । ଏହିପରି ଭାବି ଭାବି ପ୍ରିୟବ୍ରତଙ୍କୁ ସବୁ ଜିନିଷରୁ ବୈରାଗ୍ୟ ହେଇଗଲା । ସବୁ ଛାଡ଼ି ସେ ଜଙ୍ଗଲକୁ ଚାଲି ଗଲେ ଏବଂ ପୁଣି ସେଠାରେ ରହି ଉପଦେଶ ଗ୍ରହଣ କରି ସେ ନିଜର ମନକୁ ଭଗବାନଙ୍କ ନିକଟରେ ଲଗେଇ ଦେଲେ ।

## ପ୍ରିୟବ୍ରତଙ୍କ ବଂଶ ବର୍ଣ୍ଣନ

ପ୍ରିୟବ୍ରତଙ୍କ ଚାଲିଯିବା ପରେ ଆଗ୍ନୀଧ୍ର ରାଜା ହେଲେ । ଆଗ୍ନୀଧ୍ରଙ୍କର ନଅଟି ପୁତ୍ର ହେଲେ - ନାଭି, କିମ୍ପୁରୁଷ, ହରିବର୍ଷ, ଇଲାବୃତ, ରମ୍ୟକ, ହିରଣ୍ମୟ, କୁରୁ, ଭଦ୍ରାଶ୍ୱ ଏବଂ କେତୁମାଳ । ସେମାନଙ୍କ ମଧ୍ୟରେ ଜ୍ୟେଷ୍ଠ ହେଲା ନାଭି । ଏହି ନଅ ପୁତ୍ରଙ୍କ ନାମ ଅନୁସାରେ ନଅ ବର୍ଷ କୁହାଯାଇଛି । **'ବର୍ଷ'** ମାନେ **'ସ୍ଥାନ'** ଏହି ସ୍କନ୍ଧରେ **'ସ୍ଥାନ'**ର ବର୍ଣ୍ଣନା କରାଯାଇଛି । ତେବେ 'ସର୍ଗ' 'ବିସର୍ଗ' ପରେ 'ସ୍ଥାନ' । ଅର୍ଥାତ୍ ଯେତେ ଖଗୋଳ - ଭୂଗୋଳ ଅଛି, ବିଭିନ୍ନ ବ୍ରହ୍ମାଣ୍ଡରେ ଯେତେ ଲୋକ ଅଛନ୍ତି ସେମାନେ ସମସ୍ତେ ଭଗବାନଙ୍କ ଭିତରେ ହିଁ ଅଛନ୍ତି । ଭଗବାନ ହିଁ ତାଙ୍କର ଅଧିଷ୍ଠାନ । ଏହି କଥା ଏଠାରେ କୁହାଯାଇଛି ।

ଆଗ୍ନୀଧ୍ରଙ୍କ ଜ୍ୟେଷ୍ଠ ପୁତ୍ର ହେଲେ ନାଭି । ନାଭିଙ୍କ ଚରିତ୍ର ଅତ୍ୟନ୍ତ ଶ୍ରେଷ୍ଠ ଥିଲା । ତାଙ୍କର ବିବାହ ମେରୁଦେବୀଙ୍କ ସହିତ ହେଇଥିଲା । ନାଭିଙ୍କର ଇଚ୍ଛା ଥିଲା ଯେ ସେ

ଭଗବାନଙ୍କୁ ହିଁ ପୁତ୍ର ରୂପେ ପ୍ରାପ୍ତ କରିବେ । ତେଣୁ ସେ ଯଜ୍ଞ କଲେ । ଯଜ୍ଞ ପୁରୁଷ ପ୍ରସନ୍ନ ହେଲେ । ସମସ୍ତ ପୁରୋହିତ ଆଦି ତାଙ୍କୁ ପ୍ରଣାମ କଲେ ଏବଂ କହିଲେ- ମହାରାଜ ଆପଣ ପ୍ରସନ୍ନ ହୁଅନ୍ତୁ । ଆମକୁ ତ କୁହାଯାଇଛି ଯେ ବଡ଼ ଲୋକମାନେ ଆସିଲେ ତାଙ୍କୁ 'ନମୋ ନମୋ' କହିଦେବ । ଆମକୁ ଆଉ କିଛି ଆସେ ନାହିଁ । ତେଣୁ ଆମେ ଆପଣଙ୍କୁ ନମନ କରୁଛୁ । ଆପଣଙ୍କୁ ନମସ୍କାର । ଆମ ଯଜମାନ ପୁତ୍ର ଚାହୁଁଛନ୍ତି । ତାଙ୍କୁ ଆପଣଙ୍କ ପରି ପୁତ୍ର ଦରକାର । ଭଗବାନ କହିଲେ- ତୁମେ ଯାହା ମାଗିଲ ତାହା ଦବା ଅତ୍ୟନ୍ତ କଷ୍ଟକର । କାରଣ ମୋ ପରି ତ ଆଉ କେହି ନାହିଁ । କିନ୍ତୁ ବ୍ରାହ୍ମଣଙ୍କ ମୁଖରୁ କଥା ବାହାରିଗଲେ ତାହା ପୁରା ହେବା ମଧ୍ୟ ଦରକାର । ତେଣୁ ମୁଁ ନିଜେ ଯାଙ୍କର ପୁତ୍ର ରୂପେ ଆସିବି ।

## ଋଷଭାବତାର

ଦେଖନ୍ତୁ , ବରାହ ଅବତାର **'କର୍ମାବତାର'** ଥିଲା ଏବଂ କପିଳ ମୁନିଙ୍କ ଅବତାର **'ଜ୍ଞାନାବତାର'** । ଏବେ ଭଗବାନ ଋଷଭ ଦେବଙ୍କ ଅବତାର ହେବେ । ଏହି ଅବତାର ଦ୍ୱାରା ପରମହଂସମାନଙ୍କ ଧର୍ମ ବିଷୟରେ କୁହାଯାଇଛି । ପରମହଂସ ପରିବ୍ରାଜକ ମାନଙ୍କର, ସନ୍ନ୍ୟାସୀମାନଙ୍କର ଧର୍ମ ଅତ୍ୟନ୍ତ କଷ୍ଟକର ହୋଇଥାଏ । ପରମହଂସ ମାନଙ୍କର ସେହି ଧର୍ମକୁ, ତାଙ୍କର ଚର୍ଯ୍ୟାକୁ ପ୍ରକଟ କରିବା ପାଇଁ ଋଷଭାବତାର ହେଲା । ଋଷଭ ଅର୍ଥ ହେଲା ଶ୍ରେଷ୍ଠ । ତେଣୁ ଏହା ମନେ ରଖିବେ ।

ରାଜା ନାଭି ଅତ୍ୟନ୍ତ ପ୍ରସନ୍ନ ହେଲେ । କିଛି ଦିନ ପରେ ତାଙ୍କ ଘରେ ଭଗବାନ ଆବିର୍ଭାବ ହେଲେ । ଆରମ୍ଭରୁ ତାଙ୍କ ପାଖରେ ସବୁ ଶ୍ରେଷ୍ଠ ଲକ୍ଷଣ ଦେଖାଗଲା । ତେଣୁ ତାଙ୍କ ନାମ ଋଷଭ ରଖାଗଲା । ତାଙ୍କ ବାଲ୍ୟାବସ୍ଥାରୁ ହିଁ ରାଜା ନାଭି ତାଙ୍କ ପ୍ରତି ଏତେ ଆସକ୍ତ ହୋଇପଡ଼ିଲେ ଯେ କୁହା ନ ଯାଏ । ଋଷଭଙ୍କ ପ୍ରଭାବ ଦେଖି ଇନ୍ଦ୍ର ଇର୍ଷା କଲେ ଏବଂ ବର୍ଷା କରିବା ବନ୍ଦ କରିଦେଲେ । ଋଷଭଦେବ ହସିଲେ ଏବଂ ନିଜ ପ୍ରଭାବ ଦ୍ୱାରା ବର୍ଷା କରେଇଲେ । ଇନ୍ଦ୍ରଦେବ ଖାଲି ଚାହିଁ ରହିଲେ । ତାଙ୍କର ଏପରି ପ୍ରଭାବକୁ ଦେଖି ନାଭି ଭାବିଲେ ଯେ ପୁଅ ତ ଏତେ ଶ୍ରେଷ୍ଠ । ଏହାକୁ ରାଜ୍ୟ ପ୍ରଦାନ କରି ମୋର ଅବସର ନେବା ଉଚିତ । ତେଣୁ ଋଷଭଦେବଙ୍କୁ ରାଜ୍ୟ ପ୍ରଦାନ କରି ନାଭି ଘରୁ ବାହାରି ଗଲେ ।

ତାପରେ ଋଷଭଦେବ ଗୁରୁକୁଳ ଯାଇ ଗୁରୁଙ୍କର ସେବା କଲେ, ଏବଂ ଜ୍ଞାନ ମଧ୍ୟ ପ୍ରାପ୍ତ କଲେ । ତାପରେ ଗୁରୁଙ୍କ ଆଜ୍ଞାରେ ତାଙ୍କର ବିବାହ ହେଲା ଇନ୍ଦ୍ରଦତ୍ତା ଅର୍ଥାତ୍ ଇନ୍ଦ୍ରଙ୍କ କନ୍ୟା ଜୟନ୍ତୀଙ୍କ ସହ । ତାଙ୍କର ଶହେ ପୁତ୍ର ହେଲେ । ସେମାନଙ୍କ ମଧ୍ୟରେ ଜ୍ୟେଷ୍ଠ ଏବଂ ସର୍ବଶ୍ରେଷ୍ଠ ଥିଲେ ଭରତ । ତାଙ୍କ କଥା ଆଗକୁ ଅଛି । ତାଙ୍କୁ ହିଁ ପରେ ଜଡ

ଭରତ କୁହାଗଲା । ଭରତଙ୍କ ପରେ ଯେଉଁ ନଅ ପୁତ୍ର ହେଲେ ତାଙ୍କର ନାମ ହେଲା କୁଶାବର୍ତ୍ତ, ଇଳାବର୍ତ୍ତ, ବ୍ରହ୍ମାବର୍ତ୍ତ, ମଳୟକେତୁ , ଭଦ୍ରସେନ, ଇନ୍ଦ୍ରସ୍ପୃକ୍ , ବିଦର୍ଭ ଏବଂ କୀକଟ । ଏହିପରି ଏମାନେ ଦଶ ଜଣ । ବାକୀ ନବେରୁ ଏକାଅଶୀ ଜଣ କର୍ମକାଣ୍ଡୀ ହେଲେ । ଅନ୍ୟ ନଅ ଜଣ ମଧ୍ୟ ଅତ୍ୟନ୍ତ ଜ୍ଞାନୀ ଥିଲେ ।

**କବିର୍ହରିରନ୍ତରିକ୍ଷଃ ପ୍ରବୁଦ୍ଧଃ ପିପ୍ପଲାୟନଃ ।**
**ଆବିର୍ହୋତ୍ରୋଽଥ ଦ୍ରୁମିଲଶ୍ଚମସଃ କରଭାଜନଃ ॥ (୫.୪.୧୧)**

ଏହି ନଅ ଯୋଗୀମାନଙ୍କ ଚରିତ୍ରର ବର୍ଣ୍ଣନ ଏକାଦଶ ସ୍କନ୍ଧରେ କରାଯାଇଛି । ସେଠାରେ ନାରଦ ବସୁଦେବଙ୍କ ଆଗରେ ବର୍ଣ୍ଣନ କରୁଛନ୍ତି ଯେ କିପରି ଏହି ନଅଜଣ ଯୋଗୀ ରାଜା ନିମିଙ୍କ ଦରବାରରେ ଜ୍ଞାନର ଉପଦେଶ ଦେଇଥିଲେ । ତେଣୁ ଏହି ନଅ ଜଣ ଯୋଗୀ ମାନଙ୍କର କଥା ଆମେ ସେହି ଏକାଦଶ ସ୍କନ୍ଧରେ ଦେଖିବା ।

## ଋଷଭଦେବଙ୍କର ନିଜ ପୁତ୍ରମାନଙ୍କୁ ଉପଦେଶ

ଏବେ ଆମେ ପ୍ରଥମେ ଋଷଭଦେବଙ୍କ ଚରିତ୍ର ଦେଖିବା । ଋଷଭଦେବ ଥରେ ନିଜ ପୁତ୍ରମାନଙ୍କ ସହ ବୁଲୁବୁଲୁ ବ୍ରହ୍ମାବର୍ତ୍ତରେ ପହଞ୍ଚିଲେ । ସେଠାରେ ସବୁ ଋଷିମାନଙ୍କର ସଭା ବସିଥିଲା । ସେଠାରେ ଋଷଭଦେବ ନିଜ ପୁତ୍ରମାନଙ୍କୁ ଉପଦେଶ ଦେଇଥିଲେ ଯାହାକୁ ସବୁ ମାତାପିତା ଶୁଣିବା ଉଚିତ୍; ଯାହାଦ୍ୱାରା ସେମାନେ ଜାଣିବେ ଯେ ନିଜ ପିଲାମାନଙ୍କୁ କିପରି ଉପଦେଶ ଦେବା କଥା କୁହାଯାଇଛି ଯେ -

**ପ୍ରଶ୍ରୟପ୍ରଣୟଭରସୁୟନ୍ତିତାନପ୍ୟୁପଶିକ୍ଷୟନ୍ନିତି ହୋବାଚ ॥ (୫.୪.୧୬)**

ଋଷଭଦେବ ନିଜ ପୁତ୍ରମାନଙ୍କୁ ପୂର୍ଣ୍ଣ ସଭାରେ ଉପଦେଶ ଦେଲେ, ଏକୁଟିଆରେ ନୁହଁ । ଶ୍ରେଷ୍ଠ ମହାପୁରୁଷମାନେ ଯେଉଁଠି ବିଦ୍ୟମାନ ଥିଲେ, ସେହି ସଭାରେ ଉପଦେଶ ଦେଲେ । ଏହାର ଅର୍ଥ ବୁଝିପାରିଲେ କି ? ସମ୍ପୂର୍ଣ୍ଣ ସଭା ମଧ୍ୟ ଜାଣିପାରିଲା ଯେ ସେମାନଙ୍କ ପିତା ସେମାନଙ୍କୁ କଣ ଉପଦେଶ ଦେଲେ । ତାପରେ ଯଦି ପିଲାମାନେ କିଛି ଗଡ଼ବଡ଼ କରିବେ ତ ଅନ୍ୟମାନେ ତାଙ୍କୁ କହିପାରିବେ ଯେ ଏହା ଠିକ୍ କଥା ନୁହଁ । ତୁମମାନଙ୍କ ପିତା ତୁମକୁ ଯାହା ଉପଦେଶ ଦେଇଥିଲେ ତାକୁ ତ ଆମେ ମଧ୍ୟ ଶୁଣିଛୁ । କହିଲେ ଦେଖି, ପିତା ସେମାନଙ୍କୁ କଣ ଉପଦେଶ ଦେଇଥିଲେ ? ଏହି ଅଧ୍ୟାୟଟି ଅତ୍ୟନ୍ତ ସୁନ୍ଦର ଅଟେ । ଏଠାରେ ଆରମ୍ଭରୁ ହିଁ ଅତ୍ୟନ୍ତ ଶ୍ରେଷ୍ଠ - ସର୍ବଶ୍ରେଷ୍ଠ, ସବୁଠାରୁ ବଡ କଥା କୁହାଯାଇଛି ।

**ନାୟଂ ଦେହୋ ଦେହଭାଜାଂ ନୃଲୋକେ**
**କଷ୍ଟାନ୍ କାମାନର୍ହତେ ବିଡ୍‌ଭୁଜାଂ ୟେ ।**
**ତପୋ ଦିବ୍ୟଂ ପୁତ୍ରକା ୟେନ ସତ୍ତ୍ୱଂ**
**ଶୁଦ୍ଧ୍ୟେଦ୍ୟସ୍ମାଦ୍ ବ୍ରହ୍ମସୌଖ୍ୟଂ ତ୍ୱନନ୍ତମ୍ ॥ (୫.୫.୧)**

ଏହି ଦେହଟି କେବଳ ଭୋଗ ପାଇଁ ଉଦ୍ଦିଷ୍ଟ ନୁହଁ । ଏହି ଦେହ ତ ପରେ ପୋକ-ଜୋକଙ୍କ ପାଇଁ ଭୋଜ୍ୟ ହେଇଯାଏ । ତେଣୁ ଜୀବନରେ ଏପରି କର୍ମ କରିବା ଉଚିତ, ଯାହାଦ୍ୱାରା ମନ ଶୁଦ୍ଧ ହେଇଯିବ ଏବଂ ଅନନ୍ତ ସୁଖ-ଯାହାକୁ ବ୍ରହ୍ମ ସୁଖ କୁହାଯାଏ, ତାହା ପ୍ରାପ୍ତ ହେବ । ଏହି ମାନବ ଦେହର ପ୍ରୟୋଜନ କାମ ସୁଖ ନୁହଁ ବ୍ରହ୍ମସୁଖ ଅଟେ । ଆହୁରି ମଧ୍ୟ କହିଲେ

**ମହତ୍ସେବାଂ ଦ୍ୱାରମାହୁର୍ବିମୁକ୍ତେ**
**ସ୍ତମୋଦ୍ୱାରଂ ୟୋଷିତାଂ ସଂଗିସଂଗମ୍ ॥ (୫.୫.୨)**

ମହାପୁରୁଷମାନଙ୍କ ସଂଗ ହିଁ ମୋକ୍ଷର ଦ୍ୱାର ଏବଂ ସ୍ତ୍ରୀରେ ଆସକ୍ତ କାମୀର ସଂଗ ନର୍କର ଦ୍ୱାର । ତାଙ୍କ ସଂଗ ପ୍ରଥମେ ତ ବହୁତ ଭଲ ଲାଗେ , ସୁଖଦ ଲାଗେ । ସେଥିରେ ସୁଖ ଦିଶେ କିନ୍ତୁ ପରେ ବହୁତ କଷ୍ଟ ଦିଏ । କାମୀ ପୁରୁଷ ଆମକୁ କାମର ସ୍ଥାନକୁ ନେଇଯାଆନ୍ତି ଏବଂ ନାଚ ଗୀତରେ ମଜେଇ ଦିଅନ୍ତି ।

ଥରେ ଜଣେ ଲୋକ ନିଜ କର୍ମ ଯୋଗୁଁ ସ୍ୱର୍ଗକୁ ଗଲା , କିନ୍ତୁ ରାସ୍ତାରେ ତାକୁ ନର୍କ ଦିଶିଗଲା । ସେଠି ଖୁବ୍ ନାଚ ଗୀତ ଚାଲୁଥିଲା । ସେ ଭାବିଲା ଏଇଟା ତ ବହୁତ ମନୋରଞ୍ଜନର ସ୍ଥାନ । ନର୍କ ଲେଖା ହେଇଛି କିନ୍ତୁ ଲୋକମାନେ ତ ବହୁତ ମଜା କରି କରି ଖାଉଛନ୍ତି-ପିଉଛନ୍ତି । ସେ ସ୍ୱର୍ଗରେ ପହଞ୍ଚିଲା ତ ଦେଖିଲା ଯେ ସେଠି ସବୁ ଶୁନ୍‌ସାନ୍। ତେଣୁ ସେ ଭଗବାନଙ୍କୁ କହିଲା - ମୋତେ ନର୍କକୁ ପଠେଇ ଦିଅନ୍ତୁ । ଭଗବାନ କହିଲେ - ଆରେ ! ତୁ ନର୍କକୁ କାହିଁକି ଯିବାକୁ ଚାହୁଁଛୁ ? ସେ ଉତ୍ତର ଦେଲା, “ସେଠି ବହୁତ ଭଲ ।” ଭଗବାନ କହିଲେ, “ଯାହା ତୋ ଇଚ୍ଛା ।” ସେହି ଲୋକଟି ସ୍ୱର୍ଗରୁ ନର୍କକୁ ଗଲା ମାତ୍ରେ ତାକୁ ଟାଣି ନେଇ ବାଡେଇବାରେ - ପିଟିବାରେ ଲାଗିଗଲେ । ସେ ରଡ଼ି ଛାଡ଼ିଲା । କେହି ତା କଥା ଶୁଣିଲେ ନାହିଁ । ତାପରେ ସେ କହିଲା, ଏଇଟା କୋଉ ଜାଗା ? ଉତ୍ତର ମିଳିଲା - ଏଇଟା ନର୍କ । ନର୍କ ? କିନ୍ତୁ ମୁଁ ଏଇବାଟ ଦେଇ ସ୍ୱର୍ଗ ଗଲାବେଳେ ତ ଏଠି ଖୁବ୍ ନାଚ-ଗୀତ ଚାଲୁଥିଲା । ଉତ୍ତର ମିଳିଲା - ସେଇଟା

ଆମର ବିଜ୍ଞାପନ ବିଭାଗର କାମ । ସେତେବେଳେ ତୁମେ ଆମ ଅତିଥି ଥିଲ, ଏବେ ତ ନିବାସୀ ହେଲ । ଅତିଥିଙ୍କୁ ତ ଭଲ ଭଲ ଜିନିଷ ଦେଖାଇବେ ନା ?

ଦେଖନ୍ତୁ, କାମୀ ପୁରୁଷର ସଂଗ ମଧ୍ୟ ଠିକ୍ ଏହିପରି ହିଁ ହୋଇଥାଏ । ପ୍ରଥମେ ଖୁବ୍ ଭଲ ଲାଗେ, କାରଣ ସେ ଆମକୁ ନାଚ ଗୀତ ଦେଖାଏ, ଖୁଆଏ-ପିଆଏ, କିନ୍ତୁ ଥରେ ଆମେ ତା ଜାଲରେ ଫସି ଗଲେ କଥା ସରିଲା । ଦେଖନ୍ତୁ , ପୁରୁଷର ସ୍ତ୍ରୀ ପ୍ରତି ଏବଂ ସ୍ତ୍ରୀର ପୁରୁଷ ପ୍ରତି ଯେଉଁ ଆସକ୍ତି ଥାଏ , ତାହା ହିଁ ସବୁଠାରୁ ବଡ ହୃଦୟ ଗ୍ରନ୍ଥି । ଅନ୍ୟ ଗ୍ରନ୍ଥିମାନେ ଏତେ ଅଧିକ କଷ୍ଟପ୍ରଦ ହୁଅନ୍ତି ନାହିଁ । ଏହି ଯେଉଁ ମନ ସେ ମଣିଷକୁ ବହୁତ ନଚାଏ । ତେଣୁ ଏଠି କୁହାଯାଇଛି ଯେ ରାଜା ଏବଂ ଗୁରୁର କର୍ତ୍ତବ୍ୟ ହେଲା ଯେ ସେ ନିଜପୁତ୍ର ଏବଂ ଶିଷ୍ୟଙ୍କୁ ଭଲ ଶିକ୍ଷା ଦେବେ । ଏଠି ସେ କହିଲେ ଯେ –

**ଗୁରୁର୍ନ ସ ସ୍ୟାସ୍ୱଜନୋ ନ ସ ସ୍ୟାତ୍**
**ପିତା ନ ସ ସ୍ୟାଜ୍ଜନନୀ ନ ସା ସ୍ୟାତ୍**
**ଦୈବଂ ନ ତତ୍‌ସ୍ୟାନ୍ନ ପତିଶ୍ଚ ସ ସ୍ୟା**
**ନ୍ନ ମୋଚୟେଦ୍ୟଃ ସମୁପେତମୃତ୍ୟୁମ୍ ॥ (୫.୫.୧୮)**

ସେହି ମା, ମା ନୁହଁ , ସେହି ପିତ. ପିତା ନୁହଁ, ସେହି ସ୍ୱଜନ, ସ୍ୱଜନ ନୁହଁ, ସେହି ପତି, ପତି ନୁହଁ । ଯିଏ ତା ଉପରେ ଆଶ୍ରିତ ବ୍ୟକ୍ତିକୁ ସଂସାରର ବନ୍ଧନକୁ ମୁକ୍ତ କରାଏ ନାହିଁ । ଆଜିକାଲିର ମାତାପିତା ନିଜ ପିଲାମାନଙ୍କୁ ଅନେକ ଜିନିଷ ଦିଅନ୍ତି । ଉଚ୍ଚଶିକ୍ଷା , ଜୀବିକୋପାର୍ଜନ ପାଇଁ ଭିନ୍ନ ଭିନ୍ନ ବିଦ୍ୟା ମଧ୍ୟ ଦିଅନ୍ତି କିନ୍ତୁ ଧର୍ମ ପାଇଁ ଧନର ଉପଯୋଗ କିପରି କରିବା ଉଚିତ, ଧର୍ମର ପାଳନ କିପରି କରିବା କଥା, ଯାହାଦ୍ୱାରା ସେ ନିଜ ଜୀବନକୁ ମୋକ୍ଷର ଦ୍ୱାରରେ ନେଇ ଠିଆ କରି ପାରିବ, ତା ଶିଖଉ ନାହାଁନ୍ତି । ଏପରି ସ୍ଥଳେ ଯଦି ପିଲା ବିଗିଡ଼ି ଗଲା ତେବେ ଦୋଷ କାହାର ? ନିଜ ଉପରକୁ ହିଁ ଦୋଷ ନେବାକୁ ପଡ଼ିବ । ଏଠାରେ ସ୍ପଷ୍ଟ ଭାବେ କୁହାଯାଇଛି ଯେ ଋଷଭଦେବ ପୂର୍ଣ୍ଣ ସଭାରେ ଏହି କଥା ବୁଝେଇ କରି କହୁଛନ୍ତି । ତେଣୁ କୁହାଯାଇଛି ଯେ, ସବୁପ୍ରକାରରେ ଭଗବାନଙ୍କର ଭକ୍ତି କରିବା ଉଚିତ୍, ଭାବପୂର୍ଣ୍ଣ ହୋଇ ଭକ୍ତି କରିବା ଆବଶ୍ୟକ ।

**ମନୋବଚୋଦୃକ୍କରଣେହିତସ୍ୟ**
**ସାକ୍ଷାତ୍କୃତଂ ମେ ପରିବର୍ହଣଂ ହି ।**
**ବିନା ପୁମାନ୍ ୟେନ ମହାବିମୋହାତ୍**
**କୃତାନ୍ତପାଶାନ୍ନ ବିମୋକ୍ତୁମୀଶେତ୍ ॥ (୫.୫.୨୭)**

ଦେଖନ୍ତୁ ଏବେ ଏଠାରେ ଋଷଭଦେବ ନିଜର ଈଶ୍ୱରତ୍ୱ ପ୍ରକଟ କରୁଛନ୍ତି, କହିଲେ - ଯେଉଁ ବ୍ୟକ୍ତି ମନ, ବଚନ ଏବଂ କର୍ମଦ୍ୱାରା ମୋର ଭକ୍ତି କରେ ନାହିଁ , ତାକୁ ସଂସାରରୁ ମୁକ୍ତ କରିବା ପାଇଁ ଅନ୍ୟ କୌଣସି ଶକ୍ତି ନାହିଁ । ଅନ୍ୟ କୌଣସି ପ୍ରକାରରେ ଏହା ସମ୍ଭବ ନୁହେଁ । ନିଜ ପୁତ୍ରମାନଙ୍କୁ ସଭାରେ ଏପରି ସୁନ୍ଦର ଉପଦେଶ ଦେଇ ସେ ନିଜେ ସନ୍ୟାସର , ପରମହଂସର ଦୀକ୍ଷା ନେଇଗଲେ । ମନେରଖନ୍ତୁ ସନ୍ୟାସୀମାନଙ୍କ ମଧ୍ୟରେ କୁଟୀଚକ, ହଂସ ଏବଂ ପରମହଂସ ଏପରି ଉତ୍ତୋରତ୍ତର ଶ୍ରେଷ୍ଠରୁ ଶ୍ରେଷ୍ଠତର ସ୍ତର ଅଛି , ସେ ଏପରି ପରମହଂସ ଅବଧୂତ ଥିଲେ ଯେ ସେ ସମସ୍ତଙ୍କ ଆଗରେ ନିଜ ପିଲାମାନଙ୍କୁ ଉପଦେଶ ଦେଇ ପିତାର କର୍ତ୍ତବ୍ୟ ନିର୍ବାହ କରିଦେଲେ ଏବଂ ତାପରେ ସେହିଠାରେ ହିଁ ସବୁକିଛି ତ୍ୟାଗ କରିଦେଲେ ।

## ଅବଧୂତ ଧର୍ମ

ତତ୍ ପଶ୍ଚାତ୍ ସେ ପରମହଂସ ଧର୍ମ , ତାର ଚର୍ଯ୍ୟା ପ୍ରକଟ କରିବା ପାଇଁ ବାହାରି ପଡ଼ିଲେ । ନଗ୍ନ ଅବସ୍ଥା, ଅବଧୂତବେଶ, କେଶ ନୁଖୁରା ଏବଂ ସେ ବୈରାଗୀ ହୋଇ ଚାଲିଯାଉଛନ୍ତି । ଆହୁରି ମଧ୍ୟ ସେ ନିଜ ପାଟିରେ ପଥର ରଖିଦେଇଛନ୍ତି । କିଛି କହିବେନି ଲୋକମାନେ ତାଙ୍କୁ ବୁଝିପାରିଲେନି । କିଏ ପଥର ମାରିଲା, କିଏ ତାଙ୍କ ଉପରକୁ ମଇଳା ଫୋପାଡିଲା । ଏଥିରେ ତାଙ୍କର କିଛି ଯାଏ ଆସେ ନାହିଁ । ଅଜଗର ପରି ଗୋଟିଏ ଗଛ ମୂଳେ ପଡି ରହୁଥିଲେ । କିଛି ମିଳିଗଲେ ଖାଉଥିଲେ ଅନ୍ୟଥା ଖାଡ଼ା ଓପାସ । ତାଙ୍କ ମଳ-ମୂତ୍ରରୁ ମଧ୍ୟ ସୁଗନ୍ଧ ବାହାରୁଥିଲା । ସେଥିରୁ ଦୁର୍ଗନ୍ଧ ଆସୁ ନଥିଲା । ଏପରି ନଗ୍ନ ଏବଂ ବିଚିତ୍ର ଅବସ୍ଥାରେ ମଧ୍ୟ ତାଙ୍କ ଶରୀର ସୌନ୍ଦର୍ଯ୍ୟ ଏପରି ଥିଲା ଏବଂ ମୁହଁର ହସ ଏତେ ସୁନ୍ଦର ଥିଲା ଯେ ସେହି ସ୍ଥିତିରେ ମଧ୍ୟ ସ୍ତ୍ରୀଲୋକମାନେ ତାଙ୍କ ଉପରେ ମୋହିତ ହେଇ ଯାଉଥିଲେ । କିନ୍ତୁ ତାଙ୍କର କାହାସହିତ କିଛି ଦେବା-ନେବା ନ ଥିଲା, ସେ ଖାଲି ଚାଲୁଥିଲେ । ଇଏ ହେଲେ ଋଷଭଦେବ ।

ଅନେକ ପ୍ରକାରର ସିଦ୍ଧି ଗୁଡ଼ିକ ତାଙ୍କ ସମ୍ମୁଖରେ ହାତ ଯୋଡ଼ି ଠିଆ ହୋଇ ରହୁଥିଲେ, କିନ୍ତୁ ସେ କୌଣସି ସିଦ୍ଧିକୁ ସ୍ୱୀକାର କଲେ ନାହିଁ । ରାଜା ପରୀକ୍ଷିତ ଶୁକଦେବଙ୍କୁ ପଚାରିଲେ – ମହାତ୍ମନ୍, ସେ ତ ଶ୍ରେଷ୍ଠ ଜ୍ଞାନୀ, ସ୍ଥିତପ୍ରଜ୍ଞ ପୁରୁଷ, ସେ କୌଣସି ସିଦ୍ଧିକୁ ସ୍ୱୀକାର କରି ନେଇଥିଲେ ତାଙ୍କର କଣ ଅସୁବିଧା ହୋଇଥାନ୍ତା ? ଦେଖନ୍ତୁ ତାଙ୍କର ତ କିଛି ଅସୁବିଧା ହୋଇ ନଥାନ୍ତା , କିନ୍ତୁ ଜ୍ଞାନୀ ପୁରୁଷ ଆମକୁ ଏହା ହିଁ ଶିଖଉଛନ୍ତି ଯେ ନିଜ ମନ ଉପରେ କେବେହେଲେ ଭରସା କରିବା ଉଚିତ ନୁହଁ ।

**ନ ମନସୋଽଦ୍ଧା ବିଶ୍ରମ୍ଭମନବସ୍ଥାନସ୍ୟ**

**ଶଠକିରାତ ଇବ ସଂଗଚ୍ଛନ୍ତେ ।। (୫.୬.୨)**

ଏହି ମନ ଅତ୍ୟନ୍ତ କୁଟିଳ ଏବଂ କପଟୀ । ଆମେ ଯା ଉପରେ ଟିକିଏ ହେଲେ ଭରସା କରି ବସିଲେ ଇଏ ଆମକୁ ଅସୁବିଧାରେ ପକେଇଦେବ । ମୃତ୍ୟୁ ପର୍ଯ୍ୟନ୍ତ ଯା ଉପରେ ଭରସା କରିବା ଉଚିତ ନୁହଁ ।

ଏହି ସଂଦର୍ଭରେ ଗୋଟିଏ ବଢ଼ିଆ ଗପ ଅଛି । ଜଣେ ସନ୍ଥ ଥିଲେ । ପ୍ରତିଦିନ ତାଙ୍କ ପାଖକୁ ଜଣେ ବେଶ୍ୟା ଆସି ପଚାରୁଥିଲା – ଆପଣ କଣ କାମବାସନାକୁ ଜିତି ପାରିଛନ୍ତି ? ସେ କିଛି ବି ଉତ୍ତର ଦେଉ ନ ଥିଲେ । ଦିନେ ସେହି ବେଶ୍ୟାକୁ ଖବର ମିଳିଲା ଯେ ସେ ମରିଗଲେଣି । ସେ ପୁଣି ଆସି ସେଠି ଠିଆ ହେଲା ଯେଉଁଠାରେ ସନ୍ଥଙ୍କ ଶରୀର ପଡ଼ି ରହିଥିଲା ଏବଂ କହିଲା – ମୁଁ ଯେଉଁ ପ୍ରଶ୍ନ ପଚାରିଥିଲି ଇଏତ ସେହି ପ୍ରଶ୍ନର ଉତ୍ତର ଦେଲେନି । ମୋ ପ୍ରଶ୍ନର ଉତ୍ତର ନ ଦେଇ କେମିତି ମରିଗଲେ ? ଗପରେ ଅଛି ଯେ ସେହି ମୃତ ଶରୀର କ୍ଷଣକ ପାଇଁ ଉଠି ବସି ପଡିଲା ଏବଂ ' ହଁ ଜିତି ପାରିଛି' କହି ପୁଣି ପୂର୍ବବତ୍ ପଡିଗଲା । କହିବାର ଅର୍ଥ ହେଲା ଯେ ମୃତ୍ୟୁ ପର୍ଯ୍ୟନ୍ତ , ଅନ୍ତିମ କ୍ଷଣ ପର୍ଯ୍ୟନ୍ତ ଏହି ମନ ଉପରେ ବିଶ୍ୱାସ କରିବା ଉଚିତ୍ ନୁହଁ । ଭଗବାନ ଶଙ୍କରାଚାର୍ଯ୍ୟ ଗୀତା ଭାଷ୍ୟରେ ଲେଖିଛନ୍ତି ଯେ – **'ଅନନ୍ତ ନିମିତ୍ତବାନ ହି କାମଃ ।'** ଏହି କାମର ଅନେକ ନିମିତ୍ତ ଥାଏ । ସେ ଆମକୁ କେଉଁଠି କେଉଁ ଅସୁବିଧାରେ ପକେଇଦେବ ସେ କଥା କହିହେବନି, ତାର କିଛି ଭରସା ନାହିଁ । ତେଣୁ କୁହାଯାଇଛି –

**ନ କୁର୍ଯ୍ୟାତ୍କର୍ହିଚିତ୍ସଖ୍ୟଂ ମନସି ହ୍ୟନବସ୍ଥିତେ ।**
**ଯଦ୍ୱିଶ୍ରମ୍ଭାଚ୍ଚିରାଚ୍ଚୀର୍ଣ୍ଣ ଚସ୍କନ୍ଦ ତପ ଐଶ୍ୱରମ୍ ॥ (୫.୬.୩)**

ଏହି ଚଞ୍ଚଳ ମନ ଉପରେ କେବେ ବିଶ୍ୱାସ କରିବ ନାହିଁ । ବିଶ୍ୱାସ କଲା ମାତ୍ରେ କ୍ଷଣକ ମଧ୍ୟରେ ସେ ଆମକୁ ତଳେ ପକେଇ ଦେବ । ତେଣୁ ସବୁ ବେଳେ ସାବଧାନ ରହିବ ।

**କର୍ମବନ୍ଧଶ୍ଚ ଯନ୍ମୂଳଃ ସ୍ୱୀକୁର୍ଯ୍ୟାକ୍ତୋ ନୁ ତଦ୍ ବୁଧଃ ॥(୫.୬.୫)**

ବୁଦ୍ଧିମାନ ବ୍ୟକ୍ତି ସବୁବେଳେ ଏହାକୁ ନିଜ ନିୟନ୍ତ୍ରଣରେ ରଖନ୍ତି, ଏହା ଉପରେ ଭରସା କରନ୍ତି ନାହିଁ । ଏହିପରି ଋଷଭଦେବ ପରମହଂସ ମାନଙ୍କର ଚର୍ଯ୍ୟାକୁ , ବ୍ୟବହାରକୁ ସମସ୍ତଙ୍କ ସମ୍ମୁଖରେ ପ୍ରକଟ କରି ଦେଲେ ଓ ତାପରେ ସେ କଥା କହିବା ମଧ୍ୟ ଛାଡ଼ି ଦେଇଥିଲେ । ପାଟିରେ ଖଣ୍ଡେ ପଥର ରଖିଦେଲେ । ତାପରେ ଦିନେ ଗଛମାନେ ପରସ୍ପର ସହ ବାଡେଇ ହେଇ ଜଙ୍ଗଲରେ ନିଆଁ ଲାଗିଯାଇଥିଲା ବେଳେ ସେ ନିଜ ଦେହକୁ ସେଥିରେ ଭସ୍ମ କରି ଦେଲେ , ଯେପରି ତାଙ୍କ ଦେହକୁ ଜଳେଇବା ପାଇଁ ବା ପୋତିବା ପାଇଁ ବା ନଦୀରେ ଭସେଇ ଦେବା ପାଇଁ କାହାରିକୁ କଷ୍ଟ କରିବାକୁ ନ ପଡୁ । ପରମହଂସ ଋଷଭଦେବଙ୍କର ଏହି ଅବତାର ଅତ୍ୟନ୍ତ ଶ୍ରେଷ୍ଠ ଅବତାର ଅଟେ । ଶ୍ରଦ୍ଧା ପୂର୍ବକ ଯିଏ ଏହାର ଶ୍ରବଣ କରନ୍ତି ଏବଂ ଯିଏ ମନନ କରନ୍ତି, ଉଭୟଙ୍କୁ ଭଗବାନ ବାସୁଦେବଙ୍କର ଅନନ୍ୟ ଭକ୍ତି ପ୍ରାପ୍ତ ହୁଏ । ଶୁକଦେବ କହିଲେ ଯେ ଯଦି ଏପରି ଭକ୍ତି କାହାରି ହୃଦୟରେ ଆସିଯାଏ ତେବେ ସେ ମୋକ୍ଷର ମଧ୍ୟ ବିଶେଷ ଆଦର କରେ ନାହିଁ । ତାକୁ ମଧ୍ୟ ତ୍ୟାଗ କରେ ।

**ପରୟା ନିବୃର୍ତ୍ତ୍ୟା ହ୍ୟପବର୍ଗମାତ୍ୟନ୍ତିକଂ ପରମପୁରୁଷାର୍ଥମପି ।**
**ସ୍ୱୟମାସାଦିତଂ ନୋ ଏବାଦ୍ରିୟନ୍ତେ ॥ (୫.୬.୧୭)**

ଭଗବଦ୍ ଭକ୍ତି ଯାହାର ହୃଦୟରେ ପୂର୍ଣ୍ଣତଃ ପ୍ରକଟ ହୁଏ, ତା'ର ନା ମୋକ୍ଷର ଇଚ୍ଛା ଥାଏ ନା ପ୍ରୟୋଜନ । ସେ ତାକୁ ସ୍ୱୀକାର କରେ ନାହିଁ । କାରଣ ଭଗବତ୍ ସେବାରେ ଯେଉଁ ଆନନ୍ଦ ମିଳେ, ତାକୁ ଛାଡ଼ିବା ପାଇଁ ସେ ପ୍ରସ୍ତୁତ ହୁଏ ନାହିଁ ।

**ରାଜନ୍ ପତିର୍ଗୁରୁରଲଂ ଭବତାଂ ଯଦୂନାଂ**
**ଦୈବଂ ପ୍ରିୟଃ କୁଳପତିଃ କ୍ୱ ଚ କିଂକରୋ ବଃ ।**
**ଅସ୍ତ୍ୱେବମଂଗ ଭଗବାନ୍ ଭଜତାଂ ମୁକୁନ୍ଦୋ**
**ମୁକ୍ତିଂ ଦଦାତି କର୍ହିଚିସ୍ମ ନ ଭକ୍ତିଯୋଗମ୍ ॥ (୫.୬.୧୮)**

ତା'ପରେ ପୁଣି କହିଲେ ଯେ ପରୀକ୍ଷିତ ତୁମ ବଂଶ ତ ଅତ୍ୟନ୍ତ ଭାଗ୍ୟଶାଳୀ ଅଟେ । ଭଗବାନ ଶ୍ରୀକୃଷ୍ଣ ସେହି ବଂଶର କେବଳ ଗୁରୁ, ସ୍ୱାମୀ, ଇଷ୍ଟଦେବ ଏବଂ ସହୃଦ କୁଳପତି ନୁହଁନ୍ତି, ବରଂ ସେ ତୁମ କୁଳର ସେବକ ମଧ୍ୟ ହେଇ ସାରିଛନ୍ତି । କାହିଁକି ଜାଣିଛ କି ? କାରଣ ତାଙ୍କର ଚରଣରେ ତୁମ ବଂଶଜମାନଙ୍କର ଅନନ୍ୟ ଭକ୍ତି ଥିଲା । ସେହିପରି ସେ ଅନ୍ୟ ଭକ୍ତମାନଙ୍କର ମଧ୍ୟ ସବୁ କାର୍ଯ୍ୟ କରିପାରିବେ । ଯଦି କିଏ ଚାହିଁବ ତ ସେ ମୁକ୍ତି ମଧ୍ୟ ଦେଇପାରିବେ । କିନ୍ତୁ, ଏହି ମୁକୁନ୍ଦ ଭଗବାନଙ୍କର ଗୋଟିଏ ବିଚିତ୍ର କଥା ଯେ ସେ ମୁକ୍ତି ଦେବାରେ ଅତ୍ୟନ୍ତ ଉଦାର କିନ୍ତୁ ଭକ୍ତିର ପ୍ରଦାନରେ ନୁହଁ । ସେ ତାକୁ ହିଁ ଭକ୍ତି ଦେବେ ଯିଏ ମୁକ୍ତିକୁ ଛାଡିବାକୁ ରାଜି ହେଇଯିବ ।

ତୁକାରାମ ମହାରାଜ କହୁଛନ୍ତି – **'ନ ଲଗେ ମୁକ୍ତି ଧନ ସଂପଦା ସନ୍ତ ସଂଗ ଦେଇ ସଦା ।'** ମୋର ଧନ ସଂପଦ ବା ମୁକ୍ତି ଦରକାର ନାହିଁ , ମୋତେ ତ ସର୍ବଦା ସନ୍ଥଙ୍କ ସଂଗ ଦରକାର । ଏପରି ବ୍ୟକ୍ତିକୁ ହିଁ ଭକ୍ତି ପ୍ରାପ୍ତ ହୁଏ । ଏହି କଥାକୁ କେହି ତର୍କ ଦ୍ୱାରା ବୁଝିପାରିବ ନାହିଁ । ନା ଏହାକୁ ବର୍ଣ୍ଣନା କରି ବୁଝେଇ ହେବ । ଏଠାରେ ଋଷଭଦେବଙ୍କ ଅବତାରର ଏହି ସୁନ୍ଦର ପ୍ରସଂଗ ଶେଷ ହେଲା । ଯେଉଁଠି ଋଷଭଦେବ ଗୃହସ୍ଥାଶ୍ରମକୁ ସ୍ୱୀକାର କରି ଲୋକମାନଙ୍କୁ ଗୃହସ୍ଥ ଧର୍ମର ଶିକ୍ଷା ଦେଲେ ସେଇଠି ସେ ଅନ୍ତତଃ ଆତ୍ମଲୋକର ଉପଦେଶ ଦେଇ ପରମହଂସର ବ୍ୟବହାର ଏବଂ ଜୀବନ ମଧ୍ୟ ଦର୍ଶାଇଲେ । ତେଣୁ କୁହାଯାଏ **'ଓଁ ନମୋ ଭଗବତେ ଋଷଭାୟ ତସ୍ମୈ' (୫.୬.୧୯)** । ସେହି ଋଷଭଦେବଙ୍କୁ ନମସ୍କାର ।

## ଭରତଙ୍କର ହରିଣ ଶାବକ ପ୍ରତି ଆସକ୍ତି

ଋଷଭଦେବଙ୍କ ପରେ, ତାଙ୍କର ଜ୍ୟେଷ୍ଠ ଏବଂ ଶ୍ରେଷ୍ଠ ପୁତ୍ର ଭରତ ରାଜ୍ୟ ଶାସନ କଲେ । ପରିବ୍ରାଜକ ହୋଇ ଚାଲିଯିବା ପୂର୍ବରୁ ଋଷଭଦେବ ନିଜର ଏହି ପୁତ୍ରଙ୍କର ରାଜ୍ୟାଭିଷେକ କରି ସାରିଥିଲେ । ରାଜା ଭରତ ମହାଭାଗବତ ଥଲେ । ସେ ଅତ୍ୟନ୍ତ ଭଲ ଭାବରେ ରାଜ୍ୟ ଶାସନ କଲେ । ତାପରେ ପୂର୍ବ ପରମ୍ପରା ଅନୁସାରେ ରାଜ୍ୟ ତ୍ୟାଗ କରି ବନକୁ ଚାଲି ଗଲେ । ଘରୁ ବାହାରି ସେ ପ୍ରଥମେ ପୁଲହାଶ୍ରମରେ ରହିଲେ ଏବଂ ସେଠି କେବଳ କନ୍ଦ, ମୂଳ ଓ ଫଳ ଆଦିର ଉପାହାର କରି ତପସ୍ୟାରେ ମଗ୍ନ ହୋଇଗଲେ । ସେ ବିଶେଷ ଭାବରେ ସୂର୍ଯ୍ୟଦେବଙ୍କର ଉପାସନା କଲେ । ଏହିପରି ଭାବେ ରାଜା ବୈଭବକୁ ତ୍ୟାଗ କରି ସେ ସେଠାରେ ସାଧୁବେଶରେ ରହିବାକୁ ଲାଗିଲେ ।

ଦେଖନ୍ତୁ, ମନକୁ କେତେ ସାବଧାନରେ ରଖିବେ, ସେହି କଥା ଏଠି ଦର୍ଶାଯାଇଛି । ଭରତ ଗଭୀର ସାଧନାରେ ରତ ଥିଲେ । କିନ୍ତୁ ଦିନେ ବିଘ୍ନ ଆସିଗଲା । କିପରି ବିଘ୍ନ ? ଅନ୍ୟ ଅନେକ ପ୍ରକାରର ତପସ୍ୟା ଆଦି ସାଧନା କରୁଥିବା ସାଧକମାନଙ୍କ ଜୀବନରେ ପ୍ରାୟ ବିଘ୍ନ ରୂପରେ କୌଣସି ସ୍ତ୍ରୀ ହିଁ ଆସିଯାଏ । କିନ୍ତୁ ଏଠି ତ କିଛି ଅଲଗା ହେଇଗଲା । ଦିନେ ସେ ଗଣ୍ଡକୀ ନଦୀ ତଟରେ ବସି ପ୍ରଣବର ଜପ କରୁଥିଲେ । ଗୋଟିଏ ଗର୍ଭବତୀ ହରିଣୀ ସେଠାରେ ପାଣି ପିଉଥିଲା । ହଠାତ୍ ଗୋଟିଏ ସିଂହ ଜୋରରେ ଗର୍ଜନ କଲା, ତ ସେହି ହରିଣୀ ଡରିଯାଇ ଜୋରରେ ଡେଇଁ ପଡ଼ିଲା । ହରିଣୀ ଚାଲିଯିବାରେ ସଫଳ ହେଇଗଲା କିନ୍ତୁ ତାର ଗର୍ଭସ୍ଥ ଶିଶୁ ପାଣିରେ ପଡ଼ିଗଲା ଏବଂ ଆରପଟେ ହରିଣୀଟି ମଧ୍ୟ ପଡ଼ି କରି ମରିଗଲା । ଭରତଙ୍କର ସେହି ଛୋଟ ହରିଣ ଶାବକଟି ଉପରେ ବଡ଼ ଦୟା ଆସିଲା । ହରିଣ ତ ସେମିତିବି ଦେଖିବାକୁ ବହୁତ ସୁନ୍ଦର । ତେଣୁ ଛୋଟ ଶାବକଟି ମଧ୍ୟ ବହୁତ ସୁନ୍ଦର ଥିଲା ।

ଏବେ ଦେଖନ୍ତୁ, ତାଙ୍କ ମନରେ ଦୟା ଆସିଲା । ଭଲ କଥା । ସେ ମଧ୍ୟ ନଦୀକୁ ଡେଇଁ ପଡିଲେ ଏବଂ ତାକୁ ନେଇ ଆସିଲେ । ଭାବିଲେ - ଏବେ ମୋତେ ହିଁ ଏହାର ପିତା ହେବାକୁ ପଡିବ । ତାପରେ ସେ ତାର ସେବା କରିବାକୁ ଲାଗିଲେ । ଏ ପର୍ଯ୍ୟନ୍ତ ତ ସବୁ ଠିକ୍ ଥିଲା । ଭଲ ଥିଲା । କିନ୍ତୁ ତାଙ୍କ ଦ୍ୱାରା ଗୋଟିଏ ଭୁଲ ହେଇଗଲା । ସେ ହରିଣଟିକୁ 'ମୋର' ଭାବି ନେଲେ । ଦେଖନ୍ତୁ , ନିଜକୁ ତ ସେ ଭଗବାନଙ୍କ ଚରଣରେ ସମର୍ପିତ କରି ଦେଇଥିଲେ କିନ୍ତୁ ସେହି ହରିଣ ଛୁଆଟିକୁ 'ମୋର' ବୋଲି ଭାବି ନେଲେ । ଇଏ ବି କଣ ଠିକ୍ କଥା ? ଆରେ ବାବୁ, ଯଦି ତୁମେ ନିଜକୁ ଭଗବାନଙ୍କ

ଚରଣରେ ସମର୍ପିତ କରି ଦେଲ ଯେ ଭଗବାନ ମୁଁ ଆପଣଙ୍କର ତ ହରିଣ ଛୁଆଟି ପୁଣି ତୁମର କେମିତି ହେଲା ? ତା ପ୍ରତି ମମତ୍ୱ ଉତ୍ପନ୍ନ ହେଲା, ଏଇଠି ଭୁଲ ହେଇଗଲା । ସେବା କଲ, ସେଇଟା ଭଲ କଥା, କିନ୍ତୁ ତାହା ମମତ୍ୱରହିତ ହେବା ଉଚିତ ଥିଲା । ଜେନ୍ ଗୁରୁଙ୍କର ଗୋଟିଏ ଗପ ଅଛି । ନିଜ ଗ୍ରାମରେ ସେ ବୈରାଗୀ, ମମତ୍ୱ ରହିତ, ଧ୍ୟାନଶୀଳ ଏବଂ ଜ୍ଞାନୀ ରୂପେ ପ୍ରସିଦ୍ଧ ଥିଲେ । ଗାଁର କୌଣସି ଏକ ପରିବାରର ଝିଅ ସହିତ କୌଣସି ପୁଅର ସମ୍ବନ୍ଧ ଯୋଗୁଁ ଝିଅଟି ଗର୍ଭବତୀ ହେଇଗଲା । ଏକଥା ସମସ୍ତେ ଜାଣିଲେ ଏବଂ ପିଲାଟିର ଜନ୍ମ ମଧ୍ୟ ହେଲା । ତାପରେ ପ୍ରଶ୍ନ ଉଠିଲା ଯେ ବାହାଘର ତ ହେଇନି ପିଲା କେମିତି ହେଲା ? କାହାର ପିଲା ? ଡରିଯାଇ ସେହି ମୂଢ଼ ଝିଅଟି କହିଦେଲା ଯେ ପିଲାଟି ସେଇ ମହାତ୍ମାଙ୍କର । ଘର ଲୋକେ ରାଗିଗଲେ, ଏତେ ପ୍ରସିଦ୍ଧ ମହାତ୍ମା, ତାଙ୍କର ପୁଣି ଏଇ କାମ । ତାଙ୍କର ବହୁତ ବଦନାମ ହେଲା । ମହାତ୍ମା ତ କିଛି କରି ନ ଥିଲେ । ଏକଦମ୍ ନିଷ୍ପାପ ଥିଲେ । ସେହି ଝିଅର ଘରଲୋକେ ଛୁଆଟିକୁ ମହାତ୍ମାଙ୍କ ପାଖକୁ ଆଣି କହିଲେ, "ନିଅ ତୁମ ପିଲା, ସମ୍ଭାଳ ତାକୁ ।" ମହାତ୍ମା ଭାବିଲେ ଏବେ କିଛି କହିଲେ କେହି ଶୁଣିବେନି, କିଛି ଲାଭ ହେବନି । ମୁଁ କିଛି କରିନି, ଇଏ ମୋର ନୁହଁ, ଆଜି କହିବା କିଛି ଦରକାର ନାହିଁ । ତେଣୁ ସେ କହିଲେ, "ଆଚ୍ଛା ଏମିତି କଥା, ତ ଦିଅ ଛୁଆକୁ ।" ତାଙ୍କର ବହୁତ ନିନ୍ଦା ହେଲା କିନ୍ତୁ ସେ କିଛି ଚିନ୍ତା କଲେ ନାହିଁ। ସେ ପିଲାଟିକୁ କ୍ଷୀର ପିଆଇଲେ, ତାର ସେବା ଯତ୍ନ କଲେ । ଏହିପରି ଦିନ ବିତିବାରେ ଲାଗିଲା ।

ଝିଅଟି ତ ଭୁଲ କାମ କରିଥିଲା । ମହାତ୍ମାଙ୍କୁ ଅପଶବ୍ଦ କହିବା, ଗାଳି ଦେବା ସେ ସହିପାରିଲା ନାହିଁ । ତାଙ୍କ ମନରେ ବିକାର ନାହିଁ , ଦୁଃଖ ନାହିଁ କି କ୍ରୋଧ ବି ନାହିଁ । ଆଉ ରହି ନ ପାରି ସେ ନିଜ ବାପାଙ୍କୁ କହିଦେଲା ଯେ ମୁଁ ସେଦିନ ଆପଣଙ୍କୁ ମିଛ କହିଥିଲି । ସେ ତ ବଡ ସନ୍ଥ ମହାତ୍ମା। ଏଥିରେ ତାଙ୍କର କିଛି ଦୋଷ ନାହିଁ । ଅମୁକ ଲୋକ ସାଙ୍ଗରେ ମୋର ସମ୍ବନ୍ଧ ଥିଲା। ଏବେ ତ ଘରଲୋକଙ୍କୁ ଲାଜ ମାଡିଲା । ଜଣେ ମହାତ୍ମାଙ୍କର ଆମେ ଏପରି ଅସମ୍ମାନ କଲୁ? ସେମାନେ ତାଙ୍କ ପାଖକୁ ଯାଇ କ୍ଷମା ମାଗିଲେ । କହିଲେ, "ଆଜ୍ଞା ଆମେ ବଡ ଅପରାଧ କରି ପକେଇଲୁ । ଏବେ ଆମକୁ ଜଣା ପଡ଼ିଲା ଯେ ପିଲାଟି ଆପଣଙ୍କର ନୁହଁ । ଆପଣ ତାକୁ ଫେରେଇ ଦିଅନ୍ତୁ ।" ମହାତ୍ମା କହିଲେ- ଭଲ କଥା, ନେଇଯାଅ । ଏହା ହିଁ ବୈରାଗ୍ୟ । ଆଣି କରି ଥୋଇଦେଲ- ତାହାଲେ ବି ଠିକ୍, ଏବେ ମାଗୁଛ- ତା ବି ଠିକ୍ । ଏତେ ଦିନ ପର୍ଯ୍ୟନ୍ତ ମୁଁ ପାଳିଲି , ଏବେ ତାକୁ ଶିଷ୍ୟ କରିବି, ଏମିତି କିଛି ହେଲେ କହିଲେନି ।

ଏଠି ଧୀରେ ଧୀରେ ଭରତଙ୍କର ସାଧନା, ଭଗବାନଙ୍କ ନାମ ସ୍ମରଣ ଆଦି ସବୁ କିଛି କମ ହେବାକୁ ଲାଗିଲା । ଜପ ଭିତରେ ବି ଦେଖୁଥିଲେ ଯେ ହରିଣ ଛୁଆଟି ଠିକ୍ ଭାବରେ ବସିଛି କି ନାହିଁ । ତାଙ୍କ ଦଶା ଏମିତି ହୋଇଗଲା । ଦିନେ ସେହି ହରିଣ ଛୁଆଟି କୁଆଡେ ଚାଲିଗଲା । କୁଆଡ଼େ ଗଲା କିଛି ଜଣା ପଡିଲା ନାହିଁ । ତାକୁ ନ ପାଇ ସେ କାନ୍ଦିବାକୁ ଚାଲିଲେ । ମୋ ହରିଣ ଛୁଆ କୁଆଡ଼େ ଗଲା, ଏତେ ଛୋଟ ଛୁଆଟି ମୋ ବିନା କେମିତି ରହିବ ? ସିଂହ ତାକୁ ଖାଇଯିବ ନି ତ ? ଶିକାରୀ ଶିକାର କରିବନି ତ ? କୋଉଠି ପଡିଯିବନି ତ ? ସେହି ଭୂମି ଧନ୍ୟ ଯେଉଁଠି ସେ ଚାଲୁଛି । ରାଜା ଭରତ ଏଇମିତି ଗୁଡ଼େ ଇଆଡୁ- ସିଆଡୁ ଗପି ଚାଲିଲେ । ତା ବିନା ମୋ ଜୀବନ ବ୍ୟର୍ଥ କହି ସେ କାନ୍ଦିବାକୁ ଲାଗିଲେ । ଆପଣମାନେ ହସୁଛନ୍ତି କିନ୍ତୁ ତାଙ୍କ ଦୁଃଖ ସେ ହିଁ ବୁଝୁଥିଲେ । ଦେଖନ୍ତୁ, ସାଧନା କରୁ କରୁ ମଧ୍ୟ କେବେ କେବେ ଆସକ୍ତି ହେଇଯାଏ । ଏକଥା ଆମେ ମଧ୍ୟ ବହୁତ ଥର ଦେଖିଛୁ । ଆଶ୍ରମକୁ ଆସନ୍ତି ବେଦାନ୍ତ ଶିଖିବା ପାଇଁ । କିନ୍ତୁ ସେଠି ବି କାହା ସହିତ ଆସକ୍ତି ହେଇପାରେ । ଲୋକେ ନିଜ ମା-ବାପାଙ୍କୁ ଛାଡ଼ି ଦିଅନ୍ତି ପୁଣି ଅନ୍ୟମାନଙ୍କୁ ମା-ବାପା ବନେଇ ନିଅନ୍ତି । ତାଙ୍କ ପାଇଁ ବ୍ରହ୍ମକୁ ମଧ୍ୟ ଛାଡ଼ିବା ପାଇଁ ରାଜି ହେଇ ଯାଆନ୍ତି । କିନ୍ତୁ ସନ୍ନ୍ୟାସୀ ସିଏ, ଯିଏ ଭଗବାନଙ୍କ ପାଇଁ ସଂସାରକୁ ଛାଡ଼ିଦିଏ ।

ସେହି ହରିଣ ପ୍ରତି ଆସକ୍ତି ତାଙ୍କୁ ଏତେ ଉଚ୍ଚ ସାଧନାରୁ ତଳକୁ ଟାଣି ଆଣିଲା । ତେଣୁ କୁହାଗଲା ଯେ ମନ ଉପରେ କେବେ ବି ଭରସା କର ନାହିଁ । ସେ କୋଉଠି ଯାଇ ଅଟକିଯିବ କହିହେବନି । ହରିଣ ତ ମିଳିଲାନି କିନ୍ତୁ ସେ ହରିଣକୁ ଝୁରି ଝୁରି ମରିଗଲେ, ଏବଂ **'ଅନ୍ତେ ୟା ମତିଃ ସା ଗତିର୍ଭବେତ୍'** ଜୀବନର ଅନ୍ତ ସମୟରେ ମନରେ ଯେଉଁପରି ବୃତ୍ତି ଥିବ ସେହିପରି ଗତି ପ୍ରାପ୍ତ ହେବ । ତେଣୁ ସେ ହରିଣ ଜନ୍ମ ପାଇଲେ । କିନ୍ତୁ ପୂର୍ବରୁ ସେ ଯେଉଁ ଭଗବଦ୍ ଭକ୍ତି କରି ଥିଲେ ତାହା ମଧ୍ୟ ବ୍ୟର୍ଥ ହୋଇପାରିବ ନାହିଁ । ସେହି ଭଗବଦ୍ ଭକ୍ତିର ପ୍ରଭାବ ଯୋଗୁଁ ସେହି ମୃଗଦେହ ପାଇ ମଧ୍ୟ ତାଙ୍କର ସ୍ମୃତି ରହିଲା ଯେ ସେ ପୂର୍ବରୁ କଣ ଥିଲେ ଏବଂ ହରିଣ ଜନ୍ମ କାହିଁକି ପାଇଲେ । ଏହି ସ୍ମୃତି ଯୋଗୁଁ ସେ ପ୍ରତୀକ୍ଷା କରିବାକୁ ଲାଗିଲେ । ଭାବିଲେ- ଏବେ ତ ଧୈର୍ଯ୍ୟ ଧାରଣ ବ୍ୟତୀତ ଆଉ କୌଣସି ଉପାୟ ନାହିଁ । ଏହି ଦେହର ମୃତ୍ୟୁ ହେଉ, ତାପରେ ଦେଖିବା । ଏହା ଭାବି ସେ ଶାନ୍ତିର ସହ ନିଜ ପ୍ରାରବ୍ଧ ଭୋଗିବାକୁ ଲାଗିଲେ । ସମୟ କ୍ରମେ ତାଙ୍କର ସେହି ହରିଣ ଦେହ ଚାଲିଗଲା । ପ୍ରଥମେ ସେ ରାଜର୍ଷି ଥିଲେ । ଏବେ ତାଙ୍କର ଜନ୍ମ ଏକ ବ୍ରାହ୍ମଣ କୂଳରେ ହେଲା । ବ୍ରାହ୍ମଣ ପରିବାରରେ ତାଙ୍କର ନାମ କଣ ଥିଲା, କୋଉଠି ଲେଖା ହୋଇନି । ତାଙ୍କୁ ସବୁଠାରେ ଜଡଭରତ କୁହାଯାଇଛି । ଏବେ ମଧ୍ୟ ତାଙ୍କର ପୂର୍ବ

ଜନ୍ମ ଗୁଡ଼ିକ ମନେ ଥିଲା । ତେଣୁ ସେ ଦୃଢ଼ ନିଶ୍ଚୟ କରି ନେଲେ ଯେ ଏବେ ମୁଁ କେଉଁଥିରେ ହେଲେ ମଧ୍ୟ ଆସକ୍ତ ହେବି ନାହିଁ । ମୁଁ କାହା ସହିତ କଥାବାର୍ତ୍ତା ହେବି ନାହିଁ ।

**ପ୍ରକ୍ଷାଳନାତ୍ ହି ପଂକସ୍ୟ ଦୂରାତ୍ ଅସ୍ପର୍ଶନଂ ବରଂ ।**

କାଦୁଅ ଲେସି ହୋଇ ତାକୁ ପୁଣି ଧୋଇବା ଅପେକ୍ଷା ତାଠାରୁ ଦୂରରେ ରହିବା ହିଁ ଠିକ୍ । ସେଥିରେ ହାତ ବି କାହିଁକି ଲଗେଇବା ? କୁହାଯାଏ ଯେ ଯାହା ପୁଅକୁ ସାପ କାମୁଡ଼ିଥାଏ ତା ମା ପାଳଦଉଡ଼ି ଦେଖିଲେ ଡରେ । ଭରତ ସର୍ବସଂଗ ଛାଡିଦେଲେ । କଥା ବି କହିଲେ ନାହିଁ । ମୂଢ଼ ଭଳି ଜଡ଼ବତ୍ ରହୁଥିଲେ । ଯଦିଓ ପୂର୍ବଜନ୍ମର ସମ୍ପୂର୍ଣ୍ଣ ଜ୍ଞାନ ତାଙ୍କ ପାଖରେ କରାମଳକବତ ସ୍ପଷ୍ଟ ଭାବରେ ଥିଲା । ଜ୍ଞାନର ଟିକିଏ ହେଲେ ଆବଶ୍ୟକତା ତାଙ୍କର ଏବେ ନ ଥିଲା । କିନ୍ତୁ ସେ ଜାଣିଶୁଣି ମୂର୍ଖ ପରି ରହୁଥିଲେ ।

ତାଙ୍କର ଅନ୍ୟ ଭାଇମାନେ ମଧ୍ୟ ଥିଲେ । ପିତା ସମସ୍ତଙ୍କର ଉପନୟନ ସଂସ୍କାର କଲେ । ୟାଙ୍କର ମଧ୍ୟ କଲେ । ତାଙ୍କୁ ପଚାଶ ଥର ଗାୟତ୍ରୀ ମନ୍ତ୍ର ଶିଖେଇଲେ । କିନ୍ତୁ ସେ ପ୍ରତ୍ୟେକ ଥର ଜାଣିଶୁଣି ଭୁଲ କହୁଥିଲେ , ଯେପରି କିଛି ଜାଣି ନାହାନ୍ତି । ପିତା ଭାବିଲେ କେତେ ମୂଢ଼ ଟେ, ଗାୟତ୍ରୀ ମନ୍ତ୍ର ବି ବୋଲି ପାରୁନି । ଦିନେ ପିତାଙ୍କ ଦେହାନ୍ତ ହେଇଗଲା ।

ଭାଇମାନେ ଭାବିଲେ ପାଠଶାଠ ତ ପଢିଲାନି ତାଙ୍କୁ ରକ୍ଷବାସରେ ଲଗେଇ ଦେଲେ, ସେ ଜାଣିଶୁଣି ଓଲଟା କାମ କରି ଦିଅନ୍ତି ଯାହା ଦ୍ୱାରା ସମସ୍ତେ ତାଙ୍କୁ ଦ୍ୱେଷ କରିବେ । ଭଲ ପାଇଲେ ସିନା ଆସକ୍ତି ଆସିବ । ଯେପରି ଭୂଇଁ ସମତଳ କରିବାକୁ କହିଲେ ଆହୁରି ଖୋଳି ପକେଇ ଗାତ କରି ଦେଉଥିଲେ । ଭାଇ ମାନେ ବି କେତେ ସହିବେ । ସେମାନେ ତାଙ୍କୁ ଘରୁ ବାହାର କରି ଦେଲେ । ସେ ଭାବିଲେ- ଭଲ ହେଲା ଛୁଟି ମିଳିଲା । ଏହିପରି ସେ ନିଜ ଭିତରେ ମଗ୍ନ ରହୁଥିଲେ ।

ଥରେ କିଛି ଡାକୁ ଦେବୀଙ୍କୁ ବଳି ଦେବା ପାଇଁ ଲୋକ ଖୋଜୁଥିଲେ । ତାଙ୍କୁ ଦେଖି ଭାବିଲେ ଯେ ବଢ଼ିଆ ହୃଷ୍ଟପୃଷ୍ଟ ବଳି ମିଳିଯାଇଛି । ନିଜ ଭିତରେ ମଗ୍ନ ରହୁଥିଲେ, ବେଶୀ ନ ଖାଇଲେ ମଧ୍ୟ ଭଲ ମୋଟା ସୋଟା ଥିଲେ । ଲୋକମାନେ ମିଛରେ ଖାଲି ଭାବୁଥାନ୍ତି ଯେ ବେଶୀ ଖାଇଲେ ପିଇଲେ ଶକ୍ତି ଆସେ । ମିଛ କଥା । ଏପରି ହେଉଥିଲେ ଧନୀ ଲୋକେ କାହିଁକି ବେମାର ପଡନ୍ତେ ? ତାଙ୍କ ଟେବୁଲ ଉପରେ କାଜୁ, ବାଦାମ, ପିସ୍ତା, ସବୁ ଥୁଆ ହୋଇଥାଏ, ତାକୁ ତାଙ୍କର ଚାକର ମାନେ ଖାଆନ୍ତି , ଏମାନେ ଖାଲି ଟେବଲେଟ୍ ଖାଆନ୍ତି । ଏତେ ପ୍ରକାର ଔଷଧ ଯେ ହଜମ ମଧ୍ୟ ହୁଏ ନାହିଁ । ମୋଟା ହେବା ଏବଂ ଶକ୍ତିଶାଳୀ ହେବା ଦୁଇଟା ଅଲଗା କଥା ।

ଏହିପରି ଭରତ ନିଜ ଭିତରେ ମଗ୍ନ ରହୁଥିଲେ । ଡାକୁମାନେ ଯେତେବେଳେ ତାଙ୍କୁ ଦେଖିଲେ ତ ବଳି ଦେବା ପାଇଁ ନେଇଗଲେ । ସେ ବି ଖୁସୀ ହେଲେ ଯେ ଭଲ ହେଲା । ତାଙ୍କୁ ଲାଲ ଲୁଗା ପିନ୍ଧେଇ ଡାକୁ ମାନେ ଭଦ୍ରକାଳୀଙ୍କ ସାମନାକୁ ନେଇଗଲେ। ତାଙ୍କୁ ମାରିବାକୁ ଯାଉଥିବା ସମୟରେ ଭଦ୍ରକାଳୀ ପ୍ରକଟ ହେଇଗଲେ ଏବଂ ଯେଉଁ ତଲବାରରେ ଡାକୁ ସରଦାର ତାଙ୍କୁ ମାରିବାକୁ ଯାଉଥିବା ତା'ରି ଦ୍ୱାରା ଡାକୁକୁ ମାରିଦେଲେ। ତାପରେ ଦେବୀ ସେଠାରେ ନୃତ୍ୟ କରିବାକୁ ଲାଗିଲେ ଏବଂ ଅନ୍ୟ ଡାକୁ ମାନଙ୍କୁ ମଧ୍ୟ ମାରିଦେଲେ । ତାଙ୍କୁ ଛାଡିଦେଲେ । ଭଗବାନ ନିଜ ଭକ୍ତଙ୍କର ଅପମାନ ସହି ପାରନ୍ତିନି । ଜଡ ଭରତ କହିଲେ ମୁଁ ତ ମରି ଥାଆନ୍ତି, ଦେବୀ କୁଆଡୁ ଆସି ମତେ ବଞ୍ଚେଇ ଦେଲେ । ଠିକ୍ ଅଛି, କହି ଚାଲିଗଲେ ।

## ଜଡଭରତ ଏବଂ ରାଜା ରହୁଗଣଙ୍କ ଭେଟ

ରହୁଗଣ ନାମରେ ଜଣେ ରାଜା ଥିଲେ । ଦିନେ ସେ କପିଳ ମୁନିଙ୍କ ଠାରୁ ବ୍ରହ୍ମଜ୍ଞାନ ପ୍ରାପ୍ତ କରିବା ପାଇଁ ପାଲିଙ୍କିରେ ବସି ଯାଉଥିଲେ । ତାଙ୍କର ଚାରିଟି ଲୋକ ଥିଲେ ଯିଏ ପ୍ରତିଦିନ ତାଙ୍କ ପାଲିଙ୍କି ବୋହୁ ଥିଲେ । କିନ୍ତୁ ସେ ଦିନ କେବଳ ତିନୋଟି ଆସିଥିଲେ । ଚତୁର୍ଥ ଲୋକଟି କୁଆଡେ ଚାଲିଯାଇଥିଲା । ସେହି ତିନିଜଣ ଦେଖିଲେ ଯେ ଜଣେ ହୃଷ୍ଟପୃଷ୍ଟ , ବ୍ୟକ୍ତି ବଢିଆ ମୋଟା ହେଇଛି । ସେଠି ବସିଛି । କହିଲେ - ଏଇ ଉଠ, ପାଲିଙ୍କି ଉଠା । ଏହା ଶୁଣି ଜଡ଼ଭରତ ପାଲିଙ୍କି ବୋହିବାରେ ଲାଗି ପଡିଲେ । ପାଲିଙ୍କି ବୋହିବା ମଧ୍ୟ ଏକ କଳା । କାହା ଉପରେ ବହୁତ ବେଶୀ ଜିନିଷ ଲଦି ଦେଇ କହିବା ଯେ ଚାଲ, ସେ ଚାଲି ପାରିବ କି ? ଜଡ ଭରତଙ୍କୁ ପାଲିଙ୍କି ବୋହିବା ତ ଆସୁ ନ ଥିଲା । ସେ ନିଜ ମସ୍ତିରେ ପୋକ-ଜୋକଙ୍କୁ ଗୋଡତଳୁ ବଞ୍ଚେଇ-ବଞ୍ଚେଇ ଚାଲୁଥିଲେ। ତେଣୁ ପାଲିଙ୍କି ବାରମ୍ବାର ହଲୁଥିଲା । ରାଜା ରାଗିଗଲେ । କହିଲେ "ତୁମକୁ ପାଲିଙ୍କି ବୋହି ବି ଆସୁନି ।" ତାପରେ ରାଜା ଭାବିଲେ ଯେ ଯାର ସଂସ୍ପର୍ଶରେ ଆସିଲେ ଅନ୍ୟ ମାନେ ମଧ୍ୟ ଠିକ୍ ଭାବରେ କାମ କରିବେ ନାହିଁ । ତେଣୁ ଭାବିଲେ ଯେ ଯାକୁ ଗୁଡ଼େ ଗାଳି ଦେବା ଉଚିତ୍ ।

ଯେତେବେଳେ ରାଜା ଗାଳି ଦେଲେ । ଅନ୍ୟମାନେ କହିଲେ - ମହାରାଜ ଆମେ ଭଲ ଭାବରେ ପାଲିଙ୍କି ବୋହି ପାରୁଛୁ । କିନ୍ତୁ ଏଇ ନୂଆ ଲୋକଟା ଓଲଟା ସିଧା କରି ହଲେଇ ଦେଉଛି । ରାଜା କହିଲେ ତାକୁ ଠିକ୍ ଭାବରେ ଶିଖାଅ, ଆଉ ସିଧା ଚାଲ। କିନ୍ତୁ ସେ କିଛି ବି ଶୁଣିଲେ ନାହିଁ । ସେ ନିଜ ଇଚ୍ଛାରେ ଚାଲିଲେ । ପୁଣି ପାଲିଙ୍କି ହଲିଲା।

ତେଣୁ ରାଜା ଭାବିଲେ ଯେ ମୁଁ ଯଦି ଯାଙ୍କୁ ଦଣ୍ଡ ନ ଦେବି ତାହାଲେ ଅନ୍ୟମାନେ ଭାବିବେ ଯେ ଯେମିତି କାମ କଲେ ମଧ୍ୟ ଚଳିଯିବ । ତେଣୁ ସେ ପୁଣି ଗାଳି ଦେବାକୁ ଲାଗିଲେ । ପୁଣି ପରଦା ଉଠେଇ ଦେଖିବାକୁ ଲାଗିଲେ ଯେ ଲୋକଟା କିଏ ! ଆଉ ଯେତେବେଳେ ଦେଖିଲେ ଯେ ଭଲ ମୋଟା-ସୋଟା ହେଇ ଲୋକଟେ, ତ କହିଲେ-

**କିମିଦମରେ ତ୍ୱଂ ଜୀବନ୍ମୃତୋ**
**ମାଂ କଦର୍ଥିକୃତ୍ୟ ଭର୍ତୃଶାସନମତିଚରସି**
**ପ୍ରମତ୍ତସ୍ୟ ଚ ତେ କରୋମି ଚିକିତ୍ସାଂ ଦଣ୍ଡପାଣିରିବ**
**ଜନତାୟା ଯଥା ପ୍ରକୃତିଂ ସ୍ୱାଂ ଭଜିଷ୍ୟସ ଇତି ॥ (୫.୧୦.୭)**

ତୁମେ ମୋର ଅପମାନ କରୁଛ ? ମୋ କଥା ମାନୁନ ? ମୁଁ ଦଣ୍ଡଧାରା ରାଜା । ଏବେ ତୁମକୁ ଦଣ୍ଡ ଦେବି । ଏତେ ମୋଟା-ତାଜା ତ ଦିଶୁଛ, କିନ୍ତୁ ବୋଧେ ଥକି ପଡ଼ିଲଣି ? ଭଲ ଖାଇଲା ପରି ତ ଦିଶୁଛ । ବଡ କଷ୍ଟ ହଉଛି , ନାହିଁ ? ଭରତଙ୍କୁ ଏସବୁ ଶୁଣି ଦୁଃଖ ହେଲାନି କିନ୍ତୁ ସେ ମଧ୍ୟ ରାଜାଙ୍କୁ ଭଲ କରି ଦି ପଦ ଶୁଣେଇ ଦେଲେ ।

**ତ୍ୱୟୋଦିତଂ ବ୍ୟକ୍ତମବିପ୍ରଲବ୍ଧଂ**
**ଭର୍ତୁଃ ସ ମେ ସ୍ୟାଦ୍ୟଦି ବୀର ଭାରଃ ।**
**ଗନ୍ତୁର୍ୟଦି ସ୍ୟାଦଧିଗମ୍ୟମଧ୍ୱା**
**ପୀବେତି ରାଶୌ ନ ବିଦାଂ ପ୍ରବାଦଃ ॥ (୫.୧୦.୯)**

କହିଲେ – "ଆପଣ ଯାହା କହୁଛନ୍ତି ତାହା ଆପଣଙ୍କ ତାହା ଦୃଷ୍ଟିକୋଣରୁ ସତ୍ୟ ଅଟେ । ମୋତେ ସତରେ ଭାରୀ ଲାଗୁଛି । ମୁଁ ଥକି ଯାଉଛି । ଯଦି ମୁଁ ଏହି ଶରୀର ଅଟେ, ଆଗରେ ମାର୍ଗ ଅଛି, ଚାଲିବାର ସ୍ଥାନ ମଧ୍ୟ ଅଛି, ପାଲିଙ୍କି ମଧ୍ୟ ଯଦି ମୋ ଉପରେ ଅଛି, ତାହାହେଲେ ଏହି ଭାର ମଧ୍ୟ ସତ୍ୟ, ମୋର ସ୍ଥୁଳତା ଆଦି ମଧ୍ୟ ସତ୍ୟ । ପ୍ରକୃତରେ କିନ୍ତୁ ଏହି ସ୍ଥୁଳତା, ଦୁର୍ବଳତା, ଜର୍ଜରତା ଆଦି ସବୁ ଶରୀରର ଧର୍ମ । ତାଦ୍ୱାରା ମୋର କିଛି ଲାଭ ହେବନି କି ହାନି ହେବନି । ଆଉ ଦ୍ୱିତୀୟ କଥା ହେଲା ଯେ ଏଇ ଯୋଉ ଆପଣ କହିଲେ ଯେ ଭଲ କରି ଚାଲ, ମୁଁ ତ ସେଇମିତି ଚାଲିବି ଯେମିତି ମୋତେ ଚାଲିଆସେ । ଆଉ ତୃତୀୟ କଥା ଆପଣ କହିଲେ ଯେ ଆପଣ ରାଜା ଏବଂ ମୁଁ ଦାସ-ତ ମହାରାଜ, ଏହି ଦୁନିଆ ବଡ ବିଚିତ୍ର , ଚକ୍ର ପରି । ଏଠି କାହାର ବି ଭରସା ନାହିଁ ଯେ କେବେ କିଏ

କଣ ହେବ ? ଲୋକମାନଙ୍କୁ ନିଜ ରାଜ୍ୟ ଆଦି ପ୍ରତି ଯେଉଁ ଅଭିମାନ ହୁଏ ତାହା ବ୍ୟର୍ଥ। ଭଗବାନ ରାଜ୍ୟ ଆଦିକୁ କିଛି ବଡ଼ ଜିନିଷ ଭାବନ୍ତି ନାହିଁ। ଆଜି ଜଣଙ୍କୁ ଦେଲେ ତ କାଲି ଆଉ ଜଣଙ୍କୁ । କେତେବେଳେ ମୁଁ ରାଜା ଆଉ ଆପଣ ଦାସ ମଧ୍ୟ ହେଇଥିବା ।"

ତୈମୁରଲଂଗ ବିଷୟକ ଗୋଟିଏ ଗପ ଅଛି । ସେ ଜଣେ ମୁସଲମାନ ଶାସକ ଥିଲା । ସେ ଛୋଟା ଥିଲା । ସେ ଗୋଟେ ଦେଶ ଉପରେ ଆକ୍ରମଣ କଲା । ସେ ଦେଶର ରାଜାଙ୍କର ଗୋଟିଏ ଆଖି ଥିଲା ଏବଂ ଯୁଦ୍ଧରେ ସେ ହାରି ଗଲେ । ତୈମୁରଲଂଗ ରାଜସିଂହାସନ ଉପରେ ବସିଥିଲା । ସେତେବେଳେ ସେହି ରାଜାଙ୍କୁ ନେଇ ତା ସମ୍ମୁଖରେ ବସାଇଲେ । ତାର ଗୋଟିଏ ଆଖି ଦେଖି ସେ ଜୋରରେ ହସିବାକୁ ଲାଗିଲା । ସେ ରାଜାଙ୍କୁ ଅପମାନର ଅନୁଭବ ହେଲା । ସେ କହିଲେ, "ଆପଣ ହସୁଛନ୍ତି ? ମୋର ଗୋଟିଏ ଆଖି ଦେଖି ଆପଣଙ୍କୁ ହସ ମାଡୁଛି ତ ? ଆଜି ଆପଣ ଏହି ସିଂହାସନ ଉପରେ ବସିଛନ୍ତି , କିନ୍ତୁ କାଲି ପର୍ଯ୍ୟନ୍ତ ତ ମୁଁ ବସିଥିଲି । ହେଇପାରେ ଆଗକୁ କେବେ ମୁଁ ବସିବି ।" ଏହା ଶୁଣି ତୈମୁରଲଂଗ କହିଲା, "ସେଇଥିପାଇଁ ତ ମୋତେ ହସ ମାଡୁଛି । ବୋଧେ ଭଗବାନଙ୍କ ଦୃଷ୍ଟିରେ ଏହି ରାଜସିଂହାସନର କୌଣସି ହେଲେ ମହତ୍ତ୍ୱ ନାହିଁ । ଅନ୍ଧ ହାତରୁ ନେଇ ଛୋଟା ହାତରେ ଦେଇ ଦେଲେ । ଠିକ୍ ନା ନାହିଁ , ଗୋଟେ ଆଖିବାଲା ଠାରୁ ନେଇ ଗୋଟେ ଗୋଡ ବାଲାକୁ ଦେଇ ଦେଲେ ।"

ତେଣୁ ଭରତ କହିଲେ କିଏ ସ୍ୱାମୀ, କିଏ ସେବକ, ମୁଁ ତ ଉନ୍ମତ୍ତ ଅଟେ । ମୋତେ କିଛି ଫରକ ପଡିବନି । ମୁଁ ଯେମିତି ଚାଲିଜାଣେ ସେହି ପରି ଚାଲିବି । ଯେତେବେଳେ ସେ ଏମିତି କଥା କହିଲେ ରାଜା ରହୁଗଣ ବୁଝିଗଲେ ଯେ ମୁଁ କିଛି ଭୁଲ କରି ଦେଲି । କେହି ପାଲିଙ୍କି ବୋହିଲା ବାଲା ବା ସାଧାରଣ ବ୍ୟକ୍ତି ଏମିତି କଥା କହିପାରିବନି । ଇଏ ଆତ୍ମଜ୍ଞାନ କଥା କହିଲେଣି । ରାଜା କହିଲେ - 'ରୁହ' ଏବଂ ନିଜେ ପାଲିଙ୍କିରୁ ଡେଇଁ ପଡିଲେ । ତାଙ୍କୁ ପ୍ରଣାମ କରି ରାଜା କହିଲେ -

## ରାଜା ରହୂଗଣଙ୍କୁ ଜଡଭରତଙ୍କ ଉପଦେଶ

**କସ୍ତ୍ୱଂ ନିଗୂଢଶ୍ଚରସି ଦ୍ୱିଜାନାଂ**
**ବିଭର୍ଷି ସୂତ୍ରଂ କତମୋଽବଧୂତଃ ।**
**କସ୍ୟାସି କୁତ୍ରତ୍ୟ ଇହାପି କସ୍ମାତ୍**
**କ୍ଷେମାୟ ନଶ୍ଚେଦସି ନୋତ ଶୁକ୍ଲଃ ॥ (୫.୧୦.୧୬)**

ହେ ବ୍ରାହ୍ମଣ ! ଆପଣ କିଏ ? ଆପଣଙ୍କ ତେଜ ଲୁଚିକରି ରହିଛି । ମୁଁ ବଡ ଭୁଲ କରି ଦେଲି । ମୋତେ କୁହନ୍ତୁ, ଯେଉଁ କପିଳମୁନିଙ୍କ ପାଖକୁ ମୁଁ ସତ୍‌ସଂଗ ପାଇଁ ଯାଉଛି, ସେ ଆପଣଙ୍କ ରୂପରେ, ନିଜେ ମୋ ପାଖକୁ ମୋ ଉପରେ ଦୟା କରିବା ପାଇଁ ଆସି ନାହାନ୍ତି ତ ? ଆପଣ କିଏ ? ଆପଣଙ୍କ କଥା ମତେ କୁହେଳିକା ପରି ଲାଗୁଛି । ଆପଣ କହିଲେ ଯେ ଆପଣଙ୍କ ଦ୍ୱାରା ନା ପରିଶ୍ରମ ଆଦି କରାଯାଉଛି ନା ମୋଟାପଣ ଆପଣଙ୍କ ପାଇଁ କିଛି ଅର୍ଥ ରଖୁଛି । ଏହା ଶୁଣିବାରେ ଅତି ବିଚିତ୍ର ଲାଗୁଛି । ମୁଁ ତ ଆପଣଙ୍କୁ ଦେହ ସହିତ ଦେଖୁଛି । ଆପଣଙ୍କ ମୋଟାପଣିଆ ମଧ୍ୟ ଦେଖୁଛି । ଶ୍ରମ କରିବା ମଧ୍ୟ ଦେଖୁଛି । କିନ୍ତୁ ଆପଣତ କହୁଛନ୍ତି ଯେ ନା କୌଣସି ଶ୍ରମ ଅଛି ନା ମୋଟାପଣ । ଏକଥା ମୁଁ ଆଦୌ ବୁଝିପାରୁନି । ଆପଣ କହିଲେ ନା କିଏ ରାଜା ନା କିଏ ସେବକ । କିନ୍ତୁ ବର୍ତ୍ତମାନ ତ ଏଇଆ ହିଁ ସତ୍ୟ ଯେ ମୁଁ ରାଜା ଏବଂ ଏମାନେ ମୋର ସେବକ । ତେଣୁ ଆପଣ କିପରି କହିପାରିବେ ଯେ ରାଜା-ସେବକଙ୍କ ମଧ୍ୟରେ କୌଣସି ସମ୍ବନ୍ଧ ନାହିଁ । ଏପରି କହିଲେ ତ ଏଇ ସମସ୍ତ ସାଂସାରିକ ବ୍ୟବହାର ଯାହା ଦୃଶ୍ୟମାନ ତା ସମାପ୍ତ ହେଇଯିବ । ଆପଣ କଥା ମୁଁ ବୁଝିପାରୁନାହିଁ । ସେତେବେଳେ ସେହି ବ୍ରାହ୍ମଣରୂପୀ ଭରତ ରାଜାଙ୍କୁ ତାଙ୍କ ପାଲିଙ୍କି ବାହକଙ୍କ ସମ୍ମୁଖରେ ଗାଳି ଦେଇ କହିଲେ -

**ଅକୋବିଦଃ କୋବିଦବାଦବାଦାନ୍**

**ବଦସ୍ୟଥୋ ନାତିବିଦାଂ ବରିଷ୍ଠଃ ।**

**ନ ସୂରୟୋ ହି ବ୍ୟବହାରମେନଂ**

**ତତ୍ତ୍ୱାବମର୍ଶେନ ସହାମନନ୍ତି ॥ (୫.୧୧.୧)**

ତୁମେ ମୂଢ଼ ହେଲେ ମଧ୍ୟ ଜ୍ଞାନୀମାନଙ୍କ ପରି କଥା କହୁଛ । ଜ୍ଞାନୀମାନେ ବ୍ୟବହାର ଏବଂ ତତ୍ତ୍ୱଜ୍ଞାନକୁ ମିଶାନ୍ତି ନାହିଁ । ମୁଁ ଯେଉଁ କଥା କହିଥିଲି ତାହା ତତ୍ତ୍ୱଦୃଷ୍ଟିରୁ କହିଥିଲି । ତୁମେ ଯେଉଁ କଥା କହୁଛ ତାହା ନାମ-ରୂପର ଉପାଧି ଦୃଷ୍ଟିରୁ କହୁଛ । ଏହା ସତ୍ୟ ନୁହଁ । କିଏ ସ୍ୱାମୀ-ସେବକ କହିଲ ଦେଖି ?

**ତାବାନୟଂ ବ୍ୟବହାରଃ ସଦାବିଃ**

**କ୍ଷେତ୍ରଜ୍ଞସାକ୍ଷ୍ୟୋ ଭବତି ସ୍ଥୂଳସୂକ୍ଷ୍ମଃ ।**

**ତସ୍ମାନ୍ମନୋ ଲିଙ୍ଗମଦୋ ବଦନ୍ତି**

**ଗୁଣାଗୁଣତ୍ୱସ୍ୟ ପରାବରସ୍ୟ ॥ (୫.୧୧.୭)**

ଯେଉଁ ପର୍ଯ୍ୟନ୍ତ ଆମେ ନିଜର ସ୍ଥୂଳ ଶରୀର ଏବଂ ସୂକ୍ଷ୍ମ ଶରୀର ସହିତ ତାଦାତ୍ମ୍ୟ କରି ରହିଥିବା ସେ ପର୍ଯ୍ୟନ୍ତ ଏହି ସମସ୍ତ ବ୍ୟବହାର ଦେଖାଯାଉଥିବ । କିନ୍ତୁ ଏଥିରୁ ମୁକ୍ତ ହୋଇ ଥରେ ଯଦି ନିଜ ଆତ୍ମସ୍ୱରୂପରେ ରହି ଦେଖିବା ତେବେ ସମସ୍ତ ବ୍ୟବହାର ନିର୍ମୂଳ ହେଇଯିବ । ସେତେବେଳେ ସବୁକିଛି କେବଳ ମାୟାର ଖେଳ ପରି ଦେଖାଯିବ ।

**ନ ଯାବଦେତାଂ ତନୁଭୃନ୍ନରେନ୍ଦ୍ର**

**ବିଧୂୟ ମାୟାଂ ବୟୁନୋଦୟେନ**

**ବିମୁକ୍ତସଂଗୋ ଜିତଷଟ୍‌ସପତ୍ନୋ**

**ବେଦାନ୍ତତତ୍ତ୍ୱଂ ଭ୍ରମତୀହ ତାବତ୍ ॥(୫.୧୧.୧୫)**

ମନୁଷ୍ୟ ଯେଉଁ ପର୍ଯ୍ୟନ୍ତ ଆତ୍ମତତ୍ତ୍ୱକୁ ନ ଜାଣିବ ସେ ପର୍ଯ୍ୟନ୍ତ ମାୟାରେ ବୁଲୁଥିବ । କାମ, କ୍ରୋଧ, ଆଦି ଶତ୍ରୁମାନେ ତାକୁ ବହୁତ କଷ୍ଟ ଦେଉଥିବେ । ସେମିତି ତ ଏହି ସଂସାର ବହୁତ ଭଲ, କିନ୍ତୁ ଜଲ୍‌ଦି ଛାଡ଼ି ହୁଏ ନାହିଁ । ତାକୁ ଛାଡ଼ିବାର ଉପାୟ ହେଲା-

**ଗୁରୋର୍ହରେଶ୍ଚରଣୋପାସନାସ୍ତ୍ରୋ**

**ଜହି ବ୍ୟଲୀକଂ ସ୍ୱୟମାତ୍ମମୋଷମ୍ ।।(୫.୧୧.୧୭)**

ଭଗବାନ ଶ୍ରୀହରିଙ୍କର ଏବଂ ସଦ୍‌ଗୁରୁଙ୍କ ଚରଣର ଉପାସନା । ଏହା ଦ୍ୱାରା ସମସ୍ତ ମୋହ ଦୂର ହୋଇଯାଏ । ନ ହେଲେ ଯେମିତି ଶ୍ରୀଶଙ୍କରାଚାର୍ଯ୍ୟ କହୁଛନ୍ତି -

**ଶରୀରଂ ସୁରୂପଂ ଯଥା ବା କଲତ୍ରଂ**

**ଯଶଶ୍ଚାରୁଚିତ୍ରଂଧନଂ ମେରୁତୁଲ୍ୟମ୍ ।**

**ମନଶ୍ଚେନ୍ନ ଲଗ୍ନଂ ହରେରଙ୍ଘ୍ରିପଦ୍ମେ**

**ତତଃ କିଂ ତତଃ କିଂ ତତଃ କିଂ ତତଃକିମ୍।। (ଗୁର୍ବଷ୍ଟକମ୍-୧)**

ଜଣେ ଅପାର ଧନ-ବୈଭବ ପ୍ରାପ୍ତ କରିନେଲେ ମଧ୍ୟ ଯଦି ତାର ମନ ଶ୍ରୀଗୁରୁଙ୍କ ଚରଣରେ ସମର୍ପିତ ନ ହୋଇଛି ତେବେ ତାର ସବୁ ସମ୍ପତ୍ତି କେବଳ ବିପତ୍ତି ହୋଇ ରହିଯିବ । ସଦ୍‌ଗୁରୁଙ୍କ ଚରଣର ଭକ୍ତି ହିଁ ସାଂସାରିକ ବନ୍ଧନରୁ ମୁକ୍ତ କରେଇ ପାରିବ । ଜଡ ଭରତ ଏପରିଭାବେ କହିବାରୁ ରାଜା ବୁଝିଗଲେ । ସେ ବାରମ୍ବାର ବ୍ରାହ୍ମଣ ଦେବତାଙ୍କୁ ନମସ୍କାର କଲେ । ପୁଣି କହିଲେ - ଭଗବାନ ଆପଣ ଯେଉଁ ତତ୍ତ୍ୱଦୃଷ୍ଟି ଏବଂ ବ୍ୟାବହାରିକ ଦୃଷ୍ଟି କଥା କହିଲେ, ତାହା ମୁଁ ଭଲ ଭାବେ ବୁଝି ପାରିଲି ନାହିଁ । ଏହି ସମସ୍ତ ବ୍ୟବହାର ତ ସତ୍ୟ ପରି ଦିଶୁଛି , ବ୍ୟାବହାରିକ ହିଁ ସତ୍ୟ, ପରମାର୍ଥିକ ସତ୍ୟ ନୁହଁ । ଏହିକଥା ମୁଁ ବୁଝି ପାରିଲି ନାହିଁ । ଆପଣ ମୋତେ ଭଲ ଭାବରେ ବୁଝାଇ ଦିଅନ୍ତୁ । ସେ କହିଲେ, "ଦେଖ, ଏହି ପୃଥିବୀରୁ ଅନ୍ନ ଉତ୍ପନ୍ନ ହେଲା ଏବଂ ସେହି ଅନ୍ନର ପରିଣାମରୁ ଏହି ଦେହ ତିଆରି ହେଲା , ଠିକ୍ ତ ? ଗୋଟିଏ ଏଇ ପୃଥିବୀ ପୁଣି ତା ଉପରେ ଏ ଶରୀର ରୂପୀ ଦ୍ୱିତୀୟ ପୃଥିବୀ । ତା ଉପରେ ପାଲିଙ୍କି ରହିଛି । ତାହା ମଧ୍ୟ ମାଟି । ସେ ମାଟି ଭିତରେ କିଏ ବସିଛି ? ତାହା ମଧ୍ୟ ଆଉ ଏକ ମାଟି । ଆଉ ସେ ନିଜକୁ କହୁଛି 'ରାଜା' । ମାଟିର ଗୋଟିଏ ଟେଳା ଉପରେ ଆଉ ଗୋଟିଏ ଟେଳା, ତା ଉପରେ ତୃତୀୟ ଟେଳା, ଆଉ ସେହି ଟେଳା ଟା କହୁଛି 'ମୁଁ ରାଜା', ଏବେ ଭାବିଲ ଦେଖି ତୁମେ କଣ କହୁଛ ?"

**ଅୟଂ ଜନୋ ନାମ ଚଲନ୍ ପୃଥିବ୍ୟାଂ**
**ୟଃ ପାର୍ଥିବଃ ପାର୍ଥିବ କସ୍ୟ ହେତୋଃ ।**
**ତସ୍ୟାପି ଚାଙ୍ଘ୍ର୍ୟୋରଧି ଗୁଲ୍ଫଜଂଘା**
**ଜାନୂରୁମଧ୍ୟୋରଶିରୋଧରାଂସାଃ ॥ (୫.୧୨.୫)**

**ଅଂସେଽଧି ଦାବୀ ଶିବିକା ଚ ୟସ୍ୟାଂ**
**ସୌବୀରରାଜେତ୍ୟପଦେଶ ଆସ୍ତେ ॥ (୫.୧୨.୬)**

ଏହି ଶରୀର ମାଟିର ଟେଲା ଟେ । ଠିକ୍ ନା ନାହିଁ ? ଏହାକୁ ପୁଣି ତତ୍ତ୍ୱ କଥା କୁହାଯାଏ । ପୃଥିବୀ କଣ, ଦେହ କଣ ? ପାଲିଙ୍କି କଣ ? ଏହା ବିଚାର କରି ଦେଖ, ସବୁ କିଛି ମାଟିରେ ମିଶିଯିବ । ଏହି ମାଟି ହିଁ ଭିନ୍ନ ଭିନ୍ନ ରୂପରେ ସାମନାକୁ ଆସିଗଲା , ଆଉ ତୁମେ ତାକୁ ଭିନ୍ନ-ଭିନ୍ନ ନାମ ମଧ୍ୟ ଦେଇଦେଲ । କେବଳ ଏତିକି ନୁହଁ ତୁମେ ତାକୁ ଶାଶ୍ୱତ ମଧ୍ୟ ମାନିନେଲ । ଆରେ ! ମୁଁ ବି ମରିଯିବି, ତୁମେ ବି ମରିଯିବ, ତେବେ ଏହା ଭରତର ମାଟି, ଏହା ରାଜାର ମାଟି--- ସେଥିରେ କଣ ପାର୍ଥକ୍ୟ ରହିବ ? କେହି ଦେଖେଇ ପାରିବ କି ? ଏଥିରେ କଣ ଆଉ କେଉଁ ପରମାର୍ଥ ବା ସତ୍ୟ ଅଛି ? ଟିକିଏ ଭାବି ଦେଖ ? ପୃଥିବୀ କୋଉଠୁ ଆସିଲା ? ପାଣିରୁ , ପାଣି ଅଗ୍ନିରୁ, ଅଗ୍ନି ବାୟୁରୁ , ବାୟୁ ଆକାଶରୁ , ଆକାଶ ମନରୁ , ଆଉ ମନ ପରମାତ୍ମାଙ୍କଠାରୁ । ତତ୍ତ୍ୱଦୃଷ୍ଟିରୁ ଦେଖିଲେ ଏହି ସଂସ୍କାର ତୁମକୁ କିଛି ହେଲେ ଦେଖା ହିଁ ଯିବନି । ଜବରଦସ୍ତି ନିଜକୁ କିଛି ହେଲେ ମାନି ନେଉଛ ଆଉ ତା ଅନୁସାରେ ସମସ୍ତ ବ୍ୟବହାର କରିବାରେ ଲାଗିଯାଉଛ । ନିଜକୁ ରାଜା କହୁଛ ଆଉ ମୋତେ ସେବକ । ଏବେ ବ୍ରାହ୍ମଣ ଜଡଭରତ ଆଉ ରହିପାରିଲେ ନାହିଁ ।

**ଅହଂ ପୁରା ଭରତୋ ନାମ ରାଜା (୫.୧୨.୧୪)**

ସେ ନିଜକୁ ପ୍ରକଟ କରିଦେଲେ । କହିଲେ, "ତୁମେ ଜାଣିଛ କି ଯେ ମୁଁ ପୂର୍ବ ଜନ୍ମରେ ଭରତ ନାମକ ରାଜା ଥିଲି । ତୁମେ ଭରତଙ୍କ ନାମ ଶୁଣିଛ ?" ସେ ଚମକି ପଡିଲେ । କାରଣ ଭରତ ତ ଅତ୍ୟନ୍ତ ପ୍ରସିଦ୍ଧ ଥିଲେ । କୁହାଯାଏ ଯେ ଯେଉଁ ମୃଗପ୍ରତି ଭରତ ଆସକ୍ତ ହେଇଯାଇଥିଲେ ସେହି ମୃଗ ରାଜା ରହୁଗଣଙ୍କ ରୂପରେ ଆସିଥିଲା । ମୃଗ ପ୍ରତି ତାଙ୍କ ମନରେ ଯେଉଁ ପ୍ରେମ ଥିଲା ତାହା ବାହାରି ଆସିଲା ଏବଂ ପ୍ରକଟ ହେଇଗଲା,

ସେ ତାକୁ ଲୁଚେଇ ପାରିଲେ ନାହିଁ । ପାର୍ଥକ୍ୟ କେବଳ ଏତିକି ଥିଲା ଯେ ପୂର୍ବପରି ଆଉ ମମତା-ମୂଢ଼ତା ନ ଥିଲା । ତାପରେ କହିଲେ, "ତେଣୁ ମୁଁ କହୁଥିଲି ଯେ ଏହି ସଂସାର ଚକ୍ରରେ କିଏ କେବେ ରାଜା ହେଇଯିବ, ପୁଣି କେବେ କଣ ହେବ କିଛି କୁହାଯାଇ ପାରିବ ନାହିଁ । ମୁଁ ପ୍ରଥମେ ରାଜା ଭରତ ଥିଲି । ଗୋଟିଏ ମୃଗରେ ଆସକ୍ତ ହୋଇଗଲି ତ ମୋତେ ମୃଗଜନ୍ମ ମିଳିଲା । କିନ୍ତୁ ଭଗବାନଙ୍କ ଭକ୍ତିର ପ୍ରଭାବରେ ମୋର ପୂର୍ବଜନ୍ମର ସ୍ମୃତି ଥିଲା । ହରିଣ ଦେହ ପାଇ ମଧ୍ୟ ମୋର ସବୁ ମନେ ଥିଲା । ଭଗବଦ୍ ଭକ୍ତିର ପ୍ରଭାବରେ ମୁଁ ଏବେ ସବୁ ବନ୍ଧନରୁ ମୁକ୍ତ ହେଇଗଲି ।"

## ଭବାଟବୀ ର ନିରୂପଣ

ଏବେ ଭବାଟବୀ ର ବର୍ଣ୍ଣନା କରାଯିବ, ଗୋଟିଏ ରୂପକର ଭାଷାରେ । ଏହାର ସ୍ପଷ୍ଟୀକରଣ ପର ଅଧ୍ୟାୟରେ କରାଯାଇଛି । ତା'ର ସାର କଥା କେବଳ ଏତିକି ଯେ 'ଅଟବୀ' ମାନେ ଜଙ୍ଗଲ ଏବଂ 'ଭବ'ମାନେ ସଂସାର , ତ ସଂସାରରୂପୀ ଜଙ୍ଗଲରେ ବ୍ୟବସାୟୀମାନଙ୍କର ଏକ ପୁରା ଦଳ ଇତସ୍ତତଃ ବୁଲୁଛନ୍ତି । ଏଥିରେ ଆମେ ସମସ୍ତେ ଏବଂ ଆମ ସମ୍ବନ୍ଧୀମାନେ ଅଛୁ । ଯାଉ ଯାଉ ଜଙ୍ଗଲରେ କୋଉଠି ନିଆଁ ଲାଗି ଯାଉଛି ତ , କେଉଁଠି ଭ୍ରମ ହୋଇଯାଉଛି, କୋଉଠି କୁଆପଥର ବୃଷ୍ଟି ହେଉଛି ତ କୋଉଠି ବର୍ଷା ହେଉଛି । ଜଙ୍ଗଲୀ ଜନ୍ତୁ ମଧ୍ୟ ଆସି ଯାଉଛନ୍ତି , କୋଉଠି ଖାଲ ତ କୋଉଠି ଖାଇ , କୋଉଠି ପର୍ବତ ଆସୁଛି, ଆଉ ଆମେ ଯିବା ଆସିବା କରୁଛୁ । ଯେମିତି ଜଙ୍ଗଲରେ ସମୂହରେ ଯାଉଥିବା ଯାତ୍ରୀମାନଙ୍କ ସମ୍ମୁଖରେ ଏହି ସବୁ ସମସ୍ୟା ଆସେ, ସେମାନେ କେବେ ପରସ୍ପର ମଧ୍ୟରେ ଯୁଦ୍ଧ କରନ୍ତି, ତ କେବେ କଳି କରନ୍ତି, କେବେ ଭଲ ବି ପାଆନ୍ତି । ତାପରେ ଯା ଝିଅ ତାକୁ ଦିଅନ୍ତି, ତା ବିବାହ ଯା ସାଥିରେ କରନ୍ତି , ଗାଆଣା-ବାଜେଣା କରନ୍ତି, କିଏ ମରିଗଲେ କାନ୍ଦନ୍ତି ମଧ୍ୟ । ସବୁ କିଛି ଚାଲୁଥାଏ । ଏହାକୁ ହିଁ ଭବାଟବୀ କୁହାଯାଏ ।

ଏହି ସଂସାରରୂପୀ ଜଙ୍ଗଲରେ ଆମେ ସମସ୍ତେ ଏହିପରି ବୁଲୁଛୁ । ଆଜି ଯାକୁ ଭେଟିଲୁ ତ କାଲି ତା ଠାରୁ ଅଲଗା ହେଲୁ । ଆମ ଜୀବନ ଏଇମିତି ଚାଲୁଥାଏ । ଆଜି ଯା ବାହାଘର ତା ସାଙ୍ଗରେ ହେଲା ତ କାଲି ସେ ତା ସାଙ୍ଗରେ ଖୁସୀରେ ନାହିଁ । ଯେ ତାକୁ ଛାଡିଦେଲା, ସେ ତାକୁ ଛାଡିଦେଲା ଆଦି ଆଦି । ସବୁ ଖାଲି ଖେଳ ଚାଲିଛି । କେତେବେଳ ଯାଏଁ ? କେବେ ଯଦି ଦୈବାତ୍ ପୁଣ୍ୟ କର୍ମ ଉଦୟ ହେଲା ତେବେ ସତ୍‌ସଂଗ ପ୍ରାପ୍ତ ହୁଏ । ତାପରେ ସତ୍‌ସଂଗ ଦ୍ୱାରା ସମ୍ପୂର୍ଣ୍ଣ ମୋହ ଦୂର ହୋଇଯାଏ ।

ଅନ୍ୟଥା ମୋହ ଦୂର ହେବ ନାହିଁ ଏବଂ ଏହି ସଂସାରରୂପୀ ଜଙ୍ଗଲରେ ଆମେ ଖାଲି ମିଛରେ ବୁଲୁଥିବା । କାମ-କ୍ରୋଧ ଆଦିର ଯେତେ ବଡ଼ ବଡ଼ ପର୍ବତ କୁହ, ଖାଇ କୁହ, ଜଙ୍ଗଲୀ ପଶୁ କୁହ, ସେମାନେ ସମସ୍ତେ ଆମକୁ ଖାଇ ଯାଆନ୍ତି । ଏକମାତ୍ର ସତ୍‌ସଂଗ ଦ୍ୱାରା ହିଁ ଆମେ ଏଠୁ ବାହାରି ପାରିବା ।

ଏହିପରି ରହୁଗଣଙ୍କୁ ଉପଦେଶ ଦେଇ ଭରତ ସେଠାରୁ ଚାଲିଗଲେ । ସେ ମୁକ୍ତାତ୍ମା ହେଇଯାଇଥିଲେ । ରହୁଗଣ ମଧ୍ୟ ତାଙ୍କର ଉପଦେଶ ଗ୍ରହଣ କରି ଧ୍ୟାନର ଅଭ୍ୟାସ ଦ୍ୱାରା ନିଜକୁ ବନ୍ଧନମୁକ୍ତ କରି ନେଲେ । ସେ ମହାତ୍ମା ଭରତଙ୍କୁ ନମସ୍କାର କଲେ -

**ଆର୍ଷଭସ୍ୟେହ ରାଜର୍ଷିର୍ମନସାପି ମହାତ୍ମନଃ ।**

**ନାନୁବର୍ତ୍ମାର୍ହତି ନୃପୋ ମକ୍ଷିକେବ ଗରୁତ୍ମତଃ ॥ (୫.୧୪.୪୨)**

ରାଜା ଭରତ ଯେଉଁ ମାର୍ଗରେ ଚାଲିଲେ, ତାକୁ ତ ଆମେ ମନ ଦ୍ୱାରା ମଧ୍ୟ ଧରିପାରିବା ନାହିଁ । କେବେ କଣ କେହି ମାଛି ଗରୁଡର ଗତିକୁ ବୁଝିପାରିବ ? ଗରୁଡ କୁଆଡେ ଯାଆନ୍ତି ଗୋଟିଏ ମାଛି ଏହାକୁ କଣ ବୁଝିପାରିବ ? ଆମ ମନ ମଧ୍ୟ ସେହି ମାଛି ପରି ଏବଂ ଭରତଙ୍କ ଗତି ଗରୁଡ ପରି, ଆମେ ତାକୁ କଣ ବୁଝିପାରିବା ?

**ଯୋ ଦୁସ୍ତ୍ୟଜାନ୍ଦାରସୁତାନ୍ ସୁହୃଦ୍ରାଜ୍ୟଂ ହୃଦିସ୍ପୃଶଃ ।**

**ଜହୌ ଯୁବୈବ ମଲବଦୁତ୍ତମଶ୍ଳୋକଲାଲସଃ ॥ (୫.୧୪.୪୩)**

ଯିଏ ଯୁବାବସ୍ଥାରେ ହିଁ ସମ୍ପୂର୍ଣ୍ଣ ଭୋଗକୁ ତ୍ୟାଗ କଲେ ଏବଂ ନିଜ ମନକୁ ପୂର୍ଣ୍ଣ ରୂପେ ଭଗବାନଙ୍କ ପାଖରେ ହିଁ ଲଗେଇ ଦେଲେ, ସେହି ମହାତ୍ମା ଭରତଙ୍କୁ ନମସ୍କାର । ଆଗକୁ ଶ୍ରୀ ଶୁକଦେବ ଭରତବଂଶର ବର୍ଣ୍ଣନା କରିଛନ୍ତି, ଯେଉଁ ଭରତ ବଂଶରେ ରାଜା ସୁମତି ଆଦି ହେଇଥିଲେ । ପରେ ସେହି ବଂଶରେ ଗୟ ନାମକ ଏକ ଶ୍ରେଷ୍ଠ ରାଜା ହେଇଥିଲେ ।

# ଭୂଗୋଳର ବର୍ଣ୍ଣନ

ରାଜା ପରୀକ୍ଷିତ ଶୁକଦେବଙ୍କୁ ପଚାରିଲେ । ମହାତ୍ମନ୍ , ଆପଣ କହିଲେ ଯେ ରାଜା ପ୍ରିୟବ୍ରତ ସପ୍ତଦ୍ୱୀପ ନିର୍ମାଣ କଲେ ଏବଂ ସମସ୍ତ ଲୋକ ଉପରେ ବିଜୟ ପ୍ରାପ୍ତ କଲେ । ଦୟା କରି ମୋତେ ସମ୍ପୂର୍ଣ୍ଣ ଭୂଗୋଳର ବିସ୍ତୃତ ବର୍ଣ୍ଣନା କରି କୁହନ୍ତୁ ଯେ ପୃଥିବୀ କେତେ ବଡ, ସ୍ୱର୍ଗ କେତେ ବଡ,ଏମାନଙ୍କର ପରିମାଣ କଣ ? ଲକ୍ଷଣ କଣ ? ଶୁକଦେବ କହିଲେ ଭଗବାନଙ୍କର ସମସ୍ତ ଲୋକ ବର୍ଣ୍ଣନା କେହି ଅନନ୍ତ କାଳ ପର୍ଯ୍ୟନ୍ତ କରି ଚାଲିଲେ ମଧ୍ୟ ତାହା ପୁରା ହୋଇପାରିବ ନାହିଁ । କେବଳ ଏତିକି ବୁଝ ଯେ ଭଗବାନ ଏହି ସୃଷ୍ଟିର କାରଣ , ଏହାର ସ୍ଥିତିର ମଧ୍ୟ ସେହିଁ କାରଣ ଅଟନ୍ତି । ଏବଂ ଏହି ଅନନ୍ତ ବ୍ୟାପକ ସୃଷ୍ଟି ଭଗବାନଙ୍କ ଭିତରେ ହିଁ ଦେଖାଯାଏ, କିନ୍ତୁ ପ୍ରକୃତରେ ଏହି ସୃଷ୍ଟି ଏବଂ ତାର ସମସ୍ତ ବ୍ୟାପକତା ସବୁ କିଛି କେବଳ ଆରୋପିତ ମାତ୍ର । ପ୍ରକୃତ ନୁହଁ । ତେଣୁ ଏହାର ଅଧିକ ବିବେଚନାର କୌଣସି ଆବଶ୍ୟକତା ନାହିଁ ।

ଆଗ୍ନିଧ୍ରଙ୍କ ପୁତ୍ରମାନେ ନଅ ବର୍ଷ ଅର୍ଥାତ୍ ନଅଟି ସ୍ଥାନ ନାମରେ ପରିଚିତ ହେଲେ । ଏହି ବ୍ରହ୍ମାଣ୍ଡର ପ୍ରିୟବ୍ରତଙ୍କ ଦ୍ୱାରା ଯେଉଁ ବିଭାଗ କରାଗଲା ତାକୁ ହିଁ ନଅ ବର୍ଷ କୁହାଯାଏ । ଏମାନଙ୍କର ନାମ ହେଲା ଭଦ୍ରାଶ୍ୱ ବର୍ଷ, ହରିବର୍ଷ, କେତୁମାଳ ବର୍ଷ, ରମ୍ୟକ ବର୍ଷ , ହିରଣ୍ୟମୟ ବର୍ଷ , କୁରୁବର୍ଷ, କିମ୍ପୁରୁଷ ବର୍ଷ, ଇଳାବର୍ତ ବର୍ଷ ଏବଂ ଭାରତବର୍ଷ (ଅଜାନାଭ ବର୍ଷ) ।

ଏହି ସମସ୍ତ ସ୍ଥାନରେ ଭଗବାନଙ୍କର ଆରାଧନା କରାଯାଏ । ଏହାର ବର୍ଣ୍ଣନା ଆଗକୁ ମଧ୍ୟ କରାଯାଇଛି । ଏହାର ସାର କେବଳ ଏତିକି ଯେ ଭଗବାନଙ୍କର ଆରାଧନା ପ୍ରତ୍ୟେକ ସ୍ଥାନରେ ହୋଇପାରିବ । ତେଣୁ ଆମେ ଭଗବାନଙ୍କର ଆରାଧନାର ଅଧିକାରୀ କି ନା, ଏହି ସ୍ଥାନ ତା ପାଇଁ ଉଚିତ ନା ନାହିଁ , ଏପରି ଆଶଙ୍କା ଗୁଡିକୁ ନିଜ ମନରେ ସ୍ଥାନ ଦେବା ଉଚିତ ନୁହଁ ।

ପଞ୍ଚମ ସ୍କନ୍ଧର ଷୋହଳ ଏବଂ ଛବିଶ ଅଧ୍ୟାୟରେ ରାଜା ପରୀକ୍ଷିତ ପ୍ରଶ୍ନ କଲେ ଯେ ଆପଣ ଏତେ ପ୍ରକାରର ଲୋକଗୁଡିକର ବର୍ଣ୍ଣନା କରୁଛନ୍ତି, ସେଗୁଡିକ କେଉଁଠାରୁ ଆସନ୍ତି । ସେଥିରେ କେଉଁ କାରଣରୁ ଏତେ ପାର୍ଥକ୍ୟ ଅଛି ?

ଶ୍ରୀ ଶୁକଦେବ ଉତ୍ତରରେ କହିଲେ ଯେ ତାର କାରଣ ହେଲା ତ୍ରିଗୁଣାତ୍ମିକା ପ୍ରକୃତି । ସତ୍ତ୍ୱ, ରଜସ ଏବଂ ତମସ ଏହି ତିନୋଟି ଯାକ ଗୁଣର ଭିନ୍ନ – ଭିନ୍ନ ଅନୁପାତରେ

ହେଉଥିବା ସଂଯୋଗ ଯୋଗୁଁ ହିଁ ଭିନ୍ନ ଭିନ୍ନ ପ୍ରକାରର ଲୋକଗୁଡ଼ିକର ନିର୍ମାଣ ହୁଏ । ସେହି ଲୋକଗୁଡ଼ିକରେ ରହୁଥିବା ଲୋକଙ୍କ ସ୍ୱଭାବ, ବାସନା ଏବଂ କର୍ମ ମଧ୍ୟ ପୃଥକ୍ ପୃଥକ୍ ହୋଇଥାଏ । ତେଣୁ ସ୍ୱାଭାବିକ ରୂପେ ସେମାନଙ୍କର କର୍ମ-ଫଳ ମଧ୍ୟ ଭିନ୍ନ ଭିନ୍ନ ହୋଇଥାଏ । ଭିନ୍ନ ଭିନ୍ନ ଫଳକୁ ଆମେ ଗୋଟିଏ ସ୍ଥାନରେ ଭୋଗ କରିପାରିବା ନାହିଁ । ଯଥା ଯଦି କାହାକୁ ଆକାଶ ମାର୍ଗରେ ଯାତ୍ରା କରିବାକୁ ଥିବ ତେବେ ତାହା ରେଳଗାଡ଼ି ଦ୍ୱାରା ସମ୍ଭବ ନୁହଁ, ଜାହାଜ ଦ୍ୱାରା ମଧ୍ୟ ସମ୍ଭବ ନୁହଁ ସେଥିପାଇଁ ଉଡାଜାହାଜରେ ହିଁ ବସିବାକୁ ପଡ଼ିବ । ସେହିପରି ଭିନ୍ନ ଭିନ୍ନ ଲୋକ, ଭିନ୍ନ ଭିନ୍ନ କର୍ମ ଏବଂ ଭିନ୍ନ ଭିନ୍ନ ଜୀବ ଅଛନ୍ତି ।

## ବିଭିନ୍ନ ନରକ ଏବଂ ସେଗୁଡ଼ିକର ଗତିର ବର୍ଣ୍ଣନ

ପରୀକ୍ଷିତ ପୁଣି ଥରେ ପ୍ରଶ୍ନ କଲେ -

**ନରକା ନାମ ଭଗବନ୍ କିଂ ଦେଶବିଶେଷା ଅଥବା ।**
**ବହିସ୍ତ୍ରିଲୋକ୍ୟା ଆହୋସ୍ୱିଦନ୍ତରାଳ ଇତି ॥ (୫.୨୬.୪)**

କଣ ନରକ ମଧ୍ୟ ଏକ ସ୍ଥାନ ବିଶେଷ ଅଟେ ? ଶୁକଦେବ କହିଲେ, "ହଁ ତ୍ରିଲୋକ ଭିତରେ ହିଁ ପୃଥିବୀ ତଳେ ଜଳ ଉପରେ ଦକ୍ଷିଣ ଦିଗରେ ଅବସ୍ଥିତ । ଆହୁରି ମଧ୍ୟ ନରକ ଅଠାଇଶି ପ୍ରକାରର ବୋଲି କୁହାଯାଏ ।"

ଦେଖନ୍ତୁ, ଯଦି ସ୍ୱର୍ଗ ଲୋକ ବୋଲି କିଛି ଅଛି ତ ନର୍କ ମଧ୍ୟ ଥିବ । ଯେମିତି ସହରରେ ସିନେମା, ଥିଏଟର, କ୍ଲବ, ସ୍ୱିମିଂପୁଲ ଆଦି ସୁଖଦ ସ୍ଥାନ ଅଛି ସେମିତି ଜେଲ, ହସ୍‌ପିଟାଲ ଆଦି ଦୁଃଖଦ ସ୍ଥାନ ମଧ୍ୟ ଅଛି । ଜେଲରେ କଇଦୀମାନେ ଅଲଗା ଅଲଗା ପ୍ରକାରର କର୍ମ କରନ୍ତି । ସେଠି ସେମାନଙ୍କୁ ଅଲଗା ଅଲଗା ପ୍ରକାରର ଭୋଗ ମଧ୍ୟ ଭୋଗିବାକୁ ପଡ଼ିଥାଏ । ସେଠି ଯେଉଁ ଶାରୀରିକ ଦଣ୍ଡ ଦିଆଯାଏ , ତାହା ଅତ୍ୟନ୍ତ ଭୟଙ୍କର । କହିବାର କଥା କେବଳ ଏତିକି ଯେ ଯେମିତି ସ୍ୱର୍ଗାଦି କର୍ମଫଳ ହୁଏ ସେମିତି ନରକରୂପରେ ମଧ୍ୟ ଫଳ ମିଳେ । ଜୀବନରେ ଆମେ ଖରାପ କାମ କରି ଯେଉଁ ଦୁଃଖ ଭୋଗ କରୁ ସେହି ଦୁଃଖ ମଧ୍ୟ ସ୍ୱୟଂ ଏକ ପ୍ରକାରର ନର୍କ ହିଁ ଅଟେ । ଆଉ ଯେତେବେଳେ ଭଲ କାମ କରୁ, ସେତେବେଳେ ଯେଉଁ ସୁଖର ଅନୁଭବ କରୁ ସେ ବି ଗୋଟେ ପ୍ରକାରର ସ୍ୱର୍ଗ । ଏହାକୁ 'ଦୃଷ୍ଟ'ଫଳ କୁହାଯାଏ । କିନ୍ତୁ ଆମେ ଯେତେବେଳେ କର୍ମ କରୁ, ସେତେବେଳେ ଆଉ ଗୋଟିଏ ଫଳ ମଧ୍ୟ ମିଳେ, ଯାହାକୁ 'ଅଦୃଷ୍ଟ' ଫଳ କୁହାଯାଏ ।

ଅଦୃଷ୍ଟମାନେ ଯାହା ସେହି ସମୟରେ ଦେଖାଯାଏ ନାହିଁ । ଯେପରି କେହି ପାଣି ବା ଘି ପିଇଲେ, କି କିଛି ଖାଇଲେ, ତେବେ ତାର ଗୋଟିଏ ଫଳ ତତ୍‌କ୍ଷଣାତ୍ ଦେଖାଯିବ, ଜଣାପଡିବ କ୍ଷୁଧା ବା ପିପାସାର ନିବୃତ୍ତି ରୂପରେ । କିନ୍ତୁ ତାର ଫଳ ଏତିକିରେ ସରିଯାଏ ନାହିଁ । ଯାହା ପିଇଲେ ବା ଖାଇଲେ, ତାର ଗୋଟିଏ ସଂସ୍କାର ମଧ୍ୟ ମନ ଉପରେ ପଡିଥାଏ, ଯେ ଏହି ଜିନିଷଟି ଭଲ । ଏହା ଦେଖାଯାଏ ନାହିଁ କିନ୍ତୁ ଫଳିତ ହୁଏ । ଦେଖନ୍ତୁ, ସେହିପରି କର୍ମର ଫଳ ଯେତେବେଳେ ମିଳେ, ଆମେ ଯେଉଁ ଉଦ୍ଦେଶ୍ୟରେ କର୍ମ କରୁ ଫଳ ସେହିପରି ମିଳୁ, ଆମ ଉଦ୍ଦେଶ୍ୟ ଅନୁରୂପ ହେଉ ବୋଲି ଭାବୁ କି ନାହିଁ ? ତାକୁ ହିଁ ପାପ-ପୁଣ୍ୟ କୁହାଯାଏ ।

ପରୀକ୍ଷିତଙ୍କର ପ୍ରଶ୍ନର ଉତ୍ତରରେ ଅଠେଇଶଟି ନର୍କର ବର୍ଣ୍ଣନା କରାଗଲା । ତମିସ୍ର, ଅନ୍ଧତମିସ୍ର, ରୌରବ, ମହାରୌରବ , କୁମ୍ଭୀପାକ, କାଳସୂତ୍ର, ଅସିପତ୍ରବନ, ସୂକରମୁଖ, ଅନ୍ଧକୂପ, କୃମିଭୋଜନ ଆଦି  ଯାହାଙ୍କ ନାମ ମଧ୍ୟ ଅତି ଭୟଙ୍କର ।

କେଉଁ ପାପ ଯୋଗୁଁ କେଉଁ ନର୍କକୁ ଯିବାକୁ ପଡେ ଏବଂ କେଉଁ ଯାତନା ଭୋଗ କରିବାକୁ ପଡେ, ତାର ବର୍ଣ୍ଣନ ମଧ୍ୟ ଏଠାରେ କରାଯାଇଛି । କାରଣ ଲୋକମାନେ ଭିନ୍ନ ଭିନ୍ନ ପ୍ରକାରର କର୍ମ କରନ୍ତି । ଯେଉଁମାନେ 'ଅହଂ' ଏବଂ 'ମମ' ଭାବ ଦୃଢ କରି ଅନ୍ୟମାନଙ୍କ ସହିତ ଦ୍ରୋହ କରନ୍ତି, କେବଳ ନିଜ କୁଟୁମ୍ବର ହିଁ ପୋଷଣ କରନ୍ତି, ଅନ୍ୟମାନଙ୍କୁ ଦୁଃଖ ଦିଅନ୍ତି, ସେମାନେ ରୌରବ ନର୍କକୁ ଯାଆନ୍ତି । ସେମାନଙ୍କୁ ବହୁତ କନ୍ଦାକଟା କରିବାକୁ ପଡେ । ଯେଉଁମାନେ ଏଇଠି ପଶୁ-ପକ୍ଷୀମାନଙ୍କୁ ଜବରଦସ୍ତି ବାନ୍ଧିକରି ରଖନ୍ତି, ତାଙ୍କୁ କଷ୍ଟ ଦିଅନ୍ତି ସେମାନଙ୍କୁ କୁମ୍ଭୀପାକ ନାମକ ନର୍କକୁ ଯିବାକୁ ପଡେ । ସେଠାରେ ତାଙ୍କୁ ତତଲା ତେଲରେ ପକେଇ ଦିଆଯାଏ । ଏଠାରେ ଲେଖା ଅଛି **'ତପ୍ତତୈଲେ ଉପରନ୍ଧୟନ୍ତି'** । ଯିଏ ପିତାଙ୍କର , ବ୍ରାହ୍ମଣଙ୍କର ହତ୍ୟା କରନ୍ତି , ସେମାନଙ୍କୁ କାଳସୂତ୍ର ନର୍କକୁ ଯିବାକୁ ପଡେ । ସେହିପରି ପାଖଣ୍ଡୀମାନଙ୍କୁ ମଧ୍ୟ ନର୍କକୁ ଯିବାକୁ ପଡିଥାଏ । ଭଗବାନ ଯାହା ପାଇଁ ଯାହା ଜୀବନଯାପନର ସାଧନ ଦେଇଛନ୍ତି, ଯିଏ ସେଥିରେ ବାଧା ଦିଅନ୍ତି ବା ବିଘ୍ନ ସୃଷ୍ଟି କରନ୍ତି , ଭୋଗିବାକୁ ଦିଅନ୍ତିନି, ସେମାନଙ୍କୁ ମଧ୍ୟ ନର୍କ ଭୋଗ କରିବାକୁ ପଡେ । ଯିଏ ଦମ୍ଭୀ, ପଶୁମାନଙ୍କର ହିଂସା କରନ୍ତି, ଭ୍ରଷ୍ଟାଚର କଲାବାଲା, ସମସ୍ତଙ୍କୁ  ନରକକୁ ଯିବାକୁ ପଡିଥାଏ ।

ପୁଣି କହୁଛନ୍ତି ଯେ -**'ଏବଂ ବିଧା ନରକା ଯମାଲୟେ ସନ୍ତି ଶତଶଃ ସହସ୍ରଶସ୍ତେଷୁ'(୫.୨୬.୩୭),** ଏହି ନର୍କ ଶହଶହ, ହଜାରହଜାର ପ୍ରକାରର ।

**ସର୍ବେଷୁ ଚ ସର୍ବ ଏବାଧର୍ମବର୍ତିନୋ ୟେ**
**କୋଚିଦିହୋଦିତା ଅନୁଦିତାଷ୍ଟାବନିପତେ ପର୍ଯ୍ୟାୟେଣ ।**
**ବିଶନ୍ତି ତଥୈବ ଧର୍ମାନୁବର୍ତିନ ଇତରତ୍ର**
**ଇହ ତୁ ପୁନର୍ଭବେ ତ ଉଭୟଶେଷାଭ୍ୟାଂ ନିବିଶନ୍ତି ॥ (୨.୨୬.୩୭)**

ଯେତେବେଳେ ପୁଣ୍ୟ କର୍ମ ବଢିଯାଏ, ସେତେବେଳେ ସ୍ୱର୍ଗପ୍ରାପ୍ତି ହୁଏ । ଯେତେବେଳେ ପାପ କର୍ମ ଅଧିକ ହୁଏ , ନର୍କକୁ ଯିବାକୁ ପଡେ । ଅନ୍ତତଃ ପାପ-ପୁଣ୍ୟ ସମାନ ହୋଇଗଲେ ତ ମନୁଷ୍ୟ ଲୋକର ପ୍ରାପ୍ତି ହୁଏ । କୁହାଯାଏ ଯେ ଏହି ମାନବଯୋନି ମିଶ୍ରିତ କର୍ମର ଫଳ । ନର୍କଲୋକ ଲୁଗାକଟା ମେଶିନ୍ ପରି, ଏଠାରେ ପାପର ଫଳ ବା ଦଣ୍ଡ ପାଇସାରିଲା ପରେ ଜୀବ ଶୁଦ୍ଧ ହେବାକୁ ଲାଗେ ।

ଏଠାରେ ପ୍ରଶ୍ନ ଉଠେ ଯେ ଯଦି ପାପ ପୁଣ୍ୟ ସମାନ ହେଲେ ମନୁଷ୍ୟ ଜନ୍ମ ମିଳେ, ତେବେ ସମସ୍ତଙ୍କ ସୁଖ-ଦୁଃଖରେ ସମାନତା କାହିଁକି ଦିଶୁନି, ସେଥିରେ ଭେଦ କାହିଁକି ହଉଛି ? ଉତ୍ତର ହେଲା ଯେ ପାପପୁଣ୍ୟର ପରିମାଣ ସମାନ ହେଲେ ମଧ୍ୟ ତାର ସ୍ୱରୂପରେ ଭିନ୍ନତା ହେଇପାରେ । ହୁଏ ମଧ୍ୟ ଯେପରି ଗୋଟିଏ କିଲୋ ତୁଳା ଓଜନ କଲାବେଳେ, କିଲୋର ବଟକରାଟି କେତେ ଛୋଟ ଦିଶେ କିନ୍ତୁ କିଲେ ତୁଳା କେତେ ବେଶୀ ଦିଶୁଥାଏ । ଯେପରି ଗୋଟିଏ କିଲୋ ତୁଳା କେତେ ଦିଶୁଥାଏ । ଉଭୟର ଓଜନ ସମାନ ହେଲେ ମଧ୍ୟ ତୁଳାର ଗୁଣ ଲୁହାର ଗୁଣଠାରୁ ଅଲଗା । ସେହିପରି ଅନୁପାତରେ, ମାତ୍ରାରେ ପାପପୁଣ୍ୟ ସମାନ ହେଲେ ମଧ୍ୟ ତାଙ୍କର ସ୍ୱରୂପ ଅଲଗା-ଅଲଗା । ତେଣୁ ସୁଖଦୁଃଖରେ ମଧ୍ୟ ଅନେକ ପ୍ରକାରର ଭିନ୍ନତା ଦେଖାଯାଏ । ଏହି ତଥ୍ୟ ସବୁ ଶାସ୍ତ୍ରମାନଙ୍କ ଦ୍ୱାରା ଜ୍ଞାତ ହୁଏ । ପୁଣି କହିଲେ-

**ଶ୍ରୁତ୍ୱା ସ୍ଥୂଳଂ ତଥା ସୂକ୍ଷ୍ମଂ ରୂପଂ ଭଗବତୋ ଯତିଃ ।**
**ସ୍ଥୂଲେ ନିର୍ଜିତମାତ୍ମାନଂ ଶନୈଃ ସୂକ୍ଷ୍ମଂ ଧିୟା ନୟେଦିତି ॥(୫.୨୬.୩୯)**

ଭୂଗୋଳ ଆଦିର ଏତେ ବ୍ୟାପକ ବର୍ଣ୍ଣନ ଏଇଥିପାଇଁ କରାଗଲା ଯେ ଏହା ଭଗବାନଙ୍କର ସ୍ଥୂଳ ରୂପ ଅଟେ । ପ୍ରଥମେ ଏଠି ନିଜ ମନକୁ ସ୍ଥିର କରି ତାକୁ ସୂକ୍ଷ୍ମ ତଥା ଶୁଦ୍ଧ କରିବା ଆବଶ୍ୟକ । ତାପରେ ସୂକ୍ଷ୍ମରୁ ସୂକ୍ଷ୍ମତମକୁ ଯିବା ଉଚିତ୍ ଏବଂ ଶେଷରେ ସୂକ୍ଷ୍ମତମରୁ ନିର୍ବିଶେଷ ନିର୍ଗୁଣ ସ୍ୱରୂପରେ ପହଞ୍ଚିବେ । ଏହି ବିଷୟ ସହିତ ପଞ୍ଚମ ସ୍କନ୍ଧ ସମାପ୍ତ ହେଲା ।



# ଷଷ୍ଠ ସ୍କନ୍ଧ

ଷଷ୍ଠ ସ୍କନ୍ଧରେ **ପୋଷଣ** ବିଷୟରେ କୁହାଯାଇଛି । ସର୍ଗ, ବିସର୍ଗ ଏବଂ ସ୍ଥାନ ପରେ ଆସେ ପୋଷଣ । ପୋଷଣ କଣ ? କୁହାଗଲା **'ପୋଷଣଂ ତଦ୍ ଅନୁଗ୍ରହଃ'** । ଭଗବାନଙ୍କର କୃପା, ଭଗବାନଙ୍କର ଅନୁଗ୍ରହକୁ ପୋଷଣ କୁହାଯାଏ । କାରଣ ଭଗବାନ ଆମ ସମସ୍ତଙ୍କର ପୋଷଣ କରନ୍ତି, ନିଜ କୃପା ଦ୍ୱାରା । ଏଥିରେ ମଧ୍ୟ ଗୋଟିଏ ସାମାନ୍ୟ କୃପା ଏବଂ ଅନ୍ୟଟି ବିଶେଷ କୃପା । ଯେମିତି ସମସ୍ତେ ଗୋଟିଏ ସ୍ଥାନରେ ରହି ବଞ୍ଚିଛନ୍ତି, ସମସ୍ତଙ୍କୁ ପାଣି, ପବନ ମିଳୁଛି । ଏହା ଭଗବାନଙ୍କର ସାମାନ୍ୟ କୃପା, ଯାହା ସମସ୍ତଙ୍କର ଉପରେ, ସମାନ ଭାବରେ ହୁଏ । କିନ୍ତୁ ଅନୁଗ୍ରହ ଅଲଗା ଜିନିଷ । 'ଗ୍ରହ' ମାନେ ଧରିବା, କିଏ ଯଦି ବିଶେଷ ଭାବରେ ଭଗବାନଙ୍କୁ ଧରେ, ତେବେ ତା ଉପରେ ଭଗବାନଙ୍କର ଯେଉଁ ବିଶେଷ କୃପା ହୁଏ ତାକୁ ଅନୁଗ୍ରହ କୁହାଯାଏ ।

ଜୀବନରେ ଯେଉଁ ଧନ-ସମ୍ପତ୍ତିର ପ୍ରାପ୍ତି ହୁଏ, ଲୌକିକ ବସ୍ତୁ ଗୁଡିକର ପ୍ରାପ୍ତି ହୁଏ, ତାହା ଭଗବାନଙ୍କର ସାମାନ୍ୟ କୃପା ଅଟେ । କିନ୍ତୁ ଏହି ଭୋଗରୁ ଯଦି ବୈରାଗ୍ୟ ହୁଏ ତାହାହେଲେ ବୁଝିବା ଯେ ତାହା ଭଗବାନଙ୍କର **ବିଶେଷ କୃପା** ଅଟେ । ଭୋଗ ମିଳିବା କୃପା, କିନ୍ତୁ ସେଥିରୁ ବୈରାଗ୍ୟ ହେଲା ବିଶେଷ କୃପା । ଆଉ ଯଦି ଭଗବାନଙ୍କର ଜ୍ଞାନ ହେଲା ତାହାହେଲେ ତ ଆହୁରି ବିଶେଷ କୃପା । ଆଉ ଯଦି ତାଙ୍କ ପାଖରେ କୌଣସି ପ୍ରୟୋଜନ ନ ଥାଇ ଅଖଣ୍ଡ , ଅବିରଳ, ଅହୈତୁକୀ, ନିଃସ୍ୱାର୍ଥ ଭକ୍ତି ହେଇଗଲା ତାହାହେଲେ ଆଉ କଣ କହିବା ? ଏହାଠୁଁ ଅଧିକ ତ ଭଗବାନ ନିଜେ ମଧ୍ୟ ଅନ୍ୟ କୌଣସି କୃପା କରି ପାରିବେ ନାହିଁ । ଏହାର ଦରକାର ବି ନାହିଁ ।

ଏହି ସ୍କନ୍ଧରେ ବିଶେଷ ଭାବରେ ଭଗବାନଙ୍କର ନାମର ମହିମା କୁହାଯାଇଛି । ନାମ ଅଧ୍ୟାୟ, ରୂପ ଅଧ୍ୟାୟ ଏବଂ ଅର୍ଚ୍ଚନା ଅଧ୍ୟାୟ ଅଛି । ଭଗବାନଙ୍କର ନାମର ସ୍ମରଣ, ରୂପର ପୂଜା, ଏହା ହିଁ ଏହି ସ୍କନ୍ଧର ବିଷୟ । ଏଥିରେ ମଧ୍ୟ ନାମ ସ୍ମରଣ ବିଶେଷ । ତେଣୁ ଆମେ ମଧ୍ୟ ତାକୁ ବିଶେଷ ଭାବରେ ଦେଖିବା ।

ରାଜା ପରୀକ୍ଷିତ ଯେତେବେଳେ ନର୍କର ବିସ୍ତୃତ ବର୍ଣ୍ଣନ ଶୁଣିଲେ ଯେ କାହାକୁ କେଉଁ ନର୍କକୁ ଯିବାକୁ ପଡେ, କେମିତି ଦୁଃଖ ହୁଏ, ତାଙ୍କ ମନ ଦୁଃଖୀ ହୋଇ ଗଲା ।

ତେଣୁ ସେ (ଆମ ମାନଙ୍କ କଲ୍ୟାଣ ପାଇଁ) ପଚ୍ଚାରିଲେ -

**ଅଧୁନେହ ମହାଭାଗ ଯଥୈବ ନରକାନ୍ନରଃ ।**

**ନାନୋଗ୍ରଯାତନାନ୍ନେୟାତ୍ତନ୍ମେ ବ୍ୟାଖ୍ୟାତୁମର୍ହସି ।।(୬.୧.୬)**

ଏହି ଅନେକ ପ୍ରକାରର ନର୍କ ପ୍ରାପ୍ତିରୁ ମନୁଷ୍ୟ ନିଜକୁ କିପରି ରକ୍ଷା କରି ପାରିବ ? ମନୁଷ୍ୟ ପାପକର୍ମ କରୁଥାଏ, ତେଣୁ ସେଥିରୁ ମୁକ୍ତି ପାଇବାର ଗୋଟିଏ ଭଲ ଉପାୟ ଆପଣ ମୋତେ କୁହନ୍ତୁ । ଏହି ବିଷୟ ଅତି ସୁନ୍ଦର । ଆମ ପାଇଁ ବହୁତ ଉପଯୋଗୀ । ଶୁକଦେବ କହିଲେ - ଦେଖ, ପରୀକ୍ଷିତ ଏବେ ଆମେ ଯେଉଁ ପରି ବ୍ୟବହାର କରୁଛୁ , ତା ଉପରେ ବର୍ତ୍ତମାନ ଆମର କୌଣସି ନିୟନ୍ତ୍ରଣ ନାହିଁ । ତେଣୁ ଆମେ ପାପ କର୍ମ କରି ଚାଲିଛୁ । ଠିକ୍ ଅଛି, ପାପ କର୍ମ ତ କରିନେଲେ । ତାପରେ କମ୍-ସେ-କମ୍ ପଶ୍ଚାତାପ ହେବା କଥା । ଅର୍ଥାତ୍ ଦୁଃଖ ହେବା କଥା ଯେ ମୁଁ କେତେ ପାପ କର୍ମ କରି ପକେଇଲି । ଯେମିତି ରାଜା ପରୀକ୍ଷିତଙ୍କୁ ପଶ୍ଚାତାପ ହୋଇଥିଲା ଯେ ଭଲା ମୁଁ ସେହି ମୃତ ସର୍ପକୁ ମୁନିଙ୍କ ବେକରେ କେମିତି ପକେଇ ପାରିଲି ? ମୋତେ ଯା ପାଇଁ କିଛି ଦଣ୍ଡ ଅବଶ୍ୟ ମିଳିବା ଉଚିତ୍ । ଏହିପରି ପଶ୍ଚାତାପ ହେବା ପରେ ସେହି କାମ ପାଇଁ କୌଣସି ପ୍ରାୟଶ୍ଚିତ କରିବା ଉଚିତ । **'ପ୍ରାୟଶ୍ଚିତ'**ର ଅର୍ଥ ହେଲା - 'ପ୍ରାୟ'ମାନେ ତପ କରିବା ଏବଂ 'ଚିତ୍ତ' ମାନେ ସଂକଳ୍ପ କରିବା। ପୂର୍ବରୁ ଯେଉଁ ଭୁଲ କାମ କରିଥିଲି ତା ପାଇଁ ସ୍ୱୟଂକୁ ଦଣ୍ଡଦେବା ଏବଂ ନିଜର ଶୁଦ୍ଧିପାଇଁ ସଂକଳ୍ପ କରିବା ଯେ ପୁଣି ଏପରି କାମ କେବେ ବି କରିବି ନାହିଁ । କେବଳ ସ୍ୱୀକାର କରିନେବା, ଯଥେଷ୍ଟ ନୁହଁ । ଲୋକେ ସ୍ୱୀକାର କରି ପୁଣି ସେହି କର୍ମ କରନ୍ତି ।

ଭଗବାନ ଶୁକଦେବ କହୁଛନ୍ତି ଯେ ପ୍ରାୟଶ୍ଚିତ କରିବା ଉଚିତ୍ । ତେଣୁ ଆମ ଶାସ୍ତ୍ର ଗୁଡିକରେ ଏପରି କିଛି କର୍ମ କରିବା ପାଇଁ କୁହାଯାଇଛି ଯାହା ମନୁଷ୍ୟକୁ ପ୍ରତ୍ୟେକ ଦିନ କରିବା ଦରକାର । କାରଣ ହେଇପାରେ ଆମ ଦ୍ୱାରା ପାପ କର୍ମ ହେଇ ହେଇ ଯାଉଛି ଆଉ ଆମେ ଜାଣିପାରୁନୁ । ଜାଣିଶୁଣି କରିବା ତ ଭୁଲ । କିନ୍ତୁ କେବେ ଅଜାଣତରେ ହେଇଗଲେ ତା ପାଇଁ ମଧ୍ୟ ପ୍ରାୟଶ୍ଚିତ କରିବା ଦରକାର । ପ୍ରାୟଶ୍ଚିତ କଣ ? କିପରି କରାଯାଏ ? ଉତ୍ତର ହେଲା - ଯେମିତି ରୋଗ ପାଇଁ ଔଷଧ । ଯେମିତି ରୋଗ ସେମିତି ଔଷଧ, ସେହିପରି ପ୍ରାୟଶ୍ଚିତ ମଧ୍ୟ ଛୋଟ-ବଡ ହୋଇଥାଏ । ପ୍ରାୟଶ୍ଚିତ କରିନେବା ଉଚିତ୍ । ଯଦି କୌଣସି ଲୋକ ପାପକର୍ମ ତ କରୁଥାଏ କିନ୍ତୁ ତାକୁ ନା ପଶ୍ଚାତାପ ହେଲା କିମ୍ବା ସେ ପ୍ରାୟଶ୍ଚିତ ମଧ୍ୟ କଲା ତାହାଲେ ତା'ର ଦୁର୍ଗତି ନିଶ୍ଚିତ । ତାପରେ ରାଜା

କହିଲେ, ଭଗବନ୍ ଆପଣ ଉତ୍ତର ତ ଦେଲେ କିନ୍ତୁ ମୋତେ ସନ୍ତୋଷ ମିଳୁନି । କାରଣ ଦେଖାଯାଏ ଯେ ଲୋକମାନେ ପ୍ରାୟଶ୍ଚିତ କରନ୍ତି କିନ୍ତୁ ପରେ ପୁଣିଥରେ ସେହି ପାପକର୍ମ କରନ୍ତି ।

**ଦୃଷ୍ଟଶ୍ରୁତାଭ୍ୟାଂ ଯତ୍ପାପଂ ଜାନନ୍ନପ୍ୟାତ୍ମନୋଽହିତମ୍ ।**
**କରୋତି ଭୂୟୋ ବିବଶଃ ପ୍ରାୟଶ୍ଚିତ୍ତମଥୋ କଥମ୍ ॥ (୬.୧.୬)**

ଲୋକେ ଭାବନ୍ତି, ହଁ କଣ ହେଲା, ପରେ ପ୍ରାୟଶ୍ଚିତ କରି ନେବା, ପାଞ୍ଚଟଙ୍କା ଅଧିକା ଦବା ତ , ଦେଇଦେବା, କିଛି ଦଣ୍ଡ ଦେବାକୁ ହେବ, ତ ଦେଇଦେବା । ଏମିତି ଭାବି କିଛି ଲୋକ ନିଜକୁ ମୁକ୍ତ କରି ନିଅନ୍ତି । ତେଣୁ ଏଇ ପ୍ରାୟଶ୍ଚିତ କେଉଁ ପରି ଜାଣିଛନ୍ତି । '**କୁଞ୍ଜର ଶୌଚବତ୍**' - ଯେମିତି ହାତୀ ସ୍ନାନ କରେ । ହାତୀ ପାଇଁ କୁହାଯାଏ ଯେ ସ୍ନାନ କରେ ପୁଣି ନିଜ ଉପରେ ନିଜେ ଧୂଳି ପକେଇ ଦିଏ । ତେଣୁ ଏଇମିତି ପାପକର୍ମ କରିବା, ଆଉ ତା ପାଇଁ ପ୍ରାୟଶ୍ଚିତ କରିବା ହାତୀର ସ୍ନାନ ପରି । ଯେମିତି ପାପରୁ ମୁକ୍ତି ପାଇଁ ଲୋକେ ଗଙ୍ଗାସ୍ନାନ କରନ୍ତି । ପୁଣି ଗଙ୍ଗାରୁ ବାହାରିବା ମାତ୍ରେ ପାପ କର୍ମ ପାଇଁ ପୁଣି ପ୍ରସ୍ତୁତ ହେଇ ଯାଆନ୍ତି । କାରଣ ପାପ କରିବାର ବୃତ୍ତି ପ୍ରଥମେ ଯେମିତି ଥିଲା ସେଇମିତି ଥାଏ । ଗଙ୍ଗା ସ୍ନାନ ପୂର୍ବରୁ ଯେଉଁ ପାପ କରିଥିଲେ ସେଥିରୁ ସିନା ମୁକ୍ତ ହେଲେ କିନ୍ତୁ ଜୀବର ସ୍ୱଭାବରେ କିଛି ପରିବର୍ତ୍ତନ ହେଲାନି । ସେଇମିତି ରହିଲା ।

ଯେମିତି, ଗୋଟିଏ ଚୋର ଥିଲା । ଧରାପଡିଲାରୁ ଜେଲ ଗଲା । ତାକୁ ପାଞ୍ଚ ବର୍ଷ ପାଇଁ ଦଣ୍ଡ ମିଳିଲା । ଭୁଲରେ ଜେଲରେ ତାକୁ ଅଧିକା ଦଶ ଦିନ ରଖିଦେଲେ । ସେ କିଛି କହିଲା ନାହିଁ । ଦଶ ଦିନ ପରେ ଜେଲରଙ୍କୁ ଭୂଲ ଜଣା ପଡିଲା । ସେ କହିଲେ ଭୂଲ ହେଇଗଲା । ମୁଁ ତୁମକୁ ଦଶଦିନ ଅଧିକା ରଖିଦେଲି । ଚୋର କହିଲା, "ଠିକ୍ ଅଛି, ମୁଁ ପୁଣି ଆସିଲେ ଦଶ ଦିନ କମ୍ କରିଦେବ ।" ଅର୍ଥାତ୍ ଯେଉଁ ପାଞ୍ଚ ବର୍ଷର ଦଣ୍ଡ ତାକୁ ମିଳିଥିଲା ସେ ସେହି ଦୋଷରୁ ତ ମୁକ୍ତ ହେଲା କିନ୍ତୁ କହୁଛି ମୁଁ ପୁଣି ଚୋରି କରିବି ।

ଶୁକଦେବ କହିଲେ, "ରାଜନ୍ , ତୁମେ ଠିକ୍ କଥା କହୁଛ । ଗୋଟିଏ କର୍ମ ଦ୍ୱାରା ଆମେ ଅନ୍ୟ କର୍ମଟିକୁ ପୂର୍ଣ୍ଣତଃ କାଟି ପାରିବା ନାହିଁ । ଟିକିଏ ଫରକ୍ ପଡିପାରେ, କିନ୍ତୁ ଗୋଟିଏ କର୍ମ ଦ୍ୱାରା ଅନ୍ୟକର୍ମକୁ ପୂର୍ଣ୍ଣତଃ କାଟିଦେବା ସମ୍ଭବ ନୁହଁ । ତା ପାଇଁ ଉପାୟ ହେଲା ତପ, ବ୍ରହ୍ମଚର୍ଯ୍ୟ, ଶମ, ଦମ, ସତ୍ୟ, ତ୍ୟାଗ, ଶୌଚ, ଯମ, ନିୟମ ଆଦିର ଅଭ୍ୟାସ ଏବଂ ତାପରେ ନିଜର ଦେହ-ଅଭିମାନକୁ ଦୂର କରିବା । 'ମୁଁ ଦେହ'

ଏହି ଭାବ ସମସ୍ତ ପାପକର୍ମର ଜଡ ଅଟେ । ଯିଏ ନିଜକୁ ଦେହ ବୋଲି ଭାବେ, ସେ ସୁଖ ଆଉ ଭୋଗ ପାଇଁ ଯାହାପାରେ ତାହା କରିବା ପାଇଁ ପ୍ରସ୍ତୁତ ହେଇଯାଆନ୍ତି । ଏହି ଦେହାଧ୍ୟାସକୁ ସମାପ୍ତ କରିବା ଦରକାର । ତାପାଇଁ ପ୍ରଥମେ ନିଜକୁ ଶୁଦ୍ଧ କରିବା ଆବଶ୍ୟକ।" କିନ୍ତୁ କିଛି ଲୋକ ଏପରି ମଧ୍ୟ ଅଛନ୍ତି -

**କେଚିତ୍କେବଲୟା ଭକ୍ତ୍ୟା ବାସୁଦେବପରାୟଣାଃ ।**
**ଅଘଂ ଧୁନ୍ୱନ୍ତି କାର୍ତ୍ସ୍ନ୍ୟେନ ନୀହାରମିବ ଭାସ୍କରଃ ॥ (୬.୧.୧୫)**

ସେମାନେ କୁହନ୍ତି - ଏତେ କଷ୍ଟ ମୁଁ କରିପାରିବିନି । ସରଳ ଭାଷାରେ କହିଲେ ଏହା ଯେ ଭଗବାନ ପାପ ପୁଣ୍ୟର ଊର୍ଦ୍ଧ୍ୱରେ । ମୁଁ ସେହି ଭଗବାନଙ୍କ ଶରଣକୁ ଯାଉଛି । ଏହିପରି ସେମାନେ ଭଗବତ୍ ପରାୟଣ ହେଇ ଯାଆନ୍ତି ।

**କୃଷ୍ଣାର୍ପିତପ୍ରାଣସ୍ତତ୍ପୁରୁଷନିଷେବୟା ॥ (୬.୧.୧୬)**

କୁହାଯାଇଛି ଯେ କୃଷ୍ଣାର୍ପିତ ହେଇ କିମ୍ବା ଭଗବାନଙ୍କ ନାମ ନେଇ ନିଜକୁ ତାଙ୍କ ପାଖରେ ସମର୍ପିତ କରି ଦେବା ଛଡା ପାପକୁ ଦୂର କରିବାର ଅନ୍ୟ କୌଣସି ସାଧନ ନାହିଁ । ସେହି ପାପ ସବୁଦିନ ପାଇଁ ସମ୍ୱଳେ ବିନାଶ ହେଇ ଯାଏ । ଏପରି ଅନ୍ୟ କୌଣସି ସାଧନ ଦ୍ୱାରା ହୁଏ ନାହିଁ । ଯିଏ ଯେତେ ପାପ-କର୍ମ କରିଥିଲେ ମଧ୍ୟ ଯଦି ସେହି ଭଗବତ୍ ନାମର ଆଶ୍ରୟ ନିଏ , ତେବେ ତାକୁ ଆଉ ଅନ୍ୟ କିଛି କରିବାକୁ ପଡେ ନାହିଁ। ଏଠାରେ ତାର ଏକ ଉଦାହରଣ ମଧ୍ୟ ଦିଆଯାଇଛି ।

## ଅଜାମିଳୋପାଖ୍ୟାନ

କାନ୍ୟକୁବ୍ଜ ଦେଶରେ ଜଣେ ବ୍ରାହ୍ମଣ ଥିଲା । ସେ ଜଣେ ଭଲ ଲୋକ ଥିଲା , ବେଦ ପାଠ କରୁଥିଲା, ପୂଜା-ପାଠ ମଧ୍ୟ କରୁଥିଲା । ଥରେ ସେ ଜଙ୍ଗଲରେ ଏକ ଶୁଦ୍ରକୁ ବେଶ୍ୟା ସହିତ ପ୍ରଣୟଲୀଳା କରୁଥିବାର ଦେଖିନେଲା । ଉଭୟ ମଦ ପିଇଥିଲେ । ପରସ୍ପରର କଣ୍ଠଲଗ୍ନ ଥିଲେ, ସେମାନଙ୍କୁ ସେହି ଅବସ୍ଥାରେ ଦେଖି ବ୍ରାହ୍ମଣର ମନ ବିଗିଡ଼ି ଗଲା । ସେ ନିଜ ମନକୁ ବହୁତ ବୁଝେଇଲା, କିନ୍ତୁ ମନ ମାନିଲା ନାହିଁ । ଘରେ ତାର ଭଲ ସ୍ତ୍ରୀ ଥିଲା । କିନ୍ତୁ ସେ ଏବେ ସେହି ଅନ୍ୟ ସ୍ତ୍ରୀଟିକୁ ମନେ ପକେଇବାକୁ ଲାଗିଲା । କିନ୍ତୁ ରହି ନ ପାରି ସେ ସେହି ବେଶ୍ୟା ପାଖକୁ ଯିବାକୁ ଲାଗିଲା । ମଦ ପିଇଲା । ତାକୁ ଧନ ଦେବାକୁ ଲାଗିଲା । ନିଜ ସ୍ତ୍ରୀକୁ ଘରୁ ବାହାର କରି ଦେଲା ଏବଂ ସେହି ବେଶ୍ୟାକୁ ଘରକୁ ନେଇ ଆସିଲା ଏବଂ ଭିନ୍ନ ଭିନ୍ନ ପ୍ରକାରର ପାପକର୍ମ କରିବାକୁ ଲାଗିଲା । ସନ୍ଧ୍ୟା-ବନ୍ଦନା ଆଦି ସବୁ ଛାଡ଼ିଦେଲା । ସେ ମହାପାପୀ ହେଇଗଲା । ତା ନାମ ଥିଲା ଅଜାମିଲ ।

'ଅଜାମିଲ' ଶବ୍ଦର ଅର୍ଥ ମଧ୍ୟ ବୁଝିବା ଦରକାର । 'ଅଜାମିଲ' ଶବ୍ଦର ଦୁଇ ପ୍ରକାରରେ ବିଚ୍ଛେଦ ହୋଇପାରେ । ଗୋଟିଏ ହେଲା ଅଜା-ମିଲ । ଅଜା ଅର୍ଥ ପ୍ରକୃତି ବା ମାୟାର ନାମ, ଯିଏ ମାୟା ସହିତ ମିଶିଗଲା ସେ ଅଜାମିଲ । ଅନ୍ୟ ପ୍ରକାରେ ଦେଖିଲେ ଅଜ+ଅମିଲ, ଅଜମାନେ ଅଜନ୍ମା ପରମାତ୍ମା, ଯିଏ ତା ସହିତ ମିଶି ପାରିଲା ନାହିଁ ସେ ଅଜାମିଲ । ଦେଖନ୍ତୁ ଯିଏ ଭଗବାନଙ୍କ ସହ ମିଶିପାରିଲା ନାହିଁ କିନ୍ତୁ ମାୟା ସହିତ ମିଶିଗଲା ସେହି ବ୍ୟକ୍ତିକୁ ଅଜାମିଲ କୁହାଯାଏ । ବିଚାର କଲେ ଜଣାପଡ଼ିଲା ସେ ତ ମୁଁ ନିଜେ । କିନ୍ତୁ ଏବେ ଆମେ ଆଉ ସେମିତି ହେଇ ନାହୁଁ କାରଣ ଆମେ ତ ଭାଗବତ ଶୁଣି ସାରିଲୁଣି ନା । ଏହା ଭାଗବତ ଶୁଣିବା ପୂର୍ବର କଥା । ତେଣୁ ଅଜାମିଲ ମାୟାରେ ଗୁଡେଇ ହେଇ, ପରମାତ୍ମାଙ୍କଠାରୁ ଅଲଗା ହେଇଯାଇ, ପାପକର୍ମ କରିଲାଣି ।

ଏହି ସଂଦର୍ଭରେ ମହାତ୍ମାମାନଙ୍କର ଗୋଟିଏ ଗପ ପ୍ରସିଦ୍ଧ ଅଟେ । ଦିନେ ଜଣେ ମହାତ୍ମା ଗୋଟିଏ ଗାଁରେ ପହଞ୍ଚିଲେ । ପଚାରିଲେ ଆରେ ଏଇ ଗାଁରେ କିଏ ଦାନୀ ପୁରୁଷ ଅଛି କି ? ଦେଖନ୍ତୁ ତ , କିଛି ଦୁଷ୍ଟ ଲୋକ ଥିଲେ, କହିଲେ ହଁ ଅଜାମିଲ ବଡ ଦାନୀ ପୁରୁଷ । ବହୁତ ଭଲ ଲୋକ, ତା'ଘରକୁ ଯାଆନ୍ତୁ । ଏବେ ସେଇ ମହାତ୍ମା ଭଲା କ'ଣ ଜାଣିଛନ୍ତି ? ସେ ସେଠାକୁ ଗଲେ । ଅଜାମିଲ ଘରେ ନ ଥିଲା, ସେହି ବେଶ୍ୟା ସ୍ତ୍ରୀ ଥିଲା । ସେ ଘରକୁ ଗଲା ମାତ୍ରେ ମହାତ୍ମା ବୁଝିଗଲେ ଯେ ସେଇଟା କୋଉ ପ୍ରକାରର ଘର । ତାଙ୍କୁ ତା ଉପରେ ଦୟା ଆସିଲା । ସନ୍ଥଙ୍କ ହୃଦୟ ତ ! ସେଠି ଗୋଟିଏ ପିଲା ଖେଳୁ

ଥିଲା । ସେ ପଚାରିଲେ ପିଲାଟିର ନା କଣ ? ସେହି ସ୍ତ୍ରୀ କହିଲା – ମହାତ୍ମନ୍ ଆମଘରକୁ ଏପର୍ଯ୍ୟନ୍ତ କୌଣସି ସନ୍ଥ ଆସି ନ ଥିଲେ । ତେଣୁ ଯାର ନା ରଖିନୁ । ଆପଣ ଯାହା କହିବେ ସେହି ନା ରଖି ଦେବୁ । ସେ କହିଲେ – ଯା ନା ନାରାୟଣ ରଖ । ଦେଖିଲେ ସନ୍ଥଙ୍କ କୃପା । କହିଲେ କମ ସେ କମ ଯାକୁ ଡାକିବେ ଏମାନଙ୍କ ତ ମୁହଁରୁ ନାରାୟଣ ନାମ ତ ବାହାରିବ । ନାରାୟଣ ନାମର ଏତେ ମହିମା ଯେ, ଯେକୌଣସି କାରଣରୁ ନାମ ନେଲେ ମଧ୍ୟ ପୁଣ୍ୟ ହିଁ ହୁଏ । ତାପରେ ସେ ଚାଲିଗଲେ । ଅଜାମିଲ ଆସି ସବୁ କଥା ଶୁଣିଲା । ସେ ନିଜ ପିଲାକୁ ନାରାୟଣ-ନାରାୟଣ କହିଲା । ସେ ପିଲାଟିରେ ତାର ବହୁତ ଆସକ୍ତି ହେଇଗଲା ।

ଏବେ ଅଜାମିଲକୁ ଅଠାଅଶୀ ବର୍ଷ ହେଇଗଲାଣି । ମରଣ ଶଯ୍ୟାରେ ପଡିଛି । ଯମଦୂତମାନେ ତାକୁ ନେବାକୁ ଆସିଲେ । ଯେତେବେଳେ ଯମଦୂତ ଆସନ୍ତି ତ ଯାହା ବି ପାପକର୍ମ କରିଥିବା, ସେହି ସବୁ ଦେଖାଯିବ । ଡରିକରି ଅଜାମିଲ ପାଖରେ ଖେଳୁଥିବା ନିଜ ପୁଅ ନାରାୟଣକୁ ଡାକ ପକେଇଲା । ଯେତେବେଳେ ଯମଦୂତମାନେ ଅଜାମିଲକୁ ଧରିବାକୁ ଯାଉଥିଲେ ସେହି ସମୟରେ ଭଗବାନଙ୍କ ସମାନ ରୂପଧାରୀ ବିଷ୍ଣୁଦୂତମାନେ ମଧ୍ୟ ସେଠି ପହଞ୍ଚିଲେ । ସେମାନେ ଯମଦୂତ ମାନଙ୍କୁ କହିଲେ – ଆଗ ତୁମେ କୁହ ତୁମେ ମାନେ କିଏ ? ସେମାନେ ଉତ୍ତର ଦେଲେ – ଆମେମାନେ ଯମଦୂତ । ଯାର ପ୍ରାଣ ନେବା ପାଇଁ ଆସିଛୁ । ତୁମେମାନେ ଆମ କର୍ତ୍ତବ୍ୟ କର୍ମ କରିବାରେ ବାଧା କାହିଁକି ଦଉଛ ? ଇଏ ତ ଅତ୍ୟନ୍ତ ପାପୀ ପୁରୁଷ । ଆମେ ଯାକୁ ନେଇ କରିଯିବୁ ।

ବିଷ୍ଣୁଦୂତ ମାନେ କହିଲେ, "ଦେଖ, ତୁମେମାନେ ତ ଧର୍ମ-କର୍ମର ବଡ଼-ବଡ଼ କଥା କହୁଛ । କହିଲ ଦେଖି ଧର୍ମ କାହାକୁ କୁହାଯାଏ ?" ସେମାନେ କହିଲେ – ଯାହା ବେଦମାନଙ୍କ ଦ୍ୱାରା କୁହାଯାଇଛି ତାହା ଧର୍ମ । ସେଥିରେ କୁହାଯାଇଛି ଯେ ଏହି ଦେହକୁ ଧାରଣ କରୁଥିବା ଜଣେ ଜୀବ ଅଛି ଯିଏ ମନ, ବୁଦ୍ଧି ତଥା ଇନ୍ଦ୍ରିୟ ସହିତ ଥାଏ । ସେ ଅଲଗା-ଅଲଗା ପ୍ରକାରର କର୍ମ କରେ । ସେ ଯେଉଁ ପ୍ରକାରର କର୍ମ କରେ ତାରି ଅନୁରୂପ ଭିନ୍ନ – ଭିନ୍ନ ପ୍ରକାରର ଯୋନି ବା ଗତିକୁ ପ୍ରାପ୍ତ କରେ । ତାକୁ ନିଜ କର୍ମାନୁସାରେ ଫଳ ଭୋଗିବାକୁ ପଡିଥାଏ । ଏହି ବ୍ୟକ୍ତି **'ଅୟଂ ହି ଶ୍ରୁତିସଂପନ୍ନଃ'**ଟି ଭଲ ଶିକ୍ଷିତ ଜ୍ଞାନୀ ବ୍ୟକ୍ତି ଥିଲା । ଏଠାରେ ଜ୍ଞାନୀ ମାନେ ଶିକ୍ଷିତ । କିନ୍ତୁ ଭୁଲ ସଂଗ ଯୋଗୁଁ ପାପୀ ହେଇଗଲା ଏବଂ ପାପର ଗତି ନର୍କ ଅଟେ । ତେଣୁ ଆମେ ତାକୁ ସେଇଠିକୁ ନେଇଯାଉଛୁ । ସିଧା ସିଧା କଥା ଯେ ସେ ବେଦରେ କୁହାଯାଇଥିବା ଧର୍ମର ପାଳନ କଲା ନାହିଁ । ସେ ଧର୍ମକୁ ତ୍ୟାଗ କଲା । କିଛି ଠିକ୍ କାମ କଲା ନାହିଁ । ତେଣୁ ଆମେ ତାକୁ ନେଇଯାଉଛୁ । ବିଷ୍ଣୁଦୂତ

ମାନେ କହିଲେ

**ଅହୋ କଷ୍ଟଂ ଧର୍ମଦୃଶାମଧର୍ମଃ ସ୍ପୃଶତେ ସଭାମ୍ ॥(୬.୨.୨)**

ତୁମେମାନେ, ଯେଉଁ ମାନଙ୍କର କାମ ଧର୍ମ ପାଳନ କରିବା ଏବଂ କରେଇବା, ଯଦି ସେଇମାନେ ଅଧର୍ମ କରିବେ ତ ବିଚରା ପ୍ରଜାମାନେ କଣ କରିବେ ? ଯେମିତି ଗୋଟିଏ ପିଲା ମା କୋଳରେ ନିଶ୍ଚିନ୍ତ ହୋଇ ଶୋଇଯାଏ ଯେ ମୋ ରକ୍ଷା କରିବ, ଯଦି ମା' ହିଁ ତାକୁ ନ ଦେଖିବ, ଓଲଟି ତା'କୁ ମାରିବାକୁ ବା ଦଣ୍ଡିତ କରିବାକୁ ଲାଗିବ ତାହାଲେ ପିଲାଟି କୁଆଡେ ଯିବ ? ସମସ୍ତଙ୍କୁ ଜଣା ଅଛି ଯେ ଯମରାଜ ଅତ୍ୟନ୍ତ ଧର୍ମାତ୍ମା ଅଟନ୍ତି, ସେ ଅଧର୍ମ ବା ଅନ୍ୟାୟର କାମ କରନ୍ତିନି , ଯିଏ ଯେମିତି କରେ ତା'କୁ ସେହିପରି ଫଳ ଦିଅନ୍ତି । ଭୁଲ କାମ କଲେ ଦଣ୍ଡ ଦିଅନ୍ତି । କିନ୍ତୁ ଭଲ କାମ କଲେ ମଧ୍ୟ ଯଦି ଦଣ୍ଡ ମିଳେ, ତେବେ ତ କାହାକୁ କୌଣସି କଥାରେ ହେଲେ ବିଶ୍ୱାସ ହେବନି ।

ଏକଥା ଶୁଣି ଯମଦୂତ ମାନେ ଆଶ୍ଚର୍ଯ୍ୟ ହେଲେ, ଚିନ୍ତାରେ ପଡ଼ିଗଲେ । ତାପରେ ସେମାନେ ବିଷ୍ଣୁଦୂତମାନଙ୍କୁ ପଚାରିଲେ ଯେ ଆପଣ କେଉଁ ଧର୍ମ କଥା କହୁଛନ୍ତି ? ଆମ ସମ୍ବିଧାନରେ ତ ଏମିତି କିଛି ଦିଶୁନି । ଇଏ ଏମିତି କି ଭଲ କାମ କରିଛି ? ବିଷ୍ଣୁଦୂତମାନେ କହିଲେ, "ଦେଖ, ଏହି ବ୍ୟକ୍ତି ପରମ ଧର୍ମର ପାଳନ କରିଛି । ବୁଝିଲ ? ତୁମେ କହିଲ ଯେ ଯାହା ବେଦ ବିହିତ ତାହା ଧର୍ମ । ଆମେ କହୁଛୁ ବେଦ ସ୍ୱୟଂ ଭଗବାନଙ୍କ ଠାରୁ ପ୍ରକଟ ହେଇଛନ୍ତି ଏବଂ ଭଗବାନଙ୍କ ଧର୍ମ ହେଲା ଯେ କେହି ବ୍ୟକ୍ତି ଯେତେ ପାପୀ ହେଲେ ମଧ୍ୟ, ମରଣ କାଳରେ ଯଦି ସେ ଭଗବାନଙ୍କ ନାମ ନେବ ତେବେ ତାର କୋଟି-କୋଟି ଜନ୍ମର କୋଟି-କୋଟି ପାପ ଭସ୍ମ ହୋଇ ଯିବ, ସମାପ୍ତ ହୋଇଯିବ । ସାମାନ୍ୟ ଭାବରେ ତୁମେ ଯେଉଁ ଧର୍ମ କଥା କହିଲ,କର୍ମର ଗତି ବତେଇଲ, ସବୁ ଠିକ୍। କିନ୍ତୁ ସେଥିରେ ଗୋଟିଏ ଅପବାଦ ମଧ୍ୟ ଅଛି । ଶେଷ ସମୟରେ ଯିଏ ଭଗବାନଙ୍କର ନାମ ନିଏ ତାକୁ କର୍ମଫଳ ଆଦି କିଛି ହେଲେ ଭୋଗିବାକୁ ପଡେ ନାହିଁ । ଏହା ହିଁ ନିୟମ। ଆଉ ଏହି ବ୍ୟକ୍ତି ଶେଷ ସମୟରେ ଭଗବାନଙ୍କ ନାମ ନେଇଛି । ତେଣୁ ଯା ଉପରେ ଆଉ ତୁମମାନଙ୍କର କୌଣସି ଅଧିକାର ନାହିଁ। ତେଣୁ ତୁମେ ପଳାଅ," ସେମାନେ ପଳେଇଲେ । ତାପରେ ବିଷ୍ଣୁଦୂତ ମାନେ ମଧ୍ୟ ଚାଲିଗଲେ ।

ଏବେ ଅଜାମିଲ ଯେମିତି ସ୍ୱପ୍ନରୁ ଉଠିଲା । ସେ ସବୁ ଦେଖିଲା, ସବୁ ଶୁଣିଲା । ତାର ଆଖି ଖୋଲି ଗଲା । ସେ ଭାବିଲା, ବ୍ରାହ୍ମଣ ହେଇ ମୁଁ କେତେ ନୀଚ ହେଇ ନ ଗଲି ସତେ ? ମୁଁ କେତେ ବଡ ଭୁଲ କାମ କରି ପକେଇଲି । କେବଳ ଥରେ ମାତ୍ର ମୁଁ

ଭଗବାନଙ୍କ ନା ନେଲି ଆଉ ତା ବି ନିଜ ପୁଅକୁ ଡାକିବା ପାଇଁ, ତଥାପି ଭଗବାନ ମୋତେ ରକ୍ଷା କଲେ । ଏବେ ଆଉ ମୁଁ ଏପରି ଖରାପ କାମ କେବେହେଲେ କରିବି ନାହିଁ । ତାର ପୂର୍ବ ସଂସ୍କାର ଗୁଡ଼ିକ ପୁଣି ଜାଗ୍ରତ ହେଲେ । ସେ ହରିଦ୍ୱାର ଚାଲିଗଲା । ସେଠାରେ ସେ ନିଜ ମନକୁ ପୂର୍ଣ୍ଣ ରୂପେ ଭଗବାନଙ୍କ ପାଖରେ ଲଗେଇ ଦେଲା ଏବଂ ମୁକ୍ତ ହେଇଗଲା ।

ଅଜାମିଲର ଏହି କଥା ଅତ୍ୟନ୍ତ ପ୍ରସିଦ୍ଧ ଅଟେ । ଏବେ ସବୁ ଯମଦୂତ ଯମରାଜାଙ୍କ ପାଖରେ ପହଞ୍ଚିଲେ । ତାପରେ ସେମାନେ ଗୋଟିଏ ଭଲ ପ୍ରଶ୍ନ ପଚାରିଲ । କହିଲେ - ମହାରାଜ ! ଆପଣ ଆମକୁ କୁହନ୍ତୁ ଯେ ଜଗତରେ କେତେ ଜଣ ଯମରାଜ ଅଛନ୍ତି, କେତେ ଜଣ ଶାସକ ଅଛନ୍ତି ? ଆପଣ ଜଣେ ନା ଅନ୍ୟ କେହି ଜଣେ ଯମରାଜ ଯିଏ ଦୁଷ୍ଟମାନଙ୍କୁ ଦଣ୍ଡ ଦିଅନ୍ତି ? ଆମକୁ ତ ଲାଗୁଛି ଯେ ଆପଣ ହିଁ ଦଣ୍ଡ ଦାତା । ଆପଣଙ୍କୁ ପ୍ରଶ୍ନ ପଚାରିବା ବାଲା କେହି ନାହିଁ । ଯଦି ଆପଣଙ୍କ ଛଡା ଆହୁରି ମଧ୍ୟ ଅନ୍ୟ ଅନେକ ଶାସକ ହେଇଯିବେ, ତେବେ ତ କୌଣସି ନିୟମ ରହିଯିବ ନାହିଁ । ଜଣେ ଦଣ୍ଡ ଦେବ, ଆଉ ଜଣେ କ୍ଷମା କରିଦେବ । ଏହାଦ୍ୱାରା ତ ବ୍ୟବସ୍ଥା ରହିବ ନାହିଁ । ଯିଏ ଦଣ୍ଡ ଦେବ ସେ କ୍ଷମା କରିବ ଏକଥା ବୁଝି ହେଉଛି । ସେତେବେଳେ ଯମରାଜା ପଚାରିଲେ କାହିଁକି, କଣ ହେଲା ? ସେମାନେ କହିଲେ- ଆମକୁ ତଡ଼ି ଦିଆଗଲା । ଆପଣ ଆମକୁ ପଠେଇଥିଲେ ଅଜାମିଲକୁ ଆଣିବା ପାଇଁ । ଆମେ ତାକୁ ଧରିଲାବେଳକୁ ସେ ନାରାୟଣ-ନାରାୟଣ କହିବାକୁ ଲାଗିଲା । ସେତେବେଳେ କେଜାଣି କୋଉଠୁ, ଅତ୍ୟନ୍ତ ସୁନ୍ଦର-ସୁନ୍ଦର ଚତୁର୍ଭୁଜ ବ୍ୟକ୍ତିମାନେ ଆସିଗଲେ ଆଉ ଆମକୁ ବାଧା ଦେଲେ । ଏପରି କଥା ଶୁଣି ଧର୍ମରାଜ ଭାବ-ବିଭୋର ହେଇଗଲେ । ଧର୍ମରାଜ ମହାନ୍ ଭାଗବତ, ଭଗବାନଙ୍କର ଭକ୍ତ । ତେଣୁ ସେ ଭଗବାନଙ୍କ ଭକ୍ତିରେ ମଗ୍ନ ହେଇଗଲେ । ପୁଣି ନିଜକୁ ସମ୍ଭାଳି ନେଇ କହିଲେ- ତୁମେ ଭୁଲ କଲ । ଯିଏ ଶେଷ ସମୟରେ ଭଗବାନଙ୍କ ନାମ ନେବ, ତା ଉପରେ ମୋର କିଛି ନିୟନ୍ତ୍ରଣ ନାହିଁ ।

**ଜିହ୍ୱା ନ ବକ୍ତି ଭଗବଦ୍‌ଗୁଣ ନାମଧେୟଂ**
**ଚେତଶ୍ଚ ନ ସ୍ମରତି ତଚ୍ଚରଣାରବିନ୍ଦମ୍ ।**
**କୃଷ୍ଣାୟ ନୋ ନମତି ଯଚ୍ଛିର ଏକଦାପି**
**ତାନାନୟଧ୍ୱମସତୋଽକୃତବିଷ୍ଣୁକୃତ୍ୟାନ୍ ॥ (୬.୩.୨୯)**

ଯାହାର ଜିଭ କେବେ ଭଗବାନଙ୍କ ନାମ ନିଏ ନାହିଁ, ଯାହାର ମନ କେବେ ଭଗବାନଙ୍କ ସ୍ମରଣ କରେ ନାହିଁ , ଯାହାର ମସ୍ତକ ଥରେ ହେଲେ ମଧ୍ୟ ଭଗବାନ ଶ୍ରୀକୃଷ୍ଣଙ୍କ ଆଗରେ ନୁଁଏ ନାହିଁ ଏପରି ଲୋକଙ୍କୁ ତୁମେମାନେ ଧରିଆଣ । ଅନ୍ୟମାନେ ପରମଧର୍ମର ପାଳନ କରିବାଯୋଗୁଁ ସେମାନଙ୍କ ଉପରେ ନା ତ ଆମର ପ୍ରଭାବ ପଡେ ନା ସେମାନଙ୍କ ଉପରେ ଆମର ନିୟନ୍ତ୍ରଣ ଅଛି । ଏହି ଭାଗବତ ଧର୍ମର ରହସ୍ୟକୁ ସ୍ୱାୟମ୍ଭୁବ ମନୁ, ପ୍ରହ୍ଲାଦ, ନାରଦ, ଶମ୍ଭୁ, ସନତକୁମାର, କପିଳ, ଜନକ, ଭୀଷ୍ମ, ବଳି , ବେଦବ୍ୟାସ ଆଦି କିଛି ଲୋକ କେବଳ ଜାଣିଛନ୍ତି । ସେହି ନାମର ମହିମାର ବର୍ଣ୍ଣନା ଏଠାରେ କରାଯାଇଛି ।

## ନାମ-ମହିମା

ଏହି ବିଷୟ ଉପରେ ବିଶେଷ ଭାବରେ ବିଚାର କରିବାର ଆବଶ୍ୟକତା ଅଛି । ଦେଖନ୍ତୁ, ଆମେମାନେ ଭାବୁ ଯେ ଆମେ ଛୋଟିଆ ପାପଟିଏ କରିଛୁ, ତେଣୁ ଆମେ ଛୋଟିଆ ପ୍ରାୟଶ୍ଚିତ କର୍ମ କରିବୁ । ଆଉ ଯଦି ଆମର ପାପ ବଡ଼ ତେବେ ତା ପାଇଁ ବଡ଼ ପ୍ରାୟଶ୍ଚିତ କର୍ମ କରିବାକୁ ପଡିବ । ଯଦି ଏପରି ହୁଏ, ତେବେ ଯେଉଁମାନେ କୋଟି-କୋଟି ଜନ୍ମରେ ପାପ କରିଥିବେ ତାଙ୍କ ନିସ୍ତାର କେମିତି ହେବ ? ଏହି ଗଣିତ ଅନୁସାରେ ତ କେବେ ନୁହଁ । ବଡ ପାପ ପାଇଁ ବଡ ପ୍ରାୟଶ୍ଚିତ ହେଇଥିଲେ ତ ତାହାର କେବେ ବି ଅନ୍ତ ହିଁ ହେବନି । କିନ୍ତୁ ଭଗବାନ ଜଗତରେ ଗୋଟିଏ ଖୁବ୍ ବଢ଼ିଆ ଜିନିଷ ରଖିଦେଇଛନ୍ତି । ସବୁଠାରୁ ବଡ଼ ପାପ ପାଇଁ ଭଗବାନ ସବୁଠାରୁ ସହଜ ଉପାୟ ଦେଇଛନ୍ତି । **ଏହା ଭଗବାନଙ୍କ ଅନୁଗ୍ରହ ଅଟେ** । ଏହାକୁ ହିଁ **'ପୋଷଣ'** କୁହାଯାଏ । ଏକଥା ଆମେ ବୁଝିପାରୁନାହୁଁ । ଭଗବାନ ଏହାକୁ ଏତେ ସରଳ କରି ଦେଇଛନ୍ତି ଯେ ସେହି ସରଳତା ଯୋଗୁଁ ଆମକୁ ସହଜରେ ସେଥିରେ ବିଶ୍ୱାସ ହଉନି ।

ଆମେ ଭାବୁଛୁ ପାପ ଯେତେ ବଡ଼, ଯେତେ ଖରାପ, ପ୍ରାୟଶ୍ଚିତ ମଧ୍ୟ ସେତେ ବଡ଼ ହେବା ଉଚିତ । ଏବେ ଘୋର ପାପ କରିଥିବା ବ୍ୟକ୍ତି କଣ କରିବ ? ଭଗବାନ

କହିଲେ ମୋ ନାମ ନିଅ, ଠିକ୍ ହେଇଯିବ । ତୁମେ ସବୁ ପାପରୁ ମୁକ୍ତ ହେଇଯିବ । ଦେଖିଲେ ଏହି କଥାରେ ସହଜରେ ଜଲ୍‌ଦି ବିଶ୍ୱାସ କରି ହେଉନି ନା ? ଯେମିତି ହୋମିଓପ୍ୟାଥିକ ଔଷଧ ଉପରେ ଲୋକେ ଶୀଘ୍ର ବିଶ୍ୱାସ କରିପାରନ୍ତି ନାହିଁ । କୌଣସି ବ୍ୟକ୍ତିକୁ କିଛି ହେଇଗଲେ ତାକୁ କୁହାଯିବ ଯେ ଏଇଥିରେ ଭଲ ହେଇଯିବ, ବଡ-ବଡ ଇଂଜେକ୍‌ସନ, ଅପରେସନ ଆଦି ଦରକାର ନାହିଁ, ତେବେ ତାକୁ ସେଇକଥାରେ ଆଦୌ ବିଶ୍ୱାସ ଆସିବ ନାହିଁ । ଅନେକ ଥର ଏଇମିତି ହୁଏ । ରୋଗ ବଡ ଦେଖାଯାଏ କିନ୍ତୁ ତାର ଉପାୟ ଅତ୍ୟନ୍ତ ସରଳ ହେଇଥାଏ । ସେହି ଛୋଟ ଉପାୟକୁ ଆମେ ସହଜରେ ବିଶ୍ୱାସ କରିପାରୁ ନାହିଁ । ସେହିପରି ଲୋକମାନଙ୍କୁ ଲାଗେ ଯେ ଏତେ ବଡ ପାପ ହେଲାଣି, କେଜାଣି କେତେ ପ୍ରକାରର ଯଜ୍ଞ, ଦାନ, ତପ, ଆଦି ପୁଣ୍ୟ କର୍ମ ଆଦି କରିବାକୁ ପଡ଼ିବ। ଉତ୍ତରରେ କହିଲେ ନା, ନା, ଅତ୍ୟନ୍ତ ସରଳ ଉପାୟ ଅଛି, ଭଗବାନଙ୍କ ନାମ ନିଅ । ବାସ ! ଆଉ କିଛି କରିବା ଦରକାର ନାହିଁ ।

ଏବେ ଟିକିଏ କଥାକୁ ମଧ୍ୟ ଦେଖିବା । ଯେତେବେଳେ ଅଜାମିଲକୁ ମୁକ୍ତି ମିଳିଗଲା, ସେତେବେଳେ ଦେବତାମାନେ ଆଶ୍ଚର୍ଯ୍ୟ ଚକିତ ହେଇ ବୈକୁଣ୍ଠକୁ ଗଲେ ଏବଂ ଭଗବାନଙ୍କୁ ପଚାରିଲେ ଯେ ଅଜାମିଲ କିପରି ମୁକ୍ତ ହେଇ ପାରିଲା ? ଭଗବାନ କହିଲେ ଯେ ସେ ମୋ ନାମ ନେଇଛି ତେଣୁ ତାକୁ ମୁକ୍ତି ମିଳିଗଲା । ପୁଣି ଦେବତା ଓ ଋଷିମାନେ କହିଲେ, "ଭଗବନ୍ ସେ ଆପଣଙ୍କ ନାମ କୋଉଠି ନେଲା ।"

ଭଗବାନ କହିଲେ, "ନେଇଛି, '**ନାରାୟଣ**' କହିଛି ନା ସେ" । ପୁଣି ଦେବତାମାନେ କହିଲେ, ସେ ଆପଣଙ୍କୁ ମନେ ପକେଇ ନାମ ନେଇନାହିଁ । ସେ ତ ନିଜ ପିଲାକୁ ମନେ ପକେଇ ନାରାୟଣ ନାମ ନେଇଛି । ତାକୁ ତ ଜଣା ମଧ୍ୟ ନାହିଁ ଯେ ଏହା ଆପଣଙ୍କର ନାମ । ଭଗବାନ କହିଲେ, "ତାକୁ ଜଣାନାହିଁ, କିନ୍ତୁ ମୋତେ ଜଣାଅଛି ଯେ ଏଇଟା ମୋରି ନାମ ।" ଏହିପରି ସେମାନଙ୍କ ପ୍ରଶ୍ନର ବଢ଼ିଆ ଉତ୍ତର ଭଗବାନ ଦେଲେ । ଦେଖିଲେ, ଭଗବାନ କେମିତି । ଜୀବକୁ ମୁକ୍ତ କରିବା ପାଇଁ ସେ ଅପେକ୍ଷା କରିଥାନ୍ତି ଯେ ଇଏ ମୋତେ କୌଣସି କାରଣ କିମ୍ବା ନିମିତ୍ତ ଦେଲେ ମୁଁ ତାକୁ ସାଙ୍ଗେ ସାଙ୍ଗେ ମୁକ୍ତ କରିଦେବି ।

ଜଣେ କେମେଷ୍ଟ୍ରି ପ୍ରଫେସର ଥିଲେ । ତାଙ୍କ କଲେଜରେ ଜଣେ ଫୁଟବଲ ଖେଳୁଥିବା ବିଦ୍ୟାର୍ଥି ଥିଲା । କେମେଷ୍ଟ୍ରି ପଢଉଥିବା ପ୍ରଫେସରଙ୍କୁ ଫୁଟବଲ ଭଲ ଲାଗେ । ସେ ପିଲା ଭଲ ଫୁଟବଲ ଖେଳେ, ଆଉ ପ୍ରଫେସରଙ୍କୁ ଫୁଟବଲ ଭଲ ଲାଗେ, ତେଣୁ

ସେ ଛାତ୍ର ତାଙ୍କର ଅତି ପ୍ରିୟ । ସେହି ପିଲା କେମେଷ୍ଟ୍ରି ପଢିବାକୁ ଚାହୁଁଥିଲା । ତେଣୁ ତା'ର ଇନ୍‌ଟରଭ୍ୟୁ ଥିଲା । ପ୍ରଫେସରଙ୍କୁ ଜଣାଥିଲା ଯେ ସେ ଫୁଟବଲ ଭଲ ଖେଳେ କିନ୍ତୁ କେମେଷ୍ଟ୍ରିରେ ତା ବୁଦ୍ଧି କାମ କରେ ନାହିଁ । କିନ୍ତୁ ସେ ତାଙ୍କର ପ୍ରିୟ ଥିଲା, ପ୍ରବେଶ କରାଇବାକୁ ପଡିବ । କିନ୍ତୁ କେମିତି ? ଭାବିଲେ, ଏତେ ସରଳ ପ୍ରଶ୍ନ ପଚାରିବି ଯେ ଯାହାର ଉତ୍ତର ସେ ସହଜରେ ଦେଇପାରିବ । ଆଉ ପୁଣି ତାକୁ କୋଉ ପ୍ରଶ୍ନ ପଚାରିଲେ ଜାଣନ୍ତି ? ଆମେ ଯେଉଁ ଲୁଣ ଖାଉଛୁ ତାର ରାସାୟନିକ ସୂତ୍ର କଣ ? ଯିଏ ଟିକିଏ ବି କେମେଷ୍ଟ୍ରି ପଢିଥିବ ସେ ଜାଣିଥିବ ଯେ ଲୁଣକୁ ସୋଡିୟମ କ୍ଲୋରାଇଡ କୁହାଯାଏ । ସେହି ପିଲାକୁ ପଚାରିଲେ ତ ସେ କହିଲା ଜାଣିନି । ଠିକ୍ ଅଛି, ତୁମକୁ ଜଣାନାହିଁ ଆଉ ତୁମେ ବି ଠିକ୍ ଉତ୍ତର ଦେଲ ଯେ ଜାଣିନ ବୋଲି । ପ୍ରବେଶ ମିଳିଗଲା । କାରଣ ସେ କହିଥିଲେ ଯେ ଯିଏ ଠିକ୍ ଉତ୍ତର ଦେବ ତାକୁ ପ୍ରବେଶ ମିଳିଯିବ ।

ଦେଖନ୍ତୁ, ଯିଏ ଯାହାକୁ ଭଲ ପାଏ, ତାର ହିତ କରିବା ପାଇଁ ସେ କେବଳ ବାହାନା ଖୋଜୁଥାଏ । ଭଗବାନ କହିଲେ ଏଇଠି ପ୍ରବେଶ ଦେବି, ଜୀବକୁ ମୁକ୍ତ କରିବି, ତ କିଛି ବାହାନା ଦରକାର । କେହି ତାକୁ ମୋ ନାଁ ଭାବିକରି କହୁ କି ନିଜ ପୁଅ ନାଁ ମାନି କରି କହୁ, କିନ୍ତୁ ସେ 'ନାରାୟଣ' ତ କହିଛି ନା ? ବାସ । ସେ ମୁକ୍ତ ହୋଇଗଲା । ଭଗବାନ ଏମିତି ଗୋଟିଏ ସରଳ ଆଉ ବଢିଆ ଉପାୟ ତିଆରି କରି ରଖିଛନ୍ତି । କିନ୍ତୁ ଆମେ ଯା ଉପରେ ସହଜରେ ବିଶ୍ୱାସ କରୁନାହିଁ । ଆମେ କହୁଛୁ - ନାମ ନେଲେ କଣ ହେଇଯିବ ? 'ରାମ-ରାମ' କହିଲେ ବା 'ନାରାୟଣ-ନାରାୟଣ' କହିଦେଲେ ଆମ ପାପ କିପରି କଟିବ ? ଆମେ କିଛି ବୁଝିପାରୁନୁ । ବାସ, କଥା କେବଳ ଏତିକି ଯେ ଆମକୁ ନିଜ ନାମ ଉପରେ ଅଧିକ ଭରସା ହେଇ ଗଲାଣି, ଭଗବାନଙ୍କ ନାମ ଉପରେ ନୁହଁ ।

ଅନେକଥର ଦେଖାଯାଏ ଯେ ଲୋକମାନେ କୁହନ୍ତି ଯେ ସେଠିକୁ ଗଲେ ମୋ ନାଁ ନେବ । ମୋ ନାଁ କହିଦେବ । ଆଚ୍ଛା ! ନିଜ ନାଁ ଉପରେ ଏତେ ଭରସା । ମୁଁ ବି କୌଣସି ଅନ୍ୟ ଜାଗାକୁ ଯାଇଥିଲେ ଲୋକ କୁହନ୍ତି, "ସ୍ୱାମୀଜୀ ଯଦି ଆମେ ଆଶ୍ରମକୁ ଯିବୁ ଆଉ ଆପଣ ନ ଥିବେ ତ କଣ କରିବୁ ।" ମୁଁ କୁହେ, "ଠିକ୍ ଅଛି, ମୋ ନାଁ କହିଦେବ, କହିବ ସ୍ୱାମୀଜୀ ପଠେଇଛନ୍ତି ।" ଓହୋ, ଦେଖିଲେ ତ ନିଜ ନାଁ ଉପରେ ଏତେ ବିଶ୍ୱାସ ଆଉ ଭଗବାନଙ୍କ ନାମ ଉପରେ ବିଶ୍ୱାସ ନାହିଁ ? ଏଇଟା ବଦମାସି ନୁହଁ କି ? ଏହା ମନର ଅଶୁଦ୍ଧତା ନୁହଁ ତ ଆଉ କଣ ?

ସତ୍ୟ କେବଳ ଏତିକି ଯେ ଆମର ସବୁ ବିଶିଷ୍ଟ ଗ୍ରନ୍ଥ ଗୁଡିକରେ କୁହାଯାଇଛି ଯେ ସତ୍ୟ ଯୁଗରେ ମୋକ୍ଷର ସାଧନ ତପ-ଧ୍ୟାନ, ତ୍ରେତାରେ ଯଜ୍ଞ, ଦ୍ୱାପରରେ ପୂଜା, କଳିଯୁଗରେ କେବଳ ନାମ ସ୍ମରଣ । ଯଦି କେହି ବିଶେଷ ସାଧନା କରି ପାରିବ ନାହିଁ ତେବେ କେବଳ ନାମ ସ୍ମରଣ କରୁ । କିନ୍ତୁ ଲୋକମାନେ ଏହାର ଅର୍ଥ ବୁଝିପାରୁନାହାଁନ୍ତି । ସେମାନେ ଭାବନ୍ତି ଯେ ଯେହେତୁ କଠିନ କଠିନ ସାଧନାଗୁଡିକୁ ଆମେ କରିପାରିବା ନାହିଁ ତେଣୁ ନାମ ସ୍ମରଣ କୁହାଯାଇଛି ଅର୍ଥାତ୍ ଇଏ ଗୋଟେ ତୁଚ୍ଛ କଥା । ଅନ୍ୟ କିଛି କରିପାରିବ ନାହିଁ ତ ଅତି କମ୍‌ରେ ନାମ ନିଅ । ନାମ ନିଅ ଏହା ଶେଷରେ କୁହାଯାଇଛି । ତେଣୁ ଏଥିରେ ବେଶୀ ବିଶ୍ୱାସ କରିବା ପରି କିଛି ନାହିଁ । ଏହାର ବିଶେଷ ପ୍ରଭାବ ପଡିବ ନାହିଁ ବୋଲି ମଧ୍ୟ ଆମକୁ ଲାଗୁଛି । କିନ୍ତୁ ଏହାର ପ୍ରକୃତ ଅର୍ଥ ଅଲଗା । ଅର୍ଥ ହେଲା ଯେ ଏହି କଳିଯୁଗରେ ପାପ ଏତେ ଘୋର ଯେ ଯଜ୍ଞ-ଯାଗ ଆଦି ଅନ୍ୟ ସାଧନ ତାକୁ ଦୂର କରି ପାରିବେ ନାହିଁ । କିନ୍ତୁ ଯେଉଁ ପାପକୁ ଯଜ୍ଞ-ଯାଗାଦି ଦୂର କରି ପାରିବେନି, ତାକୁ ନାମ ଦୂର କରିପାରିବ ।

ଏମିତି କହିଲେ ପୁଣି କୁହାଯିବ ଯେ- ଆପଣ କହୁଥାନ୍ତୁ, କାରଣ ଆପଣଙ୍କ ପାଟି ବନ୍ଦ କଲାବାଲା କେହି ନାହାନ୍ତି ତ । ଯାହାକୁ ଅନ୍ୟ କର୍ମ ମାନେ ବଞ୍ଚେଇ ପାରିଲେ ନାହିଁ ତାକୁ କ'ଣ ନାମ ବଞ୍ଚେଇ ପାରିବ । ଯାର ଅର୍ଥ କଣ ? ଏଠାରେ ଆମକୁ ସାଧନାର ସିଦ୍ଧାନ୍ତ ବୁଝିବାକୁ ହେବ । ଆମକୁ ସାଧନାର ଯେଉଁ ଫଳ ମିଳେ ତାହା ଆମ ପୁରୁଷାର୍ଥ ଦ୍ୱାରା, ନିଜ ଚେଷ୍ଟା ଯୋଗୁଁ ମିଳେ । ଆଉ ଗୋଟିଏ କାରଣ ହେଲା ଯେ ଯଦି ଅନ୍ୟ କାହାର ଶକ୍ତି ଆମ ସାଥିରେ ଥାଏ ତେବେ ଆମକୁ ତା'ର ଫଳ ମିଳେ । ଜପ-ତପ-ଧ୍ୟାନ-ଯଜ୍ଞ-ଯୋଗ ଆଦି ଯାହା ସବୁ ଆମେ ନିଜ ଶକ୍ତି ଦ୍ୱାରା କରୁ, ତା ଦ୍ୱାରା ଆମର ଯେଉଁ ଅନ୍ୟ ପାପଗୁଡିକ ଅଛନ୍ତି, ସମାପ୍ତ ହେଇ ପାରିବେ । କିନ୍ତୁ କିଛି ପାପ ଏପରି ଭୟଙ୍କର ଯେ ସେଗୁଡିକୁ ଆମେ ନିଜ ଶକ୍ତି ଦ୍ୱାରା ଦୂର କରିପାରିବା ନାହିଁ । ଯଦି ଭଗବାନଙ୍କ ଶକ୍ତି ଅବତରିତ ହେବ ତାହାଲେ ଯାଇଁ ସେଗୁଡିକ ଦୂର ହେଇପାରିବ । ସନ୍ଥମାନେ କୁହନ୍ତି, 'ନାମର ଯେଉଁ ପ୍ରତାପ ତୁମର ମନେ ଅଛି କି ନାହିଁ ।'

ତେଣୁ ଭଗବାନଙ୍କ ଶକ୍ତି କିପରି ପ୍ରକଟ ହେବ ? ନାମ ଦ୍ୱାରା । ତାପରେ ଏହି ନାମ ସେହି ପାପଗୁଡିକୁ ଦୂର କରେ । ଅର୍ଥାତ୍ ଯେତେବେଳେ ଆମେ ଭଗବାନଙ୍କର ନାମ ସ୍ମରଣ କରୁ, ତାଙ୍କୁ ଆସିବାକୁ ପଡେ, ଯେମିତି ଆମେ ଯଦି ଦୁଃଖରେ ଥିବା ବା ବେମାର ଥିବା ତେବେ ଆମେ ଯେଉଁ ବ୍ୟକ୍ତିର ନାମ ଧରି ଡାକିବା, ତେବେ ସେ ଦୌଡିକରି ଆମ ପାଖକୁ ଆସେ ଏବଂ ଆମକୁ ସାହାଯ୍ୟ କରେ । ତେବେ ନାମ ଆମକୁ

ବଞ୍ଚେଇ ଦେଲା । କାରଣ ନାମ ହିଁ ସେହି ବ୍ୟକ୍ତିକୁ ଆମ ପାଖକୁ ଟାଣି ଆଣିଲା । ସେ ଦୌଡ଼ିକରି ଆସିଲା ।

ପରମାତ୍ମାଙ୍କ ନାମରେ ପରମାତ୍ମାଙ୍କ ଶକ୍ତି ନିହିତ ଅଛି । ଭାବିଲେ ଦେଖି, ଛୋଟ ଛୋଟ ଦେଖାଯାଉଥିବା ବାଣ ଗୁଡ଼ିକରେ ମଧ୍ୟ କେତେ ଶକ୍ତି ଥାଏ । ସେହି ଶକ୍ତି ଦେଖାଯାଏ ନାହିଁ କିନ୍ତୁ ଥାଏ । ସେଥିରେ ନିଆଁ ଲଗେଇଲା ମାତ୍ରେ, ଭଡାମ୍ କରି ତାହା ଫୁଟିଯାଏ । ବଡ-ବଡ ସୁଡଙ୍ଗ କେମିତି ଖୋଳାଯାଏ ? ବାରୁଦ, ବମ୍ ଆଦି ଲଗେଇ କରି । ସେଗୁଡିକ ମଧ୍ୟ ଛୋଟ ଛୋଟ ଦିଶୁଥାନ୍ତି କିନ୍ତୁ ସେଥିରେ ବହୁତ ଶକ୍ତି ଥାଏ । ଠିକ୍ ସେହିପରି ଯେତେବେଳେ ଆମେ ଭଗବାନଙ୍କର ନାମ ସ୍ମରଣ କରୁ ସେତେବେଳେ ସେଥିରେ ଯେଉଁ ଶକ୍ତି ଅବ୍ୟକ୍ତ ରୂପରେ ଥାଏ, ତାହା ବ୍ୟକ୍ତ ହେଇଯାଏ । ଆଉ ସେହି ବ୍ୟକ୍ତ ଶକ୍ତି ଆମ ପାପକୁ ସମାପ୍ତ କରେ । ସାରମର୍ମ ହେଲା ଯେ କଳିଯୁଗରେ ପାପଗୁଡିକୁ ଆମେ ନିଜ ଶକ୍ତି ଦ୍ୱାରା ସମାପ୍ତ କରିପାରିବା ନାହିଁ , ଭଗବାନଙ୍କ ଶକ୍ତି ହିଁ ସେଗୁଡିକୁ ସମାପ୍ତ କରିପାରିବ । ଭଗବାନଙ୍କ ଶକ୍ତି ଭଗବାନଙ୍କ ନାମ ଦ୍ୱାରା ପ୍ରକଟ ହୋଇଥାଏ । ଭଗବାନ ଅନନ୍ତ ଶକ୍ତିବାନ୍ ଅଟନ୍ତି । ତାଙ୍କର ଅନନ୍ତ ଶକ୍ତି ଯେତେବେଳେ ପ୍ରକଟ ହେଇଯାଏ, ଆମର ସମସ୍ତ ପାପ, ତାହା ଯେତେ ହଉ, ସବୁ ସମାପ୍ତ ହେଇଯାଏ ।

ଜୀବ ଯେତେବେଳେ ଭଗବାନଙ୍କ ସମ୍ମୁଖରେ ଯାଇ କୁହେ, "ଭଗବାନ୍, ମୁଁ ତ ଏତେଗୁଡିଏ ପାପ କରିଛି, ସେଗୁଡିକ କିପରି ଦୂର ହେବ ?" ଭଗବାନ କହନ୍ତି, "ତୁମେ ଉଭୟଙ୍କୁ ମାପ । ଓଜନ କରି ଦେଖ, ତୁମ ପାପ ବଡ଼ ନା, ମୋ ନାମ । ଆସ, ମୋତେ କୁହ, ଏପରି କୌଣସି ପାପ ଅଛି ଯାହା ମୋ ନାମ ଦ୍ୱାରା ସମାପ୍ତ ହେଇପାରିବ ନାହିଁ।"ବୁଝିଲ ନା ନାହିଁ ? ପାହାଡ ପରି, ପର୍ବତ ପରି ପାପ ହେଲେ ମଧ୍ୟ କିଛି ଯାଏ ଆସେ ନାହିଁ । ନାମର ଶକ୍ତି କେତେ ବିଶାଳ, ଜାଣିଛ କି ? ବଡ଼ ବଡ଼ ପର୍ବତ ଗୁଡିକୁ ଯଦି ଆକାଶରେ ଦେଖେଇ ଦିଆଯିବ ତାହାଲେ ଛୋଟ ଛୋଟ ଦିଶିବେ । ଆକାଶର ବ୍ୟାପକତା ପରି, ପ୍ରକୃତରେ ତାଠାରୁ କାହିଁ କେତେ ଅଧିକ ବ୍ୟାପକ ନାମର ଶକ୍ତି ଅଟେ। ଦେଖନ୍ତୁ, ନାମର ଅର୍ଥ କଣ ? 'ନମ' ମାନେ ଆମେ ନଇଁଲୁ। ଆଉ ଭଗବାନଙ୍କୁ ଯିଏ ନୁଆଁଇ ଦେବ, ତାକୁ **'ନାମ'** କୁହାଯାଏ । ନାମର ଏତେ ଶକ୍ତି ।

ଭଗବାନ ଏତେ ସାମାନ୍ୟ ଏବଂ ସରଳ ଉପାୟ ବାହାର କରି ରଖି ଦେଇଛନ୍ତି, କିନ୍ତୁ ପ୍ରାୟଃ ଅନେକ ଥର ଯେଉଁ ଜିନିଷ ବହୁତ ସରଳ ହେଇଥାଏ, ତାହାହିଁ ବହୁତ କଠିନ ହେଇଯାଏ, କାରଣ ଆମର ତା ଉପରେ ବିଶ୍ୱାସ ନ ଥାଏ । ଭଗବାନଙ୍କ ନାମରେ

ଯଦି କାହାର ବିଶ୍ୱାସ ହେଇଯାଏ ତେବେ ତାକୁ ଲମ୍ବା-ଚୌଡା, ବଡ-ବଡ ସାଧନା କରିବାର କିଛି ଆବଶ୍ୟକତା ନାହିଁ । କିନ୍ତୁ କଣ କରିବା ? ଆମର ସ୍ୱଭାବ ହିଁ କର୍ମକାଣ୍ଡୀ ହେଇଗଲାଣି, ଭାବୁଥିବା ଏଇଟା କରିବି, ସେଇଟା କରିବି, ତ ଏଠି କୁହାଯାଇଛି ଯେ କେବଳ ନାମର ଆଶ୍ରୟ ନେବା ଉଚିତ୍ । **'କଳିଯୁଗ କେବଲ ନାମ ଆଧାରା'** କେବଳ ନାମ ହିଁ ଆଧାର । ତେଣୁ ଭଗବାନଙ୍କ ନାମ ଯାହା ଉପରେ ଲେଖାଗଲା ସେ ପଥର ମଧ୍ୟ ଭାସିଲା, ତରିଗଲା । ସନ୍ଥ କୁହନ୍ତି – ଜଳ ଉପରେ ପାଷାଣ ଭାସେ, କାହିଁକି ନ ତରିବେ ଦାସରେ ? ଯଦି ପଥର ଭାସି ପାରୁଛି , ତାହାଲେ ସେବକକୁ , ଦାସକୁ, ଭକ୍ତକୁ କାହିଁକି ତାରି ପାରିବେ ନାହିଁ ? ନାମର ଆଶ୍ରୟ – ସାହାରା ନେବା ଉଚିତ । ଏହା ହିଁ ନାମର ମହିମା ଅଟେ ।

ଜଗତରେ ଦୁଇଟି ଜିନିଷ ଅଛି । ଗୋଟିଏ ନାମ ଏବଂ ଅନ୍ୟଟି ରୂପ । କିନ୍ତୁ ନାମର ମହତ୍ତ୍ୱ ରୂପ ଠାରୁ ଅଧିକ ଅଟେ । କାରଣ ରୂପ ଆମ ସାମନାରେ ଥିଲେ ମଧ୍ୟ ଆମେ ଯଦି ତାର ନାମ ନ ଜାଣିଛୁ ତାହାଲେ ସେ ରୂପ ଥାଇ ମଧ୍ୟ ନ ଥିଲା ପରି । ଯେମିତି, କେହି ଜଣେ ରସଗୋଲା ଖାଇଲା, କିନ୍ତୁ ତାକୁ ତା ନାମ ଜଣା ନାହିଁ । ଯଦି ତାକୁ ପରେ କେହି ପଚାରିବ ରସଗୋଲା ଖାଇଛ ? ସେ କହିବ, ନା ଖାଇନି । ରସଗୋଲା କଣ ମତେ ଜଣା ନାହିଁ । ଜାଣିଥିଲେ ମଧ୍ୟ କହିବ ଜାଣିନି । କିନ୍ତୁ ଯଦି କେହି ବତେଇ ଦେବ ଯେ ଯାକୁ ରସଗୋଲା କୁହନ୍ତି, ତେବେ ସେ କହିବ, ଆହା ! ମୁଁ ଜାଣିଛି । ସେହିପରି କୌଣସି ବ୍ୟକ୍ତି ସହ ଭେଟ ହେବାର ଆନନ୍ଦ ତା ରୂପରୁ ମିଳି ନ ଥାଏ । ତା ନାମ ଜଣା ପଡିଲେ, ଭେଟର ଆନନ୍ଦ ଆସେ ।

ଆଉ ଗୋଟିଏ କଥା ହେଲା ଯେ ଯେଉଁ ବ୍ୟକ୍ତି ଆମଠାରୁ ଦୂରରେ ରହେ ତାକୁ ଆମେ ମନେ ପକଉ । କିନ୍ତୁ ସେ ସାମନାକୁ ଆସିଗଲେ ଆମେ ଦୁଇ ତିନି ମିନିଟ ତା ସହ କଥାବାର୍ତ୍ତା କରି ଅନ୍ୟ କାମରେ ଲାଗିଯାଉ । ମାନେ ? ରୂପ ଏପରି ଯେ ସାମନାକୁ ଆସିଲେ ତାର ଉପେକ୍ଷା ହୁଏ । କିନ୍ତୁ ନାମ ଏପରି ଜିନିଷ ଯେ ଯାହା ଯୋଗୁଁ ଦୂର ଜିନିଷ ମଧ୍ୟ ପାଖରେ ରହିଥାଏ । କୁହାଯାଏ ବିୟୋଗରେ ହିଁ ପ୍ରକୃତ ସଂଯୋଗ ଥାଏ । ଯିଏ ଦୂରରେ ଥାଏ, ଆମେ ତାକୁ ମନେ ପକଉ । ଯାହାକୁ ସ୍ମରଣ କରୁ, ଯାହାର ରୂପ ସାମନାରେ ଥାଏ, ପରେ ତାର ସ୍ମରଣ ହେବ, ଏହା ଜରୁରୀ ନୁହଁ । ଯାହାର ନାମ ମନକୁ ଆସେ ତାର ରୂପ ମଧ୍ୟ ଆସିଯାଏ ।

ତୁଳସୀଦାସ କହୁଛନ୍ତି ଯେ ସଗୁଣ-ନିର୍ଗୁଣ ଉଭୟଙ୍କ ଠାରୁ ନାମ ବଡ । କାରଣ ନିର୍ଗୁଣ ସ୍ୱରୂପ ମଧ୍ୟ ନାମ ଦ୍ୱାରା ପ୍ରକଟ ହୋଇଥାଏ । 'ଏହା ବ୍ରହ୍ମ' ଏମିତି କହିଲେ ଯାଇ ସେ ପ୍ରକଟ ହୁଅନ୍ତି । ଅନ୍ୟଥା ବ୍ରହ୍ମ ତ ସମସ୍ତଙ୍କ ହୃଦୟରେ ବସି ରହିଛନ୍ତି । କିନ୍ତୁ କାହାକୁ ଆନନ୍ଦ ମିଳୁଛି କି ? ଗୁରୁ ଯେତେବେଳେ ବତେଇବେ ଯେ 'ଏ ହିଁ ବ୍ରହ୍ମ' ସେତେବେଳେ ନିର୍ଗୁଣ ମଧ୍ୟ ପ୍ରକଟ ହୁଅନ୍ତି ଏବଂ ସଗୁଣ ମଧ୍ୟ କହିଲା ପରେ ଯାଇଁ ପ୍ରକଟ ହୁଅନ୍ତି । ତେଣୁ ସଗୁଣ ନିର୍ଗୁଣ ଉଭୟଙ୍କୁ ନାମ ଦ୍ୱାରା ହିଁ ଚିହ୍ନି ହୁଏ । ତେଣୁ ନାମ ଉଭୟଙ୍କ ଠାରୁ ବଡ଼ । ଏହି ନାମର ମହିମା ଲୋକମାନେ ଜଲ୍‌ଦି ବୁଝିପାରନ୍ତି ନାହିଁ , କଣ କରିବା ? ଉପନିଷଦ୍, ଯାହା ଦେବତାମାନଙ୍କ ଶାସ୍ତ୍ର, ସେଥିରେ ମଧ୍ୟ ନାମର ଉପାସନା କଥା କୁହାଯାଇଛି । **'ତସ୍ୟ ତଦ୍ୱନଂ ନାମ' ' ଓଁ ଇତି ନାମ'** । ତେଣୁ କୁହାଗଲା ଯେ ନାମର ବହୁତ ମହିମା ଅଟେ ।

ନାମ ହିଁ ଅଜାମିଲକୁ ପବିତ୍ର କରିଦେଲା । ଏହା ଷଷ୍ଠ ସ୍କନ୍ଧର ଏକ ବିଶିଷ୍ଟ ବିଷୟ ଅଟେ । ଏହାକୁ **'ଅନୁଗ୍ରହ'** ଏବଂ **'ପୋଷଣ'** କୁହନ୍ତି । ଭଗବାନ୍ ଏତେ ଦୟାଳୁ ଯେ ଥରେ ନାମ ନେଲେ ହିଁ ଖୁସୀ ହେଇଯାଆନ୍ତି ଯେ ଇଏ ମୋତେ ସ୍ମରଣ କଲା । ପ୍ରକୃତରେ ନିଜ ଜୀବନରେ ଦେଖନ୍ତୁ , ଯେତେବେଳେ ଆମକୁ ଜଣା ପଡେ ଯେ ମୋତେ କିଏ ମନେ ପକାଉଛି, ଆମକୁ କେତେ ଖୁସି ଲାଗେ । ଭଗବାନ କୁହନ୍ତି, ଇଏ ମୋତେ ସ୍ମରଣ କଲା, ଯାକୁ ମୁଁ କଣ ଦେବି ?

ଗୋଟେ ଲୋକ ଥିଲା, ଯିଏ ଅତ୍ୟନ୍ତ ନାସ୍ତିକ ଥିଲା । କହୁଥିଲା - ମୁଁ କେବେ ବି ଭଗବାନଙ୍କ ନାଁ ନେବିନି । ତାର ଗୋଟିଏ ସାଙ୍ଗକୁ ଥିଲା ଯିଏ ରାମ ନାମକୁ ବହୁତ ଭଲ ପାଉଥିଲା । ସେ ନିଜ ସାଙ୍ଗକୁ କହିଲା ତୁ ଥରେ ମାତ୍ର ରାମଙ୍କ ନାମ ନେ । ସେ କହିଲା ନା ନେବିନି । ଦିନେ ସାଙ୍ଗଟି ଆଉ ସାଙ୍ଗର ତଣ୍ଟି ଚିପି କହିଲା ତୁ ଥରେ ରାମଙ୍କ ନାମ ନେ । ତ ସେ ସାଙ୍ଗ କହିଲା, "ମୁଁ ରାମଙ୍କ ନାମ ନେବିନି ।" ସେ ତା ତଣ୍ଟି ଛାଡ଼ି ଦେଇ କହିଲା ଯେ ତୁ ତ ନାମ ନେଇ ସାରିଲୁଣି । ତୁ ଯୋଉ କହିଲୁ ଯେ 'ରାମଙ୍କ ନାମ ନେବିନି' ସେଥିରେ ତ ନାମ ଆସିଗଲା । ଜାଣିଛନ୍ତି , ମୃତ୍ୟୁ ପରେ ପଚରାଗଲା ଯେ ଲୋକଟି ଏତେ ପାପ-କର୍ମ କରିଛି, କୌଣସି ଭଲ କାମ କରିଛି କି ? ସେତେବେଳେ କୁହାଗଲା ଯେ ଥରେ ରାମ-ନାମ ନେଇଛି । ଏହାର ପୁଣ୍ୟ କେତେ ? ଯମରାଜ କହିଲେ - ମୁଁ ଜାଣିନି ଥରେ ରାମନାମ ନେଲେ କଣ ହୁଏ ? ଚାଲ ବ୍ରହ୍ମାଙ୍କ ପାଖକୁ ଯିବା । ବ୍ରହ୍ମା କହିଲେ - ମୁଁ ବି ଜାଣିନି ଚାଲ ମହାଦେବଙ୍କ ପାଖକୁ ଯିବା । ମହାଦେବ ମଧ୍ୟ କହିଲେ ଯେ ମୁଁ ବି ଜାଣିନି । ରାମଙ୍କ (ବିଷ୍ଣୁଙ୍କ) ପାଖକୁ ଚାଲ ।

ସେ ଲୋକ କହିଲା – ଆପଣ ମାନେ ମୋତେ ଏଠା ସେଠା କରି ଦଉଡଉଛନ୍ତି କାହିଁକି ? ମୁଁ ଥକି ଗଲିଣି, ଆଉ ଯାଇପାରିବି ନାହିଁ । ତାକୁ କହିଲେ ଠିକ୍ ଅଛି ପାଲିଙ୍କିରେ ବସ, ଆମେ ନେଇ ଯାଉଛୁ । ରାମ ଦେଖିଲେ ପାଲିଙ୍କିରେ ବସେଇ ବ୍ରହ୍ମା, ମହାଦେବ ଏବଂ ଯମରାଜ କାହାକୁ ଆଣୁଛନ୍ତି । ନିଶ୍ଚେ କେହି ମହାନ୍ ବ୍ୟକ୍ତି ହେଇଥିବେ । ରାମ ତାକୁ ଭେଟିବା ପାଇଁ ଗଲେ । ଇଏ କିଏ ? ଯାକୁ ଓହ୍ଲାଅ । ବ୍ରହ୍ମା କହିଲେ ଏବେ ଆପଣ ଯାର ମୀମାଂସା କରନ୍ତୁ । ଇଏ କେବଳ ଥରେ ଆପଣଙ୍କ ନାମ ନେଇଥିଲା । ତାର ଫଳ କଣ ହେବ ? କହିଲେ ଆରେ ଏଇଆ ତ ଫଳ ଯେ ବ୍ରହ୍ମା, ମହାଦେବ ଆଉ ଯମରାଜ ସ୍ୱୟଂ ତାକୁ ପାଲିଙ୍କିରେ ବସେଇ ଆଣିଲେ ଆଉ ମୁଁ ଦୌଡିକରି ତାକୁ ଦେଖିବାକୁ ଆସିଲି । ଥରେ ନାମ ନେଲେ ଏଇଆ ହୁଏ, ବୁଝିଲ ?

## ଇନ୍ଦ୍ର ଦ୍ୱାରା ବୃହସ୍ପତିଙ୍କ ଅପମାନ

ଏବେ ଇନ୍ଦ୍ର ଆଉ ବୃତ୍ରାସୁର କଥା ଅଛି । ଥରେ ଇନ୍ଦ୍ର ଅହଂଙ୍କାର ଯୋଗୁଁ, ଅଭିମାନ ଯୋଗୁଁ ନିଜର ଗୁରୁ ବୃହସ୍ପତିଙ୍କର ଅପମାନ କରିଦେଲେ । ବୃହସ୍ପତି ସଭାକୁ ଆସିଲେ । ଇନ୍ଦ୍ର ଦେଖି କରି ନ ଦେଖିଲା ପରି ରହିଲେ । ବୃହସ୍ପତି ଅପମାନିତ ହେଲେ, କିନ୍ତୁ କିଛି କହିଲେ ନାହିଁ । ଗୁରୁ ବୃହସ୍ପତି ଚୁପଚାପ ଚାଲିଗଲେ । ପରେ ଇନ୍ଦ୍ର ପଶ୍ଚାତାପ କଲେ ଯେ ମୁଁ କେତେ ଖରାପ କାମ କରିଦେଲି । ସେ ଗୁରୁଙ୍କୁ ଖୋଜିବାକୁ ଗଲେ । କିନ୍ତୁ ସେ ଚାଲିଯାଇଥିଲେ, କୁଆଡେ ଗଲେ ଜଣା ପଡିଲା ନାହିଁ । ଗୁରୁଙ୍କ କୃପା କମ୍ ହେଇ ହେଇ ଗଲାରୁ ଯାଙ୍କର ଶକ୍ତି ମଧ୍ୟ କମି କମି ଆସିଲା । ଅସୁରମାନଙ୍କ ଶକ୍ତି ବଢିଗଲା । ଅସୁରମାନେ ତାଙ୍କ ଉପରେ ଆକ୍ରମଣ କରିଦେଲେ । ଇନ୍ଦ୍ର ଡରିଗଲେ । ଦେଖିଲେ, ଗୁରୁକୃପା ନ ରହିଲେ କେତେ ହାନି ହୁଏ । ଏବେ କଣ କରିବେ ?

## ଦେବତାମାନଙ୍କ ଦ୍ୱାରା ବିଶ୍ୱରୂପଙ୍କ ବରଣ

ଏମିତି ଅବସ୍ଥା ଆସିଲା ଯେ ଇନ୍ଦ୍ରଙ୍କୁ ଅସୁର ମାନଙ୍କର ଗୁରୁଙ୍କ ପାଖକୁ ଯିବାକୁ ପଡିଲା । ସେ ଅସୁରମାନଙ୍କର ଜଣେ ଗୁରୁ ବିଶ୍ୱରୂପଙ୍କ ପାଖକୁ ଗଲେ । ବିଶ୍ୱରୂପ ତାଙ୍କୁ **ନାରାୟଣ କବଚ ଦେଲେ** । ଭାଗବତରେ ଏହାର ବିସ୍ତୃତ ବର୍ଣ୍ଣନା ମିଳେ । ନାରାୟଣ କବଚ ଧାରଣ କରି, ଇନ୍ଦ୍ର ଯୁଦ୍ଧ କରିବା ଆରମ୍ଭ କଲେ । ଏଠାରେ ଯୁଦ୍ଧର ବର୍ଣ୍ଣନା ମିଳେ । ପରେ ଯେତେବେଳେ ତାଙ୍କର ବିଜୟ ହେଲା ତ ବିଶ୍ୱରୂପ, ଯିଏ ଅସୁରଙ୍କ ପକ୍ଷର ଥିଲେ , ଯଜ୍ଞରେ ଆହୁତି ଦେବା ସମୟରେ ଥରେ ଦେବତାମାନଙ୍କୁ ଦେଉଥିଲେ

ତ ଥରେ ଲୁଚେଇ କରି ଅସୁରମାନଙ୍କୁ ମଧ୍ୟ ଆହୁତି ଦେଉଥିଲେ । ଇନ୍ଦ୍ର ଏକଥା ଜାଣିବାରୁ ବିଶ୍ୱରୂପଙ୍କର ମୁଣ୍ଡ କାଟି ଦେଲେ । ତେଣୁ ବିଶ୍ୱରୂପଙ୍କ ପିତା ତ୍ୱଷ୍ଟାଙ୍କୁ ବହୁତ କ୍ରୋଧ ଆସିଲା । ସେ ଇନ୍ଦ୍ରକୁ ମାରିବା ପାଇଁ ଗୋଟିଏ ବିରାଟ ଯଜ୍ଞ କଲେ । କିନ୍ତୁ ମନ୍ତ୍ର ପଢ଼ିଲା ବେଳେ ଟିକିଏ ଭୁଲ ହେଇଗଲା । ତେଣୁ ସେଥିରୁ ଗୋଟିଏ ଭୟଙ୍କର ପ୍ରାଣୀ ବାହାରିଲା । ତା ନାମ ହେଲା ବୃତାସୁର ।

## ବୃତ୍ରାସୁର ବଧ ପାଇଁ ଦେବତାମାନଙ୍କ ଦ୍ୱାରା ଦଧୀଚି ଋଷିଙ୍କୁ ଅସ୍ଥି ପାଇଁ ପ୍ରାର୍ଥନା

ବୃତ୍ରାସୁର ଏତେ ଭୟଙ୍କର ଥିଲା ଯେ ତା ପାଇଁ ସବୁ ଦେବତା ବ୍ୟାକୁଳ ହେଇଗଲେ ଯେ ୟାକୁ କେମିତି ମାରିବା ? ଭଗବାନଙ୍କ ଆଦେଶ ଅନୁସାରେ ଦେବତାମାନେ ଦଧୀଚି ଋଷିଙ୍କ ପାଖକୁ ଗଲେ । ଭଗବାନ କହିଥିଲେ ଯେ ସେ ଜଣେ ବଡ ତପସ୍ୱୀ । ସେ ନିଜର ଅସ୍ଥି ତୁମକୁ ଦେବେ । ତୁମେ ସେଥିରୁ ଯେଉଁ ବଜ୍ର ବା ଅସ୍ତ୍ର ତିଆରି କରିବ ତାଦ୍ୱାରା ବୃତ୍ରାସୁରର ବିନାଶ ହେବ । ଦେବତାମାନଙ୍କୁ ଦେଖି ଦଧୀଚି ତାଙ୍କର ଆସିବା କାରଣ ପଚାରିଲେ । ଦେବତାମାନେ କହିଲେ ମହାତ୍ମନ୍ ଆମ ଉପରେ ବିପତ୍ତି ପଡିଛି । ଆମକୁ କହିବାକୁ ସଂକୋଚ ହେଉଛି, କିନ୍ତୁ ଆମକୁ ଆପଣଙ୍କର ଅସ୍ଥି ଦରକାର । ତାପରେ କହିଲେ, "ଆପଣ ତ ବ୍ରହ୍ମଜ୍ଞାନୀ, ଆପଣଙ୍କୁ ଜଣା ଅଛି ଯେ ଆପଣ ଦେହ ନୁହଁ । ଆପଣ ଦେହ ନୁହଁ ତ ନିଜ ଅସ୍ଥି ଆଉ କାହାକୁ ଦେଇଦେଲେ ମଧ୍ୟ କଣ ଫରକ ପଡିବ ? ଲୋକେ କହୁଛନ୍ତି ଯେ ଆମେ ସ୍ୱାର୍ଥୀ ଏବଂ ଆମକୁ କାହାର ଦୁଃଖ ଦେଖାଯାଏ ନାହିଁ। ଆପଣ ସନ୍ଥ । ଆପଣଙ୍କୁ ଆମର ଦୁଃଖ ନିଶ୍ଚେ ଦେଖାଯିବ ।" ଦେଖିଲେ, ଦେବତାମାନେ କେମିତି ଆଉ କଣ କହୁଛନ୍ତି ।

**ଭବଦ୍ୱିଧାନାଂ ମହତାଂ ପୁଣ୍ୟଶ୍ଳୋକେଡ୍ୟକର୍ମଣାମ୍ ॥(୬.୧୦.୫)**

ଏହି ଜଗତ ଅତ୍ୟନ୍ତ ସ୍ୱାର୍ଥପର । ଦଧୀଚି ଋଷି ହସିଲେ ଏବଂ କହିଲେ, "ତୁମେ ଯାହା କହୁଛ , ଠିକ୍ କଥା । ଜୀଇଁ କରି ଲାଭ କଣ ?"

**ଏତାବାନବ୍ୟୟୋ ଧର୍ମଃ ପୁଣ୍ୟଶ୍ଳୋକୈରୁପାସିତଃ ॥(୬.୧୦.୯)**

"ସବୁଠାରୁ ବଡ ଧର୍ମ ହେଲା ଯେ ଆମ ଜୀବନ କୌଣସି ବ୍ୟକ୍ତି ବା ସମଷ୍ଟିର କାମରେ ଲାଗିବା , ଏଥିରୁ ପଛଘୁଞ୍ଚା ଦେବା ଉଚିତ ନୁହଁ । ତେଣୁ ମୁଁ ମୋ ଦେହ ତ୍ୟାଗ ପାଇଁ ପ୍ରସ୍ତୁତ ଅଛି ।" ଦଧୀଚି ଋଷିଙ୍କର ତ୍ୟାଗ ଅତ୍ୟନ୍ତ ପ୍ରସିଦ୍ଧ । ସେ ବ୍ରହ୍ମ ସମାଧିରେ

ଚାଲିଗଲେ । ଦେହ ତ୍ୟାଗ ହୋଇଗଲା । ତାଙ୍କ ଅସ୍ଥିରୁ ବ୍ରଜ ତିଆରି କରି ଇନ୍ଦ୍ର ବୃତ୍ରାସୁର ସହିତ ଯୁଦ୍ଧ କରିବା ପାଇଁ ଠିଆ ହେଲେ । ବୃତ୍ରାସୁର ଅତ୍ୟନ୍ତ ଭୟଙ୍କର ଯୁଦ୍ଧ କଲା । କିନ୍ତୁ ତା ସେନା ପଳେଇଲେ । ସେ ତାଙ୍କୁ କହିଲା ତୁମେ ପଳଉଛ କାହିଁକି ? ଥରେ ଯୁଦ୍ଧକୁ ଆସିଛ ତ ମରିଯାଅ । କିନ୍ତୁ ସେନା ମାନିଲା ନାହିଁ । ସେ ଦେବତାମାନଙ୍କୁ ଗାଳି ଦେବାକୁ ଲାଗିଲା ।

## ବୃତ୍ରାସୁରର ଭଗବଦ୍ ଭକ୍ତି ଏବଂ ଭଗବତ୍ ପ୍ରାପ୍ତି

ଇନ୍ଦ୍ରଦେବ ତା ସହିତ ଯୁଦ୍ଧ କଲାବେଳେ ଏକ ବିଚିତ୍ର ଘଟଣା ଘଟୁଛି । ବୃତ୍ରାସୁରର ହୃଦୟରେ ଭଗବାନଙ୍କ ପ୍ରତି ଯେଉଁ ଭକ୍ତି ଥିଲା, ତାହା ପ୍ରକଟ ହେବାକୁ ଲାଗିଲା । ସେ କହିଲା, "ହେ ଇନ୍ଦ୍ର, ତୁମେ ମୋତେ ମାରି ଦିଅ । ମୋ ମନ ଭଗବାନଙ୍କ ପାଖରେ ଲାଗିଛି । ଭଗବାନଙ୍କ ପାଇଁ ମୋ ମନ ବ୍ୟାକୁଳ ହେଉଛି ।" କେତେ ବ୍ୟାକୁଳ ? ବୃତ୍ରାସୁର ଏଠି ଅତ୍ୟନ୍ତ ସୁନ୍ଦର କଥା କହିଛି ।

**ଅଜାତପକ୍ଷା ଇବ ମାତରଂ ଖଗାଃ**
**ସ୍ତନ୍ୟଂ ଯଥା ବତ୍ସତରାଃ କ୍ଷୁଧାର୍ତ୍ତାଃ ।**
**ପ୍ରିୟଂ ପ୍ରିୟେବ ବ୍ୟୁଷିତଂ ବିଷଣ୍ଣା**
**ମନୋଽରବିନ୍ଦାକ୍ଷ ଦିଦୃକ୍ଷତେ ତ୍ୱାମ୍ ॥ (୬.୧୧.୨୬)**

ବୃତ୍ରାସୁର ମନରେ ଏପରି ଭକ୍ତି ପ୍ରକଟ ହେଲା ଯେ ସେ କହିଲା – ଅରବିନ୍ଦାକ୍ଷ ଅର୍ଥାତ୍ ପଦ୍ମଲୋଚନ ଭଗବାନ୍ ମୋର ଏହି ମନ ଆପଣଙ୍କୁ ଦେଖିବା ପାଇଁ ବ୍ୟାକୁଳ ହେଉଛି । କିପରି ? **'ଅଜାତପକ୍ଷା ଇବ ମାତରଂ ଖଗାଃ'** । ଯେମିତି ପକ୍ଷୀମାନଙ୍କର ଛୋଟ ଛୋଟ ପିଲା, ଯାହାଙ୍କର ଏପର୍ଯ୍ୟନ୍ତ ପର ଉଠିନି, ସେମାନଙ୍କ ମା କୋଉଠିକୁ ଯାଇଥିଲେ, ସେମାନେ ଯେପରି ତା ଫେରିବା ବାଟକୁ ଚାହିଁ ଛୋଟ ବସାଟିରେ ଅପେକ୍ଷା କରି ବସିଥାଆନ୍ତି ଯେ ମା ଆସିବ, ଦାନା ଆଣିବ, ଠିକ୍ ସେହିପରି । **'ସ୍ତନ୍ୟଂ ଯଥା ବତ୍ସତରାଃ କ୍ଷୁଧାର୍ତ୍ତାଃ'** ଯେମିତି ଗାଈ କୋଉଠିକି ଚରିବାପାଇଁଚାଲିଯାଇଥିବା ବେଳେ ବାଛୁରୀ ଭୋକରେ ବ୍ୟାକୁଳ ହୋଇ କେତେ ତୀବ୍ରତାର ସହ ଅପେକ୍ଷାରେ ଥାଏ ଠିକ୍ ସେହିପରି। ଯିଏ କେବେ ଗାଈ ଏବଂ ବାଛୁରୀର ମିଳନ ଦେଖିଥିବ ସେ ଏହି କଥା ବୁଝିପାରିବ । ଗାଈ କେମିତି ଦୌଡିକରି ଆସେ ଏବଂ ବାଛୁରୀ କେମିତି ଦୌଡିକରି ତା ଦେହରେ ଘଷି ହୁଏ ଦେଖିବାର କଥା । **'ପ୍ରିୟଂ ପ୍ରିୟେବ ବ୍ୟୁଷିତଂ ବିଷଣ୍ଣା'** କିମ୍ବା

ଅତ୍ୟନ୍ତ ନିଷ୍ଠାବାନ୍ , ନିଜ ପତିକୁ ଅତ୍ୟନ୍ତ ପ୍ରେମ କରୁଥିବା କୌଣସି ସ୍ତ୍ରୀ, ଯାହାର ପତି କୌଣସି ଦୂର ସ୍ଥାନକୁ ଚାଲିଯାଇଛି, ସେ ବିରହ ଅନୁଭବ କରୁଛି, ସେତେବେଳେ ସେ ଯେଉଁପରି ନିଜ ପତିର ଫେରିବାକୁ ପ୍ରତୀକ୍ଷା କରୁଛି, ଠିକ୍ ସେହିପରି, ହେ ଭଗବାନ ! ମୋର ମନ ମଧ୍ୟ ଆପଣଙ୍କୁ ଦେଖିବା ପାଇଁ ବ୍ୟାକୁଳ ହେଉଛି ।

ସେ ଇନ୍ଦ୍ରକୁ କହୁଛି, "ଇନ୍ଦ୍ର, ଏଇଟା ହେଲା ଦୁନିଆ । ଏଠି ହାରିବା-ଜିତିବା, ବଞ୍ଚିବା- ମରିବା ଲାଗି ରହିଛି । ତୁମେ ମୋତେ ମାରି ଦେଲେ ମଧ୍ୟ ମୋର କିଛି ଫରକ ପଡ଼ିବନି । ମୋ ମନ ଭଗବାନଙ୍କ ପାଖରେ ରମଣ କରୁଛି ।" ତା'ର ଭକ୍ତି ଦେଖି ଇନ୍ଦ୍ର ଆଶ୍ଚର୍ଯ୍ୟ ଚକିତ ହୋଇଗଲେ । ସେଠି ଘମାଘୋଟ ଯୁଦ୍ଧ ହେଲା । ଶେଷରେ ବୃତ୍ରାସୁରର ମୃତ୍ୟୁ ହେଲା । କିନ୍ତୁ ବୃତ୍ରାସୁର ଭଗବାନଙ୍କର ସହ ଏକ ରୂପ ହୋଇଗଲା ।

## ବୃତ୍ରାସୁରର ପୂର୍ବ ଚରିତ୍ର

ପରୀକ୍ଷିତ ଏହି କଥା ଶୁଣି ଅତ୍ୟନ୍ତ ଆଶ୍ଚର୍ଯ୍ୟ ହେଲେ । ଅତ୍ୟନ୍ତ ରାଜସିକ ଏବଂ ତାମସିକ ସ୍ୱଭାବଯୁକ୍ତ ବୃତ୍ରାସୁରର ହୃଦୟରେ ଏପରି ଭକ୍ତି କେଉଁଠୁ ଆସିଲା ? ତାର ପୂର୍ବଜନ୍ମର କଥାରେ କହିଲେ ଯେ ସେ ପୂର୍ବ ଜନ୍ମରେ ରାଜା ଚିତ୍ରକେତୁ ଥିଲା । ତପସ୍ୟା କରିବା ପରେ ସେ ବିଦ୍ୟାଧର ଲୋକ ପ୍ରାପ୍ତ କଲା । ଶେଷ ଭଗବାନଙ୍କ ଦ୍ୱାରା ପ୍ରଦତ୍ତ ବିମାନରେ ବସି ବୁଲୁବୁଲୁ ଦିନେ ସେ କୈଳାସ ପର୍ବତରେ ପହଞ୍ଚିଲା । ସେଠାରେ ସେ ଦେଖିଲା ଯେ ପାର୍ବତୀ ଶିବଙ୍କ କୋଳରେ ବସିଛନ୍ତି ଏବଂ ଅନେକ ଋଷି-ମୁନି ମଧ୍ୟ ସେଠାରେ ବସିଛନ୍ତି । ଚିତ୍ରକେତୁ ଭଗବାନ ଶଙ୍କରଙ୍କୁ ଉପହାସ କରି କହିଲା ଯେ ସାଧାରଣ ଲୋକଟିଏ ମଧ୍ୟ ସମସ୍ତଙ୍କ ସାମନାରେ ନିଜ ସ୍ତ୍ରୀକୁ କୋଳରେ ଧରି ବସେ ନାହିଁ । ଜଣା ଯାଉଛି ଯେପରି ଏଙ୍କୁ ସାଧାରଣ ଧର୍ମର ମଧ୍ୟ ଜ୍ଞାନ ନାହିଁ । ତତ୍ତ୍ୱଜ୍ଞାନ, ଧର୍ମର ବଡ଼ ବଡ଼ କଥା କହୁଛନ୍ତି ଆଉ ପୂର୍ଣ୍ଣ ସଭାରେ ପତ୍ନୀକୁ କୋଳରେ ବସେଇଛନ୍ତି ।

ଏହା ଶୁଣି ପାର୍ବତୀ ରାଗି ଯାଇ ତାକୁ ଅଭିଶାପ ଦେଲେ ଯେ ତୁ ଅସୁର ହୋଇଯା । ସେ କହିଲା ମା କ୍ଷମା କର, ଆପଣଙ୍କୁ ଦୁଃଖ ହେଲା ଏଥିପାଇଁ ମୁଁ ଦୁଃଖିତ । ମୁଁ ଅସୁର ହେବା ପାଇଁ ପ୍ରସ୍ତୁତ । ଆପଣ ଅଭିଶାପ ଦେଲେ ତ ସେଇମିତି ହେବ, କାରଣ ଦେବତାମାନଙ୍କ କଥା ମିଛ ହୁଏ ନାହିଁ । ସେମାନେ ଯେମିତି କହନ୍ତି ସେଇଆ ହୁଏ । ଏମିତି କହି ଚିତ୍ରକେତୁ ଚାଲିଗଲା । ଶିବ ପାର୍ବତୀଙ୍କ ଆଡକୁ ଚାହିଁ କହିଲେ, "ଦେଖ ଭକ୍ତ କିପରି ହେବା ଦରକାର ? ସେ କ୍ଷମା ମାଗିଲା କିନ୍ତୁ ଶାପମୁକ୍ତ କରି ଦିଅନ୍ତୁ ବୋଲି କହିଲାନି । ସେ କ୍ଷମା ଏଥିପାଇଁ ମାଗିଲା କାରଣ ତୁମକୁ ଦୁଃଖ ହେଲା । ସେଥିପାଇଁ ସେ

ଦୁଃଖୀତ ଥିଲା ।" ସେ ଅସୁର ହେଇଗଲା । କିନ୍ତୁ ତାର ପୂର୍ବର ଭକ୍ତି ସେତେବେଳେ ମଧ୍ୟ ପ୍ରକଟ ହେଇଗଲା ।

ଏବେ ଏଠି ଧର୍ମର କଥା ଦେଖନ୍ତୁ । ଚିତ୍ରକେତୁ ଯିଏ ବିଦ୍ୟାଧର ହେଇ ଆସିଥିଲା, ସେ କଣ କହିଲା ? ଏହା ଯେ ସାଧାରଣ ପତିଟିଏ ମଧ୍ୟ ପତ୍ନୀ ସହିତ ଏକାନ୍ତରେ ହିଁ ଭେଟିଥାଏ । ସମସ୍ତଙ୍କ ସାମନାରେ ଏମିତି ସ୍ତ୍ରୀକୁ ନେଇ ବସେନି । ସେତେବେଳେ ଶିବ କହିଲେ, "ଆରେ ବାବୁ, ଏ ଦୁନିଆରେ ମୋ ଛଡା ଆଉ କିଏ ଅଛି ? ଟିକିଏ ଭାବିଲ ଦେଖି । ତୁମେ ଭାବୁଛ ଯେ ସମାଜ ମୋ ଠାରୁ ଅଲଗା । ମୋ ପାଇଁ ସମସ୍ତେ ହେଉଛନ୍ତି ମୁଁ ହିଁ ମୁଁ । ତେଣୁ କାହିଁକି ଲୁଚେଇବି ? ଆଉ ସେ କେବଳ ପାଖରେ ବସିଛି । ଆମେ ଦୁଇଜଣ ପରି ଦିଶୁଛୁ, ଖାଲି ଦିଶୁଛୁ, ଦୁଇଜଣ ନୁହଁ ।"

**ଜଗତଃ ପିତରୌ ବନ୍ଦେ ପାର୍ବତୀପରମେଶ୍ୱରୌ ।**

ଏମାନେ ଜଳ ଆଉ ତରଙ୍ଗ ପରି, ଭିନ୍ନ ନୁହନ୍ତି । ପ୍ରଥମ କଥା ଯେ ମୁଁ ଆଉ ପାର୍ବତୀ ଦୁଇ ନୁହଁ, ଏକ । ଆଉ ଏଇ ଦୁନିଆ ମୋ ଠାରୁ ଅଲଗା ନୁହଁ । ଏହାଠୁ ବଳି ଏକାନ୍ତ ଆଉ କଣ ହେଇପାରେ । ଏଇଟା ଭିଡ ଆଉ ଏଇଟା ଏକାନ୍ତ, ଏପରି ଆମ ବୁଦ୍ଧି-ଦୃଷ୍ଟିରେ ହିଁ ଥାଏ । ଏହିପରି ସେହି ଚିତ୍ରକେତୁ ବୃତ୍ରାସୁର ହେଇଗଲା, ତାର ପୂର୍ବଭକ୍ତି ମଧ୍ୟ ପ୍ରକଟ ହେଇଗଲା, ଆଉ ତାପରେ ସେ ମୁକ୍ତ ହେଇଗଲା ।

ଆଗକୁ ଦିତିଙ୍କ କଥା ଅଛି ଯେଉଁଠି 'ପୁଂସବନ ବ୍ରତ'ର ବର୍ଣ୍ଣନ କରାଯାଇଛି ଏବଂ ଏହା ସହିତ ଷଷ୍ଠ ସ୍କନ୍ଧ ସମାପ୍ତ ହେଲା ।



# ସପ୍ତମ ସ୍କନ୍ଧ

ସପ୍ତମ ସ୍କନ୍ଧ ଅତ୍ୟନ୍ତ ସୁନ୍ଦର । ସପ୍ତମ ସ୍କନ୍ଧର ବିଷୟ ହେଲା **ଉତୟଃ-କର୍ମବାସନା ।** ପୂର୍ବ ସ୍କନ୍ଧରେ ଆମେ ଦେଖିଲେ ପୋଷଣ, ଏହା ଭଗବାନଙ୍କ କୃପା, ଅନୁଗ୍ରହ ଅଟେ । ଯଦି ଭଗବାନଙ୍କର ଏତେ କୃପା, ଆଉ ମଧ୍ୟ ସମସ୍ତଙ୍କ ଉପରେ ଅଛି, ତେବେ ସ୍ୱାଭାବିକ ରୂପେ ପ୍ରଶ୍ନ ଉଠେ ଯେ ତାହାଲେ ଜୀବ ଏତେ ଦୁଃଖୀ କାହିଁକି ? ଦେଖନ୍ତୁ, ଭଗବାନଙ୍କ କୃପା ସମସ୍ତଙ୍କ ଉପରେ ଥାଏ । କିନ୍ତୁ କର୍ମବାସନା ଅଥବା ଉତି ଯୋଗୁଁ ଲୋକମାନେ ଦୁଃଖୀ ହୁଅନ୍ତି । ସେମାନେ ନିଜ କର୍ମବାସନାକୁ ଛାଡିବା ପାଇଁ ରାଜି ହୁଅନ୍ତି ନାହିଁ । ଏହି ବାସନା ତିନି ପ୍ରକାରର - ଦୈବୀ ବାସନା, ଆସୁରୀ ବାସନା ଏବଂ ମାନବୀ ବାସନା, ଏହି ସ୍କନ୍ଧରେ ପନ୍ଦର ଅଧ୍ୟାୟ ଅଛି ଏବଂ ପାଞ୍ଚ-ପାଞ୍ଚ ଅଧ୍ୟାୟରେ ଗୋଟିଏ ଗୋଟିଏ ପ୍ରକାରର ବାସନାର ବର୍ଣ୍ଣନା କରାଯାଇଛି ।

ହିରଣ୍ୟକଶିପର କାହାଣୀ ଦ୍ୱାରା ଆସୁରୀ ବାସନା ଦର୍ଶାଯାଇଛି । ପ୍ରହ୍ଲାଦ ଚରିତ୍ର ଦ୍ୱାରା ଦୈବୀ ବାସନା କଣ ତାହା ଦର୍ଶାଯାଇଛି ଏବଂ ତାପରେ ଯୁଧିଷ୍ଠିରଙ୍କ ବ୍ୟାଖ୍ୟାନ ଆସେ ଯେଉଁଠି ଯୁଧିଷ୍ଠିର ଓ ନାରଦ ସଂବାଦ ମାଧ୍ୟମରେ ମାନବୀୟ ଧର୍ମ, ମାନବୀୟ ବାସନାଗୁଡ଼ିକର ବର୍ଣ୍ଣନା କରାଯାଇଛି । ପ୍ରକୃତିରେ ମନୁଷ୍ୟ, ଅସୁର ଏବଂ ଦେବତା ଆଦି ଭିନ୍ନ-ଭିନ୍ନ ପ୍ରକାରର ଲୋକ ଅଛନ୍ତି ଏବଂ ସେମାନଙ୍କର ବାସନା ମଧ୍ୟ ଭିନ୍ନ-ଭିନ୍ନ ପ୍ରକାରର ହୋଇଥାଏ । ତେଣୁ ଭଗବାନଙ୍କର ଅନୁଗ୍ରହ ମଧ୍ୟ ଭିନ୍ନ-ଭିନ୍ନ ରୂପରେ ଦେଖାଯାଏ । ସ୍ୱୟଂ ଭଗବାନଙ୍କର ନା କାହା ସହିତ ରାଗ ଥାଏ ନା ଦ୍ୱେଷ । ଭଗବାନ ସବୁବେଳେ ନିଷ୍ପକ୍ଷ । କିନ୍ତୁ ଆମ ମାନଙ୍କୁ ଲାଗେ ଯେ ସେ ସବୁବେଳେ ଦେବତା ମାନଙ୍କ ପକ୍ଷ ନେଉଛନ୍ତି ।

ଏଠାରେ ଏହି ପ୍ରଶ୍ନ ରାଜା ପରୀକ୍ଷିତ ପଚାରିଛନ୍ତି - ଭଗବାନ ତ ସମ, ତାଙ୍କର କାହା ସହିତ ରାଗଦ୍ୱେଷ ନାହିଁ, ସେ ନିଷ୍ପକ୍ଷ, ଏପରି କୁହାଯାଏ । ପୁଣି ସେ ଦେବତାମାନଙ୍କର ପକ୍ଷ ସବୁବେଳେ କାହିଁକି ନିଅନ୍ତି ? ଅସୁରମାନଙ୍କ ପକ୍ଷ କାହିଁକି ନିଅନ୍ତି ନି ?

ଏହାର ଗୋଟିଏ ଉତ୍ତର ଗୀତାରେ କୁହାଯାଇଛି -

**ସମୋଽହଂ ସର୍ବଭୂତେଷୁ ନ ମେ ଦ୍ୱେଷ୍ୟୋଽସ୍ତି ନ ପ୍ରିୟଃ ।**

**ଯେ ଭଜନ୍ତି ତୁ ମାଂ ଭକ୍ତ୍ୟା ମୟି ତେ ତେଷୁ ଚାପ୍ୟହମ୍ ॥**

**(ଭ.ଗୀତା ୯.୨୯)**

ଭଗବାନ କହିଲେ, "ମୋର କାହାରି ସହିତ ରାଗଦ୍ୱେଷ ନାହିଁ , କିନ୍ତୁ ଯିଏ ଭକ୍ତି ପୂର୍ବକ ମୋର ଭଜନ କରନ୍ତି, ମୁଁ ସେମାନଙ୍କ ଭିତରେ ରହେ ଏବଂ ସେମାନେ ମୋ ଭିତରେ ରୁହନ୍ତି ।" ଭଗବାନ ଶଙ୍କରାଚାର୍ଯ୍ୟ ଏହାର ଅତ୍ୟନ୍ତ ସୁନ୍ଦର ଉଦାହରଣ ଦେଇଛନ୍ତି। ଯେପରି ଅଗ୍ନି ସମସ୍ତଙ୍କ ପାଇଁ ସମାନ ଅଟେ । ଶୀତ ଦିନରେ ଯିଏ ନିଆଁ ଜଳେଇ ତା ପାଖରେ ଯାଇ ବସେ ତାକୁ ଶୀତ ଲାଗେ ନାହିଁ । କିନ୍ତୁ ଯିଏ ଦୂରରେ ବସିଛି ତ ସେ ଶୀତରେ କମ୍ପୁଥିବ । ଏବେ ଯଦି ସେ କହିବ ଯେ ଦେଖିଲ, ନିଆଁ ସେହି ଲୋକଟିର ଶୀତ ତ ଦୂର କରୁଛି କିନ୍ତୁ ମୁଁ ବି ଏଇଠି ବସିଛି କିନ୍ତୁ ମୋ ଶୀତକୁ ଦୂର କରୁନି । ସେତେବେଳେ ଅଗ୍ନି କହିବ - ମୁଁ ତୁମ ଦୁହିଁଙ୍କ ପାଇଁ ସମାନ । ତୁମେ ମୋ ପାଖକୁ ତ ଆସ । ସେହିପରି ଯେଉଁ ବ୍ୟକ୍ତି ଭଗବାନଙ୍କ ପାଖକୁ ସାହାଯ୍ୟ ମାଗିବା ପାଇଁ ଯାଏ, ତା ଉପରେ କୃପା ହେଉଥାଏ । ଦୂରରୁ ଅନୁଭବ ହେଇପାରେ ଯେ ଭଗବାନ ଜଣଙ୍କୁ ସାହାଯ୍ୟ କରୁଛନ୍ତି ଅନ୍ୟକୁ ନୁହଁ । ଭଗବାନ କହୁଛନ୍ତି ତୁମେ ମୋ ପାଖକୁ ତ ଆସ, ମୁଁ ତୁମକୁ ମଧ୍ୟ ସାହାଯ୍ୟ କରିବି । ଦ୍ୱିତୀୟ କଥା ହେଲା ଯେ ଭଗବାନଙ୍କ ନିକଟରେ କୌଣସି ପ୍ରକାରର ରାଗଦ୍ୱେଷ ନ ଥାଏ । କିନ୍ତୁ ଅସୁରମାନଙ୍କୁ ଲାଗେ ଯେ ଭଗବାନ ତାଙ୍କ ଉପରେ ରାଗି ତାଙ୍କୁ ଦଣ୍ଡ ଦେଉଛନ୍ତି । ପ୍ରକୃତରେ ଭଗବାନ ଅସୁରମାନଙ୍କ ପ୍ରତି ମଧ୍ୟ ପ୍ରସନ୍ନ । କେହି ବି ପଚାରିପାରେ ଆପଣ କେମିତି ଜାଣିଲେ ? ଦେଖନ୍ତୁ, ଏହି କଥା କେବଳ ଆପଣଙ୍କୁ ହିନ୍ଦୁ ଧର୍ମଗ୍ରନ୍ଥ ମାନଙ୍କରେ ହିଁ ମିଳିବ ଯେଉଁଥିରେ କୁହାଯାଇଛି ଯେ ଭଗବାନଙ୍କ ସହ ଦ୍ୱେଷ କଲେ ମଧ୍ୟ ମୁକ୍ତି ମିଳିପାରିବ । ଅନ୍ୟ କେଉଁଠି ଏମିତି କଥା ମିଳିବ ? ଏଠି ତ କୁହାଯାଇଛି ଯେ ଯିଏ ଭଗବାନଙ୍କ ସହ ଦ୍ୱେଷ କରିବ ଭଗବାନ ତା'କୁ ମଧ୍ୟ ମୁକ୍ତି ଦିଅନ୍ତି, କେବଳ ପ୍ରେମ କରିବା ଲୋକକୁ ନୁହଁ ।

## ଯୁଧିଷ୍ଠିରଙ୍କ ପ୍ରଶ୍ନ - ନାରଦଙ୍କ ସମାଧାନ

ପରୀକ୍ଷିତଙ୍କ ଦ୍ୱାରା ପଚରା ଯାଇଥିବା ପ୍ରଶ୍ନର ଉତ୍ତର ଦେବାକୁ ଯାଇ ଶ୍ରୀ ଶୁକଦେବ ନାରଦ ମୁନିଙ୍କ ଦ୍ୱାରା କଥିତ ଗୋଟିଏ କଥା ଶୁଣେଇଲେ । ଯୁଧିଷ୍ଠିର ଯେତେବେଳେ ରାଜସୂୟ ଯଜ୍ଞ କରୁଥିଲେ ସେଠାରେ ଭଗବାନଙ୍କୁ ଅଗ୍ରପୂଜାର ସମ୍ମାନ ଦିଆଗଲା । ସେତେବେଳେ ଶିଶୁପାଳ ଭଗବାନଙ୍କୁ ଗାଳି ଦେବାକୁ ଲାଗିଲେ । ସେ ଶହେଟି ଗାଳି ଦେଇ ସାରିଲା ପରେ ଭଗବାନ ଚକ୍ର ଦ୍ୱାରା ତାକୁ ମାରି ଦେଲେ । ସେତେବେଳେ ତା ଶରୀରରୁ ଜ୍ୟୋତି ବାହାରି ଗଲା ଏବଂ ତାହା ଭଗବାନଙ୍କ ଭିତରେ ସମାହିତ ହୋଇଗଲା । ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଦେଖିଲେ ଦିନରାତି ଦ୍ୱେଷ କରୁଥିବା ବ୍ୟକ୍ତିଙ୍କୁ ଭଗବାନ ପ୍ରାପ୍ତ ହେଲେ । ଯୁଧିଷ୍ଠିରଙ୍କୁ ବହୁତ ଆଶ୍ଚର୍ଯ୍ୟ ଲାଗିଲା । ସେତେବେଳେ ପୂର୍ଣ୍ଣ ସଭାରେ ସେ ନାରଦଙ୍କୁ ପ୍ରଶ୍ନ କଲେ ଯେ ସର୍ବଦା ଭଗବାନଙ୍କୁ ଦ୍ୱେଷ କରୁଥିବା ଶିଶୁପାଳଙ୍କୁ ଭଗବତ୍ ପ୍ରାପ୍ତି କେମିତି ହେଲା । ଏଠାରେ ସିଧା କଥା ଏତିକି ଯେ ଭଗବାନ ସମସ୍ତ ମାନଙ୍କ ପାଇଁ ସମାନ, ଯିଏ ତାଙ୍କ ପାଖକୁ ଯାଏ, ତାକୁ ତାଙ୍କ କୃପା ମିଳେ ।

ଆମେ ଅଜ୍ଞାନ ଯୋଗୁଁ ଆରୋପ କରୁଛୁ ଯେ ଭଗବାନ ଅମୁକ-ଅମୁକ ସହିତ ପକ୍ଷପାତ କରୁଛନ୍ତି । ସତ କଥା ତ ଏତିକି ଯେ ଦେବ ହୁଅନ୍ତୁ ବା ଦାନବ, ସୁର ହୁଅନ୍ତୁ ବା ଅସୁର, ଭଗବାନ ସମସ୍ତଙ୍କର । ଅସୁର ଯଦି ଦ୍ୱେଷ ସହିତ ତାଙ୍କୁ ସ୍ମରଣ କରୁଛି ତାହାଲେ ମଧ୍ୟ ଭଗବାନ ତାଙ୍କୁ ମୁକ୍ତି ଦେଉଛନ୍ତି । ଏହା ନାରଦ ଯୁଧିଷ୍ଠିରଙ୍କୁ କହିଲେ । ଭଗବାନଙ୍କ ସ୍ୱଭାବ ବିଚିତ୍ର । ତାଙ୍କୁ ନିଜ ନାମକୁ ସେ ବହୁତ ଭଲ ପାଆନ୍ତି । ଆରେ ବାବୁ, ସେଥିପାଇଁ ତ ଆମକୁ ମଧ୍ୟ ନିଜ ନାମ ବହୁତ ଭଲ ଲାଗେ । ତେଣୁ ଦାନ ସମୟରେ କହନ୍ତି ଯଦି ମୋ ନାଁ ଲେଖିବି ମୁଁ ଦେବି । ତେବେ ଏହି ଭାବନା ମନରେ କାହିଁକି ଆସେ ? କାରଣ ସମସ୍ତଙ୍କୁ ନିଜ ନାମ ବହୁତ ଭଲ ଲାଗେ । ଯେମିତି ନିଜ ଲେଖାରେ ନିଜ ନାମ ନ ଦେଖିଲେ ଲୋକଟି ଭାବେ ମୋ ନାଁ ତ ନାହିଁ । ତାକୁ କୁହନ୍ତୁ ଭୁଲ ହୋଇଗଲା । କିନ୍ତୁ ଆପଣଙ୍କ ଏତେ ବଡ଼ ଲେଖା ତ ଛପାଗଲା । ସେ କହିବ ଏତେ ବଡ ଲେଖା ଛାପିଦେଲ, ଟିକିଏ ନା କୁ ନାଁଟାକୁ ଛାପି ଦେଇ ଥିଲେ କଣ ବିଗିଡ଼ି ଯାଇଥାନ୍ତା ? ଦେଖିଲେ, ଲେଖାଛପା ଗଲା କିନ୍ତୁ ନିଜ ନାଁ ନ ଦେଖିଲେ କ୍ରୋଧ ଆସେ । କେବଳ ନାମ ଛାପନ୍ତୁ , ଲେଖାଛପା ନ ଗଲେ ବି ଚଳିବ । ଭଗବାନଙ୍କୁ ମଧ୍ୟ ନିଜ ନାମ ଅତ୍ୟନ୍ତ ପ୍ରିୟ । ସେ ଭାବନ୍ତି ଯେଉଁ ଭାବନାରେ ହେଉପଛେ, ମତେ ତ ସ୍ମରଣ କରୁଛି । ବାସ୍ ! ନାରଦ କହିଲେ, ଭଗବାନ ତ ଏମିତି ଯେ -

**ସ୍ନେହାତ୍କାମେନ ବା ଯୁଞ୍ଜ୍ୟାତ୍ କଥଂଚିନ୍ନେକ୍ଷତେ ପୃଥକ୍ ।।(୭.୧.୨୫)**

କିଏ ତାଙ୍କୁ ସ୍ନେହର ସହିତ ସ୍ମରଣ କରୁଛି, କି କାମନାର ସହ କି ଶତ୍ରୁ ଭାବରେ, ଭଗବାନ ଦେଖନ୍ତି ନାହିଁ । ସେ ଖାଲି ଦେଖନ୍ତି ଯେ ମୋତେ ସ୍ମରଣ କରୁଛି । ସତ କଥା ହେଲା ଯେ ଦ୍ୱେଷ କଲା ବ୍ୟକ୍ତିକୁ ସ୍ମରଣ କଲା ବେଳେ ଅତ୍ୟନ୍ତ ତୀବ୍ରତାର ସହ ତାକୁ ସ୍ମରଣ କରୁ । ତନ-ମନରେ ! ଯେମିତି ଆମ ଶରୀରର ପ୍ରତ୍ୟେକ କୋଷ ତାକୁ ମନେ ପକାଉଛି ।

**ଯଥା ବୈରାନୁବନ୍ଧେନ ମର୍ତ୍ୟସ୍ତନ୍ମୟତାମିୟାତ୍ ।**
**ନ ତଥା ଭକ୍ତିଯୋଗେନ ଇତି ମେଁ ନିଶ୍ଚିତା ମତିଃ ।।(୭.୧.୨୬)**

ଏଠାରେ ନାରଦ ଯୁଧିଷ୍ଠିରଙ୍କୁ କହୁଛନ୍ତି - ଦ୍ୱେଷ ସହ ଭଗବାନଙ୍କ ସ୍ମରଣରେ ଯେଉଁ ତୀବ୍ରତା ଥାଏ ତାହା ପ୍ରେମ ସହ ସ୍ମରଣ କରିବାରେ ନ ଥାଏ । ଏହାର ଅର୍ଥ ଆଦୌ ନୁହେଁ ଯେ ଭଗବାନଙ୍କ ସହ ଦ୍ୱେଷ କରିବା । ଏଇଆ ବୁଝିବା ଯେ ଯେଉଁମାନେ ଭଗବାନଙ୍କୁ ଦ୍ୱେଷର ସହିତ ସ୍ମରଣ କଲେ ଭଗବାନ ସେମାନଙ୍କୁ ମଧ୍ୟ ମୁକ୍ତ କରି ଦେଲେ, ତେଣୁ ଯିଏ ପ୍ରେମର ସହ ଭଗବାନଙ୍କୁ ସ୍ମରଣ କରିବ ଭଗବାନ ତାହାପାଇଁ କଣ ନ କରିବେ ? ଭଗବାନ ବୁଝିପାରନ୍ତିନି ଯେ ମୁଁ ଯା ଲାଗି କଣ କରିବି । ଭାଗବତରେ ଏଥିପାଇଁ ଗୋଟେ ପ୍ରସିଦ୍ଧ ଶ୍ଳୋକ ଅଛି ।

**କାମାଦ୍ ଦ୍ୱେଷାଦ୍‌ଭୟାତ୍‌ସ୍ନେହାଦ୍ୟଥା ଭକ୍ତ୍ୟେଶ୍ୱରେ ମନଃ ।**
**ଆବେଶ୍ୟ ତଦଘଂ ହିତ୍ୱା ବହବସ୍ତଦ୍ଗତିଂ ଗତାଃ ।। (୭.୧.୨୯)**
**ଗୋପ୍ୟଃ କାମାଭୟାତ୍କଂସୋ ଦ୍ୱେଷାଚ୍ଚୈଦ୍ୟାଦୟୋ ନୃପାଃ ।**
**ସମ୍ବନ୍ଧାଦ୍ ବୃଷ୍ଣୟଃ ସ୍ନେହାଦ୍ୟୂୟଂ ଭକ୍ତ୍ୟା ବୟଂ ବିଭୋ ।। (୭.୧.୩୦)**
**କତମୋଽପି ନ ବେନଃ ସ୍ୟାତ୍ପଞ୍ଚାନାଂ ପୁରୁଷଂ ପ୍ରତି ।**
**ତସ୍ମାତ୍ କେନାପ୍ୟୁପାୟେନ ମନଃ କୃଷ୍ଣେ ନିବେଶୟେତ୍ ।। (୭.୧.୩୧)**

କହିଲେ ଯେ - କାମାତ୍, କାମ ବାସନା ମାଧ୍ୟମରେ ମଧ୍ୟ ଯଦି କୌଣସି ସ୍ତ୍ରୀ ଭଗବାନଙ୍କୁ ପତି ରୂପରେ ଚାହିଁଲା, ଅଥବା ଦୋଷ ବା ଭୟ ବା ସ୍ନେହ - ପ୍ରେମରେ ଚାହିଁଲା, ତେବେ ମଧ୍ୟ ତାକୁ ଭଗବାନଙ୍କ ଗତି ପ୍ରାପ୍ତ ହୁଏ । ଉଦାହରଣ ଦେଇଛନ୍ତି ଯେ **"କାମାତ୍ ଗୋପ୍ୟଃ"** - ଅନେକ ଗୋପୀ କାମନାର ସହ ଭଗବାନଙ୍କୁ ପ୍ରେମ କରିଥିଲେ,

ସେମାନେ ମଧ୍ୟ ମୁକ୍ତ ହୋଇଗଲେ । **'ଭୟାତ୍କଂସଃ'**- ଭୟ ଯୋଗୁ କଂସ ଦିନରାତି ଭଗବାନଙ୍କୁ ସ୍ମରଣ କରୁଥିଲା ସେ ମଧ୍ୟ ମୁକ୍ତ ହୋଇଗଲା । **'ଦ୍ୱେଷାଦ୍ ଚୈଦ୍ୟାଦୟଃ** - ଶିଶୁପାଳ ଆଦି ଦ୍ୱେଷ ସହ କୃଷ୍ଣଙ୍କୁ ସ୍ମରଣ କରୁଥିଲେ, **ସମ୍ବନ୍ଧାତ୍ ବୃଷ୍ଣୟଃ'** - ସମ୍ପୂର୍ଣ୍ଣ ବୃଷ୍ଣିବଂଶ, କୁଟୁମ୍ବ ସମ୍ବନ୍ଧୀ ସମ୍ବନ୍ଧ ଯୋଗୁଁ ଅତ୍ୟନ୍ତ ପ୍ରେମର ସହ ଭଗବାନଙ୍କୁ ସ୍ମରଣ କରୁଥିଲେ , ଆମେ ସମସ୍ତେ ଅତ୍ୟନ୍ତ ଭକ୍ତିର ସହିତ ତାଙ୍କୁ ସ୍ମରଣ କରୁଛୁ । ରାଜା ବେନ କୌଣସି ପ୍ରକାରରେ ମଧ୍ୟ ଭଗବାନଙ୍କୁ ସ୍ମରଣ କଲା ନାହିଁ । ସେ ଭଗବାନଙ୍କ ସହିତ ଦ୍ୱେଷ କରି ଥିଲେ ମଧ୍ୟ ମୁକ୍ତ ହୋଇପାରିଥାନ୍ତା । କିନ୍ତୁ ସେ ଦ୍ୱେଷ ମଧ୍ୟ କଲା ନାହିଁ । ତେଣୁ କୁହାଯାଏ ଯେ ନାସ୍ତିକର ସ୍ଥିତି ଅତ୍ୟନ୍ତ ଦୟନୀୟ ହୁଏ । ତାଠାରୁ ଭଲ ବରଂ ଯିଏ ଭଗବାନଙ୍କର ଶତ୍ରୁ ହୁଏ । କହିଲ ଦେଖି କୋଉ ଧର୍ମରେ ଏପରି କୁହାଯାଇଛି ଯେ ଦ୍ୱେଷ ପୂର୍ବକ ହେଲେ ମଧ୍ୟ ଯିଏ ଭଗବାନଙ୍କୁ ସ୍ମରଣ କରିବ, ତେବେ ବି ତାକୁ ମୁକ୍ତି ମିଳିପାରିବ ?

ଭଗବାନଙ୍କ ହାତରେ ହିରଣ୍ୟକଶ୍ୟପୁ ଏବଂ ହିରଣ୍ୟାକ୍ଷ ଉଭୟଙ୍କୁ ମୁକ୍ତି ମିଳିଗଲା । ଆମେ ପୂର୍ବରୁ ଦେଖି ସାରିଛେ ଯେ କିପରି ଜୟ-ବିଜୟଙ୍କୁ ସନତ୍କୁମାରଙ୍କ ଦ୍ୱାରା ଅଭିଶାପ ମିଳିଲା ଏବଂ ସେଇମାନେ ହିଁ ହିରଣ୍ୟାକ୍ଷ ଏବଂ ହିରଣ୍ୟକଶ୍ୟପୁ ହେଲେ । ହିରଣ୍ୟାକ୍ଷ କଥା ଆମେ ଦେଖି ସାରିଛେ ଏବଂ ଅନ୍ୟ ଭାଇ ହିରଣ୍ୟକଶିପୁର କାର୍ଯ୍ୟ କଳାପ ଦେଖିବା ।

## ହିରଣ୍ୟାକ୍ଷ ବଧ ପରେ ସ୍ୱଜନମାନଙ୍କୁ ହିରଣ୍ୟକଶିପୁର ଉପଦେଶ

ନିଜ ଭାଇର ମୃତ୍ୟୁ ଖବର ପାଇ ହିରଣ୍ୟକଶିପୁ ଦୁଃଖୀ, ବ୍ୟାକୁଳ, ଏବଂ କ୍ରୋଧିତ ହେଲା । ସେ ସବୁ ଦାନବ ମାନଙ୍କୁ ଡକାଇଲା ଏବଂ ତାଙ୍କୁ କହିଲା - ନିଜ ନିଜର ଅସ୍ତ୍ର-ଶସ୍ତ୍ର ନେଇ ଯାଅ ଏବଂ ଯେଉଁଠି ମନ୍ଦିର ଦେଖିବ, ତାକୁ ଭାଙ୍ଗିଦିଅ । ଯେଉଁଠି ଯାଗ-ଯଜ୍ଞ ଚାଲିଥିବ ତାକୁ ଧ୍ୱସ୍ତ କରିଦିଅ , କୌଣସି ସାଧୁକୁ ଜପ-ତପ କରିବାର ଦେଖିଲେ ତାକୁ ମାରିଦିଅ । କୋଉଠି କିଛି ଧର୍ମର କଥା ଦେଖିଲେ ତାକୁ ଶେଷ କରିଦିଅ , କାରଣ ଏସବୁ ଭଗବାନ ବିଷ୍ଣୁଙ୍କ ରହିବା ସ୍ଥାନ । ଏହି ସ୍ଥାନଗୁଡିକୁ ନଷ୍ଟ କରିଦେଲେ ଭଗବାନ ବିଷ୍ଣୁଙ୍କ ଶକ୍ତି ସମାପ୍ତ ହୋଇଯିବ । ଆଚ୍ଛା ! ତାହାହେଲେ ବୋଧେ ଭଗବାନ ବିଷ୍ଣୁଙ୍କ ଶକ୍ତି ଅଛି କେବଳ ଏହି ମନ୍ଦିରମାନଙ୍କ ଯୋଗୁଁ। । ହିରଣ୍ୟକଶିପୁ କହିଲା ଏହି ମାନଙ୍କୁ ସମାପ୍ତ କରିଦିଅ - ବ୍ରାହ୍ମଣ, ମନ୍ଦିର, ଯଜ୍ଞ ଏବଂ ଗାଈ । ଜାଣିଛନ୍ତି ତ, ଲୁଟିଲା ବାଲାକୁ ସେମିତି ବି ଭଙ୍ଗା-ରୁଜା କରିବାକୁ ଭଲ ଲାଗେ । ହିରଣ୍ୟକଶିପୁର ଆଦେଶ ଶୁଣି ମାର-କାଟ କହି ସେମାନେ ଦୌଡିଲେ ।

ସମସ୍ତ ଦୈତ୍ୟଙ୍କୁ ଆଦେଶ ଦେଇ ହିରଣ୍ୟକଶିପୁ ଘରକୁ ଆସିଲା । ତା'ର ସବୁ ସମ୍ବନ୍ଧୀ, ଆତ୍ମୀୟ ସ୍ୱଜନ ହିରଣ୍ୟାକ୍ଷ ବଧର ସମାଚାର ଶୁଣି କାନ୍ଦୁଥିଲେ । ସେ ସମସ୍ତଙ୍କୁ ବେଦାନ୍ତର ଏକ ଲମ୍ବା-ଚୌଡ଼ା ଭାଷଣ ଦେଲା । ଯାହାର ଜନ୍ମ ହୁଏ, ତା'ର ମୃତ୍ୟୁ ହୁଏ, କିନ୍ତୁ ଆତ୍ମା ଅମର । ଦେଖିଲେ ଏହା ସ୍ପଷ୍ଟ ଯେ ଏହି ଅସୁରମାନେ ମଧ୍ୟ ଆତ୍ମାର ଅସ୍ତିତ୍ୱକୁ ସ୍ୱୀକାର କରି ତାକୁ ଦେହଠାରୁ ଅଲଗା ଭାବୁଥିଲେ । ଏହି ଅସୁରମାନେ ତପ , ଯଜ୍ଞ କରୁଥିଲେ, ବେଦକୁ ବି ମାନୁଥିଲେ । ଯଜ୍ଞ ଆଉ ତପର ଶକ୍ତିକୁ ମାନୁଥିଲେ, ଭଗବାନଙ୍କ ଅସ୍ତିତ୍ୱକୁ ମଧ୍ୟ ମାନୁଥିଲେ । କିନ୍ତୁ ଦୟା, ଯାହା ଧର୍ମର ମୂଳ, ସେମାନଙ୍କ ହୃଦୟରେ ତାହା କିଞ୍ଚିତ୍ ମାତ୍ର ହେଲେ ନ ଥିଲା । ସେମାନଙ୍କ ଦୃଷ୍ଟିରେ ସ୍ୱୟଂର ଦୁଃଖ ହିଁ ସତ୍ୟ,ଅନ୍ୟର ଦୁଃଖ ମିଥ୍ୟା, ଏହା ହିଁ ସେମାନଙ୍କ ଦର୍ଶନ ଥିଲା ।

ଏବେ ଦେଖିବା ଅସୁର କାହାକୁ କୁହାଯାଏ ? ମନେ ରଖିବେ ଯିଏ ନିଜ ଦୁଃଖକୁ ସତ୍ୟ ଏବଂ ଅନ୍ୟର ଦୁଃଖକୁ ମିଥ୍ୟା ମାନେ ସେ ହିଁ **ଅସୁର** ଅଟେ । ସନ୍ଥ କିଏ ? ଯିଏ ନିଜ ଦୁଃଖକୁ ମିଥ୍ୟା ଏବଂ ଅନ୍ୟ ଦୁଃଖକୁ ସତ୍ୟ ମାନେ ସେ ସନ୍ଥ ।

ଥରେ ଜଣେ ଲୋକ ଆସି ମୋତେ କହିଲା- ସ୍ୱାମୀଜୀ, ମୁଁ କଣ କରିବି ? ଦଶହଜାର ଟଙ୍କାର କ୍ଷତି ହେଲାଣି । ମୁଁ କହିଲି - ଆରେ, କ୍ଷତି ତ ହେଉଥାଏ । ଯେତେବେଳେ ପୂରା ଦୁନିଆ ମିଥ୍ୟା ସେତେବେଳେ ଦଶହଜାର ଟଙ୍କା କଣ ? ଚାଲିଗଲା ତ ଗଲା । ଏଥିରେ ଦୁଃଖୀ ହେବାର କଣ ଅଛି । ତାକୁ ବେଦାନ୍ତ ଶୁଣେଇଲି । ଚାରିଦିନ ପରେ ସେ ପୁଣି ଭେଟିବାକୁ ଆସିଲା ତ ମୁଁ କାନ୍ଦୁଥିଲି । ସେ କହିଲା , "ସ୍ୱାମୀଜୀ କଣ ହେଲା ?" ମୋର ଦଶଟଙ୍କା ହଜିଗଲା । ସ୍ୱାମୀଜୀ ପୂର୍ବଦିନ ମୋର ଦଶହଜାର ଟଙ୍କାର କ୍ଷତିକୁ ଆପଣ କହିଲେ ଦଶହଜାର ମିଥ୍ୟା, ଦୁଃଖ ମିଥ୍ୟା, ପୂରାଦୁନିଆ ମିଥ୍ୟା, ଆପଣଙ୍କର ଖାଲି ଦଶଟଙ୍କା ଗଲା ତ ଏତେ କାନ୍ଦ । ମୁଁ କହିଲି - ଫରକ କେବଳ ଏତିକି ଯେ ଦଶହଜାର ଟଙ୍କା ତୁମର ଥିଲା ଏବଂ ଦଶଟଙ୍କା ମୋର । କହିବାର ଅର୍ଥ ଏଇଆ ଯେ ଅନ୍ୟର ଲାଭ-ହାନି ମିଥ୍ୟା ଏବଂ ନିଜର ଲାଭ-ହାନି ସତ୍ୟ , ଏହା ଆସୁରୀ ଲକ୍ଷଣ ।

ଦୈତ୍ୟମାନେ ହଣାକଟା ଆରମ୍ଭ କରିଦେଲେ ଆଉ ଘରେ ହିରଣ୍ୟକଶିପୁ ସ୍ୱଜନମାନଙ୍କୁ ବେଦାନ୍ତ ଶୁଣଉଥିଲା । ବେଦାନ୍ତ କଥା ସମସ୍ତଙ୍କ ମୁହଁରେ ଶୋଭା ଦିଏ ନାହିଁ । କୌଣସି ବ୍ୟକ୍ତି ଯେକୌଣସି କଥା କହିଲେ ବି ଭଲ ଲାଗେନି । ହିରଣ୍ୟକଶିପୁ ଦେବତାମାନଙ୍କର ଶକ୍ତି କମ୍ କରିବା ପାଇଁ ଯଜ୍ଞାଦି ସବୁ ନଷ୍ଟ କରି ଦେବା ପାଇଁ ଆଜ୍ଞା ଦେଇସାରିଥିଲା । ତଥାପି ତାକୁ ଲାଗିଲା ଯେ ମୋ ନିଜର ଶକ୍ତି ମଧ୍ୟ ବୃଦ୍ଧି ହେବା

ଦରକାର । ଏହା ଭାବି ସେ ତପସ୍ୟା କରିବା ପାଇଁ ଚାଲିଗଲା । ଦେଖନ୍ତୁ, ଅସୁରମାନଙ୍କ ପାଖରେ ଏକାଗ୍ରତା ଥିଲା, କିନ୍ତୁ ସେମାନଙ୍କର ଚିତ୍ତଶୁଦ୍ଧି ନ ଥିଲା । ଆମ ମନରେ ଦୁଇଟି ଜିନିଷ ରହିବା ଦରକାର । ପ୍ରଥମତଃ ଚିତ୍ତ ଶୁଦ୍ଧ ହେବା ଦରକାର, ଆଉ ଏକାଗ୍ରତା ବି ଦରକାର । କୌଣସି ଠାରେ ମନ ଲାଗି ଗଲେ ତାକୁ କେହି ହଲେଇ ପାରିବେନି , ବିଚଳିତ କରିପାରିବ ନାହିଁ ।

## ହିରଣ୍ୟକଶିପୁର ତପସ୍ୟା ଏବଂ ବରଦାନ-ପ୍ରାପ୍ତି

ସେ କେମିତି ତପସ୍ୟା କରିବାକୁ ଲାଗିଲା ? ଗୋଡର ବୁଢା ଆଙ୍ଗୁଠି ଉପରେ ଛିଡାହୋଇ, ହାତ ଉପରକୁ ଟେକି ଏବଂ ଦୃଷ୍ଟି ଉପରକୁ କରି ହିରଣ୍ୟକଶିପୁ ତପସ୍ୟା କରିବାକୁ ଲାଗିଲା । ତା ତପସ୍ୟା ଏତେ ଭୟଙ୍କର ହେଲା ଯେ ତା ଶରୀରରୁ ଜ୍ୱାଳା ପରି ଉତ୍ତାପ ବାହାରିବାକୁ ଲାଗିଲା । ତାର ତପସ୍ୟାର ଉତ୍ତାପରେ ପୁରା ବ୍ରହ୍ମାଣ୍ଡ ଜଳିବାକୁ ଲାଗିଲା । ସମସ୍ତ ଦେବତା ବ୍ୟାକୁଳ ହୋଇଗଲେ । ସେମାନେ ମିଶି ବ୍ରହ୍ମାଙ୍କ ପାଖକୁ ଗଲେ ଏବଂ କହିଲେ ହିରଣ୍ୟକଶିପୁ ଭୟଙ୍କର ତପସ୍ୟା କରୁଛି । ବ୍ରହ୍ମା କହିଲେ – ମୁଁ ତା'ପାଖକୁ ଯାଉଛି । ବ୍ରହ୍ମାଙ୍କ ସ୍ଥିତି ଏପରି ଯେ କେହି ତପସ୍ୟା କରି ଯାହା ମାଗିଲେ ବି ବ୍ରହ୍ମାଙ୍କୁ ତାକୁ ସେଇଆ ଦେବାକୁ ପଡେ । ତାପରେ ତା ଉପରେ ତାଙ୍କର କୌଣସି ନିୟନ୍ତ୍ରଣ ରହେ ନାହିଁ । ସେ ହିରଣ୍ୟକଶିପୁ ପାଖକୁ ଗଲେ ତା'ର ଦେହ ଦେଖା ଯାଉ ନ ଥିଲା । ମାଟିରେ ଲୁଚିଯାଇଥିଲା । ବ୍ରହ୍ମା ତା ଉପରେ ନିଜର ଦିବ୍ୟ ଜଳ-ସିଞ୍ଚନ କରିବାରୁ ସେ ସେହି ମାଟିଗଦା ଭିତରୁ ବାହାରି ସାମନାରେ ଠିଆ ହେଲା । ବ୍ରହ୍ମା ପଚାରିଲେ, "ହିରଣ୍ୟକଶିପୁ ତୁମର କଣ ଦରକାର ?" ଅସୁର ମାନେ ଗୋଟିଏ ଦାବୀ ସବୁବେଳେ କରନ୍ତି ଯେ ମୁଁ କେବେ ମରିବିନି । ମୁଁ ମରିବିନି ମାନେ ମୋର ଶରୀର ରହିବ । ହିରଣ୍ୟକଶିପୁ ମଧ୍ୟ ସେଇଆ ମାଗିଲା ।

ଏମିତି ହେଲେ ଅସୁରର ପରିଭାଷା କଣ ହେଲା ? ନିଜ ଦେହରେ ଆସକ୍ତ ହେଇ ଏହି ଦେହ ହିଁ ମୁଁ, ଦେହ ଭୋଗ କରୁଥାଉ, ଦେହ ଅମର ରହୁ, ଏପରି ଭାବନା, ନିଜ ଦୁଃଖକୁ ସତ୍ୟ ଓ ଅନ୍ୟର ଦୁଃଖକୁ ମିଥ୍ୟା ଭାବିବା, ନିଜକୁ ସୁଖ ମିଳୁ, ଅନ୍ୟକୁ ମିଳୁ କି ନ ମିଳୁ, ଯିଏ ଏପରି ଭାବେ ତାକୁ **ଅସୁର** କୁହାଯାଏ । ତେଣୁ ଯେତେବେଳେ ହିରଣ୍ୟାକ୍ଷ, ହିରଣ୍ୟକଶିପୁ ଆଦି ନାମ ନିଆଯାଏ ସେତେବେଳେ ତାଙ୍କର ଶିଙ୍ଘ ଥିବ, ବଡ ଭୟଙ୍କର ହୋଇଥିବ, ବଡ ବଡ ଓଠ ଓ ଦାନ୍ତ ଥିବ ଏପରି ଚିତ୍ର ତିଆରି କରିବା ବା ଏପରି ଭୟଙ୍କର ରୂପର କଳ୍ପନା କରିବା ଦରକାର ନାହିଁ । ଯାହାକୁ ଅନୁଭବ ହେଲା ଯେ

ମୁଁ ଦେହ ଅଟେ ତା ଭିତରେ ଅସୁରର ଗୋଟିଏ ଲକ୍ଷଣ ଆସିଗଲା, ଯେତେବେଳେ ଲାଗିବ ଯେ ମୋତେ ଦେହ ଭୋଗ ମିଳୁଥାଉ ସେତେବେଳେ ଦ୍ୱିତୀୟ ଲକ୍ଷଣ ମଧ୍ୟ ଆସିଗଲା । ଅନ୍ୟକୁ ମିଳୁ କି ନ ମିଳୁ । କିଛି କଥା ନାହିଁ । ଏଇଟା ତୃତୀୟ ଲକ୍ଷଣ । ଏ ସମସ୍ତ ଆସୁରୀ ଲକ୍ଷଣ ଯାହା ପାଖରେ ଥାଏ ସେ ଅସୁର ।

ବ୍ରହ୍ମା ହିରଣ୍ୟକଶିପୁକୁ କହିଲେ- ସୃଷ୍ଟି ନିର୍ମାଣ ବିଭାଗ ମୋ ପାଖରେ ଅଛି । କିନ୍ତୁ ସଂହାର ବିଭାଗ ନାହିଁ । ମୁଁ କେବଳ ନିର୍ମାଣ କରେ । ତେଣୁ ତୁମର ମରଣ ହେବନାହିଁ, ଏପରି ବର ମୁଁ ଦେଇପାରିବି ନାହିଁ, ମୋ ହାତରେ ନାହିଁ ।

ଅସୁରମାନେ ନିଜକୁ ଅତ୍ୟନ୍ତ ବୁଦ୍ଧିମାନ ଭାବୁଥିଲେ । ଯିଏ ନିଜକୁ ଅତିବୁଦ୍ଧିଆ ଭାବେ ସେ ଗଡବଡ କାମ କରିଦିଏ । ହିରଣ୍ୟକଶିପୁ ମଧ୍ୟ ନିଜକୁ ବହୁତ ବୁଦ୍ଧିମାନ ଭାବୁଥିଲା । ସେ ଭାବିଲା ମୋର ମରଣ ନ ହେଉ ଏମିତି ବର କେମିତି ମାଗିବି ? ଅନ୍ୟ ଯୁକ୍ତି ବାହାର କରି କହିଲା, "ଆପଣଙ୍କ ସୃଷ୍ଟିର, ଆପଣଙ୍କ ଦ୍ୱାରା ନିର୍ମିତ କୌଣସି ବସ୍ତୁ ମୋତେ ମାରିପାରିବ ନାହିଁ । ମୋର ମରଣ ଘର ଭିତରେ ହେବନି କି ବାହାରେ ମଧ୍ୟ ହେବନି, ଆକାଶରେ ଉପରେ ହେବନି, ଭୂମି ଉପରେ ମଧ୍ୟ ହେବନି, ଅସ୍ତ୍ରଦ୍ୱାରା ହେବନି କି ଶସ୍ତ୍ରଦ୍ୱାରା ହେବନି ।" ଏତେ ସର୍ତ୍ତ ରଖିଦେଲା । ବ୍ରହ୍ମା କହିଲେ ତଥାସ୍ତୁ । ତାଙ୍କୁ ତଥାସ୍ତୁ କହିବାକୁ ପଡିଲା । ଏମିତି ବର ପ୍ରାପ୍ତ କରି ପୂର୍ବରୁ ଭୟଙ୍କର ଶକ୍ତିଶାଳୀ ଥିବା ହିରଣ୍ୟକଶିପୁ ଆହୁରି ସାମର୍ଥ୍ୟବାନ୍ ହେଇଗଲା । ତାର ଶକ୍ତି, ଅହଙ୍କାର ତଥା ବଳ ବଢିଗଲା । ସେ ଘରକୁ ଫେରିଆସିଲା ।

ହିରଣ୍ୟକଶିପୁ ଯେତେବେଳେ ତପସ୍ୟା କରିବାକୁ ଗଲା, ଇନ୍ଦ୍ର ଦେଖିଲେ ଯେ ଭଲ ସୁଯୋଗ ଜୁଟିଛି । ଏବେ ଆମେ ସବୁ ଅସୁରଙ୍କୁ ମାରିପାରିବା । ହିରଣ୍ୟକଶିପୁର ପତ୍ନୀ କୟାଧୂ ଗର୍ଭବତୀ ଥିଲା । ଇନ୍ଦ୍ର ତାକୁ ସାଂଗରେ ନେଇଯାଉଥିଲେ ଯେ ପୁଅ ଜନ୍ମ ହେଲେ ତାକୁ ମାରିଦେଇ ମା'କୁ ଛାଡିଦେବେ । କିନ୍ତୁ ସେଠି ନାରଦ ପହଞ୍ଚିଯାଇ କହିଲେ - ମୁଁ ୟାକୁ ନିଜ ଆଶ୍ରମକୁ ନେଇଯିବି କାରଣ ଏହାର ପୁତ୍ର ମହାଭାଗବତ ହେବ । ସେ ତାକୁ ନେଇଗଲେ । ସେହି ପୁତ୍ରର ନାମ ପ୍ରହ୍ଲାଦ । ହିରଣ୍ୟକଶିପୁର ଚାରିପୁଅ ହେଲେ । କିନ୍ତୁ ସବୁଠାରୁ ଶ୍ରେଷ୍ଠ, ସୁନ୍ଦର ଏବଂ ଗୁଣବାନ ପ୍ରହ୍ଲାଦ ଥିଲେ । ଆମେ ତାଙ୍କର କିଛି ଗୁଣ ଏଠି ଦେଖିବା ।

## ପ୍ରହ୍ଲାଦ-ଚରିତ୍ର

ପ୍ରଥମେ ପ୍ରହ୍ଲାଦ ଶବ୍ଦର ଅର୍ଥ ବୁଝିବା । ପ୍ରହ୍ଲାଦ – 'ହ୍ଲାଦ' ଶବ୍ଦର ଅର୍ଥ ହେଲା ଆନନ୍ଦ । ତେଣୁ ପ୍ରହ୍ଲାଦ ଶବ୍ଦର ଅର୍ଥ ହେଲା ଯିଏ ସବୁବେଳେ ଆନନ୍ଦରେ ରହେ । **'ପ୍ରକୃଷ୍ଟଃ ହ୍ଲାଦଃ ଯସ୍ୟ'** ଯାହାର ଆନନ୍ଦ ଅତ୍ୟନ୍ତ ଉଚ୍ଚ କୋଟୀର, ଅତ୍ୟନ୍ତ ଶ୍ରେଷ୍ଠ, ତାକୁ ପ୍ରହ୍ଲାଦ କହନ୍ତି । **'ପ୍ରକର୍ଷେଣ ହ୍ଳାଦୟତି'** ଅନ୍ୟକୁ ଯିଏ ଆନନ୍ଦିତ କରେ ତାକୁ ପ୍ରହ୍ଲାଦ କହନ୍ତି । ଯିଏ ନିଜେ ଆନନ୍ଦସ୍ୱରୂପ, ଅନ୍ୟକୁ ଆନନ୍ଦିତ କରେ ସେ ପ୍ରହ୍ଲାଦ ଅଟେ ।

ପ୍ରହ୍ଲାଦଙ୍କ ପାଖରେ କେଉଁ-କେଉଁ ଗୁଣ ଥିଲା ? **'ବ୍ରହ୍ମଣ୍ୟଃ'**- ସେ ବ୍ରାହ୍ମଣମାନଙ୍କୁ ସମ୍ମାନ କରୁଥିଲେ, **'ଶୀଲ ସମ୍ପନ୍ନଃ'** ତାଙ୍କର ଶୀଳ ଅତ୍ୟନ୍ତ ଉଚ୍ଚ ସ୍ତରର ଥିଲା ଅର୍ଥାତ୍ ତାଙ୍କର ଚରିତ୍ର, ବ୍ୟବହାର ଏବଂ ଭାବ ସବୁକିଛି ଶ୍ରେଷ୍ଠ ଥିଲା । **'ସତ୍ୟସନ୍ଧଃ'** ସେ ସତ୍ୟ କହୁଥିଲେ , କାହାକୁ ବଚନ ଦେଲେ ନିଶ୍ଚିତ ରୂପେ ତାକୁ ପୂର୍ଣ୍ଣ କରୁଥିଲେ । **'ଜିତେନ୍ଦ୍ରିୟଃ'** ନିଜ ଇନ୍ଦ୍ରିୟଗୁଡିକ ଉପରେ ପୂର୍ଣ୍ଣ ସଂଯମ ପ୍ରାପ୍ତ କରିପାରିଥିଲେ, **'ଆତ୍ମବତ୍ ସର୍ବଭୂତାନାଂ ଏକଃ ପ୍ରିୟସୁହୃତ୍ତମଃ'** ଯେପରି ସେ ନିଜକୁ ଦେଖୁଥିଲେ ଅନ୍ୟମାନଙ୍କୁ ମଧ୍ୟ ଠିକ୍ ସେହିପରି ଦେଖୁଥିଲେ । ତେଣୁ ସେ ସମସ୍ତଙ୍କର ପ୍ରିୟ ହେଇଯାଇଥିଲେ । **'ଦାସବତ୍ସଂନତାର୍ଯାଙ୍‌ଘ୍ରି'** **'ଆର୍ଯ୍ୟ'** ଅର୍ଥାତ୍ ଶ୍ରେଷ୍ଠ ପୁରୁଷମାନଙ୍କ ସମ୍ମୁଖରେ ସେ ଦାସ ରୂପରେ ଠିଆ ହେଉଥିଲେ। **'ଭ୍ରାତୃବତ୍ ସଦୃଶେ ସ୍ନିଗ୍ଧଃ'** ନିଜ ସମସ୍କନ୍ଧମାନଙ୍କ ସହିତ ସେ ଭାଇ ଭଳି ବ୍ୟବହାର କରୁଥିଲେ ଏବଂ **'ଗୁରୁଷୁ ଈଶ୍ୱରଭାବନଃ'** ଗୁରୁ ହିଁ ଭଗବାନ ଅଟନ୍ତି, ଏହା ମାନୁଥିଲେ। ଅର୍ଥାତ୍ ଗୁରୁଙ୍କୁ କେବେହେଲେ ମନୁଷ୍ୟ ମାନୁ ନ ଥିଲେ । ତାଙ୍କ ପାଖରେ ଏପରି ଗୁଣ ଥିଲା ।

**ବିଦ୍ୟାର୍ଥରୂପଜନ୍ମାଢ୍ୟୋ ମାନସ୍ତମ୍ଭବିବର୍ଜିତଃ ॥ (୭.୪.୩୨)**

ବିଦ୍ୟାରେ, ରୂପରେ, ଅର୍ଥରେ, ସବୁରେ ସେ ଥିଲେ ଶ୍ରେଷ୍ଠ କିନ୍ତୁ ତାଙ୍କର ଲେଶ ମାତ୍ର ମଧ୍ୟ ଅଭିମାନ ନ ଥିଲା ।

**'ନୋଦ୍ୱିଗ୍ନଚିତ୍ତୋ ବ୍ୟସନେଷୁ ନିଃସ୍ପୃହଃ' ॥(୭.୪.୩୩)**

କୌଣସି ପ୍ରକାରର ବ୍ୟସନ-ସଂକଟ, ବା କଷ୍ଟର ପ୍ରସଙ୍ଗ ଆସିଲେ ମଧ୍ୟ ସେ ବିଚଳିତ ହେଉ ନ ଥିଲେ। ତାଙ୍କର କୌଣସି ବସ୍ତୁରେ କୌଣସି ସ୍ପୃହା,ଆସକ୍ତି ବା ଲାଳସା ନଥିଲା । ଦେଖିଥିବା ବସ୍ତୁ ବା ନ ଦେଖିଥିବା ବସ୍ତୁ, ଜ୍ଞାତ-ଅଜ୍ଞାତ ସେ ସବୁଠାରୁ ବିରକ୍ତ ଥିଲେ । **'ପ୍ରଶାନ୍ତକାମୋ ରହିତାସୁରୋଽସୁରଃ'** ଅସୁର ଜାତିରେ ଜନ୍ମ ନେଇ

ମଧ୍ୟ ଅସୁରମାନଙ୍କର ଗୋଟିଏ ହେଲେ ଲକ୍ଷଣ ତାଙ୍କ ପାଖରେ ନଥିଲା । ଏହା ଦେବର୍ଷି ନାରଦଙ୍କ କୃପା, ସନ୍ଥଙ୍କ କୃପା । ପ୍ରହ୍ଲାଦଙ୍କ ଗୁଣଗୁଡିକର ଯେତେ ବର୍ଣ୍ଣନା କରିବା, କମ ହେବ ।

**ବାସୁଦେବେ ଭଗବତି ୟସ୍ୟ ନୈସର୍ଗିକୀ ରତିଃ ॥ (୭.୪.୩୬)**

ଭଗବାନ ବାସୁଦେବଙ୍କ ନିକଟରେ ତାଙ୍କର ସହଜ, ସରଳ, ନୈସର୍ଗିକ ପ୍ରେମ ଥିଲା । ଭଗବାନଙ୍କ ପାଖରେ ମନ ଲଗେଇବା ପାଇଁ ତାଙ୍କୁ ଚେଷ୍ଟା କରିବାକୁ ମଧ୍ୟ ପଡୁ ନ ଥିଲା । ତାଙ୍କ ମନ କେବେ ବି ସେଠାରୁ ଦୂରକୁ ଯାଉ ନ ଥିଲା, ପ୍ରକୃତ ସତ୍ୟ ତ ଏଇଆ । ବାଲ୍ୟାବସ୍ଥାରେ ମଧ୍ୟ ଅନ୍ୟ ଖେଳରେ ତାଙ୍କ ମନ କେବେ ବି ଲାଗୁ ନଥିଲା ।

**କୃଷ୍ଣଗ୍ରହଗୃହୀତାତ୍ମା ନ ବେଦ ଜଗଦୀଦୃଶମ୍ ॥ (୭.୪.୩୭)**

ଲୋକମାନେ ଯେପରି ଗ୍ରହମାନଙ୍କ ଦ୍ୱାରା ପୀଡିତ ହୁଅନ୍ତି, ଯେମିତି ତାଙ୍କୁ ଭୂତ ଲାଗେ, ଠିକ୍ ସେହିପରି ସତେ ଯେମିତି ତାଙ୍କୁ କୃଷ୍ଣ ଲାଗିଯାଇଥିଲେ । ତାଙ୍କୁ ଜଗତର ଅନୁଭବ ହିଁ ହେଉ ନଥିଲା । ବସିଥିବା ବେଳେ, ଶୋଇଥିବା ବେଳେ, ଚାଲୁଥିବା ବେଳେ, ସବୁବେଳେ ସେ ଗୋବିନ୍ଦ-ଗୋବିନ୍ଦ, ହରି-ହରି ଏହିପରି ଭଗବାନଙ୍କ ନାମ ସ୍ମରଣ କରୁଥିଲେ ଏବଂ **'କ୍ୱଚିଦ୍‌ରୁଦତି'**ଭଗବାନଙ୍କୁ ସ୍ମରଣ କରି କୌଣସି ଲୀଳା ମନେ ପଡିଗଲେ ହସିବାକୁ ଲାଗୁଥିଲେ । **'କ୍ୱଚିଦ୍‌ହସତି'** କେବେ ହଠାତ୍ ଭଗବାନଙ୍କ ହସ ମନେପକାଇ ହସିବାକୁ ଲାଗୁ ଥିଲେ। କେବେ ଆନନ୍ଦିତ ହେଉଥିଲେ ତ କେବେ ଗୀତ ଗାଉଥିଲେ, କେବେ ନୃତ୍ୟ କରୁଥିଲେ ତ କେବେ ନାଚିନାଚି ଏକଦମ୍ ବସି ଯାଉଥିଲେ ଏବଂ ସ୍ତବ୍ଧ ହେଇଯାଉଥିଲେ । ତାଙ୍କୁ ଏପରି ପରା ନିବୃତ୍ତି ପ୍ରାପ୍ତ ହେଇଯାଉଥିଲା ।

**ସ ଉତ୍ତମଶ୍ଳୋକପଦାରବିନ୍ଦୟୋ-**

**ର୍ନିଷେବୟାକିଞ୍ଚନସଙ୍ଗଲବ୍ଧୟା ।**

**ତନ୍ୱନ ପରାଂ ନିର୍ବୃତ୍ତିମାତ୍ମନୋ ମୁହୁ-**

**ର୍ଦୁଃସଂଗଦୀନାନ୍ୟମନଃ ଶମଂ ବ୍ୟଧାତ୍ ॥(୭.୪.୪୨)**

ସନ୍ଥମାନଙ୍କ ସହିତ ରହିବା ଯୋଗୁଁ ତାଙ୍କୁ ଏପରି ଦୁର୍ଲଭ, ନିର୍ମଳ ଭକ୍ତି ପ୍ରାପ୍ତ ହେଇଗଲା । ଏପରି ପ୍ରହ୍ଲାଦଙ୍କ ସହ ହିରଣ୍ୟକଶିପୁ ଦ୍ୱେଷ କରିବାକୁ ଲାଗିଲା, ଏହା ଶୁଣି ଯୁଧିଷ୍ଠିର ଆଶ୍ଚର୍ଯ୍ୟ ହେଲେ । ତାଙ୍କ ମନରେ ପ୍ରଶ୍ନ ଉଠିଲା ଯେ ଏପରି ସୁନ୍ଦର ଏବଂ

ଗୁଣବାନ ବାଳକ ସହିତ ହିରଣ୍ୟକଶିପୁ ଦ୍ୱେଷ କାହିଁକି କଲା ? ପ୍ରକୃତ କଥା ଏହା ଯେ ପ୍ରହ୍ଲାଦ ହରିଭକ୍ତ ଥିଲେ । ହରିଭକ୍ତି ଯୋଗୁଁ ସେ ହିରଣ୍ୟକଶିପୁର ଦ୍ୱେଷର ପାତ୍ର ହେଇଗଲେ। ହିରଣ୍ୟକଶିପୁର ସବୁଠାରୁ ବଡ ଶତ୍ରୁ ମାନେ ହରି ।

ପ୍ରହ୍ଲାଦଙ୍କୁ ପଢ଼ିବା ପାଇଁ ଗୁରୁକୂଳକୁ ପଠେଇଦିଆଗଲା । ଶୁକ୍ରାଚାର୍ଯ୍ୟଙ୍କର ଦୁଇପୁତ୍ର ଶଣ୍ଡ ଏବଂ ଅମର୍କ ଅସୁର ବାଳକମାନଙ୍କୁ ପଢ଼ଉଥିଲେ । ଦେଖିଲେ ! ଗୁରୁଙ୍କୁ ନିଜଘରକୁ ଡାକୁ ନ ଥିଲେ । ପିଲାଙ୍କୁ ଗୁରୁକୂଳକୁ ପଠାଯାଉଥିଲା ।

ସେଠାରେ ପ୍ରହ୍ଲାଦଙ୍କୁ ଅର୍ଥ, କାମ ଆଦିର, ପଇସା ରୋଜଗାର କରିବାର ଏବଂ ଶକ୍ତି ସମ୍ପାଦନର ବିଦ୍ୟା ପଢାଯାଉଥିଲା । କିନ୍ତୁ ଧର୍ମ ବା ନୀତିର କଥା ସେଠି ପଢାଯାଉ ନ ଥିଲା । ପ୍ରହ୍ଲାଦଙ୍କୁ ଏସବୁ ଭଲ ଲାଗୁ ନ ଥିଲା। ସେ ଅତ୍ୟନ୍ତ ପିତୃଭକ୍ତ ଥିଲେ, ଗୁରୁଭକ୍ତ ଥିଲେ, ତେଣୁ କିଛି କହୁ ନ ଥିଲେ । ସବୁ ଶିଖୁଥିଲେ, ମନ ଭିତରେ ଭିତରେ ଭଗବାନଙ୍କୁ ହିଁ ସ୍ମରଣ କରୁଥାଏ । ଥରେ ଯେତେ ବେଳେ ସେ ଗୁରୁକୂଳରୁ ଘରକୁ ଆସିଥିଲେ, ସେତେବେଳେ ଅତ୍ୟନ୍ତ ପ୍ରେମର ସହିତ ତାଙ୍କୁ କୋଳରେ ବସାଇ ହିରଣ୍ୟକଶିପୁ ପଚାରିଲା -

**ପପ୍ରଚ୍ଛ କଥ୍ୟତାଂ ବତ୍ସ ମନ୍ୟତେ ସାଧୁ ଯଦ୍ଭବାନ୍ ॥ (୭.୫.୪)**

ତୁମେ ନିଜ ଜୀବନରେ କାହାକୁ ସର୍ବଶ୍ରେଷ୍ଠ ଭାବୁଛ, କହିଲ । ପ୍ରହ୍ଲାଦ କହିଲେ-

**ତତ୍ସାଧୁ ମନ୍ୟେଽସୁରବର୍ଯ୍ୟ ଦେହିନାଂ**

**ସଦା ସମୁଦ୍ୱିଗ୍ନଧିୟାମସଦ୍‌ଗ୍ରହାତ୍ ।**

**ହିତ୍ୱାଽଽତ୍ମପାତଂ ଗୃହମନ୍ଧକୂପଂ**

**ବନଂ ଗତୋ ଯଦ୍ଧରିମାଶ୍ରୟେତ୍ ॥(୭.୫.୫)**

ମୋତେ ଲାଗୁଛି ଯେ ଆମେ ମାନେ ଦେହାତ୍ମଭାବ (ବା ଦେହବୁଦ୍ଧି) ଏବଂ ଦେହ ସହିତ, ଘରେ ରହି, ଅନେକ ପ୍ରକାରରେ ଆସକ୍ତ ହୋଇ ନିଜକୁ ନିଜେ ପତିତ କରୁଛୁ, ତାଠାରୁ ଭଲ ତ ଏହା ଯେ ଘର ଛାଡି ବଣକୁ ଚାଲିଯିବା ଏବଂ ଶ୍ରୀହରିଙ୍କ ଶରଣ ଗ୍ରହଣ କରିବା ଏହି ଅନ୍ଧକୂପରେ, ସଂସାରକୂପରେ ପଡିବାନି । ଏହା ହିଁ ସବୁଠାରୁ ଭଲ କଥା ।

ଏହା ଶୁଣିବା କ୍ଷଣି ଯେ 'ଶ୍ରୀ ହରିଙ୍କ ଶରଣ ଗ୍ରହଣ କରିବା ଉଚିତ' ହିରଣ୍ୟକଶିପୁକୁ ଅତ୍ୟନ୍ତ କ୍ରୋଧ ଆସିଲା । କ୍ରୋଧ ତ ବହୁତ ଆସିଲା କିନ୍ତୁ ସେ ଭାବିଲା ଯେ ଛୋଟ ପିଲା, ଗୁରୁକୂଳରେ କିଏ କଣ କହି ଦେଇଥିବେ । ଏମାନେ ତ ହରିଙ୍କ ଶରଣକୁ ଯିବାର କଥା କହି ମୋ ପିଲାର ବୁଦ୍ଧି ବିଗାଡ଼ି ଦେଉଛନ୍ତି । ତାକୁ ଲାଗିଲା ଯେ ଶତ୍ରୁପକ୍ଷର କିଛି ଲୋକ ଗୁରୁକୂଳରେ ପଶିଯାଇଛନ୍ତି ଏବଂ ଭଗବାନଙ୍କର ପ୍ରଚାର କରୁଛନ୍ତି । କିନ୍ତୁ ପ୍ରକୃତରେ କଥା ସେଇଆ ନ ଥିଲା ।

ପ୍ରହ୍ଲାଦଙ୍କୁ ପୁଣି ଗୁରୁକୂଳକୁ ପଠେଇଦିଆଗଲା । ଶଣ୍ଡ-ଅମର୍କଙ୍କୁ କୁହାଗଲା ଯେ ଏହା ଉପରେ ନଜର ରଖ । ଏହାକୁ ଇଆଡୁ-ସିଆଡୁ କିଛି ପଢ଼ାଅନି । ଦେଖିଲେ, ତା ବୁଦ୍ଧି ! ଭଗବାନଙ୍କ ଶରଣକୁ ଯିବା ଏହା ତା ଦୃଷ୍ଟିରେ ଇଆଡୁ-ସିଆଡୁ କଥା । ଏଇମାନେ ହିଁ ଅସୁର । ଏବେ ଶଣ୍ଡ ଏବଂ ଅମର୍କଙ୍କୁ ଡର ମାଡିଲା । ସେମାନେ ପ୍ରହ୍ଲାଦଙ୍କୁ ଶିଖେଇଲେ ଯେ ତୁମେ ଅର୍ଥ ଶିଖ, କାମ ଶିଖ ଏବଂ ରାଜନୀତି ଶିଖ । ପ୍ରହ୍ଲାଦ କିଛି କହନ୍ତିନି । ପୁଣି ପର ଛୁଟୀରେ ସେ ଘରକୁ ଆସିଲେ ହିରଣ୍ୟକଶିପୁ ପୁଣି ତାଙ୍କୁ ପାଖରେ ବସେଇଲା ଏବଂ ପଚାରିଲା ଯେ ବାବୁରେ ଏତେ ସମୟ ପର୍ଯ୍ୟନ୍ତ ତୁମେ କଣ କଣ ଶିଖିଛ ? କୋଉ ଭଲ କଥା ଶିଖିଛ ? ସେ କହିଲେ -

**ଶ୍ରବଣଂ କୀର୍ତନଂ ବିଷ୍ଣୋଃ ସ୍ମରଣଂ ପାଦସେବନମ୍ ।**
**ଅର୍ଚନଂ ବନ୍ଦନଂ ଦାସ୍ୟଂ ସଖ୍ୟମାତ୍ମନିବେଦନମ୍ ॥(୭.୫.୨୩)**

ମୁଁ ନବଧା ଭକ୍ତି ଶିଖିଛି । ଭଗବାନଙ୍କ ଗୁଣଗୁଡ଼ିକର ଶ୍ରବଣ, ଭଗବାନଙ୍କ ଗୁଣ ଗୁଡ଼ିକର କୀର୍ତ୍ତନ, ଭଗବାନଙ୍କର ନାମର ସ୍ମରଣ, ତାଙ୍କର ଚରଣ-ସେବା, ତାଙ୍କ ରୂପର ପୂଜା, ତାଙ୍କର ବନ୍ଦନା କରିବା, ତାଙ୍କର ଦାସହେବା, ପୁଣି ତାଙ୍କର ମିତ୍ର ହେବା ଏବଂ ଅନ୍ତତଃ ତାଙ୍କ ଚରଣରେ ନିଜକୁ ସମର୍ପିତ କରିଦେବା, ଏମିତି ନବଧା ଭକ୍ତି ମୁଁ ଶିଖିଛି ଯାହା ସବୁଠାରୁ ଶ୍ରେଷ୍ଠ । ଏହା ଶୁଣି ହିରଣ୍ୟକଶିପୁ କ୍ରୋଧିତ ହେଇ ପ୍ରହ୍ଲାଦଙ୍କୁ ନିଜ କୋଳରୁ ତଳକୁ ଠେଲିଦେଲା । ଆଉ ତାଙ୍କ ଗୁରୁ ଶଣ୍ଡ ଓ ଅମର୍କଙ୍କୁ ଡାକି କହିଲା ତୁମକୁ ମୁଁ କଣ କହିଥିଲି ? ଏମିତି ବୁଦ୍ଧି ସେ କୋଉଠୁ ପାଇ ଏଠାକୁ ଆସିଛି ? ଗୁରୁ ଡରିଗଲେ ଏବଂ କହିଲେ ଏମିତି ବୁଦ୍ଧି ତାକୁ କେହି ଦେଇନାହାନ୍ତି ।

**'ନ ମତ୍ପ୍ରଣୀତଂ ନ ପରପ୍ରଣୀତଂ'(୭.୫.୨୮)** ଏସବୁ ନା ମୁଁ ଶିଖେଇଛି ନା ଅନ୍ୟ କେହି । **'ସୁତୋ ବଦତ୍ୟେଷ - ତବେନ୍ଦ୍ରଶତ୍ରୋ'** ଏପରି ବୁଦ୍ଧି ସେ ନିଜେ ହିଁ ନିଜ ସହିତ ଆଣିଛନ୍ତି । ହିରଣ୍ୟକଶିପୁ କହିଲା - 'ଆରେ ପ୍ରହ୍ଲାଦ, ଏପରି ଓଲଟା ବୁଦ୍ଧି

କୋଉଠୁ ଆଣିଲୁ' ? ସେତେବେଳେ ସେ ହାତ ଯୋଡି କହିଲେ, "ରାଜନ୍ , ଓଲଟା ବୁଦ୍ଧି ଏମାନଙ୍କର । ମୋ ବୁଦ୍ଧି ଓଲଟା ନୁହଁ । ନିଜକୁ ଦେହ ମାନିବା, ନିଜକୁ ଭଗବାନଙ୍କଠାରୁ ଶ୍ରେଷ୍ଠ ଭାବିବା ଏବଂ ବିଷୟରେ ସୁଖ ଅଛି ବୋଲି ଭାବିବା, ଏହା ହିଁ ଓଲଟା ବୁଦ୍ଧି । ଭଗବାନଙ୍କ ପାଖରେ ମନ ଲଗେଇବା ସଦ୍‌ବୁଦ୍ଧି ଅଟେ । ଦୁନିଆରେ ଏହାଠାରୁ ଶ୍ରେଷ୍ଠ କିଛି ନାହିଁ । "

## ପ୍ରହ୍ଲାଦଙ୍କ ଉପରେ ହିରଣ୍ୟକଶିପୁର ଅତ୍ୟାଚାର

ହିରଣ୍ୟକଶିପୁ ଏହା ଶୁଣି ରାଗିଗଲା । କହିଲା, ଏ ପିଲାକୁ ମାରିଦେବା ଦରକାର । ଏହାକୁ ବଧ କର । ଇଏ ମୋ ଶତ୍ରୁର ପ୍ରଶଂସା କରୁଛି । ତା'ର ଭକ୍ତ ହେଇଛି । ଶୁଣିଲା ମାତ୍ରେ ସବୁ ରାକ୍ଷସମାନେ 'ଛିନ୍ଧି-ଭିନ୍ଧି', 'ମାର-ହାଣ' କହି ତାଙ୍କୁ ମାରିବା ପାଇଁ ଦୌଡିଲେ । ସେ ଚୁପଚାପ୍ ବସିଛନ୍ତି । ନା ଡରିଲେ, ନା ଦୌଡିଲେ, ନା କାନ୍ଦିଲେ, ନା ପାଟିକଲେ, କିଛି ବି କଲେ ନାହିଁ । ସେମାନଙ୍କର ସମସ୍ତ ଅସ୍ତ୍ରଶସ୍ତ୍ର ବିଫଳ ହେଲେ । ପ୍ରହ୍ଲାଦଙ୍କୁ ପର୍ବତ ଉପରକୁ ନେଇଗଲେ ଏବଂ ସେଠାରୁ ଠେଲିଦେଲେ, କିନ୍ତୁ ତଳେ ତ ତାଙ୍କୁ ବଞ୍ଚେଇବା ପାଇଁ ଭଗବାନ ଠିଆ ହେଇଥିଲେ, ତ ସେ କେମିତି ମରିବେ । ସର୍ପ ଦ୍ୱାରା ଦଂଶନ କରେଇଲେ, ବିଷ ପିଏଇଲେ , ତଥାପି ସେ ମଲେ ନାହିଁ ।

ହିରଣ୍ୟକଶିପୁର ଗୋଟିଏ ଭଉଣୀ ଥିଲା ହୋଲିକା । ତାକୁ ବର ମିଳିଥିଲା ଯେ ନିଆଁ ତାକୁ ଜଳେଇପାରିବ ନାହିଁ । ତାକୁ କୁହାଗଲା ଯେ ପ୍ରହ୍ଲାଦକୁ କୋଳରେ ଧରି ତୁମେ ଚିତା ଉପରେ ବସ , ଆମେ ସେଥିରେ ନିଆଁ ଲଗେଇ ଦେବୁ । ଦେଖନ୍ତୁ ପ୍ରହ୍ଲାଦ ତ ସମର୍ପିତ ଆତ୍ମା । ଯିଏ ଭଗବାନଙ୍କ କୋଳରେ ବସିଛି ତାର ପୁଣି ଚିନ୍ତା କଣ ? ସେ କଣ ସତରେ ହୋଲିକା କୋଳରେ ବସିଥିଲେ ? ହିରଣ୍ୟକଶିପୁ ତାଙ୍କୁ ହୋଲିକା କୋଳରେ ବସେଇଥିଲେ ବି ପ୍ରକୃତରେ ସେ ଭଗବାନଙ୍କ କୋଳରେ ଥିଲେ । ଦେଖିଲେ ତ , କେତେ ଆଶ୍ଚର୍ଯ୍ୟର କଥା ଯେ ହୋଲିକାର ବରଦାନ ମିଥ୍ୟା ହେଇଗଲା । ସେ ନିଆଁରେ ଜଳି ମରିଗଲା, ପ୍ରହ୍ଲାଦଙ୍କର କିଛି ହେଲାନି । ତେଣୁ ହୋଲିକା ଦହନ କରାଯାଏ । ଏହା ହିଁ ହୋଲିକା ଦହନ । 'ଆଧ୍ୟାତ୍ମିକ ଶକ୍ତିକୁ ସମାପ୍ତ କରିବା ପାଇଁ ଯେତେ ଚେଷ୍ଟା କରାଗଲେ ମଧ୍ୟ ତାହା ସମାପ୍ତ ହୁଏ ନାହିଁ ।' କେତେ-କେତେ ସାମ୍ରାଜ୍ୟ ଆସିଲେ, ଗଲେ । ସେମାନେ କଣ କେବେ ବି ଆଧ୍ୟାତ୍ମିକ ଶକ୍ତିକୁ ସମାପ୍ତ କରିପାରିଲେ ? ନା ! ଭୌତିକ ଶକ୍ତି ସମ୍ପନ୍ନ ନିଜେ ସମାପ୍ତ ହୋଇଯିବେ କିନ୍ତୁ କେବେହେଲେ ମଧ୍ୟ ଆତ୍ମଶକ୍ତିକୁ ସମାପ୍ତ କରିପାରିବେ ନାହିଁ ।

ପ୍ରହ୍ଲାଦ ତ ମରୁ ନାହିଁ, ଏହା ଦେଖି ହିରଣ୍ୟକଶିପୁଙ୍କୁ ବହୁତ ଭୟ ଲାଗିଲା । ତାଙ୍କୁ ମାରିବା ପାଇଁ ଗୁରୁପୁତ୍ରମାନେ ନିଜ ଶକ୍ତିରୁ ଏକ କୃତ୍ୟା ରାକ୍ଷସୀର ନିର୍ମାଣ କଲେ । କିନ୍ତୁ ସେ ଯେତେବେଳେ ତାଙ୍କୁ ମାରିବାକୁ ଆସିଲା ସେତେବେଳେ ସୁଁ ସୁଁ କରି ଭଗବାନଙ୍କ ସୁଦର୍ଶନ ଚକ୍ର ଆସି କୃତ୍ୟା ରାକ୍ଷସୀର ମୁଣ୍ଡ କାଟିଦେଲା ଆଉ ତାପରେ ଶଣ୍ଡ-ଅମର୍କଙ୍କର ମଧ୍ୟ ମୁଣ୍ଡ କାଟିଦେଲା । ଉଭୟ ଗୁରୁପୁତ୍ର ମରି ତଳେ ପଡିଗଲେ । ଏହା ଦେଖି ପ୍ରହ୍ଲାଦଙ୍କୁ ବହୁତ ଦୁଃଖ ହେଲା । ସେ ଆଖି ବନ୍ଦ କରିଦେଲେ । ତାଙ୍କ ଆଖିରୁ ଲୁହ ଝରି ପଡିଲା । ସେ ହାତ ଯୋଡି କହିଲେ, "ଭଗବାନ୍ ! ମୋ ମନରେ ଏହି ଗୁରୁମାନଙ୍କ ପ୍ରତି କେବେ ହେଲେ ଦ୍ୱେଷଭାବ ଆସି ନାହିଁ ତ ଏମାନେ ଉଠି ପଡନ୍ତୁ ।" ତା'ପରେ କଣ ହେଲା ଜାଣନ୍ତି ? ସେ ଦୁହେଁ ଉଠି କରି ବସିଲେ ଯେମିତି ନିଦରୁ ଉଠିଛନ୍ତି । ଏମିତି ଥିଲା ପ୍ରହ୍ଲାଦଙ୍କର ଶକ୍ତି । ଏମିତି ଥିଲା ତାଙ୍କ ଗୁଣ । 'ଗୁରୁଷୁ ଈଶ୍ୱରଭାବନଃ' ।

ଦେଖନ୍ତୁ , ନିଜ ପିତାଙ୍କୁ ପ୍ରହ୍ଲାଦ କେବେହେଲେ ଭୁଲ କଥା କହି ନ ଥିଲେ । କିନ୍ତୁ ପିତା ସେମିତି ଥିଲେ । ପ୍ରହ୍ଲାଦଙ୍କ ମନରେ ଥିବା ପିତା ବା ଗୁରୁଙ୍କ ପ୍ରତି ଭକ୍ତି କେବେ ବି କମ ହେଲା ନାହିଁ । କିନ୍ତୁ ସେମାନଙ୍କର ଭୁଲ କଥାକୁ ସେ ମାନୁ ନ ଥିଲେ । ଗୁରୁପୁତ୍ର ଶଣ୍ଡଅମର୍କ ହିରଣ୍ୟକଶିପୁଙ୍କୁ କହିଲେ ଆମେ ଏହାକୁ ସମ୍ଭାଳିପାରିବୁନି । କିନ୍ତୁ ଆମେ ଏହାକୁ ଗୁରୁକୂଳରେ ରଖିବୁ । ଆମ ପିତା ଶୁକ୍ରାଚାର୍ଯ୍ୟ ଫେରିଆସିଲେ ବୋଧେ ୟାର ବୁଦ୍ଧିକୁ ସୁଧାରିପାରିବେ । ହିରଣ୍ୟକଶିପୁ କହିଲା - ମରୁନି ତ, ୟାକୁ ନେଇଯାଅ , ଆଉ କଣ କରିବା, ଖାଲି ଚେଷ୍ଟା କରିବା କଥା । କହିଲେ ଦେଖି, ପିଲାକୁ ବିଗାଡିବାକୁ ଏମାନେ ସୁଧାରିବା କହୁଛନ୍ତି । ସେମାନେ ଚାହୁଁଛନ୍ତି ଖରାପ ହେଉ । ଏହା ପରେ ଶଣ୍ଡ-ଅମର୍କ ତାଙ୍କୁ ନେଇଗଲେ ।

## ପ୍ରହ୍ଲାଦ ଦ୍ୱାରା ଅସୁର ବାଳକମାନଙ୍କୁ ଶିକ୍ଷା ପ୍ରଦାନ

ପ୍ରହ୍ଲାଦଙ୍କର ଶକ୍ତି ଦେଖି ତାଙ୍କ ସାଂଗରେ ପଢୁଥିବା ସବୁ ଅସୁର ବାଳକମାନଙ୍କୁ ବହୁତ ଆଶ୍ଚର୍ଯ୍ୟ ଲାଗିଲା ଯେ ୟାଙ୍କ ଭିତରେ କେତେ ଶକ୍ତି ଅଛି । ସେ ସେମାନଙ୍କର ସମ୍ମାନର ପାତ୍ର ହେଲେ । ଦିନେ ଶଣ୍ଡ-ଅମର୍କ ଗୃହକାର୍ଯ୍ୟରେ ବାହାରକୁ ଯାଇଥିଲେ ତ ପ୍ରହ୍ଲାଦର ସାଙ୍ଗମାନେ ଦେଖିଲେ ଯେ କେହି ଗୁରୁ ତ ନାହାନ୍ତି । ଏହା ଦେଖି ସେମାନେ ପ୍ରହ୍ଲାଦଙ୍କୁ ମଝିରେ ବସେଇଲେ ଏବଂ ତାଙ୍କ ଚାରିପାଖେ ବସିଗଲେ । ସେମାନେ ପ୍ରହ୍ଲାଦଙ୍କୁ କହିଲେ - ଆରେ ପ୍ରହ୍ଲାଦ, ତୁମ ପାଖରେ ଏତେ ଶକ୍ତି ଅଛି , ଏତେ ଜ୍ଞାନ ଅଛି , ଏତେ ଭକ୍ତି ଅଛି, ତାର ଟିକିଏ ଉପଦେଶ ଆମକୁ ବି ଦିଅନା । ଦେଖିଲେ, ସତ୍‌ସଙ୍ଗର କେତେ

ପ୍ରଭାବ ପଡେ । ପ୍ରହ୍ଲାଦ ଆଜି ପର୍ଯ୍ୟନ୍ତ ତାଙ୍କ ସାଙ୍ଗରେ ଏମିତି କିଛି ହେଲେ କଥାବାର୍ତ୍ତା କରି ନ ଥିଲେ । ଲୋକମାନେ ପ୍ରାୟ ପଚାରନ୍ତି ଆମେ ନିଜ ପିଲାଙ୍କୁ ସଂସ୍କାର କିପରି ଦେବୁ ? ସମାଜକୁ କିପରି ସୁଧାରିବୁ ? ଆଗେ ନିଜେ ସୁଧୁରି ଯାଅ । ବାକି ସବୁ ଠିକ୍ ହୋଇଯିବ । ଆମେ ତ ଖାଲି ଅନ୍ୟମାନଙ୍କୁ ସୁଧାରିବାର କଥା କହୁଛେ । ଦେଖନ୍ତୁ ପ୍ରହ୍ଲାଦ ତ କାହାକୁ ବି ଉପଦେଶ ଦେଇ ନ ଥିଲେ । କିନ୍ତୁ ତାଙ୍କର ଶକ୍ତି ଦେଖି ସବୁ ଅସୁର ବାଳକ ନିଜେ ନିଜେ ପ୍ରଭାବିତ ହେଲେ ଏବଂ ତାଙ୍କୁ କହିଲେ ଯେ ଟିକିଏ ଜ୍ଞାନ ଆମକୁ ଦିଅ । ଦେଖନ୍ତୁ , ଛୋଟ ପିଲା ପ୍ରହ୍ଲାଦ ସେଠି ବସିଛନ୍ତି । ଅନ୍ୟମାନେ ବି ଛୋଟ ଛୋଟ ପିଲା । ଗୋଟିଏ ଛୋଟ ପିଲା ଅନ୍ୟଛୋଟ ପିଲାମାନଙ୍କୁ ପଢାଉଛି । ବାଃ ,କି ଦୃଶ୍ୟ ! ଦେଖିଲେ ତ ପ୍ରଥମ ବାଲବିହାର କ୍ଲାସ ଚାଲିଛି । ସେଥିରେ ମଧ୍ୟ ପିଲାଙ୍କୁ ସଂସ୍କାର ଦିଆଯାଉଛି । ତେଣୁ ପ୍ରଥମ ବାଲବିହାର କ୍ଲାସର ଆଚାର୍ଯ୍ୟ ହେଲେ ପ୍ରହ୍ଲାଦ । ଏହା ସବୁ ସେ ଆରମ୍ଭ କରିଥିଲେ । ପିଲାଟିଏ ପିଲାମାନଙ୍କୁ ଶିଖେଇବା ଆରମ୍ଭ କଲା । ଆଉ ଦେଖନ୍ତୁ କଣ କହିଲେ ? ଏପରି କଥା କହିଲେ ଯେ ତାହା ବଡ଼ମାନଙ୍କର ମଧ୍ୟ ବିଚାର କରିବା ଉଚିତ । ସେ କହିଲେ -

**କୌମାର ଆଚରେତ୍ପ୍ରାଜ୍ଞୋ ଧର୍ମାନ୍ ଭାଗବତାନିହ ।**
**ଦୁର୍ଲଭଂ ମାନୁଷଂ ଜନ୍ମ ତଦପ୍ୟଧ୍ରୁବମର୍ଥଦମ୍ ॥(୭.୬.୧)**

ବନ୍ଧୁଗଣ, କୁମାର ଅବସ୍ଥାରୁ ହିଁ ଭଗବତ୍ ଭକ୍ତିରୂପୀ ଧର୍ମର ପାଳନ କରିବା ଉଚିତ୍ । ଯିଏ ତୁମକୁ କହୁଛି ଯେ ଏହା ପଛରେ କରିବ, ସେ ତୁମର ଶତ୍ରୁ । ମନେରଖ, ଏହି ମନୁଷ୍ୟ ଜନ୍ମ ଦୁର୍ଲଭ । ତାହା ଅସ୍ଥିର ଓ ଚଞ୍ଚଳ ମଧ୍ୟ । **'ନିଶ୍ୱାସେ ନ ହି ବିଶ୍ୱାସଃ କଦା ରୁଦ୍ଧୋ ଭବିଷ୍ୟତି ।'** ନିଶ୍ୱାସ ଉପରେ ବିଶ୍ୱାସ କଣ ? ଆର ମୁହୂର୍ତ୍ତରେ ନିଶ୍ୱାସ ନେଇପାରିବା ଯାର କୌଣସି ଭରସା ଅଛି କି ? ଏହି ନିଶ୍ୱାସ ଏବେ ଚାଲୁଛି, କେତେବେଳେ ବନ୍ଦ ହୋଇଯିବ ଜଣାନାହିଁ । ଯିଏ କୁହେ ମୁଁ ପରେ କରିବି, ସେ କୋଉ ପର କଥା କୁହେ ? ଲୋକେ ଏମିତି କଥା କୁହନ୍ତି ସତେ ଯେମିତି ପୁରା ଭବିଷ୍ୟ ଜାଣନ୍ତି। କେଉଁ ପର୍ଯ୍ୟନ୍ତ ବଞ୍ଚିବା କିଛି ଜଣା ନାହିଁ । ଏଇ ଯେଉଁ ଲୌକିକ ସୁଖ-ଦୁଃଖ ଏଇମିତି ଆସୁଥିବ, ଯାଉଥିବ । କହିଲ ଦେଖି, ଆମେ ଜୀବନରେ ଦୁଃଖ ପାଇଁ ଚେଷ୍ଟା କରୁ କି ? ବିନା ଚେଷ୍ଟାରେ ଦୁଃଖ ଆସେ , ତେଣୁ ବିନା ଚେଷ୍ଟାରେ ଲୌକିକ ସୁଖ ବି ଆସିବ । ତୁମେ ନିଜ ମନକୁ କାହିଁକି ବିକ୍ଷିପ୍ତ କରୁଛ ।

**ସର୍ବତ୍ର ଲଭ୍ୟତେ ଦୈବାଦ୍ୟଥା ଦୁଃଖମୟତ୍ନତଃ ॥(୭.୬.୩)**

**ତତ୍ପ୍ରୟାସୋ ନ କର୍ତବ୍ୟୋ ୟତ ଆୟୁର୍ବ୍ୟୟଃ ପରମ୍ ॥(୭.୬.୪)**

ଲୌକିକ ସୁଖର ପ୍ରାପ୍ତି ଏବଂ ଦୁଃଖକୁ ଦୂର କରିବା ପାଇଁ ତୁମେ ରାତି-ଦିନ ନିଜର ସମୟ ବ୍ୟର୍ଥରେ ନଷ୍ଟ କରୁଛ । ତାଦ୍ୱାରା କ୍ଷେମର ପ୍ରାପ୍ତି ତ ହେଉନି । କ୍ଷଣକ ପାଇଁ ଲାଗୁଛି ଯେ ଆମେ ଦୁଃଖକୁ ହଟେଇ ଦେଲୁ, ଦୂର କରିଦେଲୁ , ସୁଖ ମିଳିଗଲା । ମୁଁ ସୁଖୀ ଭାବିଲା ବେଳକୁ କୋଉଠୁ ଗୋଟେ ଚଟକଣା ଆସି ଢୋ କରି ବାଜୁଛି । ଯେମିତି ମୁହଁରେ ଲଡୁଟେ ଅଛି , ଚଟକଣୀ ବସିଲା ମାତ୍ରେ ମୁହଁରୁ ଲଡୁଟା ବାହାରି ଆସିଲା , ଠିକ୍ ସେଇମିତି, ପୁଣି ଦୁଃଖୀ ହୋଇଯାଉଛୁ । କାଳ ଆମ ସାଙ୍ଗରେ ଖେଳୁଛି। ଭଗବାନଙ୍କ ଚରଣରେ ପ୍ରେମ ହୋଇଗଲେ ଯେମିତି ଶାନ୍ତି ମିଳେ ସେମିତି ଆଉ କୌଣସି ବସ୍ତୁରୁ ମିଳେ ନାହିଁ । କେତେ ଭୋଗ କରିଲେ ମଧ ଦିନେ ନା ଦିନେ ତ ବୁଢା ହେବା, ଆଉ ରୋଗୀ ବି ହେବା । ଆମର ଶହେ ବର୍ଷର ଆୟୁରୁ ଅଧା ତ ଶୋଇ ଶୋଇ ଚାଲିଯାଏ। ଆଉ ଅଧିକରୁ କିଛି ପିଲାଦିନର ଖେଳକୁଦରେ ଚାଲିଯାଏ । ବୃଦ୍ଧାବସ୍ଥାରେ ସେମିତି ବି କିଛି କରିପାରିବା ନାହିଁ । ବାକି ରହିଲା ଗୋଟେ ଯୁବାବସ୍ଥା, ସେଥିରେ ମଧ ଆମେ କାମ ଭୋଗରେ ଆସକ୍ତ ହୋଇଯାଉଛୁ । ଆଉ ନିଜକୁ ନଷ୍ଟ କରି ଦେଉଛୁ ।

**ସୁଖଦୁଃଖେଚ୍ଛାଲାଭାଦିତ୍ୟକ୍ତେ କାଲେ ପ୍ରତୀକ୍ଷ୍ୟମାଣେ ।**

**କ୍ଷଣାର୍ଥମପି ବ୍ୟର୍ଥଂ ନ ନେୟମ୍ ॥ (ନାରଦ-ଭକ୍ତିସୂତ୍ର-୭୭)**

ଆମକୁ ଯେବେ ବି ଭଗବାନଙ୍କର ଭକ୍ତି କରିବା ପାଇଁ କୁହାଯାଏ , ଆମେ କହୁ ଯେ ତାପାଇଁ ସମୟ କାହିଁ ? ଦେଖନ୍ତୁ , ଯମରାଜ ପଚାରିବନି ଯେ ତୁମ ପାଖରେ ସମୟ ଅଛି ନା ନାହିଁ । ସେ କହିବେ - ତୁମକୁ ନେଇଯିବା ପାଇଁ ମୋ ପାଖରେ ଖାଲି ସମୟ ହିଁ ସମୟ ଅଛି । ଦେଖିଲେ ତ ଆମେ କେତେ ଅହଂକାରୀ ହୋଇ ଗଲୁଣି ? ଦୁଇମିନିଟ ହେଲେ ଭଗବାନଙ୍କର ନାମ ନେବା ପାଇଁ ଆମ ପାଖରେ ସମୟ ନାହିଁ । କହିବେ ରୁହ, ପିଲା ବାହାଘର ସରୁ, ଭକ୍ତି କରିବି । ଏମତି ଯେଉଁମାନେ ସମୟର ପ୍ରତୀକ୍ଷା କରନ୍ତି , ସେମାନେ ପ୍ରତୀକ୍ଷାରେ ରହିଯିବେ । ଇଏ ତ ଏମିତି କଥା ଯେମିତି କୌଣସି ବ୍ୟକ୍ତି ସମୁଦ୍ରରେ ସ୍ନାନ କରିବା ପାଇଁ ଯାଇଥିବ ଆଉ କୂଳରେ ଠିଆ ହୋଇ ଅପେକ୍ଷା କରିବ ଯେ ସବୁ ଲହରୀମାନେ ଶାନ୍ତ ହୋଇଗଲେ ମୁଁ ସ୍ନାନ କରିବି । କରୁଥାଅ ପ୍ରତୀକ୍ଷା, ଏପରି କ୍ଷଣ କେବେହେଲେ ଆସିବ ନାହିଁ । '**କ୍ଷଣାର୍ଧମପି ବ୍ୟର୍ଥଂ ନ ନେୟମ୍**' କାଳର ପ୍ରତୀକ୍ଷା

କରୁଥିବ ଏବଂ ଯଦି କହିବ ଯେ ଏତେ ବଡ଼ ଭଗବାନଙ୍କୁ ପ୍ରସନ୍ନ କରିବା ତ ବହୁତ କଠିନ କାମ । ମୁଁ କେମିତି କରିବି ?

**ନ ହ୍ୟଚ୍ୟୁତଂ ପ୍ରୀଣୟତୋ ବହ୍ୱାୟାସୋଽସୁରାତ୍ମଜାଃ ।**

**ଆତ୍ମତ୍ୱାତ୍ ସର୍ବଭୂତାନାଂ ସିଦ୍ଧତ୍ୱାଦିହ ସର୍ବତଃ ॥(୭.୬.୧୯)**

ଭଗବାନଙ୍କୁ ପ୍ରସନ୍ନ କରିବା କୋଉ କଠିନ କାର୍ଯ୍ୟ କି ? କାହିଁକି କଠିନ ନୁହଁ ? କାରଣ ସେ ତୁମର, ଆମର, ସମସ୍ତଙ୍କର ନିଜର ଆତ୍ମା ଏବଂ ନିତ୍ୟ ପ୍ରାପ୍ତ । ତୁମେ ଯେତେବେଳେ କହିବ, ତୁମେ ଯେତେବେଳେ ଚାହିଁବ, ସେ ସେଇଠି ଠିଆ ହେଇଥିବେ ।

**ତସ୍ମାତ୍ ସର୍ବେଷୁ ଭୂତେଷୁ ଦୟାଂ କୁରୁତ ସୌହୃଦମ୍ ।**

**ଆସୁରଂ ଭାବମୁନ୍ମୁଚ୍ୟ ଯୟା ତୁଷ୍ୟତ୍ୟଧୋକ୍ଷଜଃ ॥(୭.୬.୨୪)**

ଭଗବାନ ସମସ୍ତଙ୍କ ହୃଦୟରେ ବସିଛନ୍ତି । ତେଣୁ ସମସ୍ତଙ୍କ ଉପରେ ଦୟା କରିବା ଉଚିତ, ସମସ୍ତଙ୍କୁ ଭଲ ପାଇବା ଉଚିତ । ତୁମେମାନେ ମଧ୍ୟ ନିଜ ମନରୁ ଆସୁରୀ ଭାବନାଗୁଡ଼ିକୁ ତ୍ୟାଗକରି ଦିଅ । ଏହି ଜ୍ଞାନ, ଯାହା ମୁଁ ତୁମକୁ କହୁଛି, ମୋତେ ନାରଦ ମୁନିଙ୍କଠାରୁ ପ୍ରାପ୍ତ ହେଇଥିଲା । ନାରଦ ମୁନିଙ୍କଠାରୁ ପ୍ରାପ୍ତ ହେଇ ଥିଲା ? ଶୁଣି ଅନ୍ୟ ଅସୁର ବାଳକମାନେ ଆଶ୍ଚର୍ଯ୍ୟ ହେଲେ । ସେମାନେ କହିଲେ, "ପ୍ରହ୍ଲାଦ ଏକଥା ଆମେ ବୁଝିପାରୁନୁ । ଆମେ ସମସ୍ତେ ଏକା ସାଂଗରେ ପଢୁଛୁ ଆଉ ତୁମର ଆୟୁ ଆମ ସହ ସମାନ, ଗୁରୁପୁତ୍ର ଶଣ୍ଡ-ଅମର୍କଙ୍କ ଛଡା ଆଉ କୌଣସି ଗୁରୁଙ୍କୁ ଆମେ ଜାଣିନୁ । ତୁମକୁ ନାରଦ କୋଉଠି ମିଳିଲେ ? ନାରଦଙ୍କଠାରୁ ତୁମକୁ ଏହି ଜ୍ଞାନ କିପରି ମିଳିଲା ?" ସେତେବେଳେ ପ୍ରହ୍ଲାଦ ସେମାନଙ୍କୁ ସବୁ କଥା କହିଲେ, ଯାହାକୁ ଆମେ ପୂର୍ବରୁ ଜାଣି ସାରିଛେ ।

ନାରଦ ପ୍ରହ୍ଲାଦଙ୍କୁ ଗର୍ଭରେ ଜ୍ଞାନ ଦେଇଥିଲେ । ପିଲା ମା ଗର୍ଭରେ ଥାଇ ମଧ୍ୟ ଜ୍ଞାନ ପ୍ରାପ୍ତ କରିପାରେ । ଜଣେ ମହିଳା ସତ୍‌ସଂଗରେ ମୋତେ ପ୍ରଶ୍ନ କରିଥିଲେ ଯେ ଆମେ ପିଲାମାନଙ୍କୁ ସଂସ୍କାର ଦେବା କେବେଠାରୁ ଆରମ୍ଭ କରିବୁ । ଦେଖନ୍ତୁ, ଏଇଠି ଏହାର ଉତ୍ତର ଅଛି ଯେ ପିଲା ଗର୍ଭକୁ ଆସିବା ପୂର୍ବରୁ ଆରମ୍ଭ କରନ୍ତୁ । ମାନେ, ଆଗେ ନିଜେ ସଂସ୍କାରିତ ହୁଅ ଏବଂ ତାପରେ ପିଲା ଗର୍ଭକୁ ଆସିଲେ ତାପରେ ତାକୁ ସଂସ୍କାର ଦେବା ଆରମ୍ଭ କର । ଏହା ହିଁ ଗର୍ଭାବସ୍ଥାରୁ ହିଁ ଜ୍ଞାନ ପ୍ରଦାନ କରିବା ଅଟେ । ପ୍ରହ୍ଲାଦ କହିଲେ - ଯେଉଁ ଜ୍ଞାନ ଦେବର୍ଷି ନାରଦ ମତେ ଦେଇଥିଲେ ତାହା ହିଁ ମୁଁ ତୁମ ମାନଙ୍କୁ କହିଲି । ଏବେ ତୁମେମାନେ ତାକୁ ପାଳନ କରିବ ।

**ଗୁରୁଶୁଶ୍ରୂଷୟା ଭକ୍ତ୍ୟା ସର୍ବଲବ୍ଧାର୍ପଣେନ ଚ ।**
**ସଂଗେନ ସାଧୁଭକ୍ତାନାମୀଶ୍ୱରାରାଧନେନ ଚ ॥ (୭.୭.୩୦)**

ଗୁରୁଙ୍କ ପ୍ରତି ଭକ୍ତି ହେବା ଆବଶ୍ୟକ । ଭଗବାନ ଶଙ୍କରାଚାର୍ଯ୍ୟ ଲେଖିଛନ୍ତି 'ଗୁରୁଚରଣାମ୍ବୁଜ ନିର୍ଭର ଭକ୍ତଃ ଭବ' ପୂର୍ଣ୍ଣ ରୂପେଣ ଗୁରୁଚରଣ-କମଳରେ ଆଶ୍ରିତ ଭକ୍ତ ହୁଅ ଏବଂ ନିଜର ସବୁ କିଛି ତୁମେ ଈଶ୍ୱରଙ୍କ ଚରଣରେ ଅର୍ପିତ କର । ସାଧୁମାନଙ୍କ ସାଙ୍ଗରେ ରୁହ । ସତ୍‌ସଙ୍ଗ ଦ୍ୱାରା, ଶ୍ରବଣ ଦ୍ୱାରା ଶ୍ରଦ୍ଧା ଉତ୍ପନ୍ନ ହୁଏ । ପୁଣି ଶ୍ରଦ୍ଧାରୁ ରତି ଉତ୍ପନ୍ନ ହୁଏ । ସେତେବେଳେ ପ୍ରକୃତ ଭକ୍ତି ଆରମ୍ଭ ହୁଏ । ଯେତେବେଳେ ଭଗବାନଙ୍କ ପ୍ରତି ଅଲୌକିକ ଭକ୍ତି ହୁଏ ସେତେବେଳେ କଣ ହୁଏ ?

**ନିଶମ୍ୟ କର୍ମାଣି ଗୁଣାନତୁଲ୍ୟାନ୍**
**ବୀର୍ଯ୍ୟାଣି ଲୀଳାତନୁଭିଃ କୃତାନି ।**
**ୟଦାତିହର୍ଷୋତ୍ପୁଲକାଶ୍ରୁଗଦ୍ଗଦଂ**
**ପ୍ରୋତ୍କଣ୍ଠ ଉଦ୍‌ଗାୟତି ରୌତି ନୃତ୍ୟତି ॥(୭.୭.୩୪)**

ଯେତେବେଳେ ଏପରି ରସରୂପା ଭକ୍ତି କାହାର ହୃଦୟରେ ଆସେ, ତାହାଲେ ସେହି ବ୍ୟକ୍ତି ଯେବେ ବି ଭଗବାନଙ୍କର ଚରିତ୍ର ଶୁଣେ, ଶୁଣିବା ମାତ୍ରକେ ତାର ଶରୀରରେ ରୋମାଞ୍ଚ ହେବାକୁ ଲାଗେ । ଭଗବାନଙ୍କ ଚରିତ୍ର ସହ ସେ ଏପରି ଏକରୂପ ହେଇଯାଏ ଯେ କେତେବେଳେ କାନ୍ଦେ, କେତେବେଳେ ଗାଏ, କେବେ ତାର କଣ୍ଠ ଗଦ୍‌ଗଦ୍ ହେଇଯାଏ ।

**ମୁହୁଃ ଶ୍ୱସନ୍‌ବକ୍ତି ହରେ ଜଗତ୍ପତେ**
**ନାରାୟଣେତ୍ୟାତ୍ମମତିର୍ଗତତ୍ରପଃ ॥(୭.୭.୩୫)**

ତା ଆଖିରୁ ଲୁହ ବୋହିବାକୁ ଲାଗେ । ସେତେବେଳେ ତାର ଆଉ ଲଜ୍ଜା-ସଂକୋଚ କିଛି ରହେ ନାହିଁ । ତାର ତ ସମୟ ଜ୍ଞାନ ବି ରହେ ନାହିଁ । ବାରମ୍ବାର ଶ୍ୱାସ ନେଇ ସେ 'ହରେ ନାରାୟଣ ଜଗତ୍ପତେ' କହୁଥାଏ । ଏପରି ସ୍ଥିତି ଆସିଲେ 'ପୁମାନ୍' ସେହି ମନୁଷ୍ୟ ମୁକ୍ତ ହେଇଯାଏ । ଦେଖନ୍ତୁ , ନିଜ ଅନ୍ତଃକରଣକୁ ଶୁଦ୍ଧ କରିବା ପାଇଁ ପ୍ରେମାଶ୍ରୁ ଠାରୁ ବଳି ଅନ୍ୟ କିଛି ନାହିଁ । ଆଗରୁ କୁହାଯାଇଛି - **ତଦଶ୍ମସାର ହୃଦୟଂ** ସେହି ହୃଦୟ ପଥର ପରି, ବଜ୍ରପରି, ଯିଏ ଭଗବାନଙ୍କର ଚରିତ୍ର ଏବଂ ନାମ ଶୁଣି ମଧ୍ୟ

ବହଲେ ନାହିଁ, ଯାହାର ଆଖିରେ ଲୁହ ଆସେ ନାହିଁ । ମନକୁ ଶୁଦ୍ଧ କରିବା ପାଇଁ ଅନ୍ୟ କୌଣସି ଔଷଧ ନାହିଁ । ଏହି ପ୍ରେମାଶ୍ରୁ ବଡ ଭାଗ୍ୟ ଥିଲେ ଆସେ ଏବଂ ସେତେବେଳେ ତା ହୃଦୟର ସମସ୍ତ ବନ୍ଧନ ସମାପ୍ତ ହୋଇଯାଏ ।

**ଏତାବାନେବ ଲୋକେଽସ୍ମିନ୍‌ପୁଂସଃ ସ୍ୱାର୍ଥଃ ପରଃ ସ୍ମୃତଃ ।**
**ଏକାନ୍ତଭକ୍ତିର୍ଗୋବିନ୍ଦେ ଯତ୍ ସର୍ବତ୍ର ତଦୀକ୍ଷଣମ୍ ॥(୭.୭.୫୫)**

ଆଉ ଥରେ ଟିକିଏ ମନେ ପକେଇବା, ଶୌନକଙ୍କର ପ୍ରଥମ ପ୍ରଶ୍ନ କଣ ଥିଲା ? ପରୀକ୍ଷିତ କଣ ପଚାରିଥିଲେ ? ଏହା ଯେ ଜୀବନର ପରମ ଶ୍ରେୟ କେଉଁଥିରେ ଅଛି ? ସବୁଠାରୁ ବଡ ଶ୍ରେୟ ହେଲା ଯେ '**ଏକାନ୍ତଭକ୍ତିର୍ଗୋବିନ୍ଦେ**' । ପ୍ରଥମେ ତ ଭଗବାନଙ୍କ ପ୍ରତି ଏକନିଷ୍ଠ ଭକ୍ତି, ତାପରେ '**ସର୍ବତ୍ର ତଦୀକ୍ଷଣମ୍**' , ସେହି ଭଗବାନଙ୍କୁ ସବୁଠାରେ ଦେଖିବା । ଏମିତିନୁହେଁ ଯେ ମୋ ହୃଦୟରେ ଭଗବାନ ବସିଛନ୍ତି । ଆଉ ଅନ୍ୟ ହୃଦୟରେ ସୈତାନ ବସିଛି । ଏହା ଭକ୍ତିର ଲକ୍ଷଣ ନୁହେଁ । ତାହା ସବୁଠାରୁ ବଡ ପୁରୁଷାର୍ଥ ନୁହଁ । ପ୍ରହ୍ଲାଦ ନିଜର ସମସ୍ତ ମିତ୍ରଙ୍କୁ ଏହିପରି ଜ୍ଞାନର କଥା ଶୁଣେଇଲେ । ତାପରେ କଣ ହେଲା ? କ୍ରାନ୍ତି ଆସିଗଲା । ସବୁ ଅସୁର ବାଳକ ପ୍ରହ୍ଲାଦଙ୍କ ସହିତ ମିଶିଗଲେ । ଏବେ ତାଙ୍କୁ ଶଣ୍ଡ-ଅମର୍କଙ୍କର କୌଣସି କଥା ଭଲ ଲାଗୁ ନ ଥିଲା ।

ଦେଖିଲେ, ଯିଏ ନିଜ ଜୀବନ ନିଜ ଜ୍ଞାନ ଅନୁସାରେ ତିଆରି କରୁଥିବ, ତା ଶବ୍ଦରେ କିପରି ଶକ୍ତି ଆସେ । ଅନେକ ସମୟରେ ମାତା-ପିତା, ଗୁରୁ ବା ଅନ୍ୟଲୋକମାନେ ମଧ୍ୟ କୁହନ୍ତି ଯେ ଏମାନେ କଥା ମାନୁନାହାନ୍ତି । ଯଦି ଏମିତି ହୁଏ ତେବେ ଦୁର୍ବଳତା ନିଜ ଭିତରେ ଅଛି । ଶୁଣୁ ନାହାଁନ୍ତି ? ଆପଣ ସେତେବେଳେ କହୁଛନ୍ତି ଯେତେବେଳେ କେହି ଶୁଣିବାକୁ ଚାହୁଁନାହାନ୍ତି । ଶୁଣିବାକୁ ନ ଚାହିଁଲା ବେଳେ ଶୁଣେଇଲେ ତାର କିଛି ପ୍ରଭାବ ପଡିବନି । ନହେଲେ ସେ ଶୁଣିବାକୁ ତ ଚାହୁଁଛି, କିନ୍ତୁ ଶୁଣାଇଲା ବାଲାର ଆଚରଣରେ ସେ କଥା ନାହିଁ, ତେଣୁ ତା କଥାର ପ୍ରଭାବ ପଡୁ ନାହିଁ । ପ୍ରହ୍ଲାଦ ନିଜେ କିଛି କହିନାହାନ୍ତି । ପଚାରିଲା ପରେ ଯାଇଁ କହିଲେ ।

## ନୃସିଂହ-ଅବତାର

ସେତେବେଳେ ସବୁ ଅସୁରବାଳକ ପ୍ରହ୍ଲାଦଙ୍କ ପକ୍ଷରେ ହୋଇଗଲେ , ତ ହିରଣ୍ୟକଶିପୁକୁ ଡର ମାଡିଲା । ଯିଏ ନିଜକୁ ବଡ ଶକ୍ତିଶାଳୀ ଭାବୁଥିଲା, ସେ ଗୋଟିଏ ଛୋଟ ପିଲାକୁ ଡରିଲା । ଦେଖିଲେ ତ ଆଧ୍ୟାତ୍ମ ର ଶକ୍ତି । ଅନେକ ଯାଗାରେ ଏପରି ଛୋଟପିଲା ଧ୍ରୁବ ବା ପ୍ରହ୍ଲାଦଙ୍କ ବର୍ଣ୍ଣନ ମିଳେ । ଭାଗବତ ମାନଙ୍କ ମଧ୍ୟରେ ମଧ୍ୟ ପ୍ରହ୍ଲାଦ ସର୍ବାଧିକ ପ୍ରିୟ । ତାଙ୍କ ନାମ ସର୍ବପ୍ରଥମେ ଆସେ - ପ୍ରହ୍ଲାଦ, ନାରଦ, ପୁଣ୍ଡରୀକ ଆଦି । ହିରଣ୍ୟକଶିପୁ ଯେତେବେଳେ ଜାଣିଲା ଯେ ସବୁ ଅସୁରବାଳକ ପ୍ରହ୍ଲାଦ ପକ୍ଷରେ ଅଛନ୍ତି, ସେ ପ୍ରହ୍ଲାଦଙ୍କୁ ଡକେଇଲା, ଆଉ ରାଗି ଯାଇ କହିଲା-

**ହେ ଦୁର୍ବିନୀତ ମନ୍ଦାତ୍ମନ୍‌କୁଲଭେଦକରାଧମ ।**

**ସ୍ତବ୍ଧଂ ମଚ୍ଛାସନୋଦ୍‌ଭୂତଂ ନେଷ୍ୟେ ତ୍ୱାଦ୍ୟ ଯମକ୍ଷୟମ୍ ॥ (୭.୮.୬)**

ତୁ ବହୁତ ଦୁର୍ବିନୀତ, ଅଭିମାନୀ ହୋଇଯାଇଛୁ । ସ୍ତବ୍ଧ ହୋଇଯାଇଛୁ । ମୂଢ଼ ଆଜି ମୁଁ ତତେ ଯମାଳୟକୁ ପଠେଇଦେବି ।

**କ୍ରୁଦ୍ଧସ୍ୟ ଯସ୍ୟ କମ୍ପନ୍ତେ ତ୍ରୟୋ ଲୋକାଃ ସହେଶ୍ୱରାଃ ।**

**ତସ୍ୟ ମେଽଭୀତବନ୍ମୂଢ ଶାସନଂ କିମ୍ବଲୋଽତ୍ୟଗାଃ ॥ (୭.୮.୭)**

ମୋ ନାମ ଶୁଣି ତିନିଲୋକ ଥର-ଥର ହୋଇ କମ୍ପିବାକୁ ଲାଗନ୍ତି । ତୁ କାହା ବଳରେ ଏପରି ନିର୍ଭୟ ହୋଇ ମୋ ସାମ୍ନାରେ ଛିଡା ହୋଇଛୁ ? ଏହା ତୋ ନିଜ ବଳ ତ ନୁହଁ । ତୁ ତ ଏତେ ଛୋଟ ପିଲାଟେ ପ୍ରହ୍ଲାଦଙ୍କ ନମ୍ରତା ଦେଖ, ହାତଯୋଡିକରି ଛିଡା ହୋଇଛନ୍ତି । କହିଲେ - ରାଜନ୍, ଆପଣ ପଚାରିଥିଲେ ଯେ ମୁଁ କାହା ବଳରେ ଏଠି ଠିଆ ହୋଇଛି ? ଦୁନିଆରେ ଜଣ ବଳ ବା ଶକ୍ତିର ସ୍ରୋତ ଅଲଗା-ଅଲଗା କି ? ଜଣେ ଏକପ୍ରକାର ଶକ୍ତି ତ ଆଉ ଜଣେ ଆଉ ଗୋଟିଏ ପ୍ରକାରର ଶକ୍ତି ଦ୍ୱାରା ବଞ୍ଚୁଛନ୍ତି କି ? ଯେଉଁ ଶକ୍ତି ଦ୍ୱାରା ଆପଣ ତିନିଲୋକଙ୍କୁ ଡରାଉଛନ୍ତି ସେ ତାହାର ହିଁ ବଳ, ଯଦିଓ ଆପଣ ବୁଝୁଛନ୍ତି ଯେ ଆପଣ ନିଜ ଶକ୍ତିଦ୍ୱାରା ସେମାନଙ୍କୁ ଡରାଉଛନ୍ତି ।

**ନ କେବଲଂ ମେ ଭବତଶ୍ଚ ରାଜନ୍**

**ସ ବୈ ବଲଂ ବଲିନାଂ ଚାପରେଷାମ୍ ।**

**ପରେଽବରେଽମୀ ସ୍ଥିରଜଂଗମା ଯେ**

**ବ୍ରହ୍ମାଦୟୋ ଯେନ ବଶଂ ପ୍ରଣୀତାଃ ॥(୭.୮.୮)**

ହେ ରାଜନ୍, କେବଳ ମୋର ନୁହେଁ ଆପଣଙ୍କ ବଳ, ଅନ୍ୟମାନଙ୍କର ବଳ, ମାୟାର ବଳ, ସବୁ ଦେବୀ ଦେବତାଙ୍କର ବଳ, ବ୍ରହ୍ମା,ବିଷ୍ଣୁ ଏବଂ ମହେଶ ଆଦି, ଯେଉଁମାନେ ବ୍ରହ୍ମାଣ୍ଡର କାମ କରୁଛନ୍ତି ସେମାନଙ୍କର ବଳ, ସବୁ ସେହି ଈଶ୍ୱରଙ୍କ ଠାରୁ ପ୍ରାପ୍ତ ହୁଏ । **'ସଈଶ୍ୱର'** ସେହି ଈଶ୍ୱର ହିଁ ସର୍ବଶକ୍ତିମାନ ଅଟନ୍ତି । ଶକ୍ତିର ସେହି ଏକମାତ୍ର ସ୍ରୋତ ଆଉ ଅନ୍ୟ କୌଣସି ସ୍ରୋତ ନାହିଁ । ସେହି ଜଣେ ପରମାତ୍ମାଙ୍କର ବଳ ଆମ ସମସ୍ତଙ୍କ ଭିତରେ ଅଛି ।

**ଜହ୍ୟାସୁରଂ ଭାବମିମଂ ତ୍ୱମାତ୍ମନଃ**

**ସମଂ ମନୋଧତ୍ସ୍ୱ ନ ସନ୍ତି ବିଦ୍ୱିଷଃ ॥ (୭.୮.୧୦)**

ଆପଣ ମଧ୍ୟ ଏହି ଆସୁରୀ ସ୍ୱଭାବ ଛାଡ଼ି ତାର ଶକ୍ତିକୁ ବୁଝି , ତା ପ୍ରତି ନିଜକୁ ସମର୍ପିତ କରିଦିଅନ୍ତୁ । ଏହି ସବୁ ଇନ୍ଦ୍ରିୟଗୁଡିକ ଆମକୁ ଲୁଟିନେବେ । ଆପଣ ସେମାନଙ୍କ ନିୟନ୍ତ୍ରଣକୁ ଯାଆନ୍ତୁ ନାହିଁ । ହିରଣ୍ୟକଶିପୁ ସବୁ ଭୋଗ ଭୋଗି ସାରିଥିଲା । କିନ୍ତୁ ତାକୁ କେବେ ବି ଶାନ୍ତି ମିଳି ନ ଥିଲା । ସେ ସର୍ବଦା ଅତୃପ୍ତ କାମ କରୁଥିଲା । ପ୍ରହ୍ଲାଦ କହିଲେ ଯେ – ଏହି ଇନ୍ଦ୍ରିୟମାନେ କେବେହେଲେ ଆପଣଙ୍କୁ ଶାନ୍ତି ଦେଇପାରିବେ ନାହିଁ । ତେଣୁ ଆପଣ ସେହି ଭଗବାନଙ୍କ ଶରଣକୁ ଯାଆନ୍ତୁ ।

ହିରଣ୍ୟକଶିପୁ କହିଲା – **'ବ୍ୟକ୍ତଂ ତ୍ୱଂ ମର୍ତୁକାମୋଽସି'(୭.୮.୧୨)** ଏବେ ମୁଁ ବିଶ୍ୱାସ କଲି ଯେ ତୁ ମରିବାକୁ ଚାହୁଁଛୁ । **'ଅତିମାତ୍ରଂ ବିକତ୍‌ଥସେ'** କାରଣ ଏବେ ତୁ ସୀମା ବାହାରକୁ ଚାଲି ଯାଉଛୁ , ମର୍ଯ୍ୟାଦାର ଅତିକ୍ରମଣ କରୁଛୁ । ଛୋଟ ମୁହଁରେ ବଡ-ବଡ କଥା କହୁଛୁ । ମୋରି ପୁଅ ହେଇ ମୋତେ ଉପଦେଶ ଦେଉଛୁ । ଅନ୍ତ ସମୟରେ ତୋ ବୁଦ୍ଧି ବିପରୀତ ହେଇଯାଉଛି ।

**ଯସ୍ତ୍ୱୟା ମନ୍ଦଭାଗ୍ୟୋକ୍ତୋ ମଦନ୍ୟୋ ଜଗଦୀଶ୍ୱରଃ ।**
**କ୍ୱାସୌ ଯଦି ସ ସର୍ବତ୍ର କସ୍ମାତ୍ ସ୍ତମ୍ଭେ ନ ଦୃଶ୍ୟତେ ॥ (୭.୮.୧୩)**

ତୁ ଯେଉଁ ଈଶ୍ୱରଙ୍କ କଥା ଏବେ କହୁଛୁ, ମୋ ଛଡା ସେହି ଈଶ୍ୱର କିଏ ? କେଉଁଠି ଅଛି ? ଯଦି ସବୁଠି ଅଛି ତେବେ ଏହି ସ୍ତମ୍ଭରେ କାହିଁକି ଦିଶୁନି ? ଯଦି ତୋ କଥା ସତ୍ୟ, ତେବେ ଏହି ସ୍ତମ୍ଭକୁ ମୁଁ ବର୍ତ୍ତମାନ ଭାଙ୍ଗି ଦେଉଛି, ଆଉ ଦେଖିବି ଯେ ତୋ ଭଗବାନ କେଉଁଠି ଅଛି ? ଏହିପରି ଖରାପ ଭାଷା କହି, କ୍ରୋଧିତ ହୋଇ ହିରଣ୍ୟକଶିପୁ ସେହି ସ୍ତମ୍ଭକୁ ଭାଙ୍ଗିବା ପାଇଁ ଗଲା । ଦେଖନ୍ତୁ, ଏକଦମ୍ ଠିକ୍ ସମୟ, ସନ୍ଧ୍ୟା ସମୟ ଏବଂ ସ୍ତମ୍ଭ ଭିତରେ ଭଗବାନ ଅଛନ୍ତି ।

**ଖଡ୍‌ଗଂ ପ୍ରଗୃହ୍ୟୋତ୍ପତିତୋ ବରାସନାତ୍ ।**
**ସ୍ତମ୍ଭଂ ତତାଡାତିବଲଃ ସ୍ୱମୁଷ୍ଟିନା ॥ (୭.୮.୧୫)**

ହିରଣ୍ୟକଶିପୁ ଗୋଟିଏ ହାତରେ ଖଣ୍ଡା ଧରି ସ୍ତମ୍ଭ ଆଡକୁ ଦଉଡ଼ିବାକୁ ଲାଗିଲା ଏବଂ ସେହି ସ୍ତମ୍ଭ ଉପରେ ଗୋଟିଏ ମୁଥ ମାରିଲା । କୌଣସି ସାଧାରଣ ସ୍ତମ୍ଭକୁ କିଏ ଆଘାତ କଲେ ସେଥିରୁ ଅଳ୍ପ ଧ୍ୱନି ବାହାରି ପାରେ, କିନ୍ତୁ ସେତେବେଳେ ଏପରି ଧ୍ୱନି ହେଲା ଯେମିତି ପୁରା ବ୍ରହ୍ମାଣ୍ଡ ଫାଟି ଯିବ । **'ଯେନାଣ୍ଡକଟାହମସ୍ଫୁଟତ୍'** । ସେହି ଭୟଙ୍କର ଧ୍ୱନିକୁ ଶୁଣି ହିରଣ୍ୟକଶିପୁ ଚମକି ପଡି ପଛକୁ ଫେରି ଆସିଲା , ସେ ଭାବିଲା ଖମ୍ଭକୁ ମାରିଲେ ତ ଏମିତି ଧ୍ୱନି କଦାପି ହେବ ନାହିଁ । ତାପରେ ସ୍ତମ୍ଭ ଭାଙ୍ଗିଗଲା ।

**ସତ୍ୟଂ ବିଧାତୁଂ ନିଜଭୃତ୍ୟଭାଷିତଂ**
**ବ୍ୟାପ୍ତିଂ ଚ ଭୂତେଷ୍ୱଖିଲେଷୁ ଚାତ୍ମନଃ ।**
**ଅଦୃଶ୍ୟତାତ୍ୟଦ୍ଭୁତରୂପମୁଦ୍ୱହନ୍**
**ସ୍ତମ୍ଭେ ସଭାୟାଂ ନ ମୃଗଂ ନ ମାନୁଷମ୍ ॥ (୭.୮.୧୮)**

ପ୍ରହ୍ଲାଦ କହିଥିଲେ ଯେ ଭଗବାନଙ୍କ ଶକ୍ତି ହିଁ ସବୁଠାରେ କାମ କରେ । ସେହି ଭଗବାନ ସର୍ବବ୍ୟାପୀ ଅଟନ୍ତି। ତେଣୁ ଭଗବାନ ନିଜ ଭକ୍ତର, ସେବକର, ଭୃତ୍ୟର ବାଣୀକୁ ସତ୍ୟ କରିବା ପାଇଁ, ତାକୁ ପ୍ରମାଣିତ କରିବା ପାଇଁ ସେହି ସ୍ତମ୍ଭରୁ ପ୍ରକଟ ହେଲେ । ଏପରି ଅଲୌକିକ, ବିଚିତ୍ର, ବିଲକ୍ଷଣ, **'ନ ଭୂତୋ ନ ଭବିଷ୍ୟତି'** ଅପୂର୍ବ ଦୃଷ୍ଟ ରୂପ ସେଠାରେ ସମସ୍ତଙ୍କ ସମ୍ମୁଖରେ ପ୍ରକଟ ହେଲା । ତାକୁ ନା ନର କହି ପାରିବା

ନା ପଶୁ କହିପାରିବା । ଏପରି ନୃସିଂହ ରୂପ ପ୍ରକଟ ହେଇ ବିଶାଳକାୟ ହେବାକୁ ଲାଗିଲା। ରାଜମହଲର ଛାତ ଦେଖାଯାଉ ନ ଥିଲା । ଏପରି ଲାଗୁଥିଲା ଯେପରି ଘରର ଛାତ ନାହିଁ କିମ୍ବା ଛାତ ବି ଧୀରେ-ଧୀରେ ବଢିବାରେ ଲାଗିଛି ।

**ନୃସିଂହରୂପସ୍ତଦଲଂ ଭୟାନକମ୍ ପ୍ରତପ୍ତଚାମୀକରଚଣ୍ଡ ଲୋଚନଂ**

**ସ୍ଫୁରତ୍ସଟାକେସରଜୃମ୍ଭିତାନନମ୍ ॥ (୭.୮.୨୦)**

**କରାଳଦଂଷ୍ଟ୍ରଂ କରବାଳଚଞ୍ଚଳ -**

**କ୍ଷୁରାନ୍ତଜିହ୍ୱଂ ଭ୍ରୁକୁଟୀମୁଖୋଲ୍ବଣମ୍ । (୭.୮.୨୧)**

କଟିଠାରୁ ଉପରକୁ ସିଂହ ଏବଂ ତଳଭାଗ ମନୁଷ୍ୟର । ତାଙ୍କର କେଶ ଉଡୁଛି । ଅତ୍ୟନ୍ତ ଭୟଙ୍କର ପାଟିଥିବା ଭୟଙ୍କର 'ନୃସିଂହ ରୂପ' ସେଠାରେ ପ୍ରକଟ ହେଲେ ।

**ପ୍ରାୟେଣ ମେଽୟଂ ହରିଣୋରୁମାୟିନା**

**ବଧଃ ସ୍ମୃତୋଽନେନ ସମୁଦ୍ୟତେନ କିମ୍ ।(୭.୮.୨୩)**

**ଏବଂ ବ୍ରୁବଂସ୍ତ୍ୱଭ୍ୟପତଦ୍ ଗଦାୟୁଧୋ**

**ନଦନ୍ ନୃସିଂହଂ ପ୍ରତି ଦୈତ୍ୟକୁଞ୍ଜରଃ ॥ (୭.୮.୨୪)**

ତାଙ୍କୁ ଦେଖି ହିରଣ୍ୟକଶିପୁ ଡରିଗଲା, ସେ କହିଲା, "ମତେ ମାରିବା ପାଇଁ ସ୍ୱୟଂ ଭଗବାନ ଏହି ରୂପ ନେଇ ନାହାନ୍ତି ତ ? ମୁଁ ୟାକୁ ମାରିଦେବି ।" ଏହା କହି ସେ ଭଗବାନଙ୍କ ଆଡକୁ ଏପରି ଦୌଡ଼ିଗଲା ଯେମିତି କୌଣସି ପୋକ ଜଳନ୍ତା ଅଗ୍ନି ଆଡକୁ ଦୌଡ଼େ । ନିଜର ବିନାଶ ପାଇଁ ସେ ନିଜେ ସେପରି ଦୌଡ଼ିଲା ।

ତତୋଽଭିପଦ୍ୟାଭ୍ୟହନନ୍ମହାସୁରୋ
ରୁଷା ନୃସିଂହଂ ଗଦୟୋରୁବେଗୟା । (୭.୮.୨୫)
ତଂ ବିକ୍ରମନ୍ତଂ ସଗଦଂ ଗଦାଧରୋ
ମହୋରଗଂ ତାର୍କ୍ଷ୍ୟସୁତୋ ଯଥାଗ୍ରହୀତ୍ ।
ସ ତସ୍ୟ ହସ୍ତୋତ୍କଲିତସ୍ତଦାସୁରୋ
ବିକ୍ରୀଡତୋ ଯଦ୍ୱଦହିର୍ଗରୁତ୍ମତଃ ॥ (୭.୮.୨୬)
ଅସାଧ୍ୱମନ୍ୟନ୍ତ ହୃତୌକସୋଽମରା
ଘନଚ୍ଛଦା ଭାରତ ସର୍ବଧିଷ୍ଣ୍ୟପାଃ ॥ (୭.୮.୨୭)

ହିରଣ୍ୟକଶିପୁ ଯେତେବେଳେ ଭଗବାନଙ୍କ ଆଡକୁ ଦୌଡୁଥିଲା, ସେତେବେଳେ ଭଗବାନ ମଧ୍ୟ ତାକୁ ମାରିବା ପାଇଁ ଯାଉଥିଲେ । ଏହି ସମୟରେ ହିରଣ୍ୟକଶିପୁ ତାଙ୍କ ହାତରୁ ଖସି ବାହାରି ଗଲା । ସବୁ ଅସୁର ଏବଂ ଦେବତାମାନେ ଏହା ଦେଖୁଥିଲେ । ଏହା ଦେଖି ଦେବତାମାନେ ଡରିଗଲେ । କିନ୍ତୁ ହିରଣ୍ୟକଶିପୁ ଭାବିଲା ଯେ ଏହି ନୃସିଂହ ଭଗବାନ ତ ନିର୍ବଳ, ମୋ ବଳକୁ ଡରୁଛନ୍ତି । ଏମିତି ଭାବି ସେ ପୁଣିଥରେ ନୃସିଂହ ଭଗବାନଙ୍କ ଆଡକୁ ଦୌଡିଲା । ଆଉ ସେତେବେଳେ -

କୃତ୍ୱାଟ୍ଟହାସଂ ଖରମୁସ୍ୱନୋଲ୍ବଣଂ
ନିମୀଲିତାକ୍ଷଂ ଜଗୃହେ ମହାଜବଃ । (୭.୮.୨୮)
ବିଷ୍ୱକ୍ ସ୍ଫୁରନ୍ତଂ ଗ୍ରହଣାତୁରଂ ହରି-
ର୍ବ୍ୟାଲୋ ଯଥାଽଽଖୁଂ କୁଲଶାକ୍ଷତତ୍ୱଚମ୍ । (୭.୮.୨୯)

ଭଗବାନ ଜୋର୍‌ରେ ଗର୍ଜନ କଲେ, ଅଟ୍ଟହାସ କଲେ ଏବଂ ଅଳ୍ପ ସମୟ ପ୍ରତୀକ୍ଷା କଲେ । କାରଣ ବ୍ରହ୍ମା ତାକୁ ବର ଦେଇଥିଲେ ଏବଂ ଭଗବାନ ସେହି ବରଦାନକୁ ସମ୍ମାନ ଦେଲେ । ଯେତେବେଳେ ଭଗବାନ ଦେଖିଲେ ଯେ ନା ଦିନ ନା ରାତି, ସନ୍ଧ୍ୟା ସମୟ ହୋଇଛି, ସେତେବେଳେ ତାକୁ ଏରୁଣ୍ଡୀ ବନ୍ଧକୁ ଟାଣିକରି ନେଇଗଲେ । କାରଣ ମହଲ ଭିତରେ କି ବାହାରେ ମାରିବେ ନାହିଁ । ସେହି ସମୟ ନା ଦିନ ଥିଲା ନା ରାତି , ଘର ଭିତର ନୁହଁ କି ବାହାର ନୁହଁ, ପୃଥିବୀ ନୁହଁ କି ଆକାଶ ନୁହଁ , ତେଣୁ ତାକୁ ନିଜ

କୋଳକୁ ଟେକି ନେଲେ । କୋଳ ବି ନୁହଁ, ଦୁଇ ଆଣ୍ଠୁ ଉପରେ ଥୋଇଦେଲେ । ଦେଖନ୍ତୁ, ଭଗବାନଙ୍କର ଏହି ରୂପ ବ୍ରହ୍ମାଙ୍କ ଦ୍ୱାରା ସୃଷ୍ଟ ରୂପ ନୁହଁ , ହିରଣ୍ୟକଶିପୁ ହିଁ ବର ମାଗିଥିଲା । ବ୍ରହ୍ମାଙ୍କ ସୃଷ୍ଟିର କୌଣସି ପ୍ରାଣୀ ମତେ ମାରିପାରିବ ନାହିଁ । ତାକୁ ନର କହିପାରିବା ନାହିଁ କି ସିଂହ କହିପାରିବା ନାହିଁ । ନର ବି ମାରିବନି କି ପଶୁ ବି ମାରିବନି, ସେ ଥିଲେ ନୃସିଂହ । ଆଉ ଗୋଟେ ବି କଥା ବି କହିଥିଲା ସେ - ଅସ୍ତ୍ରରେ ବି ମରିବିନି କି ଶସ୍ତ୍ରରେ ବି ମରିବିନି । ସିଂହର ନଖ ତା ଶରୀରର ଅଙ୍ଗ । ତାହା ଅସ୍ତ୍ର ନୁହେଁ କି ଶସ୍ତ୍ର ନୁହେଁ । କାରଣ ଶରୀର ଠାରୁ ଅଲଗା ନୁହଁ ଯେ ତାକୁ ଅସ୍ତ୍ର-ଶସ୍ତ୍ର କହିବା , ଭଗବାନ ଦେଖିଲେ ଯେ ଏବେ ସମୟ ଆସିଗଲା -

**ଦଦାର ଲୀଲୟା ନଖୈର୍ୟଥାହିଂ ଗରୁଡୋ ମହାବିଷମ୍ ।। (୭.୮.୨୯)**

ଯେପରି ଗରୁଡ ମହାବିଷଧାରୀ ସାପକୁ ଫାଡ଼ିଦିଏ , ସେହିପରି ଭଗବାନ ତା ପେଟକୁ ଫାଡିଦେଲେ । ହିରଣ୍ୟକଶିପୁର ବଧ ହୋଇଗଲା , କିଛି କ୍ଷଣ ପାଇଁ ସେହି ସ୍ଥାନ ନିସ୍ତବ୍ଧ ହୋଇଗଲା । କଣ ହୋଇଗଲା କେହି କିଛି ବୁଝିପାରିଲେ ନାହିଁ । ଦେବତାମାନେ ପ୍ରଥମେ ଭାବୁଥିଲେ ଯେ ଆଉ ଆମ୍ଭେମାନେ ବଞ୍ଚିବୁନି । ହିରଣ୍ୟକଶିପୁ ତ କେବେ ବି ମରିବନି । କିନ୍ତୁ ତା ମୃତ୍ୟୁ ଦେଖି ଦେବତା, ନାଗ, ଯକ୍ଷ, ସୁର, ଗନ୍ଧର୍ବ, କିନ୍ନର, ବିଦ୍ୟାଧର, କିଂପୁରୁଷ, ବୈତାଳିକ, ମନୁ, ପ୍ରଜାପତି, ବ୍ରହ୍ମା, ରୁଦ୍ର, ଋଷି, ପିତର, ଆଦି ସମସ୍ତେ ଆନନ୍ଦିତ ହେଲେ ଏବଂ ନିଜ-ନିଜ ରୀତି ଅନୁସାରେ ଦିବ୍ୟ ସ୍ତୁତି କଲେ । ଭଗବାନ ତାର ବଧ ତ କଲେ ନାହିଁ ବରଂ ତାକୁ ଉଦ୍ଧାର କରିଦେଲେ । **ତାକୁ ମାରିଲେନି ବରଂ ତାରି ଦେଲେ ।**

ସେହି ସମୟରେ ଭଗବାନଙ୍କ ରୂପ ଏତେ ଉଗ୍ର ଥିଲା ଯେ ଋଷି-ମୁନି ବା ଦେବତାମାନେ କେହି ହେଲେ ତାଙ୍କ ପାଖକୁ ଯିବା ପାଇଁ ସାହାସ କରି ପାରିଲେ ନାହିଁ । ସେ ଲକ୍ଷ୍ମୀଙ୍କୁ କହିଲେ, "ଦେବୀ, ଦୟାକରି ଆପଣ ନିଜ ସ୍ୱାମୀ ପାଖକୁ ଯାଆନ୍ତୁ ।" ଭଗବାନଙ୍କ ରୂପ ଦେଖି ସେ ଡରିଗଲେ । କହିଲେ- ସ୍ୱାମୀ ହେଲେ ମଧ, ଏହା ତାଙ୍କର ଅତ୍ୟନ୍ତ ଉଗ୍ର ରୂପ । ଏମିତି ରୂପ ମୁଁ ପୂର୍ବରୁ କେବେ ବି ଦେଖି ନ ଥିଲି । ଏବେ ମୁଁ ତାଙ୍କ ପାଖକୁ ଯାଇପାରିବିନି । ସେଠାରେ ସମସ୍ତେ ଭାବୁଥିଲେ ଯେ ଭଗବାନଙ୍କ କ୍ରୋଧ ଶୀଘ୍ର ଶାନ୍ତ ହେବା ଉଚିତ୍ । କ୍ରୋଧ ଶାନ୍ତି ପାଇଁ କଣ କରାଯିବ ? ସମସ୍ତେ କହିଲେ - ପ୍ରହ୍ଲାଦଙ୍କୁ ଭଗବାନଙ୍କ ନିକଟକୁ ପଠାଅ । ଛୋଟପିଲାଟିକୁ ଦେଖି କାହାର ବି କ୍ରୋଧ ଶାନ୍ତ ହୋଇଯିବ । ପ୍ରହ୍ଲାଦଙ୍କର ଆଦୌ ଭୟ ନାହିଁ । ସେ ନିଜର ଭଗବାନଙ୍କୁ ଯେକୌଣସି ରୂପରେ ମଧ ଚିହ୍ନିପାରିବେ ।

ତେଣୁ ପ୍ରହ୍ଲାଦଙ୍କୁ ଭଗବାନଙ୍କ ପାଖକୁ ପଠାଗଲା ସେ ନିର୍ଭୟ ହୋଇ ଭଗବାନଙ୍କ ପାଖକୁ ଗଲେ । ଭଗବାନଙ୍କ ପାଖକୁ ଯାଇ ହାତ ଯୋଡି ତାଙ୍କୁ ସାଷ୍ଟାଙ୍ଗ ପ୍ରଣାମ କଲେ । ସେ ପାଦ ତଳେ ପଡିଥିବା ପ୍ରହ୍ଲାଦଙ୍କୁ ଦେଖି ଭଗବାନଙ୍କ କ୍ରୋଧର ଚିହ୍ନବର୍ଣ୍ଣ ମଧ୍ୟ ରହିଲା ନାହିଁ । ସେ ତାଙ୍କୁ ଅତ୍ୟନ୍ତ ପ୍ରେମର ସହିତ କୋଳକୁ ଉଠାଇ ନେଲେ , ଆଉ ମୁଣ୍ଡ ଉପରେ ହାତ ରଖି କଣ କହିଲେ ଜାଣନ୍ତି ? ପୁତ୍ର, ଯଦି ମୋର ଆସିବାରେ ବିଳମ୍ବ ହୋଇଯାଇଛି ତେବେ ମୋତେ କ୍ଷମା କରିଦିଅ । ତୁମକୁ ଏହି ରାକ୍ଷସ ବହୁତ କଷ୍ଟ ଦେଇଛି । ମୋତେ ବହୁ ପୂର୍ବରୁ ଆସିବାର ଥିଲା । **'କ୍ଷମସ୍ୱ ଯଦି ମେ ବିଲମ୍ବଃ'** । ଆସିବାରେ ମୁଁ ବହୁତ ଡେରି କରି ଦେଲି , ମୁଁ ତୁମକୁ ବହୁତ ପ୍ରତୀକ୍ଷା କରେଇଲି । ଅନେକ ପରୀକ୍ଷା ମଧ୍ୟ ନେଲି । ଭଗବାନ ତାଙ୍କର ଶରୀରର ପ୍ରତ୍ୟେକ ଅଙ୍ଗକୁ ଦେଖିବାକୁ ଲାଗିଲେ ଯେ ହିରଣ୍ୟକଶିପୁ ତାଙ୍କୁ କୋଉଠି-କୋଉଠି କି-କି କଷ୍ଟ ଦେଇଛି , ଆଉ ତାର କିଛି ଚିହ୍ନ ଅଛି କି ନାହିଁ । ପ୍ରହ୍ଲାଦ ହାତ ଯୋଡି ତାଙ୍କର ସ୍ତୁତି କଲେ । ତାଙ୍କୁ ନମସ୍କାର କଲେ । ସେହି ସମୟରେ ମଧ୍ୟ ଦେଖନ୍ତୁ ପ୍ରହ୍ଲାଦଙ୍କ ହୃଦୟ କିପରି ? ସେ କହିଲେ , "ଭଗବାନ, ମୁଁ ବୁଝିଗଲି ଯେ ଆପଣଙ୍କୁ କାହାର ଧନ, ବିଦ୍ୟା, ଜ୍ଞାନ, ଐଶ୍ୱର୍ଯ୍ୟ, ସାଧନା ଆଦି ପ୍ରସନ୍ନ କରିପାରନ୍ତିନି । ଆପଣଙ୍କୁ ସରଳ ପ୍ରେମ, ସରଳ ହୃଦୟର ଭଲ ପାଇବା ହିଁ ପ୍ରସନ୍ନ କରିପାରେ । ଆଉ ଅନ୍ୟ କୌଣସି ଜିନିଷ ଆପଣଙ୍କୁ ପ୍ରସନ୍ନ କରିବାରେ ସକ୍ଷମ ନୁହଁ । ଏହା ହିଁ ମୁଁ ଦେଖୁଛି ।"

**ନାହଂ ବିଭେମ୍ୟଜିତ ତେଽତିଭୟାନକାସ୍ୟ । (୭.୯.୧୫)**

"ଆପଣଙ୍କର ଏହି ଭୟଙ୍କର ରୂପ ଦେଖି କିଏ ଡରିଗଲେ ମଧ୍ୟ, ମୋତେ ଟିକିଏ ହେଲେ ଡର ଲାଗୁନି । ଯେଉଁମାନେ ଏହି ସଂସାରଚକ୍ରରେ ପେଶୀ ହୋଇଯାଉଛନ୍ତି ମୋତେ ସେହିମାନଙ୍କୁ ଦେଖି ଡର ମାଡୁଛି ଏବଂ ଦୁଃଖ ଲାଗୁଛି । ଏପର୍ଯ୍ୟନ୍ତ ତାଙ୍କ ବୁଦ୍ଧି ବୁଝିପାରୁ ନାହିଁ ଯେ ଭଗବାନଙ୍କୁ ଟିକିଏ ମନେ ପକାଇବା । ତାଙ୍କୁ ଦୁଃଖୀ ଦେଖି ମୋତେ ଦୁଃଖ ଲାଗୁଛି । ତାଙ୍କ ସ୍ଥିତି ଦେଖି ମୋତେ ଭୟ ଲାଗୁଛି ଯେ ଏମାନଙ୍କର ଅବସ୍ଥା କଣ ହେବ ? ଏମାନେ ଏହି କଥା କାହିଁକି ବୁଝିପାରୁ ନାହାନ୍ତି ?"

**ଦୁଃଖୌଷଧଂ ତଦପି ଦୁଃଖମତଦ୍ଧିୟାହଂ**

**ଭୂମନ୍‌ଭ୍ରମାମି ବଦ ମେ ତବ ଦାସ୍ୟଯୋଗମ୍ ॥ (୭.୯.୧୭)**

ଆମେ ମଧ୍ୟ ଏହି ଚକ୍ରରେ କେଜାଣି କେବେଠାରୁ ବୁଲୁଛୁ । ଆପଣ ନିଜର ଦାସ୍ୟଯୋଗ ଆମମାନଙ୍କୁ କହି ଦିଅନ୍ତୁ । ଆପଣଙ୍କ ଭକ୍ତି କିପରି କରିବା ପାଇଁ ପଡ଼ିବ

ଏହା ମଧ୍ୟ ବତେଇ ଦିଅନ୍ତୁ । ଆମେ ମାନେ ଅନ୍ୟ ବହୁତ କର୍ମକାଣ୍ଡ କରୁ , ସ୍ୱର୍ଗାଦିକୁ ଯିବା ପାଇଁ ମଧ୍ୟ ଅନେକ କର୍ମ କାଣ୍ଡ କରୁ । ମୁଁ ଦେଖିଛି, ମୋ ପିତା ହିରଣ୍ୟକଶିପୁ ଗୋଟିଏ ଆଖି ଉଠେଇ ଚାହିଁବା ମାତ୍ରେ ଦେବତାମାନେ ସ୍ୱର୍ଗରୁ ଗଡ଼ି ଗଡ଼ି ତଳେ ପଡି ଯାଉଥିଲେ । ଲୋକମାନେ ଏପରି ଦେବତାମାନଙ୍କର ସ୍ୱର୍ଗକୁ ଯିବା ପାଇଁ ଇଚ୍ଛୁକ । ମୋତେ ଏହି ସବୁ ଦରକାର ନାହିଁ । ଆପଣ ମୋ ଉପରେ ପ୍ରସନ୍ନ ହୁଅନ୍ତୁ । ଏହି ମାୟା ଅତ୍ୟନ୍ତ ପ୍ରବଳ । ଇନ୍ଦ୍ରିୟ ମାନଙ୍କର ବିଷୟଗୁଡ଼ିକ ପ୍ରତି ଯେଉଁ ଆକର୍ଷଣ ତାହା ହିଁ ସବୁଠାରୁ ବଡ଼ ମାୟା । ଏହି ଜିଭ ଆମକୁ ଗୋଟିଏ ଆଡକୁ ଟାଣୁଛି ତ ନାକ ଅନ୍ୟ ଆଡକୁ ତ କାନ ତୃତୀୟ ପଟକୁ । ଏପରି ସ୍ଥିତି ହେଇଛି । ଜଣେ ସ୍ୱାମୀର ଅନେକ ସ୍ତ୍ରୀ ଥିଲେ ତା ଅବସ୍ଥା ଯେପରି ହୁଏ , ଠିକ୍ ସେହି ସ୍ଥିତି ଏହି ଜୀବର ହେଇଯାଇଛି । ମନର ପ୍ରତ୍ୟେକ ବୃତ୍ତି ତାକୁ ସେହି ପଟକୁ ଟାଣୁଛି । ତା'ର କଲ୍ୟାଣ କିପରି ହେବ ? ଭଗବାନ୍ ? ଏବେ ଆପଣଙ୍କୁ ହିଁ ତାଙ୍କ ଉପରେ କୃପା କରିବାକୁ ପଡିବ । ଏହି ସଂସାରୀ ଲୋକମାନେ ଭାବୁଛନ୍ତି ଯେ ଗୃହସ୍ଥାଶ୍ରମରେ ବହୁତ ସୁଖ ଅଛି । ସେମାନେ ଭାବୁଛନ୍ତି ଯେ ସେମାନଙ୍କୁ ବହୁତ ସୁଖ ମିଳିବ । କିନ୍ତୁ ସେହି ସୁଖ ଠିକ୍ କୁଣ୍ଡିଆ ପରି, ଶରୀର କୁଣ୍ଡେଇ ହେଲା, କୁଣ୍ଡେଇଲେ ବହୁତ ସୁଖ ମିଳିଲା । କୁଣ୍ଡେଇଲେ ସୁଖ ମିଳେ କି ? ତାକୁ କଣ ସୁଖ କୁହାଯାଏ ? ପ୍ରଭୁ ! ଆମକୁ ଆପଣଙ୍କ ସେବା କରିବାର ସୁଯୋଗ ଦିଅନ୍ତୁ । ଆପଣ ଆମ ଉପରେ ପ୍ରସନ୍ନ ହୁଅନ୍ତୁ । ଭଗବାନ କହିଲେ -

**ପ୍ରହ୍ଲାଦ ଭଦ୍ର ଭଦ୍ରଂ ତେ ପ୍ରୀତୋଽହଂ ତେଽସୁରୋତ୍ତମ ।**
**ବରଂ ବୃଣୀଷ୍ୱାଭିମତଂ କାମପୁରୋଽସ୍ମ୍ୟହଂ ନୃଣାମ୍ ॥ (୭.୯.୫୨)**

ପୁତ୍ର ପ୍ରହ୍ଲାଦ, ମୁଁ ତୁମ ଉପରେ ଅତି ପ୍ରସନ୍ନ । ତୁମେ ଯେଉଁ ବର ଚାହୁଁଛ । ମାଗି ନିଅ । ମୁଁ ସବୁ କାମନା ପୂର୍ଣ୍ଣ କରେ , ତୁମକୁ ଯାହା ଦରକାର ମାଗିନିଅ । ପ୍ରହ୍ଲାଦ ଭାବିବାକୁ ଲାଗିଲେ ଯେ ଭଗବାନ ତ ମୋତେ ମାଗିବା ପାଇଁ କହିଲେଣି । "ଭଗବାନ ଆପଣ ମାଗିବା ପାଇଁ କହୁଛନ୍ତି ? ମୁଁ ଆପଣଙ୍କୁ ମାଗିବି ? ତେବେ ତ ଏହା ବ୍ୟବସାୟ ହେଲା । ଭଗବାନଙ୍କ ସହ ଯେଉଁ ପ୍ରେମ ତାହା କଣ ବ୍ୟବସାୟ ଯେ ମୁଁ ଆପଣଙ୍କୁ ଏତିକି ପ୍ରେମ କଲି, କହିଲେ ଆପଣ କହିବେ ଯେ - କିଛି ମାଗ ଆଉ ସେତେବେଳେ ମୁଁ ସେହି ପ୍ରେମ ବଦଳରେ କିଛି ମାଗିବି । ଏହା କଣ ମୂଲ-ଚାଲର ଜିନିଷ କି ?"

ଏଠାରେ ପ୍ରହ୍ଲାଦ ଗୋଟିଏ ଭଲ କଥା କହିଲେ । ଯେଉଁ ବ୍ୟକ୍ତି ନିଜ ପ୍ରେମ ବଦଳରେ କୌଣସି ବସ୍ତୁ ମାଗେ ସେ ଗୋଟିଏ ବେପାରୀ ପରି । ଆଉ ଯେଉଁ ମାଲିକ

ଜିନିଷ ଦେଇ-ଦେଇ କାହାକୁ ନିଜର ଆଶ୍ରିତ କରିଦିଏ, ନିଜର ଦାସ କରି ରଖିବା ପାଇଁ ତାକୁ ସବୁବେଳେ ଜିନିଷ ଦେଉଥାଏ, ସେ ଭଲ ମାଲିକ ନୁହଁ । ସେବକ ନିଜ ସେବା ବଦଳରେ କୌଣସି ଜିନିଷ ମାଗିଲେ ସେ ମଧ୍ୟ ଭଲ ସେବକ ନୁହଁ । କିନ୍ତୁ ଏବେ ଭଗବାନଙ୍କ ବରର ଅପମାନ ସେ କିପରି କରିବେ । ପ୍ରହ୍ଲାଦ ଭାବିବାକୁ ଲାଗିଲେ ଯେ ଯେତେବେଳେ ମୁଁ କହୁଛି ଯେ ମୋତେ କିଛି ଦରକାର ନାହିଁ , ତାପରେ ମଧ୍ୟ ଭଗବାନ କହୁଛନ୍ତି ଯେ କିଛି ମାଗ, ତେବେ ନିଶ୍ଚିତ ରୂପେ କେଉଁଠି ନା କେଉଁଠି ମୋ ମନରେ କୌଣସି କାମନା ଲୁଚି କରି ରହିଛି, ଯାହାର ଜ୍ଞାନ ମୋର ନାହିଁ । ଏପରି ଭାବି ସେ କହିଲେ -

**ଯଦି ରାସୀଶ ମେ କାମାନ୍ ବରାଂସ୍ତ୍ୱଂ ବରଦର୍ଷଭ ।**

**କାମାନାଂ ହୃଦ୍ୟସଂରୋହଂ ଭବତସ୍ତୁ ବୃଣେ ବରମ୍ ।। (୭.୧୦.୭)**

ଭଗବାନ୍, ଆପଣ ମୋ ଉପରେ ଯଦି ପ୍ରସନ୍ନ ଏବଂ ପ୍ରସନ୍ନ ହୋଇ ମୋତେ କୌଣସି ବର ଦେବାକୁ ଚାହୁଁଛନ୍ତି ତେବେ ମୋତେ ଏହି ବର ଦିଅନ୍ତୁ ଯେ ମୋ ମନରେ ଯେପରି କୌଣସି କାମନା ଉତ୍ପନ୍ନ ନ ହେଉ ।

**ନମୋ ଭଗବତେ ତୁଭ୍ୟଂ ପୁରୁଷାୟ ମହାତ୍ମନେ ।**

**ହରୟେଽଭୁତସିଂହାୟ ବ୍ରହ୍ମଣେ ପରମାତ୍ମନେ ।। (୭.୧୦.୧୦)**

ଦେଖନ୍ତୁ, ଯେଉଁଠି ନୃସିଂହ ଭଗବାନଙ୍କର ପୂଜା ହୁଏ ସେହି ସ୍ଥାନରେ (ବର୍ଷ) ତାଙ୍କର ସ୍ତୁତି କେବଳ ପ୍ରହ୍ଲାଦ କରନ୍ତି ।

ଭଗବାନ କହିଲେ, "ମୁଁ ତୁମ ଉପରେ ପ୍ରସନ୍ନ, ଏବେ ତୁମକୁ ମାୟା କୌଣସି ପ୍ରକାରରେ ହଇରାଣ କରିବ ନାହିଁ । ତୁମ ମନରେ, ଏବେ ନା ତ ଆଉ କୌଣସି ଇଚ୍ଛା ବାକି ଅଛି, ନା କୌଣସି କାମନା କେବେ ବି ଉତ୍ପନ୍ନ ହେବ । ତୁମକୁ ସବୁକିଛି ପ୍ରାପ୍ତ ହୋଇସାରିଛି । କିନ୍ତୁ ଏହି ଅସୁରମାନଙ୍କୁ ତୁମପରି ରାଜା ମିଳିବା ଅତ୍ୟନ୍ତ ଆବଶ୍ୟକ, ଯାହା ଦ୍ୱାରା ଏମାନଙ୍କର କଲ୍ୟାଣ ହେବ । ତୁମକୁ ତ ଆଉ କିଛି ପ୍ରାପ୍ତ କରିବା ପାଇଁ ନାହିଁ, କିନ୍ତୁ ଏମାନଙ୍କୁ ଦେବା ପାଇଁ ଅଛି । ତେଣୁ ତୁମେ ରାଜସିଂହାସନରେ ବସି ଶାସନ କର ।" ଏତିକି କହି ଭଗବାନ ଭାବିଲେ ଯେ ଯେଉଁ ସିଂହାସନରେ ହିରଣ୍ୟକଶିପୁ ବସିଥିଲା ସେଥିରେ ମୁଁ ପ୍ରହ୍ଲାଦକୁ କିପରି ବସାଇବି ? ତେଣୁ ଆଗ ନିଜେ ସିଂହାସନରେ ବସିଗଲେ । ତାପରେ ତାକୁ ପ୍ରସାଦ ରୂପରେ ପ୍ରହ୍ଲାଦକୁ ଦେଲେ । ଦେଖିଲେ ! ପ୍ରହ୍ଲାଦକୁ

ପ୍ରସାଦ ମିଳିଗଲା । ଭଗବାନ ସେହି ସିଂହାସନକୁ ପ୍ରଥମେ ନିଜ ସ୍ପର୍ଶଦ୍ୱାରା ପବିତ୍ର କରିସାରିଲା ପରେ ଦେଲେ । ପ୍ରହ୍ଲାଦ କହିଲେ, "ଭଗବାନ ଆପଣ ମୋ ପ୍ରତି ପ୍ରସନ୍ନ ତ ?" କହିଲେ - ହଁ । "ତେବେ ମୁଁ ଗୋଟିଏ ଜିନିଷ ମାଗିବି ।" ଏବେ କହୁଥିଲେ ମୋ ମନରେ କୌଣସି କାମନା ନାହିଁ । ଏବେ କହୁଛନ୍ତି ମୋର ଗୋଟିଏ ଇଚ୍ଛା ଅଛି, ପୂର୍ଣ୍ଣ କରନ୍ତୁ । ପ୍ରହ୍ଲାଦ କହିଲେ - ଭଗବାନ ମୋର ପିତା ଅଜ୍ଞାନ ଯୋଗୁଁ ଆପଣଙ୍କ ସହିତ ଦ୍ୱେଷ କଲେ । ସେ ବ୍ୟର୍ଥରେ ଆପଣଙ୍କ ସହ ଶତ୍ରୁତା କଲେ, ଆପଣଙ୍କୁ ଗାଳି ଦେଲେ । ଭଗବାନ ! ତାଙ୍କର କଦାପି ଦୁର୍ଗତି ନ ହେଉ । ତାଙ୍କ ପାଇଁ ମୁଁ କ୍ଷମା ମାଗୁଛି ।

**ତସ୍ମାତ୍ ପିତା ମେ ପୂୟେତ୍ ଦୁରନ୍ତାଦ୍ ଦୁସ୍ତରାଦଘାତ୍ ।**
**ପୂତସ୍ତେଽପାଙ୍ଗସଂଦୃଷ୍ଟସ୍ତଦା କୃପଣବତ୍ସଳ ॥ (୭.୧୦.୧୭)**

ଦେଖିଲେ ! ପ୍ରହ୍ଲାଦଙ୍କର ଗୋଟିଏ - ଗୋଟିଏ ଗୁଣର କେତେ ବର୍ଣ୍ଣନା କରିବା ? ଭଗବାନ କହିଲେ , "ଆରେ ପ୍ରହ୍ଲାଦ, ତୁମ ପରି ପୁତ୍ର ଯାହାର ଥିବ, ତାର ସଦ୍‌ଗତିରେ କଣ ଆଉ ଶଙ୍କା ଅଛି ? ତୁମେ ତ ତୁମର ଏକୋଇଶି ପୁରୁଷକୁ ପବିତ୍ର କରିଦେଲ । ତୁମେ ଗୋଟିଏ ହିରଣ୍ୟକଶିପୁ କଥା କଣ କହୁଛ ? ଯାହାର ପ୍ରହ୍ଲାଦ ପରି ପୁତ୍ର , ତାର ତ ଦୁର୍ଗତିର ପ୍ରଶ୍ନ ହିଁ ନାହିଁ ।" ନିଜ ପିତାଙ୍କର ଦୁର୍ଗତି ହେବ ନାହିଁ , ଏହା ଶୁଣି ପ୍ରହ୍ଲାଦ ଅତ୍ୟନ୍ତ ପ୍ରସନ୍ନ ହେଲେ ।

ତାପରେ ବ୍ରହ୍ମା ଭଗବାନଙ୍କୁ କହିଲେ ଯେ, "ଭଗବନ୍ ! ମୁଁ ହିରଣ୍ୟକଶିପୁକୁ ଯେଉଁ ବର ଦେଇଥିଲି, ତାହା ଅତ୍ୟନ୍ତ ଭୟଙ୍କର ସିଦ୍ଧ ହେଲା, ଆପଣ ତାକୁ ବଧ କରି ସମସ୍ତଙ୍କୁ ପ୍ରସନ୍ନ କରି ଦେଲେ । ବହୁତ ଭଲ ହେଲା" । ଭଗବାନ ବ୍ରହ୍ମାଙ୍କ ଉପରେ ଟିକିଏ ରାଗିଯାଇଥିଲେ । ସେ ବ୍ରହ୍ମାଙ୍କୁ କହିଲେ, "ଦୁଷ୍ଟ ଲୋକମାନଙ୍କୁ ଏପରି ବର ଦିଅନ୍ତୁ ନାହିଁ ।"

**ମୈବଂ ବରୋଽସୁରାଣାଂ ତେ ପ୍ରଦେୟଃ ପଦ୍ମସଂଭବ ।**
**ବରଃ କ୍ରୂରନିସର୍ଗାଣାମହୀନାମମୃତଂ ଯଥା ॥ (୭.୧୦.୩୦)**

"ଦୁଷ୍ଟ ଲୋକମାନଙ୍କୁ ଏପରି ବର ଦେବା ବିଷାକ୍ତ ସାପକୁ କ୍ଷୀର ପିଏଇବା ସହ ସମାନ । ମୋର ପିଲାଟାକୁ କେତେ କଷ୍ଟ ହେଲା ଆପଣ ଜାଣନ୍ତି କି ? ବାସ୍ , ବର ଦେଇଦେଲେ ।" ବ୍ରହ୍ମା କେତେ ଲୋକଙ୍କୁ ଏମିତି ବର ଦେଇଥିବେ ଯେଉଁଠି ଶେଷରେ ଭଗବାନଙ୍କୁ ହିଁ ଆସି ସମସ୍ୟାକୁ ଦୂର କରିବାକୁ ପଡିଥିବ । କିନ୍ତୁ ଆଉ କେଉଁଠି ଭଗବାନ

ତାଙ୍କୁ ଗାଳି ଦେଇ ନାହାନ୍ତି । କେବଳ ଏଇଠି ଗାଳି ଦେଇଛନ୍ତି । କାହିଁକି ? କାରଣ ପ୍ରହ୍ଲାଦ ପରି ପିଲାକୁ ବହୁତ କଷ୍ଟ ସହିବାକୁ ପଡିଲା ।

ତାପରେ ସମସ୍ତେ ଭଗବାନଙ୍କର ସ୍ତୁତି କଲେ ଏବଂ ଶେଷରେ ଭଗବାନ ସେଠାରୁ ଅନ୍ତର୍ଧାନ ହୋଇଗଲେ । ଭଗବାନ ନିଜେ ପ୍ରହ୍ଲାଦଙ୍କର ରାଜ୍ୟାଭିଷେକ କରିଦେଇଥିଲେ, ତେଣୁ ଆଉ କାହାକୁ କିଛି କରିବାକୁ ପଡିଲା ନାହିଁ । ପ୍ରହ୍ଲାଦ ଅସୁରମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ରାଜା ଥିଲେ । ଭଗବାନ ତାଙ୍କୁ ଏହି ବରଦାନ ମଧ୍ୟ ଦେଇଥିଲେ ଯେ ଭବିଷ୍ୟତରେ ମୁଁ ତୁମ କୂଳର ଲୋକମାନଙ୍କୁ କେବେହେଲେ ମାରିବିନି । ପ୍ରହ୍ଲାଦଙ୍କ ଭକ୍ତି, ହିରଣ୍ୟକଶିପୁର ବଧ ଏବଂ ନୃସିଂହ ଭଗବାନଙ୍କ ପ୍ରାକଟ୍ୟ ସହ ସପ୍ତମ ସ୍କନ୍ଧର ଦଶମ ଅଧ୍ୟାୟ ପୂର୍ଣ୍ଣ ହେଲା ।

ଏହି ସ୍କନ୍ଧରେ ଏପର୍ଯ୍ୟନ୍ତ ଆମେ ଦେଖିଲେ ଯେ ଭଗବାନଙ୍କର କୃପା ସମସ୍ତଙ୍କ ଉପରେ ହୁଏ, କିନ୍ତୁ ସମସ୍ତଙ୍କ ଜୀବନରେ ତା'ର ପ୍ରଭାବ ସମାନ ଭାବରେ ଦେଖା ମଧ୍ୟ ଯାଏ ନାହିଁ । କାହାରି-କାହାରି ଜୀବନରେ ଦୁଃଖ ହିଁ ଦୁଃଖ କାହିଁକି ଦେଖାଯାଏ ? ଏହାର ଉତ୍ତର ହେଲା ଜୀବମାନଙ୍କର କର୍ମବାସନା । ଏହି କର୍ମବାସନା ତିନିପ୍ରକାରର ହୋଇଥାଏ, ଦୈବୀ, ମାନବୀୟ ଏବଂ ଆସୁରୀ । ଆସୁରୀ ବାସନାର ସ୍ୱରୂପ ଆମେ ହିରଣ୍ୟକଶିପୁ ର ଜୀବନ ଦେଖିଲେ। ପ୍ରଥମେ ହେଲା - ଦେହାତ୍ମଭାବ - 'ମୁଁ ଦେହ ଅଟେ' ଏହି ଭାବ, ତାପରେ ସେହି ଭାବଯୋଗୁଁ ଅନେକ ପ୍ରକାରର ଆସୁରୀ ଭାବ ଉତ୍ପନ୍ନ ହେଉଥାଆନ୍ତି । ଏହାର ଠିକ୍ ବିପରୀତ ହେଲା ପ୍ରହ୍ଲାଦଙ୍କ ଜୀବନ । ତାଙ୍କ ବିଷୟରେ ଯେତେ କୁହାଯିବ କମ ଅଟେ । ପ୍ରହ୍ଲାଦଙ୍କ ସଂସ୍କାର ଥିଲା ଦୈବୀ । ଏଠି ଦୁଇପ୍ରକାରର ବାସନାର ବର୍ଣ୍ଣନ ହେଇସାରିଛି । ଏବେ ଆଗକୁ ମାନବୀୟ ବାସନାର ବର୍ଣ୍ଣନା କରାଯାଇଛି ।

ଯୁଧିଷ୍ଠିର ନାରଦଙ୍କୁ ଯେଉଁପରି ପ୍ରଶ୍ନ ପଚାରିଥିଲେ, ଠିକ୍ ସେହିପରି ରାଜା ପରୀକ୍ଷିତ ଶୁକଦେବଙ୍କ ସାମନାରେ ପ୍ରଶ୍ନର ସୂଚୀ ରଖି ଦେଇଥିଲେ । ଯେଉଁଥିରେ ସେ ମନୁଷ୍ୟର ସାମାନ୍ୟ ଧର୍ମ, ବିଶେଷ ଧର୍ମ, ବର୍ଣ୍ଣାଶ୍ରମ ଧର୍ମ ଆଦି ବିଷୟରେ ମଧ୍ୟ ପ୍ରଶ୍ନ ପଚାରିଥିଲେ। କିନ୍ତୁ ବିଦୁର ତ ସମସ୍ତ ପ୍ରଶ୍ନଗୁଡିକର ଉତ୍ତର ନ ଶୁଣି ଚାଲିଗଲେ । କାରଣ ନା ତ ତାଙ୍କ ମନରେ ସେ ସବୁ ଜାଣିବା ପାଇଁ ଜିଜ୍ଞାସା ଥିଲା, ନା ଆବଶ୍ୟକତା । ତାଙ୍କ ମନ ଭଗବତ୍ ପ୍ରେମରେ ପୁରି ଯାଇଥିଲା ତେଣୁ ସେ ସେଠାରୁ ଚାଲିଗଲେ । ତାଙ୍କ ପ୍ରଶ୍ନ ତଥାପି ରହିଗଲା। ତେଣୁ ଏବେ ଦ୍ୱିତୀୟ ପ୍ରସଂଗ ଦ୍ୱାରା ଆମକୁ ସେହି ପ୍ରଶ୍ନର ଉତ୍ତର ଦିଆଯାଇଛି । ଯୁଧିଷ୍ଠିର ପଚାରିଲେ ଯେ -

**ଭଗବଞ୍ଛ୍ରୋତୁମିଚ୍ଛାମି ନୃଣାଂ ଧର୍ମଂ ସନାତନମ୍ ॥ (୭.୧୧.୨)**

ମନୁଷ୍ୟମାନଙ୍କର ସାଧାରଣ ଧର୍ମ କଣ? ବିଶେଷ ଧର୍ମ କଣ ? ନାରଦ ସର୍ବ ପ୍ରଥମେ କହୁଛନ୍ତି ଯେ ଦେଖନ୍ତୁ, ସବୁ ଧର୍ମର ମୂଳ ହେଉଛନ୍ତି ଭଗବାନ ସ୍ୱୟଂ । ଅନ୍ୟ ଶାସ୍ତ୍ରଗୁଡ଼ିକରେ ସ୍ମୃତିକାରମାନେ କହିଛନ୍ତି ଯେ **'ବେଦୋଽଖିଳଂ ଧର୍ମମୂଳଂ'**, ବେଦ ହେଲେ ଧର୍ମର ମୂଳ । କିନ୍ତୁ ଭଗବାନ କହୁଛନ୍ତି ଯେ ଧର୍ମର ମୂଳ ତ ମୁଁ ସ୍ୱୟଂ । ଯେହେତୁ ବେଦଗୁଡ଼ିକ ଭଗବାନଙ୍କର ନିଃଶ୍ୱାସ ତେଣୁ ପ୍ରକୃତରେ ସ୍ୱୟଂ ବେଦର ମୂଳ ମଧ୍ୟ ଭଗବାନ ହିଁ ଅଟନ୍ତି, ତେଣୁ ଭଗବାନ ଧର୍ମର ମଧ୍ୟ ମୂଳ ଅଟନ୍ତି । ଆମେ ଯମଦୂତମାନଙ୍କର ସମ୍ବାଦ ଦେଖିଲେ, ପୁଣି ଯମରାଜଙ୍କର ସମ୍ବାଦ ମଧ୍ୟ ଦେଖିଲେ । ଯମଦୂତ ମାନେ କହିଲେ ଯେ ବେଦର ଜ୍ଞାନ ହିଁ ଧର୍ମ । କିନ୍ତୁ ଯମରାଜ କହିଲେ ଯେ - ଯାହା ଭଗବାନଙ୍କ ଦ୍ୱାରା ପ୍ରଣୀତ, ତାହା ହିଁ ଧର୍ମ । **'ଧର୍ମମୂଳଂ ହି ଭଗବାନ୍‌ସର୍ବବେଦୋମୟୋ ହରିଃ'** (୭.୧୧.୭) ଯେକୌଣସି ବ୍ୟକ୍ତି କହିପାରିବ ଯେ - ନା, ନା ବେଦ ହିଁ ଧର୍ମର ମୂଳ । କିନ୍ତୁ ଗୀତାରେ ମଧ୍ୟ ସ୍ୱୟଂ ଭଗବାନ କହିଛନ୍ତି ଯେ **'ବେଦାନ୍ତକୃଦ୍ୱେଦବିଦେବ ଚାହମ୍' (ଭ.ଗୀତା ୧୫.୧.୫)** ମୁଁ ହିଁ ବେଦମାନଙ୍କୁ ପ୍ରକଟ କରେ, ବେଦମାନଙ୍କ ଦ୍ୱାରା ଜାଣିବା ଯୋଗ୍ୟ ମୁଁ ହିଁ ଅଟେ ଏବଂ ବେଦମାନଙ୍କୁ ଜାଣିବା ବାଲା ମଧ୍ୟ ମୁଁ ହିଁ ଅଟେ । ଏଠାରେ କେବଳ ଅଦ୍ୱୈତ ହିଁ ଅଛି । ବେଦର କଥାକୁ ସ୍ମୃତିକାରମାନେ ସ୍ମୃତିଶାସ୍ତ୍ରରେ କହିଛନ୍ତି ।

## ବର୍ଣ୍ଣାଶ୍ରମ-ଧର୍ମ

ଏବେ 'ବର୍ଣ୍ଣ' ତଥା 'ଆଶ୍ରମ'ର ଚର୍ଚ୍ଚା କରିବା । 'ଆଶ୍ରମ'ର ଅର୍ଥ କଣ ? ପ୍ରତ୍ୟେକ ବ୍ୟକ୍ତି ଜୀବନରେ ଅଲଗା-ଅଲଗା ଅବସ୍ଥାଗୁଡ଼ିକ ଦେଇ ଗତି କରନ୍ତି । ଯେମିତି, ସର୍ବ ପ୍ରଥମେ ବିଦ୍ୟାର୍ଥି ଜୀବନ ଆରମ୍ଭ ହୁଏ, ତାକୁ ବ୍ରହ୍ମଚର୍ଯ୍ୟ ଆଶ୍ରମ କୁହନ୍ତି । ମନୁଷ୍ୟ ଜୀବନର ଏହା ପ୍ରଥମ ଅବସ୍ଥା । ବ୍ରହ୍ମଚର୍ଯ୍ୟ ଆଶ୍ରମରେ ଶିକ୍ଷା ପ୍ରାପ୍ତ କରି ସାରିବା ପରେ ବ୍ୟକ୍ତି ଗୃହସ୍ଥାଶ୍ରମରେ ପ୍ରବେଶ କରେ । ସେତେବେଳେ ତାର ବୈବାହିକ ଜୀବନ ଆରମ୍ଭ ହୁଏ । ଏହା ତା ଜୀବନର ଦ୍ୱିତୀୟ ଅବସ୍ଥା । ଏଥିରେ ଜୀବନର କର୍ତ୍ତବ୍ୟ ଗୁଡ଼ିକର ନିର୍ବାହ କରି ସାରି ତାପରେ ଆତ୍ମ-କଲ୍ୟାଣର ମାର୍ଗରେ ଚାଲିବା ଉଚିତ୍ । ଅର୍ଥାତ୍ କର୍ମମାର୍ଗରୁ ନିବୃତ୍ତ ହେଇସାରି ଜ୍ଞାନ ମାର୍ଗରେ ଚାଲିବା ଆବଶ୍ୟକ ।

ବ୍ରହ୍ମଚର୍ଯ୍ୟ ଆଶ୍ରମ ହେଲା - ବିଦ୍ୟାର୍ଥି ଜୀବନ । ତା ପୂର୍ବରୁ ପ୍ରବୃତ୍ତି-ନିବୃତ୍ତି ଉଭୟଙ୍କୁ ବୁଝିନେବା ଆବଶ୍ୟକ ଅଟେ । ତାପରେ ନିଜ ସଂସ୍କାରର ପ୍ରବଳତା ଅନୁସାରେ

କର୍ମ ମାର୍ଗରେ ବା ଜ୍ଞାନ ମାର୍ଗରେ ପ୍ରବୃତ୍ତ ହେବା ଉଚିତ୍ । ଅର୍ଥାତ୍ ପ୍ରଥମେ ପ୍ରବୃତ୍ତି-ନିବୃତ୍ତିର ଜ୍ଞାନ, ତାପରେ ଗୃହସ୍ଥାଶ୍ରମରେ-କର୍ମ ମାର୍ଗରେ ପ୍ରବୃତ୍ତି, ପୁଣି ବାନପ୍ରସ୍ଥ ଆଶ୍ରମରେ ନିବୃତ୍ତି ମାର୍ଗର ପ୍ରସ୍ତୁତି ଏବଂ ଅନ୍ତତଃ ସନ୍ନ୍ୟାସରେ ନିବୃତ୍ତି ହେବା ତ ଅନିବାର୍ଯ୍ୟ ଅଟେ ।

ପ୍ରତ୍ୟେକ ଆଶ୍ରମର କର୍ତ୍ତବ୍ୟ ମଧ୍ୟ ବିଶେଷ ପ୍ରକାରର ହୁଏ । ଯେମିତି, ବ୍ରହ୍ମଚର୍ଯ୍ୟ ଆଶ୍ରମ ବା ବିଦ୍ୟାର୍ଥି ଜୀବନର କର୍ତ୍ତବ୍ୟ ହେଲା ବିଦ୍ୟାଧ୍ୟୟନ ଏବଂ ଗୁରୁସେବା । ତାପରେ ଗୃହସ୍ଥଜୀବନରେ ପ୍ରବେଶ ପାଇଲା ପରେ ସେଠାରେ ଅନ୍ୟ ପ୍ରକାରର କର୍ତ୍ତବ୍ୟର ନିର୍ବାହ କରିବାକୁ ପଡ଼େ । ଏଥିରେ ନିଜର ସମସ୍ତ କରଣୀୟ କର୍ମଗୁଡିକୁ ଭଗବାନଙ୍କୁ ସମର୍ପିତ କରିବାର ନିୟମ ଅଛି । ତାପରେ ଯେତେବେଳେ ସେ ବାନପ୍ରସ୍ଥ ଆଶ୍ରମରେ ପ୍ରବେଶ କରିବ, ତାକୁ ତପ, ତ୍ୟାଗ ଆଦିର ଅଭ୍ୟାସ କରିବାକୁ ପଡ଼ିବ । ଏହିପରି ପ୍ରତ୍ୟେକ ଆଶ୍ରମର କର୍ତ୍ତବ୍ୟ ବିଶିଷ୍ଟ ହୋଇଥାଆନ୍ତି, ଭିନ୍ନ-ଭିନ୍ନ ହେଇଥାଆନ୍ତି । କିନ୍ତୁ ବ୍ୟକ୍ତି ବ୍ରହ୍ମଚର୍ଯ୍ୟ ଆଶ୍ରମରେ ଥାଉ କି ଗୃହସ୍ଥାଶ୍ରମରେ, ବାନପ୍ରସ୍ଥ ଆଶ୍ରମରେ ଥାଉ କି ସନ୍ନ୍ୟାସ ଆଶ୍ରମରେ ସମସ୍ତ ଆଶ୍ରମରେ ତାକୁ ସଦ୍‌ଗୁଣ ଗୁଡିକର ପାଳନ କରିବାକୁ ହିଁ ପଡିଥାଏ ।

ଦେଖନ୍ତୁ, ଆଶ୍ରମ ଅନୁସାରେ କର୍ତ୍ତବ୍ୟ ଅଲଗା-ଅଲଗା ହେଇପାରିବେ । କିନ୍ତୁ ସଦ୍‌ଗୁଣ ଅଲଗା-ଅଲଗା ହୁଅନ୍ତି ନାହିଁ । ଯଥା : ଯେତେବେଳେ କୁହାଯାଏ ଯେ ବ୍ରହ୍ମଚର୍ଯ୍ୟ ଅବସ୍ଥାରେ ଅତ୍ୟନ୍ତ ସଙ୍କୋଚତାର ସହ, ପ୍ରାମାଣିକତା ପୂର୍ବକ ଜ୍ଞାନ ପ୍ରାପ୍ତ କରିବା ଦରକାର ତ କଣ ଗୃହସ୍ଥାଶ୍ରମରେ ବେଇମାନୀ କଲେ ଚଳିବ? ବାଲ୍ୟାବସ୍ଥାରେ ନିୟମପୂର୍ବକ ରହିବାର ଅର୍ଥ କଣ ବଡ଼ ହେଇ ଆମେ ନିୟମ ଗୁଡିକର ଉଲ୍ଲଂଘନ କରିପାରିବା ? ଜଗତରେ ତ ଏଇଆ ହିଁ ହୁଏ । ବାପା ପାନ ଖାଉଥିବେ ଆଉ ଛୋଟ ପିଲାକୁ କହିବେ, "ପିଲେ ପାନ ଖାଆନ୍ତିନି ।" ମାନେ ? ବଡ଼ ଖାଇପାରିବେ, ଏଇଆ ଅର୍ଥ ହେଲା ତ ? ଯଦି ପିଲାଙ୍କ ପାଇଁ ପାନ ଭଲ ନୁହଁ ତେବେ ବଡ ମାନଙ୍କ ପାଇଁ କେମିତି ଭଲ ହେଇପାରିବ ? ଛୋଟ ପିଲାମାନଙ୍କୁ ସିଗାରେଟ ପିଇବା ଦେଖି ସମସ୍ତେ ଆଶ୍ଚର୍ଯ୍ୟ ହୁଅନ୍ତି । ଡରି ବି ଯାଆନ୍ତି । କିନ୍ତୁ ବଡ଼ ମାନେ ପିଉଥିଲେ କିଛି କହନ୍ତିନି । ବଡ଼ ହୋଇ ସିଗାରେଟ ଟାଣିଲେ କଣ କଲିଜା ବେଶୀ ଶକ୍ତିଶାଳୀ ହେଇଯାଏ ? କଣ କେବଳ ବଡମାନେ ସିଗାରେଟ ପିଇ ପାରିବେ ? ଦେଖିଲେ ତ ଆମ ବୁଦ୍ଧି କେମିତି ହେଇଗଲାଣି ।

ମୁଁ ଥରେ ଗୋଟିଏ ବିଚିତ୍ର କଥା ପଢ଼ିଥିଲି । ପାଞ୍ଚବର୍ଷର ଗୋଟିଏ ଛୋଟ ପିଲା ହ୍ୱିସ୍କି ପିଉଥିଲା ଆଉ ସିଗାରେଟ୍ ଟାଣୁଥିଲା । ଜଣେ ବଡ଼ଲୋକ ଆସିଲେ ଆଉ ତାକୁ ଦେଖି ଚମକି ପଡିଲେ । ସେ ପଚାରିଲେ, "ତୁମେ ସ୍କୁଲ ଯାଇନ ?" ସେ କହିଲା, "ସ୍କୁଲ ? ମୁଁ ତ କେବଳ ପାଞ୍ଚବର୍ଷର ପିଲାଟେ ।" ଆପଣ କଥା ବୁଝିପାରିଲେ ତ ? ମୁଁ

ତ ପାଞ୍ଚବର୍ଷର ପିଲାଟେ । ସ୍କୁଲ କଣ ଯିବି ? କିନ୍ତୁ ହ୍ୱିସ୍କି ବା ସିଗାରେଟ୍ ପିଇଲା ବେଳକୁ ତ ସେ ବୟସ ଜାଣୁନି ।

ଏଠାରେ ବୁଝିବାକୁ ହେବ ଯେ ସମୟ ତଥା ଅବସ୍ଥା ଅନୁସାରେ କର୍ତ୍ତବ୍ୟରେ ତ ପରିବର୍ତ୍ତନ ହେଉଥାଏ କିନ୍ତୁ ସଦ୍‌ଗୁଣ ପରିବର୍ତ୍ତିତ ହୁଏ ନାହିଁ । ଜୀବନର ଯେ କୌଣସି ଅବସ୍ଥାରେ ସଦ୍‌ଗୁଣ ସର୍ବଦା ସଦ୍‌ଗୁଣ ହୋଇକରି ରହିଥାଏ । ଗୃହସ୍ଥାଶ୍ରମରେ ବେଇମାନୀ ଚଳିପାରିବ କି ? ଏମିତି ହୁଏ ନାହିଁ । କିନ୍ତୁ କାହିଁକି କେଜାଣି ଆମ ମନ ଏଇମିତି ହେଇଛି । ତେବେ ଇଏ ହେଲା ଆଶ୍ରମ ଧର୍ମ ।

ଗୋଟିଏ 'ବର୍ଣ୍ଣ' ଧର୍ମ ମଧ୍ୟ ଅଛି । ପ୍ରତ୍ୟେକ ମନୁଷ୍ୟ ନିଜ ଜନ୍ମ ସହିତ ପୂର୍ବ-ପୂର୍ବ ଜନ୍ମର ଏକ ବିଶେଷ ପ୍ରକାରର ସଂସ୍କାର ନେଇ କରି ଆସିଥାଏ । ସେହି ସଂସ୍କାର ଅନୁସାରେ ତା'ର ସ୍ୱଭାବ ଏବଂ ବର୍ଣ୍ଣ ନିଶ୍ଚିତ ହୁଏ, ଯାହାକୁ ଶାସ୍ତ୍ରର ଭାଷାରେ ବ୍ରାହ୍ମଣ, କ୍ଷତ୍ରୀୟ, ବୈଶ୍ୟ ଏବଂ ଶୁଦ୍ର କୁହାଯାଏ । ବର୍ତ୍ତମାନ ତ ଏଇ ଶବ୍ଦ ଶୁଣିଲାମାତ୍ରେ ଲୋକେ ଡରି ଯାଉଛନ୍ତି । କୌଣସି-କୌଣସି ଶବ୍ଦ ପ୍ରତି ଆମର ଦ୍ୱେଷ ମଧ୍ୟ ହେଉଛି । ଲୋକମାନେ ସେଥିପାଇଁ କଳି-କଜିଆ ମଧ୍ୟ କରୁଛନ୍ତି । ତଥାପି, ଏହା ହିଁ ବାସ୍ତବିକତା ଯେ ପିଲା ନିଜର ପୂର୍ବ-ପୂର୍ବ ଜନ୍ମମାନଙ୍କର ସଂସ୍କାର ନେଇ କରି ଆସିଥାଏ । ଯେପରି କାହାର ଅଧ୍ୟୟନର ସଂସ୍କାର ଥାଏ ତ କାହାର ମନ ଗବେଷଣା କାର୍ଯ୍ୟରେ ଲାଗେ, କାହାର ସାହିତ୍ୟରେ, କାହାର ନାଟକରେ, କାହାର ମନ ଦର୍ଶନ ଶାସ୍ତ୍ରରେ ଲାଗେ ।

କାହାର ମନ ଗ୍ରନ୍ଥ-ପାଠନରେ, ଗ୍ରନ୍ଥ-ଲେଖନରେ ଏବଂ ଗ୍ରନ୍ଥ-ପଠନରେ ଲାଗି ଯାଏ । ଏଗୁଡିକ କଣ ? ଏହାକୁ ବ୍ରାହ୍ମଣ-ସଂସ୍କାର କୁହନ୍ତି । କାହା ଭିତରେ ନେତୃତ୍ୱର ସଂସ୍କାର ଥାଏ । ପିଲାଦିନରୁ ସେ ସ୍କୁଲରେ ମନିଟର୍ ହୁଏ । ପରେ ଯେତେବେଳେ କୌଣସି ବଡ କମ୍ପାନୀକୁ କାମ କରିବାକୁ ଯାଏ, ସେଠି ୟୁନିୟନ ଲିଡର୍ ହୁଏ । ତା'ର ସ୍ୱଭାବ ହେଲା ନେତୃତ୍ୱ ନେବା, ସେ କାହାରିକୁ ଡରେନି । ଏହା ତାର ପୂର୍ବ ସଂସ୍କାର । ଆଉ ତୃତୀୟ ପ୍ରକାର ହେଲା ଯେ ସେ ପିଲା ଯୁଆଡେ ଗଲେ ମଧ୍ୟ ତାକୁ ବେପାର ହିଁ ଦେଖାଯିବ । ପ୍ରତ୍ୟେକ ସ୍ଥାନରେ ତାର ବ୍ୟବସାୟର ଭାବନା ରହିବ । ହିମାଳୟରେ ବି ଯଦି ତାକୁ ଗରମ ପାଣିର କୌଣସି ସ୍ରୋତ ଦେଖାଯିବ ତାହାଲେ ସେ କହିବ ଯେ ଏଠି ଚ'ଦୋକାନ ଖୋଲିବା ଉଚିତ୍ କାରଣ ଗରମ ପାଣି ତ ପ୍ରସ୍ତୁତ ହେଇକରି ଅଛି । କିନ୍ତୁ ବ୍ରାହ୍ମଣ ମନରେ ଏପରି ବିଚାର ଆସିବ ନାହିଁ । ଏହା କଣ ? ଏହା ସ୍ୱଭାବର କଥା - ବୈଶ୍ୟ ବୃତ୍ତି । ଅନ୍ୟ ଏକ ବୃତ୍ତି ହେଲା ଶୁଦ୍ର ବୃତ୍ତି । ଯେପରି କେହି କେହି କୁହନ୍ତି - ମୋତେ ଏତେ ଭାବିବା ପାଇଁ କୁହନି । ଖାଲି କଣ କରିବି, କାମ କୁହ, ମୁଁ କରିଦେବି ।

ଏହା ହିଁ ଶୁଦ୍ର ବୃତ୍ତି । ଏହିପରି ବୃତ୍ତିର ବ୍ୟକ୍ତି ନିଜ ବୁଦ୍ଧି ଖର୍ଚ୍ଚ କରିବାକୁ ଚାହେଁ ନାହିଁ । ନା ସେ ବେଶୀ ପଇସା ରୋଜଗାର କରିବା ପାଇଁ , ନେତୃତ୍ୱ ନେବା ପାଇଁ , ବା ବେଶୀ ପଢାପଢି କରିବା ପାଇଁ ଚାହେଁ । କିନ୍ତୁ ତାକୁ ଯାହା କାମ କରିବାକୁ କହିବ ସେ କରି ଦେବ । ସେଥିରେ ମଧ୍ୟ ନିଜର ବୁଦ୍ଧିକୁ ଟିକିଏ ବି ଲଗାଇବ ନାହିଁ । ଏହା ହିଁ ଶୁଦ୍ର ବୃତ୍ତି।

## ସାମାନ୍ୟ ଧର୍ମ

ଦେଖନ୍ତୁ , ଯାହାର ଯେମିତି ସ୍ୱଭାବ, ଯାହାର ଯେମିତି ସଂସ୍କାର ତାହାର ସେମିତି ଧର୍ମ । ଅର୍ଥାତ୍ ଆଶ୍ରମ ଅନୁସାରେ ଧର୍ମ ହୁଏ ଏବଂ ବର୍ଣ୍ଣ ଅନୁସାରେ ମଧ୍ୟ ଧର୍ମ ହୁଏ । ଏହା ବ୍ୟତୀତ ଗୋଟିଏ ସାମାନ୍ୟ ଧର୍ମ ମଧ୍ୟ ଅଛି - ସଦ୍‌ଗୁଣର । ଏହା ସମସ୍ତଙ୍କ ପାଇଁ ସମାନ - ସେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ବା ଶୁଦ୍ର, ଯେ କେହି ବି ହେଉ । ବ୍ରାହ୍ମଣ ସଚ୍ଚୋଟତାର ସହ ପଢିବ ଏବଂ ପଢ଼େଇବ, ତାହାହେଲେ କଣ ବୈଶ୍ୟ ବେଇମାନୀ ଦ୍ୱାରା ବ୍ୟବସାୟ କରିବ? କ୍ଷତ୍ରିୟ ବା ରାଜନେତା କଣ ବେଇମାନ ହୋଇ କାମ କରିବେ ? ନା, ସଦ୍‌ଗୁଣ ସମସ୍ତଙ୍କ ପାଇଁ ସମାନ, ସେ ଯେକୌଣସି ଆଶ୍ରମରେ ଥାଉ ବା ଯେକୌଣସି ବର୍ଣ୍ଣର ହେଉ, ସ୍ତ୍ରୀ ହେଉ ବା ପୁରୁଷ ଯେ କେହି ବି ହେଉ, ଯେକୌଣସି ବି ଜାତି ବା ଧର୍ମର ହେଉ, ଯେକୌଣସି ଦେଶର ହେଉ ବା କାଳର ହେଉ । ତେଣୁ ଯେତେବେଳେ ଯୁଧିଷ୍ଠିର ପଚାରିଲେ ଯେ, "ଧର୍ମ କଣ" ସେତେବେଳେ ନାରଦ ମୁନି ପ୍ରଥମେ କହିଲେ ସାମାନ୍ୟ ଧର୍ମ କଣ । ମନୁଷ୍ୟ ଯେଉଁ ଅବସ୍ଥାରେ ଥିଲେ ମଧ୍ୟ, ତାପାଖରେ ଏହି ସଦ୍‌ଗୁଣଗୁଡିକ ଅବଶ୍ୟ ରହିବା ଦରକାର । ଏଗୁଡିକ ଧର୍ମର ଆଧାର ଅଟନ୍ତି । ସେଗୁଡିକ କଣ ?

ସତ୍ୟ - ଯାହାକୁ ଆମେ ପ୍ରମାଣ ଦ୍ୱାରା ଜାଣୁ , ତାକୁ ସେହିପରି ପ୍ରକଟ କରିବା ।

ଦୟା - ସମସ୍ତ ପ୍ରାଣୀମାନଙ୍କ ଉପରେ ଦୟା ଅର୍ଥାତ୍ ଚିତ୍ତ ଦ୍ରବିତ ହେବା ।

ତପ - ନିଜ ଉପରେ ସଂଯମ ରଖିବା ।

ଶୌଚ - ଶରୀର ତଥା ମନର ଶୁଦ୍ଧି ।

ତିତିକ୍ଷା - ସୁଖ-ଦୁଃଖକୁ ସହିବାର ଶକ୍ତି ।

ଦମ - ଇନ୍ଦ୍ରିୟ-ସଂଯମ ।

ସମ - ମନର ସଂଯମ ।

ଅହିଂସା - କାହାକୁ ପୀଡା ନଦେବା ।

ବ୍ରହ୍ମଚର୍ଯ୍ୟ - ବ୍ରହ୍ମଚର୍ଯ୍ୟର ସାଧାରଣ ଅର୍ଥ ହେଲା ମୈଥୁନର ସର୍ବତଃ ତ୍ୟାଗ , କିନ୍ତୁ ପ୍ରକୃତରେ ବ୍ରହ୍ମଚର୍ଯ୍ୟର ଅର୍ଥ ହେଲା - ବ୍ରହ୍ମ ଯିଏ ଜଗତର ସତ୍ୟ ସେହି ସତ୍ୟକୁ ଜାଣିବା ପାଇଁ ଯାହା ବି ବ୍ରତ ଆଦି କରିବାକୁ ପଡିବ , ତାର ପ୍ରସ୍ତୁତି ।

ଆର୍ଜବ - ହୃଦୟର ସରଳତା , କାହା ପ୍ରତି କପଟଭାବନା ନ ରଖିବା ।

ସନ୍ତୋଷ - ମୁଁ ମୋର କର୍ତ୍ତବ୍ୟ କଲି ଏବଂ ତା'ର ଫଳ ସ୍ୱରୂପ ମୋତେ ଯାହା କିଛି ପ୍ରାପ୍ତ ହେଲା , ତାକୁ ହିଁ ସୁଖ ଭାବିବା, ସେଥିରେ ସନ୍ତୁଷ୍ଟ ରହିବା । ମନରେ ସମସ୍ତଙ୍କ ପ୍ରତି ସମଦୃଷ୍ଟି ରଖିବା, ସେବା ଭାବ ରଖିବା , ତ୍ୟାଗ କରିପାରିବାର ଅଭ୍ୟାସ କରିବା, ଇନ୍ଦ୍ରିୟମାନଙ୍କର ଅଧିକ ବର୍ହିମୁଖ ପ୍ରବୃତ୍ତିଠାରୁ ନିଜକୁ ପଛକୁ ଟାଣିନେବା , ମୌନ ରହିବା ଏବଂ ଆତ୍ମନିରୀକ୍ଷଣ କରିବା, ସ୍ୱାଧ୍ୟାୟ କରିବା, ନିଜ ପାଖକୁ ଯେଉଁ ଅନ୍ନ-ବସ୍ତ୍ର ଆଦି ଆସିବ ତାକୁ ଦାନ କରିବା, ମନୁଷ୍ୟମାନଙ୍କ ଭିତରେ ଭଗବତ୍ ଭାବ ରଖିବା, ମନୁଷ୍ୟମାନଙ୍କୁ ସାଧାରଣ ପଶୁ ବୋଲି ନ ଭାବିବା। ଯେତେବେଳେ କୁହାଯାଏ ମନୁଷ୍ୟ ଗୋଟେ ସାମାଜିକ ପ୍ରାଣୀ , ଶୁଣିବାକୁ ଅଦ୍‌ଭୁତ ଲାଗେ। ଆମ ସଂସ୍କୃତି ଅନୁସାରେ ସୃଷ୍ଟିର ପ୍ରତ୍ୟେକ ଅଣୁରେ ଭଗବାନ ନିବାସ କରନ୍ତି ଆଉ ଆମେ ନିଜକୁ ପଶୁ କହି-କହି ପଶୁବତ୍ କରିଦେଉଛୁ । ନା ଏମିତି ହେବା ଉଚିତ୍ ନୁହେଁ। ଭଗବାନଙ୍କ ଶ୍ରବଣ, ଭଜନ, କୀର୍ତ୍ତନ, ସ୍ମରଣ, ମହତ୍ ଲୋକଙ୍କ ସେବା କରିବା- ଏଗୁଡିକ ସବୁ ବର୍ଣ୍ଣ , ଆଶ୍ରମ ଅଥବା ଆୟୁର ଲୋକଙ୍କ ପାଇଁ, ସବୁ ଦେଶରେ, ସବୁ କାଳରେ, ସମାନ ଧର୍ମ ଅଟନ୍ତି ।

**ନୃଣାମୟଂ ପରୋ ଧର୍ମଃ ସର୍ବେଷାଂ ସମୁଦାହୃତଃ ।(୭.୧୧.୧୨)**

ଏହା ପରେ ବିଶେଷ ଭାବେ ବ୍ରାହ୍ମଣ, କ୍ଷତ୍ରିୟ,ବୈଶ୍ୟ ଏବଂ ଶୁଦ୍ରଙ୍କ କର୍ତ୍ତବ୍ୟ ବିଷୟରେ କୁହାଯାଇଛି । ବ୍ରାହ୍ମଣ ବିଚାରବନ୍ତ ହୋଇଥାଏ, ତେଣୁ ସମାଜକୁ କେଉଁ ଦିଶାରେ ନେବାକୁ ପଡ଼ିବ, ସମାଜ ପାଇଁ କେଉଁ ଆଦର୍ଶ ସ୍ଥାପନ କରିବାକୁ ପଡିବ, ଏହାର ବିଚାର, ଚିନ୍ତନ ଆଦି କରିବା ତାର କର୍ତ୍ତବ୍ୟ । କ୍ଷତ୍ରିୟର କର୍ତ୍ତବ୍ୟ ହେଲା ଯେ ସେହି ବିଚାରକୁ ବୁଝି, ସେହି ଦିଗରେ ସମ୍ପୂର୍ଣ୍ଣ ସମାଜକୁ ନେଇଯିବା ଏବଂ ବୈଶ୍ୟର କର୍ତ୍ତବ୍ୟ ହେଲା, ସେହି କାର୍ଯ୍ୟ ପାଇଁ ସାଧନ ଯୋଗାଡ କରିବା, ଧନରୂପରେ ବା ଅନ୍ୟ ଯେକୌଣସି ଭାବରେ ନିଜର ଯୋଗଦାନ କରିବା । ଏବଂ ଯିଏ ବିଚାର କରିପାରିବ ନାହିଁ, ନେତୃତ୍ୱ ନେଇ ପାରିବ ନାହିଁ, ସାଧନ ମଧ୍ୟ ଯୋଗାଡ କରିପାରିବ ନାହିଁ, ସେ ଅତିକମ୍‌ରେ ସେବା ଭାବ ଦ୍ୱାରା କାମ କରିବ, ଏହା ହିଁ ବିଶେଷ ଧର୍ମ ।

## ସ୍ତ୍ରୀ ଧର୍ମ

ଏହା ପରେ ସ୍ତ୍ରୀ ଧର୍ମରେ କୁହାଯାଇଛି ଯେ କନ୍ୟାରୂପରେ ତାର ଧର୍ମ କଣ ଏବଂ ପତ୍ନୀ ହୋଇସାରିଲା ପରେ ତାର ଧର୍ମ କଣ ? ଏହା ମଧ୍ୟ କୁହାଯାଇଛି ଯେ ତାର ସମ୍ବନ୍ଧ କେବଳ ନିଜର ସ୍ୱାମୀ ସହିତ ନ ଥାଏ ବରଂ ସ୍ୱାମୀଙ୍କର ସମସ୍ତ ସମ୍ବନ୍ଧୀମାନଙ୍କ ସହିତ ମଧ୍ୟ ତାଙ୍କର ବିଶେଷ ସମ୍ବନ୍ଧ ହୋଇଥାଏ । ସମସ୍ତଙ୍କର ସେବା କରିବା ତାର କର୍ତ୍ତବ୍ୟ ଅଟେ ।

**ୟା ପତିଂ ହରିଭାବେନ ଭଜେଚ୍ଛ୍ରୀରିବ ତତ୍ପରା ।**
**ହର୍ୟାତ୍ମନା ହରେର୍ଲୋକେ ପତ୍ୟା ଶ୍ରୀରିବ ମୋଦତେ ॥ (୭.୧୧.୨୯)**

ଯେଉଁ ସ୍ତ୍ରୀ ନିଜ ପତିକୁ ଭଗବାନ ନାରାୟଣ ଭାବି ତାର ସେବା କରେ, ସେ ସ୍ୱୟଂ ମଧ୍ୟ ଲକ୍ଷ୍ମୀଙ୍କ ପରି ଭଗବାନଙ୍କୁ ପ୍ରାପ୍ତ କରେ । ସେ ହରିଲୋକରେ ପତି ସହିତ ଲକ୍ଷ୍ମୀଙ୍କ ପରି ବିରାଜମାନ ହୁଏ । ଏପରି ବର୍ଣ୍ଣନା କରାଯାଇଛି । ପର ଅଧ୍ୟାୟ ଗୁଡିକରେ ଅନ୍ୟ ଆଶ୍ରମଗୁଡିକର ବର୍ଣ୍ଣନା ଅଛି, କିନ୍ତୁ ତା ପୂର୍ବରୁ ଏଠାରେ ନାରଦ ଗୋଟିଏ ବହୁତ ଭଲ କଥା କହିଛନ୍ତି ।

**ବୃତ୍ତ୍ୟା ସ୍ୱଭାବକୃତୟା ବର୍ତ୍ତମାନଃ ସ୍ୱକର୍ମକୃତ୍ ।**
**ହିତ୍ୱା ସ୍ୱଭାବଜଂ କର୍ମ ଶନୈର୍ନିର୍ଗୁଣତାମିୟାତ୍ ॥ (୭.୧୧.୩୨)**

ଏବେ ଦେଖନ୍ତୁ , ଭଗବାନଙ୍କ ନିର୍ଗୁଣ ସ୍ୱରୂପର ପ୍ରାପ୍ତି କିପରି ହୋଇପାରିବ ? ନାରଦ କହୁଛନ୍ତି - ଯେଉଁ ବ୍ୟକ୍ତି ନିଷ୍ଠାପୂର୍ବକ ନିଜ କର୍ତ୍ତବ୍ୟର ପାଳନ କରୁଥାଏ, ସେ ନିଜେ-ନିଜେ ନିର୍ଗୁଣରେ ପହଞ୍ଚିଯାଏ । ଏହା ତ ବହୁତ ବଡ କଥା । **'ବୃତ୍ତ୍ୟା ସ୍ୱଭାବକୃତୟା'** ସ୍ୱଭାବତଃ ଯେଉଁ ବୃତ୍ତି ପ୍ରାପ୍ତ ହୋଇଛି, **'ସ୍ୱକର୍ମକୃତ୍ ହିତ୍ୱା ସ୍ୱଭାବଜଂ କର୍ମ ଶନୈର୍ନିର୍ଗୁଣତାମ୍ ଇୟାତ୍'** ଯାହାର ଯେଉଁ କର୍ତ୍ତବ୍ୟ ନିଶ୍ଚିତ ହୋଇଅଛି, ସେ ଯଦି ତାକୁ କରୁଛି, ତେବେ ସେ ନିଜ କର୍ତ୍ତବ୍ୟ କରୁ କରୁ ଏପରି ସ୍ଥିତିରେ ପହଞ୍ଚିଯାଏ ଯେ କର୍ତ୍ତବ୍ୟ ସ୍ୱତଃ ଛାଡି ହୋଇଯାଏ ।

ଆପଣଙ୍କୁ ବିଶ୍ୱାସ ହେଉନି ତ ଗୋଟିଏ କାମ କରନ୍ତୁ । ଦିନସାରା କାମ କରନ୍ତୁ, କାମ କରୁଥାନ୍ତୁ । ଶେଷକୁ ଏପରି ଏକ ସମୟ ଆସିବ ଯେ ନିଜେ-ନିଜେ ଅର୍ଥାତ୍ ସ୍ୱତଃ ଥକିଯାଇ ଶୋଇପଡିବେ, ଏମିତି ହେବ ନା ନାହିଁ । ଟିକିଏ ହେଲେ ବିଶ୍ରାମ ନନେଇ

ଯଦି କାମ କରିବେ ତେବେ କାମ କରୁ କରୁ ଶୋଇ ପଡ଼ିବେ । ଯଦି ଏହି କଥାକୁ କେହି ବୁଝିପାରିଲେ ତ ସେ ଏହି ରହସ୍ୟକୁ ମଧ୍ୟ ବୁଝିଯିବେ ଯେ ଯଦି ଆମେ ଈଶ୍ୱରାର୍ପଣ ଭାବନାରେ ନିଃସ୍ୱାର୍ଥପର ଭାବରେ ନିଜର କର୍ତ୍ତବ୍ୟ କରୁଥିବା ତେବେ ଆମେ ଶୋଇବାନି, ପରମାତ୍ମା ସ୍ୱରୂପ ପ୍ରତି ଜାଗ୍ରତ ହୋଇଯିବା । ସାମାନ୍ୟ ପ୍ରବୃତ୍ତି (ପରିଶ୍ରମ)ଏବଂ ନିଦ୍ରାର ଦୃଷ୍ଟାନ୍ତ ଦ୍ୱାରା ଆମେ ଦେଖିଲେ ଯେ କିପରି ଆମେ ଅକର୍ମର ଅବସ୍ଥା ପହଞ୍ଚିପାରିବା । ଏହିପରି ନିଷ୍କାମ ଭାବ ଦ୍ୱାରା କର୍ମ କରୁଥିଲେ ଅନାୟାସ ନିର୍ଗୁଣସ୍ୱରୂପ ପର୍ଯ୍ୟନ୍ତ ପହଞ୍ଚିପାରିବା। ଯେଉଁମାନେ ନିଜ କର୍ତ୍ତବ୍ୟର ପାଳନ କରନ୍ତି ନାହିଁ ଏବଂ ସମାଧିରେ ବସିଯିବା ପାଇଁ ଚାହାନ୍ତି, ସେମାନେ କେବେହେଲେ ସମାଧିରେ ବସି ପାରିବେ ନାହିଁ । ଏହି କଥାକୁ ଭଲ ଭାବରେ ବୁଝିବା ଉଚିତ । ଯଦି କେବେ ତାଙ୍କର ସମାଧି ଲାଗିଗଲେ ମଧ୍ୟ ତାହା ଜଡ-ସମାଧି ହିଁ ହେବ । ତାଦ୍ୱାରା ନା କିଛି ବୋଧ ହେବ, ନା ଜ୍ଞାନ ମିଳିବ, ନା ହିଁ ଜାଗୃତି ହେବ । ଶାସ୍ତ୍ରଗୁଡିକରେ ଯେଉଁ ଉପଦେଶ ଦିଆଯାଇଛି ତାହା ଅତ୍ୟନ୍ତ ଶ୍ରେଷ୍ଠ । ତାକୁ ମାନି ସେହି ଅନୁସାରେ ନିଜର କାର୍ଯ୍ୟ କରିବା ଉଚିତ୍ ।

**କର୍ମଣ୍ୟେବ ହି ସଂସିଦ୍ଧିମାସ୍ଥିତା ଜନକାଦୟଃ । (ଭ.ଗୀତା ୩.୨୦)**

ଯେଉଁ ମନୁଷ୍ୟ ନିଷ୍ଠାପୂର୍ବକ ନିଜ କର୍ତ୍ତବ୍ୟଗୁଡିକର ପାଳନ କରେ, ସେ ସ୍ୱାଭାବିକଭାବେ ଅନାୟାସରେ ସାଧନ ମାର୍ଗର ପରସୋପାନକୁ ପ୍ରାପ୍ତ ହୁଏ ।

## ବ୍ରହ୍ମଚର୍ଯ୍ୟାଶ୍ରମ

ବ୍ରହ୍ମଚାରୀ ଧର୍ମରେ କୁହାଯାଇଛି ଯେ ସେ ଗୁରୁକୂଳରେ ରହିବ, ଗୁରୁଙ୍କ ସେବା କରିବ, ଭିକ୍ଷା ମାଗିକରି ଆଣିବ ଏବଂ ଯଦି ଗୁରୁ ଭିକ୍ଷାରୁ କିଛି ଭାଗ ଦେବେ, ତେବେ ଖାଇବ, ଅନ୍ୟଥା ଉପବାସ କରିବ ।

**ଭୁଞ୍ଜୀତ ୟଦ୍ୟନୁଜ୍ଞାତୋ ନୋ ଚେଦୁପବସେତ୍ କ୍ୱଚିତ୍ ॥ (୭.୧୨.୫)**

ନିଜ ଶରୀରର ସୌନ୍ଦର୍ଯ୍ୟ ପ୍ରତି ଦୃଷ୍ଟି ଦେବନାହିଁ, ଦୁଃସଂଗ ତ୍ୟାଗ କରିବ, ଇନ୍ଦ୍ରିୟ ଉପରେ ସଂଯମ ରଖି ଜଗତର ବାସ୍ତବିକ ସ୍ୱରୂପ କଣ, ତାକୁ ବୁଝିବ ଏହି ଜଗତ ମିଥ୍ୟା, କିନ୍ତୁ ମିଥ୍ୟାଭାବି ଯେମିତି ଚାହିଁବ ସେମିତି ବ୍ୟବହାର କରିବ ନାହିଁ ଏବଂ ଯେତେବେଳେ ବ୍ରହ୍ମଚାରୀକୁ ଜ୍ଞାନର ସମ୍ୟକ ପ୍ରାପ୍ତି ହୋଇଯିବ, ସେ ଗୁରୁଙ୍କ ପ୍ରିୟ ଦକ୍ଷିଣା ଦେବ । ତାପରେ ନିଜର ସଂସ୍କାର ଅନୁସାରେ , ଚାହିଁଲେ ବ୍ରହ୍ମଚର୍ଯ୍ୟ ଆଶ୍ରମରେ ରହିବ ବା ଗୁରୁଙ୍କ ଅନୁମତି ନେଇ, ବୈରାଗୀ ହୋଇ ସନ୍ନ୍ୟାସ ଗ୍ରହଣ କରିବ ବା ସେ

ଗୃହସ୍ଥାଶ୍ରମରେ ମଧ୍ୟ ପ୍ରବେଶ କରିପାରିବ, କିନ୍ତୁ ତା ପାଇଁ ମଧ୍ୟ ଗୁରୁଙ୍କ ଅନୁମତି ନେବା ଆବଶ୍ୟକ ଅଟେ ।

**ଦତ୍ତ୍ୱା ବରମନୁଜ୍ଞାତୋ ଗୁରୋଃ କାମଂ ଯଦୀଶ୍ୱରଃ ।**

**ଗୃହଂ ବନଂ ବା ପ୍ରବିଶେତ୍ ପ୍ରବ୍ରଜେତ୍ ତତ୍ର ବା ବସେତ୍॥ (୭.୧୨.୧୪)**

ଜୀବନରେ ପ୍ରଥମେ ଜଗତର ସତ୍ୟକୁ ବୁଝନ୍ତୁ, ଜୀବନର ସମସ୍ତ ଅବସ୍ଥାଗୁଡ଼ିକୁ ବୁଝିବେ, ସାମାନ୍ୟ ଧର୍ମ ଏବଂ ବିଶେଷ ଧର୍ମକୁ ମଧ୍ୟ ବୁଝିବେ, ତାପରେ ଯାଇଁ ଜୀବନର ପରବର୍ତ୍ତୀ ସୋପାନରେ ପ୍ରବେଶ କରିବେ । ଏହିପରି ବ୍ରହ୍ମଚର୍ଯ୍ୟ ଆଶ୍ରମର ବର୍ଣ୍ଣନା ହେଇଛି ।

## ବାନପ୍ରସ୍ଥାଶ୍ରମ

ତାପରେ ବାନପ୍ରସ୍ଥାଶ୍ରମର ବର୍ଣ୍ଣନା ହେଇଛି । ଆମ ସଂସ୍କୃତିରେ ନିୟମ ତିଆରି କରାଯାଇଛି ଯେ ନିଜ ପୁଅର ପୁଅ ନାତିର ମୁହଁ ଦେଖିସାରିଲା ପରେ ଘର ଛାଡ଼ିଦେବା ଉଚିତ । କିଏ ବି କହିପାରିବ ଯେ ମୋର ତ ପୁଅ ନାହିଁ, ଖାଲି ଝିଅ ଅଛି । କଥା ହେଲା ଏତିକି ଯେ ଗୋଟିଏ ଆୟୁ ନିଶ୍ଚିତ କରିବା ଉଚିତ, ଖୁବ୍ ବେଶୀ ହେଲେ ଷାଠିଏ ବର୍ଷ । କାରଣ ମନୁଷ୍ୟର ପରମାୟୁ ହେଲା ଶହେ କୋଡ଼ିଏ ବର୍ଷ । କ୍ରିକେଟରେ ଯେମିତି ଶତକ । ପଚାଶ ରନ ପୁରା ହେଲେ କେତେ ତାଳି ବାଜେ । ଠିକ୍ ସେହିପରି ଷାଠିଏ ବର୍ଷ ହେଲା ତ ଅଧା ଜୀବନ ପୁରା ହେଇଗଲା । ବାବୁ, ଏବେ ବାହାର ଷାଠିଏ ବର୍ଷ ତ ହୋଇଗଲା, ଏବେ ଘରୁ ବାହାରିପଡ । କିନ୍ତୁ ଆମେ ମାନେ ତ ଏପରି ଯେ ଭାବିବା , ଆଉ ଗୋଟିଏ ମ୍ୟାଚ ଖେଳିନେବା, ଟେଷ୍ଟମ୍ୟାଚ ନ ହଉ ପଛେ , ରଣଜୀ ଟ୍ରଫି, ରଣଜୀ ଟ୍ରଫି ନହେଲେ ଗୋଟିଏ ଲୋକାଲ ମ୍ୟାଚ ତ ଖେଳି ନେବା । ଲୋକେ ରିଟାୟାର ତ ହେଇଯାଆନ୍ତି , କିନ୍ତୁ ପୁଣି କୋଉଠି ନା କୋଉଠି ରହିବା ପାଇଁ ଯୋଗାଡ କରି ନିଅନ୍ତି ।

ଯେମିତି, କେହି-କେହି ଆସି ଆମକୁ କହନ୍ତି ଯେ ସ୍ୱାମୀଜୀ ମୁଁ ବର୍ଷକ ପରେ ରିଟାୟାର ହେବି, ମୋତେ କିଛି କାମ ଦିଅନ୍ତୁ । ଆମେ ଗୋଟିଏ ବର୍ଷ ତା'ର ପ୍ରତୀକ୍ଷା କରୁ । ମିଶନରେ ତ ଲୋକ ସବୁବେଳେ ଦରକାର । କିନ୍ତୁ ସମୟ ଯେତେବେଳେ ଆସେ ତ ସେମାନେ କୁହନ୍ତି – ମୁଁ ଅନ୍ୟ କାମ କରିଲିଣି, ଦିନରେ ଖାଲି ଦୁଇଘଣ୍ଟା ପାଇଁ ଯିବାକୁ ପଡ଼ିବ । ଥରେ ଧରି ପକେଇଲେ ଆଉ ଛାଡ଼ି ହେବନି । ବାନପ୍ରସ୍ଥ ଆଶ୍ରମରେ ସବୁ ଛାଡ଼ିବାକୁ ପଡ଼ିବ । ପତ୍ନୀ ସାଂଗରେ ଗଲେ ଠିକ୍, ନ ଗଲେ ବି ଠିକ୍ । ବନକୁ ଯାଇ

ନିୟମ ପୂର୍ବକ ରହିବାକୁ ପଡ଼ିବ । ଅଧିକରୁ ଅଧିକ ସମୟ ଆତ୍ମଜ୍ଞାନ ପ୍ରାପ୍ତିରେ ଲଗେଇବେ । ଇଏ ହେଲା ବାନପ୍ରସ୍ଥ ଧର୍ମ । କିଏ ଭାବିପାରେ ଯେ ସ୍ୱାମୀଜୀ ଆପଣ ମଝିରେ ଗୃହସ୍ଥାଶ୍ରମକୁ ତ ଛାଡ଼ିଦେଲେ । ତା'ର ବର୍ଣ୍ଣନ ବିଶେଷ ଭାବରେ ପୃଥକ୍ ଅଧ୍ୟାୟରେ କରାଯାଇଛି ।

## ସନ୍ନ୍ୟାସାଶ୍ରମ

ଏହି ଅଧ୍ୟାୟରେ ସନ୍ନ୍ୟାସ ଧର୍ମର ବର୍ଣ୍ଣନ କରାଯାଇଛି । ବ୍ରହ୍ମଚର୍ଯ୍ୟ, ଗୃହସ୍ଥ, ତଥା ବାନପ୍ରସ୍ଥ ଏହି ତିନୋଟି ଆଶ୍ରମଠାରୁ ଏହି ସନ୍ନ୍ୟାସାଶ୍ରମ ଅତ୍ୟନ୍ତ କଠିନ ଅଟେ । ମନରେ ଯେତେବେଳେ ପ୍ରବଳ ବୈରାଗ୍ୟ ଉତ୍ପନ୍ନ ହୋଇଯିବ, ସେତେବେଳେ ସନ୍ନ୍ୟାସ ନେଇଯିବା ଉଚିତ ଏବଂ ସନ୍ନ୍ୟାସ ନେବା ପରେ ଗୋଟିଏ ଗ୍ରାମରେ ଗୋଟିଏ ରାତିଠୁ ଅଧିକ ରହିବା ଉଚିତ୍ ନୁହଁ । କାହାରି ଠାରୁ କୌଣସି ଆଶା ରଖିବା ଉଚିତ ନୁହଁ । **'ଏକ ଏବ ଚରେତ୍ ଭିକ୍ଷୁଃ'** ଏକୁଟିଆ ଭ୍ରମଣ କରିବା ଉଚିତ୍ । **'ଆତ୍ମାରାମ'** ଏବଂ ଆତ୍ମାରେ ରମଣ କରି **'ଅନପାଶ୍ରୟଃ'**, ଅନ୍ୟ କାହାରି ଉପରେ ଆଶ୍ରିତ ନ ହୋଇ କେବଳ ଭଗବାନଙ୍କର ହିଁ ଆଶ୍ରୟ ଗ୍ରହଣ କରିବ ।

**ସର୍ବଭୂତୋସୁହୃଚ୍ଛାନ୍ତୋ ନାରାୟଣ ପରାୟଣଃ । (୭.୧୩.୩)**

ସନ୍ନ୍ୟାସୀ ପାଇଁ ଅନ୍ୟ କୌଣସି ଆଶ୍ରୟ ନାହିଁ ଏବଂ ଜୀବନର ମଧ୍ୟ ଏହଠାରୁ ବଡ ଲକ୍ଷ୍ୟ ନାହିଁ । ଖାଲି ସେ ନାରାୟଣଙ୍କ ପାଖରେ ମନ ଲଗେଇବ । ସନ୍ନ୍ୟାସୀ ସମ୍ପୂର୍ଣ୍ଣ ବିଶ୍ୱକୁ ଆତ୍ମସ୍ୱରୂପ ବୋଲି ଦେଖିବ । ଏହି ବୋଧରେ ଦୃଢ ନିଶ୍ଚୟ ରହିବ ଯେ ବନ୍ଧନ-ମୋକ୍ଷ ଆଦି ଯେତେ ଦ୍ୱୈତ କଳ୍ପନାଗୁଡିକ ଅଛନ୍ତି , ଯିଏ ଅଲଗା-ଅଲଗା ପ୍ରକାରରେ ସ୍ଫୁରିତ ହେଉଛନ୍ତି, ସେମାନେ ସମସ୍ତେ ମିଥ୍ୟା । ଦେଖନ୍ତୁ ଯଦି ଏହା ହିଁ ସତ ତେବେ ସେ କାହିଁକି ବଞ୍ଚିବ ।?

କେଉଁ ପ୍ରୟୋଜନ ନେଇ ସେ ବଞ୍ଚିବ ? **'କାଲଂ ପରଂ ପ୍ରତୀକ୍ଷେତ୍'** (୭.୧୩.୬) । ସେ ଖାଲି ଦେହ - ପାତର ପ୍ରତୀକ୍ଷା କରିଥିବ । ଯେତେବେଳେ ତାର କାଳ ଆସିବ ତାର ଦେହ ମନକୁ ମନ ଛିଡି ପଡିବ, ଆଉ ତାର ଛୁଟୀ ହୋଇଯିବ । ନା ଅଧିକ ଦିନ ବଞ୍ଚିବ ନା ଜଲ୍ଦି ମରିବ ।

**ନ ଜୀବିତେ ମରଣେ ବା ଗୃଧ୍ନଂ କୁର୍ଯାତ୍ ॥**

ଅର୍ଥାତ୍ ନା ଅଧିକ ଦିନ ବଞ୍ଚିବା ପାଇଁ ଇଚ୍ଛା କରିବ , ନା ମରିବାର ଇଚ୍ଛା କରିବ । ଦେହ ରହିଲେ ଠିକ୍, ନ ରହିଲେ ମଧ୍ୟ ଠିକ୍, ତା'ର ରହିବା ନ ରହିବାରେ କିଛି ଫରକ

ପଡିବନି । ଅସତ୍ ଶାସ୍ତ୍ରମାନଙ୍କ ଠାରୁ ଦୂରେଇ ରହିବ । ସନ୍ନ୍ୟାସ ନେବା ପରେ ନୂଆ ବ୍ୟବସାୟ ଆରମ୍ଭ କରିବ ନାହିଁ କିମ୍ବା ନିର୍ବାଚନରେ ଭାଗ ନେବା ପାଇଁ ବା ଚାକିରୀ କରିବା ପାଇଁ ଇଚ୍ଛା କରିବ ନାହିଁ । କୌଣସି ପ୍ରକାରର ବାଦ-ବିବାଦ ବା ତର୍କ-ବିତର୍କ କରିବ ନାହିଁ । କାହାର ପକ୍ଷ ନେବ ନାହିଁ , ବହୁତ ଶିଷ୍ୟ କରିବ ନାହିଁ । ଶିଷ୍ୟମାନଙ୍କ ସହିତ ନିଜକୁ ବାନ୍ଧିବ ନାହିଁ । କେହି ଆସିଲେ ତାକୁ ଶିକ୍ଷା ଦେଇ କାମ ସାରି ଦେବ । ଅନ୍ୟ ନୂଆନୂଆ ପ୍ରକାରର କର୍ମ ମଧ୍ୟ ଆରମ୍ଭ କରିବ ନାହିଁ । ସହଜ ରୂପରେ ଭଗବତ୍ ଭାବରେ ରହିବ ।

ସନ୍ନ୍ୟାସୀ ପାଇଁ ଗୋଟିଏ କଠୋର କଥା କୁହାଯାଇଛି ଯେ ସନ୍ନ୍ୟାସ ପରେ ଯିଏ ପୁଣି ଭୋଗରେ ଯାଏ ସେ କୁକୁର ସହ ସମାନ । କୁକୁର ନିଜେ ଯାହା ବାନ୍ତି କରେ ତାକୁ ହିଁ ନିଜେ ଖାଏ । ବାନ୍ତି କରି ତାକୁ ଖାଇବା ଲୋକକୁ ବାଂତାଶି କୁହାଯାଏ । ଥରେ ଛାଡ଼ିଦେଲ ତ ସବୁଦିନ ପାଇଁ ତ ଛାଡ଼ି ଦେଲ , ଏହିପରି ହେବା ଉଚିତ୍ ।

ଥରେ ନିଜ ମନ୍ତ୍ରୀମାନଙ୍କ ସହିତ ବିଚରଣ କରୁ କରୁ ପ୍ରହ୍ଲାଦ କାବେରୀ ତଟରେ ଜଣେ ଅବଧୂତ ମୁନିଙ୍କୁ ଶୋଇଥିବାର ଦେଖିଲେ । ତାଙ୍କ ଚରଣରେ ବନ୍ଦନ କରି ପ୍ରହ୍ଲାଦ ତାଙ୍କୁ କହିଲେ, "ଆପଣ ତ ବଡ ଆରାମରେ ପଡି ରହିଛନ୍ତି , କୌଣସି କାମ କରିବାର ତ ଦିଶୁନି ।" ପ୍ରହ୍ଲାଦ ଜାଣି ଯାଇଥିଲେ ଯେ ଇଏ ଯିଏ ଅଜଗର ପରି ଆଳସ୍ୟରେ ପଡି ରହିବାର ଦିଶୁଛନ୍ତି ଜଣେ ଶ୍ରେଷ୍ଠ ପୁରୁଷ । ସେ ପ୍ରକୃତରେ ସେହି ଅବଧୂତ, ମହାମୁନି ଦତ୍ତାତ୍ରେୟ ଥିଲେ । ସେ କହିଲେ ପ୍ରହ୍ଲାଦ, ତୁମେ ମୋର ଅତ୍ୟନ୍ତ ପ୍ରିୟ ତେଣୁ ମୁଁ ତୁମ ସାଂଗରେ କଥାବାର୍ତ୍ତା କରୁଛି । ନ ହେଲେ ମୋର କାହା ସାଂଗରେ କଥା କହିବାର କିଛି ଦରକାର ହିଁ ନାହିଁ । ମୁଁ ତ ନିଜ ଆତ୍ମସ୍ୱରୂପରେ ପଡି ରହିଛି । ଲୋକଙ୍କୁ ଲାଗୁଛି ଯେ ଏହି ଲୋକଟି ଅଳସୁଆ , କିଛି କାମ କରୁନି । କାମ କରିବା ଏବଂ କାମ ନ କରିବା , ଏ ଦୁଇଟି ଯାକ ଅଜ୍ଞାନମାନଙ୍କ ପାଇଁ । ଜ୍ଞାନୀ ନା କର୍ମ କରିବ ନା କର୍ମ ତ୍ୟାଗ କରିବ । ସେହି ଜ୍ଞାନୀ ପୁରୁଷର ସ୍ଥିତିକୁ କେହି ଜ୍ଞାନୀ ପୁରୁଷ ହିଁ ବୁଝିପାରିବ । ଏଠାରେ ଅବଧୂତ ଭଗବାନ ପରମହଂସ ଧର୍ମ ପ୍ରକଟ କରିଛନ୍ତି ।

## ଗୃହସ୍ଥମାନଙ୍କ ପାଇଁ ମୁକ୍ତିର ମାର୍ଗ

ଏବେ ସେମାନେ ଗୃହସ୍ଥାଶ୍ରମ ଧର୍ମର ବର୍ଣ୍ଣନ କରାଯାଉଛି । ଯୁଧିଷ୍ଠିର କହିଲେ - ଭଗବାନ, ମୁଁ ତ 'ଗୃହମୂଢଧୀ' ଗୃହାସକ୍ତ ମୂଢ ବ୍ୟକ୍ତି ଅଟେ, ତେଣୁ ଆପଣ ମୋତେ ଉପଦେଶ ଦିଅନ୍ତୁ ।

**'ଗୃହସ୍ଥ ଏତାଂ ପଦବୀଂ ବିଧିନା ଯେନ ଚାଞ୍ଜସା ।**

**ଯାତି ଦେବଋଷେ ବ୍ରୁହି ମାଦୃଶୋ ଗୃହମୂଢଧୀଃ ॥ (୭.୧୪.୧)**

ଜଣେ ଗୃହସ୍ଥ ପୁରୁଷର ମୁକ୍ତିର ମାର୍ଗ ବିଷୟରେ କୁହନ୍ତୁ । ସମସ୍ତ ଗୃହସ୍ଥମାନଙ୍କ ପାଇଁ ଏହା ଧ୍ୟାନ ଦେବା ଯୋଗ୍ୟ ଅଟେ । ନାରଦ କହିଲେ -

**ଗୃହେଷ୍ୱବସ୍ଥିତୋ ରାଜନ୍କ୍ରିୟାଃ କୁର୍ବନ୍ଗୃହୋଚିତାଃ ।**

**ବାସୁଦେବାର୍ପଣଂ ସାକ୍ଷାଦୁପାସୀତ ମହାମୁନୀନ୍ ॥ (୭.୧୪.୨)**

'ଗୃହଂ ସର୍ବାତ୍ମନା ତ୍ୟାଜ୍ୟଂ' ଗୃହକୁ ତ ସବୁ ପ୍ରକାରରେ ତ୍ୟାଗ କରିବା ଉଚିତ । କିନ୍ତୁ ଯଦି ତା ମଧ୍ୟ ସମ୍ଭବ ନୁହଁ ତେବେ ତାକୁ ଭଗବାନଙ୍କୁ ଅର୍ପଣ କରିଦେବା ଉଚିତ । ଏହି ଘର ମୋର ନୁହଁ , ଭଗବାନଙ୍କର । ମୁଁ ମଧ୍ୟ ଭଗବାନଙ୍କର, ଏଠାରେ ରହୁଥିବା ସମସ୍ତେ ମଧ୍ୟ ଭଗବାନଙ୍କର । ମୁଁ ଅଫିସ ଯାଉଛି ତ, ଭଗବାନଙ୍କ ପାଇଁ । ଘରେ ଯେଉଁ ମହିଳା ଭୋଜନ ତିଆରି କରୁଛନ୍ତି, ସେ ମଧ୍ୟ ଏହି ଭାବ ରଖିବେ ଯେ ମୁଁ ଭଗବାନଙ୍କ ପାଇଁ ଭୋଜନ ତିଆରି କରୁଛି । ଆମେ ଯେଉଁ ସେବା କରିବା, ତାହା ସମସ୍ତ କେବଳ ଭଗବାନଙ୍କ ପାଇଁ । ପୁରୁଷମାନଙ୍କ ପାଇଁ କୁହାଯାଇଛି ଯେ ଯେତେବେଳେ ଘରେ ଅତିଥି ଆସିବେ, ସେତେବେଳେ ଘରେ ଯାହା ବି ବସ୍ତୁଥିବ, ତାଦ୍ୱାରା ତାଙ୍କର ସେବା କରିବେ, ନିଜ ପାଇଁ କେବଳ ସେତିକି ରଖିବେ ଯେତିକି ନିଜ ପେଟ ପାଇଁ ଆବଶ୍ୟକ । ତା ଠାରୁ ଅଧିକ ଯିଏ ରଖେ ସେ ଚୋର ।

**ସାଇଁ ଇତନା ଦୀଜିଏ ଜାମେଁ କୁଟୁମ ସମାୟ ।**

**ମେଁ ଭୀ ଭୂଖା ନା ରହୁଁ ସାଧୁ ନ ଭୂଖା ଜାୟ ॥**

ତା'ର କେବଳ ଏହି ଭାବନା ରହିବା ଉଚିତ ଯେ ଭଗବାନ ମୋତେ କେବଳ ସେତିକି ଦିଅନ୍ତୁ ଯାହାଦ୍ୱାରା ମୋ ପରିବାରର ପୋଷଣ ହେଉ, ମୁଁ ମଧ୍ୟ ଭୋକରେ ନ ରହେ ଏବଂ ଯେଉଁ ବ୍ୟକ୍ତି ମୋ ଘରକୁ ଆସୁଛି ସେ ମଧ୍ୟ ଭୋକରେ ନ ରହୁ । ଅଧିକ

ଧନର ଆବଶ୍ୟକତା ନାହିଁ । ଏଠି କୁହାଯାଇଛି ଯେ ବ୍ୟକ୍ତି ନିଜ ଘରର ସମସ୍ତ ବସ୍ତୁକୁ ଅତିଥି ସେବାରେ ଲଗେଇଦେବା ଉଚିତ । କାରଣ **'ଅତିଥି ଦେବୋ ଭବ'** ଅତିଥି ଦେବତୁଲ୍ୟ ହୋଇଥାଆନ୍ତି । ଏହା ପରେ ଗୋଟିଏ ଅତ୍ୟନ୍ତ କଠିନ କଥା କୁହାଯାଇଛି ଯେ ଘରକୁ କୌଣସି ଅତିଥି ଆସିଲେ ନିଜ ପତ୍ନୀକୁ ମଧ୍ୟ ତାଙ୍କ ସେବାରେ ଲଗେଇବେ । ଏହା ଶୁଣି ତ ଆମକୁ ଆଶ୍ଚର୍ଯ୍ୟ ଲାଗିବ । କାରଣ ସ୍ତ୍ରୀ ପାଖରେ ହିଁ ପୁରୁଷର ସର୍ବାଧିକ ଆସକ୍ତି ଥାଏ । ସ୍ତ୍ରୀରେ ସ୍ୱତ୍ୱ ମଧ୍ୟ ଅଧିକ ହୁଏ । କିନ୍ତୁ ଏଠାରେ ଗୋଟିଏ କଥା ମନେ ରଖିବାକୁ ପଡିବ । ଏଠି ଗୃହସ୍ଥକୁ କୁହାଯାଇଛି ଯେ ପତ୍ନୀକୁ ମଧ୍ୟ ସେବା କରିବାକୁ କହିବ, ଅତିଥିଙ୍କୁ କୁହାଯାଇନି ଯେ ତା ଦ୍ୱାରା ସେବା କରେଇବ । ପ୍ରକୃତରେ ଏଠାରେ କେବଳ ଏତିକି ବୁଝିବା ଯେ ଆମକୁ ସ୍ୱତ୍ୱ ଛାଡିବା ଉଚିତ । ବିଶେଷ ରୂପେ 'ଇଏ ମୋ ସ୍ତ୍ରୀ' ଏହି ଭାବ, ଏହି ସ୍ୱତ୍ୱ ଛାଡିବା ଉଚିତ ।

ମୁଁ ଆପଣମାନଙ୍କୁ ନିଜ ଅନୁଭବରୁ ଗୋଟିଏ କଥା ଶୁଣେଇବି । ଗାଁର ନାଁ ପଚାରିବେନି । ତାର ଦରକାର ନାହିଁ । ମୁଁ ଜଣଙ୍କ ଘରକୁ ଯାଇଥିଲି ଆଉ ତାଙ୍କୁ ପଚାରିଦେଲି ଯେ ଏଇଟା ଆପଣଙ୍କ ଘର ? ସେ କହିଲେ – ନା ଆପଣଙ୍କ ଘର । ପୁଣି ପୁଅ ଆସିଲା । ତାକୁ ପ୍ରଣାମ କରିବାକୁ କହିଲେ ଏବଂ କହିଲେ – ଆପଣଙ୍କ ପୁଅ, ପୁଣି ଝିଅ ଆସିଲା – ଆପଣଙ୍କ ଝିଅ । ଅନେକ ସ୍ଥାନରେ ଏଇମିତି କଥାବାର୍ତ୍ତା କରିବାର ଗୋଟେ ପ୍ରଥା ଅଛି । ତାପରେ ତାଙ୍କ ମାତା-ପିତା ଆସିଲେ କହିଲେ ଇଏ ଆପଣଙ୍କ ବାପା-ମା । କିନ୍ତୁ ଯେତେବେଳେ ପତ୍ନୀ ଆସିଲା କହିଲେ, "ମୋ ସ୍ତ୍ରୀ" ଏହା ଗୋଟିଏ ସତ ଘଟଣା । ଦେଖିଲେ ତ, ସବୁ ଜାଗାରେ ଆପଣଙ୍କର ଅଛି, କିନ୍ତ ସ୍ତ୍ରୀ ସାଂଗରେ ତା ଅଛି କି ? ଏହି ଉଦାହରଣ ଦ୍ୱାରା ସ୍ୱତ୍ୱ କଥା ବୁଝନ୍ତୁ ।

**ଜହ୍ୟାଦ୍ ଯଦର୍ଥେ ସ୍ୱପ୍ରାଣାହ୍ନନ୍ୟାଦ୍ ବା ପିତରଂ ଗୁରୁମ୍ ।**

**ତସ୍ୟାଂ ସ୍ୱତ୍ୱଂ ସ୍ତ୍ରିୟାଂ ଜହ୍ୟାଦ୍ ଯସ୍ତେନ ହ୍ୟଜିତୋ ଜିତଃ ॥ (୭.୧୪.୧୨)**

ପ୍ରାୟ ଦେଖାଯାଏ ଯେ ବ୍ୟକ୍ତି ଅନ୍ୟ ସବୁ ଠାରୁ ନିଜର ସ୍ୱତ୍ୱ ଛାଡ଼ିବା ପାଇଁ ପ୍ରସ୍ତୁତ ଥାଏ । କିଏ ଯଦି କହେ ଯେ ଆପଣଙ୍କ ପୁଅକୁ ମୁଁ ନିଜପୁଅ ପରି ଭାବେ ତେବେ ସେ ଖୁସୀ ହେବ । ଆପଣଙ୍କ ଘରକୁ ମୁଁ ନିଜ ଘର ପରି ଭାବେ , ଏମିତି କହିଲେ ମଧ୍ୟ ସେ ଖୁସି ହୁଏ । କିନ୍ତୁ କିଏ ଯଦି କୁହେ ଯେ ଆପଣଙ୍କ ପତ୍ନୀକୁ ମୁଁ ନିଜ ପତ୍ନୀ ବୋଲି

ଭାବୁଛି ତେବେ ସେ ରାଗିଯିବ । ଠିକ୍ ନା ନାହିଁ ? ପତ୍ନୀରୁ ସ୍ୱତ୍ୱ ଛାଡ଼ିବାକୁ ସେ ପ୍ରସ୍ତୁତ ନୁହଁ । ଏହି ସ୍ୱତ୍ୱ, ମମତ୍ୱ ଅତ୍ୟନ୍ତ ପ୍ରବଳ । ଏଠାରେ କୁହାଯାଇଛି ଯେ ମନୁଷ୍ୟ ଯାହାପାଇଁ ସବୁପ୍ରକାରର ପାପ କରିବାକୁ ପ୍ରସ୍ତୁତ ହୋଇଯାଏ , ଗୁରୁଙ୍କୁ ମାରିବାକୁ ପ୍ରସ୍ତୁତ ହୋଇଯାଏ, ମା-ବାପାଙ୍କୁ ଛାଡିବା ପାଇଁ ବା ମାରିବା ପାଇଁ ପ୍ରସ୍ତୁତ ହୋଇଯାଏ, ସେହି ପତ୍ନୀ ପ୍ରତି ଯଦି କେହି ମମତ୍ୱକୁ ଛାଡି ପାରିଲା , ତେବେ ସେ ଅଜିତ ପରମାତ୍ମାଙ୍କୁ ଜିତିପାରେ **'ତେନ ହ୍ୟାଜିତୋ ଜିତଃ'**। ପ୍ରକୃତରେ ତ ଭଗବାନ ଅଜିତ, ତାଙ୍କୁ କେହି ଜିତି ପାରିବ ନାହିଁ । କିନ୍ତୁ ଏପରି ଗୃହସ୍ଥ ତାଙ୍କୁ ଜିତି ପାରିବ ।

**ସିଦ୍ଧୈର୍ୟଜ୍ଞାବଶିଷ୍ଟାର୍ଥୈଃ କଳ୍ପୟେଦ୍ ବୃତ୍ତିମାତ୍ମନଃ ।**
**ଶେଷେ ସ୍ୱତ୍ୱଂ ତ୍ୟଜନ୍ପ୍ରାଜ୍ଞଃ ପଦବୀଂ ମହତାମିୟାତ୍ ॥ (୭.୧୪.୧୪)**

ଜୀବନ ଧାରଣ ପାଇଁ ଯେତିକି ବସ୍ତୁ ଦରକାର ତା ଛଡ଼ା ସବୁ କିଛି ଛାଡି ଦେଲେ ମହତ୍ପଦ ପ୍ରାପ୍ତ ହୋଇଯାଏ । କହିବାର ଅର୍ଥ ଏଇଆ ଯେ ବ୍ରହ୍ମଚାରୀ ହେଉ ବା ଗୃହସ୍ଥ, ବାନପ୍ରସ୍ଥୀ ହେଉ ବା ସନ୍ନ୍ୟାସୀ, ବ୍ରାହ୍ମଣ ହେଉ ବା କ୍ଷତ୍ରିୟ, ବୈଶ୍ୟ ହେଉ ବା ଶୁଦ୍ର, ସ୍ତ୍ରୀ ହେଉ ବା ପୁରୁଷ, ଯେ କେହି ବି ହେଉ, ତାକୁ ନିଜର ପ୍ରତ୍ୟେକ କର୍ତ୍ତବ୍ୟ, ଭଗବାନଙ୍କ ପୂଜା ଭାବି କରିବା ଉଚିତ ଏବଂ ଅନ୍ୟ ଯେଉଁ ସଦ୍‌ଗୁଣ ଗୁଡିକ ବିଷୟରେ କୁହାଯାଇଛି ସେ ସବୁ ମଧ୍ୟ କରିବା ଉଚିତ, ଜୀବନରେ ସମସ୍ତ ସଦ୍‌ଗୁଣ ଗୁଡିକର ପାଳନ କରିନେବା ଉଚିତ୍ ।

ଏହାପରେ ଅନ୍ତିମ ଅଧ୍ୟାୟ ଆରମ୍ଭ ହେଉଛି । ଦେଖନ୍ତୁ, କର୍ତ୍ତବ୍ୟ ପାଳନ କରିବା ଉଚିତ, ଏକଥା ତ ଆମେ ସମସ୍ତେ ବୁଝିପାରୁଛୁ ; କିନ୍ତୁ ଦେଖାଯାଏ ଯେ ସେଥିରେ ଅନେକ ବିଘ୍ନ ଆସନ୍ତି । ସେ ବିଘ୍ନ ଗୁଡିକ କଣ ଯାହା କର୍ତ୍ତବ୍ୟ ପାଳନରେ ବାଧକ ହୁଅନ୍ତି ? ଏବେ ଦେଖିବା, ଏହି ଯେଉଁ କାମ, କ୍ରୋଧ, ଭୟ, ଶୋକ, ମୋହ, ଦମ୍ଭ, ହିଂସା-ଭାବ, ନିଦ୍ରା ଆଦି ଆସୁରୀ ବୃତ୍ତି ଅଛନ୍ତି, ସେହିମାନେ ହିଁ ବିଘ୍ନ । ତାହାଲେ ତାଙ୍କୁ କିପରି ଜିତିବା ? ତାଙ୍କୁ ଜିତିବା ପାଇଁ ଏଠି ବହୁତ ସୁନ୍ଦର ଉପାୟ କୁହାଯାଇଛି ।

**'ଅସଂକଳ୍ପାଜ୍ଜୟେତ୍ କାମଂ'** ଆମ ମନରେ ଯେଉଁ କାମନା ଜାଗ୍ରତ ହୁଏ, ତାହା ସଂକଳ୍ପ କରିବାରୁ ହିଁ ହୁଏ । ଯେପରି, ଏଇ ଜିନିଷଟି ବହୁତ ଭଲ, ବହୁତ ସୁନ୍ଦର, ଏଥିରେ ବହୁତ ସୁଖ ଅଛି, ଏଇଟା ମତେ ମିଳିଲେ ବହୁତ ସୁଖ ମିଳିବ । ଯେତେବେଳେ

ଆମେ ଏପରି ସଂକଳ୍ପ କରିବାରେ ଲାଗି ପଡୁ, ସେତେବେଳେ ସେହି ବସ୍ତୁର ଇଚ୍ଛାର ନିର୍ମାଣ ହୁଏ । ମନରେ ଏପରି ସଂକଳ୍ପ ଉଠିବା ମାତ୍ରେ ସତର୍କ ହେଇଯାଇ ସେଗୁଡିକୁ ସେଇଠି ତ୍ୟାଗ କରିଦେବା ଉଚିତ୍, ବନ୍ଦ କରିଦେବା ଉଚିତ, ବା ଅନ୍ୟକଥାରେ କହିବାକୁ ଗଲେ ନିଜ ମନକୁ ସେହି ସମୟରେ ଗୋଟିଏ ଚଟକଣି ବସେଇବେ ଯେ, "ମିଛି-ମିଛିକା କଳ୍ପନା କରନା, ଚୁପ୍‌ଚାପ୍ ବସ ।" କୁହାଯାଇଛି ଯେ ଯଦି ଆଦୌ ସଂକଳ୍ପ ନ କରିବେ ତେବେ କାମନାକୁ ଜିତି ପାରିବେ । ତେଣୁ ଏଠି କୁହାଯାଇଛି ଯେ ସଂକଳ୍ପକୁ ତ୍ୟାଗ କରି କାମନାକୁ ଜିତିବା ଦରକାର ।

ଆମର କାମନା ପୂର୍ତ୍ତିରେ ଯେତେବେଳେ କୌଣସି ବିଘ୍ନ ଆସେ, ସେତେବେଳେ ଆମକୁ କ୍ରୋଧ ଆସିଯାଏ । କାମନାକୁ ଜିତି ପାରିଲେ ଆମେ କ୍ରୋଧକୁ ମଧ୍ୟ ଜିତିପାରିବା । ଲୋକେ ପଚ୍ଚରନ୍ତି, "ମୋତେ ବହୁତ କ୍ରୋଧ ଆସି ଯାଉଛି, ତାକୁ କେମିତି ଜିତିପାରିବି ?" ଉତ୍ତର ହେଲା – ତୁମ ମନରେ ବହୁତ ଗୁଡିଏ ଇଚ୍ଛା ରହିଛି । ମନରେ ଇଚ୍ଛା ରଖି ତୁମେ କ୍ରୋଧକୁ ଜିତି ପାରିବ ନାହିଁ । ସେତେବେଳେ ସେମାନେ କହିବେ – ନାହିଁ ତ , ମୋ ମନରେ ଆଦୌ କୌଣସି ଇଚ୍ଛା ନାହିଁ । ଆଚ୍ଛା, ଏଇ ଇଚ୍ଛା ତ ଅଛି ନା ଯେ ଲୋକମାନେ ମୋର ପ୍ରଶଂସା କରନ୍ତୁ ? ବାସ୍, ଏଇ ଗୋଟିଏ ଇଚ୍ଛା ଆପଣଙ୍କୁ ହଇରାଣ କରିବା ପାଇଁ ଯଥେଷ୍ଟ । ଯେମିତି ରାତିରେ ମଶାରୀ ଭିତରେ କେବଳ ଗୋଟିଏ ମଶା ଆପଣଙ୍କୁ ହଇରାଣ କରିବା ପାଇଁ ଯଥେଷ୍ଟ , ବହୁତ ଗୁଡିଏ ମଶା ଭଲା କଣ ଦରକାର ? ତେଣୁ କୁହାଯାଇଛି –

**କାମନାକୁ ତ୍ୟାଗ କର, କାମକୁ ଜିତିବା ଦ୍ୱାରା କ୍ରୋଧକୁ ଜିତ ।**

ଅର୍ଥ ହିଁ ଅନର୍ଥର ମୂଳ, ଏହା ବୁଝି ଲୋଭକୁ ଜିତ, ଲାଳସାକୁ ଜିତ । ସୁଖ ପାଇବା ଆଶାରେ ଆମେ ଯାହା ପଛରେ ଦଉଡୁଛୁ , ତାହା ଅତ୍ୟନ୍ତ ଅନର୍ଥକାରୀ ଅଟେ, ଏହା ଜାଣି ଲୋଭକୁ ଜିତ । ଆଉ **'ଭୟ ତତ୍ତ୍ୱବିମର୍ଶନାତ୍'** । ଭାବିଲେ ଦେଖି ଭୟ କେତେବେଳେ ଉତ୍ପନ୍ନ ହୁଏ ? ଯେତେବେଳେ ଆମେ ଦ୍ୱୈତରେ ରହି, ଦ୍ୱୈତକୁ ସ୍ୱୀକାର କରି ଭାବୁ ଯେ ଏହା ମୋ ଠାରୁ ଅଲଗା , ସେତେବେଳେ ସେଥିରୁ ଭୟ ଉତ୍ପନ୍ନ ହୁଏ । ତେଣୁ ଏଠି କୁହାଯାଇଛି ଯେ ଆତ୍ମ ଏକତ୍ୱର ଜ୍ଞାନ ଦ୍ୱାରା ଭୟ ଉତ୍ପନ୍ନ ହୁଏ । ତେଣୁ ଏଠି କୁହାଯାଇଛି ଯେ ଆତ୍ମ ଏକତ୍ୱର ଜ୍ଞାନ ଦ୍ୱାରା ଭୟକୁ ଜିତ । ଆଉ ଯେଉଁ ଶୋକ-ମୋହ

ଆଦି ଅଛନ୍ତି - ନିଜ ସ୍ୱରୂପର ଅଜ୍ଞାନ ହେଲା **ମୋହ,** ଏବଂ ସେହି କାରଣରୁ ଯେଉଁ ଦୁଃଖ ଉତ୍ପନ୍ନ ହୁଏ ତାକୁ **ଶୋକ** କୁହାଯାଏ । ଶୋକ-ମୋହକୁ ଆତ୍ମଜ୍ଞାନ ଦ୍ୱାରା ଜିତ ।

ନିଜ ମନର ଦମ୍ଭକୁ, ସାଧୁ ପୁରୁଷଙ୍କ ସେବା କରି ଜିତ । ସାଧୁ ପୁରୁଷଙ୍କ ସେବା, ଭିତରେ ଦମ୍ଭ ରଖି କରାଯାଇପାରିବ ନାହିଁ । ଯଦି କିଏ ଏପରି କରିବ, ତେବେ ତା'ର ମିଛ ଧରାପଡ଼ିଯିବ । ଯୋଗାଭ୍ୟାସ ସମୟରେ ଉତ୍ପନ୍ନ ବିଘ୍ନକୁ ମୌନ ଦ୍ୱାରା ଜିତ, ଅଧିକ କଥା କୁହନି । ଦେଖନ୍ତୁ, ଜୀବନରେ ମଧ ଗରମଦିନରେ ଅଧିକ ଗରମ ଲାଗୁଥିଲେ ବି 'କେତେ ଗରମ ଲାଗୁଛି' କୁହନ୍ତୁନି । ଯଦି କହିବେ ତ ଅଧିକ ଗରମ ଅନୁଭବ ହେବ । କେହି କେହି ତ କାନି ଦ୍ୱାରା ବି ପବନ କରନ୍ତି । ସେମିତି କଲେ ଥଣ୍ଡା ଲାଗିବ କି ? କେହି କେହି କାଗଜ ଟୁକୁରା ହଲଉଥାଆନ୍ତି । ତାଙ୍କର ଖାଲି ହାତକାଟେ ସିନା ଲାଭ କିଛି ମିଳେନି । ତାକୁ ଛାଡ଼ି ଦିଅ । ଯେମିତି ଛାଡି ଦେବେ, ଗରମ ଲାଗିବା କମ ହେଇଯିବ। କୁହାଗଲା ଯେ ମୌନ ରୁହ, ଅଧିକ କଥା କୁହନି । **'ହିଂସା କାୟାଦ୍ୟନୀହୟା'** ନିଜ ଶରୀର ପ୍ରତି ଆସକ୍ତି ଛାଡି ଦେଲେ ହିଂସା ଛାଡ଼ି ହୋଇଯାଏ । ନିଜ ଶରୀରରେ ଆସକ୍ତି ରହିଲେ, ହିଂସା କରୁଥିବା । ନିଜ ଜିହ୍ୱାର ସ୍ୱାଦ ପାଇଁ ଲୋକମାନେ କେତେ - କେତେ ପ୍ରାଣୀମାନଙ୍କୁ ମାରି ଦିଅନ୍ତି !

ତାପରେ କହିଲେ, ଅନ୍ୟ ଯେଉଁ ପ୍ରାଣୀମାନେ ଆମକୁ ସୁଖ ଦେଉଥାନ୍ତି, ତାଙ୍କ ଉପରେ କୃପା କର । ଏପରି କୃପା କଲେ, ସେମାନେ ଦେଉଥିବା ଦୁଃଖ ମଧ ଦୁଃଖ ପରି ଲାଗିବନି । ଯେଉଁ ଆଧିଦୈବିକ କଷ୍ଟଗୁଡିକ ଆସନ୍ତି - ଯେପରି ଯଦି କେହି କେବେ ଜଂଗଲରେ ଥିଲା ବେଳେ ବହୁତ ବର୍ଷା ହେବ- କୁହାଯାଇଛି ଯେ ସେତେବେଳେ ସମାଧିରେ ବସିଯାଅ, ଆଉ କଣ କରାଯାଇପାରିବ ? ସେଠି ତ ନା ଘର ଅଛି , ନା ଛତା, ନା ରେନକୋର୍ଟ, ତେଣୁ କୁହାଗଲା ସମାଧି ଲଗାଅ । ଅର୍ଥାତ୍ ସମାଧି ଦ୍ୱାରା ଆଧିଦୈବିକ ଦୁଃଖଗୁଡିକୁ ଦୂର କର । ଏଠି ସମାଧିର ଅର୍ଥ ହେଲା ମନର ଶାନ୍ତି । ତମ ଗୁଣକୁ ରଜୋ ଗୁଣ ଦ୍ୱାରା ଏବଂ ରଜୋ ଗୁଣକୁ ସତ୍ତ୍ୱ ଗୁଣଦ୍ୱାରା ଜିତ । ଗୋଟିଏ-ଗୋଟିଏ କରି ଆଉ କେତେ କହି ପାରିବା ?

ନାରଦ କହିଲେ -

**ଏତତ୍ ସର୍ବଂ ଗୁରୌ ଭକ୍ତ୍ୟା ପୁରୁଷୋ ହ୍ୟଞ୍ଜସା ଜୟେତ୍ ।।(୭.୧୫.୨୫)**

ଯାହା ପାଖରେ ଗୁରୁଭକ୍ତି ଅଛି - ଯାହାକୁ ଗୁରୁଭକ୍ତିର ବରଦାନ ମିଳିଛି, ତା ପାଖରେ ଏହି ସମସ୍ତ ସଦ୍‌ଗୁଣ ସହଜରେ ଆସିଯାଆନ୍ତି । ତେଣୁ କୁହାଯାଇଛି ଯେ ଏହି ବିଘ୍ନ ଗୁଡିକୁ ଜିତିବାର ଏକମାତ୍ର ସରଳ ଉପାୟ ହେଲା **ଗୁରୁଭକ୍ତି** । ଏଠାରେ ଗୋଟିଏ ମହତ୍ତ୍ୱପୂର୍ଣ୍ଣ କଥା କୁହାଯାଇଛି ।

**ୟସ୍ୟ ସାକ୍ଷାଦ୍ ଭଗବତି ଜ୍ଞାନଦୀପପ୍ରଦେ ଗୁରୌ ।**

**ମର୍ତ୍ତ୍ୟାସଦ୍ଧୀଃ ଶ୍ରୁତଂ ତସ୍ୟ ସର୍ବଂ କୁଞ୍ଜରଶୌଚବତ୍ ।। (୭.୧୫.୨୬)**

ଏପରି ଭଗବଦ୍ ସ୍ୱରୂପ, ଜ୍ଞାନପ୍ରଦାୟକ ଗୁରୁଙ୍କ ପାଖରେ ଯିଏ 'ମନୁଷ୍ୟ ବୁଦ୍ଧି' ରଖେ, ତାର ପଢିବା-ଲେଖିବା ସବୁ ହାତୀର ସ୍ନାନ ପରି ବ୍ୟର୍ଥ ଅଟେ । ଏପରି ପୁରୁଷର ଜ୍ଞାନ ବ୍ୟର୍ଥ । ଏଠାରେ ଗୁରୁଭକ୍ତି ବିଷୟକ ଏହି ସୁନ୍ଦର କଥା କୁହାଯାଇଛି ।

**ଗୁରୁଚରଣାମ୍ବୁଜନିର୍ଭରଭକ୍ତଃ ସଂସାରାଦଚିରାଦ୍ଭବ ମୁକ୍ତଃ ।**

**(ଭଜ-ଗୋବିନ୍ଦମ୍ ୩୧)**

ଭଗବାନ ଶଙ୍କରାଚାର୍ଯ୍ୟ ମଧ୍ୟ କହିଛନ୍ତି ଯେ ଗୁରୁଚରଣର ନିର୍ଭର ଭକ୍ତ ହୁଅ, ତାହାହେଲେ ସଂସାରରୁ ଶୀଘ୍ର ମୁକ୍ତି ପାଇଯିବ । ଏହିପରି ଏହି ସୁନ୍ଦର ଅଧ୍ୟାୟ ସହିତ ଏହି ସପ୍ତମ ସ୍କନ୍ଧ, ଯେଉଁଥିରେ ତିନିପ୍ରକାରର ବାସନା ମାନଙ୍କର ବର୍ଣ୍ଣନା କରାଯାଇଛି, ଏଠାରେ ସମାପ୍ତ ହେଲା ।



# ଅଷ୍ଟମ ସ୍କନ୍ଧ

ଅଷ୍ଟମ ଅଧ୍ୟାୟର ବିଷୟ ହେଲା **ମନ୍ୱନ୍ତର** । ଏହାକୁ **ସଦ୍ଧର୍ମ-ସ୍କନ୍ଧ** ମଧ୍ୟ କୁହାଯାଏ । ମନ୍ୱନ୍ତର ତଥା ଯୁଗ ଗଣନା ଆମେ ପୂର୍ବରୁ ଦେଖିସାରିଛୁ । ବ୍ରହ୍ମାଙ୍କର ଗୋଟିଏ ଦିନରେ ଚଉଦ ମନୁ ହୁଅନ୍ତି । ଜଣେ-ଜଣେ ମନୁଙ୍କ ଶାସନ କାଳକୁ ମନ୍ୱନ୍ତର କୁହାଯାଏ । ଯେପରି ଭାରତର କେନ୍ଦ୍ର ସରକାରଙ୍କ ଶାସନକାଳ ପାଞ୍ଚବର୍ଷର । ତେଣୁ ପାଞ୍ଚବର୍ଷ ପାଇଁ ଜଣେ ପ୍ରଧାନମନ୍ତ୍ରୀ ହୁଅନ୍ତି- ଯଦି ମଝିରେ କିଛି ଗଡବଡ ନ ହେଲା । ଆମେରିକାର ରାଷ୍ଟ୍ରପତିଙ୍କର ଶାସନକାଳ ହେଲା ଚାରିବର୍ଷ । ତାପରେ ଅନ୍ୟଜଣେ ରାଷ୍ଟ୍ରପତି ହୁଅନ୍ତି । ସେହିପରି ଜଣେ - ଜଣେ ମନୁ ଆସନ୍ତି, ଏବଂ ତାଙ୍କ କାମ ହେଲା ଧର୍ମ-ସ୍ଥାପନା କରିବା । ପ୍ରତ୍ୟେକ ମନ୍ୱନ୍ତରର ନିଜର ବ୍ୟବସ୍ଥା ଥାଏ । ଯେପରି ପ୍ରତ୍ୟେକ ପ୍ରଧାନମନ୍ତ୍ରୀଙ୍କର ନିଜର ମନ୍ତ୍ରୀମଣ୍ଡଳ ଥାଏ, ଯେଉଁଥିରେ ଗୃହମନ୍ତ୍ରୀ, ବିତ୍ତମନ୍ତ୍ରୀ, ରକ୍ଷା ମନ୍ତ୍ରୀ ଆଦି ସମସ୍ତେ ଥାଆନ୍ତି । ଯେତେବେଳେ ଶାସନ ବଦଳେ ସେତେବେଳେ ମନ୍ତ୍ରମଣ୍ଡଳ ମଧ୍ୟ ବଦଳି ଯାଆନ୍ତି । ନୂଆ ମନ୍ତ୍ରୀମଣ୍ଡଳ ତିଆରି ହୁଏ । ଠିକ୍ ସେହିପରି ପ୍ରତ୍ୟେକ ମନୁଙ୍କର ସମୟରେ ସବୁ ଦେବତା ଓ ଋଷି ବଦଳି ଯାଆନ୍ତି ଏବଂ ଭଗବାନଙ୍କର କୌଣସି ଏକ ଅବତାର ମଧ୍ୟ ହୁଏ । ମନୁଙ୍କର ପୁଅ-ଝିଅ ମଧ୍ୟ ଥାଆନ୍ତି ।

ପୂର୍ବ ସ୍କନ୍ଧରେ ଆମେ ଯେଉଁ ମାନବ ଧର୍ମ ଦେଖିଲେ ତାହା ଥିଲା ସାମାନ୍ୟ ଧର୍ମ । ଏବେ ଏଇ ଅଷ୍ଟମ ସ୍କନ୍ଧରେ ସଦ୍ଧର୍ମର ବର୍ଣ୍ଣନ କରାଯାଇଛି । ଧର୍ମ ଏବଂ ସଦ୍ଧର୍ମରେ ଟିକିଏ ପାର୍ଥକ୍ୟ ଅଛି । ସାମାନ୍ୟ ଧର୍ମର ଆଚରଣ ମନୁଷ୍ୟ ନିଜର ଶକ୍ତି ଅନୁସାରେ କରିଥାଏ, କିନ୍ତୁ ଶ୍ରେଷ୍ଠ ପୁରୁଷମାନଙ୍କ ମଧ୍ୟରେ ଏକ ବିଲକ୍ଷଣ ଶକ୍ତି ଦେଖିବାକୁ ମିଳେ ଯାହା ଈଶ୍ୱର ପ୍ରଦତ୍ତ । ସେହି ଶକ୍ତି ଦ୍ୱାରା ସମ୍ପନ୍ନ ହୋଇ, ସେମାନେ ଯେଉଁ ସବୁ ଆଚରଣ କରନ୍ତି ତାହା ହିଁ **'ସଦ୍ଧର୍ମ'** । ସପ୍ତମ ସ୍କନ୍ଧରେ ଯେଉଁ ବ୍ରହ୍ମଚର୍ଯ୍ୟ, ଗୃହସ୍ଥ, ବାନପ୍ରସ୍ଥ ଆଦି ଧର୍ମ କଥା କୁହାଯାଇଛି ତାହାର ପାଳନ ମନୁଷ୍ୟ ନିଜ ଶକ୍ତି ଅନୁସାରେ କରେ । କିନ୍ତୁ ସଦ୍ଧର୍ମ ଭଗବତ୍ ଶକ୍ତି ଦ୍ୱାରା ଅଧିଷ୍ଠିତ ହୋଇଥିବାରୁ, ଅଧିକାରୀ ପୁରୁଷ ହିଁ ଶ୍ରେଷ୍ଠ କାର୍ଯ୍ୟ କରିପାରନ୍ତି । କିନ୍ତୁ ଏହି ସଦ୍ଧର୍ମର ଅଧିକାରୀ କିଏ ହୋଇପାରିବ ? ଯିଏ ନିଜର ଧର୍ମର ପାଳନ ଭଲଭାବରେ କରିଛି, ସେ ହିଁ ସଦ୍ଧର୍ମର ମଧ୍ୟ ଅଧିକାରୀ ହୋଇପାରିବ । ଏଇଟା ତ ହେଲା ଗୋଟିଏ କଥା ।

ଦ୍ୱିତୀୟ କଥା ହେଲା ଯେ ଯେତେବେଳେ ଆମେ ସ୍ୱଧର୍ମର ପାଳନ କରୁଛୁ , ସେତେବେଳେ ଆମ ବାସନାଗୁଡ଼ିକ ପରିବର୍ତ୍ତନ ହେବାକୁ ଲାଗନ୍ତି, ଆମର ବାସନା ପରିମାର୍ଜିତ ହୁଅନ୍ତି ଏବଂ ଯେତେବେଳେ ସଦ୍ଧର୍ମର ଆଚରଣ କରୁ ସେତେବେଳେ ବାସନା କ୍ଷୟ ହେବାକୁ ଲାଗନ୍ତି । ଏବେ ଆମ ଭିତରେ ଅନେକ କୁବାସନା ଅଛି, ଧୀରେ-ଧୀରେ ସେଗୁଡ଼ିକ ପରିବର୍ତ୍ତିତ କରାଯାଏ, କର୍ତ୍ତବ୍ୟ ପାଳନ ଦ୍ୱାରା ସ୍ୱଭାବରେ ପରିବର୍ତ୍ତନ କରାଯାଏ ।

ଏବେ ରାଜା ପରୀକ୍ଷିତ ପଚାରିଲେ- ମହାତ୍ମନ୍ , ଆପଣ ସ୍ୱୟଂଭବ ମନୁଙ୍କ କଥା ତ କହିଲେ, କିନ୍ତୁ ଅନ୍ୟ ଯେଉଁ ମନୁ ମାନେ ଅଛନ୍ତି ଏବଂ ସେମାନଙ୍କ ମନ୍ୱନ୍ତରରେ ଯାହା ସବୁ ଘଟିଛି, ସେଗୁଡ଼ିକ ମଧ୍ୟ ଆପଣ ମୋତେ କୁହନ୍ତୁ । ଏହି ଅଷ୍ଟମ ସ୍କନ୍ଧରେ ମନ୍ୱନ୍ତରଗୁଡ଼ିକର କାହାଣୀ ମାଧ୍ୟମରେ ଭଗବତ୍ ସ୍ମରଣରୂପୀ ଧର୍ମ, ଦାନ-ଧର୍ମ, ପ୍ରତିଜ୍ଞାପୂର୍ତ୍ତିର ଧର୍ମ ଆଦି କୁହାଯାଇଛି । ଭଗବାନଙ୍କର ସ୍ମରଣ ଦ୍ୱାରା ସବୁ ସଂକଟ ଦୂର ହୋଇଯାଏ, ଏହି କଥା ହିଁ ଏଠି ବିଶେଷ ଭାବରେ କୁହାଯାଇଛି । ତାପରେ ଦାନ-ଧର୍ମର ବର୍ଣ୍ଣନ ଅଛି ଏବଂ ପ୍ରତିଜ୍ଞାପୂର୍ତ୍ତିର କଥା ମଧ୍ୟ ବର୍ଣ୍ଣନ କରାଯାଇଛି । ପ୍ରଥମେ ଗଜେନ୍ଦ୍ରର କଥା କୁହାଯାଇଛି । ତାପରେ ରାଜା ବଳି ଏବଂ ବାମନ ଭଗବାନଙ୍କର ଅତ୍ୟନ୍ତ ସୁନ୍ଦର କାହାଣୀଟିଏ ଅଛି, ଏବଂ ତାପରେ ମତ୍ସ୍ୟାବତାରର କଥା ଅଛି ଯାହା ସହିତ ଏହି ଅଷ୍ଟମ ସ୍କନ୍ଧ ପୁରା ହୋଇଛି। ଭଗବାନ ନିଜର ଏହି ମତ୍ସ୍ୟାବତାରରେ ସମସ୍ତ ଜ୍ଞାନର, ସମସ୍ତ ଜୀବମାନଙ୍କ ବୀଜର ରକ୍ଷା କରନ୍ତି । ପ୍ରସ୍ତାବନା ରୂପରେ କୁହାଯାଇଥିବା ଏହି ସମସ୍ତ ବିଷୟକୁ ଏବେ ଆମେ ବିସ୍ତୃତ ଭାବେ ଦେଖିବା ।

## ଭଗବାନ ହରିଙ୍କ ଦ୍ୱାରା ଗଜେନ୍ଦ୍ରର ମୁକ୍ତି

ସ୍ୱାୟଂଭବ ମନୁଙ୍କ ପରେ ଦ୍ୱିତୀୟ ମନୁ ହେଲେ ସ୍ୱାରୋଚିଷ ମନୁ । ତାଙ୍କ ପରେ ତୃତୀୟ ମନୁ ହେଲେ ଉତ୍ତମ । ତାଙ୍କର ଅତ୍ୟନ୍ତ ସଂକ୍ଷିପ୍ତ ବର୍ଣ୍ଣନା କରିବାପରେ ଶ୍ରୀଶୁକଦେବ କହୁଛନ୍ତି ଯେ - ଚତୁର୍ଥ ମନ୍ୱନ୍ତରରେ ଉତ୍ତମଙ୍କ, ଭାଇ ତାମସ ମନୁ ହେଲେ ଏବଂ ସେହି ମନ୍ୱନ୍ତରରେ ଭଗବାନଙ୍କ '**ହରି**' ନାମକ ଅବତାର ହେଲା । ସେହି ହରି ଗଜେନ୍ଦ୍ରଙ୍କୁ ମୁକ୍ତ କରିଥିଲେ । ହାତୀମାନଙ୍କର ରାଜା ଗଜେନ୍ଦ୍ର ଥରେ ବିପଦରେ ପଡିଗଲେ । ହାରି ଯାଇ ଶେଷରେ ସେ ଭଗବାନଙ୍କୁ ଡାକିଲେ ।

**ଗଜରାଜଙ୍କର ବିପତ୍ତି ପଡିଲା ମନରେ ଜପିଲେ ହରି ହରି ।**
**ଗ୍ରାହ ମାରି ତାଙ୍କୁ ମୁକ୍ତି ଦେଲ ତୁମେ, ତୁମର ମନେ ଅଛି ନା ନାହିଁ ।**
**ନାମ ଯେଉଁ ପ୍ରତାପ ଅଛି, ତୁମର ମନେ ଅଛି ନା ନାହିଁ ।**

ଗଜରାଜଙ୍କ ଉପରେ ବିପତ୍ତି ପଡିବାରୁ ସେ ଭଗବାନଙ୍କୁ 'ହରି-ହରି' କହି ଡାକିଲେ, ସେତେବେଳେ ଭଗବାନ ଆସିଲେ ଏବଂ ଗ୍ରାହର ବନ୍ଧନରୁ ତାକୁ ମୁକ୍ତ କଲେ । ଏହା ଅତ୍ୟନ୍ତ ସୁନ୍ଦର କଥା, କୁହାଯାଇଛି ଯେ ଜୀବନରେ କେବେ ବି କୌଣସି ସଂକଟ ଆସିଲେ, କଷ୍ଟ ଆସିଲେ, ଆଉ ଯଦି କିଛି ବୁଝିପାରୁ ନ ଥିବେ ଯେ କଣ କରିବି ? ତେବେ '**ଗଜେନ୍ଦ୍ର ମୋକ୍ଷ**'ର ପାଠ କଲେ ସେହି ସଂକଟ ଦୂର ହୁଏ । ଶ୍ରୀଶୁକଦେବ ଯେତେବେଳେ ଗଜେନ୍ଦ୍ର ମୋକ୍ଷ କଥା କହିଲେ, ସେତେବେଳେ ରାଜା ପରୀକ୍ଷିତ କହିଲେ ଭଗବାନ ! ଆପଣ ଏହି କଥା ମୋତେ ବିସ୍ତୃତ ଭାବେ ଶୁଣାନ୍ତୁ । ଏପରି ସଂକ୍ଷେପରେ ଶୁଣି ମୋତେ ସନ୍ତୋଷ ମିଳୁ ନାହିଁ । ଶୁକଦେବ କହିଲେ ଠିକ୍ ଅଛି, ଶୁଣ ।

**ଆସୀଦ୍ ଗିରିବରୋ ରାଜଂସ୍ତ୍ରିକୂଟ ଇତି ବିଶ୍ରୁତଃ । (୮.୨.୯)**

ତ୍ରିକୂଟାଚଳ ପର୍ବତ କ୍ଷୀର ସାଗର ମଧ୍ୟରେ ଅଛି । ସେଠି ଗୋଟିଏ ସୁନ୍ଦର ଉପବନ ଏବଂ ଏକ ବିଶାଳ ସରୋବର ମଧ୍ୟ ଅଛି । ସେଠାରେ ହାତୀମାନଙ୍କର ରାଜା ଗଜେନ୍ଦ୍ର ରହୁଥିଲା ଯିଏ ଅତ୍ୟନ୍ତ ଶକ୍ତିଶାଳୀ ଥିଲା । ସେ ଏତେ ଶକ୍ତିଶାଳୀ ଥିଲା ଯେ ତାକୁ ବାଘ, ସିଂହ, ଭାଲୁ ଆଦି ସମସ୍ତେ ଡରୁଥିଲେ, ଯଦିଓ ସିଂହ ଆକ୍ରମଣ କରି ହାତୀକୁ ମାରିବା ପାଇଁ ସକ୍ଷମ । ଯାହା ଉପରେ ସେହି ଗଜେନ୍ଦ୍ରଙ୍କର କୃପା ହେଉଥିଲା ସେ ନିର୍ଭୟ ହୋଇଯାଉଥିଲା । ମାଈ ହାତୀମାନଙ୍କ ସମୂହ ତା ସହିତ ଚାଲୁଥିଲେ । ଦିନକର କଥା ।

ଗଜରାଜ ନିଜ ମସ୍ତୀରେ ଜଙ୍ଗଲରେ ଯାଉଥିଲେ । ଗୁଲ୍ମ-ଗୁଲ୍ମ ଗଛମାନଙ୍କୁ ଓପାଡି ଫିଙ୍ଗି ଦେଉଥିଲେ, କାରଣ ତାଙ୍କୁ ନିଜର ଶକ୍ତିର ଅତ୍ୟନ୍ତ ଅଭିମାନ ଥିଲା । ଗଜରାଜ ଯେତେବେଳେ ବିଶାଳ ସରୋବର ଦେଖିଲେ ତ ଗାଧୋଇବା ପାଇଁ ଓହ୍ଲାଇ ପଡିଲେ । ସେମିତି ମଧ୍ୟ ଗ୍ରୀଷ୍ମଋତୁର ମଧ୍ୟାହ୍ନ । ତାଙ୍କ ସାଥିମାନଙ୍କୁ ମଧ୍ୟ ଶୋଷ ଲାଗୁଥିଲା । ସେହି ସମୁଦ୍ର ପରି ବିଶାଳ ସରୋବରରେ ଦୈବବଶତ ଗୋଟିଏ ବିରାଟ, ବିଶାଳକାୟ ଭୟଙ୍କର କୁମ୍ଭୀର ରହିଥିଲା । ହାତୀ ଭୂମି ଉପରେ ରହିବା ପ୍ରାଣୀ । ତେଣୁ ପାଣିରେ ତାର ବଳ କମ । କୁମ୍ଭୀର ତ ପାଣିରେ ରହିବା ପ୍ରାଣୀ । ସେ ଗଜେନ୍ଦ୍ରଙ୍କର ଗୋଡକୁ ଧରି ପକେଇଲା ଏବଂ ତାଙ୍କୁ ତଳକୁ ଟାଣିବାକୁ ଲାଗିଲା । ଗଜେନ୍ଦ୍ରଙ୍କୁ ନିଜ ବଳ ଉପରେ ବହୁତ ଭରସା ଥିଲା । ସେ ନିଜର ସମ୍ପୂର୍ଣ୍ଣ ଶକ୍ତି ଲଗେଇ ନିଜକୁ ବଞ୍ଚାଇବାର ଚେଷ୍ଟା କଲେ କିନ୍ତୁ ବଞ୍ଚେଇ ପାରିଲେ ନାହିଁ । ତାଙ୍କ ସହିତ ଥିବା ସମସ୍ତ ହାତୀମାନେ ତାଙ୍କୁ ଧରି ଟାଣିବାକୁ ଲାଗିଲେ କିନ୍ତୁ କିଛି ଲାଭ ହେଲା ନାହିଁ । ସେତେବେଳେ ସେ ଭାବିଲେ ଯେ -

**ନ ମାମିମେ ଜ୍ଞାତୟ ଆତୁରଂ ଗଜାଃ**
**କୁତଃ କରିଣ୍ୟଃ ପ୍ରଭବନ୍ତି ମୋଚିତୁମ୍ ।**
**ଗ୍ରାହେଣ ପାଶେନ ବିଧାତୁରାବୃତୋଽପ୍ୟହଂ**
**ଚ ତଂ ୟାମି ପରଂ ପରାୟଣମ୍ ॥ (୮.୨.୩୨)**

ଏମାନେ ମଧ୍ୟ ମୋତେ ବଞ୍ଚେଇ ପାରିବେ ନାହିଁ । ଦେଖିଲେ ତ, ଆମକୁ ମଧ୍ୟ ପ୍ରଥମେ ଏଇଆ ହିଁ ଲାଗେ ଯେ ଆମେ ନିଜ ବଳ ଦ୍ୱାରା ସବୁ କିଛି କରିପାରିବା । ଗଜେନ୍ଦ୍ରଙ୍କୁ ମଧ୍ୟ ଲାଗିଲା ଯେ ସେ ନିଜ ଶକ୍ତି ଦ୍ୱାରା ନିଜକୁ ମୁକ୍ତ କରି ନେବେ, କିନ୍ତୁ ଯେତେବେଳେ କରିପାରିଲେ ନାହିଁ ସେତେବେଳେ ସେ ଭାବିଲେ ଯେ ତାଙ୍କ ବନ୍ଧୁ-ବାନ୍ଧବ, ତାଙ୍କୁ ମୁକ୍ତ କରିଦେବେ । କିନ୍ତୁ ସେମାନେ ମଧ୍ୟ ପାରିଲେନି । ଗୋଟିଏ ଜୀବ ଯଦି ନିଜ ରକ୍ଷା ପାଇଁ ଅନ୍ୟ ଜୀବ ପାଖକୁ ଯିବ ତାହାଲେ ଲାଭ କଣ ? ଅନ୍ତତଃ ସେ ବୁଝିଗଲେ ଯେ ଅନ୍ୟ ଅଳ୍ପଶକ୍ତି ଥିବା ପ୍ରାଣୀମାନଙ୍କ ପାଖକୁ ଗଲେ କିଛି ଲାଭ ହେବନି । ସର୍ବଶକ୍ତିମାନ ଭଗବାନ ହିଁ ମୋତେ ବଞ୍ଚେଇ ପାରିବେ । ମୋତେ ଅନ୍ୟ କେହି ବଞ୍ଚେଇ ପାରିବେ ନାହିଁ । କାହା ପାଖରେ ଏପରି ଶକ୍ତି ନାହିଁ । ତେଣୁ ମୋତେ ସେହି ଭଗବାନଙ୍କ ଶରଣକୁ ଯିବା ଉଚିତ୍ ।

ଜଣେ ବ୍ୟକ୍ତି ମୋତେ ପଚାରିଲେ ଯେ ଗଜେନ୍ଦ୍ର ଭଗବାନଙ୍କ ଶରଣକୁ ଯିବା ସ୍ଥାନରେ କୁମ୍ଭୀରର ଶରଣ କାହିଁକି ପଶିଲାନି ? ସେ ନିଜକୁ ମୁକ୍ତ କରିବା ପାଇଁ ଚାହୁଁଥିଲା ତ ? ଯଦି ସେ କୁମ୍ଭୀରକୁ କହିଥାନ୍ତା ଯେ ମୁଁ ତୁମ ଶରଣ ପଶୁଛି । ତୁମେ ମୋତେ ଛାଡ଼ିଦିଅ । ତ ସେହି କୁମ୍ଭୀର ତାଙ୍କୁ ଛାଡ଼ି ଦେଇଥାଆନ୍ତା । ମୁଁ କହିଲି - କୁମ୍ଭୀର ଯେ ତାକୁ ଛାଡିଦେବ ଏହା ନିଶ୍ଚିତ ନୁହଁ । ଦ୍ୱିତୀୟ କଥା କୁମ୍ଭୀର ମଧ୍ୟ ଏକ ଜୀବ । ଜୀବର ଶରଣ ଭଲା କାହିଁକି ପଶିବ ? ସେଥିରୁ କଣ ପ୍ରାପ୍ତ ହେବ । ଅତି ବେଶୀ ହେଲେ କୁମ୍ଭୀର କଣ କରିପାରିବ ? ତାଙ୍କୁ ଖାଲି ଛାଡି ଦେବ । ସେହି କୁମ୍ଭୀର ତାକୁ ମୁକ୍ତି ତ ଦେଇ ପାରି ନ ଥାନ୍ତା, ନା ହିଁ ମୋକ୍ଷ ଦେଇ ପାରି ଥାଆନ୍ତା । ଏଠି ଗଜେନ୍ଦ୍ରଙ୍କ ମାନସିକତା ଦେଖନ୍ତୁ । ହରିଙ୍କୁ ଡାକିବାର କାରଣ ହେଲା ଯେ ସେ କୁମ୍ଭୀର ଠାରୁ ମୁକ୍ତି ଦେଇପାରିବେ କିନ୍ତୁ ପରେ ଗଜେନ୍ଦ୍ରଙ୍କୁ ଲାଗିଲା ଯେ ଭଗବାନ ମୋତେ କେବଳ କୁମ୍ଭୀର କବଳରୁ ନୁହଁ ବରଂ ସଂସାର ସାଗରରୁ ମଧ୍ୟ ମୁକ୍ତ କରିଦେବେ । ସେ ଭଗବାନଙ୍କୁ ଡାକିବାକୁ ଲାଗିଲା । ସନ୍ଥ ଶିରୋମଣି ସୁରଦାସ ଗୋଟିଏ ସୁନ୍ଦର ପଦ ଲେଖିଛନ୍ତି ।

**ହେ ଗୋବିନ୍ଦ, ହେ ଗୋପାଳ ହେ ଗୋବିନ୍ଦ ରାଖୋ ଶରଣ**

**ଅବ ତୋ ଜୀବନ ହାରେ .....**

ହେ ଭଗବାନ୍ ! ମୁଁ ନିଜର ସମ୍ପୂର୍ଣ୍ଣ ଶକ୍ତି ଖଟେଇ ଦେଖି ସାରିଲିଣି । କିନ୍ତୁ କିଛି କରି ପାରିଲିନି । କୁହାଯାଏ - **'ସମାପ୍ତା ମମ ଯୁକ୍ତୟଃ'** । ମୋର ଯେତେ ଶକ୍ତି ଥିଲା, ଯେତେ ଯୁକ୍ତି ଥିଲା, ମୁଁ ସବୁର ବିନିଯୋଗ କରି ଦେଖି ସାରିଛି । 'ଅବ ତୋ ଜୀବନ ହାରେ' ଆଉ ସହି ହେଉନାହିଁ । ମୁଁ ନିଜକୁ ରକ୍ଷା କରିପାରୁନି । 'ସୁର କହେ ଶ୍ୟାମ ସୁନୋ ଶରଣ ହୁଁ ତିହାରେ' ।

ଏପରି କଥା ପ୍ରଚଳିତ ଅଛି ଯେ ଗଜେନ୍ଦ୍ରଙ୍କୁ ପୂର୍ବଜନ୍ମ ମାନଙ୍କର ସ୍ମୃତି ଆସିଲା । ପୂର୍ବଜନ୍ମରେ ସେ ଭଗବାନଙ୍କର ଯେଉଁ ସ୍ତୁତି କରିଥିଲେ । ତାକୁ ସ୍ମରଣ କରି ସେ ସ୍ତୁତି ଆରମ୍ଭ କଲେ -

**ଓଁ ନମୋ ଭଗବତେ ତସ୍ମୈ ଯତ ଏତଚ୍ଚିଦାତ୍ମକମ୍ ।**

**ପୁରୁଷାୟଦିବୀଜାୟ ପରେଶାୟାଭିଧୀମହି ॥ (୮.୩.୨)**

**ଯସ୍ମିନ୍ନିଦଂ ଯତଶ୍ଚେଦଂ ଯେନେଦଂ ଯ ଇଦଂ ସ୍ୱୟମ୍ ।**

**ୟୋଽସ୍ମାତ୍ ପରସ୍ମାଚ୍ଚ ପରସ୍ତଂ ପ୍ରପଦ୍ୟେ ସ୍ୱୟମ୍ଭୁବମ୍ ॥ (୮.୩.୩)**

ପୂର୍ବ ଜନ୍ମରେ ଗଜରାଜ 'ଇନ୍ଦ୍ରଦ୍ୟୁମ୍ନ' ନାମକ ରାଜା ଥିଲେ । ଥରେ ଅଗସ୍ତ୍ୟ ଋଷି ଆସିବା ସମୟରେ ସେ ଧ୍ୟାନ-ପୂଜାରେ ବସିଥିବା ଯୋଗୁଁ ଉଠିଲେ ନାହିଁ । ଅଗସ୍ତ୍ୟ ଋଷି ଅଭିଶାପ ଦେଲେ ଯେ ତୁମେ ଏଠାରେ ସ୍ତବ୍ଧ ହୋଇ ବସି ରହିଲ । ତୁମର ବୁଦ୍ଧି ଗୋଟିଏ ଗଜ ପରି ସ୍ତବ୍ଧ ହୋଇ ଯାଇଛି, ତୁମେ ଗୋଟିଏ ଗଜ ହେଇଯାଅ । ତାଙ୍କରି ଶାପ ଯୋଗୁଁ ସେ ହାତୀ ହୋଇଗଲେ । କିନ୍ତୁ ସେହି ଜନ୍ମରେ ସେ ଯେଉଁ ସ୍ତୋତ୍ରଗୁଡ଼ିକ ମନେ ରଖିଥିଲେ, ସେ ଗୁଡ଼ିକ ପୁଣି ତାଙ୍କର ମନେ ପଡ଼ିଗଲେ ଏବଂ ସେ ସେହି ସ୍ତୋତ୍ର ଗୁଡ଼ିକ ବୋଲି ଭଗବାନଙ୍କୁ ଡାକିବାକୁ ଲାଗିଲେ ।

**ନମଃ ଶାନ୍ତାୟ ଘୋରାୟ ମୂଢାୟ ଗୁଣଧର୍ମିଣେ ।**

**ନିର୍ବିଶେଷାୟ ସାମ୍ୟାୟ ନମୋ ଜ୍ଞାନଘନାୟ ଚ ॥ (୮.୩.୧୨)**

ଏଠାରେ ବିଶେଷ ଭାବରେ ଗୋଟିଏ କଥା ଦେଖିବା ଯେ ଗଜେନ୍ଦ୍ର ବ୍ରହ୍ମାଙ୍କ ନାମ ଧରିଲେ ନାହିଁ । ସେ ମହେଶଙ୍କ ନାମ ମଧ୍ୟ ଧରିଲେ ନାହିଁ । ତେଣୁ ଭଗବାନ ଭାବିଲେ ଯେ ଇଏ ତ କୌଣସି ବିଶେଷ ଦେବତାଙ୍କୁ ଡାକୁନି, ଏହାର ଅର୍ଥ ହେଲା ଯେ ସେ କେବଳ ମୋତେ ହିଁ ଡାକୁଛି । ଏଠାରେ କୁହାଯାଏ ଯେ ସେହି ସମୟରେ ଭଗବାନ ଭୋଜନ କରୁଥିଲେ । ଯେମିତି ସେ ଏହି ଶବ୍ଦ ଶୁଣିଲେ -

**ଦ୍ୱାରକା ମେଁ ଶୋଦ୍ଦଗୟୋ ଶୋର ଭୟୋ ଭାରେ ।**

**ଶଙ୍ଖ-ଚକ୍ର-ଗଦା-ପଦ୍ମ ଗରୁଡ ଲେ ସିଧାରେ ॥**

ଭଗବାନ ସବୁ କିଛି ଛାଡ଼ି ଜଲଦି ଦୌଡ଼ିଲେ । ତାଙ୍କ ବାହନ ଗରୁଡ଼, ଭାବିଲେ ଭଗବାନ ଜଲ୍‌ଦି ଯିବେ ତେଣୁ ଆସିଗଲେ । କିନ୍ତୁ ଗରୁଡ଼ ତାଙ୍କୁ ନେଇ ଗଲା ବେଳେ ସେ ଭାବିଲେ ଯେ ଗରୁଡ଼ ବହୁତ ଧୀରେ-ଧୀରେ ଉଡୁଛି । ତେଣୁ ସେ ଗରୁଡ଼ଙ୍କୁ ବି ଛାଡିଦେଲେ ଏବଂ ମନର ଗତିରେ ଗଜେନ୍ଦ୍ରଙ୍କ ପାଖରେ ପହଞ୍ଚି ଗଲେ । ଦେଖିଲେ ତ କି ବିଲକ୍ଷଣ କଥା ? ଆମକୁ ଜଲଦି କୋଉଠିକୁ ଯିବାକୁ ହେଲେ ଆମେ କୌଣସି ବାହନ ନେଉ। ଆଉ ଭଗବାନଙ୍କୁ ଜଲଦି ଯିବାର ଥିଲେ ସେ ବାହନ ଛାଡ଼ି ଦିଅନ୍ତି । କେମିତି ହେଇଥିବ ତାଙ୍କ ଗତି ? ଭଗବାନ ସେଠାକୁ ଦୌଡ଼ିଗଲେ ଏବଂ କ୍ଷଣଟିଏ ବି ବିଳମ୍ବ ନ କରି ସେ ନିଜ ଚକ୍ର ଦ୍ୱାରା କୁମ୍ଭୀରକୁ ମାରି ଦେଲେ । ମନେ ରଖିବେ, ଭଗବାନ ଯାହାକୁ ବି ମାରି ଦିଅନ୍ତି, ତାର ଉଦ୍ଧାର ହୁଏ । ସେ କୁମ୍ଭୀରକୁ ମାରି ଦେଲେ ତାର ମଧ୍ୟ ଉଦ୍ଧାର ହେଇଗଲା । ଅତ୍ୟନ୍ତ ଆଶ୍ଚର୍ଯ୍ୟର କଥା ଯେ ଗଜେନ୍ଦ୍ରକୁ ଉଦ୍ଧାର କରିବା ପୂର୍ବରୁ ଭଗବାନ କୁମ୍ଭୀରର ଉଦ୍ଧାର କରି ଦେଲେ । କାହିଁକି ? କାରଣ ସେହି କୁମ୍ଭୀର ଭକ୍ତର ପାଦ ଧରିଥିଲା । ଏହା ଅତ୍ୟନ୍ତ ରହସ୍ୟର କଥା, ଯାହାକୁ ଆମେ ଶୀଘ୍ର ବୁଝିପାରୁନେ । ଯିଏ ଭକ୍ତର ଶରଣ ନିଏ, ଭଗବାନ କେବଳ ତାର ରକ୍ଷା କରନ୍ତି ନାହିଁ ବରଂ ତାର ଉଦ୍ଧାର ମଧ୍ୟ କରି ଦିଅନ୍ତି ।

ଏହି କୁମ୍ଭୀର ପୂର୍ବ ଜନ୍ମରେ 'ହୂହୂ' ନାମକ ଗନ୍ଧର୍ବ ଥିଲା । ଏବେ ତାକୁ ମଧ୍ୟ ନିଜର ପୂର୍ବଦେହ ପ୍ରାପ୍ତ ହେଲା । ମନେ ରଖିବେ, ଗଜେନ୍ଦ୍ର ଏବେ କେବଳ ନିଜକୁ କୁମ୍ଭୀର କବଳରୁ ମୁକ୍ତ କରିବା ପାଇଁ ଭଗବାନଙ୍କୁ କହୁନାହାନ୍ତି । ଏବେ ସେ ସଂସାର-ବନ୍ଧନରୁ ମୁକ୍ତ କରିବା କଥା କହୁଛନ୍ତି ।

ଆମର ସ୍ଥିତି ମଧ୍ୟ ଗଜେନ୍ଦ୍ରଙ୍କ ପରି । ଆମର ନିଜ ଶକ୍ତି ପାଇଁ ବହୁତ ଅହଂକାର ହୁଏ । ଆମ ଆଖ-ପାଖରେ ବୁଲୁଥିବା ଲୋକମାନଙ୍କ ଉପରେ ମଧ୍ୟ ଆମର ବଡ଼ ଭରସା ଥାଏ ଯେ ସେମାନେ ଆମକୁ ବଞ୍ଚେଇ ଦେବେ । କେବେ ଏକୁଟିଆ କୋଉ ଅନ୍ୟ ଜାଗାକୁ ଗଲେ ଆମକୁ ଲାଗେ ଯେ ସେଠାରେ ଆମର କେହି ନିଜର ବୋଲି ନାହିଁ । ତାହେଲେ ତୁମକୁ ନିଜ ଲୋକଙ୍କ ଉପରେ ବହୁତ ଭରସା ଅଛି ? ଆମକୁ ଲାଗେ ସମୟ ଆସିଲେ ସେମାନେ ଆମକୁ ସାହାରା ଦେବେ । ଆଉ ଗୋଟିଏ କଥା, କେବଳ ବିଷୟ ସୁଖରେ ଆସକ୍ତ ଇନ୍ଦ୍ରିୟଗୁଡିକ ପାଇଁ 'ନୀର ପିବନ ହେତୁ ଗୟୋ' ଆମେ

ମାନେ ମଧ୍ୟ ସରୋବରକୁ ଯାଉ, ପାଣି ପିଇବା ପାଇଁ। ଅର୍ଥାତ୍ ଏହି ସଂସାରକୁ ଆସୁ ସୁଖ ପାଇବା ପାଇଁ । ଆମେ ଜାଣିନୁ ଯେ ଏଠାରେ କାଳରୂପୀ କୁମ୍ଭୀର (ତାକୁ କାଳରୂପୀ କୁହ ବା କାମରୂପୀ) ଜଗି ବସିଛି । ସେ ଆମର ପ୍ରତୀକ୍ଷା କରୁଛି, ଆସିଲା ମାତ୍ରେ ଗୋଡ଼ ଧରି ପକେଇବା ପାଇଁ ଉଦ୍ୟତ, ପ୍ରସ୍ତୁତ ହୋଇ ବସିଛି । ମନେ ରଖନ୍ତୁ କାଳ ମଧ୍ୟ ମନୁଷ୍ୟ ଗୋଡ଼କୁ ହିଁ ପ୍ରଥମେ ଧରେ । ମୃତ୍ୟୁ ସମୟରେ ପ୍ରଥମେ ମନୁଷ୍ୟର ଗୋଡ଼ ଥଣ୍ଡା ପଡ଼ି ଯାଏ, କାରଣ କାଳ ପ୍ରଥମେ ଗୋଡ଼କୁ ଧରି ପକାଏ । ତଥାପି ଆମେ ଶେଷ ସମୟରେ ମଧ୍ୟ ଏ ଡାକ୍ତରକୁ ଡାକ, ସେ ଡାକ୍ତରକୁ ଡାକ - କହୁଥାଉ । ଅକ୍ସିଜେନ ନେଇ-ନେଇ କେତେ ଦିନ ବଞ୍ଚିବ । ଲୋକମାନଙ୍କୁ ଲାଗେ ଅକ୍ସିଜେନ ନେଉଛି ବୋଲି ବଞ୍ଚିଛି । ଆରେ, ଅକ୍ସିଜେନ ଯଦି ବଞ୍ଚେଇ ଦେଉଥାନ୍ତା ତେବେ କେହି କେବେ ମରନ୍ତେ ନାହିଁ । ଅକ୍ସିଜେନ ତ ବହୁତ ଅଛି । ବଞ୍ଚିଥିଲା ପର୍ଯ୍ୟନ୍ତ ଅକ୍ସିଜେନ ଦେବେ, ମରିଗଲା ପରେ ଅକ୍ସିଜେନ କିଛି କାମ ଦିଏନି । ତାକୁ ବି କାଢି ନେବାକୁ ପଡ଼େ ।

ଗଜେନ୍ଦ୍ର ମୋକ୍ଷ କୌଣସି ସାଧାରଣ ଜରା-ବନ୍ଧନରୁ ମୁକ୍ତି ପାଇବା ବିଷୟ ନୁହଁ, ଏହା ସଂସାର ବନ୍ଧନରୁ ମୁକ୍ତିର ବିଷୟ ଅଟେ । ପ୍ରକୃତରେ ଏହି ସଂସାର-ବନ୍ଧନ ସେତେବେଳେ ଶେଷ ହୁଏ ଯେତେବେଳେ ଆମେ ଭଗବାନଙ୍କ ଶରଣକୁ ଯାଉ ।

ଭଗବାନ ପ୍ରକଟ ହେବାରୁ ଗଜେନ୍ଦ୍ର ତାଙ୍କର ସ୍ତୁତି କଲେ । ଭଗବାନ ତ ଏପର୍ଯ୍ୟନ୍ତ କହିଦେଲେ ଯେ ତୁମେ ଯେଉଁ ସ୍ତୁତି କଲ ସେହି ସ୍ତୁତି ଦ୍ୱାରା ଯଦି କେହି ମୋର ପୂଜା, ଉପାସନା କରିବ, ମୁଁ ତା ଉପରେ ପ୍ରସନ୍ନ ହେବି ।

**ଯେ ମାଂ ସ୍ତୁବନ୍ତ୍ୟନେନାଂଗ ପ୍ରତିବୁଧ୍ୟ ନିଶାତ୍ୟୟେ ।**
**ତେଷାଂ ପ୍ରାଣାତ୍ୟୟେ ଚାହଂ ଦଦାମି ବିମଲାଂ ମତିମ୍ ॥ (୮.୪.୨୫)**

ମନେରଖନ୍ତୁ, ଏହି ସଂଦର୍ଭ ଆମକୁ ଗୋଟିଏ କଥା ମନେ ରଖିବାକୁ ପଡିବ ଯେ **'ଏତାବାନ୍ ଏବ ପରୋ ଲାଭଃ ଅନ୍ତେ ନାରାୟଣ ସ୍ମୃତିଃ'** ଜୀବନର ସବୁଠାରୁ ବଡ ଲାଭ ହେଲା ମୃତ୍ୟୁ ସମୟରେ ଭଗବାନଙ୍କର ସ୍ମରଣ ହେବା । ଏଠାରେ ଭଗବାନ କହୁଛନ୍ତି ଯେ ଯେଉଁ ଲୋକମାନେ ନିତ୍ୟ ପ୍ରତି ପ୍ରାତଃ କାଳରେ ଉଠି ଏହି ସ୍ତୁତିକୁ ପାଠ କରନ୍ତି, ଅନ୍ତକାଳରେ ମୁଁ ତାଙ୍କୁ ସଦ୍‌ବୁଦ୍ଧି ଦିଏ । କହିଲେ ଦେଖି ଆଉ କଣ ଦରକାର ? ଭଗବାନ କହିଲେ - ଯଦି କେହି ପ୍ରତିଦିନ ଏହାର ପାଠ କରି ମୋତେ ପ୍ରସନ୍ନ କରି ପାରିବ ତେବେ ଶେଷ ସମୟରେ ମୋର ସ୍ମରଣ ଅବଶ୍ୟ ହେବ । ଏହା ମୋ ଉତ୍ତର ଦାୟିତ୍ୱ । ଭଲା ଏହାଠାରୁ ବଳି ଆଉ କଣ ହୋଇପାରେ । କିନ୍ତୁ ଏହି ଜୀବ କଣ

ଭଗବାନଙ୍କ ଠାରୁ କମ କି ? ଭଗବାନ କୁହନ୍ତି, "ମୁଁ ତୁମର ଉଦ୍ଧାର କରିବା ପାଇଁ ତତ୍ପର । ଜୀବ କୁହେ,"ହଉ ବାଜି ରହିଲା, ଦେଖିବା ତୁମେ ମୋର ଉଦ୍ଧାର କେମିତି କରିପାରିବ ।"

ପ୍ରାୟଃ ଦେଖାଯାଏ ଯେ ଆମେ ସାଧାରଣ ଗୋଟିଏ ନିୟମ କରିବା ପାଇଁ ଭାବୁ ଯେ 'ବ୍ରହ୍ମାର୍ପଣ' କରି ସାରି ଖାଇବି । ଆଉ ହୁଏ କଣ ? ପ୍ରଥମ ଗୁଣ୍ଡାଟି ଖାଇସାରିବା ପରେ ମନେ ପଡେ ଯେ ଖାଇବା ଆଗରୁ ତ ଭଗବାନଙ୍କୁ ସ୍ମରଣ କଲିନି । ଏଇ ମନଟା ଏଇମିତି ଯେ ସ୍ମରଣ କରେଇ ଦେବନି । ଆମେ ନିଶ୍ଚୟ କରିବା ଯେ ସକାଳୁ ଉଠିଲା ମାତ୍ରେ ଭଗବାନଙ୍କୁ ସ୍ମରଣ କରିବି । ଆର ଦିନ ଉଠିଲା ବେଳକୁ କଣ ହୁଏ ? ମନ ସ୍ମରଣ କରେଇ ଦିଏ କି ? ଆଖି ଖୋଲିଲା ମାତ୍ରେ ମନ କହିବ ଆଉ ଟିକିଏ ଗଡିପଡ଼, ଶୋଇପଡ଼ । ଆମ ମନ ଆମକୁ ଭଗବାନଙ୍କ ନାମ ନେବାକୁ ଦିଏ ନାହିଁ । ଟିକିଏ କରିକି ଦେଖ । ଚେଷ୍ଟା କର । ଏଠି ଗଜେନ୍ଦ୍ର ମୋକ୍ଷର ସୁନ୍ଦର କାହାଣୀଟି ସମାପ୍ତ ହେଲା । ଆଗକୁ ଅନ୍ୟ ମନ୍ୱନ୍ତରମାନଙ୍କ କଥା ଦେଖିବା ।

ପଞ୍ଚମ ମନ୍ୱନ୍ତରରେ ଭଗବାନ ବୈକୁଣ୍ଠ ନାମକ ଅବତାର ଗ୍ରହଣ କଲେ । ତାର ସଂକ୍ଷେପରେ ବର୍ଣ୍ଣନ କରି ସାରି ଶୁକଦେବ କହିଲେ -

ଷଷ୍ଠ ମନ୍ୱନ୍ତରରେ ଭଗବାନ **'ଅଜିତ'** ନାମକ ଅଂଶାବତାର ଗ୍ରହଣ କଲେ ଏବଂ ସମୁଦ୍ର ମନ୍ଥନ ସମୟରେ ସେ ହିଁ ଦେବତା ଏବଂ ଅସୁରମାନଙ୍କୁ ସାହାଯ୍ୟ କରିଥିଲେ । ଏତିକି କହି ଶୁକଦେବ ମୌନ ହୋଇଗଲେ । ପୁଣି ରାଜା ପରୀକ୍ଷିତ କହିଲେ, "କୃପା ପୂର୍ବକ ମୋତେ ଏହି ସମୁଦ୍ର ମଂଥନର କଥା ବିସ୍ତୃତ ଭାବରେ ଶୁଣାନ୍ତୁ ।"

## ଭଗବାନ ଅଜିତ୍‌ଙ୍କୁ ବ୍ରହ୍ମାଙ୍କ ପ୍ରାର୍ଥନା

ଶୁକଦେବ କହିଲେ - ଥରେ ଋଷି ଦୁର୍ବାସା ଦେବତାମାନଙ୍କ ଉପରେ ରାଗି ଗଲେ ଏବଂ ଦେବତାମାନଙ୍କୁ ଅଭିଶାପ ଦେଇଦେଲେ । ସମସ୍ତ ଦେବତାମାନେ ତେଣୁ ଶକ୍ତିହୀନ ହେଇଗଲେ । ଅସୁରମାନଙ୍କୁ ଭଲ ଅବସର ମିଳିଗଲା । ସେମାନେ ଦେବତାମାନଙ୍କ ଉପରେ ଆକ୍ରମଣ କରି ଦେଲେ ଏବଂ ବିଜୟୀ ହେବାକୁ ଲାଗିଲେ । ସବୁ ଦେବତାମାନେ ଦୁଃଖୀ ହେଇଗଲେ ଯେ ଏବେ କଣ କରାଯିବ । ସେମାନେ ସମସ୍ତେ ମିଶି ନିଜ ସ୍ୱାମୀ ବ୍ରହ୍ମାଙ୍କ ପାଖକୁ ଗଲେ ଏବଂ ତାଙ୍କୁ କହିଲେ ଯେ ଆପଣ କିଛି କରନ୍ତୁ । ବ୍ରହ୍ମା କାହାର କିଛି କରନ୍ତି ନାହିଁ । ସମସ୍ତଙ୍କୁ ବର ଦେଇ ଦିଅନ୍ତି । କିନ୍ତୁ କାହାରି

ସଂକଟ ଦୂର କରିପାରନ୍ତି ନାହିଁ । ବ୍ରହ୍ମା ଦେବତାମାନଙ୍କୁ କହିଲେ- ଚାଲ, ଭଗବାନ ନାରାୟଣଙ୍କ ପାଖକୁ ଯିବା । ସେହି ସମସ୍ତଙ୍କର ମୁଖିଆ । ଦେଖନ୍ତୁ, ଭଗବାନ ଆରାମରେ ଶୋଇଥାଆନ୍ତି । ବ୍ରହ୍ମାଦି ତାଙ୍କୁ ନିଦରୁ ଉଠାନ୍ତି । ଭଗବାନଙ୍କ ଧାମରେ ପହଞ୍ଚିଲା ପରେ, ସେମାନଙ୍କୁ କିଛି ଦିଶିଲା ନାହିଁ ।

**ନମୋଽସ୍ତୁ ତସ୍ମୈ ଉପଶାନ୍ତଶକ୍ତୟେ**
**ସ୍ୱାରାଜ୍ୟଲାଭପ୍ରତିପୂରିତାତ୍ମନେ ।**
**ଗୁଣେଷୁ ମାୟାରଚିତେଷୁ ବୃତ୍ତିଭି -**
**ର୍ନ ସଜ୍ଜମାନାୟ ନଭସ୍ୱଦୂତୟେ । (୮.୫.୪୪)**

ତେଣୁ ସମସ୍ତଙ୍କୁ ସାଂଗରେ ନେଇ ବ୍ରହ୍ମା ଭଗବାନଙ୍କ ସ୍ତୁତି କରିବାକୁ ଲାଗିଲେ । କହିଲେ, "ଭଗବାନ୍! ଆମେ ଆପଣଙ୍କ ଶରଣକୁ ଆସିଛୁ । ଆପଣ ତ ଶାନ୍ତ ସ୍ୱଭାବର । ନିଜ ସ୍ୱରୂପରେ ସ୍ଥିତ ରୁହନ୍ତି । ଆପଣଙ୍କୁ କୌଣସି କଥାରେ ନା ଦୁଃଖ ହୁଏ ନା ସୁଖ, କିନ୍ତୁ ଆମେ ତ ଦୁଃଖରେ ପଡିଛୁ । ଆପଣ ଆମ ଦୁଃଖକୁ ଦୂର କରନ୍ତୁ ।" ପ୍ରସନ୍ନ ହେଇ ଭଗବାନ ଯେତେବେଳେ ସେଠାରେ ପ୍ରକଟ ହେଲେ, ସେତେବେଳେ ସବୁ ଦେବତାମାନଙ୍କର ଆଖି ସ୍ୱତଃ ବନ୍ଦ ହେଇଗଲା । ସେମାନେ ତାଙ୍କୁ ଦେଖିପାରିଲେ ନାହିଁ କାରଣ ତାଙ୍କର ତେଜ ହଜାରେ ସୂର୍ଯ୍ୟଙ୍କ ସମାନ ଥିଲା । ବ୍ରହ୍ମା ଏବଂ ଶିବ ହିଁ ତାଙ୍କୁ ଦେଖିପାରନ୍ତି । କିଛି ସମୟ ପରେ ଟିକିଏ ସମ୍ଭାଳି ନେଇ ଦେବତାମାନେ ତାଙ୍କୁ ସାଷ୍ଟାଙ୍ଗ ପ୍ରଣାମ କଲେ । ତାପରେ ବ୍ରହ୍ମା କହିଲେ, ପୂର୍ବରୁ କେବଳ ଆପଣ ହିଁ ଥିଲେ । ଏବେ ବର୍ତ୍ତମାନ ମଧ୍ୟ କେବଳ ଆପଣ ହିଁ ଅଛନ୍ତି, ଭବିଷ୍ୟରେ ମଧ୍ୟ କେବଳ ଆପଣ ହିଁ ରହିବେ। ଆପଣଙ୍କ ମଧ୍ୟରେ ହିଁ ଏହି ସୃଷ୍ଟିର ଆରମ୍ଭ । ସର୍ଗ ଏବଂ ସ୍ଥିତି ଏବଂ ଲୟ ଆପଣଙ୍କ ମଧ୍ୟରେ ହିଁ ହୋଇଥାଏ। "ଭଗବାନ୍ , ଆମ ଉପରେ ଗୋଟିଏ ସଂକଟ ଆସିଛି । ଦୟା କରି ତାକୁ ଦୂର କରନ୍ତୁ । ଆପଣଙ୍କ ପାଇଁ ଏହା ଆଦୌ କଠିନ ନୁହଁ ।" ଏହା ଶୁଣି ଭଗବାନ କହିଲେ - ଦେଖ, ତୁମେମାନେ ଧର୍ମ ପୂର୍ବକ ରହୁ ନାହଁ । ସ୍ୱ-କର୍ମ କରୁନାହଁ ଏବଂ ନିଜ ଉପରକୁ ସଂକଟ ଡାକି ଆଣୁଛ । ତାପରେ ମୋ ପାଖକୁ ଆସୁଛ । ତୁମମାନଙ୍କୁ ଲାଗୁଛି ଯେ ମୁଁ କିଛି ଛୁ ମନ୍ତ୍ର ଦ୍ୱାରା ତୁମ ଦୁଃଖ ଦୂର କରି ଦେବି । ଏବେ ଆଉ ଏମତି ହେଇପାରିବ ନାହିଁ । ତୁମେ ସମସ୍ତେ ମଧ୍ୟ ଟିକିଏ କର୍ମ କର । ପ୍ରକୃତରେ ତୁମେମାନେ ଋଷି ମାନଙ୍କର ମଧ୍ୟ ଅପମାନ କରି ଦେଉଛ । ତେଣୁ ଏପରି ନିର୍ବୀର୍ଯ୍ୟ ହେଇଯାଉଛ ।

ବର୍ତ୍ତମାନ ସବୁ ଅସୁରମାନେ ଅତ୍ୟନ୍ତ ଶକ୍ତିଶାଳୀ ହୋଇ ଯାଇଛନ୍ତି ଏବଂ ତାଙ୍କର ମୁଖ୍ୟ ରାଜା ବଳି ରାଜା – ସେ ଅତ୍ୟନ୍ତ ଗୁରୁ ଭକ୍ତ । ତେଣୁ ଏବେ ଯଦି ତୁମେ ତାଙ୍କ ସହ ଯୁଦ୍ଧ କରିବ ତ କିଛି ଲାଭ ହେବ ନାହିଁ। ସବୁ ବେଳେ ଗୋଟିଏ ପକ୍ଷ ଜିତିବ ନାହିଁ କିମ୍ବା ସଫଳତା ସବୁବେଳେ ଜଣକର ଚେଷ୍ଟାରୁ ମିଳେ ନାହିଁ । ବର୍ତ୍ତମାନ ତୁମର ଅସୁରମାନଙ୍କ ସହିତ ମିତ୍ରତା ଉଚିତ ହେବ, କଳହ ନୁହଁ । ସନ୍ଧି କରି ତାଙ୍କୁ କୁହ ଯେ ଆମେ ଉଭୟ ଏମିତି କିଛି ଯୋଜନା କରିବା, ଯାହା ଉଭୟଙ୍କ ପାଇ ଲାଭଦାୟକ ହେବ। ଯେପରି ସମୁଦ୍ର-ମନ୍ଥନ । ସେଥିରୁ ଅମୃତ ବାହାରିବ । ଅମୃତ ସମସ୍ତଙ୍କର ଦରକାର, ଯାହାକୁ ପାଇବାକୁ ସମସ୍ତେ ଚାହିଁବେ ।

ଭଗବାନ ପୁଣି କହିଲେ – ସେମାନେ ପ୍ରସ୍ତୁତ ହୋଇଗଲା ପରେ ତୁମେ ସବୁ ଦେବତା ଏବଂ ଅସୁରମାନେ ମିଶି ଅମୃତ ବାହାର କରିବା ପାଇଁ ଚେଷ୍ଟା କରିବ । ପ୍ରଥମେ ସବୁ ପ୍ରକାରର ଲତା ଏବଂ ଔଷଧମାନଙ୍କୁ ଆଣି କ୍ଷୀର ସମୁଦ୍ରରେ ପକେଇବ । ତାପରେ ମନ୍ଦରାଚଳ ପର୍ବତକୁ ଆଣିବ । ବାସୁକୀ ନାମକ ନାଗ ଅଛି । ମନ୍ଥନ ପାଇଁ ତାକୁ ଦଉଡ଼ି କରିବ । ଗୋଟିଏ ପଟରେ ଦେବତାମାନେ ଏବଂ ଅନ୍ୟ ପଟରେ ଅସୁରମାନେ ରହିବେ । ମୁଁ ତୁମ ମାନଙ୍କ ସହିତ ରହିବି । କିନ୍ତୁ ତୁମେ ଯଦି ଭାବୁଛ ଯେ ମୁଁ ହିଁ ସବୁ କିଛି କରିଦେବି, ସେମିତି ହୋଇ ପାରିବନି । ସେଇଟା ଠିକ୍ କଥା ନୁହଁ । ତାପରେ ଦେବତାମାନେ ଭାବିଲେ ଯେ ରାଜା ବଳି କଣ ଆମ ସହିତ କଥାବାର୍ତ୍ତା ପାଇଁ ରାଜି ହେବେ ? ଭଗବାନ କହିଲେ – ହଁ ହେବ । ଯାଅ ତା ପାଖକୁ । ଏହିପରି ଭଗବାନ ଦେବତାମାନଙ୍କୁ ଭଲ ଭାବରେ ବୁଝେଇ ଦେଲେ । ତାପରେ କହିଲେ ଯେ ସେଠାରେ ଯଦି ରାଜା ବଳି କିଛି ସର୍ତ୍ତ ରଖିବ ତେବେ ତାକୁ ମାନିନେବ, କାରଣ ଏବେ ସେ ଶକ୍ତିଶାଳୀ । ନିଜ ବଳର ଗର୍ବ କରିବ ନାହିଁ । ନିଜର କୌଣସି ଶକ୍ତି ଦେଖେଇବ ନାହିଁ । ନିଜର କୌଣସି ସର୍ତ୍ତ ରଖିବ ନାହିଁ । ସେମାନଙ୍କ କଥା ମୁଁ ବୁଝିବି ।

## ଦେବତାମାନଙ୍କ ଦ୍ୱାରା ସମୁଦ୍ର-ମନ୍ଥନର ପ୍ରସ୍ତାବ

ଭଗବାନଙ୍କ ଆଦେଶ ମାନି ଦେବତାମାନେ ରାଜା ବଳିଙ୍କ ପାଖକୁ ଗଲେ । ଉଭୟଙ୍କ ମିଳନ ବଡ଼ ବିଚିତ୍ର ଥିଲା । ରାଜନୀତିଜ୍ଞମାନଙ୍କର ପରସ୍ପର ସହ ଏହି ଭେଟ ଯେ ଆମେମାନେ ମିଳିମିଶି କିଛି ଗୋଟେ କରିବା, ବଡ ଗଡବଡିଆ କଥା । ଏଠାରେ ଉଭୟେ ଭାବିଲେ ଯେ ଅମୃତ ମିଳିଲେ ଆମେ ନେଇଯିବୁ । ଚେଷ୍ଟା ସାଙ୍ଗହୋଇ କରିବୁ କିନ୍ତୁ ଅମୃତ ମିଳିଗଲେ ଏକୁଟିଆ ନେଇଯିବୁ । ପାର୍ଟନରଶିପର ବ୍ୟବସାୟ କଣ, କେମିତି ହୁଏ ଆପଣ ତ ଜାଣିଛନ୍ତି ।

ମୁଁ ଗୋଟେ ଗପ ଶୁଣିଥିଲି ଯେ ଦୁଇଜଣ ଧନୀ ଲୋକ ଏକା ସାଙ୍ଗରେ ବ୍ୟବସାୟ ଆରମ୍ଭ କଲେ । ଅନେକ ବର୍ଷ ପର୍ଯ୍ୟନ୍ତ ସବୁ ଠିକ୍-ଠାକ୍ ଥିଲା । ଦିନେ କେଜାଣି କେମିତି ଜଣଙ୍କ ଖାଦ୍ୟରେ କିଛି ବିଷାକ୍ତ ଜିନିଷ ଆସିଗଲା, ସେ ଫୁଡ୍ ପଏଜନିଂଗରେ ମରିଗଲା । ମରିବା ସମୟରେ ମରିଯିବ ଜାଣିଲା ପରେ ସେ ସତ୍ୟ ସ୍ୱୀକାର କରିବାକୁ ଚାହିଁଲା । ସେ ନିଜ ସାଙ୍ଗକୁ ଡାକିଲା । ସାଙ୍ଗ ଦୌଡି କରି ଆସିଲା । ପ୍ରଥମ ସାଙ୍ଗ କହିଲା - ଦେଖ, ମୁଁ ମରିବାକୁ ଯାଉଛି । ମୋ ଘରର କଥା ଭଲ କରି ବୁଝୁଥିବ । ମରିବା ପୂର୍ବରୁ ମୁଁ ନିଜ ଅପରାଧ ସ୍ୱୀକାର କରୁଛି ଯେ ବ୍ୟବସାୟରେ ଗଡବଡ କରି ମୁଁ ଦଶଲକ୍ଷ ଟଙ୍କା ମାରି ନେଇଥିଲି । ମରିବା ପୂର୍ବରୁ ମୁଁ ତୁମକୁ ସତ କହୁଛି । ଦ୍ୱିତୀୟ ଲୋକଟି ଲୁହ ଭରା ଆଖିରେ କହିଲା - ତୁମେ ଅପରାଧ ସ୍ୱୀକାର କଲ ତ ମୁଁ ବି ମୋ ଅପରାଧ ସ୍ୱୀକାର କରୁଛି ଯେ ତୁମ ଭୋଜନରେ ମୁଁ ହିଁ ଏହି ବିଷ ମିଶେଇଥିଲି ।

ଠିକ୍ ସେହିପରି, ଭାବିଲେ ଦେଖି ସମୁଦ୍ର-ମନ୍ଥନରୁ ଅମୃତ ବାହାରିଲେ କଣ ଦେବତାମାନେ ଚାହିଁବେ ଯେ ଅସୁର ଅମୃତ ପାଆନ୍ତୁ । ସେମାନେ ତ ପରସ୍ପର ମଧ୍ୟରେ ତା'ର ସମାନ ଭାଗ ମଧ୍ୟ କରିବେ ନାହିଁ, କାରଣ ଅସୁର ତ ପୂର୍ବରୁ ଶକ୍ତିଶାଳୀ ହୋଇଯାଇଛନ୍ତି । ଅମୃତ ଯଦି ସେମାନେ ନେଇଯିବେ ତ ଆହୁରି ଶକ୍ତିଶାଳୀ ହେଇଯିବେ । ଦେବତାମାନେ ଏହା ଚାହିଁବେ କି ?

## ସମୁଦ୍ର-ମନ୍ଥନ

ଦେବତାମାନେ ରାଜା ବଳିଙ୍କ ପାଖରେ ପହଞ୍ଚିଲା ପରେ ଇନ୍ଦ୍ରଦେବ ତାଙ୍କ ସାମନାରେ ନିଜର ପ୍ରସ୍ତାବ ରଖିଲେ । ରାଜା ବଳି ଶୁଣିଲେ, ବିଚାର କଲେ, ତାପରେ କହିଲେ - ଠିକ୍ ଅଛି, ଚାଲ ଆରମ୍ଭ କରିବା । ଉଭୟଙ୍କ ମଧ୍ୟରେ ସନ୍ଧି ହେଲା, ଜଡିବୁଟି ଆଣିବା ତ କଠିନ କାମ ନୁହଁ । ସବୁ ନେଇ ଆସିଲେ ଏବଂ ସମୁଦ୍ରରେ ପକେଇଲେ । କିନ୍ତୁ ମନ୍ଦରାଚଳ ପର୍ବତକୁ ଉଠେଇ ଆଣିବା ଥିଲା ଏକ କଠିନ କାମ । ରାକ୍ଷସ ଏବଂ ଦେବତା ସମସ୍ତେ ସେହି ପର୍ବତ ପାଖକୁ ଗଲେ । ବହୁତ ଚେଷ୍ଟା କରି ତାକୁ ଉଠେଇ କିଛି ଦୂର ପର୍ଯ୍ୟନ୍ତ ନେଇ ଆସିଲେ । କୌଣସି ଜିନିଷକୁ ଉଠେଇବାରେ ପ୍ରଥମେ ତ କିଛି କଷ୍ଟ ହୁଏ ନାହିଁ କିନ୍ତୁ କିଛି ସମୟ ପରେ ତା'ର ଓଜନ ଅନୁଭବ ହୁଏ । ସେମାନେ ପର୍ବତକୁ ଉଠେଇଲେ କିନ୍ତୁ ଅଳ୍ପ ବାଟ ଗଲାପରେ ତାକୁ ରାସ୍ତାରେ ଫୋପାଡି ଦେଲେ । ପର୍ବତ ତାଙ୍କ ହାତରୁ ଖସିଗଲାପରେ ତା ତଳେ ଅନେକ ଦେବତା ଏବଂ ଅସୁର ଦବି କରି ମରିଗଲେ, କାହାର ହାତ ଭାଙ୍ଗିଗଲା, ତ କାହାର ଗୋଡ ଭାଙ୍ଗିଗଲା, କାହାର ମୁହଁ

ବଙ୍କା ହୋଇଗଲା । ଅନ୍ୟମାନେ କହିଲେ ଯେ ଆଉ ହବନି, ଏଇଠି ଥାଉ ଏବଂ ଭାବିଲେ ଯେ ଏବେ କଣ କରିବା !

ଭଗବାନ ତ ଏମାନଙ୍କୁ ଚିହ୍ନିଛନ୍ତି ଏବଂ ଏହା ମଧ୍ୟ ଜାଣିଛନ୍ତି ଯେ ଏମାନଙ୍କ ଦ୍ୱାରା କିଛି ବି ହେବନି । ତେଣୁ ଗରୁଡ ଉପରେ ବସି ଆସିଲେ, ପର୍ବତକୁ ହାତରେ ଉଠେଇ ପାପୁଲି ଉପରେ ରଖିଲେ, ଏବଂ ସମସ୍ତଙ୍କ ଉପରେ ନିଜର କୃପା ଦୃଷ୍ଟି ପକେଇଲା ପରେ ସମସ୍ତେ ଉଠି ଠିଆ ହେଲେ । ଦେଖିଲେ ତ, ଭଗବାନଙ୍କ ଦୃଷ୍ଟିରେ ଅମୃତ ଅଛି । ସମସ୍ତେ ଉଠି ଠିଆ ହେଲେ । ସେମାନଙ୍କର ହାତ-ଗୋଡ଼ ଭଲ ହୋଇଗଲା । ସମସ୍ତେ ସୁସ୍ଥ ହେଲେ । ଭଗବାନ ଗରୁଡ ଉପରେ ବସି ପର୍ବତକୁ ମଧ୍ୟ ନେଇଯାଇ ସମୁଦ୍ରରେ ରଖି ଦେଲେ । ଦେବତାମାନେ କହିଲେ "ଏହା ତ ବହୁତ ବଢିଆ ହେଲା ।" ତାପରେ ବାସୁକୀ ନାଗକୁ ଡାକିଲେ । ଭଗବାନଙ୍କର ଆଦେଶ, ତେଣୁ ସେ ବି ଆସିଲା । ତାକୁ ପର୍ବତରେ ଗୁଡେଇ ଦେଲେ ।

ଦେଖନ୍ତୁ, ଭଗବାନ ବଡ ଚତୁର । ସେ ଦେବତାମାନଙ୍କୁ କହିଲେ "ନାଗର ମୁହଁକୁ ଧର ।" ସେମାନେ ନାଗର ମୁହଁ ପଟ ଧରିଲେ । ଭଗବାନ ଯେତେବେଳେ ଅସୁରମାନଙ୍କୁ ନାଗର ଲାଞ୍ଜ ଧରିବାକୁ କହିଲେ, ଅସୁରମାନେ ନିଶ ମୋଡିବା ଆରମ୍ଭ କଲେ । ଲାଞ୍ଜ ଆମେ ଧରିବୁ ? ଆମେ ବଡ ଉଚ୍ଚ କୁଳର । ଲାଞ୍ଜ ଧରିବୁନି । ଆମେ ତ ମୁହଁ ପଟକୁ ଯାଉଛୁ । ଭଗବାନ ଧୀର ଭାବରେ ଦେବରାଜ ଇନ୍ଦ୍ରଙ୍କୁ ସଂକେତ ଦେଲେ ତାଙ୍କୁ ମୁହଁପଟ ଧରିବାକୁ ଦିଅ । ସାପର ଲାଞ୍ଜ ଧରିବା ହିଁ ଉଚିତ, ମୁହଁ ନୁହଁ । ଅନ୍ୟ କେହି ମୁହଁ ଧରୁ, ଭଲ କଥା ନା ? ଯଦି ବିଷ ବାହାରିବ ତେବେ ତାଙ୍କ ଉପରେ ପଡିବ । ଦେଖିଲେ, ଭଗବାନ କେମିତି ବଞ୍ଚେଇ ଦିଅନ୍ତି । କେତେ ଆଶ୍ଚର୍ଯ୍ୟଜନକ କଥା ।

ବର୍ତ୍ତମାନ ଭଗବାନ ଅଜିତ ଏବଂ ଦେବତାମାନେ ଲାଞ୍ଜ ପଟକୁ ଚାଲିଗଲେ ଏବଂ ଅସୁରମାନେ ମୁହଁ ପଟକୁ । ମନ୍ଥନ ଆରମ୍ଭ ହେଲାମାତ୍ରେ ସମସ୍ତେ ଦେଖିଲେ ଯେ ମନ୍ଦରାଚଳ ପର୍ବତ ସମୁଦ୍ରରେ ବୁଡି ଯାଉଛି । ସମସ୍ତଙ୍କର ମନୋବଳ ଭାଙ୍ଗିଗଲା ଏବଂ ସେମାନେ ହତାଶ ହୋଇଗଲେ । ତେଣୁ ଭଗବାନ ଗୋଟିଏ ଅଦ୍‌ଭୁତ କଚ୍ଛପର ଅବତାର ନେଇ ମନ୍ଦରାଚଳକୁ ଉପରକୁ ଉଠେଇଦେଲେ । ମନ୍ଥନ ପୂର୍ଣ୍ଣ ହେଲା ପର୍ଯ୍ୟନ୍ତ ତାକୁ ନିଜ ପିଠିରେ ଧାରଣ କରି ରଖିଲେ । ଭଗବାନ ଦେବତାମାନଙ୍କୁ କହିଥିଲେ ଯେ ତୁମେମାନେ ଯେଉଁ ଅମୃତ ଚାହୁଁଛ ତାହା ସାଙ୍ଗେ ସାଙ୍ଗେ ମନ୍ଥନରୁ ତୁମକୁ ମିଳିପାରିବ ନାହିଁ । ପ୍ରଥମେ ହଳାହଳ ବିଷ ବାହାରିବ । ତାକୁ ଦେଖି ଡରିବନି ।

## ଭଗବାନ ଶଙ୍କରଙ୍କ ବିଷପାନ

ଯେତେବେଳେ ମନ୍ଥନ ଆରମ୍ଭ ହେଲା, ପ୍ରଥମେ ସେଥିରୁ ବିଷ ବାହାରିଲା । ଏମିତି ଭୟଙ୍କର ବିଷ ଯେ ତାର ଗନ୍ଧ ମାତ୍ରକେ ସମ୍ପୂର୍ଣ୍ଣ ଜଗତ ଜଳିବାକୁ ଲାଗିଲା, କାରଣ ତାହା ଥିଲା ହଳାହଳ ବିଷ । ଯଦିଓ ଭଗବାନ ଆଗରୁ କହିଦେଇଥିଲେ ଯେ ବିଷ ଦେଖି ଡରିବନି, ତଥାପି ବିଷ ଦେଖି ଅସୁରମାନେ ତ ଦଉଡି ପଳେଇଲେ ସବୁ ଦେବତାମାନେ ମଧ୍ୟ ପଳେଇଲେ । ତେଣୁ କହିବା ସହଜ, କିନ୍ତୁ କାର୍ଯ୍ୟରେ କରିବା ବହୁତ କଷ୍ଟ । ଏବେ କଣ କରାଯିବ ? କହିଲେ, ଶିବବାବା ଅଛନ୍ତି ନା, ଏଇ ସମୟରେ ହିଁ ତାଙ୍କୁ ମନେପକେଇବା ଦରକାର । ମନେରଖନ୍ତୁ, ଭଲ ଭଲ ଜିନିଷ ବାହାରିବା ବେଳେ କେହି ତାଙ୍କୁ ମନେ ପକେଇ ନାହାନ୍ତି । ଯେତେବେଳେ ବିଷ ବାହାରିଲା, କହିଲେ ଯେ ଶିବ ତ ଅନେକ ବିଷଧର ନାଗ ଆଦି ବେକରେ ଗୁଡେଇ ଥାଆନ୍ତି, ବୋଧେ ଏହି ହଳାହଳ ବିଷ ତାଙ୍କର କିଛି କରିବନି । ସେମିତି ବି ସେ ଥଣ୍ଡାରେ ବସିଥାନ୍ତି । ବୋଧେ ଏହାଦ୍ୱାରା ତାଙ୍କୁ କିଛି ଗରମ ମିଳିଯିବ । ସମସ୍ତେ ଶଙ୍କର ଭଗବାନଙ୍କ ପାଖକୁ ଗଲେ । ସେଠି ଯାଇ ମହାମୃତ୍ୟୁଞ୍ଜୟ ମନ୍ତ୍ର ଜପିବାକୁ ଲାଗିଲେ । କାରଣ ସମସ୍ତେ ମୃତ୍ୟୁକୁ ଡରୁଥିଲେ ।

**ଓଁ ତ୍ରୟମ୍ବକଂ ଯଜାମହେ ସୁଗନ୍ଧିଂ ପୁଷ୍ଟିବର୍ଦ୍ଧନମ୍ ।**
**ଉର୍ବାରୁକମିବ ବନ୍ଧନାନ୍ ମୃତ୍ୟୋର୍ମୁକ୍ଷୀୟ ମାଽମୃତାତ୍ ॥ (ଶ୍ରୀ ରୁଦ୍ରପ୍ରଶ୍ନଃ)**

ସେମାନେ ସମସ୍ତେ ତ୍ରୟମ୍ବକ ଭଗବାନଙ୍କର ଆରାଧନା - ଉପାସନା କରିବାକୁ ଲାଗିଲେ ଯେ 'ମୃତ୍ୟୋର୍ମୁକ୍ଷୀୟ ମା ଅମୃତାତ୍' ଆପଣ ଆମକୁ ମୃତ୍ୟୁରୁ ରକ୍ଷା କରନ୍ତୁ, ଅମୃତରୁ ନୁହଁ । ତାପରେ ସେମାନେ ବିରାଟ ରୂପରେ ଭଗବାନ ଶିବଙ୍କର ସ୍ତୁତି କଲେ ଏବଂ କହିଲେ ଆପଣଙ୍କୁ ନମସ୍କାର, ନମସ୍କାର, ନମସ୍କାର ! ଆମକୁ ରକ୍ଷା କରନ୍ତୁ, ଆମ ଉପରେ ବିରାଟ ସଂକଟ ଆସିଛି । ଭଗବାନ ଶିବ ସତୀଙ୍କ ଆଡକୁ ଦେଖି କହିଲେ - ଦେବୀ ! ଏମାନଙ୍କ ଉପରକୁ ସଂକଟ ଆସିଛି । ପୁଣି କହିଲେ -

**ଏତାବାହ୍ନି ପ୍ରଭୋରର୍ଥୋ ଯଦ୍ ଦୀନପରିପାଲନମ୍ । (୮.୭.୩୮)**
**ପ୍ରାଣୈଃ ସ୍ୱୈଃ ପ୍ରାଣିନଃ ପାନ୍ତି ସାଧବଃ କ୍ଷଣଭଙ୍ଗୁରୈଃ ॥ (୮.୭.୩୯)**

ସମର୍ଥ, ଶକ୍ତିଶାଳୀ ବ୍ୟକ୍ତିର ଶକ୍ତିର ଉପଯୋଗ କଣ ? ଯେଉଁମାନେ ଦୀନ, ତାଙ୍କର ରକ୍ଷା କରିବା, ଏହା ହିଁ ତାର ଉତ୍ତମ ଉପଯୋଗ । ଆଉ ଯଦି କେହି ଶକ୍ତିଶାଳୀ ହୋଇ ମଧ୍ୟ ଦୀନ ମାନଙ୍କର ରକ୍ଷା କରେ ନାହିଁ, ତେବେ ସେ ଅଧର୍ମ କରେ । ଏପରି କାର୍ଯ୍ୟରେ ଯଦି ନିଜ ଜୀବନର ତ୍ୟାଗ କରିବାକୁ ପଡ଼େ, ତେବେ କରିବା ଉଚିତ । ସତୀ ଶିବଙ୍କର ସ୍ୱଭାବ ଏବଂ ପ୍ରଭାବକୁ ଜାଣିଥିଲେ । ତାଙ୍କର ସ୍ୱଭାବ କିପରି ? ତାଙ୍କୁ 'କରୁଣାବତାର' କୁହାଯାଏ । ଭଗବାନ ଶିବ ଅତ୍ୟନ୍ତ କରୁଣାଶୀଳ ଅଟନ୍ତି । ଆଉ ପ୍ରଭାବ ? ପ୍ରଭାବ କଥା କଣ କହିବା । ତାଙ୍କୁ କେବେ କିଛି ହେଇପାରିବ ନାହିଁ । ତେଣୁ କହିଲେ ପିଇ ନିଅନ୍ତୁ । ଭଗବାନ ନିଜର ଦୁଇ ହାତର ଆଞ୍ଜୁଳିରେ ପୁରା ବିଷକୁ ନେଇ ପିଇ ଦେଲେ ଏବଂ ତାକୁ ନିଜ କଣ୍ଠରେ ରଖିଦେଲେ । ସେ ବିଷ ମଧ୍ୟ କିଛି କମ ନ ଥିଲା । ସେ ନିଜର ପ୍ରଭାବ ଭଗବାନ ଶିବଙ୍କ ଉପରେ ମଧ୍ୟ ଦେଖେଇ ଦେଲା । ତାଙ୍କ କଣ୍ଠକୁ ନୀଳ ବର୍ଣ୍ଣର କରି ଦେଲା ।

**ଯଚ୍ଚକାର ଗଲେ ନୀଲଂ ତଚ୍ଚ ସାଧୋର୍ବିଭୂଷଣମ୍ । (୮.୭.୪୩)**

ସେହି ନୀଳ ରଂଗ ତାଙ୍କର ଆଭୂଷଣ ହେଇଗଲା । ସେମିତି ବି ଗୋରା ରଂଗରେ ନାଲି-ହଳଦିଆ ଦାଗ ହେଇଗଲେ କୁରୂପତା ହୁଏ । ଭଗବାନଙ୍କ ପାଇଁ ଏହା ଦୂଷଣ ନୁହଁ ଭୂଷଣ ହେଇଗଲା । ଯଦି କୋଉଠି ନିଆଁ ଲାଗିଯାଏ ଏବଂ କିଛି ଜଳିଯାଉଥାଏ ତେବେ ଯେଉଁ ଲୋକ ସାହସ କରି ନିଆଁରେ ପଶି ତାକୁ ଉଦ୍ଧାର କରେ ଏବଂ ସେଥିପାଇଁ ତାର କୌଣସି ଅଂଗ ଜଳିଗଲେ, ସେହି ଜଳି ଯାଇଥିବା ଅଂଗଟି ମଧ୍ୟ ତାର ଭୂଷଣ । ଯୁଦ୍ଧଭୂମିରେ କୌଣସି ଯୋଦ୍ଧାର ହାତ ବା ଗୋଡ କଟି ଯାଇଥିଲେ, ସେହି କଟିଯାଇଥିବା ଅଂଗଟି ମଧ୍ୟ ତାର ଭୂଷଣ କାରଣ ସେ ଅନ୍ୟପାଇଁ ତ୍ୟାଗ କରିଛି । ତେଣୁ ନୀଳକଣ୍ଠ ଭଗବାନ ଶିବଙ୍କ ନାମ ଏବଂ ଭଗବାନଙ୍କ ସମସ୍ତ ନାମଗୁଡିକ ମଧ୍ୟରୁ ନୀଳକଣ୍ଠ ନାମ ବହୁତ ଶ୍ରେଷ୍ଠ, କାରଣ ତା ଦ୍ୱାରା ତାଙ୍କର ସାଧୁ ସ୍ୱଭାବ, ପରୋପକାରୀ ସ୍ୱଭାବ ପ୍ରକଟ ହେଉଛି ।

କୁହାଯାଏ -

**ଓଁ ନମସ୍ତେ ଅସ୍ତୁ ଭଗବନ୍ ବିଶ୍ୱେଶ୍ୱରାୟ ମହାଦେବାୟ**
**ତ୍ର୍ୟମ୍ବକାୟ ତ୍ରିପୁରାନ୍ତକାୟ ତ୍ରିକାଳାଗ୍ନିକାଲାୟ**
**କାଲାଗ୍ନିରୁଦ୍ରାୟ ନୀଳକଣ୍ଠାୟ ମୃତ୍ୟୁଞ୍ଜୟାୟ**
**ସର୍ବେଶ୍ୱରାୟ ସଦାଶିବାୟ ଶ୍ରୀମନ୍ମହାଦେବାୟ ନମଃ । (ଶ୍ରୀ 'ରୁଦ୍ରପ୍ରଶ୍ନ')**

ଦେଖନ୍ତୁ, କୋଉଠି-କୋଉଠି ଏମିତି ମଧ୍ୟ ବର୍ଣ୍ଣନ ଅଛି ଯେ ଭଗବାନ ଶିବ ଯେତେବେଳେ ବିଷ ପିଉଥିଲେ ତ ସତୀ ତା'କୁ ତାଙ୍କ ଗଳାରେ ହିଁ ରଖିଦେଲେ ଯେ ବିଷ ପେଟ ଭିତରକୁ ଯେମିତି ନ ଚାଲି ଯାଉ ।

ଜଗତରେ ନୀଳକଣ୍ଠର ବହୁତ ମହିମା ରହିଛି ।ଏହି ଦୁନିଆରେ ମଧ୍ୟ ବୁଦ୍ଧିମାନ ଲୋକମାନଙ୍କୁ ବିଷ ପିଇବାକୁ ପଡିଥାଏ । ମୂର୍ଖମାନଙ୍କୁ ତ କିଛି କରିବାକୁ ପଡେ ନାହିଁ । ଗୃହସ୍ଥମାନଙ୍କ କଥା ଶୁଣିଲେ ତ ଆହୁରି ଆଶ୍ଚର୍ଯ୍ୟ ଲାଗେ । ଲୋକେ କୁହନ୍ତି - ଏଇ ଘରେ ତ ଖାଲି ମୁଁ କାମ କରୁଛି, ସବୁ କିଛି ମୋତେ ହିଁ ସହନ କରିବାକୁ ପଡୁଛି । କଟୁତା ମୋତେ ହଜମ କରିବାକୁ ପଡୁଛି । ଏଠି ଦେଖିଲେ ତ, ବିଷପାନ ଦ୍ୱାରା ଭଗବାନ ଶିବ ଆମକୁ କ'ଣ ଶିଖଉଛନ୍ତି । ଏହି କି ଯେ ଜୀବନର ସବୁ ବିଷ, ସବୁ କଟୁତାକୁ ତୁମେ ପିଇନିଅ କାରଣ ତୁମର ସେହି ଶକ୍ତି ଅଛି । ଆଉ ଗୋଟିଏ କଥା, ସେହି କଟୁତାକୁ ଭିତରକୁ ଯିବାକୁ ଦିଅନାହିଁ। ଅନେକ ଥର ଆମେ ଜୀବନର କଟୁ ଅନୁଭବ ଗୁଡିକୁ ପିଇ ଯାଉ କିନ୍ତୁ ତାପରେ ନିଜେ ବହୁତ ବିଷାକ୍ତ ଏବଂ କଟୁ ହେଇଯାଉ କିମ୍ବା ସେହି କଟୁତାକୁ ବାହାର କରିବାରେ ଲାଗୁ । ଭଗବାନ ଶିବ ଏଠାରେ ଶିଖଉଛନ୍ତି ଯେ ଏମିତି ହେବା ଅନୁଚିତ । ସ୍ୱୟଂ କଟୁ ସ୍ୱଭାବର ହୁଅନାହିଁ କି ଅନ୍ୟ ଉପରେ ନିଜ କଟୁତା ପକାଅନି । ଶାନ୍ତିରେ ରୁହ । ମନ ଭିତରେ ଜଳ ନାହିଁ, ଇର୍ଷା କରନି । ଅନେକ ଲୋକ ଅଛନ୍ତି, ସହି ଯାଆନ୍ତି, କିନ୍ତୁ ମନ ଭିତରେ ଜଳୁ ଥାଆନ୍ତି । ଜୀବନରେ ବୁଦ୍ଧିମାନ ଲୋକେ ନଇଁ ଯାଆନ୍ତି । ବୁଦ୍ଧିମାନମାନଙ୍କୁ ହି ବିଷପାନ କରିବାକୁ ପଡେ ।

ଉଦାହରଣ ସ୍ୱରୂପ, ଗୋଟିଏ ଘରେ ବଡ ଆଉ ସାନ ଦୁଇ ପୁଅ ଅଛନ୍ତି । ଯଦି ବଡ ପୁଅ ସାନ ସହିତ କଳି କରେ କି ତା ଜିନିଷ ଛଡେଇ ନିଏ, ତ ତାକୁ କୁହାଯାଏ, "ତୁ, ବଡ଼ ବୁଦ୍ଧିଆ, ଦେଇ ଦେ ତାକୁ ।" ଏଇମିତି କହନ୍ତି ନା ? ବଡ ଠାରୁ ହିଁ ବୁଦ୍ଧିମାନୀର ଆଶା କରାଯାଏ । ଛୋଟ ପିଲାଙ୍କଠାରୁ ଆମେ ବୁଦ୍ଧିମାନୀର ଆଶା କରୁନା ।

ପିଲାଙ୍କୁ ତ ଆମେ ବହୁତ ଉପଦେଶ ଦେଉ, କିନ୍ତୁ ନିଜ ଉପରକୁ ଆସିଲେ କଥା ବୁଝୁନାହିଁ । ଏହି କଥା ଭଗବାନ ନୀଳକଣ୍ଠ ଆମକୁ କହୁଛନ୍ତି । ବିଷ ପିଇନିଅ, କିନ୍ତୁ ନିଜେ ବିଷାକ୍ତ ହେଇଯାଅ ନାହିଁ । ନିଜେ ମରନି କି ଅନ୍ୟଙ୍କୁ ବି ମାରନି, ତାକୁ ନିଜର ଆଭୂଷଣ କରି ଧାରଣ କର ।

ଭଗବାନ ଶଙ୍କର ବିଷପାନ କରି ନେବାରୁ ଟିକିଏ ଶାନ୍ତି ମିଳିଲା । ବିଷ ପାନ ସମୟରେ ଟିକିଏ ବିଷ ଏପଟେ-ସେପଟେ ପଡିଯାଇଥିଲା । ତାକୁ ସେଠାରେ ଥିବା ସାପ-ବିଛାମାନେ ପିଇ ଦେଲେ । ତେଣୁ ସେମାନେ ବିଷାକ୍ତ ହେଇଗଲେ । ତାପରେ ମନ୍ଥନ ଆରମ୍ଭ ହେବାରୁ ସେଥିରୁ କାମଧେନୁ ବାହାରିଲା । କାମଧେନୁ ସମସ୍ତ ଯଜ୍ଞ ସାମଗ୍ରୀ ପ୍ରଦାନ କରେ । ଅତଏବ ବ୍ରାହ୍ମଣ ଏବଂ ଋଷିମାନେ କହିଲେ ଯେ ଆମକୁ ବହୁତ ଯାଗ-ଯଜ୍ଞ କରିବାକୁ ହୁଏ, ସେମିତି ବି ବସ୍ତୁ ଉପରେ ପ୍ରଥମ ଅଧିକାର ବ୍ରାହ୍ମଣଙ୍କର। ତେଣୁ ଆମେ ଏହାକୁ ନେଇ ଯାଉଛୁ।

ତାପରେ ଉଚ୍ଚୈଃଶ୍ରବା ନାମକ ପକ୍ଷଯୁକ୍ତ, ଉଡୁଥିବା ଘୋଡା ବାହାରିଲା । ସବୁ ଅସୁର ତା ଉପରକୁ ଡେଇଁ ପଡିଲେ । ଦେବତାମାନେ ମଧ୍ୟ ତା'କୁ ନେବା ପାଇଁ ଚାହୁଁଥିଲେ । ଭଗବାନ ସେମାନଙ୍କୁ ସଂକେତରେ କହିଲେ ଯେ ସେମାନଙ୍କୁ ନବାକୁ ଦିଅ। ନିଅନ୍ତୁ । ତାପରେ ଚାରିଟା ଦାନ୍ତ ଥିବା ଐରାବତ ହାତୀ ବାହାରିଲା । ଅନ୍ୟ ହାତୀମାନଙ୍କର ଦୁଇଟି ଦାନ୍ତ ଥାଏ କିନ୍ତୁ ତା'ର ଚାରିଟି ଦାନ୍ତ ଥିଲା ଏବଂ ରଂଗ ଧଳା ଥିଲା । ଇନ୍ଦ୍ର କହିଲେ, ଏଇଟା ମୋର । ଭଗବାନ ଅସୁରମାନଙ୍କୁ କହିଲେ, "ତୁମେ ଘୋଡା ନେଇଛ, ହାତୀ ତାଙ୍କୁ ଦିଅ ।" ଭଗବାନଙ୍କୁ ମଧ୍ୟ ଜଣେ ବାପା ଭଳି ଭାଗ-ବଣ୍ଟା କରିବାକୁ ପଡିଥାଏ ।

ତାପରେ ସେଥିରୁ ଗୋଟିଏ ବହୁମୂଲ୍ୟ ଭ୍ରାଜମାନ ପଦ୍ମରାଗ ମଣି ବାହାରିଲା ଯାହାକୁ କୌସ୍ତୁଭ ମଣି କୁହାଯାଏ । ସେ ସିଧା ଭଗବାନଙ୍କ ପାଖକୁ ଚାଲିଗଲା ଏବେ କଣ କରାଯିବ ? ଭଗବାନ କହିଲେ, "ହଉ ମୋ ପାଖରେ ଥାଉ ।" ଭଗବାନ କୌସ୍ତୁଭ ମଣି ନିଜ ପାଖରେ ରଖିନେଲେ । ତାପରେ ପାରିଜାତ ବୃକ୍ଷ ବାହାରିଲା, **'ତତୋ ଅଭବତ୍ ପାରିଜାତଃ'** ଯାହା ଦେବଲୋକର ଅଳଙ୍କାର ହେଲା । ତା'ପରେ ଅପ୍‌ସରାମାନେ ବାହାରିଲେ । ଇନ୍ଦ୍ର କହିଲେ, "ଏମାନେ ସ୍ୱର୍ଗ ପାଇଁ ଠିକ୍ । ତୁମ ମାନଙ୍କ ପାଇଁ ନୁହଁ" କହି ସେମାନଙ୍କୁ ନେଇଗଲେ ।

ତାପରେ ଲକ୍ଷ୍ମୀ ବାହାରିଲେ । ଲକ୍ଷ୍ମୀଙ୍କୁ ଦେଖି ଦେବତା ଏବଂ ଅସୁର ଉଭୟେ ତାଙ୍କୁ ପାଇବା ପାଇଁ ଇଚ୍ଛା କଲେ । କିନ୍ତୁ ଲକ୍ଷ୍ମୀ ହାତରେ ବରମାଳା ନେଇ ଆସି ଥିଲେ। ସେ ଚାହୁଁଥିଲେ ଯେ ଯିଏ ସର୍ବଗୁଣ ସମ୍ପନ୍ନ ହୋଇଥିବ, କିନ୍ତୁ ତାଙ୍କୁ କାମନା କରୁ ନ ଥିବ, ତା ସହିତ ତାଙ୍କର ବିବାହ ହେଉ । ଲକ୍ଷ୍ମୀ ହାତରେ ବରମାଳା ଧରି ଚାଲିଯାଉଥିଲେ। ସେ ସବୁ ଦେବତା, ଅସୁର ଏବଂ ଋଷିମାନଙ୍କୁ ଦେଖିଲେ। କାହା ପାଖରେ ସର୍ବଗୁଣ ନ ଥିଲା । କାହା ପାଖରେ ତପ ଥିଲା ତ କ୍ରୋଧ ବି ଥିଲା, କାହା ପାଖରେ ଜ୍ଞାନ ଥିଲା କିନ୍ତୁ ସେ ଆସକ୍ତିକୁ ଜିତିପାରି ନ ଥିଲା । କିଏ ମହାନ ଥିଲା କିନ୍ତୁ କାମନାକୁ ଜିତିପାରି ନ ଥିଲା। କିଏ ଅତ୍ୟନ୍ତ ସମର୍ଥବାନ ଥିଲା କିନ୍ତୁ ତା ପାଖରେ ସମସ୍ତ ସତ୍ତା ନ ଥିଲା । ଯେମିତି ଇନ୍ଦ୍ର ଦେବତାମାନଙ୍କର ରାଜା ଥିଲେ କିନ୍ତୁ ସବୁବେଳେ ଡରୁଥିଲେ । ତାଙ୍କୁ ମଧ୍ୟ ନିଜ ସୁରକ୍ଷା ପାଇଁ ଅନ୍ୟ ଦେବତାମାନଙ୍କ ପାଖକୁ ସାହାଯ୍ୟ ପାଇଁ ଯିବାକୁ ପଡୁଥିଲା। ସେ ମଧ୍ୟ ନିର୍ଭୟ ନୁହନ୍ତି। କେହି ଧର୍ମାଚରଣ ତ କରୁଥିଲେ କିନ୍ତୁ ତାଙ୍କ ମନରେ କାହାପାଇଁ ଦୟାଭାବ ନ ଥିଲା। ମନରେ ଦୟା ନ ଥିଲେ ଧର୍ମାଚରଣ କିପରି କରି ପାରିବେ କେଜାଣି। କେହି ତ୍ୟାଗୀ ତ ଥିଲେ କିନ୍ତୁ ଯାହା ତ୍ୟାଗ କରୁଥିଲେ ତାକୁ ମୁକ୍ତିର ଲକ୍ଷଣ ବୋଲି ମାନୁ ନ ଥିଲେ। ସନତ୍‌କୁମାର ଅତ୍ୟନ୍ତ ସଦ୍‌ଗୁଣ ସମ୍ପନ୍ନ ଥିଲେ କିନ୍ତୁ ସେମାନେ ସର୍ବଦା ନିର୍ବିକଳ୍ପ ସମାଧିରେ ମଗ୍ନ ରହୁଥିଲେ। ତାଙ୍କର କାହା ସହିତ ସଂଗ ନ ଥିଲା । କାହା ପାଖରେ ଶୀଳ ନ ଥିଲା ତ କାହାର ସ୍ୱଭାବ ଭଲ ନ ଥିଲା ତ କାହାର ଶକ୍ତି ନ ଥିଲା ।

ସେହି ସମୟରେ ଭଗବାନ ନାରାୟଣ ନିଜର ଉତ୍ତରୀୟକୁ ନିଜ ମୁହଁ ଉପରେ ଘୋଡେଇ ଦେଇ ଶୋଇ ପଡିଥିଲେ । ଲକ୍ଷ୍ମୀ ତାଙ୍କ ନିକଟକୁ ଗଲେ । ସେ ଦେଖିଲେ ଯେ ୟାଙ୍କ ଭିତରେ ସବୁ ଗୁଣ ଅଛି, କିନ୍ତୁ ସେ ମୋତେ ପାଇବାକୁ ଚାହୁଁ ନାହାନ୍ତି । ଦେଖନ୍ତୁ, ଯେଉଁମାନେ ଲକ୍ଷ୍ମୀଙ୍କୁ ଚାହାନ୍ତି, ତାଙ୍କ ଭିତରେ ସବୁ ଗୁଣ ନ ଥାଏ। ଭଗବାନ ନାରାୟଣଙ୍କ ପାଖରେ ସବୁଗୁଣ ଅଛି କିନ୍ତୁ ସେ ତାଙ୍କୁ ପାଇବା ପାଇଁ ଇଚ୍ଛା କରୁନାହାନ୍ତି । ଲକ୍ଷ୍ମୀ କହିଲେ- ଇଏ ମୋତେ ଚାହୁଁନାହାନ୍ତି ତେଣୁ ମୁଁ ଏହାଙ୍କୁ ପାଇବା ପାଇଁ ଚାହୁଁଛି । ଦେଖିଲେ ତ ? ଲକ୍ଷ୍ମୀ ସେହିମାନଙ୍କ ପାଖକୁ ଯାଆନ୍ତି ଯେଉଁମାନେ ତାଙ୍କୁ ପାଇବାକୁ ଇଚ୍ଛା କରନ୍ତି ନାହିଁ । କିନ୍ତୁ ଯିଏ ଚାହେଁ, ତାକୁ ବହୁତ ଭୁଲେଇ ଦିଅନ୍ତି, ହଇରାଣ କରନ୍ତି। ତାଙ୍କ ପାଖକୁ ଚାଲିଗଲେ ମଧ୍ୟ, ଫେରିଯାଆନ୍ତି, ରହନ୍ତିନି । ଭଗବାନ ନାରାୟଣଙ୍କ ପରି ଯିଏ ବିରକ୍ତ, ବୈରାଗୀ ଲକ୍ଷ୍ମୀ ତାଙ୍କ ପାଖକୁ ଯାଆନ୍ତି ।

ଏବଂ ବିମୃଶ୍ୟାବ୍ୟଭିଚାରିସଦ୍‌ଗୁଣୈ-
ର୍ବରଂ ନିଜୈକାଶ୍ରୟତୟାଗୁଣାଶ୍ରୟମ୍ ।
ବବ୍ରେ ବରଂ ସର୍ବଗୁଣୈରପେକ୍ଷିତଂ
ରମା ମୁକୁନ୍ଦଂ ନିରପେକ୍ଷମୀପ୍ସିତମ୍ ॥ (୮.୮.୨୩)

ସମସ୍ତଙ୍କୁ ପରଖି ସାରିବା ପରେ, ଭଲ ଭାବରେ ଭାବି ଚିନ୍ତି ଲକ୍ଷ୍ମୀ ଭଗବାନ ନାରାୟଣଙ୍କ ଗଳାରେ ବରଣମାଳ ପକେଇ ଦେଲେ । ତାଙ୍କ ବିବାହ ହେଲା ।

ଦେଖିଲେ, ଭଗବାନଙ୍କ କାମ କେମିତିକା, କ୍ଷୀର ସାଗରର ମନ୍ଥନ ପାଇଁ ନିଜେ କହିଲେ, ତାର ଉପାୟ ମଧ୍ୟ ନିଜେ ବତେଇଲେ । ପୁଣି ମନ୍ଦରାଚଳ ପର୍ବତକୁ ଉଠେଇ କରି ଆଣିବା ଏବଂ ତାକୁ ସମୁଦ୍ରରେ ପକେଇବାର କାମ ମଧ୍ୟ ନିଜେ ହିଁ କଲେ । ତା'ପରେ ଯେତେବେଳେ ମନ୍ଦରାଚଳ ସମୁଦ୍ରରେ ବୁଡିବାକୁ ଲାଗିଲା, ସେତେବେଳେ ଭଗବନ କଚ୍ଛପ ଅବତାର ନେଇ ପର୍ବତକୁ ଉପରକୁ ଉଠେଇଲେ । ବାସୁକି ନାଗରେ ଯେଉଁ ଶକ୍ତି ଥିଲା, ପ୍ରକୃତରେ ତାହା ଭଗବାନଙ୍କର ହିଁ ଶକ୍ତି । ଭଗବାନ ଯେତେବେଳେ ସମସ୍ତଙ୍କ ଉପରେ କୃପା ଦୃଷ୍ଟି-ପାତ କଲେ – ତା'ପରେ ଦେବତା ଏବଂ ଅସୁର, ସମସ୍ତେ ତାଙ୍କ ଶକ୍ତି ଦ୍ୱାରା ସବୁ କାମ କରିବାକୁ ଲାଗିଲେ । ତଥାପି ସେମାନଙ୍କ ଦ୍ୱାରା ମନ୍ଥନ ନ ହେଇପାରିବାରୁ ଭଗବାନ ନିଜେ ନିଜ ହାତ ଦ୍ୱାରା ମନ୍ଥନ କରିବାକୁ ଲାଗିଲେ ।

ଏଠାରେ ଗୋଟିଏ କଥା ସବୁ ଘଟଣା ଗୁଡିକ ମଧ୍ୟରେ ସମାନ ରୂପେ ଏବ ସ୍ପଷ୍ଟଭାବରେ ଦେଖାଯାଉଅଛି ଯେ, କାମ ତ ଅନେକ ହେଉଛି, କିନ୍ତୁ ସବୁ କାର୍ଯ୍ୟ ଭଗବାନଙ୍କ ଶକ୍ତି ଦ୍ୱାରା ହିଁ ହେଉଛି । ଦେବତା ଓ ଅସୁରମାନେ ଯେତେ କହିଲେ ବି କି ଆମେ କରିଛୁ, ଆମେ କରିଛୁ, କିନ୍ତୁ ପ୍ରକୃତରେ ସବୁ କାମ ଭଗବାନଙ୍କ କୃପା ଦ୍ୱାରା ହିଁ ହୁଏ, ଭଗବାନଙ୍କ ଶକ୍ତି ଦ୍ୱାରା ହିଁ ହୁଏ । ଭଗବାନ ସେମାନଙ୍କୁ ଯେଉଁ ଶକ୍ତି ଦେଇଛନ୍ତି, ତାଦ୍ୱାରା ହିଁ ସବୁ କାର୍ଯ୍ୟ କରିବା ପାଇଁ ସେମାନେ ସମର୍ଥ ହେଇପାରୁଛନ୍ତି । ଅମୃତ-ମନ୍ଥନ ପ୍ରସଂଗରେ ଏହା ହିଁ ସର୍ବାଧିକ ବୁଝିବା ଯୋଗ୍ୟ ମହତ୍ତ୍ୱପୂର୍ଣ୍ଣ କଥା । ଅନ୍ୟ କଥାଟି ହେଲା ଯେ ଅମୃତ-ମନ୍ଥନର ଫଳ । ଯାହା ହଠାତ୍, ସାଂଗେ ସାଂଗେ ମିଳି ଯାଏ ନାହିଁ । ତା ଆଗରୁ ଆସେ ବିଷ । ଯିଏ ଯେତେ ବଡ଼ କାମ କରିବା ପାଇଁ ବାହାରିପଡେ, ତାକୁ ସେତେ ବେଶୀ ବିଷ ପିଇବାକୁ ପଡେ । ଯେତେ ବେଳେ କେହି ଆଧ୍ୟାତ୍ମିକ ଜ୍ଞାନ ପ୍ରାପ୍ତି ପାଇଁ ସାଧନା-ପଥରେ ଅଗ୍ରସର ହୁଏ, ସେ ଜାଣେ ଯେ ତା ମନରେ ମଧ୍ୟ ପୂର୍ବ

ଅପେକ୍ଷାକୃତ ଅଧିକ କଟୁ ବୃତ୍ତି ଉତ୍ପନ୍ନ ହେବାରେ ଲାଗିଛି । ଅର୍ଥାତ୍ ସାଧନା-ମାର୍ଗରେ ମଧ୍ୟ ପ୍ରଥମେ ବିଷ ହିଁ ଉତ୍ପନ୍ନ ହୁଏ । ତାହେଲେ ଏଇ ହାତୀ, ଘୋଡା, କଳ୍ପବୃକ୍ଷ ଆଦି ପୁଣି କଣ ?

ଦେଖନ୍ତୁ, ସାଧନା ଦ୍ୱାରା ମନରେ ନୂତନ ଶକ୍ତି ଆସେ, ସିଦ୍ଧି ପ୍ରାପ୍ତ ହୁଏ । ଏହା ହିଁ ମନ୍ଥନରୁ ନିର୍ଗତ ହାତୀ, ଘୋଡା, କଳ୍ପବୃକ୍ଷ ଆଦି । ସେଗୁଡିକୁ ପାଇ ଯଦି କେହି ମୋହିତ ହେଇଯାଏ, ତେବେ ସେ ଆଗକୁ ବଢିପାରିବ ନାହିଁ। ଏଠାରେ ବର୍ଣ୍ଣନ କରାଯାଇଛି ଯେ ଏହି ଦେବତା ତଥା ଅସୁରମାନେ ମନ୍ଥନ କଲେ ଯେତେବେଳେ ଯଦି କିଛି ବାହାରୁ ନ ଥିଲା ତେବେ ମଝିରେ- ମଝିରେ ମନ୍ଥନ ବନ୍ଦ କରି ଦେଉଥିଲେ । ଏପରି ସେମାନେ ବାରମ୍ବାର କରୁଥିଲେ । ବାରମ୍ବାର ଭଗବାନ ସେମାନଙ୍କୁ ଉତ୍ସାହିତ କରୁଥିଲେ। କିନ୍ତୁ ସେମାନେ କହୁଥିଲେ ଯେ ନା ଆମ ଦ୍ୱାରା ଆଉ ହେବନି । ସେତେବେଳେ ଭଗବାନ କହୁଥିଲେ ଯେ ତୁମକୁ ଅମୃତ ନିଶ୍ଚୟ ମିଳିବ, ମନ୍ଥନ କର ।

ଏତେ ସବୁ ଘଟିଗଲା । ଲକ୍ଷ୍ମୀଙ୍କ ସହ ଭଗବାନଙ୍କ ବିବାହ ମଧ୍ୟ ହେଇଗଲା । ଦେବତା ଓ ଅସୁରମାନଙ୍କୁ ଏହା ଭଲ ଲାଗିଲା ନାହିଁ, କିନ୍ତୁ ସେମାନେ ବା କଣ କରିପାରିବେ ? କହିଲେ କୌସ୍ତୁଭ ମଣି ବି ଗଲା, ଲକ୍ଷ୍ମୀ ବି ଗଲେ । ଆମକୁ ବି କିଛି ମିଳିବା ଦରକାର, ଭାବି ସେମାନେ ପୁଣି ମନ୍ଥନ କରିବାକୁ ଲାଗିଲେ । ପୁଣି ମନ୍ଥନ କରିବାରୁ ବାରୁଣୀ ଦେବୀ ବାହାରିଲେ । ଦେବତାମାନେ ତାକୁ ନେବାକୁ ଚାହିଁବାରୁ ଭଗବାନ କହିଲେ ତୁମକୁ ଅମୃତ ଦରକାର ନା ମଦ ? ଅସୁର କହିଲେ ଆମକୁ ମଦ ଦରକାର । ଏବେ ଏହାର ଅର୍ଥ କଣ ହେଇ ପାରେ ? ଏହା ନା ଯେ ଯିଏ ମଦ ପିଏ ସେ ଅସୁର। ଅସୁରମାନେ ମଦ ନେଲେ। କହିଲେ - ଆମେ ଯାକୁ ପିଇବୁ । ଚେଷ୍ଟା ଚାଲିଛି, ମନ୍ଥନ ବନ୍ଦ ହେଇନି, ଚାଲିଛି । କୁହାଯାଇଛି 'ଚରୈବତି - ଚରୈବତି' ଆଗକୁ ବଢ଼, ଆଗକୁ ଆଗକୁ ଆଗେଇ ଚାଲ ।

ତାପରେ ସେଥିରୁ ଜଣେ ଦିବ୍ୟ ପୁରୁଷ ବାହାରିଲେ । ସେ ପରମ ସୁନ୍ଦର, ଶକ୍ତିଶାଳୀ ଏବଂ ପିତାମ୍ବରଧାରୀ ଥିଲେ। ହାତରେ ଅମୃତ-କଳଶ ଧରି ଧନ୍ୱନ୍ତରୀ ବାହାରିଲେ। ଦେବତା ଏବଂ ଅସୁର ଉଭୟେ ମିଶି କରି ଯୋଜନା କରିଥିଲେ, କିନ୍ତୁ ଅସୁରମାନେ ଆଗେ କହିଥିଲେ ଯେ ଅମୃତ ବାହାରିଲେ ଆମେ ନବୁ । ଅସୁରମାନେ ଧନ୍ୱନ୍ତରୀଙ୍କ ହାତରୁ ଅମୃତ-କଳଶ ଛଡେଇ ନେଲେ । ଆଗରୁ ଦେବତା ଏବଂ ଅସୁର ଦୁଇଟି ଅଲଗା-ଅଲଗା ଦଳ ଥିଲେ। ଅସୁରମାନେ ଅମୃତ ନେଇଗଲା ପରେ କିନ୍ତୁ

ସେମାନେ ନିଜ ମଧ୍ୟରେ କଳି କରିବାକୁ ଲାଗିଲେ ଯେ ଆଗ କିଏ ପିଇବ ? ତାଙ୍କ ଭିତରୁ କେତେଜଣ ଅସୁର ଦୁର୍ବଳ ଥିଲେ । ସେମାନେ କାନ୍ଦିବାକୁ ଲାଗିଲେ। ବିବଶ ହୋଇ କହିଲେ- ଆମେ ଦେବତାମାନଙ୍କ ସହିତ ମିଶି ମନ୍ଥନ କରିଥିଲୁ ତେଣୁ ଏଥିରେ ସେମାନଙ୍କର ମଧ୍ୟ ଭାଗ ଅଛି । ଭଲ କଥା । ଏତେ ଉଦାର ? ଦେବତାମାନଙ୍କ ପକ୍ଷ ନେଇ କହିଲେ ! ପ୍ରକୃତରେ ଆଗ କାନ୍ଦୁଥିଲେ ଯେ ଅମୃତ ମିଳି ପାରୁ ନ ଥିଲା । ଶକ୍ତିଶାଳୀ ଅସୁରମାନଙ୍କ ପାଖକୁ ଅମୃତ ମାଗିବାକୁ ଦୁର୍ବଳମାନେ ଗଲାରୁ ସେମାନେ ଧକ୍କାମାରି କହିଲେ - ଏଠୁ ପଳାଅ । ସେମାନେ ବି ଯଦିଓ ତାଙ୍କ ଦଳର କିନ୍ତୁ ସେମାନେ ଦୁର୍ବଳମାନଙ୍କୁ ସେଠାରୁ ବାହାର କରି ଦେଲେ ଏବଂ ଆଗ ମୁଁ ପିଇବି । ଆଗ ମୁଁ ପିଇବି - **'ଅହଂ ପୂର୍ବଂ, ଅହଂ ପୂର୍ବଂ'** ତୁମେ ନୁହଁ, କହିବାକୁ ଲାଗିଲେ । ଦେବତାମାନେ କିଛି କରି ପାରିଲେ ନାହିଁ ।

## ମୋହିନୀ-ଅବତାର

ଅନନ୍ୟୋପାୟ ହୋଇ ଦେବତାମାନେ ଭଗବାନଙ୍କୁ ଚାହିଁଲେ। ଭଗବାନ କହିଲେ, "ମୁଁ ଜାଣିଥିଲି ତୁମେ ମୋ ପାଖକୁ ଆସିବ। କାନ୍ଦନି । ଏତେ ସବୁ କଲିଣି ତ, ଅମୃତ କେମିତି ମିଳିବ, ସେ କଥା ବି କହିବି।" ତାପରେ ଭଗବାନ ଏକ ସୁନ୍ଦର ମାୟାବୀ ରୂପ ଧାରଣ କଲେ । ସେ ସ୍ତ୍ରୀ ରୂପ ଧାରଣ କରି ସେଠାକୁ ଆସିଲେ, କାରଣ ସେ ଜାଣିଥିଲେ ଯେ ଅସୁରମାନଙ୍କର ଆଉ ଏକ ଦୁର୍ବଳତା ହେଲା 'ସ୍ତ୍ରୀ', ପ୍ରଥମ ହେଲା 'ସୁରା'। ଭଗବାନ ବିଷ୍ଣୁ ନିଶ୍ଚୟ କରି ଏକ ଅତ୍ୟନ୍ତ ସୁନ୍ଦର ମନ ମୋହନ ରୂପ ଧାରଣ କଲେ । କିନ୍ତୁ ସେହି ସୌନ୍ଦର୍ଯ୍ୟ ସାତ୍ତ୍ୱିକ ନ ଥିଲା, ଥିଲା ମାଦକ ସୌନ୍ଦର୍ଯ୍ୟ । ଭଗବାନଙ୍କ ମାୟା ଦେଖ କିପରି, ସେହି ରୂପକୁ ଦେଖି ଦେବତାମାନଙ୍କ ମନରେ ବିକାର ଉତ୍ପନ୍ନ ହେଲା ନାହିଁ କିନ୍ତୁ ଅସୁରମାନଙ୍କର ଯେଉଁ ମନ ପ୍ରଥମରୁ ହିଁ ବିଗିଡି ଯାଇଥିଲା ଭଗବାନ ତାକୁ ଅଧିକ ବିଗାଡି ଦେଲେ ।

ଅସୁରମାନଙ୍କ ହାତରେ ଅମୃତ-କଳଶ ସେମିତି ରହିଗଲା। ସମସ୍ତେ ସେହି ସ୍ତ୍ରୀ ରୂପଧାରୀ ଭଗବାନଙ୍କୁ ଦେଖିବାକୁ ଲାଗିଲେ ଏବଂ ତାଙ୍କ ପାଖକୁ ଗଲେ । ସେମାନେ ତାଙ୍କୁ ପଚାରିଲେ ଯେ ତୁମେ କିଏ ? ତୁମେ କେତେ ସୁନ୍ଦର । ଲାଗୁଛି ଯେମିତି ଏପର୍ଯ୍ୟନ୍ତ ତୁମକୁ କେହି ସ୍ପର୍ଶ ମଧ୍ୟ କରିନାହାନ୍ତି । ତୁମେ ସମ୍ପୂର୍ଣ୍ଣ ଶୁଦ୍ଧ । କେବଳ ଏତିକି ନୁହଁ, ସେମାନଙ୍କର ବୁଦ୍ଧି ପୂର୍ଣ୍ଣ ରୂପେ ମୋହିତ ହୋଇଗଲା । ଭଗବାନଙ୍କର ଏହି ମୋହିନୀ ଅବତାରର ପ୍ରଭାବ ତ ପଡିବା ନିଶ୍ଚିତ। ତାପରେ ସେହି ଅସୁରମାନେ କହିଲେ - ଆମେ

ଏହି ଅମୃତକୁ ନେଇଆସିଛୁ କିନ୍ତୁ ଏହା ପାଇଁ ଆମ ଭିତରେ କଳହ ଆରମ୍ଭ ହୋଇଗଲାଣି । ଆମେ ଏହି କଳଶ ତମକୁ ଦେଉଛୁ । ତୁମେ ନିର୍ଣ୍ଣୟ କର ଯେ ଅମୃତ କାହାକୁ ମିଳିବା ଉଚିତ ।

ଦେଖିଲେ, ତାଙ୍କ ବୁଦ୍ଧି କେମିତି ହେଇଗଲା । ସତେ ଯେମିତି ଭଗବାନ କହୁଛନ୍ତି ଯେ ମୁଁ ନବା ବି ଜାଣେ । କିନ୍ତୁ ତାଙ୍କ ଚାଲାକି ଦେଖନ୍ତୁ, ସିଧା-ସିଧା ସେହି ଅମୃତ-କଳଶକୁ ନେଲେନି । ମନ୍ଦ ମନ୍ଦ ହସି ସେମାନଙ୍କ ଆଡକୁ ଚାହିଁ କହିଲେ - ଆରେ ! ମୁଁ ଚରିଆଡ଼େ ବୁଲୁଥିବା ସ୍ତ୍ରୀଲୋକ । ଆପଣ ମୋ ଉପରେ ବିଶ୍ୱାସ କରୁଛନ୍ତି ? କୌଣସି ବୁଦ୍ଧିମାନ ମନୁଷ୍ୟ କେବେ ବି ମୋ ପରି ସ୍ତ୍ରୀଲୋକ ଉପରେ ବିଶ୍ୱାସ କରିବ କି ? ଏପରି ବ୍ୟଭିଚାରିଣୀ ସ୍ତ୍ରୀର କଣ ଭରସା ? ତା ସହିତ ମିତ୍ରତା କରିବା ଆଦୌ ଉଚିତ ନୁହଁ । ଏପରି କଥା ଯେତେବେଳେ ମୋହିନୀ କହିଲା, ସେମାନଙ୍କ ବିଶ୍ୱାସ ଆହୁରି ବଢିଗଲା । ସେମାନେ କହିଲେ - ତୁମ ଉପରେ ଆମର ପୂର୍ଣ୍ଣ ବିଶ୍ୱାସ ଅଛି । ତୁମେ ଏହି କଳଶ ନିଅ । ସ୍ତ୍ରୀରୂପଧାରୀ ଭଗବାନ ସେହି କଳଶ ନିଜ ହାତରେ ନେଲେ । ଭଗବାନ ଦେବା ଜାଣନ୍ତି ତ ନେବା ବି ଜାଣନ୍ତି । ତାପରେ ଭଗବାନ କହିଲେ, "ଦେଖ, ଏହି କଳଶ ତୁମେମାନେ ନିଜେ ମୋ ହାତରେ ଦେଇଛ । ଏବେ ମୁଁ ନିଜ ଇଚ୍ଛାରେ ବାଣ୍ଟିବି ।" ପରେ କହିବନି ଯେ ଯାକୁ କାହିଁକି ଦେଲ ? ତାକୁ କାହିଁକି ଦେଲ ? କମ୍ ଦେଲ କି ଅଧିକ ଦେଲ ? ଆଦି ଆଦି । ତୁମେ ସ୍ୱୀକାର କଲେ ମୁଁ ବାଣ୍ଟିବି । ମଣିଷର ମୁଣ୍ଡ ଖରାପ ହେଇଗଲେ, ଯେଉଁଠି ତାର ଆସକ୍ତି ଥାଏ, ସେ ଯାହା କହେ ତାହା ତାକୁ ଠିକ୍ ଲାଗେ । ଏମିତି ଦଶା ହୁଏ । ସେ ଦିନ କହିଲେ ଦିନ, ରାତି କହିଲେ ରାତି । ମଣିଷର ମନ କାମାତୁର ହେଲେ ସେ କିଛି ଅନ୍ୟ କଥା ବୁଝିପାରେ କି ?

ମୋହିନୀ ରୂପରେ ଭଗବାନ କହିଲେ - ଯାଅ, ଆଗ ସ୍ନାନ, ଦାନ, ଯଜ୍ଞ ଆଦି କରି ସାରି ଆସ । ଅମୃତ ପିଇବା କୌଣସି ଦୈନନ୍ଦିନ କାର୍ଯ୍ୟ ପରି କାର୍ଯ୍ୟ କି ? ସମସ୍ତେ ସ୍ନାନ ଆଦି ସାରି, ନୂତନ ବସ୍ତ୍ର ପିନ୍ଧି, ସଜାସଜି ହେଇ ଆସିଲେ । ସେତେବେଳେ ମୋହିନୀ ରୂପଧାରୀ ଭଗବାନ ଭାବିଲେ ଏହି କ୍ରୁର ସ୍ୱଭାବର ଅସୁରମାନଙ୍କୁ ଅମୃତ ପିଇବାକୁ ଦେବା ଅର୍ଥ ସାପକୁ ଦୁଧ ପିଏଇବା ତେଣୁ ସେ ଅସୁରମାନଙ୍କୁ ଅମୃତ ଦେଲେ ନାହିଁ । ତାପରେ ସେ ଦେବତା ଏବଂ ଅସୁରମାନଙ୍କୁ ଅଲଗା ଅଲଗା ଧାଡ଼ିରେ ବସେଇଲେ । ଦେବତାମାନଙ୍କୁ ଅମୃତ ଦେଲେ ଏବଂ ଅସୁରମାନଙ୍କ ଆଡକୁ ଚାହିଁ କେବଳ ମନ୍ଦ-ମନ୍ଦ ହସିଲେ । ସେମାନେ ତାଙ୍କୁ ଦେଖି ପାଗଳ ହେଇଗଲେ । ଆମ ନମ୍ବର ଏବେ ତ ଆସିବ ଭାବି ପ୍ରତୀକ୍ଷା କରିବାକୁ ଲାଗିଲେ ।

ଜଣେ ଅସୁର ଭାବିଲା ନିଶ୍ଚେ କିଛି ଗଡବଡ କଥା ହଉଛି । ସେ ଉଠିଲା ଏବଂ ଦେବତାରୂପ ନେଇ ସୂର୍ଯ୍ୟ ଏବଂ ଚନ୍ଦ୍ରଙ୍କ ମଝିରେ ଯାଇ ବସି ପଡିଲା । ଭଗବାନ (ମୋହିନୀ ରୂପୀ) ତା ପାଖକୁ ବି ଗଲେ । ଯଦିଓ ଭଗବାନ ତାକୁ ଅସୁର ବୋଲି ଜାଣି ସାରିଥିଲେ କିନ୍ତୁ ତାଙ୍କର ନିୟମ ହେଲା ଯେ ଯିଏ ତାଙ୍କୁ ଚିହ୍ନିପାରେ ସେ ନିଶ୍ଚୟ କିଛି ନା କିଛି ଫଳ ପାଏ, ତେଣୁ ତାକୁ ମଧ୍ୟ ଦେଲେ । ସେ ପିଇଲା, କିନ୍ତୁ କଣ୍ଠ ପର୍ଯ୍ୟନ୍ତ ଗଲା ପରେ ସୂର୍ଯ୍ୟ- ଚନ୍ଦ୍ର ବୁଝି ସାରିଥିଲେ ଯେ ଆମ ଦଳର ନୁହଁ । କହିଲେ, ଭଗବାନ, ଇଏ ତ ଅସୁର । ତାପରେ ଭଗବାନ ନିଜ ଚକ୍ରକୁ ହାତରେ ଧରି ତା ମୁଣ୍ଡକୁ କାଟି ଦେଲେ । କିନ୍ତୁ କଣ୍ଠ ପର୍ଯ୍ୟନ୍ତ ଅମୃତ ଚାଲିଯାଇଥିବାରୁ ତାର ମୁଣ୍ଡ ଅମର ହେଲା ଆଉ ତଳ ଅଂଶ ମରିଗଲା। ତାରି ନାମ ରାହୁ। ଯିଏ ଚନ୍ଦ୍ର ଏବଂ ସୂର୍ଯ୍ୟ ଉଭୟଙ୍କୁ ଖାଇଯାଏ । ତାହାକୁ ଚନ୍ଦ୍ରଗ୍ରହଣ ଏବଂ ସୂର୍ଯ୍ୟପରାଗ କୁହନ୍ତି। ଏହାର ଅର୍ଥ ହେଲା ଯିଏ ଚୁଗୁଲି କରେ ତାକୁ ଗ୍ରହଣ ଲାଗେ।

ଏବେ କଥା ପ୍ରକଟ ହେଲା, ତେଣୁ ଭଗବାନ ମୋହିନୀ ରୂପ ଛାଡି ନିଜର ପ୍ରକୃତ ରୂପ ଧାରଣ କଲେ। ଦେବତାମାନଙ୍କୁ ଅମୃତ ଦେଇ ସେ ଅନ୍ତର୍ଧାନ ହେଇଗଲେ। ଦେଖିଲେ, ଯଦିଓ ଅମୃତ ପାଇଁ ଦେବତା ଏବଂ ଅସୁର ଉଭୟ ମିଶି ପରିଶ୍ରମ କରିଥିଲେ, ତଥାପି ଭଗବାନଙ୍କ ପ୍ରତି ବିମୁଖ ଅସୁରମାନଙ୍କୁ ଚେଷ୍ଟା କରିବା ସତ୍ତ୍ୱେ ଅମୃତ ମିଳିଲା ନାହିଁ । ଭଗବାନଙ୍କ ଆଶ୍ରିତ ଦେବତାମାନଙ୍କୁ ଅମୃତ ମିଳିଲା । ଏହାର ଅର୍ଥ ଶତ ଚେଷ୍ଟା କଲେ ମଧ୍ୟ ସଫଳତା ତାକୁ ମିଳେ ଯିଏ ଭଗବାନଙ୍କ ଆଶ୍ରୟ ଗ୍ରହଣ କରେ ଏବଂ ତାଙ୍କ ଶକ୍ତି ଦ୍ୱାରା କାର୍ଯ୍ୟ କରେ ।

ଏଠାରେ ଆଉ ଗୋଟିଏ କଥା ବୁଝିବାକୁ ପଡିବ ଯେ ମତ୍ସ୍ୟ, ବରାହ, କୂର୍ମ, ନୃସିଂହ, ବାମନ, ପର୍ଶୁରାମ, ରାମ, କୃଷ୍ଣ, ମୋହିନୀ ଆଦି ସମସ୍ତେ ଭଗବାନଙ୍କ ଅବତାର ଅଟନ୍ତି । ତଥାପି ଯେତେବେଳେ ଭଗବାନଙ୍କ ସାକାର ରୂପର ଧ୍ୟାନ କରିବାକୁ କୁହାଯାଏ, ସେତେବେଳେ ନିଜ ଇଚ୍ଛାନୁସାରେ ଅବତାରଙ୍କ ଧ୍ୟାନ କରାଯାଏ ନାହିଁ । ପ୍ରଥମେ ବୁଝିବାକୁ ପଡେ ଯେ କେଉଁ ଅବତାର କେଉଁ ପ୍ରୟୋଜନ ପାଇଁ ହୋଇଥିଲେ । ଯଥା କପିଳ ମୁନିଙ୍କ ଅବତାର ହେଲା ଜ୍ଞାନ ପ୍ରଦାନ ପାଇଁ । କିନ୍ତୁ ମୋହିନୀ ଅବତାର କେବଳ ରାକ୍ଷସମାନଙ୍କୁ ମୋହିତ କରିବା ପାଇଁ ହେଲା । ଏତିକି ବୁଝିଗଲେ ଏହା ସ୍ପଷ୍ଟ ହେଲା ଯେ କେଉଁ ଅବତାରଙ୍କର, କେଉଁ ସାକାର ରୂପର ଧ୍ୟାନ କରିବା ? କୁହାଯାଇଛି କପିଳ ଅବତାର ବା ଯେଉଁ ଉପାସ୍ୟଙ୍କ ଧ୍ୟାନ କରିବ କର କିନ୍ତୁ ମୋହିନୀ ରୂପର ଧ୍ୟାନ କରନି।

## ସମୁଦ୍ର-ମନ୍ଥନର ତାତ୍ପର୍ଯ୍ୟ

ଏବେ ସମୁଦ୍ର - ମନ୍ଥନର ଅର୍ଥ ମଧ୍ୟ ବୁଝିବାକୁ ପଡ଼ିବ । ଏହି କ୍ଷୀରସାଗର ଆମର ଅନ୍ତଃକରଣ । ପ୍ରକୃତରେ ମନ୍ଥନ ଏଇଠି କରିବାକୁ ପଡିବ । ଏହାର ଅନେକ ପ୍ରକାରରେ ଅର୍ଥ କରାଯାଇଛି । କିନ୍ତୁ ମନ୍ଥନ କେବଳ ଏଇଠି ହେବ । ଏହି ମନ୍ଥନ ମନ ଦ୍ୱାରା କରାଯାଏ । ଏହାକୁ ନିରନ୍ତର କରିବାକୁ ପଡିବ । ଏହି ମନ୍ଥନ ନିଦିଧ୍ୟାସନ ବା ଧ୍ୟାନଭ୍ୟାସର ପ୍ରକ୍ରିୟା ଅଟେ ।

ଏହାର ସାମାନ୍ୟ ଅର୍ଥ କରାଯାଏ ଯେ ଯେକୌଣସି କର୍ମର ଫଳ ଅମୃତ ଅଟେ ଏବଂ ସେହି ଫଳର ପ୍ରାପ୍ତିରେ ଅନେକ ବିଘ୍ନ ଆସେ । ସଫଳତା ମଧ୍ୟ ମିଳେ । ବିଘ୍ନକୁ ଡରିବେନି କି ସଫଳତାରେ ମୁଗ୍ଧ ହେବେନି। ଟିକିଏ ସଫଳତା ମିଳିଲେ ସେଇଠି ଅଟକି ଯିବେନି । ଆଗକୁ ବଢୁଥାଅ, ଯେଉଁ ପର୍ଯ୍ୟନ୍ତ ଅନ୍ତିମ ଲକ୍ଷ୍ୟ ମିଳିନାହିଁ, ଆଗେଇ ଚାଲ ।

ସେହିପରି, ଯେତେବେଳେ ନିଦିଧ୍ୟାସନ ରୂପୀ ମନ୍ଥନ କରିବା ପାଇଁ ବସିବେ, ଧ୍ୟାନ କରିବେ ଯେ ମୁଁ ଦେହାଦି ନୁହଁ, ମୁଁ ତ ଚୈତନ୍ୟ ଆତ୍ମା କିନ୍ତୁ ଏପରି କେତେବେଳେ ହେବ ? ଯେମିତି କ୍ଷୀର ସାଗରରେ ପୂର୍ବରୁ ଚେରମୂଳୀ, ଔଷଧ ଆଦି ପଡିଥିଲା ସେହିପରି ଆମର ଅନ୍ତଃକରଣ ରୂପୀ ସମୁଦ୍ରରେ, ବେଦାନ୍ତ ଶ୍ରବଣ ଦ୍ୱାରା ପ୍ରଥମେ ଉପନିଷଦର ବାକ୍ୟ ପଡିଲା, ତାପରେ ଏହାକୁ ମନ୍ଥନ କରାଗଲା । ଅନ୍ୟଥା କୌଣସି ଲାଭ ମିଳିବ ନାହିଁ । ଆଉ ଗୋଟିଏ କଥା ମନେ ରଖିବାକୁ ପଡିବ ଯେ ସବୁ କାମ ଭଗବାନଙ୍କ କୃପାଦ୍ୱାରା, ତାଙ୍କ ଅନୁଗ୍ରହରୁ ହେଇଥାଏ । ତେଣୁ ତାଙ୍କ ଅନୁଗ୍ରହ ଅର୍ଜନ କରି ତାପରେ ମନ୍ଥନ କରିବା ଉଚିତ । ଆଉ ଅମୃତ ହେଲା ନିଜ ଆତ୍ମ ସ୍ୱରୂପର ଅନୁଭବ । ମନ୍ଥନ ଆରମ୍ଭ କଲା ପରେ ସେହି ଅନୁଭବର ପ୍ରାପ୍ତି ପର୍ଯ୍ୟନ୍ତ, ମଝିରେ ଭଲ-ମନ୍ଦର ଅନେକ ଅନୁଭବ ପ୍ରାପ୍ତ ହେଇପାରେ । ଅନୁଭବ ଖରାପ ମଧ୍ୟ ହେଇପାରେ, ଅନେକ ପ୍ରକାରର ସିଦ୍ଧି ପ୍ରାପ୍ତ ହେଇପାରେ । କିନ୍ତୁ ପିତା-ପିତା ଅନୁଭବ ହେଲେ ମହାଦେବଙ୍କୁ ଧ୍ୟାନ କରିବା ଉଚିତ। ବିଷ ବାହାରି ଯିବ । ଅର୍ଥାତ୍ ମହାଦେବଙ୍କ ପରି ଶାନ୍ତ ଚିତ୍ତ ସହ ଆଗକୁ ବଢ଼ିଲେ ମନରେ ଉଠୁଥିବା ଆସୁରୀ ବୃତ୍ତିଗୁଡିକୁ ଭଗବାନ ସ୍ୱୟଂ ସମାପ୍ତ କରିଦେବେ । ସିଦ୍ଧିଗୁଡିକର ଆକର୍ଷଣକୁ ମଧ୍ୟ ନଷ୍ଟ କରିଦେବେ। ସିଦ୍ଧିଗୁଡିକର ଆକର୍ଷଣକୁ ମଧ୍ୟ ନଷ୍ଟ କରିଦେବେ। ଶେଷରେ ଅମୃତ ସ୍ୱରୂପର ପ୍ରାପ୍ତି ମଧ୍ୟ ହେଇଯିବ ।

## ଦେବାସୁର ସଂଗ୍ରାମ

ଏବେ ଦେବତାମାନେ ଅମୃତ ପାନ ପରେ ଶକ୍ତିଶାଳୀ ହେଇଗଲେ । ଅସୁରମାନେ ଖାଲି ଚାହିଁ ରହିଲେ। ଦେବତାମାନଙ୍କୁ ଅମୃତ ମିଳିଗଲା - ଏହା ତ ଅତ୍ୟନ୍ତ ଗଡବଡ କଥା, ଏପରି ଭାବି ସେମାନେ କ୍ରୋଧିତ ହେଲେ। କହିଲେ ଏମାନେ ସମସ୍ତେ ବିଶ୍ୱାସଘାତକ। ଦେଖନ୍ତୁ ପ୍ରଥମେ ଏହି ଅସୁରମାନେ ନିଜେ ବିଶ୍ୱାସଘାତକ ଥିଲେ । ପରିଶ୍ରମ ତ ଉଭୟ କରିଥିଲେ । ଅମୃତ ବାହାରିଲା ପରେ ସେମାନଙ୍କ ମନରେ ବେଇମାନୀ ଆସି ଥିଲା । ଏବେ ସେହି ଅମୃତ ପ୍ରାପ୍ତିରେ ଦେବତାମାନଙ୍କୁ ସଫଳ ହେବାର ଦେଖି ଦୈତ୍ୟମାନଙ୍କୁ ବହୁତ ଦୁଃଖ ହେଲା, କ୍ରୋଧ ଆସିଲା ଏବଂ ସେମାନେ ଘୋର ଯୁଦ୍ଧ କରିବାକୁ ଲାଗିଲେ । ଥରେ ତ ଏପରି ଘୋର ଯୁଦ୍ଧ ଚାଲିଲା ଯେ, ଅମୃତ ପିଇଲା ପରେ ମଧ୍ୟ ଦେବତାମାନେ ଜିତି ପାରିଲେ ନାହିଁ । ନିଜକୁ ଦୁର୍ବଳ ଅନୁଭବ କରି ସେମାନେ ଡରିଗଲେ । ସେତେବେଳେ ସେମାନେ ପୁଣି ଭଗବାନଙ୍କୁ ଆରାଧନା କଲେ ଭଗବାନ ସେଠାରେ ପ୍ରକଟ ହେଲେ ଏବଂ ସେ ନିଜର ସୁଦର୍ଶନ ଚକ୍ର ଦ୍ୱାରା ଅସୁରମାନଙ୍କ ମାୟାକୁ ସହଜରେ ଦୂର କରିଦେଲେ । ଯେମିତି ଜଣେ ସ୍ୱପ୍ନରୁ ଉଠିଲା ପରେ, ସ୍ୱପ୍ନ ପ୍ରପଞ୍ଚ ଅନାୟାସ ଶେଷ ହେଇଯାଏ, ସେମିତି ଭଗବାନଙ୍କ ଜ୍ଞାନରୂପୀ ଚକ୍ରଦ୍ୱାରା ଅଜ୍ଞାନ ରୂପୀ ମୋହ ସମାପ୍ତ ହେଇଗଲା।

ମାୟା ସିନା ଶେଷ ହେଲା, କିନ୍ତୁ ଅସୁରମାନେ ଯୁଦ୍ଧ ବନ୍ଦ କଲେ ନାହିଁ । ଅସୁର ଏବଂ ଦେବତାମାନଙ୍କ ଯୁଦ୍ଧ ଚାଲୁ ରହିଲା। ତାପରେ ଇନ୍ଦ୍ରଦେବ ନିଜର ବଜ୍ର ଉଠେଇଲେ। ରାଜା ବଳିକୁ ସମ୍ମୁଖରେ ଦେଖି ସେ ତାଙ୍କୁ କହିଲେ- ଏବେ ତ ତୁମେ ମୋ ହାତ ପାଖରେ, ମୁଁ ତୁମକୁ ଛାଡିବିନି । ତୁମର ମୁଣ୍ଡ କାଟ ନ କରି ଛାଡିବିନି। ରାଜା ବଳି କହିଲେ, "ଇନ୍ଦ୍ର ! ବ୍ୟର୍ଥ ପ୍ରଳାପ ବନ୍ଦ କର । ଦୁଇ ଦିନ ଆଗରୁ ତୁମେ କାନ୍ଦୁଥିଲ । ଜଗତରେ, ଏଇ ଜୀବନରେ ସଫଳତା-ଅସଫଳତା ଆମ ହାତରେ ନ ଥାଏ । ଏହା ଥାଏ କେବଳ ଭଗବାନଙ୍କ ହାତରେ। କେବେ ଜଣେ ସଫଳ ହୁଏ ତ କେବେବ ଆଉ ଜଣେ। ଏହି ହାରିବା - ଜିତିବା ଆଦି ବହୁତ ଗୁରୁତ୍ୱପୂର୍ଣ୍ଣ ନୁହଁ। କେବେ ମୋର ବିଜୟ ତ ଆଉ କେବେ ତୁମର, ଚାଲ, ଯୁଦ୍ଧ କର । ଦେଖିଲେ, ରାଜା ବଳି କେତେ ବୁଦ୍ଧିମାନ ଥିଲେ ।"

ଯୁଦ୍ଧରେ ଯେତେବେଳେ ଇନ୍ଦ୍ର ନିଜର ବଜ୍ର ଦ୍ୱାରା ବଳିଙ୍କୁ ମାରି ଦେଲେ ଅନ୍ୟ ଦେବତାମାନେ ଅନ୍ୟ ଅସୁରମାନଙ୍କୁ ମାରିବା ଆରମ୍ଭ କଲେ । ବ୍ରହ୍ମାଙ୍କ ଆଦେଶ ପାଇ

ନାରଦ ସେଠାକୁ ଆସିଲେ । ଏଥର ସେ ଅସୁରମାନଙ୍କ ପକ୍ଷରେ ଥିଲେ ଏବଂ ଦେବତାମାନଙ୍କୁ ଦୈତ୍ୟମାନଙ୍କ ସଂହାରରୁ ବିରତ କଲେ । ତାପରେ ଦେବତାମାନଙ୍କୁ କହିଲେ, "ତୁମେ ମାନେ ଅମୃତ ପାନ କଲ । ଲକ୍ଷ୍ମୀଙ୍କର କୃପା ଦୃଷ୍ଟି ମଧ୍ୟ ପ୍ରାପ୍ତ କଲ । ଏବେ ଯୁଦ୍ଧ କରିବା ବନ୍ଦ କର ।" ଯୁଦ୍ଧ ବନ୍ଦ ହେଇଗଲା । ନାରଦ ମୁନିଙ୍କ କହିବା ଅନୁସାରେ ରାଜା ବଳିଙ୍କ ଶରୀରକୁ ଅସୁରମାନେ ତାଙ୍କ ଗୁରୁ ଶୁକ୍ରାଚାର୍ଯ୍ୟଙ୍କ ପାଖକୁ ନେଇ ଗଲେ । ତାଙ୍କ ପାଖରେ ସଂଜୀବନୀ ବିଦ୍ୟା ଥିଲା । ସେ ବିଦ୍ୟା ବଳରେ ସେ ସବୁ ଅସୁରମାନଙ୍କୁ ପୁନର୍ଜୀବିତ କରିଦେଲେ । ତାଙ୍କ ସ୍ପର୍ଶରେ ବଳିଙ୍କର ପୂର୍ବ ସ୍ମୃତି ଫେରି ଆସିଲା ଏବଂ ତାଙ୍କର ସମସ୍ତ ଇନ୍ଦ୍ରିୟ ସଚେତ ହେଇଗଲେ । ଏହା ସହିତ ଏହି ଅଧ୍ୟାୟ ସମାପ୍ତ ହେଲା ।

## ଭଗବାନ ଶଙ୍କରଙ୍କର ମୋହିତ ହେଇଯିବା

ଏହା ପରର କଥା ଅତ୍ୟନ୍ତ ବିଚିତ୍ର ଅଟେ । ଭଗବାନ ମହାଦେବ ଯେତେବେଳେ ଶୁଣିଲେ ଯେ ସମୁଦ୍ର-ମନ୍ଥନରୁ ଅମୃତ ବାହାରିଛି ଏବଂ ଭଗବାନ ମୋହିନୀ ଅବତାର ନେଇଛନ୍ତି, ଭଗବାନ ନାରାୟଣ ସ୍ତ୍ରୀ ରୂପରେ ଆସିଛନ୍ତି, ସେ କହିଲେ ଯେ ଭଗବାନଙ୍କର ସବୁ ଅବତାର ମୁଁ ଦେଖିଛି କିନ୍ତୁ ଏହି ମୋହିନୀ ଅବତାରକୁ ତ ମୁଁ ଦେଖିନି ।

**ବୃଷଧ୍ୱଜୋ ନିଶମ୍ୟେଦଂ ଯୋଷିଦ୍ରୂପେଣ ଦାନବାନ୍ ।**
**ମୋହୟିତ୍ୱାସୁରଗଣାନ୍‌ହରିଃ ସୋମମପାୟୟତ୍ ॥ (୮.୧୨.୧)**

**ବୃଷମାରୁହ୍ୟ ଗିରିଶଃ ସର୍ବଭୂତଗଣୈର୍ବୃତଃ ।**
**ସହ ଦେବ୍ୟା ୟଯୌ ଦ୍ରଷ୍ଟୁଂ ୟତ୍ରାସ୍ତେ ମଧୁସୂଦନଃ ॥ (୮.୧୨.୨)**

ଭଗବାନଙ୍କର ସେହି ମୋହିନୀ ରୂପକୁ ଦେଖିବାର ଇଚ୍ଛା ଯୋଗୁଁ ସେ ନିଜର ନନ୍ଦୀ ବଳଦ ଉପରେ ଆରୂଢ ହୋଇ ଭଗବାନ ନାରାୟଣଙ୍କ ପାଖକୁ ଯାଇ କହିଲେ -

**ଅବତାରା ମୟା ଦୃଷ୍ଟା ରମମାଣସ୍ୟ ତେ ଗୁଣୈଃ ।**
**ସୋଽହଂ ତଦ୍ ଦ୍ରଷ୍ଟୁମିଚ୍ଛାମି ୟତ୍ ତେ ଯୋଷିଦ୍ୱପୁର୍ଧୃତମ୍ ॥ (୮.୧୨.୧୨)**

ଭଗବାନ ମୁଁ ଆପଣଙ୍କର ସମସ୍ତ ଅବତାର ଦେଖିଛି, କିନ୍ତୁ ସ୍ତ୍ରୀ ରୂପର ଅବତାର ଦେଖିନି । ତାକୁ ବି ମୁଁ ଦେଖିବାକୁ ଚାହୁଁଛି । ଭଗବାନ କହିଲେ, "ସ୍ତ୍ରୀ ରୂପକୁ ଦେଖିବାକୁ ଚାହୁଁଛ ?" ଭଗବାନ ନାରାୟଣ ଏଠାରେ ସାବଧାନ କରିବା ପାଇଁ କହୁଛନ୍ତି ଯେ ଏହି

ମୋହିନୀ ଅବତାର ତ ମୁଁ, **'କୌତୂହଲାୟ ଦୈତ୍ୟାନାଂ'** ଦୈତ୍ୟମାନଙ୍କୁ ମୋହିତ କରିବା ପାଇଁ, ଗୋଟିଏ ଖେଳ ଖେଳିବା ପାଇଁ ଧାରଣ କରିଥିଲି । କାମୀ ପୁରୁଷ ହିଁ ତାର ଆଦର କରନ୍ତି । ତାହା ଉପାସନା ପାଇଁ ନୁହଁ । ତାପରେ କହିଲେ ଯେ ଆପଣ ମୋର ସେହି ମୋହିନୀ ରୂପକୁ ଦେଖିବାକୁ ଚାହୁଁଛନ୍ତି ତ ଦେଖନ୍ତୁ । ଏପରି କହି

**ତତେଽହଂ ଦର୍ଶୟିଷ୍ୟାମି ଦିଦୃକ୍ଷୋଃ ସୁରସତ୍ତମ । (୮.୧୨.୧୬)**

ଦେଖୁ - ଦେଖୁ ଭଗବାନ ବିଷ୍ଣୁ ଅନ୍ତର୍ଦ୍ଧାନ ହେଇଗଲେ । କ୍ଷଣକ ମଧ୍ୟରେ ସେଠାରେ ଗୋଟିଏ ବଡ ଉପବନ ତିଆରି ହେଇଗଲା, ବଗିଚା, ଉଦ୍ୟାନ ସବୁକିଛି ହେଇଗଲା । ଅଧିକା କଣ ତାର ବର୍ଣ୍ଣନ କରିବା ? ତାପରେ ଏକ ସୁନ୍ଦର ନବଯୁବତୀ ପ୍ରକଟ ହେଲା । ଆଉ ସେ କେମିତି ଆସିଲା ? ହାତରେ ଗୋଟିଏ ବଲ୍‌ନେଇ, ବଲ୍‌ରେ ଖେଳି - ଖେଳି ଆସିଲା । ଭଗବାନ ମହାଦେବ ସେହି ରୂପକୁ ଦେଖି ନିଜକୁ ଭୂଲିଗଲେ । ତାଙ୍କ ସହିତ ସତୀ ଥିଲେ, ତାଙ୍କୁ ମଧ୍ୟ ଭୂଲିଗଲେ । ବଲ ଉଠେଇବା ପାଇଁ ସେ ଦୌଡିଲା ତ ତା'ପଛରେ ମହାଦେବ ମଧ୍ୟ ଦୌଡିଲେ । ସେହି ଲୀଳାର ଅଧିକା ବର୍ଣ୍ଣନା କରିବା ଠିକ୍ ହେବ ନାହିଁ । ସେ ଏତେ ମୋହିତ ହେଇଗଲେ ଯେ ତାଙ୍କର ନିଜ ଉପରେ ମଧ୍ୟ ନିୟନ୍ତ୍ରଣ ରହିଲା ନାହିଁ । ତାଙ୍କର ବୀର୍ଯ୍ୟ ସ୍ଖଳନ ହେଇଗଲା । ସେଠାରେ ଉପସ୍ଥିତ ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ ଯେ କଣ ହେଉଛି ? ସେ ତ ବିରକ୍ତ ଶିରୋମଣି, ତାଙ୍କର ଏପରି ଦଶା କେମିତି ହେଲା ? ଭଗବାନ ନାରାୟଣ ନିଜର ମାୟା ହଠାତ୍ ଦୂରେଇ ଦେଲେ । ମାୟା ଦୂର ହେଲା ପରେ କଣ ହେଲା ?

**ଜଡୀକୃତଂ ନୃପଶ୍ରେଷ୍ଠ ସଂନ୍ୟବର୍ତତ କଶ୍ମଲାତ୍ ॥ (୮.୧୨.୩୫)**

ମାୟା ଦୂର ହେବା ମାତ୍ରେ ମହାଦେବ ସ୍ଥିତି ଜାଣି ପାରିଲେ । ସେ ବୁଝିଗଲେ ଯେ ଭଗବାନଙ୍କ ମାୟା ତାଙ୍କ ଉପରେ ମଧ୍ୟ ପ୍ରଭାବ ପକେଇ ଦେଲା । ଯେମିତି ସେ କହୁଛନ୍ତି ଯେ, "ଭଗବାନ୍ ଆପଣଙ୍କ ମାୟା ବଡ ପ୍ରବଳ । ମୁଁ ପ୍ରସନ୍ନ ହେଲି । ଆପଣଙ୍କ ଏହି ରୂପ ମଧ୍ୟ ମୁଁ ଦେଖି ପାରିଲି ।" ତତ୍‌କ୍ଷଣ ସେ ନିଜକୁ ସେହି ସ୍ଥିତିରୁ ଅଲଗା କରି ନିଜ ସ୍ୱରୂପରେ ସ୍ଥିତ ହେଇଗଲେ ଏବଂ ଭଗବାନଙ୍କର ଏହି ମହିମାକୁ ଦେଖି ନା ସେ ଆଶ୍ଚର୍ଯ୍ୟ ହେଲେ ନା ଗ୍ଲାନି ହେଲା, ବରଂ ସେ ନିଜର ସହଜ ସ୍ୱରୂପରେ ମଗ୍ନ ହେଇଗଲେ । ଦେଖନ୍ତୁ, ଏହି କଥା ବଡ ବିଚିତ୍ର । ଯଦିଓ ଏଠାରେ ଏପରି ବର୍ଣ୍ଣନା କରାଯାଇଛି, କିନ୍ତୁ ଏହାର ଅର୍ଥ ଅତ୍ୟନ୍ତ ବିଚାରପୂର୍ବକ ବୁଝିବାକୁ ହେବ ।

ଶୁକଦେବ କହିଲେ ଯେ ସେଠାରୁ ସ୍ୱଧାମକୁ ଫେରିବା ପରେ ଋଷିମାନଙ୍କ ସଭାରେ ଭଗବାନ ଶଙ୍କର ସତୀଙ୍କୁ କହିଲେ -

**ଅପି ବ୍ୟପଶ୍ୟସ୍ତ୍ୱମଜସ୍ୟ ମାୟାଂ**

**ପରସ୍ୟ ପୁଂସଃ ପରଦେବତାୟାଃ ।**

**ଅହଂ କଳାନାମୃଷଭୋ ବିମୁହ୍ୟେ**

**ୟୟାବଶୋଽନ୍ୟେ କିମୁତାସ୍ୱତନ୍ତ୍ରାଃ ॥ (୮.୨.୪୩)**

ଦେବୀ, ଅଜନ୍ମା ପରମାତ୍ମାଙ୍କ ମାୟା କେତେ ଶକ୍ତିଶାଳୀ, ତାହା ତ ତୁମେ ମଧ ଦେଖିଲ । ଏହା ଦ୍ୱାରା ଯଦି ମୋ ପରି ବ୍ୟକ୍ତି ମଧ ଯେତେବେଳେ ମୋହିତ ହେଇଯାଉଛି ସେତେବେଳେ ଅନ୍ୟମାନଙ୍କ, ଅନ୍ୟଜୀବଙ୍କ କଥା କଣ କହିବା ? ସେମାନେ ତ ସେମିତି ମଧ ପରାଧୀନ ଅଟନ୍ତି ।

ଏବେ ଦେଖନ୍ତୁ, ଏହିପରି ଯେଉଁ ପ୍ରସଂଗଗୁଡିକ ଥାଆନ୍ତି ସେଗୁଡ଼ିକ ପ୍ରାୟଃ ଭ୍ରାମକ ସିଦ୍ଧ ହୁଅନ୍ତି । କାରଣ ଯଦି କେହି ଏହାର ପ୍ରକୃତ ଭାବାର୍ଥକୁ ବୁଝିବନି ତେବେ ସେ ଓଲଟା ଅର୍ଥ ବୁଝିବ ଆଉ ମୋହିତ ହେଇଯିବ । ତାପରେ ସେ କଣ କହିବ ଜାଣନ୍ତି ? ଆରେ ଭଗବାନ ଶିବ ମଧ ମୋହିତ ହୋଇ ଯାଇଥିଲେ ତ ଆମ କଥା କଣ କହିବା ? କିନ୍ତୁ ସେ ଶିବ ଆଉ ଆମେ ଜୀବ। ଅର୍ଥାତ୍ ଏପରି ପ୍ରସଂଗ ଗୁଡିକର ପ୍ରକୃତ ଅର୍ଥ - ଠିକ୍ ଅର୍ଥ ବୁଝିବା ବିଶେଷ ରୂପେ ଆବଶ୍ୟକ । ଯେଉଁ ମାୟା ଦ୍ୱାରା ଏପରି ସର୍ବ ସମର୍ଥ ଭଗବାନ ଶିବ ମଧ ମୋହିତ ହୋଇଯାଉଛନ୍ତି, ସେଥିରୁ ଆମ ପରି ଜୀବମାନଙ୍କୁ କେତେ ସାବଧାନ, କେତେ ସତର୍କ, କେତେ ସଚେତନ ରହିବା ଆବଶ୍ୟକ, ଏହା ବୁଝିବା ଉଚିତ, ଏବଂ ନିଜ ମନ ଉପରେ କେବେ ହେଲେ ଭରସା କରିବା ଉଚିତ ନୁହଁ । ଏହା ସବୁ ବୁଝେଇବା ପାଇଁ ଏଠାରେ ଏହି ପ୍ରସଂଗ କୁହାଯାଇଅଛି ।

ସାର ରୂପରେ ଏହି ପ୍ରସଂଗର ଗୋଟିଏ ଅର୍ଥ ହେଲା ଯେ ଆମକୁ ଅତ୍ୟଧିକ ସଚେତନ ହେବାକୁ ପଡିବ। ନିଜ ମନର ନିୟନ୍ତ୍ରଣରେ କେବେହେଲେ ରହିବା ଉଚିତ ନୁହଁ - ଏମିତି କହିବାନି ଯେ ହେଇତ ଯାଉଛି । ଆଉ ଦ୍ୱିତୀୟ କଥା ହେଲା ଏହି ସଂଦର୍ଭରେ ମାୟା କେତେ ପ୍ରବଳ, ତା'ର କେତେ ଶକ୍ତି ଏହା ଦର୍ଶାଯାଇଛି । ଏବଂ ତୃତୀୟ କଥା ହେଲା ଯେ ଏହି ଭାଗବତ ଗ୍ରନ୍ଥରେ ଶିବ ହେଲେ ଭକ୍ତ ଏବଂ ବିଷ୍ଣୁ ତାଙ୍କ ଆରାଧ୍ୟ । ତେଣୁ ମୋହିତ ହେବାର ଲୀଳା ଦ୍ୱାରା ଭକ୍ତ ଶିବ ଭଗବାନ ବିଷ୍ଣୁଙ୍କ ମହିମା

ବୃଦ୍ଧି କରୁଛନ୍ତି । ସ୍ୱୟଂ ହାରିଯାଇ, ସେ ଆମକୁ ବୁଝଉଛନ୍ତି ଯେ ଆମେ ଭଗବାନଙ୍କ ମହିମାକୁ ବୁଝିବା ଏବଂ ଏହା ମଧ୍ୟ ବୁଝିବା ଯେ ଯଦି ଭଗବାନଙ୍କ ମାୟା ଏତେ ବଳବାନ୍ ତେବେ ଭଗବାନ କେତେ ଶକ୍ତିଶାଳୀ ହୋଇଥିବେ ! ଅର୍ଥାତ୍ ଏହି ଲୀଳାଦ୍ୱାରା ପ୍ରକୃତରେ ଏଠାରେ ଭଗବାନଙ୍କ ଶକ୍ତି ଦର୍ଶାଯାଇଛି ।

ଦେଖନ୍ତୁ, ଏଠାରେ ଗୋଟିଏ କଥା ଭଲ କରି ବୁଝିବେ । ପ୍ରକୃତରେ ତତ୍ତ୍ୱତଃ, ଶିବ ଏବଂ ବିଷ୍ଣୁଙ୍କ ମଧ୍ୟରେ କୌଣସି ପ୍ରଭେଦ ନାହିଁ । ଏଠି ଯେଉଁ ଲୀଳା କୁହାଯାଇଛି ତାକୁ ପଢି ଭାବିବେନି ଯେ ପ୍ରକୃତରେ ଭଗବାନ ଶିବ ମୋହିତ ହୋଇଗଲେ । ଯେପରି ଭଗବାନଙ୍କ 'ମୋହିନୀ ଅବତାର' ଏକ ଲୀଳା ସେହିପରି ଶିବଙ୍କ ମୋହିତ ହେବା ମଧ୍ୟ ତାଙ୍କରି ଏକ ଲୀଳା । ଏହି କଥା ମନରେ ରଖି ଏହି ଲୀଳାରୁ ଯାହା ପ୍ରକୃତ ଏବଂ ଠିକ୍ ପାଠ ଶିଖିବା କଥା, ତାକୁ ଶିଖି ନିଅ ।

ପ୍ରକୃତ କଥା ହେଲା ଯେ ଥରେ ଭଗବାନ ଶିବ ତପସ୍ୟା କରିବା ସମୟରେ ତାଙ୍କ ତପସ୍ୟା ଭଂଗ କରିବା ପାଇଁ ଦେବରାଜ ଇନ୍ଦ୍ର କାମଦେବଙ୍କୁ ପଠାଇଲେ । ସେତେବେଳେ ଶିବ ନିଜର ତୃତୀୟ ନୟନ ଖୋଲି କାମଦେବଙ୍କୁ ଭସ୍ମ କରିଦେଲେ । ତାପରେ ତାଙ୍କ ପତ୍ନୀ ରତିଦେବୀ କାନ୍ଦି କାନ୍ଦି ଆସି ମହାଦେବଙ୍କୁ କହିଲେ ଯେ ଆପଣ ମୋ ସ୍ୱାମୀଙ୍କୁ ମାରି ଦେଲେ । ମହାଦେବ କହିଲେ, "ଯଦିଓ ସେ ଏବେ ନିଜ ପୂର୍ବ ରୂପରେ ନାହାନ୍ତି, ତଥାପି ବିନା ରୂପରେ, ବିନା ଆକାରରେ ସେ ସବୁ ପ୍ରାଣୀମାନଙ୍କ ମଧ୍ୟରେ ରହିବେ । କୃଷ୍ଣାବତାରରେ ତାଙ୍କୁ ରୂପ ମଧ୍ୟ ପ୍ରାପ୍ତ ହେଇଯିବ ।"

ତାପରେ କାମଦେବ ଆସି ମହାଦେବଙ୍କୁ କହିଲେ ଯେ ମୋର ଶକ୍ତି ବିଶ୍ୱ ପ୍ରସିଦ୍ଧ ଥିଲା, କିନ୍ତୁ ଆପଣ ମୋତେ ଜଳେଇ ଦେଲେ । ଏବେ ସବୁ ଲୋକ ଭାବିବେ ଯେ ଏହି କାମକୁ ତ ମହାଦେବ ଜଳେଇ ସାରିଲେଣି । ଆପଣ ମୋତେ ପୁନର୍ଜୀବିତ କରି ଦେଲେ ମଧ୍ୟ ମୋର ଶକ୍ତି ପୂର୍ବବତ୍ ରହିବ ନାହିଁ, ଲୋକମାନେ ମୋର ପ୍ରଭାବକୁ ସ୍ୱୀକାର କରିବେ ନାହିଁ । କରୁଣାସାଗର, କରୁଣାଶୀଳ ସ୍ୱଭାବର ଭଗବାନ ମହାଦେବ କହିଲେ, ଠିକ୍ ଅଛି, ମୁଁ ତୁମକୁ ଶକ୍ତି ପ୍ରଦାନ କରିବି । ଦେଖନ୍ତୁ, ଭଗବାନ ମହାଦେବଏପରି ଯେ କାମଦେବଙ୍କୁ ଶକ୍ତିଶାଳୀ ସିଦ୍ଧ କରିବା ପାଇଁ ସେ ନିଜେ ମୋହିତ ହେବାର ଲୀଳା କଲେ । ଲୀଳା କରି ସେ ସ୍ୱୟଂ ଦେଖେଇ ଦେଲେ ଯେ କାମର ଶକ୍ତି କେତେ ପ୍ରବଳ । ସେ କେବଳ ତାଙ୍କୁ ପୁନର୍ଜୀବିତ କଲେ ନାହିଁ, ତାଙ୍କୁ ଶକ୍ତି ବି ପ୍ରଦାନ କଲେ – ସ୍ୱୟଂ ମୋହିତ ହେଇ । ଶଙ୍କର ଭଗବାନଙ୍କ ଏପରି ମହାନତା, ଏପରି ତାଙ୍କ ଉଦାରତା ।

ଯେଉଁ କାମଦେବଙ୍କୁ ସେ ଭସ୍ମ କରି ଦେଇଥିଲେ ସେ ଭଲା ତାଙ୍କର କଣ ବିଗାଡି ପାରିଥାନ୍ତେ ? ତେଣୁ ଏହି ଲୀଳାର ଠିକ୍ ଅର୍ଥକୁ ଠିକ୍ ଭାବରେ ବୁଝିବା ଆବଶ୍ୟକ। ଭଗବାନ ସ୍ୱୟଂ ମୋହିତ ହୋଇଯାଆନ୍ତି, କେବଳ ଆମକୁ ଦେଖାଇବା ପାଇଁ ଯେ କାମର ଶକ୍ତି କେତେ ପ୍ରବଳ ହୋଇପାରେ । ଅର୍ଥାତ୍ ଏହି ଲୀଳା ଦ୍ୱାରା ସେ ଆମମାନଙ୍କୁ ସର୍ବଦା ସାବଧାନ ରହିବା ପାଇଁ ଉପଦେଶ ଦେଉଛନ୍ତି । ଏହି ବିଷୟର ପ୍ରକୃତ ଅର୍ଥ ଏହା ହିଁ ଅଟେ ।

## ରାଜା ବଳିଙ୍କର ଅମରାବତୀ ଉପରେ ବିଜୟ

ଏବେ ତାପର ମନ୍ୱନ୍ତରର କଥା । ଆମେ ପୂର୍ବରୁ ଦେଖିସାରିଛୁ ଯେ ରାଜା ବଳି ଅତ୍ୟନ୍ତ ସମର୍ଥ ଏବଂ ଗୁରୁଭକ୍ତ ଥିଲେ । ତେଣୁ ସେ ଅତ୍ୟନ୍ତ ଶକ୍ତିଶାଳୀ ହୋଇଯାଇଥିଲେ। ବିଶାଳ ସେନା ପ୍ରସ୍ତୁତ କରି ସେ ଅମରାବତୀକୁ ଘେରିଗଲେ । ସେତେବେଳେ ଦେବଗୁରୁ ବୃହସ୍ପତିଙ୍କ ଆଦେଶାନୁସାରେ ସ୍ୱେଚ୍ଛାନୁସାରେ ରୂପ ଧାରଣ କରି ଦେବତାମାନେ ସ୍ୱର୍ଗଛାଡି ଲୁଚି ଯିବା ପାଇଁ ବାଧ ହେଲେ । ତାପରେ ବଳି ସ୍ୱର୍ଗ ସହିତ ସଂପୂର୍ଣ୍ଣ ବିଶ୍ୱ ଉପରେ ବିଜୟ ପ୍ରାପ୍ତ କଲେ । ଏବେ ଦେବତାମାନେ ଦୁଃଖୀ ହେଲେ ଯେ ଆମ ପାଖରେ ତ କିଛି ରହିଲାନି । ଦେବତାମାନଙ୍କ ମାତା ହେଲେ ଅଦିତି । କଶ୍ୟପ ଋଷିଙ୍କର ଦୁଇଟି ପତ୍ନୀ ଥିଲେ । ଦିତି ଆଉ ଅଦିତି । ଦିତିଙ୍କ ପୁତ୍ରମାନେ ଦୈତ୍ୟ ଆଉ ଅଦିତିଙ୍କର ପୁତ୍ରମାନେ ଆଦିତ୍ୟ । ଏବେ ଅଦିତିଙ୍କୁ ବହୁତ ଦୁଃଖ ଲାଗିଲା ଯେ ମୋ ପୁତ୍ରମାନଙ୍କର ସାମର୍ଥ୍ୟ ରହିଲାନି, ବୈଭବ ରହିଲାନି । ଅଦିତିଙ୍କୁ ଅତ୍ୟଧିକ ଦୁଃଖୀ ଦେଖି କଶ୍ୟପ ଋଷି ତା'ର କାରଣ ପଚାରିବାରୁ ଅଦିତି ନିଜର ଦୁଃଖ ତାଙ୍କୁ ଜଣାଇଲେ ଏବଂ ତାଙ୍କୁ ପ୍ରାର୍ଥନା କଲେ ଯେ ଆପଣ ଆମ ପୁତ୍ରମାନଙ୍କ ପାଇଁ କିଛି କରନ୍ତୁ । ତାପରେ କଶ୍ୟପ ଋଷି ଅଦିତିଙ୍କୁ କହିଲେ ଯେ ଠିକ୍ ଅଛି, ମୁଁ ତୁମକୁ ଏକ ବ୍ରତ କରିବା ପାଇଁ କହୁଛି । ସେହି ବ୍ରତ ଦ୍ୱାରା ତୁମେ ଭଗବାନଙ୍କୁ ପ୍ରସନ୍ନ କର । ଆଉ ଭଗବାନ ଯେତେବେଳେ ପ୍ରସନ୍ନ ହେବେ, ତୁମେ ଯାହା ଚାହୁଁଛ, ତାଙ୍କୁ ମାଗିନେବ । ଏପରି କହି ସେ ତାଙ୍କୁ 'ପୟୋବ୍ରତ'ର ବିଧି କହିଦେଲେ ।

ସେହି ବ୍ରତ ପାଳନ କରି ଅଦିତି ଭଗବାନଙ୍କୁ ପ୍ରସନ୍ନ କଲେ । ଭଗବାନ ଅଦିତିଙ୍କୁ କହିଲେ- ମୁଁ ତୁମ ଇଚ୍ଛା ଜାଣେ କିନ୍ତୁ ଏହି ସମୟରେ ଦେବତାମାନେ ଦୁର୍ବଳ ହେଇଯାଇଛନ୍ତି । ଅସୁରମାନେ ଶକ୍ତିଶାଳୀ ବି ଆଉ ଗୁରୁଭକ୍ତ ମଧ୍ୟ । ତେଣୁ ଆମେ ତାଙ୍କର କୌଣସି କ୍ଷତି କରିପାରିବା ନାହିଁ । ଦେଖିଲେ ତ, ଭଗବାନ ସମଦୃଷ୍ଟି ନା

ନାହିଁ ? ସେ କହିଲେ - ଏବେ ମୁଁ କୌଣସି କାରଣ ନ ଥାଇ ଦେବତାମାନଙ୍କ ପକ୍ଷନେଇ ତାଙ୍କୁ ହଟେଇ ପାରିବି ନାହିଁ, କାରଣ ଏବେ ସେମାନେ ଧର୍ମର ପାଳନ କରୁଛନ୍ତି । ଈଶ୍ୱର ରୂପରେ ଥାଇ ମୁଁ ପକ୍ଷପାତ କରିପାରିବି ନାହିଁ କିନ୍ତୁ ତୁମ କାମ ମଧ୍ୟ କରିବାକୁ ପଡିବ । ତେଣୁ ମୁଁ ତୁମ ପୁତ୍ର ରୂପେ ଜନ୍ମ ନେବି, ଇନ୍ଦ୍ରର ଛୋଟ ଭାଇ ହେଇଆସିବି । ଜଣେ ଭାଇ ତ ନିଜ ଭାଇର ପକ୍ଷ ନେଇପାରିବ, ତାହା ପକ୍ଷପାତ ହେବ ନାହିଁ । ଭଗବାନ ଏପରି ତର୍କ ଦେଲେ ଏବଂ କହିଲେ ସେତେବେଳେ ମୁଁ ତା ପକ୍ଷରେ ରହି ତୁମ ଇଚ୍ଛା ପୂର୍ଣ୍ଣ କରିବି ।

## ବାମନ-ଅବତାର

ଏହା ଅତ୍ୟନ୍ତ ଗହନ କଥା । ଭଗବାନଙ୍କ ବଚନ ଶୁଣି ଅଦିତି ଖୁସି ହୋଇଗଲେ । ଦ୍ୱାଦଶୀ ଦିନ ଭଗବାନ ଆବିର୍ଭାବ ହେଲେ । ସେ ଶଙ୍ଖ-ଚକ୍ର-ଗଦା-ପଦ୍ମଧାରୀ ରୂପରେ ପ୍ରକଟ ହେଲେ । ସେତେବେଳେ ସମସ୍ତ ଦେବତା, ମନୁ, ପିତୃ, ସିଦ୍ଧ, ବିଦ୍ୟାଧର, ଯକ୍ଷ ଆଦି ସମସ୍ତେ ପ୍ରସନ୍ନ ହେଲେ । ଦୁନ୍ଦୁଭି, ଶଙ୍ଖ ଆଦି ବାଜିଲା । ଆଉ ସମସ୍ତେ ଦେଖୁ - ଦେଖୁ ଭଗବାନ ନିଜର ସେହି ରୂପ ତ୍ୟାଗ କରି ଛୋଟ ବ୍ରାହ୍ମଣ ବଟୁକ ରୂପ, **ବାମନ** ରୂପ ଧାରଣ କରିଲେ ।

**ବଭୂବ ତେନୈବ ସ ବାମନୋ ବଟୁଃ**
**ସଂପଶ୍ୟତୋର୍ଦିବ୍ୟଗତିର୍ଯଥା ନଟଃ ॥ (୮.୧୮.୧୨)**

ଭଗବାନ ତ ନିଜେ ନଟ । ରୂପ ପରିବର୍ତ୍ତନରେ ତାଙ୍କୁ ଭଲା କେତେ ସମୟ ଲାଗିବ । ସେ ଏକ ଛୋଟ 'ବାମନ' ରୂପ ନେଲେ । ଦେଖନ୍ତୁ ସେ ଜାଣିଛନ୍ତି ଯେ ତାଙ୍କୁ ରାଜା ବଳି ପାଖକୁ ମାଗିବା ପାଇଁ ଯିବାକୁ ପଡିବ । ଯାହାକୁ ମାଗିବାକୁ ପଡିବ ତାକୁ ଛୋଟ ହେବାକୁ ପଡିବ । ସେ କହିଲେ ଯେ ପରମାତ୍ମା ହେଲେ ମଧ୍ୟ ମାଗିବା ବାଲାକୁ ଛୋଟ ହେବାକୁ ପଡିବ । 'ବାମନ' ଅର୍ଥାତ୍ ବହୁତ ସୁନ୍ଦର । ଏହି ବଟୁ ଛୋଟ ଏବଂ ବହୁତ ସୁନ୍ଦର ଅଟନ୍ତି ।

**ତଂ ବଟୁଂ ବାମନଂ ଦୃଷ୍ଟ୍ୱା ମୋଦମାନା ମହର୍ଷୟଃ ।**
**କର୍ମାଣି କାରୟାମାସୁଃ ପୁରସ୍କୃତ୍ୟ ପ୍ରଜାପତିମ୍ ॥ (୮.୧୮.୧୩)**

ଋଷି - ମୁନି ତାଙ୍କୁ ଦେଖି ଖୁସି ହେଇଗଲେ ଏବଂ ସମସ୍ତ ଜାତକର୍ମାଦି ସଂସ୍କାର ଯାହା କରାଯିବା କଥା, ସେ ସବୁ ସେମାନେ ସେହି ସମୟରେ କରିଦେଲେ ।

**ତସ୍ୟୋପନୀୟମାନସ୍ୟ ସାବିତ୍ରୀଂ ସବିତାବ୍ରବୀତ୍ । (୮.୧୮.୧୪)**

ଯଜ୍ଞୋପବୀତ ସଂସ୍କାର ସମୟରେ ସ୍ୱୟଂ ଭଗବାନ ତାଙ୍କୁ ଗାୟତ୍ରୀ ମନ୍ତ୍ରର ଉପଦେଶ ଦେଲେ । ବୃହସ୍ପତି ବ୍ରହ୍ମସୂତ୍ର ଦେଲେ । କଶ୍ୟପ ଋଷି ମେଖଳା ଦେଲେ । ପୃଥିବୀ ମାତା କୃଷ୍ଣାଜୀନ ଦେଲେ । ସୋମ (ଚନ୍ଦ୍ରମା) ଯିଏ ବୃକ୍ଷମାନଙ୍କର ରାଜା, ସେ ଦଣ୍ଡ ଦେଲେ । ଦେଖିଲେ ତ, ବାମନ ବଟୁଙ୍କୁ ପ୍ରସ୍ତୁତ କରାଯାଉଛି । ଯଜ୍ଞୋପବୀତ ଆସିଲା, ମେଖଳା ଆସିଲା, ହାତରେ ଦଣ୍ଡ ଦିଆଗଲା । ବର୍ତ୍ତମାନ ସେ ନଗ୍ନାବସ୍ଥାରେ କାରଣ ବହୁତ ଛୋଟ ପିଲା । ମାତା ତାଙ୍କୁ ଲେଗଂଟି ପିନ୍ଧେଇ ଦେଲେ ଏବଂ କୌପୁନୀରେ ଘୋଡେଇ ଦେଲେ । ଏବେ ବଟୁ ପୁରା ପ୍ରସ୍ତୁତ **'ଦ୍ୟୌଶ୍ଛତ୍ରଂ ଜଗତଃ ପତେଃ'** ଏବଂ ଆକାଶର ଅଭିମାନୀ ଦେବତା ତାଙ୍କୁ ହାତରେ ଛତା ଦେଇ ଦେଲେ । ଗୋଟିଏ ହାତରେ ଦଣ୍ଡ ଏବଂ ଅନ୍ୟଟିରେ ଛତା । **'କମଣ୍ଡଳୁଂ ବେଦଗର୍ଭଃ'** । ବ୍ରହ୍ମା କମଣ୍ଡଳୁ ଦେଲେ । ସପ୍ତଋଷିମାନେ କୁଶ ଦେଲେ । ଦେବୀ ସରସ୍ୱତୀ ଆସିଲେ ଏବଂ-

**ଅକ୍ଷମାଲାଂ ମହାରାଜ ସରସ୍ୱତ୍ୟବ୍ୟୟାତ୍ମନଃ ॥ (୮.୧୮.୧୬)**

ସେ ତାଙ୍କ ଗଳାରେ ଅକ୍ଷମାଳା ପକେଇ ଦେଲେ । ଗୋଟିଏ ପରେ ଗୋଟିଏ ଶୃଙ୍ଗାର ପୂର୍ଣ୍ଣ ହେଇ ଚାଲିଛି ।

**ତସ୍ମା ଇତ୍ୟୁପନୀତାୟ ଯକ୍ଷରାଟ ପାତ୍ରିକାମଦାତ୍ ।**
**ଭିକ୍ଷାଂ ଭଗବତୀ ସାକ୍ଷାଦୁମାଦାଦମ୍ବିକା ସତୀ ॥ (୮.୧୮.୧୭)**

ଯକ୍ଷରାଜ ତାଙ୍କୁ ଭିକ୍ଷା ପାତ୍ର ଦେଲେ ଏବଂ ସ୍ୱୟଂ ଭଗବତୀ ଦେବୀ ପାର୍ବତୀ ତାଙ୍କୁ ପ୍ରଥମ ଭିକ୍ଷା ମଧ୍ୟ ଦେଇ ଦେଲେ ।

**ସ ବ୍ରହ୍ମ ବର୍ଚସେନୈବଂ ସଭାଂ ସଂଭାବିତୋ ବଟୁଃ ।**

**ବ୍ରହ୍ମର୍ଷିଗଣସଂକ୍ଳୃପ୍ତାମତ୍ୟରୋଚତ ମାରିଷଃ ॥ (୮.୧୮.୧୮)**

ସବୁ ପ୍ରକାରରେ ସୁସଜ୍ଜିତ ବ୍ରହ୍ମଚାରୀ ରୂପରେ ଭଗବାନଙ୍କ ବ୍ରହ୍ମବର୍ଚସ୍ ଏପରି ଚମକୁଥିଲା ଯେ ତା ସମ୍ମୁଖରେ ସୂର୍ଯ୍ୟଙ୍କ ପ୍ରଖରତା ମଧ୍ୟ ଫିକା ପଡିଗଲା । ସେ କହିଲେ - ରାଜା ବଳି ଯଜ୍ଞ କରୁଛନ୍ତି । ମୁଁ ତାଙ୍କ ପାଖକୁ ଯାଉଛି ।

**ଶ୍ରୁତ୍ୱାଶ୍ୱମେଧୈର୍ୟଜମାନମୂର୍ଜିତଂ**

**ବଲିଂ ଭୃଗୂଣାମୁପକଳ୍ପିତୈସ୍ତତଃ ।**

**ଜଗାମ ତତ୍ରାଖିଲସାରସଂଭୃତୋ**

**ଭାରେଣ ଗାଂ ସନ୍ନମୟନ୍ପଦେ ପଦେ ॥ (୮.୧୮.୨୦)**

**ତଂ ନର୍ମଦାୟାସ୍ତଟ ଉତ୍ତରେ ବଲେ -**

**ର୍ୟ ଋତ୍ୱିଜସ୍ତେ ଭୃଗୁକଚ୍ଛସଂଜ୍ଞକେ ।**

**ପ୍ରବର୍ତୟନ୍ତୋ ଭୃଗବଃ କ୍ରତୂତ୍ତମଂ**

**ବ୍ୟଚକ୍ଷତାରାଦୁଦିତଂ ୟଥା ରବିମ୍ ॥ (୮.୧୮.୨୧)**

ନର୍ମଦା କୂଳରେ 'ଭୃଗୁକଚ୍ଛ' ନାମକ ସ୍ଥାନରେ ରାଜା ବଳି ଅଶ୍ୱମେଧ ଯଜ୍ଞ କରୁଛନ୍ତି । ବିରାଟ ମଣ୍ଡପ ତିଆରି ହୋଇଛି । ସମସ୍ତ ଋତ୍ୱିକଗଣ ମନ୍ତ୍ରୋଚ୍ଚାରଣ ସହିତ ଆହୁତି ଦେଉଛନ୍ତି । ସେଠାରେ ଅନ୍ୟ ଅନେକ ପ୍ରକାରର ଧାର୍ମିକ କାମ ମଧ୍ୟ ହେଉଛି, ଦାନ ମଧ୍ୟ ଦିଆଯାଉଛି । ସେହି ସମୟରେ ଏହି ଛୋଟ ବାମନ ଭଗବାନ ଗୋଟିଏ ହାତରେ ଛତା, ଅନ୍ୟ ହାତରେ କମଣ୍ଡଳୁ କୁଶା ଧରି, ଯଜ୍ଞୋପବୀତ ଧାରଣ କରି ଧୀରେ - ଧୀରେ ସେଠାକୁ ଗଲେ ।

**ସୂର୍ଯ୍ୟଃ କିଲାୟାତ୍ୟୁତ ବା ବିଭାବସୁଃ ।**
**ସନତ୍କୁମାରୋଽଥ ଦିଦୃକ୍ଷୟା କ୍ରତୋଃ ॥ (୮.୧୮.୨୨)**

**ଇତ୍ଥଂ ସଶିଷ୍ୟେଷୁ ଭୃଗୁଷ୍ୱନେକଧା**
**ବିତର୍କ୍ୟମାଣୋ ଭଗବାନ୍ ସ ବାମନଃ ।**
**ଛତ୍ରଂ ସଦଣ୍ଡଂ ସଜଳଂ କମଣ୍ଡଳୁଂ**
**ବିବେଶ ବିଭ୍ରଦ୍ଧୟମେଧବାଟମ୍ ॥ (୮.୧୮.୨୩)**

ସେଠାରେ ଉପସ୍ଥିତ ସମସ୍ତ ବ୍ରାହ୍ମଣ, ଋତ୍ୱିକ୍ ଏବଂ ପୁଜାରୀମାନଙ୍କୁ ଲାଗିଲା ଯେପରି ଦୂରରୁ କୌଣସି ତେଜପୁଂଜ ପରି କିଛି ଆସୁଛି । ସେମାନେ ଭାବିଲେ ଯେ ବୋଧ ହୁଏ ଯଜ୍ଞ ଦେଖିବା ପାଇଁ ସୂର୍ଯ୍ୟ ପୃଥିବୀ ଉପରକୁ ଆସୁଛନ୍ତି, କିମ୍ବା ସନତ୍କୁମାର ଆସୁଛନ୍ତି । କାରଣ ସେ ମଧ୍ୟ ଅତ୍ୟନ୍ତ ତେଜସ୍ୱୀ । ଶୁକ୍ରାଚାର୍ଯ୍ୟ ନିଜ ଶିଷ୍ୟମାନଙ୍କ ସହିତ ଏହିପରି ଯୁକ୍ତିତର୍କ କରୁଥିବା ସମୟରେ ଛତ୍ର, ଦଣ୍ଡ, କମଣ୍ଡଳୁ ସହିତ ବାମନ ଭଗବାନ ସେଠାରେ ପ୍ରବେଶ କଲେ ।

**ମୌଂଜ୍ୟା ମେଖଲୟା ବୀତମୁପବୀତାଜିନୋତ୍ତରମ୍ ।**
**ଜଟିଲଂ ବାମନଂ ବିପ୍ରଂ ମାୟାମାଣବକଂ ହରିମ୍ ॥ (୮.୧୮.୨୪)**

**'ମାୟାମାଣବକଂ'** ମାୟାଦ୍ୱାରା ସେ ବଟୁ ହେଇଛନ୍ତି । ପ୍ରକୃତରେ ନା ସେ ବଟୁ ନା ସେ ଛୋଟ ପିଲା। ସେ ତ ବିଶ୍ୱବ୍ୟାପୀ ପରମାତ୍ମା ଅଟନ୍ତି । ଛୋଟ ରୂପ ନେଇ ଏବେ ଏଠାକୁ ଆସିଛନ୍ତି । ମାଗିବା ପାଇଁ ଆସିଛନ୍ତି, ତେଣୁ ଛୋଟ ହୋଇ ଆସିଛନ୍ତି ।

**ପ୍ରବିଷ୍ଟଂ ବୀକ୍ଷ୍ୟ ଭୃଗବଃ ସଶିଷ୍ୟାସ୍ତେ ସହାଗ୍ନିଭିଃ ।**
**ପ୍ରତ୍ୟଗୃହ୍ଣନ୍ସମୁତ୍ଥାୟ ସଂକ୍ଷିପ୍ତାସ୍ତସ୍ୟ ତେଜସା ॥ (୮.୧୮.୨୫)**

ଭଗବାନଙ୍କ ତେଜ ଏତେ ପ୍ରଖର ଥିଲା ଯେ ସେହି ତେଜ ଦ୍ୱାରା ସମସ୍ତେ ଏପରି ଅଭିଭୂତ ହେଇଗଲେ ଯେ ସମସ୍ତ ଋଷିମାନେ ନିଜ ନିଜ ଶିଷ୍ୟମାନଙ୍କ ସହିତ ମନକୁ ମନ ଅନାୟାସରେ ଉଠି ଠିଆ ହେଇଗଲେ । ଆସନ୍ତୁ, ଆସନ୍ତୁ କହି ତାଙ୍କର ସ୍ୱାଗତ କରିବାକୁ ଲାଗିଲେ । ଏପର୍ଯ୍ୟନ୍ତ ସେମାନେ ଜାଣି ନ ଥିଲେ ଯେ ସେ କିଏ ? ଦେଖିଲେ ତ, ପରିଚୟ ଜାଣିବା ମଧ୍ୟ କଣ ଦରକାର ? ଭଗବାନଙ୍କ ଏପରି ତେଜ ଥିଲା । ସେ

ସେଠି ଆସି ପହଞ୍ଚିଲେ । ତାଙ୍କୁ ଦେଖି ରାଜା ବଳି ଏପରି ମୁଗ୍ଧ ହୋଇଗଲେ ଯେ ଖାଲି ତାଙ୍କୁ ଚାହିଁ ରହିଲେ। ତାପରେ ନିଜକୁ ସଂଭାଳି ନେଇ ରାଜା ବଳି ତାଙ୍କୁ ସ୍ୱାଗତ କଲେ। ଅର୍ଘ୍ୟ-ପାଦ୍ୟ ଆଦି ସବୁ କିଛି ଦେଲେ ଏବଂ ତାଙ୍କର ପୂଜା କଲେ ଖାଲି ଏତିକି ନୁହଁ -

**ତତ୍ପାଦଶୌଚଂ ଜନକଲ୍ମଷାପହଂ**
**ସ ଧର୍ମବିନ୍ମୂର୍ଧ୍ନ୍ୟଦଧାତ୍ ସୁମଂଗଳମ୍ ।**
**ଯଦ୍ ଦେବଦେବୋ ଗିରିଶଶ୍ଚନ୍ଦ୍ରମୌଳି**
**ର୍ଦଧାର ମୂର୍ଧ୍ନା ପରୟା ଚ ଭକ୍ତ୍ୟା ।। (୮.୧୮.୨୮)**

ତାଙ୍କର ଚରଣ ପ୍ରକ୍ଷାଳନ କରି ତାକୁ ତୀର୍ଥ ଜଳ ରୂପେ ଗ୍ରହଣ କରି ନିଜ ମସ୍ତକ ଉପରେ ଛିଞ୍ଚିଲେ । ଏପର୍ଯ୍ୟନ୍ତ ସେ ଜାଣି ନାହାନ୍ତି ଯେ ସେ କିଏ ? ତାପରେ କହିଲେ -

**ସ୍ୱାଗତଂ ତେ ନମସ୍ତୁଭ୍ୟଂ ବ୍ରହ୍ମନ୍ କିଂ କରବାମ ତେ ।**
**ବ୍ରହ୍ମର୍ଷୀଣାଂ ତପଃ ସାକ୍ଷାନ୍ମନ୍ୟେ ତ୍ୱାଽଽର୍ଯ୍ୟ ବପୁର୍ଧରମ୍ ।।(୮.୧୮.୨୯)**

ଭଗବାନ, ଆପଣ ବ୍ରହ୍ମର୍ଷିମାନଙ୍କ ମଧ୍ୟରେ ଶ୍ରେଷ୍ଠ ଦେଖାଯାଉଛନ୍ତି । କୁହନ୍ତୁ ମୁଁ ଆପଣଙ୍କର କଣ ସେବା କରିପାରେ ? ଆଜି ତ ମୋର ଯଜ୍ଞ ସଫଳ ହୋଇଗଲା, କାରଣ ଆପଣଙ୍କ ପରି ଅତିଥି ଏଠାକୁ ଆସିଛନ୍ତି । ପୁଣି କହିଲେ -

**ଯଦ୍ ଯଦ୍ ବଟୋ ବାଞ୍ଛସି ତତ୍ପ୍ରତୀଚ୍ଛ ମେ। (୮.୧୮.୩୨)**

ହେ ବଟୋ, ତୁମର ଯାହା-ଯାହା ଦରକାର ମାଗିନିଅ । ମୁଁ ଦେବା ପାଇଁ ପ୍ରସ୍ତୁତ। ପୃଥିବୀ ଦରକାର ହେଲେ ତା ମଧ୍ୟ ଦେବି । **'ତ୍ୱାମର୍ଥିନଂ ବିପ୍ରସୁତାନୁତର୍କୟେ'** । ତୁମକୁ ଗାଈ ଦରକାର ହେଲେ ମୁଁ ପ୍ରସ୍ତୁତ। ସୁନା ଦରକାର, ରହିବା ପାଇଁ କୌଣସି ଶ୍ରେଷ୍ଠ ସ୍ଥାନ ଦରକାର, ଆଗକୁ ବିବାହ କରିବା ପାଇଁ କନ୍ୟା ଦରକାର, ତେବେ ତାହା ମଧ୍ୟ ଦେବି । ତୁମର କଣ ଦରକାର ? ହାତୀ ଦରକାର ? ଘୋଡା ଦରକାର ? ରଥ ଦରକାର ମୁଁ ସବୁ ଦେବା ପାଇଁ ପ୍ରସ୍ତୁତ ।

ଦେଖନ୍ତୁ, କଥା କେମିତି କହିବା, ତା ମଧ୍ୟ ଭଗବାନଙ୍କ ଠାରୁ ଶିଖିବା ଦରକାର। ରାଜା ବଳିଙ୍କର ଏତେ କଥା ଶୁଣିଲା ପରେ, ବାମନ ଭଗବାନ କେବଳ ଯେ ନିଜର

ବୈରାଗ୍ୟ ପ୍ରକାଶ କରୁଛନ୍ତି ତା ନୁହଁ, ବରଂ ଏହା ମଧ୍ୟ କହୁଛନ୍ତି ଯେ କାହାଠାରୁ କିଛି ମାଗିବା ପାଇଁ ଗଲେ, ତାର ଟିକିଏ ପ୍ରଶଂସା କରିବା ମଧ୍ୟ ଦରକାର । ସତେ ଯେମିତି ଭଗବାନ କହୁଛନ୍ତି ଯେ ଦାନ କିପରି ମାଗିବା ଉଚିତ ତା ମଧ୍ୟ ଟିକିଏ ଶିଖିନିଅ। ଏଠି ନିଜର ଭାଉ ଦେଖାଅ ନାହିଁ । ଟିକିଏ ଛୋଟ ହୋଇଯାଅ ଏବଂ ଦାତାଙ୍କର ପ୍ରଶଂସା କର। ତାପରେ କହିଲେ, "ହେ ରାଜନ୍, ତୁମେ ଯାହା କହିଲ ତାହା ତୁମ ବଂଶ ଅନୁରୂପ । ତୁମେ ପ୍ରହ୍ଲାଦଙ୍କ ବଂଶଜ । ତୁମ କୁଳରେ କେହି ହେଲେ କୃପଣ ହେଇନାହାନ୍ତି। ସମସ୍ତେ ଦାନବୀର ।"

**ନ ହ୍ୟେତସ୍ମିନ୍କୁଲେ କଶ୍ଚିନ୍ନିଃ ସତ୍ତ୍ୱଃ କୃପଣଃ ପୁମାନ୍ । (୮.୧୯.୩)**

"କେହି ବ୍ରାହ୍ମଣ ତୁମ ଘରକୁ କୌଣସି ଜିନିଷ ମାଗିବା ପାଇଁ ଆସିଲା ଏବଂ ତାକୁ ତାହା ଦିଆଯାଇନାହିଁ, ଏପରି ଘଟଣା ତୁମ କୁଳରେ କେବେହେଲେ ହୋଇନାହିଁ । ସର୍ବଶ୍ରେଷ୍ଠ ପୁରୁଷ ପ୍ରହ୍ଲାଦ ତ ତୁମ କୁଳରେ ହେଇଥିଲେ । ତାଙ୍କ ଯଶ ଚାରିଆଡେ ବ୍ୟାପ୍ତ ପୃଥିବୀ, ଆକାଶ ସବୁଆଡେ ବିଚ୍ଛୁରିତ। ସେ ଚନ୍ଦ୍ରମା ପରି ଚମକୁଛନ୍ତି । ତୁମ କୁଳରେ ହିରଣ୍ୟାକ୍ଷ ମଧ୍ୟ ହେଇଥିଲା । ସେ ଅତ୍ୟନ୍ତ ଶକ୍ତିଶାଳୀ ଥିଲା । ହିରଣ୍ୟାକ୍ଷକୁ ଭଗବାନ ମାରିଥିଲେ ମଧ୍ୟ ଏବେ ବି ସେ କଥା ମନେ ପଡିଲେ ତାଙ୍କ ହୃଦୟ ଡରିଯାଏ ।"

**ୟଂ ବିନିର୍ଜିତ୍ୟ କୃଚ୍ଛ୍ରେଣ ବିଷ୍ଣୁଃ କ୍ଷମୋଦ୍ଧାର ଆଗତମୈ ।**
**ନାତ୍ମାନଂ ଜୟିନଂ ମେନେ ତଦ୍ୱୀର୍ୟଂ ଭୂର୍ୟନୁସ୍ମରନ୍ ॥ (୮.୧୯.୬)**

"ଯଦ୍ୟପି ଭଗବାନ ହିରଣ୍ୟାକ୍ଷକୁ ମାରିଥିଲେ, ପୃଥିବୀକୁ ପୁନଃ ନେଇ ମଧ୍ୟ ଆସିଲେ, ତଥାପି ସେହି ବିଜୟକୁ ସେ ସତରେ ନିଜର ବିଜୟ ମାନୁ ନ ଥିଲେ କାରଣ ଯୁଦ୍ଧ ପରେ ମଧ୍ୟ ତାଙ୍କୁ ହିରଣ୍ୟାକ୍ଷର ଶକ୍ତି ଏବଂ ଶୌର୍ଯ୍ୟ ମନେ ପଡ଼ିଯାଉଥିଲା । ତାଙ୍କୁ ବିଶ୍ୱାସ ହେଉ ନ ଥିଲା ଯେ ସେ ପ୍ରକୃତରେ ତାକୁ ମାରି ଦେଇଛନ୍ତି ।" ଦେଖିଲେ ତ ଏହା ନିଜେ ବାମନ ଭଗବାନ କହୁଛନ୍ତି । ପୁଣି କହିଲେ, "ପ୍ରକୃତ କଥା ତ କେବଳ ଏତିକି ଯେ ଯେତେବେଳେ ହିରଣ୍ୟକଶିପୁ ଶୁଣିଲା ଯେ ତା'ଭାଇ ମରି ଯାଇଛି ତ ସେ ଭଗବାନଙ୍କୁ ମାରିବା ପାଇଁ ବୈକୁଣ୍ଠ ଧାମକୁ ଗଲା । ସେତେବେଳେ ଭଗବାନଙ୍କୁ ହିରଣ୍ୟକଶିପୁ ଠାରୁ ଡର ମାଡିଲା ଏବଂ ସେ ତାର ନିଶ୍ୱାସ ହେଇ ତା'ର ଭିତରକୁ ଚାଲିଗଲେ ଏବଂ ତା ହୃଦୟରେ ବିରାଜମାନ ହେଲେ । କହିଲେ ମୁଁ ଯା ଭିତରେ ଲୁଚିଯିବି।" ଦେଖିଲେ ତ ବନେଇଚୁନେଇ କଥା କହିବାରେ ଭଗବାନ କେତେ ଚତୁର।

ପୁଣି କହିଲେ - ରାଜନ୍ , ତୁମେ ମୋତେ ସବୁ କିଛି ଦେଇପାରିବ, କିନ୍ତୁ ମୋର ବହୁତ ଜିନିଷ ଦରକାର ନାହିଁ ।"

**ତସ୍ମାତ୍ ତ୍ୱତ୍ତୋ ମହୀମୀଷଦ୍ ବୃଣେଽହଂ ବରଦର୍ଷଭାତ୍ ।**

**ପଦାନି ତ୍ରୀଣି ଦୈତ୍ୟେନ୍ଦ୍ର ସଂମିତାନୀ ପଦା ମମ ॥ (୮.୧୯.୧୬)**

ତାପରେ ଏଠାରେ ସେ ନିଜର ବୈରାଗ୍ୟ ପ୍ରକଟ କଲେ । କହିଲେ, "ମତେ ତିନିପାଦ ପୃଥିବୀ ଦରକାର, ବାସ୍ ।"

**ନାନ୍ୟାତ୍ ତେ କାମୟେ ରାଜନ୍‌ବଦାନ୍ୟାଜ୍ଜଗଦୀଶ୍ୱରାତ୍ । (୮.୯.୧୭)**

"ମତେ ଆଉ କିଛି ଦରକାର ନାହିଁ ।" ରାଜା ବଳି ଶୁଣିକରି କହିଲେ - ଇଏ ଏତେ ଲମ୍ବା ଚୌଡା ପ୍ରଶଂସା କଲେ ତ ମୁଁ ଭାବିଲି ଯେ ବହୁତ କିଛି ମାଗିବେ । ଯଦି କିଏ ବହୁତ ପ୍ରଶଂସା କରିବ ତ ସେ ମନୁଷ୍ୟ ଭାବିବ ଯେ ସେ ବ୍ୟକ୍ତି ମତେ ବହୁତ କିଛି ମାଗିବ । କିନ୍ତୁ ଇଏ ତ କହୁଛନ୍ତି ଯେ - ମୋତେ ତିନି ପାଦ ପୃଥିବୀ ଦିଅ, ଅଧିକା କିଛି ଦରକାର ନାହିଁ । ରାଜା ବଳି କହିଲେ -

**ଅହୋ ବ୍ରାହ୍ମଣଦାୟାଦ ବାଚସ୍ତେ ବୃଦ୍ଧସଂମତାଃ ।**

**ତ୍ୱଂ ବାଲୋ ବାଲିଶମତିଃ ସ୍ୱାର୍ଥଂ ପ୍ରତ୍ୟବୁଧୋ ଯଥା ॥ (୮.୯.୧୮)**

ତୁମେ ଯାହା କହୁଛ ସବୁ ଠିକ୍ କିନ୍ତୁ ତୁମେ କେବଳ ବାଳକ ନୁହଁ, ବାଳବୁଦ୍ଧି ମଧ୍ୟ ଅଟ । ତୁମେ ବୁଝି ପାରୁନାହଁ ଯେ ତୁମେ କ'ଣ ମାଗୁଛ, କାହାକୁ ମାଗୁଛ । ଯେପରି ଜଣେ କୋଟିପତି ପାଖକୁ ଯାଇ କେହି ତାର ବହୁତ ପ୍ରଶଂସା କରିବ ଯେ ଆପଣ ବିରାଟ ଦାନବୀର, ତାପରେ ତାକୁ କହିବ ଯେ ମତେ ପାଞ୍ଚଟଙ୍କା ଦେଲେ । ସେ କହିବ - ତୁମେ ଜାଣିଛ କି ତୁମେ କାହା ସହିତ କଥାବାର୍ତ୍ତା କରୁଛ ? ଠିକ୍ ସେହିପରି ରାଜା ବଳି କହୁଛନ୍ତି- ତୁମର ମୋ କଥାରେ ବିଶ୍ୱାସ ହେଉନାହିଁ । ତୁମେ ଭାବୁଛ ଯେ ମୁଁ ଦେଇପାରିବି ନାହିଁ ? ମୁଁ ସବୁ କିଛି ଦେଇପାରିବି । ଦେଖନ୍ତୁ, ଏହା ହେଲା ବଳିଙ୍କର ଅହଂକାର ।

ତା'ପରେ କହିଲେ -

**ନ ପୁମାନ୍ ମାମୁପବ୍ରଜ୍ୟ ଭୂୟୋ ଯାଚିତୁମର୍ହତି ।**

**ତସ୍ମାଦ୍ ବୃତ୍ତିକରିଂ ଭୂମିଂ ବଟୋ କାମଂ ପ୍ରତୀଚ୍ଛ ମେ ॥ (୮.୧୯.୨୦)**

ଅରେ ଯଦି କିଏ ମୋ ପାଖକୁ ମାଗିବାକୁ ଆସେ ତ ତାକୁ ଯେପରି ଆଉ କାହା ପାଖରେ ମାଗିବାକୁ ନ ପଡୁ ଏହା ମୋର ନିୟମ । ତୁମେ ତିନିପାଦ ଭୂମି ନେଲେ ତୁମକୁ ଆଉ କାହାପାଖକୁ ନିଶ୍ଚିତ ରୂପେ ମାଗିବା ପାଇଁ ଯିବାକୁ ପଡିବ, ଏକଥା ଠିକ୍ ହେବନି । ତେଣୁ ନିଜର ଜୀବିକା ପାଇଁ ତୁମକୁ ଯେତେ ଭୂମି ଦରକାର ମାଗି ନିଅ ।

ବାମନ ଭଗବାନ୍ କହିଲେ, "ରାଜନ୍ , ମନୁଷ୍ୟକୁ କୌଣସି ବିଷୟ କେବେହେଲେ ସନ୍ତୁଷ୍ଟ କରି ପାରିବ ନାହିଁ ।" ଯେପରି ଅଳ୍ପ ଧନୀ ବଡ ଧନୀ ହେବା ପାଇଁ ଋହିଁବ, ସେହିପରି ବଡ ଧନୀ ମଧ୍ୟ ପଦ୍ମପତି ହେବା ପାଇଁ ଋହିଁବ । ପ୍ରଥମେ ବ୍ୟକ୍ତି ଭାବେ ଯେ ମୁଁ ମ୍ୟୁନିସିପାଲଟିର ନିର୍ବାଚନ ଜିତିବି, ତାପରେ ଭାବେ ଯେ ବିଧାନସଭାରୁ ଜିତିବି, ତାପରେ ଭାବେ ଯେ ଲୋକସଭାର ଇଲେକ୍‌ଶନରୁ ଜିତିବି, ତାପରେ ସାଂସଦ ହେବା ପାଇଁ ଋହେଁ, ତା'ପରେ ପ୍ରଧାନମନ୍ତ୍ରୀ ହେବା ପାଇଁ ଋହେଁ, ଆଉ ଋହେଁ ଯେ ମୁଁ ସବୁଦିନ ପାଇଁ ପ୍ରଧାନମନ୍ତ୍ରୀ ହୋଇ ରୁହେ । ଏହିପରି ଇଚ୍ଛା ବଢି-ବଢି ଋଲେ । ତେଣୁ ମୋର ଅଧିକ ଜିନିଷର ଲୋଭ ନାହିଁ । ତିନିପାଦ ଭୂମିଠାରୁ ଅଧିକ ମୁଁ କିଛି ଋହେଁ ନାହିଁ । ମୁଁ ସେଇଥିରେ ତୃପ୍ତ ।

**ଏତାବତୈବ ସିଦ୍ଧୋଽହଂ ବିତ୍ତଂ ଯାବତ୍ପ୍ରୟୋଜନମ୍ ॥ (୮.୧୯.୨୭)**

ମୋର ପ୍ରୟୋଜନ ଯେତିକି ମୁଁ ସେତିକିରେ ସନ୍ତୁଷ୍ଟ । ତାଠାରୁ ଅଧିକ ମୋର ଦରକାର ନାହିଁ ।

**ଇତ୍ୟୁକ୍ତଃ ସ ହସନ୍ନାହ ବାଞ୍ଛାତଃ ପ୍ରତିଗୃହ୍ୟତାମ୍ ।**

**ଏହା ଶୁଣି ରାଜା ବଳିଙ୍କୁ ହସ ମାଡିଲା । ତଥାପି ସେ କହିଲେ, "ଆପଣଙ୍କୁ ଏତିକି ହିଁ ଦରକାର ତ ଠିକ୍ ଅଛି ମୁଁ ତାକୁ ଦେବା ପାଇଁ ପ୍ରସ୍ତୁତ ।"**

**ବାମନାୟ ମହୀଂ ଦାତୁଂ ଜଗ୍ରାହ ଜଲଭାଜନମ୍ ॥ (୮.୧୯.୨୮)**

ଏମନ୍ତି କହି ସଂକଳ୍ପ କରିବା ପାଇଁ ସେ ହାତରେ ଜଳପାତ୍ର ଧରିଲେ । କୁହାଯାଏ ଯେ ଅତିଥିଙ୍କୁ ଭଗବାନ ବିଷ୍ଣୁଭାବି ହିଁ କିଛି ଦେବା ଉଚିତ୍ । କାହାକୁ ଦାନ ଦେବା ସମୟରେ **'ଇଏ ବିଷ୍ଣୁ ହିଁ ଅଟନ୍ତି'** ଏପରି ଭାବି ଦାନ ଦେବା ଉଚିତ୍ । କିନ୍ତୁ ଏଠି ତ ଭାବନାର ମଧ୍ୟ ଆବଶ୍ୟକତା ନାହିଁ । ଏଠି ତ ସାକ୍ଷାତ୍ ବିଷ୍ଣୁ ଭଗବାନ ହିଁ ଠିଆ ହୋଇଛନ୍ତି । ଦାନ କରିବା ପାଇଁ ଉଦ୍ୟତ ରାଜା ବଳିଙ୍କୁ ଦେଖି ତାଙ୍କ ପୁରୋହିତ ଶୁକ୍ରାଚାର୍ଯ୍ୟଙ୍କୁ ଜଣାଗଲା ଯେମିତି ରାଜା କୌଣସି ଷଡଯନ୍ତ୍ରର ଶିକାର ହେଇଯିବେ । ଏହି ବାମନ-ବଟୁ ଛୋଟଟିଏ କିନ୍ତୁ ବଡ ଚତୁର । ଏହାକୁ କିଛି ଭରସା କରି ହେବନି । ତାଙ୍କୁ ଜଣାପଡିଲା ଯେ ଇଏ ତ ବଳିର ପୁରା ରାଜ୍ୟ ହିଁ ଛଡେଇ ନେବେ । (ଆଉ ଯଦି ରାଜ୍ୟ ଛଡେଇ ନେବ ତ ପୁଣି ମୋର କଣ ହେବ ? ତେଣୁ ସେ ଚାହିଁଲେନି ଯେ ରାଜା ବଳି କୌଣସି ସଂକଳ୍ପ କରନ୍ତୁ ।)

ପ୍ରକୃତ କଥା ହେଲା ଯେ ଶୁକ୍ରାଚାର୍ଯ୍ୟ ଭଗବାନଙ୍କ ଲୀଳାକୁ ଜାଣି ଥିଲେ । ତେଣୁ ସେ ଭଗବାନ ବିଷ୍ଣୁଙ୍କୁ ଚିହ୍ନି ସାରିଥିଲେ ଯେ ଯଦିଓ ସେ ଛୋଟଟିଏ ପରି ଦିଶୁଛନ୍ତି, କିନ୍ତୁ ପରେ ବିରାଟ ରୂପ ଧାରଣ କରି ଛଳ କରିବେ । ତେଣୁ ସେ ରାଜା ବଳିଙ୍କୁ ସାବଧାନ କରୁଛନ୍ତି-

**ଏଷ ବୈରୋଚନେ ସାକ୍ଷାଦ୍ ଭଗବାନ୍ବିଷ୍ଣୁରବ୍ୟୟଃ ।**
**କଶ୍ୟପାଦଦିତେର୍ଜାତୋ ଦେବାନାଂ କାର୍ଯ୍ୟସାଧକ ॥ (୮.୧୯.୩୦)**

ଆରେ ବୈରୋଚନ ବଳି, ଇଏ ତ ସାକ୍ଷାତ୍ ଭଗବାନ ବିଷ୍ଣୁ, ଅବ୍ୟୟ ପାଦ । କଶ୍ୟପ ଏବଂ ଅଦିତିଙ୍କ ଠାରୁ ଅବତାର ଗ୍ରହଣ କରି ଦେବତାମାନଙ୍କ କାର୍ଯ୍ୟ ସିଦ୍ଧି ପାଇଁ ସେ ଆସିଛନ୍ତି । ଏହାଙ୍କ କଥାରେ ବିଶ୍ୱାସ କର ନାହିଁ । ଟିକିଏ ଭାବି ଦେଖ, ତିନିପାଦ ପୃଥିବୀ ନେଇ କାହାର କଣ ହେବ ? ସାମାନ୍ୟ ବିବେକର ସହ ଭାବି ଦେଖ, କେହି ବ୍ୟକ୍ତି ତିନିପାଦ ଭୂମି ନେଇ କଣ କରିବ ? ଏହି ମାଗିବାରେ ନିଶ୍ଚିତ ରୂପେ କୌଣସି କପଟତା ଅଛି । ଇଏ ତିନିପାଦ ବାହାନାରେ ତୁମର ସବୁ ଐଶ୍ୱର୍ଯ୍ୟ ଛଡେଇ ନେବେ । ଯେତେବେଳେ ତୁମେ ସଂକଳ୍ପ କରିବ – 'ଦତ୍ତଂ', ଏପରି କହିବ, ସେତେବେଳେ –

**କ୍ରମତୋ ଗାଂ ପଦୈକେନ ଦ୍ୱିତୀୟେନ ଦିବଂ ବିଭୋଃ ।**
**ଖଂ ଚ କାୟେନ ମହତା ତାର୍ତୀୟସ୍ୟ କୁତୋ ଗତିଃ ॥ (୮.୧୯.୬୪)**

ଯାଙ୍କର ତିନିଟି ପାଦ ଏତେ ବିରାଟ ହେଇଯିବ ଯେ ଗୋଟିଏ ପାଦ ଦ୍ୱାରା ପୃଥିବୀକୁ, ଅନ୍ୟ ପାଦ ଦ୍ୱାରା ସ୍ୱର୍ଗକୁ ବ୍ୟାପ୍ତ କରି ନେବେ, ଏବଂ ଶରୀର ଏତେ ବିରାଟ ହେଇଯିବ ଯେ ସମ୍ପୂର୍ଣ୍ଣ ଆକାଶକୁ କବଳିତ କରିନେବେ । ପୁଣି କହିବେ - ତୃତୀୟ ପାଦଟି କେଉଁଠି ରଖିବି ? ତୁମ ପାଖରେ, ନିଜେ ରହିବା ପାଇଁ ମଧ୍ୟ କୌଣସି ସ୍ଥାନ ନ ଥିବ । ନିଜ ଘରଟି ବି ନଥିବ । ବ୍ୟବସାୟ କରୁଥିବା ଲୋକଟି ମଧ୍ୟ ବୁଝେ ଯେ ମୂଳଧନ ଯେମିତି ଶେଷ ନ ହୋଇଯାଉ । ଭାବି ଦେଖ, ମୂଳଧନ ଯଦି ଖାଇଦେବ ତେବେ ବ୍ୟବସାୟ କେମିତି କରିବ। ଯଦି ତୁମେ ନିଜେ ସମାପ୍ତ ହେଇଯିବ ତୁମ ପାଖରେ ରହିବା ପାଇଁ ମଧ୍ୟ ସ୍ଥାନ ନଥିବ ତେବେ ତୁମେ କଣ ଦାନ କରିବ ? ଏହା ଉଚିତ ନୁହଁ ।

**ନ ତଦ୍ଦାନଂ ପ୍ରଶଂସନ୍ତି ଯେନ ବୃତ୍ତିର୍ବିପଦ୍ୟତେ ॥ (୮.୧୯.୩୬)**

ଯାହାଦ୍ୱାରା ଆପଣଙ୍କ ରୋଜଗାର ହିଁ ସମାପ୍ତ ହେଇଯିବ, ଆୟର ସାଧନ ସମାପ୍ତ ହେଇଯିବ, ଏପରି ଦାନକୁ ଶ୍ରେଷ୍ଠ କୁହାଯାଏ ନାହିଁ । ଗୃହସ୍ଥମାନଙ୍କ ପାଇଁ ନିୟମ ଅଛି ଯେ ନିଜର ଆୟକୁ ପାଞ୍ଚ ଭାଗରେ ବିଭାଜିତ କରିବ । ଗୋଟିଏ ଧର୍ମ କାର୍ଯ୍ୟ ପାଇଁ, ଗୋଟିଏ ଯଶ ପାଇଁ, ଗୋଟିଏ ଧନ-ବୃଦ୍ଧି ପାଇଁ, ଗୋଟିଏ ନିଜର ଭୋଗ ପାଇଁ ଏବଂ ଗୋଟିଏ ନିଜ ପରିବାର ପାଇଁ, ଏହିପରି ପାଞ୍ଚ ଭାଗ କରିବ । ସେଥିରେ ଧର୍ମ, ଅର୍ଥ, କାମ, ଯଶ, ସବୁ କିଛି ହେଇପାରିବ । ଏବେ ତ ଇଏ ତୁମର ସବୁ କିଛି ଲୁଟି ନେବେ ତ କଣ କରିବ ? ଏହା ଠିକ୍ ନୁହଁ । ଶୁକ୍ରାଚାର୍ଯ୍ୟ କହିଲେ, "ଏମିତି କର ନାହିଁ ।" ଏହା ହିଁ ଶୁକ୍ର ନୀତି । ସେ କହିଲେ, "କେବେ କେବେ ମିଛ କହିବା ବି ଠିକ୍ । କିନ୍ତୁ ଏପରି ସତ୍ୟ-ଧର୍ମର ଅଧୀନ ହୋଇ ନିଜକୁ ସେଥିରେ ଫଶେଇ ଦେବା ଆଦୌ ଉଚିତ ନୁହଁ ।"

## ବଳିଙ୍କର ସତ୍ୟସନ୍ଧତା

ଏମିତି ତ ଗୁରୁବଚନକୁ ସର୍ବ ଶ୍ରେଷ୍ଠ କୁହାଯାଏ, କିନ୍ତୁ ଏଠାରେ ରାଜା ବଳି ଗୁରୁଙ୍କ ବଚନକୁ ମାନିଲେ ନାହିଁ । ସେ ଦେଖିଲେ ଯେ ବର୍ତ୍ତମାନ ଗୁରୁଙ୍କ ବଚନ ଅଧର୍ମଯୁକ୍ତ । ଧର୍ମ ହିଁ ଶ୍ରେଷ୍ଠ । ଧର୍ମଠାରୁ ବଳି ଆଉ କିଛି ନାହିଁ । ଗୁରୁ ଏଇଥିପାଇଁ କରାଯାଏ ଯେ ସେ ଆମକୁ ଧର୍ମ ବିଷୟରେ କହିବେ । ସେ ଯଦି ଅଧର୍ମ କଥା କହିବେ ତ ତାକୁ କିପରି ମାନିବା ? ରାଜା ବଳି କହିଲେ –

**ସତ୍ୟଂ ଭଗବତା ପ୍ରୋକ୍ତଂ ଧର୍ମୋଽୟଂ ଗୃହମେଧିନାମ୍ । (୮.୨୦.୨)**

ଗୃହସ୍ଥମାନଙ୍କ ପାଇଁ ଆପଣ ଯେଉଁ ଧର୍ମ କଥା କହିଲେ ଯେ ଏପରି ଦାନ ଦେବ ନାହିଁ ଯାହାଦ୍ୱାରା ତୁମର ସମସ୍ତ ବ୍ୟବସାୟ ହିଁ ନଷ୍ଟ ହୋଇଯାଉ, ତାହା ବିଲକୁଲ୍ ଠିକ୍ । କିନ୍ତୁ ଅସତ୍ୟଠାରୁ ବଳି ପାପ ବି ତ କିଛି ନାହିଁ। ଏଇ ପିଲାଟି ମୋ ସାମ୍ନାରେ ଠିଆ ହୋଇଛି ଆଉ କହୁଛି ଯେ – ମୋତେ ତିନି ପାଦ ଭୂମି ଦରକାର । ଏବେ ଯଦି ଏମିତି ଭାବିବା ଯେ ପରେ ସେ ବଡ ହୋଇଯିବ, ବିରାଟ ରୂପ ଧାରଣ କରି ନେବ, ତା ତ ଖାଲି କଳ୍ପନା କରିବା ହେବନା । ସତ କଥା ତ କେବଳ ଏତିକି ଯେ ଯଜ୍ଞ ସମୟରେ ଏପରି ତେଜସ୍ୱୀ ବାଳକ ଏଠାକୁ ଆସିଛି ଆଉ ସେ କେବଳ ଏତିକି ହିଁ ମାଗୁଛି । ତାହାଲେ ଆମେ ଏପରି କଳ୍ପନା କାହିଁକି କରିବା ଯେ ସେ ବିରାଟ ରୂପ ଧାରଣ କରିବ ଏବଂ ମୋ ସହିତ କପଟ କରିବ ? ମୁଁ ନିଜେ କହିଛି ଯେ ତୁମେ ଯାହା ଚାହୁଁଛ ମାଗ, ତାପରେ ଯାଇ ସେ ମାଗୁଛି । ବଚନର ବି ତ କିଛି ଗୁରୁତ୍ୱ ଅଛି ନା ନାହିଁ । ଯଦି ସେ ବଚନ ଭଂଗ କରିବ, ତେବେ ସେଇଟା ତାର କପଟ ହେବ । କିନ୍ତୁ 'ତୁମର ଯାହା ଦରକାର ମାଗ' କହି ସାରି ପୁଣି ମାଗିବା ପରେ ନ ଦେଲେ ତ ମୋ ବଚନ ଭଂଗ ହେଇଯିବ ।

**ନ ହ୍ୟସତ୍ୟାତ୍ ପରୋଽଧର୍ମ ଇତି ହୋବାଚ ଭୂରିୟମ୍ ।**
**ସର୍ବଂ ସୋଢୁମଲଂ ମନ୍ୟେଽରତେଽଲିକପରଂ ନରମ୍॥ (୮.୨୦.୪)**

ମୁଁ ସବୁ କିଛି ସହିବା ପାଇଁ ପ୍ରସ୍ତୁତ କିନ୍ତୁ ଅସତ୍ୟ ନୁହଁ । ମୁଁ ନର୍କକୁ ଯିବାପାଇଁ ବା ଅନ୍ୟ କିଛିକୁ ଡରୁନାହିଁ, କିନ୍ତୁ ଜଣେ ବ୍ରାହ୍ମଣକୁ ଦିଆଯାଇଥିବା ବଚନକୁ ପୁରା ନ କରିଲେ ଯେଉଁ ପାପ ହେବ, ମୁଁ ତାକୁ ଡରୁଛି । ତେଣୁ ମୁଁ ନିଶ୍ଚୟ କରି ସାରିଛି ଯେ ସେ ଯାହା ମାଗିବେ ତାଙ୍କୁ ଅବଶ୍ୟ ଦେବି । ଦ୍ୱିତୀୟ କଥା ଯେ ଆପଣଙ୍କ କଥାନୁସାରେ ଯଦି ଇଏ

ଭଗବାନ ବିଷ୍ଣୁ ତାହାଲେ ଯଥାରୁ ବଳି ଆଉ କଣ ହେଇପାରେ । ଏହାର ଅର୍ଥାତ୍ ଏହା ହିଁ ହେଲା ଯେ ମୋ ଯଜ୍ଞ ସମ୍ପୂର୍ଣ୍ଣ ହେଲା । ଯଜ୍ଞ ତ ଭଗବାନ ବିଷ୍ଣୁଙ୍କୁ ପ୍ରସନ୍ନ କରିବା ପାଇଁ କରାଯାଏ - **'ଯଜ୍ଞୋ ବୈ ବିଷ୍ଣୁଃ'** ।

ଯଦି ସାକ୍ଷାତ୍ ଭଗବାନ ବିଷ୍ଣୁ ଏଠାକୁ ଆସି ଯାଇଛନ୍ତି ଏବଂ ମୁଁ ତାଙ୍କୁ କିଛି ଦେବି ତେବେ ଆଉ ଭୁଲ ରହିଲା କେଉଁଠି ? ଏହି ସବୁ ଜିନିଷ ତ ତାଙ୍କର । ଥାଉ ଯଦି ସେ ବିରାଟ ରୂପ ଧାରଣ କରିବେ ତ, ସେଥିପାଇଁ ଚିନ୍ତା କାହିଁକି ?

**ତଦ୍ ବାମନଂ ରୂପମବର୍ଧତାଦ୍ଭୁତଂ**
**ହରେରନନ୍ତସ୍ୟ ଗୁଣତ୍ରୟାତ୍ମକମ୍ ।**
**ଭୂଃ ଖଂ ଦିଶୋ ଦ୍ୟୌର୍ବିବରାଃ ପୟୋଧୟ -**
**ସ୍ତିର୍ୟଙ୍ନୃଦେବା ଋଷୟୋ ଯଦାସତ ॥ (୮.୨୦.୨୧)**

**କାୟେ ବଲିସ୍ତସ୍ୟ ମହାବିଭୂତେଃ**
**ସହର୍ତ୍ୱିଗାଚାର୍ୟସଦସ୍ୟ ଏତତ୍ ।**
**ଦଦର୍ଶ ବିଶ୍ୱଂତ୍ରିଗୁଣଂ ଗୁଣାତ୍ମକେ**
**ଭୂତେନ୍ଦ୍ରିୟାର୍ଥାଶୟଜୀବୟୁକ୍ତମ୍ ॥ (୮.୨୦.୨୨)**

ଭଗବାନ ଠିକ୍ ସେହି ସମୟରେ ବିରାଟ ରୂପ ଧାରଣ କରି ନେଲେ ଯାହାର ବର୍ଣ୍ଣନ ଆମେ ଦ୍ୱିତୀୟ ସ୍କନ୍ଧରେ ଦେଖି ସାରିଛେ । ଭଗବାନଙ୍କର ବିଶାଳ ରୂପ ପାତାଳରୁ ବ୍ରହ୍ମଲୋକ ପର୍ଯ୍ୟନ୍ତ ବ୍ୟାପ୍ତ ହେଇଗଲା । ତାଙ୍କର ପାଦ ଏତେ ବିଶାଳ ଥିଲା ଯେ ଗୋଟିଏ ପାଦରେ ପୃଥିବୀ ଏବଂ ଅନ୍ୟ ପାଦଟିରେ ସ୍ୱର୍ଗକୁ ଘୋଡେଇ ଦେଲେ । ତାଙ୍କର ଅନ୍ୟ ପାଦଟି ଯେତେବେଳେ ସ୍ୱର୍ଗକୁ ଗଲା, ସେତେବେଳେ ବ୍ରହ୍ମା କହିଲେ- ଆରେ ! ଭଗବାନଙ୍କ ପାଦ ଆସିଗଲା, ଏପରି କହି ସେ ଭଗବାନଙ୍କ ପାଦ ଧୋଇଦେଲେ ଏବଂ ସେହି ପାଦଧୂଆ ଜଳ ହିଁ, ଗଙ୍ଗା ଅଟନ୍ତି, ଏବଂ ସମସ୍ତଙ୍କୁ ପବିତ୍ର କରୁଛନ୍ତି । ସେହି ସମୟରେ ବ୍ରହ୍ମାଙ୍କର ଗୋଟିଏ ଅବତାର ହେଲା- 'ଜାମ୍ବବାନ - ଅବତାର' । ସେ ଭଗବାନଙ୍କର ସେହି ବିରାଟ ରୂପର ସାତଥର ପ୍ରଦକ୍ଷିଣା କଲେ । ରାମ ଅବତାରରେ ସେ କହିଥିଲେ ଯେ - ବାମନ ଅବତାର ସମୟରେ ମୁଁ ଯୁବକ ଥିଲି, କିନ୍ତୁ ଏବେ ମୁଁ ବୁଢା ହେଇଗଲିଣି, ଅନ୍ୟଥା ଏହି ସମୁଦ୍ର ପାର କରିବା ପାଇଁ ମୋର ଅସୁବିଧା ହେଇ ନ

ଥାନ୍ତା । ବାମନ ଭଗବାନଙ୍କର ଏହି ବିଶାଳ ରୂପକୁ ରାଜା ବଳି ଦେଖୁଥିଲେ କିନ୍ତୁ ଡରିଲେ ନାହିଁ। କିନ୍ତୁ ରାଜା ବଳିଙ୍କ ସାଥୀ, ଅନ୍ୟ ରାକ୍ଷସମାନେ ବହୁତ କ୍ରୋଧ କଲେ ।

**ଅନେନ ଯାଚମାନେନ ଶତ୍ରୁଣା ବଟୁରୂପିଣା ।**
**ସର୍ବସ୍ୱଂ ନୋ ହୃତଂ ଭର୍ତ୍ତୁର୍ନ୍ୟସ୍ତଦଣ୍ଡସ୍ୟ ବର୍ହିଷି ॥ (୮.୨୧.୧୧)**

ଏହି ବଟୁ ଛୋଟ କିନ୍ତୁ ବହୁତ ଦୁଷ୍ଟ, ଚାଲାକ, କପଟୀ ଏବଂ ଛଳ କରିବା ବାଲା, ଆସିଥିଲା ଛୋଟଟିଏ ହୋଇ କିନ୍ତୁ ଏବେ ବିରାଟ ହୋଇଯାଇଛି । ଇଏ ତ ଆମର ସର୍ବସ୍ୱ ଅପହରଣ କରିନେଲା । ସବୁ ରାକ୍ଷସମାନେ ଶସ୍ତ୍ରାସ୍ତ୍ର ନେଇ ଆସିଗଲେ - ବଟୁରୂପୀ ଭଗବାନଙ୍କୁ ମାରିବା ପାଇଁ । ସେଠି କଣ ବିଷ୍ଣୁଦୂତ ନ ଥିଲେ କି ? ସେମାନେ କହିଲେ - ତୁମେ ଆମ ଭଗବାନଙ୍କୁ ମାରିବ ? ଏପରି କହି ସେମାନେ ରାକ୍ଷସମାନଙ୍କୁ ମାରିବାକୁ ଲାଗିଲେ । ରାଜା ବଳି ଏହି ସବୁ ଦେଖି କହିଲେ -

**ହେ ବିପ୍ରଚିତ୍ତେ ହେ ରାହୋ ହେ ନେମେ ଶ୍ରୂୟତାଂ ବଚଃ ।**
**ମା ଯୁଧ୍ୟତ ନିବର୍ତ୍ତଧ୍ୱଂ ନ ନଃ କାଲୋଽୟମର୍ଥକୃତ୍ ॥ (୮.୨୮.୧୯)**

ମୋ ସାଥୀମାନେ, ତୁମେମାନେ ଯୁଦ୍ଧ କର ନାହିଁ । ଏହି ସମୟ ଆମ ପାଇଁ ଆଦୌ ଅନୁକୂଳ ନୁହଁ । ଆମକୁ ଉଚିତ ସମୟର ପ୍ରତୀକ୍ଷା କରିବାକୁ ପଡିବ । ଯେଉଁ ଭଗବାନ ବିଷ୍ଣୁଙ୍କ ପାଖରୁ ସମସ୍ତଙ୍କୁ ସାମର୍ଥ୍ୟ ପ୍ରାପ୍ତ ହୁଏ, ସେହିଁ ଆମର ସବୁ କିଛି ହରଣ କରିବା ପାଇଁ ପ୍ରସ୍ତୁତ । ଆମେ ଯୁଦ୍ଧ କରି ତାଙ୍କୁ ଜିତି ପାରିବା ନାହିଁ, ତେଣୁ ଏବେ ଯୁଦ୍ଧ କର ନାହିଁ । ଦ୍ୱିତୀୟ କଥା ଯେ ମୁଁ ବଚନ ଦେଇସାରିଛି, ଏବେ ସେ ଯେଉଁ ରୂପ ନେବେ ସେ ଜାଣିଛନ୍ତି । କିନ୍ତୁ ତୁମେମାନେ ତାଙ୍କ ସହ ଯୁଦ୍ଧ କର ନାହିଁ ।

**ଏତାନ୍ ବୟଂ ବିଜେଷ୍ୟାମୋ ଯଦି ଦୈବଂ ପ୍ରସୀଦତି ।**
**ତସ୍ମାତ୍ କାଲଂ ପ୍ରତୀକ୍ଷଧ୍ୱଂ ଯୋ ନୋଽର୍ଥତ୍ୱାୟ କଳ୍ପତେ ॥ (୮.୨୧.୨୪)**

ଯେତେବେଳେ ସମୟ ଆମ ପକ୍ଷରେ ଥିବ, ତେବେ ଆମେ ମଧ୍ୟ ଏମାନଙ୍କୁ ଜିତିବା। ଏପରି କଥା ଶୁଣି ଦୈତ୍ୟମାନେ ଯୁଦ୍ଧ ବନ୍ଦ କରିଦେଲେ ଏବଂ ସମସ୍ତେ ରସାତଳକୁ ଚାଲିଗଲେ ।

## ରାଜା ବଳିଙ୍କର ଅଭିମାନର ନିବାରଣ

ତୃତୀୟ ପାଦ ରଖିବା ଏପର୍ଯ୍ୟନ୍ତ ବାକିଥିଲା । ତାପାଇଁ କୌଣସି ସ୍ଥାନ ନ ଥିଲା । ତେଣୁ ଭଗବାନ ଗରୁଡ ଆଡକୁ ଚାହିଁଲେ ତ ଗରୁଡ ବୁଝିଗଲେ ।

**ବବନ୍ଧ ବାରୁଣୈଃ ପାଶୈର୍ବଳିଂ ସୌତ୍ୟେଽହନି କ୍ରତୌ । (୮.୨୧.୨୬)**

ସେ ରାଜା ବଳିଙ୍କୁ ବରୁଣ ଫାଶରେ ବାନ୍ଧି ଦେଲେ । ଭଗବାନ କହିଲେ, "ମୁଁ ଗୋଟିଏ ପାଦରେ ପୃଥିବୀ ଏବଂ ଅନ୍ୟ ପାଦରେ ସ୍ୱର୍ଗ ନେଲି ଏବେ ମୁଁ ତୃତୀୟ ପାଦ କୋଉଠି ରଖିବି ? ତୁମର ବଚନ ଏପର୍ଯ୍ୟନ୍ତ ପୂର୍ଣ୍ଣ ହେଇନି । ବଚନ ପୁରା ନ ହେଲେ ତୁମକୁ ପାପ ଲାଗିବ ।" ଦେଖନ୍ତୁ, ବଳିଙ୍କ ମନରେ କୌଣସି ପ୍ରକାରର କୃପଣତା ବା ଭୟ କୌଣସିଭାବ ଆସିଲା ନାହିଁ । ବଳି କହିଲେ -

**ଯଦ୍ୟୁତ୍ତମଶ୍ଳୋକ ଭବାନ୍ ମମେରିତଂ**
**ବଚୋ ବ୍ୟଲୀକଂ ସୁରବର୍ଯ୍ୟ ମନ୍ୟତେ । (୮.୨୨.୨)**

ଭଗବାନ ଯଦି ଆପଣ ଏପରି ଭାବୁଛନ୍ତି ଯେ ମୁଁ ମିଛ କହିଛି ତେବେ ମୁଁ ନିଜ ପ୍ରତିଜ୍ଞାକୁ ସତ କରି ଦେଉଛି ।

**କରୋମ୍ୟୃତଂ ତନ୍ନ ଭବେତ୍ ପ୍ରଲମ୍ଭନଂ । (୮.୨୨.୨)**

ରାଜା ବଳିଙ୍କର ମହାନତା ଦେଖନ୍ତୁ, କହିଲେ, "ମୁଁ ନିଜ ବଚନକୁ ସତ୍ୟ କରୁଛି, ଯାହା ଦ୍ୱାରା ମୋତେ ଦୋଷ ଲାଗିବ ନାହିଁ ।" ପ୍ରକୃତ କଥା ଯେ ଭଗବାନ ଛୋଟ ରୂପରେ ଆସିଥିଲେ ଆଉ ତିନିପାଦ ଭୂମି ମାଗିଥିଲେ, ତେଣୁ ପ୍ରକୃତରେ ତାଙ୍କୁ ନିଜର ସେହି ଛୋଟ ବଟୁରୂପର ତିନିପାଦ ସହ ସମାନ ଭୂମି ନେବା କଥା। ତାହାଲେ କଣ ଭଗବାନ କପଟ କଲେ, ମିଛ କହିଲେ ?ଏମିତି ବି କହିପାରିବା ନାହିଁ । ଭଗବାନ ଅନ୍ୟ ରୂପ ଧାରଣ କରିନେଲେ ।

ବଳି କହିଲେ -

**ପଦଂ ତୃତୀୟଂ କୁରୁ ଶୀର୍ଷ୍ଣି ମେ ନିଜମ୍ । (୮.୨୨.୨)**

ମୋର ମସ୍ତକ ଆପଣଙ୍କ ସାମନାରେ ଅଛି । ଆପଣ ନିଜ ପାଦ ମୋ ମସ୍ତକ ଉପରେ ରଖନ୍ତୁ ।

**ବିଭେମି ନାହଂ ନିରୟାତ୍ ପଦଚ୍ୟୁତୋ**

**ନ ପାଶବନ୍ଧାଦ୍ ବ୍ୟସନାଦ୍ ଦୁରତ୍ୟୟାତ୍ ।**

**ନୈବାର୍ଥକୃଚ୍ଛ୍ରାଦ୍ ଭବତୋ ବିନିଗ୍ରହ -**

**ଦସାଧୁବାଦାଦ୍ ଭୃଶମୁଦ୍ୱିଜେ ଯଥା ॥ (୮.୨୨.୩)**

ମୋର ନର୍କର ଭୟ ନାହିଁ, କୌଣସି ଐଶ୍ୱର୍ଯ୍ୟରୁ ତଳକୁ ଖସି ପଡିବି, ଏହାର ଭୟ ମଧ୍ୟ ମୋର ନାହିଁ, କଠିନରୁ କଠିନ ସଂକଟର ଭୟ ମଧ୍ୟ ମୋର ନାହିଁ । କିନ୍ତୁ 'ଇଏ ବଚନ ଦେଇ ପୂର୍ଣ୍ଣ କଲେନି' ଏପରି ଅପକୀର୍ତ୍ତି ମୋର ଦରକାର ନାହିଁ । ଯେତେବେଳେ ସେ ଏହା କହିଲେ ତ ଦେଖନ୍ତୁ କଣ ହେଲା । ରାଜା ବଳି ବନ୍ଧନରେ ଅଛନ୍ତି, ତାଙ୍କ ପତ୍ନୀ ମଧ୍ୟ ସେଠାରେ ଅଛନ୍ତି, ଭଗବାନଙ୍କ ପାଦ ଉଠି କରି ଅଛି ଆଉ ଠିକ୍ ସେହି ସମୟରେ ପ୍ରହ୍ଲାଦ ସେଠାକୁ ଆସୁଛନ୍ତି । ବନ୍ଧନ ଯୋଗୁଁ ବଳି ତାଙ୍କର ପୂଜା ଆତିଥ୍ୟ କରି ପାରିଲେନି। ତେଣୁ ଅତ୍ୟନ୍ତ ଲଜ୍ଜାରେ ତାଙ୍କ ମୁଣ୍ଡ ନଇଁଗଲା । ପ୍ରହ୍ଲାଦ ଆସି ଏହି ଦୃଶ୍ୟ ଦେଖିଲେ । ତାଙ୍କ ଆଖିରୁ ପ୍ରେମାଶ୍ରୁ ବୋହିବାକୁ ଲାଗିଲା । ସେ ପ୍ରକୃତ ଭକ୍ତ । ତେଣୁ ତାଙ୍କ ମନରେ ଏପରି ଭାବନା ଆସିଲା ନାହିଁ ଯେ ଭଗବାନ ମୋର ପୌତ୍ର ସହିତ କେମିତି ଏପରି ବ୍ୟବହାର କରୁଛନ୍ତି ।

ପ୍ରହ୍ଲାଦ କହିଲେ -

**ତ୍ୱୟୈବ ଦତ୍ତଂ ପଦମୈନ୍ଦ୍ରମୂର୍ଜିତଂ**

**ହୃତଂ ତଦେବାଦ୍ୟ ତଥୈବ ଶୋଭନମ୍ । (୮.୨୨.୧୬)**

ଭଗବାନ ଆପଣ ଏହାକୁ ଇନ୍ଦ୍ରପଦ ଦେଲେ ଆଉ ଏବେ ଫେରେଇ ନେଲେ । ବହୁତ ଭଲ କଲେ।

**ମନ୍ୟେ ମହାନସ୍ୟ କୃତୋ ହ୍ୟନୁଗ୍ରହୋ**

**ବିଭ୍ରଂଶିତୋ ଯଚ୍ଛ୍ରିୟ ଆତ୍ମମୋହନାତ୍ ॥ (୮.୨୨.୧୬)**

ଭଗବାନ, ମୁଁ ତ ଭାବୁଛି ଯେ ଆପଣ ଏହା ଉପରେ ବହୁତ ବଡ ଅନୁଗ୍ରହ କରିଦେଲେ, ବହୁତ ବଡ କୃପା କରିଦେଲେ । ଏହି ସମ୍ପତ୍ତି ଆଦି ତ ଜୀବକୁ ମୋହିତ କରି ଦିଅନ୍ତି । ସେହି ମୋହର ଅଧୀନ ହେଇ ବ୍ୟକ୍ତି ନିଜକୁ ତଳକୁ ଖସେଇ ଦିଏ, ଅହଂକାରୀ ହେଇଯାଏ । ଭଲ ହେଲା ଆପଣ ଏହାର ସବୁ ଲୁଟି ନେଲେ।

**ଯୟା ହି ବିଦ୍ୱାନପି ମୁହ୍ୟତେ ଯତ-**

**ସ୍ତତ୍ କୋ ବିଚଷ୍ଟେ ଗତିମାତ୍ମନୋ ଯଥା ॥ (୮.୨୨.୧୭)**

ବିଦ୍ୱାନମାନେ ମଧ ଧନ-ସତ୍ତା ପ୍ରାପ୍ତ କରିବା ପରେ ମୋହିତ ହେଇଯାଆନ୍ତି, ପାଗଳ ହେଇଯାଆନ୍ତି, ଗର୍ବ ଏବଂ ଅଭିମାନରେ ଭରି ଯାଆନ୍ତି ।

**ତସ୍ମୈ ନମସ୍ତେ ଜଗଦୀଶ୍ୱରାୟ ବୈ**

**ନାରାୟଣାୟାଖିଲ ଲୋକ ସାକ୍ଷିଣେ ॥ (୮.୨୨.୧୭)**

ଆପଣଙ୍କୁ ନମସ୍କାର, ପୁନଃ ପୁନଃ ନମସ୍କାର । ଆପଣଙ୍କର ମୋର ପରିବାର ଉପରେ ବିଶେଷ କୃପା ରହିଛି । ଆପଣ ତା ଉପରେ ବିଶେଷ ଦୃଷ୍ଟି ରଖିଛନ୍ତି । ବିନ୍ଧ୍ୟାବଳୀ ମଧ ଭଗବାନଙ୍କର ପ୍ରାର୍ଥନା, ସ୍ତୁତି କଲେ। ବ୍ରହ୍ମାଙ୍କୁ ଲାଗିଲା ଯେ ଭଗବାନ କପଟ କରୁଛନ୍ତି । ତାଙ୍କୁ ଏକଥା ଭଲ ଲାଗିଲା ନାହିଁ ।

ତେଣୁ ସେ କହିଲେ -

**ମୁଂଚୈନଂ ହୃତସର୍ବସ୍ୱଂ ନାୟମର୍ହତି ନିଗ୍ରହମ୍ ॥ (୮.୨୨.୨୧)**

ଭଗବାନ ଆପଣ ଏହାକୁ ମୁକ୍ତ କରନ୍ତୁ । ଇଏ ଏପରି ଦଣ୍ଡର ଅଧିକାରୀ ନୁହଁନ୍ତି। ଇଏ ଏପରି କୌଣସି ଭୂଲ କାର୍ଯ୍ୟ କରି ନାହାନ୍ତି । ଭଗବାନ ତାଙ୍କୁ ଋହିଁଲେ । ସତେ ଯେପରି କହୁଛନ୍ତି ତୁମେ ଯାଙ୍କ ପାଇଁ ଓକିଲାତି କଲାବାଲା କିଏ ଆସିଲ ? ସେ ତ କହିନି, ତୁମେ ଜବରଦସ୍ତି ଆସିଗଲ । ମାନ କି ନ ମାନ ମୁଁ ତୋ ଓକିଲ, ଏମିତି କ'ଣ କେବେ ହୁଏ ? ଭଗବାନ କହିଲେ- ବ୍ରହ୍ମଦେବ, ଆପଣ କିଛି ଜାଣି ନାହାନ୍ତି ।

**ବ୍ରହ୍ମନ୍ ଯମନୁଗୃହ୍ଣାମି ତଦ୍ୱିଶୋ ବିଧୁନୋମ୍ୟହମ୍ ।**

**ଯନ୍ମଦଃ ପୁରୁଷଃ ସ୍ତବ୍ଧୋ ଲୋକଂ ମାଂ ଋବମନ୍ୟତେ ॥ (୮.୨୨.୨୪)**

ଯାହା ଉପରେ ମୁଁ କୃପା କରେ ତାର ଧନ ନେଇଯାଏ, ଯେଉଁ ସମ୍ପତ୍ତି ଯୋଗୁଁ ମନୁଷ୍ୟ ମୋର, ଲୋକର ଏବଂ ସମାଜର ଅପମାନ କରୁଥାଏ, ସେହି ସମ୍ପତ୍ତି ମୁଁ ନେଇଯାଏ । ଭଗବାନଙ୍କର ଏହା ପ୍ରବଳ ମହାବାକ୍ୟ। ଧନମାନେ କେବଳ ଟଙ୍କା ପଇସା ନୁହଁ । ହୋଇପାରେ ଭଗବାନ ତା'ର ଶରୀର-ସ୍ୱାସ୍ଥ୍ୟ ନେଇଯିବେ, ତା'ର ଘର ଲୁଟି ନେବେ, ତାର ପ୍ରିୟ ସ୍ୱଜନ - ସମ୍ବନ୍ଧୀଙ୍କୁ ନେଇଯିବେ ।

ଥରେ ଭଗବାନ ଶ୍ରୀକୃଷ୍ଣ ଏବଂ ଅର୍ଜ୍ଜୁନ ବେଶ ପରିବର୍ତ୍ତନ କରି ସାଙ୍ଗ ହେଇ ବୁଲୁଥିଲେ । ସେମାନେ ଜଣେ ଧନୀଲୋକ ଘର ସାମନାରେ ଠିଆ ହେଇ ଭିକ ମାଗିଲେ। ସେହି ଧନୀ କହିଲା - ଯାଅ ଏଠୁ, ମୋଟା-ସୋଟା ଯୁବକ ହେଇ ଆସିଗଲେ ଭିକ ମାଗି। ଭଗବାନ ଶ୍ରୀକୃଷ୍ଣ କହିଲେ - ତୁମ ସମ୍ପତ୍ତି ଅଧିକରୁ ଅଧିକ ବଢୁ। ଅର୍ଜୁନ ଦେଖିଲେ, ଆଉ କହିଲେ ଭଗବାନ ସତରେ କେତେ ଉଦାର । ଆଗକୁ ଗଲାରୁ ଗୋଟିଏ ବୁଢା ଭକ୍ତ ଦେଖିଲେ । ତାପାଖରେ କେବଳ ଗୋଟିଏ ଗାଈ ଓ ବାଛୁରୀ ଥିଲେ । ସେ ସେହି ଗାଈର ଦୁଧ ଦୁହିଁ ପିଉଥିଲା ଏବଂ ଭଗବାନଙ୍କ ନାମ ନେଉଥିଲା, ଅଧିକା କାମ କିଛି କରୁ ନ ଥିଲା । ସେମାନେ ତା ପାଖକୁ ଗଲେ ତ ତା ପାଖରେ ଯାହା ଟିକିଏ ଦୁଧ ଥିଲା ସେ ସେମାନଙ୍କୁ ଦେଇଦେଲା ଏବଂ ନିଜେ ଭୋକରେ ରହିଗଲା । ଭଗବାନ ଆଗକୁ ଯାଇ କହିଲେ, "ତୁମର ଗାଈ - ବାଛୁରୀ ମରି ଯାଆନ୍ତୁ।" ଅର୍ଜୁନଙ୍କୁ ବହୁତ ଖରାପ ଲାଗିଲା । ଅର୍ଜୁନ କହିଲେ, "ଭଗବାନ, ଇଏ ଆପଣଙ୍କର କି ନ୍ୟାୟ ? ଯିଏ ଆପଣଙ୍କୁ ତଡିଦେଲା ଆପଣ ତାକୁ ସମ୍ପତ୍ତି ଅଜାଡି ଦେଲେ, ଆଉ ଯାହା ପାଖରେ କିଛି ବି ନାହିଁ, ତାକୁ ଅଭିଶାପ ଦେଇ ଦେଲେ ଯେ ତା'ର ଗାଈବାଛୁରୀ ମରିଯାଆନ୍ତୁ ।" କୃଷ୍ଣ କହିଲେ - "ଆରେ ନା, ନା, ତା ଉପରେ ତ ମୁଁ କୃପା କଲି ।" "କେମିତି ? କଥା କଣ କି ସେ ମୋର ଭକ୍ତ ତ । ମୋତେ ଭେଟିବାକୁ ଚାହୁଁଛି । ମୁଁ ମଧ୍ୟ ତାକୁ ଭେଟିବା ପାଇଁ ଆତୁର। ଏଇ ଗାଈବାଛୁରୀ ମଝିରେ ବାଧକ ହେଇ ଛିଡା ହୋଇଛନ୍ତି । ଏମାନେ ତାର ଭକ୍ତିରେ ବିଘ୍ନ ଉତ୍ପନ୍ନ କରୁଛନ୍ତି । ଏବେ ସେ ସୁବିଧାରେ ମୋତେ ଭେଟିପାରିବ ।"

ଭଗବାନ କହିଲେ, "ବଳି ମୁଁ ତୁମ ଉପରେ ବହୁତ ପ୍ରସନ୍ନ । ମୁଁ ତୁମକୁ ବାନ୍ଧିନି, ତୁମେ ହିଁ ମୋତେ ନିଜର ସତ୍‌ସ୍ୱଭାବ ଦ୍ୱାରା ବାନ୍ଧି ନେଇଛ ।" କିଏ କାହାକୁ ବାନ୍ଧିଛି ? ଏହା ଅତ୍ୟନ୍ତ ବିଚିତ୍ର, ଭଗବାନଙ୍କ ମାୟା। ଭଗବାନ କହିଲେ, "ମୁଁ ତୁମ ମୁଣ୍ଡ ଉପରେ ପାଦ ରଖିବି ଏବଂ ତୁମେ ସିଧା ସୁତଳ ଲୋକକୁ ଚାଲିଯାଅ । ସେଠାରେ ସ୍ୱର୍ଗଠାରୁ ମଧ୍ୟ ଅଧିକ ସୁଖ ସାମଗ୍ରୀ ଅଛି । ତୁମେ ସେଠି ରାଜ୍ୟ କର ।"

**ରକ୍ଷିଷ୍ୟେ ସର୍ବତୋଽହଂ ତ୍ୱାଂ ସାନୁଗଂ ସପରିଚ୍ଛଦମ୍ ।**
**ସଦା ସନ୍ନିହିତଂ ବୀର ତତ୍ର ମାଂ ଦ୍ରକ୍ଷ୍ୟତେ ଭବାନ୍॥ (୮.୨୨.୩୫)**

"ସେଠାରେ ତୁମେ ମୋତେ ନିରନ୍ତର ଦେଖିପାରିବ । ମୁଁ ଚକ୍ର,ଗଦା ଆଦି ନେଇ ସର୍ବଦା ତୁମ ଦ୍ୱାରପାଳ ହୋଇ ଠିଆ ହେଇଥିବି ।" କହିଲେ ଦେଖି କିଏ ବାନ୍ଧି ହେଇଗଲା ? ଭଗବାନ ନିଜକୁ ତାଙ୍କ ସହିତ ବାନ୍ଧି ଦେଲେ ଏବଂ ଆହୁରି ମଧ୍ୟ ପ୍ରହ୍ଲାଦଙ୍କୁ

କହିଲେ - ପ୍ରହ୍ଲାଦ, ଆପଣ ମଧ୍ୟ ଏହା ସହିତ ରହି ଏହାଙ୍କୁ ସତ୍‌ସଂଗ ଦେଉଥାନ୍ତୁ । ଏବେ ଏହାଠୁ ଅଧିକା କଣ ଦରକାର । ଭଗବାନ ଏବଂ ଭକ୍ତ ଉଭୟେ ଏହି ଭକ୍ତ ପାଖକୁ ଆସିଗଲେ । କାହା ଉପରେ ଅଧିକା କୃପା କଲେ ?

ବଳି କହିଲେ -

**ଅହୋ ପ୍ରଣାମାୟ କୃତଃ ସମୁଦ୍ୟମଃ**

**ପ୍ରପନ୍ନଭକ୍ତାର୍ଥବିଧୌ ସମାହିତଃ । (୮.୨୩.୨)**

ଭଗବାନ ଆପଣ ମୋ ଉପରେ ଏପରି କୃପା କରିଛନ୍ତି ଯେ ମୋ ପାଖରେ କିଛି କହିବା ପାଇଁ ଶବ୍ଦ ହିଁ ନାହିଁ । ପ୍ରହ୍ଲାଦ କହିଲେ -

**ନେମଂ ବିରିଞ୍ଚୋ ଲଭତେ ପ୍ରସାଦଂ**

**ନ ଶ୍ରୀର୍ନ ଶର୍ବଃ କିମୁତାପରେ ତେ । (୮.୨୩.୬)**

ଭଗବାନ ଆପଣ ନିଜ ଚରଣ ଏହାର ମସ୍ତକ ଉପରେ ରଖି ଯେଉଁ କୃପା ପ୍ରସାଦ ୟାକୁ ଦେଲେ ତାହା ତ ବ୍ରହ୍ମାଙ୍କୁ ମଧ୍ୟ ମିଳି ପାରିନି । ଦେଖନ୍ତୁ, ଲକ୍ଷ୍ମୀ ତାଙ୍କର ପ୍ରିୟା, ତାଙ୍କୁ ମଧ୍ୟ ମସ୍ତକ ଉପରେ ଚରଣ କମଳର ସ୍ପର୍ଶ କେବେ ମିଳିନାହିଁ , ଶିବଙ୍କୁ ମଧ୍ୟ ମିଳିନି, ବଳିଙ୍କୁ ମିଳିଗଲା । ପ୍ରହ୍ଲାଦ କହିଲେ - ଆରେ ବଳି, ତୁ ଜାଣିଛୁ ତୋର ଭାଗ୍ୟ କେତେ ଶ୍ରେଷ୍ଠ ? କରକମଳରୁ ମଧ୍ୟ ଚରଣକମଳର ସ୍ପର୍ଶ ଶ୍ରେଷ୍ଠ । ଭକ୍ତ ତ ଚରଣ କମଳକୁ ଧରିଥାଏ, ଆଉ ଏଠି ଭଗବାନ ସ୍ୱୟଂ ନିଜର ଚରଣ କମଳ ମସ୍ତକ ଉପରେ ରଖିଦେଲେ । ଏହାର ଅର୍ଥ ହେଲା ଯେ ମସ୍ତିଷ୍କରେ ଯେଉଁ ଅହଂକାର ଭରି ହୋଇ ରହିଛି ତା'କୁ ଭଗବାନ ଦୂର କରିଦେଲେ ।

## ଭଗବାନଙ୍କ ଭକ୍ତ ବତ୍ସଳତା

ଏବେ ଏହି କଥା ଉପରେ ଟିକିଏ ଚିନ୍ତନ କରିବା । ଭଗବାନ ରାଗ-ଦ୍ୱେଷ ରହିତ ଅଟନ୍ତି, ସେ ସମସ୍ତଙ୍କ ପାଇଁ ସମାନ । ରାଜା ବଳି ଧର୍ମପୂର୍ବକ ଜୀବନ-ଯାପନ କରୁଥିଲେ । ତେଣୁ ଭଗବାନ ଈଶ୍ୱର ରୂପରେ ତାଙ୍କର ବିରୋଧ କରି ପାରିବେ ନାହିଁ । କିନ୍ତୁ ଅଦିତି ଯେଉଁ ତପସ୍ୟା କରିଥିଲେ, ସେହି ତପସ୍ୟାରେ ପ୍ରସନ୍ନ ହୋଇ ତାଙ୍କୁ ଯାହା ବରଦାନ ଦରକାର, ତାହା ପ୍ରଦାନ କରିବା ମଧ୍ୟ ଭଗବାନଙ୍କ କର୍ତ୍ତବ୍ୟର ଅର୍ନ୍ତଭୁକ୍ତ। ତେଣୁ ଅଦିତିଙ୍କ ଇଚ୍ଛା ମଧ୍ୟ ପୂରଣ କରିବାକୁ ପଡିବ ଏବଂ ବଳିଙ୍କୁ ମଧ୍ୟ ଦଣ୍ଡ ଦେବାକୁ

ହେବ । ଏହା କିପରି ସମ୍ଭବ ? ତେଣୁ କହିଲେ ମୁଁ ଦେବତାମାନଙ୍କ ପକ୍ଷ ନେବି । କିପରି ? ଭାଲ ରୂପେ ମୁଁ ତାଙ୍କର ପକ୍ଷ ନେଇପାରିବି । ଦେଖିଲେ ତ, ସେ ଦେବତାମାନଙ୍କ କାମ କରିଦେଲେ, ତାଙ୍କୁ ପୁନଃ ସ୍ୱର୍ଗ ପ୍ରଦାନ କଲେ, ତାଙ୍କର ମାତା ଅଦିତିଙ୍କର ଇଚ୍ଛାଙ୍କୁ ମଧ୍ୟ ପୂର୍ଣ୍ଣ କରିଦେଲେ । ରାଜା ବଳିଙ୍କୁ ଶ୍ରେଷ୍ଠତ୍ୱ ମିଳିବା ଉଚିତ୍ । ତାଙ୍କୁ ମଧ୍ୟ ଦେଲେ, କାରଣ ସ୍ୱର୍ଗ ଠୁ ବଳି ସୁଖଦାୟକ ସୁତଳ ଲୋକର ରାଜ୍ୟ ତାଙ୍କୁ ଦେଇ ଦେଲେ । କେବଳ ଏତିକି ନୁହେଁ, ନିଜେ ମଧ୍ୟ ସେଠି ପହରା ଦେବା ପାଇଁ ଚାଲିଗଲେ ଏବଂ ପ୍ରହ୍ଲାଦଙ୍କୁ ମଧ୍ୟ ସେଠାକୁ ପଠାଇ ଦେଲେ । ସ୍ୱୟଂ ରାଜା ବଳିଙ୍କ ସେବକ ହେଇଗଲେ। ଅଧିକ ଫଳ କାହାକୁ ଦେଲେ ? ଭଗବାନ ରାଜା ବଳିଙ୍କୁ ହିଁ ଅଧିକ ଫଳ ପ୍ରଦାନ କଲେ ।

ଏଠାରେ ଆଉ ଗୋଟିଏ କଥା ଜାଣିବାକୁ ପଡିବ । ଗୋଟିଏ ପାଦରେ ପୃଥିବୀ ଏବଂ ଅନ୍ୟ ପାଦରେ ସ୍ୱର୍ଗ ନେବାର ଅର୍ଥ କଣ ? ବଳି ଏପରି ଧର୍ମାତ୍ମା ଥିଲେ ଯେ ସେ ନିଜର ପୁଣ୍ୟ ଦ୍ୱାରା ଏହି ଲୋକ ଏବଂ ପରଲୋକକୁ ମଧ୍ୟ ଜିତି ନେଇଥିଲେ ଏବଂ ଜିତିଯାଇ - ଏହା ମୋର ଲୋକ, ମୁଁ ଏହାର ସ୍ୱାମୀ, ଏବେ ମୁଁ ଏଇ ଦୁଇଟିକୁ ଭଗବାନଙ୍କୁ ଦାନ କରୁଛି, ଏପରି ଅହଂକାର ମଧ୍ୟ କରୁଥିଲା । ଯାହା ନିଜ ଜିନିଷ ନୁହଁ ତାକୁ କାହାକୁ କିପରି ଦାନ କରିପାରିବ । ପ୍ରଥମତଃ ଏହି ଲୋକଗୁଡିକୁ ଜିତିବା, ତାପରେ ଏହା ମୋର ଏପରି ଅହଂକାର କରିବା, ମୋହ ରଖିବା, ଉଭୟ ଭୁଲ ।

ବଳିର ଏପରି ଅହଂକାର ହେଇଯିବା ପରେ ଭଗବାନ କଣ କଲେ ? ତା'ର ଇହଲୋକ ଏବଂ ପରଲୋକ ଦୁଇଟା ଯାକ ନେଇଗଲେ । ଲୋକ ତ ନେଇଗଲେ କିନ୍ତୁ ଅହଂକାର ବାକି ରହିଗଲା । ଦୁନିଆରେ କୌଣସି ଜିନିଷକୁ ତ୍ୟାଗ କରିବା ସେତେ କଷ୍ଟକର ନୁହଁ ଯେତେ ତାକୁ ତ୍ୟାଗ କରିବାର ଅଭିମାନକୁ ଛାଡିବା। ଯେପରି, ମୁଁ ଭାବିବି - ମୁଁ ଘର-ଦ୍ୱାର ଛାଡି ସନ୍ନ୍ୟାସୀ ହେଲି କିନ୍ତୁ କେହି ତ ମୋ ଗୋଡ ଛୁଉଁ ନାହାନ୍ତି। ଘର ଛାଡି ଆସିଲା ବୋଲି ତା'ର ଅହଂକାର ? କିଏ କହିଲା ଘର ଛାଡିବା ପାଇଁ ? ଆମ ମାନଙ୍କର ଛାଡିବାରେ ମଧ୍ୟ ଅହଂକାର ହୋଇଯାଏ । ଦେଖନ୍ତୁ ଆମ ଘରର ମଇଳା ଉଠେଇ ଫିଙ୍ଗିବାରେ ଆମର କିଛି ଅହଂକାର ଥାଏ କି, ସମସ୍ତଙ୍କୁ କହୁକି ଗୋଟେ କିଲୋ ଅଳିଆ ଫିଙ୍ଗି ଦେଲୁ । ଆମେ ମଇଳା ହିଁ ତ ଫିଙ୍ଗିଲୁ , ଅଳିଆ ତ୍ୟାଗ

କଲୁ , ତା ପାଇଁ ପୁଣି ଅହଂକାର କାହିଁକି । କିନ୍ତୁ ଆମେ ତା ପାଇଁ ମଧ୍ୟ ଅଭିମାନ କରୁ। ଭୋଗର ଅହଂକାର ଠାରୁ ତ୍ୟାଗର ଅହଂକାରକୁ ଛାଡିବା ଅଧିକ କଷ୍ଟକର । ତେଣୁ ଭଗବାନ କହିଲେ - ତୁମେ ଇହଲୋକ ଛାଡିଲ, ପରଲୋକ ଛାଡିଲ, କିନ୍ତୁ ଏବେ ଅହଂକାରକୁ ମଧ୍ୟ ଛାଡ । ରାଜା ବଳି ବୁଝିଗଲେ। ସେ ଭଗବାନଙ୍କୁ ନିଜ ମୁଣ୍ଡ ଦେଖେଇ ଦେଲେ। ଭଗବାନ, ଏଥିରେ ଯେଉଁ ଓଲଟା ବୁଦ୍ଧି ଅଛି, ତା'କୁ ଆପଣ ଦୂର କରି ଦିଅନ୍ତୁ। ଭଗବାନ ତାକୁ ଦୂର କରି ଦେଲେ ନିଜ ଚରଣ ସ୍ପର୍ଶ ଦ୍ୱାରା। ତା'ର ଅହଂକାରକୁ ନଷ୍ଟ କରି ଦେଲେ। ଭଗବାନଙ୍କ ଭକ୍ତି କଲେ, ଏଇଆ ହୁଏ ।

ଏବେ ଦେଖିବା ଯେ କେଉଁ ଦୃଷ୍ଟିରୁ ଭଗବାନ ଛଳ-କପଟ କଲା ପରି ଲାଗୁଛି । କିନ୍ତୁ ଏହା ସତ୍ୟ ଯେ ସେ ଛଳ କରି ହିଁ ନିଜ ଭକ୍ତର ମହିମାକୁ ବଢେଇ ଦେଲେ । ଭକ୍ତ ନିଜର ପ୍ରତିଜ୍ଞା ପୂରଣ କେତେ ସଂକଟ ସହିକରି କରେ, ତାକୁ ଦର୍ଶେଇଛନ୍ତି । ଭଗବାନ ତା ସହିତ କପଟ କଲେ ମଧ୍ୟ, ସେ ଥରେ ହେଲେ କହି ନାହିଁ ଯେ ମୁଁ ସୁପ୍ରିମ କୋର୍ଟରେ ତୁମ ଉପରେ କେସ୍ କରିବି । ସେ ତ ଭାବିଲା - ମୁଁ ବଚନ ଦେଇଛି ମାନେ ତାକୁ ପୁରା କରିବି । ଆଉ ଲୋକଟି ଛଳ କରୁଛି ତ କରୁ । ତା' ଦୋଷ ତ ମୋତେ ଲାଗିବନି । ବଚନ ପୂର୍ଣ୍ଣ କରିବାର ଯେଉଁ ଅତ୍ୟନ୍ତ ଶ୍ରେଷ୍ଠ ଧର୍ମ - ସଦ୍ ଧର୍ମ, ତାକୁ ଭଗବାନଙ୍କ ଶକ୍ତି ଦ୍ୱାରା ଭକ୍ତ ପୁରା କରେ। ଭକ୍ତକୁ ବଡ ସିଦ୍ଧ କରିବା ପାଇଁ ଭଗବାନ ନିଜ ଉପରେ ଦୋଷାରୋପଣକୁ ସହନ କରିବା ପାଇଁ ମଧ୍ୟ ପ୍ରସ୍ତୁତ ଥାଆନ୍ତି। ଏପରି ଭଗବାନଙ୍କୁ ଛାଡି ଅନ୍ୟ କାହାର ଭଜନ କାହିଁକି କରିବା ? ସେ ଆକ୍ଷେପ ସହିବାକୁ ମଧ୍ୟ ପ୍ରସ୍ତୁତ । କହିଲେ, ଦେଖିଲ ତ ମୋ ଭକ୍ତ ବଳି କିପରି ? ମୁଁ କପଟ କରିବା ପରେ ମଧ୍ୟ, ନିଜ ଗୁରୁଙ୍କ ଚରଣକୁ ତ୍ୟାଗ କରି, ସେ ନିଜ ବଚନରେ ଦୃଢ଼ ରହିଲେ । ଏହା ଠାରୁ ଅଧିକ ଆଉ କଣ ହୋଇପାରେ ? ଏହା ହିଁ ବଚନ ପୁରା କରିବାର ସଦ୍‌ଧର୍ମ ଅଟେ । ଭଗବାନ ତାର ଦାସ ହେଲେ, ତାର ସେବକ ହେଇଗଲେ । ଯିଏ ଅହଂକାରର ତ୍ୟାଗ କରି ଦିଏ ଭଗବାନ ତାର ଦାସ ହୋଇଯାଆନ୍ତି ।

**ଆଉ ଗୋଟିଏ କଥା ବୁଝି ରଖନ୍ତୁ , ଭଗବାନ ଛୋଟ ରୂପରେ ଆସି ତିନି ପାଦ ଭୂମି ମାଗିଲେ, ଦେଇ ସାରିବା ପରେ ବିରାଟ ରୂପ ଧାରଣ କଲେ । ଏହାର ଅର୍ଥ କଣ ? ଭଗବାନ ଆମ ପାଖକୁ ଛୋଟଟିଏ ହେଇଆସନ୍ତି । କହିଲେ - ତିନି ମିନିଟର**

ସମୟ ମୋତେ ଦିଅ, ମୋର ନାମ ନିଅ । ଏହା କେଡେ ବଡ଼ କଥା ! ଆମ ପାଖରେ ସମୟ କାହିଁ ? ତାହାଲେ ଅଧିକ ସମୟ ଦରକାର ନାହିଁ,ଖାଲି ଦୁଇ-ତିନି ମିନିଟ ସମୟ ଦିଅ । ରାମ, ରାମ, ରାମ ଖାଲି ତିନିଥର କୁହ, ଅଧିକା ନୁହଁ । ଆଉ ଯଦି ଆମେ ତାଙ୍କୁ ତିନି ମିନିଟ ସମୟ ଦେବା ଆରମ୍ଭ କରିଦେବା ତାହାଲେ ଭଗବାନ ବିରାଟ ରୂପ ଧାରଣ କରି ଆଉ ସମ୍ପୂର୍ଣ୍ଣ ଜୀବନରେ ବ୍ୟାପ୍ତ ହେଇଯିବେ । ଆମର ପୂରା ଜୀବନ ଭଗବନ୍ମୟ ହେଇଯିବ। ତେଣୁ ବାମନ ଭଗବାନଙ୍କର ବିରାଟ ରୂପ ଧାରଣ କରିବାରେ ଏହା ହେଲା ପ୍ରକୃତ ଅର୍ଥ । କିନ୍ତୁ ମୁଁ ଏହି କଥା ଗୋଟିଏ ଜାଗାରେ କହିବାରୁ ସେହି ବ୍ୟକ୍ତି କହିଲା ଯେ ସେଥିପାଇଁ ମୁଁ ନାମ ନିଏ ନାହିଁ । ସବୁ ସମୟ କେବଳ ନାମ ହିଁ ନେବା ତ ମୁଁ ବ୍ୟବସାୟ କିପରି କରିବି ? ସେ ତା'ର ଦୋକାନ ଚିନ୍ତା କରୁଥିଲା । ସେ ଏହି କଥାର ଅର୍ଥ ବୁଝିପାରିଲା ନାହିଁ । ମିଶନରେ ମଧ୍ୟ ଲୋକମାନେ କୁହନ୍ତି - ଆପଣ ପ୍ରଥମେ କହିଲେ ଅଳ୍ପ ସମୟ ମିଶନ ପାଇଁ ଦିଅ, ପୁଣି ପୁରା ସମୟ ମାଗୁଛନ୍ତି, ଲୋକମାନେ ଡରିଯାଆନ୍ତି । ଭଗବାନ ଏପରି ଯେ ଆପଣଙ୍କର ଜୀବନକୁ ପବିତ୍ର କରିଦେବେ, ସମ୍ପୂର୍ଣ୍ଣ ଜୀବନରେ ବ୍ୟାପ୍ତ ହେଇଯିବେ । ଆପଣଙ୍କ ଜୀବନକୁ ଭଗବନ୍ମୟ କରିଦେବେ । ଏହା ହିଁ ବାମନ ଅବତାରର ରହସ୍ୟ। ଏହା ଅତ୍ୟନ୍ତ ପ୍ରିୟ ଅବତାର ଏବଂ ଏହା ଉପରେ ଯେତେ ଚିନ୍ତନ କରିବେ ଆନନ୍ଦ ଆସିବ । ତଥାପି ଏଠି ଏହାକୁ ସମାପ୍ତ କରି ଅନ୍ୟ ଅବତାରକୁ ଯିବା । ତେଇଶି ଅଧ୍ୟାୟ ସମାପ୍ତ ହେଲା।

## ମତ୍ସ୍ୟାବତାର

ଏହି ସ୍କନ୍ଧର ଅନ୍ତିମ ଅଧ୍ୟାୟରେ ଭଗବାନଙ୍କର ମତ୍ସ୍ୟ ଅବତାରର ବର୍ଣ୍ଣନ କରାଯାଇଛି । ସତ୍ୟବ୍ରତ ନାମକ ଜଣେ ରାଜର୍ଷି ହେଇଥିଲେ । ସେ ଶ୍ରେଷ୍ଠ ପୁରୁଷ ଏବଂ ତପସ୍ୱୀ ଥିଲେ । ଭଗବାନ ପର ମନ୍ୱନ୍ତରରେ ତାଙ୍କୁ ମନୁ କରିବା ପାଇଁ ଚାହୁଁଥିଲେ । ଭଗବାନ ଭାବିଲେ ଇଏ ମନୁ ହେବେ ତ ତାଙ୍କୁ ତା'ର ଯୋଗ୍ୟ ମଧ୍ୟ ହେବାକୁ ପଡ଼ିବ। ତେଣୁ ତାଙ୍କୁ ଯୋଗ୍ୟ ବନେଇବାର ଉତ୍ତର ଦାୟିତ୍ୱ ଭଗବାନ ନିଜ ଉପରେ ନେଲେ । ରାଜର୍ଷିଙ୍କ ଭିତରେ ସେମିତି ତ ସବୁ ଗୁଣ ଥିଲା କିନ୍ତୁ ଟିକିଏ ଅହଂକାର ଥିଲା ଯେ ମୁଁ ରାଜା ଏବଂ ସମସ୍ତଙ୍କର ରକ୍ଷକ । ଭଗବାନ ଭାବିଲେ ଯେ ୟାଙ୍କର ଏହି ଅହଂକାର ଟିକକ ଦୂରେଇ ଦେଲେ ଇଏ ଠିକ୍ ହେଇ ଯିବେ ଏବଂ ପର ମନ୍ୱନ୍ତରରେ ମନୁ ହେଇପାରିବେ । ଦେଖିଲେ ତ, କେତେ କୃପା । ଧର୍ମ ଏବଂ ସଦ୍‌ଧର୍ମର ପାର୍ଥକ୍ୟ

ଆମେ ଦେଖି ସାରିଛେ । ଧର୍ମର ଆଚରଣ ଆମେ ନିଜର ଶକ୍ତି ଅନୁସାରେ କରୁ, ଏବଂ ସଦ୍‌ଧର୍ମର ଆଚରଣ ଭଗବାନ ନିଜ ଶକ୍ତିଦ୍ୱାରା ଆମ ଠାରୁ କରେଇ ନିଅନ୍ତି ।

ଦିନେ ରାଜର୍ଷି ସତ୍ୟବ୍ରତ ନଦୀରେ ସ୍ନାନ ସାରି ଅର୍ଘ୍ୟ ପ୍ରଦାନ କରିବା ପାଇଁ ହାତରେ ଜଳ ନେବା ସମୟରେ ଗୋଟିଏ ଛୋଟ ମାଛ ତାଙ୍କ ହାତକୁ ଆସିଗଲା । କାହିଁକି କେଜାଣି ମାଛଟି ତାଙ୍କୁ ଭାରି ଭଲ ଲାଗିଲା ଏବଂ ସେ ତାକୁ କମଣ୍ଡଳୁରେ ପକେଇ ନେଇ ଆସିଲେ । ତା ପରଦିନ ଦେଖିଲେ ଯେ ସେ ବଡ଼ ହେଇଯାଇଛି। ରାଜର୍ଷିଙ୍କୁ ଦେଖି ସେ କହିଲା ଯେ କମଣ୍ଡଳୁର ପାଣି ମୋ ଲାଗି ପର୍ଯ୍ୟାପ୍ତ ନୁହଁ । ରାଜର୍ଷି ତାକୁ ଗୋଟିଏ ବଡ ମାଠିଆରେ ଛାଡି ଦେଲେ ତ ସେ ପୁଣି ବଢିଯାଇ ମାଠିଆ ସମାନ ହେଇଗଲା । ଆର ଦିନକରେ ପୁଣି ଏତେ ବଡ ହେଇଗଲା । ଆରେ ! ମାଛ କଣ ଏତେ ଜଲ୍‌ଦି ବଢିପାରେ ? ରାଜା ସତ୍ୟବ୍ରତ ଭାବିଲେ ମୁଁ ଏହାକୁ ରକ୍ଷା କରିବି । ଏଠାରେ ଦେଖିବା କଥା ଯେ ଭଗବାନ ତା'ର ରକ୍ଷକପଣିଆର ଅହଂକାରକୁ କେମିତି ନଷ୍ଟ କରୁଛନ୍ତି । ପୁଣି ରାଜର୍ଷି ତାକୁ ସେଠାରୁ ନେଇ ଗୋଟିଏ ସରୋବରରେ ଛାଡି ଦେଲେ । ସେ ଆହୁରି ବଢିଗଲା ଏବଂ କହିଲା ଏତିକି ଜଳ ମୋ ପାଇଁ ପର୍ଯ୍ୟାପ୍ତ ନୁହଁ। ସେ ତାକୁ ଗୋଟିଏ ବହୁତ ବଡ ହ୍ରଦରେ ଛାଡି ଦେଲେ । ସେ ପୁଣି ବଢିଗଲା । ଏହିପରି ସତ୍ୟବ୍ରତ ତାକୁ ଅନେକ ବଡ ବଡ ସରୋବରରେ ଛାଡିଲେ କିନ୍ତୁ ସେ ପ୍ରତ୍ୟେକ ଥର ସେତିକି ବଡ ହେଇଯାଉଥାଏ । ସେ କହିଲେ ଏଥର ଯାକୁ ସମୁଦ୍ରରେ ଛାଡି ଦେବା । ସମୁଦ୍ରରେ ଛାଡିବା ସମୟରେ ସେହି ମାଛ ରାଜାଙ୍କୁ କହିଲା - ସମୁଦ୍ରରେ ବଡ ବଡ ମଗର ଆଦି ମତେ ଖାଇ ଦେବେ । ଆପଣ ମୋତେ ସମୁଦ୍ରରେ ଛାଡନ୍ତୁ ନାହିଁ । ସେତେବେଳେ ସତ୍ୟବ୍ରତ ମୁଗ୍ଧ ହେଇ ତାକୁ ଦେଖିବାକୁ ଲାଗିଲେ । ସେ ତାଙ୍କୁ ନମସ୍କାର କରି କହିଲେ, "ହେ ମତ୍ସ୍ୟ ମହାରାଜ, ଆପଣ କିଏ ?" ମୋତେ ତ ଲାଗୁନି ଯେ କୌଣସି ମାଛ ଏତେ ଶୀଘ୍ର ବଢିପାରିବ । ସେ କିଛି ବୁଝିପାରୁ ନ ଥିଲେ।

**ଏବଂ ବିମୋହିତସ୍ତେନ ବଦତା ବଳ୍ଗୁଭାରତୀମ୍।**

**ତମାହ କୋ ଭବାନସ୍ମାନ୍ ମତ୍ସ୍ୟରୂପେଣ ମୋହୟନ୍।।(୮.୨୪.୨୫)**

ସେ ଭାବିବାକୁ ଲାଗିଲେ ମତ୍ସ୍ୟର ରୂପ ନେଇ କିଏ ମୋତେ ମୋହିତ କରୁଛି ? ଭଗବାନ ନିଜେ ଆଉ ଏଠାକୁ ଆସି ଯାଇ ନାହାନ୍ତି ତ ?

**ଜ୍ଞାତୁମିଚ୍ଛାମ୍ୟଦୋ ରୂପଂ ଯଦର୍ଥଂ ଭବତା ଧୃତମ୍ ॥ (୮.୨୪.୨୯)**

ପୂର୍ବରୁ ତାଙ୍କୁ ଲାଗୁଥିଲା ଯେ ମୁଁ ଏହି ମାଛକୁ ରକ୍ଷା କରିବା ବାଲା । ଏବେ ତାଙ୍କର ସେହି ଅହଂକାର ନଷ୍ଟ ହେଇଗଲା ଏବଂ ସେ କହିଲେ – ଆପଣ ମାଛ ନୁହନ୍ତି । ଯେଉଁଥି ପାଇଁ ଆପଣ ଏହି ରୂପ ଧାରଣ କରିଛନ୍ତି ମୋତେ ତାହା କୁହନ୍ତୁ ।

**ସପ୍ତମେଽଦ୍ୟତନାଦୂର୍ଧ୍ୱମହନ୍ୟେତଦରିନ୍ଦମ୍ । (୮.୨୪.୨୯)**

ଭଗବାନ କହିଲେ, "ତୁମେ ଠିକ୍ କହୁଛ । ଦେଖ, ଆଜିଠାରୁ ସପ୍ତମ ଦିନ ପ୍ରଳୟ ହେବ । ସବୁ କିଛି ଜଳରେ ବିଲୀନ ହେଇଯିବ ।" ପ୍ରକୃତ କଥା ଏଇଆ ଯେ ଭଗବାନ ସମସ୍ତ ଜୀବ-ଜନ୍ତୁ, ବନସ୍ପତିର ବୀଜ, ସଂତତି ଏବଂ ଜ୍ଞାନର ରକ୍ଷା କରିବାକୁ ଋହୁଁଥିଲେ । ଏହା ସହିତ ସେ ଜାଣିଥିଲେ ଯେ ହୟଗ୍ରୀବ ନାମକ ଅସୁର ବେଦମାନଙ୍କୁ ଋେରେଇ ନେଇଛି । ତା ଠାରୁ ବେଦମାନଙ୍କୁ ଉଦ୍ଧାର କରି ପୁନଃ ବ୍ରହ୍ମାଙ୍କୁ ମଧ୍ୟ ଦେବାର ଥିଲା । କିଛି ଲୋକ ଭାବନ୍ତି ଯେ ଧର୍ମର, ସମସ୍ତ ଜୀବ-ଜନ୍ତୁମାନଙ୍କର ରକ୍ଷା ଆମେ ହିଁ କରୁଛୁ, ଏହା ବ୍ୟର୍ଥ ଅହଂକାର ମାତ୍ର । ଭାବିଲେ ପ୍ରଳୟ ସମୟରେ ଏହି ସମସ୍ତ ସଂସ୍କାରମାନଙ୍କର ରକ୍ଷା କିଏ କରେ ?

ଭଗବାନ କହିଲେ- ପ୍ରଳୟ ସମୟରେ ସବୁ ଆଡେ ଜଳ ହିଁ ଜଳ ହେଇଯିବ, ସେତେବେଳେ ଗୋଟିଏ ନୌକା ବହି ଆସିବ । ଯେତେ ପ୍ରକାରର ପ୍ରାଣୀ ଅଛନ୍ତି, ସେମାନଙ୍କର ବୀଜ ଏବଂ ଔଷଧିମାନଙ୍କୁ ନେଇ ସପ୍ତଋଷିଙ୍କ ସହିତ ତୁମେ ସେଥିରେ ବସିଯିବ । ଏହି କଥା ବାଇବେଲ ତଥା ଅନ୍ୟ ଧର୍ମ ଗ୍ରନ୍ଥମାନଙ୍କରେ ମଧ୍ୟ ମିଳେ । ତା'ପରେ କହିଲେ, ମୁଁ ଗୋଟିଏ ବଡ ମାଛ ରୂପରେ ଏଠାକୁ ଆସିବି । ସେତେବେଳେ ବାସୁକି ଦ୍ୱାରା ମୋ ଶିଂଘରେ ସେହି ନୌକାକୁ ବାନ୍ଧି ଦେବ । ପ୍ରଳୟ ସମୟ ବିତିଗଲା ପର୍ଯ୍ୟନ୍ତ ମୁଁ ତୁମମାନଙ୍କୁ ରକ୍ଷା କରିବି । ସେତେବେଳେ ତୁମେ ମୋତେ ପ୍ରଶ୍ନ କଲେ ମୁଁ ତୁମକୁ ଉପଦେଶ ଦେବି ଯାହାଦ୍ୱାରା ତୁମକୁ ପରଂବ୍ରହ୍ମ ସ୍ୱରୂପର ଅନୁଭବ ହେବ । ପ୍ରଳୟ ପରେ ଅନ୍ୟ କଳ୍ପ ଆରମ୍ଭ ହେବ ଏବଂ ତୁମେ ମନୁ ହେବ ।

ଭଗବାନଙ୍କ କହିବା ଅନୁସାରେ ସପ୍ତମ ଦିନ ସବୁଆଡ଼ ଜଳ ମଗ୍ନ ହେଇଗଲା ଏବଂ ସତ୍ୟବ୍ରତ ସବୁ ବୀଜ, ସପ୍ତର୍ଷି ଏବଂ ଔଷଧିଗୁଡିକୁ ନୌକାରେ ନିଜ ସହିତ ରଖି ନେଲେ । ମତ୍ସ୍ୟ ଆସିଲା ଏବଂ ବାସୁକୀ ନାଗ ଦ୍ୱାରା ନୌକାକୁ ତା ଶିଂଘରେ ବାନ୍ଧି ସାରି ପୂର୍ବ କଥାନୁସାରେ ସତ୍ୟବ୍ରତ ଭଗବାନଙ୍କୁ ପ୍ରଶ୍ନ କଲେ ଏବଂ ମତ୍ସ୍ୟ ରୂପୀ ଭଗବାନ

ନୌକାକୁ ରକ୍ଷା କରିବା ସହିତ ତାଙ୍କୁ ଆତ୍ମତତ୍ତ୍ୱର ଉପଦେଶ ଦେଲେ । ଏହା ହିଁ ମତ୍ସ୍ୟ ପୁରାଣ ଅଟେ।

ଦେଖିଲେ ତ, ରାଜର୍ଷିଙ୍କୁ ଲାଗୁଥିଲା ଯେ ମୁଁ ହିଁ ସବୁର ରକ୍ଷକ । ଏବେ ତାଙ୍କୁ ଜ୍ଞାନ ହେଲା ଯେ ସମ୍ପୂର୍ଣ୍ଣ ସୃଷ୍ଟିର ରକ୍ଷକ ତ କେବଳ ଭଗବାନ । ତାଙ୍କର ଅଭିମାନର ବିନାଶ ହେଲା ଏବଂ ସେ ପର ମନ୍ୱନ୍ତରରେ ମନୁ ହେଲେ । ଏହି ଅଧ୍ୟାୟରେ କେବଳ ମତ୍ସ୍ୟାବତାରର କଥା ଅଛି । ଶ୍ରୀ ଶୁକଦେବ ମତ୍ସ୍ୟାବତାର ଭଗବାନଙ୍କୁ ନମସ୍କାର କଲେ – **'ଜିହ୍ମମୀନଂ ନତୋଽସ୍ମି'** । ଭଗବାନ ହିଁ ମାୟା ଦ୍ୱାରା ମୀନ – ବରାହ ଏବଂ କଚ୍ଛପ ରୂପରେ ଆସନ୍ତି । ଭଗବାନ ତ ଭଗବାନ ହିଁ ରୁହନ୍ତି ତାଙ୍କ ଭିତରେ କୌଣସି ପରିବର୍ତ୍ତନ ହୁଏ ନାହିଁ । ମାଛ ରୂପରେ ଆସିଲେ ମଧ୍ୟ ସେ ସର୍ବଜ୍ଞ ଏବଂ ସର୍ବଶକ୍ତିମାନ ହିଁ ଥିଲେ । ତାଙ୍କୁ ଅଂଶାବତାର, କଳାବତାର, ଆଦି କହିଲେ ମଧ୍ୟ ଭଗବାନ ସବୁବେଳେ ପୂର୍ଣ୍ଣ । ଅଷ୍ଟମ ସ୍କନ୍ଧ ସମାପ୍ତ ହେଲା ।



# ନବମ ସ୍କନ୍ଧ

ନବମ ସ୍କନ୍ଧର ବିଷୟ ହେଲା '**ଈଶାନୁ କଥା**' ଅର୍ଥାତ୍ ଈଶକଥା ବା ଭଗବାନଙ୍କ କଥା। ନାମ ହେଲା ଈଶ କଥା, କିନ୍ତୁ ନବମ ସ୍କନ୍ଧରେ ଭଗବାନଙ୍କ ଭକ୍ତମାନଙ୍କ ବିଷୟରେ କୁହାଯାଇଛି । ଏଥିରେ ଚବିଶଟି ଅଧ୍ୟାୟ ଅଛି ଯେଉଁଥିରେ ସୂର୍ଯ୍ୟବଂଶୀ ଏବଂ ଚନ୍ଦ୍ରବଂଶୀ ରାଜାମାନଙ୍କର ବର୍ଣ୍ଣନ କରାଯାଇଛି । ସବୁ ରାଜାମାନଙ୍କ ମଧ୍ୟରେ କୌଣସି ନା କୌଣସି ବିଶେଷତା ଥିଲା । ଏବେ ଆମେ ସେଗୁଡ଼ିକ ବିସ୍ତୃତ ଭାବେ ଦେଖିବା ।

## ଅମ୍ବରୀଷ-ଚରିତ୍ର

ରାଜା ପରୀକ୍ଷିତ ମନୁ ବଂଶର ବିସ୍ତାର ଜାଣିବାକୁ ଚାହିଁବାରୁ ଶ୍ରୀଶୁକଦେବ କହିଲେ ଯେ ମନୁବଂଶ ଏତେ ବଡ଼ ଯେ ଯେତେ ବର୍ଣ୍ଣନ କଲେ ମଧ୍ୟ ଶେଷ ହେବ ନାହିଁ । ତେଣୁ ତୁମେ ସଂକ୍ଷେପରେ ଶୁଣ । କିଛି ରାଜାଙ୍କ ବିଷୟରେ କହୁଛି । ମନୁ ପୁତ୍ର ରାଜା ଶର୍ଯ୍ୟାତିଙ୍କ କନ୍ୟାର ନାମ ଥିଲା ସୁକନ୍ୟା । ତାର ବିବାହ ଚ୍ୟବନ ଋଷିଙ୍କ ସହିତ ହେଇଥିଲା। ତାପରେ -

**ନାଭାଗାଦମ୍ବରୀଷୋଽଭୂନ୍ମହାଭାଗବତଃ କୃତୀ ।**
**ନାସ୍ପୃଶଦ୍ ବ୍ରହ୍ମଶାପୋଽପି ଯଂ ନ ପ୍ରତିହତଃ କ୍ୱଚିତ୍ ॥ (୯.୪.୧୩)**

ନାଭାଗଙ୍କ ପୁତ୍ର ହେଲେ ଅମ୍ବରୀଷ । ରାଜା ଅମ୍ବରୀଷଙ୍କ କଥା ଅତ୍ୟନ୍ତ ସୁନ୍ଦର ଏବଂ ପ୍ରସିଦ୍ଧ । ରାଜା ପରୀକ୍ଷିତ ଏହାକୁ ବିସ୍ତୃତ ଭାବେ ଜାଣିବାକୁ ଚାହିଁଲେ । ରାଜା ଅମ୍ବରୀଷ ମହାଭାଗବତ ଥିଲେ । ଦୁର୍ବାସା ଋଷିଙ୍କ ପରି ବ୍ୟକ୍ତିଙ୍କର ଅଭିଶାପ-ବ୍ରହ୍ମଶାପ ମଧ୍ୟ ତାଙ୍କୁ ସ୍ପର୍ଶ କରିପାରିଲା ନାହିଁ । ରାଜା ଅମ୍ବରୀଷ ବିଷ୍ଣୁଙ୍କର ମହାନ୍ ଭକ୍ତ ଥିଲେ, ମହାନ୍ ବୈଷ୍ଣବ ଥିଲେ । ସପ୍ତଦ୍ୱୀପର ରାଜା ହେଇ ମଧ୍ୟ ସେ ନିଜେ ମନ୍ଦିର ଓଳଉଥିଲେ ଏବଂ ଭଗବାନଙ୍କର ସବୁ ପ୍ରକାରର ସେବା-ପୂଜା କରୁଥିଲେ, ଦାସ ମାନଙ୍କ ଦ୍ୱାରା କରଉ ନ ଥିଲେ । ଆମମାନଙ୍କର ପୂଜା ତ ଅନ୍ୟମାନଙ୍କ ପାଇଁ ପ୍ରାୟଃ ଆଦେଶ ହିଁ ହେଇଥାଏ । ତୁମେ ଫୁଲ ଆଣ, ତୁମେ ହାର ଗୁନ୍ଥ, ତୁମେ ପାଣି ଆଣ ଆଦି - ଆଦି । ପରନ୍ତୁ ରାଜା ଅମ୍ବରୀଷ ଭକ୍ତି ପୂର୍ବକ ସ୍ୱୟଂ ସମସ୍ତ କାର୍ଯ୍ୟ କରୁଥିଲେ ଏବଂ ଏକାଦଶୀର ବ୍ରତ ମଧ୍ୟ କରୁଥିଲେ ।

ଏକାଦଶୀ ବ୍ରତ ଦଶମୀ ଦିନ ଠାରୁ ଆରମ୍ଭ ହୁଏ । ଦଶମୀ ଦିନ ଦିନରେ ଥରେ ଖାଆନ୍ତି, ଏକାଦଶୀ ଦିନ ପୂର୍ଣ୍ଣ ଉପବାସ ଏବଂ ଦ୍ୱାଦଶୀ ଦିନ ମଧ୍ୟ ଥରେ ଖାଆନ୍ତି । ଏକାଦଶୀ ଏଇଥିପାଇଁ ଯେ ଆମର ପାଞ୍ଚଟି ଯାକ ଜ୍ଞାନେନ୍ଦ୍ରିୟ, ପାଞ୍ଚ କର୍ମେନ୍ଦ୍ରିୟ ଏବଂ ଗୋଟିଏ ମନ, ଏହା ସବୁ ମିଶି ଗାରଟି ଉପାଧି ଗୁଡିକ ଆମକୁ ଖରାପ କରି ଦିଅନ୍ତି । ତେଣୁ ଏଗୁଡିକୁ ସଂଯମିତ କରିବାର ଆବଶ୍ୟକତା ରହିଛି। ତେଣୁ ଏକାଦଶୀ ଦିନ ଉପବାସର ବିଧାନ ଅଛି । ଅତଃ ଏକାଦଶୀରେ ଉପବାସର ଅର୍ଥ ହେଲା ଭଗବାନଙ୍କ ପାଖରେ ବସିବା-ମୌନ ରହିବା । ଆମ ଏକାଦଶୀ କିପରି ହୁଏ ? ଦୁଇଗୁଣ ଖାଇବା, ଆଉ କହିବା ଯେ ମୁଁ ଓପାସ କରିଛି। ଏକାଦଶୀ ଏମିତି କରାଯାଏ ନାହିଁ । ଏକାଦଶୀ ଦିନ ନିରାହାର ରହିବାର ଅର୍ଥ ହେଲା ମୁଁହ ଦ୍ୱାରା ଖାଇବିନି, କେବଳ ଏତିକି ନୁହଁ। ସେହିଦିନ ନାକ ଆଦି ସମସ୍ତ ଇନ୍ଦ୍ରିୟ ଆଦିଙ୍କୁ ବି ନିଜ ନିଜ ବିଷୟରୁ ଦୂରେଇ ଭଗବାନଙ୍କ ପାଖରେ ଲଗେଇବା ଉଚିତ୍ । ଯେଉଁମାନେ ଭାବନ୍ତି ଯେ ବ୍ରତ ଦିନ ଭୋକ ଲାଗିବ, ତେଣୁ ଚାଲ ସିନେମା ଦେଖିବାକୁ ଯିବା ବା ତାସ ଖେଳିବା, ସେମାନେ ବ୍ରତର ପ୍ରୟୋଜନକୁ ହିଁ ସମାପ୍ତ କରି ଦିଅନ୍ତି । ଏହା ଧର୍ମ ନୁହଁ, ଧର୍ମ ସହ ଖେଳିବା ଅଟେ ।

ଦିନକର କଥା । ରାଜା ଅମ୍ବରୀଷ ବ୍ରତସ୍ଥ ଥିଲେ ଏବଂ ଦ୍ୱାଦଶୀ ଦିନ ପୂଜା ଆଦି କରି ସାରିଥିଲେ, ବ୍ରତ ଛାଡ଼ିବାକୁ (ଅର୍ଥାତ୍ ଭୋଜନ କରିବାକୁ) ଯାଉଥିଲେ । ସେହି ସମୟରେ ଦୁର୍ବାସା ଋଷି ଅତିଥି ରୂପେ ଆସିଲେ ଏବଂ କହିଲେ ଯେ ମୁଁ ସାଂଗେ ସାଂଗେ ସ୍ନାନ କରି ଆସୁଛି । ସେ ସ୍ନାନ କରିବାକୁ ଗଲେ କିନ୍ତୁ ଜଲଦି ଫେରିଲେ ନାହିଁ । ଏପଟେ ରାଜା ଅମ୍ବରୀଷଙ୍କର ବ୍ରତ ଭାଙ୍ଗିବାର ମୁହୂର୍ତ୍ତ ଗଡି ଯାଉଥିଲା । ଉଚିତ ମୁହୂର୍ତ୍ତରେ ପୂଜା କରି ଅନ୍ନ ଗ୍ରହଣ କଲେ ଉପବାସ ପୂର୍ଣ୍ଣ ହୁଏ । ଦୀର୍ଘ ସମୟ ପର୍ଯ୍ୟନ୍ତ ଦୁର୍ବାସା ଋଷି ନ ଫେରିବାରୁ ରାଜା ଅନ୍ୟ ବ୍ରାହ୍ମଣମାନଙ୍କୁ ପଚାରିଲେ ଯେ ଏବେ ମୁଁ କଣ କରିବି । ମୁହୂର୍ତ୍ତ ଚାଲିଗଲେ ତ ବ୍ରତ ପୁରା ହେବନାହିଁ ଏବଂ ଯଦି ଋଷିଙ୍କ ଆସିବା ପୂର୍ବରୁ ମୁଁ ଖାଇନେବି ତ ଅତିଥିଙ୍କର ଅପମାନ ହେବ । ଏହି ଧର୍ମସଂକଟ ସମୟରେ ମୋର କଣ କରିବା ଉଚିତ୍ ? ସେମାନେ କହିଲେ, "ତୁମେ କେବଳ ଜଳର ଆଚମନ କରି ନେଲେ ତୁମର ବ୍ରତ ପୂର୍ଣ୍ଣ ହେବ । ତାପରେ ଋଷି ଫେରି ଆସିଲେ, ତାଙ୍କୁ ଖାଇବାକୁ ଦେଇ ତୁମେ ଖାଇବ ।" ରାଜା ସେଇଆ କଲେ ।

ଯେତେବେଳେ ଦୁର୍ବାସା ଋଷି ଲେଉଟି କରି ଆସିଲେ ଏବଂ ତାଙ୍କୁ ଏହି କଥା ଜଣା ପଡିଲା, ତ ସେ ରାଗି କରି କହିଲେ ଯେ ମୋତେ ଅତିଥି ରୂପରେ ସ୍ୱୀକାର କରି ସାରି ପୁଣି ମୋର ଅପମାନ କରୁଛ ? ସେ ଅମ୍ବରୀଷଙ୍କୁ ନଷ୍ଟ ହେଇଯିବାର ଅଭିଶାପ

ଦେଲେ। ପୁଣି ନିଜର ଗୋଟିଏ ଜଟାକୁ ଓପାଡ଼ି ସେଥିରୁ କୃତ୍ୟା ନାମକ ରାକ୍ଷସୀକୁ ଉତ୍ପନ୍ନ କଲେ । ଅମ୍ବରୀଷ ହାତଯୋଡ଼ି ଠିଆ ହୋଇ ରହିଲେ, ରାଗିଲେନି । କୃତ୍ୟା ଯେତେବେଳେ ଅମ୍ବରୀଷଙ୍କୁ ମାରିବା ପାଇଁ ତାଙ୍କ ଆଡ଼କୁ ମାଡ଼ି ଆସିଲା ତ ସେହି ସମୟରେ ଭଗବାନ ବିଷ୍ଣୁଙ୍କ ଚକ୍ର ଆସିଲା ଏବଂ କୃତ୍ୟାକୁ ପୋଡ଼ିଦେଲା । ତାପରେ ସେ ଦୁର୍ବାସା ଋଷିଙ୍କ ପଛରେ ପଡ଼ିଗଲା । ସୁଦର୍ଶନ ଚକ୍ର ଦୁର୍ବାସାଙ୍କ ପଛରେ ଗୋଡ଼ାଇବାରୁ ବ୍ରହ୍ମା, ଶଙ୍କର କେହି ହେଲେ ତାଙ୍କୁ ଶରଣ ଦେବା ପାଇଁ ରାଜି ହେଲେ ନାହିଁ । ଚକ୍ର ତାଙ୍କ ବେକ କାଟିଲା ନାହିଁ ଖାଲି ପଛେ ପଛେ ଗୋଡ଼େଇଲା । ବଡ଼ ଭୟଙ୍କର ସ୍ଥିତି ହେଇଗଲା। ଥରେ ବେକ କଟିଗଲେ ତ ଛୁଟି ମିଳିଯିବ । କିନ୍ତୁ ନା ସେ ତ ଖାଲି ପଛେ- ପଛେ ଆସୁଛି । ଭୟଭୀତ ହେଇ ଦୁର୍ବାସା ଋଷି ଭଗବାନ ବିଷ୍ଣୁଙ୍କ ପାଖକୁ ଗଲେ । କହିଲେ, "ଭଗବାନ, ମତେ ରକ୍ଷା କରନ୍ତୁ । ଏହି ଚକ୍ର ତ ମୋ ପଛରେ ପଡ଼ିଯାଇଛି ।" ତ ଭଗବାନ କହିଲେ -

**ଅହଂ ଭକ୍ତ ପରାଧୀନୋ ହ୍ୟସ୍ୱତନ୍ତ୍ର ଇବ ଦ୍ୱିଜ ।**
**ସାଧୁଭିର୍ଗ୍ରସ୍ତହୃଦୟୋ ଭକ୍ତୈର୍ଭକ୍ତଜନପ୍ରିୟଃ ॥ (୯.୪.୬୩)**

ତୁମେ ମୋ ପାଖକୁ ଆସିଛ କିନ୍ତୁ ମୁଁ ତ ଭକ୍ତ ପରାଧୀନ - ଭକ୍ତର ଅଧୀନରେ ରହେ । ଏବେ ସୁଦର୍ଶନ ଚକ୍ର ଅମ୍ବରୀଷଙ୍କ ସେବାରେ ଅଛି । ତେଣୁ ତା ଉପରେ ମୋର ମଧ୍ୟ କୌଣସି ଅଧିକାର ନାହିଁ । ଏବେ ଏହି ଚକ୍ର ସେତେବେଳେ ବନ୍ଦ ହେବ ଯେତେବେଳେ ଅମ୍ବରୀଷ କ୍ଷମା କରିଦେବ । ତାପରେ କହିଲେ, "ମୋ ଭକ୍ତର କେହି ଅପମାନ କଲେ ମୁଁ ତାକୁ ସହନ କରେ ନାହିଁ ।" ମନେ ରଖିବେ ଦୁର୍ବାସା ଗୋଟିଏ ବର୍ଷ ପର୍ଯ୍ୟନ୍ତ ଦୌଡ଼ିଲେ, ଏପରି ଦୌଡ଼ି-ଦୌଡ଼ି ଶେଷରେ ସେ ରାଜା ଅମ୍ବରୀଷଙ୍କ ପାଖକୁ ଗଲେ ଏବଂ ତାଙ୍କ ଗୋଡ ତଳେ ପଡ଼ିଗଲେ । ରାଜା ଅମ୍ବରୀଷ ଲଜ୍ଜିତ ହୋଇ କହିଲେ, "ଭଗବନ୍ , ଆପଣ ମୋର ଗୋଡ ଛୁଅନ୍ତୁ ନାହିଁ , କ୍ଷମା କରିବା ପାଇଁ ମୋର ଭଲା କି ଅଧିକାର ଅଛି ? ମୁଁ ତ ଆପଣଙ୍କ ଦାସ । ଯଦି ସର୍ବଭୂତାତ୍ମ ଭଗବାନ୍ ମୋ ଉପରେ ପ୍ରସନ୍ନ ଅଛନ୍ତି ତେବେ ମୋର ଆଉ କଣ ଦରକାର ? ଯଦି ମୋ ମନରେ ଆପଣଙ୍କ ପ୍ରତି କୌଣସି କୁଭାବ ନାହିଁ ତେବେ ଏହି ଚକ୍ର ଫେରିଯାଉ।" ଏପରି କହି ଯେତେବେଳେ ରାଜା ଅମ୍ବରୀଷ ସୁଦର୍ଶନ ଚକ୍ରକୁ ଅନେକ ପ୍ରକାରରେ ସ୍ତୁତି କଲେ, ସେତେବେଳେ ଦୁର୍ବାସା ଋଷିଙ୍କୁ ସବୁଆଡ଼ରୁ ପୋଡ଼ିପକାଉଥିବା ସୁଦର୍ଶନ ଚକ୍ର ଶାନ୍ତ ହୋଇ ଭଗବାନଙ୍କ ପାଖକୁ ଫେରିଗଲା । ଏଠାରେ ଏହା ମଧ୍ୟ ମନେ ରଖିବେ ଯେ

ରାଜା ଅମ୍ବରୀଷ ମଧ୍ୟ ଏକ ବର୍ଷ ଖାଦ୍ୟ ଖାଇ ନ ଥିଲେ । କହିଲେ - ଦୁର୍ବାସା ଋଷି ନ ଆସିଲା ପର୍ଯ୍ୟନ୍ତ ଏବଂ ତାଙ୍କୁ ନ ଖୁଆଇବା ପର୍ଯ୍ୟନ୍ତ ମୁଁ ଖାଦ୍ୟ ଗ୍ରହଣ କରିବି ନାହିଁ ।

ବର୍ଷକ ପରେ ଯେତେବେଳେ ଦୁର୍ବାସା ଋଷି ଫେରିଲେ ତ ରାଜା ଅମ୍ବରୀଷ ପୁଣି ତାଙ୍କର ସ୍ୱାଗତ ସତ୍କାର କଲେ, ତାଙ୍କ ଚରଣ-ବନ୍ଦନା କଲେ ଏବଂ ତାଙ୍କୁ ଭୋଜନ କରେଇଲେ । ତାପରେ ଦୁର୍ବାସା ତୃପ୍ତ ହେଇ ପ୍ରସନ୍ନ ଚିତ୍ତ ଦ୍ୱାରା ତାଙ୍କୁ ଭୋଜନ କରିବା ପାଇଁ କହିଲେ, ସେତେବେଳେ ଯାଇଁ ଅମ୍ବରୀଷ ଭୋଜନ କଲେ । ଦୁର୍ବାସା ତାଙ୍କୁ ଅନେକ ପ୍ରକାରରେ ଆଶୀର୍ବାଦ ନେଇ କହିଲେ -

**ଅହୋ ଅନନ୍ତଦାସାନାଂ ମହତ୍ତ୍ୱଂ ଦୃଷ୍ଟମଦ୍ୟ ମେ ॥ (୯.୫.୧୪)**

ଭଗବାନ ଅନନ୍ତଙ୍କ ଦାସ ମାନଙ୍କର ଗୁରୁତ୍ୱକୁ ଆଜି ମୁଁ ନିଜ ଆଖିରେ ଦେଖି ନେଲି । ମୁଁ ତୁମ ପ୍ରତି ଅପରାଧ କରିଥିଲି କିନ୍ତୁ ତୁମେ ମୋ ପ୍ରତି ଦୟା ଦେଖେଇଲ ।

**ଦୁଷ୍କରଃ କୋ ନୁ ସାଧୂନାଂ ଦୁସ୍ତ୍ୟଜୋ ବା ମହାତ୍ମନାମ୍ ।**
**ଯୈଃ ସଂଗୃହୀତୋ ଭଗବାନ୍ ସାତ୍ୱତାମୃଷଭୋ ହରିଃ ॥ (୯.୫.୧୫)**

ଯେଉଁ ମହାତ୍ମାମାନେ ଭଗବାନଙ୍କୁ ନିଜ ହୃଦୟରେ ସ୍ଥାପନ କରିଛନ୍ତି, ତାଙ୍କ ପାଇଁ ବା କେଉଁକାର୍ଯ୍ୟ କଠିନ ବା କେଉଁ ବସ୍ତୁକୁ ତ୍ୟାଗ କରିବା କଷ୍ଟକର ? ତାଙ୍କ ପାଇଁ କିଛି ହେଲେ କଠିନ ନୁହଁ, ସବୁ ସୁଲଭ ।

**ଯନ୍ନାମଶ୍ରୁତିମାତ୍ରେଣ ପୁମାନ୍ ଭବତି ନିର୍ମଳଃ ।**
**ତସ୍ୟ ତୀର୍ଥପଦଃ କିଂ ବା ଦାସାନାମବଶିଷ୍ୟତେ ॥(୯.୫.୧୬)**

ଯେଉଁ ଭଗବାନଙ୍କ ନାମ ନେଲେ ସମସ୍ତେ ପବିତ୍ର ହୁଅନ୍ତି, ତାଙ୍କ ଚରଣ କମଳରେ ଆଶ୍ରିତ ତଥା ସେହି ଚରଣକୁ ତୀର୍ଥ ରୂପେ ଗ୍ରହଣ କରୁଥିବା ଭକ୍ତମାନଙ୍କ ପାଇଁ କେଉଁ ବସ୍ତୁ ଅବା କଠିନ ଅଟେ ? ଦୁର୍ବାସା ଋଷି କ୍ଷମା ମାଗି ତାଙ୍କର ସ୍ତୁତି କଲେ । ଏହିପରି ଏଠାରେ ରାଜା ଅମ୍ବରୀଷଙ୍କର ଏହି ସୁନ୍ଦର ଚରିତ୍ରର ବର୍ଣ୍ଣନ କରାଯାଇଛି ।

## ଇକ୍ଷ୍ୱାକୁ-ବଂଶ

ଏହା ପରେ ଆସେ ଇକ୍ଷ୍ୱାକୁ ବଂଶ । ଏଥିରେ ସୌଭରି-ଋଷି, ରାଜା ତ୍ରିଶଂକୁ , ହରିଶ୍ଚନ୍ଦ୍ର, ସମ୍ରାଟ ସଗର ଏବଂ ଖଟ୍ୱାଙ୍ଗ ଋଷି ଆଦିଙ୍କ ବର୍ଣ୍ଣନା ଅଛି । ଖଟ୍ୱାଙ୍ଗ ରାଜର୍ଷି ଥିଲେ । ତାଙ୍କର ବର୍ଣ୍ଣନା ଆମେ ପୂର୍ବରୁ ଦେଖିସାରିଛୁ। ସେ ଦେବତାମାନଙ୍କୁ ସାହାଯ୍ୟ କରିଥିଲେ । ସାହାଯ୍ୟ ପରେ ଦେବତାମାନେ କିଛି ମାଗିବାକୁ କହିବାରୁ ସେ ପଚାରିଲେ ମୋ ମୃତ୍ୟୁ ପାଇଁ ଆଉ କେତେ ସମୟ ବାକୀ ଅଛି । ଦେବତାମାନେ ଉତ୍ତର ଦେଲେ - ଆପଣଙ୍କ ମରଣ ପାଇଁ କେବଳ ଦୁଇ ଘଣ୍ଟା ବାକୀ ଅଛି । ତାପରେ ଖଟ୍ୱାଙ୍ଗ ରାଜା ଦୁଇଘଣ୍ଟା ଭିତରେ ସବୁ କିଛି ତ୍ୟାଗ କରି ନିଜ ମନକୁ ଭଗବାନଙ୍କ ପାଖରେ ଲଗେଇ ଦେଲେ ।

ରାଜା ଅଂଶୁମାନ, ତାଙ୍କ ପୁତ୍ର ଦିଲୀପ ଏବଂ ଦିଲୀପଙ୍କ ପୁତ୍ର ଭଗୀରଥ ଯିଏ ନିଜର ମହାନ୍ ପ୍ରୟାସ ଦ୍ୱାରା ଗଙ୍ଗାଙ୍କୁ ଧରାଧାମକୁ ନେଇ ଆସିଥିଲେ। ସୂର୍ଯ୍ୟ-ବଂଶ - ଇକ୍ଷ୍ୱାକୁ ବଂଶରେ ଏପରି ମହାନ୍ ରାଜାମାନେ ହେଇଥିଲେ। ତାପରେ ଏହି ଇକ୍ଷ୍ୱାକୁ ବଂଶରେ ରାଜା ଦିଲୀପ ହେଲେ । ଦିଲୀପଙ୍କ ପୁତ୍ର ରଘୁ, ତାଙ୍କ ପୁତ୍ର ଅଜ । ଅଜଙ୍କ ପୁତ୍ର ଦଶରଥ ଏବଂ ଦଶରଥଙ୍କ ପୁତ୍ର ହେଲେ ଭଗବାନ ଶ୍ରୀରାମଚନ୍ଦ୍ର । ବୋଲିଏ ଶ୍ରୀ ରାମଚନ୍ଦ୍ର ଭଗବାନ କୀ ଜୟ।

## ଶ୍ରୀରାମ ତଥା ଶ୍ରୀକୃଷ୍ଣ

ଭଗବାନଙ୍କର ଅନେକ ଅବତାର ମଧ୍ୟରୁ ଶ୍ରୀରାମ ଅବତାର ସବୁଠାରୁ ବିଲକ୍ଷଣ ଏବଂ ସବୁଠାରୁ ସୁନ୍ଦର। ଶିବ ବା ଶ୍ରୀକୃଷ୍ଣ କାହାରି ବି ଭକ୍ତ ହେବା ପୂର୍ବରୁ ଶ୍ରୀରାମଙ୍କ ଭକ୍ତ ହେବା ନିତାନ୍ତ ଆବଶ୍ୟକ । ରାମ ଭକ୍ତ ନ ହେଇ କେହି କୃଷ୍ଣ ଭକ୍ତ ବା ଶିବ ଭକ୍ତ ହେଇ ପାରିବ ନାହିଁ । ଏପରି କହିବାର ଅର୍ଥ କଣ ? ଦେଖନ୍ତୁ, ଭଗବାନ ଶିବ ତ ନିଜ ନିର୍ଗୁଣ ସ୍ୱରୂପରେ ସମାଧିସ୍ଥ ରୁହନ୍ତି ଆଉ ଭଗବାନ ଶ୍ରୀକୃଷ୍ଣଙ୍କ ରୂପରେ ତ ସ୍ୱରୂପସ୍ଥ ବ୍ରହ୍ମ ହିଁ ଚଲା-ବୁଲା କରୁଥିବା ଦେଖାଯାଏ । ତାଙ୍କ ଲୀଳା ବୁଝିବା ବି ବଡ କଠିନ। ଭଗବାନ ଶିବ ବ୍ରହ୍ମ-ସ୍ଥିତି ଦର୍ଶଉଛନ୍ତି ତ ଭଗବାନ ଶ୍ରୀକୃଷ୍ଣ ରତିକୁ ଦର୍ଶାଉଛନ୍ତି, ଲୀଳାରେ ରମଣ କରାଉଛନ୍ତି ।

ଯଦି କେହି ବ୍ରହ୍ମ-ସ୍ୱରୂପ ସ୍ଥିତି ଅନୁଭବ କରିବାକୁ ଋହୁଁଛି, ବା ଜୀବନ୍ମୁକ୍ତିର ବିଲକ୍ଷଣ ସୁଖର ଅନୁଭବ କରିବା ପାଇଁ ଋହୁଁଛି, ନିରଙ୍କୁଶ ସ୍ୱତନ୍ତ୍ରତାକୁ ପ୍ରକଟ କରି ତାର

ଅନୁଭବ କରିବା ପାଇଁ ଚାହୁଁଛି, ତେବେ ତାକୁ ନିଜ ମନକୁ କେତେ ପରିମାଣରେ ଶୁଦ୍ଧ କରିବାକୁ ପଡିବ ? ଭାବିଲେ ଦେଖ୍ । ବ୍ରହ୍ମ ସ୍ୱରୂପରେ ସ୍ଥିତ ହେବା, ଏହା ଜୀବନ୍ମୁକ୍ତିର ଏକ ଅଂଗ, ଏବଂ ଦ୍ୱିତୀୟଟି ହେଲା ସର୍ବଦା ଆନନ୍ଦରେ ରହିବା । ଯାହା କିଛି କର ପଛେ **'ସର୍ବଥା ବର୍ତ୍ତମାନୋଽପି'** । ସବୁ କର୍ମ କରୁଥିଲେ ମଧ୍ୟ ନିଜ ସ୍ୱରୂପରେ ସମାନ ରୂପରେ ସ୍ଥିତ ରହିବା । ଏହା ଭଗବାନ କୃଷ୍ଣଙ୍କ ଜୀବନରେ ଦେଖାଯାଏ । ଏହି ଉଭୟ କଥାକୁ ବୁଝିବାକୁ ହେଲେ ଆମ ମନ ନିତାନ୍ତ ଶୁଦ୍ଧ ହେବା ଅତ୍ୟନ୍ତ ଆବଶ୍ୟକ । ଅଶୁଦ୍ଧ ମନ ଦ୍ୱାରା କିଛି ହେଲେ ପ୍ରାପ୍ତ କରିବା ସମ୍ଭବ ନୁହଁ। ଏବଂ ମନର ଶୁଦ୍ଧି କେବଳ ଶ୍ରୀ ରାମଚନ୍ଦ୍ରଙ୍କ ଅବତାରକୁ ବୁଝିବା ଏବଂ ତାଙ୍କ ପରି ଆଚରଣ କରିବା ଦ୍ୱାରା ହିଁ ହୋଇପାରିବ। କାରଣ ସେ ଧର୍ମସ୍ୱରୂପ ଭଗବାନ ଏବଂ ଧର୍ମକୁ ନ ଜାଣି ତଥା ଧର୍ମାନୁକୂଳ ଜୀବନ-ଯାପନ ନ କରି ଏହିପରି ଶୁଦ୍ଧତା ଆମ ଜୀବନରେ ଆସିପାରିବ ନାହିଁ । ତେଣୁ କୁହାଯାଇଛି ଯେ କେହି ଶିବ ଭକ୍ତ ହେଉ ବା କୃଷ୍ଣ ଭକ୍ତ, ପ୍ରଥମେ ରାମ ଭକ୍ତ ହେବାକୁ ପଡିବ ।

ଏହା ଉପରେ ଗମ୍ଭୀରତାର ସହ ବିଚାର କରିବାର ଆବଶ୍ୟକତା ଅଛି । ଦେଖନ୍ତୁ, ଶ୍ରୀରାମ ଏବଂ ଶ୍ରୀକୃଷ୍ଣଙ୍କ ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ କାରଣ ଶ୍ରୀରାମ ହିଁ ପରେ ଶ୍ରୀକୃଷ୍ଣ ହେଲେ । ଇଏ ବଡ଼ ସେ ଛୋଟ, ଏହା କହିବା ହିଁ ମୂର୍ଖତାର ଲକ୍ଷଣ, ଅପରାଧ ଏବଂ ପାପ ମଧ୍ୟ । ଏହା କହିବା ହିଁ ଭୁଲ । କିନ୍ତୁ ଶ୍ରୀ କୃଷ୍ଣଙ୍କ ଜୀବନ ଏବଂ ଶ୍ରୀରାମଙ୍କ ଜୀବନ ଆମ ମନୁଷ୍ୟମାନଙ୍କ ଦୃଷ୍ଟିରୁ ଟିକିଏ ଭିନ୍ନ । ସେମାନଙ୍କ ଭିତରେ କୌଣସି ପାର୍ଥକ୍ୟ ନାହିଁ । ଅନେକ ଥର ଶୁଣିବାକୁ ମିଳେ ଯେ ଶ୍ରୀକୃଷ୍ଣଙ୍କ ଜୀବନ ଅନୁକରଣୀୟ ନୁହଁ । ତାଙ୍କ ଲୀଳାଗୁଡିକର ଅନୁକରଣ ନୁହଁ ଚିନ୍ତନ କରିବା ଉଚିତ । ତାଙ୍କ ଲୀଳା ଚିନ୍ତନୀୟ । କିନ୍ତୁ ଶ୍ରୀ ରାମଚନ୍ଦ୍ରଙ୍କ ଲୀଳା କେବଳ ଚିନ୍ତନୀୟ ହିଁ ନୁହଁ ଅନୁକରଣୀୟ ମଧ୍ୟ। ସରଳ ଭାଷାରେ କହିବାକୁ ଗଲେ ଶ୍ରୀକୃଷ୍ଣ ଯାହା କହିଥିଲେ ତାହା କର, ଯାହା କଲେ ତାକୁ କର ନାହିଁ ଏବଂ ଶ୍ରୀରାମ ଯାହା କହିଲେ ଏବଂ ଯାହା କଲେ ଦୁଇଟାଯାକ କର। ଏମିତି କହିଲେ ମଧ୍ୟ ଯଦି ସ୍ପଷ୍ଟ ନ ହେଲା ତେବେ ଅନେକ ପ୍ରକାରର ସନ୍ଦେହ ଉତ୍ପନ୍ନ ହୋଇପାରେ । ଏମିତି ମଧ୍ୟ ଭାବିପାରିବା ଯେ କଣ ଭଗବାନ ଶ୍ରୀକୃଷ୍ଣ କହିଲେ ଗୋଟେ କଥା ଏବଂ କଲେ ଆଉ କିଛି । ଏହା ତ ଅଧର୍ମ ହେଲା । କହିବ କିଛି, କରିବ ଆଉ କିଛି, ଏହା ତ ସାଧୁର ଲକ୍ଷଣ ନୁହେଁ । ତେବେ କଣ ଭଗବାନ ଶ୍ରୀକୃଷ୍ଣ ଯାହା କଲେ ଭୁଲ କଲେ ? ଏପରି ଭ୍ରମ ଉଚିତ ନୁହେଁ । ସେମିତି ବି ଶ୍ରୀରାମଙ୍କ ମଧ୍ୟ କିଛି ଲୀଳା ଏପରି ଅଛି ଯାହାର ଅନୁକରଣ ଆମେମାନେ କରିପାରିବା ନାହିଁ । ଯଥା - ନିଜର ଗର୍ଭବତୀ ସ୍ତ୍ରୀକୁ ତ୍ୟାଗ କରିବା, ଆମେ ଏପରି କରିପାରିବା କି ? ଯଦି କିଏ

କରୁଛି ତେବେ ସେ ମୂର୍ଖ । କାରଣ ସେହି ଲୀଳା ଚିନ୍ତନୀୟ ଅଟେ । ଭଗବାନଙ୍କର ଧର୍ମ - ମର୍ଯ୍ୟାଦାକୁ ଆମେ ବୁଝି ତ ପାରିବା କିନ୍ତୁ ଜୀବନରେ ତାର ଆଚରଣ କରିବା ଅତ୍ୟନ୍ତ କଠିନ । ଭଗବାନଙ୍କ ଶ୍ରୀକୃଷ୍ଣଙ୍କର ଲୀଳାରୁ ଜୀବନରେ ଆଚରଣ ଦୂରର କଥା ତାକୁ ବୁଝିବା ମଧ୍ୟ ଅତ୍ୟନ୍ତ କଠିନ ।

ମୁଁ ଆପଣଙ୍କୁ ଗୋଟିଏ କଥା କହି ରଖୁଛି । ଏହି ବାକ୍ୟଗୁଡ଼ିକର ଅର୍ଥକୁ ଠିକ୍ ଭାବେ ବୁଝନ୍ତୁ । ଭଗବାନ ଶ୍ରୀରାମଚନ୍ଦ୍ର ମନୁଷ୍ୟ ରୂପରେ ଆସିଥିଲେ ଏବଂ ମନୁଷ୍ୟମାନଙ୍କୁ ଶିଖେଇବା ପାଇଁ ଆସିଥିଲେ । ସେ ମାନବଧର୍ମର ପାଳନ କରି ଦେଖେଇଲେ, ତେଣୁ ତାଙ୍କ ଲୀଳା ଅନୁକରଣୀୟ ଅଟେ । ଭଗବାନ ଶ୍ରୀକୃଷ୍ଣ ମଧ୍ୟ ମନୁଷ୍ୟ ରୂପରେ ଦେଖାଗଲେ କିନ୍ତୁ ସେ ସବୁ ପ୍ରକାରରେ କେବଳ ଈଶ୍ୱରୀୟ ଧର୍ମର ହିଁ ନିର୍ବାହ କଲେ । ଏହା ହିଁ ଦୁହିଁଙ୍କ ମଧ୍ୟରେ ମୁଖ୍ୟ ଭେଦ । ଭଗବାନ ଶ୍ରୀକୃଷ୍ଣ ଅଧର୍ମ କାର୍ଯ୍ୟ କରି ନାହାନ୍ତି । କିନ୍ତୁ ସେ ଜୀବଧର୍ମ ବା ମନୁଷ୍ୟ ଧର୍ମର ନୁହଁ ବରଂ ଈଶ୍ୱରୀୟ ଧର୍ମର ଆଚରଣ କରିଥିଲେ । ନ ହେଲେ ଷୋହଳ ହଜାର ସ୍ତ୍ରୀମାନଙ୍କ ସହିତ ବିବାହ କେବେହେଲେ ସମ୍ଭବ କି ? ଏକା ସାଂଗରେ ଷୋହଳ ହଜାର ସ୍ତ୍ରୀମାନଙ୍କ ସହିତ ରହିବା କେବଳ ଈଶ୍ୱରଙ୍କ କାର୍ଯ୍ୟ ହିଁ ହେଇପାରିବ, ମନୁଷ୍ୟର ନୁହଁ । ଈଶ୍ୱରଙ୍କ ପାଇଁ ଷୋହଳ ହଜାର ବା କଣ ? ତା ବି କମ୍ । ଶ୍ରୀରାମଚନ୍ଦ୍ର ନିଜ ଚରିତ୍ର ଦ୍ୱାରା ଦର୍ଶାଇଲେ ଯେ ମନୁଷ୍ୟ ପାଇଁ ଗୋଟିଏ ପତ୍ନୀ ଯଥେଷ୍ଟ । ଅର୍ଥାତ୍ ସେ ମାନବ ଧର୍ମର ପାଳନ କଲେ କିନ୍ତୁ ଶ୍ରୀକୃଷ୍ଣ ଈଶ୍ୱରଙ୍କ ଧର୍ମ ପାଳନ କଲେ । ମନୁଷ୍ୟମାନଙ୍କ ପାଇଁ ଶ୍ରୀରାମଙ୍କର ଅବତାର କାର୍ଯ୍ୟ ହିଁ ଶ୍ରେଷ୍ଠ, ଆଦର୍ଶ । ତାଙ୍କ ଲୀଳା ଗାନ ଯେତେ କରାଯିବ, କମ ହିଁ ହେବ ।

## ଆଦର୍ଶର ପରିସୀମା - ଭଗବାନ ଶ୍ରୀରାମ

ଆମେ ପୂର୍ବରୁ ଦେଖିସାରିଛୁ ଯେ ରାଜା ପ୍ରିୟବ୍ରତ ବ୍ରହ୍ମାଣ୍ଡକୁ କିପରି ନ ବର୍ଷ ଅଥବା ସ୍ଥାନରେ ବିଭାଜିତ କରିଥିଲେ । ନ ଟି ଯାକ ସ୍ଥାନ (ବା ବର୍ଷ)ରେ ଭଗବାନଙ୍କର ଅଲଗା-ଅଲଗା ରୂପର ଉପାସନା କରାଯାଏ । 'କିମ୍ପୁରୁଷ' ବର୍ଷରେ ଭଗବାନ ଶ୍ରୀରାମଙ୍କର ଉପାସନା କରାଯାଏ ।

**କିମ୍ପୁରୁଷେ ବର୍ଷେ ଭଗବନ୍ତମାଦିପୁରୁଷଂ ଲକ୍ଷ୍ମଣାଗ୍ରଜଂ**
**ସୀତାଭିରାମଂ ରାମଂ ତଚ୍ଚରଣସଂନିକର୍ଷାଭିରତଃ ପରମଭାଗବତୋ**
**ହନୁମାନ୍ ସହ କିମ୍ପୁରୁଷୈବିରତଭକ୍ତିରୁପାସ୍ତେ ॥ (୫.୧୯.୧)**

ଯଦିଓ ଭାଗବତରେ ଭଗବାନ ଶ୍ରୀରାମଚନ୍ଦ୍ରଙ୍କର ସମସ୍ତ ଲୀଳାଗୁଡ଼ିକର ବର୍ଣ୍ଣନ ଅଛି, ତଥାପି ଆମେ ଏଠାରେ ସେହି କଥାଗୁଡ଼ିକର ଚର୍ଚ୍ଚା କରିବା ନାହିଁ, ଯେଉଁଗୁଡ଼ିକ ଆମକୁ ପ୍ରାୟଃ ରାମାୟଣରେ ମିଳେ । କିମ୍ପୁରୁଷ ବର୍ଷରେ ପରମ ଭାଗବତ ହନୁମାନ ଅବିରତ ଭକ୍ତି ଦ୍ୱାରା ଭଗବାନ ଶ୍ରୀରାମଚନ୍ଦ୍ରଙ୍କର ଉପାସନା ପୂଜା କରନ୍ତି, ତାଙ୍କର ଯଶ ଗାନ କରନ୍ତି ଏବଂ ତାଙ୍କର ସ୍ତୁତି କରନ୍ତି । ଏହା ଗୋଟିଏ ଅତ୍ୟନ୍ତ ସୁନ୍ଦର ସ୍ତୁତି ଯାହାର ବର୍ଣ୍ଣନା ପଞ୍ଚମ ସ୍କନ୍ଧରେ କରାଯାଇଛି ।

**ଓଁ ନମୋ ଭଗବତେ ଉତ୍ତମଶ୍ଳୋକାୟ ନମ ଆର୍ୟଲକ୍ଷଣଶୀଲବ୍ରତାୟ ।**
**ନମ ଉପଶିକ୍ଷିତାତ୍ମନ ଉପାସିତଲୋକାୟନମଃ ସାଧୁବାଦନିକଷଣାୟ**
**ନମୋ ବ୍ରାହ୍ମଣଦେବାୟ ମହାପୁରୁଷାୟ ମହାରାଜାୟ ନମଃ ଇତି ॥**
**(୫.୧୯.୩)**

**'ଓଁ ନମୋ ଭଗବତେ ଉତ୍ତମ ଶ୍ଳୋକାୟ'** - ଉତ୍ତମଶ୍ଳୋକ ଅର୍ଥାତ୍ ଶ୍ରେଷ୍ଠ ଯଶ ଯୁକ୍ତ ଭଗବାନ ଶ୍ରୀ ରାମଚନ୍ଦ୍ରଙ୍କୁ ନମସ୍କାର । **'ନମ ଆର୍ୟଲକ୍ଷଣଶୀଲ ବ୍ରତାୟ'** ଆର୍ଯ୍ୟ ଅର୍ଥାତ୍ ଶ୍ରେଷ୍ଠ ପୁରୁଷଙ୍କ ଲକ୍ଷଣ ତାଙ୍କର ସମ୍ପୂର୍ଣ୍ଣ ଚରିତ୍ରରେ ଏପରି ଭାବରେ ପ୍ରକଟ ହେଇଛି ଯେ ତାହା ତାଙ୍କର ବ୍ରତ ହେଇଯାଇଛି । ଦେଖନ୍ତୁ, ଭଗବାନ ଶ୍ରୀରାମଚନ୍ଦ୍ର ନିଜ ଜୀବନରେ ସବୁ ଧର୍ମର ସମ୍ୟକ୍ ନିର୍ବାହ କରିଛନ୍ତି । ବିଶ୍ୱାମିତ୍ରଙ୍କ ସହିତ ଯାଇ ସେ ଯଜ୍ଞର ରକ୍ଷା ଆଦି କରି ଦର୍ଶେଇଦେଲେ ଯେ ଗୁରୁଙ୍କ ସେବା କିପରି କରାଯିବା ଉଚିତ । ଏହା ହିଁ ଆର୍ଯ୍ୟବ୍ରତ ଲକ୍ଷଣ । ପରେ ଯେତେବେଳେ ଜନକପୁରୀକୁ ଗଲେ ତ ସେଠାରେ

ସୀତାଙ୍କ ପ୍ରତି ତାଙ୍କ ମନରେ ଅନୁରାଗ ଉତ୍ପନ୍ନ ହେଲା । ତଥାପି ଧନୁ ଯଜ୍ଞ ସମୟରେ ଉତ୍ତେଜିତ ନବଯୁବକ ପରି ଧନୁ ଭାଙ୍ଗିବାକୁ ଦୌଡି ଗଲେ ନାହିଁ। ଗୁରୁ ଆଦେଶ ଦେଲା ପରେ ଯାଇଁ ଗଲେ ।

## ଉଠହୁ ରାମ ଭଂଜହୁ ଭବଚ଼ପା । ଶ୍ରୀରାମଚରିତମାନସ (୧.୨୫୩.୬)

**'ଉଠହୁ ରାମ'** ବିଶ୍ୱାମିତ୍ର ଏପରି କହିଲା ପରେ ଭଗବାନ ଉଠିଲେ । କେତେ ଶ୍ରେଷ୍ଠ-ଶୀଳତା । ପରଶୁରାମଙ୍କ ସହ ସଂବାଦ ସମୟରେ ପରଶୁରାମ ତାଙ୍କ ସହିତ କେତେ ଉଗ୍ରତାର ସହ କଥାବାର୍ତ୍ତା କରୁଛନ୍ତି କିନ୍ତୁ ସେ ତାଙ୍କ ସହିତ ନମ୍ରତା ପୂର୍ବକ କଥା କହୁଛନ୍ତି । ଯେତେବେଳେ କଠୋର ହେଲେ ସେତେବେଳେ ମଧ୍ୟ ନମ୍ରତା ଦେଖିବାର ଯୋଗ୍ୟ । ଇଏ ତ ଗଲା ବାଲକାଣ୍ଡର କଥା ।

ଅଯୋଧ୍ୟାକାଣ୍ଡରେ ଯେତେବେଳେ ପ୍ରଥମ ଦିନ ରାଜ୍ୟ ପ୍ରାପ୍ତିର ଏବଂ ଦ୍ୱିତୀୟ ଦିନ ବନଗମନର କଥା ହେଲା, ମୁହଁରୁ ଗୋଟିଏ ହେଲେ ଶବ୍ଦ ବାହାର କଲେ ନାହିଁ । ଯଦି କେହି ଦଶରଥଙ୍କ ଖରାପ କଥା କହିଲା ତ ତାକୁ ମଧ୍ୟ ବାଧା ଦେଲେ । ସେ ମୋର ପିତା, ରାଜ୍ୟ ଦେଇପାରିବେ ତ ନେଇ ମଧ୍ୟ ପାରିବେ। ଦେଖନ୍ତୁ **ପୁତ୍ରଧର୍ମର ନିର୍ବାହ କିପରି କଲେ ।** ଏହା ଆର୍ଯ୍ୟ ଲକ୍ଷଣ । ନିଜ ସାବତ ମାଙ୍କ ପ୍ରତି ମଧ୍ୟ ତାଙ୍କ ମନରେ କୌଣସି ଦୁର୍ଭାବ ଆସିଲା ନାହିଁ । ଭରତଙ୍କ ଠାରୁ ବଚନ ନେଲେ ଯେ ତୁମେ ନିଜ ମାଙ୍କୁ କେବେହେଲେ ଖରାପ କଥା କହିବ ନାହିଁ, ତାଙ୍କୁ ପ୍ରସନ୍ନ ରଖିବ । ତେଣୁ ଭଗବାନ ରାମଚନ୍ଦ୍ର ଫେରିଲାପରେ ଭରତ ତାଙ୍କୁ ପ୍ରଥମ କଥା ଏହା ହିଁ କହୁଛନ୍ତି ଯେ ମୁଁ ସବୁ ମାତାମାନଙ୍କୁ ସନ୍ତୁଷ୍ଟ କରିଛି । ତାଙ୍କୁ ଜଣା ଥିଲା ଯେ ମା ରାଗିଲେ ଭଗବାନ ମଧ୍ୟ ମୋ ଉପରେ ରାଗିଯିବେ ।

ପରେ ଯେତେବେଳେ ଲକ୍ଷ୍ମଣ ଶକ୍ତିରେ ଆହତ ହେଲେ ତ ରାମଚନ୍ଦ୍ର କାନ୍ଦିବାକୁ ଲାଗିଲେ । କହିଲେ, "ଯଦି ମତେ ଜଣା ଥାଆନ୍ତା ଯେ ଲକ୍ଷ୍ମଣକୁ ଶକ୍ତି ବାଜିବ ଏବଂ ତାର ମୃତ୍ୟୁ ହେବ, ତାହାଲେ ମୁଁ ପିତାଙ୍କ କଥା ମାନି ନ ଥାନ୍ତି ।" ଏମିତି ଭାଇ କେଉଁଠି ମିଳିବ ? ଯେତେବେଳେ ରାବଣ ସହିତ ଯୁଦ୍ଧ ହେଲା ଏବଂ ତାର ବଧ ହେଇଗଲା ଯେତେବେଳେ ବିଭୀଷଣ କହିଲେ ଯେ ଭଗବାନ ଆପଣ ଆସି ଦାସର ଘରକୁ ପବିତ୍ର କରନ୍ତୁ। ସେତେବେଳେ ଭଗବାନ ଭରତଙ୍କୁ ସ୍ମରଣ କରି ବ୍ୟାକୁଳ ହେଇଗଲେ ଏବଂ କହିଲେ - ଭରତ ମୋତେ ସ୍ମରଣ କରୁଥିବ । ମୁଁ ଠିକ୍ ସମୟରେ ନ ପହଞ୍ଚିଲେ ସେ

ପ୍ରାଣତ୍ୟାଗ କରିଦେବ । ଭରତ ପରି ମୋର ଆଉ କେହି ପ୍ରିୟ ନୁହଁ । ଏଠାରେ ଭଗବାନ ଦର୍ଶାଉଛନ୍ତି ଯେ **ଭାତୃଧର୍ମ**ର ନିର୍ବାହ କିପରି କରାଯାଏ ।

ଯେତେବେଳେ ଭଗବାନ ଶ୍ରୀରାମ ବନରେ ବିଚରଣ କରି କରି କିଷ୍କିନ୍ଧାରେ ପହଞ୍ଚିଲେ, ସେଠାରେ ସୁଗ୍ରୀବଙ୍କ ସହ ମିତ୍ରତା କଲେ ଏବଂ ପ୍ରତିଜ୍ଞା କଲେ ଯେ ମୁଁ ବାଳିକୁ ମାରି ତୁମକୁ ରାଜ୍ୟ ଦେବି । ବାଳିକୁ ଇନ୍ଦ୍ର ବର ଦେଇଥିଲେ ଯେ ଯୁଦ୍ଧ ସମୟରେ ଯିଏ ତା ସମ୍ମୁଖକୁ ଆସିବ ତାର ଅଧା ଶକ୍ତି ବାଳିକୁ ପ୍ରାପ୍ତ ହେବ । ଭଗବାନ ସେମିତି ମଧ୍ୟ ବାଳିକୁ ମାରିବା ପାଇଁ ସମର୍ଥ ଥିଲେ କିନ୍ତୁ ଇନ୍ଦ୍ରର ବରଦାନର ସମ୍ମାନ ରଖି ସେ ଗଛ ପଛରେ ରହି ତାକୁ ମାରିଲେ । ଲୋକେ ଭଗବାନଙ୍କର ନିନ୍ଦା କରନ୍ତି ଯେ ସେ ଲୁଚିକରି ବାଳିକୁ ମାରିଦେଲେ । ଏକଥାକୁ କେତେଲୋକ ବୁଝନ୍ତି ଯେ ସେ ଏପରି କରି ଇନ୍ଦ୍ରର ବରଦାନକୁ ସମ୍ମାନ ଦେଲେ । ଭଗବାନ ମନୁଷ୍ୟ ରୂପରେ ଆସିଥିଲେ ତେଣୁ ସେ ଦେବତା ଦେଇଥିବା ବରଦାନକୁ ସମ୍ମାନ ଦେଲେ । ଏହା ତାଙ୍କର ଆର୍ଯ୍ୟ ଲକ୍ଷଣ ଅଟେ । କେବଳ ଏତିକି ନୁହଁ, ସେ ସୁଗ୍ରୀବକୁ ଦେଇଥିବା ପ୍ରତିଜ୍ଞାକୁ ପୂର୍ଣ୍ଣ କରିବା ପାଇଁ ନିଜ ଉପରେ ଲାଗୁଥିବା ଆରୋପକୁ ମଧ୍ୟ ଖାତିର କଲେ ନାହିଁ, ନିଜ ଉପରକୁ ଦୋଷ ନେବାକୁ ମଧ୍ୟ ପ୍ରସ୍ତୁତ ରହିଲେ । ଏପରି ଭଗବାନଙ୍କ ସ୍ୱଭାବର କଣ ବର୍ଣ୍ଣନା କରିବା ? ଏଠାରେ ଭଗବାନ **ସଖାଧର୍ମ** ନିର୍ବାହ କରି ଦେଖେଇ ଦେଲେ । ବିଭୀଷଣ ଶରଣାଗତ ହେଇ ଆସିବା ମାତ୍ରକେ ତାଙ୍କୁ ଲଙ୍କାର ରାଜ୍ୟ ପ୍ରଦାନ କରି ଦେଲେ ।

ଏବେ ତାଙ୍କର **ପତିଧର୍ମ**କୁ ଦେଖିବା, ଅଧ୍ୟାତ୍ମ ରାମାୟଣରେ ଗୋଟିଏ ବିଷୟ ଆସେ ଯେଉଁଠି ଅଗସ୍ତ୍ୟ ଋଷି ଶ୍ରୀରାମଚନ୍ଦ୍ରଙ୍କୁ କହୁଛନ୍ତି - ତୁମେ ସୀତାଙ୍କ ବିୟୋଗରେ କାହିଁକି କାନ୍ଦୁଛ ? ସେଠି-ଏଠି ବୁଲି-ବୁଲି ତାଙ୍କୁ କାହିଁକି ଖୋଜୁଛ ? ସବୁ ମିଥ୍ୟା, ଏହି ଜଗତରେ କୌଣସି ଜିନିଷର ମିଳିବା ନ ମିଳିବାରେ କଣ ଫରକ ପଡିବ ? ଭଗବାନ କହିଲେ - ଆପଣ କେମିତି କଥା କହୁଛନ୍ତି । ତାଙ୍କ ପିତା ତାଙ୍କର ହାତ ମୋ ହାତରେ ଦେଇଥିଲେ । ମୁଁ କଣ ନିଜ ପତ୍ନୀର ରକ୍ଷା ମଧ୍ୟ କରି ପାରିବିନି । ତାଙ୍କୁ ଫେରି ପାଇବିନି । ଏମିତି କେମିତି ସମ୍ଭବ । ପତ୍ନୀ ଉପରେ କୌଣସି ସଂକଟ ଆସିଲେ ତାକୁ ସେଥିରୁ ମୁକ୍ତ କରିବା ପତିର ଧର୍ମ ଅଟେ । ସେ ସୀତାଙ୍କୁ ଫେରେଇ ଆଣୁଛନ୍ତି । ଏବେ ଯଦି କିଏ ପ୍ରଶ୍ନ କରିବ ଯେ ତେବେ ଏମିତି ପତ୍ନୀଙ୍କର ପୁଣି ତ୍ୟାଗ କାହିଁକି କରିଦେଲେ ? କାରଣ ତ୍ୟାଗ କରିବା ସମୟରେ ସେ **ରାଜଧର୍ମର** ପାଳନ କରିଥିଲେ ।

ଭଗବାନ କେଉଁ ସମୟରେ କେଉଁ ଧର୍ମ ପାଳନ କରିଥିଲେ ନ ଜାଣିବା ଯୋଗୁଁ ହିଁ ଆମେ ଭ୍ରମରେ ପଡୁଛୁ । ଭଗବାନ ପତି ଧର୍ମ ନିର୍ବାହ କରି ସୀତାଙ୍କୁ ନେଇ ଆସିଲେ, ନ ହେଲେ ଫେରେଇ ଆଣିବା କଣ ଦରକାର ? କହିପାରି ଥାନ୍ତେ ଯେ ରାବଣ ଅତ୍ୟନ୍ତ ଶକ୍ତିଶାଳୀ, ଲଙ୍କା ବହୁତ ଦୂର, କେମିତି ଆଣିବା ? ଏମିତି କହି ଚୁପ୍‌ଚାପ ବସି ଯାଇଥାନ୍ତେ। ଅନ୍ୟ କେହି ହେଇଥିଲେ ଆଉ ଗୋଟେ ବାହା ହେଇ ପଡିଥାନ୍ତା କିନ୍ତୁ ସେ ତାହା କଲେ ନାହିଁ । ସୀତା ପରିତ୍ୟାଗକୁ ବୁଝିବା ଆମମାନଙ୍କ ପାଇଁ ଅତ୍ୟନ୍ତ କଷ୍ଟକର । ଲୋକଙ୍କୁ ଲାଗେ ଯେ ଭଗବାନ ଖୁସି ଖୁସି ସୀତାଙ୍କର ପରିତ୍ୟାଗ କରିଦେଲେ । କିନ୍ତୁ ତ୍ୟାଗ କରିବା ପରେ କେତେ କାନ୍ଦିଥିଲେ, ଏହା କାହାକୁ ଜଣା ନାହିଁ । କାରଣ ସେମାନେ ରାମାୟଣ ପଢିନାହାନ୍ତି ।

ପରେ ରାବଣ ସହିତ ଯୁଦ୍ଧ ସମୟରେ ଭଗବାନ **ଶତ୍ରୁଧର୍ମର** ପାଳନ କଲେ । ଶତ୍ରୁ ହୋଇ ଠିଆ ହେଲେ କିନ୍ତୁ ସେଠି ରାବଣ ସହ କିପରି ବ୍ୟବହାର କଲେ ଦେଖିବା କଥା । ପ୍ରଥମ ଦିନ ସେ ଥକିଗଲା । ତ କହିଲେ - ତୁମେ ଯାଅ । ଆରାମ କରି ପର ଦିନ ଯୁଦ୍ଧ କରିବା ପାଇଁ ଆସ । ସେ ମରିଗଲା ପରେ ବିଭୀଷଣଙ୍କୁ କହିଲେ **'ମରଣାନ୍ତାନି ବୈରାଣି'**। 'ଏବେ ମୋର ତା ସହିତ କୌଣସି ଶତ୍ରୁତା ନାହିଁ, କୌଣସି ଦ୍ୱେଷ ନାହିଁ, ଏହାର ଅନ୍ତିମ ସଂସ୍କାର କର' । ଆହୁରି ମଧ୍ୟ କହିଲେ - **'ମମାପ୍ୟେଷ ଯଥା ତବ'** ଯେମିତି ତୁମ ଭାଇ ସେମିତି ମୋର ମଧ୍ୟ ଭାଇ । ଟିକିଏ ଭାବିଲେ, ଶତ୍ରୁ ପାଇଁ କିଏ ଏମିତି କହିପାରିବ ? ଈଶ୍ୱର ରୂପରେ ମଧ୍ୟ ସେ ନିଜର ଭକ୍ତମାନଙ୍କୁ ଏତେ ସୁଖ ଦେଲେ ଯାହାର ବର୍ଣ୍ଣନା କରାଯାଇପାରିବ ନାହିଁ । ଏହି ଶବ୍ଦ - **ଆର୍ଯ୍ୟଲକ୍ଷଣଶୀଲବ୍ରତାୟ** ଆଦି ଶବ୍ଦଗୁଡ଼ିକ ବିଷୟରେ ଭାବିଲେ, ଭଗବାନଙ୍କର ପ୍ରତ୍ୟେକ ଚରିତ୍ରକୁ ଦେଖିଲେ, ମନ ମୁଗ୍ଧ ହେଇଯାଏ। କେତେ ସୁନ୍ଦର ସ୍ୱଭାବ । ଯେଉଁମାନଙ୍କୁ ଆମେ ନୀଚ ବୋଲି ଭାବୁଛୁ ଭଗବାନ ତାଙ୍କୁ ମଧ୍ୟ ଆଲିଙ୍ଗନ କରୁଛନ୍ତି।

**ପ୍ରଭୁ ତରୁ ତର କପି ଡାର ପର, ତେ କିୟେ ଆପୁ ସମାନ ।**
**ତୁଲସୀ କହୁଁ ନ ରାମସେ ସାହିବ ଶୀଲନିଧାନ ।।**
**ଶ୍ରୀ ରା.ଚ.ମା. (୧.୨୯.୦)**

ଗଛ ଉପରେ ରହୁଥିବା ବାନରମାନଙ୍କୁ ମଧ୍ୟ ନିଜ ପରି କରିଦେଲେ - ମହାନ୍ ବନେଇ ଦେଲେ । ସେମାନଙ୍କ ଉପକାର ପାଇଁ ନିଜକୁ ବନ୍ଧନରେ ରହିବା ପରି ଅନୁଭବ

କରି ସେମାନଙ୍କୁ କହୁଛନ୍ତି ଯେ ମୁଁ ତୁମମାନଙ୍କ ଋଣରୁ କେବେ ବି ମୁକ୍ତ ହେଇପାରିବି ନାହିଁ, ଏମିତି ହେଲେ ଭଗବାନ ଶ୍ରୀ ରାମଚନ୍ଦ୍ର ।

**'ନମଃ ଉପଶିକ୍ଷିତାତ୍ମନେ'** - ଆମେମାନେ ପରସ୍ପରକୁ ଉପଦେଶ ଦେଉଛୁ । କିନ୍ତୁ ଏଠାରେ ଭଗବାନଙ୍କ ପାଇଁ କଣ କୁହାଯାଇଛି **'ଉପଶିକ୍ଷିତାତ୍ମନେ'** - ଅର୍ଥାତ୍ ଯିଏ ନିଜ ମନକୁ ନିଜର ଶିଷ୍ୟ କରି ନେଇଛି । ଆମେ ତ କେବଳ ଅନ୍ୟମାନଙ୍କ ପାଇଁ ଭାବୁଛୁ ଯେ ଅନ୍ୟମାନେ କାହିଁକି କଲେ ନାହିଁ, ଏପରି କାହିଁକି କହିଲେ ? ଆଦି । ଆରେ ଆମେ ନିଜେ କଣ କହୁଛୁ, ଏହା ବିଷୟରେ କେବେ ଭାବିଛ ? କେବେ ନିଜ ମନରେ ବିଚାର କରିଛ ଯେ ଆମେ କଣ କରୁଥାଉ। ଅନ୍ୟର କାମରେ ଟିକିଏ ଅନୁଶାସନହୀନତା ଆସି ଗଲେ- ଆମେ କହୁଛୁ ଯେ ତାକୁ ଦଣ୍ଡ ମିଳିବା ଦରକାର । ଏଠାରେ ମନେରଖନ୍ତୁ, ଭଗବାନଙ୍କ ନିୟମ ହେଲା ଯେ ନିଜେ ନିଜ ମନକୁ ଦଣ୍ଡ ଦେବା ଉଚିତ, ତାକୁ ଅନୁଶାସନରେ ରଖିବା ଉଚିତ । ନିଜ ଅପରାଧ ପାଇଁ କେବେ ବି କ୍ଷମାଶୀଳ ହେବା ଉଚିତ ନୁହଁ କିନ୍ତୁ ଅନ୍ୟ ଉପରେ ଦୟା କରିବା ଉଚିତ । ଏହା ବୁଝିବା କଥା । ଆମେ ତ କେବଳ ନିଜ ଉପରେ ହିଁ ଦୟା କରୁ । ନିଜେ ତ ଯାହା ଇଚ୍ଛା ତା କରୁ ଆଉ ଅନ୍ୟ କେହି କିଛି କଲେ ଭାବୁ ଯେ ତାକୁ ଦଣ୍ଡ ମିଳିବା ଉଚିତ । ଯିଏ ନିଜ ମନକୁ ନିଜର ଶିଷ୍ୟ କରିନେବ, ମନକୁ ନିଜ ନିୟନ୍ତ୍ରଣକୁ ନେଇ ଆସିପାରିବ, କେବଳ ସେ ହିଁ ଶ୍ରୀରାମଙ୍କ ଜୀବନକୁ ବୁଝିପାରିବ।

**'ନମ ଉପାସିତଲୋକାୟ'**- ଭକ୍ତ ତ ଭଗବାନଙ୍କ ଉପାସନା କରନ୍ତି କିନ୍ତୁ ସ୍ୱୟଂ ଭଗବାନ ଶ୍ରୀରାମଚନ୍ଦ୍ର ଲୋକର - ସମସ୍ତ ଲୋକମାନଙ୍କର ଉପାସନା କରନ୍ତି । କହନ୍ତି - 'ଏମାନେ ମୋର ଭଗବାନ' । ବାଲ୍ମିକୀ ରାମାୟଣର ପ୍ରସିଦ୍ଧ ଶ୍ଳୋକରେ ଭଗବାନ କହିଛନ୍ତି ଯେ ଲୋକର ଆରାଧନା ପାଇଁ ସ୍ନେହୀକୁ ଛାଡିବାକୁ ପଡିଲେ, ବନ୍ଧୁ-ବାନ୍ଧବମାନଙ୍କୁ ଛାଡିବାକୁ ପଡିଲେ, ଦୟା, ସୌଖ୍ୟ ଏବଂ **'ଯଦି ବା ଜାନକୀମପି'** - ଜାନକୀଙ୍କୁ ମଧ୍ୟ ଛାଡିବାକୁ ପଡିଲେ, ମୁଁ ଛାଡିଦେବି ।

**ଲୋକମାନେ ପ୍ରଶ୍ନ ପଚାରନ୍ତି ସୀତା ତ ପବିତ୍ର ଥିଲେ ତଥାପି ଶ୍ରୀରାମଚନ୍ଦ୍ର ତାଙ୍କୁ କାହିଁକି ଛାଡିଦେଲେ ? ଟିକିଏ ବିଚାର କରନ୍ତୁ - ଅଯୋଧ୍ୟାର ଲୋକମାନଙ୍କୁ କେବେ ଏମିତି କାହିଁକି ଲାଗିଲା ନାହିଁ ଯେ ଏହା ଭୂଲ ? ସମସ୍ତେ ଶ୍ରୀରାମଙ୍କ ପାଖକୁ ଯାଇ କାହିଁକି କହିଲେ ନାହିଁ ଯେ ଭଗବାନ ଆପଣ ଏପରି କରନ୍ତୁ ନାହିଁ ? ସୀତାଙ୍କ ପ୍ରତି ଆମ ମନରେ କୌଣସି ସନ୍ଦେହ ନାହିଁ । ଅଯୋଧ୍ୟାବାସୀ ସୀତାଙ୍କୁ ସନ୍ଦେହ କଲେ, ଏହା**

ଆମକୁ ଖରାପ ଲାଗୁନି ତ ? ଆମେ ସେମାନଙ୍କ ଦୋଷ ଦେଖି ମଧ୍ୟ ଭାବୁନୁ ଯେ କିପରି ଲୋକଗୁଡାକ ? ବସ୍ତୁ ସ୍ଥିତି ଜାଣି ମଧ ସନ୍ଦେହ କରୁଛନ୍ତି । ଅତ୍ୟନ୍ତ ଆଶ୍ଚର୍ଯ୍ୟର କଥା । ଶ୍ରୀରାମଙ୍କୁ ବନଗମନର ଆଦେଶ ହେଲାବେଳେ ତ ସବୁ ଅଯୋଧ୍ୟାବାସୀ କାନ୍ଦି ପକେଇଲେ । ଶ୍ରୀରାମ ବନକୁ ଗଲାରୁ ପଛେ ପଛେ ଗଲେ, ଆଉ କହିଲେ - ରାମ ଫେରିବା ଦରକାର । କିନ୍ତୁ ସୀତାଙ୍କୁ ବନକୁ ପଠେଇବା ସମୟରେ ତ କେହି କହିଲେ ନାହିଁ ଯେ ତାଙ୍କୁ ଫେରିଆସିବା ଉଚିତ । ଅଯୋଧ୍ୟାବାସୀ କେତେ ବଦମାଶ ଦେଖିଲେ । କାନ୍ଦିଲେନି କି କିଛି କହିଲେନି । ତେଣୁ ବାଲ୍ମିକୀ ସ୍ପଷ୍ଟ ଭାବେ ଲେଖି ଦେଲେ ଯେ ଶ୍ରୀରାମଙ୍କ ପାଖରେ ଯେତେ ଗୁଣ ଥିଲା ତାର ଦୁଇଗୁଣ ସୀତାଙ୍କ ପାଖରେ ଥିଲା । ଯଦିଓ ବାଲ୍ମିକୀ ରାମାୟଣର ରଚନା କରିଛନ୍ତି, ତଥାପି ଅନ୍ତର୍ଦୃଷ୍ଟିରେ ଦେଖିଲେ ଜଣାପଡେ ଯେ ଏହା ପ୍ରକୃତରେ **'ସୀତାୟନ'** ଅଟେ । ଏଥିରେ ସୀତାଙ୍କର ଅଧିକ ପ୍ରଶଂସା କରାଯାଇଛି, ଏବଂ ସୀତାଙ୍କୁ ସେ ନିଜର ପୁତ୍ରୀ ସମାନ ମାନିଛନ୍ତି ।

ଏବେ ଟିକିଏ ଭାବନ୍ତୁ, ଏପରି ସ୍ୱଭାବର ଏହି ଅଯୋଧ୍ୟାବାସୀ ଯେତେବେଳେ ସୀତାଙ୍କ ବିଷୟରେ ସନ୍ଦେହ କଲେ ସେତେବେଳେ ଶ୍ରୀରାମ ସୀତାଙ୍କୁ ଛାଡିଦେଲେ - କଣ ବା ଭୁଲ କଲେ । ଶ୍ରୀରାମ ଏକେ ତ ସୀତାଙ୍କୁ ବଣକୁ ପଠେଇଲେ, ପୁଣି ତାଙ୍କ ବିୟୋଗରେ ନିଜେ ଦୁଃଖ ମଧ ଭୋଗିଲେ । ରାଜାରାଣୀ ହେବା ବଡ କଠିନ, ଆଦୌ ସହଜ କାମ ନୁହଁ । ଲୋକମାନଙ୍କୁ ଜଣାପଡି ପାରେ ଯେ ରାଜାରାଣୀ ହେବା ତ ବହୁତ ବଢିଆ । ଏମାନେ ଆଉ କି ମହାରାଜା - ମହାରାଣୀ, ଏମାନେ ତ ଖାଲି ଦୁଃଖ ଭୋଗିଲେ । ଯଜ୍ଞ କାର୍ଯ୍ୟ ପାଇଁ ସାଂଗରେ ପତ୍ନୀ ନ ଥିବାରୁ ସ୍ୱର୍ଣ୍ଣ ମୂର୍ତ୍ତି ତିଆରି କରି ରଖିଲେ । ଅଯୋଧ୍ୟାବାସୀଙ୍କୁ ତ ଏହା ବି ଖରାପ ଲାଗିଲା ନାହିଁ ।

**ସିୟ ନିନ୍ଦକ ଅଘ ଓଘ ନସାଏ ।**

**ଲୋକ ବିସୋକ ବନାଇ ବସାଏ ॥** (ଶ୍ରୀରା.ଚ.ମା-୧.୧୫.୩)

ଏପରି ଲୋକମାନଙ୍କୁ - ସୀତାଙ୍କର ନିନ୍ଦା କରିବା ଲୋକମାନଙ୍କୁ ମଧ, ଶ୍ରୀରାମଚନ୍ଦ୍ର ଅଯୋଧ୍ୟାରେ ରଖିଲେ, ତାଙ୍କର ଆରାଧନା କଲେ ଏବଂ ଶେଷରେ ସେମାନଙ୍କୁ ନିଜ ଧାମରେ ମଧ ସ୍ଥାନ ଦେଲେ । **'ଉପାସିତ ଲୋକାୟ'** - ଦୁନିଆ ଋହେଁ ଯେ ସମସ୍ତେ ଆମର ଉପାସନା, ସେବା, ପୂଜା ଆଦି କରନ୍ତୁ, ଆମ ଗଳାରେ ହାର ପିନ୍ଧାନ୍ତୁ କିନ୍ତୁ ଭଗବାନ ଏପରି ଯେ ସେ ପୁରା ଦୁନିଆର ଉପାସନାରେ, ଆରାଧନାରେ ଲାଗି ରହିଲେ ।

ତା ପର ବିଶେଷଣ ହେଲା - **'ନମଃ ସାଧୁବାଦନିକଷଣାୟ'** । ଏହି ସାଧୁବାଦ ନିକଷଣର ଅର୍ଥ କଣ ? ଯଦି କେହି ନିଜକୁ ଭଲ କହୁଛି ତ, ତାର ପୁଣି କିଛି ପରୀକ୍ଷା ଥିବ ବା ମାପଦଣ୍ଡ ଥିବ । ଯେମିତି ସୁନାକୁ କଷଟି ପଥର ଉପରେ ଘଷି କରି ଦେଖନ୍ତି ଅସଲି ନା ନକଲି । କିନ୍ତୁ ନିଜର ଭଲଗୁଣକୁ କୋଉଠି ଘଷି କରି ପରୀକ୍ଷା କରିବ ? ତାର ମାପଦଣ୍ଡ କଣ ? ତାହା ହେଲା **'ସାଧୁବାଦ ନିକଷଣ'** । ଭଗବାନ ଶ୍ରୀରାମଚନ୍ଦ୍ର ସର୍ବୋତ୍କୃଷ୍ଟ ଚରିତ୍ରର ମାପଦଣ୍ଡ । **'ସାଧୁବାଦ ନିକଷଣ'** ଏପରି ବିଶେଷଣ ଆଉ କାହାପାଇଁ ଦିଆଯାଇନାହିଁ । ସାଧୁତା ହିଁ ମୂର୍ତ୍ତି ରୂପ ନେଇ ଶ୍ରୀରାମଚନ୍ଦ୍ରଙ୍କ ରୂପରେ ପ୍ରକଟ ହେଇଛି । ତେଣୁ କେହି ବ୍ୟକ୍ତି ଭଲ କି ନୁହଁ ଏହା ଜାଣିବାକୁ ହେଲେ ତା ପାଇଁ ଶ୍ରୀରାମଙ୍କ ଜୀବନ ହିଁ ପ୍ରକୃତ କଷଟି । ଆମେମାନେ, ଲୋଭ ଯୋଗୁଁ ନିଜ ସିଦ୍ଧାନ୍ତର ବିପରୀତ ଆଚରଣ କରିବାକୁ ମଧ୍ୟ ପ୍ରସ୍ତୁତ ହେଇଯାଉଛୁ, ଆମ ସାଧୁତା ସେ ସମୟରେ ଉଡି ଯାଉଛି। କିନ୍ତୁ ଶ୍ରୀରାମଙ୍କର ସବୁଠାରୁ ପ୍ରିୟ ହେଲା ଧର୍ମ, ସାଧୁତା, ଯାହା ପାଇଁ ସେ ସବୁ କିଛି ଛାଡିବା ପାଇଁ ପ୍ରସ୍ତୁତ ଥିଲେ। ସେ କେବେ କାହା ପାଇଁ ତ କେବେ ଆଉ କାହାପାଇଁ କାନ୍ଦୁଛନ୍ତି । କିନ୍ତୁ ଦେଖିବା କଥା ଯେ ତାଙ୍କର ଧ୍ୟାନ ସବୁବେଳେ ଧର୍ମ ପାଳନ ପ୍ରତି ଥିଲା ।

**'ନମୋ ବ୍ରହ୍ମଣ୍ୟଦେବାୟ'** ସବୁ ଅବତାରରେ ଭଗବାନ ବ୍ରାହ୍ମଣମାନଙ୍କୁ ହିଁ ନିଜର ଇଷ୍ଟଦେବ ରୂପେ ସ୍ୱୀକାର କରିଛନ୍ତି । କେତେ ଆଶ୍ଚର୍ଯ୍ୟର କଥା ଯେ ସମସ୍ତେ ଭଗବାନଙ୍କୁ ନିଜର ଇଷ୍ଟଦେବ ମାନନ୍ତି କିନ୍ତୁ ଭଗବାନ ବ୍ରାହ୍ମଣମାନଙ୍କୁ ନିଜର ଇଷ୍ଟ ମାନୁଛନ୍ତି । **'ମହାପୁରୁଷାୟ - ମହାରାଜାୟ ନମଃ'** ସେ ମହାପୁରୁଷ, ମହାରାଜ ଅଟନ୍ତି । ତାଙ୍କୁ ନମସ୍କାର । ହନୁମାନଙ୍କ ସ୍ତୁତିରେ ଆଗକୁ ବର୍ଣ୍ଣନା ଅଛି ଯେ ଭଗବାନ ଶ୍ରୀରାମଚନ୍ଦ୍ର ନିର୍ଗୁଣ, ନିରାକାର, ନିର୍ବିଶେଷ, ସଚ୍ଚିଦାନନ୍ଦ ସ୍ୱରୂପ ବ୍ରହ୍ମ ଅଟନ୍ତି । ଭାବିଲେ ଦେଖି, ଭଗବାନ ଶ୍ରୀରାମଙ୍କ ଅବତାର କଣ କେବଳ କିଛି ରାକ୍ଷସମାନଙ୍କୁ ମାରିବା ପାଇଁ ହେଇଥିଲା । ରାକ୍ଷସମାନଙ୍କୁ ମାରିବା କିଛି ବିରାଟ କାମ ନୁହଁ । ଯାହାଙ୍କ ଭ୍ରୂକୁଟୀ ବିଳାସଦ୍ୱାରା, ସଂକଳ୍ପ ମାତ୍ରକେ, ସମସ୍ତ ବ୍ରହ୍ମାଣ୍ଡର ସୃଷ୍ଟି ଏବଂ ବିନାଶ ହୁଏ, ତାଙ୍କ ପାଇଁ ଗୋଟେ ରାବଣର ମୂଲ୍ୟ କଣ ? ତାକୁ ମାରିବା ପାଇଁ ଏତେ ପ୍ରପଞ୍ଚ, ଏତେ ଚେଷ୍ଟା, ଏତେ ସେନା ଏକତ୍ରିତ କରିବାର କଣ ଦରକାର ଥିଲା । ମାରିବା ତ ଅତି ସହଜ କାମ। କେବଳ ମାରିବା ହେଇଥିଲେ, ଦେଖୁ-ଦେଖୁ ସମସ୍ତଙ୍କୁ ମାରି ଶେଷ କରି ଦେଇଥାନ୍ତେ। ତାଙ୍କର ଅବତାରର କାରଣ ହେଲା -

**ମର୍ତ୍ତ୍ୟାବତାରସ୍ତ୍ୱିହ ମର୍ତ୍ତ୍ୟଶିକ୍ଷଣଂ**

**ରକ୍ଷୋବଧାୟୈବ ନ କେବଲଂ ବିଭୋଃ ॥ (୫.୧୯.୫)**

ମନୁଷ୍ୟଙ୍କୁ କିପରି ବଞ୍ଚିବା ଦରକାର, ଏହା ଶିଖାଇବା ପାଇଁ ହୋଇଥିଲା । ଅନ୍ୟଙ୍କୁ ବଞ୍ଚିବା ଶିଖାଇବା ଅତ୍ୟନ୍ତ କଠିନ କାମ । ଏହା ଏକ ଅତ୍ୟନ୍ତ ଲମ୍ବା ଓ ସୁଦୀର୍ଘ କାର୍ଯ୍ୟକ୍ରମ ।

**ରାମ ଭଗତ ହିତ ନର ତନୁ ଧାରୀ ।**

**ସହି ସଂକଟ କିଏ ସାଧୁ ସୁଖାରୀ ॥ ଶ୍ରୀ ରା. ଚ. ମା. (୧.୨୩.୧)**

ସବୁ ପ୍ରକାରର ସଂକଟ ସ୍ୱୟଂ ସହନ କରିବାକୁ ପଡ଼େ । ତାପରେ ଯାଇଁ ଏହି ମୂଢ଼-ଜଡ଼ ଲୋକଙ୍କ ମଧ୍ୟରୁ କିଛି ଲୋକଙ୍କ ମୁଣ୍ଡରେ ଟିକିଏ ଆଲୋକ ପଶେ, ଅନ୍ୟମାନେ ସେମିତି ରହିଯାନ୍ତି । ସେମାନେ କିଛି ବୁଝନ୍ତିନି। ମନୁଷ୍ୟମାନଙ୍କୁ ଶିକ୍ଷା ଦେବାର ନ ଥିଲେ -

**କୁତୋଽନ୍ୟଥା ସ୍ୟାଦ୍ରମତଃ ସ୍ୱ ଆତ୍ମନଃ**

**ସୀତାକୃତାନି ବ୍ୟସନାନୀଶ୍ୱରସ୍ୟ ॥ (୫.୧୯.୫)**

ନିଜର ଆତ୍ମସ୍ୱରୂପରେ ରମଣ କରୁଥିବା ଭଗବାନଙ୍କୁ ସୀତାଙ୍କ ପାଇଁ ଏତେ କାନ୍ଦିବା କଣ ଦରକାର ଥିଲା ? ଏତେ ଦୁଃଖ ସହିବାର କି ଆବଶ୍ୟକତା ବା କଣ ଥିଲା ?

**ନ ବୈ ସ ଆତ୍ମାଽଽତ୍ମବତାଂ ସୁହୃତ୍ତମଃ**

**ସକ୍ତସ୍ତ୍ରିଲୋକ୍ୟାଂ ଭଗବାନ୍ ବାସୁଦେବଃ ।**

**ନ ସ୍ତ୍ରୀକୃତଂ କଶ୍ମଲମଶ୍ନୁବୀତ**

**ନ ଲକ୍ଷ୍ମଣଂ ଚାପି ବିହାତୁମର୍ହତି ॥ (୫.୧୯.୬)**

ତିନିଲୋକରେ କେଉଁଠାରେ ମଧ୍ୟ ଆସକ୍ତ ନ ହେଉଥିବା ଭଗବାନ୍ ଶ୍ରୀରାମଚନ୍ଦ୍ରଙ୍କର ସୀତାଙ୍କ ବିୟୋଗରେ ଦୁଃଖୀ ହେଇ କାନ୍ଦିବା, ଲକ୍ଷ୍ମଣଙ୍କୁ ତ୍ୟାଗ କରିଦେବା, ସବୁ କିଛି ଲୋକମାନଙ୍କୁ ଶିକ୍ଷା ଦେବା ପାଇଁ ଉଦ୍ଦିଷ୍ଟ । ଅନ୍ୟଥା କଣ ଧୀରମାନଙ୍କର ଆତ୍ମସ୍ୱରୂପ ଭଗବାନଙ୍କୁ ମଧ୍ୟ ଦୁଃଖ ହେଇପାରିବ କି ? କଣ ସେ ଲକ୍ଷ୍ମଣଙ୍କର ତ୍ୟାଗ କରିପାରିଥାଆନ୍ତେ ?

ଭଗବାନଙ୍କ ତିରୋଧାନର କିଛି ସମୟ ପୂର୍ବରୁ ଭଗବାନଙ୍କ ଦର୍ଶନ ପାଇଁ କାଳ ଆସିଲା ଏବଂ କହିଲା - ଭଗବନ୍ , ମୁଁ ଆପଣଙ୍କ ସହିତ କଥାବାର୍ତ୍ତା କରିବା ପର୍ଯ୍ୟନ୍ତ କେହି ମଝିରେ ଆସିଲେ ଆପଣ ତାକୁ ହତ୍ୟା କରିବେ । ସେତେବେଳେ ଭଗବାନ ଲକ୍ଷ୍ମଣଙ୍କୁ ଆଦେଶ ଦେଲେ ଯେ କାହାରିକୁ ଭିତରକୁ ଆସିବାକୁ ଦେବ ନାହିଁ କି ନିଜେ ମଧ୍ୟ ଆସିବ ନାହିଁ । ସେହି ସମୟରେ ଦୁର୍ବାସା ଋଷି ଆସିଲେ ଏବଂ କହିଲେ ମୁଁ ସାଂଗେ ସାଂଗେ ଭଗବାନଙ୍କ ସହ ଦେଖା କରିବାକୁ ଚାହେଁ । ଲକ୍ଷ୍ମଣ ବୁଝିପାରିଲେ ନାହିଁ ଯେ ହଠାତ୍ କଣ କରିବେ । ଯିବାକୁ ନ ଦେଲେ ସେ ବହୁତ କ୍ରୋଧିତ ହେଇଯିବେ, ଯଦି ଯିବାକୁ ଦେବେ ତ ଶ୍ରୀରାମ ମୋର ବଧ କରିଦେବେ । ବିବଶ ହେଇ ସେ କର୍ତ୍ତବ୍ୟ ପାଳନ ପାଇଁ ନିଜେ ଭିତରକୁ ଗଲେ । ଦେଖିଲେ ତ ଏପରି ଲକ୍ଷ୍ମଣଙ୍କୁ ତ୍ୟାଗ କରିବା ଭଗବାନଙ୍କ ପାଇଁ କେତେ କଠିନ ହୋଇଥାନ୍ତା । ତା ମଧ୍ୟ ଭଗବାନ କଲେ । ବଶିଷ୍ଠଙ୍କ ନିର୍ଦ୍ଦେଶାନୁସାରେ ଭଗବାନ ଶ୍ରୀରାମ ଲକ୍ଷ୍ମଣଙ୍କର ତ୍ୟାଗ କଲେ । କୌଣସି ବ୍ୟକ୍ତି ପାଇଁ ସତ୍‌ପୁରୁଷଙ୍କୁ ତ୍ୟାଗ କରିବା ମଧ୍ୟ ମୃତ୍ୟୁ ସହ ସମାନ ହେଇଥାଏ । ଭଗବାନ ଶ୍ରୀରାମଙ୍କ ଜୀବନ ବହୁତ କଠିନ, ପ୍ରକୃତରେ ବହୁତ କଠିନ।

**ନ ଜନ୍ମ ନୂନଂ ମହତୋ ନ ସୌଭଗଂ**
**ନ ବାଙ୍ ନ ବୁଦ୍ଧିର୍ନାକୃତିସ୍ତୋଷହେତୁଃ ।**
**ତୈର୍ୟଦ୍ୱିସୃଷ୍ଟାନପି ନୋ ବନୌକସ-**
**ଶ୍ଚକାର ସଖ୍ୟେ ବତ ଲକ୍ଷ୍ମଣାଗ୍ରଜଃ ॥ (୫.୧୯.୭)**

ଭଗବାନଙ୍କର ସ୍ୱଭାବ ଏମିତି ଯେ ସେ କାହାର ରୂପ, ଜାତି, ଐଶ୍ୱର୍ଯ୍ୟ, କଥା କହିପାରିବାର କ୍ଷମତା ଦ୍ୱାରା ବା ବୁଦ୍ଧିଦ୍ୱାରା ପ୍ରସନ୍ନ ହୁଅନ୍ତି ନାହିଁ । **'ନ ତୋଷହେତୁଃ'** - ଏଗୁଡିକ ଭଗବାନଙ୍କୁ ସନ୍ତୁଷ୍ଟ କରିବାର ସାଧନ ନୁହଁ । ଯଦି ଏମିତି ହେଇଥାନ୍ତା ତ ବାନର ମାନଙ୍କ ପାଖରେ କଣ ଥିଲା ? କୋଉ ବିଶେଷତା ଥିଲା ? ନା ତ ତାଙ୍କ ରୂପ ସୁନ୍ଦର ଥିଲା, ନା ଜାତି ଶ୍ରେଷ୍ଠ, ନା ସେମାନଙ୍କ ପାଖରେ ବୁଦ୍ଧି ଥିଲା ନା ବାକ୍‌ଚାତୁର୍ଯ୍ୟ କିନ୍ତୁ ଲକ୍ଷ୍ମଣାଗ୍ରଜ ଭଗବାନ ତାଙ୍କ ସହ ମଧ୍ୟ ମିତ୍ରତା କଲେ ।

କାରଣ -

**ରାମ ହି କେବଲ ପ୍ରେମୁ ପିଆରା ।**

**ଶ୍ରୀ ରା.ଚ. ମା. (୨.୧୩୬.୧)**

ଭଗବାନଙ୍କୁ କେବଳ ପ୍ରେମ ହିଁ ପ୍ରିୟ । ପ୍ରକୃତରେ ଦେଖିବାକୁ ଗଲେ ଶ୍ରୀରାମଙ୍କର ଜୀବନକୁ ବୁଝିବା ଏବଂ ତାକୁ ପାଳନ କରିବା ଉଭୟ ବହୁତ କଠିନ କାର୍ଯ୍ୟ । ଆମେ ଯଦିଓ ବହୁତ ସହଜରେ କହି ଦେଉଛୁ ଯେ ତାଙ୍କର ଜୀବନ ବହୁତ ସରଳ ଏବଂ ଅନୁକରଣୀୟ ଓ ଶ୍ରୀକୃଷ୍ଣଙ୍କ ଜୀବନ ଅତ୍ୟନ୍ତ ଜଟିଳ ଏବଂ ଚିନ୍ତନୀୟ ଅଟେ । କିନ୍ତୁ ପ୍ରକୃତରେ ଭଗବାନ ଶ୍ରୀରାମଙ୍କ ଜୀବନ ମଧ୍ୟ ଅତ୍ୟନ୍ତ କଠିନ ଏବଂ ତାଙ୍କ ପରି ନିଜ ଜୀବନରେ ଧର୍ମ ମର୍ଯ୍ୟାଦାର ପାଳନ କରିବା ଅତ୍ୟନ୍ତ ମଧ୍ୟ କଷ୍ଟକର ।

**ସୁରୋଽଅସୁରୋ ବାପ୍ୟଥ ବାନରୋ ନରଃ**

**ସର୍ବାତ୍ମନା ୟଃ ସୁକୃତଜ୍ଞମୁତ୍ତମମ୍ ।**

**ଭଜେତ ରାମଂ ମନୁଜାକୃତିଂ ହରିଂ**

**ୟ ଉତ୍ତରାନନୟକ୍ରୋସଲାନ୍ଦିବମିତି ॥ (୫.୧୯.୮)**

ଭଗବାନ ଶ୍ରୀରାମ ତ ଏମିତି ଯେ ଯିଏ ତାଙ୍କ ପାଇଁ ଟିକିଏ କଣ କରିଦେବ ତ ସେ ତାକୁ ନିଜର ସବୁ କିଛି ଦେବା ପାଇଁ ପ୍ରସ୍ତୁତ ହେଇଯାଆନ୍ତି । ଭଗବାନ ଏପରି ସୁକୃତଜ୍ଞ ଯେ ବାନରମାନଙ୍କ ଋଣ ଦ୍ୱାରା ନିଜକୁ ଋଣୀ ବୋଲି ମଧ୍ୟ ମାନୁଛନ୍ତି । ଏପରି ଶ୍ରେଷ୍ଠ ଭଗବାନଙ୍କର ଯିଏ ସର୍ବଭାବ ଦ୍ୱାରା, ହୃଦୟର, ପ୍ରେମର ସହିତ ଆରାଧନା କରେ ତାକୁ ହିଁ ସେହି କୋଶଳାଧିଶ ଭଗବାନଙ୍କର ପ୍ରାପ୍ତି ହୁଏ, ପୁଣି ସେ ନର, ବାନର, ସୁର ବା ଅସୁର ଯେ କେହି ହଉ ।

ସଂକ୍ଷେପରେ ଏହା ହିଁ ଭଗବାନ ଶ୍ରୀ ରାମଙ୍କ ଜୀବନ । ହନୁମାନ ଯେଉଁ ସ୍ତୁତି କଲେ ସେଥିରୁ ଭଗବାନଙ୍କ ଲକ୍ଷଣର ଜ୍ଞାନ ହୁଏ । ଆମେ ରାମକଥାକୁ ଜାଣିଛୁ , ପିଲାଦିନୁ ପଢ଼ି ଆସୁଛୁ, ତାକୁ ନିଜ ଜୀବନରେ ପାଳନ କରିବା ଉଚିତ । ଆଗକୁ ଶ୍ରୀ ରାମଙ୍କ ବିଷୟରେ ହିଁ କୁହାଯାଇଛି ।

ଯେତେବେଳେ ଅଯୋଧ୍ୟାବାସୀଙ୍କର କଟୁବଚନ ଭଗବାନ ଶୁଣିଲେ ତ ତାଙ୍କୁ ବାଧ୍ୟ ହୋଇ ସୀତାଙ୍କୁ ତ୍ୟାଗ କରିବା ପାଇଁ ପଡ଼ିଲା ।

**ସ୍ମରଂସ୍ତସ୍ୟା ଗୁଣାଂସ୍ତାଂସ୍ତାନ୍ନାଶକ୍ନୋ ରୋଦ୍‌ଧୁମୀଶ୍ୱରଃ ॥ (୯.୧୧.୧୬)**

ପରେ ଯେତେବେଳେ ସେ ଶୁଣିଲେ ଯେ ସୀତା ପୃଥିବୀ ଗର୍ଭକୁ ଚାଲିଗଲେ, ସେତେବେଳେ ସେ ଇଚ୍ଛା କଲେ ମଧ୍ୟ ନିଜ ଶୋକର ବେଗକୁ ବାଧା ଦେଇପାରିଲେ ନାହିଁ । ସମର୍ଥ ହେଇ ମଧ୍ୟ, ଇଚ୍ଛା ନ ଥିଲେ ମଧ୍ୟ ସେ ଶୋକ ମଗ୍ନ ହେଇଗଲେ କାରଣ ସୀତାଙ୍କର ପବିତ୍ର ଗୁଣଗୁଡିକ ବାରମ୍ବାର ତାଙ୍କର ମନେ ପଡି ଯାଉଥିଲା ।

**ସ୍ତ୍ରୀପୁଂପ୍ରସଂଗ ଏତାଦୃକ୍‌ସର୍ବତ୍ର ତ୍ରାସମାବହଃ ।**
**ଅପିଶ୍ୱରାଣାଂ କିମୁତ ଗ୍ରାମ୍ୟସ୍ୟ ଗୃହଚେତସଃ ॥ (୯.୧୧.୧୭)**

ଶୁକଦେବ କହିଲେ ଯେ ସ୍ତ୍ରୀ ପୁରୁଷର ସଂଗ ଦେବତାମାନଙ୍କ ପାଇଁ ମଧ୍ୟ ଦୁଃଖଦାୟକ, ମନୁଷ୍ୟ କଥା କଣ କହିବା । ଭଗବାନ ଶ୍ରୀରାମ ସର୍ବଦା ଧର୍ମ ମର୍ଯ୍ୟାଦାର ପାଳନ କରୁଥିଲେ । ତଥାପି ତାଙ୍କୁ କେତେ ତ୍ୟାଗ କରିବାକୁ ପଡିଲା । ଲୋକମାନେ ତ୍ୟାଗର ସୀମାକୁ ବଢେଇ ବଢେଇ ଚାଲନ୍ତି, ଠିକ୍ ନା ନାହିଁ ? ଯଦି ସ୍ତ୍ରୀ ପୁରୁଷ ଉଭୟେ କାମନାର ଅଧୀନ ହେଇ, ଧର୍ମର ତ୍ୟାଗ କରି ଦେବେ, ତେବେ ତ ଦୁଃଖ ହିଁ ଦୁଃଖ ଆସୁଥିବ। ଏହା ଏକ ଅନ୍ୟ ପ୍ରକାରର ଦୁଃଖ । କିନ୍ତୁ ଧର୍ମର ପାଳନ କଲେ ମଧ୍ୟ ବହୁତ କଷ୍ଟ ସହିବାକୁ ପଡେ । ଅଯୋଧ୍ୟାବାସୀମାନେ ବା ସେ ଧୋବା, ଯାହା ମନକୁ ଆସିଲା, କହିଲେ।

କିନ୍ତୁ ରାମ ବା ସୀତା ନିଜ ଦୁଃଖ କାହାକୁ କହିବେ ? ତେଣୁ କୁହାଯାଏ ଯେ ବଡ ଲୋକମାନଙ୍କ ଦୁଃଖ ଏପରି ଯେ ଯାହାକୁ କୁହାଯାଇପାରିବ ନାହିଁ । ଖାଲି ଭିତରେ ବ୍ୟାକୁଳ ହେଉଥିବେ । ଭଗବାନ ନୀଳକଣ୍ଠଙ୍କ ପରି ତାଙ୍କୁ ମଧ୍ୟ ବହୁତ ସହିବାକୁ ପଡିଲା। ତେଣୁ ଗୋଟିଏ ପଟେ ଧର୍ମ ପାଳନ କରୁଥିବା ବ୍ୟକ୍ତିମାନଙ୍କୁ ଏହିପରି କଷ୍ଟ ସହିବାକୁ ପଡେ, ଅନ୍ୟ ପଟେ ଅଧର୍ମାଚରଣ କରୁଥିବା, ଦିନରାତି କଳହ କରୁଥିବା, ଅନେକ ପ୍ରକାରର ବାସନାରେ ଲିପ୍ତ ରହୁଥିବା ବ୍ୟକ୍ତିମାନଙ୍କୁ ଅଲଗା ପ୍ରକାରର କଷ୍ଟ ସହିବାକୁ ପଡେ ।

**ତତ ଊର୍ଦ୍ଧ୍ୱଂ ବ୍ରହ୍ମଚର୍ଯ୍ୟଂ ଧାରୟନ୍ନଜୁହୋତ୍ ପ୍ରଭୁଃ । (୯.୧୧.୧୮)**

ସୀତାଙ୍କ ପରିତ୍ୟାଗ ପରେ ଅଖଣ୍ଡ ବ୍ରହ୍ମଚର୍ଯ୍ୟ ଧାରଣ କରି ଭଗବାନ ରାଜ୍ୟ ଶାସନ କଲେ । ଅଯୋଧ୍ୟାବାସୀଙ୍କ ଦ୍ୱାରା ଏପରି ଦୁର୍ବ୍ୟବହାର ପରେ ମଧ୍ୟ ଶେଷରେ ଭଗବାନ ସମସ୍ତଙ୍କୁ ସାକେତ ନେଇ ଗଲେ । ସେମାନେ ଏହାର ଅଧିକାରୀ କି ? କିନ୍ତୁ

ତାଙ୍କୁ ନେବା ଲୋକ ସ୍ୱୟଂ ଭଗବାନ, ତେଣୁ ପ୍ରଶ୍ନ ପଚାରିବାକୁ ଆମେ କିଏ ?

**ପୁରୁଷୋ ରାମଚରିତଂ ଶ୍ରବଣୈରୁପଧାରୟନ୍ ।**

**ଆନୃଶଂସ୍ୟପରୋ ରାଜନ୍ କର୍ମବନ୍ଧୈର୍ବିମୁଚ୍ୟତେ ॥ (୯.୧୧.୨୩)**

ଯେଉଁ ବ୍ୟକ୍ତି ଭଗବାନ ଶ୍ରୀରାମଚନ୍ଦ୍ରଙ୍କର ଏପରି ଜୀବନର ଶ୍ରବଣ, ମନନ, ଧ୍ୟାନ, ଚିନ୍ତନ ଏବଂ ସ୍ମରଣ କରୁଥିବ, ତାକୁ ଆଚରଣରେ ଆଣୁଥିବ, ସେ କର୍ମବନ୍ଧନରୁ ମୁକ୍ତ ହେବ । ସଂକ୍ଷେପରେ ଏହା ହିଁ ଶ୍ରୀ ରାମଚରିତ। ଏହାକୁ ଯେତେ ବିସ୍ତୃତ କରିବ ସେତେ କମ । କାରଣ ପୂର୍ଣ୍ଣ ବିସ୍ତାର ତ କେହି କରିପାରିବେ ନାହିଁ । କିନ୍ତୁ ତାଙ୍କ ଜୀବନର ମୁଖ୍ୟ ବିଶେଷତାଗୁଡିକୁ ବୁଝିବା ଆବଶ୍ୟକ ।

ଉପଶିକ୍ଷିତାତ୍ମନେ, ଉପାସିତଲୋକାୟ, ସାଧୁବାଦନିକଷଣାୟ ଆଦି ତାଙ୍କର ଯେଉଁ ବିଶେଷତା ତା ଉପରେ ଦୃଷ୍ଟି ଦେବେ । ଯେତେବେଳେ ବି ଅହଂକାର ହେବ ଯେ ଆମେ ବଡ ସାଧୁ, ସେତେବେଳେ ଶ୍ରୀରାମଙ୍କ ଜୀବନ ସହିତ ତୁଳନା କରି ଦେଖିବେ ଯେ ତାଙ୍କ ଆଖପାଖରେ ବି ଅଛୁ ନା ନାହିଁ ? ମନ ଉପରେ ସଂଯମ ଅଛି ନା ନାହିଁ ? ରାବଣ ସମସ୍ତଙ୍କୁ ଜିତି ପାରିଥିଲା, ଖାଲି ନିଜ ମନକୁ ଜିତିପାରି ନ ଥିଲା । ସେ ଲୋକଙ୍କ ଦ୍ୱାରା ଉପାସନା କରଉଥିଲା କିନ୍ତୁ ଲୋକଙ୍କର ଉପାସନା କରୁ ନ ଥିଲା । ଏହା ହିଁ ରାମ ଓ ରାବଣ ଭିତରର ପାର୍ଥକ୍ୟ । ପରେ ଲବ-କୁଶ ରାଜା ହେଲେ । ତାପରେ ଇକ୍ଷ୍ୱାକୁ ବଂଶର ଅଳ୍ପ ବର୍ଣ୍ଣନା ହେଇଛି ।

ପରେ ନିମି ବଂଶର ବର୍ଣ୍ଣନା ଅଛି । ଏବଂ ତାପରେ ସୋମଦେବ-ଚନ୍ଦ୍ରବଂଶର ବର୍ଣ୍ଣନ କରାଯାଇଛି। ଏଥିରେ ରାଜା ପୁରୁରବା, ପରଶୁରାମ, ଏବଂ ତାପରେ ରାଜା ନହୁଷଙ୍କ ପୁତ୍ର ଯଯାତିଙ୍କର କଥା ଅଛି । ରାଜା ଯଯାତିଙ୍କର ବିବାହ ଶୁକ୍ରାଚାର୍ଯ୍ୟଙ୍କ କନ୍ୟା ଦେବଯାନୀଙ୍କ ସହିତ ହେଇଥିଲା। ତାଙ୍କର ଦାସୀ ହେଇ ଆସିଥିଲେ ଶର୍ମିଷ୍ଠା, ଯିଏ ଥିଲେ ରାଜକନ୍ୟା ।

## ପରଶୁରାମ-ଅବତାର

ଏହାପରେ ପରଶୁରାମ ଅବତାରର କଥା କୁହାଯାଇଛି । ପରଶୁରାମ ଜମଦଗ୍ନି ଋଷି ତଥା ରେଣୁକା ଦେବୀଙ୍କ ପୁତ୍ର ଥିଲେ । ତାଙ୍କର ବସୁମନ୍ ଆଦି ଅନେକ ପୁତ୍ର ଥିଲେ । ରେଣୁକା ଦେବୀଙ୍କ ଦ୍ୱାରା ଥରେ କୌଣସି ଏକ ଅପରାଧ ହୋଇଗଲା । ଜମଦଗ୍ନି ଋଷି କହିଲେ - ମା କୁ ମାରିଦିଅ, ତା ମୁଣ୍ଡ କାଟି ଦିଅ । କେହି ପିଲା ମାରିବା ପାଇଁ ରାଜି ହେଲେ ନାହିଁ । ମାକୁ କେମିତି ମାରିବେ ? ପିତାଙ୍କୁ କ୍ରୋଧ ଆସିଲା, "ମୋ ଆଦେଶ ମାନିବନି ? ତୁମେମାନେ ମଧ୍ୟ ମର ।" ଏହି ସମୟରେ ସବୁଠାରୁ ସାନ ପୁତ୍ର ପରଶୁରାମ ହାତରେ ପରଶୁ ଧରି ଆସିଲେ । ପିତା କହିଲେ - ମାକୁ ମାର । ସେ ଏପଟ ସେପଟ ବି ଦେଖିଲେନି । ପିତା କହିଲେ ତ କଥା ଶେଷ । ପରଶୁ ଉଠେଇଲେ, ଆଉ ମା ତଥା ଭାଇମାନଙ୍କୁ ମାରିଦେଲେ । କାରଣ ସେ ଜମଦଗ୍ନି ଋଷିଙ୍କ ପ୍ରଭାବକୁ ଜାଣିଥିଲେ । ଏମିତି କଥା ଶୁଣି ଆମକୁ ଆଶ୍ଚର୍ଯ୍ୟ ଲାଗିପାରେ । ଲୋକେ ଆଖି ବଡ଼ କରି ଦିଅନ୍ତି । ମନେ ରଖିବେ ଏହା ଭଗବାନଙ୍କ ଅବତାର - **ପରଶୁରାମ ଅବତାର** । ପରଶୁରାମ ଅବତାର ରାମାବତାରର ପୂର୍ବ ଅବତାର । ଏଠାରେ ବର୍ଣ୍ଣନ କ୍ରମ ଟିକିଏ ଅଲଗା ପ୍ରକାରରେ ଚାଲୁଛି । ଜମଦଗ୍ନି ଋଷି ପରଶୁରାମଙ୍କ ଉପରେ ପ୍ରସନ୍ନ ହୋଇ କହିଲେ, "ପୁତ୍ର, ମୁଁ ତୁମ ଉପରେ ପ୍ରସନ୍ନ ହେଲି । ଯାହା ମାଗିବା କଥା ମାଗ ।" ପରଶୁରାମ କହିଲେ, ମୋ ମାଙ୍କୁ ଏବଂ ଭାଇମାନଙ୍କୁ ଜୀବିତ କରି ଦିଅନ୍ତୁ, ଏପରି ଯେମିତିକି ସେମାନେ ଶୋଇ କରି ଉଠିଛନ୍ତି । ମୁଁ ତାଙ୍କୁ ମାରି ଦେଇଥିଲି ବୋଲି ତାଙ୍କର ମନେ ନ ରହୁ , ଅନ୍ୟଥା ସେମାନେ କେବେହେଲେ ମଧ୍ୟ ହୃଦୟର ସହିତ ମତେ ଭଲପାଇ ପାରିବେନି । ଜମଦଗ୍ନି ଋଷି କହିଲେ - ତଥାସ୍ତୁ । ଫଳସ୍ୱରୂପ ଜମଦଗ୍ନି ଋଷି ବି ପ୍ରସନ୍ନ ହେଲେ, ରେଣୁକା ଦେବୀ ମଧ୍ୟ ପ୍ରସନ୍ନ ହେଲେ ।

ସେହି ସମୟରେ ସହସ୍ରାର୍ଜ୍ଜୁନ କାର୍ତବୀର୍ଯ୍ୟ ନାମରେ ଜଣେ କ୍ଷତ୍ରିୟ ରାଜା ଥିଲା । ସେ ବହୁତ ଅହଂକାରୀ ହୋଇଯାଇଥିଲା । ଦିନେ ସେ ଜମଦଗ୍ନି ଋଷିଙ୍କ ଆଶ୍ରମକୁ ଆସିଲା । ଋଷିଙ୍କ ପାଖରେ ଗୋଟିଏ କାମଧେନୁ ଥିଲା, ଯାହା ଦ୍ୱାରା ରାଜା ଏବଂ ତାଙ୍କ ସେନାର ଅତ୍ୟନ୍ତ ଭବ୍ୟ ସ୍ୱାଗତ କରାଗଲା । ଏହା ଦେଖି ରାଜା ସହସ୍ରାର୍ଜ୍ଜୁନ କହିଲା ଯେ ଏହି ଗାଈଟି ମୋ ପାଖରେ ରହିବା ଉଚିତ । ସେ ଜବରଦସ୍ତି ତାକୁ ନେଇଗଲା । ପରଶୁରାମ ଯେତେବେଳେ ଏହି କଥା ଶୁଣିଲେ, ସେ ଗୋଟିଏ ପରଶୁ ଦ୍ୱାରା ସହସ୍ରାର୍ଜ୍ଜୁନକୁ

ମାରି ଦେଲେ ଏବଂ ଫେରିଆସି ପିତାଙ୍କୁ କହିଲେ ଯେ ମୁଁ ତାକୁ ମାରିଦେଲି । ଜମଦଗ୍ନି ଋଷି କହିଲେ – ତାକୁ ମାରିବା ଉଚିତ ନୁହଁ, ସେ ତ ଜଣେ ପ୍ରଜାପାଳକ ରାଜା ଥିଲେ ।

କିଛି ଦିନ ପରେ ସହସ୍ରାର୍ଜୁନ ପୁଅମାନେ ଜମଦଗ୍ନି ଋଷିଙ୍କ ଆଶ୍ରମକୁ ଆସିଲେ ଏବଂ ଧ୍ୟାନସ୍ଥ ଦେଖି ତାଙ୍କୁ ମାରିଦେଲେ । ପରଶୁରାମ ଏକଥା ଦେଖି କହିଲେ – ଆଚ୍ଛା ! ତାଙ୍କର ଏତେ ସାହସ ! ସେ ନିଜ ପରଶୁ ସାଙ୍ଗରେ ନେଇ ବାହାରି ଗଲେ । କହିଲେ ଏହି କ୍ଷତ୍ରିୟମାନେ ବହୁତ ଉନ୍ମତ୍ତ ହେଇଯାଇଛନ୍ତି । ଏମାନଙ୍କର ଅହଂକାର ବହୁତ ବଢିଗଲାଣି । ଏବେ ମୁଁ ସମ୍ପୂର୍ଣ୍ଣ ପୃଥିବୀକୁ ନିଃକ୍ଷତ୍ରିୟ କରିଦେବି । ସେ ଏକୋଇଶି ଥର କ୍ଷତ୍ରିୟମାନଙ୍କୁ ମାରି ସମ୍ପୂର୍ଣ୍ଣ ପୃଥିବୀକୁ ଦାନରେ ଦେଇଦେଲେ । ନିଜ ପାଇଁ କିଛି ରଖିଲେ ନାହିଁ । ଏହିପରି ସେ ଅହଂକାରୀ କ୍ଷତ୍ରିୟମାନଙ୍କ ଅହଂକାରର ବିନାଶ କରିଥିଲେ । ପରଶୁରାମ ହେଲେ ଭଗବାନଙ୍କର **ଆବେଶ ଅବତାର**। ଦେଖିବାକୁ ସେ ଅତ୍ୟନ୍ତ ସୁନ୍ଦର କିନ୍ତୁ ଉଗ୍ର ମଧ୍ୟ ଥିଲେ । ସେ ଯଦି କାହାକୁ ଦେଖୁଥିଲେ ତ ସେ ଭାବୁଥିଲା ଯେ ତାର କାଳ ଆସିଗଲା । ଯେତେବେଳେ ସେ ଉଗ୍ର ଭାବରେ ଦେଖୁଥିବେ ତ କଣ ହେଉଥିବ ଆପଣମାନେ ବୁଝି ପାରୁଥିବେ । ପରଶୁରାମଙ୍କ ନାମ ନେଲା ମାତ୍ରେ ସମସ୍ତେ ଏଠି–ସେଠି ଲୁଚି ଯାଉଥିଲେ । ଯେତେବେଳେ ଶ୍ରୀରାମ ଅବତାର ହେଲା ତ ପରଶୁରାମ ଭାବିଲେ ଯେ କ୍ଷତ୍ରିୟମାନଙ୍କ ବଂଶରେ ଜଣେ ଭଲ ଲୋକ ଆସିଗଲାଣି। ଏବେ ମତେ ଆଉ କିଛି କରିବା ଦରକାର ନାହିଁ । ଏପରି ଭାବି ସେ କ୍ଷତ୍ରିୟମାନଙ୍କୁ ମାରିବା କାମ ବନ୍ଦ କରିଦେଲେ ଏବଂ ମହେନ୍ଦ୍ର ପର୍ବତ ଉପରେ ରହିଲେ । ସେ ମହାଭାରତ ସମୟରେ ମଧ୍ୟ ଥିଲେ । କର୍ଣ୍ଣ ତାଙ୍କ ପାଖକୁ ଶସ୍ତ୍ରବିଦ୍ୟା ଶିଖିବା ପାଇଁ ଯାଇଥିଲେ । ପରଶୁରାମ ଚିରଂଜୀବ ଅଟନ୍ତି ।

କେବେ କେବେ ଲୋକମାନେ ପଚାରନ୍ତି – ଭଗବାନଙ୍କର ପରଶୁରାମ ଅବତାର ଏବଂ ଶ୍ରୀରାମ ଅବତାର ସମାନ ସମୟରେ କିପରି ହେଲା ? ଆରେ ! ଭଗବାନ ତ ଏକା ସାଂଗରେ ହଜାରେ ରୂପ ନେଇ ପାରିବେ। ଆପଣମାନେ ତାଙ୍କୁ କଣ ଭାବିଛନ୍ତି କି ? ସେ ଭଗବାନ ପରା ! ତାଙ୍କୁ ନିଜ ପରି ଭାବନି । ସେ ଏକା ସାଂଗରେ ଅନେକ ସ୍ଥାନରେ ଅନେକ ଅବତାର ନେଇ ପାରିବେ ।

## ଯଯାତି-ଚରିତ୍ର

ଯଯାତିଙ୍କ ଚରିତ୍ରରୁ ବୁଝିବା ଯେ ସେ ମହାଭୋଗୀ ରାଜା ଥିଲେ, ସେ ଖୁବ୍ ଭୋଗ କରିଥିଲେ କିନ୍ତୁ ତାଙ୍କର ଭୋଗର ଇଚ୍ଛା କେବେହେଲେ ତୃପ୍ତ ହେଲା ନାହିଁ । ସେ ସ୍ତ୍ରୀଙ୍କ ଠାରେ ଅତି ମାତ୍ରାରେ ଆସକ୍ତ ଥିଲେ। ଦିନେ ଦେବଯାନୀ କ୍ରୋଧିତ ହୋଇ ତାଙ୍କୁ ଛାଡି ଚାଲିଗଲା । ଅଧିକ ବିସ୍ତାରରେ ନ ଯାଇ ଆମେ ଯେତିକି ଦରକାର ସେତିକି ଦେଖିବା । ସେ ନିଜର ପିତା ଶୁକ୍ରାଚାର୍ଯ୍ୟଙ୍କ ପାଖକୁ ଗଲା । ଶୁକ୍ରାଚାର୍ଯ୍ୟ ବହୁତ ରାଗି ଗଲେ ଏବଂ ଯଯାତିଙ୍କୁ ଅଭିଶାପ ଦେଲେ ଯେ ସେ ବୁଢ଼ା ହେଇଯାଆନ୍ତୁ । ଯଯାତି ବୁଢ଼ା ହେଇଗଲେ ଏବଂ ବ୍ୟାକୁଳ ହେଇଗଲେ ଯେ ମୋର କାମବାସନା ପୂର୍ଣ୍ଣ ହେଇନି ଆଉ ବୁଢ଼ା ହୋଇଗଲି । କଣ କରିବି ? ସେ ଶୁକ୍ରାଚାର୍ଯ୍ୟଙ୍କୁ କହିଲେ – ଆପଣ ମୋ ସହିତ ଅନ୍ୟାୟ କଲେ । ମୋର ଭୋଗର ଇଚ୍ଛା ତୃପ୍ତ ହୋଇନାହିଁ ଆଉ ଆପଣ ମତେ ବୁଢ଼ା କରିଦେଲେ । ଶୁକ୍ରାଚାର୍ଯ୍ୟ କହିଲେ, "ଠିକ୍ ଅଛି । ତୁମର ତ ଚାରିପୁଅ । ତାଙ୍କ ଭିତରୁ କେହି ତୁମର ବୃଦ୍ଧାବସ୍ଥା ନେବା ପାଇଁ ରାଜି ହୋଇଗଲେ ତୁମେ ତାର ଯୌବନ ପ୍ରାପ୍ତ କରି ପାରିବ ।" କେହି ରାଜି ହେଲେ ନାହିଁ କିନ୍ତୁ ସବୁଠାରୁ ଛୋଟ ପୁଅ ରାଜି ହୋଇଗଲା। କହିଲା ମୁଁ ନିଜର ଯୌବନ ଦେବା ପାଇଁ ପ୍ରସ୍ତୁତ, ଆପଣ ମୋତେ ନିଜର ବୃଦ୍ଧାବସ୍ଥା ଦେଇ ଦିଅନ୍ତୁ । ଦେଖିଲେ, ଯଯାତିଙ୍କର କାମବାସନା କେତେ ପ୍ରବଳ ଥିଲା ଯେ ନିଜ ପୁଅକୁ ବୁଢ଼ା ବନେଇ ତାର ଯୌବନ ନେଇଗଲେ ଏବଂ ଖୁବ୍ ଭୋଗ କଲେ କିନ୍ତୁ ସନ୍ତୋଷ ପାଇଲେନି। ଅନ୍ତତଃ ଦିନେ ସେ ଏହି କଥା ବୁଝିପାରିଲେ ଯେ –

**ନ ଜାତୁ କାମଃ କାମାନାମୁପଭୋଗେ ନ ଶାମ୍ୟତି । (୯.୧୯.୧୪)**

କାମନା ଗୁଡିକର ଯେତେ ପୂର୍ତ୍ତୀ କରୁଥିଲେ ମଧ୍ୟ କାମନାମାନେ କେବେହେଲେ ପୁରା ହେବେ ନାହିଁ। ଇଚ୍ଛା ମାନଙ୍କୁ ଯେତେ ପୂର୍ଣ୍ଣ କରୁଥିଲେ ମଧ୍ୟ ସେମାନେ ବଢୁଥିବେ। ଏହା ଆମ ସମସ୍ତଙ୍କର ଅନୁଭବ । ଯେମିତି ଧୂମ୍ରପାନ କରିବା ଲୋକ ଭାବେ ଯେ ଏଇ ଅନ୍ତିମ ଥର, ଆଉ ଏହା ପରେ ଧୂମ୍ରପାନ କରିବିନି । ସେହିପରି ମଦ ପିଇଲା ବାଲା ଭାବେ ଯେ ଶେଷ ଥର ପାଇଁ ପିଇବି । ଚା ପିଇବା ବାଲା ଭାବେ ଯେ ଆଉ ଚା ପିଇବିନି। ତେଣୁ ଶେଷ କପ ଚା ଟା ପିଇନିଏ, ଗିଲାସ ଭର୍ତ୍ତି କରି ଆଣ । ଶେଷ ଥର କେବେହେଲେ ଆସେ ନାହିଁ । ଛାଡ଼ିବାକୁ ଚାହୁଁଛ ତ ବର୍ତ୍ତମାନ, ଏହି କ୍ଷଣରେ ଛାଡ଼ିଦିଅ, ଛାଡ଼ି ହୋଇଯିବ, ଅନ୍ୟଥା ପରେ ଛାଡ଼ିପାରିବନି।

**ହବିଷା କୃଷ୍ଣବର୍ତ୍ମେବ ଭୂୟ ଏବାଭିବର୍ଧତେ ॥ (୯.୧୯.୧୪)**

ନିଆଁ ଲିଭେଇବା ପାଇଁ ନିଆଁରେ ଘିଅର ଆହୁତି ଦେଉଥିଲେ ନିଆଁ କେବେହେଲେ ଲିଭିବ କି ? ଯେତେ ଘିଅ ଅଜାଡ଼ିବ ତାର ଶିଖା ଆହୁରି ଲେଲିହାନ ହୋଇ ଉପରକୁ ଯିବ । ଏହି କଥା, ବହୁତ ଦୀର୍ଘ ସମୟ ପରେ ସେହି ଜଡ଼ ବୁଦ୍ଧି ରାଜା ଯଯାତିଙ୍କ ମୁଣ୍ଡରେ ଶେଷରେ ପଶିଲା । ସେତେବେଳେ ସେ ଭାବଲେ ଏତେ ଭୋଗ କଲା ପରେ ମଧ୍ୟ ମୋର ସନ୍ତୁଷ୍ଟି ଆସୁନାହିଁ । ଏବେ ଏସବୁକୁ ଛାଡ଼ି ଦେବା ଉଚିତ। ସବୁ ତ୍ୟାଗ କରିଦେବା ଉଚିତ । ଏହା ଭାବି ସେ ନିଜ ସାନ ପୁଅକୁ ଡାକି କହିଲେ ଯେ ମୋର ବୃଦ୍ଧାବସ୍ଥା ଫେରେଇ ଦେଇ, ନିଜର ଯୌବନ ନିଅ । ସେ ଏପରି କରି ପାରୁଥିଲେ କାରଣ ତାଙ୍କ ପାଖରେ ତପୋବଳର ଶକ୍ତି ଥିଲା ଏବଂ ଶୁକ୍ରାଚାର୍ଯ୍ୟଙ୍କର ଏପରି ବରଦାନ ଥିଲା । ଏହିପରି ସେ ନିଜ ପୁଅକୁ ଯୌବନ ଫେରାଇ ଦେଲେ ଏବଂ ବୃଦ୍ଧାବସ୍ଥାକୁ ନିଜ ଉପରକୁ ନେଇଗଲେ । ତାପରେ ସେ ଜଂଗଲକୁ ଚାଲିଯାଇ ନିଜ ମନକୁ ଭଗବାନଙ୍କ ପାଖରେ ଲଗେଇ ଦେଲେ ।

କିଛି ଲୋକ ଭାବିପାରନ୍ତି ଯେ ଇଏ କୋଉ ବଡ଼ କଥା ? କୁହାଯାଏ ନା '**ବିରାଡ଼ି ବୈଷ୍ଣବ**' । ଏତେ ଭୋଗ ପରେ ତ୍ୟାଗ କଲେ ତ କଣ ହେଇଗଲା ? କିନ୍ତୁ ଏହାକୁ ଛୋଟ କଥା ଭାବନ୍ତୁନି । ତ୍ୟାଗ କରିବା ସହଜ କଥା ନୁହଁ । ଅଧିକ ଭୋଗ କଲେ ସେହି ଅନୁସାରେ ସଂସ୍କାର ମଧ୍ୟ ଦୃଢ଼ ହୋଇଯାଏ । ତାପରେ ତ୍ୟାଗ କରିବା ଆହୁରି କଷ୍ଟକର ହୁଏ । ଛାଡ଼ିବା କଥା ଆସିଲେ ଲୋକେ କହିବେ – ଶେଷ ପୁଅ ବା ଝିଅର ବାହାଘର କରିଦିଏ, ଥରେ ଆମେରିକା ବୁଲି ଆସେ ଆଦି ଆଦି । ଅର୍ଥାତ୍ ଭୋଗ ଆମ ଜୀବନର ଲକ୍ଷ୍ୟ ନୁହଁ । ତାର ତ୍ୟାଗ ହିଁ ଆମ ଜୀବନର ଲକ୍ଷ୍ୟ । ଏହି ବିଷୟ ଦ୍ୱାରା ଏହା ହିଁ ଦର୍ଶାଯାଇଛି ।

## ରନ୍ତିଦେବଙ୍କ କରୁଣା ଏବଂ ଉଦାରତା

ପରେ ଜଣେ ମହାନ୍ ମହାତ୍ମା ରାଜର୍ଷି ହେଲେ । ତାଙ୍କ ନାମ ହେଲା ରନ୍ତିଦେବ। ରନ୍ତିଦେବଙ୍କ କଥା ଅତ୍ୟନ୍ତ ସୁନ୍ଦର ଅଟେ । ସେ ସବୁ କିଛି ତ୍ୟାଗ କରି ନିଷ୍କିଞ୍ଚନ ହୋଇ ବସିଗଲେ । ସେ ଭୋକିଲା ଥିଲେ, ତାଙ୍କ ପାଖରେ କିଛି ନ ଥିଲା ଏବଂ ଯେତେବେଳେ ତାଙ୍କୁ କିଛି ଖାଇବା ପାଇଁ ମିଳିଲା, ସେତେବେଳେ ଜଣକ ପରେ ଜଣେ ଅତିଥି ଆସି ପହଞ୍ଚିବାକୁ ଲାଗିଲେ । ସେ ସମସ୍ତଙ୍କୁ କିଛି ନା କିଛି ଦେଲେ । ଶେଷରେ ଜଣେ ବ୍ୟକ୍ତି ନିଜ କୁକୁରମାନଙ୍କ ସହିତ ପହଞ୍ଚିବାରୁ ଯାହା କିଛି ବଳି ଥିଲା, ସବୁ ତାକୁ ଦେଇ

ଦେଲେ। ତା ପରେ ଜଣେ ଶୋଷିଲା ଚଣ୍ଡାଳ ଆସି ପହଞ୍ଚିବାରୁ ସେ ତାକୁ ପାଣି ତକ ମଧ୍ୟ ଦେଇଦେଲେ। ଏହିପରି ରନ୍ତିଦେବ ସବୁ କିଛି ଦେଇ ଦେଲେ । ତାଙ୍କର ଗୋଟିଏ ପ୍ରସିଦ୍ଧ ଶ୍ଳୋକରେ ସେ କହିଛନ୍ତି -

**ନ କାମୟେଽହଂ ଗତିମୀଶ୍ୱରାତ୍ ପରା-**
**ମଷ୍ଟର୍ଦ୍ଧିୟୁକ୍ତାମପୁନର୍ଭବଂ ବା ।**
**ଆର୍ତିଂ ପ୍ରପଦ୍ୟେଽଖିଲଦେହଭାଜା-**
**ମନ୍ତଃସ୍ଥିତୋ ଯେନ ଭବନ୍ତ୍ୟଦୁଃଖାଃ ॥ (୯.୨୧.୧୨)**

**'ନ କାମୟେଽହଂ ଗତିମୀଶ୍ୱରାତ୍ ପରାମ୍'**, ମୁଁ ଈଶ୍ୱରଙ୍କ ଠାରୁ ଶ୍ରେଷ୍ଠ ଗତି, ସିଦ୍ଧି ବା ଐଶ୍ୱର୍ଯ୍ୟ ପ୍ରାପ୍ତ କରିବା ପାଇଁ ଚାହୁଁନାହିଁ । ସମସ୍ତ ଜୀବମାନେ ଦୁଃଖୀ । ମୁଁ ସେମାନଙ୍କ ହୃଦୟରେ ରହି ତାଙ୍କର ଦୁଃଖ ହରଣ କରିବା ପାଇଁ ଚାହୁଁଛି ଯାହା ଦ୍ୱାରା ସେମାନେ ଆଉ ଦୁଃଖୀ ନ ହୁଅନ୍ତୁ । ଏମିତି ଥିଲେ ରନ୍ତିଦେବ । ସେ ନିଜ ବଂଶର ବହୁତ ଶ୍ରେଷ୍ଠ ବ୍ୟକ୍ତି ଥିଲେ, ମହାଭାଗବତ ଥିଲେ । ତାଙ୍କ ସମ୍ମୁଖରେ ପ୍ରକଟ ହୋଇ ଭଗବାନ ତାଙ୍କୁ ବର ଦେବାକୁ ଚାହିଁବାରୁ ସେ କିଛି ମାଗିଲେ ନାହିଁ ।

**ବାସୁଦେବେ ଭଗବତି ଭକ୍ତ୍ୟା ଚକ୍ରେ ମନଃ ପରମ୍ ॥**

ଶେଷରେ ସେ ଅତ୍ୟନ୍ତ ଭକ୍ତିର ସହିତ ଭଗବାନଙ୍କ ପାଖରେ ନିଜର ମନ ଲଗେଇ ଦେଲେ ଏବଂ ମାୟାରୁ ମୁକ୍ତ ହେଇଗଲେ । ଏହାପରେ ଯଦୁବଂଶର ସଂକ୍ଷିପ୍ତ ବର୍ଣ୍ଣନା କରାଯାଇଛି । ତାପରେ ଚବିଶ ଅଧ୍ୟାୟରେ ବିଦର୍ଭ ବଂଶର ବର୍ଣ୍ଣନା ଅଛି ଏବଂ ଏହା ସହିତ ନବମ ସ୍କନ୍ଧର ବିଷୟ **'ଈଶାନୁ କଥା'** ସମାପ୍ତ ହେଲା ।



# ଦଶମ ସ୍କନ୍ଧ

ସମ୍ପୂର୍ଣ୍ଣ ଭାଗବତ ମହାପୁରାଣରେ ଦଶମ ସ୍କନ୍ଧ ସବୁଠାରୁ ବଡ଼ ଅଟେ, ଏଥିରେ ନବେ ଅଧ୍ୟାୟ ଅଛି । ଅନ୍ୟ ସ୍କନ୍ଧମାନଙ୍କରେ ଅତି ବେଶିରେ ତେତିଶ ଅଧ୍ୟାୟ ଅଛି । ଏହି ସ୍କନ୍ଧରେ ଦୁଇଟି ଭାଗ ଅଛି - ପୂର୍ବାର୍ଦ୍ଧ ଏବଂ ଉତ୍ତରାର୍ଦ୍ଧ । ଏଥିରେ ଭଗବାନ ଶ୍ରୀକୃଷ୍ଣଙ୍କର ଚରିତ୍ର ସମ୍ପୂର୍ଣ୍ଣ ରୂପେ ଗାନ କରାଯାଇଛି। ଦଶମ ସ୍କନ୍ଧର (ବର୍ଣ୍ଣିତ) ବିଷୟ ଉପରେ ମତଭେଦ ରହିଛି ଯେ ଏଥିରେ ନିରୋଧ ବିଷୟରେ କୁହାଯାଇଛି କି ଆଶ୍ରୟ ବିଷୟରେ। ଏହିପରି ତ କ୍ରମ କୁହାଯାଇଛି - ନିରୋଧ - ମୁକ୍ତିଃ - ଆଶ୍ରୟଃ । ସେହି ଅନୁସାରେ ଏହା ନିରୋଧ ସ୍କନ୍ଧ ଅଟେ । ନିରୋଧର ଅର୍ଥ ହେଉଛି ପ୍ରଳୟ-ସଂହାର । ଏଠାରେ ଭଗବାନ ଏତେ ଅସୁରଙ୍କୁ ସଂହାର କରିଛନ୍ତି ଯେ ତାକୁ ଦେଖି ଲାଗେ ଯେ ଏଠାରେ ନିରୋଧ ଲୀଳା ମଧ୍ୟ ରହିଛି । ସେଥିପାଇଁ ଏହି ସ୍କନ୍ଧକୁ ନିରୋଧ ସ୍କନ୍ଧ ମଧ୍ୟ କହନ୍ତି । କିନ୍ତୁ, ଶ୍ରୀଧର ସ୍ୱାମୀଜୀ ଏହାକୁ ଆଶ୍ରୟ ଅଟନ୍ତି । "କୃଷ୍ଣସ୍ତୁ ଭଗବାନ ସ୍ୱୟଂ' (୯-୩-୨୮) ଶ୍ରୀକୃଷ୍ଣ ସ୍ୱୟଂ ଭଗବାନ ଅଟନ୍ତି । ଏବଂ ସେ ହିଁ ଏଠାରେ ପ୍ରକଟ ହୋଇଛନ୍ତି । ତେଣୁ ଶ୍ରୀକୃଷ୍ଣ ସମ୍ପୂର୍ଣ୍ଣ ଜଗତର ଆଶ୍ରୟ ଏବଂ ଦ୍ରଷ୍ଟା ଅଟନ୍ତି । ସେଥିପାଇଁ ଏହା ମଧ୍ୟ କହିପାରିବା ଯେ ଏଠାେ ଆଶ୍ରୟ ତତ୍ତ୍ୱର ବର୍ଣ୍ଣନ ହୋଇଛି । ଶ୍ରୀଧର ସ୍ୱାମୀଜୀଙ୍କ ଅନୁସାରେ (ବିଚାରରେ) ଦଶମ ସ୍କନ୍ଧରେ ଆଶ୍ରୟ, ଏକାଦଶ ସ୍କନ୍ଧରେ ମୁକ୍ତି, ଏବଂ ଦ୍ୱାଦଶ ସ୍କନ୍ଧରେ ନିରୋଧ ବିଷୟରେ ବର୍ଣ୍ଣନ ହୋଇଛି ।

"ନିରୋଧ"ର ଅର୍ଥ ଯଦି ପ୍ରଳୟ ମାନିବା, ତେବେ ପ୍ରଳୟର ବିସ୍ତୃତ ବର୍ଣ୍ଣନା ବାରସ୍କନ୍ଧରେ ହିଁ କରାଯାଇଛି । ଯାହା ହେଲେ ମଧ୍ୟ ଆମେ ପ୍ରଥମେ ହିଁ ଦେଖିଛନ୍ତି ଯେ, ଏହି ଯେତେ ସବୁ ବିଷୟ ଅଛି, ତାହା ବାସ୍ତବରେ ତ ଏକ ହିଁ ବିଷୟ । ତେଣୁ ତାକୁ ନିରୋଧ କୁହନ୍ତୁ ବା ଆଶ୍ରୟ, କଥା ତ ହେଉଛି ଗୋଟିଏ । ସେ ସବୁ ତ ଭଗବାନଙ୍କର ହିଁ ଲୀଳା ।

## ଅବତାରର ପ୍ରସ୍ତାବନା

ଏବେ ପ୍ରଥମେ ଭଗବାନଙ୍କର ଅବତାର ବିଷୟରେ ବିଚାର କରି ତା ପରେ ହିଁ ଶ୍ରୀ କୃଷ୍ଣଙ୍କ ଅବତାର ବିଷୟରେ ବିଚାର କରିବା । କାରଣ ଏ ପର୍ଯ୍ୟନ୍ତ ବିବେଚନରେ ଅବତାର ବିଷୟରେ ଅଧିକ ବିଚାର କରାଯାଇ ନାହିଁ । ଦଶମ ସ୍କନ୍ଧରେ ଭଗବାନ ଶ୍ରୀକୃଷ୍ଣଙ୍କର କଥା ହିଁ ନିରନ୍ତ ଚାଲିବ ସେଥିପାଇଁ ବୁଝିବାରେ ସୁବିଧା ସରଳତା ହେବ । ପୂର୍ବର ସ୍କନ୍ଧରେ ଅଲଗା ଅଲଗା ଅବତାରର କଥା ସବୁ ଥିଲା । ଗୋଟିଏ ଖୁବ ଶାନ୍ତ ଅବତାର ଅଟେ ତ ଅନ୍ୟଟି ଅତି ଉଗ୍ର ଅବତାର ଅଟେ ତେଣୁ ତାଙ୍କ ଉପରେ ବିଚାର କରୁଥିବା ସମୟରେ ଏକ ପ୍ରକାର ଭାବ ବଜାୟ ରଖିବା ଅତି କଠିନ ହୋଇଥାଏ । ପରନ୍ତୁ, ଆଗକୁ ବେଶ ସହଜ ହୋଇଛି, କାରଣ ଗୋଟିଏ ବିଷୟ କଥା ହିଁ ଚାଲିବ ।

**ଯଦା ଯଦା ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ ।**
**ଅଭ୍ୟୁତ୍ଥାନମଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହମ ॥(ଭ.ଗୀତା - ୪.୭)**
**ପରିତ୍ରାଣାୟ ସାଧୁନାଂ ବିନାଶାୟ ଚ ଦୁଷ୍କୃତାମ୍ ।**
**ଧର୍ମସଂସ୍ଥାପନାର୍ଥାୟ ସଂଭବାମି ଯୁଗେ ଯୁଗେ ॥(ଭ.ଗୀତା - ୪.୮)**

**"ଯଦା ଯଦା ହି ଧର୍ମସ୍ୟ ଗ୍ଲାନି ର୍ଭବତି'**- ଭଗବାନ କହୁଛନ୍ତି - ଯେଉଁ ଯେଉଁ ସମୟରେ ଏହି ସଂସାରରେ ଧର୍ମର କ୍ଷୟ ହୋଇଥାଏ ଏବଂ ଅଧର୍ମର ଉତ୍କର୍ଷ ହୋଇଥାଏ, ସେହି ସେହି ସମୟରେ ମୁଁ ଅବତାର ନେଇଥାଏ । ଧ୍ୟାନ ଦେବାର କଥା ହେଉଛି ଯେ ଭଗବାନ ଏପରି କହି ନାହାନ୍ତି ଯେ ଧର୍ମର ଯେତେବେଳେ ପୂର୍ଣ୍ଣ ନାଶ ହୋଇଯାଏ ଏବଂ କେବଳ ଅଧର୍ମ ହିଁ ଅଧର୍ମ ରହିଥାଏ, ସେତେବେଳେ ମୁଁ ଅବତାର ନେଇଥାଏ । କହିଛନ୍ତି- ଯେତେବେଳେ ଧର୍ମର ଅବକ୍ଷୟ ହୋଇଥାଏ ଏବଂ ଅଧର୍ମ ବଢୁଥାଏ ସେତେବେଳେ ମୁଁ ଆସିଥାଏ ।

ଧର୍ମର ବିଷୟରେ ସାମାନ୍ୟ ଧର୍ମ, ବିଶେଷ ଧର୍ମ, ସଦ୍‌ଧର୍ମ ଆଦି ଉପରେ ପର୍ଯ୍ୟାପ୍ତ ବିବେଚନ ହୋଇସାରିଛି । ଯାହା ମନୁଷ୍ୟର ଲୌକିକ ଉନ୍ନତିର, ଆଧ୍ୟାତ୍ମିକ ଉନ୍ନତିର ଏବଂ ସମାଜକୁ ଧାରଣ କରିବା ପାଇଁ ଯାହା ସାଧନ ଅଟେ, ତାହାକୁ ଧର୍ମ କୁହାଯାଏ । ଏବେ ଦେଖନ୍ତୁ, ଧର୍ମ ହିଁ ଧର୍ମ ହୋଇ ରହିଲେ ଭଗବାନଙ୍କର ଆସିବାର ଆବଶ୍ୟକତା ନାହିଁ । ଯଦି ସମସ୍ତେ ଧର୍ମର ପାଳନ କରୁଥିବେ ତେବେ ଭଗବାନ କାହିଁକି ଆସିବେ ? ତେବେ ସମସ୍ତେ ଅଧର୍ମ ହିଁ ଅଧର୍ମ କରୁଥିବେ ତଥାପି ମଧ୍ୟ ଭଗବାନଙ୍କର

ଆସିବାର କ'ଣ ଆବଶ୍ୟକତା ? ସମସ୍ତେ ପରସ୍ପର ଭିତରେ ହଣାକଟା ହୋଇ ଜଣେ ଅନ୍ୟଜଣକୁ ବିନାଶ କରିଦେବେ। କିନ୍ତୁ ଯେତେବେଳେ ଧର୍ମ ସମ୍ପୂର୍ଣ୍ଣ ନାଶ ହୋଇନଥିବ ଏବଂ ଅଧର୍ମ ବଢୁଥିବ ସେତେବେଳେ ଭଗବାନ ଆସନ୍ତି । ଏହି କଥାକୁ ବିଶେଷ ରୂପରେ (ଭାବରେ) ବୁଝିବାର ଆବଶ୍ୟକତା ଅଛି ।

ଥରେ ଜଣେ ସ୍ୱାମୀଜୀ ପ୍ରବଚନ (କଥା) କରୁଥିଲେ। ଏକେ କିଛି ଲୋକ ପ୍ରବଚନ ମଝିରେ ଶୋଇଯାଆନ୍ତି । ତେବେ ସେ ଯେତେବେଳେ ପ୍ରବଚନରେ କହିଲେ - ଯେତେବେଳେ ଧର୍ମର ବିନାଶ ହୋଇଥାଏ - ଏହି ବାକ୍ୟକୁ ସେ ବ୍ୟକ୍ତି ଜଣକ ଶୁଣି ପାରି ନ ଥିଲେ। କେବଳ ଏତିକି ଶୁଣିଲେ ଯେ ଯେତେବେଳେ ଅଧର୍ମ ବଢ଼େ ସେତେବେଳେ ଭଗବାନ ଆସନ୍ତି । ସେ ସ୍ୱାମୀଜୀଙ୍କ ନିକଟକୁ ଗଲେ ଏବଂ କହିଲେ ଯେ ତେବେ ତ ଅଧର୍ମ କରିବା ଆମର ଉଚିତ । କାହିଁକି ? ତେବେ ତ ଭଗବାନଙ୍କର ଅବତାର ହେବ । ସ୍ୱାମୀଜୀ କହିଲେ - ତୁମ୍ଭେମାନେ ଯେପରି ସେଥିପାଇଁ ମୁଁ ହିଁ ଯଥେଷ୍ଟ। ତୁମେ ଯେଭଳି ଅଧର୍ମ କରିବ, ସେଥିପାଇଁ ଭଗବାନଙ୍କୁ ଆସିବାର କୌଣସି ଆବଶ୍ୟକତା ନାହିଁ । ତୁମ ପାଇଁ ଜଣେ ପୁଲିସର ଲାଠି ହିଁ ଯଥେଷ୍ଟ । ଦ୍ୱିତୀୟ କଥା ହେଉଛି - କେହି କେହି ଆସି କହନ୍ତି - ଏବେ ତ ଖୁବ ଖରାପ ସମୟ ଆସିଗଲାଣି । ଭଗବାନଙ୍କୁ ପ୍ରକଟ ହେବା ଉଚିତ । କାହିଁକି ? କାରଣ ଅଧର୍ମ ବହୁତ ବଢ଼ି ଚାଲିଛି ଏବଂ ଧର୍ମର ହାନି ହେଉଛି, ସେଥିପାଇଁ ତାଙ୍କର (ଭଗବାନଙ୍କର) ଆସିବା ଉଚିତ୍ । ଏ କଥା ତ ଠିକ୍ ଅଛିନ୍ତ କିନ୍ତୁ ଭଗବାନଙ୍କର ମାତା-ପିତା କିଏ ହେବ ? ଏହା ଏକ ବଡ଼ ଗମ୍ଭୀର ପ୍ରଶ୍ନ । କାରଣ ଭଗବାନଙ୍କର ପ୍ରାକଟ୍ୟ ନିମନ୍ତେ କେହି ତ ମାଧ୍ୟମ ହେବା ଉଚିତ। ଯଦି ଭଗବାନ ଆସିଲେ, ତେବେ କାହାର ରକ୍ଷା ନିମନ୍ତେ ? କେହି ଧର୍ମପାଳନ କରିବାବାଲା ତ ଆବଶ୍ୟକ ? ତେବେ ତ ଭଗବାନ ଆସିବେ । ଯଦି ଆମେ ଚାହୁଁଛୁ ଯେ ଭଗବାନଙ୍କର ଆବିର୍ଭାବ ହେଉ ଏବଂ ଅଧର୍ମର ନାଶ ହେଉ, ତେବେ ଧର୍ମର ପାଳନ କରିବା ଆମର ଉଚିତ ।

ଦ୍ୱିତୀୟ କଥା ହେଉଛି ଯେ ବାସ୍ତବରେ ବର୍ତ୍ତମାନ ଅଧର୍ମ ଅଧିକ ବଢ଼ି ନାହିଁ । ତାହା କିପରି ? ଆରେ, ଆମେ ଆରାମରେ ବସି ଭାଗବତ ଜ୍ଞାନ ଯଜ୍ଞ କରୁଛନ୍ତି । ଏହାଦ୍ୱାରା ସିଦ୍ଧ ହେଉଛି ଯେ, ଅଧର୍ମ ଏତେ ବଢ଼ି ନାହିଁ । ରାବଣ ସମୟରେ ଯଦି କେହି ଯଜ୍ଞ କରୁଥିଲା ତେବେ ସେ ତାକୁ ଧ୍ୱସ୍ତ କରିଦେଉଥିଲା, କିଛି କରିବାକୁ ଦେଉ ନ ଥିଲା। ହିରଣ୍ୟକଶିପୁ କହିଥିଲା ଯେ କେହି ଯଜ୍ଞ କରିବେ ନାହିଁ । ସବୁ ଧ୍ୱସ୍ତ କରି ଦିଆଯିବ । ଏବେ ଆମକୁ ଏହି ପ୍ରକାର କିଏ କ'ଣ ମନା କରୁଛି ? ଯଦି କେହି ମନା

କରିଥାଏ, ସେ ହେଉଛି କେବଳ ଆମର ମନ । ସେ ହିଁ କହିଥାଏ କର ନାହିଁ, ସେଇ ହିଁ ହେଉଛି ହିରଣ୍ୟକଶିପୁ, ସେ ହିଁ ରାବଣ ଅଟେ । ସେଥିପାଇଁ ବୁଝିବା ଉଚିତ୍ ଯେ ବର୍ତ୍ତମାନ ଅଧର୍ମ ଏତେ ବଡ଼ ନାହିଁ । ଆମ ନିଜ ଅନ୍ତଃକରଣରେ ହିଁ ଅଧର୍ମ ବଢ଼ୁଛି, ଏବଂ ଧର୍ମର କ୍ଷୟ ହେଉଛି, ତେଣୁ ସେଠାରେ ଅବତାରର ବିଶେଷ ଆବଶ୍ୟକତା ଅଛି। ଭଗବାନଙ୍କର ଗୋଟିଏ ଅବତାର ତ ସମଷ୍ଟିରେ ହୋଇଥାଏ । ଶ୍ରୀ ରାମ-ଅବତାର, ଶ୍ରୀକୃଷ୍ଣ-ଅବତାର ସମଷ୍ଟିରେ ହୋଇଛନ୍ତି। କିନ୍ତୁ ଏପରି ଭାବନ୍ତୁ ନାହିଁ ଯେ ସେହି ଅବତାର ନିମନ୍ତେ ଆମକୁ ତ୍ରେତା ଯୁଗର ବା ଦ୍ୱାପର ଯୁଗର ପ୍ରତୀକ୍ଷା କରିବାକୁ ପଡ଼ିବ । ଏପରି ନୁହେଁ । ଯଦି ଆମେ ଚାହୁଁ ତେବେ ନିଜର ହୃଦୟରେ ତାଙ୍କର ଅବତାର ସେହି ସମୟରେ ହୋଇପାରିବ । ତେବେ ନିଜ ହୃଦୟକୁ ସେହିଭଳି ଯୋଗ୍ୟ କରିବାର ଆବଶ୍ୟକତା ଅଛି । ବ୍ୟଷ୍ଟି (ବ୍ୟକ୍ତି) ସ୍ତରରେ ଅବତାର ଗ୍ରହଣ କରିବା ନିମନ୍ତେ ଭଗବାନଙ୍କ ପକ୍ଷରୁ ବିଳମ୍ବ ନାହିଁ । ଏବେ ଦେଖନ୍ତୁ, ଭଗବାନ ଅବତାର ନେଇ କ'ଣ କରୁଛନ୍ତି ?

**ପରିତ୍ରାଣାୟ ସାଧୁନାଂ ବିନାଶାୟ ଚ ଦୁଷ୍କୃତାମ୍ ॥ (ଭ.ଗୀତା - ୪.୮)**

ସାଧୁ ଲୋକମାନଙ୍କୁ ରକ୍ଷା କରନ୍ତି ଏବଂ ଅଧର୍ମୀମାନଙ୍କର ନାଶ କରନ୍ତି । ଏଠାରେ ଯେଉଁ "ସାଧୁ' ଶବ୍ଦର ପ୍ରୟୋଗ କରାଯାଇଛି ତାର ଅର୍ଥ କ'ଣ ? ସାଧୁ କାହାକୁ କହନ୍ତି ? ବାସ୍ ବସ୍ତ୍ରକୁ ରଙ୍ଗ କରି ଦେଇ ଭିକ୍ଷା ମାଗିବାକୁ ଆରମ୍ଭ କଲେଣି। "ଓଁ ଭବତି ଭିକ୍ଷାଂ ଦେହି ।' ତେବେ କଣ ସାଧୁ ବାବା ହୋଇଗଲେ, ଏପରି ନୁହେଁ । ସାଧୁର ନିଜର ପରିଭାଷା ଅଛି । ପ୍ରାଣ ସଙ୍କଟ ଉପସ୍ଥିତ ହେବା ପରେ ମଧ୍ୟ ଯେ ନିଜ ଧର୍ମ ମାର୍ଗରୁ ବିଚଳିତ ହୁଏ ନାହିଁ, ତାଙ୍କୁ ସାଧୁ କହନ୍ତି । ଏଭଳି ସାଧୁଙ୍କର ରକ୍ଷା ନିମନ୍ତେ ଭଗବାନ ଆସିଥାନ୍ତି । କାରଣ ଯଦି ଏପରି ସାଧୁମାନଙ୍କର ରକ୍ଷା ହୋଇଥାଏ, ତେବେ ଧର୍ମର ରକ୍ଷା ଆପେ ଆପେ ହୋଇଯାଏ । ଅଧର୍ମୀମାନଙ୍କର ନାଶ ଅନେକ ପ୍ରକାର ହୋଇଥାଏ । କେହି ସେମାନଙ୍କର ହୃଦୟ ପରିବର୍ତ୍ତନ କରିଦେଉ, ଅଥବା ଦୁଷ୍ଟ ବ୍ୟକ୍ତି ନିଜେ ତାର ଦୁଷ୍ଟାମି ଛାଡ଼ିଦେଉ, ତେବେ ତାର ନାଶ ତ ହୋଇଗଲା । କାରଣ ସେତେବେଳେ ସେ ସାଧୁ ହୋଇଗଲା ।

**ସାଧୁରେବ ସ ମନ୍ତବ୍ୟଃ ସମ୍ୟଗ୍‌ବ୍ୟବସିତୋ ହି ସଃ ।**

**(ଭ.ଗୀତା-୬.୩୦)**

ତାର ବିପରୀତ ଯଦି ସେ ସାଧୁତାକୁ ନିଜର କରିନିଏ ନାହିଁ ଏବଂ କୌଣସି ପ୍ରକାରରେ ମଧ୍ୟ ଦୁଷ୍କାମୀ ଛାଡ଼ିବାକୁ ପ୍ରସ୍ତୁତ ହୁଏ ନାହିଁ, ତେବେ ତ ତାର ମରଣ ନିଶ୍ଚିନ୍ତ ଅଟେ । ତାକୁ ମାରିବାକୁ ହିଁ ପଡ଼ିଥାଏ । ଭଗବାନ ଯେତେବେଳେ ଆସନ୍ତି, ସେତେବେଳେ ଅଲଗା ଅଲଗା ରୂପରେ ଆସନ୍ତି । ଅଲଗା ଅଲଗା ସମୟରେ ଆସନ୍ତି । ତାଙ୍କର ପ୍ରାକଟ୍ୟ ମଧ୍ୟ ଭିନ୍ନ-ଭିନ୍ନ (ଅଲଗା-ଅଲଗା) ଧରଣର ହୋଇଥାଏ । ଯେପରି, ସାଧୁ-ସନ୍ଥ ଭଗବାନଙ୍କର ନିତ୍ୟ ଅବତାର ଅଟନ୍ତି । ସେମାନେ କ'ଣ କରିଥା'ନ୍ତି ? ସେମାନେ ଧର୍ମର ପ୍ରଚାର କରନ୍ତି, ଲୋକମାନଙ୍କର ହୃଦୟ ପରିବର୍ତ୍ତନ ପାଇଁ କାର୍ଯ୍ୟ କରନ୍ତି । କିନ୍ତୁ ସେମାନେ କାହାକୁ ମାରନ୍ତି ନାହିଁ ।

ଭଗବାନଙ୍କର ଅନେକ ଅଂଶାବତାର ମଧ୍ୟ ହୋଇଥାଏ । ଭଗବାନ ନିଜର ଅଂଶ ପ୍ରକଟ କରିଥାଆନ୍ତି- କୌଣସି ଏକ ବିଶେଷ କାର୍ଯ୍ୟକୁ କରିବା ନିମନ୍ତେ, ଯେପରିକି ମତ୍ସ୍ୟାବତାର । ତାହା କେଉଁଥିପାଇଁ ଥିଲା ? ସେ କେବଳ ପ୍ରଳୟ କାଳରେ ସମସ୍ତ ବୀଜର, ଜୀବମାନଙ୍କର ତଥା ଜ୍ଞାନର ରକ୍ଷା ନିମନ୍ତେ ହୋଇଥିଲା । ତାର ପ୍ରୟୋଜନ କେବଳ ଏତିକି ଥିଲା । ଯେଉଁ କଚ୍ଛପ ଅବତାର ହେଲା, ତାହା କେବଳ ପର୍ବତକୁ ଉଠାଇ ରଖିବା ନିମନ୍ତେ ତଥା ସମୁଦ୍ରର ମନ୍ଥନ ସମ୍ଭବ ହୋଇପାରିବ ସେଥିପାଇଁ ଉଦ୍ଦିଷ୍ଟ ଥିଲା । ବରାହ ଅବତାର କେବଳ ପୃଥ୍ୱୀକୁ ଉଦ୍ଧାର କରିବା ନିମନ୍ତେ ହୋଇଥିଲା । ତେଣୁ ଅଂଶାବତାର କୌଣସି ନିର୍ଦ୍ଦିଷ୍ଟ କର୍ମ ନିମନ୍ତେ ହୋଇଥାଏ । ବିଶେଷ କର୍ମ କଲେ, ତେବେ ତାଙ୍କର ପ୍ରୟୋଜନ ସମାପ୍ତ ହୋଇଗଲା । ନୃସିଂହ ଭଗବାନ ପ୍ରକଟ ହେଲେ, ସେ ହିରଣ୍ୟକଶିପୁକୁ ମଧ କଲେ ଏବଂ ପ୍ରହ୍ଲାଦକୁ ସିଂହାସନରେ ବସାଇ ଦେଲେନ୍ତ ବାସ୍ ! ଆଉ ଅଧିକା ଲୀଳା କରିନାହାନ୍ତି । କେବେ ସ୍ଫୁର୍ତ୍ତି ଅବତାର ହୋଇଥାଏ, କେବେ ଆବେଶ ଅବତାର, କେଉଁଠି ଅଂଶାବତାର ହୋଇଥାଏ, ପୁଣି କେଉଁଠାରେ ଗୁଣାବତାର ହୋଇଥାଏ, ଯେପରିକି ଶ୍ରୀରାମ-ଅବତାର । ତାହା କେବଳ ରାବଣକୁ ମାରିବା ନିମନ୍ତେ ହୋଇ ନ ଥିଲା । ତାହା ସମସ୍ତଙ୍କୁ ଶିଖାଇବା ନିମନ୍ତେ ମଧ୍ୟ ହୋଇଥଲା ।

ଏବେ ଭଗବାନ ଶ୍ରୀକୃଷ୍ଣଙ୍କର ଅବତାର କେଉଁଥିପାଇଁ ହେଲା ? ଏହାକୁ ମଧ୍ୟ ବିଚାର କରିବା ଆବଶ୍ୟକ । ଶ୍ରୀକୃଷ୍ଣ ଅବତାରର ଏକ ସାମାନ୍ୟ କାରଣ ଏହା ଯେ, ଯେତେବେଳେ ଧର୍ମର କ୍ଷୟ ହେଲା, ଅଧର୍ମର ବୃଦ୍ଧି ହେଲା, ସେତେବେଳେ ଧର୍ମର

ସଂସ୍ଥାପନା ନିମନ୍ତେ, ସାଧୁମାନଙ୍କର ରକ୍ଷା ନିମନ୍ତେ ଭଗବାନ ଅବତାର ନେଲେ । ଏ ତ ଗୋଟିଏ କଥା । କିନ୍ତୁ କୃଷ୍ଣାବତାରରେ ଈଶ୍ୱର-ଧର୍ମ ପ୍ରକଟ(ପ୍ରକାଶ) କରାଯାଇଛି। ଏବେ ଆମେ ତା ଉପରେ ବିଚାର କରିବା । ରାମ ଅବତାର ସମୟରେ ଏହିପରି କିଛି କାମନା ଥିଲା ଯାହାକି ଭଗବାନ ସେ ସମୟରେ ପୂର୍ଣ୍ଣ କରିପାରି ନ ଥିଲେ । କିନ୍ତୁ ଭଗବାନଙ୍କର ସ୍ୱଭାବ ପୁଣି ଏଭଳି କିଛି ଯେ -

**ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂସ୍ତଥୈବ ଭଜାମ୍ୟହମ୍ ।**

**(ଭ.ଗୀତା-୪.୧୧)**

ଗୀତା ଜୀରେ ଭଗବାନ କହୁଛନ୍ତି, "ଯେ ଯେଉଁ ଭାବରେ, ଇଚ୍ଛାରେ, ମୋର ଉପାସନା, ଧ୍ୟାନ, ଭକ୍ତି କରିଥାଏ ତାହାର ସେହି ଭାବ-ଇଚ୍ଛାକୁ ପୂର୍ଣ୍ଣ କରିବା ମୋର କର୍ତ୍ତବ୍ୟ ଅଟେ, ଧର୍ମ ଅଟେ, ସ୍ୱଭାବ ଅଟେ।" ରାମାବତାର ଭଗବାନ ଶ୍ରୀରାମଚନ୍ଦ୍ର ଜୀ ବନକୁ ଗଲେ । ଅନେକ ଋଷି, ମୁନି ଭଗବାନଙ୍କର ସୌନ୍ଦର୍ଯ୍ୟକୁ ଦେଖି ମୋହିତ ହୋଇଗଲେ ଏବଂ ବିଚାର କଲେ ଯେ ଆମେ କାମ ବାସନାକୁ ଜୟ କରିବାକୁ ବହୁତ ଚେଷ୍ଟା କରୁଛୁ, କିନ୍ତୁ ତାହା ଦୂର ହେଉ ନାହିଁ, ତେବେ କାହିଁକି ଆମେ ସେହି କାମ ବାସନାକୁ ଭଗବାନଙ୍କ ଠାରେ ସମର୍ପଣ ନ କରିବୁ । କହିଲେ, ଆମେ ସ୍ତ୍ରୀ ହୋଇଯିବୁ ଏବଂ ଭଗବାନ ରାମ ଆମ୍ଭମାନଙ୍କୁ ପତି ରୂପରେ ପ୍ରାପ୍ତ ହୋଇଯିବେ, ପ୍ରିୟ ରୂପରେ ପ୍ରାପ୍ତ ହୋଇଯିବେ । ସେମାନଙ୍କର ଏପରି ଇଚ୍ଛା ଥିଲା, କିନ୍ତୁ ଭଗବାନ ସେହି ସମୟରେ ମନୁଷ୍ୟ ଲୀଳା କରୁଥିଲେ, ସେଥିପାଇଁ ସେମାନଙ୍କର ଏପରି ଇଚ୍ଛାକୁ ପୂର୍ଣ୍ଣ କରିପାରିଲେ ନାହିଁ । ଭଗବାନ ସେମାନଙ୍କୁ କହିଲେ, "ପର ଜନ୍ମରେ" ଏବଂ ସେଠାରୁ ଚାଲିଗଲେ। କେଉଁଆଡ଼େ ଗଲେ ? ରାମଚନ୍ଦ୍ର ଜୀ ବିଦେହ ରାଜାଙ୍କର ନଗରୀକୁ ଗଲେ । ଜନକ ପୁରୀର ନାରୀମାନେ ଭଗବାନଙ୍କ ସୌନ୍ଦର୍ଯ୍ୟକୁ ଦେଖିବା କ୍ଷଣି ତ ସେମାନଙ୍କ ମଧରେ ମଧ ଭଗବାନଙ୍କ ପ୍ରତି କାମନା ଉତ୍ପନ୍ନ ହୋଇଗଲା । ଭଗବାନ କହିଲେ, "ପର ଜନ୍ମରେ" । ସେମାନେ ସମସ୍ତେ ଗୋପୀ ହୋଇ ଆସିଲେ ଏବଂ ଭଗବାନଙ୍କର ପତ୍ନୀ ହେଲେ । ସେ କୋଶଳ ରାଜ୍ୟକୁ ଗଲେ । ସେଠାରେ ମଧ ସ୍ତ୍ରୀମାନେ ମୋହିତ ହୋଇଗଲେ । ଦେଖନ୍ତୁ, ରାମଜୀଙ୍କ ଉପରେ ସମସ୍ତେ ମୋହିତ ହେଉଥିଲେ ।

କେବଳ ଏତିକି ନୁହେଁ, ଭଗବାନ ଶ୍ରୀ ରାମଚନ୍ଦ୍ରଜୀ, ସୀତାଙ୍କୁ ପରିତ୍ୟାଗ କଲେ ସୀତାଜୀଙ୍କର ସୁବର୍ଣ୍ଣ ମୂର୍ତ୍ତି ତିଆରି କରାଇଥିଲେ । ସୀତାଜୀଙ୍କର ବହୁତ ମୂର୍ତ୍ତି ହୋଇଯାଇଥିଲା । ଦିନେ ଭଗବାନ ଶ୍ରୀରାମଚନ୍ଦ୍ର ଦେଖିଲେ ଯେ ସମସ୍ତ ମୂର୍ତ୍ତି କହୁଛନ୍ତି

– ଆମେ କ'ଣ ମୂର୍ତ୍ତି ରୂପରେ ହିଁ ରହିବା ? ଆମକୁ ଆପଣଙ୍କ ସହଯୋଗ, ସହବାସ କେବେ ମିଳିବ ନାହିଁ ? ଭଗବାନ କହିଲେ, "ପର ଜନ୍ମରେ।"

ଭିନ୍ନ-ଭିନ୍ନ ପ୍ରକାରରେ ସେମାନେ ସମସ୍ତେ କୃଷ୍ଣାବତାର ସମୟୋର ଆସିଲେ । ସେଥିପାଇଁ ସେଥିରେ ଭଗବାନଙ୍କର ଏତେଗୁଡ଼ିକ ବିବାହ ଦୃଷ୍ଟିଗୋଚର ହୋଇଥାଏ । ଏହି କାରଣରୁ ସେ ନିଜର ପୂର୍ଣ୍ଣ ଐଶ୍ୱର୍ଯ୍ୟକୁ ପ୍ରକଟ କଲେ । କୃଷ୍ଣାବତାରରେ ସେ ଈଶ୍ୱର ରୂପରେ ଆସିଥିଲେ । ତେଣୁ କୃଷ୍ଣାବତାରରେ ଭଗବାନ କେତେ ଲୋକଙ୍କର କେତେ ପ୍ରକାର ଇଚ୍ଛାକୁ ପୂର୍ଣ୍ଣ କରିଛନ୍ତି, ଜଣାନାହିଁ, ଯାହା ସବୁ ସେ ରାମାବତାରରେ କରିପାରି ନ ଥିଲେ । କାରଣ ସେତେବେଳେ ତାଙ୍କର ଭିନ୍ନ-ଭିନ୍ନ ପ୍ରକାର ବ୍ରତ ଥିଲା ।

ଶ୍ରୀ କୃଷ୍ଣ ଅବତାର ହେଉଛି ପୂର୍ଣ୍ଣ ଅବତାର ରାମାବତାର ମଧ୍ୟ ପୂର୍ଣ୍ଣାବତାର ଅଟେ, ଏହା ଆମେ ଦେଖି ସାରିଛନ୍ତି । ଶ୍ରୀ ରାମଚନ୍ଦ୍ର ଜୀ ସୂର୍ଯ୍ୟବଂଶରେ ପ୍ରକଟ ହୋଇଥିଲେ । ବାର କଳାରେ ହୋଇଥିବା କାରଣରୁ ସୂର୍ଯ୍ୟଙ୍କୁ ଦ୍ୱାଦଶ-ଆତ୍ମା କହନ୍ତି । ତେଣୁ ଭଗବାନ ଦ୍ୱାଦଶ କଳାରେ ପ୍ରକଟ ହୋଇଛନ୍ତି । ଚନ୍ଦ୍ରଙ୍କର ଷୋହଳ କଳା, ସେଥିପାଇଁ କୃଷ୍ଣାବତାରରେ ଭଗବାନଙ୍କର ଷୋହଳ କଳା ହୋଇଥାଏ । ତେବେ ଦୁହେଁ ହିଁ ନିଜ ନିଜ ବଂଶରେ ପୂର୍ଣ୍ଣ ଅବତାର ଅଟନ୍ତି । ଯେତେବେଳେ ମାନବ ରୂପରେ (ଶ୍ରୀରାମ ରୂପରେ) ଆସିଲେ, ସେତେବେଳେ ସେ ମାନବୋଚିତ ଚରିତ୍ର-ଲୀଳା ହିଁ କଲେ । ପରନ୍ତୁ ଭଗବାନ ଶ୍ରୀକୃଷ୍ଣଙ୍କ ଜୀବନରେ ଆପଣ ଅନେକ ପ୍ରକାର ବିଚିତ୍ରତା ଦେଖିବେ । ସେ ସବୁ ଶ୍ରୀରାମଚନ୍ଦ୍ର ଜୀଙ୍କ ଜୀବନରେ କେଉଁଠାରେ ମଧ୍ୟ ଦେଖିବାକୁ ମିଳେ ନାହିଁ । ବିଶେଷ କରି ଗୋପୀମାନଙ୍କ ସହିତ ତାଙ୍କର ରାସ, ସହସ୍ର ସ୍ତ୍ରୀମାନଙ୍କ ସହିତ ତାଙ୍କର ବିବାହ, ଏ ସମସ୍ତ ଏପରି ଘଟଣା ଯେ, ଯାହାକି ଆମ ପାଇଁ ତୁରନ୍ତ ବୁଝି ହୁଏ ନାହିଁ, କିନ୍ତୁ ଆମେ ଦେଖିଛୁ ଯେ ଏହିସବୁ ପ୍ରସଙ୍ଗର କାରଣ ମଧ୍ୟ ପୂର୍ବ-ପୂର୍ବରୁ ରହିଛି । ଈଶ୍ୱରଙ୍କ ସ୍ୱଭାବ ହେଉଛି ଜୀବର ଇଚ୍ଛାକୁ ପୂର୍ଣ୍ଣ କରିବା । ଜୀବର ପରମ-ପୁରୁଷାର୍ଥ କ'ଣ ? ଶେଷରେ କେବଳ ପରମାତ୍ମା ପ୍ରାପ୍ତି ହିଁ ପରମ ପୁରୁଷାର୍ଥ ଅଟେ । ସେଥିପାଇ ସେ ସମସ୍ତଙ୍କୁ ପରମାତ୍ମା-ପ୍ରାପ୍ତି ହେଉଛି । ଏହା ହେଲା ଅବତାରର ପ୍ରୟୋଜନ।

ଏବେ ସଂକ୍ଷେପରେ ଅବତାରର ଆଧାତ୍ମିକ ଭାବକୁ ଦେଖିବା । ଦେଖନ୍ତୁ, ସଚ୍ଚିଦାନନ୍ଦ ପରମାତ୍ମା ଆମ ସମସ୍ତଙ୍କ ହୃଦୟରେ ବିରାଜମାନ । ସେ ଆମ ସମସ୍ତଙ୍କର ସ୍ୱରୂପ ଅଟନ୍ତି । କିନ୍ତୁ, ଆମେ ଦୁଃଖ ତଥାପି ମଧ୍ୟ ଦୂର ହୁଏ ନାହିଁ । ଆମେ ଆନନ୍ଦାତ୍ମା ତ ଅଟୁ ଏବଂ ବଡ଼ ଉପନିଷଦର ପାଠ ମଧ୍ୟ କରୁଥାଉ ଯେ-

**ଆନନ୍ଦାଦ୍ଧ୍ୟେବ ଖଲ୍ୱିମାନି ଭୂତାନି ଜାୟନ୍ତେ**
**ଆନନ୍ଦେନ ଜାତାନି ଜୀବନ୍ତି**
**ଆନନ୍ଦଂ ପ୍ରୟନ୍ତ୍ୟଭିସଂବିଶନ୍ତୀତି ॥ (ତୈ.ଉପ-୩.୬.୧)**

ଏବେ ଦେଖନ୍ତୁ, ଆତ୍ମା ଆନନ୍ଦ ସ୍ୱରୂପ ଅଟେ, ବ୍ରହ୍ମ ସ୍ୱରୂପ ଅଟେ, କିନ୍ତୁ ତଥାପି ଆମ୍ଭମାନଙ୍କର ଆନନ୍ଦର ଅନୁଭବ ହୋଇପାରୁ ନାହିଁ । କୁହାଯାଏ – ସେହି ଆନନ୍ଦ ହେଉଛି ଅବ୍ୟକ୍ତ । ତାକୁ ବ୍ୟକ୍ତ ହେବାକୁ ପଡ଼ିବ, ଅବତାର ନେବାକୁ ପଡ଼ିବ । ସେହି ଅବତାର କିଭଳି ହେବ ? ଯେତେବେଳେ ଗୁରୁ ତତ୍ତ୍ୱମସି ମହାବାକ୍ୟର ଉପଦେଶ କରନ୍ତି, ଆରେ ! ସେହି ବ୍ରହ୍ମ ତୁମେ ନିଜେ ହିଁ ଅଟ ! ଏଇଭଳି ଉପଦେଶ କରିବା ସମୟରେ ସେହି ବୃତ୍ତିରେ ଯେଉଁ ଚୈତନ୍ୟ ଆରୂଢ଼ ହୋଇଥାଏ, ତାହା ହିଁ ଭଗବାନଙ୍କର ଅବତାର । ଏହି ଅଧ୍ୟାତ୍ମ ଅବତାର ଯେତେବେଳେ ପ୍ରକଟ ହୋଇଯାଏ, ସେତେବେଳେ ଆମର ଅବିଦ୍ୟା ଗ୍ରନ୍ଥି ଏବଂ ଅବିଦ୍ୟାର ଯେତେ ଉପଦ୍ରବ ଥାଏ, ସେ ସମସ୍ତକୁ ନଷ୍ଟ କରି ପକାଏ ।

ଏପରି ତ ସର୍ବଜ୍ଞ ସର୍ବଶକ୍ତିମାନ ଭଗବାନ ସମ ରହିଥାନ୍ତି, କାହାର ପକ୍ଷ ନିଅନ୍ତି ନାହିଁ । କିନ୍ତୁ ଯେତେବେଳେ କେହି ତାଙ୍କୁ ଏକ ବିଶେଷ ରୂପରେ ପ୍ରକଟ କରାଇଥାଏ – ଯେପରି ଶ୍ରୀକୃଷ୍ଣ ରୂପରେ, ସେତେବେଳେ ସେ ନିଜ ଭକ୍ତର ପକ୍ଷପାତ ମଧ୍ୟ କରିବାକୁ ଲାଗନ୍ତି । ଅନ୍ୟଥା, ବିଷ୍ଣୁ ଭଗବାନଙ୍କ ରୂପରେ ସେ ତ ଶେଷ ଶଯ୍ୟାରେ ଶୟନ କରିଥାଆନ୍ତି, ନା କାହା ପ୍ରତି ରାଗ କରନ୍ତି, ନା କାହା ପ୍ରତି ଦ୍ୱେଷ, ନା କାହା ପ୍ରତି ଆସକ୍ତ ହୁଅନ୍ତି, ନା ଆଉ କିଛି କରନ୍ତି । ତେଣୁ ସେଠାରୁ ଭଗବାନଙ୍କୁ ଏଠାକୁ ଆଣିବାକୁ ପଡ଼ିଥାଏ । ଜୀବମାନେ ଏପରି ଯେ ସବୁବେଳେ ଦୁଃଖୀ ହୋଇ ରହିଥାଆନ୍ତି, କାରଣ ଏମାନଙ୍କ ଭିତରେ ଇଚ୍ଛା ବହୁତ ଥାଏ, କିନ୍ତୁ ତାକୁ ପୂର୍ଣ୍ଣ କରିବାକୁ ଶକ୍ତି ଏମାନଙ୍କ ପାଖରେ ନାହିଁ । ଭଗବାନଙ୍କଠାରେ ଦୁଃଖ ମଧ୍ୟ ନାହିଁ ଏବଂ ଇଚ୍ଛା ପୂର୍ଣ୍ଣ କରିବାର ଶକ୍ତି ମଧ୍ୟ ଅଛି । କିନ୍ତୁ ତାଙ୍କର କୌଣସି ଇଚ୍ଛା ନାହିଁ । ଦେଖନ୍ତୁ, ଜଣକ ଠାରେ ସାମର୍ଥ୍ୟ ଅଛି କିନ୍ତୁ ଇଚ୍ଛା ନାହିଁ । ଅନ୍ୟ ପାଖରେ ଇଚ୍ଛା ଅଛି ତ ସାମର୍ଥ୍ୟ ନାହିଁ । ପୁଣି କଣ କରିବା ? ତେବେ ନିଜ ଇଚ୍ଛାକୁ ଭଗବାନଙ୍କଠାରେ ନ୍ୟସ୍ତ କରିଦିଅ ଅଥବା ଭଗବାନଙ୍କଠାରୁ ସାମର୍ଥ୍ୟ ପ୍ରାପ୍ତ କରିଦିଅ । ଦୁଇଟି ମଧ୍ୟରୁ ଗୋଟିଏ କାର୍ଯ୍ୟ କରିବାକୁ ପଡ଼ିବ । ଏବେ ଭଗବାନଙ୍କର ସାମର୍ଥ୍ୟ କ'ଣ ପ୍ରାପ୍ତ କରିବା ? ସବୁଠାରୁ ଶ୍ରେଷ୍ଠ ହେଉଛି ଯେ ନିଜର ଇଚ୍ଛାକୁ ଭଗବାନଙ୍କୁ ସମର୍ପି ଦେବା । ଭଗବାନ ! ମୋତେ ଦୁଃଖ ହେଉଛି, ଆପଣ ମଧ୍ୟ

ଟିକିଏ ଦୁଃଖୀ ହୋଇଯାଆନ୍ତୁ । ଆମ ଦୁଃଖରେ ଭଗବାନ ଯେତେବେଳେ ଦୁଃଖୀ ହୋଇଯାଆନ୍ତି, ତେବେ ଆମର ସେହି ଦୁଃଖକୁ ଦୂର କରିବା ନିମନ୍ତେ ସେ ପ୍ରକଟ ହୋଇଯାଆନ୍ତି, କାହିଁକି ନା ତାଙ୍କଠାରେ ଦୁଃଖ ଦୂର କରିବାର ଶକ୍ତି ଅଛ । ଏହା ହିଁ ହେଉଛି ଭଗବାନଙ୍କର ପ୍ରାକଟ୍ୟ । ଏତିକି ପ୍ରସ୍ତାବନା ପରେ ଏବେ ଶ୍ରୀକୃଷ୍ଣ ଅବତାରରେ ପ୍ରବେଶ କରିବା ।

**ଅବତୀର୍ୟ ଯଦୋର୍ବଂଶେ ଭଗବାନ ଭୂତଭାବନଃ**

**କୃତବାନ୍ ଯାନି ବିଶ୍ୱାତ୍ମା ତାନି ନୋ ବଦ ବିସ୍ତରାତ୍ ॥ (୧୦/୧/୩)**

ରାଜା ପରୀକ୍ଷିତ ଶୁକଦେବ ଜୀଙ୍କୁ କହୁଛନ୍ତି – ଆପଣ ସମସ୍ତ ରାଜାମାନଙ୍କର ବଂଶର ବର୍ଣ୍ଣନ କଲେ । ସମସ୍ତ କଥାକୁ ଆପଣ ସଂକ୍ଷେପରେ ଶୁଣାଇଲେ, ତାହା ତ ଠିକ ଅଛି । ପରନ୍ତୁ ଯଦୁବଂଶରେ ଭଗବାନ ଭୂତ-ଭାବନ ବିଶ୍ୱାତ୍ମା ପ୍ରକଟ ହୋଇଥିଲେ, ତାଙ୍କ କଥା ଆପଣ ବିସ୍ତୃତ ରୂପେ ଶୁଣାନ୍ତୁ । ଏପରି କାହିଁକି ? କାରଣ ଇଏ ସେହି ଭଗବାନ ଶ୍ରୀକୃଷ୍ଣ, ଯେ କି ଗର୍ଭରେ ତାଙ୍କର ରକ୍ଷା କରିଥିଲେ । ଭଗବାନ ଶ୍ରୀକୃଷ୍ଣଙ୍କର ଅନୁଗ୍ରହ ସର୍ବଦା ତାଙ୍କ ବଂଶ ଉପରେ ରହିଥିଲା । ସେଠାରେ ଭଗବାନ ତାଙ୍କର ସେବା କାର୍ଯ୍ୟ ମଧ୍ୟ କରିଥିଲେ । କହୁଛନ୍ତି –

**କ ଉତ୍ତମଶ୍ଳୋକଗୁଣାନୁବାଦାତ୍**

**ପୁମାନ ବିରଜ୍ୟେତ ବିନା ପଶୁଘ୍ନାତ୍ ॥ (୧୦.୧.୪)**

ପଶୁକୁ ହତ୍ୟା କରୁଥିବା ବ୍ୟକ୍ତି ବ୍ୟତିରେକେ ଏପରି କେଉଁ ବ୍ୟକ୍ତି ଥିବ ଯାହାକୁ ଭଗବତ୍ କଥାରେ ରସ ଆସିବ ନାହିଁ ଏବଂ ସେ ଏହି କଥାକୁ ଶୁଣିବାକୁ ନ ଋହିଁବ ?

**ପ୍ରୟଚ୍ଛତୋ ମୃତ୍ୟୁମୁତାମୃତଂ ଚ**

**ମାୟା ମନୁଷ୍ୟସ୍ୟ ବଦସ୍ୱ ବିଦ୍ୱନ୍ ॥ (୧୦.୧.୭)**

ମାୟାଦ୍ୱାରା ଯେ ମନୁଷ୍ୟ ରୂପରେ ଏଠାକୁ ଆସିଛନ୍ତି, ସେହି ଭଗବାନଙ୍କର ଚରିତ୍ର ଆପଣ ବିସ୍ତାର ପୂର୍ବକ ଶୁଣାନ୍ତୁ । ମୁଁ ଶୁଣିବା ପାଇଁ ଆତୁର ।

**ନୈଷାତିଦୁଃସହା କ୍ଷୁନ୍ମାଂ ତ୍ୟକ୍ତୋଦମପି ବାଧତେ ।**
**ପିବନ୍ତଂ ତ୍ୱନ୍ମୁଖାମ୍ଭୋଜଚ୍ୟୁତଂ ହରି କଥାମୃତମ୍ ॥ (୧୦.୧.୧୩)**

ଆପଣଙ୍କର ମୁଖ ନିଃସୃତ ଏହି ଭାଗବତ କଥାମୃତକୁ ପାନ କରି ମୋତେ ଭୋକ ଏବଂ ଶୋଷ ଆଦୌ ଅସୁବିଧା କଷ୍ଟ ଦେଉ ନାହିଁ । ମୁଁ ଥକିବାବାଲା ମଧ ନୁହେଁ, ଆପଣ ବିସ୍ତୃତ ରୂପେ ଶୁଣାନ୍ତୁ । ଏପରି କଥା ଯେତେବେଳେ ପରୀକ୍ଷିତଙ୍କ ମୁଖରୁ ଶୁଣିଲେ, ସେତେବେଳେ ଭଗବାନ ଶୁକଦେବଜୀ କହୁଛନ୍ତି - ଆରେ ରାଜର୍ଷି **"ସମ୍ୟକ ବ୍ୟବସିତା ବୁଦ୍ଧି ତବ'** ତୁମ୍ଭର ବୁଦ୍ଧି ଅତି ଉତ୍ତମ ଅଟେ । କାରଣ ଭଗବାନଙ୍କ କଥାରେ ତୁମର ଏପରି ନୈଷ୍ଠିକ ରତି ହୋଇଗଲାଣି । ଏଠାରେ ସେ ଏକ ବହୁତ ଭଲ କଥା କହିଲେ ଯେ "ବାସୁଦେବକଥା ପ୍ରଶ୍ନଃ' ଭଗବତ୍ କଥା ସମ୍ବନ୍ଧରେ ଯେଉଁ ପ୍ରଶ୍ନ ଅଛି, ତାହା ସମସ୍ତ ପୁରୁଷଙ୍କୁ, ସ୍ତ୍ରୀମାନଙ୍କୁ, **"ବକ୍ତାର ପୃଚ୍ଛକଂ'** ବକ୍ତାକୁ, ପ୍ରଶ୍ନ ପଚାରିବା ବ୍ୟକ୍ତିକୁ, ଶ୍ରୋତାମାନଙ୍କୁ, ସମସ୍ତଙ୍କୁ ସେହିଭଳି ପବିତ୍ର କରିଥାଏ, - **"ତତ୍ପାଦ ସଲିଳଂ ଯଥା'** ଯେଉଁଭଳି ଭଗବାନଙ୍କ ଚରଣରୁ ବାହାରିଥିବା ଗଙ୍ଗାଜୀ ସମସ୍ତଙ୍କୁ ପବିତ୍ର କରିଥାଏ । ଭଗବତ୍ କଥାର ମହିମା ତ ତାଠାରୁ ମଧ୍ୟ ଅଧିକ, କାରଣ ଏହା ହେଉଛି ଭଗବଦ୍ ଧର୍ମର କଥା । ତାହା କୌଣସି ସାମାନ୍ୟ ଧର୍ମ ନୁହେଁ, ଯାହା ଆମର ସ୍ୱଭାବରେ ଯତ୍କିଂଚିତ୍ ପରିବର୍ତ୍ତନ ଆଣିପାରିବ ଅଥବା ପାପକୁ କେବଳ କ୍ଷୀଣ କରିବ । ସେ ତ ପାପକୁ ସମ୍ପୂର୍ଣ୍ଣ ନଷ୍ଟ କରି ଭଗବାନଙ୍କଠାରେ ନୈଷ୍ଠିକୀ ରତି ଉତ୍ପନ୍ନ କରାଇ ଦେଇଥାଏ ।

ଏବେ ଭଗବାନ ଶୁକଦେବଜୀ ସିଧା କଥା ଭିତରେ ପ୍ରବେଶ କରୁଛନ୍ତି । ଆପଣ ଭଗବାନ ଶ୍ରୀକୃଷ୍ଣଜୀଙ୍କର କଥା, ଲୀଳା ଅନେକ ପଢ଼ିଥିବେ ଏବଂ ଶୁଣିଥିବେନ୍ତ ଯାହାକୁ ବକ୍ତାମାନେ ଭାଗବତ ସପ୍ତାହ ଆଦିରେ ବର୍ଣ୍ଣନ କରନ୍ତି । ଆପଣମାନଙ୍କୁ ମୁଁ ପ୍ରଥମରୁ କହିଦେଉଛି ଯେ ଏଠାରେ ଆମେ ପ୍ରାୟ ସେହି ପ୍ରସଙ୍ଗକୁ ଦେଖିବା ଯାହା ଭାଗବତରେ ବର୍ଣ୍ଣନ ହୋଇଛି । ପ୍ରବଚନରେ କଥାକାରମାନେ ଅନ୍ୟ ପୁରାଣ ଏବଂ ଗ୍ରନ୍ଥରୁ ଅନେକ କାହାଣୀ କହିଥାନ୍ତି ଯାହା ଆମକୁ ଭାଗବତରେ ଦେଖିବାକୁ ମିଳେ ନାହିଁ । ଅନେକ ପ୍ରକାରର ଭାବଯୁକ୍ତ, ରସପୂର୍ଣ୍ଣ କଥାସବୁ ଗର୍ଗ ସଂହିତାରେ ବ୍ରହ୍ମବୈବର୍ତ୍ତ ପୁରାଣରେ, ବ୍ରହ୍ମାଣ୍ଡ ପୁରାଣରେ ଏବଂ ପଦ୍ମପୁରାଣରେ ଅଛି । ଅନ୍ୟ ପୁରାଣରେ ମଧ ଅନେକ କଥା ସବୁ ଅଛି, କିନ୍ତୁ ଆମେ କେବଳ ଭାଗବତ କଥାକୁ ହିଁ ସମ୍ବନ୍ଧ ରଖିବା ।

## ଭଗବାନଙ୍କ ଦ୍ୱାରା ପୃଥ୍ୱୀର କଷ୍ଟ ନିବାରଣର ଆଶ୍ୱାସନ

ଶୁକଦେବ ଜୀ କହୁଛନ୍ତି - ପୃଥ୍ୱୀରେ ଯେତେବେଳେ ଅସୁରମାନଙ୍କର ଭାର ବହୁତ ବଢ଼ିଗଲା, କଂସ ତଥା ତାର ଅନେକ ସାଥିମାନଙ୍କର ପୃଥ୍ୱୀରେ ଅତ୍ୟାଚର ବଢ଼ିଗଲା, ସେତେବେଳେ ପୃଥ୍ୱୀ ଅତି ବ୍ୟାକୁଳ ହୋଇଗଲା । ପୃଥ୍ୱୀ କହୁଛି - ମୋ ଉପରେ ପର୍ବତ, ଜଙ୍ଗଲ, ସମୁଦ୍ର ଆଦି ସମସ୍ତ ଅଛନ୍ତି, ଏ ସମସ୍ତ ମୋତେ ଓଜନ ଲାଗୁ ନାହିଁ, କିନ୍ତୁ ଯେ ପାପକର୍ମ କରିବା ବାଲା, ସେମାନଙ୍କୁ ମୋତେ ଖୁବ ଭାରୀ ଲାଗୁଛି । ଗାଈର ରୂପ ଧାରଣ କରି ସେ ବ୍ରହ୍ମାଜୀଙ୍କ ନିକଟକୁ ଯାଉଛି । ପୃଥ୍ୱୀର ଅର୍ଥ ହେଉଛି ପୃଥ୍ୱୀର ଯେ ଅଧିଷ୍ଠାତ୍ରୀ ଦେବୀ, ପୃଥ୍ୱୀ ଦେବୀ ଅଟନ୍ତି, ସେ ଗାଈ ରୂପନେଇ ବ୍ରାହ୍ମାଜୀଙ୍କ ପାଖକୁ ଯାଉଛନ୍ତି । ବ୍ରହ୍ମାଜୀ ସମସ୍ତ ଦେବତାମାନଙ୍କୁ ଏବଂ ଶିବଜୀଙ୍କୁ ନେଇ କ୍ଷୀର ସାଗରରେ ନିବାସ କରୁଥିବା ଜଗନ୍ନାଥ ଭଗବାନ ନାରାୟଣଙ୍କ ନିକଟକୁ ଯାଉଛନ୍ତି । ତାଙ୍କୁ ପ୍ରାର୍ଥନା କରୁଛନ୍ତି ଏବଂ ପୁରୁଷସୂକ୍ତ ଦ୍ୱାରା ତାଙ୍କ ପ୍ରସନ୍ନ କରୁଛନ୍ତି । ସମାଧିରେ ଭଗବାନ ତାଙ୍କୁ ଯାହା କହୁଛନ୍ତି, ତାକୁ ହିଁ ବ୍ରହ୍ମାଜୀ ସମସ୍ତ ଦେବତାମାନଙ୍କୁ କହୁଛନ୍ତି ।

**ଗାଂ ପୌରୁଷୀଂ ମେ ଶୃଣୁତାମରାଃ ପୁନ -**
**ର୍ବିଧୀୟତମାଶୁ ତଥୈବ ମା ଚିରମ୍ ॥ (୧୦.୧.୨୧)**

ବ୍ରହ୍ମାଜୀ କହୁଛନ୍ତି ଯେ ଭଗବାନ କହିଲେ - "ପୁରୈବ ପୁଂସାବଧୃତୋଧରାଜ୍ୱରେ ।' ପୃଥ୍ୱୀର ସନ୍ତାପ ମୋତେ ପୂର୍ବରୁ ହିଁ ଜଣାଅଛି । ମୁଁ ତାଙ୍କର ଦୁଃଖ ଦୂର କରିବା ନିମନ୍ତେ ଅତି ଶିଘ୍ର ପ୍ରକଟ ହେବି । ତେବେ ଭଗବାନ ଯଦୁବଂଶରେ ପ୍ରକଟ ହେବେ ଏବଂ ସେ ସମସ୍ତ ଅସୁରମାନଙ୍କୁ ସଂହାର କରିବେ, ସେଥିପାଇଁ ବ୍ରହ୍ମାଜୀ ଦେବତାମାନଙ୍କୁ କହୁଛନ୍ତି, "ତୁମେ ସମସ୍ତେ ମଧ୍ୟ ନିଜ-ନିଜର ଅଂଶରେ ଯଦୁବଂଶରେ ଜନ୍ମ ନେଇ ଭଗବାନଙ୍କ ଲୀଳାରେ ସହଯୋଗ କରିବ ।" ପୁଣି କହୁଛନ୍ତି -

**ବସୁଦେବଗୃହେ ସାକ୍ଷାତ୍ ଭଗବାନ ପୁରୁଷଃ ପରଃ ॥ (୧୦.୧.୨୩)**

ବସୁଦେବଜୀଙ୍କ ଘରେ ସାକ୍ଷାତ ପରମ ପୁରୁଷ ପ୍ରକଟ ହେବେ । ତାଙ୍କର ପ୍ରିୟକାର୍ଯ୍ୟ ନିମନ୍ତେ ଦେବତାମାନଙ୍କର ସ୍ତ୍ରୀମାନେ ମଧ୍ୟ ନିଜ-ନିଜର ଅଂଶରେ ପୃଥ୍ୱୀ ଲୋକରେ ପ୍ରକଟ ହୋଇଗଲେ । ସେଥିପାଇଁ ବହୁତ ଦେବୀ-ଦେବତା ଅନେକ ସ୍ଥାନରେ ପ୍ରକଟ ହୋଇଗଲେ । କେହି ମଥୁରାରେ ପ୍ରକଟ ହେଲେ ତ, କେହି ଗୋକୁଳ-ବୃନ୍ଦାବନରେ । ଆମେ ଦେଖିଛନ୍ତି ଯେ ଭଗବାନ ରାମଚନ୍ଦ୍ରଙ୍କୁ ଦେଖି କେତେ ଋଷି, ମୁନି

ମଧ୍ୟ ମୁଗ୍ଧ ହୋଇଯାଇଥିଲେ, ସେମାନେ ମଧ୍ୟ ଗୋପିମାନଙ୍କ ରୂପରେ ପ୍ରକଟ ହେଲେ । ଜନକ ପୁରୀରେ ସ୍ତ୍ରୀମାନେ ମଧ୍ୟ ଗୋପି ହୋଇ ଆସିଗଲେ । ଯେତେ ଶ୍ରୁତି-ବେଦମନ୍ତ୍ର ଅଛି, ସେମାନେ ସମସ୍ତେ ମଧ୍ୟ ଗୋପିକା ହୋଇ ଆସିଗଲେ, ଜଣାନାହିଁ କେତେ ଲୋକ ଆସିଗଲେ । ଭଗବାନ ଏହା ମଧ୍ୟ କହିଲେ ଯେ ଶେଷ ଭଗବାନ ମଧ୍ୟ ମୋର ଭାଇ ହୋଇ ଆସିବେ । ଶେଷ ଭଗବାନ, ଭଗବାନ ବିଷ୍ଣୁଜୀଙ୍କୁ କହିଲେ ଯେ ରାମ ଅବତାରରେ ଆପଣ ବଡ଼ ଭାଇ ହୋଇଥିଲେ, ମୁଁ ଛୋଟ ହୋଇଥିଲି, ତେଣୁ ମୋତେ ବହୁତ ସେବା କରିବାକୁ ପଡ଼ିଲା ବହୁତ ଧାଆଁ-ଦଉଡ଼ କରିବାକୁ ପଡ଼ିଲା । ମୁଁ ଯାହା କରିବାକୁ ଚାହୁଁଥିଲି ତାହା କେବେହେଲେ କରିପାରୁନଥିଲି, ଆପଣ ମୋତେ ଶାସନ କରି ଚୁପ୍ କରାଇ ଦେଉଥିଲେ । ଏଥର ମୁଁ ଛୋଟ ଭାଇ ହେବି ନାହିଁ । ଭଗବାନ କହିଲେ - ଆଚ୍ଛା, ଏଥର ତୁମେ ବଡ଼ ଭାଇ ହୋଇଯାଅ । ଦେଖନ୍ତୁ ସମସ୍ତଙ୍କ ଇଚ୍ଛାକୁ ପୂର୍ଣ୍ଣ କରୁଛନ୍ତି । କହୁଛନ୍ତି -

**ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂସ୍ତଥୈବ ଭଜାମ୍ୟହମ୍ । (ଭ.ଗୀତା-୪.୧୧)**

ତୁମେ ବଡ଼ ଭାଇ ହେବ, ସେତେବେଳେ ତୁମେ ମୋତେ ଶାସନ କରିପାରିବ। ସେଥିପାଇଁ ଆପଣ ଦେଖିବେ ଅନେକ ଥର ବଳରାମ ଜୀ ଶ୍ରୀକଷ୍ଣେଜୀଙ୍କୁ ବଡ଼ ଭାଇର ବ୍ୟବହାର ଦେଖାଇଥାଆନ୍ତି । କିନ୍ତୁ ତଥାପି ମଧ୍ୟ, ଯେତେବେଳେ କିଛି କରିବାର ସମୟ ଆସୁଥିଲା, ସେତେବେଳେ ସେ ଶ୍ରୀକୃଷ୍ଣଜୀଙ୍କର କଥା ମନୁଥିଲେ । କଥା ହେଉଛି ଯେ ଭଗବାନ ଛୋଟ ହୁଅନ୍ତୁ ବା ବଡ଼ ହୁଅନ୍ତୁ, ସେ ହିଁ ବଡ଼ ହୋଇ ରହିଥାଆନ୍ତି । ପୁଣି ଭଗବାନ କହିଲେ ଯେ ମୋର ମାୟା ପ୍ରକଟ ହେବାକୁ ଯାଉଛି - ରୁକ୍ମିଣୀ ରୂପେ । ଲକ୍ଷ୍ମୀଜୀ କହିଲେ ଯେ ମୁଁ ଯେତେବେଳେ ସୀତା ହୋଇ ଆସିଥିଲି ସେତେବେଳେ ମୋତେ ଖୁବ କଷ୍ଟ ହୋଇଥିଲା । ଏଥର ମୁଁ ମହଲରୁ ବାହାରକୁ ମଧ୍ୟ ବାହାରିବି ନାହିଁ। ଭଗବାନ କହିଲେ - ଆଚ୍ଛା, ଏଥର ତୁମେ ମହଲରେ ହିଁ ରହିବ । କହିଲେ ବାହାରକୁ ଯିବାଦ୍ୱାରା ହିଁ ଗୋଳମାଳ ହୋଇଯାଉଛି । ସେଥିପାଇଁ ଏଠାରେ ରୁକ୍ମଣୀଜୀଙ୍କର ଅଧିକ କିଛି ଭୂମିକା ଦେଖାଯାଏ ନାହିଁ । ରାମାୟଣରେ ତ ସୀତାଜୀ ପ୍ରମୁଖ ପାତ୍ର ଅଟନ୍ତି, ସେପରି ଏଠାରେ ନୁହେଁ । ସେଠାରେ ଲକ୍ଷ୍ମଣଜୀଙ୍କର ଯେପରି ସ୍ୱଭାବ ଦେଖିବାକୁ ମିଳୁଥିଲା, ସେପରି ଏଠାରେ ବଳରାମଜୀଙ୍କର ନୁହେଁ ।

ଶ୍ରୀରାମ-ଅବତାରରେ ତ ଭଗବାନ ଶାନ୍ତ ଥିଲେ, କିନ୍ତୁ ଶ୍ରୀକୃଷ୍ଣ-ଅବତାରରେ ସେ ଅଧିକ ଚଞ୍ଚଳ ହୋଇଗଲେ । ଧରି ନିଆଯାଉ ସେ ସବୁ ବିଷୟ ଯେପରି ସୁଝାଉଥିଲେ।

ସେଠାରେ ଭୋକ ହେଲେ ମଧ ମାଖନ୍ ମାଗୁନଥିଲେ, କାରଣ ସେ ସମୟରେ ମଧ ମାଖନ ତାଙ୍କୁ ଭଲ ଲାଗୁଥିଲା । ଏଠାରେ ଘରେ ଘରେ ପଶି ଚୋରାଇ-ଚୋରାଇ ଖାଇବାକୁ ଲାଗିଲେ । ରାମଚନ୍ଦ୍ର ଜୀଙ୍କ ରୂପରେ ମଧ ଭଗବାନ ଗାଈମାନଙ୍କର ସେବା କରିବାକୁ ଚାହୁଁଥିଲେ, କିନ୍ତୁ ରାଜା ହୋଇଥିବାରୁ ତାଙ୍କୁ ସେବା କରିବାର କୌଣସି ସୁଯୋଗ ମିଳି ନ ଥିଲା । ଗାଈମାନଙ୍କୁ ପୂଜା କରିବାକୁ ଅବସର ତ ମିଳିଲା, କିନ୍ତୁ ସେବା କରିବାକୁ ଅବସର ମିଳି ନ ଥିଲା । ଶ୍ରୀକୃଷ୍ଣ ଅବତାରରେ ଦେଖନ୍ତୁ, ଗାଈବାଛୁରୀମାନଙ୍କର କେତେ ସେବା କଲେ । ସେ ସମସ୍ତ ଗାଈ ଏପରି ଥିଲେ ଯେ ଭଗବାନଙ୍କୁ ଦେଖିବା କ୍ଷଣି ସେମାନଙ୍କ ସ୍ତନରୁ ଏପରି ଝର ବାହାରୁଥିଲା ଯେ ତାହା ସିଧା ଭଗବାନଙ୍କର ମୁଖ ଭିତରକୁ ଯାଉଥିଲା । ଭଗବାନ ସିଧା ତାଙ୍କ ସ୍ତନରୁ ଦୁଧ ପିଉଥିଲେ । ଯାହା ରାମ - ଅବତାରରେ କରିପାରି ନ ଥିଲେ, ସେ ସମସ୍ତ ଶ୍ରୀକୃଷ୍ଣ ଅବତାରରେ କରି ନେଲେ । ଏହିପରି ହେଉଛନ୍ତି ଶ୍ରୀକୃଷ୍ଣ ଭଗବାନ ।

ଶୁକଦେବ ଜୀ କହୁଛନ୍ତି ଯେ ବ୍ରହ୍ମାଜୀଙ୍କର କଥା ଶୁଣିଲା ପରେ ସମସ୍ତେ ନିଜ-ନିଜ ସ୍ଥାନକୁ ଚାଲିଗଲେ । ତା ପରେ ଭଗବାନଙ୍କର ଲୀଳାରେ ଭାଗ ନେବା ନିମନ୍ତେ ସମସ୍ତେ ଅବତାର ନେଉଛନ୍ତି । ଅନ୍ୟତ୍ର ବର୍ଣ୍ଣନ ଆସେ ଯେ ସମ୍ପୂର୍ଣ୍ଣ ଗୋଲକ ମଧ ଏହି ଧରାଧାମକୁ ଆସୁଛନ୍ତି । ବୃନ୍ଦାବନ, କଦମ୍ବ ବୃକ୍ଷ, ଯମୁନା ଜୀ ଏବଂ ଜଣା ନାହିଁ କିଏ-କିଏ କ'ଣ-କ'ଣ ସମସ୍ତ ଏଠାରେ ଆସି ପହଞ୍ଚିଛନ୍ତି । ରାଧାଜୀ ଏବଂ ତାଙ୍କର ସମସ୍ତ ସଖୀ ମଧ ବ୍ରଜକୁ ଆସୁଛନ୍ତି ।

## ବସୁଦେବ-ଦେବକୀଙ୍କର ବିବାହ

ଶୂରସେନ ମଥୁରାକୁ ବସାଇଥିଲେନ୍ତ ସେ ହିଁ ମଥୁରାର ପ୍ରଥମ ରାଜା ଥିଲେ । ଏବେ ମଥୁରାର ରାଜା ଉଗ୍ରସେନ ଏବଂ ତାଙ୍କର ପୁତ୍ର ହେଉଛି କଂସ । ବସୁଦେବଜୀ ହେଉଛନ୍ତି ଶୂର ବଂଶର, ତାଙ୍କର ବିବାହ ଦେବକୀଙ୍କର କନ୍ୟା ଦେବକୀଙ୍କ ସହିତ ହେଉଛି । ଦେବକୀ କଂସର ଦାଦା ଝିଅ ଭଉଣୀ । ବିବାହ ପରେ ବିଦାୟ ସମୟରେ ଦେବକୀ ଓ ବସୁଦେବ ରଥ ଉପରେ ବସିଛନ୍ତି । ତେବେ ଦେବକୀଙ୍କୁ ଖୁସି କରିବା ଉଦ୍ଦେଶ୍ୟରେ, ପ୍ରେମ ଦର୍ଶାଇବା ନିମନ୍ତେ କଂସ ନିଜେ ରଥ ଚଳାଇବାକୁ ଆରମ୍ଭ କଲେ । କିନ୍ତୁ ଦେଖନ୍ତୁ ଆନନ୍ଦ-ଉତ୍ସବ ଚାଲିଅଛି ଏବଂ ଅକସ୍ମାତ୍ ସେଠାରେ ଆକାଶବାଣୀ ହେଲା- "ଆରେ ମୂଢ଼, ତୁ ଯାହାଙ୍କର ରଥ ଚଳାଉଛୁ, ତାଙ୍କର ଅଷ୍ଟମ ଗର୍ଭ ତୋର କାଳ ହେବ ।"

ଏତିକି ଶୁଣିବା କ୍ଷଣି କଂସ ତଲବାର ବାହାର କରି ନିଜର ସେହି ଭଉଣୀ ଦେବକୀଙ୍କୁ ମାରିବା ନିମନ୍ତେ ପ୍ରସ୍ତୁତ ହୋଇଗଲା ।

**ଦାମିନି ଦମକ ରହ ନ ଘନ ମାହୀଂ ।**

**ଖଲ କୈ ପ୍ରୀତି ଜଥା ଥିର ନାହିଁ ॥**

**(ଶ୍ରୀ ରାମ ଚରିତ ମାନସ - ୪.୧୩.୨)**

ଯେଭଳି ଆକାଶରେ ବିଜୁଳି ଚମକାଇ ଦେଇ ଚାଲି ଯାଉଛି, ସ୍ଥିର ହେଉ ନାହିଁ ସେହିପରି ଦୁଷ୍ଟ ଲୋକମାନଙ୍କର ପ୍ରୀତି ମଧ୍ୟ ସ୍ଥିର ରହୁନାହିଁ । ଦେଖନ୍ତୁ,ଯଦି କଂସର ପ୍ରେମ (ସଚ୍ଚା) ପ୍ରକୃତ ହୋଇଥାଆନ୍ତା, ତେବେ କ'ଣ ଆକାଶବାଣୀ ଶୁଣିବା କ୍ଷଣି ସେ କଣ ଗୋଟିଏ କ୍ଷଣ ନିମନ୍ତେ ବିଚାର ନ କରି ଦେବକୀଙ୍କୁ ମାରିଦେବା ପାଇଁ ପ୍ରସ୍ତୁତ ହୋଇଥାଆନ୍ତା ? ତାର ଅର୍ଥ, ତା ପ୍ରେମରେ କେତେ ଶୁଦ୍ଧତା ଅଛି ସେଇ କଥା ପ୍ରକଟ ହୋଇଗଲା । ତାର ପ୍ରେମ ବହୁତ ଚଞ୍ଚଳ ଥିଲା, ସେଥିପାଇଁ କ୍ଷଣମାତ୍ରକେ ସେ ମାରିବା ନିମନ୍ତେ ପ୍ରସ୍ତୁତ ହୋଇଗଲା ।

## ବସୁଦେବଜୀଙ୍କର କଂସକୁ ବଚନ ଦେବା

ବସୁଦେବ ଜୀ ଅତି ଗମ୍ଭୀର ସ୍ୱଭାବର । ସତ୍ତ୍ୱଗୁଣ ପ୍ରଧାନ ଅନ୍ତଃକରଣ, ସାତ୍ତ୍ୱିକ ବୁଦ୍ଧି ଏବଂ ଶୁଦ୍ଧ ମନ, ଏ ହେଉଛନ୍ତି ଦେବକୀ ଏବଂ ବସୁଦେବ । ଦେଖନ୍ତୁ କେତେ ଗମ୍ଭୀରତା । ସେ ପ୍ରଥମେ ସୌମ୍ୟ ଭାବରେ କଂସକୁ ବୁଝାଉଛନ୍ତି, "ଆରେ କଂସ !" ତୁମକୁ ନିଜର ମରଣ ଖବର ଶୁଣି ଏତେ ଭୟ ଲାଗୁଛି ?''

**ଅଦ୍ୟ ବାବ୍ଦଶତାନ୍ତେ ମୃତ୍ୟୁର୍ବୈ ପ୍ରାଣିନାଂ ଧ୍ରୁବଃ ॥ (୧୦.୧.୩୮)**

"ଯାହାର ଜନ୍ମ ହୋଇଛି, ତାର ମରଣ ତ ଦିନେ ନା ଦିନେ ହିଁ ହେବ । ତୁମେ ତାକୁ ମାରି ଦେବ ତ ତୁମେ କଣ ଅମର ହୋଇଯିବ ? ସାମାନ୍ୟ ବିଚାର କର । ଯାହାର ଜନ୍ମ ହୋଇଛି ସେ ତ ମରିବ ନିଶ୍ଚୟ । ଦେହର ମୃତ୍ୟୁ ଅଛି ପରନ୍ତୁ ଆତ୍ମା ତ ଅବିନାଶୀ ଅଟେ । ଆକାଶବାଣୀ ଶୁଣୁ ଶୁଣୁ ତୁମେ ତାକୁ ମାରିବା ପାଇଁ ପ୍ରସ୍ତୁତ ହୋଇଗଲ ? ଗୁଣର ମାୟାରେ ଏଭଳି ବଶୀଭୂତ ହୁଅ ନାହିଁ ।" ଯେତେବେଳେ କଂସ ଏହି କଥାକୁ ବୁଝିପାରିଲା ନାହିଁ, ସେତେବେଳେ ବସୁଦେବ ଜୀ ଭାବନା ପ୍ରଧାନ ତର୍କ ଦେଉଛନ୍ତି ଯେ -

**ଏଷା ତବାନୁଜା ବାଲା କୃପଣା ପୁତ୍ରିକୋପମା । (୧୦.୧.୪୫)**

ଏ ତ ତୁମର ସାନ ଭଉଣୀ ଅଟେ, ବାଳା ଏବଂ କୃପଣା, ସମ୍ପୂର୍ଣ୍ଣ ଦୀନ ଅଟେ "ପୁତ୍ରିକୋପମା" ତୁମର ପୁତ୍ରୀ ତୁଲ୍ୟ ।

**ହନ୍ତୁଂ ନାର୍ହସି କଲ୍ୟାଣୀମିମାଂ ତ୍ୱଂ ଦୀନବତ୍ସଳଃ ॥ (୧୦.୧.୪୫)**

ତୁମେ ତ ଦୀନ ବତ୍ସଳ । ନିଜର ସାନ ଭଉଣୀ ଯେ କି ତୁମ ପୁତ୍ରୀ ସମାନ ଅଟେ ତାକୁ ମାରିବ ? କିନ୍ତୁ ତାର ଚିତ୍ତ ଏତେ ଉଗ୍ର ହୋଇଯାଇଥିଲା ଯେ ତା ଉପରେ ଏହାର ମଧ୍ୟ କୌଣସି ପ୍ରଭାବ ପଡ଼ି ନ ଥିଲା । ବସୁଦେବ ଜୀ ବିଚାର କଲେ ଯେ କଂସ ଉପରେ ତ ଏହାର ମଧ୍ୟ କୌଣସି ପ୍ରଭାବ ହେଉ ନାହିଁ । ଏବେ ଯେକୌଣସି ଉପାୟରେ ମଧ୍ୟ ଏହି ସମୟକୁ ଏଡ଼ାଇ ପାରିଲେ ତ ଏଡ଼ାଇ ଦେବା ଉଚିତ୍ । ଦେଖନ୍ତୁ, ମରଣ ତ ହେବ ହିଁ ହେବ । ଦେବକୀର ମଧ୍ୟ କେବେ ନା କେବେ ନିଶ୍ଚିତ ମରଣ ହେବ । କିନ୍ତୁ ଆମେ ନିଜ ବୁଦ୍ଧି ଦ୍ୱାରା ବଳଦ୍ୱାରା, ଯେ ପର୍ଯ୍ୟନ୍ତ ସଙ୍କଟକୁ ଏଡ଼ାଇ ପାରିବା ସେ ପର୍ଯ୍ୟନ୍ତ ଚେଷ୍ଟା କରିବା ଉଚିତ ଏବଂ –

**ଯଦ୍ୟସୌ ନ ନିବର୍ତ୍ତେତ ନାପରାଧୋସ୍ତି ଦେହିନଃ ॥ (୧୦.୧.୪୮)**

ଯଦି ସମସ୍ତ ଚେଷ୍ଟା କରିବା ପରେ ମଧ୍ୟ ତାକୁ ଏଡ଼ାଇ ହୋଇପାରେ ନାହିଁ, ତେବେ ସେଥିରେ ଆମର କୌଣସି ଦୋଷ ନାହିଁ ବୋଲି ଗ୍ରହଣ କରାଯାଏ । ଯେପରି, ଘରେ ଯଦି କେହି ଅସୁସ୍ଥ ହୋଇ ବହୁତ ସଂକଟାପନ୍ନ ଅବସ୍ଥାରେ ରହିଥିବେ ଏବଂ ଆମେ ଜାଣିଛନ୍ତି ଯେ ସେ ବଞ୍ଚିପାରିବେ ନାହିଁ, ତଥାପି ଯେଉଁ ଚେଷ୍ଟା କରିପାରିବା ତାକୁ ତ କରିଥାଉ ନା ? ଅନ୍ୟଥା, ପରେ ଯଦି ଏପରି ଲାଗିବ ଯେ ଆମେ କିଛି କରିପାରି ଥାଆନ୍ତୁ ପରନ୍ତୁ ନ କରିଥିଲେ ତାହା ଅପରାଧ ହୋଇଯାଇଥାଆନ୍ତା । କିନ୍ତୁ ଯାହା କରିବାକୁ ସକ୍ଷମ ଅଟୁଁ, ତାହା କରିବା ପରେ, ସେ ନ ବଞ୍ଚିଲେ ମଧ୍ୟ ଆମ ହୃଦୟରେ କୌଣସି ଗ୍ଲାନି ରହିଯାଏ ହିଁ ଯେ ମୁଁ କିଛି କରିପାରିଲି ନାହିଁ । ତେବେ ବର୍ତ୍ତମାନ କଣ କରିବା ? ବସୁଦେବ ଜୀ ବହୁତ ବିଚାର କରି ଶାନ୍ତି ପୂର୍ବକ କହିଲେ, ""ଆରେ କଂସ ! ତୁମର ଦେବକୀ ପ୍ରତି ତ ଭୟ ନାହିଁ ନା ? ତାର ଯେଉଁ ପୁତ୍ର ହେବେ ସେମାନଙ୍କର ପ୍ରତି ତୁମର ଭୟ । ମୁଁ ତୁମକୁ ବଚନ ଦେଉଛି ଯେ ତାର ଯେଉଁ ପୁତ୍ର ହେବେ, ତାକୁ ମୁଁ ନିଜ ହାତରେ ତୁମକୁ ଅର୍ପଣ କରିଦେବି । ତୁମର ପୁଣି ଯାହା କରିବା କଥା କରିବ ।''

ଦେଖନ୍ତୁ କଂସର ଅର୍ଥ ହେଉଛି ହିଂସକ । ବସୁଦେବଜୀଙ୍କର ଚରିତ୍ର କେତେ ଉଜ୍ଜ୍ୱଳ ହୋଇଥିବ ଯେ ହିଂସକ ବୃତ୍ତିବାଲା ସେହି କଂସର ମଧ୍ୟ ତାଙ୍କ କଥାପ୍ରତି ବିଶ୍ୱାସ ହୋଇଗଲା ଯେ ଯଦି ଏ ମୋତେ କଥା ଦେଉଛନ୍ତି, ତେବେ ପରେ ତାର ବିପରୀତ ଆଚରଣ କରିବେ ନାହିଁ, ନିଜ କଥାରୁ ସେ କେବେ ହେଲେ ଟଳିବେ ନାହିଁ । କେତେ ବିଶ୍ୱାସପାତ୍ର ହୋଇଥିବେ ବସୁଦେବ ଜୀ ! ସେଥିପାଇଁ ତ ଭଗବାନ ତାଙ୍କ ଘରକୁ ଆସିବେ । ତେବେ ବସୁଦେବ ଜୀଙ୍କ କଥା ପ୍ରତି ବିଶ୍ୱାସ ରଖି କଂସ ଦେବକୀଙ୍କୁ ଛାଡ଼ି ଦେଲା । ବିଦାୟ ହୋଇଗଲା ଏବଂ ବସୁଦେବ-ଦେବକୀ ନିଜ ଘରେ ରହିବାକୁ ଲାଗିଲେ । ସମୟ ଆସିବା ପରେ ତାଙ୍କର ପ୍ରଥମ ପୁତ୍ରର ଜନ୍ମ ହେଲା । ସାମାନ୍ୟ ବିଚାର କରନ୍ତୁ, ପୁତ୍ର ହେଲାପରେ ତାକୁ ଦେବାକୁ ପଡ଼ିବ ତ ମା'ର ହୃଦୟର ଅବସ୍ଥା କଣ ହେବ ? ଦେବକୀ ଜୀ କାନ୍ଦିବାକୁ ଲାଗିଲେ । ବସୁଦେବ ଜୀଙ୍କର ମନ ମଧ୍ୟ କହୁଛି ଏହି ଛୋଟ ବାଳକକୁ ମୁଁ କଂସକୁ କିପରି ଦେବି? କିନ୍ତୁ ଦେଖନ୍ତୁ, ବଚନ ପୂର୍ତ୍ତିର ଧର୍ମପାଳନ କରିବାକୁ ସେ ଛୋଟ ବାଳକକୁ କଂସ ନିକଟକୁ ନେଇ ଯାଉଛନ୍ତି ଏବଂ କହୁଛନ୍ତି - ନିଜର ପୂର୍ବ କଥାଅନୁସାରେ ଆମର ଏହି ପୁତ୍ରକୁ ମୁଁ ତୁମକୁ ଦେଉଛି । ତାଙ୍କର ସତ୍ୟ ନିଷ୍ଠା, ବଚନ ବଦ୍ଧତା ଦେଖି କଂସର ହୃଦୟ ଦ୍ରବିତ ହୋଇଗଲା । ସେ କହୁଛି - ତାକୁ ଫେରାଇ ନିଅ, ମୋର କାଳ ତ ଅଷ୍ଟମ ପୁତ୍ର, ପ୍ରଥମ ନୁହେଁ । ବସୁଦେବ ଜୀ ଆଶ୍ଚର୍ଯ୍ୟ ତ ହେଲେ, କିନ୍ତୁ ସେ କଂସର ସ୍ୱଭାବ (ଯେ କେବେ ସ୍ଥିର ରହେ ନାହିଁ) ଜାଣିଥିଲେ । ତେଣୁ ସେ ବିଶେଷ କିଛି ଖୁସି ହେଲେ ନାହିଁ । ବାଳକକୁ ନେଇ ସେ ଫେରି ଆସିଲେ ।

## କଂସ ଦ୍ୱାରା ଦେବକୀଙ୍କର ଛଅପୁତ୍ରର ହତ୍ୟା

ଏ ପାଖରେ ନାରଦ ଜୀ କଂସ ପାଖକୁ ଆସୁଛନ୍ତି ଏବଂ କହୁଛନ୍ତି ଯେ ଏହି କାମ ଠିକ ହେଲା ନାହିଁ । କଂସ, ତୋର ବୁଦ୍ଧି ଖରାପ ହୋଇଗଲାଣି, ଭଗବାନଙ୍କର ମାୟା ବଡ଼ ଅଦ୍ଭୁଆ ଅଟେ । କେଉଁ ପୁତ୍ର ଅଷ୍ଟମ ହୋଇଥାଏ ? ପୁଣି ଆଠଟି ରେଖା ଟାଣିଦେଲେ ଏବଂ ପୁଣି କହିଲେ ଯେ ଏହାକୁ ତୁ ପ୍ରଥମ କହୁଛୁ ନା, ସେ ପାଖରୁ ଗଣିଲେ ଏହା ଅଷ୍ଟମ ହୁଏ କି ନାହିଁ ? କେଉଁ - କେଉଁ ସ୍ଥାନରେ ବର୍ଣ୍ଣନ ଆସେ ଯେ ସେ ଏକ ବୃତ୍ତ (ଣ୍ଡ୍ଡ୍ଚ୍ଚ୍ଛ) କରି ଦେଲେ, ତାର ପରିଧିରେ ଆଠୋଟି ରେଖା ଟାଣି ଦେଲେ ଏବଂ କହିଲେ ଯେ ଏହିଭଳି ବୃତ୍ତରେ ରଖି ଦେଖିଲେ ପ୍ରତ୍ୟେକଟି ଅଷ୍ଟମ ହୋଇପାରିବ ।

ଏଠାରେ ଭାଗବତରେ କୁହାଯାଇଛି ଯେ ନାରଦ ମୁନି ଆସି କହୁଛନ୍ତି - ତୁମକୁ ଜଣାନାହିଁ, ବସୁଦେବ ଏବଂ ଦେବକୀଙ୍କର ଗର୍ଭରୁ ଭଗବାନ ହିଁ ପ୍ରକଟ ହେବେ ଏବଂ

ତାଙ୍କୁ ସହଯୋଗ କରିବା ନିମନ୍ତେ ସମସ୍ତ ଦେବତା ପୂର୍ବରୁ ହିଁ ବ୍ରଜଭୂମିକୁ ଆସି ଯାଇଛନ୍ତି । ତାଙ୍କ ପାଇଁ ସମ୍ପୂର୍ଣ୍ଣ ମଞ୍ଚ ଏବେ ପ୍ରସ୍ତୁତ ହୋଇ ରହିଛି । ଏବେ ସମସ୍ତ ଅସୁରମାନଙ୍କୁ ମାରିବା ନିମନ୍ତେ ସେମାନେ ସମ୍ପୂର୍ଣ୍ଣ ପ୍ରସ୍ତୁତ କରି ରଖିଛନ୍ତି । ଏତିକି କହି ସେ ଚାଲିଗଲେ ।

ଏବେ କଂସର ବୁଦ୍ଧି ପୁଣି ବିପରୀତ ହୋଇଗଲା । ସେ ବିଚାର କରିବାକୁ ଲାଗିଲା, ତେବେ କଣ ଯଦୁ-ବଂଶୀଙ୍କର ରୂପରେ ସମସ୍ତ ଦେବତା ଏଠାକୁ ଆସିଗଲେଣି ? ପୁଣି ଭଗବାନ ବିଷ୍ଣୁ ହିଁ ଅଷ୍ଟମ ପୁତ୍ର ରୂପେ ଆସିବେ ? କୁହାଯାଏ ଯେ କଂସ ପୂର୍ବ ଜନ୍ମରେ କାମନେମି ନାମକ ଅସୁର ଥିଲା । କାଳନେମି ହିଁ ପୁଣି ଥରେ ଏଠାରେ କଂସ ହୋଇ ଆସିଛି । କଂସ ଦେବକୀ ଓ ବସୁଦେବଙ୍କୁ କାରାଗୃହରେ ରଖି ଦେଲା ଏବଂ ତାଙ୍କର ପୁତ୍ରକୁ ମାରିଦେଲା । କେବଳ ଏତିକି ନୁହେଁ, ନିଜର ପିତା ଉଗ୍ରସେନଙ୍କୁ ମଧ୍ୟ କାରାଗୃହରେ ରଖିଦେଲା ଏବଂ ନିଜେ ରାଜା ହୋଇଗଲା । କୁହାଯାଏ - ଯେ ଲୋଭୀ, ଦୁଷ୍ଟରାଜା ହୋଇଥାଆନ୍ତି ସେମାନେ ମାତା-ପିତା, ଭାଇ, ଇଷ୍ଟ-ମିତ୍ର ସମସ୍ତଙ୍କୁ ଦୁଃଖ ଦେବା ନିମନ୍ତେ ପ୍ରସ୍ତୁତ ହୋଇଯାଆନ୍ତି । କଂସ ସେହିପରି ଅତ୍ୟାଚାରୀ ହୋଇଗଲା । ପ୍ରଲମ୍ବ, ବକ, ପୁତନା, ଚାଣୂର, ମୁଷ୍ଟିକ, କେଶି ଆଦି ଅସୁର ତଥା ଜରାସନ୍ଧ, ଭୋମାସୁର, ବାଣାସୁର ଆଦି ସମସ୍ତେ ତା ସାଥି ଥିଲେ ।

ଯେତେବେଳେ ଦେବକୀଙ୍କର ଦ୍ୱିତୀୟ ପୁତ୍ର ହେଲା, କଂସ ତାକୁ ମଧ୍ୟ ମାରିଦେଲା । ପୁଣି ତୃତୀୟ, ଚତୁର୍ଥ, ପଞ୍ଚମ, ଷଷ୍ଠ - ଛଅ ଜଣ ପୁତ୍ରଙ୍କୁ ସେ ମାରି ଦେଲା । ଏବେ ଭଗବାନ ନିଜର ଯୋଗମାୟାଙ୍କୁ କହିଲେ ଯେ ଦେବକୀଙ୍କର ସପ୍ତମ ଗର୍ଭରେ ଶେଷ ଭଗବାନ ଅଛନ୍ତି । ତୁମେ ଏଭଳି କର ଯେ ନିଜର ମାୟାଦ୍ୱାରା ସେହି ଗର୍ଭକୁ ଆକର୍ଷଣ କରି ବସୁଦେବଙ୍କର ଦ୍ୱିତୀୟ ପତ୍ନୀ ରୋହିଣୀ, ଯେ କି ଗୋକୁଳରେ ଅଛନ୍ତି, ତାଙ୍କ ଗର୍ଭରେ ସ୍ଥାପିତ କରିଦିଅ । ଗର୍ଭରୁ ଆକର୍ଷଣ ହୋଇଥିବା କାରଣରୁ "କର୍ଷଣାତ୍' - ତାଙ୍କର ନାମ "ସଙ୍କର୍ଷଣ' ହେବ । ତାଙ୍କର ନାମ "ବଳରାମ' ମଧ୍ୟ ହେବ । ମାୟା ତ ଭଗବାନ ଯେପରି କହିବେ ସେହିଭଳି କରିବ, ତେଣୁ ମାୟା ସେ କାର୍ଯ୍ୟକୁ କରିଦେଲେ । ମଥୁରାବାସିଙ୍କୁ ଲାଗିଲା ଯେ କଂସର ଭୟରେ ଦେବକୀଙ୍କର ଗର୍ଭ ପତନ ହେଲା । କିନ୍ତୁ ଯୋଗମାୟା ସେଠାରେ ଅନ୍ୟ କାର୍ଯ୍ୟ କରି ଦେଇଥିଲେ । ସେଠାରେ ରୋହିଣୀଙ୍କ ଗର୍ଭରୁ ଭଗବାନଙ୍କର ଜନ୍ମ ହେଲା । ଭଗବାନ କହୁଛନ୍ତି ଯେ ଏବେ ମୋର ପ୍ରାକଟ୍ୟର ମଧ୍ୟ ସମୟ ଆସିଗଲାଣି ।

**ଭଗବାନପି ବିଶ୍ୱାତ୍ମା ଭକ୍ତାନାମ ଭୟଙ୍କରଃ ।**
**ଆବିବେଶାଂଶଭାଗେନ ମନ ଆନକଦୁନ୍ଦୁଭେଃ ॥ (୧୦.୨.୧୬)**

"ଆନକ ଦୁନ୍ଦୁଭିଃ' ଏହା ବସୁଦେବଜୀଙ୍କର ନାମ । ଭଗବାନ ସବୁଠାରୁ ପ୍ରଥମେ ବସୁଦେବଙ୍କ ଶରୀରରେ ପ୍ରକଟ ହେଲେ, ତାଙ୍କ ଶରୀରରେ ତେଜ ହୋଇଗଲେ । ସେହି ତେଜକୁ ପୁଣି ଦେବକୀ ଧାରଣ କଲେ । ଏତେ ବଡ଼ ତେଜକୁ ଧାରଣ କରିବା ପରେ ମଧ୍ୟ ଦେବକୀ ତାକୁ ଲୁଚାଇ ଥିଲେ, ପରନ୍ତୁ ତାହା ଲୁଚି ରହିନଥିଲା । ଲୁଚି ଥିବା ଅଗ୍ନି ସମାନ ଦେବକୀ ଜୀ ସେହି ଜେଲରେ ରହିଥିଲେ । କିନ୍ତୁ କେବେ କଂସ ଯଦି ସେଠାକୁ ଆସୁଥିଲା ଏବଂ ଦେବକୀଙ୍କୁ ଦେଖୁଥିଲା, ତେବେ ତାର ହୃଦୟ ଧକ୍-ଧକ୍ କରିବାକୁ ଲାଗୁଥିଲା । କହିଲା ଏ ତ ପ୍ରଥମେ ଏପରି ଦେଖାଯାଉ ନ ଥିଲା, ଏହାର ତେଜ କିଛି ବଢ଼ି ଗଲାଣି । ଲାଗୁଛି ଯେପରି ମୋର କାଳ ଏଠାକୁ ଆସିଗଲାଣି ।

ଗୋଟିଏ ବିଚାର ମନରେ ଆସିପାରେ ଯେ ନାରଦ ଜୀ ଆସି ତାକୁ ସବୁ ଖବର ପୂର୍ବରୁ ଦେବାର ତାତ୍ପର୍ଯ୍ୟ କ'ଣ ? କଂସ ମନରେ ଦୟା ଆସି ଯାଇଥିଲାନ୍ତ ସେ ପ୍ରଥମ ଶିଶୁପୁତ୍ରକୁ ଫେରାଇ ଦେଇଥିଲା କିନ୍ତୁ ନାରଦ ଜୀ ଏହି ଶିଶୁମାନଙ୍କୁ କାହିଁକି ମରାଇ ଦେଉଛନ୍ତି ? ଦେଖନ୍ତୁ, କଥା ହେଉଛି ଯେ କୌଣସି ଅପରାଧୀକୁ ଧରିବା ନିମନ୍ତେ ମଧ୍ୟ ଅନେକ ପ୍ରମାଣ ଏକାଠି କରିବାକୁ ପଡ଼ିଥାଏ । ତାକୁ ସରଳ ଭାଷାରେ କହୁଛନ୍ତି - ପାପର ଘଟକୁ ପୂର୍ଣ୍ଣ କରିବାକୁ ହେବ । କଂସ ପାପ ତ କରୁଥିଲା, କିନ୍ତୁ ଛୋଟ-ଛୋଟ ନବଜାତ ଶିଶୁଙ୍କୁ ମାରିବା ବହୁତ ବଡ଼ ପାପ ହୋଇଥାଏ । ନାରଦଜୀଙ୍କର ବିଚାର ଏହା ଥିଲା ଯେ ତାର ପାପର ଘଟ ଶୀଘ୍ର ଭରିଗଲେ ତାର ମୃତ୍ୟୁ ମଧ୍ୟ ଶୀଘ୍ର ହେବ । ଅନ୍ୟଥା ଏ କଂସ ଅନ୍ୟ ଅସୁରମାନଙ୍କ ସହ ମିଳି ଦୀର୍ଘ ସମୟ ଧରି ଲୋକମାନଙ୍କୁ ଦୁଃଖ-କଷ୍ଟ ଦେଇ ଚାଲିବ । ଏବେ କଥା ହେଉଛି ଯେ ନାରଦ ଜୀ ଭାବିଲେ ଯଦି କଂସ ସେହି ଶିଶୁମାନଙ୍କୁ ମାରିବ ତେବେ ତାର ଉଗ୍ର ସ୍ୱଭାବ ଅଧିକ ପ୍ରକଟିତ ହେବ । ତେବେ ଭଗବାନ ମଧ୍ୟ ଶିଘ୍ର ପ୍ରକଟିତ ହେବେ ଏବଂ ତାର ନାଶ ମଧ୍ୟ ଶୀଘ୍ର ହେବ । ତାର ମଧ୍ୟ କଲ୍ୟାଣ ହେବ ଏବଂ ଲୋକମାନଙ୍କ ପାଇଁ ମଧ୍ୟ ଶାନ୍ତି ହୋଇଯିବ । ଦ୍ୱିତୀୟ କଥା ହେଉଛି ଯେ ସେ କଂସର ମନରେ ଭୟର ସଞ୍ଚାର କରିବାକୁ ଚାହୁଁଥିଲେ । ନଚେତ୍, ଆକାଶବାଣୀର ମଧ୍ୟ କଣ ଆବଶ୍ୟକ ଥିଲା ଯେ ଅଷ୍ଟମ ଗର୍ଭ ... । ଭଗବାନ ଚୁପ୍ ଚାପ୍ ଆସିଥିଲେ ସେଥିରେ କୌଣସି ଆନନ୍ଦ ଆସି ନ ଥାଆନ୍ତା, ଅର୍ଥାତ୍ ଭୟରେ କଂସର ବୃତ୍ତି ନିରନ୍ତର କୃଷ୍ଣ-କୃଷ୍ଣ-କୃଷ୍ଣ (କୃଷ୍ଣାକାର) ହୋଇନଥାଆନ୍ତା ।

ଦେଖନ୍ତୁ, "ଭୟାନକ' ମଧ୍ୟ ଏକ ରସ । ରସର ନିଷ୍ପତ୍ତି ସେତେବେଳେ ହୁଏ, ଯେତେବେଳେ ସ୍ଥାୟୀ ଭାବ, ବିଭାବ, ସଂଚାରୀ ଭାବ ଆଦି ସବୁ ଥାଏ । ସାହିତ୍ୟରେ କୁହାଯାଏ ଯେ, କୌଣସି ରସ ଉତ୍ପନ୍ନ ହେଲେ ତାହା କ୍ରମରେ ହୋଇଥାଏ । ଯେପରି, ଆମକୁ କାହାର ହତ୍ୟା ବର୍ଣ୍ଣନ କରିବାକୁ ହେଲେ ସିଧା ପ୍ରଥମ ବାକ୍ୟରେ କହିଦେବା ଯେ ଜଣେ ଲୋକ ଆସିଲା ଏବଂ ସେ ଅନ୍ୟଲୋକକୁ ମାରି ଦେଲା, ତେବେ କିଛି ଲାଗିବ ନାହିଁ । କିନ୍ତୁ ଯଦି ତାର ପୃଷ୍ଠଭୂମି ପ୍ରସ୍ତୁତ କରି ଏପରି ବର୍ଣ୍ଣନ କରାଯାଏ ଯେ ଅମାବାସ୍ୟା ରାତ୍ରି ଥିଲା, ଚାରିଆଡ଼େ ଘନ ଅନ୍ଧକାର ଛାଇ ଘେରି ରହିଥିଲା, ବର୍ଷା ହେଉଥିଲା, ପେଚାମାନେ ଜୋର-ଜୋରରେ ବୋବାଉଥିଲେ, ମଝି ମଝିରେ ବିଜୁଳି ଚମ୍‌କୁ ଥିଲା । ସେହି ସମୟରେ ଜଣେ ବ୍ୟକ୍ତି ଜଙ୍ଗଲରେ ଚାଲି ଚାଲି ଯାଉଥିଲା । ଏହି ସମସ୍ତ ବର୍ଣ୍ଣନା ମନରେ ଭୟର ଭାବକୁ ବଢ଼େଇ ଚାଲିଥାଏ, ଉଦ୍ଦିପ୍ତ (ସ୍ପଷ୍ଟ) କରୁଥାଏ । ଏବେ ଆଗକୁ କ'ଣ ହେବ ? ଏହା ବିଚାର କରି କରି ଭୟ ଉତ୍ପନ୍ନ ହେଉଥାଏ । ନିରନ୍ତର ଗୋଟିଏ ବୃତ୍ତି ହିଁ ଉତ୍ପନ୍ନ ହୋଇ ଚାଲେ । ଏଠାରେ କଂସର ମନରେ ମଧ୍ୟ ଭୟ ସୃଷ୍ଟି କରିବାକୁ ଅଛି । ଯଦ୍ଦ୍ୱାରା ସେ ନିରନ୍ତର ଭଗବାନଙ୍କର ସ୍ମରଣ କରୁଥିବ । ନାରଦ ଜୀ ତା ପ୍ରତି ଏହି ବଡ଼ ଉପକାର କରିଦେଲେ । ତାଙ୍କୁ ଜଣାଥିଲା ଯେ, କଂସ ପ୍ରେମପୂର୍ବକ ତ ଭଗବାନଙ୍କୁ ମନେ ପକାଇବ ନାହିଁ । ତା ପାଖରେ ଏତିକି ମଧ୍ୟ ଶକ୍ତି ନାହିଁ ଯେ ସେ ଭଗବାନଙ୍କ ପ୍ରତି ଦ୍ୱେଷ କରିବ । ହଁ, ତାର ଭୟ ହୋଇପାରିବ । ସେହି ଶ୍ଳୋକ ଆମେ ପୂର୍ବରୁ ଦେଖିଛନ୍ତି ଯେ, କାମ ଦ୍ୱାରା, ସ୍ନେହ ଦ୍ୱାରା, ଭୟ ଦ୍ୱାରା, ଦ୍ୱେଷ ଦ୍ୱାରା ଅଥବା ଯେକୌଣସି ଭାବରେ ଭଗବାନଙ୍କର ସ୍ମରଣ କରନ୍ତୁ, ତେବେ ସେଥିରେ ମଧ୍ୟ ମୁକ୍ତି ହୋଇପାରିବ । ସେଥିପାଇଁ ନାରଦ ଜୀ ଏପରି କାମ କଲେ ଏବଂ ସେଥିପାଇଁ ଆକାଶ ବାଣୀ ମଧ୍ୟ ହେଲା ।

ଦେଖନ୍ତୁ, ତାର ସ୍ଥିତି କିପରି ହୋଇଗଲା, ଚିନ୍ତା କରିବାକୁ ଲାଗିଲା ଯେ ଏବେ ମୁଁ କଣ କରିବି ? ଏହି ଗର୍ଭବତୀ ସ୍ତ୍ରୀକୁ ମାରିଦେବି ? କିନ୍ତୁ ଜଣାନାହିଁ କିପରି ତା ମନରେ ଧର୍ମର ବିଚାର ଆସିଗଲା । ତାକୁ ଲାଗିଲା ଯେ ତାର ମନରେ ହେଲା - ନାହିଁ, ଏ ଜଣେ ସ୍ତ୍ରୀ, ମୋର ଭଉଣୀ, ପୁଣି ଗର୍ଭବତୀ ଅଛି । ଗର୍ଭବତୀ ସ୍ତ୍ରୀକୁ ଯଦି ମୁଁ ମାରିଦେବି ତ ଜଗତରେ ମୋର ଯଶ ହେବ ନାହିଁ, ସମସ୍ତ ଲୋକେ ମୋତେ ବଡ଼ ପାପୀ ବୋଲି କହିବେ । "ବଞ୍ଚି ଥାଉ ଥାଉ ମୋର ବଦ୍‌ନାମ ହେବ ଏବଂ ମୃତ୍ୟୁ ପରେ ମଧ୍ୟ ସମସ୍ତେ କହୁଥିବେ ଯେ ସେ ଜଣେ ଗର୍ଭବତୀ ସ୍ତ୍ରୀକୁ ହତ୍ୟ କରିଥିଲା ।' ଏପରି ବିଚାର କରି ସେ ନିର୍ଣ୍ଣୟ କଲା ଯେ ଯେତେବେଳେ ପିଲାଟିର ଜନ୍ମ ହେବ ସେତେବେଳେ

ଦେଖିବି । କିନ୍ତୁ -

**ଆସୀନଃ ସଂବିଶଂସ୍ତିଷ୍ଠନ୍ ଭୁଞ୍ଜାନଃ ପର୍ଯଟନ୍ ମହୀମ ।**
**ଚିନ୍ତୟାନୋ ହୃଷିକେଶମପଶ୍ୟତ୍ ତନ୍ମୟଂ ଜଗତ୍ ॥ (୧୦.୨.୨୪)**

କଂସ ବସିଥାଉ, ଅଥବା ମହଲରେ ପ୍ରବେଶ କରୁଥାଉ, ଠିଆ ହୋଇଥାଉ, ଭୋଗ କରୁଥାଉ, ବୁଲୁଥାଉ, ସେ ଯାହା କରୁ ନା କାହିଁକି, ତାର ମନରେ ଯେତେବେଳେ ଦେଖ ସେତେବେଳେ ହୃଷିକେଶଙ୍କର ହିଁ ଚିନ୍ତନ ହେଉଥିଲା । "ତନ୍ମୟଂ ଜଗତ୍' ସମସ୍ତ ଜଗତ ତାକୁ ହରିମୟ ଦେଖିବା ଭଳି ଲାଗିଲା । ଭୟ କାରଣରୁ ତାକୁ ଲାଗୁଥିଲା ଯେ ଯେପରି କେହି ତାକୁ ମାରିବା ନିମନ୍ତେ ପ୍ରସ୍ତୁତ ହୋଇ ଛିଡ଼ା ହୋଇଛି । ସବୁଠାରେ କଂସକୁ ତାହା ହିଁ ଦେଖାଯାଉଥିଲା । ଏହିଭଳି ଭାବରେ ତା ଚିତ୍ତରେ ଏକ ହିଁ ବୃତ୍ତିର ପୁନରାବୃତ୍ତି ହେଉଥିଲା । ଦେଖନ୍ତୁ, ନାରଦ ଜୀ ତା ପ୍ରତି କିପରି ଉପକାର କଲେ ।

ଏ ପାଖରେ ବ୍ରହ୍ମାଜୀଙ୍କୁ ଜଣାପଡ଼ିଲା ଯେ ଦେବକୀଙ୍କର ଗର୍ଭରେ ଭଗବାନ ଆସିଗଲେଣି, ତେଣୁ ସେ ଶଙ୍କରଜୀ ତଥା ସମସ୍ତ ଦେବତାମାନଙ୍କୁ ନେଇ ସେଠାକୁ ଆସିଗଲେ ଏବଂ ତାଙ୍କର ପ୍ରାକଟ୍ୟ ପୂର୍ବରୁ ହିଁ ସ୍ତୁତି କରୁଛନ୍ତି ।

**ବ୍ରହ୍ମା ଆଦି ଦେବତାମାନଙ୍କ ଦ୍ୱାରା ଗର୍ଭସ୍ଥ ଭଗବାନଙ୍କ ସ୍ତୁତି**

**ସତ୍ୟବ୍ରତଂ ସତ୍ୟପରଂ ତ୍ରିସତ୍ୟଂ**
**ସତ୍ୟସ୍ୟ ୟୋନିଂ ନିହିତଂ ଚ ସତ୍ୟେ ।**
**ସତ୍ୟସ୍ୟ ସତ୍ୟମୃତସତ୍ୟନେତ୍ରଂ**
**ସତ୍ୟାତ୍ମକଂ ତ୍ୱାଂ ଶରଣଂ ପ୍ରପନ୍ନାଃ ॥ (୧୦.୨.୨୬)**

କହୁଛନ୍ତି - ଆପଣ ସତ୍ୟବ୍ରତ ଅଟନ୍ତି । ଆପଣଙ୍କୁ ପ୍ରାପ୍ତିର ସାଧନ ମଧ୍ୟ ସତ୍ୟ ହିଁ ଅଟେ । ଆପଣ ତିନି କାଳରେ ସତ୍ୟ ଅଟନ୍ତି, ଆପଣ ସତ୍ୟର ମଧ୍ୟ ସତ୍ୟ ଅଟନ୍ତି, ସତ୍ୟ ସ୍ୱରୂପ ଅଟନ୍ତି । ଆମେ ଆପଣଙ୍କର ଶରଣରେ ଆସିଛୁ । ପୁଣି ଆମେ ଆପଣଙ୍କର ଶରଣାପନ୍ନ ମଧ୍ୟ ।

**ଶୃଣ୍ୱନ୍ ଗୃଣନ୍ ସଂସ୍ମରୟଂଶ୍ଚ ଚିନ୍ତୟନ୍**

**ନାମାନି ରୂପାଣି ଚ ମଙ୍ଗଳାନି ତେ ।**

**କ୍ରିୟାସୁ ଯସ୍ତ୍ୱଚ୍ଚରଣାରବିନ୍ଦୟୋ -**

**ରାବିଷ୍ଟଚେତା ନ ଭବାୟ କଳ୍ପତେ ॥ (୧୦.୨.୩୭)**

ଯେ ଆପଣଙ୍କର ଗୁଣର ଶ୍ରବ, କୀର୍ତ୍ତନ, ଚିନ୍ତନ ସ୍ମରଣ କରେ ସେ ପୁନର୍ବାର ଏହି ସଂସାରକୁ ଆସେ ନାହିଁ । ଭଗବାନ ଆପଣ ଶୀଘ୍ର ପ୍ରକଟ ହୁଅନ୍ତୁ ଏବଂ ଆମର ଦୁଃଖକୁ ଦୂର କରନ୍ତୁ । ସେ ପୁଣି ଦେଖିଲେ ଯେ ଦେବକୀ ଜୀ କଂସ ଭୟରେ ଭୟଭୀତ ହେଉଛନ୍ତି (କାରଣ ତାଙ୍କୁ ଲାଗୁଛି ଯେ ମୋର ପୁତ୍ର ହେବ ଏବଂ କଂସକୁ ଜଣାଅଛି ଯେ ଏ ମୋର ଅଷ୍ଟମ ପୁତ୍ର) ସେଥିପାଇଁ -

**ଦିଷ୍ଟ୍ୟାମ୍ବ ତେ କୁକ୍ଷିଗତଃ ପରଃ ପୁମା -**

**ନଂଶେନ ସାକ୍ଷାଦ୍ ଭଗବାନ୍ ଭବାୟ ନଃ ॥ (୧୦.୨.୪୧)**

ବ୍ରହ୍ମାଜୀ ଦେବକୀ ଜୀଙ୍କୁ କହୁଛନ୍ତି - ବଡ଼ ଭାଗ୍ୟର କଥା ଯେ ପରମ ପୁରୁଷ ହିଁ ଆପଣଙ୍କ ଗର୍ଭରେ ଆସିଯାଇଛନ୍ତି "ମା ଭୂଦ୍ ଭୟଂ ଭୋଜପତେର୍ମୁମୂର୍ଷୋଂ" (୧୦.୨.୪୧) ଭୋଜପତି କଂସ ଏବେ ମରଣାସନ୍ନ, ମରିବାକୁ ହିଁ ଯାଉଛି । ତାକୁ ଭୟ କରିବାର କୌଣସି ଆବଶ୍ୟକ ନାହିଁ । ଏହି ବାଳକ ତ ଯଦୁବଂଶର ତଥା ଆପଣ ସମସ୍ତଙ୍କର ରକ୍ଷା କରିବ । ଆପଣ ଚିନ୍ତା କରନ୍ତୁ ନାହିଁ । ଏପରି କହି ବ୍ରହ୍ମାଜୀ ଅନ୍ତର୍ଦ୍ଧାନ ହୋଇଗଲେ ।

## ଭଗବାନଙ୍କର ପ୍ରାକଟ୍ୟ - ଶ୍ରୀକୃଷ୍ଣାବତାର

ଆଗକୁ ବହୁତ ସୁନ୍ଦର ବର୍ଣ୍ଣନ ଅଛି । କାଳ ଭଗବାନଙ୍କୁ କହୁଛି - ଭଗବାନ ! ସବୁଲୋକେ ମୋତେ ହସରେ ଉଡ଼ାଇ ଦେଉଛନ୍ତି । କହୁଛନ୍ତି, ଏହି କାଳ କେବେହେଲେ ଭଗବାନଙ୍କର ସ୍ପର୍ଶ କରିପାରିବ ନାହିଁ, କାଳ ଭଗବାନଙ୍କର କଣ କରିପାରିବ । ଭଗବାନ ତ ଅକାଳ ଅଟନ୍ତି, ତ୍ରିକାଳାତୀତ, କାଳର ପରେ, ଏହିପରି କହନ୍ତି । କାଳ ତ ଭଗବାନଙ୍କ ନିମନ୍ତେ ଚଟଣୀ ଅଟେ, ଆଚାର ଅଟେ, ଏପରି କହନ୍ତି । ମୋର ତ ପୂର୍ଣ୍ଣ ରୂପେ ଲୋକମାନେ ମାନହାନି କରିଦେଲେଣି । ତେଣୁ ଆପଣ କିଛି କରନ୍ତୁ ଯଦ୍ଦ୍ୱାରା ମୋତେ ମଧ୍ୟ ଟିକିଏ ବୈଭବ ପ୍ରାପ୍ତ ହେଉ, କିଛି ଗୌରବ ପ୍ରାପ୍ତ ହେଉ । ଭଗବାନ କହିଲେ -

ଆଚ୍ଛା ମୁଁ କାଳାତୀତ ଅଟେ, କିନ୍ତୁ ଏବେ କାଳରେ ଆସିବି । ରାମ ଅବତାର ସମୟରେ ଦିନରେ ଆସିଥିଲି, ଏବେ ମୁଁ ରାତ୍ରି ସମୟରେ ଆସିବି । ସେତେବେଳେ ସୂର୍ଯ୍ୟ ବଂଶରେ ଆସିଥିଲେ, ଏବେ ଚନ୍ଦ୍ରବଂଶରେ ଆସିବି ।

ଭଗବାନ ସମସ୍ତଙ୍କ ପାଇଁ ସମାନ । ଏଠାରେ ସେ ନିଜର ସମତ୍ୱ ଦେଖାଇଛନ୍ତି। କହୁଛନ୍ତି - ସେ ସମୟରେ ନବମୀ ଦିନରେ ଆସିଥିଲି, ଏବେ ଅଷ୍ଟମୀ ଦିନରେ ଆସିବି। ନବମୀ ପୂର୍ଣ୍ଣ ବ୍ରହ୍ମଙ୍କର ସଂଖ୍ୟା ଅଟେ, ନଅ ସଂଖ୍ୟାଟି ସବୁବେଳେ ପୂର୍ଣ୍ଣ ରହିଥାଏ । ନଅର, ଅଠର, ଆଠ ଏବଂ ଏକ ମିଶି ନଅ ହେବ । ନଅ ତିରି ତିସତାଇଶ, ସାତ ଏବଂ ଦୁଇ ମଧ୍ୟ ନଅ । ସବୁବେଳେ ନଅ ସଂଖ୍ୟା ନଅ ହିଁ ରହୁଛି । ଏହି ନଅ ବ୍ରହ୍ମର ପ୍ରତୀକ ଅଟେ । ଭଗବାନ କହିଲେ - ସେ ସମୟରେ ବ୍ରହ୍ମଙ୍କ ସଂଖ୍ୟାରେ ଆସିଥିଲେ । ଏବେ ଏହି ସମୟରେ ମାୟାର ସଂଖ୍ୟାରେ ଆସିବି । ଆଠ ମାୟାର ସଂଖ୍ୟା, କିନ୍ତୁ ମାୟା ସ୍ୱୟଂ ଭଗବାନଙ୍କର । ଅଷ୍ଟଧା ପ୍ରକୃତି ହିଁ ଭଗବାନଙ୍କର ମାୟା ଅଟେ । ଅବ୍ୟକ୍ତ, ମହତତ୍ତ୍ୱ, ଅହଂକାର ଏବଂ ପଞ୍ଚମହାଭୂତ - ଏହା ହେଉଛି ଅଷ୍ଟଧା ପ୍ରକୃତି । ସେଥିପାଇଁ ଭଗବାନଙ୍କର ପତ୍ନୀମାନେ ମଧ୍ୟ ଷୋଳ ହଜାର ଆଠ ଅର୍ଥାତ୍ ଷୋହଳ ହଜାର ଏକ ଶହ ଆଠ ଅଟନ୍ତି। ସେଥିମଧ୍ୟରୁ ଆଠ ଜଣ ହେଉଛନ୍ତି ରୁକ୍ମିଣୀ, ସତ୍ୟଭାମା, ଜାମ୍ବବତୀ, କାଳିନ୍ଦୀ, ମିତ୍ରବିନ୍ଦା, ସତ୍ୟା, ଭଦ୍ରା ଏବଂ ଲକ୍ଷ୍ମଣା - ଏ ଭଗବାନଙ୍କର ଅଷ୍ଟଧା ପ୍ରକୃତି ଅଟେ । ସେଥିପାଇଁ ଭଗବାନ କୃଷ୍ଣାବତାରରେ ମାୟାର ହିଁ ଅନେକ କାର୍ଯ୍ୟ କରିଛନ୍ତି । କୃଷ୍ଣାବତାରରେ ସେ ଅଷ୍ଟମୀ (ମାୟାର ସଂଖ୍ୟା) ଦିନ ଆସିଲେ ।

**ପ୍ରକୃତିଂ ସ୍ୱାମଧିଷ୍ଠାୟ ସଂଭବାମ୍ୟାତ୍ମମାୟୟା ॥ (ଭ.ଗୀତା୪.୬)**

ନିଜର ଅଷ୍ଟଧା ପ୍ରକୃତି ଉପରେ ପୂର୍ଣ୍ଣ ବଶତା ରଖି ଭଗବାନ ମାୟା ଦ୍ୱାରା ପ୍ରକଟ ହୁଅନ୍ତି । ଏଥର ଭଗବାନ କୃଷ୍ଣ ପକ୍ଷରେ ଆସିଛନ୍ତି, ଦେଖନ୍ତୁ ସେ ସମୟର କିପରି ବର୍ଣ୍ଣନା କରାଯାଇଛି ।

ଶ୍ରୀ ଶୁକ ଉବାଚ

ଅଥ ସର୍ବଗୁଣୋପେତଃ କାଲଃ ପରମଶୋଭନଃ ।
ଯର୍ହ୍ୟେବାଜନଜନ୍ମର୍କ୍ଷେ ଶାନ୍ତର୍କ୍ଷଗ୍ରହତାରକମ୍ ॥ (୧୦.୩.୧)

ଦିଶଃ ପ୍ରସେଦୁର୍ଗଗନଂ ନିର୍ମଲୋଡୁଗଣୋଦୟମ୍ ।
ମହୀ ମଙ୍ଗଳଭୂୟିଷ୍ଠପୁରଗ୍ରାମବ୍ରଜାକରା ॥ (୧୦.୩.୨)

ନଦ୍ୟଃ ପ୍ରସନ୍ନସଲିଲା ହ୍ରଦା ଜଲରୁହଶ୍ରିୟଃ ।
ଦ୍ୱିଜାଲିକୁଲ ସଂନାଦସ୍ତବକା ବନରାଜୟଃ ॥ (୧୦.୩.୩)

ବବୌ ବାୟୁ ସୁଖସ୍ପର୍ଶଃ ପୁଣ୍ୟଗନ୍ଧବହଃ ଶୁଚିଃ ।
ଅଗ୍ନୟଶ୍ଚ ଦ୍ୱିଜାତୀନାଂ ଶାନ୍ତାସ୍ତତ୍ର ସମିନ୍ଧତ ॥ (୧୦.୩.୪)

ମନାଂସ୍ୟାସନ୍ ପ୍ରସନ୍ନାନି ସାଧୁନାମ ସୁରଦ୍ରୁହାମ ।
ଜାୟମାନେଽଜନେ ତସ୍ମିନ୍ ନେଦୁର୍ଦୁନ୍ଦୁଭୟୋ ଦିବି ॥(୧୦.୩.୫)

ଜଗୁଃ କିନ୍ନରଗନ୍ଧର୍ବାସ୍ତୁଷ୍ଟୁବୁଃ ସିଦ୍ଧଚାରଣାଃ ।
ବିଦ୍ୟାଧର୍ଯଶ୍ଚ ନନୃତୁରପ୍ସରୋଭିଃ ସମଂ ତଦା ॥ (୧୦.୩.୬)

ମୁମୁଚୁର୍ମୁନୟୋ ଦେବାଃ ସୁମନାଂସି ମୁଦାନ୍ୱିତାଃ ।
ମନ୍ଦଂ ମନ୍ଦଂ ଜଲଧରା ଜଗର୍ଜୁରନୁ ସାଗରମ୍ ॥ (୧୦.୩.୭)

ନିଶୀଥେ ତମଉଦ୍ଭୂତେ ଜାୟମାନେ ଜନାର୍ଦନେ ।
ଦେବକ୍ୟାଂ ଦେବରୂପିଣ୍ୟାଂ ବିଷ୍ଣୁଃ ସର୍ବଗୁହାଶୟଃ ॥
ଆବିରାସୀଦ୍ ଯଥା ପ୍ରାଚ୍ୟାଂ ଦିଶୀନ୍ଦୁରିବ ପୁଷ୍କଲଃ ॥(୧୦.୩.୮)

"ଅଥ ସର୍ବଗୁଣୋପେତଃ କାଲଃ ପରମଶୋଭନଃ' ସର୍ବଗୁଣ ସମ୍ପନ୍ନ, ଅତ୍ୟନ୍ତ ଶୋଭନ କାଳ ଆସିଗଲା, ଶୁଭ ନକ୍ଷତ୍ର ଉଦିତ ହୋଇଛି, ସମସ୍ତ ଗ୍ରହ-ନକ୍ଷତ୍ର ନିଜର ଉଚ୍ଚ ସ୍ଥାନରେ ବିରାଜମାନ ସମସ୍ତ ଦିଗ ପ୍ରସନ୍ନ ହୋଇଯାଇଛନ୍ତି। "ଗଗନଂ ନିର୍ମଲୋଡୁଗଣୋଦୟମ୍' - ଆକାଶ ନିର୍ମଳ ଅଛି । "ନଦ୍ୟଃ ପ୍ରସନ୍ନସଲିଲା' - ସମସ୍ତ ନଦୀରେ ଶୁଦ୍ଧ ଜଳ ପ୍ରବାହିତ ହେଉଛି । ପୃଥ୍ୱୀରେ ଯେତେ ବନ, ଉପବନ, ଗ୍ରାମ ଆଦି ଅଛି, ସେ ସବୁର ଶୋଭା ବଢ଼ି ଯାଇଛି। ସରୋବରରେ ଜଳ ସ୍ୱଚ୍ଛ ଅଛି ଏବଂ

ପଦ୍ମ ପ୍ରସ୍ଫୁଟିତ ହୋଇଛି । **"ବବୌ ବାୟୁଃ ସୁଖସ୍ପର୍ଶଃ ପୁଣ୍ୟଗନ୍ଧବହଃ ଶୁଚିଃ"** - ଶୀତଳ, ମନ୍ଦ, ସୁଗନ୍ଧିତ ବାୟୁ ବହୁଛି । ଦେଖନ୍ତୁ, ଏଠାରେ ସମ୍ପୂର୍ଣ୍ଣ ପ୍ରକୃତିର ଶୁଦ୍ଧତା ବର୍ଣ୍ଣନା କରାଯାଇଛି । ଆଧାତ୍ମିକ ଅବତାରଙ୍କର ଯେତେବେଳେ (ଆବିର୍ଭାବ) କଥ ହେଉଛି ସେତେବେଳେ ସମଗ୍ର ପ୍ରକୃତି ଅର୍ଥାତ ଆମର ଅନ୍ତଃକରଣ ଯେତେବେଳେ ଶୁଦ୍ଧ ହୋଇଯାଏ, ସେତେବେଳେ ସେଠାରେ ଭଗବାନ ପ୍ରକଟ ହୁଅନ୍ତି । ଯାହାର ପୁତ୍ର ହୋଇ ଭଗବାନ ପ୍ରକଟ ହେବାକୁ ଯାଉଛନ୍ତି, ସେହି ଦେବକୀ ଏବଂ ବସୁଦେବଙ୍କର ଶୁଦ୍ଧତା ତ ପ୍ରଥମରୁ ହିଁ ବର୍ଣ୍ଣନ ହୋଇଛି ।

ଏବେ ଯେଉଁ ସୃଷ୍ଟିରେ ସେ ଆସୁଛନ୍ତି, ତାର ସୁନ୍ଦରତା, ଶୋଭା, ଶୁଦ୍ଧତା ଦେଖାଯାଉଛି । ସମସ୍ତ ପ୍ରକୃତି ଭଗବାନଙ୍କର ସ୍ୱାଗତ କରିବା ନିମନ୍ତେ ପ୍ରସ୍ତୁତ ଅଛନ୍ତି । ଏ ପର୍ଯ୍ୟନ୍ତ ବ୍ରାହ୍ମଣମାନଙ୍କର ସମସ୍ତ ଅଗ୍ନି ସମ୍ପୂର୍ଣ୍ଣ ରୂପେ ପ୍ରଜ୍ୱଳିତ ହେଉ ନ ଥିଲା, କାହିଁକି ନା ଅସୁରମାନେ ତାଙ୍କୁ ଯଜ୍ଞ-ଯାଗାଦି କରିବାକୁ ଦେଉ ନ ଥିଲେ, ଅଗ୍ନି ବଦଳରେ ଧୁଆଁ ଅଧିକ ବାହାରୁଥିଲା, ଏବେ ସେମାନଙ୍କର ଅଗ୍ନି ମଧ (ନିର୍ଧୂମ) ଧୂମ୍ରଶୂନ୍ୟ ହୋଇଗଲା, ପ୍ରଜ୍ୱଳିତ ହୋଇଗଲା । **"ମନାଂସ୍ୟାସନ୍ ପ୍ରସନ୍ନାନି ସାଧୂନାମ୍"** - ସାଧୁମାନଙ୍କର ମନ ପ୍ରସନ୍ନ ହୋଇଗଲା, କାରଣ ଭଗବାନ ଆସିବାର ଅଛି ।

ଏବେ ଭଗବାନ ପ୍ରକଟ ମଧ ହୋଇନାହାନ୍ତି, କିନ୍ତୁ ଆକାଶରେ ଦୁନ୍ଦୁଭିମାନ ବାଜିବାକୁ ଲାଗିଲାଣି । କିନ୍ନର, ଗନ୍ଧର୍ବ, ସିଦ୍ଧ, ଅପ୍ସରା, ବିଦ୍ୟାଧର, ଚାରଣ ସମସ୍ତେ ପ୍ରସନ୍ନ ମନରେ ନୃତ୍ୟ କରିବାକୁ ଲାଗିଲେ । ସମସ୍ତ ଦେବତା ପ୍ରସନ୍ନ ହୋଇ ପୁଷ୍ପବୃଷ୍ଟି କରିବାକୁ ଲାଗିଲେ । **"ମନ୍ଦଂ ମନ୍ଦଂ ଜଲଧରା ଜଗର୍ଜୁରନୁସାଗରମ୍"** । ସେଠାରେ ବାଦଲମାନଙ୍କର ମନ୍ଦ-ମନ୍ଦ ଗର୍ଜନ ମଧ ହେବାକୁ ଲାଗିଲା, ପୁଣି ବର୍ଷା ହେବାକୁ ଲାଗିଲା ଏବଂ ଜଳଧାରା ବହିବାକୁ ଲାଗିଲା । **"ନିଶୀଥେ ତମଉଦ୍ଭୁତେ"** ଦେଖନ୍ତୁ କୃଷ୍ଣପକ୍ଷର ରାତ୍ରି ଅଟେ, ଯଦିଓ **"ସର୍ବଗୁହାଶୟ"** ସମସ୍ତଙ୍କର ହୃଦୟ ଗୁହା ମଧରେ ବିରାଜମାନ ଅଟନ୍ତି, ତଥାପି ଦେବକୀଙ୍କର ଗର୍ଭରୁ ସେଠାରେ ପ୍ରକଟ ହେଲେ । ଅବତାରର ଅର୍ଥ ଏପରି ବୁଝନ୍ତୁ ନାହିଁ ଯେ କେବଳ ଉପରୁ ତଳକୁ ଆସିବା । ସେ ତ ସମସ୍ତଙ୍କ ହୃଦୟରେ ବସିଛନ୍ତି - ଯେଉଁଠାରେ ଅଛନ୍ତି, କେବଳ ସେହିଠାରେ ପ୍ରକଟ ହେଲେ । **"ଆବିରାସୀଦ୍ ଯଥା ପ୍ରାଚ୍ୟାଂ ଦିଶୀନ୍ଦୁରିବ ପୁଷ୍କଳଃ"** - ଯେପରି ପୂର୍ବ ଦିଗରେ ଚନ୍ଦ୍ରମାଙ୍କର ଉଦୟ ହେଉଛି, ସେହିଭଳି ସେ କାରାଗୃହରେ ପ୍ରକଟ ହେଲେ । ଦେଖନ୍ତୁ, ରାମାବତାରରେ ଭଗବାନ ମହଲ ଭିତରେ ଅବତାର ନେଇଥିଲେ, ଏବେ କୃଷ୍ଣାବତାରରେ ବନ୍ଦୀଶାଳାରେ ପ୍ରକଟ ହେଉଛନ୍ତି ।

**ବୋଲିଏ ଶ୍ରୀକୃଷ୍ଣଚନ୍ଦ୍ର ଭଗବାନ କୀ ଜୟ !**

ଭଗବାନଙ୍କର ଅବତାର କାରାଗୃହରେ ମଧ୍ୟ ରାତ୍ରୀ ସମୟରେ ନିଃଶବ୍ଦରେ ହୋଇଥିଲା । ତେଣୁ ଆମକୁ ମଧ୍ୟ ତାଙ୍କର ଜନ୍ମଉତ୍ସବ ନୀରବରେ ପାଳନ କରିବା ଉଚିତ । ଅତ୍ୟଧିକ ହୋ ହା ଭିତରେ କରିବା ଉଚିତ ନୁହେଁ, କଂସକୁ ଖବର ମିଳିଯିବ । କଂସକୁ ଏବେ ଖବର ମିଳିବା ଉଚିତ ନୁହେଁ । ଦେଖନ୍ତୁ, ଭଗବାନ ରାମଜୀଙ୍କର ଅବତାର ଦିନ ବାରଘଣ୍ଟା ସମୟରେ ହୋଇଥିଲା, ତେବେ ତାକୁ ଅତି ଉତ୍ସାହର ସହିତ ପାଳନ କରିବା ଉଚିତ୍, କିନ୍ତୁ ଶ୍ରୀକୃଷ୍ଣାବତାର ତ ଚୁପ୍‌ଚାପ୍ କରିନେବା ଉଚିତ୍ । କଂସର କାରାଗୃହରେ ଭଗବାନ ପ୍ରକଟ ହେଲେ । କିପରି ପ୍ରକଟ ହେଲେ ଜଣାଅଛି ?

**ତମଦ୍ଭୁତଂ ବାଳକମମ୍ବୁଜେକ୍ଷଣଂ**
**ଚତୁର୍ଭୁଜ ଶଙ୍ଖଗଦାର୍ଯୁଦାୟୁଧମ୍ ।**
**ଶ୍ରୀବତ୍ସଲକ୍ଷ୍ମଂ ଗଳଶୋଭିକୌସ୍ତୁଭଂ**
**ପୀତାମ୍ବରଂ ସାନ୍ଦ୍ରପୟୋଦସୌଭଗମ୍ ॥ (୧୦.୩.୯)**

**ମହାର୍ହବୈଦୂର୍ଯକିରୀଟକୁଣ୍ଡଳ -**
**ତ୍ୱିଷା ପରିଷ୍ୱକ୍ତସହସ୍ରକୁନ୍ତଳମ୍ ।**
**ଉଦ୍ଦାମକାଞ୍ଚ୍ୟଙ୍ଗଦକଙ୍କଣାଦିଭି**
**ର୍ବିରୋଚମାନଂ ବସୁଦେବ ଐକ୍ଷତ ॥ (୧୦.୩.୧୦)**

ବସୁଦେବଜୀ ଦେଖିଲେ ଯେ ସମ୍ମୁଖରେ ଏକ ଅଦ୍ଭୁତ ବାଳକ । ଏ ପର୍ଯ୍ୟନ୍ତ ଦେବକୀଙ୍କର ଯେଉଁ ବାଳକ ହୋଇଥିଲେ, ସେମାନେ ସାମାନ୍ୟ ଥିଲେ । କିନ୍ତୁ ଏହି ବାଳକ ଅଦ୍ଭୁତ । କିପରି ? **"ଅମ୍ବୁଜେକ୍ଷଣଂ"** ତାଙ୍କର ନେତ୍ର କମଳ ସମାନ, **"ଚତୁର୍ଭୁଜ- ଶଙ୍ଖଗଦାର୍ଯୁଦ୍ରାୟୁଧମ"** - ଚାରୋଟି ହାତ ଅଛି, ଯେଉଁଥିରେ ଶଙ୍ଖ, ଚକ୍ର, ଗଦା, ପଦ୍ମ ନେଇଛନ୍ତି । **"ଶ୍ରୀବତ୍ସଲକ୍ଷ୍ମଂ ଗଳଶୋଭିକୌସ୍ତୁଭଂ"** ବକ୍ଷରେ ଶ୍ରୀବତ୍ସ ଚିହ୍ନ ଅଣି । ଗଳରେ କୌସ୍ତୁଭମଣି ଅଛି, ପୀତାମ୍ବର ଧାରଣ କରିଛନ୍ତି ଏବଂ ଯେପରି ଜଳରେ ଭରା ବାଦଲା ଥାଏ, ସେହିପରି ନୀଳ ମେଘଶ୍ୟାମବର୍ଣ୍ଣ ଭଗବାନ ଅଟନ୍ତି । **"ଉଦ୍ଦାମକାଞ୍ଚ୍ୟଙ୍ଗଦକଂକଣାଦିଭିଃ ବିରୋଚମାନଂ ବସୁଦେବ ଐକ୍ଷତ"** ଆଭୂଷଣରେ ଅଳଙ୍କୃତ ଭଗବାନ ସେଠାରେ ପ୍ରକଟ ହେଲେ ଏବଂ ବସୁଦେବଜୀ ତାଙ୍କୁ ଦେଖୁଛନ୍ତି ।

**ସ ବିସ୍ମୟୋତ୍ଫୁଲ୍ଲବିଲୋଚନୋ ହରିଂ**
**ସୁତଂ ବିଲୋକ୍ୟାନକଦୁନ୍ଦୁଭିସ୍ତଦା ।**
**କୃଷ୍ଣାବତାରୋତ୍ସବସମ୍ଭ୍ରମୋଽସ୍ପୃଶନ**
**ମୁଦା ଦ୍ୱିଜେଭ୍ୟୋଽୟୁତମାପ୍ଲୁତୋ ଗବାମ୍ ॥ (୧୦.୩.୧୧)**

ତାଙ୍କର ହୃଦୟ ପ୍ରସନ୍ନତାରେ ଭରିଗଲା । ତାଙ୍କୁ ଲାଗିଲା ଯେ ଏହା ତ ଦାନ-ପୂଣ୍ୟ କରିବାର ସମୟ, କିନ୍ତୁ ମୁଁ ତ ଜେଲ ଭିତରେ ପଡ଼ିଛି, ମୁଁ କଣ କରିବି ? ଏପରି ବିଚାର କରି ସେ ମନେ ମନେ ସଙ୍କଳ୍ପ କରିନେଲେ ଯେ ଅବସର ମିଳିଲେ ମୁଁ ସମସ୍ତ ବ୍ରାହ୍ମଣମାନଙ୍କୁ ହଜାର - ହଜାର ଗାଇ ଦେଇ ଦେବି । ବସ୍ତ୍ର, ଆଭୂଷଣ, ଧନ, ସବୁ କିଛି ଦେବି । ପରମ ପୁରୁଷଙ୍କୁ ସମ୍ମୁଖରେ ପ୍ରକଟ ହୋଇଥିବା ଦେଖି ବସୁଦେବଜୀ କହୁଛନ୍ତି-

**ବିଦିତୋଽସି ଭବାନ ସାକ୍ଷାତ୍ ପୁରୁଷଃ ପ୍ରକୃତେଃ ପରଃ ।**
**କେବଳାନୁଭବାନନ୍ଦ ସ୍ୱରୂପଃ ସର୍ବବୁଦ୍ଧିଦୃକ୍ ॥ (୧୦.୩.୧୩)**

ମୁଁ ଜାଣିଛି ଯେ ସମସ୍ତ ପ୍ରକୃତିର ଉପରେ କେବଳ ଅନୁଭବାନନ୍ଦ ସ୍ୱରୂପ, ସମସ୍ତଙ୍କର ବୁଦ୍ଧିର ସାକ୍ଷୀରୂପ ଆପଣ ହିଁ ଏଠାରେ ପ୍ରକଟ ହୋଇଛନ୍ତି ।

**ତ୍ୱମସ୍ୟ ଲୋକସ୍ୟ ବିଭୋ ରିରକ୍ଷିଷୁ -**
**ର୍ଗୃହେଽବତୀର୍ଣ୍ଣୋଽସି ମମାଖିଳେଶ୍ୱର ।**
**ରାଜନ୍ୟସଂଜ୍ଞାସୁରକୋଟିଯୂଥପୈ -**
**ର୍ନିର୍ବ୍ୟୁହ୍ୟମାନା ନିହାନିଷ୍ୟସେ ଚମୂଃ ॥ (୧୦.୩.୨୧)**

ଆପଣ ନିଜର ପୂର୍ଣ୍ଣ ତେଜ ସହିତ ମୋ ପ୍ରତି କୃପା କରିବା ନିମନ୍ତେ ମୋ ଘରେ ପ୍ରକଟିତ ହୋଇଅଛନ୍ତି ଏବଂ ଭବିଷ୍ୟତରେ ସମସ୍ତ ଅସୁରଙ୍କୁ ସଂହାର କରିବେ, ଏହା ମଧ୍ୟ ମୁଁ ଜାଣିଛି । ଆପଣଙ୍କୁ ନମସ୍କାର ! ସେତେବେଳେ ଦେବକୀ ଜୀଙ୍କର ମଧ୍ୟ ସ୍ଥିତିର ଆଭାସ ହେଉଛି, ଦେବକୀ ମଧ୍ୟ ସେହି ରୂପକୁ ଦେଖୁଛନ୍ତି। ପୁଣି ହାତ ଯୋଡ଼ିକରି କହୁଛନ୍ତି -

**ରୂପଂ ଯତ୍ ତତ୍ ପ୍ରାହୁରବ୍ୟକ୍ତମାଦ୍ୟଂ**

**ବ୍ରହ୍ମ ଜ୍ୟୋତିର୍ନିର୍ଗୁଣଂ ନିର୍ବିକାରମ୍ ।**

**ସତ୍ତାମାତ୍ରଂ ନିର୍ବିଶେଷଂ ନିରୀହଂ**

**ସ ତ୍ୱଂ ସାକ୍ଷାତ୍ ବିଷ୍ଣୁରଧ୍ୟାତ୍ମଦୀପଃ ॥ (୧୦.୩.୨୪)**

ଯାହାଙ୍କୁ ନିର୍ଗୁଣ ନିର୍ବିଶେଷ ସଚ୍ଚିଦାନନ୍ଦ ସ୍ୱରୂପ କହନ୍ତି, ଆପଣ ସେହି ଅଧ୍ୟାତ୍ମ ଦୀପ ଅଟନ୍ତି । ଆପଣ ହିଁ ଏଠାରେ ପ୍ରକଟ ହୋଇଛନ୍ତି । ମୃତ୍ୟୁଠାରୁ ଭୟଭୀତ ହୋଇ ଜୀବ ଦଶ ଦିଗଆଡ଼କୁ ଦୌଡୁଥାଏ, ତାକୁ ମୃତ୍ୟୁଠାରୁ କେବେ ସୁରକ୍ଷା ମିଳେ ନାହିଁ । କିନ୍ତୁ ଯେତେବେଳେ ସେ ଆପଣଙ୍କର ଚରଣ କମଳରେ ଆଶ୍ରୟ ଗ୍ରହଣ କରିନିଏ ସେତେବେଳେ "ସ୍ୱସ୍ଥଃଶେତେ' ସ୍ୱସ୍ଥ ହୋଇ ଆରାମରେ ଶୋଇଯାଏ, କାରଣ ସେତେବେଳେ ମୃତ୍ୟୁ ତାଠାରୁ ଦୂରକୁ ପଳାଇଯାଏ । ଆପଣ ତ ଏଭଳି ଭଗବାନ ଅଟନ୍ତି । କିନ୍ତୁ ମା'ର ହୃଦୟକୁ ଦେଖନ୍ତୁ । ଗୋଟିଏ ପାଖରେ ନିର୍ଗୁଣ ସ୍ୱରୂପକୁ, ଐଶ୍ୱର୍ଯ୍ୟକୁ ମଧ୍ୟ ଜାଣୁଛି ଏବଂ ଅନ୍ୟ ପାଖରେ କହୁଛି – ଆରେ ! ଆପଣଙ୍କ ତେଜ ସବୁଆଡ଼କୁ ପ୍ରତିଫଳିତ ହୋଇଗଲାଣି, ଶୀଘ୍ର ତାକୁ ସମ୍ବରଣ କରିନିଅନ୍ତୁ, ଯଦି କଂସକୁ ଜଣା ପଡ଼ିଯିବ ତ ସେ ଆପଣଙ୍କୁ ମାରିଦେବ । ଆପଣ ଏହି ରୂପକୁ ଛାଡ଼ି ଦିଅନ୍ତୁ, ଏହି ଚର୍ମ ଚକ୍ଷୁବାଲା ଲୋକମାନଙ୍କୁ ନିଜର ରୂପକୁ ଦେଖାନ୍ତୁ ନାହିଁ । ଏ ଲୋକମାନେ ବୁଝିପାରିବେ ନାହିଁ । ମା'ର ହୃଦୟ ଅଛି, ଭଗବାନଙ୍କର ଐଶ୍ୱର୍ଯ୍ୟ ଦର୍ଶନ କରିବା ସହିତ ବାତ୍ସଲ୍ୟତାର କିପରି ବିସ୍ମୟକାରୀ ମିଶ୍ରଣ ଦେଖାଯାଉଛି । କହୁଛନ୍ତି –

**ଜନ୍ମତେ ମଯ୍ୟସୌ ପାପୋ ମା ବିଦ୍ୟାନ୍ ମଧୁସୂଦନ ।**

**ସମୁଦ୍ୱିଜେ ଭବଦ୍ଧେତୋଃ କଂସାଦହମଧୀରଧୀଃ ॥ (୧୦.୩.୨୯)**

ପାପୀ କଂସ ନ ଜାଣୁ ଯେ ମୋ ଠାରୁ ଆପଣଙ୍କର ପ୍ରକଟ ହୋଇଛି । କଂସର ଭୟରେ ମୁଁ ଭୟଭୀତ । ଦେଖନ୍ତୁ, କଂସ ଯେତେବେଳେ ଦେବକୀଙ୍କୁ ମାରିବା ପାଇଁ ଆସିଲା, ସେତେବେଳେ ଦେବକୀଙ୍କୁ ଡର ଲାଗିଲା ନାହିଁ । କହୁଛନ୍ତି – ମୋତେ ନିଜ ପାଇଁ କଂସକୁ ଭୟ ଲାଗୁ ନାହିଁ, କିନ୍ତୁ ସେ ଆପଣଙ୍କୁ ମାରିବ, ସେଥିପାଇଁ ମୋତେ ଡର ଲାଗୁଛି, ଭୟ ହେଉ । ଏ ଯେଉଁ ମା'ର ପ୍ରେମ ତାହା ବଡ଼ ବିଲକ୍ଷଣ, ଏବଂ ବିଚିତ୍ର ପ୍ରକାରର ହୋଇଥାଏ । ଏପରି ପ୍ରେମ କୌଣସି କୌଣସି ଭାଗ୍ୟଶାଳୀଙ୍କୁ ହିଁ ପ୍ରାପ୍ତ ହୋଇଥାଏ । ଦେବକୀ ଜୀ କହୁଛନ୍ତି – ଭଗବାନ ! ଆପଣ ନିଜର ଏହି ରୂପକୁ ଶିଘ୍ର

ଛାଡ଼ି ଦେଇ ସାମାନ୍ୟ ଶିଶୁଭଳି ହୋଇଯାଆନ୍ତୁ । ଏହା ବିଚାର କରି କରି ଭାବି ଭାବି ମୋର ବୁଦ୍ଧି ବଣା ହୋଇଯାଉଛି ଯେ ସମଗ୍ର ବିଶ୍ୱକୁ ନିଜ ଭିତରେ ଲୟ କରିପାରୁଥିବା ଭଗବାନ ମୋର ଗର୍ଭରେ ଆସିଛନ୍ତି ।

**ଅହୋ ନୃଲୋକସ୍ୟ ବିଡ଼ମ୍ବନଂ ହି ତତ୍ ॥ (୧୦.୩.୩୧)**

ଏହାଠାରୁ ବଳି ଆଉ କ'ଣ ବିଡ଼ମ୍ବନା ହୋଇପାରେ ? ଭଗବାନ କହୁଛନ୍ତି - ମା ! ମୁଁ ନିଜର ଏହି ରୂପକୁ ତୁମକୁ କାହିଁକି ଦେଖାଇଲି ଜାଣିଛନ୍ତି ? କାହିଁକି ନା ପୂର୍ବଜନ୍ମରେ ତୁମେ ପୃଶ୍ନି ଥିଲ ଏବଂ ବସୁଦେବଜୀ ସୁତପା ଥିଲେ । ମୋତେ ପାଇବା ନିମନ୍ତେ ଆପଣ ଦୁଇଜଣ ତପସ୍ୟା କରିଥିଲ, କିନ୍ତୁ ମୁଁ ମୋର ମାୟାରେ ଆପଣ ଦୁଇଜଣଙ୍କୁ ମୋହିତ କରିଦେଲି ଏବଂ ଆପଣ ଦୁଇଜଣ ମୋକ୍ଷ ମାଗିବା ବଦଳରେ ମୋତେ ପୁତ୍ର ରୂପରେ ମାଗିଥିଲ । ଏହା କେବଳ ପ୍ରଥମ ଥର ନୁହେଁ, ତୃତୀୟ ଥର ପାଇଁ ମୁଁ ତୁମର ପୁତ୍ର ହୋଇଆସିଛି । ପ୍ରଥମ ଥର ମୁଁ ପୃଶ୍ନିଗର୍ଭ ହୋଇ ଆସିଲି, ଦ୍ୱିତୀୟ ଥର ବାମନ୍ ହୋଇ ଆସିଲି ଏବଂ ପୁଣି ଏବେ ତୃତୀୟ ଥର ପାଇଁ ଆସିଛି । ମୋର ତଥା ଆପଣଙ୍କର ପୂର୍ବ ଜନ୍ମ - ଅବତାରର ସ୍ମରଣ କରାଇଦେବା ନିମନ୍ତେ ହିଁ ମୁଁ ତୁମକୁ ଏହି ରୂପ ଦେଖାଉଛି ।

**ଯୁବାଂ ମାଂ ପୁତ୍ରଭାବେନ ବ୍ରହ୍ମଭାବେନ ଚାସକୃତ୍ ।**
**ଚିନ୍ତୟନ୍ତୌ କୃତସ୍ନେହୌ ୟାସ୍ୟେଥେ ମଦ୍‌ଗତିଂ ପରାମ୍ ॥ (୧୦.୩.୪୫)**

ତୁମେ ଦୁହେଁ ପୁତ୍ର ଭାବରେ ମୋମେ ପ୍ରେମ କରୁ କରୁ, ତତ୍‌ସହିତ ବ୍ରହ୍ମଭାବ ଦ୍ୱାରା ମୋର ଚିନ୍ତନ ମଧ୍ୟ କରୁଥିବ । ଏହାଦ୍ୱାରା ତୁମେ ଦୁହେଁ ମୁକ୍ତ ହୋଇଯିବ । ଦେଖନ୍ତୁ, ଏଠାରେ ରସ ଯୁକ୍ତ କଥା ହେଲା ଯେ, ଏ ଦୁହେଁ ଭଗବାନଙ୍କୁ ପୁତ୍ର ରୂପରେ ଚାହୁଁ ନ ଥିଲେ, ଭଗବାନ ହିଁ ଏମାନଙ୍କୁ ମାତା ଏବଂ ପିତା ରୂପରେ ଚାହୁଁଥିଲେ । ସାମାନ୍ୟ ବିଚାର କରନ୍ତୁ ତ, ଏମାନେ ଭଗବାନଙ୍କୁ ପୁତ୍ର ରୂପେ ପ୍ରାପ୍ତ କରିବା ନିମନ୍ତେ କ'ଣ ତପ କରିଥିଲେ ? ସେମାନେ ତ ମୋକ୍ଷ ନିମନ୍ତେ ହିଁ ତପ କରୁଥିଲେ । କିନ୍ତୁ ବର ମାଗିବା ସମୟରେ ଭଗବାନ ଏମାନଙ୍କର ବୁଦ୍ଧିକୁ ମୋହିତ କରିଦେଲେ । ଏହି କଥା ଭଗବାନ ସ୍ୱୟଂ କହିଛନ୍ତି -

**ନ ବବ୍ରାଥେଽପବର୍ଗଂ ମେ ମୋହିତୌ ମମ ମାୟୟା ।। (୧୦.୩.୩୯)**

ମୋର ମାୟାରେ ମୋହିତ ହୋଇ ତୁମେ ଦୁହେଁ ମୋକ୍ଷ ମାଗିଲ ନାହିଁ । ଏହାର ଅର୍ଥ କ'ଣ ହେଲା ? ଭଗବାନ ବୈକୁଣ୍ଠରେ ବସି ବି ତାଙ୍କୁ ଅସ୍ତବ୍ୟସ୍ତ ଲାଗୁଥିଲା । ସେଥିପାଇଁ ସନତ କୁମାର ଜୟ-ବିଜୟଙ୍କୁ ଅଭିଶାପ ଦେଲେ ଏବଂ ସେମାନଙ୍କୁ ଭଲ ଲାଗୁନଥିଲା ଯେ ଆମେ, କିପରି ଭଗବାନଙ୍କର ପାର୍ଷଦଙ୍କୁ ଏପରି ଅଭିଶାପ ଦେଲେ, ସେମାନେ ବାରମ୍ବାର କ୍ଷମା ମାଗୁଥିଲେ । ସେତେବେଳେ ଭଗବାନ କହିଥିଲେ - ତୁମକୁ କାହିଁକି ଖରାପ ଲାଗୁଛି, ମୁଁ ମଧ୍ୟ ଏଠାରେ ବସି ବସି ବିରକ୍ତ ହେଉଥିଲି, ମୁଁ ମଧ୍ୟ ତଳକୁ (ମର୍ତ୍ତ୍ୟ) ଯିବାକୁ ଚାହୁଁଥିଲି । ଏଠାରେ ଯେତେବେଳେ ଦେଖିଲେ ସେତେବେଳେ ଲକ୍ଷ୍ମୀଜୀ ପାଦ ସେବା କରୁଛନ୍ତି ।

ଦେଖନ୍ତୁ, ଏହି କଥାରେ କେତେ ପ୍ରେମ ଭରି ରହିଛି ଯେ ପୃଶ୍ନି ଓ ସୁତପା ତ ଚାହୁଁନଥିଲେ, କିନ୍ତୁ ଭଗବାନ ହିଁ ଏମାନଙ୍କୁ ମାତା, ପିତା କରିବାକୁ ଚାହୁଁଥିଲେ, ସେହି ସୁଖର ଅନୁଭବ କରିବାକୁ ଚାହୁଁଥିଲେ । କାହିଁକି ନା, ଆପଣଙ୍କୁ ସତ କଥା କହିଲେ - ଯେତେବେଳେ ଦେଖ ସେତେବେଳେ କେହି ଆସିବ, ମାଳି ପିନ୍ଧାଇବ, ନମସ୍କାର କରୁଥିବ, ଏ ସବୁ ବଡ଼ କଷ୍ଟ ଲାଗେ । ଯେତେବେଳେ ଦେଖ ସେତେବେଳେ - ହେ ଜଗନ୍ନାଥ, ହେ ଜଗତସ୍ୱାମୀ, ହେ ସଚ୍ଚିଦାନନ୍ଦ ଶୁଣି ଚାଲିଥିବ କଣ ଭଲ ଲାଗିବ ? ଭଗବାନଙ୍କୁ ମଧ୍ୟ କେବେ କେବେ ଗାଳି ଶୁଣିବା ମନ ହୁଏ । ସେଥିପାଇଁ ସେ ଯଶୋଦାଙ୍କର ପୁତ୍ର ହୋଇ ଆସିଲେ, କାରଣ ରାମାବତାରରେ ମଧ୍ୟ ତାଙ୍କୁ ସେହି ସୁଖ ମିଳି ପାରିଲା ନାହିଁ । କଣ କରିବେ, କୌଶଲ୍ୟା - ଦଶରଥ ଜୀ ତାଙ୍କୁ କେବେ ମାରି ନାହାନ୍ତି, କେବେ ବାନ୍ଧି ନାହାନ୍ତି, କେବେ କିଛି ତାଗିଦ୍ କରିନାହାନ୍ତି, କେବେ କିଛି ହିଁ କରିନାହାନ୍ତି ।

## ଶ୍ରୀକୃଷ୍ଣଙ୍କୁ ନେଇ ବସୁଦେବଜୀଙ୍କର ଗୋକୁଳ ଯାତ୍ରା

ବସୁଦେବ ଦେବକୀ ଦୁହେଁ ଦେଖୁ-ଦେଖୁ ଭଗବାନ ପ୍ରକୃତରେ ଶିଶୁଭଳି ହୋଇଗଲେ । ପୁଣି ସେ ବସୁଦେବଜୀଙ୍କୁ କହୁଛନ୍ତି - ମୋତେ ଶୀଘ୍ର ଏକ ଟୋକେଇରେ ରଖ ଏବଂ ଏଠାରୁ ଗୋକୁଳ ନେଇ ଚାଲନ୍ତୁ । ଦେଖନ୍ତୁ, "ଗୋକୁଳ' ଶବ୍ଦ କେତେ ସୁନ୍ଦର । ଗୋକୁଳର ଗୋଟିଏ ଅର୍ଥ ହେଉଛି, ଯେଉଁଠି ଗାଈମାନଙ୍କର ହିଁ ପରିବାର ରହୁଛି । ଭଗବାନଙ୍କର ଗୋତ୍ର ତ ବଡ଼ ଦୁର୍ଗମ ଅଟେ । ସମସ୍ତ ଜାତି-ନୀତି, କୁଳ-ଗୋତ୍ର ଏବଂ ବର୍ଣ୍ଣାଶ୍ରମର ଊର୍ଦ୍ଧ୍ୱରେ ହେଲେ ମଧ୍ୟ ସେ କ୍ଷତ୍ରିୟ ବଂଶରେ ଆସିଲେ ଏବଂ ତା'ପରେ ଗୋକୁଳରେ ବୈଶ୍ୟ ବଂଶରେ ଗଲେ ।

**କୃଷିଗୌରକ୍ଷବାଣିଜ୍ୟଂ ବୈଶ୍ୟକର୍ମ ସ୍ୱଭାବଜମ୍ । (ଭ.ଗୀତା ୧୮.୪୪)**

ନନ୍ଦ ଆଦି ସମସ୍ତ ଗୋପ ବୈଶ୍ୟ ଅଟନ୍ତି । ଏବେ ଦେଖନ୍ତୁ, ଭଗବାନ କ୍ଷତ୍ରିୟ ଅଟନ୍ତି, ବୈଶ୍ୟ କି ବ୍ରାହ୍ମଣ ଅଟନ୍ତି - କଣ ହେଲା ? ବାମନ ଅବତାରରେ ସେ ବ୍ରାହ୍ମଣ ରୂପରେ ଆସିଥିଲେ, ଏଠାରେ କ୍ଷତ୍ରିୟ ରୂପରେ ଆସିଛନ୍ତି ଏବଂ ବୈଶ୍ୟ ପରିବାରକୁ ସେ ପୁଣି ଚାଲିଗଲେ । ଏଠାରେ ଦ୍ୱିତୀୟ କଥା ହେଉଛି ସେ ବସୁଦେବ-ଦେବକୀଙ୍କର ପୁତ୍ର, କିନ୍ତୁ ବାଲ-ଲୀଳାର ସୁଖ ତ ସେ ଯଶୋଦା ଓ ନନ୍ଦ ଜୀଙ୍କୁ ହିଁ ଦେଲେ । ଏହାଦ୍ୱାରା ଭଗବାନ କଣ କରିବାକୁ ଚାହୁଁଛନ୍ତି ? ଏଇ ଯେ ଭାବ ଦ୍ୱାରା ମୋତେ ନିଜର ପୁତ୍ର ମାନି ନିଅନ୍ତି, ବାସ୍ ମୁଁ ତାଙ୍କର ପୁତ୍ର ହୋଇଯିବି । ତେବେ କାହାକୁ ଏହା ବିଚାର କରିବାର ଆବଶ୍ୟକ ନାହିଁ ଯେ, ମୋତେ କେତେବେଳେ ଏପରି ଅବସର ମିଳିବ ଯେତେବେଳେ ଭଗବାନ ମୋର ପୁତ୍ର ହୋଇ ଆସିବେ ? ଆରେ ! ହେବେ କ'ଣ, ଆପଣ ପ୍ରେମରେ ଏବେ ତାଙ୍କୁ ପୁତ୍ରଭଳି ମାନି ନେବେ ତ ସେ ନିଶ୍ଚୟ ଆସିବେ । ଆପଣଙ୍କ ସମ୍ମୁଖରେ ବସି ଆପଣଙ୍କୁ ମଧ୍ୟ ମାଖନ ମାଗିବେ । ଆଜି ମଧ୍ୟ ଆପଣ ଦେଖନ୍ତୁ, ହେଉଛି କି ନାହିଁ। କହିବାର ତାତ୍ପର୍ଯ୍ୟ ଏହା ଯେ, ଯେଉଁମାନେ ତାଙ୍କୁ ପ୍ରାକଟ୍ୟ କରିବାର ମାଧ୍ୟମ ହୋଇଥାଆନ୍ତି, ଭଗବାନ ତ ତାଙ୍କର ପୁତ୍ର ନିଶ୍ଚୟ ହୁଅନ୍ତି, କିନ୍ତୁ ଯେଉଁମାନେ ଭାବରେ ତଥା ଭକ୍ତିରେ ମାନିଥା'ନ୍ତି, ସେ ସେମାନଙ୍କର ମଧ୍ୟ ପୁତ୍ର ହୋଇଥାଆନ୍ତି ।

"ଗୋକୁଳ'ର ଦ୍ୱିତୀୟ ଅର୍ଥ ହେଉଛି ଇନ୍ଦ୍ରିୟମାନଙ୍କର ପରିବାର । "ଗୋ'ର ଅର୍ଥ ଇନ୍ଦ୍ରିୟ, ଏହି ଦୃଷ୍ଟିରେ ଇନ୍ଦ୍ରିୟମାନଙ୍କର ପରିବାରକୁ "ଗୋକୁଳ' କୁହାଯାଏ । ଭଗବାନଙ୍କର ଅବତାର ସେ ଦେହ, ଇନ୍ଦ୍ରିୟ, ପ୍ରାଣ ତଥା ବୁଦ୍ଧିର ସଂଘାତରେ ଆସିଥାଆନ୍ତି। ପ୍ରାୟତଃ କୁହାଯାଏ ଯେ, ଭଗବାନ ଦେହ, ଇନ୍ଦ୍ରିୟ, ମନ, ବୁଦ୍ଧିର ଉପରେ ଅଟନ୍ତି ?

କ'ଣ ସେ ଏଠାରେ ନାହାନ୍ତି ? ଭଗବାନ କହନ୍ତି ଯେ, ମୁଁ ଏମାନଙ୍କର ଉପରେ ଅଛି, ବାହାରେ ଅଛି, ତେବେ ସେମାନଙ୍କ ଭିତରେ କିଏ ଅଛି ? କଣ ଶଇତାନ ଅଛି ? ତୁମର ଇନ୍ଦ୍ରିୟରେ କିଏ ବସିଛି ? ତୁମର ମନରେ କିଏ ବସିଛି ? **"ଅତ୍ରୈବ ସନ୍ତ୍ୱାତ୍ମନି ଧୀ ଗୁହାୟାମ୍"** (ବିବେକ ଚୂଡ଼ାମଣି - ୧୩୪) ବିବେକ ଚୂଡ଼ାମଣିରେ କୁହାଯାଇଛି ସେ ତ ଆମରି ଭିତରେ ହିଁ, ବୁଦ୍ଧି ଗୁହାରେ ସ୍ଥିତ ଅଛନ୍ତି ।

ଭଗବାନ ବସୁଦେବ ଜୀଙ୍କୁ କହୁଛନ୍ତି- ମୋତେ ଗୋକୁଳକୁ ନେଇଚାଲ । ବସୁଦେବ ଜୀ କହୁଛନ୍ତି - ମହାରାଜ ନେଇଯିବି ତାହା ତ ଠିକ ଅଛି, କିନ୍ତୁ କବାଟରେ ତାଲା ପଡ଼ିଛି ଏବଂ ସମସ୍ତ ପ୍ରହରୀ ଶୋଇ ପଡ଼ିଛନ୍ତି । କହିଲେ - ମୁଁ ଯାହା କହୁଛି ତାହା ହିଁ କର । ଭଗବାନ ସାମାନ୍ୟ ବାଳକ ହୋଇଗଲେ । ତାଙ୍କୁ ଏକ ଟୋକେଇରେ ରଖି ବସୁଦେବଜୀ ଚାଲିବାକୁ ଆରମ୍ଭ କଲେ ତ ସମସ୍ତ କବାଟର ତାଲାଗୁଡ଼ିକ ଆପେ ଆପେ ଖୋଲିଗଲା । ଭଗବାନଙ୍କ ମାୟା କାରଣରୁ ପ୍ରହରୀମାନେ ଏଭଳି ଘୁଂଘୁଡି ମାରି ଶୋଇ ରହିଥିଲେ, ଯେପରି କେହି ଘୋଡ଼ା ବିକ୍ରି କରି ଶୋଇ ଯାଇଛି । ଦେଖନ୍ତୁ, ବ୍ରହ୍ମ ଯେତେବେଳେ ଆସିବେ ସେତେବେଳେ କବାଟ ତ ନିଶ୍ଚୟ ଖୋଲିଯିବ । ଅନ୍ୟଥା ଭଗବାନଙ୍କର ଆସିବାର ପ୍ରୟୋଜନ କ'ଣ ? ବ୍ରହ୍ମ ଆସିଲେ ତ କବାଟ ଖୋଲିଗଲା, ସମସ୍ତ ଅସୁର ଶୋଇଗଲେ, ବସୁଦେବ ଜୀ ଭଗବାନଙ୍କୁ ନେଇ ଯାଉଛନ୍ତି ।

ମରାଠୀରେ ଏକ ଅତି ସୁନ୍ଦର ଲେଖାଯାଇଛି - "ବସୁଦେବ ନିଘାଲେ ନନ୍ଦଘରୀ' । ଦେଖନ୍ତୁ, ଏହାର ବର୍ଣ୍ଣନ ଶୈଳୀ । ବସୁଦେବ ଜୀ ଚାଲୁଛନ୍ତି । ମନ୍ଦ ମନ୍ଦ ବର୍ଷା ହେଉଛି । ଭଗବାନଙ୍କ ଉପରେ ଶେଷ ନାଗ ଛତ୍ର କରି ରହିଅଛନ୍ତି । ନନ୍ଦଙ୍କର ଘରକୁ ଯିବା ଯେତେବେଳେ ବସୁଦେବ ଜୀ ଯମୁନା ଜୀ ଭିତରେ ପ୍ରବେଶ କଲେ, ତ ସେ ବଢ଼ିବାକୁ ଲାଗିଲେ। ବସୁଦେବଜୀଙ୍କର ଅଣ୍ଟା ପର୍ଯ୍ୟନ୍ତ ଆସିଗଲାଣି, ପୁଣି ଛାତି ପର୍ଯ୍ୟନ୍ତ, କାନ୍ଧ ପର୍ଯ୍ୟନ୍ତ ଏବଂ ପୁଣି ବେକ ପର୍ଯ୍ୟନ୍ତ ଆସିଗଲାଣି, କିନ୍ତୁ ସେ ଚାଲୁଛନ୍ତି । କିପରି ବିଶ୍ୱାସ ! ତାହା ସେଇଥିପାଇଁ ଯେ, ତାଙ୍କ ମସ୍ତକ ଉପରେ ସ୍ୱୟଂ ଭଗବାନ ବିରାଜମାନ । ଭଗବାନ ବିଚାର କରୁଛନ୍ତି ଯେ ଯମୁନା ଜୀ ଏପରି ବଢ଼ି ଚାଲିଛନ୍ତି କାହିଁକି ? ଏପରି ହେଲେ ଏ ତ ମୋର ପିତାଜୀଙ୍କୁ ବୁଡ଼ାଇ ଦେବେ ଭଗବାନ ବୁଝିଗଲେ ଯେ ଯମୁନା ଜୀ ତାଙ୍କର ଚରଣ ସ୍ପର୍ଶ କରିବା ପାଇଁ ଚାହିଁ ରହିଛନ୍ତି । ଟୋକେଇ ଭିତରୁ କେଜାଣି କେମିତି ଧୀରେ ନିଜର ପାଦକୁ ବାହାର କରିଆଣିଲେ ଏବଂ ଜଳକୁ ସ୍ପର୍ଶ କରିନେଲେ। ଯମୁନା ଜୀଙ୍କୁ ଭଗବାନଙ୍କର ସ୍ପର୍ଶ ପ୍ରାପ୍ତ ହେଲା ପରେ ସେ କହିଲେ- ଏ ତ ମୋର ଭଗବାନ ଅଟନ୍ତି । ସେତେବେଳେ ସେ ଆପେ ଆପେ ହିଁ ପୂର୍ବ ଭଳି ହୋଇଗଲା ଏବଂ

ବସୁଦେବଜୀଙ୍କୁ ରାସ୍ତା ମିଳିଗଲା । ସେ ଆଗକୁ ଚାଲି ଯାଉଛନ୍ତି । ଯେତେବେଳେ ସେ ଗୋକୁଳରେ ପହଞ୍ଚିଲେ ତ ସେ ଦେଖିଲେ ସାରା ଗୋକୁଳ ଶୋଇ ପଡ଼ିଛି ।

ଏବେ ଦେଖନ୍ତୁ, ବସୁଦେବ ଜୀଙ୍କର ଗୋକୁଳ ଯିବାର ଏହି ଯେଉଁ ପ୍ରସଙ୍ଗ, ଏହାର ବର୍ଣ୍ଣନ ଶ୍ରୀମଦ୍ ଭାଗବତରେ ସାମାନ୍ୟ ଅଲଗା ବର୍ଣ୍ଣନ ହୋଇଛି । ଏଠାରେ କୁହାଯାଇଛି ଯେ ଭଗବାନଙ୍କର ପ୍ରେରଣା ଦ୍ୱାରା ବସୁଦେବ ଜୀ ତାଙ୍କୁ କୋଳରେ ନେଇ ଚାଲିଲେ ତ ସମସ୍ତ ଦ୍ୱାର ସହଜରେ ଖୋଲିଗଲା । ରାସ୍ତାରେ ଶେଷ ଜୀ ନିଜର ଫଣାରେ ଭଗବାନଙ୍କ ଉପରେ ଛତ୍ର କରି ଚାଲୁଥିଲେ ଯଦ୍ୱାରା କି ଜଳଧାରାଠାରୁ ତାଙ୍କର ରକ୍ଷା ହେବ । ପୁଣି ଯମୁନାଜୀ ମଧ୍ୟ ତାଙ୍କୁ ମାର୍ଗ ଦେଇଥିଲେ । ଗୋକୁଳ ପହଞ୍ଚିବା ପରେ ବସୁଦେବ ଜୀ ଦେଖିଲେ ଯେ ସମସ୍ତେ ଶୋଇ ପଡ଼ିଛନ୍ତି ।

ଦେଖନ୍ତୁ, ଗୋକୁଳରେ ଯଶୋଦା ଜୀ ମଧ୍ୟ ଗର୍ଭବତୀ ଥିଲେ, ଏବଂ ତାଙ୍କର ମଧ୍ୟ ସେହି ସମୟରେ ସନ୍ତାନଟିଏ ହେଲା । କିନ୍ତୁ ତାଙ୍କର ଏତିକି ମାତ୍ର ଜ୍ଞାନ ହେଲା ଯେ ଶିଶୁଟିଏ ହୋଇଛି । ସେତେବେଳ ପର୍ଯ୍ୟନ୍ତ ଭଗବାନଙ୍କର ମାୟା ତାଙ୍କୁ ଏପରି ମୋହିତ କରି ଦେଇଥିଲା ଯେ ସେ ଥକି ଯାଇ ଶୋଇପଡ଼ିଲେ ।

**ଯଶୋଦା ନନ୍ଦପତ୍ନୀ ଚ ଜାତଂ ପରମବୁଧ୍ୟତ ।**
**ନ ତଲ୍ଲିଙ୍ଗଂ ପରିଶ୍ରାନ୍ତା ନିଦ୍ରୟାପଗତସ୍ମୃତିଃ ॥ (୧୦.୩.୫୩)**

ନିଦ୍ରା ହେତୁ ତାଙ୍କୁ ଜଣା ହିଁ ପଡ଼ିଲା ନାହିଁ ଯେ ପୁତ୍ର ହୋଇଛି କି ପୁତ୍ରୀ । ଏବେ ବସୁଦେବ ଜୀ ଯଶୋଦା ଜୀଙ୍କର ପାଖକୁ ଆସିଲେ - ଯେଉଁଠାରେ କି ଭଗବାନଙ୍କର ମାୟା - ଯୋଗମାୟା ପ୍ରକଟ ହୋଇଛନ୍ତି । ବସୁଦେବଜୀ ନିଜର ପୁତ୍ରକୁ ତାଙ୍କ ପାଖରେ ଶୁଆଇ ଦେଲେ । ଏବଂ ମାୟାକୁ ନେଇ କାରାଗୃହ (ମଥୁରା)କୁ ଫେରି ଆସିଲେ । ଯେତେବେଳେ ମାୟା ଭିତରକୁ ଆସିଲେ ସେତେବେଳେ ବନ୍ଦୀଗୃହର ସମସ୍ତ ଦ୍ୱାର ପୂର୍ବଭଳି ବନ୍ଦ ହୋଇଗଲା, ତାଲା ସବୁ ଲାଗିଗଲା । ମାୟା ମଧ୍ୟ ଖୁବ ମାୟା କରିବା ଜାଣିଛି । ସେ ଏଭଳି କାନ୍ଦିବାକୁ ଲାଗିଲେ ଯେ ସମସ୍ତ ପ୍ରହରୀ ଜାଗ୍ରତ ହୋଇଗଲେ । ସତେ ଯେପରି ସେମାନଙ୍କୁ ଲାଗିଲା ଯେ ଆମକୁ ନିଦ ହୋଇଯାଇଥିଲା, ସେମାନେ ବ୍ୟତିବ୍ୟସ୍ତ ହୋଇ ଦୌଡ଼ିବାକୁ ଲାଗିଲେ କଂସକୁ ସମାଚାର ଦେବା ନିମନ୍ତେ ।

## ଯୋଗମାୟାଙ୍କର ଭବିଷ୍ୟବାଣୀ

କଂସକୁ ତ ସେମିତି ବି ଠିକ୍‌ରେ ନିଦ ଆସୁନଥିଲା । ଯେତେବେଳେ ସେ ଶୁଣିଲା ଯେ ଏକ ଶିଶୁର ଜନ୍ମ ହୋଇଛି, ଉଠି କରି ସିଧା ଦୌଡ଼ିବାକୁ ଲାଗିଲା ଏବଂ ସୂତିକା ଘରେ ପହଞ୍ଚିଗଲା । ଦେବକୀ କହୁଛନ୍ତି ଏ ପୁତ୍ର ନୁହେଁ, ଏକ କନ୍ୟା, ଏହି କନ୍ୟାର ହତ୍ୟା କରିବା ତୁମର ଉଚିତ ନୁହେଁ । କଂସ କହିଲା, କିଛି ନାହିଁ ପୁତ୍ର ହେଉ ବା କନ୍ୟା ହେଉ, ତୁମର ମାୟା ମୋତେ ବୁଝାପଡୁନାହିଁ । କନ୍ୟା କେତେବେଳେ ପୁତ୍ର ହୋଇଯିବ ତାର କୌଣସି ବିଶ୍ୱାସ ନାହିଁ । ସେ ଏତେ ଭୟଭୀତ ହୋଇ ଯାଇଥିଲା ଯେ ସେ ଶିଶୁଟିର ପାଦକୁ ଧରି ବୃତ୍ତାକାରରେ ବୁଲାଇ ବୁଲାଇ ତାକୁ ଏକ ଶିଳା ଉପରେ ପିଟି ଦେଲା । କିନ୍ତୁ ମାୟା କୌଣସି ରାକ୍ଷସ ହାତରେ ଆସିବ କି ? ସେ ତା ହାତରୁ ଖସି ଯାଇ ଅଷ୍ଟଭୂଜା ଦେବୀ ରୂପରେ ପ୍ରକଟ ହୋଇ କହିଲେ – ଆରେ ମୂର୍ଖ ! ତୁମ ମୋତେ କଣ ମାରୁଛୁ ? ତୋର କାଳ ତ ପୂର୍ବରୁ ଜନ୍ମ ନେଲାଣି, ଏବେ ବ୍ୟର୍ଥରେ ନିର୍ଦ୍ଦୋଷ ବାଳକମାନଙ୍କୁ ହତ୍ୟା କରିବା ଛାଡ଼ି ଦେ ।

**କିଂ ମୟା ହତୟା ମନ୍ଦ ଜାତଃ ଖଲୁ ତବାନ୍ତକୃତ୍ ।**
**ଯତ୍ର କ୍ୱ ବା ପୂର୍ବଶତ୍ରୁର୍ମା ହିଂସୀଃ କୃପଣାନ୍ ବୃଥା ॥ (୧୦.୪.୧୨)**

ଏତିକି କହି ଦେବୀ ଅନ୍ତର୍ଦ୍ଧାନ ହୋଇଗଲେ । ଏବେ ଦେଖନ୍ତୁ, ଏଠାରେ ମଧ୍ୟ ଦେବୀଙ୍କର କହିବାର କ'ଣ ଆବଶ୍ୟକତା ଥିଲା ? ସେ ଚୁପ୍ ହୋଇ ରହି ପାରିଥାନ୍ତେ, କିନ୍ତୁ କଂସରେ ମନରେ ଆହୁରି ଅଧିକ ଭୟ ଉତ୍ପନ୍ନ କରିବାର ଥିଲା, ସେଥିପାଇଁ ସେ କହିଦେଲେ । ସେ କେଉଁଠି ଅଛନ୍ତି ଏହି କହିଲେ ନାହିଁ । ଏହା ଦ୍ୱାରା କଂସର ଚିନ୍ତା ଆହୁରି ବଢ଼ିଗଲା ।

ଦେବୀଙ୍କର କଥା ଶୁଣିବା ପରେ ଜଣାନାହିଁ କଂସର କଣ ହେଲା ଯେ ସେ ବସୁଦେବ ଏବଂ ଦେବକୀଙ୍କର ପାଖକୁ ଯାଇ କହୁଛି – ମୋର ଭଉଣୀ, ମୋତେ କ୍ଷମା କରିଦିଅ, ମୁଁ ତୁମ ଉପରେ ବଡ଼ ଅତ୍ୟାଚାର କରିଛି । ଜଣାନାହିଁ ତାକୁ କିଭଳି ଭୟ ହେଲା ଯେ ସେ ଦେବକୀଙ୍କୁ ବୁଝାଉଛି – ସମ୍ପୂର୍ଣ୍ଣ ସଂସାର କାଳର ବଶରେ ଅଛି । ଯାହାର ଜନ୍ମ ହୋଇଛି, ତାର ମରଣ ମଧ୍ୟ ହୋଇଥାଏ କିଏ କାହାକୁ ମାରୁଛି ? ତୁମେ ଦୁଃଖୀ ହୁଅ ନାହିଁ । ଦେଖନ୍ତୁ, ଏହିଭଳି ରାକ୍ଷସର ବୃତ୍ତି ହୋଇଥାଏ, ନିଜର ଦୁଃଖ ସତ୍ୟ ଅଟେ ଏବଂ ଅନ୍ୟର ଦୁଃଖ ମିଥ୍ୟା । ହିରଣ୍ୟକଶିପୁର ଉପଦେଶ ଆମେ ଦେଖି ସାରିଛନ୍ତି,

ଏଠାରେ କଂସ ମଧ୍ୟ ଉପଦେଶ ଦେଉଛି । ଏ ମଧ୍ୟ ବେଦାନ୍ତ ପଢୁଥିଲା, କିନ୍ତୁ ବେଦାନ୍ତ ପଢ଼ିବା ପରେ ମଧ୍ୟ ଏପରି କଥା କହୁଛି । ଏ କଂସ ଅଟେ, ସେ ହିରଣ୍ୟକଶିପୁ ଥିଲା । ଏହା ଧ୍ୟାନ ରଖିବେ । ପୁଣି କହୁଛି ଯେ ଏହା ମୋର, ତା ଅନ୍ୟର। ଏ ସବୁ ଅଜ୍ଞାନରୁ ଉତ୍ପନ୍ନ ବୁଦ୍ଧି ଦ୍ୱାରା ଘଟୁଛି । ତୁମେମାନେ ମୋତେ କ୍ଷମା କରିଦିଅ । ଏପରି କହି କଂସ ତାଙ୍କର ପାଦ ଧରି ପକାଇଲା ଏବଂ ସେମାନଙ୍କୁ କାରାଗାରରୁ ମୁକ୍ତ କରିଦେଲା । ବସୁଦେବ ଜୀ କହୁଛନ୍ତି ତୁମେ ଯାହା ସବୁ କହୁଛ ସେ ସବୁ ତ ଠିକ ଅଛି, ସବୁ ହିଁ ଅବିଦ୍ୟାର ଖେଳ । କଂସ ଦେଖିଲେ ଯେ ବସୁଦେବ-ଦେବକୀ ଅଧିକ ବିଚଳିତ ନୁହନ୍ତି, ତେବେ ସେମାନଙ୍କଠାରୁ ଅନୁମତି ନେଇ ସେ ନିଜ ମହଲକୁ ଚାଲିଗଲା ।

ପରଦିନ ସେ ମନ୍ତ୍ରୀମାନଙ୍କୁ ଡାକି ସମସ୍ତ ଘଟଣା ସେମାନଙ୍କୁ ଶୁଣାଇ ଦେଲା । କିଛି ସମୟ ପାଇଁ କଂସର ଯେଉଁ ସଦ୍‌ବୁଦ୍ଧି ପ୍ରାପ୍ତ ହୋଇଥିଲା, ତାହା ଏହି ସବୁ ଅସୁରମାନଙ୍କ ସଙ୍ଗ ଦୋଷରୁ ପୁନର୍ବାର ବଦଳିଗଲା । ତାର ସମସ୍ତ ମନ୍ତ୍ରୀ ଦୈତ୍ୟ ଥିଲେ, ଅସୁର ଥିଲେ। ସେହି ନୀତିହୀନ ମନ୍ତ୍ରୀମାନେ କହିଲେ ଯେ ଆମେ ଆଜି ନଗର, ଗ୍ରାମ ଏବଂ ଅନ୍ୟ ସ୍ଥାନର ସମସ୍ତ ନବଜାତ ଶିଶୁମାନଙ୍କୁ ମାରିଦେବୁ, ସେ ଦଶ ଦିନର ହେଉ ବା ତା ଠାରୁ କମ୍ ଦିନର ହେଉ ଅଥବା ତା'ଠାରୁ ବେଶି ଦିନର ହେଉ । ଦେବତାମାନେ ଆମର କିଛି କ୍ଷତି କରିପାରିବେ ନାହିଁ । ତାଙ୍କର ମୂଳ ହେଉଛନ୍ତି ବିଷ୍ଣୁ । ତାଙ୍କର ମାୟା ବୁଝିବା ସମ୍ଭବ ନୁହେଁ । ସେଥିପାଇଁ ବେଦବାଦୀ ବ୍ରାହ୍ମଣ, ତପସ୍ୱୀ, ଯଜ୍ଞ-ଯୋଗ, ଗାଈ ଆଦି ଯାହାକି ତାର ରହିବାର ସ୍ଥାନ ଆମେ ସେହି ସ୍ଥାନଗୁଡ଼ିକ ନଷ୍ଟ କରିଦେବା ।

## ନନ୍ଦଙ୍କ ଘରେ ଭଗବାନଙ୍କର ଜନ୍ମୋତ୍ସବ

ଏବେ ଆମେ ଯିବା ନନ୍ଦ ଭବନକୁ । ସେଠାରେ ଖୁବ ଜାକ ଜମକରେ ଉତ୍ସବ ପାଳନ ହୋଇପାରିବ କାରଣ ସେଠାରେ କିଛି ଗୁପ୍ତ ରଖିବାର ନାହିଁ । ପ୍ରାତଃ ସମୟରେ ଯେତେବେଳେ ଅନ୍ୟ ସଖିମାନେ ଆସୁଛନ୍ତି ଏବଂ ସେମାନଙ୍କୁ ଜଣାପଡ଼ିଲା ଯେ ଶିଶୁଟିଏ ଜନ୍ମ ହୋଇଛି ତ ସେମାନେ ଯଶୋଦାଙ୍କୁ ଉଠାଉଛନ୍ତି, ଉଠ !

**ଉଠୀଂ ସଖୀ ସବ ମଙ୍ଗଲ ଗାଇ**

**ଜାଗୁ ଯଶୋଦା ତେରୈ ବାଲକ ଉପଜ୍ୟୋ କୁଁଓର କହ୍ନାଇ ।**

କହୁଛନ୍ତି - ଜାଗୁ ଯଶୋଦା । ତେରୈଂ ବାଲକ ଉପଜ୍ୟୋ କୁଁଓର କହ୍ନାଇ । ଏହି ଦିନକୁ ତୁମେ ପ୍ରତୀକ୍ଷା କରିଥିଲ, ତୁମେ ଏତେ ସବୁ ମନୋରଥ କରିଥିଲ ଯେ ପୁତ୍ରର

ଯେତେବେଳେ ଜନ୍ମ ହେବ ସେତେବେଳେ ମୁଁ ସମସ୍ତଙ୍କୁ ଦାନ ଦେବି । ତାହା ଏବେ ସବୁ ବାହାର କର । "ଜୋ ତୁ ରଚ୍ୟୋ - ସଞ୍ଚ୍ୟୋ ଯା ଦିନ କୋ' ଏହି ଦିନ ପାଇଁ ଯାହା ସବୁ ରଖିଛୁ ସଞ୍ଚୟ କରି ରଖିଛୁ ଏବେ ସମସ୍ତଙ୍କୁ ବାଣ୍ଟ । ଯଶୋଦା କହୁଛନ୍ତି, "ହଁ, ହଁ, ଦେବି । ମୁଁ କଣ କୃପଣ କି ?" "ତବ ହଁସି କହତି ଯଶୋଦା ଐସେଁ' ତାର ବାପାଙ୍କୁ ତ ଡାକି ଆଣ । ତାଙ୍କୁ କୁହ- "ପ୍ରଗଟ ଭୟୌ ପୂରବ ତପ କୌ ଫଳ' ପୂର୍ବ ତପର ଫଳ ଏବେ ପ୍ରକଟ ହୋଇଛନ୍ତି ପୁତ୍ରର ମୁଖ ଦେଖିବା ନିମନ୍ତେ ଶୀଘ୍ର ଆସନ୍ତୁ । ନନ୍ଦବାବା ଆସିଲେ - "ଆଏ ନନ୍ଦ ହଁସତ ତିହିଁ ଔସର, ଆନନ୍ଦ ଭର ସମାଇ ।' ଦେଖନ୍ତୁ, ତାଙ୍କର ଅଧିକ ବୟସରେ ଶିଶୁପୁତ୍ର ଜନ୍ମ ହୋଇଛି, ସେଥିପାଇଁ ସେମାନଙ୍କର ଏତେ ଆନନ୍ଦ ହେଉଛି । ସନ୍ତାନର ସୁଖ ପ୍ରାପ୍ତ କରିବା ନିମନ୍ତେ ନନ୍ଦବାବା ଏବଂ ଯଶୋଦା ଜୀ ଜଣା ନାହିଁ କେତେ ଦେବ-ଦେବୀଙ୍କୁ ପୂଜା କରିଥିଲେ, ଆରାଧନା କଲେ, ବ୍ରତ କଲେ, ତପ କଲେ । ଫଳସ୍ୱରୂପ, ଏବେ ତାଙ୍କ ଘରେ ଭଗବାନ ପ୍ରକଟ ହେଲେ ।

**ନନ୍ଦ କେ ଘର ଆନନ୍ଦ ଭୟୋ ଜୟ କହ୍ନୈୟା ଲାଲ କୀ**

**ହାତୀ ଘୋଡ଼ା ପାଲକୀ ଜୟ କହ୍ନେୟା ଲାଲ କୀ ।**

ଏବେ ନନ୍ଦବାବାଙ୍କର ଘରେ ଭିଡ଼ ଆରମ୍ଭ ହୋଇଗଲାଣି । କାରଣ ସେ ଗୋକୁଳର ରାଜା, ସମସ୍ତଙ୍କଠାରୁ ବଡ଼ । ତାଙ୍କର ବିରାଟ ପ୍ରାସାଦ । କେତେ ଲୋକ ଆସୁଛନ୍ତି ତ କେତେ ଲୋକ ଯାଉଛନ୍ତି । ବହୁତ ଭିଡ଼ ହେଉଛି । କେହି ଉପହାର ନେଇ ଆସୁଛନ୍ତି ତ କେହି ଉପହାର ନେଇ ଯାଉଛନ୍ତି । ନନ୍ଦରାଣୀ କାହାକୁ କଣ ଜିନିଷ ତ କାହାକୁ ଅନ୍ୟ କିଛି ଦେଉଛନ୍ତି । ସୁରଦାସ ଜୀ ଗୋଟିଏ ପଦରେ ଅତି ସୁନ୍ଦର ରୂପେ ତାର ବର୍ଣ୍ଣନା କରିଛନ୍ତି ।

**ଅଜୁ ନନ୍ଦ କେ ଦ୍ୱାରେଁ ଭୀର ।**
**ଇକ ଆବତ ଇକ ଜାତ ବିଦା ହ୍ୱୈ, ଇକ ମନ୍ଦିର କେଁ ତୀର ।**

ଜଣେ ଆସୁଛି ତ ଜଣେ ଯାଉଛି । ସମସ୍ତେ ନୂତନ ବସ୍ତ୍ର ଧାରଣ କରିଛନ୍ତି । କିଏ କେଶରର ତିଳକ ଲଗାଉଛି ତ କେହି ଚନ୍ଦନର । କିନ୍ତୁ ମହଲରୁ ଫେରିବାବେଳେ କେହି ଖାଲି ହାତରେ ଯାଉନାହାନ୍ତି । କାହାକୁ ବସ୍ତ୍ର ମିଳୁଛି ତ କାହାକୁ ଅଳଙ୍କାର ମିଳୁଛି, ଡାହାଣ-ଆଭୂଷଣ ମିଳୁଛି । କାହାର ଗଳାରେ ପୁଷ୍ପମାଳା ଶୋଭା ପାଉଛି ।

**ଏକନି କୌ ତୁଳସୀ କୀ ମାଲା, ଏକନିକେ ଚନ୍ଦନ ଧସି ନୀର ।**
**ସୁରଦାସ ଘେନି ସ୍ୟାମ ସନେହୀ, ଧନ୍ୟ ଯଶୋଦା ପୂଣ୍ୟ ଶରୀର ॥**

କାହାକୁ ତୁଳସୀର ମାଳା ମିଳିଛି । କେହି କେହି ତର ତର ହୋଇ ଯିବା ଆସିବା କରୁଛନ୍ତି । "ଏକନି କୋ ରାଖତ ଦେ ଧୀର' ଯଶୋଦା ଜୀ କହୁଛନ୍ତି - ଟିକିଏ ଧୈର୍ଯ୍ୟ ଧର । ତୁମକୁ ମଧ୍ୟ ଦର୍ଶନ ହେବ । ସେମାନେ ସମସ୍ତେ ଶିଶୁଟିକୁ ହାତରେ ଧରିବା ପାଇଁ ବ୍ୟଗ୍ର । ଏତେ ସଂଖ୍ୟକ ଲୋକ, ଏକମାତ୍ର ଶିଶୁ, କିପରି ସମ୍ଭବ ହେବ ? କେତେ ଲୋକଙ୍କୁ ଖୁବ ଇଚ୍ଛା ହେଉଛି ଶିଶୁଟିକୁ କୋଳରେ ନେବା ନିମନ୍ତେ । ଆଉ କେହି କେହି ତାକୁ ଝୁଲାରେ ଝୁଲାଇବାକୁ ଚାହୁଁଛନ୍ତି - କେହି ତାକୁ ଚୁମ୍ବନ ଦେବାକୁ ଚାହୁଁଛନ୍ତି, କେହି ତାକୁ ଗଳରେ ଲଗାଇବାକୁ ଚାହୁଁଛନ୍ତି । ଏପରି ଶ୍ୟାମଳ - କୋମଳ ବାଳକ ରୂପୀ ବ୍ରହ୍ମ ଏଠାକୁ ଆସିଛନ୍ତି । ସୁରଦାସ ଜୀ ତାଙ୍କ ନିଜର ପଦରେ କହୁଛନ୍ତି -

**ଯଶୋଦା ହରି ପାଲନୈଁ ଝୁଲାବୈ**
**ହଲରାବୈ, ଦୁଲରାଇ ମହ୍ଲାବୈ, ଜୋଇ - ସୋଇ କଛୁଗାବୈ ।**

ଯଶୋଦା ମା ତାଙ୍କୁ ଦୋଳାରେ ଶୁଆଇ ଝୁଲାଉଛନ୍ତି । ସେଠାରେ ଯେଉଁ କାମ କରିବାବାଲା ଲୋକମାନେ ଥିଲେ, ସେମାନେ ପାଟି କରୁଥିଲେ ତ ସେମାନଙ୍କୁ ଇଙ୍ଗିତ ଦେଉଛନ୍ତି । ମୋର ପୁତ୍ର ଶୋଇଛି, ତୁମର ଯାହା କାମ କରିବା କଥା ଚୁପ୍‌ଚାପ୍ କର। ନିଦ୍ରା ଦେବୀଙ୍କୁ ପ୍ରସନ୍ନ କରାଉଛନ୍ତି । ମୋର ପୁତ୍ରକୁ ନିଦ ଆସୁଛି, ତୁ କାହିଁକି ଆସୁନାହୁଁ? ସେ ଭଲ ଭାବରେ ଶୋଇ ପାରୁ ନାହିଁ । ଏହି ଭଗବାନ ମଧ୍ୟ ଅତି ଚଞ୍ଚଳ ସ୍ୱଭାବର ଅଟନ୍ତି । କେବେ ଚକ୍ଷୁ ବନ୍ଦ କରି ଦିଅନ୍ତି - ଯେପରି ନିଦ ହୋଇଯାଇଛି । ମା' ଭାବୁଛନ୍ତି ଯେ ନିଦ ହୋଇଯାଇଛି, ତେବେ ଆଖି ଖୋଲି ଦେଉଛନ୍ତି । ପୁଣି ଓଠ କମ୍ପନ କରୁଛନ୍ତି ।

**ସୋବତ ଜାନି ମୌନ ହ୍ୱୈ କୈ ରହି, କରି-କରି ସୈନ ବତା ବୈ।**

ଯେଉଁ ସୁଖ ସମସ୍ତ ଦେବତାମାନଙ୍କୁ ଏବଂ ମୁନୀମାନଙ୍କୁ ମଧ୍ୟ ଦୁର୍ଲଭ ଅଟେ, ତାହା ଏଠାରେ ନନ୍ଦ ଭାମିନୀଙ୍କ ପାଇଁ ଅତି ସୁଲଭ ହୋଇଯାଇଛି । ଶ୍ରୀମଦ୍ ଭାଗବତରେ ଶ୍ରୀ ଶୁକଦେବ ଜୀ କହୁଛନ୍ତି - ନନ୍ଦବାବାଙ୍କର ହୃଦୟ ଆନନ୍ଦରେ ଭରି ଗଲା । ସ୍ନାନ ଆଦି କରି ସେ ପବିତ୍ର ହୋଇଗଲେ, ଅଳଙ୍କାର ମଧ୍ୟ ଧାରଣ କରିନେଲେ । ସ୍ୱସ୍ତିବାଚନ କରାଇଲେ, ପୁଣି ପୁତ୍ରର ଜାତ କର୍ମ ସଂସ୍କାର ମଧ୍ୟ କରାଇଲେ । ବ୍ରାହ୍ମଣମାନଙ୍କୁ ବସ୍ତ୍ର-

ଆଭୂଷଣ ଓ ଦୁଇ ଲକ୍ଷ ଗାଈ ଦାନରେ ଦେଲେ । ପିତୃ ପୂଜା, ଦେବ ପୂଜା ମଧ୍ୟ କରାଇଲେ । ସେତିକିବେଳକୁ ସୁନ୍ଦର ବସ୍ତ୍ରାଭୂଷଣ ଦ୍ୱାରା ସୁସଜ୍ଜିତ ହୋଇ ଗୋପୀମାନେ ମଧ୍ୟ ସେଠାରେ ପହଞ୍ଚିଗଲେ । ସେମାନେ ସମସ୍ତେ ଶିଶୁଟିକୁ ଦର୍ଶନ କରୁଛନ୍ତି, ତାକୁ ଆଶୀର୍ବାଦ ଦେଉଛନ୍ତି ଏବଂ ସମସ୍ତଙ୍କୁ ହଳଦୀ, ତେଲ ଏବଂ ଜଳ ସିଂଚନ କରୁଛନ୍ତି, ଏବଂ ମଙ୍ଗଳଗାନ କରୁଛନ୍ତି । ନନ୍ଦବାବାଙ୍କ ମହଲରେ ଉଲ୍ଲାସର ବାତାବରଣ ଖେଳିଗଲା। ନନ୍ଦବାବା ଗୋପାଳମାନଙ୍କୁ ମଧ୍ୟ ବସ୍ତ୍ର ପ୍ରଭୃତି ଏବଂ ଗାଈ ଦାନ କଲେ । ସେ ଅତି ଉଦାର ଥିଲେ । ସୂତ-ମାଗଧ ଆଦିଙ୍କୁ ମଧ୍ୟ ଯଥେଚ୍ଛା ଦାନ ଦେଲେ । ଶେଷରେ ସେ ନିଜର ସମସ୍ତ ସମ୍ପତ୍ତିର ଦ୍ୱାର ଖୋଲିଦେଲେ ଏବଂ କହିଦେଲେ ଯେ ଯେତେ ଚାହିଁବେ ସେତେ ନେଇଯାଆନ୍ତୁ ।

ଭଗବାନଙ୍କର ଆସିବାର ପାଞ୍ଚ-ଛଅଟି ମାତ୍ର ଦିନ ହୋଇଛି ଯେତେବେଳେ ନନ୍ଦବାବା କଂସର କର ଦେବା ନିମନ୍ତେ ବାହାରିଲେ । ନନ୍ଦବାବାଙ୍କୁ ତାଙ୍କ ନିଜ ପୁତ୍ର ପାଇଁ ଖୁବ ଚିନ୍ତା ଥିଲା । ତାଙ୍କୁ ଜଣାଥିଲା ଯେ, ମଥୁରାରେ ରହୁଥିବା କଂସ ବଡ଼ ଦୁଷ୍ଟ। ସେମାନଙ୍କର ଗୋକୁଳ ମଧ୍ୟ ମଥୁରା ରାଜ୍ୟରେ ଆସୁଥିଲା । ପ୍ରତି ବର୍ଷ କର ଦେବାକୁ ପଡୁଥିଲା । ପୁତ୍ରର ଜନ୍ମ ହୋଇଛି, ବଡ଼ ଆନନ୍ଦ ଉତ୍ସବର ସମୟ । ପୁତ୍ରକୁ ଛାଡ଼ିଯିବା ନିମନ୍ତେ ନନ୍ଦବାବାଙ୍କର ମନ ହେଉନାହିଁ, କିନ୍ତୁ ସେ କଂସର ସ୍ୱଭାବ ଜାଣନ୍ତି । ଗୋକୁଳରେ ଶାନ୍ତି ରହୁ, ସେଥିପାଇଁ ନନ୍ଦବାବା କର ଦେବା ନିମନ୍ତେ ମଥୁରା ଯାଉଛନ୍ତି । ସେଠାରେ ବସୁଦେବଜୀଙ୍କ ସହିତ ମଧ୍ୟ ତାଙ୍କର ମିଳନ ହେଲା । ବସୁଦେବ ଜୀ ଏବଂ ନନ୍ଦବାବାଙ୍କର ସମ୍ଭାଷଣ ବଡ଼ ମଧୁର ଅଟେ ।

ଦେଖନ୍ତୁ, ଯେତେବେଳେ ଜଣକର ଅନ୍ୟଜଣକ ସହିତ ମିଳନ ହେଉଛି ସେତେବେଳେ କଣ ଏବଂ କିପରି କଥା ହେବା ଉଚିତ, ତାହା ଆମେ ଏଠାରୁ ଶିଖିପାରିବା। ବସୁଦେବଜୀ ନିଜ ଦୁଃଖର କୌଣସି ଗୋଟିଏ କଥା ମଧ୍ୟ ନନ୍ଦବାବାଙ୍କୁ କହି ନାହାନ୍ତି । କହୁଛନ୍ତି - ନନ୍ଦଜୀ ମୁଁ ଜାଣିଲି ଯେ ଆପଣଙ୍କର ଏକ ପୁତ୍ର ହୋଇଛି, ଏହା ଶୁଣି ମୁଁ ଅତି ଖୁସି ହେଲି, ଆପଣଙ୍କର ଖୁସିରେ ମୁଁ ଆପଣଙ୍କ ସହିତ ଅଛି । କିନ୍ତୁ ଦେଖନ୍ତୁ, ସେ ସମୟରେ ନନ୍ଦବାବା ନିଜ ସୁଖର କୌଣସି ଚର୍ଚ୍ଚା କଲେ ନାହିଁ । ସେ ବସୁଦେବଙ୍କର ଦୁଃଖର ଚର୍ଚ୍ଚା କରୁଛନ୍ତି । କହୁଛନ୍ତି - କଂସ କିପରି ଦୁଷ୍ଟ ଅଟେ । ବିବାହ ହେବା ପରେ ପରେ ଆପଣ ଦୁହିଁଙ୍କୁ କାରାଗୃହରେ ରଖିଦେଲେ ଏବଂ ଆପଣଙ୍କର ନବଜାତ ଶିଶୁମାନଙ୍କୁ ମାରିଦେଲେ। ସେ ନିଜର ସୁଖର କଥାକୁ ଶୁଣାଉନାହାନ୍ତି, ଅଧିକନ୍ତୁ ତାଙ୍କ ଦୁଃଖରେ ନିଜର ସହାନୁଭୂତି ଜଣାଉଛନ୍ତି ଏବଂ ବସୁଦେବଜୀ ମଧ୍ୟ ତାଙ୍କ ଆନନ୍ଦରେ ନିଜର

ଆନନ୍ଦକୁ ଦର୍ଶାଉଛନ୍ତି । ଏହାକୁ କୁହାଯାଏ ଜଣେ ଅନ୍ୟ ଜଣକ ସହିତ ମିଳିବା । ବସୁଦେବଜୀଙ୍କର ଅନ୍ତଃକରଣ ବଡ଼ ଶୁଦ୍ଧ । ସେ ନନ୍ଦବାବାଙ୍କୁ କହୁଛନ୍ତି, "ଆପଣ କର ଦାଖଲ କରି ଦେଲେଣି ତ ? ଏଠାରେ ଆପଣଙ୍କର କାର୍ଯ୍ୟ ହୋଇଗଲା, ଏବେ ଆପଣ ଶୀଘ୍ର ଫେରି ଯାଆନ୍ତୁ । ମୋତେ ଲାଗୁଛି ଗୋକୁଳରେ କିଛି ଉତ୍ପାତ ହେବାର ଅଛି ।" ଦେଖନ୍ତୁ, ଶୁଦ୍ଧାନ୍ତଃକରଣ ବ୍ୟକ୍ତିଙ୍କୁ ଘଟଣା ଘଟିବା ପୂର୍ବରୁ ଆଭାସ ହୋଇଯାଏ ।

ଗୋକୁଳକୁ ଫେରିବା ବାଟରେ ନନ୍ଦବାବା ଭାବୁଛନ୍ତି ଯେ ବସୁଦେବଙ୍କର ବାଣୀ ବୃଥା ହୋଇ ନ ପାରେ । ସେଥିପାଇଁ ସେ ଆଶଙ୍କିତ ହୋଇଗଲେ । କିନ୍ତୁ ତତ୍‌କ୍ଷଣାତ୍ ଭଗବାନଙ୍କର ସ୍ମରଣ କଲେ ଏବଂ ରକ୍ଷାର ଭାର ତାଙ୍କୁ ସମର୍ପି ଦେଲେ ।

## ପୂତନା-ମୋକ୍ଷ

ସେତେବେଳକୁ କଂସର ଆଜ୍ଞାରେ ଶିଶୁମାନଙ୍କୁ ମାରିବା ବାଲୀ "ପୂତନା' ନାମକର କ୍ରୂର ରାକ୍ଷସୀ ଗୋକୂଳରେ ନନ୍ଦବାବାଙ୍କ ଘରେ ପହଞ୍ଚି ଯାଇଥିଲା । ଏହି ପୂତନା "ଖେଚରୀ" ଅଟେ, ଆକାଶରେ ବିଚରଣ କରିବାବାଲୀ ଅଟେ । ପୂତନା ଶବ୍ଦର ଅର୍ଥ – "ପୂତନା' ଯାହା ପୂତ ନୁହେଁ, ପବିତ୍ର ନୁହେଁ, ଅପବିତ୍ର ଅଟେ । ଧ୍ୟାନ ରଖନ୍ତୁ, ଏହା ହେଉଛି ଭଗବାନ ଶ୍ରୀକୃଷ୍ଣଙ୍କର ଲୀଳା । ଏପରି ଦେଖିଲେ ସ୍ଥୁଳ ଦୃଷ୍ଟିରେ ଲାଗେ ଯେ ଭଗବାନ ଜଣ ଜଣ କରି ସମସ୍ତ ଅସୁରମାନଙ୍କୁ ମାରି ଚାଲିଛନ୍ତି । କିନ୍ତୁ, ଭଗବାନଙ୍କର ଲୀଳାର ଅର୍ଥ ଗୋଟିଏ ନୁହେଁ । ଆଧ୍ୟାତ୍ମିକ ଦୃଷ୍ଟିରେ ଦେଖିଲେ ତାର ଅନେକ ଅର୍ଥ ପ୍ରକଟ ହୋଇଥାଏ । ସାମାନ୍ୟ ବିଚାର କରନ୍ତୁ, ରାମାବତାରରେ ମଧ୍ୟ ସର୍ବପ୍ରଥମେ ଭଗବାନ ତାଡ଼କାର ବଧ କରିଥିଲେ । ଏଠାରେ କୃଷ୍ଣାବତାରରେ ମଧ୍ୟ ସର୍ବପ୍ରଥମେ ପୂତନା ବଧ କରୁଛନ୍ତି । ଅବତାର ନେଇ ପ୍ରଥମେ ସ୍ତ୍ରୀକୁ ବଧ କରୁଛନ୍ତି । ଏହା କଣ ଏଠାରେ ଘଟଣା କଣ ହେଉଛି ? ଏଠାରେ ପୂତନା ହେଉଛି "ଅବିଦ୍ୟା ରୂପ' । ଦେଖନ୍ତୁ, ଆମର ସମସ୍ତ ଦୁଃଖ ଅବିଦ୍ୟା ଏବଂ ଅବିଦ୍ୟା ଠାରୁ ଉତ୍ପନ୍ନ ଅନେକ ଆସୁରୀ ବୃତ୍ତିର କାରଣରୁ ହିଁ ହୋଇଥାଏ । ସେମାନଙ୍କୁ ଆମେ ଗୋଟି-ଗୋଟି କରି ଦେଖିବା । ପ୍ରଥମେ ଅବିଦ୍ୟା, କାରଣ ସେ ହେଉଛି ସମସ୍ତଙ୍କର ଜନନୀ, ସମସ୍ତଙ୍କର କାରଣ । ସେହିଭଳି ଭାବରେ ତାଡ଼କା-ଅବିଦ୍ୟା, ଦୁରାଶାରୂପ ଅଟେ । ସେଥିପାଇଁ ରାମାବତାରରେ ମଧ୍ୟ ପ୍ରଥମେ ତାଡ଼କା ବଧ ଆସେ ।

ଅବିଦ୍ୟା ରୂପୀ ପୂତନା ଗୋକୁଳକୁ ଆସିଛି । ସେ ସେଠାରେ ସେ ଦେଖିଲା ଯେ ନନ୍ଦ ବାବାଙ୍କର ଘରେ ବଡ଼ ଉତ୍ସବ ପାଳନ କରାଯାଉଛି ଏବଂ ସେଠାରେ ନାନା ଢଙ୍ଗରେ

ଏକ ଛୋଟ ବାଳକ ଅଛି ।

**ବାଲଂ ପ୍ରତିଚ୍ଛନ୍ନନିଜୋରୁତେଜସଂ**

**ଦଦର୍ଶ ତଲ୍ପେଽଗ୍ନିମିବାହିତଂ ଭାସି ॥ (୧୦.୬.୭)**

ତାର ତେଜ ଲୁଚି ରହିଛି । ମନେକର ଉପରେ ପାଉଁଶ, ଅଙ୍ଗାର ଏବଂ ଭିତରେ ନିଆଁ ଧୂ ଧୂ ହେଉଛି, ଏ ବାଳକ ଏହିପରି ଅଟେ । ପୂତନା ଭାବିଲା ଯେ ଏଠାରେ ସମସ୍ତଙ୍କର ଧ୍ୟାନ ଏହି ଶିଶୁ ପୁତ୍ର ପ୍ରତି ଅଛି, ମୁଁ ଏହି ଶିଶୁଟିକୁ କିପରି ନେଇପାରିବି ? ସେଥିପାଇଁ ସେ ଅତି ସୁନ୍ଦର ମାୟାବୀ ସ୍ତ୍ରୀର ରୂପ ଧାରଣ କରି ସେଠାକୁ ଯାଉଛି । ପୁଣି ଦେଖନ୍ତୁ ସେ ମାୟା କିଭଳି ? ଯେଉଁଠାରେ ସମସ୍ତେ ବ୍ରହ୍ମଙ୍କୁ ସେ ମାୟା କିଭଳି ? ଯେଉଁଠାରେ ସମସ୍ତେ ବ୍ରହ୍ମଙ୍କୁ ଦେଖୁଥିଲେ, ସେମାନଙ୍କର ଧ୍ୟାନ ମଧ୍ୟ ଏହି ମାୟା ନିଜ ଆଡ଼କୁ ଆକର୍ଷିତ କରିନେଲା । ସେମାନଙ୍କୁ ଏପରି ଲାଗିଲା ଯେ ସତରେ ଯେପରି ଉଚ୍ଚ ବଂଶର ସମ୍ଭ୍ରାନ୍ତ ମହିଳାଟିଏ ହୋଇ ଯେପରି ସାକ୍ଷାତ ଲକ୍ଷ୍ମୀଜୀ ଆସି ଯାଇଛନ୍ତି । ସେ ଆସୁ ଆସୁ ଅତି ପ୍ରେମ ଆଦର ପୂର୍ବକ କହିବାକୁ ଲାଗିଲା ଯେ କେତେ ସୁନ୍ଦର ପିଲାଟିଏ। ମୁଁ ଏହାକୁ ସ୍ତନପାନ କରାଇବାକୁ ଚାହୁଁଛି । ସେଠାରେ ରୋହିଣୀ ଜି, ଯଶୋଦା ମା' ପ୍ରଭୃତି ଯେଉଁମାନେ ଥିଲେ ସେମାନେ ସମସ୍ତେ ପୂତନାର ଏହି ମାୟାବୀ ରୂପରେ ଏପରି ମୋହିତ ହୋଇଗଲେ ଯେ ସମସ୍ତେ ତାକୁ ଦେଖି ତାଟକା ହୋଇ ରହିଗଲେ । କେହି ତାକୁ ବାଧା ଦେଇ ନ ଥିଲେ । ସେ ଶିଶୁଟିକୁ ନିଜ କୋଳରେ ନେଇ ଗଲା ଏବଂ ତା ମୁହଁରେ ତାର ସ୍ତନ ଦେଇଦଲା ।

**ବିବୁଧ୍ୟ ତାଂ ବାଲକମାରିକାଗ୍ରହଂ**

**ଚରାଚରାତ୍ମାଽଽସ ନିମୀଲିତେକ୍ଷଣଃ ॥ (୧୦.୬.୮)**

ଏବ ଭଗବାନ ତ **"ଚରାଚରାତ୍ମା"** ଚରାଚର ସୃଷ୍ଟିର ଆତ୍ମା ଅଟନ୍ତି । ସେ ଚିହ୍ନିଗଲେ ଯେ ଇଏ ତ **"ବାଲକମାରିକାଗ୍ରହ"** ବାଳକମାନଙ୍କୁ ମାରୁଥିବା ରାକ୍ଷସୀ ଅଟେ। ତାକୁ ଦେଖି ସେ ନିଜ ଆଖି ବନ୍ଦ କରିଦେଲେ । ଭଗବାନ ଆଖି ବନ୍ଦ କରିଦେଲେ - ଏହି ଘଟଣା ଉପରେ ଭକ୍ତ କବିମାନେ ଅନେକ ଟୀକାମାନେ ପ୍ରଦାନ କରିଛନ୍ତି । ଶ୍ରୀ ହରିସୂରୀଜୀ ଭକ୍ତି ରସାୟନ ନାମକ ଏକ ଗ୍ରନ୍ଥ ଲେଖିଛନ୍ତି । ସେଠାରେ ମଧ୍ୟ ସେ ଭଗବାନଙ୍କର ନେତ୍ର ବନ୍ଦ କରିବାର ଅନେକ କାରଣ କହିଛନ୍ତି ସେହି ସବୁର କିଛି ଭାବକୁ ଆମେ ଏଠାରେ ଦେଖିବା ।

୧. ଭଗବାନ ଚକ୍ଷୁ ବନ୍ଦ କରିଦେଲେ, କାହିଁକି ନା ସେ ଜାଣିଗଲେ ଯେ ପୂତନା ଏବେ ତାଙ୍କୁ ବିଷ ପିଆଇବ । କୌଣସି ଶିଶୁକୁ ଯେତେବେଳେ କଡ଼ା (ପିତା) ଔଷଧ ପିଇବାକୁ ହୁଏ, ତ ସେ ଆଖି ବନ୍ଦ କରି ପିଏ । ଭଗବାନ ବିଚାର କଲେ ଯେ ପିଇବାକୁ ତ ପଡ଼ିବ, ଏବେ କ'ଣ କରିବି ? ଆଖି ବନ୍ଦ କରି ପିଇ ନେବା । ପିତା ପଦାର୍ଥକୁ ପିଇବାକୁ ହେବ ତେଣୁ ଭଗବାନ ଆଖି ବନ୍ଦ କରିଦେଲେ ।

୨. ଭଗବାନ ଭାବୁଛନ୍ତି କଣ କରିବା ? ଏହି ଅବତାରରେ ମଧ୍ୟ ପ୍ରଥମେ ସ୍ତ୍ରୀ ଲୋକକୁ ମାରିବାକୁ ପଡୁଛି । ଏହା ମଧ୍ୟ ଏକ ବିଚିତ୍ର କାର୍ଯ୍ୟ ଅଟେ । କେବେ ଏପରି କାର୍ଯ୍ୟ ମଧ୍ୟ କରିବାକୁ ପଡ଼ିଥାଏ, ତ ଏବେ ଆଖି ବନ୍ଦ କରି କର ଲେଉଟାଇଲେ । ଏପରି ବିଚାର କରି ଭଗବାନ ଆଖି ବନ୍ଦ କରିଦେଲେ ।

୩. ଏହି ଜନ୍ମରେ ତ ଏ କୌଣସି ଭଲ କାର୍ଯ୍ୟ କରି ନାହିଁ । ଦେଖିବା ପୂର୍ବଜନ୍ମରେ କଣ କରିଛି ? ଠିକ ସେହିଭଳି, ଯେଉଁଭଳି ଆମେ ସମସ୍ତେ ବିଚାର କଲାବେଳେ ପ୍ରାୟ ଆଖି ବନ୍ଦ କରିଥାଉ, ଭଗବାନ ମଧ୍ୟ ଆଖି ବନ୍ଦ କରିଦେଲେ ।

୪. ଦେଖନ୍ତୁ, ସମସ୍ତ ବ୍ରହ୍ମାଣ୍ଡ ଏବଂ ସମସ୍ତ ଜୀବ ଭଗବାନଙ୍କର ଦେହ ଭିତରେ ହିଁ ଅଛନ୍ତି । ସମସ୍ତ ଜୀବମାନଙ୍କୁ ଭୟ ଲାଗୁଛି ଯେ, ଏ ତ ଦୁଧ ପାନ କରାଇବା ବାହାନାରେ ବିଷପାନ କରାଇବ । ପୁଣି ଯଦି ଭଗବାନ ତାକୁ ପାନ କରନ୍ତି ତ ଆମ ସମସ୍ତଙ୍କୁ ବଡ଼ କଷ୍ଟ ହେବ, ଆମେ ମରିଯିବା । ଭଗବାନ ଆଖି ବନ୍ଦ କରି ସେମାନଙ୍କୁ କହୁଛନ୍ତି ଯେ ତୁମେ ଚିନ୍ତା କର ନାହିଁ । ସମସ୍ତଙ୍କ ପ୍ରତି ମୋର ଧ୍ୟାନ ଅଛି, ମୁଁ ହିଁ ସମସ୍ତଙ୍କର ରକ୍ଷକ ଅଟେ । ଏହିପରି ସେ ଭିତରେ ସମସ୍ତ ପ୍ରାଣୀମାନଙ୍କୁ ବୁଝାଉଛନ୍ତି ।

୫. ଚକ୍ଷୁ ଚନ୍ଦ୍ର ଏବଂ ସୂର୍ଯ୍ୟଙ୍କର ପ୍ରତୀକ ଅଟେ, ସୂର୍ଯ୍ୟ-ଚନ୍ଦ୍ରମା ଭଗବାନଙ୍କର ଚକ୍ଷୁ । ଚକ୍ଷୁମାନେ କହୁଛନ୍ତି - ଦେଖନ୍ତୁ ଭଗବାନ, ଏ କୌଣସି ଭଲ କାର୍ଯ୍ୟ ଅଥବା ଉପାସନା କରିନାହିଁ । ସେଥିପାଇଁ ତାକୁ ଆମର ମାର୍ଗ ମିଳିପାରିବ ନାହିଁ । ତାକୁ ନା ପିତୃଲୋକ ପ୍ରାପ୍ତି ସମ୍ଭବ ନା ଦେବଲୋକ ପ୍ରାପ୍ତି ସମ୍ଭବ ହୋଇପାରିବ । ସେଥିପାଇଁ ଦୁହେଁ ନିଜର ଦ୍ୱାର ବନ୍ଦ କରିଦେଲେ । ସେଥିପାଇଁ ଭଗବାନଙ୍କର ଆଖି ବନ୍ଦ ହୋଇଗଲା । କିନ୍ତୁ ଭଗବାନ କିଛି ଦେବାକୁ ଚାହିଁଲେ ତାକୁ କିଏ ବନ୍ଦ କରିପାରିବ ? ସେ ପୂତନା ଭଳି ରାକ୍ଷସୀକୁ ମଧ୍ୟ ମୋକ୍ଷ ଦେଇ ଦେଲେ ।

୬. ଭଗବାନ ଏହା ବିଚାର କରି ଚକ୍ଷୁ ବନ୍ଦ କରି ଦେଲେ ଯେ ଯଦି ମୋର ଚକ୍ଷୁ ଖୋଲା ରହିବ, ତେବେ ଦୁଇଟି ଘଟଣା ହୋଇପାରେ । ହୁଏତଃ ମୁଁ ତାକୁ ପ୍ରେମପୂର୍ବକ ଦେଖିବି ଅଥବା ପୁଣି କ୍ରୋଧରେ । ପ୍ରେମରେ ଦେଖିବି ତ ସେ ଶୁଦ୍ଧ ହୋଇଯିବ ଏବଂ କ୍ରୋଧରେ ଦେଖିବି ତ ସେ ଜଳିଯିବ । ଦୁଇଟି ଯାକ ପରିସ୍ଥିତିରେ, ମୋତେ ଦୁଧ ପିଆଇବାର ତାର ଯେଉଁ ଇଛା ଅଛି ତାହା ଅପୂର୍ଣ୍ଣ ରହିଯିବ । ଭଗବାନ କହିଲେ - ହେଉ ଆଖି ବନ୍ଦ କରିଦେବା । ଦେଖନ୍ତୁ "ନିମୀଲିତେକ୍ଷଣ'ର କେତେ ଅର୍ଥ ହୋଇପାରେ ।

**ତସ୍ମିନ୍ ସ୍ତନଂ ଦୁର୍ଜରବୀର୍ଯମୁଲ୍ବଣଂ**
**ଘୋରାଙ୍କମାଦାୟ ଶିଶୋର୍ଦଦାବଥ ।**
**ଗାଢ଼ କରାଭ୍ୟାଂ ଭଗବାନ୍ ପ୍ରପୀଡ୍ୟ ତତ୍**
**ପ୍ରାଣୈଃ ସମଂରୋଷସମନ୍ୱିତୋଽପିବତ୍ ॥ (୧୦.୬.୧୦)**

ପୂତନା ନିଜର ସ୍ତନରେ ହଳାହଳ ବିଷ ଲଗାଇ ରଖିଥିଲା । ଏବେ ଯେତେବେଳେ ସେ ଭଗବାନଙ୍କର ମୁହଁରେ ନିଜର ସ୍ତନ ଦେଲ ତ କ୍ରୋଧ କରି ନିଜର ହାତରେ ତାର ସ୍ତନକୁ ଧରି ଚପି ଦେଲେ ଏବଂ କ୍ଷୀର ସହିତ ତାର ପ୍ରାଣକୁ ମଧ୍ୟ ପିଇବାକୁ ଲାଗିଲେ । ସେତେବେଳେ ସେହି ପୂତନା ବ୍ୟାକୁଳ ହୋଇ ଚିତ୍କାର କରିବାକୁ ଲାଗିଲା, ବାସ୍ ! ଏବେ ଛାଡ଼ି ଦିଅ, ଛାଡ଼ି ଦିଅ । ଭଗବାନ କହୁଛନ୍ତି - ମୁଁ ଯାହାକୁ ଧରେ, ତାକୁ ଛାଡ଼େ ନାହିଁ । ତାର ଚିତ୍କାର ଅତି ଭୟଙ୍କର ହୋଇଗଲା ଏବଂ ଶେଷରେ ଯେତେବେଳେ ସେ ସେହି କଷ୍ଟକୁ ସହନ କରିପାରିଲା ନାହିଁ, ସେତେବେଳେ ତାର ଭୟଙ୍କର ରାକ୍ଷସ ରୂପ ପ୍ରକଟ ହୋଇଗଲା । ତାର ପ୍ରାଣ ବାହାରିଗଲା । ତାର ଶରୀର ଏକ ବିଶାଳ ପର୍ବତ ଭଳି ଥିଲା ଏବଂ ନାକକୁ ଦେଖିଲେ ଗୁମ୍ଫା ଭଳି ଥିଲା । ରାକ୍ଷସୀର ସେହି ବିଶାଳ ରୂପକୁ ଦେଖି ସମସ୍ତ ବ୍ରଜବାସୀ ବହୁତ ବ୍ୟତିବ୍ୟସ୍ତ ହୋଇପଡ଼ିଲେ । ସେତେବେଳେ ଗୋପିମାନେ କ'ଣ ଦେଖୁଛନ୍ତି - ଯେ ଛୋଟ ଭଗବାନ ତାର ଶରୀର ଉପରେ ଆନନ୍ଦରେ ଖେଳୁଛନ୍ତି । ଯଶୋଦା ମା' ଅତି ଶୀଘ୍ର ନିଜର ଶିଶୁ ପୁତ୍ରକୁ ଉଠାଇ ଗଳାରେ ଲଗାଉଛନ୍ତି ଏବଂ କହୁଛନ୍ତି - ପୁଅରେ ତୁ ଠିକ ଅଛୁ ତ । ତୋର କିଛି ହୋଇ ନାହିଁ ତ । ପୁତ୍ରର ଅଙ୍ଗ-ପ୍ରତ୍ୟଙ୍ଗ ଦେଖୁଛନ୍ତି । ପୁଣି ଗୋପିମାନେ, ରୋହିଣୀ ପ୍ରଭୃତି ସମସ୍ତେ ମିଶି ଗାଈର ଲାଞ୍ଜରେ ପୁତ୍ରକୁ ଝାଡୁଛନ୍ତି, ଗୋମୂତ୍ରରେ ସ୍ନାନ କରାଉଛନ୍ତି, ନାନା ପ୍ରକାର ଶୁଦ୍ଧି କରି

ପୁଣି ଭଗବାନଙ୍କର ଭିନ୍ନ ଭିନ୍ନ ନାମ ଦ୍ୱାରା ଶ୍ରୀ କୃଷ୍ଣଙ୍କର ଗୋଟିଏ ଗୋଟିଏ ଅଙ୍ଗର ରକ୍ଷା ନିମନ୍ତେ ପ୍ରାର୍ଥନା କରିବାକୁ ଲାଗିଲେ ।

**ଇନ୍ଦ୍ରିୟାଣୀ ହୃଷୀକେଶଃ ପ୍ରାଣାନ ନାରାୟଣୋଽବତୁ ।**

**ଶ୍ୱେତଦ୍ୱୀପପତିଶ୍ଚିତ୍ତଂ ମନୋ ଯୋଗେଶ୍ୱରୋଽବତୁ ॥ (୧୦.୬.୨୪)**

ଯଥା ଭଗବାନ ହୃଷୀକେଶ ଇନ୍ଦ୍ରିୟମାନଙ୍କୁ ରକ୍ଷା କରନ୍ତୁ । ନାରାୟଣ ଭଗବାନ ପ୍ରାଣର ରକ୍ଷା କରନ୍ତୁ, ଇତ୍ୟାଦି । ସେତେବେଳକୁ ନନ୍ଦବାବା ପ୍ରଭୃତି ମଥୁରାରୁ ଫେରି ଆସିଲେ । ପୂତନାର ମୃତ ଶରୀରକୁ ଦେଖି ସେମାନେ ମଧ ଆଶ୍ଚର୍ଯ୍ୟ ହୋଇଗଲେ। ତା ପରେ ଗୋପାଳମାନେ ପୂତନାର ଦେହକୁ ସେଠାରୁ ଦୂରକୁ ନେଇଗଲେ । ସେହି ସ୍ଥାନକୁ ଗୋବରରେ ଲିପା ଗଲା ଏବଂ ମନ୍ତ୍ର ସହିତ ତୀର୍ଥଜଳ ସିଞ୍ଚନ କରି ତାହାର ଶୁଦ୍ଧି କରାଗଲା । ପୁଣି ଗୋପାଳମାନେ ପୁତନାର ଶରୀରକୁ ଖଣ୍ଡ-ଖଣ୍ଡ କରି ତାକୁ ଜଳାଇ ଦେଲେ । ସେତେବେଳେ ତାର ଶରୀରରୁ ସୁଗନ୍ଧ ବାହାରିଲା । କାରଣ ଭଗବାନ ତା'ଠାରୁ ଦୁଗଧ ପାନ କରିଥିଲେ । ସେହି ସମୟରେ ତାର ସମସ୍ତ ପାପ ନଷ୍ଟ ହୋଇଯାଇଥିଲା । ଶ୍ରୀ ଶୁକଦେବ ଜୀ କହୁଛନ୍ତି -

**ଜିଘାଂସୟାପି ହରୟେ ସ୍ତନଂ ଦତ୍ତ୍ୱାଽଽପ ସଦ୍‌ଗତିମ। (୧୦.୬.୩୫)**

ଆରେ ! ସେ ରାକ୍ଷସୀ ତ ଭଗବାନଙ୍କୁ ବିଷ ପିଆଇବା ନିମନ୍ତେ ଆସିଥିଲା । ତଥାପି ମଧ, ଯେହେତୁ କୃଷ୍ଣଙ୍କ ମୁହଁରେ ନିଜର ସ୍ତନ ଦେଇଥିଲା, ତେଣୁ ଭଗବାନ ମା'ଙ୍କୁ ପ୍ରାପ୍ତ ହେଉଥିବା ଗତିକୁ ସେ ରାକ୍ଷସୀକୁ ଦେଇଦେଲେ ।

**କିଂ ପୁନଃ ଶ୍ରଦ୍ଧୟା ଭକ୍ତ୍ୟା କୃଷ୍ଣାୟ ପରମାତ୍ମନେ । (୧୦.୬.୩୬)**

**ଯାତୁଧାନ୍ୟପି ସା ସ୍ୱର୍ଗମବାପ ଜନନୀଗତିମ୍ ।**

**କୃଷ୍ଣଭୁକ୍ତସ୍ତନକ୍ଷୀରାଃ କିମୁ ଗାବୋ ନୁ ମାତରଃ । (୧୦.୬.୩୮)**

ବିଚାର କରନ୍ତୁ, ଯେ ଜହର ପିଆଇବାକୁ ଆସିଥିଲା ତାକୁ ମାତାଙ୍କର ଗତି ଦେଇ ଦେଲେନ୍ତ ତେବେ ଯଶୋଦା ମା'ଙ୍କ ନିମନ୍ତେ କଣ କରିବେ ଯେ କି ନିଜ ସ୍ତନର ଶୁଦ୍ଧ କ୍ଷୀର ପାନ କରାଇଲେ । ସେହି ଗାଈମାନଙ୍କୁ କଣ ଦେବେ। ଯେ ମାରିବା ନିମନ୍ତେ ଆସନ୍ତି ତାକୁ ଭଗବାନ ମୁକ୍ତି ପ୍ରଦାନ କରନ୍ତି, ତେବେ ଯେଉଁମାନେ ତାଙ୍କୁ ପ୍ରେମ କରନ୍ତି ସେମାନଙ୍କ ପାଇଁ ଭଗବାନ କଣ ନ କରିବେ? ଭଗବାନ ସେମାନଙ୍କର ସେବକ

ହୋଇଯାଆନ୍ତି, ଦାସ ହୋଇଯାଆନ୍ତି । କୁହନ୍ତି - ମୋତେ ତୁମେ କିଛି କାମ କୁହ । ସେଥିପାଇଁ ଶୁକଦେବ ଜୀ ଗୋଟିଏ ବହୁତ ଭଲ କଥା କହିଛନ୍ତି -

**ତସ୍ମାତ୍ କେନାପ୍ୟୁପାୟେନ ମନଃ କୃଷ୍ଣେ ନିବେଶୟେତ୍ ॥ (୭.୧.୩୧)**

ଯେକୌଣସି ଉପାୟରେ, ବିଶେଷ ରୂପରେ ପ୍ରେମ ଦ୍ୱାରା ନିଜ ମନକୁ ଭଗବାନଙ୍କଠାରେ ଲଗାଇ ଦିଅ ।

ଏବେ ନନ୍ଦବାବା ଓ ତାଙ୍କ ସହିତ ମଥୁରାରୁ ଫେରିଥିବା ଗୋପମାନଙ୍କୁ ଯେତେବେଳେ ସମସ୍ତ ଘଟଣା ଜଣାପଡ଼ିଲା, ସେତେବେଳେ ସେମାନେ ଆଶ୍ଚର୍ଯ୍ୟ ଚକିତ ହୋଇଗଲେ । ନନ୍ଦବାବା ବିଚାର କଲେ - ବସୁଦେବ ଜୀ ତ ପ୍ରଥମରୁ କହି ଦେଇଥିଲେ, ତାଙ୍କୁ ପ୍ରଥମରୁ ହିଁ ଆଭାସ ହୋଇ ଯାଇଥିଲା । ସେ କହିଥିଲେ - ମୋର ପୁତ୍ର କୁଶଳରେ ଅଛି ତ ? ସେ (ନନ୍ଦବାବା) ତାକୁ କୋଳକୁ ଉଠାଇ ନେଇ ତାର ମଥାକୁ ଶୁଁଘୁଛନ୍ତି, ତାକୁ ଚୁମ୍ବନ ଦେବାକୁ ଲାଗିଲେ । ଅଧିକ ବୟସରେ ପ୍ରାପ୍ତ ଶିଶୁ, ତେଣୁ ଅତ୍ୟଧିକ ପ୍ରେମ କରୁଛନ୍ତି । ଶୁକଦେବ ଜୀ କହୁଛନ୍ତି - "ପୂତନା ମୋକ୍ଷ' ଭଗବାନଙ୍କର ଏହି ବାଳଲୀଳା ଶ୍ରବଣ ଦ୍ୱାରା ହିଁ ନିଶ୍ଚୟ ଭଗବତ୍ ପ୍ରେମ ପ୍ରାପ୍ତ ହୋଇଯାଏ ।

## ଶକଟାସୁରର ଉଦ୍ଧାର

ଆଗକୁ ବର୍ଣ୍ଣନ ଆସେ ଯେ, ଯେଉଁଦିନ ଭଗବାନ କଡ଼ ଲେଉଟାଇଲେ ସେହିଦିନ ତାଙ୍କ ଜନ୍ମ-ନକ୍ଷତ୍ରର ଦିବସ ଥିଲା । ମହାପୁରୁଷଙ୍କ ମାନ୍ୟତା ଅନୁସାରେ ତାଙ୍କୁ ସେତେବେଳେ ତିନିମାସ ହୋଇଥିଲା । ସେଥିପାଇଁ ଉତ୍ସବ ପାଳନ କରାଯାଉଥିଲା । ବହୁତ ଭିଡ଼ ହୋଇଥିଲା । ଯଶୋଦା ମା' ଭଗବାନଙ୍କର, ନିଜ ପୁତ୍ର ଅଭିଷେକ କରାଇଲେ । କରିଲେ । ବ୍ରାହ୍ମଣମାନେ ମନ୍ତ୍ର ପଢୁଥିଲେ । ସମସ୍ତ କାର୍ଯ୍ୟ ଠିକ୍‌ରେ ସମ୍ପନ୍ନ ହୋଇଗଲା । ମା' ବ୍ରାହ୍ମଣମାନଙ୍କୁ ବହୁତ ଦାନ ଦେଲେ, ସେମାନଙ୍କର ମନ ପସନ୍ଦ ବସ୍ତୁ ମଧ୍ୟ ଦେଲେ । ପୁଣି ଯେତେବେଳେ ଦେଖିଲେ ଯେ ତାଙ୍କର ପୁତ୍ରକୁ ନିଦ ଆସୁଛି ତ ସେ ତାକୁ ଶୁଆଇଦେଲେ । ପ୍ରାୟ ଦେଖିବାକୁ ମିଳେ ଯେ ଗାଁମାନଙ୍କରେ ଶଗଡ଼ରେ ଗୋଟିଏ ପାଖରେ ବଳଦ ବାନ୍ଧି ଦେଇଥାଆନ୍ତି, ଏବଂ ନିଜର ଏକ ଝୋଳା କରିଦେଇ ସେଥିରେ ପିଲାକୁ ଝୁଲାଇ ଦିଅନ୍ତି ଅଥବା ତାର ତଳେ କୌଣସି ବିଛଣା ପାରି ଦେଇ ପିଲାକୁ ସେଥିରେ ଶୁଆଇ ଦେଇଥାଆନ୍ତି । ଯଶୋଦା ମା' ମଧ୍ୟ ତାହା ହିଁ କଲେ । ଶଗଡ଼ ତଳେ ନିଜର ପୁତ୍ରକୁ ଶୁଆଇ ଦେଲେ । ସେତେବେଳେ ଶଗଡ଼ ଉପରେ ଦୁଧ, ଦହି ପ୍ରଭୃତି

ରଖାଯାଇଥିଲା । କୁହାଯାଏ ଯେ, ହିରଣାକ୍ଷ ଦୈତ୍ୟର ଏକ ପୁତ୍ର ଥିଲା, ଯେ କି ଲୋମଶ ଋଷିଙ୍କ ଅଭିଶାପ କାରଣରୁ ଶରୀର ବିହୀନ ହୋଇଯାଇଥିଲା । ଏବେ ସେହି ଅଶରୀରୀ ଶକଟାସୁର ଯାଇ ଶଗଡ଼ରେ ବସିଗଲା ।

କିଛି ସମୟପରେ ଛୋଟିଆ ଭଗବାନଙ୍କୁ ଭୋକ ଲାଗିଲା ତ ତାଙ୍କ ନିଦ ଭାଙ୍ଗିଗଲା ଏବଂ ସେ କାନ୍ଦିବାକୁ ଲାଗିଲେ । ଯଶୋଦାଜୀ ଅତିଥିମାନଙ୍କର ସ୍ୱାଗତ ସତ୍କାରରେ ବ୍ୟସ୍ତ ଥିଲେ, ସେଥିପାଇଁ ସେ ଶୁଣିପାରିଲେ ନାହିଁ । ଏବେ ଏହା ଦେଖି ଭଗବାନଙ୍କର କ୍ରୋଧ ଆସିଗଲା । କ୍ରୋଧରେ ପିଲାଟି ଯେଉଁଭଳି ପାଦକୁ ଉଚ୍ଚକୁ ଉଚ୍ଚକୁ ଛାଟୁଥାଏ, ଭଗବାନ ମଧ୍ୟ ସେହିଭଳି କଲେ । ଛୋଟ ବାଳକର ପାଦ ଜଣାନାହିଁ ସେହି ଶଗଡ଼ରେ କେମିତି ବାଜିଗଲା, ଶଗଡ଼ଟି ଓଲଟି ଗଲା । ସମସ୍ତ ଦୁଧ, ଦହି ଯାହାସବୁ ତା ଉପରେ ରଖାଯାଇଥିଲା ସମସ୍ତ ଓଲଟି ପଡ଼ି ନଷ୍ଟ ହୋଇଗଲା । ଏବେ ଧଡ଼ ଧାଡ଼ କରି ପଡ଼ିବାର ଶବ୍ଦ ହେଲା, ତେଣୁ ସମସ୍ତେ ଚମକି ପଡ଼ି ଦେଖିବାକୁ ଲାଗିଲେ ଯେ କ'ଣ ହେଲ ? ସେମାନେ ସମସ୍ତେ ଆଶ୍ଚର୍ଯ୍ୟ ହେଲେ ଯେ ଏ ଶଗଡ଼ଟି ଓଲଟିଲା କିପରି ? ସେଠାରେ କିଛି ଛୋଟ ଛୋଟ ପିଲାମାନେ ଥିଲେ, ଯେଉଁମାନେ କି ସବୁବେଳେ ଶ୍ରୀକୃଷ୍ଣଙ୍କ ସାଥିରେ ରହୁଥିଲେ (କାରଣ ପିଲାମାନେ ସବୁବେଳେ ପିଲାମାନଙ୍କ ସାଥିରେ ରହନ୍ତି ।) ସେମାନେ କହିଲେ ଯେ ଏ ଶିଶୁଟି କାନ୍ଦୁଥିଲା । କାନ୍ଦୁ କାନ୍ଦୁ ସେ ତାର ପାଦ ଦୁଇଟିକୁ ଉପରକୁ ଟେକିଦେଲା ଏବଂ ଶଗଡ଼ଟିକୁ ଓଲଟାଇ ଦେଲା । ବଡ଼ମାନଙ୍କର ଛୋଟ ପିଲାଙ୍କ କଥା ଉପରେ ଏତେ ଶୀଘ୍ର ବିଶ୍ୱାସ ହୁଏ ନାହିଁ । କାରଣ ବଡ଼ମାନେ ତର୍କବାଦୀ ହୋଇଥାଆନ୍ତି । ସେମାନଙ୍କୁ ଲାଗିଲା ଯେ ଏହା ସମ୍ଭବ କିପରି ? ଏତେ ଛୋଟ ପିଲାଟି ଏବଂ ତାର ଛୋଟିଆ ଛୋଟିଆ ପାଦ, ଏତେ ଉପରକୁ ଶଗଡ଼ ପର୍ଯ୍ୟନ୍ତ ତାହା କିପରି ଗଲା ? ପିଲାମାନେ କହୁଛନ୍ତି - ଆମେ ନିଜ ଆଖିରେ ଦେଖିଛୁ । ସେଇ ପିଲା ହିଁ ପାଦରେ ଏପରି କରିଛି । ବଡ଼ମାନେ କହୁଛନ୍ତି ଯେ ତା ପାଖରେ ଏତେ ଶକ୍ତି କିପରି ଆସିଲା ଯେ ପୁରା ଗାଡ଼ିଟାକୁ ଓଲଟାଇ ଦେଲା ? ସେମାନଙ୍କର ବିଶ୍ୱାସ ହେଲା ନାହିଁ। ନ ହେଲା ତ ନ ହେଲା । ବଡ଼ମାନେ ନିଜେ ନିଜକୁ ଅତି ବୁଦ୍ଧିମାନ ଭାବନ୍ତି ।

ପ୍ରଥମେ ଅବିଦ୍ୟାକୁ ମାରିଲେ, ଅବିଦ୍ୟା ପରେ ଆସେ "ଜଡ଼ବାଦ' । ଦେଖନ୍ତୁ ବଳଦ ଗାଡ଼ି ଜଡ଼ ଅଟେ, ତା ଉପରେ ରଖା ଯାଇଥିବା ଦୁଧ, ଦହି ଆଦି ଖାଇବା ପିଇବାର ପଦାର୍ଥ ମଧ୍ୟ ଜଡ଼ ଅଟେ । ତା ତଳେ ଭଗବାନଙ୍କୁ ଶୁଆଇ ଦିଆଯାଇଥିଲା । ସେ ତ ଚେତନ ବ୍ରହ୍ମ ଅଟନ୍ତି । ଆମେ କ'ଣ ଏପରି କରୁନାହାନ୍ତି କି ? ଜଡ଼ ବସ୍ତୁକୁ ଉଚ୍ଚ ସ୍ଥାନ ଦେଉଛୁ ଏବଂ ଚେତନକୁ ତଳକୁ କରି ଦେଉଛୁ । କେଉଁ ବ୍ୟକ୍ତିର ମୂଲ୍ୟାୟନ

କାହା ସହିତ କରାଯାଉଛି ? ତାର ଟଙ୍କା ପଇସା ସହିତ ତାର ଭୋଗ ସହିତ ନା ତାର ପରିବାର ସହିତ ? ତାକୁ ଏହା ସହିତ ମପାଯାଏ ଯେ ତା ପାଖରେ କେତେ ପଇସା ଅଛି, ତାର ପୁଞ୍ଜି କେତେ ଅଛି ? ଏହା ଦ୍ୱାରା ସେ ବ୍ୟକ୍ତି ଯେ କି ଚେତନ, ସେ ତ ଗୌଣ ହୋଇଗଲା, ତାକୁ ତ ଆମ୍ଭେମାନେ ତଳକୁ କରିଦେଲୁ ଏବଂ ଜଡ଼ ବସ୍ତୁକୁ ମହତ୍ତ୍ୱ ଦେଇ ତାକୁ ଉଚ୍ଚକୁ କରିଦେଲୁ । ଯେପରି କି ସେ ବ୍ୟକ୍ତିର ଅସ୍ତିତ୍ୱର କୌଣସି ମହତ୍ତ୍ୱ ନାହିଁ । ଟିକିଏ ବିଚାର କରନ୍ତୁ, ଜଗତରେ ଏଭଳି ହେଉଛି କି ନାହିଁ ? ଭଗବାନଙ୍କୁ ଏ କଥା ଭଲ ଲାଗେ ନାହିଁ । ସେ ତ ଜଡ଼ବାଦକୁ ମୂଳ ସହିତ ଓପାଡ଼ି ପକାଇବା ପାଇଁ ଆସିଥିଲେ । ଅର୍ଥାତ୍, ସେ କହୁଛନ୍ତି ଯେ ମୁଁ ଚେତନ ବ୍ରହ୍ମ ଏଠାକୁ ଆସିଛି, ମୋତେ ତଳେ ରଖିଛ ? ସେଥିପାଇଁ ଭଗବାନ ଗାଡ଼ିକୁ ଓଲଟାଇ ଦେଲେ । ଶକଟାସୁର - ଭଂଜନ ହୋଇଗଲା । ସେହିଭଳି ଆମର ଅନ୍ତଃକରଣରେ ମଧ୍ୟ ଯେତେବେଳେ ଭଗବାନଙ୍କର ଆବିର୍ଭାବ ହୋଇଥାଏ, ସେତେବେଳେ ଅବିଦ୍ୟାର ନାଶ ହୋଇଥାଏ ଏବଂ ଜଡ଼ ବସ୍ତୁର ପ୍ରଭାବ ମଧ୍ୟ ଲୋପ ହୋଇଯାଏ ।

## ତୃଣାବର୍ତ୍ତର ଉଦ୍ଧାର

ଏହି ପ୍ରସଙ୍ଗ ପରେ ଗୋଟିଏ ଦିନର କଥା । ଯଶୋଦା ମା' ଭଗବାନଙ୍କୁ ଦୁଧ ପିଆଇବା ପରେ ତାଙ୍କୁ ନିଜ କୋଳରେ ନେଇ

**ଗରିମାଣଂ ଶିଶୋର୍ବୋଢୁଂ ନ ସେହେ ଗିରିକୂଟବତ୍ ॥ (୧୦.୭.୧୮)**

କେଜାଣି କାହିଁକି ସେ ଅତ୍ୟଧିକ ଭାରୀ ହେବାକୁ ଲାଗିଲେ । ଯଶୋଦା 1 ବୁଝିପାରିଲେ ନାହିଁ ଯେ ଏତେ ଛୋଟ ବାଳକ ଏତେ ଓଜନ କାହିଁକି ହୋଇଯାଉଛି । ଯେତେବେଳେ ସେହି ଭାର ତାଙ୍କୁ ସହନ ହେଲା ନାହିଁ, ସେତେବେଳେ ସେ ଶ୍ରୀକୃଷ୍ଣଙ୍କୁ ଭୂମିରେ ବସାଇଦେଲେ ।

ଏତିକିବେଳେ କଂସ ଦ୍ୱାରା ପ୍ରେରିତ ହୋଇଥିବା ତାର ସେବକ ଘୂର୍ଣ୍ଣିବାତ୍ୟା ରୂପ ଧାରଣ କରି ସେଠାକୁ ଆସିଗଲା । ଯେତେବେଳେ ଘୂର୍ଣ୍ଣିବାତ୍ୟା ଆସେ, ସେତେବେଳେ ସମସ୍ତ ପତ୍ର, ଧୂଳି ଆଦି ବୃତ୍ତାକାରରେ ଘୂରନ୍ତି । କେବେ ଆପଣ ଦେଖିଛନ୍ତି କି ଧୂଳି ଝଡ଼ ଆସିଲା ବେଳେ କିପରି ଘୂର୍ଣ୍ଣିବାତ୍ୟା ସୃଷ୍ଟି ହୁଏ ? ଏ ଯେଉଁ ଦ୍ୱିତୀୟ ଅସୁର ଆସିଛି - ତାର ନାମ ଥିଲା "ତୃଣାବର୍ତ୍ତ' । ଦେଖନ୍ତୁ, ଭଗବାନ ଏବେ ତାକୁ ମଧ୍ୟ ମୁକ୍ତି ଦେବାକୁ ଚାହୁଁଛନ୍ତି । ଏଠାରେ ଆପଣମାନଙ୍କୁ ଗୋଟିଏ କଥା କହିଦେଉଛି । ଭଗବାନଙ୍କର ଏ

ଯେଉଁ ଅସୁରମାନଙ୍କୁ ମାରିବାର ଲୀଳା, ଏହା କୌଣସି ବଡ଼ ଶୂର-ବୀରତାର ଅଥବା ଐଶ୍ୱର୍ଯ୍ୟ-ଲୀଳା ନୁହେଁ । ଏହା ତ ମାଧୁର୍ଯ୍ୟଲୀଳା ଅଟେ । ଅସୁରମାନଙ୍କୁ ମାରିବାରେ ଭଗବାନଙ୍କର କଣ କୌଣସି ଶୌର୍ଯ୍ୟ ହୁଏ ? ଗୋଟିଏ ପାଦ ଲାଗୁ ଲାଗୁ ଶକଟାସୁରର ମୃତ୍ୟୁ ହେଲା । ଦୁଧ ପିଆଇଲା ତ ପୂତନାର ମୃତ୍ୟୁ ହେଲା । ଏହା କଣ ଐଶ୍ୱର୍ଯ୍ୟ ? ଏହା ତ ଭଗବାନଙ୍କର ମାଧୁର୍ଯ୍ୟର ହିଁ କଥା ଅଟେ, କରୁଣାର କଥା ଅଟେ, ଶୂରତାର କଥା ନୁହେଁ । ତୃଣାବାର୍ତ୍ତ ସେଠାକୁ ଆସିଲା ଏବଂ ସୁଁ ସୁଁ କରି ଛୋଟ ଶିଶୁ ରୂପୀ ଭଗବାନଙ୍କୁ ଉଡ଼ାଇ ଆକାଶକୁ ଗଲେ ତ ଭଗବାନ ତାର ଗଳାକୁ ଧରିନେଲେ । ପୁଣି ଧରିନେଇ ଜୋରରେ ଚିପିବାକୁ ଲାଗିଲେ । ଏପରି ମଧ୍ୟ ସେ ନିଜଠାରୁ ମଧ୍ୟ ଓଜନ ଭଗବାନଙ୍କର ଓଜନକୁ ସମ୍ଭାଳି ପାରୁନଥିଲା । ମାନ୍ଦା ହୋଇଯାଇଥିଲା । ଏପରି ଅଦ୍ଭୁତ ବାଳକଠାରୁ ନିଜକୁ ଛଡ଼ାଇ ପାରିଲା ନାହିଁ । ଭଗବାନଙ୍କର ଏହା ଏକ ବିଶେଷତା ଯେ ସେ ଯାହାକୁ ଧରନ୍ତି ତାକୁ ଛାଡ଼ନ୍ତି ନାହିଁ । ଆରେ ! କେତେ ଭଲ କଥା ଅଟେ । ସେଥିପାଇଁ ଭଗବାନଙ୍କୁ କୁହନ୍ତୁ ଯେକୌଣସି ଉପାୟରେ ଆପଣ ମୋତେ ଧରି ନିଅନ୍ତୁ। ଭଗବାନ ତାର ଗଳାକୁ ଏତେ ଜୋରରେ ଧରିଲେ ଯେ ତାର ପ୍ରାଣ ବାହାରିଗଲା ଏବଂ ସେ ଧଡ଼ାସ୍ କରି ତଳେ ପଡ଼ିଗଲା ।

ସେଠାରେ ଧୂଳିଝଡ଼ କାରଣରୁ କାହାକୁ ଦେଖାଯାଉ ନ ଥିଲା । ତେଣୁ ନିଜର ଶିଶୁପୁତ୍ରକୁ ନ ଦେଖି ଯଶୋଦା ମା' ଚିନ୍ତାରେ ପଡ଼ିଗଲେ, ବ୍ୟାକୁଳ ହୋଇଗଲେ। ସମସ୍ତଙ୍କ ଆଖିରେ ଏପରି ତ ଧୂଳି ଭରି ରହିଛି । ଯେତେବେଳେ ଧୂଳି କିଛି କମିଗଲା, ସମସ୍ତ ବାତାବରଣ ଶାନ୍ତ ହୋଇଗଲା, ସେତେବେଳେ ସମସ୍ତେ କଣ ଦେଖୁଛନ୍ତି - ଯେ ଧଡ଼୍ କରି କଣ ପଡ଼ିଛି । ସମସ୍ତେ ପାଖକୁ ଯାଇ ଦେଖୁଛନ୍ତି ତ ସେଠାରେ ଗୋଟିଏ ଅସୁର ପଡ଼ିଛି ଏବଂ ଛୋଟିଆ କୃଷ୍ଣ ତା ଗଳାରେ ଝୁଲି ରହି ଖେଳୁଛନ୍ତି । ସମସ୍ତେ କହିଲେ - ବଞ୍ଚିଗଲା ! ଦେଖନ୍ତୁ ଯଶୋଦା ମା' ଏବଂ ସମସ୍ତ ଗ୍ରାମବାସୀ ଏହା ହିଁ ଭାବୁଥିଲେ ଯେ ଆମେ ସମସ୍ତେ ଭଗବାନଙ୍କର ଏତେ ପ୍ରାର୍ଥନା କରୁଛନ୍ତି, ଜପ, ତପ, ପୂଜା ଅଭିଷେକ କରୁଛନ୍ତି, ସେଥିପାଇଁ ଏହି ଶିଶୁ ପୁତ୍ରଟି ସବୁବେଳେ ବଞ୍ଚି ଯାଉଛି । ଏବେ ଯଶୋଦା ମା' ତାକୁ ଗେଲ କରିବାକୁ ଲାଗିଲେ, ତା' ମଥାକୁ ଶୁଙ୍ଘିବାକୁ ଲାଗିଲେ ଏବଂ ଶୀଘ୍ର କ୍ଷୀର ପାନ କରାଇବାକୁ ଲାଗିଲେ ।

ଦେଖନ୍ତୁ, ଏହି ତୃଣାବର୍ତ୍ତ କିଏ ? ତୃଣାବର୍ତ୍ତ "କାମନା' ପ୍ରତୀକ ଅଟେ । ଜୀବନରେ ଅବିଦ୍ୟା ହେଉ, ଜଡ଼ବାଦ ଥାଉ ତୃଣାବର୍ତ୍ତ ନିଶ୍ଚୟ ଆସିଯାଏ, ଆଖିରେ ଧୂଳି ଭରିଯାଏ ଅର୍ଥାତ୍ ଚିତ୍ତରେ ବିକ୍ଷେପ, ଭ୍ରମ ଆଚ୍ଛାଦିତ ହୋଇଯାଏ । ତୃଣାବର୍ତ୍ତ ଉଦ୍ଧାରର ତାତ୍ପର୍ଯ୍ୟ

ହେଲା ଯେ ଜଣେ ସାଧକଙ୍କୁ ତାର କାମ ବାସନା ଉପରେ ବିଜୟ ପ୍ରାପ୍ତ କରିନେବା ଉଚିତ ।

ଦିନକର କଥା, ଯଶୋଦା ମା' ବାଳ-କୃଷ୍ଣଙ୍କୁ ଦୁଧ ପିଆଉଛନ୍ତି । ଯେତେବେଳେ ସେ ଦେଖିଲେ ଯେ ଭଗବାନ ଦୁଧ ପିଇ ଚାଲିଛନ୍ତି, ସେତେବେଳେ ତାଙ୍କୁ ଲାଗିଲା ଯେ ଯଦି ଅଧିକା ପିଇ ଦେବେ ତେବେ ଅଜୀର୍ଣ୍ଣ ହୋଇଯିବ । ସେଥିପାଇଁ ଦୁଧ ପିଇବା ଛଡ଼େଇବା ନିମନ୍ତେ ମା' ତାଙ୍କୁ ଗେଲ କରୁଛନ୍ତି, ତାଙ୍କର ସ୍ମିତହାସ୍ୟ ଭରା ମୁଖକୁ ଚୁମ୍ବନ ଦେଉଛନ୍ତି । ଭଗବାନ ମା'ଙ୍କ ଆଡ଼କୁ ଚାହୁଁଛନ୍ତି । ମା' ମଧ୍ୟ ତାଙ୍କ ଆଡ଼କୁ ଚାହୁଁଛନ୍ତି । ତେବେ ଯେମିତି ଭଗବାନ ହାଇ ମାରିବା ବେଳେ ମୁହଁ ଖୋଲିଲେ, ସେତିକିବେଳେ ମା' ଦେଖିଲେ ଯେ ସୂର୍ଯ୍ୟ, ଚନ୍ଦ୍ର, ଆକାଶ ଆଦି ପଞ୍ଚ ମହାଭୂତ, ଅନ୍ତରୀକ୍ଷ, ସମସ୍ତ ଦିଗ, ସମୁଦ୍ର, ପର୍ବତ, ନଦୀ ସମସ୍ତ, ପ୍ରାଣୀ ଆଦି ସମସ୍ତ ବିଶ୍ୱ ସେଠାରେ ସ୍ଥିତ ଅଛି ।

**ଖଂ ରୋଦସୀ ଜ୍ୟୋତିରନୀକମାଶାଃ**

**ସୂର୍ଯ୍ୟେନ୍ଦୁ ବହ୍ନିଶ୍ୱସନାମ୍ବୁଧୀଂଶ୍ଚ ॥ (୧୦.୭.୩୬)**

**ସା ବୀକ୍ଷଂ ବିଶ୍ୱଂ ସହସା ରାଜନ୍ ସଞ୍ଜାତବେପଥୁଃ ।**

**ସମୀଲ୍ୟ ମୃଗଶାବାକ୍ଷୀ ନେତ୍ରେ ଆସୀତ୍ ସୁବିସ୍ମିତା ॥ (୧୦.୭.୩୭)**

ଭୟଭୀତ ହୋଇ ମା' ସହଜରେ ଆଖି ବନ୍ଦ କରିଦେଲେ । ସେହି ସମୟରେ ପୁଣି ଥରେ ଆଖି ଖୋଲିବାର ସାହସ ହେଉ ନ ଥିଲା, ଜଣା ନାହିଁ ପୁଣି କଣ ଦେଖାଯିବ ? କିନ୍ତୁ ଆଖି ଖୋଲି ଦେଖିଲେ ତ ପୂର୍ବଭଳି ନିଜ ପୁତ୍ରକୁ ମୁରକି ହସୁଥିବାର ଦେଖିଲେ ପାଇଲେ ମା' ଭାବିଲେ ମୋର ବୟସ ବହୁତ ହୋଇଗଲାଣି । ସେଥିପାଇଁ ମୋର ଏପରି ଭ୍ରମ ହୋଇଯାଇଥିବ । ଛାଡ଼, ମୋର ପୁତ୍ର ତ ଠିକ ଅଛି । ଏଠାରେ ଭଗବାନ ଏହା ଦର୍ଶାଉଛନ୍ତି ଯେ ଯଶୋଦା ଜୀ ତ ସମସ୍ତ ବିଶ୍ୱକୁ ଦୁଗ୍ଧ ପାନ କରାଉଥିଲେ ।

## ନାମକରଣ-ସଂସ୍କାର

ଶୁକଦେବ ଜୀ ଆଗକୁ କହୁଛନ୍ତି - ମହର୍ଷି ଗର୍ଗ ହେଉଛନ୍ତି ଯଦୁବଂଶର ପୁରୋହିତ । ବସୁଦେବଜୀ ଗର୍ଗ ମହର୍ଷିଙ୍କୁ କହୁଛନ୍ତି - ଭଗବାନ ! ମୋର ପୁତ୍ରର ଜନ୍ମ ତ ହେଲା । କିନ୍ତୁ ଏ ପର୍ଯ୍ୟନ୍ତ ତାହାର କୌଣସି ସଂସ୍କାର ହୋଇନାହିଁ । ନାମକରଣ ସଂସ୍କାର ମଧ୍ୟ ହୋଇନାହିଁ । ସେଥିପାଇଁ ଆପଣ ଗୋକୁଳକୁ ନନ୍ଦଙ୍କ ଘରେ ଯେଉଁ ପୁତ୍ର ଅଛି, ତାର ଏବଂ ତାର ବଡ଼ଭାଇଙ୍କର ନାମକର କରିଦିଅନ୍ତୁ । ତା ପରେ ଗର୍ଗ ମହର୍ଷି ଗୋକୁଳକୁ

ଆସିଲେ । ନନ୍ଦବାବା ତାଙ୍କର ସ୍ୱାଗତ କରୁଛନ୍ତି । ପୁଣି ତାଙ୍କୁ ଅନୁରୋଧ କରୁଛନ୍ତି ଯେ ଏହି ଦୁଇ ବାଳକଙ୍କ ନାମକରଣ ସଂସ୍କାର ଆପଣ କରନ୍ତୁ । ଗର୍ଗ ମହର୍ଷି କହୁଛନ୍ତି ଯେ ଦେଖ, କଥା ହେଉଛି ମୁଁ ଯଦୁବଂଶର ଆଚାର୍ଯ୍ୟ ଅଟେ । ଯଦି ମୁଁ ତୁମ ପୁତ୍ରର ନାମକରଣ ସଂସ୍କାର କରିବି, ତେବେ ସମସ୍ତେ ଜାଣିଯିବେ ଯେ ଇଏ ହେଉଛି ଦେବକୀ ଜୀଙ୍କର ପୁତ୍ର । କଂସକୁ ମଧ୍ୟ ଜଣାପଡ଼ିଯିବ ଏବଂ ସେ ପୁଣି ତୁମ ପୁତ୍ରକୁ ମାରିଦେବ ତ ବଡ଼ ଅନର୍ଥ ହୋଇଯିବ । ସମସ୍ତଙ୍କୁ ବଡ଼ କଷ୍ଟ ହେବ । ନନ୍ଦବାବା କହିଲେ, ସମସ୍ତଙ୍କ କଥା ତ ଛାଡ଼ ଆମର ସ୍ୱଜନମାନଙ୍କୁ ମଧ୍ୟ ଜଣା ପଡ଼ିବ ନାହିଁ । ଆପଣ ଏହି ଗୋଶାଳାରେ ହିଁ ଏହି କାର୍ଯ୍ୟକୁ ସମ୍ପୂର୍ଣ୍ଣ କରି ଦିଅନ୍ତୁ ।

ଗର୍ଗାଚାର୍ଯ୍ୟ ତ ସେହି କାର୍ଯ୍ୟ ଯୋଗୁ ଆସିଥିଲେ । ସେ ଏକାନ୍ତରେ ଚୁପ୍‌ଚାପ୍ ସଂସ୍କାର ସମ୍ପାଦନ କଲେ । ଗର୍ଗ ମହର୍ଷି କହୁଛନ୍ତି - ଏହି ବଡ଼ ପୁଅ ବହୁତ ବଳଶାଳୀ ଅଟେ । ନିଜର ଗୁଣରେ ଏ ସମସ୍ତଙ୍କୁ ଆନନ୍ଦିତ କରିବ, ସେଥିପାଇଁ ଏହାର ନାମ ହେବ "ବଳରାମ' । ସମସ୍ତଙ୍କୁ ଏକାଠି ରଖିବାର କାରଣରୁ ଏହାର ନାମ "ସଂକର୍ଷଣ' ମଧ୍ୟ ହେବ । ପୁଣି ଏ ଯେଉଁ ସାନ ପୁଅ ଏ ସମସ୍ତଙ୍କୁ ନିଜ ଆଡ଼କୁ ଆକର୍ଷଣ କରିବ । ପୂର୍ବ-ପୂର୍ବ ଯୁଗରେ ଏ ଶ୍ୱେତ, ଲାଲ ତଥା ହଳଦିଆ ବର୍ଣ୍ଣର ଥିଲା । ଏବେ ଏଠାରେ "କୃଷ୍ଣ' କଳା ବର୍ଣ୍ଣ ହୋଇ ଆସିଛି, ଏଣୁ ଏହାର ନାମ "କୃଷ୍ଣ' ହେବ ।

୧. "କୃଷ୍ଣ' ଶବ୍ଦର ଗୋଟିଏ ଅର୍ଥ ହେଉଛି ନିଜ ଆଡ଼କୁ (ଟାଣିବା) ଆକର୍ଷଣ କରିବା ବାଲା - କର୍ଷଣାତ୍ କୃଷ୍ଣଃ । ସମସ୍ତଙ୍କ ମନକୁ ଯେ ନିଜ ଆଡ଼କୁ ଟାଣି ଆଣେ, ଆକର୍ଷଣ କରିନିଏ ତାକୁ କୃଷ୍ଣ କହନ୍ତି ।

୨. କୃଷ୍ଣର ଦ୍ୱିତୀୟ ଅର୍ଥ "କାଳା' । ଯେ କଳା ହୋଇଥାଏ ସେ ଦେଖାଯାଏ ନାହିଁ, ଲୁଚି ରହିଥାଏ, ତାକୁ ଚିହ୍ନିବା ବଡ଼ କଠିନ କାମ ହୋଇଥାଏ ।

୩. ତୃତୀୟ କଥା ହେଉଛି କୃଷ୍ଣର ଅର୍ଥ ନୀଳବର୍ଣ୍ଣ ମଧ୍ୟ ହୋଇଥାଏ । ନୀଳ ରଙ୍ଗ ହେଉଛି ଅନନ୍ତ ରଙ୍ଗ ଅଟେ (ପ୍ରତୀକ) । ଶ୍ରୀକୃଷ୍ଣ ଛୋଟଟିଏ ଦେଖାଯାଆନ୍ତୁ ନା କାହିଁକି, ପରନ୍ତୁ ସେ ଅନନ୍ତସ୍ୱରୂପ ଅଟନ୍ତି । ସେଥିପାଇଁ ସେ ନୀଳ, କୃଷ୍ଣ ଅଟନ୍ତି ।

୪. ଚତୁର୍ଥ କଥା ହେଉଛି କୃଷ୍ଣରେ ଗୋଟିଏ "କୃଷ' ଅଛି, ଅନ୍ୟଟି "ଣ' ଅଛି । "କୃଷ୍' ର ଅର୍ଥ ସତ୍ତା, ଏବଂ "ଣ'ର ଅର୍ଥ ହେଉଛି ଆନନ୍ଦ । ସଦାନନ୍ଦ ସ୍ୱରୂପ ଯେ ଅଟନ୍ତି, ତାଙ୍କର ନାମ କୃଷ୍ଣ ଅଟେ ।

ନାମକରଣ କାର୍ଯ୍ୟ ଶେଷ କରି ଗର୍ଗ ମହର୍ଷି ସେଠାରୁ ଚାଲି ଯାଉଛନ୍ତି ।

## ଶ୍ରୀକୃଷ୍ଣଙ୍କର ବାଳ-ଲୀଳା

ଶୁକଦେବଜୀ କହୁଛନ୍ତି - କିଛି ଦିନରେ ବଳରାମଜୀ ତଥା ଶ୍ରୀକୃଷ୍ଣ ପ୍ରଥମେ ତ ଗୁରୁଣ୍ଡୁ ଥିଲେ, ଏବଂ ତା ପରେ ଠିଆ ହୋଇ ଚାଲିବାକୁ ଲାଗିଲେ । ବ୍ରଜବାସୀମାନଙ୍କୁ ଗୋପୀମାନଙ୍କୁ ଆନନ୍ଦିତ କରିବା ସହିତ ପ୍ରକାର ପ୍ରକାରର ଖେଳର ଆରମ୍ଭ କରିବାକୁ ଲାଗିଲେ । ଏମାନେ ଗୋପୀମାନଙ୍କର ଘରକୁ ଯାଉଥିଲେ, ଏବଂ ବହୁତ ଉତ୍ପାତ କରୁଥିଲେ ।

**ବତ୍ସାନ୍ ମୁଞ୍ଚନ୍ କ୍ୱଚିଦସମୟେ କ୍ରୋଶ ସଂଜାତହାସଃ । (୧୦.୮.୨୯)**

କେତେବେଳେ ଅସମୟରେ ବାଛୁରୀମାନଙ୍କୁ ଛାଡ଼ି ଦେଉଥିଲେ ଏବଂ ଗୋପିମାନେ ଗାଳି କରୁଥିଲେ ତ ହସୁଥିଲେ, ତାଳି ବଜାଇ କହୁଥିଲେ ଦେଖ, ଏମାନଙ୍କୁ ଆମେ କିପରି ବୋକା ବନେଇଦେଲୁ । କେଉଁଠି ଚୁପ୍‌ଚାପ୍ ଭିତରେ ଯାଇ ଦୁଧ ଓ ଦହି ପିଉଛନ୍ତି । କେଉଁଠାରେ ମାଠିଆ ଭାଙ୍ଗି ଦେଉଛନ୍ତି, କେଉଁଠାରେ ଦୁଧ, ଦହି ନେଇ ମର୍କଟମାନଙ୍କୁ ଖୁଆଉଛନ୍ତି । ଏମାନଙ୍କର ଏହା ଗୋଟିଏ ଖେଳ ଥିଲା । ଏମାନେ (ମର୍କଟ) ସମସ୍ତେ ରାମାବତାରରେ ଭଗବାନଙ୍କର ମିତ୍ର ଥିଲେ । କୃଷ୍ଣ ଚନ୍ଦ୍ର ଭଗବାନ ମାଖନ ଚୋରେଇ - ଚୋରେଇ ମର୍କଟମାନଙ୍କୁ ଖୁବ ଖୁଆଉଛନ୍ତି । ମୁଁ ଆପଣଙ୍କୁ ସତ କଥା କହୁଛି ଯେ ମାଖନ ଚୋରିକରି ନିଜେ ଖୁବ୍ କମ୍ ଖାଇଛନ୍ତି । ସେ କେବଳ ଖୁଆଇଛନ୍ତି ଅଧିକା । ଏବେ ଏହି ଗୋପୀମାନେ ବାରମ୍ବାର ଯଶୋଦାଜୀଙ୍କ ପାଖକୁ ଆସି ତାଙ୍କ ପୁତ୍ର ନାମରେ ଅଭିଯୋଗ କରୁଛନ୍ତି । କିନ୍ତୁ ଅଭିଯୋଗ ମଧ୍ୟ ପ୍ରେମପୂର୍ବକ କରୁଛନ୍ତି । ସେମାନେ ସ୍ୱୟଂ ଚାହୁଁଥିଲେ ଯେ ଶ୍ରୀକୃଷ୍ଣ ସେମାନଙ୍କ ଘରକୁ ଆସନ୍ତୁ, ସେଠାରୁ କିଛି ନିଅନ୍ତୁ ଏବଂ ଖାଆନ୍ତୁ । କଥା ହେଉଛି ଯେ ଯଦି ଆମେ ନିଜେ ପିଲାକୁ ଦେଉ ଏବଂ ସେ ଖାଏ ତ ସେଥିରେ ସେତେ ଆନନ୍ଦ ଆସେ ନାହିଁ । କିନ୍ତୁ ପିଲାଟି ଚୁପ୍‌ଚାପ୍ ଆସେ ଏବଂ ଏପାଖ ସେପାଖ ଦେଖେ କି ମୋତେ କେହି ଦେଖୁନାହାନ୍ତି ତ, ସେ ସମୟରେ ତାର ଆଖିରେ ଯେଉଁ ଭୟ, ଯେଉଁ ଚଞ୍ଚଳତା ଦେଖାଯାଏ ତାହା ବଡ଼ ଆନନ୍ଦ ଦାୟକ ହୋଇଥାଏ । ସେଥିପାଇଁ ସେମାନେ ଜାଣିଶୁଣି ଏପରି ସବୁ ଜିନିଷ ରଖୁଥିଲେ, ଯାହାକୁ ଭଗବାନ ଆସି ଖାଆନ୍ତୁ ।

ଏବେ ଦେଖନ୍ତୁ, ଲୋକମାନେ ଭଗବାନଙ୍କୁ ଚୋର କହୁଛନ୍ତି, ମାଖନ୍ ଚୋର କହୁଛନ୍ତି । ଆରେ ! ଚୋର କିଏ ? ଆମେ ପ୍ରଥମେ ମଧ୍ୟ ଦେଖିଛନ୍ତି ଯେ ଏହି ସମ୍ପୂର୍ଣ୍ଣ ବିଶ୍ୱ ତାଙ୍କର ଅଟେନ୍ତେ ସେ କାହାର ଚୋର ? ବାସ୍ତବରେ ଆମେ ସବୁ ହେଉଛୁ ଚୋର ।

ଆମେ ସବୁ ତାଙ୍କର ନେଇଯାଇଛୁ ଏବଂ ଜବରଦସ୍ତି ମୋର ମୋର ବୋଲି କହି ଚାଲିଛୁ। ଏହି ମାଖନ ଚୋରୀ କଅଣ ? ମାଖନ ଚୋରୀର ମଧ୍ୟ ଗୋଟିଏ ଦୁଇଟି ବିଶେଷ ଅର୍ଥ ଅଛି ।

୧. ଦେଖନ୍ତୁ, ମାଖନର ଅର୍ଥ କଅଣ ? ଦୁଧର ସାର ଅଟେ । ତେବେ ଭଗବାନ ସାରଗ୍ରାହୀ ଅଟନ୍ତି । ସେ ମାଖନ ନେଇ ଯାଆନ୍ତି । ତାର ଅର୍ଥ ହେଉଛି, ଆମେ ଯାହା କିଛି କର୍ମ କରିଛନ୍ତି - ଛୋଟ ହେଉ ବା ବଡ଼ ହେଉ, ସେ ତାକୁ ଦେଖନ୍ତି ନାହିଁ, ସେଥିରେ ଯାହା ସାର ଅଛି, ତାକୁ ସେ ତାକୁ ନେଇ ଯାଆନ୍ତି । ଗୋପୀମାନେ ବହୁତ (ଶୁଦ୍ଧ) ଭାବର ସହିତ ମାଖନ ବନେଇଛନ୍ତି । ଭଗବାନ ସେହି ଭାବକୁ ଗ୍ରହଣ କରନ୍ତି। ଭଗବାନ ଆମର ଶୁଦ୍ଧ ଭାବକୁ, ପ୍ରେମକୁ, ଭକ୍ତିକୁ ଗ୍ରହଣ କରନ୍ତି ।

୨. ଦ୍ୱିତୀୟ କଥା ହେଉଛି, ଗାଈର ଦୁଧକୁ ଦୋହନ କଲେ, ତାକୁ ଗରମ କଲେ, ଦହି ତିଆରି କଲେ, ମନ୍ଥନ କଲେ, ସେଇଥିରୁ ମାଖନ ବାହାର କଲେ । ତା' ପରେ ଗୋପୀମାନେ କଅଣ କରୁଥିଲେ । ସେମାନେ ତାକୁ ରଖି ଦେଉଥିଲେ । ଏତେ ସବୁ କର୍ମ କଲେ ଏବଂ ତାକୁ ରଖିଦେଲେ । ଏହି ପ୍ରକାର, ଆମେ ମଧ୍ୟ ବହୁତ କିଛି କର୍ମ କରୁଛୁ, ପୁଣି କର୍ମ'ଳକୁ ଭୋଗ କରୁନ୍ତ ତେବେ କର୍ମ ତଥା ଭୋଗର ଯେଉଁ ବାସନା ସବୁ ହୋଇଥାଏ, ତାକୁ ଆମେ ଏକାଠି କରି ଚାଲିଥାଉ । ଏତେ ସବୁ କର୍ମ କରିବା ପରେ କଣ ଲାଭ ହୁଏ ? ବାସନାମାନଙ୍କର ସଂଗ୍ରହ - ବାସ୍ ଏହି ଲାଭ ହୋଇଥାଏ । ଆମେ ତାକୁ ତ୍ୟାଗ କରିବାକୁ (ଅର୍ଥାତ ମଖନ ଦେବା ନିମନ୍ତେ) ପ୍ରସ୍ତୁତ ହେଉ ନାହିଁ । ଭଗବାନ କହୁଛନ୍ତି - ଏହା ସବୁ ଯାହା ତୁମ୍ଭେମାନେ ସଂଗ୍ରହ କରି ରଖିଛ, (ବାସନାଗୁଡ଼ିକ) ତାକୁ ମୋତେ ଦେଇଦିଅ, ଅନ୍ୟଥା ମୁଁ ନିଜେ ନେଇଯିବି ।

ଏହିଭଳି ଭାବରେ ଭଗବାନଙ୍କୁ ଆପଣ ପ୍ରେମ କରିବେ ନାହିଁ ତ କାହାକୁ କରିବେ ? କୌଣସି ସ୍ତ୍ରୀଠାରେ, କୌଣସି ପୁରୁଷଠାରେ, କୁକୁରକୁ ଅଥବା ବିଲେଇକୁ। ଲୋକମାନେ କିପରି ମୂଢ଼ ହୋଇଗଲେଣି ? ଯେଉଁ ଭଗବାନ ନିଜ ହାତରେ ଆମର ବାସନାକୁ ଉଡ଼ାଇ ନେଇଯାଆନ୍ତି, ଆମକୁ ମୁକ୍ତ କରିଦିଅନ୍ତି, ତାଙ୍କୁ ଆମେ ମାଖନ ଚୋର କହିଥାଉ । ଆରେ ! ସେ ତ ଆପଣମାନଙ୍କୁ ମୁକ୍ତ କରୁଛନ୍ତି ।

ଏହିପରି ଭାବରେ ମାଖନ ଚୋରର ଗୋଟିଏ ଅର୍ଥ ହେଉଛି ଯେ, ଭଗବାନ ଭାବକୁ ଗ୍ରହଣ କରିବାବାଲା ଅଟନ୍ତି । ଦ୍ୱିତୀୟ ଅର୍ଥ ହେଉଛି - ସେ ଆମର ସମସ୍ତ ବାସନାଠାରୁ ଆମକୁ ମୁକ୍ତ କରି ଦେଉଛନ୍ତି । ତୃତୀୟ ଅର୍ଥ ହେଉଛି - ସେ କୌଣସି

ଦୁଧ, ଦହିକୁ କଣ ଚୋରି କରନ୍ତି, ସେ ତ ଲୋକମାନଙ୍କର ମନକୁ ଚୋରୀ କରି ନେଇଯିବା ବାଲା ଭଗବାନ ଅଟନ୍ତି । ସମସ୍ତ ଗୋପୀମାନଙ୍କୁ ଲାଗୁଥିଲା ଯେ ଭଗବାନ ଆମ ଘରକୁ ଆସନ୍ତୁ ଏବଂ ଚୋରୀ କରି ମାଖନ ନେଇ ଯାଆନ୍ତୁ । ଭଗବାନ ସେମାନଙ୍କର ଇଚ୍ଛା ପୂରଣ କରୁଥିଲେ ।

**ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂସ୍ତଥୈବ ଭଜାମ୍ୟହମ । (ଭ.ଗୀତା.୪.୧୧)**

ଭଗବାନ ଗୀତାରେ କହି ରଖିଛନ୍ତି, ଯେ ଯେଉଁ ଭାବରେ ମୋତେ ଭଜନ କରେ, ତାକୁ ସେହି ରୂପରେ ମୁଁ ପ୍ରାପ୍ତ ହୁଏ । ଆଉ ଗୋଟିଏ କଥା ହେଉଛି ଯେ ଭଗବାନ ଶ୍ରୀକୃଷ୍ଣ ଗୋକୁଳରେ ଗୋଟିଏ ଚୋର ମଣ୍ଡଳୀ ଗଠନ କରିଥିଲେ, ସେ ସେଥିରେ ନେତା ଥିଲେ । ସେହି ଚୋର ମଣ୍ଡଳୀରେ କିଏ-କିଏ ଥିଲେ ? ଗୋକୁଳରେ ଯେତେ ଘର ଥିଲା, ସେଥିରୁ ପ୍ରତ୍ୟେକ ଘରୁ ଜଣେ ଜଣେ ପ୍ରତିନିଧି ଥିଲେ । ପ୍ରତ୍ୟେକ ଘରୁ ଜଣେ ଜଣେ ବାଳକ ସେହି ଚୋର ମଣ୍ଡଳୀରେ ଥିଲେ । ଏବେ କୁହନ୍ତୁ, ଯେଉଁ ଘରୁ ଚୋରୀ କରିବାକୁ ଯାଉଛନ୍ତି, ସେହି ଘରର ପିଲାଟି ମଧ୍ୟ ସାଥିରେ ଥିବ, ତେବେ ତାହା କିପରି ଚୋରୀ ହେଲା ? ବିଚାର କରନ୍ତୁ, ସେମାନେ ଯେତେବେଳେ ସମସ୍ତେ କୌଣସି ଯୋଜନା କରନ୍ତି, ସେତେବେଳେ କେହି କେହି କହୁଥିଲେ - ଆଜି ଆମ ଘରକୁ ଚାଲନ୍ତୁ । ଏହିପରି ଭାବରେ ଏମାନେ ସବୁ ଯାଉଥିଲେ, କିନ୍ତୁ ସବୁ ଗୋପୀମାନେ ଯାଇ ଯଶୋଦା ମା'ଙ୍କୁ ମିଛଟାରେ ଅଭିଯୋଗ କରୁଥିଲେ । ପ୍ରକୃତରେ ସେମାନେ ସେଇ ବାହାନରେ ଭଗବାନଙ୍କୁ ଦେଖିବାକୁ ଯାଉଥିଲେ, ସେମାନେ ଭାବୁଥିଲେ ଯେ ଯଦି ଆମେ ଅଭିଯୋଗ କରିବୁ ତ ଯଶୋଦା ଜୀ ତାଙ୍କ ପ୍ରତି କ୍ରୋଧ କରିବେ, ତେବେ ସେ ଡରିଯାଇ କିପରି ଠିଆ ହେଉଛନ୍ତି ସେ ସବୁ ଆମ୍ଭେମାନେ ଦେଖିବୁ । ଏ ଭଗବାନ ଏପରି ଅଟନ୍ତି ।

ଭଗବାନଙ୍କୁ ଦୁଧ ଏତେ ଭଲ ଲାଗୁ ନ ଥିଲା ତାଙ୍କୁ ମାଖନ ବହୁତ ଭଲ ଲାଗୁଥିଲା । କିନ୍ତୁ ଯଶୋଦା ମା' ତାଙ୍କୁ ଦୁଧ ପିଇବାକୁ କହୁଥିଲେ । ଆଜି କାଲିର ପିଲାମାନଙ୍କୁ ମଧ୍ୟ ଦୁଧ ଭଲ ଲାଗୁନାହିଁ । ତେବେ କୌଣସି ଦିନ ଯଦି ମା' କହିଲେ - ହେ କାହ୍ନା ତୁ ଆଜି ଦୁଧ ପିଇ ଦେ, ତେବେ ଶ୍ରୀକୃଷ୍ଣ କହନ୍ତି - କାହିଁକି ପିଇବି ? ମା' କହୁଛନ୍ତି - ଦୁଧ ପିଇବୁ ତ ତୋର ଚୁଟୀ ବଢ଼ିବ । ତୋ ଚୁଟୀ ଛୋଟ ଅଛି ତ, ତାହା ନାଗୁଣୀ ଭଳି ବଢ଼ିଯିବ । ଏବେ ଚୁଟୀ ବଢ଼ାଇବା ନିମନ୍ତେ ଭଗବାନ ଦୁଧ ପିଇବାକୁ ଲାଗିଲେ, କିନ୍ତୁ ସବୁ ଦିନ ଦେଖୁଛନ୍ତି ହେଲେ ଚୁଟୀ ବଢୁ ହିଁ ନାହିଁ । ଏବେ କଥା ହେଉଛି

ସେ ଦୁଧ ପିଇବା ଛାଡ଼ିବାକୁ ଚାହୁଁଛନ୍ତି । ତେଣୁ ସେ ବାହାନା କଲେ ଯେ ଆପଣ କହିଛନ୍ତି ଦୁଧ ପିଇବା ଦ୍ୱାରା ଚୁଟୀ ବଢ଼ିବ, କିନ୍ତୁ ତାହା ଅଧିକ ତ ବଢୁ ନାହିଁ, ସେଥିପାଇଁ ମୁଁ ଦୁଧ ପିଇବି ନାହିଁ । ଭଗବାନ ମା'ଙ୍କୁ କହୁଛନ୍ତି -

ମୈୟା କବହିଁ ବଢ଼େଗୀ ଚେଟୀ ?

କିତୀ ବାର ମୋହିଂ ଦୂଧ ପିୟତ ଭଇ, ୟହ ଅଜହୂଁ ହୈ ଛୋଟୀ ।

କେବେଠାରୁ ମୁଁ ଦୁଧ ପିଇ ଚାଲିଛି, କିନ୍ତୁ ଏ ଚୁଟୀ ଯେଉଁ ଛୋଟକୁ ସେଇ ଛୋଟ ହିଁ ଅଛି । ଏ ତ ବଢୁ ନାହିଁ ।

କା ଚୌ ଦୁଧ ପିୟାବତ ପଚି ପଚି, ଦେତି ନ ମାଖନ ରୋଟୀ ।

ଦୁଧ ପିଇ ପିଇ ମୁଁ ଥକି ଗଲିଣି । ମୁଁ ଯେଉଁ ମାଖନ ରୋଟି ମାଗୁଛି ତା ତ ତୁ ଦେଉ ନାହୁଁ । ଏପରି ଭାବରେ ପୂର୍ଣ୍ଣ ଏହା ସୁରଦାସଙ୍କ ସୁନ୍ଦର ପଦ ଅଟେ ।

## ମୃତ୍ତିକାଭକ୍ଷଣ-ଲୀଳା

ଦିନେ ମାଖନ ଖାଇବା ପରେ ଭଗବାନ ମାଟି ଖାଇଦେଲେ । ସେ ମାଟିରେ ତ ବହୁତ ଗଡୁଥିଲେ, ଆଜି ସେ ମାଟିକୁ ଖାଇ ମଧ୍ୟ ଦେଲେ । ତାଙ୍କର ସାଙ୍ଗ ସାଥି ଯେଉଁ ଗୋପାଳ ବାଳକ ଥିଲେ, ସେମାନେ ଯାଇ ମା'ଙ୍କୁ କହିଦେଲେ । ଏବେ ମା' ଡରି ଯାଇଥିବା କୃଷ୍ଣଙ୍କର ହାତକୁ ଧରି ନେଲେ ଏବଂ ରାଗିଯାଇ କହୁଛନ୍ତି - "ଭବାନ' (ଆପଣ) ଆପଣ ମାଟି କାହିଁକି ଖାଉଛନ୍ତି ? ତୁ ମାଟି କାହିଁକି ଖାଇଛୁ - ଏପରି କହୁ ନାହାନ୍ତି । ଛୋଟ ପିଲାଟିକୁ ଆପଣ କହୁଛନ୍ତି । ଘରେ ମଧ୍ୟ ଯେତେବେଳେ ବଡ଼ମାନେ ରାଗି ଯାଆନ୍ତି ତ ସାନମାନଙ୍କୁ ଏପରି ସମ୍ବୋଧିତ କରନ୍ତି । ଭଗବାନ କହିଲେ - **"ନାହଂ ଭକ୍ଷିତବାନ ଅମ୍ବ"** ମା ମୁଁ ମାଟି ଖାଇ ନାହିଁ । ମା' କହିଲେ ତୋର ସମସ୍ତ ସାଥିମାନେ କହୁଛନ୍ତି, କେବଳ ସେମାନେ ନୁହଁନ୍ତି, ତୋର ବଡ଼ ଭାଇ ବଳରାମ ମଧ୍ୟ ସେଇ କଥା କହୁଛି । ତେବେ ଭଗବାନ କହୁଛନ୍ତି - **"ସର୍ବେ ମିଥ୍ୟାଭିଶଂସନିଃ"** ସମସ୍ତେ ମିଥ୍ୟା କହୁଛନ୍ତି । ମୁଁ କେଉଁଠି ମାଟି ଖାଉଛି ? ମା' କହିଲେ ସମସ୍ତେ ମିଥ୍ୟାବାଦୀ ଅଟନ୍ତି, ବାସ୍ ! ତୁ ହିଁ ଜଣେ ସତ୍ୟବାଦୀ ଏଠାରେ ?

**ଯଦି ସତ୍ୟଗିରସ୍ତର୍ହି ସମକ୍ଷଂ ପଶ୍ୟ ମେ ମୁଖମ୍ ॥ (୧୦.୮.୩୫)**

ଭଗବାନ କହୁଛନ୍ତି - ଯଦି ତୁମକୁ ଏପରି ଲାଗୁଛି ଯେ ମୁଁ ମିଥ୍ୟା କହୁଛି ତେବେ ନିଜେ ଦେଖି ନିଅ । ପ୍ରତ୍ୟକ୍ଷଠାରୁ ଅଧିକ କିଛି ପ୍ରମାଣ ଅଛି କି ? କିଏ ଦେଖିଥିବା କଥା ଉପରେ ହିଁ ବିଶ୍ୱାସ କରାଯାଏ । ମା' କହିଲେ ଯଦି ଏପରି କଥା ତେବେ ମୁହଁ ଖୋଲିକରି ଦେଖାଇ ଦେ । ସେତେବେଳେ ଭଗବାନ ମୁହଁ ଖୋଲି ଦେଲେ ତ ମା'ଙ୍କୁ ଆକାଶ ଆଦି ପଞ୍ଚମହାଭୂତ, ସମସ୍ତ ଦିଗ, ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ନକ୍ଷତ୍ର, ଜ୍ୟୋତିର୍ମଣ୍ଡ, ପଞ୍ଚତନ୍ମାତ୍ରା, ଜୀବ, ସେମାନଙ୍କର କର୍ମ, ସ୍ୱଭାବ ଆଦି ସମଗ୍ର ବିଚିତ୍ର ସଂସାର, ବ୍ରଜଭୂମି ସମେତ ସମସ୍ତ ବ୍ରହ୍ମାଣ୍ଡ ଦେଖାଗଲା । ମା' ବ୍ରଜଭୂମିରେ ନିଜକୁ ମଧ୍ୟ ଦେଖି । ପୂର୍ବଥର ଯେତେବେଳେ ମା ନିଜ ପିଲାର ମୁହଁରେ ସମଗ୍ର ବିଶ୍ୱ ଦେଖିଲେ ତ ଆଖି ବନ୍ଦ କରି ଦେଇଥିଲେ । ଏଥର ସେ ଆଖି ବନ୍ଦ ନ କରି ବିଚାର କରିବାକୁ ଲାଗିଲେ, ଚିନ୍ତନ କରିବାକୁ ଲାଗିଲେ ।

**କିଂ ସ୍ୱପ୍ନ ଏତଦୁତ ଦେବମାୟା**
**କିଂ ବା ମଦୀୟୋ ବତ ବୁଦ୍ଧିମୋହଃ ॥ (୧୦.୮.୪୦)**

କ'ଣ ଏହା ସ୍ୱପ୍ନ ନା ଭଗବାନଙ୍କର ମାୟା ? ମୋର ବୁଦ୍ଧିର କଣ ଏ ଭ୍ରମ ଅଥବା ପୁଣି ମୋ ବାଳକର କୌଣସି ଯୋଗସିଦ୍ଧି ତ ନୁହେଁ ? ଏଥର ସେ ଏପରି ବିଚାର କରିବାକୁ ଲାଗିଲେ ଯେ ଭଗବାନଙ୍କୁ ଲାଗିଲା - ଏହା ଠିକ ନୁହେଁ । କାରଣ ଯଦି କେହି ମାୟା ବିଷୟରେ ବିଚାର କରେ ତ ମାୟା ଉଭାନ ହୋଇଯାଏ । ମା' ଯଦି ଏପରି ବିଚାର କରେ ତ ମୋର ସ୍ୱରୂପକୁ ବୁଝିଯିବ ଏବଂ ବୁଝିଗଲା ପରେ ମୋର ବାଳ-ଲୀଳା କିପରି ହେବ ? ତା ହେଲେ ସେ ମୋତେ ପୂଜା କରିବାକୁ ଲାଗିବ ।

**ବୈଷ୍ଣବୀଂ ବ୍ୟତନୋନ୍ ମାୟାଂ ପୁତ୍ର ସ୍ନେହମୟୀଂ ବିଭୁଃ ॥ (୧୦.୮.୪୩)**

ସେଥିପାଇଁ ଭଗବାନ ପୁତ୍ର ସ୍ନେହମୟୀ ନିଜର ବୈଷ୍ଣବୀ ମାୟାର ବିସ୍ତାର କରିଦେଲେ । ଦେଖନ୍ତୁ, ଆମେ ପ୍ରଥମରୁ ଦେଖିଛନ୍ତି ଯେ ଭଗବାନଙ୍କର ମାୟା ଦୁଇ ପ୍ରକାରର ହୋଇଥାଏ । ଗୋଟିଏ ହେଉଛି ନିଜର ଭକ୍ତକୁ ମୋହିତ କରୁଥିବା (ସ୍ୱଜନମୋହିନୀ) ଏବଂ ଅନ୍ୟଟି ଅଭକ୍ତମାନଙ୍କୁ ମୋହିତ କରୁଥିବା (ବିମୁଖ ଜନ ମୋହିନୀ) । ଏଠାରେ ଭଗବାନ ଚାହୁଁଛନ୍ତି ଯେ ମା'ଙ୍କର ପୁତ୍ର ପ୍ରେମ ବଢୁ, ଯଦ୍ୱାରା ତାଙ୍କର ଲୀଳା ସୁଗମ ହେବ । ପରନ୍ତୁ ଯଶୋଦା ଜୀ ଭଗବାନଙ୍କୁ ଚିହ୍ନିବାକୁ ଲାଗିଲେଣି,

ଦୃଶ୍ୟ ଉଭେଇ ଯାଇଥିଲା ସେଥିପାଇଁ ଭଗବାନ ମାୟାକୁ ବଢ଼ାଇ ଦେଲେ । ଏହାର ଅର୍ଥ ହେଉଛି ଆପଣ ଆଖି ଖୋଲି ମାୟାକୁ ବିଚାର କରିବାକୁ ଲାଗିବେ ତ, ସବୁକିଛି ଶୂନ୍ୟ ହୋଇଯିବ । ତେବେ ଏଠାରେ ଭଗବାନ ମାୟାକୁ ବଢ଼ାଇ ଦେଲେ । ଯଶୋଦା ମା' ସବୁକିଛି ଭୁଲିଗଲେ ଏବଂ ନିଜ ପିଲାକୁ କୋଳରେ ଧରି ପ୍ରେମ କରିବାକୁ ଆରମ୍ଭ କଲେ ।

ଦେଖନ୍ତୁ, ଭଗବାନ ମାଟି କାହିଁକି ଖାଇଲେ ? ପୂର୍ବରୁ ଆମେ ଦେଖିଲେ ଭଗବାନ ଆଖି କାହିଁକି ବନ୍ଦ କଲେ ? ଏବେ ମାଟି କାହିଁକି ଖାଇଲେ, ତା ଉପରେ ବିଚାର କରିବା ।

ଏତିକି ତ ସମସ୍ତେ ଜାଣିଛନ୍ତି ଯେ ବାସନାର ଦୁଧ ବା ମଖନ ରଖିଲେ, ପରେ ତାକୁ ମାଟିରେ ସଫା କରିବାକୁ ପଡ଼ିଥାଏ । ଏହି କାର୍ଯ୍ୟ ଭଗବାନ ପ୍ରତିଦିନ ଦେଖୁଥିଲେ । କହିଲେ ମୁଁ ପ୍ରଥମେ ମାଖନ ଖାଇଥିଲି, ଏବେ ମୁହଁ ସଫା କରିବା ପାଇଁ ମାଟି ଖାଉଛି । ଏପରି ବିଚାର କରି ଭଗବାନ ମାଟି ଖାଇଲେ ।

ଦ୍ୱିତୀୟ କଥା ହେଉଛି, ମାଟିକୁ "ରଜ ମଧ କହନ୍ତି । "ରଜ'ର ଅର୍ଥ ଏପରି ତ ଧୂଳି ହୋଇଥାଏ, କିନ୍ତୁ ରଜର ଦ୍ୱିତୀୟ ଅର୍ଥ ରଜଗୁଣ ମଧ ହୋଇଥାଏ । ଭଗବାନ କହୁଛନ୍ତି ମୁଁ ତ ସତ୍ତ୍ୱଗୁଣୀ ଅଟେ, କିନ୍ତୁ ମୋତେ ଏବେ ଅସୁରମାନଙ୍କୁ ମାରିବା କାର୍ଯ୍ୟ କରିବାକୁ ହେବ । ଶାନ୍ତ ରହି, ସତ୍ତ୍ୱଗୁଣରେ ସ୍ଥିତ ହୋଇ ମାରିବା କାର୍ଯ୍ୟ ହୋଇପାରିବ ନାହିଁ । ଆଗକୁ ମୋତେ ମାରିବା କାର୍ଯ୍ୟ କରିବାକୁ ଅଛି, ସେଥିପାଇଁ ମୁଁ ଧୂଳିଖାଇ ରଜୋଗୁଣକୁ ବଢ଼ାଉଛି । ଦେଖନ୍ତୁ, ଆମ ସମସ୍ତଙ୍କୁ ସତ୍ତ୍ୱଗୁଣ ବଢ଼ାଇବାର ଆବଶ୍ୟକତା ଅଛି । ପରନ୍ତୁ ଭଗବାନଙ୍କୁ ରଜ ଗୁଣ ବଢ଼ାଇବାର ଆବଶ୍ୟକତା ଅଛି, କାରଣ ତାଙ୍କୁ କ୍ରିୟା ବଢ଼ାଇବା ଅଛି । ସେଥିପାଇଁ ସେ ମାଟି ଖାଇଲେ ।

ଭଗବାନ ବିଚାର କଲେ ମୋ ଚରଣରେ ଧୂଳିକୁ ସମସ୍ତେ ପ୍ରଶଂସା କରୁଛନ୍ତି । କହନ୍ତି, ଏହା ହେଉଛି ବ୍ରଜ ଭୂମି, ଭଗବାନ ଏଠାରେ ଖାଲି ପାଦରେ ଚାଲିଛନ୍ତି, ତେଣୁ ଏହା ତାଙ୍କ ଚରଣର ଧୂଳି ଅଟେ । ଏବେ ଏହା ମୋତେ କିପରି ମିଳିବ ? ଏହାର ସ୍ୱାଦ କିପରି ମୁଁ ଥରେ ଚାଖି ନିଏ । ଏହିପରି ତୃତୀୟ କଥା ହେଲା ଯେ, ସମସ୍ତ ଭକ୍ତ ପ୍ରଶଂସା କରୁଛନ୍ତି, ସେଥିପାଇଁ ନିଜେ ତାର ସ୍ୱାଦ ଚାଖିବା ନିମନ୍ତେ ମାଟି ଖାଇଲେ ।

ପୁନଶ୍ଚ, ଭଗବାନଙ୍କ ପେଟରେ ସମସ୍ତ ବ୍ରହ୍ମାଣ୍ଡ ଅଛି । ସମସ୍ତ ଜୀବ ମଧ ସେହିଠାରେ ଅଛନ୍ତି । ସେହି ସମସ୍ତ ଜୀବ ବିଚାର କରୁଛନ୍ତି - ଏହି ବ୍ରଜ ଭୂମିର ଧୂଳି

ସେଠାରେ ଲୋକମାନଙ୍କୁ ତ ମିଳୁଛି, ପରନ୍ତୁ ଆମକୁ କିପରି ମିଳିବ ? ଭଗବାନ କହିଲେ - ଏପରି କଥା ଯଦି ମୁଁ ଅଳ୍ପ ଟିକେ ଖାଇ ଦିଏ, ତୁମ ସମସ୍ତଙ୍କୁ ମିଳିଯିବ । ସମସ୍ତଙ୍କୁ ଖୁଆଇବା ନିମନ୍ତେ ଭଗବାନ ଅଳ୍ପ କିଛି ଖାଇ ଦେଲେ ।

ପୃଥ୍ୱୀର ଗୋଟିଏ ନାମ ହେଉଛି "କ୍ଷମା' । ଭଗବାନଙ୍କୁ ଲାଗିଲା, ଏବେ ବଡ଼ ହୋଇ ମୋତେ ବାଳ ଗୋପାଳମାନଙ୍କ ସହିତ ଲୀଳା କରିବାକୁ ହେବ । ଆମେ ସବୁ ଖେଳିବୁ । ତାଙ୍କୁ ତ ଜଣାପଡ଼ିବ ନାହିଁ ଯେ ମୁଁ କିଏ ? ସେଥିପାଇଁ ମୋର ଶ୍ରେଷ୍ଠତାର ଧ୍ୟାନ ମଧ୍ୟ ରହିବ ନାହିଁ । କେହି ମୋତେ ମାଡ଼ଦେବ, ପିଟିବ, ଗାଳିଦେବ, ମୋ ପ୍ରତି କୌଣସି ଅପରାଧ ମଧ୍ୟ କରିପାରେ । ସେତେବେଳେ ମୋତେ ସେମାନଙ୍କୁ କ୍ଷମା କରିବା ଉଚିତ ହେବ । ସେମାନେ ସମସ୍ତେ ମୋ ସହିତ ଯେପରି ବ୍ୟବହାର କଲେ ମଧ୍ୟ ସେମାନଙ୍କୁ କ୍ଷମା କରିବାର ଶକ୍ତି ମୋ ଠାରେ ହେବା ଉଚିତ୍ । ସେଥିପାଇଁ ପୃଥ୍ୱୀର କିଛି ଅଂଶ ଖାଇ ମୁଁ କ୍ଷମାଗୁଣକୁ ଧାରଣ କରିବି, ଯଦ୍ଦ୍ୱାରା କେହି ଯଦି କିଛି ଅନୁଚିତ କାର୍ଯ୍ୟ କରେ, ତେବେ ମୁଁ ତାକୁ କ୍ଷମା କରିପାରିବି । ସେଥିପାଇଁ ଭଗବାନ ସମସ୍ତଙ୍କୁ କ୍ଷମା କରିଥାଆନ୍ତି ।

ଅଥବା ପୁଣି, ଛୋଟ ପିଲାମାନେ ମାଟି ଖାଆନ୍ତି, ତେବେ କଥା ଶେଷ । ଏତେ କାରଣ ମୀମାଂସା କରିବାର ଆବଶ୍ୟକତା କ'ଣ ? କାହିଁକି ଖାଇଲେ ? ତାଙ୍କର ମନ ହେଲା ତ ଖାଇଲେ, ତୁମେ କିଏ ତାଙ୍କୁ କରିବାକୁ ? ସିଧା କଥା ହେଉଛି ଏହି ଲୀଳା ବାଳ ସୁଲଭ ଅଟେ । ସମସ୍ତ ପିଲା ମାଟି ଖାଆନ୍ତି । ଭଗବାନ କହିଲେ - ସବୁ ପିଲା ଖାଆନ୍ତି, ତେବେ ମୁଁ କାହିଁକି ନ ଖାଇବି ? ସେମାନେ ମଧ୍ୟ ଖାଇଦେଲେ ତ, ସେଥିରେ ତର୍କ-ବିତର୍କ କରିବାର କଣ ଆବଶ୍ୟକ ?

ଦେଖନ୍ତୁ, ଏଠାରେ ଯାହା କୁହାଯାଉଛି, ତାର ପ୍ରୟୋଜନ କେବଳ ଏତିକି ଯେ ଆମର ହୃଦୟରେ ଭକ୍ତିର ଭାବ ବୃଦ୍ଧି ହେଉ । ଭଗବାନ ନିଜର ଛୋଟ ଛୋଟ ଆଖି ଖୋଲିଲେ ତ କାହିଁକି ଖୋଲିଲେ, ଆଖି ବନ୍ଦ କଲେ ତ କାହିଁକି କଲେ, ମାଟି ଖାଇଲେ ତ କାହିଁକି ଖାଇଲେ, କେତେବେଳେ ଖାଇଲେ ନାହିଁ ତ, କାହିଁକି ଖାଇଲେ ନାହିଁ ? ଏହି ସବୁ କଥା ଉପରେ ଯାହା ଯାହା ମଧ୍ୟ ବିଚାର କରାଗଲା, ତାହା ସବୁ ଭଗବାନଙ୍କ ଲୀଳାର ରସ ସ୍ୱାଦନ କରିବା ନିମନ୍ତେ ହିଁ କରାଗଲା । ଏହା ହେଉଛି "ମୃଦ୍‌ଭକ୍ଷଣ-ଲୀଳା' । ଏହିପରି ଭଗବାନ ଲୀଳା କରି ଗୋକୁଳରେ ସମସ୍ତଙ୍କୁ ଆନନ୍ଦ ଦେଉଛନ୍ତି ।

ରାଜା ପରୀକ୍ଷିତ ପଚାରିଲେ- **"ନନ୍ଦଃ କିମକରୋଦ୍ ବ୍ରହ୍ମନ"** ନନ୍ଦ ଏବଂ ଯଶୋଦା ଏପରି କଣ ପୁଣ୍ୟ କରିଥିଲେ, ଯେ ଦେବକୀ ଏବଂ ବସୁଦେବଙ୍କର ପୁତ୍ର ହେଲେ ମଧ୍ୟ, ଭଗବାନ ଶ୍ରୀକୃଷ୍ଣଙ୍କର ବାଲଲୀଳାର ସୁଖ ନନ୍ଦ - ଯଶୋଦାଙ୍କୁ ମିଳିଲା ? ସେମାନଙ୍କୁ ଏପରି ସୌଭାଗ୍ୟ କିପରି ପ୍ରାପ୍ତ ହେଲା ? ଶ୍ରୀ ଶୁକଦେବ ଜୀ କହୁଛନ୍ତି - ନନ୍ଦବାବା ପ୍ରଥମେ ବସୁପ୍ରବର ଦ୍ରୋଣ ଥିଲେ ଓ ଧରା ତାଙ୍କର ପତ୍ନୀ ଥିଲେ । ସେତେବେଳେ ସେ ବ୍ରହ୍ମାଜୀଙ୍କର ଆଶୀର୍ବାଦ ପ୍ରାପ୍ତ କରିଥିଲେ ବର୍ତ୍ତମାନ ଜନ୍ମରେ ଏହି ସୌଭାଗ୍ୟକୁ ପ୍ରାପ୍ତ କରିବା ନିମନ୍ତେ । ଦେବକୀ ଓ ବସୁଦେବଙ୍କର ସାଧନା ଶ୍ରେଷ୍ଠ ଥିଲା, ତେଣୁ ସେମାନଙ୍କୁ ଭଗବାନଙ୍କର ପ୍ରାପ୍ତି ହେଲା । ପରନ୍ତୁ ଯଶୋଦାଜୀଙ୍କୁ ଜଣା ମଧ୍ୟ ପଡ଼ିଲା ନାହିଁ ଯେ ଭଗବାନ ସେଠାକୁ କେବେ ଆସିଲେ । ଏବେ ଏଠାରେ ଦେଖନ୍ତୁ, ଦେବକୀ ସାଧନ ସମ୍ପନ୍ନ ଅଟନ୍ତି, ଯଶୋଦା ଜୀ ସାଧନ ହୀନ ଏବଂ ପୁତନା ହେଉଛି କୁସାଧନ ସମ୍ପନ୍ନ, ଭଗବାନ ଏଠାରେ ତିନିଜଣଙ୍କ ନିମନ୍ତେ କଲ୍ୟାଣର ମାର୍ଗ ଦେଉଛନ୍ତି। କଥା ହେଉଛି ଯେ ଭଗବାନ ସମସ୍ତଙ୍କର କଲ୍ୟାଣ କରନ୍ତି, ଭଗବାନଙ୍କର ପ୍ରାପ୍ତି ସମସ୍ତଙ୍କୁ ହୋଇପାରିବ। ସେ ସାଧନ ସମ୍ପନ୍ନ ହେଉ ଅଥବା ସାଧନ ହୀନ ହେଉ ଅଥବା ପୁଣି ସେ କୁସାଧନରେ ରତ ହୋଇଥାଉ, କିଏ କିପରି ହୋଇଥିଲେ ମଧ୍ୟ, ଭଗବାନଙ୍କର କୃପା ତ ସମସ୍ତଙ୍କ ଉପରେ ହୋଇଥାଏ ।

## ଉଖଳ-ବନ୍ଧନ-ଲୀଳା

ଦିନକର ଘଟଣା, ଯଶୋଦା ମା ଶ୍ରୀକୃଷ୍ଣଙ୍କ ପାଇଁ ମାଖନ ବାହାର କରୁଥିଲେ । ଦେଖନ୍ତୁ, ଘରେ ଚାକର, ଚାକରାଣୀ କମ୍ ନ ଥିଲେ, କିନ୍ତୁ ଶ୍ରୀକୃଷ୍ଣଙ୍କର ସମସ୍ତ କାର୍ଯ୍ୟ ସେ ନିଜେ କରୁଥିଲେ । ଦଧୀମନ୍ଥନ କରୁ କରୁ ସେ ଥକି ପଡ଼ିଲେ । ତାଙ୍କର ବେଣୀରେ, ମାଳିନୀ ଦ୍ୱାରା ଗୁନ୍ଥାଯାଇଥିବା ଫୁଲ ଗୁନ୍ଥା ଯାଇଥିଲା ତାହା ତଳେ ପଡ଼ିଗଲା । ସେତିକି ବେଳକୁ ଭଗବାନ ସେଠାରେ ପହଞ୍ଚିଗଲେ । ତାଙ୍କୁ ମା'ର ସ୍ତନରୁ ଦୁଧ ପିଇବାକୁ ବହୁତ ଭଲ ଲାଗୁଥିଲା । ଯେତେବେଳେ ଦେଖିଲେ ସେତେବେଳେ ବାଳକୃଷ୍ଣ ମଥାନୀଟିକୁ ଧରି ମା'ଙ୍କୁ ମନ୍ଥନ କରିବାରୁ ଅଟକାଇ ଦେଲେ ଏବଂ ନିଜେ ନିଜେ ତାଙ୍କ କୋଳକୁ ଚଢ଼ିଗଲେ। ଏହା ଦେଖି ମା'ଙ୍କ ମନରେ ପ୍ରେମ ଜାଗ୍ରତ ହେଲା ଏବଂ ସେ ନିଜ ପିଲାଟିକୁ କ୍ଷୀର ପିଆଇବାକୁ ଲାଗିଲେ । ପୁଣି ସେତେବେଳେ କ'ଣ ହେଲା, ଜଣାଅଛି ? ସେଠାରେ ସାମ୍ନା ଚୁଲୀରେ ଦୁଧ ଗରମ ହେଉଥିଲା । ତାହା ଉତୁରି ପଡ଼ିଲା । ଦୁଧ ପିଉଥିବା ବାଳକୃଷ୍ଣଙ୍କର ମନ ସନ୍ତୁଷ୍ଟ ହୋଇ ନ ଥିଲା, କିନ୍ତୁ ମା'ଙ୍କର ଧ୍ୟାନ ସେହି ଦୁଧ

ଆଦ୍ରକ୍ସ ଲାଗିଥିଲା ତ ସେ ବାଳକୃଷ୍ଣଙ୍କୁ କୋଳରୁ ତଳକୁ ଉଠାଇ ଦେଲେ ଏବଂ ନିଜେ କ୍ଷୀରକୁ ବଞ୍ଚାଇବାକୁ ଚାଲିଗଲେ ।

ଏବେ ଭଗବାନ ଭାବିଲେ ମୁଁ ଏଠାରେ ବସିଛି ଏବଂ ଏ ସେହି କ୍ଷୀରକୁ ବଞ୍ଚାଇବା ପାଇଁ ନିଜେ ଚାଲିଗଲେ ।

ଭଗବାନଙ୍କୁ ଏବେ ବୋଧ ହେଉଛି ଯେ ମୁଁ ଏଠାରେ ବସିଛି । ଏ ସେହି କ୍ଷୀରକୁ ରକ୍ଷା କରିବାକୁ ମୋତେ ଛାଡ଼ି ଦେଇ ଚାଲିଗଲେ ? ଏପରି ବିଚାର କରି **"ସଞ୍ଜାତ କୋପଃ"** ତାଙ୍କୁ କ୍ରୋଧ ଆସିଲା । **"ସ୍ଫୁରିତାରୁଣାଧରଂ ସଂଦଶ୍ୟ ଦଦ୍ଭିର୍ଦଧିମନ୍ଥଭାଜନମ"** (୧୦.୯.୬) ଭଗବାନଙ୍କର ଦାନ୍ତ ଓଠକୁ କାମୁଡ଼ିବାକୁ ଲାଗିଲା, ପାଖରେ ପଡ଼ିଥିବା ବାଡ଼ିରେ ହାଣ୍ଡି ଭାଙ୍ଗି ସେ **"ଭିତ୍ତ୍ୱା ମୃଷାଶ୍ରୁଃ"** ମିଛରେ ଅଶ୍ରୁ ବୁହାଇବାକୁ ଲାଗିଲେ ।

କ୍ଷୀର ଗରମ ହେଉଥିଲା ତ ତାକୁ ରକ୍ଷା କରିବାକୁ ମା' ଉଠି ଯାଇଥିଲେ । କେହି ଜଣେ ବର୍ଣ୍ଣନ କରିଛନ୍ତି ଯେ ସେହି ଦୁଧ ସେଇଥିପାଇଁ ଗରମ ହେଉ ଥିଲା ତାକୁ ଲାଗୁଥିଲା ମୁଁ ମଧ୍ୟ ଭଗବାନଙ୍କୁ ପ୍ରାପ୍ତି କରିବି, ମୋର ମଧ୍ୟ ଭଗବାନଙ୍କ ମୁଖରେ ଟିକିଏ ସ୍ଥାନ ପାଇବାର ଅଛି । କିନ୍ତୁ ସେ ସମୟ ଶୀଘ୍ର ଆସୁ ନ ଥିଲା । କିନ୍ତୁ ସେ ସମୟ ଶୀଘ୍ର ଆସୁ ନ ଥିଲାନ୍ତ ତେଣୁ ସେ ଭାବିଲା ଏବେ ମୁଁ ଆତ୍ମହତ୍ୟା କରିବି । ସେଥିପାଇଁ କ୍ଷୀର ଉତୁରିବାକୁ ଲାଗିଲା ଏବଂ ତାହା ଅଗ୍ନିରେ ପଡ଼ିବାକୁ ଲାଗିଲା । ଏତିକିବେଳେ ମା' ସେଠାକୁ ଯାଇ ପହଞ୍ଚିଛନ୍ତି ଏବଂ ତାକୁ ବନ୍ଦ କରୁଛନ୍ତି । ସେତେବେଳେ କ୍ଷୀରକୁ ଖରାପ ଲାଗିଲା କାହିଁକି ନା ମୁଁ କିପରି ପାଗଳ ଯେ, କେବଳ ନିଜ ପାଇଁ ଭାବୁଛି । ଆତ୍ମହତ୍ୟା ଚିନ୍ତା କରି ମୁଁ ଭଗବାନଙ୍କର ଦୁଧ ପିଇବା ଛଡ଼ାଇ ଦେଲି । ଏପରି ଭାବି କ୍ଷୀର ପୁଣି ବସିଗଲା, କିନ୍ତୁ ସେତେବେଳକୁ କାମ ତ ବିଗିଡ଼ି ଯାଇଥିଲା ।

ଯଶୋଦା ଜୀ ଯେତେବେଳେ କ୍ଷୀରକୁ ରକ୍ଷା କରିବାକୁ ଗଲେ, ତ ଏ ପାଖେ ଶ୍ରୀକୃଷ୍ଣ ଭଙ୍ଗା-ରୁଜା କରିବାକୁ ଆରମ୍ଭ କରିଦେଲେ ପୁଣି ସେ ଓଲଟା ଉଖଳ ଉପରେ ଚଢ଼ିଗଲେ ଏବଂ ହାଣ୍ଡିରୁ ପୁରୁଣା ମାଖନକୁ ବାହାର କରି ନେଲେ । ସେଠାରେ ମାଙ୍କଡ଼ମାନଙ୍କର ସବୁବେଳେ ଭିଡ଼ ଲାଗି ରହୁଥିଲା । ବହୁତ ମାଙ୍କଡ଼ ଆସୁଥିଲେ, ଉଖଳ ଉପରେ ବସି ସେମାନଙ୍କୁ ମାଖନ ଖୁଆଉଥିଲେ । ମଝି ମଝିରେ ମଧ୍ୟ ପଛକୁ ରହିଁ ଟିକିଏ ଦେଖୁଥିଲେ । ମା' ଯେତେବେଳେ ସେଠାରୁ ଫେରିଲେ ଏବଂ ଭାଙ୍ଗି ଯାଇଥିବା ମାଟିର ପାତ୍ର ସବୁ ଦେଖିଲେ ତ ସେ ସବୁ ବୁଝିଗଲେ । ସେ ସବୁ ଚିନ୍ତା ତ ମା'ଙ୍କର ଏତେ ନ

ଥିଲା, କିନ୍ତୁ ସେ ଭାବିବାକୁ ଲାଗିଲେ ଯେ ଏ (ଶ୍ରୀକୃଷ୍ଣ) ଗଲା କୁଆଡ଼େ ? ପୁଣି ସେ ଦେଖିଲେ ଯେ ଏ ମହାରାଜ ଉଖଳ ଉପରେ ବସିଛନ୍ତି । କହିଲେ, ଆଜି ତ ତାକୁ ଧରି ବାନ୍ଧି ଦେବା ହିଁ ଉଚିତ, ଏବେ ଏ ତ ବହୁତ ଦୁଷ୍ଟାମି କରିବାକୁ ଲାଗିଲାଣି । ଯେମିତି ଶ୍ରୀକୃଷ୍ଣ ଦେଖିଲେ ଯେ ମା ଧରିବା ନିମନ୍ତେ ଆସୁଛନ୍ତି, ତ ସେ ଡରିଯାଇ ସେଠାରୁ ପଳାଇଗଲେ । ଦେଖନ୍ତୁ କି ଆଶ୍ଚର୍ଯ୍ୟ, ଯାହାର ଭୟରେ ମୃତ୍ୟୁ ମଧ୍ୟ ପଳାଇ ଯାଏ, ଏଠାରେ ମା'ଙ୍କ ଭୟରେ ଭଗବାନ ପଳାଇ ଯାଉଛନ୍ତି ।

**ଗୋପ୍ୟନ୍ୱଧାବନ୍ନ ଯମାପ ଯୋଗିନାଂ**

**କ୍ଷମଂ ପ୍ରବେଷ୍ଟୁଂ ତପସେରିତଂ ମନଃ ॥ (୧୦.୯.୯)**

ଆରେ ! କେତେ ତପସ୍ୟା କରି ମଧ୍ୟ ଋଷି, ମୁନି ଯାହାଙ୍କୁ ଧ୍ୟାନରେ ମଧ୍ୟ ପ୍ରାପ୍ତ କରିପାରନ୍ତି ନାହିଁ, ତାଙ୍କୁ ଧରିବା ନିମନ୍ତେ ଏଠାରେ ମା' ଦୌଡୁଛନ୍ତି । ଆଗେ ଆଗେ ଭଗବାନ ଦୌଡୁଛନ୍ତି ଏବଂ ମା' ତାଙ୍କ ପଛେ ପଛେ । ଯେତେବେଳେ ଭଗବାନ ଦେଖିଲେ ଯେ ମା' ଥକି ଗଲେଣି, ତେଣୁ ସେ ଭାବିଲେ ମା'ଙ୍କୁ ଅଧିକ ଥକାଇବା ଠିକ ହେବ ନାହିଁ । ଦେଖନ୍ତୁ, କିପରି ଦୟା ଅଛି, କିପରି କରୁଣା, ଭଗବାନ ନିଜେ ଧରାଦେଲେ ।

**ହସ୍ତେ ଗୃହୀତ୍ୱା ଭିଷୟନ୍ତ୍ୟବାଗୁରତ୍ ॥ (୧୦.୯.୧୧)**

ଯଶୋଦା ଜୀ ଧରିଲେ ଏବଂ ତାଙ୍କୁ ଅଙ୍ଗୁଳି ଦେଖାଇ କହିଲେ, " "ଆଜି ମୁଁ ତୋତେ ଏହି ଉଖଳରେ ବାନ୍ଧି ରଖିବି । ଏ ମଧ୍ୟ ଖଳ, ଦୁଷ୍ଟ ଅଟେ ଏବଂ ତୁ ମଧ୍ୟ ଦୁଷ୍ଟ ହୋଇଗଲୁଣି । ଦୁଷ୍ଟ ଏବଂ ଦୁଷ୍ଟ ସାଥି ହୋଇ ରହନ୍ତିନ୍ତ ତେଣୁ ଏବେ ମୁଁ ତୁମ ଦୁହିଁଙ୍କୁ ଏକାଠି କରି ଦେଉଛି ।

**ନ ଚାନ୍ତର୍ନ ବହିର୍ଯସ୍ୟ ନ ପୂର୍ବଂନାପି ଚାପରମ୍ ।**

**ପୂର୍ବାପରଂ ବହିଷ୍ଚାନ୍ତର୍ଜଗତୋ ଯୋ ଜଗଚ୍ଚ ଯଃ ॥ (୧୦.୯.୧୩)**

ଯିଏ ଜଗତର ଆଦି-ଅନ୍ତ ଅଟନ୍ତି, ଯେ ନିଜେ ଜଗତ ସୃଷ୍ଟି କରିଛନ୍ତି, ଯାହାର ଆଦି, ମଧ୍ୟ, ଅନ୍ତ, ବାହାର ଭିତରର କୌଣସି ସନ୍ଧାନ ମିଳିବା ସମ୍ଭବ ନୁହେଁ, ତାଙ୍କୁ ପୁଣି ବନ୍ଧା ହେବ ଏବଂ ତା ମଧ୍ୟ ଦଉଡ଼ିରେ । ଆଛା, ବାନ୍ଧ । "ଦାମ'ର ଅର୍ଥ ଦଉଡ଼ି, ଦଉଡ଼ି ଦ୍ୱାରା ଉଖଳରେ ତାଙ୍କୁ ବନ୍ଧାଯିବ । ଯେତେବେଳେ ଯଶୋଦା ଜୀ ବାନ୍ଧିବାକୁ ଲାଗିଲେ, ତ ପ୍ରତ୍ୟେକ ଥର କଣ ହେଉଛି ଯେ ସେହି ଦଉଡ଼ି ଦୁଇ ଆଙ୍ଗୁଳି କମ୍ ପଡ଼ି ଯାଉଛି ।

ଆଛା ? କିପରି ଆଶ୍ଚର୍ଯ୍ୟ ଦେଖନ୍ତୁ ! ବାମନ ଅବତାର ସମୟରେ ଭଗବାନ ବଡ଼ ବଡ଼ ହୋଇଯାଇଥିଲେ, କିନ୍ତୁ ଏଠାରେ ନା ଏ ବଡ଼ ହେଲେ ନା ଛୋଟ । ଯେମିତିକୁ ସେମିତି ଥିଲେ, ତଥାପି ମଧ୍ୟ ଦୁଇ ଆଙ୍ଗୁଳି ଦଉଡ଼ି କମ୍ ପଡୁଛି । କିପରି ବିଚିତ୍ର କଥା । ଯଶୋଦା ମା' ଖୋଜି କରି ଆଉ ଗୋଟିଏ ଦଉଡ଼ି ଆଣିଲେ ଏବଂ ତାକୁ ଯୋଡ଼ି କରି ଦଉଡ଼ିକୁ ଲମ୍ବା କଲେ, ତଥାପି ମଧ୍ୟ ତାହା ଦୁଇ ଆଙ୍ଗୁଳି କମ୍ ପଡୁଛି । ସେ ବୁଝିପାରୁ ନ ଥିଲେ ଯେ, ଇଏ ତ ବଡ଼ ହେଉ ନାହିଁ, ମୋଟା ହେଉ ନାହିଁ, ବଢୁ ମଧ୍ୟ ନାହିଁ, ଆଉ କିଛି ମଧ୍ୟ ହେଉ ନହିଁ ପୁଣି ଏହି ଦଉଡ଼ି ସବୁଥର କିପରି କମ୍ ପଡ଼ିଯାଉଛି । କ'ଣ କରିବି ? କିନ୍ତୁ ମା କହିଲେ ଯେ ଯାହା କିଛି ହେଲେ ମଧ୍ୟ ଆଜି ମୁଁ ତୋତେ ବାନ୍ଧିକିରି ହିଁ ରହିବି । ଏବେ ଦୁଇ ପାଖରେ ଉଭୟ ଆଡୁ ବିପରୀତ ଦେଖାଯାଉଛି ।

ଭଗବାନ କହିଲେ – ମୋତେ ତୁମେ ବାନ୍ଧି ପାରିବ ନାହିଁ । ତୁମ ଭିତରେ ଦ୍ୱୈତ ଉପାଧି ଅଛି ନା, ସେଥିପାଇଁ ଦଉଡ଼ିଟି ଦୁଇ ଆଙ୍ଗୁଳି ଛୋଟ ହେଉଛି । ପ୍ରଥମେ ତୁମେ ଦ୍ୱୈତକୁ ଛାଡ଼ । କିନ୍ତୁ କିଛି ସମୟ ପରେ ଯେତେବେଳେ ସେ ଦେଖିଲେ ଯେ ମା' ବହୁତ ଥକି ପଡ଼ିଲେଣି –

**ଦୃଷ୍ଟ୍ୱା ପରିଶ୍ରମଂ କୃଷ୍ଣଃ କୃପୟାସୀତ୍ ସ୍ୱବନ୍ଧନେ ॥ (୧୦.୯.୧୮)**

ସେତେବେଳେ କୃପା କରି ଭଗବାନ ବନ୍ଧନରେ ଆସିଗଲେ । ଅନ୍ୟଥା ଭଗବାନ ମଧ୍ୟ କଣ ବନ୍ଧନରେ ଆସିପାରନ୍ତି ? ତାଙ୍କୁ କ'ଣ କେହି ବାନ୍ଧିପାରିବ ? ସେଥିପାଇଁ ଭକ୍ତମାନେ କହିଛନ୍ତି –

**ପ୍ରବଲ ପ୍ରେମ କେ ପାଲେ ପଡ଼କର**
**ପ୍ରଭୁ କୋ ନିୟମ ବଦଲତେ ଦେଖା ।**
**ଅପନା ମାନ ଟଲେ, ଟଲ ଯାଏ**
**ଭକ୍ତ କା ମାନ ନ ଟଲତେ ଦେଖା ॥**

ପ୍ରବଲ ପ୍ରେମ ହେତୁ ଭଗବାନ ନିଜର ନିୟମ ମଧ୍ୟ ବଦଳାଇ ଦିଅନ୍ତି । ବରଂ ନିଜର ମାନ ଟଳି ଯାଉ, କିନ୍ତୁ ଭକ୍ତର ମାନ କେବେ ହେଲେ ଟଳିବାକୁ ଦିଅନ୍ତି ନାହିଁ । ଭକ୍ତ ମୋତେ ଯଦି ବାନ୍ଧିବାକୁ ଚାହୁଁଛି, ତେବେ ଠିକ ଅଛି । ମୁଁ ବାନ୍ଧି ହୋଇଯାଉଛି ।

**ଏବଂ ସଂଦର୍ଶିତା ହ୍ୟଙ୍ଗ ହରିଣା ଭୃତ୍ୟବଶ୍ୟତା । (୧୦.୯.୧୯)**

ଏଭଳି କୃପାକରି ଭଗବାନ ଆମକୁ ଦେଖାଉଛନ୍ତି ଯେ ସେ "ଭକ୍ତପରାଧୀନଃ' କେତେ ପରିମାଣରେ ଭକ୍ତର ଅଧୀନ ଅଟନ୍ତି । ଦେଖନ୍ତୁ, ଆଗକୁ ମହାଭାରତ ସମୟରେ ଭଗବାନ ଯେତେବେଳେ ହସ୍ତିନାପୁର ଯାଉଛନ୍ତି, ଏବ ଦୁର୍ଯ୍ୟୋଧନ ପ୍ରଭୃତି ଯେତେବେଳେ ତାଙ୍କୁ ଧରିବା ନିମନ୍ତେ ଚେଷ୍ଟା କରୁଛନ୍ତି ତ ଭଗବାନ ବିଶ୍ୱରୂପ ଧାରଣ କରିଛନ୍ତି, ସେମାନଙ୍କ କବଳରେ ଆସିନାହାନ୍ତି । ସେ ହିଁ ଭଗବାନ ଏଠାରେ ଯଶୋଦାଙ୍କ ହାତରେ ଉଖଳ ଦ୍ୱାରା ବାନ୍ଧି ହୋଇଯାଇଛନ୍ତି । ଭଗବାନ ପ୍ରେମର ବଶ ହୋଇ ଯାହା କିଛି କରିବାକୁ ମଧ୍ୟ ପ୍ରସ୍ତୁତ ହୋଇଯାଆନ୍ତି ।

କିନ୍ତୁ କେହି ଯଦି ଅଧିକ ଚତୁରପଣ ଦେଖାଇବାକୁ ଚାହେଁ, ତେବେ ଭଗବାନ ମଧ୍ୟ ଜାଣନ୍ତି ଯେ ତାଙ୍କ ସହିତ କିପରି ଖେଳ ଖେଳିବା ଉଚିତ୍ । ତେବେ ଏଠାରେ ଭଗବାନ ବାନ୍ଧି ହୋଇଗଲେ । ତାଙ୍କୁ ବାନ୍ଧି ଦେବା ପରେ ଯଶୋଦା ଜୀ ବହୁତ ଖୁସି ହୋଇଗଲେ । ପୁଣି କହୁଛନ୍ତି – ଏଠାରେ ବନ୍ଧା ହୋଇ ରହିଥା, ଏବେ ମୁଁ ଶାନ୍ତିରେ କାମ କରିପାରିବି । କହିଲେ ଯାଅ ! ସେ ଚାଲିଗଲେ ।

## ଯମଲାର୍ଜ୍ଜୁନଙ୍କର ଉଦ୍ଧାର

ସେହି ପାଖରେ ଯମଲାର୍ଜ୍ଜୁନ ନାମକ ଦୁଇଟି ବୃକ୍ଷ ଥିଲା । ନଳକୂବେର ଓ ମଣିଗ୍ରୀବ ଏ ଦୁହେଁ କୁବେରଙ୍କର ପୁତ୍ର ଥିଲେ । ନାରଦଜୀଙ୍କର ଅଭିଶାପ କାରଣରୁ ଏ ଦୁହେଁ ବୃକ୍ଷ ହୋଇଯାଇଥିଲେ । ଏକାଦ ଶ୍ରୀମଦରେ ମତ୍ତ ହୋଇ ବାରୁଣୀ ପାନ କରି, ଅନେକ ସ୍ତ୍ରୀମାନଙ୍କ ସହିତ ସେମାନେ ଜଳ ବିହାର କରୁଥିଲେ । ଭିନ୍ନ-ଭିନ୍ନ ପ୍ରକାରର କ୍ରୀଡ଼ା କରୁଥିଲେ । ନାରଦ ଜୀ ସେହି ବାଟରେ ଯାଉଥିଲେ । ନାରଦ ଜୀଙ୍କୁ ଦେଖି ସେହି ସ୍ତ୍ରୀମାନେ ବସ୍ତ୍ରଧାରଣ କରିନେଲେ ପରନ୍ତୁ ଏ ଦୁଇଜଣ ବସ୍ତ୍ର ଧାରଣ କଲେ ନାହିଁ। ଏମାନଙ୍କ ପ୍ରତି ଅନୁଗ୍ରହ କରିବା ଦୃଷ୍ଟିରେ ନାରଦ ଜୀ ଅଭିଶାପ ଦେଲେ ଯେ ତୁମେ ଦୁହେଁ ଉନ୍ମତ୍ତ ହୋଇ ବଡ଼ ମୂର୍ଖାମୀ ଜଡ଼ତାର କାର୍ଯ୍ୟ କରୁଅଛ । ଯାଅ ତୁମେ ଦୁହେଁ ଜଡ଼ ହୋଇଯାଅ । ଯେତେବେଳେ ତୁମ ଦୁହିଁଙ୍କୁ ଭଗବାନଙ୍କର ସ୍ପର୍ଶ ହୋଇଯିବ ସେତେବେଳେ ତୁମର ମୋକ୍ଷ ହେବ । ଏଣୁ ଏମାନେ ବୃକ୍ଷ ହୋଇଯାଇଥିଲେ ।

ଏବେ ଭଗବାନ, ଏହି ଯମଲାର୍ଜ୍ଜୁନ ହୋଇଥିବା ଦୁହିଁଙ୍କର ଉଦ୍ଧାର କରିବାକୁ ଚାହୁଁଛନ୍ତି। ବାସ୍ତବରେ ଏଠାରେ ଭଗବାନ କେବଳ ଭକ୍ତର ବାଣୀକୁ ସତ୍ୟ ସିଦ୍ଧ କରିବାକୁ

ଯାଉଁଛନ୍ତି । ସେ ବିଚାର କରୁଛନ୍ତି, ନାରଦ ଜୀ ଅଭିଶାପ ଦେବା ପରେ ଏମାନଙ୍କ ଉପରେ ଅନୁଗ୍ରହ ମଧ୍ୟ କରିଛନ୍ତି, ତାଙ୍କର ବାଣୀକୁ ସତ୍ୟରେ ପରିଣତ କରିବାକୁ ହେବ। ସେଥିପାଇଁ ଭଗବାନ ସେହି ବୃକ୍ଷ ଦୁଇଟିର ପାଖକୁ ଯାଉଛନ୍ତି ସେ ନିଜେ ତ ସେହି ଦୁଇ ବୃକ୍ଷର ମଝିରେ ପଶି ବାହାରି ଯାଉଛନ୍ତି, କିନ୍ତୁ ତାଙ୍କ ସହିତ ବନ୍ଧା ହୋଇଥିବା ବଡ଼ ଉଖଳଟି ବଙ୍କେଇ ଯାଇ ଅଟକି ଯାଉଛି । ଭଗବାନ ତାକୁ ଟାଣୁଛନ୍ତି । ଯେମିତି ଭଗବାନ ତାକୁ ଟାଣିଛନ୍ତି, ତୁରନ୍ତ ବୃକ୍ଷ ଦୁଇଟି ମୂଳରୁ ଉପୁଡ଼ି ତଳେ ପଡ଼ିଲା । ସେଥିରୁ ନଳକୂବର ଓ ମଣିଗ୍ରୀବ, ଏ କୁବେର ପୁତ୍ର ଦୁହେଁ ବାହାରିଲେ । ସେମାନେ ଭଗବାନଙ୍କ ନିକଟରେ ପ୍ରାର୍ଥନା କରୁଛନ୍ତି, ଭଗବାନଙ୍କୁ ସ୍ତୁତି କରୁଛନ୍ତି ଯେ ଆମଦ୍ୱାରା ବହୁତ ବଡ଼ ଭୁଲ ହୋଇଯାଇଥିଲା, କିନ୍ତୁ ଆପଣ ଏବେ ଆମକୁ ମୁକ୍ତ କରିଦେଲେ । ଏବେ ଆମେ ଆପଣଙ୍କୁ ଏହି ବର ମାଗୁଛୁ -

**ବାଣୀ ଗୁଣାନୁକଥନେ ଶ୍ରବଣୌ କଥାୟାଂ**
**ହସ୍ତୌ ଚ କର୍ମସୁ ମନସ୍ତବ ପାଦୟୋର୍ନଃ ।**
**ସ୍ମୃତ୍ୟାଂ ଶିରସ୍ତବ ନିବାସ ଜଗତ୍ ପ୍ରଣାମେ**
**ଦୃଷ୍ଟିଃ ସତାଂ ଦର୍ଶନେସ୍ତୁ ଭବତ୍ତନୂନାମ୍ ॥ (୧୦.୧୦.୩୮)**

ଆମର ବାଣୀ ଆପଣଙ୍କର ଗୁଣାନୁକଥନ କରୁଥାଉ । ଆମର କାନ ଆପଣଙ୍କ କଥା ଶୁଣୁଥାଉ । ଆମ୍ଭମାନଙ୍କର ହାତ ଆପଣଙ୍କର ସେବା କରୁଥାଉ ଏବଂ ମନ ଆପଣଙ୍କର ଚରଣରେ ଲୀନ ରହୁ । ମସ୍ତକ ଆପଣଙ୍କ ଚରଣରେ ନମନ କରୁଥାଉ ଏବଂ ଆମ୍ଭମାନଙ୍କୁ ସତ୍‌ପୁରୁଷମାନଙ୍କର ଦର୍ଶନ ହେଉଥାଉ । ଆମେ ଆପଣଙ୍କୁ ଏହି ବର ମାଗୁଛୁ । ଭଗବାନ ସେମାନଙ୍କୁ ଇପ୍ସିତ ବରଦାନ ଦେଇ କହୁଛନ୍ତି - ତଥାସ୍ତୁ ! ତୁମର ମନ ମୋ ଠାରେ ଲାଗି ରହିବ ।

ବୃକ୍ଷ ପଡ଼ିବାର ଶବ୍ଦ ଶୁଭିଲା କ୍ଷଣି ନନ୍ଦ ଆଦି ସମସ୍ତ ଗୋପ, ଯେଉଁମାନେ ଆଖପାଖରେ ଥିଲେ, ଦୌଡ଼ି ଯାଇ ସେଠାରେ ପହଞ୍ଚିଲେ । ଏତେ ବଡ଼ ବୃକ୍ଷ କିପରି ଉପୁଡ଼ି ପଡ଼ିଲା କେହି ବୁଝିପାରିଲେ ନାହିଁ । ପୁଣି ଦେଖୁଛନ୍ତି କ'ଣ ଯେ ଉଖଳରେ ବନ୍ଧା ହୋଇଥିବା ଏ ମହାରାଜ (ଶ୍ରୀକୃଷ୍ଣ) ସେଠାରେ ଅଛନ୍ତି । ସେମାନେ ପଚାରିଲେ, "ଏହା କିପରି ହେଲା ?'' ତେବେ ଅନ୍ୟ ଛୋଟ ଛୋଟ ପିଲାମାନେ, ଯେଉଁମାନେ କି ସବୁବେଳେ ଭଗବାନଙ୍କ ସାଥିରେ ରହନ୍ତି, ସେମାନେ କହିଲେ ଯେ ସେ ଉଖଳକୁ ଟାଣି ଟାଣି ଏଠାକୁ

ନେଇ ଆସିଲା ଏବଂ ଉଖଳଟି ବୃକ୍ଷର ସେ ପାଖରେ ଥିଲା, ତଦ୍ଦ୍ୱାରା ଏହି ଦୁଇ ବୃକ୍ଷ ଉପୁଡ଼ି ପଡ଼ିଲେ । କହିଲେ -

**ନ ତେ ତଦୁକ୍ତଂ ଜଗୃହୁର୍ନ ଘଟେତେତି ତସ୍ୟ ତତ୍ । (୧୦.୧୧.୫)**

ତୁମେ ସବୁ ପିଲାଲୋକ ପ୍ରତି ଥର କଣ ଓଲଟା-ସିଧା କଥା କହି ଦେଉଛ ଜଣାନାହିଁ । ଏଡ଼େ ଛୋଟ ପିଲାଟି ଏତେ ବଡ଼ ଉଖଳକୁ ଟାଣି ଟାଣି କିପରି ଆଣିପାରିବ ?

**ବାଲସ୍ୟୋତ୍ପାଟନଂ ତର୍ବୋଃ କେଚିତ୍ ସନ୍ଦିଗ୍ଧଚେତସଃ ।।**

ସେମାନେ ପିଲାମାନଙ୍କ କଥାକୁ ମାନିଲେ ତ ନାହିଁ, ପରନ୍ତୁ ସମସ୍ତେ ଏଇ କଥା (ଘଟଣା)ରେ ପ୍ରସନ୍ନ ଥିଲେ ଯେ, ଯାହା କିଛି ହେଲା ତ ହେଲା, କିନ୍ତୁ ଏ (ଶ୍ରୀକୃଷ୍ଣ) ତ ସୁରକ୍ଷିତ ଅଛି । କେଜାଣି କାହିଁକି ଏହା (ଶ୍ରୀକୃଷ୍ଣ) ଉପରେ ଜନ୍ମରୁ ହିଁ ଗୋଟିକ ପରେ ଗୋଟିଏ ସଂକଟ ଆସିବାରେ ଲାଗିଛି ? ଜଣା ନାହିଁ ଏ କିପରି ଏକ ବାଳକ ? ଏହିପରି ଭଗବାନ ଗୋକୁଳରେ ପ୍ରତିପାଳିତ ହେଉଛନ୍ତି ।

ଦିନକର ଘଟଣା, ସେଠାରେ ଜଣେ ଫଳ ବିକ୍ରି କରିବା ବାଲୀ ଆସିଛି । ସମସ୍ତ ଜୀବମାନଙ୍କୁ କର୍ମଫଳ ଦେବା ଲୋକ ତ ଭଗବାନ ସ୍ୱୟଂ ଅଟନ୍ତି । ତଥାପି -

**କ୍ରୀଣୀହି ଭୋଃ ଫଲାନୀତି ଶ୍ରୁତ୍ୱା ସତ୍ୱରମଚ୍ୟୁତଃ ।। (୧୦.୧୧.୧୦)**

ଯେତେବେଳେ ଭଗବାନ ଶୁଣିଲେ ଯେ କେହି ଫଳବାଲୀ କହୁଛି, "ଫଳ ନିଅନ୍ତୁ, ତଟକା-ତଟକା ଫଳ ନିଅନ୍ତୁ । ତ ଇଏ (ଶ୍ରୀକୃଷ୍ଣ) ଦୌଡ଼ି କରି ବାହାରକୁ ଆସିଲେ । ଛୋଟିଆଟିଏ ତ, ନିଜ ଅଂଜୁଳୀରେ କିଛଇ ଶସ୍ୟ ନେଇ ଦୌଡ଼ି ଦୌଡ଼ି ଆସୁଛନ୍ତି । ସବୁ ଶସ୍ୟଗୁଡ଼ିକ ତ ରାସ୍ତା ସାରା ହିଁ ପଡ଼ି ଯାଇଥିଲା । ସେ (ପ୍ରଭୁ) ନିଜର ଦୁଇ ହାତକୁ ଆଗକୁ ବଢ଼ାଇ ଦେଉଛନ୍ତି । ଫଳବାଲୀ ତାଙ୍କର ସେଇ ଛୋଟ ଛୋଟ ହାତ ଦୁଇଟିକୁ ଫଳରେ ଭରି ଦେଇଥିଲା, ପୁଣି ଭଗବାନ ତାର ଟୋକେଇଟିକୁ ରତ୍ନରେ ଭରି ଦେଇଥିଲେ, କିନ୍ତୁ ତାକୁ ଜଣାନଥିଲା । ଘରକୁ ଫେରି ସେ ଦେଖିଲା ଯେ ତାର ଟୋକେଇଟି ରତ୍ନରେ ପୂର୍ଣ୍ଣ ହୋଇଛି । ଏହିପରି ଭଗବାନ ଗୋକୁଳରେ ବଢୁଛନ୍ତି ।

ଘଟଣାକ୍ରମକୁ ଦେଖି ବ୍ରଜର ନନ୍ଦ ପ୍ରଭୃତି ବୟସ୍କ ଗୋପାଳମାନେ ଚିନ୍ତାରେ ପଡ଼ିଗଲେ । ସେମାନଙ୍କର ବିଚାର ଥିଲା ଯେ, ଏବେ ଆମକୁ କିଛି କରିବା ଉଚିତ୍ । ଉପନନ୍ଦ ନାମରେ ଜଣେ ଗୋପାଳ କହିଲେ ଯେ ଆଜିକାଲି ଗୋକୁଳରେ ବହୁତ

ଉତ୍ପାତ ହେଉଛି, ସେଥିପାଇଁ ଆମକୁ ଗୋକୁଳ ଛାଡ଼ି ଦେବା ଉଚିତ । ନିକଟରେ ଏକ ସୁନ୍ଦର ସ୍ଥାନ ଅଛି, ସେହି ସ୍ଥାନକୁ ଯାଇ ସେଠାରେ ରହିବା ଉଚିତ । କେଉଁ ସ୍ଥାନଟି ? ନିକଟରେ ବୃନ୍ଦାବନ ନାମକ ଏକ ସ୍ଥାନ ଅଛି । ବୃନ୍ଦାବନ ଖୁବ ସୁନ୍ଦର ସ୍ଥାନ ଅଟେ । ଏହି ସ୍ଥାନକୁ ଛାଡ଼ି ଏବେ ସମସ୍ତେ ନିଜର ପିଲାମାନଙ୍କୁ ଏବଂ ସ୍ୱଜନ, ବନ୍ଧୁବାନ୍ଧଙ୍କୁ ନେଇ ବୃନ୍ଦାବନ ଚାଲିଯିବା । ଲାଗୁଛି ଏହି ସ୍ଥାନଟି ବଡ଼ ଅଶୁଭ ଅଟେ । ଗୋକୁଳର ସମସ୍ତ ଲୋକମାନଙ୍କୁ ଏହି ପ୍ରସ୍ତାବଟି ପସନ୍ଦ ହେଲା । ବାସ ! ଶିଘ୍ର-ଶିଘ୍ର ସମସ୍ତେ ନିଜ-ନିଜର ବଳଦଗାଡ଼ି-ଶଗଡ଼, ସବୁ ପ୍ରସ୍ତୁତ କଲେ, ସବୁ କିଛି ଲଦି ଦେଲେ ଏବଂ ଯାତ୍ରା ଆରମ୍ଭ କଲେ । ବର୍ତ୍ତମାନ ଏ ସମସ୍ତଙ୍କୁ ବୃନ୍ଦାବନ ଯାଇ ସେହିଠାରେ ରହିବାକୁ ହେବ ।

**ବୃନ୍ଦାବନଂ ଗୋବର୍ଦ୍ଧନଂ ଯମୁନା ପୁଲିନାନି ଚ ॥ (୧୦.୧୧.୩୬)**

ସେମାନେ ସମସ୍ତେ ବୃନ୍ଦାବନରେ ଆସି ବସବାସ କରିବାକୁ ଲାଗିଲେ । ବୃନ୍ଦାବନର ବେଶ୍ ସୌନ୍ଦର୍ଯ୍ୟ ଥିଲା, ଗୋବର୍ଦ୍ଧନ ପର୍ବତ ମଧ୍ୟ ମନକୁ ପ୍ରସନ୍ନ କରୁଥିଲା ଏବଂ ଯମୁନା ଜୀଙ୍କ କୂଳ ମଧ୍ୟ ମନୋଭାବନା ମନଲୋଭା ଥିଲା । ଏ ସବୁ ଦେଖି ବଳରାମ ତଥା ଶ୍ରୀକୃଷ୍ଣଙ୍କର ମନ ପ୍ରେମରେ ଭରିଗଲା । ନିଜର ବାଳଲୀଳା ଦ୍ୱାରା ସେ ଗୋକୁଳ ଭଳି ଏଠାରେ ମଧ୍ୟ ସମସ୍ତଙ୍କ ମନକୁ ମୋହିତ କରିଦେଲେ । ସମୟ ଅନୁସାରେ ସେ ବତ୍ସପାଳକ ହେଇ ଗୋପାଳ ବାଳକମାନଙ୍କ ସହିତ ସେ ବାଛୁରୀମାନଙ୍କୁ ନେଇ ଯାଆନ୍ତି । ବାଛୁରୀମାନଙ୍କୁ ଚରାଇ ଆଣନ୍ତି ଏବଂ ସମସ୍ତେ ସାଥି ହୋଇ ଭିନ୍ନ ଭିନ୍ନ ପ୍ରକାର ଖେଳ ମଧ୍ୟ ଖେଳନ୍ତି ।

## ବତ୍ସାସୁରର ଉଦ୍ଧାର

ଦିନକର କଥା, ସବୁଦିନ ଭଳି ସେମାନେ ସମସ୍ତ ବାଛୁରୀମାନଙ୍କୁ ଚରାଇ - ଚରାଇ ଯମୁନାକୂଳରେ ପହଞ୍ଚିଗଲେ । ସେତିକିବେଳେ ସେମାନଙ୍କୁ ମାରିବା ନିମନ୍ତେ ଏକ ଅସୁର ବାଛୁରୀ ରୂପ ଧାରଣ କରି ସେଠାରେ ପହଞ୍ଚିଗଲା । ତାର ନାମ ଥିଲା "ବତ୍ସାସୁର' । ଭଗବାନ ତାକୁ ଚିହ୍ନିଗଲେ ଯେ ପ୍ରକୃତରେ ଇଏ ବାଛୁରୀ ନୁହେଁ, ଏକ ଅସୁର ଅଟେ । ଭଗବାନ ତାର ଗୋଡ଼ ଧରିଲେ ଏବଂ ଗୋଲାକାରରେ ବୁଲାଇ ବୁଲାଇ ତାକୁ କଇଁଥ ଗଛରେ ପିଟିଦେଲେ । ପିଲାମାନେ ଦେଖିଲେ ବାଛୁରୀର ସେବା କରୁଥିବା ଭଗବାନ ବାଛୁରୀକୁ ମାରୁଛନ୍ତି ?

ଏହି "ବତ୍ସାସୁର' ଅହଂତା - ମମତା (ଆସକ୍ତି)ର ପ୍ରତୀକ । ପ୍ରଥମେ ଭଗବାନ ଅବିଦ୍ୟା (ପୂତନା)କୁ ମାରିଲେ, ପୁଣ ଜଡ଼ବାଦ (ଶକଟାସୁର)କୁ ମାରିଲେ, ତା ପରେ

କାମ (ତୃଣାବର୍ତ୍ତ) ଯେ ସମସ୍ତଙ୍କୁ ଖୁବ ବୁଲାଉଥାଏ, ତାକୁ ମାରିଲେ । କାମ ବାସନା ଯେତେବେଳେ ଆସେ ତ ତାହା ତୃଣାବର୍ତ୍ତ ଭଳି ବ୍ୟକ୍ତିକୁ ଉଡ଼ାଇ ନେଇଯାଏ ଏବଂ ପିଟି ପିଟି ମାରିଦିଏ । ଏବେ ଭଗବାନ ମମତାକୁ ମଧ୍ୟ ମାରିଦେଲେ ।

## ବକାସୁରର ଉଦ୍ଧାର

ବାଛୁରୀମାନଙ୍କୁ ଚରାଇବା ନିମନ୍ତେ ବଳରାମ, ଶ୍ୟାମ ତଥା ଗୋପାଳ ବାଳକ ବନ-ବନ ବୁଲୁଥିଲେ । ଦିନେ ବାଛୁରୀମାନଙ୍କୁ ଜଳ ପିଆଇ ସାରି ନିଜେ ମଧ୍ୟ ଜଳପାନ କରୁଥିଲେ ତ ସେମାନେ ଦେଖିଲେ ଯେ ସେଠାରେ ଏକ ବିରାଟ ବଗ ବସିଛି । ଏହି ବଗ ବକ ଅଟେ, ବକୀ (ପୁତନା)ର ଭାଇ । ତାର ମୁହଁ ଖୁବ ବିଶାଳ ଅଟେ ।

**ସ ବୈ ବକୋ ନାମ ମହାନସୁରୋ ବକରୂପଧୃକ୍ ।**
**ଆଗତ୍ୟ ସହସା କୃଷ୍ଣଂ ତୀକ୍ଷ୍ଣତୁଣ୍ଡୋଽଗ୍ରସଦ୍ ବଲୀ ॥ (୧୦.୧୧.୪୮)**

ଯେମିତି ସେ ଭଗବାନ ଶ୍ରୀକୃଷ୍ଣଙ୍କୁ ଆସିବା ଦେଖିଛି, କହିଲା ଏଇ ହିଁ ମୋର ଭଉଣୀକୁ ମାରିଥିଲା । ବାସ୍ ସେ ତାଙ୍କୁ ଗିଳି ଦେଲା । ସମସ୍ତ ଗୋପାଳ ବାଳକ ବ୍ୟାକୁଳ ହୋଇଗଲେ । ଆରେ ! ଶ୍ରୀକୃଷ୍ଣ କୁଆଡ଼େ ଗଲେ ? ସେ ତ ତାଙ୍କୁ ଗିଳି ପକାଇଲା । ଯେତେବେଳେ ଶ୍ରୀକୃଷ୍ଣ ବଗର ପେଟ ଭିତରକୁ ଗଲେ ତ ସେଠାରେ ଅଗ୍ନି ଉତ୍ପନ୍ନ ହୋଇଗଲା । ବ୍ୟତିବ୍ୟସ୍ତ ହୋଇ ବଗ ଶ୍ରୀକୃଷ୍ଣଙ୍କୁ ବାନ୍ତି କରିଦେଲା । ପୁଣି ତାର ଚଞ୍ଚୁ (ଥଣ୍ଟ) ଦ୍ୱାରା ଭଗବାନଙ୍କୁ ଖଣ୍ଡିଆ ଖାବରା କରିବାକୁ ଲାଗିଲା । ଭଗବାନ ତାର ଦୁଇ ଚଞ୍ଚୁକୁ (ଥଣ୍ଟ) ଧରି ତାକୁ ଚିରି ଦେଲେ । "ବକାସୁର'ର ବଧ ହୋଇଗଲା । ବକ ତ ଆପଣମାନଙ୍କୁ ଜଣାଅଛି ନା, ବଗୁଲା ଭଗତର ଅର୍ଥ ସମସ୍ତେ ଜାଣିଛନ୍ତି ନିଶ୍ଚୟ । ଗୋଟିଏ ପାଦରେ ଏପରି ଠିଆ ହୋଇଯାଏ ଯେ ସତେ ଯେପରି ପୂର୍ଣ୍ଣ ଧ୍ୟାନସ୍ଥ । ପରନ୍ତୁ ଯେମିତି ସେ ମାଛଟିଏ ଦେଖେ, ତୁରନ୍ତ ତାକୁ ସେ ଧରିନିଏ । ଏହି ବଗୁଲା ବଡ଼ "ଦମ୍ଭୀ' ହୋଇଥାଏ ।

ଦେଖନ୍ତୁ, ଭଗବାନ ଶ୍ରୀକୃଷ୍ଣଙ୍କର ଲୀଳା ଏହିପରି । ଉପରୁ ଲାଗେ ଯେ ସେ ତାକୁ ମାରିଛନ୍ତି, ଆକୁ ମାରିଛନ୍ତି । ପରନ୍ତୁ ଏ ସବୁ ଉପରେ ଯଦି ଆଧ୍ୟାତ୍ମିକ ଦୃଷ୍ଟିରେ ବିଚାର କରନ୍ତି, ତାକୁ ନିଜର ହିଁ ଅନ୍ତଃକରଣରେ ଦେଖନ୍ତି, ତେବେ ତାର ଅର୍ଥ ଅଥବା ଯାହାର ଏସବୁ ପ୍ରତୀକ ସେ ସମସ୍ତ ସମ୍ମୁଖକୁ ଆସିଯିବେ ।

ଅବିଦ୍ୟା, ଜଡ଼ତା, କାମ, ଦମ୍ଭ ସେମାନେ ସମସ୍ତେ ଆସୁଛନ୍ତି ଏବଂ ଭଗବାନ ସମସ୍ତଙ୍କୁ ନିପାତ କରିଚାଲିଛନ୍ତି । ସେମାନେ ସମସ୍ତେ ଅସୁର ହୋଇ ଗୋକୁଳକୁ ଆସିଲେ, ଏବେ ବୃନ୍ଦାବନରେ ମଧ୍ୟ ଅସୁର ଅଛନ୍ତି, ଏଠାରେ ମଧ୍ୟ ଭଗବାନ ସ୍ୱୟଂ ସେମାନଙ୍କୁ ନଷ୍ଟ କରୁଛନ୍ତି । ସେଥିପାଇଁ ଦେଖନ୍ତୁ, ଆମ ହୃଦୟରେ ଭଗବାନଙ୍କର ପ୍ରବେଶ ହୋଇଯାଏ ତ କେତେ ଭଲ କଥା ହେବ । ବାସ୍ ! ସେ ହିଁ ପୁଣି ସବୁ କାର୍ଯ୍ୟ କରିଯାଆନ୍ତି । ଆଉ ଆମକୁ କିଛି କରିବାର ଆବଶ୍ୟକତା ପଡ଼େ ନାହିଁ । ସେ ହିଁ ଆମ ଅନ୍ତଃକରଣରେ ଉଠୁଥିବା ସମସ୍ତ ଆସୁରୀ ବୃତ୍ତିଗୁଡ଼ିକ ନଷ୍ଟ କରି ଚାଲିଥାଆନ୍ତି । ଏହିଭଳି ବକାସୁରର ବଧ ହେଲା । ସେହି ପିଲାମାନେ ସମସ୍ତଙ୍କୁ କହୁଥିଲେ ଯେ, ଆଜି ଏ (ଶ୍ରୀକୃଷ୍ଣ) ଅମୁକକୁ ମାରିଲେ, ପୁଣି ତାକୁ ମାରିଲେ । ଏପରି ଶୁଣି ଶୁଣି ସମସ୍ତଙ୍କୁ ବଡ଼ ଆଶ୍ଚର୍ଯ୍ୟ ଲାଗୁଥିଲା । ତଥାପି ସେମାନେ ଏହା ହିଁ ବୁଝୁଥିଲେ ଯେ ଏହି ପିଲାଟି ପାଖରେ ଭଗବାନଙ୍କର ଶକ୍ତି ଅଛି, ସେଥିପାଇଁ ଏହାରି ଦ୍ୱାରା ଏପରି କାର୍ଯ୍ୟ ସବୁ ହୋଇପାରୁଛି ।

**କ୍ୱଚିଦ୍ ବନାଶାୟ ମନୋ ଦଧଦ୍ ବ୍ରଜାତ୍**
**ପ୍ରାତଃ ସମୁତ୍ଥାୟ ବୟସ୍ୟବତ୍ସପାନ୍ ।**
**ପ୍ରବୋଧୟଞ୍ଛୃଙ୍ଗରବେଣ ଚାରୁଣା**
**ବିନିର୍ଗତୋ ବତ୍ସପୁରଃସରୋ ହରିଃ ॥ (୧୦.୧୨.୧)**

ଏବେ ଭଗବାନ ସବୁ ପିଲାମାନଙ୍କର ଗୋପାଳ ବାଳକମାନଙ୍କର ନାୟକ ହୋଇଗଲେ । ଦିନେ ବନରେ ଜଳଖିଆ ଖାଇବାକୁ ଭାବି ସକାଳୁ ସକାଳୁ ସିଙ୍ଗା ବଜାଇ ସମସ୍ତଙ୍କୁ ଡାକିଲେ ଏବଂ ବାଛୁରୀମାନଙ୍କୁ ନେଇ ସମସ୍ତ ବାଳକମାନଙ୍କ ସହିତ ବ୍ରଜରୁ ବାହାରି ପଡ଼ିଲେ । ସମସ୍ତଙ୍କ ମଧ୍ୟରେ ସେ ସାନ ହେଲେ ମଧ୍ୟ ସମସ୍ତଙ୍କର ନେତୃତ୍ୱ ନେବାର ସ୍ୱଭାବ ତାଙ୍କର ଥିଲା । ଏବେ ସେ ସମସ୍ତଙ୍କୁ ନେଇ ଯାଉଛନ୍ତି । କେଜାଣି କାହିଁକି ଅନ୍ୟ ସମସ୍ତ ବାଳକମାନଙ୍କର ଶ୍ରୀକୃଷ୍ଣଙ୍କ ପ୍ରତି ଏତେ ପ୍ରେମ ଆସୁଥିଲା ଯେ, ସେମାନେ ସମସ୍ତେ ଭଗବାନଙ୍କୁ ସ୍ପର୍ଶ କରିବାକୁ ଚାହିଁଛନ୍ତି । କହିଲେ - ମୁଁ ଭଗବାନଙ୍କୁ ସ୍ପର୍ଶ କରିବି ।

**ଅହଂ ପୂର୍ବମହଂ ପୂର୍ବମିତି ସଂସ୍ପୃଶ୍ୟ ରେମିରେ ॥ (୧୦.୧୨.୬)**

ଦୌଡ଼ି ଦୌଡ଼ି ଆସୁଥିଲେ ଏବଂ ଭଗବାନଙ୍କୁ ସ୍ପର୍ଶ କରିବା ସମୟରେ କହୁଥିଲେ - ଦେଖ ମୁଁ ସବୁଠାରୁ ପ୍ରଥମେ ସ୍ପର୍ଶ କଲି । ତଦ୍ଦ୍ୱାରା ସେମାନଙ୍କୁ ଅଲୌକିକ ଆନନ୍ଦ ମିଳୁଥିଲା କାରଣ - **"ସୁଖେନ ବ୍ରହ୍ମସଂସ୍ପର୍ଶମତ୍ୟନ୍ତଂ ସୁଖମଶ୍ନୁତେ"** । (ଭ.ଗୀତା-୬.୨୮) । ସେତେବେଳେ ସେମାନଙ୍କୁ ବ୍ରହ୍ମସଂସ୍ପର୍ଶ ପ୍ରାପ୍ତ ହେଉଥିଲା । ବ୍ରହ୍ମ ସଂସ୍ପର୍ଶ ପ୍ରାପ୍ତ କରି ସେମାନେ ଅତ୍ୟନ୍ତ ସୁଖୀ ହେଉଥିଲେ ।

## ଅଘାସୁରର ଉଦ୍ଧାର

ଦିନେ ସେମାନେ ସମସ୍ତେ ଖେଳୁଛନ୍ତି । ସେତେବେଳେ **"ଦୃଷ୍ଟ୍ୱାର୍ଭକାନ କୃଷ୍ଣମୁଖାନଘାସୁରଃ"** (୧୦.୧୨.୧୪) ଅଘାସୁର ସେଠାରେ ଆସି ପହଞ୍ଚିଗଲା । "ଅଘ'ର ଅର୍ଥ ପାପ । ଦେଖନ୍ତୁ, କଂସ ଜଣକ ପରେ ଜଣେ ଅସୁରକୁ ପଠାଉଥିଲା । ଅଘାସୁର ଦେଖିଲା ଯେ ପିଲାମାନେ ଖେଳୁଛନ୍ତି । **"କଂସାନୁଶିଷ୍ଟଃ ସ ବକୀବକାନୁଜଃ"** (୧୦.୧୨.୧୪) ଏ ହେଉଛି ବକୀ ତଥା ବକର ଛୋଟ ଭାଇ । ଜଣେ "ଅବିଦ୍ୟା' (ବକୀ) ଥିଲା, ତାର ଜଣେ ଭାଇ ଥିଲା "ଦମ୍ଭ' (ବକ) ଏବଂ ଏ ହେଉଛି ଆଉ ଜଣେ ଭାଇ "ପାପ' । ଏହାର ଅର୍ଥ କଣ ? ଯେଉଁଠି ଅବିଦ୍ୟା ଥିବ, ଦମ୍ଭ ଥିବ, ସେଠାରେ ପାପର ମଧ୍ୟ ପ୍ରବେଶ ନିଶ୍ଚୟ ହୋଇଯାଏ । ତାକୁ ବୁଝିବା ନିମନ୍ତେ ଅନ୍ୟ ଏକ ଦୃଷ୍ଟି ମଧ୍ୟ ବିଚାର କରାଯାଇଛି - ଏ ଗୋପବାଳକମାନେ ଭଗବାନ ଶ୍ରୀକୃଷ୍ଣଙ୍କ ସାଥିରେ ଖେଳୁଥିଲେ, ତାଙ୍କୁ ନିଜର ସମାନ ଭାବି । ଏବେ ଏହି ଜୀବ ଯେତେବେଳେ ନିଜକୁ ଭଗବାନଙ୍କର ମନସ୍କନ୍ଧ ମନେକରି ଖେଳିବାକୁ ଲାଗିଯାଏ ତେବେ ତା ଜୀବନରେ କିଂଚିତ୍ ପାପ ଆସିଯାଏ । ଆମ ଜୀବନର ଘଟଣାକୁ ଏଠାରେ କଥାରୂପରେ ବର୍ଣ୍ଣନ କରୁଛନ୍ତି । ଦେଖନ୍ତୁ, ରାବଣ, ହିରଣ୍ୟକଶିପୁ କଣ ଭଗବାନଙ୍କର ସମାସ୍କନ୍ଧ ହେବାକୁ ବିଚାର କରି ନ ଥିଲେ ? ତେଣୁ ଏଠାରେ ଗୋଟିଏ ଦୃଷ୍ଟିରୁ କହିବାକୁ ଗଲେ ଆମକୁ ପ୍ରେମର ସହିତ ଭଗବାନଙ୍କ ଲୀଳା ଦେଖିବା ଉଚିତ୍ ଏବଂ ଦ୍ୱିତୀୟ ଦୃଷ୍ଟିରେ ନିଜ ଜୀବନରେ ତାର ତାତ୍ପର୍ଯ୍ୟ ବୁଝିବାକୁ, ଅର୍ଥ ଖୋଜିବାକୁ ମଧ୍ୟ ପ୍ରୟାସ କରିବା ଉଚିତ୍ ।

ଏବେ ଅଘାସୁର ଆସିଲା ଏବଂ ସେ ଯେତେବେଳେ ଦେଖିଲା ପିଲାମାନେ ଖେଳୁଛନ୍ତି, ତ ସେ ଅଜଗରର ରୂପ ଧାରଣ କରିନେଲା । ସେ ବହୁତ ବଡ଼ ଅଜଗର ହୋଇଗଲା ଏବଂ ନିଜର ମୁହଁ ମେଲା କରି ବସିଗଲା । ତାର ମୁହଁର ଦୁଇପାର୍ଶ୍ୱ ଗୁମ୍ଫା ଭଳି ଦେଖାଯାଉଥିଲା । ଯେତେବେଳେ ପିଲାମାନେ ଆସିଲେ ତ ସେମାନଙ୍କୁ ସେଠାରେ

ଗୁମ୍ଫା ଦେଖାଗଲା, ତେଣୁ ସେମାନେ ଭାବିଲେ ଭିତରକୁ ଯାଇ ଦେଖିବା ଏହା କିପରି ଗୁମ୍ଫା ଅଟେ ।

**ଧ୍ୱାନ୍ତୀଭୂତଂ ବ୍ୟାତ୍ତଗୁହାନନଂ ତଦା**
**ପଥି ବ୍ୟଶେତ ଗ୍ରସନାଶୟା ଖଲଃ ॥ (୧୦.୧୨.୧୬)**

ଏହି ଅଘାସୁର ଖଳ ଅଟେ । ମୁହଁ ମେଲାଇ ବସିଛି । ଖେଳ-ଖେଳରେ ସମସ୍ତ ପିଲା ତାର ମୁହଁରେ ପ୍ରବେଶ କରିଗଲେ । ଭଗବାନ ଦେଖିଲେ ସମସ୍ତେ ଭିତରେ ପ୍ରବେଶ କରିଗଲେଣି । ଏବେ କଣ କରିବା ? ଏଭଳି ବିଚାର କରି ସେ ସ୍ୱୟଂ ମଧ୍ୟ ଭିତରେ ପ୍ରବେଶ କରିଗଲେ । ତେବେ କଣ ହେଲା ? ସେତିକିବେଳେ ସେହି ଅଜଗର ମୁହଁ ବନ୍ଦ କରି ଦେଲା ।

**ତତୋଽତିକାୟସ୍ୟ ନିରୁଦ୍ଧମାର୍ଗିଣୋ**
**ହ୍ୟୁଦ୍‌ଗୀର୍ଣ୍ଣଦୃଷ୍ଟେର୍ଭ୍ରମତସ୍ତ୍ୱିତସ୍ତତଃ ।**
**ପୂର୍ଣ୍ଣୋଽନ୍ତରଙ୍ଗେ ପବନୋ ନିରୁଦ୍ଧୋ**
**ମୂର୍ଦ୍ଧନ ବିନିଷ୍ପାଟ୍ୟ ବିନିର୍ଗତୋ ବହିଃ ॥ (୧୦.୧୨.୩୧)**

ଭଗବାନ କଣ ତାକୁ ଜାଣି ନାହାନ୍ତି ? ଭିତରକୁ ଯାଇ ସେ ଏପରି ବଢ଼ିବାକୁ ଲାଗିଲେ ଯେ ତାର ଗଳା ପର୍ଯ୍ୟନ୍ତ ପହଞ୍ଚି ଗଲେ । ତାର ଶ୍ୱାସ ସମ୍ପୂର୍ଣ୍ଣ ବନ୍ଦ ହୋଇଗଲା । ସେ ବ୍ୟାକୁଳ ହୋଇଗଲା । ଶେଷରେ ତାର ପ୍ରାଣ ବ୍ରହ୍ମରନ୍ଧ୍ରରେ ବାହାରିଗଲା । ତାପରେ ଭଗବାନ ନିଜ ଅମୃତମୟୀ ଦୃଷ୍ଟି ଦ୍ୱାରା ସମସ୍ତ ଗୋପାଳବାଳକ ତଥା ବାଛୁରୀମାନଙ୍କୁ ଜୀବିତ କରିଦେଲେ ଏବଂ ନିଜ ସାଥିରେ ସମସ୍ତଙ୍କୁ ବାହରକୁ ନେଇ ଆସିଲେ । କହିଲେ - ତୁମେମାନେ ଯେକୌଣସି ସ୍ଥାନରେ ପ୍ରବେଶ କରିବାର ପୂର୍ବରୁ ଟିକିଏ ଦେଖିନିଅ ଯେ କେଉଁଠାରେ ପ୍ରବେଶ କରୁଛ !

ଆମ୍ଭେମାନେ ମଧ୍ୟ ସେହିଭଳି କରିଥାଉ । ପାପ ମୁହଁ ଖୋଲିକରି ବସିଛି । "ଏହା କ'ଣ' କହି-କହି ବାସ, ତା ଭିତରକୁ ପ୍ରବେଶ କରିଯାଆନ୍ତି । ଭିତରକୁ ପ୍ରବେଶ କଲା ପରେ ପାପ ତାର ମୁହଁ ବନ୍ଦ କରିଦିଏ ଏବଂ ଆମେ ପାପକର୍ମ କରି ଚାଲିଥାଉ । ଏହି କଥାକୁ ଚିହ୍ନିବାକୁ ଜାଣିବା ଉଚିତ ଯେ ସେଇ ପାପ ମୁହଁ ଖୋଲି କରି ବସିଛି । ଆମକୁ ଆମନ୍ତ୍ରଣ ଦେଉଛି । କ'ଣ ଏ ଭିତରକୁ ଯିବା ଉଚିତ୍ ? ଆମକୁ କେଉଁ ଆଡ଼କୁ ଯିବା ଉଚିତ୍, ପ୍ରଥମରୁ ଏହାକୁ ଭଲ ଭାବରେ ବିଚାର କରିନେବା ଉଚିତ୍ ।

## ବ୍ରହ୍ମାଜୀଙ୍କର ମୋହ

ଏଠାରେ ଗୋଟିଏ କଥା କୁହାଯାଇଛି ଯେ, ଯେତେବେଳେ ଏହି ଘଟଣା ହେଲା, ସେତେବେଳେ ଭଗବାନଙ୍କୁ ପାଞ୍ଚବର୍ଷ ହୋଇଥିଲା । କିନ୍ତୁ ଏକବର୍ଷ ପରେ ପିଲାମାନେ ନିଜ ନିଜ ମାତା-ପିତାଙ୍କୁ ଏହି ଘଟଣା ଶୁଣାଉଛନ୍ତି ଯେ ଆଜି ଭଗବାନ ବାଳକୃଷ୍ଣ ଅଜଗରକୁ ମାରିଛନ୍ତି । ଏକବର୍ଷ ପରେ ଶୁଣାଇଛନ୍ତି ତ ରାଜା ପରୀକ୍ଷିତଙ୍କୁ ଶଙ୍କା ହେଲା। ସେ ଭଗବାନ ଶୁକଦେବ ଜୀଙ୍କୁ ପଚାରୁଛନ୍ତି ଏକ ବର୍ଷ ପୂର୍ବର କଥାକୁ ଏ ପିଲାମାନେ ଏପରି କହୁଛନ୍ତି, ସତେ ଯେପରି ଘଟଣାଟି ଆଜି ହିଁ ଘଟିଛି । ତାହା କିପରି ? ଶ୍ରୀ ଶୁକଦେବ ଜୀ କହୁଛନ୍ତି, ଭଗବାନ ଯେତେବେଳେ ଅଘାସୁରଠାରୁ ସମସ୍ତଙ୍କୁ ବଞ୍ଚାଇଲେ, ସେତେବେଳେ ସେ ସମସ୍ତଙ୍କୁ ଯମୁନା ଜୀଙ୍କର କୂଳକୁ ନେଇ ଆସିଲେ । ପୁଣି କହିବାକୁ ଲାଗିଲେ ଯେ, ଦେଖ ତ ସତରେ ଏଠିକାର ବାଲୁକା କେତେ କୋମଳ, ଏଠାରେ ସବୁ କିଛି କେତେ ରମଣୀୟ ଲାଗୁଛି । ଏହି ସ୍ଥାନଟି ଆମ ଖେଳକୁଦ ପାଇଁ ବେଶ ବଢ଼ିଆ ହୋଇଛି । ଏବେ ପ୍ରଥମେ ଆମେ ଏଇଠାରେ ଭୋଜନ କରିନେବା ଉଚିତ୍ । ପାଖରେ ବାଛୁରୀମାନଙ୍କ ନିମନ୍ତେ କଅଁଳିଆ ଶାଗୁଆ ଘାସ ମଧ୍ୟ ଅଛି । ସେମାନେ ସେଠାରେ ଚରୁଥାଆନ୍ତୁ । ଏହି କଥା ସମସ୍ତଙ୍କୁ ପସନ୍ଦ ହେଲା ତ ସେମାନେ ସମସ୍ତେ କହିଲେ ଠିକ ଅଛି । ଏଠାରେ ଅତି ସୁନ୍ଦର ଭାବେ ବର୍ଣ୍ଣନ କରାଯାଇଛି ଯେ, ବାଛୁରୀମାନେ ତ ଘାସ ଚରିବାକୁ ଚାଲିଗଲେ, କିନ୍ତୁ ସମସ୍ତ ଗୋପାଳବାଳକମାନେ ଭଗବାନଙ୍କର ଚାରିପଟେ ଘେରି ହୋଇ ବସିଗଲେ  ଏବେ ଦେଖନ୍ତୁ -

**ସର୍ବେ ମିଥୋ ଦର୍ଶୟନ୍ତଃ ସ୍ୱସ୍ୱଭୋଜ୍ୟରୁଚିଂ ପୃଥକ୍ ।**
**ହସନ୍ତୋ ହାସୟନ୍ତଶ୍ଚାଭ୍ୟବଜହ୍ରୁଃ ସହେଶ୍ୱରାଃ ॥ (୧୦.୧୩.୧୦)**
**ବିଭ୍ରଦ୍ ବେଣୁଂ ଜଠରପଟୟୋଃ ଶୃଙ୍ଗବେତ୍ରେ ଚ କକ୍ଷେ**
**ବାମେ ପାଣୌ ମସୃଣକବଳଂ ତତ୍‌ଫଳାନ୍ୟଙ୍ଗୁଳୀଷୁ ।**
**ତିଷ୍ଠନ୍ ମଧ୍ୟେ ସ୍ୱପରିସୁହୃଦୋ ହାସୟନ୍ ନର୍ମଭିଃ ସ୍ୱୈଃ**
**ସ୍ୱର୍ଗେଲୋକେ ମିଷତି ବୁଭୁଜେ ଯଜ୍ଞଭୁଗ୍ ବାଲକେଲିଃ ॥ (୧୦.୧୩.୧୧)**

ଭଗବାନ ଶ୍ରୀକୃଷ୍ଣ ଛୋଟିଆ - ହଳଦିଆ ଲୁଗା ଧାରଣ କରିଛନ୍ତି, "**ଜଠରପଟୟୋ**" ଅଣ୍ଟାରେ ବଂଶୀଟିକୁ ଖୋସି ଦେଇଛନ୍ତି "**ଶୃଙ୍ଗବେତ୍ରେ ଚ କକ୍ଷେ**" ଏବଂ ନିଜର ସିଂଗା ତଥା ବେତକୁ ନିଜ କାଖରେ ଯାକି ଧରିଛନ୍ତି, "**ବାମେପାଣୌ**

**ମସୃଣକବଲଂ"** ବାମ ହାତରେ ଦହି ଭାତ ନେଇ ବସିଛନ୍ତି, **"ତତ୍ଫଲାନ୍ୟଙ୍ଗୁଳିଷୁ'** ଲେମ୍ବୁ, ଅଁଳା, ଆମ୍ବଡ଼ା, ଅଦା ଆଦିର ଆଚାରକୁ ଆଙ୍ଗୁଳିଗୁଡ଼ିକ ଭିତରେ ଚାପି ରଖିଛନ୍ତି, **"ତିଷ୍ଠନ୍ ମଧ୍ୟେ ସ୍ୱପରିସୁହୃଦୋ ହାସୟନ୍ ନର୍ମଭିଃ ସ୍ୱୈଃ"** ଏବଂ ମଝିରେ ବସି ହାସ୍ୟ ଭରା କଥା, କୌତୁକିଆ କଥା ଆଦି ଶୁଣାଇ ସମସ୍ତ ଗୋପାଳବାଳକମାନଙ୍କୁ ହସାଉଛନ୍ତି । **"ସ୍ୱର୍ଗେ ଲୋକେ ମିଷତି"** ସ୍ୱର୍ଗର ଦେବତାମାନେ ମଧ୍ୟ ଏହି ଅଦ୍ଭୁତଲୀଳାକୁ ଦେଖି ଆଶ୍ଚର୍ଯ୍ୟଚକିତ ହେଉଥିଲେ ଯେ ସମସ୍ତ ଯଜ୍ଞର ଭୋକ୍ତା ସ୍ୱୟଂ ଭଗବାନ ଯାହାକି ଆମ ନିମନ୍ତେ କରାଯାଉଥିବା ଯଜ୍ଞରେ ଏତେ ଶୀଘ୍ର ଆସନ୍ତି ନାହିଁ, ସେ ହିଁ ଏଠାରେ ପିଲାମାନଙ୍କ ସହିତ ହସ-ଖୁସି କରି ଭୋଜନ କରୁଛନ୍ତି ।

ଏହିପରି ଭାବରେ ଭୋଜନରେ ଆନନ୍ଦରତ ହୋଇ ସମସ୍ତ ଗୋପାଳବାଳକ ଭଗବାନଙ୍କ ସହିତ ବସି ହସ-ଖୁସି କରୁଥିଲେ ଓ ଖାଉଥିଲେ ମଧ୍ୟ, ଏତିକିବେଳେ ସେମାନଙ୍କର ଧ୍ୟାନ ଭଗବାନଙ୍କୁ ଛାଡ଼ି ବାଛୁରୀମାନଙ୍କ ଆଡ଼କୁ ଚାଲିଗଲା । ସବୁଜ ଭରା ଘାସର ଲୋଭରେ ସେମାନେ ଦୂର ଜଙ୍ଗଲ ଆଡ଼କୁ ଚାଲି ଯାଇଥିଲେ । ଗୋପବାଳକମାନେ କହିବାକୁ ଲାଗିଲେ - ଆରେ ! ଆମ ବାଛୁରୀମାନେ କୁଆଡ଼େ ଗଲେ ? ଅର୍ଥାତ୍ ସେମାନଙ୍କର ଧ୍ୟାନ ଭଗବାନଙ୍କଠାରୁ ହଟି ଗଲା । ବାଛୁରୀ ଅବା ଗୋବତ୍ସକୁ ତଥା ଗାଈକୁ "ଗୋ' ମଧ୍ୟ କୁହାଯାଏ । ତେବେ ଏଠାରେ ବାଛୁରୀର ଅର୍ଥ ଇନ୍ଦ୍ରିୟଗୁଡ଼ିକ । ଆମ୍ଭମାନଙ୍କର ଇନ୍ଦ୍ରିୟମାନେ ମଧ୍ୟ କେବେ କେବେ ଭଗବାନଙ୍କୁ ଛାଡ଼ି ଦେଇ ଚରିବା ପାଇଁ ଚାଲି ଯାଆନ୍ତି । ଏଇ ବାଛୁରୀମାନେ ତ ଏ ପର୍ଯ୍ୟନ୍ତ ଭଗବାନଙ୍କ ଆଖପାଖରେ ଥିଲେ । ସେମାନଙ୍କୁ ସବୁଜ ଘାସ ଦେଖାଗଲା, ତ ସେମାନେ ଭଗବାନଙ୍କୁ ଛାଡ଼ି ଦେଇ ଘାସ ଚରିବାକୁ ଚାଲିଗଲେ ।

ଏହିଭଳି, ଆମ୍ଭମାନଙ୍କର ଇନ୍ଦ୍ରିୟମାନେ ମଧ୍ୟ କେଉଁଆଡ଼େ - କେଉଁଆଡ଼େ ଯାଇଥା'ନ୍ତି । କେଉଁଠାରେ ଟି.ଭି.ରେ କୌଣସି ଭଲ ଧାରାବାହିକ ଚାଲିବ, ତ କହନ୍ତି ଆଜି ଭାଗବତ ପ୍ରବଚନକୁ ଯିବି ନାହିଁ । ଏପରି ହୁଏ ନା ? ଆଜି କଥାକୁ ଯିବି ନାହିଁ, ଜ୍ଞାନ ଯଜ୍ଞକୁ ଯିବି ନାହିଁ, ଏଭଳି ହୋଇଯାଏ । ଯେପରି ବାଛୁରୀମାନଙ୍କୁ ଘାସ ଯେଉଁଠି ଦେଖାଗଲା ତ, ସେମାନେ ସେଠାକୁ ଚାଲିଗଲେ, ସେହିପରି ଆମର ଇନ୍ଦ୍ରିୟଗୁଡ଼ିକ ମଧ୍ୟ ଯାଇଥାଆନ୍ତି । ପୁଣି ଏବେ ଏ ଗୋପବାଳକମାନେ କ'ଣ ? କାହାର ପ୍ରତୀକ ? ଏମାନେ ଗାଈ ଏବଂ ବାଛୁରୀର ଇନ୍ଦ୍ରିୟଗୁଡ଼ିକର ସୁରକ୍ଷା କରନ୍ତି । ସେମାନେ ମଧ୍ୟ ଇନ୍ଦ୍ରିୟମାନଙ୍କ ପଛେ ପଛେ ଯିବାକୁ ଲାଗିଲେ। ଭଗବାନ କହିଲେ, ଆରେ ! ମୁଁ ଏଠାରେ ବସିଛି ଏବଂ ପ୍ରଥମେ ଇନ୍ଦ୍ରିୟମାନେ ଗଲେ, ପୁଣି ତା ପଛେ - ପଛେ

ଗୋପବାଳକ ଅର୍ଥାତ ମନ ମଧ୍ୟ ଯାଉଛି । ଯଦି ଇନ୍ଦ୍ରିୟମାନେ "ଗୋ' ଅଟନ୍ତି, ତେବେ ଗୋପବାଳକମାନେ ମନ ଅଟନ୍ତି ।

ଯେତେବେଳେ ଗୋପବାଳକମାନଙ୍କର ଧ୍ୟାନ ବାଛୁରୀଆଡ଼କୁ ଗଲା ତ ସେମାନେ ସେମାନଙ୍କୁ ଖୋଜିବା ନିମନ୍ତେ ଯିବାକୁ ଲାଗିଲେ । ଭଗବାନ ଭାବୁଛନ୍ତି, ଏମାନଙ୍କୁ ସମ୍ଭାଳିବା ଉଚିତ୍, ଏମାନେ ମଧ୍ୟ ଉଦ୍‌ବିଗ୍ନ ହୋଇଯାଉଛନ୍ତି । ଭଗବାନ ଗୋପବାଳକମାନଙ୍କୁ କହିଲେ, "ତୁମ୍ଭେମାନେ ଏହିଠାରେ ଭୋଜନ କରୁଥାଅ, ମୁଁ ଶିଘ୍ର ବାଛୁରୀମାନଙ୍କୁ ଖୋଜି ଆଣିବି ।" ଏପରି କହି ଭଗବାନ ଚାଲିଲେ ।

ବ୍ରହ୍ମାଜୀ ସବୁ କିଛି ଦେଖୁଛନ୍ତି, "ଅଘ'ର ମୋକ୍ଷ ଦେଖି ପ୍ରଥମରୁ ହିଁ ତାଙ୍କର ବିସ୍ମୟ ହୋଇଥିଲା ଯେ ଏହା (ଅଘ-ପାପର ମୁକ୍ତି) ବେଦ ବିରୁଦ୍ଧ ଅଟେ । ଏବେ ବ୍ରହ୍ମାଜୀଙ୍କର ମୋହ ହେଲା । ତାଙ୍କୁ ଲାଗିଲା ଏହି ଛୋଟ ବାଳକଟି ନ ଜାଣି ଏଠାରେ କଣ କଣ କରୁଛି ? ଏହି ଛୋଟ ଛୋଟ ବାଳକମାନେ, ସ୍ତ୍ରୀମାନେ, ପୁରୁଷମାନେ - ଏତିକି ନୁହେଁ ତ ବଡ଼ ବଡ଼ ବୃଦ୍ଧମାନେ ମଧ୍ୟ, ସମସ୍ତେ ଏହା ପଛରେ ପାଗଳ ହେଉଛନ୍ତି। ଏ ପିଲା ବାଳ ଠାରୁ ବୃଦ୍ଧ ପର୍ଯ୍ୟନ୍ତ ସମସ୍ତଙ୍କର ପ୍ରିୟ ହୋଇଯାଇଛି । ଏ ପିଲାଠାରେ କ'ଣ ଅଛି ? ଦେଖନ୍ତୁ, ଭଗବାନ ତ ପ୍ରଥମରୁ ହିଁ ବ୍ରହ୍ମାଜୀଙ୍କୁ କହିଦେଇଛନ୍ତି ଯେ ମୁଁ ଅବତାର ନେଇ ଆସିବି, କିନ୍ତୁ ସେଥିରେ ମଧ୍ୟ ତାଙ୍କ ଲୀଳାକୁ ଦେଖି ଦେଖି ଏକେ ତ ବ୍ରହ୍ମାଜୀଙ୍କର ମୋହ ହୋଇଗଲା ଏବଂ ତାଙ୍କୁ ଯେଉଁ ସମସ୍ତଙ୍କଠାରୁ ସମ୍ମାନ ମିଳୁଥିଲା, ଏସବୁ ଦେଖି ମଧ୍ୟ ତାଙ୍କୁ (ବ୍ରହ୍ମାଜୀଙ୍କୁ) ଲାଗିଲା, ଏ ସବୁ କଣ, ଏମାନେ ସମସ୍ତେ ତାଙ୍କର ପୂଜା କରୁଛନ୍ତି, ତାଙ୍କୁ ଏତେ ପ୍ରେମ କରୁଛନ୍ତି । ମୁଁ ଦେଖିବାକୁ ଚାହୁଁଛି ଯେ ତାଙ୍କ ପାଖରେ ଏପରି କଣ ଶକ୍ତି ଅଛି ? ଦ୍ୱିତୀୟ କଥା, ସେ ଭଗବାନଙ୍କର ଅନ୍ୟ କୌଣସି ଲୀଳା ଦେଖିବାକୁ ଇଚ୍ଛା ହେଲା । ସେ ପ୍ରଥମେ ସବୁ ବାଛୁରୀମାନଙ୍କୁ ଏବଂ ପୁଣି ସମସ୍ତ ଗୋପବାଳକମାନଙ୍କୁ ଏକ ପର୍ବତର ଗୁମ୍ଫାରେ ଲୁଚାଇ ଦେଲେ ଏବଂ ଗୁମ୍ଫା ବନ୍ଦ କରିଦେଲେ, ପୁଣି ସମସ୍ତଙ୍କୁ ଚେତା ଶୂନ୍ୟ କରାଇଦେଲେ । କହିଲେ - ଏବେ ମୁଁ ଦେଖିବି ସେ କ'ଣ କରୁଛନ୍ତି ? ବ୍ରହ୍ମାଜୀ ବିଚାର କଲେ ଯେ ଦେଖିବି ଏବେ ଏ ସମସ୍ତ ବାଛୁରୀମାନଙ୍କୁ ଏବଂ ଗୋପାବାଳକମାନଙ୍କୁ ଏ କିପରି ଭାବରେ ଫେରାଇ ଆଣୁଛି ।

ଭଗବାନ ଅନେକ ପାହାଡ଼, ଗୁମ୍ଫା ଏବଂ ଅନେକ ଅନେକ ସ୍ଥାନରେ ବାଛୁରୀମାନଙ୍କୁ ଖୋଜିଲେ, କିନ୍ତୁ ପାଇଲେ ନାହିଁ । ଫେରି ଆସି ଦେଖିଲେ, ସେଠାରେ ଗୋପବାଳକମାନେ ମଧ୍ୟ ନାହାନ୍ତି, ଏବେ ସେ ବୁଝିଗଲେ । କହିଲେ, "ଆଚ୍ଛା ବ୍ରହ୍ମାଜୀ ! ମୋ ସହିତ

ଖେଳୁଛ ।" ପ୍ରାରମ୍ଭରୁ ଆମେ ଦେଖୁଛନ୍ତି ଯେ, ବ୍ରହ୍ମାଜୀ ତଥା ଭଗବାନଙ୍କ ମଧ୍ୟରେ କଣ ଅନ୍ତର ଅଛି, ବ୍ରହ୍ମାଜୀଙ୍କ ସୃଷ୍ଟିରେ ଏବଂ ନାରାୟଣ ଭଗବାନଙ୍କ ସୃଷ୍ଟିରେ କଣ ପ୍ରଭେଦ ଅଛି । ପ୍ରଥମେ ଜୀବ ଅର୍ଥାତ୍ ଉପାଦାନ କାରଣ ଥିବ, ତାପରେ ସେମାନଙ୍କର ଧର୍ମ ଅନୁସାରେ ହିଁ ବ୍ରହ୍ମାଜୀ ସୃଷ୍ଟି ନିର୍ମାଣ କରନ୍ତି । ସେ ନୂତନ ପଦାର୍ଥ ସୃଷ୍ଟି କରି ପାରନ୍ତି ନାହିଁ। ନୂତନ ଜୀବର ସୃଷ୍ଟି ସେ କରିପାରନ୍ତି ନାହିଁ । ନୂତନ କର୍ମ ଉତ୍ପନ୍ନ କରିପାରନ୍ତି ନାହିଁ । ନାରାୟଣ ଭଗବାନଙ୍କର ଏଇ ସବୁ ବସ୍ତୁର କୌଣସି ଆବଶ୍ୟକତା ପଡ଼େ ନାହିଁ। କୌଣସି ଆଲମ୍ବନ ବିନା ସେ ସବୁ କିଛି ନିର୍ମାଣ କରିପାରନ୍ତି । "ସଙ୍ଗ ସହାୟ ନ ଦୂଜା" ତାଙ୍କୁ ଅନ୍ୟ କାହାର ଆଶ୍ରୟର ଆବଶ୍ୟକତା ମଧ୍ୟ ପଡ଼େ ନାହିଁ ।

ଭଗବାନ ଦେଖିଲେ ବ୍ରହ୍ମାଜୀ କେବଳ ବାଛୁରୀମାନଙ୍କୁ ନୁହେଁ, ଗୋପାଳବାଳକ ମାନଙ୍କୁ ମଧ୍ୟ ନେଇ ଯାଇଛନ୍ତି । ଭଗବାନ ସ୍ୱୟଂ ଅନେକ ରୂପରେ ପ୍ରକଟ ହୋଇଗଲେ, ଯେତେ ଗୋପବାଳକ ଥିଲେ, ଯେତେ ବାଛୁରୀ ଥିଲେ, ସେମାନଙ୍କର ଯେଉଁ ଆୟୁ ଥିଲା, ସେମାନଙ୍କର ଯେଉଁଭଳି ଚାଲିବା, କହିବା, ହସିବା, ବସିବା, ଉଠିବା ଆଦି ଥିଲା, ସେ ସମସ୍ତ ଯେପରି ଥିଲା ଅବିକଳ ସେହିପରି ରହିଥିଲା, ବାସ, କେବଳ ଏତିକି ଅନ୍ତର ଥିଲା ଯେ ସେହି ସେହି ରୂପରେ ଏବେ ସ୍ୱୟଂ ଭଗବାନ ଥିଲେ, ଗୋପାଳବାଳକ ଏବଂ ବାଛୁରୀମାନେ ନ ଥିଲେ । ସେମାନଙ୍କର ମାତା-ପିତାଙ୍କୁ ଜଣା ମଧ୍ୟ ପଡ଼ିଲା ନାହିଁ ଯେ ନିଜର ପିଲା ବଦଳି ଯାଇଛି । ଯଦ୍ୟପି ଗୋଟିଏ କଥା ଅବଶ୍ୟ ଥିଲା ଯେ, ଏବେ ସେମାନେ ନିଜର ପିଲାମାନଙ୍କ ପ୍ରତି ଏବଂ ଗାଈମାନଙ୍କର ନିଜ ନିଜ ବାଛୁରୀ ପ୍ରତି ଅଧିକା ପ୍ରେମ ହେବାକୁ ଲାଗିଥିଲା ତଥାପି ସେମାନେ ବୁଝିପାରୁନଥିଲେ ଯେ ଏବେ ଆମ ପିଲାମାନଙ୍କ ପ୍ରତି ଏତେ ଅଧିକା ପ୍ରେମ କାହିଁକି ହେଉଛି । ସେମାନେ ସମସ୍ତେ ନିଜର ପିଲାମାନଙ୍କୁ ଅଧିକା ପ୍ରେମ କରିବାକୁ ଲାଗିଲେ । ପୂର୍ବଭଳି ଭଗବାନ ପ୍ରତିଦିନ ସକାଳେ ସେମାନଙ୍କୁ ଉଠାନ୍ତି, ସଙ୍ଗରେ ନେଇଯାଆନ୍ତି ଏବଂ ଖେଳାଖେଳି କରି ବାଛୁରୀମାନଙ୍କୁ ଚରାଇ ସେମାନଙ୍କୁ ସଙ୍ଗରେ ନେଇ ଫେରି ଆସନ୍ତି । ଏକ ବର୍ଷ ପର୍ଯ୍ୟନ୍ତ ଏହିଭଳି ଏ ସବୁ ଚାଲିଲା ।

ଏକ ବର୍ଷ ପରେ ବ୍ରହ୍ମାଜୀ ସେଠାରେ ଆସି ଦେଖନ୍ତି ଯେ ଭଗବାନ ସମସ୍ତଙ୍କ ସାଥିରେ ବସିଛନ୍ତି । ଦେଖୁ - ଦେଖୁ ହିଁ ଅଚାନକ ସେହି ଦୃଶ୍ୟ ବଦଳିଗଲା । ସେଠାରେ ଯେତେ ଗୋପବାଳକ ଥିଲେ ଜଣ ଜଣ କରି ସମସ୍ତେ ଶଙ୍ଖ, ଚକ୍ର, ଗଦା, ପଦ୍ମଧାରୀ ବିଷ୍ଣୁଙ୍କର ରୂପରେ ତାଙ୍କୁ ଦୃଶ୍ୟ ହେବାକୁ ଲାଗିଲେ। ସେ ନିଜ ମୁଣ୍ଡରେ ହାତ ରଖି କହିଲେ ଯେ ମୁଁ କିଭଳି ମୂଢ଼ ଅଟେ । ମୁଁ କିଭଳି ମୋହରେ ପଡ଼ିଗଲି । ଏପରି କାର୍ଯ୍ୟ

କଲି । ଏ ତ ଭଗବାନ ହିଁ ବସିଛନ୍ତି । ବ୍ରହ୍ମାଜୀ ସମ୍ମୁଖକୁ ଆସି ନମସ୍କାର କରୁଛନ୍ତି, କହୁଛନ୍ତି ଭଗବାନ ମୋତେ କ୍ଷମା କରି ଦିଅନ୍ତୁ ।

**ଉତ୍କ୍ଷେପଣଂ ଗର୍ଭଗତସ୍ୟ ପାଦୟୋଃ**
**କିଂ କଲ୍ପତେ ମାତୁରଧୋକ୍ଷଜାଗସେ ।**
**କିମସ୍ତି-ନାସ୍ତିବ୍ୟପଦେଶଭୂଷିତଂ**
**ତବାସ୍ତି କୁକ୍ଷେଃ କିୟଦପ୍ୟନନ୍ତଃ ॥ (୧୦.୧୪.୧୨)**

ବ୍ରହ୍ମାଜୀ ଏଠାରେ ଏକ ସୁନ୍ଦର କଥା କହିଲେ ଯେ, ଭଗବାନ ! ପିଲାଟି ଯେତେବେଳେ ମା'ଙ୍କ ଗର୍ଭରେ ଥାଏ ତ, ସେଠାରେ କେତେବେଳେ ପାଦ ହଲାଉ ଥାଏ ତ କେତେବେଳେ ମା'କୁ ପହଞ୍ଚାଇ ଥାଏ, ପରନ୍ତୁ ମା' ତାକୁ ଖରାପ ଭାବେ ନାହିଁ। ସେହିପରି ଆମେ ମଧ୍ୟ ଆପଣଙ୍କ ପେଟ ଭିତରେ ରହି ପାଦରେ ଆପଣଙ୍କୁ ମାରି ଚାଲିଛୁ, ଆମେ ମଧ୍ୟ ଛୋଟ ଛୋଟ ବାଳକ ଅଟୁ, ଆପଣ ସେ ସବୁକୁ କିଛି ଦୋଷ ଖରାପ ଭାବନ୍ତୁ ନାହିଁ । ଆପଣ ମୋତେ କ୍ଷମା କରିଦିଅନ୍ତୁ ।

**ଅହୋ ଭାଗ୍ୟମହୋ ଭାଗ୍ୟଂ ନନ୍ଦଗୋପବ୍ରଜୌକସାମ୍ ।**
**ୟନ୍ମିତ୍ରଂ ପରମାନନ୍ଦଂ ପୂର୍ଣ୍ଣଂ ବ୍ରହ୍ମ ସନାତନମ୍ ॥ (୧୦.୧୪.୩୨)**

ଦେଖନ୍ତୁ, ବ୍ରଜର ଲୋକମାନଙ୍କର କିପରି ଭାଗ୍ୟ, ନନ୍ଦବାବାଙ୍କର, ବ୍ରଜର ଗୋପମାନଙ୍କର, ଗୋପାଳବାଳକମାନଙ୍କର କିପରି ଭାଗ୍ୟ ଯେ ସାକ୍ଷାତ୍ ସଚ୍ଚିଦାନନ୍ଦ ବ୍ରହ୍ମ ହିଁ ସେମାନଙ୍କର ପୁତ୍ର ମିତ୍ର ହୋଇ ବସିଛନ୍ତି ଏବଂ ତାଙ୍କ ସହିତ ହସୁଛନ୍ତି, ଖେଳୁଛନ୍ତି, ଦୌଡୁଛନ୍ତି, ଭୋଜନ କରୁଛନ୍ତି, କେତେ ପ୍ରକାର ଖେଳ ମଧ୍ୟ କରୁଛନ୍ତି । ଧନ୍ୟ ଏମାନଙ୍କର ଭାଗ୍ୟ ।

**ଅନୁଜାନୀହି ମାଂ କୃଷ୍ଣ ସର୍ବ ତ୍ୱଂ ବେତ୍ସି ସର୍ବଦୃକ ।**
**ତ୍ୱମେବ ଜଗତାଂ ନାଥୋ ଜଗଦେତତ୍ତବାର୍ପିତମ୍ ॥**

ବ୍ରହ୍ମାଜୀ ପୁଣି କହୁଛନ୍ତି, "ଏହି ସମ୍ପୂର୍ଣ୍ଣ ଜଗତ ଆପଣଙ୍କର ଚରଣରେ ଅର୍ପିତ । ଆପଣ ସର୍ବଜ୍ଞ, ସର୍ବଶକ୍ତିମାନ, ସର୍ବେଶ୍ୱର, ସର୍ବବ୍ୟାପୀ ଭଗବାନ ଅଟନ୍ତି । ଆପଣ ମୋତେ କ୍ଷମା କରିଦିଅନ୍ତୁ ।" ଭଗବାନ କହିଲେ, "ଆଚ୍ଛା, ଠିକ୍ ଅଛି, କ୍ଷମା କରି ଦେଲି । ସେ ବ୍ରହ୍ମାଜୀଙ୍କର ମୋହକୁ ଦୂର କରି ଦେଲେ ।

(କୌଣସି କଳ୍ପରେ) ଏପରି କଥା ମଧ୍ୟ ମିଳେ ଯେ ବ୍ରହ୍ମାଜୀଙ୍କର ଯେତେବେଳେ ମୋହ ହୋଇଗଲା ସେ ଥରେ ଗୋଲକକୁ ଗଲେ । ସେଠାରେ ଯାଇ ଦେଖନ୍ତି କଣ ଯେ ଶ୍ରୀକୃଷ୍ଣଙ୍କର ସଖୀମାନେ ଖଣ୍ଡେ ବାଡ଼ି ଧରି ଠିଆ ହୋଇଛନ୍ତି । ସେମାନେ ବ୍ରହ୍ମାଜୀଙ୍କୁ ଭିତରକୁ ଯିବାକୁ ଦେଲେ ନାହିଁ । ସେଇଠି ରୁହ, ତୁମେ କିଏ ? (ବ୍ରହ୍ମାଜୀ) କହିଲେ, ମୁଁ ବ୍ରହ୍ମା ଅଟେ । ବ୍ରହ୍ମା ? କେଉଁ ବ୍ରହ୍ମାଣ୍ଡର ବ୍ରହ୍ମା ? ବ୍ରହ୍ମାଜୀ କହିଲେ - ବ୍ରହ୍ମାଣ୍ଡ ମଧ୍ୟ ଅନେକ ଅଛି କି ? ଆରେ, ଏଠାକୁ ସବୁବେଳେ ବ୍ରହ୍ମାମାନେ ଆସୁଛନ୍ତି । ତୁମେ କେଉଁ (ବ୍ରହ୍ମାଣ୍ଡର) ବ୍ରହ୍ମା, ତାଙ୍କୁ ଏପରି ପ୍ରଶ୍ନ ପଚାରିଲେ । ବ୍ରହ୍ମାଜୀଙ୍କର ଏପରି କଥା ମଧ୍ୟ ଆସେ ।

ଥରେ ବ୍ରହ୍ମାଜୀଙ୍କର ମୋହ ହୋଇଗଲା ଯେ ମୁଁ ବହୁତ ବଡ଼ । ସେତେବେଳେ ସେ ମରୁଭୂମି ଦେଇ କୁଆଡ଼େ ଯାଉଥିଲେ ତ ତାଙ୍କୁ ପାର ହେବା ପାଇଁ ରାସ୍ତା ମିଳୁ ନ ଥିଲା । ଗୋଟିଏ ଲମ୍ବା ଧାଡ଼ି କରି ବହୁତ ଓଟ ଯାଉଥିଲେ । ସେମାନଙ୍କ ଉପରେ (ଭାର) ସବୁ ଲଦା ହୋଇଥିଲା । ଓଟ ଚାଳକମାନେ ବ୍ରହ୍ମାଙ୍କ ଆଡ଼କୁ ଚାହୁଁ ମଧ୍ୟ ନ ଥିଲେ । ସେମାନେ ତାଙ୍କ ନିଜ ରାସ୍ତାରେ ଚାଲି ଯାଉଥିଲେ । ବ୍ରହ୍ମାଜୀ ଦେଖିଲେ ଯେ ଏ ଧାଡ଼ି ଶେଷ ହେଉନାହିଁ । (ଯେପରି ମୁମ୍ବାଇରେ ମେରିନ ଡ୍ରାଇଭ୍‌ରେ ଗୋଟିକ ପରେ ଗୋଟିଏ ବାହନ ଆସୁଥାଆନ୍ତି, ଲୋକମାନେ ପାରି ହୋଇପାରନ୍ତି ନାହିଁ।) ତେବେ ବ୍ରହ୍ମାଜୀ ଜଣକୁ କହିଲେ ଯେ, ଭାଇ, ତୁ ଟିକିଏ ରହିଯା । ସେ ଅଟକିଲା ନାହିଁ, ଦେଖୁ ମଧ୍ୟ ନାହିଁ । ବ୍ରହ୍ମା ଜୀ ବିଚାର କଲେ ମୁଁ “ବ୍ରହ୍ମା” ଏହାକୁ ବନ୍ଦ କରୁଛି, ପୁଣି ଏ ରହୁନାହିଁ, କଥା କ’ଣ ? ଶେଷରେ ସେ କ୍ରୋଧରେ ଜଣକୁ ଅଟକାଇ ଦେଲେ ଏବଂ ତାଙ୍କୁ ପଚାରିଲେ ଓଟ ଉପରେ କଣ ସବୁ ଲଦି କରି ନେଉଛ ? ସେ କହୁଛି, “ଏମାନେ ସବୁ ବ୍ରହ୍ମାଜୀ ଅଟନ୍ତି । ନୂଆ ନୂଆ ବ୍ରହ୍ମାଣ୍ଡ ସୃଷ୍ଟି ହେଉଛି, ସେଠାରେ ଏମାନଙ୍କୁ ନିଯୁକ୍ତି ଦିଆଯିବ, ସେଥିପାଇଁ ସେମାନଙ୍କୁ ନେଇଯାଉଛୁ ।” ବ୍ରହ୍ମାଜୀ କହିଲେ - ନମସ୍ତେ ! ସେ ବୁଝିଗଲେ ଯେ, ମୁଁ ବ୍ରହ୍ମା ହେବାର ଅଭିମାନ ହେଉଥିଲା ତାହା କେବଳ ବ୍ୟର୍ଥ । ତାଙ୍କ ଭଳି କେଜାଣି କେତେ ବ୍ରହ୍ମା ଅଛନ୍ତି। ଯେପରି କୌଣସି ଛୋଟ ଗାଁରେ କେହି ଇଂଜିନିୟର, ଡାକ୍ତର ତଥା କଲେକ୍ଟର ହୋଇଥିବ ତ ତାକୁ ଲାଗେ ଯେ ମୁଁ ଜଣେ ବହୁତ ବଡ଼ ମଣିଷ। କିନ୍ତୁ ମୁମ୍ବାଇ ଭଳି ସହରରେ ଇଂଜିନିୟର, କଲେକ୍ଟର, ଡାକ୍ତର ଥିବେ, କିଛି ଜଣାପଡୁଛି ? ତାର କିଛି ହିସାବ ଅଛି ? ଛୋଟ ସହରରେ ଲୋକମାନେ ନିଜକୁ ବହୁତ ବଡ଼ ବୋଲି ଭାବି ବସିଯାଆନ୍ତି। ଏହିପରି ସ୍ଥିତି ବ୍ରହ୍ମାଜୀଙ୍କର ମଧ୍ୟ ହୋଇଯାଇଥିଲା । ଏବେ ବ୍ରହ୍ମାଜୀଙ୍କର ମୋହ ଦୂର ହୋଇଗଲା ।

ବ୍ରହ୍ମାଜୀ ଗୁମ୍ଫାରୁ ଗୋପାଳବାଳକମାନଙ୍କୁ ତଥା ବାଛୁରୀମାନଙ୍କୁ ଯଥା ସ୍ଥାନରେ ପହଞ୍ଚାଇ ଦେଲେ । ସେମାନେ ଜାଣି ମଧ୍ୟ ପାରିଲେ ନାହିଁ ଯେ ଏକବର୍ଷ ପର୍ଯ୍ୟନ୍ତ ଆମେ ସେଠାରେ ଗୁମ୍ଫା ଭିତରେ ପଡ଼ି ରହିଥିଲୁ। ସେଥିପାଇଁ ସେମାନେ ଭାବିଲେ ଯେ ଅଘାସୁର ବଧର ଘଟଣା ଆଜିର ହିଁ ଅଟେ । ଭଗବାନଙ୍କର ଆୟୁତ ପାଞ୍ଚରୁ ଛଅ ବର୍ଷ ହୋଇଗଲା, କିନ୍ତୁ ବାଳକମାନେ ଘରକୁ ଆସି କହୁଛନ୍ତି ଯେ ଆଜି (ଭଗବାନ) ସେ ଅଘାସୁରକୁ ମାରିଛନ୍ତି । ଏହା ଭିତରେ ବ୍ରହ୍ମାଜୀଙ୍କର ମୋହକୁ ଭଗବାନ ମର୍ଦ୍ଦନ କରିଛନ୍ତି। ପରୀକ୍ଷିତ ପୁଣି ଶୁକଦେବ ଜୀଙ୍କୁ ପଚାରିଲେ ଯେ ଏମାନେ ସମସ୍ତେ ଶ୍ରୀକୃଷ୍ଣଙ୍କୁ ଏତେ ପ୍ରେମ କାହିଁକି କରୁଥିଲେ ?

**ତସ୍ମାତ୍ ପ୍ରିୟତମଃ ସ୍ୱାତ୍ମା ସର୍ବେଷାମପି ଦେହିନାମ୍ ॥ (୧୦.୧୪.୫୪)**

ଶ୍ରୀ ଶୁକଦେବ ଜୀ କହୁଛନ୍ତି, ସେ ହିଁ ସମସ୍ତ ଦେହଧାରୀମାନଙ୍କର ପ୍ରିୟ ଆତ୍ମା। ସମସ୍ତ ଗୋପାଳବାଳକମାନେ ଯେତେବେଳେ ଶ୍ରୀକୃଷ୍ଣଙ୍କୁ ପ୍ରେମ କରୁଥିଲେ ତ ବାସ୍ତବରେ ସେମାନେ ନିଜେ ନିଜକୁ ପ୍ରେମ କରୁଥିଲେ । ଯଦିବା ସେମାନଙ୍କୁ ଜଣା ନ ଥିଲା ଯେ ସେ ଆମର ନିଜର ଆତ୍ମା ହିଁ ଅଟନ୍ତି । ତାର କାରଣ କେବଳ ଏତିକି ଯେ ଅଜାଣତରେ ମଧ୍ୟ, ନ ଜାଣିକରି ମଧ୍ୟ ସେମାନେ ଶ୍ରୀକୃଷ୍ଣଙ୍କୁ ଅତ୍ୟଧିକ ପ୍ରେମ କରୁଥିଲେ ।

**ପଦଂ ପଦଂ ଯଦ୍ ବିପଦାଂ ନ ତେଷାମ୍ ॥ (୧୦.୧୪.୫୮)**

ଏଭଳି ଦେଖିଲେ ତ ଜୀବନରେ ପାଦେ-ପାଦେରେ ବିପତ୍ତି ଆସିଥାଏ, କିନ୍ତୁ ଯେଉଁମାନେ ଭଗବାନଙ୍କର ପାଦ ଧରିଥାଆନ୍ତି, ଭଗବାନଙ୍କର ଚରଣ କମଳର ଆଶ୍ରୟ ଗ୍ରହଣ କରିନିଅନ୍ତି, ତାଙ୍କର ସମସ୍ତ ବିପଦ ସବୁଦିନ ପାଇଁ ନାଶ ହୋଇଯାଏ । ଏହିପରି ଏହି "ବ୍ରହ୍ମା ସ୍ତୁତି' ନାମକ ଚଉଦ ଅଧ୍ୟାୟ ସମାପ୍ତ ହେଉଛି । ଏବେ ପନ୍ଦର ଅଧ୍ୟାୟ ହେଲା।

**ତତଶ୍ଚ ପୌଗଣ୍ଡବୟଃ ଶ୍ରିତୌ ବ୍ରଜେ**
**ବଭୂବତୁସ୍ତୌ ପଶୁପାଲ ସମ୍ମତୌ ॥ (୧୦.୧୫.୧)**
**ନିରୀକ୍ଷ୍ୟ ରନ୍ତୁଂ ଭଗବାନ୍ ମନୋ ଦଧେ ॥ (୧୦.୧୫.୩)**

ଏବେ ଭଗବାନ ଶ୍ରୀକୃଷ୍ଣ ତଥା ବଳରାମ ଜୀ ଛଅ ବର୍ଷରେ ପ୍ରବେଶ କରିଛନ୍ତି। ସେଥିପାଇଁ ସେମାନଙ୍କୁ ଗାଈ ଚରାଇବା ନିମନ୍ତେ ଅନୁମତି ମିଳିଯାଇଥିଲା । ଗାଈମାନଙ୍କୁ

ଚରାଇ ସେ ବୃନ୍ଦାବନକୁ ପାବନ କରୁଛନ୍ତି । ଭଗବାନ ଶ୍ରୀକୃଷ୍ଣ ତଥା ବଳରାମ ଜୀ, ସମସ୍ତ ଗୋପାଳବାଳକମାନଙ୍କର ନାୟକ ଅଟନ୍ତି । ଯେତେବେଳେ ବି ଗୋପାଳ ବାଳକମାନଙ୍କର ଖେଳ ହେଉଥିଲା ତ ଗୋଟିଏ ପାଖରେ ଶ୍ରୀକୃଷ୍ଣ ନାୟକ ହେଉଥିଲେ ଏବଂ ଅନ୍ୟ ପାଖରେ ବଳରାମ ଜୀ, ଏହିପରି ବିଭାଗ ହେଉଥିଲା ଏବଂ ପୁଣି ଯାହା କିଛି ଖେଳ ହେଲେ ମଧ୍ୟ ସେମାନେ ସମସ୍ତେ ମିଳିମିଶି ଖେଳୁଥିଲେ ।

## ଧେନୁକାସୁରର ଉଦ୍ଧାର

ଗୋଟିଏ ସମୟର କଥା ଶ୍ରୀକୃଷ୍ଣଙ୍କର ସଖା ଶ୍ରୀଦାମା, ସୁବଳ ତଥା ସ୍ତୋକକୃଷ୍ଣ ଆଦି ସମସ୍ତେ ଆସି କହୁଛନ୍ତି ଯେ ଭଗବାନ ଏଠାରେ ତାଳବନ ନାମରେ ଏକ ସୁନ୍ଦର ସ୍ଥାନ ଅଛି । ସେଠାରେ ବହୁତ ଭଲ ତାଳଗଛ ଅଛି, ଯେଉଁଥିରେ ବହୁତ ସୁନ୍ଦର ମିଠା ଫଳ ହୋଇଛି, କିନ୍ତୁ ସେଠାରେ ଏକ ଅସୁର ରହୁଛି । ସେ ଆମକୁ ସେହି ସ୍ଥାନକୁ ଯିବା ପାଇଁ ଦେଉନାହିଁ । ସେହି ଫଳ ଖାଇବାକୁ ଆମର ଇଚ୍ଛା ହେଉଛି । ଯଦି ଆପଣଙ୍କୁ ଭଲ ଲାଗୁଛି, ଆପଣଙ୍କ ମନ ମାନୁଛି ତ ଆପଣ ସେଠାକୁ ଚାଲନ୍ତୁ । ତେବେ ଆମେ ସମସ୍ତେ ସେହି ଫଳକୁ ଖାଇ ପାରିବୁ । ସେତେବେଳେ ସମସ୍ତେ ମିଶି ତାଳବନକୁ ଯାଉଛନ୍ତି । ସେଠାରେ ବଳରାମ ଜୀ ସେହି ଧେନୁକାସୁରକୁ ବଧ କରୁଛନ୍ତି ।

## କାଳିୟ ନାଗର ଦମନ

**ଏବଂ ସ ଭଗବାନ କୃଷ୍ଣୋ ବୃନ୍ଦାବନଚରଃ କ୍ୱଚିତ୍ ।**
**ୟଯୌ ରାମମୃତେ ରାଜନ୍ କାଳିନ୍ଦୀଂ ସଖିଭିର୍ବୃତଃ ॥ (୧୦.୧୫.୪୭)**
**ଅନ୍ୱମଂସତ୍ ତଦ୍ ରାଜନ୍ ଗୋବିନ୍ଦାନୁଗ୍ରହେକ୍ଷିତମ୍ ।**
**ପୀତ୍ୱା ବିଷଂ ପରେତସ୍ୟ ପୁନରୁତ୍ଥାନମାତ୍ମନଃ ॥ (୧୦.୧୫.୫୨)**

ପୁଣି, ଗୋଟିଏ ଦିନ ବଳରାମ ଜୀଙ୍କୁ ନ ନେଇ ଭଗବାନ ନିଜର ସଖା ଗୋପାଳବାଳକଙ୍କ ସହିତ ଯମୁନା ଜୀ କୂଳରେ ପହଞ୍ଚିଲେ । ଜ୍ୟେଷ୍ଠ, ଆଷାଢ଼ର ଗରମରେ ତ୍ରସ୍ତ ହୋଇ ଗୋପାଳବାଳକ, ଗାଈ ଓ ବାଛୁରୀମାନେ ଯମୁନାଜୀଙ୍କର ଜଳପାନ କଲେ, ଯେଉଁ ଜଳ କି ବିଷଯୁକ୍ତ ହୋଇଯାଇଥିଲା । ଦେଖୁ ଦେଖୁ ସମସ୍ତେ ମରିଗଲେ । କିନ୍ତୁ ଭଗବାନ ନିଜର କୃପା ଦୃଷ୍ଟି ଦ୍ୱାରା ସମସ୍ତ ବିଷକୁ ବାହାର କରି ସେମାନଙ୍କୁ ଜୀବିତ କରିଦେଲେ । ଯମୁନା ଜୀଙ୍କ ଜଳ କାହିଁକି ବିଷାକ୍ତ ହୋଇଯାଇଥିଲା ?

କାରଣ ସେଥିରେ କାଳିୟ ନାଗ ଆସି ରହୁଥିଲା । ସେ ଯେଉଁଠି ରହୁଥିଲା, ସେହି କାଳିୟ ହ୍ରଦ (କୁଣ୍ଡ)ର ଜଳ ଏତେ ବିଷାକ୍ତ ହୋଇଯାଇଥିଲା ଯେ ବିଷର ତାପ ଫଳରେ ସେହି ଜଳ ଫୁଟୁଥିଲା । ଏହି କାଳିୟନାଗ ଇନ୍ଦ୍ରିୟର ପ୍ରତୀକ । ଯେପରି ତାର ଅନେକ ଫଣା ଥାଏ, ସେହିଭଳି ଆମର ଇନ୍ଦ୍ରିୟମାନଙ୍କର ଅସଂଖ୍ୟ ପ୍ରବୃତ୍ତି ହୋଇଥାଏ, ଯାହାକି ଆମର ଅନ୍ତଃକରଣକୁ ବିଷଯୁକ୍ତ କରିଦିଏ ।

ଭଗବାନ ଯେତେବେଳେ ଦେଖିଲେ ଯେ ଜଳ ବିଷଯୁକ୍ତ ହୋଇଗଲାଣି, କୌଣସି କାର୍ଯ୍ୟରେ, ଆସିବ ନାହିଁ, ତ ସେ ନିଶ୍ଚୟ କଲେ ଯେ ଏବେ ମୋତେ ଏଥିରେ ପ୍ରବେଶ କରି ଏହି ନାଗକୁ ବାହାରକୁ ନେଇ ଆସିବା ଉଚିତ । ଏପରି ନିଶ୍ଚୟ କରି, ନିକଟରେ ଥିବା ଏକ ଉଚ୍ଚ କଦମ୍ବ ଗଛରେ ଚଢ଼ିଯାଇ **"ନ୍ୟପତଦ୍ ବିଷୋଦେ"** ଶ୍ରୀକୃଷ୍ଣ କାଳିନ୍ଦୀର ସେହି କାଳିୟ ହ୍ରଦରେ ଡେଇଁ ପଡ଼ିଲେ । ସମସ୍ତ ବାଳ-ଗୋପାଳ ମଧ୍ୟ ସେଠାରେ ଥିଲେ, ସେମାନେ ଦେଖୁ ଦେଖୁ ସେ ସହସା ଯମୁନା ଜୀରେ ଡେଇଁ ପଡ଼ିଲେ ଏବଂ ସେଠାରେ ପହଞ୍ଚି ଜଳକୁ ଉଚ୍ଛୁଳାଇ କ୍ରୀଡ଼ା କରିବାକୁ ଲାଗିଲେ । କାଳିୟ ନାଗ ଯେତେବେଳେ ଏହି ଶବ୍ଦ ଶୁଣିଲା ତ ସେ କ୍ରୋଧାନ୍ୱିତ ହୋଇ ସମ୍ମୁଖକୁ ଆସିଗଲା, ପରନ୍ତୁ ସମ୍ମୁଖରେ ଠିଆ ହୋଇଥିବା ଅତି ସୁନ୍ଦର ସୁକୁମାର ମନୋହାରୀ ଶ୍ୟାମବର୍ଣ୍ଣର ବାଳକକୁ କେବଳ ଦେଖି ଦେଇ ସେ ରହିଗଲେ (ଅଟକି ଗଲା), ପରନ୍ତୁ ତାକୁ ନିର୍ଭୟ (ନିଃଶଙ୍କ) ଦେଖି ତାର କ୍ରୋଧ ଆହୁରି ମଧ୍ୟ ବଢ଼ିଗଲା । ସେ ଭଗବାନଙ୍କୁ ନିଜର ପାଶରେ ବାନ୍ଧି ପକାଇଲା ।

ସେଠାରେ ବ୍ରଜରେ କିଛି ଅଶୁଭ ଘଟଣା ହେବାକୁ ଲାଗିଲା, ଉତ୍ପାତ ହେବାକୁ ଲାଗିଲା ତ ସମସ୍ତେ ଭାବୁଛନ୍ତି ଏସବୁ କ'ଣ ହେଉଅଛି ? କୃଷ୍ଣ କୁଆଡ଼େ ଗଲାନ୍ତ କୃଷ୍ଣ କୁଆଡ଼େ ଗଲା ? କେହି ଜଣେ କହିଲେ ସେ ଯମୁନା ଜଳରେ ଡେଇଁ ପଡ଼ିଛନ୍ତି । ଏହା ଶୁଣୁ ଶୁଣୁ ସମସ୍ତେ ବ୍ୟତିବ୍ୟସ୍ତ ହୋଇପଡ଼ିଲେ । ନନ୍ଦବାବା, ଯଶୋଦା ଜୀ, ସମସ୍ତ ଗୋପ-ଗୋପୀମାନେ ସମସ୍ତେ ସେଠାରେ ପହଞ୍ଚି ଯମୁନା କୂଳରେ ଦେଖୁଛନ୍ତି । ଯଶୋଦା ଜୀ ତ ଡେଇଁ ପଡ଼ିବାକୁ ଯାଉଥିଲେ । ନନ୍ଦବାବା ପ୍ରଭୃତି ମଧ୍ୟ ସେହି କାଳିୟ ହ୍ରଦରେ ପଶିବାକୁ ଯାଉଥିଲେ । ବଳରାମ ଜୀ ନିଜ ଭାଇର ପ୍ରଭାବକୁ ତ ଜାଣିଥିଲେ । ସେ କହିଲେ, "ଚିନ୍ତା କରିବାର ଆବଶ୍ୟକତା ନାହିଁ, ଏହି ପାଣିରେ ଯେତେ ବିଷ ହେଉନା କାହିଁକି, ଅଥବା ଆଉ କ'ଣ କିଛି ଥାଉ ନା କାହିଁକି, ଶ୍ରୀକୃଷ୍ଣଙ୍କର ସେ କିଛି ଅନିଷ୍ଟ କରିପାରିବ ନାହିଁ, ତାକୁ କେହି ହାତ ମଧ୍ୟ ଲଗାଇ ପାରିବେ ନାହିଁ, ତାକୁ କେହି ସ୍ପର୍ଶ କରିପାରିବେ ନାହିଁ ।"

ଯେତେବେଳେ ଭଗବାନ ଦେଖିଲେ ଯେ ବଳରାମ ଜୀଙ୍କ ଅତିରିକ୍ତ ସମସ୍ତ ବ୍ରଜବାସୀ ତାଙ୍କ ପାଇଁ ବହୁତ ବ୍ୟାକୁଳ ହେଉଛନ୍ତି, ସେତେବେଳେ ସେ ନିଜେ ନିଜକୁ ବହୁତ ଫୁଲାଇ ଦେଲେ । ତଦ୍ୱାରା କାଳିୟ ନାଗର ଶରୀର ଭାଙ୍ଗିବାକୁ ଲାଗିଲା । ସେ ତାଙ୍କୁ ଛାଡ଼ି ଦେଇ ଅଲଗା ହୋଇଗଲା ଏବଂ ପୁଣି ବିଭିନ୍ନ ପ୍ରକାରରେ ଭଗବାନଙ୍କୁ ମାରିବା ନିମନ୍ତେ ଚେଷ୍ଟା କରି ଚାଲିଲା । ତାକୁ ଖେଳ ଖେଳିବାକୁ କିଛି ସମୟ ଦେଇ, ପୁଣି ଶ୍ରୀକୃଷ୍ଣ ତାର ଫଣା ଉପରକୁ ଡେଇଁ ତା ଫଣା ଉପରେ ଠିଆ ହୋଇଗଲେ ଏବଂ ସେଠାରେ ସମସ୍ତେ ଦେଖୁଛନ୍ତି ଶ୍ରୀକୃଷ୍ଣ ତାର ଫଣା ଉପରେ ନୃତ୍ୟ କରିବାକୁ ଲାଗିଲେ । ଭଗବାନଙ୍କର ନୃତ୍ୟ ଦେଖିବା ଭଳି ଥିଲା । କେହି ଯଦି ତାକୁ କଳ୍ପନା କରିପାରିବେ ତ ଅତି ସୁନ୍ଦର କଥା । ଯମୁନା ଜୀ ଅଛି, ସେଥିରେ ବହୁତ ଫଣାଯୁକ୍ତ କାଳିୟ ନାଗ ଅଛନ୍ତି ଏବଂ ଭଗବାନଙ୍କର ଅତି ସୁକୁମାର (କାରଣ ସେ ଏବେ ଛୋଟ ବାଳକ) କୋମଳ କୋମଳ ପାଦ ଦୁଇଟି ଅଛି । ପୁଣି ଦେଖନ୍ତୁ ଶ୍ରୀକୃଷ୍ଣ ତ ବଡ଼ କୁଶଳ ନଟ ଅଟନ୍ତି । ସେ **"ଅଖିଳକଳାଗୁରୁଃ ନନର୍ତ୍ତ"** ସମସ୍ତ କଳାର ଗୁରୁ ଅଟନ୍ତି । ତାଙ୍କୁ ଖେଳି ଆସେ, ନାଚି ଆସେ, ଗାଇବା ଆସେ, ଆଉ କ'ଣ ନ ଆସେ ? ଭାଇ, ସମସ୍ତ ତ ତାଙ୍କରିଠାରୁ ବାହାରିଛି । ସେ "ନନର୍ତ୍ତ" ନୃତ୍ୟ କରିବାକୁ ଲାଗିଲେ । ସମସ୍ତ ଦେବତାମାନେ ମଧ୍ୟ ସେଠାକୁ ଦର୍ଶନ କରିବାକୁ ଆସିଗଲେ । ଏପରି ଅବସରକୁ ସେମାନେ ଆଦୌ ହାତ ଛଡ଼ା କରିବାକୁ ଚାହୁଁ ନ ଥିଲେ । ଚାହିଁଲେ, ଆମ୍ଭେମାନେ ମଧ୍ୟ ଆମ ନିଜର ମାନସ ପଟଳରେ ସେହିଭଳି ଭଗବାନଙ୍କର ନୃତ୍ୟ ଦେଖିପାରିବା । ସେ ଯେଉଁ ଫଣାଟି ଉଠାଇବାକୁ ଯାଉଥିଲା, ଭଗବାନ ନୃତ୍ୟ କରୁ କରୁ ନିଜର ପାଦ ଦ୍ୱାରା ସେହି ଫଣା ଉପରେ ପଦାଘାତ କରୁଥିଲେ । ତାର ଫଣା ଯେତେବେଳେ ଖଣ୍ଡିଆ ଖାବଡ଼ା ହୋଇଗଲା, ଏବଂ ଯେତେବେଳେ ତାର ରକ୍ତ ବାନ୍ତି ହେବାକୁ ଲାଗିଲା ସେତେବେଳେ ସେ ମନେ ମନେ ଭଗବାନଙ୍କର ଶରଣରେ ଗଲା । ତାର ଦଶା ଦେଖି କାଳିୟର ସମସ୍ତ ସ୍ତ୍ରୀମାନେ ମଧ୍ୟ ଭଗବାନଙ୍କର ଶରଣରେ ଆସି ସ୍ତୁତି କରିବାକୁ ଲାଗିଲେ –

**ନ୍ୟାୟୋ ହି ଦଣ୍ଡଃ କୃତକିଲ୍ବିଷେଽସ୍ମିଂ -**
**ସ୍ତବାବତାରଃ ଖଳ ନିଗ୍ରହାୟ ।**
**ରିପୋଃ ସୁତାନାମପି ତୁଲ୍ୟଦୃଷ୍ଟେ -**
**ର୍ଧତ୍ସେ ଦମଂ ଫଲମେବାନୁଶଂସନ ॥ (୧୦.୧୬.୩୩)**

ଭଗବାନ ଆପଣଙ୍କର ଅବତାର ତ ଦୁଷ୍ଟମାନଙ୍କୁ ଦଣ୍ଡ ଦେବା ନିମନ୍ତେ ହୋଇଥାଏ। ସେଥିପାଇଁ ଆପଣ ତାଙ୍କୁ ଯେଉଁ ଦଣ୍ଡ ଦେଇଛନ୍ତି, ତାହା ଉଚିତ୍ ହିଁ ଅଟେ ।

**ଅନୁଗ୍ରହୋଽୟଂ ଭବତଃ କୃତୋ ହି ନୋ**
**ଦଣ୍ଡୋଽସତାଂ ତେ ଖଳୁ କଲ୍ମଷାପହଃ ॥ (୧୦.୧୬.୬୪)**

ସତ୍ୟ କଥା ତ ଏହା ହିଁ ଅଟେ ଯେ ଆପଣ ତାକୁ ଦଣ୍ଡ ଦେଇନାହାନ୍ତି, ତାଙ୍କ ଉପରେ ବଡ଼ ଅନୁଗ୍ରହ ହିଁ କରିଛନ୍ତି । କାହିଁକି ? ତାହା କିପରି ? ଯାହାର ଚରଣ ରଜର ସ୍ପର୍ଶ ପାଇବା ନିମନ୍ତେ ବଡ଼-ବଡ଼ ଦେବତା, ଋଷି-ମୁନି ବ୍ୟାକୁଳ ହୋଇଥାଆନ୍ତି, ସେଇ ଭଗବାନ ହିଁ ସ୍ୱୟଂ କୃପା କରି ତାର ମସ୍ତକରେ ନୃତ୍ୟ କରୁଛନ୍ତି । ଦେଖନ୍ତୁ, ରାଜା ବଳିର ମସ୍ତକ ଉପରେ କେବଳ ତ ଥରେ ମାତ୍ର ଏହି ଚରଣର ସ୍ପର୍ଶ ହୋଇଥିଲା । ଏଠାରେ ତ ନିରନ୍ତର ନୃତ୍ୟ କରୁଛନ୍ତି । କେତେବେଳରୁ ନୃତ୍ୟ କରୁଛନ୍ତି । ନିରନ୍ତର ଆପଣଙ୍କର ଚରଣର ସ୍ପର୍ଶ ତାଙ୍କୁ ପ୍ରାପ୍ତ ହେଉଛି, ଏବେ ଆଉ ସେ ପାପୀ ହୋଇ ରହିଛି କେଉଁଠି ? ତାର ସମସ୍ତ ପାପ ସମାପ୍ତ ହୋଇଯିବ ।

**ନ ନାକପୃଷ୍ଠଂ ନ ଚ ସାର୍ବଭୌମଂ**
**ନ ପାରମେଷ୍ଠ୍ୟଂ ନ ରସାଧିପତ୍ୟମ୍ ।**
**ନ ଯୋଗସିଦ୍ଧୀରପୁନର୍ଭବଂ ବା**
**ବାଞ୍ଛନ୍ତି ଯତ୍ପାଦରଜଃପ୍ରପନ୍ନାଃ ॥ (୧୦.୧୬.୩୭)**

ଯାହାର ଚରଣ ରଜକୁ ଥରେ ମାତ୍ର ପ୍ରାପ୍ତ ହେଲା ପରେ ଲୋକମାନେ ପୃଥିବୀର ସାମ୍ରାଜ୍ୟ, ସ୍ୱର୍ଗ, ରସାତଳର ରାଜ୍ୟ, ବ୍ରହ୍ମାଜୀଙ୍କର ପଦ ଅଥବା ମୋକ୍ଷ ଆଦି ଆଉ କିଛି ମଧ୍ୟ ଚାହାନ୍ତି ନାହିଁ, ସେହି ଭଗବାନଙ୍କର ଚରଣରଜ ଏପରି ଅନାୟାସରେ ଏହି କାଳିୟ ନାଗକୁ ପ୍ରାପ୍ତ ହେଉଛି । ଏ ବଡ଼ ଭାଗ୍ୟଶାଳୀ ଅଟେ । ଭଗବାନ, ସେ ଅପରାଧ କରିଛି, କିନ୍ତୁ ଏବେ ଆପଣ ତାକୁ କ୍ଷମା କରିଦିଅନ୍ତୁ ।

**ସ୍ତ୍ରୀଣାଂ ନଃ ସାଧୁଶୋଚ୍ୟାନାଂ ପତିଃ ପ୍ରାଣଃ ପ୍ରଦୀୟତାତ୍ ॥**

ଆମେ ସମସ୍ତେ ତାଙ୍କର ପତ୍ନୀ । ପତି ଆମର ପ୍ରାଣ ଅଟନ୍ତି । ଆପଣ ଆମ ପ୍ରାଣର ହରଣ କରନ୍ତୁ ନାହିଁ । ସେମାନଙ୍କର ସ୍ତୁତି ଅଥବା ପ୍ରାର୍ଥନା ଶୁଣି ଭଗବାନ ତରଳି ଗଲେ । କହିଲେ- ଠିକ ଅଛି । ମୁଁ ତାକୁ ମାରିବି ନାହିଁ । ପୁଣି ସେ କାଳିୟ ନାଗକୁ କହୁଛନ୍ତି - ଏବେ ତୁ ଏଠାକୁ ଚାଲି ଯାଆ, ଏଠାରେ ଏବେ ଆଉ ରହ ନାହିଁ । କାଳିୟ କହୁଛି -

**ସ୍ୱଭାବୋ ଦୁସ୍ତ୍ୟଜୋ ନାଥ ଲୋକାନାଂ ଯଦସଦ୍ ଗ୍ରହଃ ॥ (୧୦.୧୬.୫୬)**

ଭଗବାନ ଆପଣ ମୋତେ ତ ଖରାପ କହୁଛନ୍ତି, କିନ୍ତୁ ମୁଁ କଣ କରିବି ? ଖଳ ଲୋକମାନଙ୍କର ସ୍ୱଭାବ ଏତେ ଶିଘ୍ର ବଦଳେ ନାହିଁ । ମୋର ସ୍ୱଭାବ ମଧ୍ୟ ସେହିପରି । କିନ୍ତୁ ଦେଖନ୍ତୁ, କଥା ହେଉଛି ଗୋଟିଏ ପାଖରେ କ୍ଷମା ମାଗିବା ଏବଂ ଅନ୍ୟ ପାଖରେ କହିବା ଯେ ମୋର ସ୍ୱଭାବ ଆପଣ ହିଁ ତିଆରି କରିଛନ୍ତି - ଏହା କିପରି କଥା ହେଲା । ସମସ୍ତଙ୍କ ସ୍ୱଭାବ ତ ଭଗବାନ ହିଁ ତିଆରି କରନ୍ତି । ସେ ହିଁ ସର୍ବଶକ୍ତିମାନ, ସର୍ବେଶ୍ୱର ଅଟନ୍ତି । ଏବେ ଏହି କାଳିୟ ନାଗ ଆଉ ଗୋଟିଏ କଥା ମଧ୍ୟ କହୁଛି । କହୁଛି ଯେ, "ଯାହା ମଧ୍ୟ ହେଉ, ଆପଣ ମୋତେ ଏବେ ଦଣ୍ଡ ଦେଲେ - ମୋ ପ୍ରତି କୃପା କଲେ, କିନ୍ତୁ ଏବେ ବହୁତ ହୋଇଗଲାଣି ।" ଭଗବାନ କହୁଛନ୍ତି -

**ନାତ୍ର ସ୍ଥେୟଂ ତ୍ୱୟା ସର୍ପ ସମୁଦ୍ରଂ ଯାହି ମା ଚିରମ୍ ॥ (୧୦.୧୬.୬୦)**

ଆଛା ଏବେ ଚାଲ, ଏଠାରେ ରହିବ ନାହିଁ । ଏବେ ତୁମେ ସମୁଦ୍ରକୁ ଚାଲିଯାଅ । ସେ କହୁଛି, "ଭଗବାନ, ଗରୁଡ଼ ଜୀ ମଧ୍ୟ ସେଠାକୁ ଆସି ପହଞ୍ଚି ଯିବେ ତ ?'' ଭଗବାନ କହୁଛନ୍ତି - ଯେତେବେଳେ ମୁଁ କହୁଛି ତ ଗରୁଡ଼ କିଏ ତୋତେ ସ୍ପର୍ଶ କରିବା ବାଲା । ଗରୁଡ଼ ତ ମୋର ବାହନ ଅଟେ, ସେ କିଛି କରିବ ନାହିଁ । ନିଜର ସମସ୍ତ ସମ୍ବନ୍ଧିମାନଙ୍କୁ ନେଇ ତୁମେ ସମୁଦ୍ରକୁ ଚାଲିଯାଅ । ଏହିପରି ଭଗବାନ କାଳିୟନାଗକୁ ଜିତିଲେ ।

**ଏବମୁକ୍ତୋ ଭଗବତା କୃଷ୍ଣେନାଦ୍ଭୁତକର୍ମଣା ।**
**ତଂ ପୂଜୟାମାସ ମୁଦା ନାଗପତ୍ନ୍ୟଶ୍ଚ ସାଦରମ୍ ॥ (୧୦.୧୬.୬୪)**

ପରୀକ୍ଷିତ ପଚାରୁଛନ୍ତି ଯେ କାଳିୟ ନାଗ ତ ସମୁଦ୍ରରେ ଯାହା କି ସର୍ପମାନଙ୍କର ନିବାସ ସ୍ଥାନ ରମଣକ ଦ୍ୱୀପ ଅଟେ, ସେଠାରେ ରହୁଥିଲା । ସେ ଯମୁନା ଜୀକୁ କାହିଁକି

ଗଲା ? ତେବେ ଶ୍ରୀ ଶୁକଦେବ ଜୀ କାଳିୟର ପୂର୍ବକଥା ଶୁଣାଇଲେ । କାଳିୟ ନାଗ ବଡ଼ ଶକ୍ତିଶାଳୀ ଥିଲା । ସେଠାରେ ରମଣକ ଦ୍ୱୀପରେ ସମସ୍ତ ସର୍ପ ପରିବାର ସ୍ୱୀକାର କରିଥିଲେ ଯେ ଗରୁଡ଼ ଦେବତାଙ୍କୁ ପ୍ରତ୍ୟେକ ମାସରେ ଏକ ବଳି ଦେବ । ଯେତେବେଳେ କାଳିୟ ନାଗ ପରିବାରର ପାଳିପଡ଼ିଲା ତ ସେ କହିଲା ଗରୁଡ଼କୁ ଦେବାର କୌଣସି ଆବଶ୍ୟକତା ନାହିଁ । ସେ ତ ସ୍ୱୟଂ ଦେଲା ନାହିଁ, ବରଂ ଅନ୍ୟମାନେ ଯେତେବେଳେ ବଳି ଦେଉଥିଲେ, ସେତେବେଳେ ସେ ଭୋଜ୍ୟକୁ ମଧ୍ୟ ସେ ସ୍ୱୟଂ ନେଇଯାଉଥିଲା । ତେବେ ଗରୁଡ଼କୁ ବହୁତ କ୍ରୋଧ ହେଲା ଏବଂ ସେ ତା ଆଡ଼କୁ ଝପଟି ପଡ଼ିଲେ । କାଳିୟ ପ୍ରଥମେ ତ ଲଢ଼ିଲା, କିନ୍ତୁ କିଛି ସମୟ ପରେ କ୍ଷତବିକ୍ଷତ ହୋଇ ସେଠାରୁ ଯାଇ ଯମୁନା ଜୀରେ ରହିବାକୁ ଲାଗିଲା । ତାକୁ ଜଣାଥିଲା ଯେ ଗରୁଡ଼ ଏହି ଯମୁନା ନଦୀକୁ ଆସିପାରିବେ ନାହିଁ । କାହିଁକି ନା ତାକୁ ସୌଭରି ଋଷିଙ୍କର ଅଭିଶାପ ଥିଲା ଯେ ଯଦି ସେ ସେଠାକୁ ଯିବ ତେବେ ତାର ମୃତ୍ୟୁ ହେବ । ତେବେ ଗରୁଡ଼ ଏଠାକୁ ଆସିପାରିବେ ନାହିଁ, ଏହି କଥା କେବଳ କାଳିୟ ଜାଣିଥିଲା, ସେଥିପାଇଁ ସେ କାଳିନ୍ଦୀକୁ ଆସି ସେଠାେର ଲୁଚି ରହିଲା । ନିଜର ସମସ୍ତ ପରିବାରବର୍ଗଙ୍କୁ ମଧ୍ୟ ସେଥିରେ ନେଇ ଆସିଲା । ସେ ବିଷଯୁକ୍ତ ହିଁ ତ ଥିଲା ସେ ସମସ୍ତ ଜଳକୁ ବିଷାକ୍ତ କରିଦେଲା ।

କାଳିୟକୁ ସମୁଦ୍ରକୁ ଯିବାର ଆଜ୍ଞାଦେଇ ନିଜର ସମସ୍ତ ଆଭୂଷଣରେ ବିଭୂଷିତ ହୋଇ, ଭଗବାନ ସେହି କାଳିୟ ହ୍ରଦରୁ ବାହାରକୁ ଆସୁଛନ୍ତି । ଯଶୋଦା ମା', ନନ୍ଦବାବା ଆଦି ସମସ୍ତ ବ୍ରଜବାସୀମାନଙ୍କର ଆନନ୍ଦ କହିଲେ ନ ସରେ ।

ଦେଖନ୍ତୁ, ସମ୍ଭବ ହୋଇପାରେ ଯେ ବର୍ତ୍ତମାନ ଏହି ଘଟଣାର ମହତ୍ତ୍ୱ ସ୍ପଷ୍ଟ ହୋଇପାରୁନାହିଁ ରାମଲୀଳା ପ୍ରସଙ୍ଗରେ ଏହି ସବୁ ଘଟଣାର ମହତ୍ତ୍ୱ ଆମକୁ ସ୍ପଷ୍ଟ ହୋଇଯିବ। ଭଗବାନ ଏଠାରେ ଜଣ-ଜଣକୁ ଜିତି ଚାଲିଛନ୍ତି ।

ଦେଖନ୍ତୁ, ଭଗବାନ କେବଳ ଅସୁରମାନଙ୍କୁ ହିଁ ଦମନ କରୁ ନାହାନ୍ତି । କେବଳ ଅସୁରମାନଙ୍କୁ ମାରୁ ନାହାନ୍ତି, ଅଧିକନ୍ତୁ ଅନ୍ୟ ପାଖରେ ସମସ୍ତ ଦେବତାମାନଙ୍କୁ ମଧ୍ୟ ଜିତି ଚାଲିଛନ୍ତି । ପ୍ରକୃତରେ ଏ ନାଗ, ଗନ୍ଧର୍ବ, ଯକ୍ଷ, କିନ୍ନର, ବ୍ରହ୍ମା ଏ ସମସ୍ତେ ତ ଅସୁର ନୁହନ୍ତି । କାଳିୟକୁ ଜିତିଗଲେର ଅର୍ଥ ନାଗଲୋକକୁ ଜିତିଗଲେ । ପୁଣି ବ୍ରହ୍ମାଜୀଙ୍କୁ ଜିନିନେଲେର ଅର୍ଥ ସମସ୍ତ ଦେବତାମାନଙ୍କୁ ଜିତିଗଲେ । ଆଗକୁ ଇନ୍ଦ୍ର, ବରୁଣ ଆଦି ସମସ୍ତଙ୍କର ବର୍ଣ୍ଣନ ଆସିବ । ଆଗକୁ ଆମେ ଏହାର ଭାବାର୍ଥ ଓ ଲକ୍ଷ୍ୟାର୍ଥ ମଧ୍ୟ ଦେଖିବା। ଏ ସବୁର ଗମ୍ଭୀର ଭାବ ମଧ୍ୟ ଅଛି, ଅନ୍ୟଥା ଶ୍ରୀ ଶୁକଦେବଜୀ ଏ ସମସ୍ତର ଏତେ ବର୍ଣ୍ଣନ

କାହିଁକି କରିଥାଆନ୍ତେ ? ଗୋଟିଏ ଅଧ୍ୟାୟରେ କ୍ରମ ଅନୁସାରେ କୁହାଯାଇ ପାରିଥାଆନ୍ତା ଯେ ଭଗବାନ ନିମ୍ନଲିଖିତ - ପୂତନା, ଶକଟାସୁର, ତୃଣାବର୍ତ୍ତ, ବତ୍ସାସୁର, ବକାସୁର, ଅଘାସୁର ଆଦି ଅସୁରମାନଙ୍କୁ ମାରିଲେ ଚାରୋଟି ପଂକ୍ତିରେ ସବୁ କିଛି କହି ପାରିଥାଆନ୍ତେ। ଗୋଟିଏ ଗୋଟିଏ ଅଧ୍ୟାୟରେ ଗୋଟିଏ ଗୋଟିଏ ଘଟଣା କହିବାର କିଛି କଥା ନ ଥିଲା। ପୁଣି ଏହି ବିସ୍ତୃତ ବର୍ଣ୍ଣନର ଆଉ ଏକ କାରଣ ହେଉଛି ଯେ ଆମର ବୃତ୍ତିଗୁଡ଼ିକୁ ଏକାଗ୍ର କରିବା ଆବଶ୍ୟକ । ଶେଷରେ ଏହି ଜୀବନର, ଭାଗବତ କଥା ଶ୍ରବଣର, କଥନର ପ୍ରୟୋଜନ କ'ଣ ? ତାର ପ୍ରୟୋଜନ ହେଉଛି ଆମର ମନ, ଆମର ସମସ୍ତ ବୃତ୍ତି କୃଷ୍ଣମୟ ହୋଇଯାଉ । ସେଥିପାଇଁ ଏଠାରେ ସମସ୍ତ ଲୀଳା ଗୋଟିଏ ଗୋଟିଏ କରି ବର୍ଣ୍ଣନ କରାଯାଇଛି । ପ୍ରଥମେ ଏ ଘଟଣା ହେଲା, ପୁଣି ସେ ଘଟଣା ହେଲା, ତା ପରେ ପୁଣି ଏହା ହେଲା ଏବଂ ବାଲ୍ୟାବସ୍ଥାରେ ହିଁ ସେ ଏପରି କଲେ, ସେପରି କଲେ, ଏହା ସବୁ ବର୍ଣ୍ଣନ କରି ତାଙ୍କର ପ୍ରଭାବ, ତାଙ୍କର ସ୍ୱଭାବ, ତାଙ୍କର ଈଶ୍ୱରତ୍ୱ, ତାଙ୍କର କରୁଣା ଆଦି ସମସ୍ତ ଗୁଣକୁ ପ୍ରକଟ କରୁଛନ୍ତି । ଏ ସମସ୍ତ ଲୀଳାର ସୁଦୀର୍ଘ ବର୍ଣ୍ଣନର ଏହା ହିଁ ହେଉଛି ଦ୍ୱିତୀୟ କାରଣ ।

ତେବେ ଏଠାରେ ଆମେ ତାଙ୍କର ଶକ୍ତି, ତାଙ୍କର ପ୍ରଭାବକୁ ତାଙ୍କର ପ୍ରଭାବକୁ ଦେଖୁଛନ୍ତି । ପ୍ରାୟଃ ମନୁଷ୍ୟର ନିଜର (ମନର) ଆସୁରୀ ବୃତ୍ତି ପ୍ରତି ଭୟ ଲାଗି ରହିଥାଏ। ଯେତେବେଳେ ଆମେ ଶୁଣୁଛନ୍ତି ଯେ ଭଗବାନ ତିନି ଚାରିବର୍ଷ ବୟସରେ ଏ ସମସ୍ତଙ୍କୁ ଖେଳ - ଖେଳରେ ମାରି ଦେଇଥିଲେ, ତାଙ୍କ ନିମନ୍ତେ ତ ଏହା ବାମ ହାତର ଖେଳ ଥିଲା । ତେବେ ମନରେ ବିଶ୍ୱାସର ଉଦୟ ହୁଏ ଯେ ମୋର ପାପ, ମୋର ଦୁଷ୍କୃତ, ଯେତେ ନିନ୍ଦନୀୟ ହେଲେ ମଧ୍ୟ, ମୋର ମନରେ ଯେତେ ଆସୁରୀ ବୃତ୍ତି ଉଠୁଥିଲେ ମଧ୍ୟ, ପରନ୍ତୁ ମୁଁ ଯଦି ଶ୍ରୀକୃଷ୍ଣଙ୍କୁ ମନେ ପକାଇବି, ତାଙ୍କୁ ଡାକିବି, ତେବେ କଅଣ ସମ୍ଭବ ହୋଇ ନ ପାରିବ । ତାଙ୍କ ପାଇଁ କଣ ଅସମ୍ଭବ? ଦେଖୁ ଦେଖୁ ହିଁ ସମସ୍ତକୁ ନାଶ କରିଦେବେ ।

ଏହିପରି ବିଶ୍ୱାସ ମନରେ ଜାଗ୍ରତ କରାଇବା ନିମନ୍ତେ ଏ ସମସ୍ତ ଘଟଣା, ସମସ୍ତ ପ୍ରସଙ୍ଗ ବର୍ଣ୍ଣନ ହୋଇଛି। ତାର ପ୍ରୟୋଜନ କେବଳ ଏତିକି ଯେ ମନରେ ଏପରି ବିଶ୍ୱାସ ଜାଗ୍ରତ ହୋଇଯାଉ ଯେ ଆମର ପାପ ଆମକୁ ବହୁତ ଭୟଙ୍କର ଲାଗିଲେ ମଧ୍ୟ, ଘୋର ଜଣାପଡ଼ିଲେ ମଧ୍ୟ, ଭଗବାନ ତାକୁ ଅତି ସହଜରେ ନାଶ କରିପାରିବେ । ସେଥିପାଇଁ କୁହାଯାଏ ଯେ ଭଗବାନ ଯେତେବେଳେ ଛଅ ଦିନର ହୋଇଥିଲେ ସେତେବେଳଠାରୁ ଦୁଷ୍ଟ ଦଳନ କାର୍ଯ୍ୟ ଆରମ୍ଭ କରି ଦେଇଥିଲେ । ଏତିକି ଜଣାଇବା ନିମନ୍ତେ ଯେ ତାଙ୍କ

ପାଇଁ ଏହା କିଛି ବଡ଼ କଠିନ କାର୍ଯ୍ୟ ନୁହେଁ । ତାଙ୍କ ପାଇଁ ତ ଏହା ଏକ ଖେଳ ମାତ୍ର। ଅର୍ଥାତ ଖେଳ-ଖେଳରେ ସେ ସବୁ କିଛି କରିଦେବେ, ଭୟ କର ନାହିଁ । ଲୋକମାନେ କହନ୍ତ ମୋର ମନରେ ଏପରି ଅଟେ, ସେପରି ଅଟେ । କେଉଁ ମନ । ଟିକିଏ ଭଗବାନଙ୍କର ନାମ ନେଇ କାହିଁକି ଦେଖୁନାହଁ । ଏ ତଥ୍ୟକୁ ଦର୍ଶାଇବା ନିମନ୍ତେ ଏହି ଲୀଳାର ଏଠାରେ ଏତେ ବର୍ଣ୍ଣନ କରାଗଲା । ନିରନ୍ତର ଏକ ବୃତ୍ତି-କୃଷ୍ଣାକାର ବୃତ୍ତି ହେଉ, ସେଥିପାଇଁ ବର୍ଣ୍ଣନ ହୋଇଛି ।

**ଏବମୁକ୍ତୋ ଭଗବତା କୃଷ୍ଣେନାଦ୍ଭୁତ କର୍ମଣା ।**
**ତଂ ପୂଜୟାମାସ ମୁଦା ନାଗପତ୍ନ୍ୟଶ୍ଚ ସାଦରମ ॥ (୧୦.୧୬.୬୪)**
**ଅନୁଗ୍ରହାଦ୍ ଭଗବତଃ କ୍ରୀଡ଼ା-ମାନୁଷରୂପିଣଃ ॥ (୧୦.୧୬.୬୭)**

ଭଗବାନଙ୍କର ଅନୁଗ୍ରହରେ ଯମୁନା ଜୀ ପାଣି ବିଷ ରହିତ କେବଳ ନୁହେଁ ଅମୃତ ସଦୃଶ ମଧୁର ହୋଇଗଲା । ଏଠାରେ କ୍ରୀଡ଼ା କରିବା ନିମନ୍ତେ ହିଁ ଭଗବାନ ମନୁଷ୍ୟ ରୂପ ଧାରଣ କରିଥିଲେ, ସେ ଖେଳ କରୁଥିଲେ । ତାଙ୍କ ପାଇଁ ଏ ସମସ୍ତ କୌଣସି ବଡ଼ କଥା ନୁହେଁ । ସମସ୍ତଙ୍କ ପ୍ରତି ତାଙ୍କର ଯେଉଁ କୃପା ଅଛି, ଯେଉଁ ପ୍ରେମ ଅଛି, ତାହା ଏଠାରେ ପ୍ରକଟ ହେଉଛି ।

### ଶ୍ରୀକୃଷ୍ଣଙ୍କ ଦ୍ୱାରା ଦାବାନଳରୁ ବ୍ରଜବାସୀମାନଙ୍କୁ ରକ୍ଷା

ଭଗବାନ କହୁଛନ୍ତି, "ଏବେ ଏହି ଯମୁନା ଜୀଙ୍କର କାଳିୟ ହ୍ରଦର ପାଣି ସ୍ୱଚ୍ଛ ହୋଇଗଲା । ଏବେ ଆପଣମାନେ ନିର୍ଭୟରେ ଏଥିରେ ସମସ୍ତେ ଖେଳନ୍ତୁ।" ଏକେ ତ ଗରମ ଦିନ ଏବଂ ପୁଣି ହୃଦୟର ବ୍ୟାକୁଳତାର ଥକି ଯାଇଥିବା କାରଣରୁ ସେହି ରାତ୍ରିରେ ସମସ୍ତ ଲୋକ ସେଇ ଯମୁନା ଜୀଙ୍କର କୂଳରେ ଶୋଇଗଲେ । କିନ୍ତୁ ସେହି ପାଖରେ ନିଆଁ ଲାଗିଗଲା । ତାହା ଚାରିଆଡୁ ବ୍ରଜବାସିମାନଙ୍କୁ ଘେରିଗଲା ।

**ଏଷ ଘୋରତମୋ ବହ୍ନିସ୍ତାବକାନ ଗ୍ରସତେ ହି ନଃ ।। (୧୦.୧୭.୨୩)**

ଅଗ୍ନିର ଉତ୍ତାପରେ ସବୁ ଲୋକ ଉଠି ପଡ଼ିଲେ ଏବଂ ପରିସ୍ଥିତିକୁ ଜାଣିବା ପରେ ସବୁଥର ଭଳି ସେମାନେ ସମସ୍ତେ ଶ୍ରୀକୃଷ୍ଣ, ବଳରାମଜୀଙ୍କର ଶରଣରେ ଗଲେ । କହୁଛନ୍ତି, "ହେ କୃଷ୍ଣ, ହେ ମହାବାହୁ ଏଠାରେ ନିଆଁ ଲାଗିଯାଇଛି । ସମସ୍ତ ସ୍ୱଜନ ପରିଜନ ଜଳୁଛନ୍ତି, ଆପଣ କିଛି କରନ୍ତୁ ।" ଭଗବାନ ଆଁ କଲେ ଏବଂ ସମସ୍ତ ଅଗ୍ନିକୁ (ପିଇ ଦେଲେ) ପାନ କଲେ ।

**ମୁଖାଦିନ୍ଦ୍ରଷ୍ଟାଗ୍ନିଷ୍ଚ ପ୍ରାଣାଦ୍‌ବାୟୁରଜାୟତ । (ପୁରୁଷ ସୁକ୍ତମ - ୧.୬)**

ପୁରୁଷ ସୁକ୍ତରେ ମଧ୍ୟ କୁହାଯାଇଛି - ଭଗବାନଙ୍କର ମୁଖରୁ ହିଁ ଅଗ୍ନି ଏବଂ ଇନ୍ଦ୍ର ଦୁହେଁ ଦୁହେଁ ବାହାରିଛନ୍ତି । ତେବେ ଭଗବାନ ଅଗ୍ନିକୁ (ପିଇ ଦେଲେ) ପାନ କଲେ । ଯେଉଁ ସ୍ଥାନରୁ ସେ ବାହାରି ଥିଲା ସେହି ସ୍ଥାନକୁ ସେ ଚାଲିଗଲା ।

**ବାଚେ ଦେବତା ବହ୍ନିଃ । (ତତ୍ତ୍ୱବୋଧ - ୩.୨୨)**

ମୁଖ ଏବଂ ବାଣୀର ଦେବତା ଅଗ୍ନି ଅଟନ୍ତି । ସେ ମୁଖରେ ପ୍ରବେଶ କଲେ - ଭଗବାନ ଅଗ୍ନି ପିଇ ଗଲେ । ତାଙ୍କ ପାଇଁ ଏହା କୌଣସି ବଡ଼ କଥା ନୁହେଁ । ଏହି ସମସ୍ତ ସୃଷ୍ଟି ଭଗବାନଙ୍କଠାରୁ ହିଁ ଉତ୍ପନ୍ନ ହୋଇଛି । ପ୍ରଥମେ ଆକାଶ, ଆକାଶରୁ ବାୟୁ, ବାୟୁରୁ ଅଗ୍ନି ଏହି କ୍ରମରେ । ସମସ୍ତଙ୍କର ମୂଳ କାରଣ ତ ପରମାତ୍ମା ହିଁ ଅଟନ୍ତିନ୍ତ ଏବଂ ଏହି ଅଗ୍ନି ମଧ୍ୟ ତାଙ୍କରି ଠାରୁ ହିଁ ବାହାରିଛି । ସେଥିପାଇଁ ଯେତେବେଳେ କୌଣସି ଶବ୍ଦ କୁହାଯାଏ ତ କେବେ କେବେ ତାକୁ ଗରମା-ଗରମ ତର୍କ ହେଲା, ଏପରି ମଧ୍ୟ କୁହାଯାଏ । ତେବେ ଅଗ୍ନିର ସମ୍ବନ୍ଧ ମୁଖରୁ ଅଛି । ଭଗବାନ "ଅନନ୍ତଶକ୍ତିଧୃକ୍" ଅନନ୍ତଶକ୍ତିକୁ ଧାରଣ କରନ୍ତି । ପୁଣି ସମସ୍ତେ ବୃନ୍ଦାବନକୁ ଫେରି ଯାଉଛନ୍ତି ।

ବୃନ୍ଦାବନରେ ଗ୍ରୀଷ୍ମଋତୁ ମଧ୍ୟ ଆସୁଥିଲା କିନ୍ତୁ ବସନ୍ତ ଋତୁ ଭଳି ଲାଗୁଥିଲା । ସେଠାରେ ମହିମା ହିଁ ଏହିଭଳି ଥିଲା । ଏପରି କାହିଁକି ? କାହିଁକି ନା ଭଗବାନ ଶ୍ରୀକୃଷ୍ଣ ସେଠାରେ ରହୁଥିଲେ । ବୃନ୍ଦାବନର ପାହାଡ଼, ବନ, ସରୋବର, ନଦୀ, କୁଂଜ ଆଦି ସର୍ବତ୍ର ନୂଆ-ନୂଆ ଲୀଳାମାନ କରୁଥିଲେ ।

## ବଳରାମ ଜୀଙ୍କ ଦ୍ୱାରା ପ୍ରଲମ୍ବାସୁର ଉଦ୍ଧାର

**ଈଡ଼ିରେ କୃଷ୍ଣରାମୌ ଚ ନଟାଇବ ନଟଂ ନୃପ ॥ (୧୦.୧୮.୧୧)**

ସେ ସମୟରେ ଦେବତାଗଣ ମଧ୍ୟ ଗୋପାଳ ବାଳକ ହୋଇ ଶ୍ରୀକୃଷ୍ଣ ବଳରାମଙ୍କର ସ୍ତୁତି କରନ୍ତି । ଥରେ ସମସ୍ତ ଗୋପାଳବାଳକ ତଥା ଶ୍ରୀକୃଷ୍ଣ-ବଳରାମ ଗାଈ ଗାଈ ଚରାଉ ଚରାଉ ବିଚରଣ କରୁଥିଲେ । ସେତିକିବେଳେ ପ୍ରଲମ୍ବ ନାମକ ଏକ ଡେଙ୍ଗା ଅସୁର ଗୋପାଳ ବାଳକ ବେଶ ଧାରଣ କରି ସେଠାରେ ପହଞ୍ଚି କହିଲା - ମୁଁ ମଧ୍ୟ ଖେଳିବି । ଭଗବାନ କହିଲେ, "ଆସ ଖେଳ" । ଭଗବାନ ତାକୁ ଚିହ୍ନିଗଲେ ତଥାପି ମଧ୍ୟ ତାକୁ ସ୍ୱୀକାର କଲେ କାରଣ ସେ ମିତ୍ର ହୋଇ ଆସିଥିଲା । ଗୀତା ଜୀରେ ମଧ୍ୟ ଭଗବାନ

କହିଛନ୍ତି - ଯେ ଯେଉଁ ଭାବରେ ମୋ ପାଖକୁ ଆସେ, ମୋତେ ଚାହେଁ, ମୁଁ ମଧ୍ୟ ସେହି ଭାବରେ ତାକୁ ପୂର୍ଣ୍ଣ କରିଥାଏ । ପୁଣି ଭଗବାନ ସମସ୍ତ ଗୋପାଳବାଳକମାନଙ୍କୁ ଦୁଇ ଦଳରେ ଭୋଗ କରି ଏକ ଖେଳ ପ୍ରାରମ୍ଭ କଲେ । ସେହି ଖେଳଟି ଏହି ହଭାବରେ ଥିଲା ଯେ, ଯେଉଁ ଦଳ ହାରିବ, ସେମାନେ ଜିତିଥିବା ଦଳକୁ ସେମାନେ ନିଜ ପିଠିରେ ବସାଇ ନେଇଯିବାକୁ ପଡ଼ିବ । ସବୁଦିନ ଦଳକୁ ସେମାନେ ନିଜ ପିଠିରେ ବସାଇ ନେଇଯିବାକୁ ପଡ଼ିବ । ସବୁଦିନ ଭଳି ଗୋଟିଏ ପାଖରେ ଶ୍ରୀକୃଷ୍ଣ ଥିଲେ, ଏବଂ ଅନ୍ୟ ପାଖରେ ବଳରାମ ଜୀ ଥିଲେ । ପ୍ରଲମ୍ବାସୁର ଭାବିଲା, ଶ୍ରୀକୃଷ୍ଣଙ୍କୁ ତ ସେ ହରାଇ ପାରିବ ନାହିଁ। ସେଥିପାଇଁ ସେ ଶ୍ରୀକୃଷ୍ଣଙ୍କ ଦଳରେ ରହିଲା ।

ପ୍ରଲମ୍ବ ଅର୍ଥାତ ପ୍ରକର୍ଷଣ ଲମ୍ବଃ - ତାର ଅର୍ଥ ହେଉଛି ବହୁତ ଲମ୍ବା । ଆପଣ ତାକୁ ଯାହା ମଧ୍ୟ କହନ୍ତୁ ନା କାହିଁକି । ତାର ଅର୍ଥ ହେଉଛି ଯେ - ଯେଉଁପରି ଆମର ଲୋଭ ବଢ଼ି ବଢ଼ି ଚାଲେ, ସେହି ପରି ପ୍ରଲମ୍ବାସୁର ମଧ୍ୟ ଲମ୍ବା-ଲମ୍ବା ହେଉଥାଏ ଅର୍ଥାତ୍ ବଢ଼ି ଚାଲିଥାଏ । ପ୍ରଲମ୍ବ ହାରିଗଲା ଏବଂ ତାକୁ ବଳରାମଜୀଙ୍କୁ ଉଠାଇବାକୁ ପଡ଼ିଲା । ବଳରାମ ଜୀଙ୍କୁ ଉଠାଇ ସେ ଯିବାକୁ ଲାଗିଲା । ଶ୍ରୀକୃଷ୍ଣଙ୍କ ପ୍ରତି ତା ଖୁବ ଭୟ ଥିଲା । ସେ ଭାବିଲା ବଳରାମଜୀଙ୍କୁ ହରଣ କରି ନେଇଯିବି । ବଳରାମଜୀଙ୍କୁ ପିଠିରେ ଲଦି ଏକ ପର୍ବତ ପଛକୁ ଯାଇ, ସେଠାରୁ ସେ ପୁଣି ଆକାଶ ମାର୍ଗରେ ଯିବାକୁ ଲାଗିଲା। ବଳରାମ ଜୀ ଭାବିଲେ ଏ ମୋତେ ଏଆଡ଼େ - ସିଆଡ଼େ କାହିଁକି ନେଇଯାଉଛି ? ଲାଗୁଛି ଯେପରି କିଛି ଗୋଳିମାଳିଆ କାର୍ଯ୍ୟ କରିବାକୁ ଚାହୁଁଛି । ସେ କୁଦି ପଡ଼ିଲେ, ସେ ତା ଆଡ଼କୁ ଚାହିଁଲେ, ତ ସେ (ପ୍ରଲମ୍ବ) ମଧ୍ୟ ଦେଖିଲା ଯେ ଏବେ ମୁଁ ତାକୁ ମାରିବି । ବଳରାମ ଜୀ କ'ଣ କିଛି ଊଣା ଥିଲେ, ସେ ତାକୁ ଏପରି ଗୋଟିଏ ବିଧା ବସାଇ ଦେଲେ ଯେ ସେ ମରି ହିଁ ଗଲା । ପ୍ରଲମ୍ବାସୁରର ବଧ ହୋଇଗଲା ।

## ଶ୍ରୀକୃଷ୍ଣଙ୍କ ଦ୍ୱାରା ଅଗ୍ନିପାନ

**କ୍ରୀଡ଼ାସକ୍ତେଷୁ ଗୋପେଷୁ ତଦ୍‌ଗାବୋ ଦୂରଚାରିଣୀଃ ।**

**ସ୍ୱୈରଂ ଚରନ୍ତ୍ୟୋ ବିବିଶୁସ୍ତୃଣଲୋଭେନ ଗହ୍ୱରମ୍ ॥ (୧୦.୧୯.୧)**

ଗାଈମାନେ ଦେଖିଲେ ଯେ ଗୋପବାଳକମାନେ କ୍ରୀଡ଼ାରେ ଲାଗିଛନ୍ତି । ଗାଈମାନଙ୍କୁ କେଉଁଠି ବା କେଉଁଠି ସବୁଜ ସବୁଜ ଘାସ ଦେଖା ହିଁ ଯାଉଥିଲା । ଯେତେ ଯାହା କଲେ ମଧ୍ୟନ୍ତ ଇନ୍ଦ୍ରିୟଗୁଡ଼ିକ ବିଷୟ ଆଡ଼କୁ ଚାଲିଯାଆନ୍ତି । ଭଲ ଭାବରେ ଜାଣିଛନ୍ତି ଯେ ଭଗବାନଙ୍କ ପାଖରେ ରହିଲେ ହିଁ ସୁଖ ଅଛି, ଶାନ୍ତି ମଧ୍ୟ, କିନ୍ତୁ କଣ କରାଯିବ ମନ ବିଷୟ ଆଡ଼କୁ ଚାଲିଯାଏ । କୌଣସି ଭଲ ବହି ପଢୁଥିଲେ ମଧ୍ୟ ଏ ମନ କୁଆଡ଼େ କୁଆଡ଼େ ଚାଲିଯାଏ । ପ୍ରବଚନ ଶୁଣିଲା ବେଳେ, ପୂଜା କରିବା ସମୟରେନ୍ତ ଜପ କରିବା ସମୟରେ, ଯାହା କିଛି କରୁଥିବାବେଳେ ମଧ୍ୟ ମନ ଅନ୍ୟତ୍ର କୁଆଡ଼େ ଚାଲିଯାଏ । ଏଠାରେ ଏହି କଥା ବାରମ୍ବାର ଆସୁଛି ଯେ ଏହି ବାଛୁରୀ ଅଥବା ଗାଈ ଏବଂ ସେମାନଙ୍କ ପଛେ ପଛେ ଏହି ଗୋପାଳବାଳକମାନେ କୁଆଡ଼େ କୁଆଡ଼େ ଚାଲି ଯାଉଛନ୍ତି । ଏବେ ଏମାନେ କୁଆଡ଼େ ସବୁ ଗଲେ ? ଦୂର ଜଙ୍ଗଲକୁ ମୁଂଜାବଟୀକୁ ଚାଲିଗଲେ । ସେଠାକୁ ଯାଇ ସେମାନେ ରାସ୍ତା ଭୁଲିଗଲେ ଏବଂ ସେମାନଙ୍କୁ ଶୋଷ କରୁଥିଲା, ଏବଂ ଥକି ମଧ୍ୟ ଯାଇଥିଲେ । ଭଗବାନ ଗୋଟିଏ ଗୋଟିଏ ନାମ ଧରି ଡାକିଲେ ସେତେବେଳେ ସେମାନେ ଖୁସି ହୋଇ ବୋବେଇବାକୁ ଆରମ୍ଭ କଲେ । ଏହା ମଧ୍ୟରେ ସେଠାରେ ଅଗ୍ନି ଲାଗିଗଲା । ପୁଣି ଧୂଳି ଝଡ଼ ଆରମ୍ଭ ହୋଇଗଲା । ତେଣୁ ସେହି ଅଗ୍ନି ସେମାନଙ୍କୁ ଚାରିଆଡୁ ଘେରିଗଲା । ଜଙ୍ଗଲରେ କେବେ କେବେ ଗଛଗୁଡ଼ିକ ପରସ୍ପର ମଧ୍ୟରେ ଘସି ହେବା ଫଳରେ ଅଗ୍ନି ବାହାରିଥାଏ ତାହା ଜଙ୍ଗଲକୁ ଜଳାଇ ଦିଏ, ଯାହାକୁ ଦାବାନଳ କୁହାଯାଏ ।

ଦେଖନ୍ତୁ, ଆମର ମନ ମଧ୍ୟ ସେହିଭଳି ଯେତେବେଳେ ଇନ୍ଦ୍ରିୟମାନଙ୍କର ପଛରେ ଚାଲିବାକୁ ଲାଗେ, ଯାଏ ତ କୁଆଡ଼େ ଯାଏ ? ବିଷୟାଗ୍ନି ଭିତରକୁ ହିଁ ତ ଯାଏ । ପୁଣି ଯେଉଁଭଳି ଅଗ୍ନି ପ୍ରକଟିତ ହୋଇଥାଏ, ସେହିଭଳି ଆମ ମନରେ କାମାଗ୍ନି, କ୍ରୋଧାଗ୍ନି, ବିଷୟାଗ୍ନି ଏ ସମସ୍ତ ସୃଷ୍ଟି ହୋଇ ଚାଲିଥାଏ । ବିଷୟ ଆଡ଼କୁ ଧ୍ୟାନ ଯାଉ ଯାଉ, ବିଷୟ ଚିନ୍ତନ ଆରମ୍ଭ ହୋଇଯାଏ, ବାସ୍ ! ମନରେ ନିଆଁ ଲାଗିବା ଆରମ୍ଭ ହୁଏ । ଏଥିରେ କାହାର କଣ କିଛି ଶଙ୍କା ହୋଇପାରେ ?

ପ୍ରଥମେ ତାହା କାମାଗ୍ନି ରୂପରେ ପ୍ରକଟିତ ହୁଏ, ସେଥିରେ କୌଣସି ବିଘ୍ନ ଆସିଲେ ତାହା କ୍ରୋଧାଗ୍ନିରେ ପରିଣତ ହୋଇଯାଏ । ଯଦି କେବେ ଆମକୁ ଲାଗେ ଯେ ଅମକୁ ବସ୍ତୁଟି ମୋର ଆବଶ୍ୟକ ଏବଂ ସେହି ବସ୍ତୁଟି ଯଦି ଅନ୍ୟ କାହାକୁ ମିଳିଯାଏ ତ ପୁଣି ସେହି ଅଗ୍ନି ଈର୍ଷାଗ୍ନି ହୋଇଯାଏ । ଜଣାନାହିଁ ଏହିପରି କେତେପ୍ରକାର ଅଗ୍ନି ହୋଇଥାଏ । ଏଠାରେ ଭଗବାନ ପ୍ରଥମେ ଏକ ଅଗ୍ନିରୁ ସମସ୍ତଙ୍କୁ ବଞ୍ଚାଇଛନ୍ତି, କିନ୍ତୁ ଏବେ ଏହି ଦ୍ୱିତୀୟ ଅଗ୍ନି ଆସୁରୀ ଅଗ୍ନି ଅଟେ ।

ଏଥର ମଧ୍ୟ ଗୋପବାଳକମାନେ ଆସି କହିବାକୁ ଲାଗିଲେ କୃଷ୍ଣ କୃଷ୍ଣ ମହାବୀର, କୃଷ୍ଣ କୃଷ୍ଣ ମହାବୀର । ଏଥିରେ ଆଉ ଗୋଟିଏ କଥା ମଧ୍ୟ ଅଛି ଯାହାକି ବିଶେଷ ଧ୍ୟାନ ଦେବା ଉଚିତ୍ । ଯେତେବେଳେ ମଧ୍ୟ କୌଣସି ବିଘ୍ନ ଆସୁଛି ତ ସେତେବେଳେ ଏହି ଗୋପବାଳକମାନେ ଭଗବାନଙ୍କୁ ମନେ ପକାଉଛନ୍ତି । କହିବାର ତାତ୍ପର୍ଯ୍ୟ ହେଉଛି, ଆମେ ଯଦି କେବେ ଭୁଲ ବଶତଃ ଏପାଖ ସେପାଖ ଚାଲିଯାଉ ଏବଂ ଯଦି ସେଠାରେ ନିଆଁ ଲାଗିଯାଏ କିମ୍ବା କୌଣସି ସଂକଟ ଉପସ୍ଥିତ ହୋଇଯାଏ ତ ସେହି ସମୟରେ - ଏବେ କଣ କରିବା ? ଏପରି ଚିନ୍ତା କରି ଯଦି ସେଠାରେ ବସି ହିଁ ରହିଯାଉ, ତେବେ ଜଳିଯିବା । ସେହି ସମୟରେ ଭଗବାନଙ୍କୁ ମନେ ପକାଇବା ଉଚିତ । ବାରମ୍ବାର ଭଗବାନଙ୍କୁ ମନେ ପକାଇବା ଉଚିତ୍ ।

ଏଠାରେ ଦେଖନ୍ତୁ, କାହାଣୀମାନଙ୍କରେ ମଧ୍ୟ କିପରି ବଡ଼ ବଡ଼ ରହସ୍ୟ (ମହତ୍ତ୍ୱ) କଥା ମାନ କୁହାଯାଇଛି । ଏପରି ଦେଖିଲେ ତ କଥା ବହୁତ ଶିଘ୍ର ଆଗକୁ ବଢୁଛି, କିନ୍ତୁ ତାର ଯେଉଁ ସାର ସେଥିରେ ଯେଉଁ ବିଶେଷ ଅର୍ଥ ଲୁଚି ରହିଛି, ତାର ଯେଉଁ ତାତ୍ପର୍ଯ୍ୟ, ତାକୁ ବୁଝିବା ପରମ ଆବଶ୍ୟକ ।

ଏଠାରେ ଗୋପାଳବାଳକମାନେ ବାରମ୍ବାର ଭଗବାନଙ୍କର ନାମ ନେଇ ତାଙ୍କର ଶରଣରେ ଯାଉଛନ୍ତି । ଯେ ପର୍ଯ୍ୟନ୍ତ ଭଗବାନଙ୍କୁ ମନେ ପକାଇ ନାହାନ୍ତି, ସେ ପର୍ଯ୍ୟନ୍ତ ଭଗବାନ କିଛି କରୁନାହାନ୍ତି । ଏବେ ଗାଈମାନେ କେଉଁଆଡ଼େ ଗଲେ ତ ଭଗବାନଙ୍କୁ କଣ ଏକଥା ଜଣା ନାହିଁ ? ଏ ଗୋପାଳବାଳକମାନେ ସେମାନଙ୍କ ପଛରେ ଯାଇଛନ୍ତି, ଏ କଥା କଣ ଭଗବାନଙ୍କୁ ଜଣାନାହିଁ ? କିନ୍ତୁ ସେ ନିଜେ କିଛି କରନ୍ତି ନାହିଁ । କାରଣ ସେ ତ ଉପଦ୍ରଷ୍ଟା ନା । ସେ କେବଳ ଦେଖୁଥାଆନ୍ତି । ଯେ ମୋତେ ଡାକିବ ତା ପାଖକୁ ଯିବି । ଏହିପରି ତାଙ୍କର ନିୟମ ଅଟେ, ସ୍ୱଭାବ ଅଟେ । ତେବେ ଯେଉଁଠି କଷ୍ଟ ଆସିଲା, ସଂକଟ ଆସିଲା ସେହିଠାରେ ଏମାନେ ସମସ୍ତେ ଭଗବାନଙ୍କୁ ଡାକନ୍ତି ।

ଭଗବାନ ସେଠାରେ ପହଞ୍ଚିଲେ । ପୁଣି ସେମାନଙ୍କୁ କହୁଛନ୍ତି, "ଆରେ ନିଆଁ ଲାଗିଛି, କିଛି କଥା ନାହିଁ, ଏବେ ତୁମେ ସମସ୍ତେ ଆଖି ବନ୍ଦ କର ।" ସେମାନେ ସମସ୍ତେ ଆଖି ବନ୍ଦ କରିଲେ । ଭଗବାନ ଅଗ୍ନିକୁ ପିଇଗଲେ । ପୁଣି କହିଲେ, "ଆଖି ଖୋଲ" । ସମସ୍ତେ ଆଖି ଖୋଲିଲେ ତ ସେମାନଙ୍କୁ ସେଠାରେ ଆଉ କିଛି ମଧ୍ୟ ଦେଖାଗଲା ନାହିଁ ।

ଦେଖନ୍ତୁ, ଭଗବାନ ସେହି ଅଗ୍ନିକୁ (କ୍ରୋଧାଗ୍ନିକୁ) ପିଇଗଲେ । ଏଥିରେ ଆଶ୍ଚର୍ଯ୍ୟର କିଛି କଥା ନାହିଁ । ଦେଖନ୍ତୁ, କେବେ ଯଦି ଆମର ମଧ୍ୟ କ୍ରୋଧ ଆସେ ଏବଂ ସେତେବେଳେ ଆମେ ଯଦି ଭଗବାନଙ୍କର ସ୍ମରଣ କରିବାକୁ ଲାଗୁ ତ ଆମର କ୍ରୋଧ ରହିପାରିବ ନାହିଁ । କାରଣ କ୍ରୋଧ କରିବା ଏବଂ ଭଗବାନଙ୍କର ମଧ୍ୟ ସ୍ମରଣ କରିବା, ଏ ଦୁଇଟି କାର୍ଯ୍ୟ ଏକ ସଙ୍ଗେ ହୋଇପାରେ ନାହିଁ । ଭଗବାନଙ୍କର ନାମ ନେଉଥିବା ଏବଂ କାମବାସନାକୁ ତା ସହିତ ବଢ଼ାଇ ଚାଲିଥିବା, ଏହା କଣ ସମ୍ଭବ କି ? ଆଦୌ ନୁହେଁ । ନିଜେ କରି ଦେଖ, ରାମ-ରାମ ବୋଲୁଥାଅ ଏବଂ କିଛି ଭୁଲ କାର୍ଯ୍ୟ ବା ଗୋଳମାଳିଆ କାର୍ଯ୍ୟ କରୁଥାଅ, ତାହା ହୋଇପାରିବ ନାହିଁ । ନାମରେ ଏପରି ଶକ୍ତି ଅଛି । ପରନ୍ତୁ ଆମର ମନ ଏତେ ଚାଲାକ୍ ଯେ ତାହା ଆମକୁ ଭଗବାନଙ୍କର ନାମ ନେବାକୁ ଦେଉନାହିଁ ।

ସମସ୍ତ ଗୋପାଳବାଳକ ଘରକୁ ଫେରି ଆସୁଛନ୍ତି, ଏବଂ ଦିନ ସାରା ଯାହା ଯାହା ଘଟଣାମାନ ହୋଇଛି, ଘରକୁ ଆସି ତାହା ସବୁ ସମ୍ପୂର୍ଣ୍ଣ ରୂପେ ଶୁଣାଉଛନ୍ତି ଯେ, ଆଜି ଏପରି ହେଲା, ଆଜି ସେପରି ହେଲା । ଘର ଲୋକେ ମଧ୍ୟ ଦିନ ସାରା ସେମାନଙ୍କୁ ପ୍ରତୀକ୍ଷା କରି ରହୁଥିଲେ ଯେ ଏମାନେ କେତେବେଳେ ଘରକୁ ଆସିବେ ଏବଂ କେତେବେଳେ କେଉଁ ନୂଆ ଲୀଳା ଶୁଣାଇବେ ? ଆଜି କଣ ହେଲା ? କେଉଁ ନୂଆ ଘଟଣା ହେଲା ? ଶୁଣିବା ପାଇଁ ସମସ୍ତେ ଆତୁର ହୋଇ ରହିଥାଆନ୍ତି ।

**ତୟୋସ୍ତଦଦ୍ଭୁତଂ କର୍ମ ଦାବାଗ୍ନେର୍ମୋକ୍ଷମାତ୍ମନଃ ।**
**ଗୋପାଃ ସ୍ତ୍ରୀଭ୍ୟଃ ସମାଚଖ୍ୟୁଃ ପ୍ରଲମ୍ବବଧମେବ ଚ ॥ (୧୦.୨୦.୧)**
**ଗୋପ ବୃଦ୍ଧାଶ୍ଚ ଗୋପ୍ୟଶ୍ଚ ତଦୁପାକର୍ଣ୍ଣ୍ୟ ବିସ୍ମିତାଃ ।**
**ମେନିରେ ଦେବପ୍ରବରୌ କୃଷ୍ଣରାମୌ ବ୍ରଜଂ ଗତୌ ॥ (୧୦.୨୦୨)**

ଏବେ ସେ ସମସ୍ତଙ୍କୁ ଏହି ବିଶ୍ୱାସ ହୋଇଯାଇଥିଲା ଯେ କୃଷ୍ଣ ଏବଂ ବଳରାମ ଦୁଇ ଭାଇଙ୍କ ରୂପରେ କୌଣସି ଦେବତା ହିଁ ଏଠାକୁ ଆସିଛନ୍ତିତ କାରଣ ସେମାନଙ୍କର ସମସ୍ତ କାର୍ଯ୍ୟ ଅତର୍କ୍ୟ ଥିଲା । ସେମାନ ତାଙ୍କୁ ବୁଝିପାରୁନଥିଲେ ।

ଏହାପରେ ଏହି ବିଂଶ ଅଧ୍ୟାୟରେ ବର୍ଷାଋତୁ ବା ଶରତ୍ ଋତୁର ଏତେ ସୁନ୍ଦର ବର୍ଣ୍ଣନ କରାଯାଇଛି ଯେ ଗୋଟିଏ-ଗୋଟିଏ ଶ୍ଳୋକ ଶୁଣିବା-ବୁଝିବା ଭଳି ହୋଇଛି । କିନ୍ତୁ ସମୟ ଅଭାବ କାରଣରୁ ଗୋଟି-ଗୋଟି ଶ୍ଳୋକ ଉପରେ ବିଚାର କରିପାରିବା ନାହିଁ। ଏହିଭଳି ପ୍ରସଙ୍ଗର ବର୍ଣ୍ଣନ, ଗୋସ୍ୱାମୀ ତୁଳସୀଦାସ ଜୀ ଶ୍ରୀରାମଚରିତ ମାନସର କିଷ୍କିନ୍ଧା କାଣ୍ଡରେ ମଧ୍ୟ କରିଛନ୍ତି । ପ୍ରବର୍ଷଣ ପର୍ବତ ଉପରେ ଶ୍ରୀରାମଚନ୍ଦ୍ର ଜୀ ବସିଛନ୍ତି, ଏବଂ ଲକ୍ଷ୍ମଣ ଜୀଙ୍କୁ କହୁଛନ୍ତି ଯେ, ଦେଖ ଏ ସମସ୍ତ ବାଦଲ କିଭଳି ମୃଦୁଗଂଜନ କରୁଛନ୍ତି, ବିଜୁଳି କିପରି ଚମକୁଛି ଆଦି । ଏହି ପ୍ରସଙ୍ଗର ଗୋଟିଏ ଗୋଟିଏ ବର୍ଣ୍ଣନ ସେ ଭାଗବତର ଅନୁରୂପ ହିଁ କରୁଛନ୍ତି । ବହୁତ ସୁନ୍ଦର ଚୌପାଇମାନ ଲେଖିଛନ୍ତି । ପ୍ରଥମେ ବର୍ଷା ଋତୁର ବର୍ଣ୍ଣନ ଅଛି, ତା ପରେ ଶରତ୍ ଋତୁର । ଯଦ୍ୟପି ଏହା ସୃଷ୍ଟିର - ନିସର୍ଗର ବର୍ଣ୍ଣନ ତଥାପି ଏହି ବର୍ଣ୍ଣନ ସହିତ ଜୀବନ ସମ୍ବନ୍ଧୀୟ କିଛି କଥା ଅର୍ଥାତ ଏହି ଜୀବନରେ କେଉଁଭଳି ଆମର ରହିବା ଉଚିତ୍, ତାହା ମଧ୍ୟ ଶିକ୍ଷା ଦିଆଯାଇଛି । ଦୃଷ୍ଟାନ୍ତ ସ୍ୱରୂପ, ଯେପରି ବିଜୁଳି ଚମକୁଛି, କିନ୍ତୁ ସ୍ଥିର ରହୁ ନାହିଁ, ସେହିପରି ଖଳର ପ୍ରେମ ପ୍ରସନ୍ନତା କେବେ ସ୍ଥିର ରହେ ନାହିଁ । ଏହି ଜଳଧାରା ପର୍ବତ ଉପରେ ବର୍ଷୁଅଛି, କିନ୍ତୁ ଏହି ପର୍ବତର ଶିଖର ସେହି ଧାରାର ଆଘାତକୁ ସହି ଯାଉଛି । କିପରି ସହିଯାଉଛି ? କହୁଛନ୍ତି-

**ବୃନ୍ଦ ଅଘାତ ସହ ହିଁ ଗିରି କୈସେ ।**
**ଖଲ କେ ବଚନ ସଂତ ସହ ଜୈସେ ॥**

**ଶ୍ରୀରାମଚରିତ ମାନସ (୪.୧୩.୨)**

କହିଲେ, ଏହି ପର୍ବତ, ଜଳର ଏହି ଧାରାମାନଙ୍କୁ, ଏହି ବୁନ୍ଦ ସମୂହକୁ ସେହିପରି ସହନ କରୁଛନ୍ତି, ଯେପରି ସାଧୁଜନ ଦୁଷ୍ଟ ଲୋକମାନଙ୍କର ବଚନକୁ ସହନ କରିଥା'ନ୍ତି। ଦେଖନ୍ତୁ, ଏହିପରି ରଚନା ଦ୍ୱାରା, ଯେଉଁଠାରେ ଗୋଟିଏ ପାଖରେ ସୃଷ୍ଟିର ବର୍ଣ୍ଣନ ହେଉଛି ସେହିଠାରେ ଅନ୍ୟପାଖରେ ନିଜର ମନକୁ ମଧ୍ୟ ଉପଦେଶ ମଧ୍ୟ ପ୍ରାପ୍ତ ହେଉଛି, ଏପରି ସୁନ୍ଦର ବର୍ଣ୍ଣନ ସେଠାରେ କରାଯାଇଛି ।

ଭଗବାନ ଦେଖିଲେ, ସୃଷ୍ଟିର ସୌନ୍ଦର୍ଯ୍ୟ ନିତ୍ୟ ନବୀନ ହୋଇଯାଉଛି । ତାଙ୍କ ମନରେ ଉତ୍ସାହ ଭରି ଆସୁଛି ଏବଂ ସେ ବେଣୁଟିଏ ନେଇ ବଜାଇବାକୁ ଆରମ୍ଭ କରିଛନ୍ତି। ଆଜି ମଧ୍ୟ ଯଦି ଆମେ ଭଲ ଭାବରେ କାହାକୁ ବଂଶୀ ବଜାଇବାର ଶୁଣି ନେଉ, ତ ଆମର ମନ ମୁଗ୍ଧ ହୋଇଯାଏ। ଭଗବାନ ତ ଅଖିଳ କଳା ଗୁରୁ ଅଟନ୍ତି। ଶ୍ରୀରାମ ଅବତାରରେ ସେ ଏଇ ବିଷୟର ଆନନ୍ଦ ନେଇପାରିନଥିଲେ । ନା ସେ ନୃତ୍ୟ କରିପାରିଲେ

ନା ମୁରଲୀ ବଜାଇ ପାରିଲେ । ପିଲାଟି ଦିନରୁ ହିଁ ତାଙ୍କ ଜୀବନରେ ଗୋଟିକ ପରେ ଗୋଟିଏ ଏପରି ଗମ୍ଭୀର ପ୍ରସଙ୍ଗମାନ ଆସୁଥିଲା । ତାଙ୍କୁ ଅନ୍ୟପ୍ରକାର କାର୍ଯ୍ୟ ହିଁ କରିବାକୁ ପଡୁଥିଲା । ଧରି ନିଅନ୍ତୁ, ଭଗବାନ ଶ୍ରୀକୃଷ୍ଣ ଅବତାରରେ ନିଜ ସଙ୍ଗୀତର ସଉକ ପୂର୍ଣ୍ଣ କରିନେଲେ । ପୁଣି ବାଁସୁରୀ (ବଂଶୀ) ତ ସଂଗୀତର ଏକ ସୁନ୍ଦର ବାଦ୍ୟ ଅଟେ । ଅଣ୍ଟାରେ ଖୋସିଦେଲେ ଏବଂ ଚାଲିଲେ । ଆଉ କିଛି କରିବାକୁ ପଡ଼େ କି ? ଏବେ ଯଦି ହାରମୋନିୟମ ହୋଇଥାଆନ୍ତା, ତ ତାକୁ କେଉଁଆଡ଼େ ନେଇଯିବା ସହଜ ନୁହେଁ । ତାହା ଖୁବ ଭାରୀ, ଓଜନ ଦାର ହୋଇଥାଏ । ବାଁସୁରୀ ପାଇଁ ଏପରି କୌଣସି ସମସ୍ୟା ହୁଏ ନାହିଁ, ତାହା ଖୁବ ହାଲୁକା ଅଟେ । ତେଣୁ ଭଗବାନ ତାକୁ ସଙ୍ଗରେ ନେଇ ଚାଲନ୍ତି ।

## ବଂଶୀର ବିଶେଷତା

ସଂଗୀତର ସମସ୍ତ ବାଦ୍ୟମାନଙ୍କ ମଧ୍ୟରୁ ବଂଶୀ ସବୁଠାରୁ ଅଧିକ ପ୍ରାକୃତିକ, ବାଉଁଶରେ ତିଆରି ହୋଇଥାଏ । ଆଗକୁ ପଚରାଯାଇଛି ଯେ, ଏହି ବଂଶୀକୁ ଏପରି ଭାଗ୍ୟ କିପରି ମିଳିଲା ? ତାକୁ ଭଗବାନଙ୍କର ଅଧରାମୃତର ଆସ୍ୱାଦନ ମିଳିଲା, ଯାହାକୁ ଲୋକମାନେ ସବୁବେଳେ ଚାହିଁଥାଆନ୍ତି । ଗୋପୀମାନେ ତ ଏହି ବଂଶୀକୁ ଈର୍ଷା କରୁଥିଲେ । କହୁଥିଲେ, ଆମର ଅଧିକାରକୁ ଏହି ବଂଶୀ ଛଡ଼ାଇ ନେଉଛି । ଏହି ଓଠାରେ ଆମର ଅଧିକାର ଅଛି । କିନ୍ତୁ, ଯେ ପର୍ଯ୍ୟନ୍ତ ଏଇ ବଂଶୀ ତାଙ୍କ ଓଠରେ ଲାଗି ରହିଛି, ସେ ପର୍ଯ୍ୟନ୍ତ ଆମକୁ ତ ତାଙ୍କର ଆସ୍ୱାଦନ ମିଳୁ ହିଁ ନାହିଁ । ଭଗବାନଙ୍କର ତା ଉପରେ ଏପରି ପ୍ରୀତି ଯେ ତାକୁ ସବୁବେଳେ ତାଙ୍କ ଅଣ୍ଟାରେ ଖୋସି କରି ରଖୁଛନ୍ତି । ସେ ତାକୁ ଏଠି-ସେଠି କେଉଁଠାରେ ରଖୁନାହାନ୍ତି ।

ଜଣେ ତାକୁ ପଚାରିଲା, "ରେ ବଂଶୀ, ତୁ ଏପରି କଣ ପୁଣ୍ୟ କରିଛୁ ଯେ ଭଗବାନ ତୋତେ ନିଜ ସାଥିରେ ରଖିଛନ୍ତି ଏବଂ ନିଜର ଓଠରେ ଲଗାଉଛନ୍ତି ? କହିଲା, "ମୁଁ ଗ୍ରୀଷ୍ମରେ କେତେ ତପ୍ତ ହୋଇଛି ! ତୁମକୁ ଜଣାଅଛି ? ଦେଖନ୍ତୁ, ବଂଶୀ ହେବା ପୂର୍ବରୁ ତ ବାଉଁଶ ରୂପରେ ଥାଏ । ବାଉଁଶ ଗଛ ପ୍ରଥମେ ଭୂମିରେ ଥାଏ । ପୁଣି ବାହାରକୁ ଆସି ସୂର୍ଯ୍ୟଙ୍କର ଗରମ, ଉତ୍ତାପ, ବର୍ଷା ଆଦି ସବୁ କିଛି ସହନ କରେ । ବାଉଁଶ ଗଛଟି ଯେତେବେଳେ ବଢୁଥାଏ ତ ତାକୁ ଏ ସବୁକୁ ସହିବାକୁ ପଡ଼ିଥାଏ କି ନାହିଁ ? ସେ କେତେ ତପସ୍ୟା କରେ ? ଏତେ ତପସ୍ୟା କଲାପରେ ତାକୁ କାଟନ୍ତି, ସେ ସବୁ ମଧ୍ୟ ତାକୁ ସହନ କରିବାକୁ ପଡ଼େ । ପୁଣି ସେଥିରେ କଣା କରନ୍ତି । ଗୋଟିଏ

ନୁହେଁ, ସାତ-ସାତଟି ଛିଦ୍ର କରନ୍ତି । ଏବେ କୁହନ୍ତୁ, ଯଦି କେହି ଆମ ଉପରେ ଛିଦ୍ର କରନ୍ତି, ତେବେ ଆମକୁ କିପରି ଲାଗିବ ? ବଂଶୀ କହୁଛି - ମୁଁ ଏ ସମସ୍ତ କିଛି ଘଟଣାକୁ ସହନ କରି ନିଏ । ପୁଣି ଦ୍ୱିତୀୟ କଥା ହେଉଛି, ନିଜ ଭିତରେ ସେ କିଛି ରଖେ ନାହିଁ, ଭିତରୁ ସେ ସମ୍ପୂର୍ଣ୍ଣ ରୂପେ ସଫା, ଖାଲି ଥାଏ ।

ସବୁଠାରୁ ବଡ଼ କଥା ହେଲା ଯେ ବଂଶୀ ନିଜର କୌଣସି ସ୍ୱର ବାହାର କରେ ନାହିଁ । ଯେତେବେଳେ ଭଗବାନ ପ୍ରାଣବାୟୁ ଫୁଙ୍କନ୍ତି ତ ଭଗବାନ ଯେପରି ଚାହାନ୍ତି, ସେ ସେହିଭଳି ସ୍ୱରରେ ବାଜି ଉଠେ । ନିଜେ କୌଣସି ନୂତନ ସ୍ୱର ବାହାର କରେ ନାହିଁ। ନିଜେ ନିଜକୁ ସମ୍ପୂର୍ଣ୍ଣ ରୂପେ ସମର୍ପିତ କରି ଦେଇଛି, ଏ ବଂଶୀ ଏହିପରି ଅଟେ।

ଆମ୍ଭେମାନେ ମଧ୍ୟ ନିଜକୁ ଏହିଭଳି କରିନେବା ଉଚିତ୍ । ଜୀବନର ସମସ୍ତ କଷ୍ଟ, ତାପ ମଧ୍ୟ ସହନ କରି ନିଅ, ଏବଂ ଭିତରୁ ସମ୍ପୂର୍ଣ୍ଣ ଭାବରେ ଶୂନ୍ୟ (ଖାଲି) ହୋଇଯାଅ, ଭିତରେ କୌଣସି ଅବରୋଧ (ପ୍ରତିବନ୍ଧକ) ରହି ନ ଯାଉ । କିନ୍ତୁ ଆମ ଭିତରେ ତ ରାଗ-ଦ୍ୱେଷ, କାମ-କ୍ରୋଧ ଜଣାନାହିଁ କଣ କଣ ସବୁ ଭରି ରହିଛି । ସେଥିପାଇଁ କେବେ ଭଗବାନ ଆମକୁ ନିଜ ପାଖକୁ ନେଇ ମଧ୍ୟ ଯାଆନ୍ତି, ଆମ ଦ୍ୱାରା କିଛି କରାଇବା ନିମନ୍ତେ ଚାହାନ୍ତି, ତଥାପି ମଧ୍ୟ ଆମେ ନିଜର ହିଁ ରାଗକୁ ଆଳାପିତ କରୁଥାଉ, ନିଜର ସ୍ୱରକୁ ହିଁ ବାହାର କରୁଥାଉ । ଯେପରି, ଆମେ ହାରମୋନିୟମ୍ ବଜାଇ ବସିବା ବେଳେ ଜଣାନାହିଁ ମଝି ମଝିରେ କେଉଁଠାରୁ ଅନ୍ୟ କୌଣସି ସ୍ୱର ବାଜିବାକୁ ଲାଗେ । ସେ ସ୍ୱତନ୍ତ୍ର ହୋଇ ନିଜର ରାଗକୁ ଆଳାପ କରୁଥାଏ । ଭଗବାନ କହୁଛନ୍ତି - ଏହା ଠିକ ନୁହେଁ ।

## ବେଣୁ ଗୀତ

ସୃଷ୍ଟିର ସୌନ୍ଦର୍ଯ୍ୟରେ ଉତ୍ସାହିତ ହୋଇ ଭଗବାନ ଯେତେବେଳେ ମଧୁର ବେଣୁ ନାଦ କଲେ ତ ତାକୁ ସମସ୍ତ ବୃନ୍ଦାବନବାସୀମାନେ ଶୁଣିଲେ । ସମସ୍ତେ ଦୌଡ଼ି ଦୌଡ଼ି ଭଗବାନଙ୍କ ନିକଟରେ ପହଞ୍ଚିଗଲେ ।

**ଏବଂ ବିଧା ଭଗବତୋ ଯା ବୃନ୍ଦାବନଚାରିଣଃ ।**

**ବର୍ଣ୍ଣୟନ୍ତ୍ୟୋ ମିଥୋ ଗୋପ୍ୟଃ କ୍ରୀଡ଼ାସ୍ତନ୍ମୟତାଂ ୟୟୁଃ ॥ (୧୦.୨୧.୨୦)**

ଧ୍ୟାନ ରଖନ୍ତୁ, ଯଦି ବର୍ତ୍ତମାନ ମଧ୍ୟ କେହି ଶୁଣିବାକୁ ଚାହାନ୍ତି ତ ଭଗବାନଙ୍କର ବେଣୁ ନାଦ ଶୁଣାଇ ଦେଇପାରିବେ। ଶେଷରେ ଭଗବାନ ବେଣୁନାଦ କରି କଣ କରିବାକୁ ଚାହାଁନ୍ତି ? ଆମକୁ ତାଙ୍କ ନିକଟକୁ ଡାକୁଛନ୍ତି । ଦେଖନ୍ତୁ କେହି ଜଣେ କହିଲେ, ଭଗବାନ ଶ୍ରୀରାମଚନ୍ଦ୍ର ଜୀ ତ କେବେ ବେଣୁ ବଜାଇ ନ ଥିଲେ । କହିଲେ – ବଜାଇବାର ଆବଶ୍ୟକତା କ'ଣ ଥିଲା ? ସେ ଏତେ ସୁନ୍ଦର ଥିଲେ, ଯେ ଯେତେବେଳେ ସେ ଚାଲୁଥିଲେ ସେତେବେଳେ ଲୋକମାନେ ଆପେ ଆପେ ତାଙ୍କ ପଛେ ପଛେ ଚାଲୁଥିଲେ। ବେଣୁ ବଜାଇବାର ଆବଶ୍ୟକତା ନ ଥିଲା । ଓହୋ ! ଏହାର ଅର୍ଥ ଭଗବାନ ଶ୍ରୀକୃଷ୍ଣଙ୍କ ପାଖରେ ଆକର୍ଷଣ ଅଳ୍ପ ଥିଲା । ନା, ନା, ନା ! ସେତେବେଳକୁ ଯୁଗ ବଦଳିଗଲା ଏବଂ ଲୋକମାନଙ୍କର ମନ ଅଧିକ ବହିଃର୍ମୁଖ ହୋଇଗଲା । ସେହି କାରଣରୁ ତାଙ୍କୁ ଡାକିବା ନିମନ୍ତେ ଭଗବାନଙ୍କୁ ବଂଶୀ ବଜାଇବାକୁ ପଡ଼ିଲା । ଏବେ ବୋଧହୁଏ କ୍ଲେରୋନେଟ ବଜାଇବାକୁ ପଡ଼ିପାରେ ! କିଛି ଦିନ ପରେ ହୋଇପାରେ ନାଗରା ବଜାଇବାକୁ ପଡ଼ିପାରେ। ତଥାପି ମଧ୍ୟ ଜଣାନାହିଁ ଆମେ ଯିବା କି ନାହିଁ । ପଚାରିବା କିଏ ବଜାଉଛି ? ଆରେ ! ତୁମ୍ଭମାନଙ୍କୁ ଡାକିବା ନିମନ୍ତେ ବଜାଯାଉଛି । ସେଥିପାଇଁ ତ ମନ୍ଦିରରେ ଶଙ୍ଖ ଧ୍ୱନୀ କରାଯାଉଛି ଯେ ଆସ, ଏଠାକୁ ଆସ ! ଏହି ଦୃଷ୍ଟିରେ ଭଗବାନ ବେଣୁନାଦ କଲେ । ଏହା ହେଉଛି ବେଣୁଗୀତ । ସମସ୍ତେ ଦୌଡ଼ି ଦୌଡ଼ି ସେଠାରେ ପହଞ୍ଚିଲେ, କେବଳ ଦର୍ଶନରେ ଯଥେଷ୍ଟ ନୁହେଁ, ଅତି କମରେ ନାଦ ଶୁଣି କରି ହିଁ ସେମାନେ ଦୌଡ଼ିଗଲେ । ହଁ ନା ? ବର୍ତ୍ତମାନ ମଧ୍ୟ ଯଦି ଆମେ ଆମର କାନ୍ଦିବା ଟିକିଏ କମ କରିଦିଅନ୍ତି, ତେବେ ଆମ୍ଭେମାନେ ମଧ୍ୟ ଭଗବାନଙ୍କର ମୂରଲୀର ସ୍ୱର ଶୁଣିବା ପାଇଁ ପାଇପାରିବା । ବୃନ୍ଦାବନରେ ଭଗବାନ ସମସ୍ତଙ୍କୁ ଆନନ୍ଦିତ କରିଚାଲିଛନ୍ତି।

## ବସ୍ତ୍ର-ହରଣ-ଲୀଳାର ରହସ୍ୟ

**ହେମନ୍ତେ ପ୍ରଥମେ ମାସି ନନ୍ଦବ୍ରଜକୁମାରିକାଃ ।**
**ଚେରୁର୍ହବିଷ୍ୟଂ ଭୁଞ୍ଜାନାଃ କାତ୍ୟାୟନ୍ୟର୍ଚନବ୍ରତମ୍ ॥ (୧୦.୨୨.୧)**

ଏବେ ବସ୍ତ୍ରହରଣ ଲୀଳା କଥା ଆସୁଛି । ହେମନ୍ତ ଋତୁରେ ବ୍ରଜର କୁମାରୀମାନେ, ଗୋପୀମାନେ କାତ୍ୟାୟନ ବ୍ରତ କରିଥିଲେ । ଏହି ବ୍ରତରେ ଏକମାସ ପର୍ଯ୍ୟନ୍ତ କାତ୍ୟାୟନୀ ଦେବୀଙ୍କର ପୂଜା ଆରାଧନା କରାଯାଇଥାଏ, ବ୍ରତ ମଧ୍ୟ ରଖାଯାଏ । ନିଜର ମନ ପସନ୍ଦ ବର ପ୍ରାପ୍ତି ନିମନ୍ତେ ସେମାନେ ଏହି ବ୍ରତ କରୁଥିଲେ ଏବଂ ତାର ସମାପ୍ତି ସମୟରେ ଯଥାରୂପେ ସେମାନେ ସମସ୍ତେ ନଦୀରେ ସ୍ନାନ କରିବାକୁ ଯାଉଥିଲେ । ସେମାନେ ନିଜର ବସ୍ତ୍ରଗୁଡ଼ିକୁ ଓହ୍ଲାଇ କୂଳରେ ରଖି ବିବସ୍ତ୍ର ହୋଇ ନଦୀରେ ସ୍ନାନ କରୁଥିଲେ । ଏତିକିବେଳକୁ ଶ୍ରୀକୃଷ୍ଣ ଓ ତାଙ୍କର ସଖାମାନେ ବୁଲି ବୁଲି ସେଠାରେ ଆସି ପହଞ୍ଚିଗଲେ। ଭଗବାନ ଭାବିଲେ, ଆଚ୍ଛା, ନଦୀରେ ସ୍ନାନ କରୁଛ । ସେମାନେ ବସ୍ତ୍ରଗୁଡ଼ିକୁ ଉଠାଇନେଲେ ଏବଂ ଗଛ ଉପରେ ଯାଇ ବସିଗଲେ । ଏପଟେ ଗୋପିମାନେ କିଛି ଜାଣିପାରିଲେ ନାହିଁ। ସେମାନେ ନିଶ୍ଚିତ ହୋଇ ଜଳବିହାର କରିବାରେ ମଗ୍ନ ଥିଲେ । ତାପରେ ସେମାନେ ସମସ୍ତେ ଦେବୀଙ୍କ ପ୍ରାର୍ଥନା କରୁଛନ୍ତି, କହୁଛନ୍ତି ଯେ ଆମେ ତ ଶ୍ୟାମସୁନ୍ଦରଙ୍କର ଦାସୀ ଅଟୁ ।

**ନନ୍ଦଗୋପସୁତଂ ଦେବି ପତିଂ ମେ କୁରୁ ତେ ନମଃ ॥ (୧୦.୨୨.୪)**

ଆମେ ଆପଣଙ୍କୁ ନମସ୍କାର କରୁଛୁ। ଆମେ ଚାହୁଁଛୁ ଯେ ନନ୍ଦ ଗୋପକୁମାର ଶ୍ରୀକୃଷ୍ଣ ଆମ୍ଭମାନଙ୍କୁ ପତି ରୂପରେ ପ୍ରାପ୍ତ ହୁଅନ୍ତୁ ।

ଭଗବାନ ସେଠାରେ କଦମ୍ବ ବୃକ୍ଷରେ ବସିଥିଲେ । ସମସ୍ତ ଗୋପବାଳକ ଉଚ୍ଚ ସ୍ୱରରେ ହସିବାକୁ ଲାଗିଲେ ଏବଂ ସ୍ୱୟଂ ଶ୍ରୀକୃଷ୍ଣ ମଧ୍ୟ ହସି-ହସି ସେମାନଙ୍କୁ କହିଲେ - ନିଜ ନିଜର ବସ୍ତ୍ର ସବୁ ନେଇଯାଅ । ଜଣେ କୁମାରୀର ଧ୍ୟାନ ଗଲା ଯେ ସେଠାରେ ଦେଖ, ବସ୍ତ୍ର ବ୍ୟବସାୟୀ ଭଳି ଗଦାଏ ବସ୍ତ୍ର ଧରି ଗଛ ଉପରେ ଯାଇ ବସିଛି । ଏବେ ସେମାନେ ଜଳରେ କଣ୍ଠ ପର୍ଯ୍ୟନ୍ତ ବୁଡ଼ି ରହିଥିଲେ, ଥଣ୍ଡାରେ ଥରି ଥରି, ନଦୀ ଭିତରେ ଛିଡ଼ା ହୋଇ ଲଜ୍ୟାର ସହିତ ସେମାନେ କହୁଛନ୍ତି - "**ଶ୍ୟାମସୁନ୍ଦର ତଦୋସ୍ୟଃ**" ଆମେ ତ ଆପଣଙ୍କର ଦାସୀ ଅଟୁ, "**କରବାମ ତବୋଦିତମ୍**" ଆପଣ ଯାହା କହିବେ ଆମେ ତାହା ହିଁ କରିବୁ ।

**ଦେହି ବାସାଂସି ଧର୍ମଜ୍ଞ ନୋ ଚେଦ୍ ରାଜ୍ଞେ ବ୍ରୁବାମହେ ॥ (୧୦.୨୨.୧୫)**

ଏବେ ଆପଣ ଶିଘ୍ର ଆମର ବସ୍ତ୍ର ଆମକୁ ଫେରାଇ ଦିଅନ୍ତୁ । ଯଦି ନ ଦେବେ ତ ଆମେ ରାଜାଙ୍କୁ ଯାଇ କହିଦେବୁ । ଯିବ? ଏଠାରୁ ବାହାରି ରାଜାଙ୍କୁ କହିବାକୁ ଯିବ ? କିପରି ଯିବ ? ଭଗବାନ କହିଲେ, "ମୋତେ ଧମକ ଦେଉଛ ? ଏ ଧମକି ମୋ ସାମ୍ନାରେ ଚଳିବ ନାହିଁ ।" ଭଗବାନ କହୁଛନ୍ତି - "ଗୋଟିଏ ପାଖେ କହୁଛ ଯେ ଆମେ ଆପଣଙ୍କର ଦାସୀ ଅଟୁ, ଆପଣ ଯାହା କହିବେ, ଆମେ ତାହା ହିଁ କରିବୁ, ପୁଣି ଅନ୍ୟ ପଟେ ଧମକ ମଧ୍ୟ ଦେଉଛ ?" ଭଗବାନ ପୁଣି କହୁଛନ୍ତି, "ମୁଁ ଯାହା କହିବି ତାହା କରିବ ?" (ଗୋପିମାନେ) କହିଲେ, "ହଁ କରିବୁ ।" ସେତେବେଳେ ଭଗବାନ କହିଲେ -

**ଭବତ୍ୟୋ ଯଦି ମେ ଦାସ୍ୟୋ ମୟୋକ୍ତଂ ବା କରିଷ୍ୟଥ । (୧୦.୨୨.୧୬)**

ଯଦି ତୁମ୍ଭେମାନେ ମୋର ଦାସୀ ଅଟ, ପୁଣି ମୁଁ ଯାହା କହୁଛି ତାହା କରିବ, ତେବେ -

**ଅତ୍ରାଗତ୍ୟ ସ୍ୱବାସାଂସି ପ୍ରତୀଚ୍ଛନ୍ତୁ ଶୁଚିସ୍ମିତାଃ ॥ (୧୦.୨୨.୧୬)**

ସେଠାରୁ (ନଦୀ ଜଳରୁ) ବାହାରି ଏଠାକୁ ଆସ ଏବଂ ନିଜର ବସ୍ତ୍ରକୁ ନେଇଯାଅ । ମୁଁ କେଉଁଠି ମନା କରୁଛି । ତୁମର ଏହି ବସ୍ତ୍ରକୁ ମୋର ନା ପିନ୍ଧିବାର ଅଛି ନା ଦୋକାନ କରି ଏସବୁ ବିକିବାର ଅଛି । ମୁଁ ବସ୍ତ୍ର ଦେବାକୁ କେଉଁଠି ମନା କରୁଛି । କିନ୍ତୁ ତୁମ୍ଭେମାନେ ପ୍ରଥମେ ଏଠାକୁ ଆସ । ଏବେ ସେମାନେ ନିଜ ନିଜ ଭିତରେ ପରସ୍ପରକୁ ଚାହୁଁଛନ୍ତି ଯେ ଏପରି ଉଲଗ୍ନ ଅବସ୍ଥାରେ କିପରି ବାହାରକୁ ଯିବା ?

ଭଗବାନଙ୍କର ଏହି ବସ୍ତ୍ର ହରଣ ଲୀଳା ବଡ଼ ପ୍ରସିଦ୍ଧ ଅଟେ । କିନ୍ତୁ ତା ସହିତ ମଧ୍ୟ ଏହି ଲୀଳା ଅନେକ ପ୍ରକାର ଶଙ୍କା ସୃଷ୍ଟି କରୁଛି । ସେଥିପାଇଁ, ଭାଗବତରେ ପ୍ରଥମେ ଅନେକ ଅବତାରମାନଙ୍କର କଥା ବର୍ଣ୍ଣନ କରାଯାଇଛି, ପୁଣି ରାମ ଅବତାରର କଥା ବର୍ଣ୍ଣନ ହୋଇଛି । ରାମଜୀଙ୍କର ଅବତରଣ ଦ୍ୱାରା ଯେତେବେଳେ ନିଜ ମନରୁ କାମନା ପୂର୍ଣ୍ଣତଃ, ସେତେବେଳେ ଯାଇ ଭଗବାନ ଶ୍ରୀକୃଷ୍ଣଙ୍କର ଏହି ଲୀଳା ବୁଝି ହୋଇଥାଏ । ଅନ୍ୟଥା ଏ ସବୁ ବୁଝି ହୁଏ ନାହିଁ । ଦେଖନ୍ତୁ, ଭଗବାନ ସେତେବେଳେ କେବଳ ସାତବର୍ଷର ଥିଲେ । ପୁଣି ଯାହାଙ୍କର ନାମ ସ୍ମରଣ କରିବା ମାତ୍ରେ ହିଁ ଲୋକମାନଙ୍କର ମନ ନିଷ୍କାମ ହୋଇଯାଏ, ତାଙ୍କ ନିମନ୍ତେ କାମବାସନାର କଳ୍ପନା କିମ୍ବା ଶଙ୍କା କରିବା,

ଏହା ଅତି ମୂଢ଼ତାର ହିଁ ଲକ୍ଷଣ ହେବ । ତେବେ ଏଠାରେ ଭଗବାନ କହୁଛନ୍ତି - ଏଠାକୁ ଆସି ବସ୍ତ୍ର ନେଇଯାଅ । ଏବେ ସେମାନେ କହିଥିଲେ ଯେ ଆମେ ଆପଣଙ୍କର ଦାସୀ ଅଟୁ, ତେଣୁ ଭଗବାନଙ୍କ କଥାକୁ ମାନିବାକୁ ପଡ଼ିଲା । ଥଣ୍ଡାରେ ଥରି ଥରି ସେମାନେ ଜଳରୁ ବାହାରକୁ ଆସିଲେ ଏବଂ ନିଜେ ନିଜକୁ କୌଣସି ପ୍ରକାର ଲୁଚାଇ ଭଗବାନଙ୍କ ପାଖୁ ଆସୁଛନ୍ତି । ଭଗବାନ ସେମାନଙ୍କର ଶୁଦ୍ଧ ଭାବ ଦେଖୁଥିଲେ ଯେ ଏମାନେ ବାସ୍ତବରେ ମୋର ଦାସୀ ଅଟନ୍ତି ।

**ଭଗବାନାହତା ବୀକ୍ଷ ଶୁଦ୍ଧଭାବପ୍ରସାଦିତଃ ।**
**ସ୍କନ୍ଧେ ନିଧାୟ ବାସାଂସି ପ୍ରୀତଃ ପ୍ରୋବାଚ ସସ୍ମିତମ୍ ॥ (୧୦.୨୨.୧୮)**

ଭଗବାନ ନିଜର ମୁଚୁକୁନ୍ଦ ହସ ଦ୍ୱାରା ସେମାନଙ୍କ ମନ ଭିତରେ ବଞ୍ଚିଥିବା ଲଜ୍ଜା, ସଂକୋଚ ଆଦିକୁ ହରଣ କରିନେଲେ ।

**ଯୂୟଂ ବିବସ୍ତ୍ରା ଯଦପୋ ଧୃତବ୍ରତା**
**ବ୍ୟଗାହତୈତତ୍ତଦୁ ଦେବହେଲନମ୍ ।**
**ବଦ୍ଧ୍ୱାଞ୍ଜଳିଂ ମୂର୍ଦ୍ଧ୍ନ୍ୟପନୁତ୍ତୟେଂଽହସଃ**
**କୃତ୍ୱା ନମୋଽଧୋ ବସନଂ ପ୍ରଗୃହ୍ୟତାମ୍ ॥ (୧୦.୨୨.୧୯)**

ପୁଣି ଭଗବାନ ସେମାନଙ୍କୁ କହିଲେ ଯେ ତୁମ୍ଭେମାନେ ବସ୍ତ୍ରହୀନ ହୋଇ ନଦୀରେ ସ୍ନାନ କରିବା ଦ୍ୱାରା ବରୁଣ ଦେବତା ତଥା ଯମୁନା ଜୀଙ୍କର ଅପମାନ କରିଛ । ସେଥିପାଇଁ "**ବଦ୍ଧ୍ୱାଞ୍ଜଳିଂ**" ହାତଯୋଡ଼ି ନତମସ୍ତକ ହୋଇ ପ୍ରଣାମ କର । ତାପରେ ନିଜ ନିଜର ବସ୍ତ୍ର ନେଇଯାଅ । ସେମାନେ ସେହିଭଳି କଲେ । ସେତେବେଳେ ଭଗବାନ ସେମାନଙ୍କୁ ବସ୍ତ୍ର ଦେଇଦେଲେ । ସମସ୍ତେ ବସ୍ତ୍ର ପରିଧାନ କଲେ ।

ଭଗବାନଙ୍କର ଏହି ଲୀଳାର ଭାବ, ଦୁଇପ୍ରକାର ଦୃଷ୍ଟିରେ ବୁଝାଯାଇ ପାରିବ । ଗୋଟିଏ "ଧର୍ମର ଦୃଷ୍ଟି' ଏବଂ ଅନ୍ୟଟି ହେଉଛି "ଜ୍ଞାନର ଦୃଷ୍ଟି' ।

ଧର୍ମ ଦୃଷ୍ଟିରେ ଦେଖିବାକୁ ଗଲେ ଏହାର ତାତ୍ପର୍ଯ୍ୟ କଣ ? ଭଗବାନ ଗୋପକୁମାରୀ ମାନଙ୍କୁ କହୁଛନ୍ତି, "ତୁମ୍ଭେମାନେ ଏକ ମାସ ପର୍ଯ୍ୟନ୍ତ ଯେଉଁ ବ୍ରତ କଲ ତାହା ତ ଠିକ୍ ଥିଲା । ପରନ୍ତୁ ବ୍ରତକୁ ନିର୍ଭୁଲରେ ସମ୍ପୂର୍ଣ୍ଣ କରିବା ମଧ୍ୟ ପରମ ଆବଶ୍ୟକ । ସେଥିରେ କୌଣସି ଅପରାଧ ତ୍ରୁଟି ହେବା ଉଚିତ ନୁହେଁ । ବ୍ରତ ସମାପ୍ତି ସମୟରେ ତୁମେ ସମସ୍ତେ

ଅପରାଧ କରି ଦେଇଛ । **"ନ ନଗ୍ନଃ ସ୍ନାନ ଆଚରେତ୍"** ନଗ୍ନ ଅବସ୍ଥାରେ ସ୍ନାନ କରିବା ଉଚିତ୍ ନୁହେଁ ଏହା ମନୁ ସ୍ମୃତିର ଆଦେଶ ଅଟେ । କାରଣ ଏପରି କରିବା ଦ୍ୱାରା ଜଳ ଦେବତା ବରୁଣ ଦେବଙ୍କର ଅପମାନ ହୋଇଥାଏ । କହୁଛନ୍ତି, ତୁମେ ସମସ୍ତେ ଏକ ମାସ ପର୍ଯ୍ୟନ୍ତ ଧର୍ମ-କର୍ମରେ ତ ଲାଗି ରହିଲ, କିନ୍ତୁ ତାକୁ ସମ୍ପୂର୍ଣ୍ଣ କରିବା ସମୟରେ ତୁମ୍ଭମାନଙ୍କ ଦ୍ୱାରା ଅଧର୍ମ ହୋଇଗଲା - **"ଯୂୟଂ ବିବସ୍ତ୍ରା ଯଦପୋ ଧୃତବ୍ରତା"** ବ୍ରତଧାରୀ ହୋଇ ମଧ୍ୟ ବିବସ୍ତ୍ର ହୋଇ ନଦୀରେ ସ୍ନାନ କରିବା ଦ୍ୱାରା **"ଦେବହେଲନମ୍"** ଦେବତାମାନଙ୍କର ଅପମାନ ହୋଇଥାଏ ।"

ଏବେ ଦେଖନ୍ତୁ, ଜଳ ଦେବତା - ବରୁଣଦେବଙ୍କର ସ୍ୱାମୀ କିଏ ? ସେ ତ ଭଗବାନ ସ୍ୱୟଂ ଅଟନ୍ତି । ଭଗବାନ ଦେଖିଲେ ଯେ ଏମାନଙ୍କ ଦ୍ୱାରା ଧର୍ମର ହାନି ହେଉଛି, ଅନୁଶାସନର ପାଳନ ହେଉ ନାହିଁ, ତ ସେହି ଅପରାଧକୁ ସମାପ୍ତ କରିବା ନିମନ୍ତେ, ଧର୍ମ ବ୍ରତକୁ ପୂର୍ଣ୍ଣ କରିବା ନିମନ୍ତେ ସେ ସ୍ୱୟଂ ପହଞ୍ଚିଗଲେ । ଭଗବାନ ହିଁ ବରୁଣଦେବଙ୍କର ସ୍ୱାମୀ, ତେଣୁ ସ୍ୱୟଂ ଆସି, ବ୍ରତରେ ଯେଉଁ ବାଧା ଆସୁଥିଲା ତାକୁ ପୂର୍ଣ୍ଣ କରିଦେଲେ ଏବଂ ସେମାନଙ୍କୁ ଶିଖାଇ ଦେଲେ ଯେ ଏହିଭଳି ଭାବରେ ବିବସ୍ତ୍ର ହୋଇ ସ୍ନାନ କରିବା ଉଚିତ ନୁହେଁ ଏବଂ ସେହି ଦୋଷର ଶାନ୍ତି ନିମନ୍ତେ (ବରୁଣ ଦେବ) ତାଙ୍କୁ କ୍ଷମା ମାଗି ପ୍ରଣାମ କରିବାକୁ ଆଦେଶ ମଧ୍ୟ ଦେଲେ । ଏହାର ତାତ୍ପର୍ଯ୍ୟ ହେଉଛି ଯେତେବେଳେ କୌଣସି ଧର୍ମର ପାଳନ ଆମେ କରୁଛୁ ଅଥବା କୌଣସି ବ୍ରତ କରୁଛୁ ତାକୁ ସମ୍ପୂର୍ଣ୍ଣ ରୂପେ କରିବା ଉଚିତ୍ ।

ଏବେ ଅନ୍ୟ କଥାଟି ହେଉଛି, ଜ୍ଞାନର ଦୃଷ୍ଟି ଅର୍ଥାତ ଆଧ୍ୟାତ୍ମିକ ଦୃଷ୍ଟିରେ ଦେଖିଲେ ଏଥିରେ ଉଚ୍ଚକୋଟୀର ଅର୍ଥ ଲୁଚି ରହିଛି । ଦେଖନ୍ତୁ, ଏହି ଜୀବ ବାସ୍ତବରେ ସଚ୍ଚିଦାନନ୍ଦ ସ୍ୱରୂପ ଅଟେ । ବେଦାନ୍ତ ବିଚାରରେ ଏହା ସ୍ପଷ୍ଟ ଭାବରେ ଜଣାପଡ଼େ, ଏହି ସତ୍ୟକୁ ଉପଲବ୍ଧି କରି ହୁଏ । ପରନ୍ତୁ ଆମେ ଆମର ସ୍ୱରୂପ ଉପରେ ଅନେକଗୁଡ଼ିଏ ଆବରଣ ଢାଙ୍କି ଦେଇଛନ୍ତି । ଆମେ ପଞ୍ଚକୋଶ - ପାଞ୍ଚଟି ବସ୍ତ୍ର ପିନ୍ଧିଅଛୁ । ଅର୍ଥାତ ଆମେ ପାଞ୍ଚ ପ୍ରକାରର ଆବରଣକୁ ପିନ୍ଧି ନିଜ ସ୍ୱରୂପକୁ ଲୁଚାଇ ଦେଇଛୁ । ଆମେ ଏହି ଯେଉଁ ଶରୀର ଧାରଣ କରିଛନ୍ତି ଏହା ଏକ କୋଶ ହୋଇଗଲାଣି - "ଅନ୍ନମୟ କୋଶ' । ଦ୍ୱିତୀୟଟି ହେଉଛି - "ପ୍ରାଣମୟ କୋଶ', ତୃତୀୟଟି ହେଉଛି "ମନୋମୟ କୋଶ', ଚତୁର୍ଥଟି ହେଉଛି "ବିଜ୍ଞାନମୟ' ଏବଂ ପଞ୍ଚମଟି ହେଉଛି "ଆନନ୍ଦମୟ କୋଶ' । ଏହା ହେଉଛି ପାଞ୍ଚୋଟି କୋଶ । ପାଞ୍ଚକୋଶର ଆବରଣ ଥିଲେ କଣ ଆତ୍ମାର ଆଭାସ, ଜ୍ଞାନ ହୋଇପାରିବ ? କହିଲେ- ନାହିଁ । କାରଣ ଆତ୍ମା ପଞ୍ଚକୋଶାତୀତଃ ପଞ୍ଚକୋଶରୁ ଅତୀତ ।

ଏବେ ଯଦି ଆତ୍ମାର ଅନୁଭବ କରିବାକୁ ହେବ, ତେବେ ଧ୍ୟାନ ଅଭ୍ୟାସ ଦ୍ୱାରା ଏହି କୋଶଗୁଡ଼ିକୁ ଅନାବରଣ କରିବାକୁ ପଡ଼ିବ। ଗୋଟିଏ ଗୋଟିଏ କୋଶକୁ - ବସ୍ତ୍ରକୁ କାଢ଼ିଦେବାକୁ (ଅନାବରଣ) ହେବ । ଅର୍ଥାତ ଗୋଟିଏ ଗୋଟିଏ କୋଶରୁ ତାଦାତ୍ମ୍ୟ ଛାଡ଼ି, ସମ୍ପୂର୍ଣ୍ଣ ବିବସ୍ତ୍ର ଅବସ୍ଥାରେ ଅର୍ଥାତ୍ ନିର୍ବିଶେଷ ନିରୂପାଧିକ ଅବସ୍ଥାରେ ପହଞ୍ଚିବାକୁ ପଡ଼ିବ । ତେଣୁ ବିବସ୍ତ୍ରର ଅର୍ଥ କେବଳ ଶରୀର ଉପରେ ବସ୍ତ୍ର ନ ଥିବାର ଅବସ୍ଥାକୁ ବୁଝିବା ଉଚିତ ନୁହେଁ ।

ଭଗବାନ କହିଲେ, "ତୁମେ ଯେଉଁପରି ଅଛ ସେହିପରି ଅର୍ଥାତ୍ ତୁମେ ଯାହା, ଠିକ୍ ସେହିପରି ନିଜର ଶୁଦ୍ଧ ସ୍ୱରୂପରେ ମୋ ସମ୍ମୁଖକୁ ଆସ ।" ପଞ୍ଚକୋଶର ତାଦାତ୍ମ୍ୟ ଛାଡ଼ିଦେଇ, ଅର୍ଥାତ୍ ଏ ଶରୀର ମୁଁ ନୁହେଁ, ମୁଁ ପ୍ରାଣ ନୁହେଁ, ମୁଁ ମନ ନୁହେଁ, ମୁଁ ବୁଦ୍ଧି ନୁହେଁ, ଅଜ୍ଞାନ ମୁଁ ନୁହେଁ, ଏହିପରି ନିଶ୍ଚୟ କରି ଭଗବାନଙ୍କ ପାଖକୁ ଯିବାକୁ ହୁଏ । ଯେଉଁମାନେ ବେଦାନ୍ତ ଶୁଣିଛନ୍ତି, ଯାହାଙ୍କ ପାଖରେ ବେଦାନ୍ତର ସଂସ୍କାର ଅଛି, ସେମାନେ ଏହି କଥା ଅତି ସହଜରେ ବୁଝିପାରିବେ ।

କହିବାର ତାତ୍ପର୍ଯ୍ୟ କେବଳ ଏତିକି ଯେ, ଦେହ ପ୍ରଭୃତି ସହିତ ଆମେ ଯେଉଁ ତାଦାତ୍ମ୍ୟ କରି ରଖିଛନ୍ତି ତାହା ହିଁ ଆମର ବସ୍ତ୍ର । ତାକୁ ଛାଡ଼ି ଆମକୁ ଭଗବାନଙ୍କର ସମ୍ମୁଖକୁ ଯିବାକୁ ପଡ଼ିବ । ଏହି ରୀତି ଅନୁସାରେ ମନୁଷ୍ୟ ନିଜର ଜୀବଭାବ ଛାଡ଼ି ଭଗବାନଙ୍କର ସମକ୍ଷ ଛିଡ଼ା ହୋଇଯାଏ, ସେତେବେଳେ ଭଗବାନ ତାକୁ ଆପଣେଇ ନିଅନ୍ତି। ଆପଣେଇବା ମଧ୍ୟ କଣ? ସେତେବେଳେ ତା (ମନୁଷ୍ୟ)ଠାରେ ଏବଂ ଭଗବାନଙ୍କ ମଧ୍ୟରେ କୌଣସି ଭେଦ ହିଁ ରହି ନ ଥାଏ ।

**ଈଶଜୀବୟୋର୍ବେଷଧୀଭିଦା ସତ୍ ସ୍ୱଭାବତୋ ବସ୍ତୁ କେବଳମ୍ ।**

**ଉପଦେଶ ସାର - ୨୪**

ଭଗବାନ ରମଣ ମହର୍ଷିଜୀ କହିଲେ, "ଜୀବ ଏବଂ ଈଶ୍ୱର ମଧ୍ୟରେ କେବଳ ଏହି ବେଶ କାରଣରୁ ହିଁ ଏହି ଭେଦ ଆସି ଯାଇଛି । ଏହି ବେଶକୁ ଯଦି କେହି ଛାଡ଼ି ଦିଅନ୍ତି ତେବେ ତାଙ୍କର ଓ ଭଗବାନଙ୍କ ଭିତରେ କୌଣସି ଅନ୍ତର ରହିଯାଏ ନାହିଁ ।"

ଏହି ବସ୍ତ୍ର-ହରଣ-ଲୀଳା ଅତି ମହତ୍ତ୍ୱପୂର୍ଣ୍ଣ ଅଟେ । ଏହାଦ୍ୱାରା ଯେଉଁଠାରେ ଗୋଟିଏ ଦୃଷ୍ଟିରେ ଭଗବାନ ଆମକୁ ଧର୍ମ କ'ଣ ଅଟେ ଏହି ଶିକ୍ଷା ଦେଉଛନ୍ତି, ଅନ୍ୟ ଦୃଷ୍ଟିରେ ଭକ୍ତର ଯେଉଁ ଧର୍ମ ବ୍ରତ ଅଧା ହୋଇ, ଅପୂର୍ଣ୍ଣ ରହି ଯାଉଥିଲା ତାକୁ ମଧ୍ୟ ପୂର୍ଣ୍ଣ

କରାଉଛନ୍ତି, ତତ୍‌ସହିତ ଆଧ୍ୟାତ୍ମିକ ଜ୍ଞାନ ମଧ୍ୟ ଶିକ୍ଷା ଦେଉଛନ୍ତି । ଦେଖନ୍ତୁ, ଏହି ଲୀଳା କେବେ ହେଲା ? ଭଗବାନ ଯେତେବେଳେ ପ୍ରଥମେ ସମସ୍ତ ଅସୁରମାନଙ୍କର ମର୍ଦ୍ଦନ କରିଦେଲେ ତାପରେ ହିଁ ସେ ଏହି ଲୀଳା କଲେ । ଅର୍ଥାତ୍ ପ୍ରଥମେ ସମସ୍ତ ଆସୁରୀ ବୃତ୍ତିର ନାଶ ହୋଇଯାଏ, ମନ ଶୁଦ୍ଧ ହୋଇଯାଏ, ତାପରେ ହିଁ ସେହି ଶୁଦ୍ଧ ଅନ୍ତଃକରଣବାଲା ସାଧକକୁ ପଞ୍ଚକୋଶର ବିବେକ ହୋଇପାରେ ।

ଏବେ ଏଠାରେ ଭଗବାନ ଶ୍ରୀକୃଷ୍ଣଙ୍କର ଈଶ୍ୱର ଦୃଷ୍ଟିରେ ବର୍ଣ୍ଣନ ଆସେ । ସର୍ବେଶ୍ୱର ଭଗବାନ ବ୍ରଜକୁ ଆସିଛନ୍ତି । ଗୋପିମାନଙ୍କର ଇଛା ହେଲା ଯେ ସେମାନେ ତାଙ୍କୁ ପତି ରୂପେ ପ୍ରାପ୍ତ କରିବେ। ଦେଖନ୍ତୁ, ଏ ସମସ୍ତ ଗୋପି ବିବାହିତ ନୁହଁନ୍ତି, ଏମାନେ କୁମାରୀ ଅଟନ୍ତି । ଏମାନେ ସମସ୍ତେ ଚାହୁଁଛନ୍ତି ଯେ ଭଗବାନ ସେମାନଙ୍କୁ ପତି ରୂପରେ ମିଳନ୍ତୁ । ଭଗବାନ କହିଲେ,

**ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂସ୍ତଥୈବ ଭଜାମ୍ୟହମ୍ । (ଭ.ଗୀତା-୪.୧୧)**

"ମୋତେ ଯେ ଯେଉଁଭଳି ଭଜନ କରିବ, ତା ପ୍ରତି ମୁଁ ସେହି ରୂପରେ ଅନୁଗ୍ରହ କରେ । ଏମାନେ ମୋତେ ପତି ରୂପରେ ଚାହୁଁଛନ୍ତି ତ ମୁଁ ସେମାନଙ୍କୁ ସେହି ରୂପରେ ପ୍ରାପ୍ତ ହେବି ।" ସେଥିପାଇଁ ସେମାନଙ୍କୁ କହିଲେ ଯେ ମୁଁ (ଭଗବାନ) ଯାହା ଏବେ କହୁଛି ତାହା ହିଁ କର । ଯେତେବେଳେ ସେମାନେ ଭଗବାନଙ୍କର କଥା ମାନି ତାଙ୍କ ପାଖକୁ ଆସିଗଲେ ତ ଭଗବାନ ସେମାନଙ୍କର ସମସ୍ତ ବସ୍ତ୍ରକୁ ସେମାନଙ୍କୁ ଫେରାଇ ଦେଲେ । ଏଠାରେ ଏହାର ଅର୍ଥ ହେଲା ଯେ ଥରେ ଯଦି କେହି ଭଗବାନଙ୍କ ସହିତ ସାକ୍ଷାତ୍କାର କରି ନିଏ, ତେବେ ତା ପରେ ପୁଣି ଯଦି ସେ ସମସ୍ତ ବସ୍ତ୍ର (କୋଶ) ପିନ୍ଧିକରି ଆସିଯାଏ, ତ ତାକୁ କିଏ ମନା କରୁଛି ? ଏହି କଥା ବଡ଼ ରହସ୍ୟପୂର୍ଣ୍ଣ ଅଟେ। ଯେତେବେଳ ପର୍ଯ୍ୟନ୍ତ ଅଜ୍ଞାନ ଅଛି, ସେତେବେଳ ପର୍ଯ୍ୟନ୍ତ ଶରୀର, ମନ, ବୁଦ୍ଧି ସହିତ ତାଦାତ୍ମ୍ୟ କରି ରହିବାକ ଆମ୍ଭମାନଙ୍କ ନିମନ୍ତେ ବନ୍ଧନକାରୀ ସିଦ୍ଧ ହୋଇଥାଏ । କିନ୍ତୁ ପରମାତ୍ମାଙ୍କର ସହିତ ସାକ୍ଷାତ୍କାର ପରେ ସେହି ଶରୀର, ମନ, ଇନ୍ଦ୍ରିୟମାନଙ୍କ ସହିତ କାମ କରିବାର କୌଣସି ସମସ୍ୟା ହୁଏ ନାହିଁ । ସେତେବେଳେ ସେମାନଙ୍କର କିଛି ଅଘଟଣ ଘଟେ ନାହିଁ ।

ଗୀତାଜୀରେ କୁହାଯାଇଛି -

**ସର୍ବଥା ବର୍ତ୍ତମାନୋପି ସ ଯୋଗୀ ମୟି ବର୍ତତେ ॥ (ଭ.ଗୀତା-୬.୩୧)**

ସେହି ଯୋଗୀ ଯେକୌଣସି ପ୍ରକାରେ ରହିଲେ ମଧ୍ୟ ସେ ମୋ ଭିତରେ ହିଁ ରହିଥାଏ । ତାକୁ ନା କିଛି ଛାଡ଼ିବାର ଆବଶ୍ୟକ, ନା କିଛି ଗ୍ରହଣ କରିବାର ଆବଶ୍ୟକ ରହିଛି । ତାର କିଛି କରିବାର ମଧ୍ୟ ଆବଶ୍ୟକତା ନାହିଁ । ବେଦାନ୍ତର ଏହା ଏକ ଗୂଢ଼ ରହସ୍ୟ । ସେହି ଯୋଗୀ ତ ଜୀବନ୍ମୁକ୍ତ ହୋଇଥାଏ । ତାକୁ ପୁଣି କୌଣସି ଉପାଧିର ବନ୍ଧନ ହୋଇନଥାଏ । ଉପାଧିର ବନ୍ଧନ କେବଳ (ଅଜ୍ଞାନ) ଅବିଦ୍ୟା ଅବସ୍ଥାରେ ହିଁ ରହିଥାଏ । ବିଦ୍ୟା ସ୍ଥିତିରେ ରହିପାରେ ନାହିଁ, ସେଥିପାଇଁ ଭଗବାନ ପରମୂହୁର୍ତ୍ତରେ ସେମାନଙ୍କୁ (ଗୋପିମାନଙ୍କୁ) ବସ୍ତ୍ର ଦେଇ ଦେଲେ । ପୁଣି କହିଲେ ଯେ ତୁମ୍ଭେମାନେ ଯେଉଁ ସଂକଳ୍ପ କରି ଅଛ ତାହା ସମ୍ପୂର୍ଣ୍ଣ ହେବ ତଥା ତୁମ୍ଭମାନଙ୍କୁ ମୋର ଚରଣ କମଳର ପ୍ରାପ୍ତି ମଧ୍ୟ ହେବ ।

**ୟାତାବଲା ବ୍ରଜଂ ସିଦ୍ଧା ମୟେମା ରଂସ୍ୟଥ କ୍ଷପାଃ ॥ (୧୦.୨୨.୨୭)**

ତୁମେ ନିଜର ମନକୁ ମୋ ପାଖରେ ଲଗାଇ ଦେଇଛ ତ ଏବେ ତୁମ୍ଭମାନଙ୍କର ମନସ୍କାମନା ଅବଶ୍ୟ ପୂର୍ଣ୍ଣ ହେବ । ତାର ସିଦ୍ଧି ହୋଇଯିବ । ତଥାସ୍ତୁ ! କହି ଭଗବାନ ଚାଲିଗଲେ ।

## ଗୋପବାଳକମାନଙ୍କ ଦ୍ୱାରା ବ୍ରାହ୍ମଣମାନଙ୍କଠାରୁ ଅନ୍ନ ଯାଚନା

ଦିନେ ଭଗବାନ ଗୋପବାଳକମାନଙ୍କ ସହିତ ବନରେ ଯାଉଥିଲେ । ବୃକ୍ଷ-ଲତା ସବୁ ଦେଖି କହୁଛନ୍ତି ଦେଖ, ଏହି ବୃକ୍ଷମାନେ କେତେ ପରୋପକାରୀ ଅଟନ୍ତି । ଖରାରେ, ଗରମରେ ତଥା ବର୍ଷାରେ ଏମାନେ ତପ କରିଚାଲିଛନ୍ତି ଏବଂ ଯେତେବେଳେ ଫଳ ହୁଏ ତ ସେମାନେ ଏସବୁ ଅନ୍ୟମାନଙ୍କୁ ଦେଇ ଦିଅନ୍ତି । କହିଲେ, ଏହି ବୃକ୍ଷମାନଙ୍କର ସ୍ୱଭାବ ମଧ୍ୟ ସାଧୁ ଲୋକମାନଙ୍କର ସ୍ୱଭାବ ସହ ସମାନ ଅଟେ । ବୃନ୍ଦାବନର ବୃକ୍ଷମାନଙ୍କର ପ୍ରଶଂସା କରୁ କରୁ, ସେମାନେ ସେ ଦିନ ବୃନ୍ଦାବନରୁ ବହୁତ ଦୂରକୁ ଚାଲିଗଲେ । ଚାଲୁ-ଚାଲୁ ଯମୁନା ଜୀଙ୍କ କୂଳରେ ପହଞ୍ଚିଗଲେ । ସେଠାରେ ସମସ୍ତେ ଯମୁନା ଜୀଙ୍କର ମଧୁର ଜଳ ପାନ କଲେ । ସେତେବେଳେ କୌଣସି ଗୋପାଳ ବାଳକ ଆସି ବଳରାମ ତଥା ଶ୍ରୀକୃଷ୍ଣଙ୍କୁ କହିଲା -

## ରାମ ରାମ ମହାବୀର୍ଯ୍ୟ କୃଷ୍ଣ ଦୁଷ୍ଟନିବର୍ହଣ ॥ (୧୦.୨୩.୧)

ବଳରାମଜୀ, କୃଷ୍ଣଜୀ ଆମ୍ଭମାନଙ୍କୁ ଭୋକ ଲାଗିଲାଣି, ତୁମେ ଦୁହେଁ କିଛି ଉପାୟ କର, ଆମ୍ଭମାନଙ୍କର କ୍ଷୁଧାକୁ ଶାନ୍ତ କର । ଦେଖନ୍ତୁ, ଗୋପବାଳକମାନଙ୍କ ଜୀବନ ଭାଗବନଙ୍କ ଉପରେ କେତେ ନିର୍ଭର କରୁଥିଲା, ଆପଣମାନେ ବିଚାର କରନ୍ତୁ! ଏହା ସମ୍ପୂର୍ଣ୍ଣ ନିର୍ଭରା ଭକ୍ତି ଅଟେ । ଭୋକ ଲାଗିଲେ ମଧ୍ୟ କୃଷ୍ଣ-କୃଷ୍ଣ ମହାବାହୋ, ବିପଦ ଆସିଲେ ମଧ୍ୟ କୃଷ୍ଣ କୃଷ୍ଣ ମହାବାହୋ, ସବୁ ସମୟରେ ସବୁ ବିଷୟରେ ସେମାନଙ୍କର ଜୀବନ ଭଗବତ୍ କେନ୍ଦ୍ରିତ ଥିଲା । ଏଠାରେ ଏହି ଭାବକୁ ପ୍ରକାଶ କରାଯାଇଛି । ଭଗବାନ କହିଲେ, "ଭୋକ ଲାଗୁଛି ?" ତେବେ ଚାଲ ସମସ୍ତେ ବସିଯାଅ, ଭାବୁଛନ୍ତି କଣ କରିବା ?" ପୁଣି କହୁଛନ୍ତି - ଏଠାରୁ କିଛି ଦୂରରେ ଅନେକ ବ୍ରାହ୍ମଣ ଯଜ୍ଞ କରୁଛନ୍ତି, ଯଜ୍ଞରେ ଦାନ ତ କରାଯାଏ, ଅନ୍ନଦାନ ମଧ୍ୟ କରିବା ଉଚିତ୍ । ତୁମ୍ଭେମାନେ ସମସ୍ତେ ଯାଅ ଏବଂ ସେମାନଙ୍କୁ କୁହ ଯେ, ଆମକୁ କୃଷ୍ଣ ଓ ବଳରାମ ଜୀ ପଠାଇଛନ୍ତି । ସେମାନେ ସେଠାରେ ବସିଛନ୍ତି, ଆପଣ ସେମାନଙ୍କ ପାଇଁ ଅନ୍ନ ଦିଅନ୍ତୁ । ଏବେ ଦେଖନ୍ତୁ! ଭଗବାନଙ୍କର ବ୍ରାହ୍ମଣମାନଙ୍କ ଉପରେ କେତେ କୃପା ! ଏହି ବ୍ରାହ୍ମଣମାନେ ଯଜ୍ଞ ଦ୍ୱାରା ଯାହାର ପୂଜା କରୁଛନ୍ତି, ସ୍ୱୟଂ ସେ ହିଁ - ଭଗବାନ ତାଙ୍କୁ ମାଗୁଛନ୍ତି । କିନ୍ତୁ ଏହି ବ୍ରାହ୍ମଣ, ଯେଉଁମାନେ କର୍ମକାଣ୍ଡ ପଣ୍ଡିତ ଅଟନ୍ତି, ସେମାନେ ଏହି କଥାକୁ କଣ କିଛି ହିଁ ଜାଣନ୍ତି ? ଯଜ୍ଞ କରି କରି ସେମାନଙ୍କ ଆଖିରେ, ବୁଦ୍ଧିରେ କେବଳ ଧୂଆଁ ହିଁ ଧୂଆଁ ହୋଇଗଲାଣି । ସେଥିପାଇଁ ସେମାନେ ଏହି କଥା ସବୁ ବୁଝିପାରୁ ନାହାନ୍ତି । ସେମାନେ ପଣ୍ଡିତ ଅଟନ୍ତି ନା, ତ ସେମାନଙ୍କଠାରେ ନିଜର ପାଣ୍ଡିତ୍ୟର ବହୁତ ଅଭିମାନ ମଧ୍ୟ ଅଛି। ଅଗ୍ନୟେ ସ୍ୱାହା, ଅଗ୍ନୟେ ଇଦଂ ନ ମମ । ବ୍ରହ୍ମଣେ ସ୍ୱାହା.. । ଏମାନେ ସମସ୍ତେ ସ୍ୱାହା-ସ୍ୱାହା କରିବାରେ ଲାଗିଛନ୍ତି - କାରଣ ଏମାନେ କର୍ମକାଣ୍ଡି । ସେହି କର୍ମଠ ଲୋକମାନେ ବୁଝିପାରୁ ନାହାନ୍ତି ଯେ ଭଗବାନ ସ୍ୱୟଂ ସେମାନଙ୍କୁ (ଗୋପବାଳକ) ପଠାଇଛନ୍ତି । ଗୋପବାଳକମାନେ ସେଠାକୁ ଯାଇଛନ୍ତି ଏବଂ ସେମାନଙ୍କୁ କହୁଛନ୍ତି -

**ଗାଣ୍ଠାରୟନ୍ତାବ ବିଦୂର ଓଦନଂ**

**ରାମାଚ୍ୟୁତୌ ବୋ ଲଷତୋ ବୁଭୁକ୍ଷିତୌ ।**

**ତୟୋର୍ଦ୍ୱିଜା ଓଦନମର୍ଥିନୋର୍ୟଦି**

**ଶ୍ରଦ୍ଧା ଚ ବୋ ଯଚ୍ଛତ ଧର୍ମବିତ୍ତମାଃ ॥ (୧୦.୨୩.୭)**

ଆପଣମାନେ ସମସ୍ତେ ତ ଧର୍ମଜ୍ଞ ଅଟନ୍ତି, ଧର୍ମକୁ ଜାଣିଛନ୍ତି । ଧର୍ମର ପ୍ରଭୁ ସେଠାରେ ବସିଛନ୍ତି । ସେ ଅନ୍ନ ମାଗୁଛନ୍ତି ।

**ଭୋକ୍ତାରଂ ଯଜ୍ଞତପସାଂ ସର୍ବଲୋକ ମହେଶ୍ୱରମ୍ । (ଭ.ଗୀତା-୫.୨୯)**

ଭଗବାନ ଗୀତା ଜୀରେ କହିଛନ୍ତି ସମସ୍ତ ଯଜ୍ଞର ଭୋକ୍ତା ହେଉଛି ମୁଁ । ଏଠାରେ ଯଜ୍ଞର ଭୋକ୍ତା ସ୍ୱୟଂ ଭୋଜନ ମାଗୁଛନ୍ତି କିନ୍ତୁ ସେହି ବ୍ରାହ୍ମଣମାନେ ଏକଥା ବୁଝିପାରୁନାହାନ୍ତି ।

**ନ ତେ ଯଦୋମିତି ପ୍ରୋଚୁର୍ନ ନେତି ଚ ପରଂତପ । (୧୦.୨୩.୧୨)**

ଏବେ ତାଙ୍କ ମୁହଁରୁ ନା "ହଁ' ବାହାରୁଛି, ନା "ନାହିଁ' ବାହାରୁଛି । ତାର ଅର୍ଥ ହେଉଛି ସେମାନେ କିଛି ଦେବାକୁ ଚାହୁଁନାହାନ୍ତି । ସେମାନଙ୍କ ମନରେ ସନ୍ଦେହ ହେଉଛି ଯେ ଏହି ବଳରାମ- କୃଷ୍ଣ ଭଗବାନ ନୁହନ୍ତି ତ, ସେଥିପାଇଁ ସେମାନେ "ନାହିଁ' କରିବାର ସାହାସ ମଧ୍ୟ ହେଉନାହିଁ । କିନ୍ତୁ ଅନ୍ୟ ପାଖରେ ସେମାନେ ବିଚାର କରୁଛନ୍ତି ଯେ ଏମାନେ ଭଗବାନ କିପରି ହୋଇପାରିବେ ? ଏମାନେ ତ ଗାଈ ଚରାଉଛନ୍ତି, ସାନ ସାନ ବାଳକ ଅଟନ୍ତି, ଏହିପରି ସେମାନେ ଦ୍ୱନ୍ଦରେ ପଡ଼ିଛନ୍ତି । ପଣ୍ଡିତମାନଙ୍କର ବହୁତ ଶଙ୍କା ହୋଇଥାଏ । ତେଣୁ ଗୋପବାଳକମାନେ କାନ୍ଦିବା ଭଳି ମୁହଁରେ ଫେରି ଆସିଲେ । ଭଗବାନଙ୍କୁ ସବୁ କଥା ଜଣାଇ ଶେଷରେ କହିଲେ - ସେମନେ କିଛି ଦେଲେ ନାହିଁ । ଭଗବାନ କହିଲେ, "ଆଚ୍ଛା ଏବେ ଏହିପରି କର "**ମାଂ ଜ୍ଞାପୟତ ପତ୍ନୀଭ୍ୟଃ**" (୧୦.୨୩.୧୪) ସେହି ବ୍ରାହ୍ମଣମାନଙ୍କ ପାଖକୁ ନ ଯାଇ ବ୍ରାହ୍ମଣମାନଙ୍କର ପତ୍ନୀମାନଙ୍କ ପାଖକୁ ଯାଇ ସେମାନଙ୍କୁ ମାଗିବ । ସେମାନଙ୍କୁ କହିବ ମୁଁ ତୁମକୁ ପଠାଇଛି ।"

ବ୍ରାହ୍ମଣ-ପତ୍ନୀମାନେ ଭଗବଦ୍ ଭକ୍ତ ଥିଲେ । ସେମାନେ ଯେତେବେଳେ ଜାଣିଲେ ଯେ ବଳରାମ ତଥା ଶ୍ରୀକୃଷ୍ଣ ସେଠାରେ ବସିଛନ୍ତି, ତ ସେମାନେ ଭୋଜନ ନେଇ ନିଜେ ସେଠାରେ ଆସି ପହଞ୍ଚିଲେ । ସେମାନଙ୍କଠାରେ ପ୍ରେମ ଅଛି, ଭକ୍ତି ଅଛି, କିନ୍ତୁ ଏବେ

ମଧ୍ୟ ସେମାନେ ଧର୍ମର ବନ୍ଧନରେ ପଡ଼ିଛନ୍ତି । ସେଥିପାଇଁ ସେମାନଙ୍କଠାରେ ଏବେ ସେଭଳି ପ୍ରେମ ନ ଥିଲା ଯେଭଳି ଗୋପିମାନଙ୍କଠାରେ ଥିଲା । କିନ୍ତୁ ପୁଣି ମଧ୍ୟ ସେମାନଙ୍କଠାରେ ପ୍ରେମ ଥିଲା, ଭକ୍ତି ମଧ୍ୟ ଥିଲା । ସେମାନେ ସେଠାକୁ ଆସିଲେ, ଭୋଜନ ଅର୍ପିତ କରୁଛନ୍ତି । ଭଗବାନ ସେମାନଙ୍କର ପରୀକ୍ଷା କରିବା ନିମନ୍ତେ କହୁଛନ୍ତି, "ଆପଣମାନେ ମୋତେ ଦେଖିବା ନିମନ୍ତେ ଆସିଥିଲେ, ମୋତେ ତ ସମସ୍ତେ ଦେଖିଲେ । ଏବେ ଆପଣମାନେ ଫେରିଯାଆନ୍ତୁ । ସେଠାରେ ଆପଣମାନଙ୍କର ପତି ଆପଣମାନଙ୍କୁ ଖୋଜୁଥିବେ । ସେଠାରେ ପହଞ୍ଚି ସେମାନଙ୍କୁ ପ୍ରସନ୍ନ କରାନ୍ତୁ ।"

**ତଦ୍ ଯାତ ଦେବୟଜନଂ ପତୟୋ ବୋ ଦ୍ୱିଜାତୟଃ । (୧୦.୨୩.୨୮)**

ବ୍ରାହ୍ମଣ ପତ୍ନୀମାନେ କହିବାକୁ ଲାଗିଲେ, "ଭଗବାନ ଆପଣ ଆମ ସହିତ ଏପରି କଥା କୁହନ୍ତୁ ନାହିଁ । କାହିଁକି ? କାହିଁକି ନା ଏହି ସମସ୍ତ ଜଗତର ବାସ୍ତବିକ ପତି ତ ସ୍ୱୟଂ ଆପଣ ହିଁ ଅଟନ୍ତି ।"

**ମୈବଂ ବିଭୋଽର୍ହତି ଭବାନ ଗଦିତୁଂ ନୃଶଂସଂସ୍ତ**
**ସତ୍ୟ କୁରୁଷ୍ୱ ନିଗମଂ ତବ ପାଦମୂଳମ୍ ।**
**ପ୍ରାପ୍ତା ବୟଂ ତୁଳସିଦାମ ପଦାବସୃଷ୍ଟଂ**
**କେଶୈର୍ନିବୋଢୁମତିଲଂଘ୍ୟ ସମସ୍ତବନ୍ଧୂନ୍ ॥ (୧୦.୨୩.୨୯)**

"ସମସ୍ତ ବନ୍ଧୁମାନଙ୍କୁ ଛାଡ଼ିଦେଇ ଆମ୍ଭେମାନେ ଏଠାକୁ ଆସିଛୁ । ଏବେ ଆପଣ ନିଜର ବଚନକୁ ସତ୍ୟ କରନ୍ତୁ । "ଯେ ସବୁ କିଛି ଛାଡ଼ିଦେଇ ଆସିଥାଏ, ମୁଁ ତାକୁ ନିଜର କରି ନିଏ, ସ୍ୱୀକାର କରି ନିଏ ।' ଆପଣ ଏହି ବଚନକୁ ସିଦ୍ଧ କରିବା ନିମନ୍ତେ ଆମକୁ ସ୍ୱୀକାର କରି ନିଅନ୍ତୁ । ଆମ୍ଭେମାନେ ସମସ୍ତେ ତ ଆପଣଙ୍କର ଶରଣରେ ଆସିଛୁ ।'' ଭଗବାନ କହିଲେ, "ତଥାସ୍ତୁ ! କିନ୍ତୁ ଏବେ ଆପଣମାନେ ଏଠାରୁ ଯାଆନ୍ତୁ ଏବଂ ନିଜ ପତିମାନଙ୍କର ସେବା କରୁଥାଆନ୍ତୁ ।" ଦେଖନ୍ତୁ, ଏମାନେ ସମସ୍ତେ ଧର୍ମମାର୍ଗୀ ଥିଲେ, ଧର୍ମ ପଥରେ ଚାଲୁଥିଲେ । ସେଥିପାଇଁ ଭଗବାନ ସେମାନଙ୍କୁ ସେହି ଧର୍ମରେ ନିୟୋଜିତ କରୁଛନ୍ତି । କହୁଛନ୍ତି, "ତୁମେ ଏଠାରୁ ଯିବା ପରେ ମଧ୍ୟ ତୁମର ପତି, ପିତା, ଭାଇ ତୁମ ପ୍ରତି କୌଣସି ପ୍ରକାର ଦ୍ୱେଷ କରିବେ ନାହିଁ, ତୁମ୍ଭମାନଙ୍କଠାରେ କୌଣସି ପ୍ରକାର ଦୋଷ ଦେଖିବେ ନାହିଁ । ଯଦ୍ୟପି ଏହି ଲୌକିକ ପତିମାନଙ୍କର ସେବା ଆଦି କରିବା ପାଇଁ କୁହାଯାଇଥାଏ, ବାସ୍ତବରେ ତାହା ମଧ୍ୟ ପରମାତ୍ମାଙ୍କୁ ପ୍ରାପ୍ତ କରିବା ନିମନ୍ତେ ହିଁ

ହୋଇଥାଏ । ସେହି ପରମାତ୍ମାଙ୍କୁ ଏମାନେ ପ୍ରାପ୍ତ କଲେ, ତଥାପି ଏମାନେ ବ୍ରାହ୍ମଣ ପତ୍ନୀ । ସେମାନଙ୍କ ମନରେ ଧର୍ମର ବିଘ୍ନର ମଧ୍ୟ ରହିଛି, ସେଥିପାଇଁ ଭଗବାନ ଏମାନଙ୍କୁ କହିଲେ - "ତୁମେ ସବୁ ସେମାନଙ୍କ ସଙ୍ଗରେ ରୁହ । ତୁମ୍ଭମାନଙ୍କ ଉପରେ କୌଣସି ଦୋଷ ଆସିବ ନାହିଁ ।"

**ନ ପ୍ରୀତୟେନୁରାଗାୟ ହ୍ୟଙ୍ଗସଙ୍ଗୋ ନୃଣାମିହ ।**

**ତନ୍ମନୋ ମୟି ଯୁଞ୍ଜାନା ଅଚିରାନ୍ମାମବାପ୍ସ୍ୟଥ ॥ (୧୦.୨୩.୩୨)**

ପୁଣି କହୁଛନ୍ତି, "ସବୁବେଳେ ଅଙ୍ଗ-ସଙ୍ଗ ହେବା ହିଁ ଆବଶ୍ୟକ ହୋଇନଥାଏ । ତୁମେ ସବୁ ମନରେ ଇଚ୍ଛା କରିଛ, ମୁଁ ତାକୁ ସ୍ୱୀକାର କରିଛି । ତୁମ୍ଭମାନଙ୍କର ମନ ମୋ ପାଖରେ ଲାଗିଗଲାଣି । ଏହା ହିଁ ବଡ଼ କଥା । ସ୍ଥୂଳ ଦୃଷ୍ଟିରେ - ଶରୀର ଦୃଷ୍ଟିରେ ତୁମେ ତାଙ୍କ ପାଖରେ ଥାଅ ।

ଦେଖନ୍ତୁ, ଏହି ବ୍ରାହ୍ମଣପତ୍ନୀମାନଙ୍କ ମଧ୍ୟରେ ଏପରି ଜଣେ ସ୍ତ୍ରୀ ଥିଲେ ଯେ କି ଅନ୍ୟବ୍ରାହ୍ମଣ ପତ୍ନୀମାନଙ୍କ ସହିତ ଶ୍ରୀକୃଷ୍ଣ ବଳରାମଙ୍କ ନିକଟକୁ ଆସିବାକୁ ଚାହୁଁଥିଲା, କିନ୍ତୁ ତାଙ୍କର ପତି ତାକୁ ଆସିବାକୁ ଦେଲେ ନାହିଁ । ଜବରଦସ୍ତି ତାକୁ ଅଟକାଇ ରଖିଲେ ।

**ହୃଦୋପଗୁହ୍ୟ ବିଜହୌ ଦେହଂ କର୍ମାନୁବନ୍ଧନମ୍ ॥ (୧୦.୨୩.୩୪)**

ତେବେ ସେ ନିଜର ଦେହକୁ ହିଁ ତ୍ୟାଗ କରିଦେଲା । କର୍ମବନ୍ଧନକୁ ହିଁ ଛିନ୍ନ କରିଦେଲା । ଏହି ସମସ୍ତ ଘଟଣା ଯେତେବେଳେ ସେହି କର୍ମଜଡ଼ ପଣ୍ଡିତ ବ୍ରାହ୍ମଣମାନଙ୍କୁ ଜଣାପଡ଼ିଲା, ତ ସେମାନେ ନିଜକୁ ଧିକ୍କାର କରିବାକୁ ଲାଗିଲେ ଯେ ଆରେ ! ସ୍ୱୟଂ ଭଗବାନ ମାଗିଲେ କିନ୍ତୁ ଆମେ ତାଙ୍କୁ କିଛି ଦେଲୁ ନାହିଁ, ଯେମିତିକୁ ସେମିତି ବସି ରହିଲେ ।

**ଅହୋ ବୟଂ ଧନ୍ୟତମା ଯେଷାଂ ନସ୍ତାଦୃଶୀଃ ସ୍ତ୍ରୀୟଃ ॥ (୧୦.୨୩.୪୯)**

ଆମ୍ଭମାନଙ୍କର ପତ୍ନୀମାନେ ଧନ୍ୟ ଅଟନ୍ତି । ସେମାନେ ତାଙ୍କ ମନକୁ ଭଗବାନଙ୍କ ପାଖରେ ଲଗାଇଦେଲେ । ତଦ୍ଦ୍ୱାରା ଆମେ ବଡ଼ ଭାଗ୍ୟଶାଳୀ ଯେ ଆମକୁ ଏପରି ସ୍ତ୍ରୀ ପ୍ରାପ୍ତ ହୋଇଛି । ସେମାନେ ନିଜପାଇଁ ଏଭଳି କହିବାକୁ ଲାଗିଲେ ।

# ଇନ୍ଦ୍ରଙ୍କର ଅଭିମାନର ମର୍ଦ୍ଦନ

ଏହା ପରେ ଇନ୍ଦ୍ର-ଯଜ୍ଞର ପ୍ରସଙ୍ଗ ଆସେ । ଭଗବାନ ଦେଖିଲେ ଯେ ଗୋକୁଳରେ ବହୁତ ବଡ଼ ଆୟୋଜନ ହେଉଛି । ସମସ୍ତ ଲୋକ ଯଜ୍ଞ-ଯାଗର ପ୍ରସ୍ତୁତ କରୁଛନ୍ତି । ଭଗବାନ ସବୁକିଛି ଜାଣିଛନ୍ତି, କିନ୍ତୁ ନ ଜାଣିଲା ଭଳି ହୋଇ ପିତାଙ୍କୁ ପଚାରୁଛନ୍ତି ଯେ ପିତା ଏ ସବୁ କଣ ଚାଲିଛି ? କାହିଁକି ଏ ସବୁର ପ୍ରସ୍ତୁତି ଚାଲିଛି ? ପିତା କହୁଛନ୍ତି, "ପୁତ୍ର, "**ପର୍ଜନ୍ୟୋ ଭଗବାନିନ୍ଦ୍ରୋ**" ଦେବରାଜ ଇନ୍ଦ୍ର ପର୍ଜନ୍ୟ-ବୃଷ୍ଟିର ଦେବତା ଅଟନ୍ତି। ବର୍ଷା କରି ସର୍ବଦା ଆମ ସମସ୍ତଙ୍କୁ ପ୍ରସନ୍ନ କରିଥାଆନ୍ତି । ସେଥିପାଇଁ ତାଙ୍କର ପୂଜା କରାଯାଏ । ପ୍ରାଚୀନ ପରମ୍ପରାଠାରୁ ଆମେ ଏହା କରି ଆସୁଛନ୍ତି । ଏକପ୍ରକାର ଏହା ଆମର ନିୟମ ହୋଇଗଲାଣି । ତାଙ୍କୁ (ଇନ୍ଦ୍ରଙ୍କୁ) ଆମ୍ଭେମାନେ ନମସ୍କାର କରୁଛୁ, ଯଜ୍ଞଦ୍ୱାରା ପ୍ରସନ୍ନ କରୁଛୁ ।" ଭଗବାନ କହୁଛନ୍ତି, "ଯଦି ତୁମେ ପ୍ରସନ୍ନ କରିବ ନାହିଁ, ତେବେ କ'ଣ ହେବ ?" ସେ ବିମୁଖ ହେବେ, ସେଥିପାଇଁ ଆମେ ଏହି ଯଜ୍ଞ କରୁଛୁ ।"

ଏବେ ଭଗବାନ ଇନ୍ଦ୍ର ଦେବଙ୍କୁ କ୍ରୋଧିତ କରିବାକୁ ଚାହୁଁଛନ୍ତି କାରଣ ଇନ୍ଦ୍ରଙ୍କର ଅଭିମାନ ହୋଇଯାଇଥିଲା । ଭଗବାନ ଚାହୁଁ ନ ଥିଲେ ଯେ କେହି ଭୟ ସହିତ ଭକ୍ତି କରୁ ଏବଂ ଭଗବାନ ଏହା ମଧ୍ୟ ଚାହୁଁ ନ ଥିଲେ ଯେ ଇନ୍ଦ୍ରପଦକୁ ପ୍ରାପ୍ତ ହେଲାପରେ କିଏ ଏପରି ହୋଇଯାଉ, କେହି ଯଜ୍ଞ ନ କଲେ ବୃଷ୍ଟି ବନ୍ଦ ହୋଇଯାଉ ଅଥବା ଅଧିକ ବୃଷ୍ଟି ହେଉ । ଭଗବାନ ବିଚାର କଲେ ଯେ ଏହା କେଉଁ ପ୍ରକାର ଅଭିମାନ ଇନ୍ଦ୍ରଙ୍କ ଭିତରେ ଆସିଗଲାଣି ? ତେବେ ସେହି ଇନ୍ଦ୍ରଙ୍କୁ କ୍ରୋଧ କରାଇବା ନିମନ୍ତେ ପିତାଜୀଙ୍କୁ କହୁଛନ୍ତି, "ଏହି ଇନ୍ଦ୍ର କିଏ ? ଇନ୍ଦ୍ର କଣ ବର୍ଷା କରୁଛି ? କର୍ମରୁ ଜୀବର ଜନ୍ମ ହେଉଛି, କର୍ମଦ୍ୱାରା ସେମାନଙ୍କର ଲୟ ମଧ୍ୟ ହୋଇଥାଏ । କର୍ମ ହିଁ ସବୁଠାରୁ ବଡ଼ ଅଟେ । ଏବଂ '**ଅସ୍ତି ଚେଦୀଶ୍ୱରଃ**' କଶ୍ଚିତ୍ (୧୦.୨୪.୧୪) ଯଦି ଆପଣ ଈଶ୍ୱରଙ୍କୁ କର୍ମଫଳ ଦାତା ରୂପେ ମାନି ନିଅନ୍ତି ତେବେ ସେ କର୍ମଫଳ କାହାକୁ ଦେବେ ? ଯେ କର୍ମର କର୍ତ୍ତା ହୋଇଥିବ, ତାକୁ ହିଁ ତ କର୍ମଫଳ ପ୍ରାପ୍ତ ହେବ ନା ? ଯେ କର୍ମ କରୁନାହିଁ, ତାକୁ କିପରି ଫଳ ପ୍ରାପ୍ତି ହେବ ? କର୍ତ୍ତା ଲୋକର ଈଶ୍ୱର ହୋଇପାରନ୍ତି । ଅକର୍ତ୍ତାର ତ ହେବା ସମ୍ଭବ ନୁହେଁ । କେହି କର୍ମ କଲେ ସିନା ସେ ଫଳ ଦାତା ହେବେ । ପୁଣି ସେ ମଧ୍ୟ କର୍ମ ଅନୁସାରେ ହିଁ ଫଳ ଦିଅନ୍ତି, ସେ ସର୍ବସମର୍ଥ ତ ନୁହେଁ । ଇନ୍ଦ୍ର ତ ଦେଖାଯାଉ ନାହିଁ, ଆମର ଗୋବର୍ଦ୍ଧନ ପର୍ବତ ସାକ୍ଷାତ୍ ଦେଖାଯାଉଛି ଏବଂ ସେ ଆମର ସେବା ମଧ୍ୟ କରୁଛି । ମୁଁ ତ କହୁଛି, ଗୋବର୍ଦ୍ଧନ ପର୍ବତର ହିଁ ପୂଜା କର, ଏବଂ ଏହି ସମସ୍ତ ଅନ୍ନକୁ

"ସ୍ୱାହା-ସ୍ୱାହା' କରି ଇନ୍ଦ୍ରକୁ ଦେବାର ଆବଶ୍ୟକ ନାହିଁ । ତାକୁ ସମସ୍ତ ଗାଈମାନଙ୍କୁ ତଥା ବ୍ରାହ୍ମଣମାନଙ୍କୁ ବାଣ୍ଟି ଦିଅ । ମୁଁ ତ ଏହାକୁ ଠିକ ବୋଲି ଭାବୁଛି ।''

## ଗୋବର୍ଦ୍ଧନ-ଧାରଣ-ଲୀଳା

ଏଠାରେ ଦେଖନ୍ତୁ, ସେହି ସମୟରେ ଭଗବାନ ସାତ ବର୍ଷର ଥିଲେ । ତଥାପି ସମସ୍ତ ବଡ଼ ବଡ଼ ବୃଦ୍ଧମାନଙ୍କୁ, ସମସ୍ତ ବ୍ରଜବାସୀମାନଙ୍କୁ ଏହି ଛୋଟ ବାଳକ ଉପରେ ଏପରି ବିଶ୍ୱାସ ହୋଇଯାଇଥିଲା ଯେ, ସେମାନେ ତାଙ୍କର କଥାକୁ ମାନି ଗଲେ ଏବଂ କହିଲେ ଠିକ୍ ଅଛି, ସେହିପରି କରିବା । ସେମାନେ ଦେଖି ସାରିଥିଲେ ଯେ ଏ ବଡ଼ ବିଲକ୍ଷଣ ବାଳକ ଅଟେ, ସେଥିପାଇଁ ସମସ୍ତେ ତାର କଥାକୁ ମାନିନେଲେ । କହିଲେ, ଏହା ଠିକ୍ ଅଛି । ଇନ୍ଦ୍ର-ଯଜ୍ଞ ନିମନ୍ତେ ଯାହା ପ୍ରସ୍ତୁତି ଚାଲିଥିଲା ତଦ୍ଦ୍ୱାରା ସେମାନେ ସମସ୍ତେ ଗୋବର୍ଦ୍ଧନ ପୂଜା ଆରମ୍ଭ କରିଦେଲେ ।

**ଅନ୍ୟେଭ୍ୟଶ୍ଚାଶ୍ୱଚଣ୍ଡାଲପତିତେଭ୍ୟୋ ଯଥାର୍ହତଃ । (୧୦.୨୪.୨୮)**

ସେତେବେଳେ ପୁଣି ଭଗବାନ କହିଲେ, "ଅବଶିଷ୍ଟ ଯେଉଁ ଅନ୍ନ ଅଛି ତାକୁ ଅଶ୍ୱ, ଚଣ୍ଡାଳ ଆଦି ସମସ୍ତଙ୍କୁ ଦେଇ ଦିଅ । ଇନ୍ଦ୍ରକୁ ଦେବାର ଆବଶ୍ୟକତା ନାହିଁ ।" ଏହିପରି ଭଗବାନ ଇନ୍ଦ୍ରକୁ କ୍ରୋଧିତ କରାଇଦେଲେ । ଯାହାଠାରେ ଅଭିମାନ ବହୁତ ବଢ଼ିଗଲାଣି ତାକୁ ସାମାନ୍ୟ ଆଘାତ କରିଦେଲେ ମଧ୍ୟ ସେ ତୁରନ୍ତ କ୍ରୋଧିତ ହୋଇଯାଏ। ଯେତେବେଳେ ଗୋବର୍ଦ୍ଧନଙ୍କ ପୂଜା ଆରମ୍ଭ ହେଲା, ସେତେବେଳେ ଇନ୍ଦ୍ରଙ୍କର କ୍ରୋଧ ଆସିଗଲା । ଆଚ୍ଛା ! ଏପରି କଥା ଚାଲିଛି ! ଏମାନଙ୍କର ଏତେ ଶକ୍ତି ? ଏଭଳି ବିଚାର କରି ଇନ୍ଦ୍ର ଭୟଙ୍କର ବର୍ଷା କରିବାକୁ ଆରମ୍ଭ କରିଦେଲା । ଏପରି ହେଲା, ସତେ ଯେପରି ପ୍ରଳୟ ସମୟର ବାଦଲ ଆକାଶରେ ବ୍ୟାପି ଗଲେ ଖେଳେଇ ହୋଇଗଲେ । ଚତୁର୍ଦ୍ଦିଗ ଜଳାର୍ଣ୍ଣବ ହୋଇଗଲା । ଦେଖନ୍ତୁ, ତଥାପି ଭଗବାନ ସ୍ୱୟଂ ଥାଇ ମଧ୍ୟ କିଛି କରୁନଥିଲେ । ବର୍ଷାରେ ସମସ୍ତେ ଓଦା ହୋଇ ଥଣ୍ଡାରେ ତ୍ରସ୍ତ ହୋଇଗଲେ ।

**କୃଷ୍ଣ କୃଷ୍ଣ ମହାଭାଗ ତ୍ୱନ୍ନାଥଂ ଗୋକୁଳଂ ପ୍ରଭୋ । (୧୦.୨୫.୧୩)**

ସେତେବେଳେ ସମସ୍ତେ ଭଗବାନଙ୍କର ଶରଣରେ ଯାଇ କହିବାକୁ ଲାଗିଲେ, "**କୃଷ୍ଣ କୃଷ୍ଣ ମହାଭାଗ**" ଭଗବାନ ଆମେ ପ୍ରଥମରୁ କହୁଥିଲୁ, ଇନ୍ଦ୍ର କ୍ରୋଧିତ ହୋଇଯିବେ, ଦେଖ ସେ ତ ଅତିବୃଷ୍ଟି କରିବାକୁ ଲାଗିଲାଣି । ଆପଣ ତ ମହାଭାଗ ଅଟନ୍ତି, କିନ୍ତୁ ଆମ୍ଭମାନଙ୍କର ଭାଗ୍ୟ ତ ଆପଣଙ୍କର ହାତରେ ହିଁ ଅଛି, ଆମ୍ଭମାନଙ୍କୁ ରକ୍ଷା କରନ୍ତୁ ।"

ଭଗବାନ କହିଲେ, "ଆଚ୍ଛା ଚିନ୍ତା କର ନାହିଁ ।" ଗୋଟିଏ ହାତରେ ହିଁ ସେ ଗୋବର୍ଦ୍ଧନ ପର୍ବତକୁ ଏପରି ଉଠାଇନେଲେ ଯେ ଯେପରି କେହି ଛତୁପୁଷ୍ପକୁ ଉଠାଉଛି । ଆହୁରି ପୁଣି ଗୋଟିଏ ଛୋଟ ଅଙ୍ଗୁଳି ଦ୍ୱାରା ସେହି ପର୍ବତକୁ ଧାରଣ କରିନେଲେ । ଏତିକି କେବଳ ନୁହେଁ, ଅନ୍ୟ ହାତଟିରେ ମୁଖରେ ଲଗା ହୋଇଥିବା ବଂଶୀକୁ ମଧ୍ୟ ଧାରଣ କରିଛନ୍ତି । ଏହି ଛବିକୁ ଟିକିଏ କଳ୍ପନା କରନ୍ତୁ । ଏହା ହେଉଛି ଗୋବର୍ଦ୍ଧନ-ଲୀଳା । ପୁଣି ନିଜ ହାତକୁ ଉପରକୁ ଉଠାଇ ପର୍ବତକୁ ଏକ ଛତ୍ର ସମାନ କରିଦେଲେ ପୁଣି କହିଲେ, "ସମସ୍ତେ ଏହି ଗିରିରାଜ ତଳକୁ ଆସିଯାଆନ୍ତୁ । ଡରନ୍ତୁ ନାହିଁ, ମୁଁ ଏହି ପର୍ବତକୁ ପଡ଼ିବାକୁ ଦେବି ନାହିଁ ।" ଭଗବାନ ଶ୍ରୀକୃଷ୍ଣଙ୍କର ଆଶ୍ୱାସନା ପାଇ ସମସ୍ତ ବ୍ରଜବାସୀ ନିଜ ନିଜର ଶଗଡ଼ା, ଗାଈ, ବାଛୁରୀ, ସମସ୍ତ ଜିନିଷପତ୍ର ନେଇ ଏହି ଛତ୍ରରୂପୀ ପର୍ବତ ତଳକୁ ଆସିଗଲେ । ସାତ ଦିନ ପର୍ଯ୍ୟନ୍ତ ବର୍ଷା ଲାଗି ରହିଲା ଏବଂ ଭଗବାନ ଛିଡ଼ା ହୋଇ ରହିଲେ ସେହି ପର୍ବତକୁ ନିଜ ଅଙ୍ଗୁଳିରେ ଧାରଣ କରି । ସେହି ସମୟରେ ଭଗବାନଙ୍କ ବୟସ କେବଳ ସାତ ବର୍ଷ ହୋଇଥିଲା ।

ସାତଦିନ ପର୍ଯ୍ୟନ୍ତ ତ କିଛି କହିଲେ ନାହିଁ, କିନ୍ତୁ ଶେଷରେ ଗୋପବାଳକମାନେ କହୁଛନ୍ତି – କୃଷ୍ଣ ତୁମକୁ ତ କଷ୍ଟ ହେଉଥିବ । ଥକା ଲାଗୁଥିବ । କିଛି ସମୟ ପାଇଁ ତାକୁ ତୁମେ ଶ୍ରୀଦାମା ହାତରେ ଦେଇ ଦିଅ । ଅଥବା ନିଜ ହାତକୁ ବଦଳାଇ ଦିଅ । ଏ ହାତ ବଦଳରେ ସେ ହାତକୁ ନେଇ ଯାଅ । ସେତେବେଳେ ଆମେ ତୁମ ହାତକୁ ଆଉଁସି ଦେବୁ । ଭଗବାନ ହସି ଦେଇ ସେଥିପାଇଁ ମନା କରିବା ସଙ୍ଗେ ସଙ୍ଗେ ସେମାନଙ୍କୁ କହିଲେ ତୁମ୍ଭେମାନେ ମଧ୍ୟ ନିଜ ନିଜର ବାଡ଼ି ଖଣ୍ଡିକ ପର୍ବତ ତଳେ ଲଗାଇ ଦିଅ । ତେବେ ସମସ୍ତେ ନିଜ ନିଜର ବାଡ଼ି ଖଣ୍ଡିକ ଲଗାଇ ଦେଲେ ଏବଂ ମନେ ମନେ ବିଚାର କରୁଛନ୍ତି ଯେ ସେମାନେ ଭଗବାନଙ୍କୁ କିଛି ସାହାଯ୍ୟ କରୁଛନ୍ତି । ଗୋବର୍ଦ୍ଧନ ଲୀଳା ସମାପ୍ତ ହେବା ପରେ ଯଦି କେବେ ଭଗବାନ କହନ୍ତି ଯେ ଦେଖ, ମୁଁ ଗୋବର୍ଦ୍ଧନ ପର୍ବତ ଉଠାଇ ତୁମ୍ଭମାନଙ୍କୁ ରକ୍ଷା କରିଥିଲି ତେବେ ସେହି ଗୋପବାଳକମାନେ କହୁଥିଲେ - ବେଶି ଚତୁର ହୁଅ ନାହିଁ, ଆମ୍ଭେମାନେ ମଧ୍ୟ ନିଜ ନିଜର ବାଡ଼ି ଲଗାଇଥିଲୁ । ତୁମେ କେବଳ ତାକୁ ଉଠାଇଥିଲ ଏପରି କୁହ ନାହିଁ ।

ଦେଖନ୍ତୁ, ଆମେ ସମସ୍ତେ ମଧ୍ୟ ସେହିପରି ବାଡ଼ି ଲଗାଇବା ବାଲା ଲୋକ ଅଟୁ। ସମସ୍ତ କାର୍ଯ୍ୟ ଭଗବାନ କରୁଛନ୍ତି, ଆମେ ସେଥିରେ ବାଡ଼ି ଖଣ୍ଡିଏ ଲଗାଇ ଦେଇଥାଉ ଏବଂ ବିଚାର କରୁ, କହିଥାଉ ମଧ୍ୟ ଯେ ଆମେ କରିଲୁ । ଏହା ହେଉଛି ଗୋବର୍ଦ୍ଧନ-ଲୀଳା । ଲୀଳା ତ ବହୁତ ସୁନ୍ଦର ହିଁ ଅଟେ, ତା ସହିତ ଏଥିରେ ଯେଉଁ "ଗୋ' ଅଛି,

ଏହାର ଅର୍ଥ ଅନେକ ହୋଇଥିବାରୁ ଏହି ଗୋବର୍ଦ୍ଧନ-ଲୀଳାର ତାତ୍ପର୍ଯ୍ୟ ମଧ୍ୟ ଅନେକ ହୋଇଯାଇଥାଏ । ସେଥିପାଇଁ ଏହି ଗୋବର୍ଦ୍ଧନ ଲୀଳା କେବଳ ସୁନ୍ଦର ନୁହେଁ ସାରଗର୍ଭକ ମଧ୍ୟ ଅଟେ ।

"ଗୋ'ର ଗୋଟିଏ ଅର୍ଥ ହେଉଛି ଗାଈ, ତେଣୁ ଭଗବାନ ଗୋବର୍ଦ୍ଧନକୁ ଉଠାଇଲେ ଅର୍ଥ ଗାଈମାନଙ୍କର ସଂବର୍ଦ୍ଧନ କଲେ ।

"ଗୋ'ର ଦ୍ୱିତୀୟ ଅର୍ଥ ହେଉଛି-ପୃଥ୍ୱୀ । ଭଗବାନ ପୃଥ୍ୱୀର ମଧ୍ୟ ସମ୍ବର୍ଦ୍ଧନ କଲେ । ତାକୁ ସମସ୍ତ ଅସୁରମାନଙ୍କଠାରୁ ରକ୍ଷା କଲେ, ଅର୍ଥାତ ତାକୁ ଉପରକୁ ଉଠାଇଲେ ।

"ଗୋ'ର ଆଉ ଏକ ଅର୍ଥ ହେଉଛି ବେଦ । ଭଗବାନ ବେଦକୁ ମଧ୍ୟ ଉଠାଇଲେ ଅର୍ଥାତ ବେଦଧର୍ମ ଯାହା ଲୁପ୍ତ ପ୍ରାୟ ହୋଇଯାଇଥିଲା, ତାକୁ ମଧ୍ୟ ଭଗବାନ ଉପରକୁ ଉଠାଇଲେ, ତାର ଉତ୍‌ଥାନ କଲେ ।

"ଗୋ'ର ଅର୍ଥ ଇନ୍ଦ୍ରିୟ ମଧ୍ୟ ହୋଇଥାଏ । ଇନ୍ଦ୍ରିୟ ସବୁବେଳେ ତଳଆଡ଼କୁ ଯାଉଥାଏ । ଭଗବାନ କହିଲେ ତୁମେ ସବୁବେଳେ ତଳକୁ ଯାଉଥିଲ ଟିକିଏ ଉପରକୁ ଉଠ । ତାର ଅର୍ଥ ହେଉଛି ଭଗବାନ ଇନ୍ଦ୍ରିୟମାନଙ୍କୁ ବୁଲାଇ ଦେଇ ପରମାତ୍ମାଙ୍କ ଆଡ଼କୁ ଲଗାଇ ଦେଲେ ।

ଭଗବାନ ଗାଈମାନଙ୍କୁ ସଂବର୍ଦ୍ଧନ କଲେ, ଇନ୍ଦ୍ରିମାନଙ୍କୁ ଉଚ୍ଚ ସ୍ଥିତିକୁ ନେଲେ । ଧର୍ମକୁ ଉଚ୍ଚକୁ ଉଠାଇଲେ ଏବଂ ପୃଥ୍ୱୀକୁ ମଧ୍ୟ ଉଚ୍ଚକୁ ଉଠାଇଲେ । ଏହା ହିଁ ଗୋବର୍ଦ୍ଧନ-ଲୀଳାର ସଠିକ ଅଭିପ୍ରାୟ । ଦ୍ୱିତୀୟ କଥା ହେଉଛି ଯେ ଏହି ଲୀଳା ଦ୍ୱାରା ଭଗବାନ ଇନ୍ଦ୍ରଦେବତାଙ୍କର ଅଭିମାନକୁ ନଷ୍ଟ କରିଦେଲେ । ଆଉ ଗୋଟିଏ କଥା ହେଉଛି ଯେ ଭଗବାନ ଚାହୁଁଛନ୍ତି ଆମେ ଯେଉଁ ଯଜନ-ପୂଜନ କରୁଛୁ ତାହା ପ୍ରେମ ଭକ୍ତିରେ କରିବା ଉଚିତ, ଭୟରେ ନୁହେଁ । ତା ସହିତ ଭଗବାନ କହିବାକୁ ଚାହୁଁଛନ୍ତି ଯେ, ଯିଏ ଅଦୃଷ୍ଟ ତାକୁ ତୁମେ ବହୁତ ଦେଇଥାଅ ଏବଂ ଯେ ଦୃଷ୍ଟ ତାକୁ କିଛି ଦିଅ ନାହିଁ ତାଙ୍କୁ ମଧ୍ୟ ତୁମେ ପ୍ରସନ୍ନ କର ।

ଇନ୍ଦ୍ର ଯେତେବେଳେ ଦେଖିଲେ ସାତ ଦିନ ପର୍ଯ୍ୟନ୍ତ ଭଗବାନ ହଲିଲେ ମଧ୍ୟ ନାହିଁ ତ ସେ ଆଶ୍ଚର୍ଯ୍ୟ ଚକିତ, ବିସ୍ମିତ ହୋଇଗଲେ । ସେ ବୁଝିଗଲେ ଯେ ଏହି ବାଳକ ତ କୌଣସି ସାଧାରଣ ବାଳକ ନୁହେଁ- ଇଏ ଆଉ କିଏ । ସେ ଶାନ୍ତ ହୋଇଗଲେ । ଇନ୍ଦ୍ରର ଅଭିମାନ ନଷ୍ଟ ହୋଇଗଲା । ସେ ବର୍ଷା ବନ୍ଦ କରିଦେଲେ । ସେତେବେଳେ

ଭଗବାନ ସମସ୍ତଙ୍କୁ କହିଲେ – ଆପଣମାନେ ସମସ୍ତେ ଏଠାରୁ ବାହାରି ନିଜ ଘରକୁ ଫେରି ଯାଆନ୍ତୁ। ସମସ୍ତଙ୍କୁ ବାହାରକୁ ବାହାର କରିଦେଲେ ଏବଂ ପୁଣି ଧୀରେ ନିଜ ଲୀଳା ଦ୍ୱାରା ହିଁ ପର୍ବତକୁ ପୁନର୍ବାର ତାର ସ୍ଥାନରେ ରଖିଦେଲେ । ସମସ୍ତଙ୍କୁ ପୁଣି କହୁଛନ୍ତି ଯେ ଏବେ ତୁମେ ସବୁ ଶାନ୍ତିରେ ରୁହ । ଚିନ୍ତା କରିବାର କୌଣସି କାରଣ ନାହିଁ ।

ସାତବର୍ଷ ବାଳକକୁ ଏହି ସବୁ କରିବାର ଦେଖି ବ୍ରଜର ଗୋପାଳମାନଙ୍କୁ ଶଙ୍କା ହେବାକୁ ଲାଗିଲା । ସେମାନେ ନନ୍ଦବାବାଙ୍କ ନିକଟକୁ ଯାଇ ତାଙ୍କୁ କହିବାକୁ ଲାଗିଲେ ଯେ, ଏ କ'ଣ ସତରେ ତୁମର ପୁତ୍ର ? କ'ଣ କିଛି ରହସ୍ୟ ଏଥିରେ ରହିଛି ? ସତ୍ୟ କୁହ – ଏ କିଏ ଅଟେ ? ଏ କାହାର ପୁତ୍ର ? ନନ୍ଦବାବା କହୁଛନ୍ତି, "ତୁମ୍ଭମାନଙ୍କୁ ଏପରି ଶଙ୍କ ହେଉଛି ତ ଏବେ ମୁଁ କ'ଣ କହିବି ? ଗର୍ଗ ମହର୍ଷି ଏମାନଙ୍କ ବିଷୟରେ ଯାହା କହିଥିଲେ ମୁଁ କ'ଣ କହିବି ? ଗର୍ଗ ମହର୍ଷି ଏମାନଙ୍କ ବିଷୟରେ ଯାହା କହିଥିଲେ ମୁଁ ଆପଣମାନଙ୍କୁ କହୁଛି । ଗର୍ଗ ମହର୍ଷି ଯେତେବେଳେ ଏଠାକୁ ଆସିଥିଲେ ସେମାନଙ୍କର ନାମକରଣ ସଂସ୍କାର ନିମନ୍ତେ, ସେତେବେଳେ ସେ କହିଥିଲେ ଯେ ଏ ତ ଆମ ସମସ୍ତଙ୍କୁ ରକ୍ଷା କରିବେ । ଏ ତ ସମୟ ଅନୁସାରେ ପ୍ରତ୍ୟେକ ଯୁଗରେ ଏଠାକୁ ଆସି ସମସ୍ତଙ୍କୁ ଉଦ୍ଧାର କରନ୍ତି । ପ୍ରଥମେ ତାଙ୍କର ବର୍ଣ୍ଣ ଧଳା ଥିଲା, ପୁଣି ହଳଦିଆ ମଧ୍ୟ ହୋଇଥିଲା, ପୁଣି ଲାଲ ମଧ୍ୟ ହୋଇଥିଲା ଏବଂ ଏବେ କଳା ବର୍ଣ୍ଣ ନେଇ ଆସିଛନ୍ତି । ଏମାନଙ୍କର ନାମ, ରୂପ ଅନେକ ତଥା ଗୁଣ ମଧ୍ୟ ଅନେକ ଅଛି । ଐଶ୍ୱର୍ଯ୍ୟ, ଯଶ, ଗୁଣ, ଆଦିରେ ଏ ପରମାତ୍ମାଙ୍କର ସମାନ ହିଁ ଅଟନ୍ତି । ଏ ପ୍ରଥମେ ମଧ୍ୟ ଅନେକ ଅସୁରମାନଙ୍କୁ ମାରିଛନ୍ତି । ଆଗକୁ ମଧ୍ୟ ଏ ବଡ଼ ବଡ଼ ସଂକଟରୁ ଆପଣମାନଙ୍କୁ ସମସ୍ତଙ୍କୁ ରକ୍ଷା କରିବେ। ସମସ୍ତ ଲୋକ ଏମାନଙ୍କୁ ବିଶେଷ ପ୍ରେମ କରିବେ । ଏମାନଙ୍କ ପ୍ରତାପକୁ ଦେଖି ତୁମ୍ଭେମାନେ ଆଶ୍ଚର୍ଯ୍ୟ ହୁଅ ନାହିଁ ।'' ଏହିପରି ଗର୍ଗାଚାର୍ଯ୍ୟଙ୍କ ସହିତ ହୋଇଥିବା ସମ୍ବାଦର ବିଷଦ ଭାବେ ବର୍ଣ୍ଣନ କରି ନନ୍ଦବାବା କହିଲେ, ସେ ଯାହା ମୋତେ ତାହା ହିଁ ସବୁ ମୁଁ ଆପଣମାନଙ୍କୁ କହୁଛି । ଯେତେବେଳେ ନନ୍ଦବାବା ଏପରି କହିଲେ, ତା ଶୁଣି ସମସ୍ତେ କହି ଉଠିଲେ – ଆଛା, ଗର୍ଗ ମହର୍ଷି ଏପରି କହିଛନ୍ତି ? ତେବେ ତ ଠିକ ଅଛି।

ଗୋବର୍ଦ୍ଧନ-ଲୀଳା ଯେତେବେଳେ ସମାପ୍ତ ହେଲା, ଇନ୍ଦ୍ରର ଅଭିମାନ ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇଥିଲା। ତାପରେ ଇନ୍ଦ୍ର ସ୍ୱର୍ଗରୁ ପୃଥିବୀ ପୃଷ୍ଠକୁ ଆସିଲେ ଏବଂ ଭଗବାନଙ୍କ ଚରଣରେ ପଡ଼ିଗଲେ ।

**କ୍ଷନ୍ତୁ ପ୍ରଭୋଽଥାର୍ହସି ମୂଢ଼ଚେତସା**

**ମୈବଂ ପୁନର୍ଭୂନ୍ମତିରୀଶ ମେଽସତୀ ॥ (୧୦.୨୭.୮)**

ପୁଣି କହୁଛନ୍ତି, "ଭଗବାନ ମୁଁ ମୂଢ଼, ମୁଁ ଆପଣଙ୍କର ପ୍ରଭାବକୁ ଜାଣିପାରିଲି ନାହିଁ । ମୋର ଅଭିମାନ ହୋଇଗଲା । ମୋତେ କ୍ଷମା ଦିଅନ୍ତୁ ଏବଂ ଏପରି ବରଦାନ ଦିଅନ୍ତୁ ଯେ ମୋର ବୁଦ୍ଧି କଦାଚିତ୍ ଅସତ୍ ମାର୍ଗକୁ ନ ଯାଉ ।'' ଭଗବାନ କହିଲେ - ତେବେ ଠିକ୍ ଅଛି, ଏବେ ତୁମର ଅଭିମାନ ନଷ୍ଟ ହୋଇଗଲାଣି । ଆଗକୁ ଏହିପରି ଅଭିମାନ କରିବ ନାହିଁ । ତୁମକୁ ଯେଉଁ କାର୍ଯ୍ୟ ଦିଆଯାଇଛି ତାକୁ ଠିକ ଭାବରେ କରୁଥାଅ ।

ଏତିକିବେଳେ କାମଧେନୁ ମଧ୍ୟ ଭଗବାନଙ୍କର ପାଖକୁ ଆସିଲେ । କାମଧେନୁ କହୁଛନ୍ତି, "ଭଗବାନ ସମୟ ଅନୁସାରେ ଆପଣ ହିଁ ଆମର ରକ୍ଷା କରିଛନ୍ତି । ଆମର ବଂଶକୁ ଦାବାଗ୍ନିରୁ, ବ୍ରହ୍ମାଜୀଙ୍କ ପାଖରୁ ଏବଂ ଇନ୍ଦ୍ରର ପ୍ରକୋପରୁ ଆପଣ ହିଁ ଆମକୁ ରକ୍ଷା କରିଛନ୍ତି । ଏବେ ଆପଣ ହିଁ ଆମର ସ୍ୱାମୀ ଅଟନ୍ତି । ଆପଣ ହିଁ ଆମର ଇନ୍ଦ୍ର । ତେଣୁ ମୁଁ ଆପଣଙ୍କର ଅଭିଷେକ କରିବାକୁ ଚାହୁଁଛି ।'' ଭଗବାନ କହିଲେ, "''ଠିକ ଅଛି ।'' କାମଧେନୁ ସମସ୍ତ ସାମଗ୍ରୀ ଏକାଠି କଲେ ଏବଂ ଭଗବାନଙ୍କର ଅଭିଷେକ କଲେ ।

**ଇନ୍ଦ୍ରଃ ସୁରର୍ଷିଭିଃ ସାକଂ ନୋଦିତୋ ଦେବମାତୃଭିଃ ।**

**ଅଭ୍ୟଷିଞ୍ଚତ ଦାଶାର୍ହ ଗୋବିନ୍ଦ ଇତି ଚାଭ୍ୟଧାତ୍ ॥ (୧୦.୨୭.୨୩)**

ପୁଣି ଇନ୍ଦ୍ର ମଧ୍ୟ ସମସ୍ତ ଦେବ ଋଷିମାନଙ୍କ ସହିତ, ଆକାଶ-ଗଙ୍ଗା ଦ୍ୱାରା ଭଗବାନଙ୍କର ଅଭିଷେକ କଲେ ଏବଂ ତାଙ୍କୁ ସେହିଠାରେ ହିଁ "ଗୋବିନ୍ଦ' ନାମରେ ସମ୍ବୋଧନ କଲେ ।

**ଇତି ଗୋଗୋକୁଳପତିଂ ଗୋବିନ୍ଦମଭିଷିଚ୍ୟ ସଃ ।**

**ଅନୁଜ୍ଞାତୋ ଯଯୌ ଶକ୍ରୋ ବୃତୋ ଦେବାଦିଭିର୍ଦିବମ୍ ॥ (୧୦.୨୭.୨୮)**

ଏହିଭଳି ଭାବରେ ଇନ୍ଦ୍ରର ଅଭିମାନ ନଷ୍ଟ କରି ଭଗବାନ ତାଙ୍କୁ ମଧ୍ୟ ଜୟ କରେ।

## ନନ୍ଦବାବାଙ୍କୁ ବରୁଣ ଲୋକରୁ ଫେରାଇ ଆଣିବା

ଏ ସବୁ ଘଟଣାପରେ ଥରେ ନନ୍ଦବାବା ଏକାଦଶୀ ବ୍ରତ କରିଛନ୍ତି । ଦ୍ୱାଦଶୀ ମୁହୂର୍ତ୍ତରେ ସେ ସ୍ନାନ କରିବା ନିମନ୍ତେ ରାତ୍ରି ସମୟରେ ଯମୁନା ଜଳରେ ପ୍ରବେଶ କଲେ। ରାତ୍ରି ସମୟକୁ ଆସୁରୀ ବେଳା ମାନନ୍ତି । ଏହି ସମୟରେ ସେ ସ୍ନାନ କରିବାକୁ ଗଲେ, ତ ବରୁଣ ଦେବତାଙ୍କର ସେବକମାନେ ତାଙ୍କୁ ଧରି ନେଲେ ଏବଂ ସେମାନେ ତାଙ୍କୁ ବରୁଣ ଦେବତାଙ୍କ ପାଖକୁ ନେଇଗଲେ । ଯେତେବେଳେ ବ୍ରଜବାସୀମାନେ ଦେଖିଲେ ଯେ ନନ୍ଦବାବା କେଉଁଠାରେ ଦେଖାଯାଉ ନାହାନ୍ତି, ତ ସେମାନେ କହିବାକୁ ଲାଗିଲେ, "ଆରେ ନନ୍ଦବାବା କେଉଁଆଡ଼େ ଗଲେ, ନନ୍ଦବାବା କେଉଁଆଡ଼େ ଗଲେ ? ଯେତେବେଳେ ସେ କେଉଁଠାରେ ନ ମିଳିଲେ, ତ ସମସ୍ତେ ବ୍ୟସ୍ତ ହୋଇ କୃଷ୍ଣ ବଳରାମଙ୍କ ପାଖକୁ ଯାଇ କହିଲେ - ଆପଣ ହିଁ ତାଙ୍କୁ ରକ୍ଷା କରିପାରିବେ । ଏହା ଶୁଣିବା ପରେ ଭଗବାନଙ୍କୁ ସବୁ କିଛି ଜଣାପଡ଼ିଗଲା । ଭଗବାନ ଯମୁନା ଜୀ ଭିତରେ ପ୍ରବେଶ କରୁଛନ୍ତି । ଭଗବାନଙ୍କୁ ଦେଖି ବରୁଣ ଦେବତା ତାଙ୍କର ଚରଣରେ ବନ୍ଦନ କରୁଛନ୍ତି, ତାଙ୍କର ପୂଜନ ଅର୍ଚ୍ଚନା କରୁଛନ୍ତି । ପୁଣି କହୁଛନ୍ତି, " "ଆଜି ଆପଣଙ୍କର ଦର୍ଶନ ପାଇ ମୁଁ ଧନ୍ୟ ହୋଇଗଲି । ମୋର ସେବକମାନେ ବଡ଼ ମୂର୍ଖ ଅଟନ୍ତି । ଜଡ଼ତା ବଶତଃ ଆପଣଙ୍କ ପିତାଜୀଙ୍କୁ ଏଠାକୁ ନେଇ ଆସିଛନ୍ତି । ଆପଣ ଆମ ସମସ୍ତଙ୍କୁ କ୍ଷମା କରି ଦିଅନ୍ତୁ ।"

**ଗୋବିନ୍ଦ ନୀୟତାମେଷ ପିତା ତେ ପିତୃବତ୍ସଳ ॥ (୧୦.୨୮.୮)**

"ଆପଣ ମୋର ପିତା ସମାନ ଅଟନ୍ତି । ନିଜର ପିତାଙ୍କ ପ୍ରତି ଆପଣଙ୍କର ବହୁତ ପ୍ରେମ ଅଛି, ଆପଣ ତାଙ୍କୁ ନେଇଯାଆନ୍ତୁ। ଭଗବାନ ନନ୍ଦବାବାଙ୍କୁ ନେଇ ଆସୁଛନ୍ତି । ସେହି ସମୟରେ ସମସ୍ତ ବ୍ରଜବାସୀ ସେଠାରେ ଏକତ୍ରିତ ହୋଇଯାଇଥିଲେ। ବରୁଣ ଲୋକରେ ସମସ୍ତଙ୍କୁ ନିଜ ପୁତ୍ରର ଚରଣରେ ବନ୍ଦନ କରୁଥିବାର ତଥା ତାଙ୍କର ପୂଜା, ସ୍ତୁତି କରୁଥିବାର ଦେଖି ନନ୍ଦବାବାଙ୍କୁ ବହୁତ ଆଶ୍ଚର୍ଯ୍ୟ ହେଲା । ସେ ସେଠାରେ ଘଟିଥିବା ସମସ୍ତ କଥା ବ୍ରଜବାସୀମାନଙ୍କୁ ଶୁଣାଇଲେ ତ ସମସ୍ତ ଗୋପାଳମାନଙ୍କ ମନରେ ମଧ ତାହା ସବୁ ଦେଖିବାକୁ ତୀବ୍ର ଇଚ୍ଛା ହେଲା । ସେମାନେ ବୁଝିଗଲେ ଯେ ଶ୍ରୀକୃଷ୍ଣ ସାମାନ୍ୟ ବାଳକ ନୁହେଁ, ମନୁଷ୍ୟ ନୁହେଁ । ସେମାନଙ୍କୁ ଲାଗିଲା ଯେ କଣ ଆମକୁ ମଧ ଭଗବାନ ଶ୍ରୀକୃଷ୍ଣ ନିଜର ସ୍ୱରୂପର ଦୃଷ୍ଟି ପ୍ରଦାନ କରିବେ । କେବେ କ'ଣ ସେ ଆମ୍ଭମାନଙ୍କୁ ନିଜ ଲୋକର ଦର୍ଶନ ମଧ କରାଇବେ ? ଭଗବାନ ତ ଅନ୍ତର୍ଯ୍ୟାମୀ ଅଟନ୍ତି।

ସେ ସେମାନଙ୍କ ଇଚ୍ଛାକୁ ଜାଣିଗଲେ । ସେ ବିଚାର କଲେ ଏମାନଙ୍କର ପୂର୍ଣ୍ଣ ହେବା ଉଚିତ୍ । ଏପରି ବିଚାର କରି -

**ଦର୍ଶୟାମାସ ଲୋକଂ ସ୍ୱଂ ଗୋପାନାଂ ତମସଃ ପରମ୍ ॥(୧୦.୨୮.୧୪)**

**ସତ୍ୟଂ ଜ୍ଞାନମନନ୍ତଂ ଯଦ୍ ବ୍ରହ୍ମ ଜ୍ୟୋତିଃ ସନାତନମ୍ ।**

**ଯଦ୍ଧି ପଶ୍ୟନ୍ତି ମୁନୟୋ ଗୁଣାପାୟେ ସମାହିତାଃ ॥ (୧୦.୨୮.୧୫)**

ଭଗବାନ ସେ ସମସ୍ତଙ୍କୁ ପ୍ରଥମେ ନିଜର ସଚ୍ଚିଦାନନ୍ଦ ସ୍ୱରୂପର ଅନୁଭବ କରାଉଛନ୍ତି ଏବଂ ପୁଣି ନିଜର ସେହି ଲୋକର, ସେହି ଧାମର ମଧ୍ୟ ଦର୍ଶନ କରାଇ ଦେଉଛନ୍ତି, ଯେଉଁଠାରେ ବଡ଼ ବଡ଼ ଭକ୍ତ ଲୋକମାନେ ହିଁ ପହଞ୍ଚି ପାରନ୍ତି । ଅର୍ଥାତ ଭଗବାନ ନନ୍ଦ ଆଦି ପ୍ରିୟ ଗୋପାଳମାନଙ୍କୁ ଗୋ ଲୋକର ଦର୍ଶନ ମଧ୍ୟ କରାଇଲେ ଏବଂ ନିଜର ସଚ୍ଚିଦାନନ୍ଦ ସ୍ୱରୂପର ବୋଧ ମଧ୍ୟ କରାଇ ଦେଲେ, ତାର ଅର୍ଥ ହେଉଛି ସେମାନଙ୍କୁ ତ ଭଗବାନ ପୂର୍ଣ୍ଣତାର ପ୍ରାପ୍ତି କରାଇ ଦେଲେ ।

**ନନ୍ଦାଦୟସ୍ତୁ ତଂ ଦୃଷ୍ଟ୍ୱା ପରମାନନ୍ଦ ନିର୍ବୃତାଃ ।**

**କୃଷ୍ଣଂ ଚ ତତ୍ରଚ୍ଛନ୍ଦୋଭିଃ ସ୍ତୂୟମାନଂ ସୁବିସ୍ମିତାଃ ॥ (୧୦.୨୮.୧୭)**

ଭଗବାନଙ୍କର ପରମଧାମର ଦର୍ଶନ କରି ସେମାନଙ୍କର ମନ ଆନନ୍ଦରେ ବିଭୋର ହୋଇଗଲା ଏବଂ ସାକ୍ଷାତ୍ ବେଦମାନଙ୍କୁ ମୂର୍ତ୍ତିମାନ ହୋଇ ଭଗବାନଙ୍କର ସ୍ତୁତି କରୁଥିବାର ଦେଖି ସେମାନେ ସମସ୍ତେ ଅତ୍ୟନ୍ତ ବିସ୍ମିତ ହୋଇଗଲେ ।

## ରାସଲୀଳା ପ୍ରସ୍ତାବନା

ଏବେ ଆଗକୁ ଏହି ପାଞ୍ଚୋଟି ଅଧ୍ୟାୟକୁ **"ରାସପଞ୍ଚାଧ୍ୟାୟୀ"** କୁହାଯାଏ । ଶ୍ରୀମଦ୍ ଭାଗବତର, ବିଶେଷ କରି ଏହି ଦଶମ ସ୍କନ୍ଧର ତ ଏହା ପଞ୍ଚ ପ୍ରାଣ ସହିତ ସମାନ ଅଟେ। ଶ୍ରୀମଦ୍ ଭାଗବତରେ ଏହା ବଡ଼ ମହତ୍ତ୍ୱପୂର୍ଣ୍ଣ ପ୍ରସଙ୍ଗ ଅଟେ । ତେଣୁ ତାର ପ୍ରାରମ୍ଭରେ କିଞ୍ଚିତ୍ ପ୍ରସ୍ତାବନାର ବିଶେଷ ଆବଶ୍ୟକ ରହିଛି । ଦ୍ୱୈତ ଭାବରେ ତ ଏହି ପ୍ରସଙ୍ଗର ଆନନ୍ଦ ଗ୍ରହଣ କରିବା ସମ୍ଭବ ମଧ୍ୟ ନୁହେଁ । ଏକ ରୂପରେ ମଗ୍ନ ହୋଇ ଏହାର ଆନନ୍ଦ ଅନୁଭବ କରାଯାଇ ପାରିବ । ଶେଷରେ ଆମ ଜୀବନର ପରମ ଲକ୍ଷ୍ୟ ତ ହେଉଛି ସେହି ରସାନୁଭୂତି (ରସକୁ ଅନୁଭବ କରିବା)। ଦେଖନ୍ତୁ, ଯେଉଁଠାରେ ଯେଉଁଥିରେ ରସ ଆସେ ନାହିଁ, ଆମ୍ଭେମାନେ ସେଠାରେ ବସି ପାରିବା ନାହିଁ, ତାହା

ସିନେମା ହେଉ ବା ନାଟକ ହେଉ, ସତ୍‌ସଙ୍ଗ ହେଉ ବା ପ୍ରବଚନ ହେଉ ଯାହା କିଛି ମଧ୍ୟ ହେଉ ନା କାହିଁକି । ତେଣୁ ତ ଏପରି ମଧ୍ୟ ଶୁଣିବାକୁ ମିଳେ ଯେ ଆଜି କଥାରେ କିଛି ରସ ମିଳିଲା ନାହିଁ । ଏଭଳି କହିବାର ଶୁଣାଯାଏ ଯେ, ଆଜି ଭୋଜନରେ କିଛି ରସ ମିଳିଲା ନାହିଁ। ଶେଷରେ ପ୍ରତ୍ୟେକ ବିଷୟରେ ଅମେ ସମସ୍ତେ ରସକୁ ହିଁ ତ ଖୋଜି ଚାଲିଛୁ ।

ଏଠାରେ ଗୋପୀମାନେ ରସ ସ୍ୱରୂପ ପରମାତ୍ମାଙ୍କୁ ହିଁ ପାଇବାକୁ ହିଁ ଚାହୁଁଥିଲେ, ଖୋଜିଥିଲେ ଏବଂ ତାଙ୍କ ସହିତ ନୃତ୍ୟ କରିଥିଲେ, ଲୀଳା କରିଥିଲେ, ତେବେ ସେଥିରେ ଭୁଲ କେଉଁଠି ରହିଲା ? କୁହନ୍ତୁ, ସର୍ବଶେଷରେ ଆମେ ସମସ୍ତେ ମଧ୍ୟ ଏହା ହିଁ ଚାହୁଁଛୁ ନା ? ପ୍ରଥମେ ଏଠାରେ ଆମକୁ ଏହି କଥାକୁ ସ୍ପଷ୍ଟ ରୂପେ ବୁଝିବା ଉଚିତ୍ । ଦ୍ୱିତୀୟ କଥା ହେଉଛି ଯେ ଆମକୁ ଦେଖିବାକୁ ହେବ ଏବଂ ବୁଝିବାକୁ ହେବ ଯେ ଭଗବାନ ଯେଉଁ ରସଲୀଳା କଲେ ତାହା ସେ କେବେ କଲେ ? ଯଦି ପ୍ରାରମ୍ଭରୁ ଦେଖିବା, ତେବେ ଭଗବାନ ଶୈଶବ କାଳରେ ହିଁ ସର୍ବ ପ୍ରଥମେ ଅବିଦ୍ୟା ରୂପୀ ପୂତନାକୁ ଏବଂ ପୁଣି ବାଲ୍ୟକାଳରେ ହିଁ ଅବିଦ୍ୟାର ଯେତେଗୁଡ଼ିଏ ବୃତ୍ତି ଅଛି ସମସ୍ତ ବୃତ୍ତିମାନଙ୍କୁ ମାରିଲେ । ଆସୁରୀ ବୃତ୍ତିମାନଙ୍କୁ ମଧ୍ୟ ଜିତିଗଲେ କାରଣ କେବେ କେବେ ଦେଖାଯାଏ ଯେ ବ୍ୟକ୍ତି ଆସୁରୀ ବୃତ୍ତିକୁ ଦୂର କରି ଦେଇଥାଏ, କିନ୍ତୁ ଯେତେବେଳେ ତା ଭିତରେ ଦୈବୀଗୁଣ ଆସିବାକୁ ଲାଗେ ସେତେବେଳେ ତାର ଅଭିମାନ ହେବା ଆରମ୍ଭ ହୋଇଥାଏ । ତାର ନିଜର ବିଦ୍ୟା-ବୁଦ୍ଧିର ମଧ୍ୟ ଅଭିମାନ ହୋଇଯାଏ ।

ବ୍ରହ୍ମାଜୀ ବୁଦ୍ଧିର ଦେବତା ଅଟନ୍ତି । ଯେଉଁମାନେ ବେଦାନ୍ତର ଭାଷା ଜାଣିଛନ୍ତି ସେମାନଙ୍କୁ ଏହି କଥା ସହଜରେ ବୁଝିହେବ । **"ରସନାୟାଃ ବରୁଣଃ"** ରସର ଦେବତା ବରୁଣ ଅଟନ୍ତି । ପାଣିର ସମ୍ବନ୍ଧ ରସନେନ୍ଦ୍ରିୟ ତଥା ଉପସ୍ଥେନ୍ଦ୍ରି-ଜନନେନ୍ଦ୍ରିୟ ଏହି ଦୁଇଟି ସହ ଅଛି । ଅସୁରମାନଙ୍କୁ ମାରିବା ପରେ, ଭଗବାନ ଏ ସମସ୍ତଙ୍କର ଅଭିମାନକୁ ମଧ୍ୟ ନଷ୍ଟ କରିଦେଲେ ।

**ଦେଖନ୍ତୁ, ଏଠାରେ ଭଗବାନ ଶ୍ରୀକୃଷ୍ଣ ନିଜର ଏହି ଲୀଳା ଦ୍ୱାରା କ'ଣ ଦେଖାଉଛନ୍ତି। ଏହି ଲୀଳାମାନଙ୍କୁ ନିମିତ୍ତ କରି, ତାରି ମାଧ୍ୟମରେ ସେ ଆମର ମାର୍ଗ ଦର୍ଶନ କରାଉଛନ୍ତି। ଅର୍ଥାତ୍ ଭଗବାନ ଆମକୁ ଶିକ୍ଷା ଦେଉଛନ୍ତି ଯେ ଜୀବନରେ ପ୍ରଥମେ ଆସୁରୀବୃତ୍ତିକୁ ନଷ୍ଟ କରିବାକୁ ହେବ ଏବଂ ତାପରେ ଦୈବୀଗୁଣ ଉପରେ ମଧ୍ୟ ବିଜୟ ପ୍ରାପ୍ତ କରିବାକୁ ହେବ ଅର୍ଥାତ୍ ସଦ୍‌ଗୁଣ ତଥା ବୁଦ୍ଧି ଆଦିରେ ଯେଉଁ ଅଭିମାନ ହୋଇଥାଏ, ସେ ସବୁକୁ ମଧ୍ୟ ଦୂର କରିବାକୁ ପଡ଼ିବ।**

ଏହି ରାସଲୀଳା ଏଭଳି ଅଟେ ଯେ ଏହା ବିଷୟରେ ଅଥବା ଭଗବାନଙ୍କ ସହିତ ଗୋପୀମାନଙ୍କର ଯେଉଁ ରାସ ହେଲା, ସେହି ବିଷୟରେ ଅଧିକାଂଶ ଲୋକମାନଙ୍କ ମନରେ ବୃଥା ଶଙ୍କାମାନ ଆସିଥାଏ । ଏହି ରାସଲୀଳାପରେ ରାଜା ପରୀକ୍ଷିତ ମଧ୍ୟ ପ୍ରଶ୍ନ କଲେ, ଶ୍ରୀ ଶୁକଦେବ ଜୀ ତାର ଉତ୍ତର ମଧ୍ୟ ଦେଇଛନ୍ତି । କିନ୍ତୁ ଏଠାରେ ଆମେ ପ୍ରଥମରୁ ଏହା ବୁଝି ନେବା ଯେ ରାସଲୀଳା କ'ଣ ଅଟେ ?

ଦେଖନ୍ତୁ, ସର୍ବଶେଷରେ ସମସ୍ତ ଜୀବମାନଙ୍କର ଲକ୍ଷ୍ୟ କ'ଣ ? ଦିନରାତି ଆମେ ଯେଉଁ କର୍ମ କରୁଛୁ, ତାର ଫଳସ୍ୱରୂପ ଆମେ କ'ଣ ଚାହୁଁଛୁ ? ଆନନ୍ଦ-ପରମାନନ୍ଦ ହିଁ ତ ଚାହୁଁଛୁ, ପରମାନନ୍ଦର ଅନୁଭବ ତ କରିବାକୁ ଚାହୁଁଛୁ । ଆମେ ସମସ୍ତେ ଯାହାକୁ ଅନୁଭବ କରିବାକୁ ଚାହୁଁଛୁ । ଆମେ ସମସ୍ତେ ଯାହାକୁ ଅନୁଭବ କରିବାକୁ ଚାହୁଁଛୁ ସେ ରସ କ'ଣ ? ଉପନିଷଦରେ କୁହାଯାଇଛି, **"ରସୌ ବୈ ସଃ"** (ତୈ.ଉପ-୨.୭, ୨) ରସ ସ୍ୱରୂପ - ଆନନ୍ଦସ୍ୱରୂପ ସେ ବ୍ରହ୍ମ ଅଟନ୍ତି, ଭଗବାନ ଅଟନ୍ତି। **"ରସଁ୍ଗ ହ୍ୟେବାୟଂ ଲବ୍ଧ୍ୱାନନ୍ଦୀ ଭବତି "** ସେହି ବ୍ରହ୍ମ ସ୍ୱରୂପ ବ୍ରହ୍ମଙ୍କୁ, ଭଗବାନଙ୍କୁ ପ୍ରାପ୍ତ କରି ହିଁ ସମସ୍ତ ଲୋକେ ଆନନ୍ଦିତ ହେଉଥାଆନ୍ତି ।

ବର୍ତ୍ତମାନ ଆମକୁ ଭୋଜନରେ, ବସ୍ତ୍ର-ଅଳଙ୍କାରରେ, ନାମ-ରୂପ-ଯଶ ଆଦିରେ ଏବଂ ଭିନ୍ନ-ଭିନ୍ନ ପ୍ରକାର ସତ୍ତାରୁ ଯେଉଁ ଆନନ୍ଦ ମିଳୁଛି, ତାହା ବାସ୍ତବରେ ଭିନ୍ନ-ଭିନ୍ନ ଆନନ୍ଦ ନୁହେଁ । କେହି ସାହିତ୍ୟର ରସ ଜାଣିଛି, କେହି ନାଟ୍ୟ-କଳାର ରସ ଜାଣିଛି, କେହି ସଂଗୀତର ରସ ଜାଣିଛି, କେହି ଭୋଜନର ରସ ଜାଣିଛି, ତ କେହି ଅନ୍ୟ କିଛି କଳାମାନଙ୍କର ରସ ଜାଣିଛି । ପରନ୍ତୁ ସମସ୍ତ ରସକୁ ଜାଣିବା ବାଲା କେତେ ଜଣ ଅଛନ୍ତି ? **"ରସାନାଂ ସମୂହଃ ରାସଃ "** ସମସ୍ତ ରସର ଯାହା ସମୂହ ଅଟେ, ଏହି ସମସ୍ତ ଆନନ୍ଦ ଯେଉଁଠାରେ ଘନୀଭୂତ, ପୁଞ୍ଜୀଭୂତ ହୋଇଥାଏ, ତାକୁ ହିଁ କହନ୍ତି "ରାସ' । ଯେଉଁଠାରେ ଆନନ୍ଦ ପୃଥକ୍-ପୃଥକ୍ ହୋଇ ରହେ ନାହିଁ, ଯେଉଁ ଆନନ୍ଦରେ କ୍ଷୁଦ୍ରତା ଶ୍ରେଷ୍ଠତା ଆଦି ରହିଯାଏ ନାହିଁ, ଅଥବା ତାକୁ ଏପରି କୁହାଯାଇପାରେ ଯେ ସମସ୍ତ ରସ ଯେଉଁ ଏକ ମହା ଆନନ୍ଦରେ ମିଶି ଯାଆନ୍ତି ସେହି ଆନନ୍ଦକୁ "ରାସ' କୁହାଯାଇଥାଏ ।

ବାସ୍ତବରେ ନିଜର ସମସ୍ତ କର୍ମର ଫଳସ୍ୱରୂପ ଆମେ ସମସ୍ତେ ମଧ୍ୟ ରାସ ହିଁ ତ ଚାହୁଁଛୁ । ସେହି ଆନନ୍ଦ ସହିତ ଏକରୂପ ହୋଇଯିବାକୁ ଚାହୁଁଛନ୍ତି । ହଁ ନା ? ଅର୍ଥାତ୍ ଅଜାଣତରେ ମଧ୍ୟ ଆମେ ସମସ୍ତେ ସେହି ଆନନ୍ଦ ସ୍ୱରୂପ ପରମାତ୍ମାଙ୍କ ସହିତ ଏକରୂପ ହେବାକୁ ଚାହୁଁଛନ୍ତି । ପରନ୍ତୁ ତାହା କେବେ ହେବ ? ସେହି "ରାସ' କେବେ ହେବ ?

ଏଠାରେ ଦେଖନ୍ତୁ, ଭଗବାନ ପ୍ରଥମେ ଅସୁରମାନଙ୍କୁ ଏବଂ ତା ପରେ ଦେବତାମାନଙ୍କୁ ଜିତିଲେ ଅର୍ଥାତ ସଦ୍‌ଗୁଣର ଅଭିମାନକୁ ନଷ୍ଟ କରିଦେଲେ । ପୁଣି ସେ ବରୁଣ ଦେବତାଙ୍କୁ ଜିତିଲେ। ତା ପରେ ହିଁ ରାସଲୀଳା କଲେ, ଏହା ବଡ଼ ମହତ୍ତ୍ୱପୂର୍ଣ୍ଣ କଥା ଅଟେ ଅର୍ଥାତ୍ ଯେ ରସନେନ୍ଦ୍ରିୟ (ସ୍ୱାଦେନ୍ଦ୍ରିୟ) ଏବଂ ଜନନେନ୍ଦ୍ରିୟ, ଯାହାର ସମ୍ବନ୍ଧ ବରୁଣ ଦେବତାଙ୍କର ସହିତ ଅଛି, ସେହି ଦୁଇଟିକୁ ଜିତିଗଲା, ସେହିମାନେ ହିଁ ରାସର ଅଧିକାରୀ ହୋଇଥାଆନ୍ତି । ସେଥିପାଇଁ ଏଠାରେ କାମନାର ତ କୌଣସି କଥା ନାହିଁ । ଏଠାରେ ତାର କୌଣସି ପ୍ରଶ୍ନ ଉଠେ ନାହିଁ ।

ଅନ୍ୟ ରୀତିରେ ଦେଖିଲେ ଭଗବାନ ତ ନାଗଦେବତାଙ୍କୁ ମଧ୍ୟ ଜିତିଗଲେ ଅର୍ଥାତ ଇନ୍ଦ୍ରିୟଗୁଡ଼ିକୁ ମଧ୍ୟ ଜିତି ଗଲେ । ଅଗ୍ନିକୁ ପିଇଗଲେ, ଅର୍ଥାତ୍ ବାଣୀକୁ ମଧ୍ୟ ସଂଯମନ କରିନେଲେ । ଇନ୍ଦ୍ରର ତାତ୍ପର୍ଯ୍ୟ ଇନ୍ଦ୍ରିୟ ତଥା ମନ ମଧ୍ୟ ହୋଇଥାଏ । ତେଣୁ ଇନ୍ଦ୍ର ଉପରେ ବିଜୟର ତାତ୍ପର୍ଯ୍ୟ ମନ ତଥା ଇନ୍ଦ୍ରିୟ ଉପରେ ବିଜୟ । ସେହିଭଳି ବ୍ରହ୍ମାଜୀଙ୍କ ଉପରେ ବିଜୟ ପ୍ରାପ୍ତିର ତାତ୍ପର୍ଯ୍ୟ ଅନ୍ତଃକରଣ ଉପରେ ବିଜୟ । ଏହିପରି, ଯେ ଏହି ସମସ୍ତ ଉପରେ ବିଜୟ ପ୍ରାପ୍ତ କରି ନିଜର ଅନ୍ତଃକରଣକୁ ଶୁଦ୍ଧ କରି ନେଲେଣି, ତାକୁ ନିଜର ବଶ କରିନେଲେଣି, ସେ ହିଁ ପରମୁହୂର୍ତ୍ତରେ ରାସ କରିଥାଆନ୍ତି । ଅର୍ଥାତ୍ ତାଙ୍କୁ ହିଁ ପରମୁହୂର୍ତ୍ତରେ ପରମାନନ୍ଦଙ୍କ ଅନୁଭବ ପ୍ରାପ୍ତ ହୋଇଥାଏ । ଏହି ପ୍ରସଙ୍ଗକୁ ବୁଝିବା ନିମନ୍ତେ ଏହା ପ୍ରସ୍ତାବନା ଥିଲା । ଏହା ଦ୍ୱାରା କଥା (ରାସଲୀଳା) ସ୍ପଷ୍ଟ ହୋଇଯିବା ଉଚିତ୍ ।

ଏବେ ଏହି ସଂଦର୍ଭରେ ଆଉ ଗୋଟିଏ କଥା ହେଉଛି ଯେ ଯଦି ଆମେ ଭଗବାନ ଶ୍ରୀକୃଷ୍ଣଙ୍କର ଲୀଳା ଉପରେ ଏକ ଦୃଷ୍ଟିପାତ କରୁ, ତେବେ ଆମେ ଦେଖିବା ଯେତେବେଳେ ଭଗବାନ କାଳିୟନାଗକୁ ଜିତିଲେ, ଇନ୍ଦ୍ରକୁ ଜିତିଲେ, ବ୍ରହ୍ମାଜୀଙ୍କୁ ଜିତିଲେ, ପୁଣି ବରୁଣ ଦେବତାଙ୍କୁ ମଧ୍ୟ ଜିତିଲେ, ତ ଦିନେ କାମଦେବ ଭଗବାନଙ୍କ ନିକଟକୁ ଆସି କହିବାକୁ ଲାଗିଲା, "ମହାରାଜ, ଆପଣ ଏହି ସମସ୍ତଙ୍କୁ ତ ଜିତିଲେ । ମୋତେ ଜିତି କରି ଦେଖାନ୍ତୁ, ତେବେ ମୁଁ ମାନିବି ।" ଏହା ଶୁଣି ଭଗବାନ କହିଲେ, "ରାମ-ଅବତାରରେ ମୁଁ ତୋତେ ଜିତି ସାରିଛି । ଏବେ ତୁ କଣ ବିଜୟର କଥା କହୁଛୁ ।'' ସେ କହିଲା - ମହାରାଜ ସେହି ସମୟରେ ଆପଣ ଏକ ପତ୍ନୀ ବ୍ରତ ଧାରଣ କରିଥିଲେ, ସେଥିପାଇଁ ଆପଣ ଜିତିଗଲେ । ସେତେବେଳେ କିଲ୍ଲାରେ ତଥା ଦୁର୍ଗରେ ରହି ଆପଣ ମୋତେ ଜିତିଥିଲେ, ଏବେ ମୁକ୍ତ ଆକାଶ ତଳେ ଜିତି କରି ଦେଖାନ୍ତୁ । ଆଚ୍ଛା, ଠିକ ଅଛି ମୁକ୍ତ ଆକାଶ ତଳେ ଜିତି କରି ଦେଖାଇବି । ତାହା କିଭଳି ହେବା ଉଚିତ୍ ? ଶରତ ପୂର୍ଣ୍ଣିମା

ରାତ୍ରି ହୋଇଥିବ, ଏକାନ୍ତ ହୋଇଥିବ ଏବଂ ଆପଣଙ୍କ ସହିତ ସୁନ୍ଦରୀ ସୁନ୍ଦରୀ ସ୍ତ୍ରୀମାନେ ଥିବେ, ସେତେବେଳେ ସେମାନଙ୍କର ଗହଣରେ ଥାଇ ଆପଣ ମୋତେ ଜିତି କରି ଦେଖାନ୍ତୁ, ତେବେ ମୁଁ ମାନିବି । ଭଗବାନ କହିଲେ- ଠିକ ଅଛି, “ ”ତେବେ ସର୍ତ୍ତ ଲାଗିଲା, ଯଦି ମୁଁ ଜିତିଯାଏ, ତେବେ କଣ ଦେବ ?” “ମୁଁ ଆପଣଙ୍କ ଦାସ ହୋଇଯିବି - ଆଉ କ’ଣ ? ପ୍ରାୟ ବଡ଼ ବଡ଼ ଲୋକମାନେ ମଧ୍ୟ ଅନ୍ୟ ସବୁ ତ ଜିତି ଯାଉଛନ୍ତି, କିନ୍ତୁ କାମକୁ ଜିତି ପାରୁନାହାନ୍ତି । କାମ ନିକଟରେ ହାରି ଯାଆନ୍ତି । ରାବଣ ନିଜେ ନିଜକୁ ବହୁତ ବଡ଼ ମାନୁ ଥିଲା । କିନ୍ତୁ କାମ ଠାରୁ ତ ସେ ମଧ୍ୟ ହାରି ଯାଇଥିଲା । ଏଠାରେ ଭଗବାନ ଶ୍ରୀକୃଷ୍ଣ କାମଦେବଙ୍କୁ କହୁଛନ୍ତି, “ତେବେ ଠିକ ଅଛି ।”

ସେଥିପାଇଁ, ଏହି ପ୍ରସଙ୍ଗର ଏକ ବିଚିତ୍ର କଥା ହେଉଛି, ଏହିଥର ଭଗବାନ ଯେଉଁ ବେଣୁ-ନାଦ କରିବାକୁ ଯାଉଛନ୍ତି ତାକୁ କେବଳ ଗୋପୀମାନେ ହିଁ ଶୁଣିଲେ ଆଉ କେହି ନୁହେଁ । ଯଦ୍ୟପି ଭଗବାନ ପ୍ରଥମେ ଯେଉଁ ବେଣୁ ନାଦ କରିଥିଲେ ତ ତାକୁ ବୃନ୍ଦାବନର ସମସ୍ତ ଲୋକ ଶୁଣିଥିଲେ । ଦେଖନ୍ତୁ, ବରୁଣ ଦେବତାଙ୍କ ପ୍ରସଙ୍ଗ ପରେ ଭଗବାନ ନନ୍ଦ ଆଦି ସମସ୍ତ ଗୋପାଳମାନଙ୍କୁ ବ୍ରହ୍ମାନନ୍ଦର ଅନୁଭବ କରାଇ ଦେଇଥିଲେ। ଅର୍ଥାତ୍ ଗୋପାଳମାନଙ୍କ ସହିତ ତାଙ୍କର “ରାସ’ ହୋଇ ସାରିଛି । ସେମାନଙ୍କୁ ବ୍ରହ୍ମାନନ୍ଦର ଅନୁଭବ କରାଇ ଦେଇଥିଲେ, କିନ୍ତୁ ତାହା ଅନ୍ୟ ପ୍ରକାର ଥିଲା । ଏହା ହେଉଛି ଅନ୍ୟ ପ୍ରକାର । ଏ ଗୋପିମାନେ ତ ରତି ଚାହୁଁଥିଲେ । ସେମାନେ କେବଳ ବ୍ରହ୍ମାନନ୍ଦର ଅନୁଭୂତି ଚାହୁଁ ନ ଥିଲେ । ଏମାନେ ସବୁ ସେହି ଆନନ୍ଦରେ ରମିବାକୁ ଚାହୁଁଥିଲେ, ବୁଡ଼ି ଯିବାକୁ ଚାହୁଁଥିଲେ । ଭଗବାନ କହିଲେ, ତେବେ ଠିକ ଅଛି । ସେଥିପାଇଁ ମଧ୍ୟ ଏଥର ଯେତେବେଳେ ସେ ଭଗବାନ ମୁରଲୀ ବଜାଇଲେ ତ କେବଳ ଗୋପିମାନେ ଶୁଣିଲେ। ମୁଖ୍ୟତଃ ତାର କାରଣ କାମଦେବଙ୍କ ସହିତ ଭଗବାନଙ୍କର ହୋଇଥିବା ବାର୍ତ୍ତାଳାପ ହିଁ ଥିଲା, କାମଦେବ ପ୍ରତି ଆହ୍ୱାନ ଥିଲା । କାମଦେବ କହିଥିଲା ଯେ ଜିତିକରି ମୋତେ ଦେଖାନ୍ତୁ । ଏହି ରାସଲୀଳା ବାସ୍ତବରେ କାମଦେବଙ୍କୁ ଜିତିବାର ଲୀଳା, କାମ ବିଜୟର ଲୀଳା ଅଟେ ।

ସବୁଠାରୁ ବଡ଼ କଥା ହେଉଛି, ଯାହାକୁ ଶ୍ରୀଧର ସ୍ୱାମୀ ନିଜର ଭାଷ୍ୟରେ ପ୍ରଥମରୁ ହିଁ କହିଛନ୍ତି, ତାହା ହେଉଛି- ଏହା ହେଉଛି ରାସଲୀଳା, କାମଲୀଳା ନୁହେଁ, “କାମ ବିଜୟର ଲୀଳା’ ଅଟେ । କାରଣ ଏଠାରେ ଆମେ ଦେଖିବା ଯେ ଭଗବାନ କେବଳ ଠିଆ ହୋଇ (ସ୍ଥିର) ରହିଛନ୍ତି । ଭଗବାନଙ୍କ ମନରେ କଣ କେବେ ବିକାର ଆସେ କି ? ତାର କୌଣସି ପ୍ରଶ୍ନ ହିଁ ଉଠୁ ନାହିଁ । ଅର୍ଥାତ ପରଂବ୍ରହ୍ମ ତ ନିଷ୍କାମ ଅଟନ୍ତି । ପ୍ରଥମେ

ଏହି କଥାକୁ ଭଲ ଭାବରେ ବୁଝିନେବା ଉଚିତ୍ । ପ୍ରାୟତଃ ଯେତେବେଳେ ଏହିଭଳି ବିବେଚନ କରାଯାଏ, ତ କାହା କାହାକୁ ଲାଗେ ଯେ ଏଠାରେ ବଡ଼ ଗମ୍ଭୀର ବିବେଚନ ଚାଲୁଛି, କିନ୍ତୁ ଦେଖନ୍ତୁ ଯଦି ଭକ୍ତିର ଗମ୍ଭୀରତା ଚିହ୍ନିପାରିବେ ନାହିଁ ତ କେବଳ ଭାବୁକ ଖାଲି ହୋଇ ରହିଯିବେ ଏବଂ ସେତେବେଳେ ମନରେ ନାନା ଶଙ୍କା ଆସିବ । ଏହାର ବିପରୀତ, ଯଦି ଏହାର ରହସ୍ୟକୁ ବୁଝିପାରିବ ତେବେ ତାର ରସ ଆସ୍ୱାଦନ ମଧ୍ୟ କରିପାରିବ ଏବଂ ମନରେ କୌଣସି ଶଙ୍କା ମଧ୍ୟ ଆସିବ ନାହିଁ । ତେବେ ଏହା ହେଉଛି ଅଧ୍ୟାତ୍ମଜ୍ଞାନ ଦୃଷ୍ଟିରେ ଏହି ରାସ ଲୀଳାରେ ବିବେଚନ ।

ସବୁପ୍ରକାର ନିଜର ମନକୁ ଶୁଦ୍ଧ କରି ଦେବାପରେ ବ୍ରହ୍ମାନନ୍ଦରେ ବୁଡ଼ିଯିବା ଉଚିତ । ସମସ୍ତ ରସ ସେଠାରେ ଏକାଠି ହୋଇଯାଇଥାନ୍ତି, ଏକତ୍ରିତ ହୋଇଯାଇଥାଆନ୍ତି । ପୁଣି ଏକ ପରମାତ୍ମା ଅଛନ୍ତି ଏବଂ ସେହି ସମସ୍ତ ବୃତ୍ତି ସହିତ ସେ ଖେଳୁଛି, କିନ୍ତୁ ପୁଣି ମଧ୍ୟ ବ୍ରହ୍ମାନନ୍ଦ ଯେମିତିକୁ ସେମିତି (ଅପରିବର୍ତ୍ତିତ) ରହିଛି । ଏଥିରେ ବୃତ୍ତିମାନଙ୍କୁ ଶାନ୍ତ କରିବାର ଆବଶ୍ୟକତା ନାହିଁ । ଏହା ହିଁ ହେଉଛି ଜଣେ ଯୋଗୀ ଏବଂ ପରମ ଭକ୍ତ ମଧ୍ୟରେ ଅନ୍ତର – ଏହି ରାସଲୀଳାରେ । ଯୋଗୀ କଣ କରନ୍ତି ? ସେ ନିଜର ସମସ୍ତ ବୃତ୍ତିକୁ ଶାନ୍ତ କରାଇ ଦେଇଥାଆନ୍ତି । କିନ୍ତୁ ଏହି ରାସ ହେଉଛି ଏପରି ଯେ ଏଥିରେ ଅସଂଖ୍ୟ ବୃତ୍ତିମାନଙ୍କ ସହିତ ଥାଇ ମଧ୍ୟ ଏଠାରେ ରାସ ଅଛି, ରସ ଅଛି । ଜଣେ ଜଣେ ଗୋପିଙ୍କ ସହିତ ଜଣେ ଜଣେ କୃଷ୍ଣ ଅଛନ୍ତି । ପୁଣି ଦୁଇ ଦୁଇ ଜଣ ଗୋପିମାନଙ୍କ ଭିତରେ ଜଣେ ଜଣେ କୃଷ୍ଣ ଅଛନ୍ତି । ଭିନ୍ନ ଭିନ୍ନ ପ୍ରକାର ଖେଳ ହେଉଛି । ଏପରି ଦେଖିଲେ, ତ ପ୍ରତ୍ୟେକ ବୃତ୍ତି ସହିତ ଆମେ ଭଗବାନଙ୍କୁ ଦେଖିପାରିବା । ଗୋଟିଏ ବୃତ୍ତି ଗଲା ତ ଆଉ ଗୋଟିଏ ବୃତ୍ତି ଆସୁଛି । ତା ମଝିରେ ଅର୍ଥାତ ଦୁଇ ବୃତ୍ତି ଆସୁଛି । ତା ମଝିରେ ଅର୍ଥାତ ଦୁଇ ବୃତ୍ତି ମଧ୍ୟରେ ମଧ୍ୟ ପରମାତ୍ମା ଅଛନ୍ତି । ପୁଣି ଏହି ଖେଳ ହୋଇଚାଲିଛି, କେହି ନିଜର ଚକ୍ଷୁକୁ ବନ୍ଦ କରି ଦେଖୁ, ତ ରାସଲୀଳାର ଆନନ୍ଦ ତାକୁ ଏହିଠାରେ ହିଁ ମିଳିବାକୁ ଲାଗିବ । ଏହିଭଳି ଭାବରେ ତ ଏଠାରେ କାଲୀଳାର କୌଣସି ପ୍ରଶ୍ନ ହିଁ ଉଠେ ନାହିଁ । ଆମେ ପ୍ରଥମରୁ ଦେଖିଛନ୍ତି ଯେ ଭଗବାନଙ୍କ ନାମ ସ୍ମରଣ ମାତ୍ରକେ ହିଁ କାମର ନାଶ ହୋଇଯାଏ । ତେବେ ସେହି ଭଗବାନଙ୍କ ଠାରେ କାମନା କାହିଁକି ଆସିବ ? ଏହା ହେଉଛି ଗୋଟିଏ କଥା ।

ଦ୍ୱିତୀୟ କଥା – ସାମାନ୍ୟ ବିଚାର କରି ଦେଖିବା ଉଚିତ୍ ଯେ ଏହି କଥାକୁ କିଏ ଶୁଣାଉଛି ? କାହାକୁ ଶୁଣାଉଛନ୍ତି ? ଏହା ଅତି ମହତ୍ତ୍ୱପୂର୍ଣ୍ଣ କଥା । ଶୁକଦେବ ଜୀ, ଯେ ବିରକ୍ତମାନଙ୍କର (ବୈରାଗ୍ୟ) ଶିରୋମଣି ଅଟନ୍ତି, ବ୍ରହ୍ମଭାବରେ ବୁଡ଼ି ରହିଛନ୍ତି, ସାକ୍ଷାତ୍

ବ୍ରହ୍ମସ୍ୱରୂପ ଅଟନ୍ତି, ସେ ଶୁଣାଉଛନ୍ତି । ସେ ଭଲା କାମନାର, ଖେଳ-କୁଦର କଥା କ'ଣ ଶୁଣାଇବେ ? ତାଙ୍କୁ ସେଥିରେ କଣ କିଛି ରସ ମିଳିପାରିବ ? ଆଛା, ପୁଣି ଶୁଣାଉଛନ୍ତି କାହାକୁ ? ରାଜା ପରୀକ୍ଷିତଙ୍କୁ, ଯେ କି ମରିବାକୁ ଯାଉଛନ୍ତି । ଏହା ବିଚାର କରିବା ଉଚିତ୍ ଯେ ଯିଏ ମରଣାସନ୍ନ, ଯେ ସମସ୍ତ ଭୋଗକୁ ଭୋଗ କରିସାରିଛନ୍ତି ତାଙ୍କୁ କଣ କେହି କାମଲୀଳା ଶୁଣାଇବେ ? ବ୍ୟାକରଣ ଦୃଷ୍ଟିରେ, ଭାଗବତର ଭାଷା ସଂସ୍କୃତ ଭାଷା ହେଉନା କାହିଁକି, କିନ୍ତୁ ବାସ୍ତବରେ ଭାଗବତର ଭାଷା ହେଉଛି ସମାଧିର ଭାଷା ଅଟେ। ଆମ ଦୃଷ୍ଟିରେ ତାହା ଲୌକିକ ଭାଷା ଭଳି ଲାଗୁଥାଉ ନା କାହିଁକି, ଶବ୍ଦ ଆମ ଶବ୍ଦ କୋଷର ହିଁ ହୋଇଥାଉ ନା କାହିଁକି କିନ୍ତୁ ତାର ଅର୍ଥ ସମାଧିଗମ୍ୟ ଅଟେ, ସମାଧିରେ ବୁଝି ବୁଝି ହୋଇପାରୁଥିବା ଭାଷା । ଯେଉଁମାନେ ନିଜର ମନକୁ ଶୁଦ୍ଧ କରିନାହାନ୍ତି, ସେମାନେ ଏହି ଭାଷାକୁ ବୁଝିପାରିବେ ନାହିଁ । ଏହାକୁ ମହର୍ଷି ଶୁକଦେବ ଜୀ ଶୁଣାଉଛନ୍ତି ଏବଂ ତାହା ମଧ୍ୟ ମୁମୂର୍ଷୁ (ମରଣାସନ୍ନ) ପରୀକ୍ଷିତଙ୍କୁ ଶୁଣାଉଛନ୍ତିନ୍ତ ଯାହାର ଅନ୍ତିମ ସମୟ ତା ସମ୍ମୁଖରେ ଠିଆ ହୋଇଛି । ତାକୁ କ'ଣ କାମର ଚର୍ଚ୍ଚା ଭଲ ଲାଗିପାରେ ? ପରୀକ୍ଷିତ ବାରମ୍ବାର କହୁଛନ୍ତି - ମୋତେ ଭଗବାନଙ୍କର ଯଶଗାନ ଶୁଣାନ୍ତୁ । ଶୁକଦେବ ଜୀ ଭଲା ତାଙ୍କୁ କି କାମ ଚର୍ଚ୍ଚା ଶୁଣାଇବେ ?

ଠିକ ଅଛି, ତେବେ ଏହି ଲୀଳାକୁ ଆଉ ଏକ ଦୃଷ୍ଟିରେ ଦେଖିପାରିବା । ପୂର୍ବ ଅବତାରରେ ଭଗବାନ ଶ୍ରୁତିମାନଙ୍କୁ, ଋଷିମାନଙ୍କୁ ଏବଂ ଅନ୍ୟ ସ୍ତ୍ରୀ ଲୋକମାନଙ୍କୁ ବଚନ ଦେଇଥିଲେ ଯେ ମୁଁ ତୁମ ସହିତ ରାସ କରିବି । ହେମନ୍ତ ଋତୁରେ ଭଗବାନ ବ୍ରତଧାରୀ ଗୋପୀମାନଙ୍କୁ ତଥା କୁମାରୀମାନଙ୍କୁ ମଧ୍ୟ କହିଥିଲେ ଯେ ମୁଁ ତୁମ୍ଭମାନଙ୍କର ପ୍ରେମକୁ ସ୍ୱୀକାର କରିବି । ଏବେ କୁହନ୍ତୁ, ଏ ସମସ୍ତଙ୍କୁ ଯେ କଥା ଦେଇଥିଲେ, ତାକୁ ପୂର୍ଣ୍ଣ କରିବା ମଧ୍ୟ ଈଶ୍ୱରଙ୍କର ଧର୍ମ କି ନୁହେଁ ? ସର୍ବଶେଷରେ ଜୀବ ଭଗବାନଙ୍କ ସହିତ ମିଶିବାକୁ ଚାହୁଁଛି ତ ତେବେ ଏହା କଣ ଭଗବାନଙ୍କର କର୍ତ୍ତବ୍ୟ ନୁହେଁ ଯେ ସେ ଜୀବର ଇଚ୍ଛା ପୂର୍ଣ୍ଣ କରିବେ ?

## ରାସଲୀଳା

ଏତିକି ବୁଝି ବିଚାରି ଏବେ ଆମେ ରାସପଞ୍ଚାଧ୍ୟାୟୀରେ ପ୍ରବେଶ କରିବା ଯାହାକୁ ଦଶମ ସ୍କନ୍ଧର ପଞ୍ଚପ୍ରାଣ କୁହାଯାଇଥାଏ । କେତେ ଲୋକ କହନ୍ତି – ଯଦି ଏହି ପାଞ୍ଚୋଟି ଅଧ୍ୟାୟକୁ ବାହାର କରି ଦିଆଯାଏ ତେବେ ଭାଗବତ ସୁନ୍ଦର ହୋଇଯିବ । ଏହାର ଅର୍ଥ ହେଉଛି କାହାର ଶରୀରରୁ ପ୍ରାଣ ଯଦି ବାହାର କରି ଦେବା, ତେବେ ସେ ଶରୀର ବହୁତ ସୁନ୍ଦର ହୋଇଯିବ । ଏହି ପାଞ୍ଚ ଅଧ୍ୟାୟ ତ ଭାଗବତର ପାଞ୍ଚ ପ୍ରାଣ ଅଟେ, ଆନନ୍ଦକୁ ହିଁ ଯଦି ବାହାର କରି ଦିଆଯାଏ ତ ପୁଣି ଜୀବନରେ ଶେଷ ଆଉ କଣ ଶେଷ ରହିବ ? ସାମାନ୍ୟ ବିଚାର କରନ୍ତୁ ?

**କୋ ହ୍ୟେବାନ୍ୟାତ୍ କଃ ପ୍ରାଣ୍ୟାତ୍**

**ଯଦେଷ ଆକାଶ ଆନନ୍ଦୋ ନ ସ୍ୟାତ୍ ॥ (ତୈ.ଉପ.୨.୭.୨)**

ଯଦି ଆତ୍ମା ଆନନ୍ଦସ୍ୱରୂପ ନୁହେଁ, ତେବେ ବଞ୍ଚିବାର ଇଚ୍ଛା ହିଁ କାହାକୁ ହେବ ? ତେବେ କିଏ ବଞ୍ଚିବାକୁ ଇଚ୍ଛା କରିବ ? ଏହି ସଂସାରରେ ଏତେ ଦୁଃଖ ହେବା ପରେ ମଧ୍ୟ ମନୁଷ୍ୟ ମରିବାର ଇଚ୍ଛା କରୁନାହିଁ, କାରଣ ତାକୁ ଲାଗୁଛି କିଛି ଆନନ୍ଦ ମିଳିବାର ଅଛି ।

**ଭଗବାନପି ତା ରାତ୍ରୀଃ ଶରଦୋତ୍ଫୁଲ୍ଲମଲ୍ଲିକାଃ ।**

**ବୀକ୍ଷ ରନ୍ତୁଂ ମନଶ୍ଚକ୍ରେ ଯୋଗମାୟାମୁପାଶ୍ରିତଃ ॥ (୧୦.୨୯.୧)**

ଭଗବାନ କୁମାରୀମାନଙ୍କୁ ଅଥବା ଗୋପିମାନଙ୍କୁ ଯେଉଁ ରାତ୍ରିର ସଙ୍କେତ କରିଥିଲେ, ତାହା ମାନି ନିଅନ୍ତୁ ଶରତ ଋତୁର ସେହି ରାତ୍ରିରେ ଏକୀଭୂତ ହୋଇଯାଇଥିଲା । ତାକୁ ଦେଖି ଭଗବାନ ମଧ୍ୟ ନିଶ୍ଚୟ କଲେ ଯେ ଏବେ ସମୟ ଆସିଗଲା । ନିଜର ଯୋଗ ମାୟାର ଆଶ୍ରୟ ନେଇ ଏବେ ମୁଁ ରାସଲୀଳା କରିପାରିବି, କାରଣ ଏବେ ଏଠାରେ ସମସ୍ତଙ୍କର ଅନ୍ତଃକରଣ ଶୁଦ୍ଧ ହୋଇଗଲାଣି । ବସ୍ତ୍ର ହରଣ ଆଦି ଅନେକ ଲୀଳାମାନଙ୍କ ଭିତରୁ ଦ୍ୱାରା ଭଗବାନ ପ୍ରଥମରୁ ହିଁ ସମସ୍ତଙ୍କୁ ପ୍ରସ୍ତୁତ କରିଛନ୍ତି । ପ୍ରସ୍ତୁତ କରିବା ପରେ, ଏବେ ସେମାନଙ୍କୁ ବ୍ରହ୍ମାନନ୍ଦର ଅନୁଭବ କରାଇବା ନିମନ୍ତେ ସେ ଉଦ୍ୟତ (ପ୍ରସ୍ତୁତ) ହେଉଛନ୍ତି ।

**ତଦୋଡୁରାଜଃ କକୁଭଃ କରୈର୍ମୁଖଂ**
**ପ୍ରାଚ୍ୟା ବିଲିମ୍ପନ୍ନରୁଣେନ ଶନ୍ତମୈଃ ।**
**ସ ଚର୍ଷଣୀନାମୁଦଗାଚ୍ଛଚୋ ମୃଜନ୍**
**ପ୍ରିୟଃ ପ୍ରିୟାୟା ଇବ ଦୀର୍ଘଦର୍ଶନଃ ॥ (୧୦.୨୯.୨)**
**ବନଂ ଚ ତତ୍କୋମଲଗୋଭିରଞ୍ଜିତଂ**
**ଜଗୌ କଲଂ ବାମଦୃଶାଂ ମନୋହରମ୍ ॥ (୧୦.୨୯.୩)**

ଭଗବାନ ଯମୁନା ଜୀଙ୍କର କୂଳରେ ଠିଆ ହୋଇଛନ୍ତି । ସେହି ପୂର୍ଣ୍ଣିମାର ରାତ୍ରିର ସୌନ୍ଦର୍ଯ୍ୟକୁ ଦେଖି ତାଙ୍କର ମନ ବହୁତ ଆନନ୍ଦିତ ହେଲା । ଭଗବାନ ନିଜର ବଂଶୀକୁ ନେଇ ନିଜ ମୁଖରେ ଲଗାଇଲେ ଏବଂ ସେ ଯେମିତି ସେଥିରେ ନିଜର ଶ୍ୱାସ ଦ୍ୱାରା ଫୁଙ୍କିବାକୁ ଲାଗିଲେ ତ ସେଥିରୁ ଅତ୍ୟନ୍ତ ମଧୁର ସ୍ୱର ବାହାରିବାକୁ ଲାଗିଲା ।

**ନିଶମ୍ୟ ଗୀତଂ ତଦନଙ୍ଗବର୍ଧନଂ**
**ବ୍ରଜସ୍ତ୍ରିୟଃ କୃଷ୍ଣଗୃହୀତମାନସାଃ । (୧୦.୨୯.୪)**

ସେହି ସ୍ୱର ଏପରି ଥିଲା ଯେ ମନରେ କାମନାକୁ ଉଦ୍‌ଦୀପ୍ତ କରିଦେଲା । ଦେଖନ୍ତୁ ତାକୁ କେବଳ ଗୋପିମାନେ ହିଁ ଶୁଣିଲେ । ଏପରି କାହିଁକି ? କାରଣ କାମଦେବଙ୍କ ସହିତ ଭଗବାନଙ୍କର ଯେଉଁ ସର୍ତ୍ତ ଲାଗିଥିଲା । ଭଗବାନଙ୍କର ବୟସ ସେତେବେଳେ କେବଳ ସାତବର୍ଷର ଥିଲା, ଏହି କଥା ଧ୍ୟାନରେ ରଖିବେ । ଭଗବାନ ଯେତେବେଳେ ସେହି ସ୍ୱର ଆରମ୍ଭ କଲେ, ସେତେବେଳେ ଗୋପିମାନେ ନିଜ-ନିଜ ଘରେ କାର୍ଯ୍ୟ ଆରମ୍ଭ କରୁଥିଲେ, ସେମାନେ ସବୁ କିଛି ଯେମିତିକୁ ସେମିତି ଛାଡ଼ି ଦେଲେ । କେହି ଗାଇକୁ ଦୋହନ କରୁଥିଲେ, ତାକୁ ସେଠାରେ ଛାଡ଼ି ଚାଲି ଆସିଲେ । କେହି ନିଜର ଶିଶୁମାନଙ୍କୁ ଶୁଆଉଥିଲେ, କେହି ସ୍ୱାମୀଙ୍କର ସେବା କରୁଥିଲେ, କେହି ସ୍ୱାମୀଙ୍କର ସେବା କରୁଥିଲେ, କେହି ସ୍ୱାମୀଙ୍କୁ ଭୋଜନ କରାଉଥିଲେ, କେହି ରାତ୍ରିକାଳରେ ଗୋବରରେ ଅଗଣାକୁ ଲିପୁଥିଲେ ଯାହାଦ୍ୱାରା ସକାଳୁ ସବୁ କାର୍ଯ୍ୟ ଶିଘ୍ର ସମାପ୍ତ ହୋଇପାରିବ, ଯେ ଯେଉଁ ଅବସ୍ଥାରେ ଥିଲେ, ସେହି ଅବସ୍ଥାରେ ହିଁ ଦୌଡ଼ିବାକୁ ଲାଗିଲେ । ସେମାନେ ବୁଝିପାରୁ ନ ଥିଲେ ଯେ ସେମାନଙ୍କର ଏସବୁ କ'ଣ ହେଉଛି । ଯେପରି ବଂଶୀର ସ୍ୱର ଶୁଣି ସେମାନେ ସମସ୍ତେ ଉନ୍ମତ୍ତ ହୋଇଯାଇଥିଲେ । ସେମାନେ ଯାଉଛନ୍ତି ସେ କଥା ମଧ୍ୟ ସେମାନଙ୍କୁ ଜଣାନଥିଲା ।

ସତ କଥା ହେଉଛି ଯେ **"କୃଷ୍ଣଗୃହୀତ ମାନସାଃ"**, ସେମାନଙ୍କୁ ଏ କଥା ମଧ୍ୟ ଜ୍ଞାନ ନାହିଁ ଯେ, ଆମେ ହାତରୁ କାମ ସବୁ ଛାଡ଼ି ଦେଇ ଚାଲିଯାଉଛ, ଯେପରିକି ସେମାନଙ୍କୁ କିଏ ଟାଣି ନେଉଛି । କେହି କେହି ଗୋପାଳମାନେ ନିଜ ସ୍ତ୍ରୀମାନଙ୍କୁ ବଳପୂର୍ବକ ଅଟକାଇ ଦେଲେ, ଯିବାକୁ ଦେଲେ ନାହିଁ, ସତେ ଯେପରି ତାର କୌଣସି ପୂର୍ବ ପାପର ଉଦୟ ହୋଇଗଲା । ତେବେ ସେହି ଗୋପିମାନଙ୍କର ମନରେ ଏପରି ବିରହ ବେଦନା ହେଲା ଯେ ସେହି ଅତିଶୟ ବିରହାଗ୍ନିରେ ସେମାନଙ୍କର ସବୁ ପାପ ଜଳି ଭସ୍ମ ହୋଇଗଲା । ସେମାନେ ଶ୍ରୀକୃଷ୍ଣଙ୍କର ଧ୍ୟାନ କରୁ କରୁ ନିଜର ଦେହକୁ ତ୍ୟାଗ କରିଦେଲେ ଏବଂ ଦିବ୍ୟ ଦେହ ଧାରଣ କରି ଭଗବାନଙ୍କ ନିକଟରେ ପହଞ୍ଚିଗଲେ । ଗୋପିର ଅର୍ଥ ଗୋ-ଇନ୍ଦ୍ରିୟମାନଙ୍କ ଦ୍ୱାରା ଯେ ଭଗବଦ୍ ରସକୁ ପାନ କରିପାରେ, ସେ ଗୋପି । ସେ ସମସ୍ତ ଗୋପି ଦୌଡ଼ି ଦୌଡ଼ି ଭଗବାନଙ୍କ ନିକଟରେ ଓ ପହଞ୍ଚି ଯାଉଛନ୍ତି ।

ଏବେ ଗୋପିମାନଙ୍କ ମଧ୍ୟରେ ଭିନ୍ନ ଭିନ୍ନ ପ୍ରକାର ସ୍ତ୍ରୀ ଥିଲେ । କେହି ସିଦ୍ଧ ଥିଲେ, କେହି ସାଧକ ଥିଲେ, କେହି ଅବୋଧ ଥିଲେ, କେହି ଜ୍ଞାନୀ ମଧ୍ୟ ଥିଲେ, ସବୁ ଶ୍ରେଣୀର ଗୋପି ଥିଲେ । କିନ୍ତୁ ସେମାନଙ୍କର ପ୍ରେମ ଅତ୍ୟନ୍ତ ଅଦ୍‌ଭୁତ ଥିଲା ।

ରାଜା ପରୀକ୍ଷିତ ପଚାରୁଛନ୍ତି, "ଭଗବାନ ସେମାନେ ସମସ୍ତେ ଶ୍ରୀକୃଷ୍ଣଙ୍କୁ ପ୍ରେମ କରୁଥିଲେ, ପରନ୍ତୁ ତାଙ୍କୁ ବ୍ରହ୍ମ ଭାବନାରେ ତ ପ୍ରେମ କରୁ ନ ଥିଲେ । ସେମାନେ ତ ତାଙ୍କୁ ଏକ ପୁରୁଷ ବୋଲି ଭାବି ପ୍ରେମ କରୁଥିଲେ । ପୁଣି ସେମାନଙ୍କୁ ମୋକ୍ଷ କିପରି ମିଳିଲା ? ଶୁକଦେବ ଜୀ କହୁଛନ୍ତି, "ଆରେ ପରୀକ୍ଷିତ ! ପ୍ରଥମରୁ ହିଁ ମୁଁ ତୁମକୁ କିଛି କହିଥିଲି, **"ଉକ୍ତଂ ପୁରସ୍ତାଦେତତ୍ତେ"** ମୋତେ ଲାଗୁଛି ତୁମେ ତାକୁ ଭୁଲିଗଲଣି ।'' ପ୍ରକୃତରେ ମଝିରେ ପରୀକ୍ଷିତଙ୍କର ପ୍ରଶ୍ନ ପଚାରିବା ଶୁକଦେବଜୀଙ୍କୁ ଭଲ ଲାଗିଲା ନାହିଁ। ରାସଲୀଳାର ମଝିରେ ପ୍ରଶ୍ନ କରୁଛି ? କହୁଛନ୍ତି -

**ଉକ୍ତଂ ପୁରସ୍ତାଦେତତ୍ତେ ଚୈଦ୍ୟଃ ସିଦ୍ଧିଂ ଯଥା ଗତଃ ।**

**ଦ୍ୱିଷନ୍ନପି ହୃଷୀକେଶଂ କିମୁତାଧୋକ୍ଷଜପ୍ରିୟାଃ ॥ (୧୦.୨୯.୧୩)**

ମୁଁ ତୁମକୁ ପ୍ରଥମରୁ ହିଁ କହିଥିଲି ଯେ କେହି ଯଦି ଦ୍ୱେଷ ଭାବରେ ମଧ୍ୟ ଭଗବାନଙ୍କୁ ସ୍ମରଣ କରେ ତେବେ ତାର ମଧ୍ୟ ମୁକ୍ତି ହୋଇଯାଏ । ଏଠାରେ ତ ଭଗବାନଙ୍କୁ ପ୍ରେମ କରୁଛନ୍ତି । ପୁଣି ଯିଏ ଯେକୌଣସି ପ୍ରକାରରେ କରୁନା କାହିଁକି, ସେଥିରେ ତୁମର ଚିନ୍ତା କାହିଁକି ହେଉଛି, ଶଙ୍କା କାହିଁକି ହେଉଛି ? ଦ୍ୱିତୀୟ କଥା ହେଉଛି ଯେ ପ୍ରେମ

ଯେତେବେଳେ ନିଷ୍କାମ ଭାବରେ କରାଯାଏ, ତାହା ଯେ କୌଣସି ଭାବରେ ହେଉ ନା କାହିଁକି, ଜାର(ବେଶ୍ୟା) ଭାବରେ ହେଲେ ମଧ୍ୟ, ପରନ୍ତୁ ଯେଉଁ ପ୍ରେମ ନିଷ୍କାମରେ କରାଯାଏ, ସେ ସ୍ୱୟଂ ନିଷ୍କାମ ହୋଇଯାଏ । ନିଷ୍କାମରେ କାମନା ଉତ୍ପନ୍ନ ହୁଏ ନାହିଁ । ନଦୀ ଯେତେବେଳେ ସମୁଦ୍ରରେ ମିଶିଯାଏ, ସେତେବେଳେ ସେ ମଧ୍ୟ ସମୁଦ୍ର ହୋଇଯାଏ। ସମୁଦ୍ର ନଦୀ ହୁଏ ନାହିଁ । କାମନାକୁ ନେଇ ଯଦି ଆମେ ପରମାତ୍ମାଙ୍କ ପାଖକୁ ଯାଉ, ତେବେ ଆମେ ସ୍ୱୟଂ ନିଷ୍କାମ ହୋଇଯିବୁ, ପରମାତ୍ମା କାମନାଯୁକ୍ତ ହୋଇଯିବେ ନାହିଁ। ଯେ ପରମାତ୍ମାଙ୍କର ସ୍ୱଭାବକୁ, ସ୍ୱରୂପକୁ ଜାଣି ନାହାନ୍ତି, ତାଙ୍କ ମନରେ ଏଭଳି ନିରର୍ଥକ ଶଙ୍କାମାନ ଆସିଥାଏ ।

ଏହି ସ୍ତ୍ରୀଲୋକମାନେ ସେଠାରେ ଭଗବାନଙ୍କ ନିକଟରେ ପହଞ୍ଚିଲେ । ଦେଖନ୍ତୁ, ଭଗବାନ ମଧ୍ୟ କିଭଳି ଅଟନ୍ତି। ସିଧା-ସିଧା ସେମାନଙ୍କୁ ସ୍ୱୀକାର କରୁନାହାନ୍ତି । ଭଗବାନ ସେମାନଙ୍କୁ ଧର୍ମ ସମ୍ବନ୍ଧୀୟ ବିସ୍ତାର ପୂର୍ବକ ଉପଦେଶ ଦେଉଛନ୍ତି । କହୁଛନ୍ତି - "ସ୍ୱାଗତଂ ବୋ ମହାଭାଗାଃ' ଆପଣମାନଙ୍କୁ ସ୍ୱାଗତ । ଆମେ ଆପଣମାନଙ୍କ ନିମନ୍ତେ କଣ ପ୍ରିୟ କାର୍ଯ୍ୟ କରିବୁ ? ଆପଣମାନଙ୍କର କଣ ସେବା କରିବା ? ରାତ୍ରି ସମୟ, ଏହି ଘୋର ଜଙ୍ଗଲରେ ଆପଣମାନେ ସମସ୍ତେ ଏଠାକୁ ଆସିଛନ୍ତି ତାର କାରଣ କ'ଣ ? କୁହନ୍ତୁ ତ ? ଘର ଛାଡ଼ି ଆପଣମାନେ ସମସ୍ତେ ପଳାଇ ଆସିଛ । ଆପଣମାନଙ୍କର ପିଲାମାନେ ଆପଣମାନଙ୍କୁ ଖୋଜୁଥିବେ, ଆପଣମାନଙ୍କର ସ୍ୱାମୀମାନେ ଆପଣମାନଙ୍କୁ ମନେ ପକାଉଥିବେ। ମାତା-ପିତା ମଧ୍ୟ ଆପଣମାନଙ୍କୁ ମନେ ପକାଉଥିବେ । ମାତା-ପିତା ମଧ୍ୟ ଆପଣମାନଙ୍କୁ ମନେ ପକାଉଥିବେ । ସେ ସମସ୍ତଙ୍କୁ ଛାଡ଼ି ଏ ସମୟରେ ଏଠାକୁ ଆସିବା କଣ କିଛି ଭଲ କଥା ? ଭଲ ଘରର ସ୍ତ୍ରୀ ଲୋକମାନଙ୍କୁ ଏହା କଣ ଶୋଭା ପାଉଛି ? ଏଥିରେ କଣ କିଛି ଧର୍ମ ଅଛି ? ଏହା କ'ଣ ପତିବ୍ରତାମାନଙ୍କର ଧର୍ମ ?

**ଭର୍ତ୍ତୁଃ ଶୁଶ୍ରୂଷଣଂ ସ୍ତ୍ରୀଣାଂ ପରୋ ଧର୍ମୋ ହ୍ୟମାୟୟା । (୧୦.୨୯.୨୪)**

ଜଣେ ସ୍ତ୍ରୀ ପାଇଁ ତ ନିଜ ପତିର ସେବା କରିବା ହିଁ ଧର୍ମ ଅଟେ । ସେ ପତି ଦୁଃଶୀଳ ହେଉ, ବୃଦ୍ଧ ହେଉ, ଜଡ଼ ହେଉ, ରୋଗୀ ହେଉ ଅଥବା ଗରୀବ ହେଉ, ସେ ଯେପରି ହେଉନା କାହିଁକି, କିନ୍ତୁ ପତିର ସେବା କରିବା ପତ୍ନୀର ଧର୍ମ ଅଟେ । ତାହା ସବୁ ଛାଡ଼ି ଦେଇ ଆପଣମାନେ ଏଠାକୁ ଚାଲି ଆସିଲେ ? ଏହା ଭଲ କଲ ନାହିଁ । ପୁଣି ଯଦି ଆପଣମାନେ କୁହନ୍ତି ଯେ ନାହିଁ - ନାହିଁ ଆମେ ପ୍ରେମ କାରଣରୁ ଆସିଛୁ, ତ ଦେଖନ୍ତୁ, ଦୂରରେ ରହିଲେ ଅଧିକା ପ୍ରେମ ହୋଇପାରିବ । ସେଥିପାଇଁ ଆପଣମାନେ ଏଠାକୁ

ଚାଲିଯାଆନ୍ତୁ । ପ୍ରଥମତଃ ଧର୍ମର ସ୍ମରଣ କରି ଯାଅ ଏବଂ ଯଦି ଦର୍ଶନ କରିବାକୁ ଆସିଛନ୍ତି, ତ ଆପଣମାନେ ମୋର ଦର୍ଶନ ମଧ୍ୟ କରିସାରିଲେଣି । ମୋ ଠାରୁ ଶୁଣିବାକୁ ଥିଲା ତ ଶୁଣି ମଧ୍ୟ ନେଲେଣି । ଏବେ ଆପଣମାନେ ଫେରି ଯାଆନ୍ତୁ । ଏଭଳି ଅପ୍ରିୟ ବଚନ ଶୁଣି ଗୋପିମାନେ ପୁରାପୁରି ଶୋକାକୁଳ ହୋଇଗଲେ । ସେମାନେ ତଳକୁ ଅନାଇ ନିଜ ଆଙ୍ଗୁଠିରେ ପୃଥିବୀ ଉପରେ ଲେଖିବାକୁ ଲାଗିଲେ । ସେମାନଙ୍କର ଆଖିରୁ ଅଶ୍ରୁ ବହିବାକୁ ଲାଗିଲା, କଣ୍ଠ ଗଦ୍ ଗଦ୍ ହୋଇଗଲା ।

**ମୈବଂ ବିଭୋର୍ହତି ଭବାନ୍ ଗଦିତୁଂ ନୃଶଂସଂ**
**ସନ୍ତ୍ୟଜ୍ୟ ସର୍ବବିଷୟାଂସ୍ତବ ପାଦମୂଳମ୍ ।**
**ଭକ୍ତା ଭଜସ୍ୱ ଦୁଖବଗ୍ରହ ମା ତ୍ୟଜାସ୍ମାନ୍**
**ଦେବୋ ଯଥାଽଽଦିପୁରୁଷୋ ଭଜତେ ମୁମୁକ୍ଷୁନ୍ ॥ (୧୦.୨୯.୩୧)**

ସେମାନେ କହୁଛନ୍ତି – ଭଗବାନ ଆପଣଙ୍କର ଏପରି କଠୋର ବଚନ ଆମ୍ଭମାନଙ୍କୁ କହିବା ଉଚିତ୍ ନୁହେଁ, ଆପଣ ବଡ଼ ନିର୍ଦ୍ଦୟ ଅଟନ୍ତି । ସମସ୍ତ ବିଷୟକୁ, ସମସ୍ତ ବନ୍ଧୁ-ସଂବନ୍ଧୀମାନଙ୍କୁ, ଅର୍ଥ, ଧର୍ମ, କାମ, ମୋକ୍ଷ ସବୁକୁ ଛାଡ଼ିଦେଇ ଆମେ ଆପଣଙ୍କ ଚରଣ ତଳେ ଶରଣ ନେଇଛୁ । ଅନ୍ୟ ପାଖରେ ଆପଣ ଉପଦେଶ କରୁଛନ୍ତି –

**ସର୍ବଧର୍ମାନପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ । (ଭ.ଗୀତା-୧୮.୬୬)**

ସବୁ ଧର୍ମକୁ ତ୍ୟାଗ କରି ମୋର ଶରଣରେ ଆସ, ଏବଂ ଯେଉଁମାନେ ଶରଣରେ ଆସୁଛନ୍ତି, ସେମାନଙ୍କୁ ଆପଣ କହୁଛନ୍ତି ନିଜ ଘରକୁ ଯାଅ । "**ଦେବୋ ଯଥାଽଽଦିପୁରୁଷୋ ଭଜତେ ମୁମୁକ୍ଷୂନ୍**" (୧୦.୨୯.୩୨) ଆଦି ପୁରୁଷ ଭଗବାନ ମଧ୍ୟ ମୁମୁକ୍ଷୁମାନଙ୍କୁ ଭଜନ କରନ୍ତି, ସେମାନଙ୍କର ଇଛାକୁ ପୂର୍ଣ୍ଣ କରନ୍ତି । ଆପଣଙ୍କୁ ମଧ୍ୟ ଆମ୍ଭମାନଙ୍କର ଇଛାକୁ ପୂର୍ଣ୍ଣ କରିବା ଉଚିତ୍ । ଆପଣ ଆମକୁ ଏ କିଭଳି କଥା ଶୁଣାଉଛନ୍ତି ? ଆପଣ ଯେଉଁ ଧର୍ମ କହିଲେ, ତାହା ତ ସାମାନ୍ୟ ଧର୍ମ ଅଟେ । ଆପଣ ଆମ୍ଭମାନଙ୍କୁ ଏହା ବୁଝାଇ ଦିଅନ୍ତୁ ଯେ ଏହି ସମସ୍ତ ଧର୍ମର ପାଳନ କେଉଁଥିପାଇଁ କରାଯାଇଥାଏ ? ମା' ପିଲାଟିର ସେବା କରେ, ସ୍ତ୍ରୀ ସ୍ୱାମୀର ସେବା କରେ, ଲୋକମାନେ ଜଣେ ଜଣକର ସେବା କରନ୍ତି, କର୍ତ୍ତବ୍ୟ ପାଳନ କରନ୍ତି, ତାହା କେଉଁଥିପାଇଁ ଏବଂ କେଉଁ ପର୍ଯ୍ୟନ୍ତ ? (ଏହା ବିଚାର ଯୋଗ୍ୟ କଥା)

**ଅସ୍ତ୍ୱେବମେତଦୁପଦେଶପଦେ ତ୍ୱୟୀଶେ**

**ପ୍ରେଷ୍ଠୋ ଭବାଂସ୍ତନୁଭୃତାଂ କିଲ ବନ୍ଧୁରାତ୍ମା ॥ (୧୦.୨୯.୩୨)**

ବର୍ତ୍ତମାନ ସ୍ୱାମୀଙ୍କ ସହିତ ତ ଆମର ସମ୍ବନ୍ଧ ଏବେ ହେଲା । ଆମ୍ଭମାନଙ୍କୁ ଏମାନଙ୍କର ସେବା କରିବା ନିମନ୍ତେ, ଏମାନଙ୍କ ସହିତ ରହିବା ନିମନ୍ତେ ଉପଦେଶ କରୁଛନ୍ତି । କିନ୍ତୁ ଆପଣ ତ ଆମର ଅନ୍ତରାତ୍ମା ଅଟନ୍ତି । ଆପଣ ହିଁ ଆମ୍ଭମାନଙ୍କର ସଦା-ସର୍ବଦା ବାସ୍ତବିକ ପତି ଅଟନ୍ତି, ଯାହାଙ୍କ ସହିତ ଆମର ସମ୍ବନ୍ଧ ନିତ୍ୟ ଅଟେ । ଏହା ଜାଣି ସାରିବା ପରେ, ସେମାନଙ୍କ ପ୍ରତି ଆମର କୌଣସି କର୍ତ୍ତବ୍ୟ ରହୁନାହିଁ । ନିତ୍ୟ ପତିଙ୍କ ନିକଟକୁ ଆମେ ଆସିଛୁ, ତ ଆପଣ କହୁଛନ୍ତି, ଅନିତ୍ୟ, ଅସ୍ଥାୟୀ ପତିଙ୍କ ପାଖକୁ ଯାଅ। ଏହା କିପରି କଥା ? ଏ କଥା ଠିକ ନୁହେଁ । ଏ ଯେଉଁ ସେବା, କର୍ତ୍ତବ୍ୟପାଳନ ଆଦି କୁହାଯାଇଥାଏ, ତାହା କେବଳ ସେଇଥିପାଇଁ ଉଦ୍ଦିଷ୍ଟ ଯେ ଯଦ୍ଦ୍ୱାରା ଆମ୍ଭେମାନେ ନିଜର ମନକୁ ଶୁଦ୍ଧ କରି ସେହି ପରମାତ୍ମାଙ୍କୁ ଚିହ୍ନିବା, ଯେ ନିତ୍ୟ ଅଟନ୍ତି । ଏହା ହିଁ ତ **"ପରମ ଧର୍ମ"** ଅଟେ । ଏବେ, ଯେତେବେଳେ ଆମେ ସେହି ପରମଧର୍ମକୁ ପାଳନ କରିବାକୁ ଆସିଛୁ, ତ ଆପଣ ଆମ୍ଭମାନଙ୍କୁ ଫେରି ଯିବା ନିମନ୍ତେ କହୁଛନ୍ତି । ଅର୍ଥାତ୍, ଗୋଟିଏ ପାଖରେ ଆପଣ କହୁଛନ୍ତି ସବୁ କିଛି ଛାଡ଼ି ଦେଇ ମୋ ନିକଟକୁ ଆସ, ତେବେ ମୁଁ ତୁମ୍ଭମାନଙ୍କୁ ଆପଣେଇ ନେବି । ଆମ୍ଭେମାନେ ଆପଣଙ୍କର ବଚନ ଅନୁସାରେ ସବୁ କିଛଇ ଛାଡ଼ି ଦେଇ ଆସିଛୁ, ତ ଏବେ ଆପଣ ଆମକୁ କହୁଛନ୍ତି ଯେ ଲେଉଟିଯାଅ ।

ଏହାର ଅତିରିକ୍ତ, ଆପଣ ଧର୍ମ କଥା କହିଲେ ଯେ ଘରେ ଯେଉଁ ପତି ଅଛନ୍ତି, ତାଙ୍କୁ ତୁମେ ସେବା କର । ବାସ୍ତବରେ ଆପଣ ତ ପ୍ରଥମରୁ ହିଁ କହିଛନ୍ତି ଯେ ତାଙ୍କଠାରେ ଯେଉଁ ଅନ୍ତରାତ୍ମା ଅଛନ୍ତି, ତାର ହିଁ ସେବା ହୋଇଥାଏ, କେବଳ ଶରୀରର ଅଥବା ସେହି ବ୍ୟକ୍ତିର ତ ହୁଏ ନାହିଁ । ଅନ୍ୟଥା ଦୁଃଶୀଳ, ଦୁରାଚାରୀ ପତିର କେଉଁ ସେବା କରିବୁ ? ତାଙ୍କର ମଧ୍ୟ ଯେଉଁ ସେବା ହୋଇଥାଏ, ତାହା ତାର ଅନ୍ତଃସ୍ଥଳରେ ସ୍ଥିତ ପରମେଶ୍ୱରଙ୍କର ଅର୍ଥାତ୍ ଅନ୍ତରାତ୍ମାର ହିଁ ତ ହୋଇଥାଏ । ସେହି ପତିକୁ ପରମେଶ୍ୱର ମାନି ସେବା କରିବାକୁ ପଡ଼ିଥାଏ, କରାଯାଇଥାଏ ।

ଏବେ ଯଦି ସାକ୍ଷାତ୍ ପରମେଶ୍ୱର ଆସିଯାଆନ୍ତି ତ ତେବେ ଆମେ ମାନି କରି କାହିଁକି ବସି ରହିବୁ ? ଉପାସକ ଯେଉଁ ମୂର୍ତ୍ତିକୁ ପୂଜା କରେ - ମୂର୍ତ୍ତିକୁ ଶିବଜୀ ମାନି ପୂଜା କରନ୍ତି, ଯଦି ଭଗବାନ ଶଙ୍କର ସ୍ୱୟଂ ସେଠାରେ ଉପସ୍ଥିତ ହୋଇଯାଆନ୍ତି, ତଥାପି ମଧ୍ୟ ମୂର୍ତ୍ତିକୁ ଭଗବାନ ମାନିକରି ତାର ପୂଜା କରିବାରେ ଲାଗି ରହିବାର କୌଣସି

ଆବଶ୍ୟକତା ରହିଛି କି ? କଣ ଭଗବାନ ଶଙ୍କରଙ୍କୁ ଏହା କହିବା ଯେ ଏବେ ଆପଣ ଟିକିଏ ଅପେକ୍ଷା କରନ୍ତୁ, ଆମେ ଆପଣଙ୍କ ମୂର୍ତ୍ତି ଅର୍ଥାତ୍ ଯାହାକୁ ଆମେ ଆପଣଙ୍କ ରୂପରେ ପୂଜା କରିଛୁ, ତାର ଅର୍ଚ୍ଚନା କରିବା ପରେ ଆସୁଛୁ । କ'ଣ ତାଙ୍କୁ ଆମେ ଏପରି କହିବା ? ଆଚ୍ଛା, ଏପରି ମଧ୍ୟ କଣ କିଛି ନିୟମ ଅଛି କି ?

ଗୋପିମାନେ ବହୁତ ଚତୁର ଅଟନ୍ତି । ଆହୁରି ଗୋଟିଏ ତର୍କ ମଧ୍ୟ ସେମାନଙ୍କ ପାଖରେ ଅଛି । କହୁଛନ୍ତି - ଆପଣ କହୁଛନ୍ତି ଏଠାରୁ ଚାଲିଯାଅ । ଏଠାରୁ ଚାଲିଯିବାକୁ କହିବା ତ ଅତି ସହଜ । କିନ୍ତୁ -

**ପାଦୌ ପଦଂ ନ ଚଲତସ୍ତବ ପାଦମୂଳାଦ୍**

**ଯାମଃ କଥଂ ବ୍ରଜମଥୋ କରବାମ କିଂବା ॥ (୧୦.୨୯.୩୪)**

ଏବେ ଆପଣଙ୍କଠାରୁ ଦୂରରେ ଯିବା ନିମନ୍ତେ ଗୋଟିଏ ପାଦ ମଧ୍ୟ ଚାଲିପାରିବୁ ନାହିଁ । ଆମ ପାଦରେ ଏବେ ଆଉ ଶକ୍ତି ନାହିଁ । ଆମେ ଭଲା ବ୍ରଜକୁ ଯିବୁ କିପରି ?

**ସିଞ୍ଚାଙ୍ଗ ନସ୍ତ୍ୱଦଧରାମୃତପୂରକେଣ**

**ହାସାବଲୋକଲ ଗୀତଜହୃଚ୍ଛୟାଗ୍ନିମ୍ ।**

**ନୋ ଚେଦ୍ ବୟଂ ବିରହଜାଗ୍ନ୍ୟୁପଯୁକ୍ତଦେହା**

**ଧ୍ୟାନେନେ ଯାମ ପଦୟୋଃ ପଦବୀଂ ସଖେ ତେ । (୧୦.୨୯.୩୫)**

ଆପଣ ଆମ ସହିତ ହସି, କଥା କହି, ଖେଳି, ଗାଇ, ବେଣୁନାଦ ଶୁଣାଇ ଆମ ହୃଦୟରେ ଯେଉଁ ନିଆଁ ଲଗାଇ ଦେଇଛନ୍ତି, ଏବେ ତାକୁ ନିଜର ଅଧରାମୃତର ଧାରା ଦ୍ୱାରା ଶାନ୍ତ କରନ୍ତୁ । ଆଉ ଭଗବାନ, ଯଦି ଆପଣ ଏହା ନ କରନ୍ତି **"ନୋ ଚେଦ୍"** ତେବେ ଜାଣନ୍ତୁ ଏହି ବିରହାଗ୍ନିରେ ଆପଣଙ୍କୁ ଧ୍ୟାନ କରି କରି ଆମ୍ଭେମାନେ ନିଜ ଦେହକୁ ଜଳାଇ ଦେବୁ । ଏହାର ପାପ ଆମକୁ ହିଁ ଲାଗିବ । ଆପଣ ଆମକୁ ପୂର୍ଣ୍ଣ ରୂପରେ ସ୍ୱୀକାର କରିନାହାନ୍ତି ଏବଂ ଆମେ ଯଦି ଦେହତ୍ୟାଗ କରିଦେବୁ ତ ତାର ପରିଣାମ କିଛି ଭଲ ହେବ ନାହିଁ ।

**ତତ୍ପ୍ରାତ୍ମନାଂ ପୁରୁଷଭୂଷଣ ଦେହି ଦାସ୍ୟମ୍ ॥ (୧୦.୨୯.୩୮)**

ସେଥିପାଇଁ କୃପାକରି ଆମକୁ ଆପଣଙ୍କର ଦାସ୍ୟ ପ୍ରଦାନ କରନ୍ତୁ ।

**ବ୍ୟକ୍ତଂ ଭବାନ ବ୍ରଜଭୟାର୍ତିହରୋଭିଜାତୋ**

**ଦେବୋ ଯଥାଦିପୁରୁଷଃ ସୁରଲୋକଗୋପ୍ତା ।**

**ତନ୍ନୋ ନିଧେହି କରପଙ୍କଜମାର୍ତବନ୍ଧୋ**

**ତପ୍ତସ୍ତନେଷୁ ଚ ଶିରସ୍ସୁ ଚ କିଙ୍କରୀଣାମ ॥ (୧୦.୨୯.୪୯)**

ଆମେ ଜାଣିଛୁ, ଆପଣ କୌଣସି ସାମାନ୍ୟ ଗୋପବାଳକ ନୁହଁନ୍ତି । ଆଦି ପୁରୁଷ ପରମାତ୍ମା ହିଁ ଏଠାକୁ ଆସିଛନ୍ତି । ଲୋକମାନଙ୍କର, ବ୍ରଜବାସୀମାନଙ୍କର ଦୁଃଖକୁ ଦୂର କରିବା ନିମନ୍ତେ, ସମସ୍ତ ଦେବତାମାନଙ୍କୁ ପ୍ରସନ୍ନ କରିବା ନିମନ୍ତେ ଆପଣ ଏଠାକୁ ଆସିଛନ୍ତି । ଆମ୍ଭେମାନେ ମଧ୍ୟ ଦୁଃଖି ଅଟୁ, ଆପଣ ଆମକୁ ଆପଣଙ୍କର ସ୍ପର୍ଶ ଦିଅନ୍ତୁ, ଆମର ବିରହ ଅଗ୍ନିକୁ ଶାନ୍ତ କରନ୍ତୁ ।

ଏବେ ଦେଖନ୍ତୁ, ଭାଗବତର ଏହି ରାସଲୀଳା ଆଦିରେ କେଉଁଠାରେ ମଧ୍ୟ ରାଧାଜୀଙ୍କର ନାମ ଆସି ନାହିଁ । ନା ଅନ୍ୟ କୌଣସି ଗୋପିଙ୍କର ନାମ ଆସେ । ଅନ୍ୟ ପୁରାଣରେ ରାଧା ତଥା ସେମାନଙ୍କର ସଖିମାନଙ୍କର ବହୁତ ବର୍ଣ୍ଣନ ଆସେ । କିନ୍ତୁ ଏଠାରେ କାହାର ମଧ୍ୟ ନାମ ଦିଆଯାଇ ନାହିଁ । ତଥାପି ଏହାର ଅର୍ଥ ଏପରି ବୁଝିବା ଉଚିତ୍ ନୁହେଁ ଯେ ସେଠାରେ ରାଧାଜୀ ନ ଥିଲେ ଅଥବା ଅନ୍ୟ ଗୋପିମାନେ ନ ଥିଲେ।

ଏହାର ଅନ୍ୟ ଏକ ସ୍ପଷ୍ଟିକରଣ ଏପରି ମଧ୍ୟ ଦିଆଯାଏ ଯେ, ଶୁକଦେବ ଜୀ ପ୍ରଥମେ ଶୁକ ହୋଇ ରାଧାଜୀଙ୍କ ମହଲରେ ରହୁଥିଲେ । ପୁଣି ତାଙ୍କର ସମସ୍ତ ଲୀଳାକୁ ଦେଖୁଥିଲେ । ତାଙ୍କର ରାଧାଜୀଙ୍କ ପ୍ରତି ଏପରି ପ୍ରେମ ଥିଲା ଯେ କହି ହେବ ନାହିଁ । କୁହାଯାଏ, ରାଧାଙ୍କ ନାମ ନେଉ ନେଉ ତାଙ୍କର ସମାଧି ଲାଗିଯାଏ । ତେବେ ଏଠାରେ ବର୍ତ୍ତମାନ ଯଦି ରାଧାଙ୍କ ନାମ ସେ ନିଅନ୍ତି, ତେବେ ତାଙ୍କର ସମାଧି ଲାଗିଯିବ, ତେବେ ପୁଣି ସେ ଏହି ଲୀଳାର ବର୍ଣ୍ଣନ କରିପାରିବେ ନାହିଁ । ଏଠାରେ ତ ତାଙ୍କୁ ସାତ ଦିନ ମଧ୍ୟରେ ପରୀକ୍ଷିତଙ୍କୁ ମୁକ୍ତ କରାଇବାକୁ ପଡ଼ିବ । କୁହନ୍ତି, ସେଥିପାଇଁ ସେ ରାଧାଜୀଙ୍କ ନାମ ନେଇ ନାହାନ୍ତି । ଦେଖନ୍ତୁ, ଶୁକଦେବଜୀଙ୍କର ନିଜ ମନ ଉପରେ କେତେ ନିଗ୍ରହ କରି, କେତେ ସଂଯମ କରି ଏହି କଥା କହୁଛନ୍ତି, ଏଥିରେ କ'ଣ କିଛି ସନ୍ଦେହ ହୋଇପାରେ ।

ଗୋପିମାନଙ୍କର ଏହି କଥା ଶୁଣି, ଭଗବାନ ବହୁତ ପ୍ରସନ୍ନ ହେଉଛନ୍ତି । ଭଗବାନ କହୁଛନ୍ତି, "ତୁମ୍ଭମାନଙ୍କର ପ୍ରେମ ଅତି ଶୁଦ୍ଧ ଅଟେ । ଆଛା ଏବେ ଆମେ ରାସଲୀଳା କରିବା ।"

**ନଦ୍ୟାଃ ପୁଲିନମାବିଶ୍ୟ ଗୋପୀଭିର୍ହିମବାଲୁକମ୍ ।**

**ରେମେ ତତ୍ତରଳାନନ୍ଦକୁମୁଦାମୋଦବାୟୁନା ॥ (୧୦.୨୯.୪୫)**

ଶ୍ରୀକୃଷ୍ଣଙ୍କର ସହିତ ଅନ୍ୟ ଗୋପିମାନେ ମଧ୍ୟ ସେହି ଯମୁନାଜୀ କୂଳକୁ ଆସିଲେ। ଭଗବାନ ଲୀଳା କରିବା ନିମନ୍ତେ ପ୍ରସ୍ତୁତ ଅଛନ୍ତି । ସେହି ପାବନ ପୁଲିନ କୁମୁଦିନୀର ସୁଗନ୍ଧରେ ସୁବାସିତ ତଥା ଯମୁନା ଜୀଙ୍କର ତରଙ୍ଗର ସ୍ପର୍ଶରେ ଶୀତଳ ହେଉଥିଲା ।

**ଏବଂ ଭଗବତଃ କୃଷ୍ଣାଲ୍ଲବ୍ଧମାନା ମହାତ୍ମନଃ ।**

**ଆତ୍ମାନଂ ମେନିରେ ସ୍ତ୍ରୀଣାଂ ମାନିନ୍ୟୋଭ୍ୟଧିକଂ ଭୁବି ॥ (୧୦.୨୯.୪୭)**

ରାସଲୀଳା ପ୍ରାରମ୍ଭ ହେଲା । ଭଗବାନ ଗୋପିମାନଙ୍କୁ ବିହାର କରାଉଛନ୍ତି । ସେମାନଙ୍କର ସହିତ ଉଦାର ଚେଷ୍ଟା ପୂର୍ବକ ସେମାନଙ୍କୁ ଆନନ୍ଦିତ କଲେ । ଏବେ ହଠାତ୍ ଗୋପିମାନଙ୍କ ମନରେ ଅଭିମାନ ଆସିଗଲା ଯେ ଜଗତର ସମସ୍ତ ସ୍ତ୍ରୀମାନଙ୍କ ମଧ୍ୟରେ ଆମ୍ଭେମାନେ ସବୁଠାରୁ ଶ୍ରେଷ୍ଠ । ଦେଖନ୍ତୁ, ଯଦି କେହି ମଧ୍ୟ ସମାଧିର ଅଭ୍ୟାସ କରିବାକୁ ଲାଗେ, ତ ତାର ମନରେ ମଧ୍ୟ କୌଣସି ନା କୌଣସି ସୂକ୍ଷ୍ମ ଅଭିମାନ ଆସି ହିଁ ଯାଇଥାଏ । ପରନ୍ତୁ ଭଗବାନ ତାକୁ ମଧ୍ୟ ରହିବାକୁ ଦେଉ ନାହାନ୍ତି ଏବଂ ତାହା ହିଁ ହେଲା । ପ୍ରଥମେ ସେମାନେ ଅଭିମାନକୁ ତ୍ୟାଗ କରିଥିଲେ । ତେବେ ଯାଇ ଭଗବାନ ସେମାନଙ୍କ ସହିତ ରାସଲୀଳା କରିବାକୁ ପ୍ରସ୍ତୁତ ହୋଇଥିଲେ । କିନ୍ତୁ ଯେତେବେଳେ ପୁଣି ସେମାନଙ୍କର ଅଭିମାନ ହୋଇଗଲା ଯେ ଜଗତର ସମସ୍ତ ସ୍ତ୍ରୀମାନଙ୍କ ମଧ୍ୟରେ ଆମେ ମହାନ ଅଟୁ, ତ ଭଗବାନ ଅନ୍ତର୍ଦ୍ଧାନ ହୋଇଗଲେ । ଭଗବାନ ଲୁପ୍ତ ହୋଇଗଲେ ଏବଂ ଗୋପିମାନେ ତାଙ୍କୁ ଖୋଜିବାକୁ ଲାଗିଲେ ।

ଅଭିମାନ ଆସିବା କ୍ଷଣ ଭଗବାନ ଲୁପ୍ତ ହୋଇଯାଆନ୍ତି, ଏହା ଆମର ଦୈନନ୍ଦିନ ଜୀବନର ଅନୁଭବର କଥା । ଭଗବାନଙ୍କର ବିସ୍ମରଣ ଏବଂ ଅହଂକାରର ଜନ୍ମ । ଏହି ଦୁହେଁ ସାଥୀ ହୋଇ ହୋଇଥାଏ । ଯଦି କେହି ଏପରି କହେ ଯେ ଭଗବାନଙ୍କର ବିସ୍ମରଣ ହେଲା ସେଥିପାଇଁ ଅହଂକାର ଆସିଲା, ପୁଣି ଯଦି କେହି କହେ ଅହଂକାର ଆସିଲା ସେଥିପାଇଁ ଭଗବାନଙ୍କର ବିସ୍ମରଣ ହେଲା କିନ୍ତୁ କଥା ହେଉଛି ଗୋଟିଏ ।

ନାରଦ ମୁନିଙ୍କର ମୋହର ପ୍ରସଙ୍ଗରେ କୁହାଯାଇଛି ଯେ ଯେତେବେଳେ ପର୍ଯ୍ୟନ୍ତ ନାରଦଜୀଙ୍କୁ ଭଗବାନଙ୍କର ସ୍ମରଣ ରହିଥିଲା, ସେ ପର୍ଯ୍ୟନ୍ତ "କାମ' ତାଙ୍କୁ ହଇରାଣ କରି ପାରି ନ ଥିଲା । କିନ୍ତୁ ପରେ ଯେତେବେଳେ ସେ ତାକୁ ନିଜର ବିଜୟ ବୋଲି ମାନିବାକୁ ଲାଗିଲେ, ସେତେବେଳେ ମୋହର ପ୍ରସଙ୍ଗ ଉପସ୍ଥିତ ହେଲା। କହିବାର ଅର୍ଥ ହେଉଛି, ମନରେ ଯେତେବେଳେ ଅଭିମାନ ଆସୁଛି ସେତେବେଳେ ଭଗବାନ ଅନ୍ତର୍ଦ୍ଧାନ ହୋଇଯାଆନ୍ତି । ଅର୍ଥାତ୍ ଯେତେବେଳେ ନିଜ ମନରେ ଅହଂକାରର ଉଦୟ ହୁଏ, ସେତେବେଳେ ହିଁ ଆମର ସଚ୍ଚିଦାନନ୍ଦ ସ୍ୱରୂପ ଢାଙ୍କି ହୋଇଯାଏ । ଏବେ ମଧ୍ୟ ଯାହା ଢାଙ୍କି ହୋଇ ରହିଛି, ଅହଂକାର ହିଁ ତ ତାର କାରଣ ଅଟେ । ସେଥିପାଇଁ ଭଗବାନ ଲୁପ୍ତ ହୋଇଯାଇଛନ୍ତି । ବେଦାନ୍ତ ଭାଷାରେ କହୁଛନ୍ତି-

**ଅହମି ନାଶଭାଜ୍ୟହମହଂତୟା ।**

**ସ୍ଫୁରତି ହୃତ୍ସ୍ୱୟଂ ପରମ ପୂର୍ଣ୍ଣସତ୍ ॥ (ଉପଦେଶ ସାର - ୨୦)**

ଅହଂକାର ବୃତ୍ତିର ଯେତେବେଳେ ସମ୍ପୂର୍ଣ୍ଣ ନାଶ ହୋଇଯାଏ, ସେତେବେଳେ ହିଁ ନିଜର ସତ୍-ଚିତ୍ ସ୍ୱରୂପ ପ୍ରକଟ ହୋଇଥାଏ । ଅନ୍ୟଥା ଏହି ଅହଂ ତାକୁ ଢାଙ୍କି କରି ରଖିଥାଏ । ତେବେ ଏଠାରେ ଗୋପିମାନଙ୍କ ମଧ୍ୟରୁ ଭଗବାନ ଲୁପ୍ତ ହୋଇଗଲେ ।

**ଅନ୍ତର୍ହିତେ ଭଗବତୀ ସହସୈବ ବ୍ରଜାଙ୍ଗନାଃ ।**

**ଅତପ୍ୟଂସ୍ତମଚକ୍ଷାଣାଃ କରିଣ୍ୟ ଇବ ଯୂଥପମ୍ ॥ (୧୦.୩୦.୧)**

ଗୋପିମାନେ ଯେତେବେଳେ ଭଗବାନଙ୍କୁ ସେଠାରେ ପାଇଲେ ନାହିଁ, ନିଜ ଭିତରେ ଭଗବାନଙ୍କୁ ଦେଖିଲେ ନାହିଁ, ତ ସେମାନେ ବ୍ୟାକୁଳ ହୋଇଗଲେ । ଯେପରି ଭାବରେ ଦେବର୍ଷି ନାରଦ ମଧ୍ୟ କହିଛନ୍ତି -

**ନାରଦସ୍ତୁ ତଦର୍ପିତାଖିଳାଚରତା ତଦ୍ୱିସ୍ମରଣେ ପରମ ବ୍ୟାକୁଳତେତି ॥**

**ନାରଦ ଭକ୍ତି ସୂତ୍ର-୧୯**

ସେମାନେ ତ ଭଗବାନଙ୍କ ପ୍ରତି ପୂର୍ଣ୍ଣରୂପେ ଅର୍ପିତ ଥିଲେ । ତେଣୁ ଭଗବାନଙ୍କର ଦର୍ଶନ ନ ହେବା ଦ୍ୱାରା ସେମାନେ ବ୍ୟାକୁଳ ହେବାକୁ ଲାଗିଲେ। ଜୀବନରେ ଯେତେବେଳେ ଆମର ସ୍ୱରୂପ ହୋଇଯାଏ, ସେତେବେଳେ ଆମର ବ୍ୟାକୁଳତା ହେବାକୁ ଆରମ୍ଭ ହୁଏ । କିନ୍ତୁ ଆମର ଏବଂ ଗୋପିମାନଙ୍କ ମଧ୍ୟରେ ବହୁତ ଅନ୍ତର ରହିଛି । ସେମାନଙ୍କୁ ଜ୍ଞାତ ହେଲା ଯେ ଭଗବାନଙ୍କର ଦର୍ଶନ ହୋଇପାରୁ ନାହିଁ, ସେଥିପାଇଁ ସେମାନଙ୍କର ବ୍ୟାକୁଳତା ହେଉଛି । (ଯଦ୍ୟପି ଆମ୍ଭମାନଙ୍କୁ ଏହି କଥା ବୁଝି ହେଉ ନାହିଁ।) ଏବେ ସେମାନେ ସମସ୍ତେ ଭଗବାନଙ୍କର ଦର୍ଶନ ଚାହୁଁଛନ୍ତି । ଆମ୍ଭେମାନେ ନିଜର ଅଭିମାନକୁ ଆହୁରି ପୁଷ୍ଟ କରିବାକୁ ଲାଗିଛୁ । ଜଣେ ଅଜ୍ଞାନୀ ଏବଂ ଜଣେ ଭକ୍ତ ମଧ୍ୟରେ, ଅଜ୍ଞାନୀ ଓ ଜ୍ଞାନୀ ମଧ୍ୟରେ ଏହା ହିଁ ହେଉଛି ପାର୍ଥକ୍ୟ (ବିଶେଷତା) । ସେ ବୁଝିଯାଏ ଯେ "ଅହଂକାର' ଆସିଗଲାଣି, ସେଥିପାଇଁ ମୋର ସ୍ୱରୂପ ଢାଙ୍କି ହୋଇଗଲାଣି। ଏବେ ଏହି "ଅହଂ'କୁ ଦୂର କରିବାକୁ ପଡ଼ିବ । ତ ଏଠାରେ ଗୋପିମାନେ ଭଗବାନଙ୍କୁ ଖୋଜିବାକୁ ଲାଗିଲେ ।

**ଦୃଷ୍ଟୋ ବଃ କଚ୍ଚିଦଶ୍ୱତ୍ଥ ପ୍ଲକ୍ଷ ନ୍ୟଗ୍ରୋଧ ନୋ ମନଃ ।**

**ନନ୍ଦସୂନୁର୍ଗତୋ ହୃତ୍ୱା ପ୍ରେମହାସାବଲୋକନୈଃ ॥ (୧୦.୩୦.୫)**

ସେମାନେ ସମସ୍ତେ ଦ୍ରୁମ, ବୃକ୍ଷ-ଲତା ଆଦିକୁ ପଚାରିବାକୁ ଲାଗିଲେ - ଆରେ ! ତୁମେ ସବୁ ଆମର କୃଷ୍ଣଙ୍କୁ ଦେଖିଛ ? ସେ ଆମ୍ଭମାନଙ୍କର ଚିତ୍ତକୁ ଚୋରାଇ ନେଇଯାଇଛନ୍ତି। ତୁମ୍ଭେମାନେ କହିପାରିବ କି ସେ କେଉଁଠାରେ ଅଛନ୍ତି ? ସେମାନେ ପ୍ରଥମେ ପଚାରୁଛନ୍ତି, ପୁଣି ଖୋଜୁଛନ୍ତି ଏବଂ ଅନ୍ତତଃ ଭଗବାନଙ୍କର ଲୀଳା କରିବାକୁ ଲାଗୁଛନ୍ତି । ଜଣେ ଗୋପି କୃଷ୍ଣ ହୋଇଯାଉଛି ତ, ଅନ୍ୟ ଜଣେ ପୂତନା ହୋଇ ଆସୁଛି। ସେ ତାଙ୍କୁ ଦୁଗ୍ଧପାନ କରାଉଛି, ପୁଣି ସେ (କୃଷ୍ଣ) ଅନ୍ୟ ଗୋପିକୁ (ପୂତନା) ମାରିବାର ଲୀଳା କରୁଛି । ଅନ୍ୟ ଜଣେ ଗୋପି କହୁଛି - ମୁଁ ତ ବକାସୁର, ତେବେ ବକାସୁର ବଧର ଲୀଳା (ସେମାନଙ୍କ ମଧ୍ୟରେ) ହେଉଛି, ଏହିପରି ଭଗବାନ ଯେତେ ଲୀଳା କରିଥିଲେ ସେହି ସମସ୍ତ ଲୀଳାର ସ୍ମରଣ କରି ସେମାନେ ସ୍ୱୟଂ ସେହିଭଳି ଅଭିନୟ କରିବା ଆରମ୍ଭ କରୁଛନ୍ତି । ସେତେବେଳେ ସେମାନଙ୍କର ବୃତ୍ତିଗୁଡ଼ିକ ତନ୍ମୟ ହୋଇଯାଉଛି।

ଦେଖନ୍ତୁ, ଏଠାରେ ସାଧନାର ସମସ୍ତ ରହସ୍ୟକୁ ବର୍ଣ୍ଣନ କରାଯାଇଛି । ଆମ୍ଭମାନଙ୍କର ମଧ୍ୟ କେବେ ଯଦି ଏହିଭଳି ବିସ୍ମରଣ ହୋଇଯାଏ, ତେବେ ଭଗବାନଙ୍କର ସଗୁଣ ଲୀଳାର ସ୍ମରଣ କରିବା ଉଚିତ୍, ଚିନ୍ତନ କରିବା ଉଚିତ୍ । ସେହିଭଳି ଅଭିନୟ କରିବା ଉଚିତ୍ । ମନ, ବଚନ ଏବଂ କର୍ମ ଦ୍ୱାରା ସ୍ମରଣ କରୁ କରୁ ଭାବର ସୃଷ୍ଟି ହୋଇଯାଏ । ଏହାକୁ ଯଦି ବେଦାନ୍ତ ଭାଷାରେ କହିବେ, ତ କୁହାଯିବ ନିଜ ଦେହର ଅଧ୍ୟାସକୁ ଦୂର କର । ଏହି ଦେହ ମୁଁ ନୁହେଁ, ମୁଁ ଇନ୍ଦ୍ରିୟ ନୁହେଁ, ଏହି ପ୍ରାଣ ମୁଁ ନୁହେଁ, ମୁଁ ସଚ୍ଚିଦାନନ୍ଦ ସ୍ୱରୂପ ଅଟେ, ଏଭଳି ଅଭ୍ୟାସ କରନ୍ତୁ । ବେଦାନ୍ତରେ ଜ୍ଞାନର ଅଭ୍ୟାସ କରିବା ନିମନ୍ତେ କୁହାଯାଏ । ଯଦି କେତେବେଳେ ଅଜ୍ଞାନର ଆବରଣ ଆସିଯାଏ ତ - "ମନୋବୁଦ୍ଧ୍ୟହଂକାରଚିତ୍ତାନି ନାହଂ' ଏପରି ବିଚାର କରିବା ନିମନ୍ତେ କୁହାଯାଇଥାଏ । ଏହା ହେଉଛି ନିର୍ଗୁଣର ଅଭ୍ୟାସ । ତେବେ ସଗୁଣ ଉପାସକମାନଙ୍କର କ'ଣ କରିବା ଉଚିତ ? ଯେ ରାମଜୀଙ୍କର ଭକ୍ତ, ସେ ରାମଲୀଳାର ଏବଂ ଯଦି କେହି କୃଷ୍ଣଭକ୍ତ, ସେ କୃଷ୍ଣ ଲୀଳାର ସ୍ମରଣ କରିବା ଉଚିତ୍ । ଏଠାରେ ଗୋପିମାନେ ସେହିପରି ଚିନ୍ତନ କରିବାକୁ ଲାଗିଲେ, ସ୍ମରଣ କରିବାକୁ ଲାଗିଲେ, ଅଭିନୟ କରିବାକୁ ଲାଗିଲେ ଏବଂ ସେହିଭଳି ମଧ୍ୟ କହିବାକୁ ଲାଗିଲେ । ସମସ୍ତ ପ୍ରକାରରେ - ସମସ୍ତ ଇନ୍ଦ୍ରିୟ ତଥା ମନରେ, ସେମାନେ କେବଳ ସେହି ଭଗବାନଙ୍କୁ ଖୋଜିବାକୁ ଲାଗିଲେ, ଏହା ହିଁ ତାର ମର୍ମ ଅଟେ ।

**ଏବଂ କୃଷ୍ଣଂ ପୃଚ୍ଛମାନା ବୃନ୍ଦାବନଲତାସ୍ତରୁନ୍ ।**
**ବ୍ୟଚକ୍ଷତ ବନୋଦ୍ଦେଶେ ପଦାନି ପରମାତ୍ମନଃ ॥ (୧୦.୩୦.୨୪)**

ଲୀଳା କରୁଥିବା ସମୟରେ ସେମାନେ ପୁଣି ବୃକ୍ଷ ଆଦିକୁ ପଚାରୁଛନ୍ତି ଯେ କୃଷ୍ଣ କେଉଁଠାରେ ଅଛନ୍ତି ? ପୁଣି ସେମାନେ ବିଚାର କରୁଛନ୍ତି ଯେ ଯଦି କୃଷ୍ଣ କେଉଁଆଡ଼େ ଯାଇଥିବେ, ତେବେ ସେଠାରେ ତାଙ୍କ ଚରଣର ଚିହ୍ନ ଥିବା ଉଚିତ୍ । ସେମାନେ ଏପରି ବିଚାର କରୁଛନ୍ତି, ସେତିକିବେଳେ ସେମାନଙ୍କୁ ଶ୍ରୀକୃଷ୍ଣଙ୍କର ଚରଣରେ ଚିହ୍ନ ଦେଖାଯାଉଛି । ସେମାନେ ତାକୁ ଅନୁସରଣ କରୁଛନ୍ତି । ତେବେ ସେଠାରେ ଭଗବାନଙ୍କର ଚରଣ ଚହ୍ନିନ ସହିତ ଅନ୍ୟର ମଧ୍ୟ ଚରଣ ଚିହ୍ନ ଦେଖିବାକୁ ମିଳିଲା । ତାକୁ ଦେଖି ସମସ୍ତ ଗୋପି କହୁଛନ୍ତି - ଓହୋ ! ଶ୍ରୀକୃଷ୍ଣ ଏକୁଟିଆ ଯାଇନାହାନ୍ତି । କୌଣସି ସ୍ତ୍ରୀକୁ ସଙ୍ଗରେ ନେଇ ଯାଇଛନ୍ତି । ଦେଖନ୍ତୁ, ଏଠାରେ କାହାର ନାମ କୁହାଯାଇ ନାହିଁ । କିନ୍ତୁ ଅନ୍ୟ ପୁରାଣରୁ ଜଣାପଡ଼େ ସେ ରାଧାଜୀ ହିଁ ଥିଲେ ।

**କସ୍ୟାଃ ପଦାନି ଚୈତାନି ଯାତାୟା ନନ୍ଦସୂନୁନା । (୧୦.୩୦.୨୭)**

ଗୋପିମାନେ ପରସ୍ପର ମଧ୍ୟରେ କହୁଛନ୍ତି, "ଏହି ଅନ୍ୟ ଚିହ୍ନଟି କାହାର ଅଟେ ?"

**ଅନୟାଽଽରାଧିତୋ ନୂନଂ ଭଗବାନ୍ ହରିରୀଶ୍ୱରଃ । (୧୦.୩୦.୨୮)**

ସମସ୍ତେ କହୁଛନ୍ତି - "ଅନୟାରାଧିତୋ' ଏ ଯେଉଁ ସ୍ତ୍ରୀ ତାଙ୍କ ସହିତ ଯାଇଛି, ସେ ଯେ କେହି ମଧ୍ୟ ହେଉ, ପରନ୍ତୁ ସେ ଭଗବାନଙ୍କର ବହୁତ ଆରାଧନା କରିଥିବ । ଦେଖନ୍ତୁ, ଆଶ୍ଚର୍ଯ୍ୟର କଥା ଯେ ଏମାନଙ୍କର ସେହି ସ୍ତ୍ରୀ ପ୍ରତି କୌଣସି ଈର୍ଷା ବା ଜ୍ୱଳନ ହେଲା ନାହିଁ । କିପରି ବିଲକ୍ଷଣ କଥା । ପ୍ରାୟ ଏପରି ସନ୍ଦର୍ଭରେ ଜଣେ ସ୍ତ୍ରୀର ଅନ୍ୟ ଜଣେ ସ୍ତ୍ରୀ ପ୍ରତି କେତେ (ଜ୍ୱଳନ) ଈର୍ଷା ହୋଇଥାଏ ? ଏଠାରେ ଏତେ ସଂଖ୍ୟକ ସ୍ତ୍ରୀମାନେ ଏକ ସହିତ ଭଗବାନଙ୍କ ସାଥିରେ ଥିଲେ କିନ୍ତୁ କାହାର ମଧ୍ୟ ସେହି ଗୋପି ପ୍ରତି ଈର୍ଷା ହେଉନାହିଁ । ଏଥିରୁ ଜଣାପଡୁଛି ଯେ, ଶ୍ରୀକୃଷ୍ଣ ଭଗବାନ ତ ସର୍ବଭୂତାତ୍ମରାତ୍ମା ଅଟନ୍ତି, ସମସ୍ତଙ୍କର ଆତ୍ମା ଅଟନ୍ତି । ତେବେ ଏଠାରେ ଏମାନେ ସମସ୍ତେ ଭାବୁଛନ୍ତି ଯେ ସେହି ଗୋପି ଭଗବାନଙ୍କୁ ବହୁତ ଭକ୍ତି କରିଥିବ ।

**ଯନ୍ନୋ ବିହାୟ ଗୋବିନ୍ଦଃ ପ୍ରୀତୋ ଯାମନୟଦ୍ ରହଃ ॥ (୧୦.୩୦.୨୮)**

ସେଥିପାଇଁ ଭଗବାନ ଆମକୁ ଛାଡ଼ି, ଏକାକୀ ତା ସହିତ ଯାଇଛନ୍ତି । ଦେଖନ୍ତୁ, ଏହା ହୃଦୟର ଉଦାରତା । ଭକ୍ତିରେ ଉଦାରତା ଆସିବା ଉଚିତ୍ । ଅନେକ ଲୋକ ଗୁରୁଭକ୍ତି କରନ୍ତି, ପରନ୍ତୁ ସେମାନଙ୍କର ପରସ୍ପର ମଧ୍ୟରେ ବଡ଼ ଦ୍ୱେଷ ହୋଇଥାଏ । ଜଣକୁ ଲାଗୁଥାଏ ଯେ ଗୁରୁଙ୍କ ପ୍ରତି ମୋର ଭକ୍ତି ଅଧିକ ଅଛି, ଅନ୍ୟଜଣକର ଏତେ ଭକ୍ତି ନାହିଁ ଯାହା କି ମୋର ଅଛି । ଅସଲ ସେବା ତ ମୁଁ ହିଁ କରୁଛି, ଇତ୍ୟାଦି । ଏହିଭଳି ଭାବରେ ଭଗବାନଙ୍କର ଭକ୍ତମାନଙ୍କ ମଧ୍ୟରେ କେହି କେହି ମଧ୍ୟ ଏପରି ବିଚାର କରିଥାଆନ୍ତି ଯେ ମୋର ଭକ୍ତି ହିଁ ଶ୍ରେଷ୍ଠ ଭକ୍ତି ଅଟେ । ଏମାନେ କି ଭକ୍ତି କରୁଛନ୍ତି ? ଏହିପରି, ଆମେ ସବୁ ନିଜେ ନିଜକୁ ଶ୍ରେଷ୍ଠ ବୋଲି ଧରି ନେଇଥାଉ । କିନ୍ତୁ ସତରେ ଶ୍ରେଷ୍ଠ ଭକ୍ତ ତ ତାକୁ କହନ୍ତି - ଯେ କି ବିଚାର କରେ ଯେ ଅନ୍ୟ ଭକ୍ତ ଜଣକ ମୋ ଠାରୁ ଶ୍ରେଷ୍ଠ ଅଟନ୍ତି । ମୁଁ ତାଙ୍କଠାରୁ ଛୋଟ । ମୋର ସାଧନା ସେତେ ଅଧିକ ନାହିଁ । ତାଙ୍କର ସାଧନା ଅଧିକ । ଏଠାରେ ଗୋପିମାନେ ମଧ୍ୟ ଏହିପରି ବିଚାର କରୁଛନ୍ତି । କହୁଛନ୍ତି - ସେ ବହୁତ ସାଧନା କରିଥିବେ । ତାଙ୍କର ଭକ୍ତି ଆମଠାରୁ ଶ୍ରେଷ୍ଠ, ସେଥିପାଇଁ ଆମକୁ ଭଗବାନ ଏଠାରେ ଛାଡ଼ି ତା ସହିତ ଚାଲିଗଲେ ।

ଏବେ ଆଶ୍ଚର୍ଯ୍ୟ ଘଟଣା ହେଲା ଯେ କିଛି ଦୂର ପର୍ଯ୍ୟନ୍ତ ତ ସେ ଦୁହିଁଙ୍କର (ଶ୍ରୀକୃଷ୍ଣ ଓ ଜଣେ ଗୋପି) ପଦ ଚିହ୍ନ ମିଳିଲା, କିନ୍ତୁ ତାପରେ ସେମାନେ ଦେଖୁଛନ୍ତି ଯେ ସେହି ସ୍ତ୍ରୀର ପଦ ଚିହ୍ନ ଆଉ ନାହିଁ । ଏହା ଦେଖି ସେମାନେ କହୁଛନ୍ତି ଯେ ଅବଶ୍ୟ ହିଁ ସେ ତାଙ୍କ କାନ୍ଧ ଉପରେ ତାକୁ ବସାଥିବେ। ବୁଝିଲେ ? ସେ ଏହିଭଳି ହିଁ ଅଟନ୍ତି। ତାକୁ ନିଶ୍ଚୟ କାନ୍ଧ ଉପରେ ବସାଇ ଚାଲିଥିବେ। ସେଥିପାଇଁ ଏବେ କେବଳ ତାଙ୍କର (ଭଗବାନଙ୍କର) ପଦ ଚିହ୍ନ ହିଁ ଦେଖା ଯାଉଛି ଏବଂ ସେ ଚିହ୍ନ ମଧ୍ୟ ବଡ଼ ଗଭୀର ଦେଖାଯାଉଛି । କାନ୍ଧ ଉପରେ କେହି ବସିଗଲେ ସେ ଚିହ୍ନ ତ ଗଭୀର ନିଶ୍ଚୟ ହେବ ନା ?

ଚାଲୁ, ଚାଲୁ ଯେତେବେଳେ ସେମାନେ ଆଗେଇ ଗଲେ, ସେମାନେ ଦେଖିଲେ ଯେ ସେହି ଗୋପୀ ସେଠାରେ ବସି କାନ୍ଦୁଛି । କହିଲେ କ'ଣ ହେଲା ? ମୋର ଭାଗ୍ୟ ଓଲଟି ଗଲା । ମୋର ଅଭିମାନ ହୋଇଗଲା, ସେଥିପାଇଁ ସେ ଚାଲିଗଲେ । ଦେଖନ୍ତୁ, ପ୍ରଥମେ ତ ସମସ୍ତ ଗୋପିମାନଙ୍କୁ ସମୂହ ଅଭିମାନ ହୋଇଯାଇଥିଲା । ପୁଣି ଯେତେବେଳେ ସେହି ଜଣେ ଗୋପୀକୁ ଏକୁଟିଆ ନେଇ ଚାଲିଲେ, ତାକୁ ଲାଗିଲା ଯେ ସମସ୍ତ ଗୋପିମାନଙ୍କ ମଧ୍ୟରେ ମୁଁ ସର୍ବଶ୍ରେଷ୍ଠ ଅଟେ । କୁହନ୍ତୁ ! ପ୍ରଥମେ ଏ ସମସ୍ତଙ୍କୁ ଲାଗୁଥିଲା ଯେ ସବୁ ସ୍ତ୍ରୀମାନଙ୍କ ମଧ୍ୟରେ ସେ ଶ୍ରେଷ୍ଠ ଅଟେ । ପୁଣି ସେହି ଗୋପୀକୁ ଲାଗିଲା ଯେ ଏହି ଭକ୍ତମାନଙ୍କ ଭିତରୁ ମଧ୍ୟ ମୁଁ ଅନ୍ୟମାନଙ୍କଠାରୁ ଅଧିକା ଶ୍ରେଷ୍ଠ ଅଟେ, ତାକୁ ଏହିପରି ଅଭିମାନ ହୋଇଗଲା । ସେଥିପାଇଁ ତ ସେ ଭଗବାନଙ୍କୁ କହିଲା ଯେ ମୁଁ ଥକି ଗଲିଣି, ଏବେ ମୁଁ ଆଉ ଚାଲିପାରିବି ନାହିଁ, ମୋତେ ଆପଣଙ୍କ କାନ୍ଧ ଉପରେ ବସାନ୍ତୁ। ଭଗବାନ କହିଲେ - କ'ଣ ? ଥକି ଗଲଣି ? କହିଲେ, ଆଛା ବସ । ବସିବାକୁ କହିଲେ ଏବଂ ତଲୁ ଅନ୍ତର୍ଦ୍ଧାନ ହୋଇଗଲେ । ଦେଖନ୍ତୁ, ଯଦି ଏପରି କେହି ବସିବାକୁ ଏବଂ ବସାଇବା ଲୋକ ଅନ୍ତର୍ଦ୍ଧାନ ହୋଇଯାଏ, ତ ସେ ବ୍ୟକ୍ତିର ଅବସ୍ଥା କ'ଣ ହେବ ? ଧଡ଼ାସ୍ ହୋଇ ତଳେ ପଡ଼ିବ, ଆଉ କ'ଣ ହେବ ? ଭଗବାନ ଅଚାନକ ଅନ୍ତର୍ଦ୍ଧାନ ହୋଇଗଲେ ଏବଂ ସେ ବସି ସେଠାରେ କାନ୍ଦୁଥିଲା, କାରଣ ତାକୁ ଟିକିଏ ଅଭିମାନ ହୋଇଗଲା । ଜ୍ଞାନର ଭାଷାରେ ଏହି କଥାକୁ କହିଲେ, ତେବେ କହିବେ, ପ୍ରଥମେ ଆମ୍ଭେମାନେ ବହୁତ ସାରା ବୃତ୍ତିକୁ ଆମେ ଭଗବାନଙ୍କ ଆଡ଼କୁ ଲଗାଇ ରଖିଥାଉ । ପୁଣି ଅନେକ ବୃତ୍ତିକୁ ତ୍ୟାଗ କରି ଏକ ବୃତ୍ତିର ସୃଷ୍ଟି କରିଥାଉ । ପୁଣି ସେହି ଏକ ବୃତ୍ତିରେ ମଧ୍ୟ କେବେ କେବେ ଅନ୍ୟ କୌଣସି ବିଷୟ ଆସିଯାଇଥାଏ । ସେତେବେଳେ ବୃତ୍ତି ବିଜାତୀୟ ହୋଇଯାଇଥାଏ । ଏପରି ହେବା ଉଚିତ୍ ନୁହେଁ ।

ସେହି ଗୋପୀଙ୍କୁ ମଧ୍ୟ ଭଗବାନ ସେଠାରେ ଛାଡ଼ିଦେଲେ କାରଣ ତାର ମଧ୍ୟ ଏହିପରି ଅଭିମାନ ହୋଇଯାଇଥିଲା । ଏବେ, ଯେତେବେଳେ ତାର ଅଭିମାନ ଦୂର ହୋଇଗଲା, ସେ କାନ୍ଦିବାକୁ ଲାଗିଲା, ତେବେ ତାକୁ ଦେଖି ଅନ୍ୟ ଗୋପିମାନେ ମଧ୍ୟ ତା ସହିତ କାନ୍ଦିବାକୁ ଲାଗିଲେ ।

**ପୁନଃ ପୁଲିନମାଗତ୍ୟ କାଲିନ୍ଦ୍ୟାଃ କୃଷ୍ଣଭାବନାଃ ।**
**ସମବେତା ଜଗୁଃ କୃଷ୍ଣଂ ତଦାଗମନକାଂକ୍ଷିତାଃ ॥ (୧୦.୩୦.୪୫)**

କହିଲେ - ଏବେ ଆମେ ତାଙ୍କୁ କେଉଁଠାରେ ଖୋଜିବା ? ସେମାନେ ସମସ୍ତେ ବୁଲି ବୁଲି ପୁଣି କାଳିନ୍ଦୀ ନଦୀ କୂଳକୁ ଆସିଗଲେ । ସେମାନେ ବିଚାର କରିବାକୁ ଲାଗିଲେ ଯେ ବୋଧହୁଏ ଶ୍ରୀକୃଷ୍ଣ ସେଠାରେ ସେମାନଙ୍କୁ ମିଳିଯିବେ ।

## ଗୋପୀ-ଗୀତ

ଏହାପରେ ଯେଉଁ ପ୍ରସଙ୍ଗ ଅଛି, ତାକୁ "ଗୋପୀ-ଗୀତ' କୁହାଯାଏ, ଏହା ବହୁତ ପ୍ରିୟ ତଥା ମଧୁର ଗୀତ ଅଟେ । ଏଥିରେ ଶ୍ଳୋକ ଅଛି, "ରାସପଞ୍ଚାଧ୍ୟାୟୀ'ର ମଧ୍ୟ, ମାନି ନିଅନ୍ତୁ ଏହା ପ୍ରାଣ ଅଟେ । ଏହା ଅତି ସୁନ୍ଦର ଶ୍ଳୋକ । ସେଥିରୁ କିଛି ଶ୍ଳୋକକୁ ଆମେ ଏଠାରେ ଦେଖିବା ।

**ଜୟତି ତେଽଧିକଂ ଜନ୍ମନା ବ୍ରଜଃ**
**ଶ୍ରୟତ ଇନ୍ଦିରା ଶଶ୍ୱଦତ୍ର ହି ।**
**ଦୟିତ ଦୃଶ୍ୟତାଂ ଦିକ୍ଷୁ ତାବକା -**
**ସ୍ତ୍ୱୟି ଧୃତାସବସ୍ତ୍ୱାଂ ବିଚିନ୍ୱତେ ॥ (୧୦.୩୧.୧)**

**ଶରଦୁ ଦାଶୟେ ସାଧୁଜାତସତ୍**
**ସରସିଜୋଦରଶ୍ରୀମୂଷା ଦୃଶା ।**
**ସୁରଥନାଥ ତେଶୁଲ୍କଂଦାସିକା**
**ବରଦ ନିଘ୍ନୋତ ନେହ କିଂ ବଧଃ ॥ (୧୦.୩୧.୨)**

**ବିଷଜଳାପ୍ୟୟାଦ୍ ବ୍ୟାଳରାକ୍ଷସାଦ୍**
**ବର୍ଷମାରୁତାଦ୍ ବୈଦ୍ୟୁତାନଳାତ୍ ।**
**ବୃଷମୟାତ୍ମଜାଦ୍ ବିଶ୍ୱତୋଭୟା-**
**ଦୃଷଭ ତେ ବୟଂ ରକ୍ଷିତା ମୁହୁଃ ॥ (୧୦.୩୧.୩)**

**ନ ଖଲୁ ଗୋପିକା ନନ୍ଦନୋ ଭବା -**
**ନଖିଳ ଦେହିନାମନ୍ତରାତ୍ମଦୃକ୍ ।**
**ବିଖନସାର୍ଥିତୋ ବିଶ୍ୱଗୁପ୍ତୟେ**
**ସଖ ଉଦେୟିବାନ୍ ସାତ୍ୱତାଂ କୁଲେ ॥ (୧୦.୩୧.୪)**

**"ଜୟତି ତେଽଧିକଂ ଜନ୍ମନା ବ୍ରଜଃ"** ତେ ଜନ୍ମନା - ଭଗବାନ, ଆପଣଙ୍କର ଜନ୍ମ ହେବା ପରେ, ପ୍ରାକଟ୍ୟ ହେବା ପରେ, ଆପଣ ଆବିର୍ଭୂତ ହେବା ପରେ ଏହି ବ୍ରଜର ସୌନ୍ଦର୍ଯ୍ୟ ଆହୁରି ମଧ୍ୟ ବଢ଼ିଗଲାଣି । ଏହା ଏତେ ସୌନ୍ଦର୍ଯ୍ୟମୟ ହୋଇଗଲାଣି ଯେ **"ଶ୍ରୟତ ଇନ୍ଦିରା ଶଶ୍ୱଦତ୍ର ହି"** ସ୍ୱୟଂ ଲକ୍ଷ୍ମୀଜୀ ମଧ୍ୟ ନିଜର ବୈକୁଣ୍ଠ ଧାମକୁ ଛାଡ଼ି ଏଠାକୁ ଆସିଗଲେଣି । ତାଙ୍କୁ ଏବେ ନିଜର ଧାମ ମଧ୍ୟ ଭଲ ଲାଗୁ ନାହିଁ । କିନ୍ତୁ ଦେଖନ୍ତୁ, ଯେଉଁଠି ବୈକୁଣ୍ଠ ଲୋକର ଲକ୍ଷ୍ମୀଜୀ ମଧ୍ୟ ଏହି ଲୋକକୁ, ଏହି ବୃନ୍ଦାବନକୁ ଆସିଗଲେଣି - ଏହିଠାରେ, ଏହି ବୃନ୍ଦାବନରେ ହିଁ ରହୁଥିବା ଲୋକମାନେ (ଗୋପିମାନେ) ଆପଣଙ୍କୁ ଏଠି ସେଠି ଖୋଜୁଛନ୍ତି, ଏହା କେବେ ଦୁର୍ଭାଗ୍ୟର ବିଷୟ ଅଟେ । **"ଦିକ୍ଷୁ ତାବକାସ୍ତ୍ୱୟି ଧୃତାସବସ୍ତ୍ୱାଂ ବିଚିନ୍ୱତେ ।"** (୧୦.୩୧.୧) ଆମେ ଆପଣଙ୍କୁ ଖୋଜିବାକୁ ପଡୁଛି, ଯଦ୍ୟପି ଆମେ ନିଜର ପ୍ରାଣକୁ ମଧ୍ୟ ଆପଣଙ୍କଠାରେ ହିଁ ଲଗାଇ ଦେଇଛୁ, ଆପଣଙ୍କର ସୁନ୍ଦର ନୟନ ଶରତ ଋତୁରେ ବିକଶିତ କମଳ ସଦୃଶ ଅଟେ, ଏବଂ ଆପଣଙ୍କର ସେହି ସୁନ୍ଦର ନୟନ ତ ଆମକୁ ତ ମାରିଦେଲାଣି । ଆମ୍ଭେମାନେ ତ ଆପଣଙ୍କର ବିନା ଶୁଳ୍କ ଦାସୀ ହୋଇସାରିଛୁ । **"ତେ ଅଶୁଲ୍କଦାସିକା"** ଆମକୁ କିଣିବାର ମଧ୍ୟ ପ୍ରୟୋଜନ ନାହିଁ। ଆମେ ଏପରି ତ ଆପଣଙ୍କର ଦାସୀ ହୋଇଯାଇଛୁ । ତା ବଦଳରେ ଆମର କିଛି ଆବଶ୍ୟକ ନାହିଁ । କାହାର ବଧ କ'ଣ କେବଳ ଅସ୍ତ୍ର-ଶସ୍ତ୍ର ଦ୍ୱାରା କରାଯାଇଥାଏ ? ଆପଣତ ନିଜର ସେହି ଦୃଷ୍ଟିରେ ହିଁ ଆମ ସମସ୍ତଙ୍କୁ ମାରି ଦେଉଛନ୍ତି।

ଆପଣ ବଡ଼ ବିଚିତ୍ର ଅଟନ୍ତି - **"ବିଷଜଳାପ୍ୟୟାଦ୍ ବ୍ୟାଳରାକ୍ଷସାଦ୍ ବର୍ଷମାରୁତାଦ୍ ବୈଦ୍ୟୁତାନଳାତ୍"** (୧୦.୩୧.୩) ଆପଣ ଆମକୁ ବିଷାକ୍ତ ଜଳଠାରୁ

ରକ୍ଷା କରିଛନ୍ତି, କାଳିୟଠାରୁ ରକ୍ଷା କରିଛନ୍ତି, ରାକ୍ଷସମାନଙ୍କଠାରୁ ରକ୍ଷା କରିଛନ୍ତି, ଘନଘୋର ବର୍ଷାଠାରୁ ରକ୍ଷା କରିଛନ୍ତି, ଅଗ୍ନିଠାରୁ ଉଦ୍ଧାର କରିଛନ୍ତି, ଗୋଟିଏ ପାଖରେ ଆମକୁ ରକ୍ଷା କରିବା ନିମନ୍ତେ ଆପଣ ଏତେ ସବୁ କାର୍ଯ୍ୟ କଲେ ଏବଂ ଅନ୍ୟ ପାଖରେ ଅନ୍ତର୍ଦ୍ଧାନ ହୋଇ, ଏବେ ଆପଣ ଆମକୁ ମାରିବା ନିମନ୍ତେ ପ୍ରସ୍ତୁତ ହୋଇଗଲେଣି ? ଏହା କଣ ବିପରୀତ କଥା ନୁହେଁ - ଯେ ରକ୍ଷକ ହୋଇଥାଏ ସେହି ପୁଣି କ'ଣ ମାରକ ହୋଇଥାଏ ? ଆମେ ଜାଣିଛୁ **"ନ ଖଲୁ ଗୋପିକାନନ୍ଦନୋ ଭବାନ୍"** (୧୦.୩୧.୪) ଆପଣ କେବଳ ନନ୍ଦ ନନ୍ଦନ, ଯଶୋଦାଙ୍କର ପୁତ୍ର ଅଥବା ଏପରି କୌଣସି ଗୋପବାଳକ ନୁହନ୍ତି । **"ଅଖିଲଦେହିନାମନ୍ତରାତ୍ମଦୃକ୍"** (୧୦.୩୧.୪) ଆପଣତ ସମସ୍ତଙ୍କ ହୃଦୟରେ ବସିଥିବା ଅନ୍ତରାତ୍ମା ଅଟନ୍ତି ଏବଂ ଏଠାରେ ଆପଣଙ୍କର ଅବତାର ହୋଇଛି । **"ବିଖନସାର୍ଥିତୋ ବିଶ୍ୱଗୁପ୍ତୟେ"** (୧୦.୩୧.୪) ବିଶ୍ୱକୁ ରକ୍ଷା କରିବା ନିମନ୍ତେ ବ୍ରହ୍ମାଜୀଙ୍କର ପ୍ରାର୍ଥନାରେ ଆପଣ ଏଠାରେ **"ସାତ୍ୱତାଂ କୁଳେ"** ଯଦୁବଂଶରେ ପ୍ରକଟ ହୋଇଛନ୍ତି । ଏବେ ଆମ୍ଭମାନଙ୍କର ପ୍ରାର୍ଥନାରେ ଆପଣ କଣ ପ୍ରକଟ ହୋଇ ଆମର ପ୍ରାଣକୁ ରକ୍ଷା କରିବେ ନାହିଁ ? ଆପଣ କ'ଣ ଆମକୁ ଏଠାରେ ମରିବା ନିମନ୍ତେ ଛାଡ଼ି ଦେବେ ?

**ତବ କଥାମୃତଂ ତପ୍ତଜୀବନଂ**
**କବିଭିରୀଡ଼ିତଂ କଲ୍ମଷାପହମ୍ ।**
**ଶ୍ରବଣମଙ୍ଗଳଂ ଶ୍ରୀମଦାତତଂ**
**ଭୁବି ଗୃଣନ୍ତି ତେ ଭୂରିଦା ଜନାଃ ॥ (୧୦.୩୧.୯)**

**ଚଳସି ଯଦ୍ ବ୍ରଜାଚ୍ଚାରୟନ୍ ପଶୂନ୍**
**ନଳିନସୁନ୍ଦରଂ ନାଥ ତେ ପଦମ୍ ।**
**ଶିଳତୃଣାଙ୍କୁରୈଃ ସୀଦତୀତି ନଃ**
**କଲିଲତାଂ ମନଃ କାନ୍ତ ଗଚ୍ଛତି ॥ (୧୦.୩୧.୧୧)**

**ଅଟତି ଯଦ୍ ଭବାନହ୍ନି କାନନଂ**
**ତ୍ରୁଟିର୍ଯୁଗାୟତେ ତ୍ୱାମପଶ୍ୟତାମ୍ ।**
**କୁଟିଲକୁନ୍ତଳଂ ଶ୍ରୀମୁଖଂ ଚ ତେ**
**ଜଡ଼ ଉଦୀକ୍ଷତାଂ ପକ୍ଷ୍ମକୃଦ୍ ଦୃଶାମ୍ ॥ (୧୦.୩୧.୧୫)**

**ପତିସୁତାନ୍ୱୟଭ୍ରାତୃବାନ୍ଧବା -**
**ନତିବିଲଂଘ୍ୟ ତେନ୍ତ୍ୟଚ୍ୟୁତାଗତାଃ ।**
**ଗତିବିଦସ୍ତବୋଦ୍‌ଗୀତମୋହିତାଃ**
**କିତବ ଯୋଷିତଃ କସ୍ତ୍ୟଜେନ୍ନିଶି ॥ (୧୦.୩୧.୧୬)**

କେହି କହିପାରନ୍ତି ତୁମେ ସବୁ ଏତେ ବ୍ୟାକୁଳ ହୋଇ ମରିବା କଥା କହୁଛ ତ ବଞ୍ଚିଛ କିପରି ? ଗୀତ କିପରି ଗାଉଛ ? କହିଲେ - ଏପରି ଦେଖିଲେ ଯେ ଏହି ତାପରେ ତପ୍ତ ହୋଇଯାଇଥାଏ, ସେ ତ ଯେକୌଣସି ସମୟରେ ମରିପାରେ, କିନ୍ତୁ **"ତବ କଥାମୃତଂ ତପ୍ତଜୀବନଂ"** ଆପଣଙ୍କର କଥା ରୂପୀ ଏହି ଯେଉଁ ପରମ ଅମୃତ, ତାହା ଆମକୁ ଏ ପର୍ଯ୍ୟନ୍ତ ରକ୍ଷା କରିଛି । ତାହା ହିଁ ଆମ ମନରେ ଏହି ଆଶାର ସଞ୍ଚାର କରିଦେଇଛି ଯେ ଭଗବାନ ଆସିବେ ଏବଂ ସେ ହିଁ ଆମ ଜୀବନକୁ ପ୍ରସ୍ତୁତ କରିବେ । ମହାତ୍ମାମାନେ, ଜ୍ଞାନୀ ତଥା ଭକ୍ତ କବିମାନେ ଆପଣଙ୍କର କଥାକୁ ଅନେକ ପ୍ରକାରରେ ଗାନ କରିଛନ୍ତି । ଆପଣଙ୍କର ସେହି କଥା ତ **"ଶ୍ରବଣମଙ୍ଗଳଂ ଶ୍ରୀମଦାତତଂ"** ଶ୍ରବଣ ମାତ୍ରକେ ମଙ୍ଗଳ ପ୍ରଦାନ କରିବୁ, ଅର୍ଥାତ୍ ଆମର କଲ୍ୟାଣ କରିବ । ଆପଣଙ୍କର ସୁନ୍ଦର କୀର୍ତ୍ତିର ଯେଉଁମାନେ ଗାନ କରନ୍ତି, ବାସ୍ତବରେ ସେହିମାନେ ହିଁ ଏଠାରେ ଧନ୍ୟ ଅଟନ୍ତି।

ଏହି ଜଙ୍ଗଲରେ ଜଣା ନାହିଁ କେଜାଣି କେତେ କଣ୍ଟା, ଗୋଡ଼ି, ପଥର ପ୍ରଭୃତି ଥିବ ଏବଂ ଆପଣ ଆପଣଙ୍କର କୋମଳ ପାଦରେ, ରାତ୍ରି ସମୟରେ ତା ଉପରେ ଚାଲୁଛନ୍ତି, ଏଭଳି ବିଚାର କରି ଆମର ମନ ବ୍ୟାକୁଳ ହେଉଛି । **"ଅଟତି ଯଦ୍ ଭବାନହ୍ନି କାନନଂ"** (୧୦.୩୧.୧୫) ଦିନ ସମୟରେ ଯେତେବେଳେ ଆପଣ ଗାଈ ଚରାଇବାକୁ ବଣକୁ ଯାଉଛନ୍ତି **"ତ୍ରୁଟିର୍ଯୁଗାୟତେ ତ୍ୱାମପଶ୍ୟତାମ୍"** (୧୦.୩୧.୧୫) ସେତେବେଳେ ଆପଣଙ୍କୁ ନ ଦେଖି ଆମର ଗୋଟିଏ - ଗୋଟିଏ କ୍ଷଣ ଗୋଟିଏ - ଗୋଟିଏ ଯୁଗ ଭଳି କଟୁଛି । ସେତେବେଳେ ମଧ ଘରେ ବସି ବସି ଆମ ହୃଦୟ ବ୍ୟାକୁଳ ହେଉଥାଏ, ଯେ କେଉଁଠାରେ ଆପଣଙ୍କ ପାଦରେ ଗୋଡ଼ି, ପଥର ତଥା କଣ୍ଟା ପଶି ନ ଯାଉ । ସନ୍ଧ୍ୟାବେଳରେ ଆପଣ ଯେତେବେଳେ ଫେରି ଆସନ୍ତି, ଏବଂ ଆମକୁ ଆପଣଙ୍କର ଦର୍ଶନ ହୋଇଥାଏ, ସେତେବେଳେ ଯଦି ଆମର ପଲକ ପଡ଼ିବାକୁ ଲାଗେ ତ ଆମେ ବ୍ରହ୍ମାଜୀଙ୍କୁ ମଧ ଦୋଷ ଦେବାକୁ ଆରମ୍ଭ କରୁ ଯେ ଏ କିପରି ତ ଆମେ ବ୍ରହ୍ମାଜୀଙ୍କୁ ମଧ ଦୋଷ ଦେବାକୁ ଆରମ୍ଭ କରୁ ଯେ ଏ କିପରି ଜଡ଼ ବ୍ରହ୍ମା ଯେ ସେ ପଲକଗୁଡ଼ିକୁ ଏପରି ନିର୍ମାଣ କରିଛନ୍ତି ଯେ ତାହା ବାରମ୍ବାର ପଡୁଛି-

ଉଠୁଛି । ନିମିଷୋନ୍ମେଷ । ପତି, ପୁତ୍ର, ଭାଇ, ଭଉଣୀ ଆଦି ସମସ୍ତ ସମ୍ବନ୍ଧକୁ ଭାଙ୍ଗି ଦେଇ ଆମେ ଆପଣଙ୍କ ପାଖକୁ ଆସିଛୁ । କଣ ଏହା କୌଣସି ସାମାନ୍ୟ କଥା ? **"ଅତି ବିଲଂଘ୍ୟ"** ଏହି ସମ୍ବନ୍ଧକୁ ବା ସେମାନଙ୍କର ଆଜ୍ଞାକୁ ଲଂଘନ କରିବା ବଡ଼ କଠିନ ହୋଇଥାଏ । କିନ୍ତୁ ଆମେ ତାହା ମଧ୍ୟ କରି ଦେଇଛୁ । ପରନ୍ତୁ ଆପଣ କିପରି କପଟୀ ଅଟନ୍ତି ? ନିଜେ ନିଜକୁ ଆମ ପାଖରୁ ଅଲଗା କରି ଅନ୍ତର୍ଦ୍ଧାନ ହୋଇଗଲେ, ଆପଣଙ୍କର ଆମ ପ୍ରତି ସାମାନ୍ୟ ମାତ୍ର ମଧ୍ୟ ଦୟା ଆସୁନାହିଁ ? ଅନ୍ତିମ ଶ୍ଳୋକରେ ସେମାନେ କହୁଛନ୍ତି-

**ୟତ୍ତେ ସୁଜାତଚରଣାମ୍ବୁରୁହଂ ସ୍ତନେଷୁ**
**ଭୀତାଃ ଶନୈଃ ପ୍ରିୟ ଦଧୀମହି କର୍କଶେଷୁ ।**
**ତେନାଟବୀମଟସି ତଦ୍ ବ୍ୟଥତେ ନ କିଂସ୍ୱିତ୍**
**କୂର୍ପାଦିଭିର୍ଭ୍ରମତି ଧୀର୍ଭବଦାୟୁଷାଂ ନଃ ॥ (୧୦.୩୧.୧୯)**

ଭଗବାନ ଆପଣଙ୍କର ଏହି ଚରଣ କମଳ ଏତେ କୋମଳ ଯେ, ତାକୁ ଆମେ ନିଜର ବକ୍ଷ ସ୍ଥଳରେ ରଖିବାକୁ ମଧ୍ୟ ଡରୁଛୁ, କାହିଁକି ନା ଆମକୁ ଲାଗୁଛି - ଆମର ବକ୍ଷସ୍ଥଳ ବହୁତ କଠିନ ଅଟେ । ଯେଉଁ ଚରଣକୁ ଆମ ବକ୍ଷସ୍ଥଳରେ ରଖିବାକୁ ମଧ୍ୟ ଆମର ସଂକୋଚ ହେଉଛି, ଯେ ତାକୁ (ଚରଣ କମଳକୁ) କଷ୍ଟ ହେବ, ସେହି ଚରଣରେ ଆପଣ ଏହି ଘୋର ରାତ୍ରି ସମୟରେ କଣ୍ଟା, ପଥର ଉପରେ ବୁଲୁଛନ୍ତି, ତଦ୍ୱାରା ଆମର ହୃଦୟ କିପରି ବ୍ୟାକୁଳିତ ହେଉଥିବ, ତାକୁ କେତେ ପୀଡ଼ା ହେଉଥିବ, କେତେ କଷ୍ଟ ହେଉଥିବ, କଣ ଆପଣଙ୍କୁ ଏହାର କିଛି ଅନୁମାନ ଅଛି ? କ'ଣ ଆପଣଙ୍କୁ ଏହି କଥା ବୁଝାପଡୁ ନାହିଁ ?

ଯଦି ଆମେ ଗୋପିମାନଙ୍କର ପ୍ରେମକୁ ବୁଝିପାରିବୁ ତ ଏହି ଗୋପି-ଗୀତାର ଗୋଟିଏ ଗୋଟିଏ ଶ୍ଳୋକରେ ଏପରି ଅନେକ ସୁନ୍ଦର ଭାବ ଭରି ରହିଛି, ତାହା ଆମକୁ ପ୍ରାପ୍ତ ହେବ। ତେବେ ସେମାନେ ଏହିଭଳି ଗାଇବାକୁ ଲାଗିଲେ, ଏବଂ ପୁଣି ଯେତେବେଳେ ସେମାନେ ଅଧୀର ଅଧୈର୍ଯ୍ୟ ହୋଇପଡ଼ିଲେ **"ରୁରୁଦଃ ସୁସ୍ୱରଂ ରାଜନ୍ କୃଷ୍ଣଦର୍ଶନଲାଲସାଃ"** (୧୦.୩୨.୧) ସେମାନେ କାନ୍ଦିବାକୁ ଲାଗିଲେ । ଜୀବର ଯେତେବେଳେ ଏପରି ସ୍ଥିତି ହୋଇଯାଏ ଯେ ସେ ଆଉ ରହିପାରେ ନାହିଁ, ସେତେବେଳେ ସେ ଉଚ୍ଚ ସ୍ୱରରେ କାନ୍ଦିବାକୁ ଲାଗେ । ତେବେ ଏଠାରେ ଯେତେବେଳେ ଗୋପିମାନେ କାନ୍ଦିବାକୁ ଲାଗିଲା - **"ତାସାମାବିରଭୂଚ୍ଛୌରିଃ ସ୍ମୟମାନମୁଖାମ୍ବୁଜଃ"** (୧୦.୩୨.୨)

ସେତେବେଳେ ଭଗବାନ ପ୍ରକଟ ହୋଇଗଲେ । ଧ୍ୟାନ ରଖିବେ, ଭଗବତ୍ କଥା ଅଧିକ ହସିବା ନିମନ୍ତେ ହୋଇନଥାଏ । କାନ୍ଦିବା ନିମନ୍ତେ ହୋଇଥାଏ । ନିଜ ଭିତରୁ କ୍ରନ୍ଦନ ଆସିବା ଉଚିତ୍ ଏବଂ ସେହି କ୍ରନ୍ଦନ ଦ୍ୱାରା ଯେତେ ଅଭିମାନ ହୋଇଥିଲେ ମଧ୍ୟ ତାହା ସବୁ ସମ୍ପୂର୍ଣ୍ଣ ରୂପେ ନଷ୍ଟ ହୋଇଯିବା ଉଚିତ୍ । ତାପରେ ଦେଖନ୍ତୁ ଭଗବାନ କିପରି ପ୍ରକଟ ହେଉଛନ୍ତି । ଏପରି ସୁନ୍ଦର ଭଗବାନ ଏଠାରେ ପ୍ରକଟିତ ହେଲେ ।

**ଜହୁର୍ବିରହଜଂ ତାପଂ ପ୍ରାଜ୍ଞଂ ପ୍ରାପ୍ୟ ଯଥା ଜନାଃ ॥ (୧୦.୩୨.୯)**

ଅନ୍ୟ ସାଧକଗଣ, ପରମାତ୍ମାଙ୍କୁ ଅନୁଭବ କରି ଯେଉଁଭଳି ସମସ୍ତ ଦୁଃଖକୁ ଭୁଲିଯାଆନ୍ତି, ସେହିଭଳି ଭଗବାନଙ୍କୁ ପାଇ ଗୋପିମାନଙ୍କର ସମସ୍ତ ଦୁଃଖ ଦୂର ହୋଇଗଲା । ଦେଖନ୍ତୁ, ଏହି ପ୍ରେମ ବଡ଼ ବିଲକ୍ଷଣ ହୋଇଥାଏ, ବଡ଼ ବିଚିତ୍ର ଅଟେ । ଯେତେବେଳେ ଭଗବାନ ସମ୍ମୁଖରେ ନ ଥାଆନ୍ତି ତ ସେମାନେ ସମସ୍ତେ ତାଙ୍କର ବିୟୋଗରେ କାନ୍ଦୁଛନ୍ତି, ବିଳାପ କରୁଛନ୍ତି ଯେ କାହିଁକି ସମ୍ମୁଖକୁ ଆସୁନାହାନ୍ତି, ଏବଂ ଯେତେବେଳେ ପ୍ରକଟିତ ହେଉଛନ୍ତି ତ ସେମାନେ ସେତେବେଳେ ତାଙ୍କ ସହିତ କଳି କରିବାକୁ ଆରମ୍ଭ କରିଥାଆନ୍ତି ।

ଏବେ ଏଠାରେ ଭଗବାନ ପ୍ରକଟ ହେଲା ପରେ- **"ସଂସ୍ତୁତ୍ୟ'** ସେମାନେ ପ୍ରଥମେ ତାଙ୍କର ସ୍ତୁତି କରୁଛନ୍ତି **"ଇଷତ୍‌କୁପିତା ବଭାଷିରେ'** ଏବଂ ଟିକିଏ କ୍ରୋଧ ଦେଖାଇ ସେମାନେ ତାଙ୍କ ସହିତ କଥା କହୁଛନ୍ତି । ଭଗବାନ କହୁଛନ୍ତି, "ମୁଁ ଆସିଲେ ତୁମେ ସବୁ କଳି କରିବାକୁ ଆରମ୍ଭ କରୁଛ । ମୁଁ ଯାଉଛି । "ନାହିଁ, ନାହିଁ । ଯାଆନ୍ତୁ ନାହିଁ। ଭଗବାନ୍ ! ଗୋଟିଏ ପ୍ରଶ୍ନ ଅଛି । ଆପଣ ତାର ଉତ୍ତର ଦେବେ ?'' ଭଗବାନ କହିଲେ, "ହଁ, ଦେବି ।" ପ୍ରଶ୍ନଟି ବଡ଼ ସୁନ୍ଦର ଏବଂ ଭଗବାନ ମଧ୍ୟ ତାର ଉତ୍ତର ଅତି ସୁନ୍ଦର ଭାବରେ ଦେଲେ । ସେମାନେ କହୁଛନ୍ତି - **"ଭଜତୋନୁଭଜନ୍ତ୍ୟେକ'** ଜଗତରେ ଆମେ ଦେଖୁଛୁ ଯଦି ଜଣେ ଜଣକୁ ପ୍ରେମ କରୁଛି, ତ ସେ ମଧ୍ୟ ତା ବଦଳରେ ତାକୁ ପ୍ରେମ କରେ । ଏହାର ବିପରୀତ **"ଏକ ଏତଦ୍‌ବିପର୍ୟ୍ୟୟମ୍'** କେହି କେହି ଏପରି ଥାଆନ୍ତି ଯେ ପ୍ରେମ କରୁଥିବା ବ୍ୟକ୍ତିକୁ ତ ସେ ପ୍ରେମ କରନ୍ତି ପୁଣି ପ୍ରେମ କରୁ ନ ଥିବା ବ୍ୟକ୍ତିକୁ ମଧ୍ୟ ସେ ପ୍ରେମ କରନ୍ତି । କିଛି ଲୋକ ଏହି ଦୁଇ ପ୍ରକାର ବ୍ୟକ୍ତିମାନଙ୍କଠାରୁ ସ୍ୱତନ୍ତ୍ର ଥାଆନ୍ତି ।

**ନୋଭୟାଂଶ୍ଚ ଭଜନ୍ତ୍ୟେକ ଏତନ୍ନୋ ବ୍ରୂହି ସାଧୁ ଭୋଃ ॥ (୧୦.୩୨.୧୬)**

ଯେ କି ନା ପ୍ରେମ କରୁଥିବା ବ୍ୟକ୍ତିକୁ ପ୍ରେମ କରନ୍ତି ନା ପ୍ରେମ ନ କରୁଥିବା ବ୍ୟକ୍ତିକୁ ପ୍ରେମ କରନ୍ତି । ତେବେ ତିନି ପ୍ରକାର ଲୋକ ହେଲେ, ପ୍ରେମ କରୁଥିବା ବ୍ୟକ୍ତିକୁ ପ୍ରେମ କରିବା, ପ୍ରେମ ନ କରୁଥିବା ବ୍ୟକ୍ତିକୁ ମଧ୍ୟ ପ୍ରେମ କରିବା ଏବଂ ଯେଉଁ ବ୍ୟକ୍ତି ପ୍ରେମ କରୁଥିବା ଅଥବା ପ୍ରେମ ନ କରୁଥିବା ଦୁଇ ପ୍ରକାର ବ୍ୟକ୍ତିମାନଙ୍କୁ ପ୍ରେମ ନ କରନ୍ତି - ଏବେ ଏମାନଙ୍କ ମଧ୍ୟରୁ ଆପଣଙ୍କୁ କେଉଁ ବ୍ୟକ୍ତି ଭଲ ଲାଗନ୍ତି ? ଅର୍ଥାତ ସେମାନଙ୍କର ଏତିକି କହିବା କଥା ଯେ - ଆମେ ଆପଣଙ୍କୁ ଏତେ ପ୍ରେମ କରୁଛୁ, କିନ୍ତୁ ଆପଣ ଆମ୍ଭମାନଙ୍କୁ ତିଳେ ହେଲେ ପ୍ରେମ କରୁନାହାନ୍ତି । ଆମର ଏକାଙ୍ଗୀ ପ୍ରେମ ଚାଲୁଛି । ଭଗବାନ କହୁଛନ୍ତି -

**ମିଥୋ ଭଜନ୍ତି ଯେ ସଖ୍ୟଃ ସ୍ୱାର୍ଥୈକାନ୍ତୋଦ୍ୟମା ହିତେ ॥ (୧୦.୩୨.୧୭)**

ମୋତେ କେହି ପ୍ରେମ କରୁଛି, ସେଥିପାଇଁ ମୁଁ ତାକୁ ପ୍ରେମ କରିବି, ଏହା ତ ସ୍ୱାର୍ଥୀ ପ୍ରେମ ଅଟେ ।

**ନ ତତ୍ର ସୌହୃଦଂ ଧର୍ମଃ ସ୍ୱାର୍ଥାର୍ଥଂ ତଦ୍ଧି ନାନ୍ୟଥା ॥ (୧୦.୩୨.୧୭)**

ଏଭଳି ବ୍ୟକ୍ତି କେବଳ ନିଜ ସ୍ୱାର୍ଥ ପାଇଁ ପ୍ରେମ କରନ୍ତି । ନା ସେଥିରେ କିଛି ଧର୍ମ ଅଛି ନା ଅଛି କୌଣସି ସୁହୃଦୟତା । ଆଚ୍ଛା, ଏବେ ଦ୍ୱିତୀୟ ହେଉଛନ୍ତି - ଯେଉଁମାନେ ପ୍ରେମ ନ କରିବା ଲୋକମାନଙ୍କୁ ମଧ୍ୟ ପ୍ରେମ କରନ୍ତି । ଏଭଳି ଲୋକ କେଉଁମାନେ ଅଟନ୍ତି ?

**ଭଜନ୍ତ୍ୟଭଜତୋ ଯେ ବୈ କରୁଣାଃ ପିତରୋ ଯଥାଃ ॥ (୧୦.୩୨.୧୮)**

କୁହାଯାଏ, ଏମାନେ କରୁଣାଶୀଳ ତଥା ସଜ୍ଜନ ଲୋକ ଅଟନ୍ତି । ଯେପରିକି ମାତା-ପିତା ନିଜ ପିଲାମାନଙ୍କୁ ପ୍ରେମ କରିଥାଆନ୍ତି, କିନ୍ତୁ ଏପରି ହୋଇପାରେ ପିଲାଟି ତାର ପିତାକୁ ପ୍ରେମ ନ କରିପାରେ । ପ୍ରେମ କରୁଥିବା ବ୍ୟକ୍ତିକୁ ମଧ୍ୟ ଯେ ପ୍ରେମ କରେ ନାହିଁ, ତାଙ୍କୁ କ'ଣ କହିବା ? ତାକୁ ତ ବଡ଼ କୃତଘ୍ନ କୁହାଯାଏ । କିନ୍ତୁ ତଥାପି ମଧ୍ୟ ଯେଉଁ ବ୍ୟକ୍ତି ପ୍ରେମ ନ କରୁଥିବା ବ୍ୟକ୍ତିକୁ ମଧ୍ୟ ପ୍ରେମ କରେ ଅନ୍ୟ କାହାକୁ ପ୍ରେମ କରେ ନାହିଁ ତେବେ ତାହା ହେଉଛି କରୁଣାଶୀଳ ପ୍ରେମ । ପୁଣି -

**ଭଜତୋପି ନ ବୈ କେଚିଦ୍ ଭଜନ୍ତ୍ୟଭଜତଃ କୁତଃ ।**

**ଆତ୍ମାରାମା ହ୍ୟାପ୍ତକାମା ଅକୃତଜ୍ଞା ଗୁରୁଦ୍ରୁହଃ ॥ (୧୦.୩୨.୧୯)**

ଯେ ପ୍ରେମ କରୁଥିବା ବ୍ୟକ୍ତିକୁ ତଥା ପ୍ରେମ ନ କରୁଥିବା ବ୍ୟକ୍ତିକୁ, ଦୁହିଁଙ୍କୁ ପ୍ରେମ କରୁନାହିଁ, ସେମାନେ ଚାରିପ୍ରକାର ହୋଇଥାଆନ୍ତି । ପ୍ରଥମରେ - ଯାହାର ସମ୍ମୁଖରେ କୌଣସି ଦ୍ୱୈତ ଆଭାସ ହୋଇ ନ ଥାଏ, ସେମାନେ ଅବଧୂତ ଶ୍ରେଣୀର ଲୋକ ହୋଇଥାଆନ୍ତି, ଦ୍ୱିତୀୟରେ - ଯେଉଁମାନେ କୃତକୃତ୍ୟ ହୋଇଗଲେଣି, ଯାହାକୁ ଦ୍ୱୈତ ତ ଦେଖାଯାଉଛି, କିନ୍ତୁ ସେ ସମସ୍ତଙ୍କଠାରେ ପରମାତ୍ମାଙ୍କୁ ହିଁ ଦେଖୁଥାଏ, ତୃତୀୟରେ - ଯେ ଜାଣେ ନାହିଁ ଯେ ତାକୁ କିଏ ପ୍ରେମ କରୁଛି କି ନାହିଁ, ଚତୁର୍ଥରେ - ସେମାନେ ବଡ଼ ପାପୀ ହୋଇଥାଆନ୍ତି ଏବଂ ନିତ୍ୟାନ୍ତ ସ୍ୱାର୍ଥୀ ହୋଇଥାଆନ୍ତି ।

ଭଗବାନଙ୍କର ଉତ୍ତରର ସାରକଥା ଏତିକି ଯେ - ପ୍ରେମ କରୁଥିବା ବ୍ୟକ୍ତିକୁ ପ୍ରେମ କରିବାବାଲା "ସ୍ୱାର୍ଥୀ' ଅଟେ, ପ୍ରେମ ନ କରୁଥିବା ବ୍ୟକ୍ତିକୁ ମଧ୍ୟ ପ୍ରେମ କରୁଥିବା ବ୍ୟକ୍ତି "କରୁଣାଶୀଳ ପୁରୁଷ' ଅଟେ ଏବଂ ଯେ ଦୁହିଁଙ୍କୁ ମଧ୍ୟ (ପ୍ରେମ କରୁଥିବା ବ୍ୟକ୍ତି ଓ ପ୍ରେମ ନ କରୁଥିବା ବ୍ୟକ୍ତିକୁ) ପ୍ରେମ କରେ ନାହିଁ, ସେ ବ୍ୟକ୍ତି "ପାପୀ' ଅଥବା ପୁଣି "ଆତ୍ମାରାମ, ଆପ୍ତକାମ ଅଥବା "ଅକୃତଜ୍ଞ' । ଭଗବାନ କହୁଛନ୍ତି - ମୁଁ ଏ ସମସ୍ତ ମଧ୍ୟରୁ କୌଣସି ଶ୍ରେଣୀ ତଥା ବର୍ଗରେ ଆସେ ନାହିଁ ।

**ନାହଂ ତୁ ସଖ୍ୟୋ ଭଜତୋପି ଜନ୍ତୂନ୍**

**ଭଜାମ୍ୟଭିମୀଷାମନୁବୃତ୍ତିବୃତ୍ତୟେ ।**

**ଯଥାଧନୋ ଲବ୍ଧଧନେ ବିନଷ୍ଟେ**

**ତଚ୍ଚିନ୍ତୟାନ୍ୟନ୍ନିଭୃତୋ ନ ବେଦ ॥ (୧୦.୩୨.୨୦)**

ଭଗବାନ କହୁଛନ୍ତି - ମୁଁ ତ ସମସ୍ତଙ୍କୁ ପ୍ରେମ କରୁଛି । ସେମାନେ ଯାହା କହୁଛନ୍ତି- ମିଥ୍ୟା । ମିଥ୍ୟା ନମ୍ବର ଏକ । କିପରି ? ଯଦି ଆପଣଙ୍କର ଆମ ପ୍ରତି ସାମାନ୍ୟ ପ୍ରେମ ଥାଆନ୍ତା, ତେବେ ଆମକୁ ଛାଡ଼ିକରି କାହିଁକି ଚାଲିଯାଉଛନ୍ତି ? ଭଗବାନ ପୁଣି କହୁଛନ୍ତି, ପ୍ରେମ କରୁଥିବା ବ୍ୟକ୍ତିକୁ ମଧ୍ୟ ମୁଁ ପ୍ରେମ କରେ ନାହିଁ - କେବେ କେବେ ଏଭଳି ଜଣାପଡ଼େ, ତାହା କେବଳ ସେଇଥିପାଇଁ ଯେ, ମୁଁ ଚାହୁଁଛି ମୋ ପ୍ରତି ସେମାନଙ୍କର ପ୍ରେମ ଆହୁରି ବଢ଼ିଯାଉ । ସେ କେବଳ ମୋହରି ଭିତରେ ହିଁ ବୁଡ଼ି ରହୁ । "**ଯଥାଧନୋ ଲବ୍ଧଧନେ ବିନଷ୍ଟେ ତଚ୍ଚିନ୍ତୟାନ୍ୟନ୍ନିଭୃତୋ ନ ବେଦ**" ଯେଉଁଭଳି ଭାବରେ କୌଣସି

ଦରିଦ୍ର ଲୋକକୁ ବହୁତ ପଇସା ମିଳିଯାଏ ଏବଂ ମିଳିବାପରେ ପୁଣି ନଷ୍ଟ ହୋଇଯାଏ, ତ ସେ କେତେ ବ୍ୟାକୁଳ ହୋଇଯାଏ ? ପୁଣି ଦିନ ରାତି ତାକୁ ହିଁ ଚିନ୍ତନ କରୁଥାଏ । ସେଥିପାଇଁ, ତୁମ ସମସ୍ତଙ୍କୁ ମଧ୍ୟ ଥରେ ପ୍ରାପ୍ତ ହେଲା ପରେ ପୁଣି ମୁଁ ଲୁପ୍ତ ହୋଇଯାଇଥିଲି, ଯଦ୍ଦ୍ୱାରା କି ତୁମ୍ଭେମାନେ ନିରନ୍ତର ମୋର ହିଁ ଧ୍ୟାନ କରି ମୋ ଭିତରେ ହି ବୁଡ଼ିଯାଇ ପାରିବ ଏବଂ ମୋତେ ପ୍ରାପ୍ତ କରିପାରିବ । ମୁଁ ତ ତୁମ୍ଭମାନଙ୍କ ସଙ୍ଗରେ ମିଳିବାକୁ ଚାହୁଁଛି । ଦ୍ୱିତୀୟ କଥା ହେଉଛି, ଏଭଳି କୁହ ନାହିଁ ଯେ ମୁଁ କେଉଁ ଦୂରକୁ ଚାଲିଯାଇଥିଲି । ଏଠାରେ ନ ଥିଲି । ମୁଁ ଏହିଠାରେ ହିଁ ଥିଲି । ତୁମେ ଯେଉଁ ଯେଉଁ ସ୍ଥାନକୁ ଯାଉଥିଲ, ମୁଁ ସେହି ସେହି ସ୍ଥାନରେ ଥିଲି । ପୁଣି ତୁମେ ସମସ୍ତେ ଯାହା ସବୁ କହୁଥିଲ, ତାହା ସବୁ ମୁଁ ଶୁଣୁଥିଲି । ତୁମେ ଯାହା ସବୁ କରୁଥିଲ, ସେ ସମସ୍ତ ମଧ୍ୟ ଦେଖୁଥିଲି । ମୁଁ ସବୁ ଜାଣିଛି । ମୁଁ କାହାକୁ ଛାଡ଼େ ନାହିଁ, ମୁଁ ତ ସମସ୍ତଙ୍କୁ ପ୍ରେମ କରେ । ତେବେ ପୁଣି, ନିଜର ସବୁ କିଛି ତ୍ୟାଗ କରି ଯେଉଁମାନେ ମୋ ନିକଟକୁ ଆସିଗଲେଣି, ମୁଁ ଭଲା ସେମାନଙ୍କୁ କିପରି ଛାଡ଼ି ପାରିବି ?

**ଏବଂ ମଦର୍ଥୋଜ୍ଝିତଲୋକବେଦ -**
**ସ୍ୱାନାଂ ହି ବୋ ମୟ୍ୟନୁବୃତ୍ତୟେଽବଲାଃ ।**
**ମୟା ପରୋକ୍ଷଂ ଭଜତା ତିରୋହିତଂ**
**ମାସୂୟିତୁଂ ମାର୍ହଥ ତତ୍ ପ୍ରିୟଂ ପ୍ରିୟାଃ ॥ (୧୦.୩୨.୨୧)**

ତୁମେ ସମସ୍ତେ ତ ସବୁକିଛି ଛାଡ଼ି ମୋ ପାଖକୁ ଆସିଛ । ମୁଁ ତୁମ୍ଭମାନଙ୍କୁ କିପରି ଛାଡ଼ି ପାରିବି ? ତୁମ୍ଭମାନଙ୍କର ମନରେ ଏପରି ବିଚାର ଆସୁଛି ମଧ୍ୟ କିପରି ? ଏପରି ଦେଖିଲେ ମହାନ୍ ମହାନ ସାଧୁମାନଙ୍କୁ ମଧ୍ୟ ସରଳତାରେ ପ୍ରାପ୍ତ ହୁଏ ନାହିଁ । କିନ୍ତୁ ତୁମ୍ଭେମାନେ ସବୁ କିଛି ଛାଡ଼ିଦେଇଛ, ତେଣୁ ମୁଁ ତୁମର ହୋଇଗଲି, ତୁମ୍ଭେମାନେ ମୋ ହୋଇଗଲ । କେବଳ ଏତିକି ନୁହେଁ, ଭଗବାନ ତ ସେମାନଙ୍କୁ ଏପରି ମଧ୍ୟ କହିଦେଲେ ଯେ ତୁମ୍ଭମାନଙ୍କର ତ୍ୟାଗ ଏପରି ଯେ ମୁଁ ତାର ଋଣ କେବେ ଶୁଝିପାରିବି ନାହିଁ । ମୁଁ ତ ଜନ୍ମ-ଜନ୍ମ ପାଇଁ ତୁମ୍ଭମାନଙ୍କର ଋଣୀ ହୋଇ ରହିଲି । ଗୋପିମାନେ ଯେତେବେଳେ ଏପରି ବଚନ ଶୁଣିଲେ ତ ସେମାନଙ୍କର ଯେତେ ଶୋକ ଥିଲା, ସେମାନଙ୍କ ମନରେ ଯେଉଁ ଅଭିଯୋଗ ଥିଲା ତାହା ସବୁ ଦୂର ହୋଇଗଲ । ସେତେବେଳେ ଭଗବାନ ସମସ୍ତଙ୍କ ସହିତ ରାସକ୍ରୀଡ଼ା ପ୍ରାରମ୍ଭ କଲେ ।

**ରାସୋତ୍ସବଃ ସମ୍ପ୍ରବୃତ୍ତୋ ଗୋପୀମଣ୍ଡଳମଣ୍ଡିତଃ**
**ଯୋଗେଶ୍ୱରେଣ କୃଷ୍ଣେନ ତାସାଂ ମଧ୍ୟେ ଦ୍ୱୟୋର୍ଦ୍ୱୟୋଃ । (୧୦.୩୩.୩)**

ପ୍ରଥମେ ଦୁଇ-ଦୁଇ ଜଣ ଗୋପିମାନଙ୍କ ମଝିରେ ଜଣେ - ଜଣେ ଭଗବାନ ଶ୍ରୀକୃଷ୍ଣ ଅଛନ୍ତି । ପୁଣି ଜଣେ - ଜଣେ ଗୋପିଙ୍କ ସହିତ ଜଣେ - ଜଣେ ଶ୍ରୀକୃଷ୍ଣ ଅଛନ୍ତି। ଏହିପରି ଭିନ୍ନ ଭିନ୍ନ ରୀତିରେ ନୃତ୍ୟ ହେଉଛି । ଏବେ ଏପରି ଶଙ୍କା କରନ୍ତୁ ନାହିଁ ଯେ ଭଗବାନ ଏହି ସ୍ତ୍ରୀମାନଙ୍କ ସହିତ କିପରି ଏ ଲୀଳା କରୁଛନ୍ତି ? ଶୁକଦେବ ଜୀ କହିଲେ-

**ଏବଂ ପରିଷ୍ୱଙ୍ଗକରାଭିମର୍ଶ -**
**ସ୍ନିଗ୍ଧେକ୍ଷଣୋଦ୍ଦାମବିଲାସହାସୈଃ ।**
**ରେମେ ରମେଶୋ ବ୍ରଜସୁନ୍ଦରୀଭିଃ-**
**ଯଥାର୍ଭକଃ ସ୍ୱପ୍ରତିବିମ୍ବବିଭ୍ରମଃ ॥ (୧୦.୩୩.୧୭)**

ଯଦିବା "ରେମେ ରମେଶୋ ବ୍ରଜସୁନ୍ଦରୀଭିଃ' ଭଗବାନ ରମେଣ ବ୍ରଜର ସୁନ୍ଦରୀମାନଙ୍କ ସହିତ ରମଣ କରୁଛନ୍ତି, ତଥାପି ତାଙ୍କର ଏହି ରମଣ ସାମାନ୍ୟ ନୁହେଁ । ଏଠାରେ ଜଣେ ପୁରୁଷ ଅନ୍ୟ ସ୍ତ୍ରୀମାନଙ୍କ ସହିତ ନୃତ୍ୟ କରୁଛି - ଏପରି ବୁଝିବା ଆଦୌ ଉଚିତ୍ ନୁହେଁ । ତେବେ ପୁଣି ତାଙ୍କର ଏହି ରମଣ କେଉଁଭଳି ? ଯେପରିକି, କୌଣସି ଶିଶୁ ଅନେକ ଦର୍ପଣରେ ଅଥବା ଜଳପାତ୍ରରେ ନିଜର ହିଁ ପ୍ରତିବିମ୍ବ ଦେଖି, ତାଙ୍କ ସହିତ ଖେଳିବାକୁ ଲାଗିଲାଣି । ଟିକିଏ ଭାବନ୍ତୁ, ସେହି ଶିଶୁଟି କାହା ସହିତ ଖେଳୁଛି ? ସେ ତ ବିମ୍ବ-ପ୍ରତିବିମ୍ବ ଅଟେ, ତାକୁ ଆମେ ଭିନ୍ନ-ଭିନ୍ନ ବୁଝୁଛୁ, ବାସ୍ତବରେ ତାହା ଭିନ୍ନ-ଭିନ୍ନ ନୁହେଁ ।

ଶ୍ରୀ ଶୁକଦେବଜୀ ଏଠାରେ ଅତି ସୁନ୍ଦର କଥା କହୁଛନ୍ତି **"ରେମେ ରମେଶୋ ବ୍ରଜ ସୁନ୍ଦରୀ ଭିର୍ଯ୍ୟଥାର୍ଭକଃ ସ୍ୱପ୍ରତିବିମ୍ବ ବିଭ୍ରମଃ'** (୧୦.୩୩.୧୭) ଏଠାରେ ମଧ୍ୟ ଭଗବାନ ନିଜର ପ୍ରତିବିମ୍ବ ସହିତ ଖେଳୁଛନ୍ତି । ତେବେ ସେଠାରେ କେଉଁଭଳି ବିକାର ଆସିଲା, କେଉଁ ଅଧର୍ମ ହେଲା, କେଉଁ ପାପ ଆସିଲା ଏବଂ କେଉଁ କଥା କ'ଣ ହୋଇଗଲା ? ରାସଲୀଳାର ରହସ୍ୟ ତ ଏହିଠାରେ ଆସିଗଲା ।

ଏବେ ସାମାନ୍ୟ ବିଚାର କରନ୍ତୁ, ନିଜ ମଧ୍ୟରେ ମଧ୍ୟ ସମସ୍ତ ବୃତ୍ତିଗୁଡ଼ିକ ଚୈତନ୍ୟର ଆଖପାଖରେ ବୁଲୁଥାଆନ୍ତି କି ନାହିଁ ? କେତୋଟି ବୃତ୍ତି ହୋଇଥାଏ ? ଅସଂଖ୍ୟ ବୃତ୍ତି

ହୋଇଥାଏ । ଅନେକ ଲୋକଙ୍କର ଏଥିରେ ସନ୍ଦେହ ହୋଇଥାଏ । ପୁରାଣରେ ଗୋପିମାନଙ୍କର ସଂଖ୍ୟା ୮୮,୦୦୦ ବର୍ଣ୍ଣନ କରାଯାଇଛି, ପୁଣି ଏହା ମଧ୍ୟ କୁହାଯାଇଛି ଯେ ସେଠାରେ କୋଟିଏ ଗାଈ ଏବଂ କୋଟିଏ ବାଛୁରୀ ଥିଲେ । ପୁରାଣରେ ଏହି ପ୍ରକାର ବର୍ଣ୍ଣନ ଆସେ । ଲୋକମାନେ ଯେତେବେଳେ ଗୋକୁଳ-ବୃନ୍ଦାବନ ଦେଖି ଆସନ୍ତି, ତ କହିଥାଆନ୍ତି - ଏହା ତ ଅତି ଛୋଟ ଗୋକୁଳ । ଏଠାରେ ଏତେ ବାଛୁରୀ, ଗାଈ ଏବଂ ଗୋପାଳ, ଏତେ ସବୁ ଗୋପୀ କିପରି ରହୁଥିଲେ ? ଏବେ ସେ ଗୋକୁଳ ହେଉଛି ଏଇଠାରେ, ଏପରି କାହିଁକି ଭାବୁଛନ୍ତି ? ଜଣାନାହିଁ, ଏହି ବିଶ୍ୱରେ କେତେ ଭୌଗୋଳିକ ପରିବର୍ତ୍ତନ ହୋଇଚାଲିଛି । ସମ୍ଭବ ହୋଇପାରେ କିଛି ପୁଣି ବଦଳି ମଧ୍ୟ ଯାଇଥିବ। ଦ୍ୱିତୀୟ କଥା ହେଉଛି- ଭଗବାନଙ୍କର ଲୀଳା ଦେଶ କାଳ ସାପେକ୍ଷ ହୋଇନଥାଏ, ଅର୍ଥାତ୍ ତାହା ଦେଶକାଳ ଉପରେ ଅବଲମ୍ବିତ ହୋଇ ନ ଥାଏ । ଯେପରି ଦେଶ ହୋଇଥିବ, ସେହିପରି ଲୀଳା ହେବ, ଏପରି ହୁଏ ନାହିଁ । ତାଙ୍କୁ ଯେପରି ଲୀଳା କରିବାକୁ ଅଛି, ସେହିପରି ଦେଶ ହୋଇଯାଏ । ତାଙ୍କୁ ଯେତିକି କାଳ ପର୍ଯ୍ୟନ୍ତ ଲୀଳା କରିବାକୁ ହୋଇଥାଏ, କାଳ ସେତିକି ଦୀର୍ଘ ହୋଇଯାଇଥାଏ । ଏଥିପ୍ରତି ଧ୍ୟାନ ରଖିବା ଉଚିତ୍।

ଦେଖନ୍ତୁ, ଆମେ ସମସ୍ତେ ଆମ ନିଜର ହିଁ ଧର୍ମ ନିଜର ହିଁ ମାତା, ପରିମାଣ ଭଗବାନଙ୍କ ସହିତ ତୁଳନାତ୍ମକ ବିବେଚନ କରିଥାଉ । ଏହି ଭୁଲ ଆମଦ୍ୱାରା ବାରମ୍ବାର ହୋଇଥାଏ । ଯେତେବେଳେ ଆମକୁ କିଛି କରିବାକୁ ପଡ଼ିଥାଏ, ତେବେ ଦେଶ-କାଳକୁ ଦେଖି କରିବାକୁ ପଡ଼ିଥାଏ । କିନ୍ତୁ ଭଗବାନଙ୍କ ସହିତ ଏପରି କିଛି ବିବଶତା ହୋଇ ନ ଥାଏ । ଭଗବାନଙ୍କୁ ଯଦି କିଛି କାର୍ଯ୍ୟ କରିବାକୁ ହୁଏ, ତ ତାଙ୍କର ପ୍ରୟୋଜନ ଅନୁସାରେ ଦେଶ ଛୋଟ-ବଡ଼ ହୋଇଯାଇଥାଏ, ସମୟ ଲଘୁ-ଦୀର୍ଘ ହୋଇ ଯାଇଥାଏ । ସବୁ କିଛି ବଡ, ଛୋଟ ଅଥବା ସେ ଯେପରି ଋହାଁନ୍ତି ସେହିପରି ହୋଇଯାଇଥାଏ । ଭଗବାନଙ୍କୁ ଦେଶକାଳର ବନ୍ଧନ ହୋଇପାରେ ନାହିଁ । ଆମ୍ଭେମାନେ ଈଶ୍ୱରଙ୍କର ଅର୍ଥକୁ ଠିକ ରୂପେ ବୁଝି ନାହୁଁ । ଈଶ୍ୱର କାହାକୁ କହନ୍ତି - ତାହା ଆମେ ବୁଝିପାରି ନାହୁଁ ।

ଏବେ ଏକ ଲୌକିକ ଦୃଷ୍ଟାନ୍ତ ନିଅନ୍ତୁ - ଦେଖ, ଆମକୁ କୌଣସି ସ୍ଥାନକୁ ଯିବାର ଅଛି ଏବଂ ଯଦି ଉଡ଼ାଜାହାଜରେ ଯିବାର ଅଛି, ତେବେ ପ୍ରଥମେ ଏହା ଦେଖିବାକୁ ପଡ଼ିବ ଯେ ସେଠାରେ ବିମାନ ବନ୍ଦର ଅଛି କି ନାହିଁ ? ଉଡ଼ାଜାହାଜ ସେଠାକୁ ଯାଉଛି କି ନାହିଁ । କିନ୍ତୁ ଯଦି ପ୍ରଧାନ ମନ୍ତ୍ରୀଙ୍କର ଯିବାର ହୁଏ, ତେବେ ସେଠାରେ ବିମାନ ବନ୍ଦର ନିର୍ମାଣ ହୋଇଥାଏ । ଏଭଳି ହୁଏ ନାହିଁ ଯେ ଯଦି ସେଠାରେ ବିମାନ ବନ୍ଦର

ଥିବ, ତେବେ ହିଁ ଯିବେ । ତାଙ୍କର ଯିବାର ଅଛି, ସେଥିପାଇଁ ସବୁକିଛି ତିଆରି ହୋଇଯିବ । ସାଧାରଣ ମନୁଷ୍ୟ ତଥା ପ୍ରଧାନମନ୍ତ୍ରୀଙ୍କ ମଧ୍ୟରେ ଏହି ପ୍ରଭେଦ ହୋଇଥାଏ । ମଣିଷ ଯଦି ଏହା କରିପାରେ, ତେବେ ଯେ ସର୍ବେଶ୍ୱର ଭଗବାନ ଅଟନ୍ତି ତାଙ୍କ ପାଇଁ ଏହା କଣ କୌଣସି ଚିନ୍ତାର ବିଷୟ ହୋଇପାରେ କି ? ଯେତିକି ସମୟ ଅଥବା କାଳ ବଢ଼ାଇବାକୁ ଥିବ, ସେ ବଢ଼ାଇ ପାରିବେ, ଦେଶ ବଢ଼ାଇବାକୁ ହେବ, ପ୍ରାଣୀମାନଙ୍କୁ ବଢ଼ାଇବାକୁ ହେବ, ଯାହା କିଛି ବଢ଼ାଇବାକୁ ହେବ, ସେ ବଢ଼ାଇ ପାରିବେ । ଅଳ୍ପ କରିବାକୁ ଚାହିଁଲେ ମଧ୍ୟ ଅଳ୍ପ କରିପାରିବେ । ଏ ସବୁର ବିସ୍ତାର ହୋଇପାରିବ, ଏ ସବୁର ସଙ୍କୋଚ ମଧ୍ୟ ହୋଇପାରିବ । ସେଥିପାଇଁ ଏଭଳି ଚିନ୍ତା କରିବା ଉଚିତ୍ ନୁହେଁ ଏବଂ ଏଠାରେ ତ ପୁଣି ଭଗବାନ, ସ୍ୱୟଂ ନିଜ ସହିତ ହିଁ ଖେଳୁଛନ୍ତି ।

**କୃତ୍ୱା ତାବନ୍ତମାତ୍ମାନଂ ଯାବତୀର୍ଗୋପଯୋଷିତଃ ।**

**ରେମେ ସେ ଭଗବାଂସ୍ତାଭିରାତ୍ମାରାମୋଽପି ଲୀଳୟା ॥ (୧୦.୩୩.୨୦)**

ଦେଖନ୍ତୁ, ଭଗବାନ ଆତ୍ମାରାମ ଅଟନ୍ତି । କିନ୍ତୁ ଲୀଳା ଦ୍ୱାରା ପ୍ରଥମେ ତ ଦୁଇ-ଦୁଇ ଗୋପିମାନଙ୍କ ମଝିରେ ଜଣେ ଭଗବାନ ଏବଂ ପୁଣି ସେଠାରେ ଯେତେ ଗୋପୀମାନେ ଥିଲେ, ସେତେ ଭଗବାନ ପ୍ରକଟ ହୋଇଗଲେ, ପ୍ରତ୍ୟେକଙ୍କ ସହିତ ଜଣେ ଜଣେ ଭଗବାନ । ଉପନିଷଦରେ ମଧ୍ୟ କୁହାଯାଇଛି – **"ପ୍ରତିବୋଧବିଦିତଂ ମତମ୍ ଅମୃତତ୍ତ୍ୱଂ ହି ବିନ୍ଦତେ"** (କେନ. ଉପ.୨-୪) ପ୍ରତ୍ୟେକ ବୃତ୍ତିରେ ଚୈତନ୍ୟ ଅଛନ୍ତି । ଦୁଇ ବୃତ୍ତିର ମଝିରେ ମଧ୍ୟ ଚୈତନ୍ୟ ଅଛନ୍ତି । ଅଛନ୍ତି କି ନାହିଁ ? ଏବେ ଏଠାରେ ଦେଖ, ଯେକୌଣସି ବିଷୟ ଦେଖିବାକୁ ହେଲେ, ଏଥିରେ ନିଜ-ନିଜର ଦୃଷ୍ଟି ଆବଶ୍ୟକ ପଡ଼ିଥାଏ । ଏଠାରେ ବିଚାର କରିବା ଉଚିତ୍ ଯେ ଆମର ଧ୍ୟାନ କେଉଁଠାରେ ଅଛି । ଆମ୍ଭେମାନେ ବୃତ୍ତି ଆଡ଼କୁ ଧ୍ୟାନ ଦେଉଛୁ କି ଚୈତନ୍ୟ ଆଡ଼କୁ ? ଭଗବାନ ଶ୍ରୀକୃଷ୍ଣଙ୍କୁ ଏକ ସାଧାରଣ ମନୁଷ୍ୟ ଭଳି ଧରନ୍ତୁ ନାହିଁ । ତାଙ୍କୁ ଆମେ ଦୁଇ ରୂପରେ ଦେଖିପାରିବା । ଗୋଟିଏ ହେଉଛି ଈଶ୍ୱର ରୂପ ଏବଂ ପୁଣି ସେ ହିଁ ବ୍ରହ୍ମ ସ୍ୱରୂପ ମଧ୍ୟ ଅଟନ୍ତି । ତାଙ୍କୁ ଯଦି ବ୍ରହ୍ମ ସ୍ୱରୂପରେ ଦେଖିବା, ତେବେ ଏହି ଲୀଳ ଅତି ସହଜରେ ବୁଝି ହୋଇଯିବ । ତାଙ୍କୁ ଈଶ୍ୱର ରୂପରେ ଦେଖିଲେ ମଧ୍ୟ ଏହା ସହଜରେ ବୁଝି ହୋଇପାରିବ । ତେବେ ଏଠାରେ ଅଧର୍ମର ତ କୌଣସି କଥା ହିଁ ନାହିଁ । ସ୍ୱୟଂ ଭଗବାନ ହିଁ ଯେତେବେଳେ ଅନେକ-ଅନେକ ରୂପରେ ପ୍ରକଟ ହୋଇଗଲେ, ତ ସେ ସ୍ୱୟଂ ନିଜ ସହିତ ତ ଖେଳ କରୁଛନ୍ତି । ବାସ୍ତବରେ, କଥା ଏତିକି ଯେ, ଆମର କୌଣସି ଜ୍ଞାନ ଆଦୌ ନାହିଁ । ଉପନିଷଦ

କହୁଛି - **"ଏକୋହଂ ବହୁସ୍ୟାମ୍"** ମୁଁ ଏକ ଏବଂ ମୁଁ ହିଁ ଅନେକ ହୋଇଯାଏ । ସେହି ଭଗବାନ ଯେ କି ଏକମାତ୍ର ଅଟନ୍ତି, ଅଦ୍ୱିତୀୟ ଅଟନ୍ତି, ସେ ହିଁ ଅନେକ ହୋଇଗଲେଣି, ତେବେ ପୁଣି ଅନେକ ବସ୍ତୁ ବାସ୍ତବରେ ଅନେକ କେଉଁଠି ହେଲା ? **"ସୋକାମୟତ ବହୁସ୍ୟାଂ ପ୍ରଜାୟେୟେତି"** (ତୈ.ଉପ.-୨.୬.୨) ସେହି ବ୍ରହ୍ମ, ଭଗବାନ କାମନା କଲେ ଯେ ମୁଁ ଅନେକ ହେବି । ସମ୍ପୂର୍ଣ୍ଣ ସୃଷ୍ଟିରେ ବର୍ତ୍ତମାନ ସେ ହିଁ ଦେଖାଯାଉଛି ।

ଯେତେବେଳେ ଆମେ ନିଜର ସୀମିତ ଦୃଷ୍ଟିରେ - ଯାହାକି ଏହି ଛୋଟ ଶରୀରରେ କେନ୍ଦ୍ରିତ ହୋଇଥାଏ - ତଦ୍ୱାରା ବିଚାର କରିବାକୁ ଆରମ୍ଭ କରୁ, ସେତେବେଳେ ଏହା ହେଉଛି ମୁଁ, ଏହା ମୋର ଇତ୍ୟାଦି ବୁଝିଥାଉ ଏବଂ ଭଗବାନ ଅଧର୍ମ କଲେ, ଚୋରି କଲେ, ମିଥ୍ୟା କହିଲେ - ଏପରି କହିବାକୁ ଆରମ୍ଭ କରିଦେଉ । ଏମିତି ସବୁ କଣ କହିବା କଥା ? ଜଣେ ସାଧାରଣ ମନୁଷ୍ୟକୁ ଦୋଷ ଦେବା ? ଆଗକୁ ରାଜା ପରୀକ୍ଷିତ ମଧ୍ୟ ଏହିପରି ହିଁ ପ୍ରଶ୍ନ ପଚାରିଛନ୍ତି । ବାସ୍ତବରେ ତ ଆମ ସମସ୍ତଙ୍କ ପାଇଁ ହିଁ ସେ ଏପରି ପ୍ରଶ୍ନ ପଚାରିଛନ୍ତି । ସେ ଜାଣିଥିଲେ ଯେ ପରେ କେହି ମୂଢ଼ତା ହେତୁ ଏପରି ପ୍ରଶ୍ନ କରିବେ । ଅର୍ଥାତ୍ ଆମ ସମସ୍ତଙ୍କର ଶଙ୍କା ନିବାରଣ କରିବା ନିମନ୍ତେ ହିଁ ପରୀକ୍ଷିତ ଜୀ ସେହି ପ୍ରଶ୍ନ କରିଥିଲେ । ଭଗବତ୍ ଗୀତାରେ ମଧ୍ୟ, ଚତୁର୍ଥ ଅଧ୍ୟାୟରେ ଭଗବାନ ଯେତେବେଳେ କହୁଛନ୍ତି ଯେ ଏହି ଜ୍ଞାନକୁ ମୁଁ ସର୍ବପ୍ରଥମେ ବିବସ୍ୱାନଙ୍କୁ ଦେଲି, ତା ପରେ ସେ ମନୁଙ୍କୁ ଦେଲେ, ପୁଣି ମନୁ ଇକ୍ଷ୍ୱାକୁଙ୍କୁ ଦେଲେ, ସେତେବେଳେ ଅର୍ଜୁନ ପଚାରୁଛନ୍ତି - ଭଗବାନ ଆପଣଙ୍କର ଜନ୍ମ ତ ଏହି ନିକଟ ଅତୀତରେ ହୋଇଛି ଏବଂ ସେମାନଙ୍କର ଜନ୍ମ ବହୁ ପୂର୍ବରୁ ହୋଇଥିଲା, ତେବେ ଆପଣ ଏହି ଜ୍ଞାନକୁ ସେମାନଙ୍କୁ କିପରି ଦେଲେ ?

ଭଗବାନ ଶଙ୍କରାଚାର୍ଯ୍ୟ ଜୀ ନିଜ ଭାଷ୍ୟରେ ଲେଖିଛନ୍ତି ଯେ ଏହି ପ୍ରଶ୍ନ ଅର୍ଜୁନ ନିଜ ପାଇଁ ପଚାରି ନାହାନ୍ତି । **"ମୂର୍ଖାଣାଂ ଶଙ୍କା ମାଭୂତ"** ଆଗକୁ ମୂର୍ଖ ଲୋକମାନଙ୍କର ଭଗବାନଙ୍କର ଭଗବତ୍ତା ବିଷୟରେ କୌଣସି ଶଙ୍କା ନ ହେଉ, ସେଥିପାଇଁ ଅର୍ଜୁନ ସେଠାରେ ଏପରି ପ୍ରଶ୍ନ ପଚାରିଛନ୍ତି । ସେତେବେଳେ ଭଗବାନ ନିଜର ଈଶ୍ୱରତ୍ୱ ପ୍ରକଟ କରି କହୁଛନ୍ତି - **"ବହୂନି ମେ ବ୍ୟତୀତାନି ଜନ୍ମାନି"** ଏହା ପୂର୍ବରୁ ମଧ୍ୟ ମୋର ବହୁତ ଥର ଜନ୍ମ ହୋଇଯାଇଛି ।

ଏଠାରେ ମଧ୍ୟ ପରୀକ୍ଷିତ ଯେଉଁ ପ୍ରେମରସରେ ବୁଡ଼ି ରହିଛନ୍ତି, ଭଲା ସେ ଏପରି ପ୍ରଶ୍ନ କାହିଁକି କରିବେ ? କିନ୍ତୁ ଆମ୍ଭମାନଙ୍କର ଏପରି ଶଙ୍କା ହୋଇଥାଏ । ହୋଇଥାଏ

ନା ? ଏହି ଲୌକିକ ଧର୍ମ ପ୍ରଭୃତି ଯାହା ସବୁ କିଛି, ତାହା ଆମ ଭଳି ଭେଦ ଦୃଷ୍ଟି ଥିବା ଲୋକମାନଙ୍କ ନିମନ୍ତେ ଉଦ୍ଦିଷ୍ଟ । ଅଭେଦ ଅଥବା ଅଦ୍ୱୈତ ଦୃଷ୍ଟି ଯୁକ୍ତ ବ୍ୟକ୍ତିମାନଙ୍କ ନିମନ୍ତେ ଏହି ସବୁ ଧର୍ମ ଉଦ୍ଦିଷ୍ଟ ନୁହେଁ, ଏହି କଥାକୁ ଆମେ ଭୁଲି ଯାଉଛନ୍ତି । ଯଦି ଆମେ ସ୍ୱୟଂ ନିଜର ବ୍ୟକ୍ତିଗତ ଧର୍ମକୁ ହିଁ ଦେଖିବା, ତ ବିଦ୍ୟାର୍ଥୀ ଜୀବନରେ ଆମର ଯେଉଁ ଧର୍ମ ହୋଇଥାଏ, ତାହା ଗୃହସ୍ଥାଶ୍ରମରେ ରହିନଥାଏ । ଗୃହସ୍ଥର ଧର୍ମ ବାନପ୍ରସ୍ଥ ଏବଂ ସନ୍ୟାସରେ ମଧ୍ୟ ରହିନଥାଏ । ଗୋଟିଏ ଧର୍ମରେ ଥିବା ବ୍ୟକ୍ତି ନିଜର ଧର୍ମକୁ ଧ୍ୟାନରେ ରଖି ଯଦି ଅନ୍ୟ ବ୍ୟକ୍ତିର ଧର୍ମାଚରଣକୁ ଦେଖେ, ତେବେ ସେ ଅଧର୍ମ କଲା ଭଳି ହିଁ ତାକୁ ଦେଖାଯାଏ । ଏହି ଜଗତରେ ଏହିଭଳି ହିଁ ଚାଲିଛି । ଜଣେ ହିନ୍ଦୁ କୌଣସି ମୁସଲମାନକୁ ଦେଖୁଛି ତ ତାକୁ ଲାଗୁଛି ସେ ବହୁତ ଅଧର୍ମ କରୁଛି, କାରଣ ସେ ତାକୁ (ମୁସଲମାନକୁ) ମଧ୍ୟ ନିଜ ଦୃଷ୍ଟିରେ ହିଁ ଦେଖୁଛି । ମୁସଲମାନଙ୍କୁ ଲାଗୁଛି, ଏମାନେ ବହୁତ ଅଧର୍ମ କରୁଛନ୍ତି, ମୂର୍ତ୍ତି-ପୂଜା କରୁଛନ୍ତି । ତୃତୀୟକୁ ଆଉ କିଛି ହିଁ "ଅଧର୍ମ' ଲାଗୁଛି । ତେବେ ସମସ୍ତେ ନିଜ-ନିଜର ସୀମିତ ଦୃଷ୍ଟିକୁ ନେଇ ବସିଯାଇଛନ୍ତି । ସେହି ଅନୁସାରେ ଅନ୍ୟମାନଙ୍କୁ ଦେଖି ଚାଲିଛନ୍ତି । ଏହି କାରଣରୁ ବସ୍ତୁସ୍ଥିତିକୁ ବୁଝିବା ନିମନ୍ତେ ଭୁଲ ହୋଇଯାଇଥାଏ ଚାଲିଛି ।

ଏବେ ଏଠାରେ, ଆମ୍ଭେମାନେ ମଧ୍ୟ ଯେତେବେ ଜୀବ-ଭାବରେ ବସି ଈଶ୍ୱରଙ୍କ ଆଡ଼କୁ ଚାହୁଁ, ତେବେ ଆମକୁ ଏହିଭଳି ଲାଗିଥାଏ ଯେ ଈଶ୍ୱର ଅଧର୍ମ କରୁଛନ୍ତି । ଧର୍ମ ବିଷୟରେ ମଧ୍ୟ ଲୋକମାନଙ୍କର ନିଜ ନିଜର କଳ୍ପନା ହୋଇଥାଏ, ନିଜ ନିଜର ଧାରଣା ହୋଇଥାଏ । ସେମାନେ ଭାବନ୍ତି, ଆମେ ଯାହା କରୁଛୁ, ତାହା ହିଁ ସତ୍ୟ । ଯଦି ଆମର କହୁଥିବା ଧର୍ମକୁ ପାଳନ କରିବ, ତେବେ ହିଁ ତୁମକୁ ସ୍ୱର୍ଗ ମିଳିବ ।

ଗୋଟିଏ ବିନୋଦପୂର୍ଣ୍ଣ ରୋଚକ କାହାଣୀ ମୁଁ ପଢ଼ିଥିଲି । ଜଣେ ଲୋକର ମୃତ୍ୟୁ ହେଲା । ସେ କ୍ୟାଥାଲିକ ଥିଲା । ଖ୍ରୀଷ୍ଟିୟାନ ମାନଙ୍କର ପ୍ରୋଟେଷ୍ଟେଣ୍ଟ ଏବଂ କ୍ୟାଥାଲିକ୍ - ଏ ଦୁଇଟି ମୁଖ୍ୟ ବିଭେଦ ଅଟନ୍ତି । ସେ ଦିନ କେଜାଣି କିପରି ଦେବଦୂତଙ୍କ ପାଖରେ କିଛି ସମୟ ଥିଲା, ସେ ଦିନ ତାଙ୍କର ବିଶେଷ କାର୍ଯ୍ୟ ନ ଥିଲା । ସେ ମୃତ ବ୍ୟକ୍ତିକୁ କହିଲେ- ତୁମେ ତ ନୂଆ, ଚାଲ ମୁଁ ତୁମରକୁ ସ୍ୱର୍ଗ ଦେଖାଇ ଆଣିବି । ସେମାନେ ସାଙ୍ଗହୋଇ ଚାଲିବାକୁ ଲାଗିଲେ । ଗୋଟିଏ ସ୍ଥାନରେ ଜଣେ ବ୍ୟକ୍ତି ବସିଥିବାର ଦେଖାଗଲା, ତ ସେ ପଚାରିଲା ଏ କିଏ ? (ଦେବଦୂତ) କହିଲେ, ଏ ଜଣକ ବୌଦ୍ଧଧର୍ମୀ ଅଟନ୍ତି । ବୌଦ୍ଧଧର୍ମ ପାଳନ କରୁଥିବା ବ୍ୟକ୍ତି । ପୁଣି ସେ ଆଉ ଜଣକୁ ଦେଖି ପଚାରିଲାନ୍ତ ସେ

କିଏ ଅଟନ୍ତି ? ସେ ହିନ୍ଦୁ ଅଟନ୍ତି, ପୁଣି ଏ ଜଣକ ମୁସଲମାନ ଅଟନ୍ତି । ପୁଣି ଗୋଟିଏ ପାଚେରୀ ଦେଖାଗଲା । ତାର ଆରପାଖରୁ କିଛି ଶୁଣାଯାଉଥିଲା । କିଛି ହସ-ଖୁସିର ସ୍ୱର ଶୁଣାଯାଉଥିଲା । ସେ ପଚାରିଲା - ସେଠାରେ କ'ଣ ଅଛି ? ସେଠାରେ କ୍ୟାଥାଲିକମାନେ ବସିଛନ୍ତି । ଜୋରରେ କୁହନ୍ତୁ ନାହିଁ । ସେମାନଙ୍କୁ ଜଣାନାହିଁ ଯେ ଏଠାରେ ଅନ୍ୟ ଲୋକମାନେ ମଧ୍ୟ ବସିଛନ୍ତି । ସେମାନଙ୍କୁ ଲାଗୁଛି ଯେ ସେହିମାନେ ହିଁ କେବଳ ସ୍ୱର୍ଗକୁ ଆସିଛନ୍ତି । ସେମାନଙ୍କ ଦୃଷ୍ଟିରେ, ଅନ୍ୟ କେହି ସ୍ୱର୍ଗକୁ ଯାଇପାରିବେ ନାହିଁ । ଦେଖିଲେ ? ସବୁ କିଛି ନିଜ-ନିଜ ଦୃଷ୍ଟିର ତାଦାତ୍ମ୍ୟ ଅଟେ ଏବଂ ତଦନୁସାରେ ଭଲ-ମନ୍ଦ, ଧର୍ମ-ଅଧର୍ମ, ସତ୍ୟ-ମିଥ୍ୟା ବିଚାର କରିଥାଉ । ଏହା କିପରି ମୂର୍ଖାମୀର ପରିଚୟ । ଗୋଟିଏ ମାପ କାଠିରେ ଆମେ ସମସ୍ତଙ୍କୁ ତଉଲି ଥାଉ । ଏପରି କ'ଣ ହୋଇପାରେ ? ତେବେ କହିବାର ତାତ୍ପର୍ଯ୍ୟ ହେଉଛି ଯେ ଈଶ୍ୱରଙ୍କ କର୍ମକୁ ଜୀବ ଦୃଷ୍ଟିରେ ନୁହେଁ, ଈଶ୍ୱର ଦୃଷ୍ଟିରେ ଦେଖିବାକୁ ଶିଖିବା ଉଚିତ୍ । ଏବେ ଏଠାରେ ସେହି କଥା । ଯେତେବେଳେ ରାସଲୀଳା ସମ୍ପୂର୍ଣ୍ଣ ହେଲା ତ ପରୀକ୍ଷିତ ମଧ୍ୟ ପ୍ରଶ୍ନ କଲେ ଯେ-

**ସଂସ୍ଥାପନାୟ ଧର୍ମସ୍ୟ ପ୍ରଶମାୟେତରସ୍ୟ ଚ ।**
**ଅବତୀର୍ଣ୍ଣୋ ହି ଭଗବାନଂଶେନ ଜଗଦୀଶ୍ୱରଃ ॥ (୧୦.୩୩.୨୭)**

ଭଗବାନ ! ଆପଣ ହିଁ ତ କହିଥିଲେ ଯେ ଭଗବାନ ଏଠାରେ ଧର୍ମ ସଂସ୍ଥାପନା କରିବା ନିମନ୍ତେ, ଅଧର୍ମର ନାଶ କରିବା ନିମନ୍ତେ ଅବତୀର୍ଣ୍ଣ ହୋଇଛନ୍ତି ।

**ସ କଥଂ ଧର୍ମସେତୂନାଂ ବକ୍ତା କର୍ତାଭିରକ୍ଷିତା ॥ (୧୦.୩୩.୨୮)**

ତେବେ ଧର୍ମସେତୁର ପାଳନ କରୁଥିବା ଭଗବାନ ଅନ୍ୟ ସ୍ତ୍ରୀମାନଙ୍କ ସହିତ ନୃତ୍ୟ କରିବାର ଅଧର୍ମ କାର୍ଯ୍ୟ କିପରି କରିବାକୁ ଲାଗିଲେ ?

**ଆପ୍ତକାମୋ ଯଦୁପତିଃ କୃତବାନ୍ ବୈ ଜୁଗୁପ୍ସିତମ୍ ॥ (୧୦.୩୩.୨୯)**

ଏଠାରେ ତ ସେ ଅତି ନିନ୍ଦନୀୟ କାର୍ଯ୍ୟ କରିଦେଲେ ।

**କିମଭିପ୍ରାୟ ଏତଂ ନଃ ସଂଶୟଂ ଛିନ୍ଧି ସୁବ୍ରତ ॥ (୧୦.୩୩.୨୯)**

କିନ୍ତୁ ମୁଁ ଭାବୁଛି ଯେ ଅବଶ୍ୟ ହିଁ ଏଥିରେ କୌଣସି ବିଶେଷ ଭାବ ଅଛି, ଏହାର କୌଣସି ବିଶେଷ ପ୍ରୟୋଜନ ରହିଛି । ଦେଖନ୍ତୁ, ଏଠାରେ ସନ୍ଦେହ ଅଛି, ପ୍ରଶ୍ନ ଅଛି, କିନ୍ତୁ ତାହା ଶ୍ରଦ୍ଧା ରହିତ ନୁହେଁ । ଏହି ଲୀଳାର ବିଶେଷ ଅଭିପ୍ରାୟ ତ ନିଶ୍ଚୟ ଅଛି, କାରଣ ଭଗବାନ ହେଉଛନ୍ତି ଆପ୍ତକାମ । ଧର୍ମର ସଂସ୍ଥାପନା ନିମନ୍ତେ ସେ ଅବତାର ନେଇଛନ୍ତି, ପୁଣି ସେ ଅଧର୍ମ କାମ କିପରି କରିବେ ? ପରୀକ୍ଷିତ କହୁଛନ୍ତି, ମୋର ଏହି ସନ୍ଦେହକୁ ଆପଣ ଦୂର କରନ୍ତୁ । ଶ୍ରୀ ଶୁକଦେବଜୀ କହୁଛନ୍ତି -

**ଧର୍ମବ୍ୟତିକ୍ରମୋ ଦୃଷ୍ଟ ଈଶ୍ୱରାଣାଂ ଚ ସାହସମ୍ ।**
**ତେଜୀୟସାଂ ନ ଦୋଷାୟ ବହ୍ନେଃ ସର୍ବଭୁଜୋ ଯଥା ॥ (୧୦.୩୩.୩୦)**

ତେଜସ୍ୱୀ ପୁରୁଷଙ୍କର ଧର୍ମ ସାଧାରଣ ମନୁଷ୍ୟର ଧର୍ମଠାରୁ ଭିନ୍ନ ହୋଇଥାଏ । ଦେଖ, ଅଗ୍ନି ତେଜସ୍ୱୀ, ସେଥିରେ ଯାହା କିଛି ପକାଇଲେ ମଧ୍ୟ, ସେ ତାକୁ ନାଶ କରିଦେଇଥାଏ । ଅଗ୍ନି ସମସ୍ତ ଦ୍ରବ୍ୟକୁ ଭକ୍ଷଣ କରିପାରେ । ସେଥିରେ ଆପଣ କାଠ ଦିଅନ୍ତୁ, କାଗଜ ପକାନ୍ତୁ, ତେଲ ପକାନ୍ତୁ, ଘିଅ ପକାନ୍ତୁ ଅଥବା କୌଣସି ମଣିଷକୁ ପକାନ୍ତୁ - ମୃତ ବା ଜୀବିତ, ଯାହା କିଛି ପକାନ୍ତୁ ନା କାହିଁକି ସେହି ସବୁକୁ ନାଶ କରିଦିଏ । ଯଦି ଘରକୁ ପକାଇ ଦେବେ ତ ଘର ମଧ୍ୟ ଜଳିଯିବ । ସେ ସବୁକିଛି ଖାଇପାରେ । ଏବେ ଯଦି କେହି କହନ୍ତି ଅଗ୍ନି ତ ସମସ୍ତଙ୍କୁ ଭକ୍ଷଣ କରୁଛି, ମୁଁ ମଧ୍ୟ ସମସ୍ତଙ୍କୁ ଭକ୍ଷଣ କରିବି, ତ ତାକୁ ଏତିକି ହିଁ କହିବା ଉଚିତ ଯେ - କର, କରିସାରି ଦେଖ ! କହିବାର ଅର୍ଥ ହେଉଛି ଅଗ୍ନିର ସ୍ୱତନ୍ତ୍ର ଏକ ସାମର୍ଥ୍ୟ ରହିଛି । ସାମର୍ଥ୍ୟଶାଳୀର ଯୋଗ୍ୟତା, ତାର ଧର୍ମ ଏ ଦୁଇଟି ଭିନ୍ନ ପ୍ରକାର ହୋଇଥାଏ । ତା ସହିତ ପ୍ରତ୍ୟେକକୁ ସମାନ କରିପାରିବ ନାହିଁ।

**ନୈତତ୍ ସମାଚରେଜ୍ଜାତୁ ମନସାପି ହ୍ୟନୀଶ୍ୱରଃ ॥ (୧୦.୩୩.୩୧)**

ଅନୀଶ୍ୱର, ଅସାମର୍ଥ୍ୟଶାଳୀ ଜୀବକୁ କେବେ ଭୁଲରେ ମଧ୍ୟ ଭଗବାନଙ୍କର ସମାନ କରିବା ଉଚିତ୍ ନୁହେଁ । ଏହି ଜଗତରେ ଆମେ ଦେଖୁଛନ୍ତି ଯେକୌଣସି ଅଫିସରେ ଯଦି କେହି ଚତୁର୍ଥଶ୍ରେଣୀ କର୍ମଚାରୀ ଅଫିସରଙ୍କ ସହ ସମାନ ହେବାକୁ ଚେଷ୍ଟା କରେ,

ହେବେ ତାର ଗତି କଣ ହୋଇଥାଏ ? କେହି ଯଦି ପ୍ରଧାନମନ୍ତ୍ରୀଙ୍କ ସହିତ ସମାନ ହେବାକୁ ଚେଷ୍ଟା କରିବ ତ ବିଗର କରନ୍ତୁ କଣ ହେବ ? ଏପରି ସମାନତା କରିପାରିବା ନାହିଁ। ପ୍ରତ୍ୟେକ ବ୍ୟକ୍ତି ନିଜର ଯୋଗ୍ୟତାକୁ ବୁଝି, ସେହି ଅନୁଯାୟୀ ରହିବାକୁ ପଡ଼ିଥାଏ। ତେବେ ଏଠାରେ କୁହାଯାଉଛି, ମନରେ ମଧ୍ୟ ଆମ୍ଭେମାନେ ଭଗବାନଙ୍କର ସମକକ୍ଷ ହେବା ପାଇଁ ଚେଷ୍ଟା କରିବା ଉଚିତ୍ ନୁହେଁ । ଦେଖନ୍ତୁ, ରାବଣ ଭଗବାନଙ୍କର ସମାନ ହେବା ପାଇଁ ଚେଷ୍ଟା କଲା । ହିରଣ୍ୟକଶିପୁ ଆଦି, ସମସ୍ତ ଅସୁର ମଧ୍ୟ ଭଗବାନଙ୍କର ସହ ସମାନ ହେବା ନିମନ୍ତେ ପ୍ରୟାସ କରି ମରିଯାଇଛନ୍ତି । କିନ୍ତୁ ଯେଉଁମାନେ ଭଗବାନଙ୍କର ସେବକ ହୋଇ ରହନ୍ତି, ଦେଖନ୍ତୁ ସେମାନେ କେତେ ମହାନ ହୋଇଯାଆନ୍ତି । ହନୁମାନ ଜୀ କେବେ ମଧ୍ୟ ଭଗବାନଙ୍କର ସମକକ୍ଷ ହେବା ନିମନ୍ତେ ପ୍ରୟତ୍ନ କରିନାହାନ୍ତି । କୌଣସି ଶିଷ୍ୟ ଗୁରୁଙ୍କ ସହିତ ସମକକ୍ଷ ହେବା ନିମନ୍ତେ ପ୍ରୟତ୍ନ କଲେ ଚଳିବ କି ? ତେବେ ସେ ନିଜକୁ ହିଁ ନଷ୍ଟ କରିଦେବ । କହୁଛନ୍ତି -

**ବିନଶ୍ୟତ୍ୟାଚରନ୍ ମୌଢ୍ୟାଦ୍ୟଥାରୁଦ୍ରୋଽବ୍ଧିଜଂ ବିଷମ୍॥ (୧୦.୩୩.୩୧)**

କେହି ଯଦି କହନ୍ତି, ଭଗବାନ ଶିବଜୀ ବିଷପାନ କରିଥିଲେ, ସେଥିପାଇଁ ମୁଁ ମଧ୍ୟ ବିଷ ପିଇବି, ତେବେ ତାକୁ ମୂଢ଼ତା ନ କହି ଆଉ କଣ କହିବ ? କେହି ପୁଣି କହନ୍ତି- ଭଗବାନ ଶ୍ରୀକୃଷ୍ଣ ଅନେକ ସ୍ତ୍ରୀଙ୍କ ସହିତ ବିବାହ କରିଥିଲେନ୍ତ ମୁଁ ମଧ୍ୟ ଅନେକ ସ୍ତ୍ରୀମାନଙ୍କ ସହିତ ରହିବି । ତେବେ ତାକୁ ଏତିକି କୁହାଯାଇପାରେ ଯେ ତୁମେ ଗୋଟିଏ କାମ କର। ଭଗବାନ ଶ୍ରୀକୃଷ୍ଣଙ୍କ ଲୀଳାର ପ୍ରାରମ୍ଭ ପୂତନା ବଧଠାରୁ ହୋଇଥିଲା । ସେହି ପୂତନା-ବଧରେ ମଧ୍ୟ ପ୍ରଥମେ ଭଗବାନଙ୍କୁ ବିଷ ଚାଖିବାକୁ ପଡ଼ିଥିଲା । ତେବେ ତୁମେ ମଧ୍ୟ ଟିକିଏ ବିଷ ଖାଇ ଦେଖେଇ ଦିଅ, ତାପରେ ରାସ ଲୀଳା କରିବା କଥା ତ କରିବେ। ବିଷ ଖାଇବା ପରେ ଜୀବିତ ରହିଲେ ସିନା ଆଗକୁ କଥା ଆସିବ । ଭଗବାନ ଅଗ୍ନିପାନ କରିଥିଲେ, ତାହା ମଧ୍ୟ କର । କହିଲେ - ମୁଁ ସିଗାରେଟ୍ ପିଉଛି । ସିଗାରେଟ୍ ନୁହେଁ, ଅଗ୍ନିପାନ କରି ଦେଖାଅ । କାଳୀୟ ଉପରେ ନୃତ୍ୟ କରି ଦେଖାଅ । ଆମ୍ଭେମାନେ ତ ଏପରି ଯେ, ସାପର ନାମ ଧରୁ ଧରୁ ହିଁ ଭୟରେ ଦୌଡୁଛୁ । ଭଗବାନ ଗୋବର୍ଦ୍ଧନ ଉଠାଇଥିଲେ । ଆମଦ୍ୱାରା ଗୋଟିଏ ବାକ୍ସ ମଧ୍ୟ ଉଠାଇଯାଇପାରୁ ନାହିଁ, ସେଥିପାଇଁ ମଧ୍ୟ ଆମକୁ ଅନ୍ୟ ଜଣକର ସାହାଯ୍ୟ ନେବାକୁ ପଡ଼ିଥାଏ । କହିବାର ତାତ୍ପର୍ଯ୍ୟ ହେଉଛି ଯେ ଯଦି ପ୍ରତ୍ୟେକ ଲୀଳାର ସମାନତା କେହି କରିପାରନ୍ତି ତେବେ କରି ଦେଖାଅ, ଅନ୍ୟଥା ମୂଢ଼ ଭଳି ପ୍ରଳାପ କରିବା ଉଚିତ ନୁହେଁ । ଏହାକୁ ଧ୍ୟାନରେ ରଖିବା ଆବଶ୍ୟକ ।

**ଈଶ୍ୱରାଣାଂ ବଚଃ ସତ୍ୟଂ ତଥୈବାଚରିତଂ କ୍ୱଚିତ ॥ (୧୦.୩୩.୩୨)**

ପୁଣି କହୁଛନ୍ତି - ଏ ଯେଉଁ ଭଗବାନ ଅଟନ୍ତି, ତାଙ୍କର ଗୋଟିଏ ହେଉଛି ବଚନ ଏବଂ ଅନ୍ୟଟି ହେଉଛି ଆଚରଣ । କେଉଁ ସ୍ଥାନରେ ତାଙ୍କର ବଚନ ଏବଂ ଆଚରଣ ଦୁଇଟି ଯାକ ଆମ ନିମନ୍ତେ ଅନୁକରଣୀୟ ହୋଇଥାଏ । କିନ୍ତୁ ବହୁତ ସମୟରେ ଭଗବାନଙ୍କର ବଚନ ହିଁ ଅନୁକରଣୀୟ ହୋଇଥାଏ, ତାଙ୍କର ଆଚରଣ ନୁହେଁ । ଏହାର ଅର୍ଥ ଏହା ନୁହେଁ ଯେ, ତାଙ୍କର ସେହି ଆଚରଣ ଭୁଲ ଅଟେ । ଏଭଳି କଥା ନୁହେଁ, କିନ୍ତୁ ତାହା ହେଉଛି ଈଶ୍ୱରଙ୍କର ଧର୍ମ, ଏହି କଥାକୁ ଧ୍ୟାନରେ ରଖିବା ଉଚିତ । ଯଦି କେବେ କୁହାଯାଏ ଯେ ଭଗବାନ ଶ୍ରୀକୃଷ୍ଣ ଯାହା କହିଛନ୍ତି - ତାହା କର, ଯାହା କରିଛନ୍ତି ତାକୁ କରନାହିଁ - ତେବେ ତାର ଅର୍ଥ ଏହା ନୁହେଁ ଯେ - ସେ ଯାହା କରିଛନ୍ତି ଅଧର୍ମ କରିଛନ୍ତି, କିନ୍ତୁ ସେ ନିଜର (ଈଶ୍ୱରଙ୍କର) ଧର୍ମ ପାଳନ କରିଛନ୍ତି । ଆମେ ସବୁ ଜୀବମାନଙ୍କୁ ମଧ୍ୟ ନିଜର ହିଁ ଧର୍ମକୁ ପାଳନ କରିବା ଉଚିତ । ଜୀବ ତାଙ୍କ ସମାନ ହୋଇପାରିବ ନାହିଁ ।

**ତେଷାଂ ଯତ ସ୍ୱବେଚୋଯୁକ୍ତଂ ବୁଦ୍ଧିମାଂସ୍ତତ୍ ସମାଚରେତ୍ ॥ (୧୦.୩୩.୩୨)**

ବିଚାର ପୂର୍ବକ, ତାଙ୍କର ଯେଉଁ ଆଚରଣ ତାଙ୍କ ଉପଦେଶ ଅନୁଯାୟୀ ହୋଇଥିବ, ଆମ ନିମନ୍ତେ ଉପଯୁକ୍ତ ହୋଇଥିବ, ତାକୁ ହିଁ ଅନୁକରଣ କରିବା ଉଚିତ୍ ।

**କୁଶଲାଚରିତେନୈଷାମିହ ସ୍ୱାର୍ଥୋ ନ ବିଦ୍ୟତେ ॥ (୧୦.୩୩.୩୩)**

ଯେକୌଣସି କାର୍ଯ୍ୟରେ ସମର୍ଥ ଲୋକମାନଙ୍କର ନିଜର କୌଣସି ସ୍ୱାର୍ଥ ନ ଥାଏ । ସେମାନେ ତ ଅହଂକାର ରହିତ ହୋଇଥାଆନ୍ତି । ସେଥିପାଇଁ ସେମାନଙ୍କୁ କୌଣସି ଦୋଷ ଲାଗେ ନାହିଁ । ତେଣୁ ଭଗବାନଙ୍କୁ କିପରି ଦୋଷ ଲାଗିପାରିବ ।

**ଅନୁଗ୍ରହାୟ ଭୂତାନାଂ ମାନୁଷଂ ଦେହମାସ୍ଥିତଃ ।**
**ଭଜତେ ତାଦୃଶୀଃ କ୍ରୀଡ଼ା ଯାଃ ଶ୍ରୁତ୍ୱା ତତ୍ପରୋ ଭବେତ୍ ॥ (୧୦.୩୩.୩୭)**

ଭଗବାନ ତ ସମସ୍ତଙ୍କ ଉପରେ ଅନୁଗ୍ରହ କରିବା ନିମନ୍ତେ ଏଠାକୁ ମନୁଷ୍ୟ ରୂପନେଇ ଆସିଛନ୍ତି ଏବଂ ସେ ଏପରି ଲୀଳା କରିଛନ୍ତି ଯେ, ଆମେ ସମସ୍ତେ ସେହି ଲୀଳା ଶ୍ରବଣ କରି ତାଙ୍କୁ ସ୍ମରଣ କରି ପାରିବା ଓ ଚିନ୍ତନ କରିପାରିବା । ପୁଣି ତାର ଚିନ୍ତନ କରି କରି ଆମର ମନ ଭଗବାନଙ୍କଠାରେ ଲୀନ ହୋଇଯିବ । ଭଗବାନଙ୍କ ପାଖରେ କାମନାର, ବିକାରର, ଅଧର୍ମ ଆଦିର ତ କଳ୍ପନା ମଧ୍ୟ କରି ହେବ ନାହିଁ ।

ଭଗବାନଙ୍କ ନିମନ୍ତେ ତ ଅନ୍ୟ ବୋଲି କେହି ନାହିଁ, ତାଙ୍କ ଦୃଷ୍ଟିରେ ଅନ୍ୟ କିଏ ଅଛି ? ସବୁ ରୂପରେ ସେ ହିଁ ଏକ ସତ୍ତା ବିଦ୍ୟମାନ ଭାସମାନ ହେଉଛି ।

**ଯତ୍ପାଦପଙ୍କଜପରାଗନିଷେବତୃପ୍ତା**

**ଯୋଗ ପ୍ରଭାବ ବିଧୁତାଖିଲ କର୍ମବନ୍ଧାଃ ।**

**ସ୍ୱୈରଂ ଚରନ୍ତି ମୁନୟୋପି ନ ନହ୍ୟମାନା -**

**ସ୍ତସ୍ୟେଚ୍ଛୟାଭବପୁଷଃ କୁତ ଏବ ବନ୍ଧଃ ॥ (୧୦.୩୩.୩୫)**

ଭଗବାନଙ୍କର ତ ସ୍ମରଣ କରି, ସାକ୍ଷାତକାର କରି ସମସ୍ତ ଋଷି-ମୁନୀ, ତ୍ୟାଗୀ, ଯୋଗୀ ସମସ୍ତ କାମକ୍ରୋଧାଦିର ସମସ୍ତ ବନ୍ଧନରୁ ମୁକ୍ତ ହୋଇଯାଆନ୍ତି, ଏପରି ଭଗବାନଙ୍କର କଣ କୌଣସି ବନ୍ଧନ ଆସିପାରେ ? ନିଷ୍କାମକୁ ପ୍ରାପ୍ତ କରିବାକୁ ଯେ କାମନା କରେ, ସେ ସ୍ୱୟଂ ନିଷ୍କାମ ହୋଇଯାଏ । ଭଗବାନ ସକାର ହୋଇଯାଆନ୍ତି ନାହିଁ । ତେଣୁ ଏପରି ଶଙ୍କା କରିବା ଉଚିତ ନୁହେଁ ।

ଏହିପରି ଭାବରେ, ଭଗବାନ ବୃନ୍ଦାବନରେ ଭିନ୍ନ-ଭିନ୍ନ ପ୍ରକାର ଲୀଳା ସବୁ କରୁଛନ୍ତି, ସମସ୍ତଙ୍କୁ ଆନନ୍ଦିତ କରୁଛନ୍ତି, କେତେ ସୁନ୍ଦର କଥା । ଏହି ବ୍ରଜବାସୀମାନଙ୍କର ଭାଗ୍ୟ ଭଳି ସମାନ ଭାଗ୍ୟ କିଏ ପାଇବ ? ଏମାନଙ୍କର ତୁଳନା କାହା ସହିତ କରାଯାଇ ପାରିବ ? ଏମାନଙ୍କର ତୁଳନା କରାଯାଇପାରିବ ନାହିଁ । ସେଥିପାଇଁ ସୂରଦାସ ଜୀ ଅତି ସୁନ୍ଦର ପଦ ଲେଖିଛନ୍ତି ଯେ ବ୍ରଜବାସୀମାନଙ୍କର ଭାଗ୍ୟ ତ ଏପରି ଯେ ତାର ତୁଳନା ତଥା ଉପମା ଜଗତରେ ହିଁ ନାହିଁ । ତାର ସମାନ କେହି ହେବେ ନାହିଁ ।

ବ୍ରଜବାସୀ କୋଉ ପଟତର ନାହୀ ।

ବ୍ରହ୍ମ, ସନକ, ଶିବ ଧ୍ୟାନ ନ ପାବେଁ, ଇନକୀ ଜୁଠନି ଲୈ-ଲୈ ଖାହିଁ ।

ବ୍ରହ୍ମାଦି ଦେବତା, ସନକାଦି ମୁନି ଏବଂ ଶିବଜୀ ଯାହାକୁ ଧ୍ୟାନରେ ମଧ୍ୟ ପ୍ରାପ୍ତ କରିପାରୁନାହାନ୍ତି, ସେହି ଭଗବାନ ହିଁ ଏହି ବ୍ରଜବାସୀମାନଙ୍କର ଅଇଁଠାକୁ ନେଇ ନେଇ ଖାଉଛନ୍ତି ।

**ଧନ୍ୟ ନନ୍ଦ, ଧନି ଜନନି ଯଶୋଦା, ଧନ୍ୟ ଜହାଁ ଅବତାର କହ୍ନାଇ ।**

**ଧନ୍ୟ-ଧନ୍ୟ ବୃନ୍ଦାବନ କେ ତରୁ, ଜହାଁ ବିହରତ ତ୍ରିଭୁବନ କେ ରାଇ ।**

**ବ୍ରଜ-ବାସୀ କୋଉ ...**

ନନ୍ଦ ବାବା ଧନ୍ୟ, ମାତା ଯଶୋଦାଜୀ ମଧ୍ୟ ଧନ୍ୟ ଅଟନ୍ତି । ଯେଉଁଠାରେ ଭଗବାନ ଅବତାର ନେଲେ ଏବଂ ବିହାର କଲେ, ସେହି ବୃନ୍ଦାବନର ବୃକ୍ଷ-ଲତା ମଧ୍ୟ ଧନ୍ୟ ଅଟେ ।

**ହଲଧର କହୌ ଛାକ ଜେଁବତ ସଂଗ,**
**ମିଠୌ ଲଗତ ସରାହତ ଯାଇ ।**
**ସୂରଦାସ ପ୍ରଭୁ ବିଶ୍ୱମ୍ଭର ହରି,**
**ସୋ ଗ୍ୱାଲିନ କେ କୌନ ଅଘାଇ ।**
**ବ୍ରଜ-ବାସୀ କୋଉ ...**

ଭଗବାନ ସମସ୍ତଙ୍କ ସହିତ ବସି ଭୋଜନ କରୁଛନ୍ତି । ହଳଧର-ବଳରାମ ଜୀଙ୍କୁ ବାରମ୍ବାର କହୁଛନ୍ତି ଯେ ଦେଖ, ଏହି ଭୋଜନ କେତେ ମଧୁର ଅଟେ, କେତେ ମିଠା ଅଟେ । ବିଶ୍ୱମ୍ଭର-ବିଶ୍ୱର ଭରଣ ପୋଷଣ କରୁଥିବ ଭଗବାନ ହାତରେ ଦହୀ, ଭାତ ନେଇ ଭୋଜନ କରିବା ନିମନ୍ତେ ବସିଛନ୍ତି ।

ମହାରାସର ବର୍ଣ୍ଣନ ହେଲା, ତା ପରେ ରାଜା ପରୀକ୍ଷିତଙ୍କର ଶଙ୍କାର ନିବାରଣ ମଧ୍ୟ କରାଗଲା ।

## ସୁଦର୍ଶନ ଓ ଶଙ୍ଖଚୂଡ଼ର ଉଦ୍ଧାର

ଏ ସବୁ ପରେ, ଥରେ ଶିବରାତ୍ରି ଦିନ ଅମ୍ବିକା ବନରେ ଯାଇ, ନନ୍ଦ ଆଦି ସମସ୍ତ ଗୋପାଳମାନେ ପଶୁପତି ଭଗବାନଙ୍କର ପୂଜା କଲେ, ଦେବୀ ଜୀଙ୍କର ପୂଜା କଲେ ଏବଂ ଆହୁରି ଦାନ, ପୁଣ୍ୟ ଆଦି ଅନେକ ସତକର୍ମ କରିବା ପରେ, ସେ ଦିନ ସେମାନେ ସମସ୍ତେ ସେହି ନଦୀ କୂଳରେ ହିଁ ଶୋଇଗଲେ । ତେବେ ସେଠାରେ ଏକ ଅଜଗର ନନ୍ଦବାବାଙ୍କୁ ଧରି ନେଲା । ଦେଖନ୍ତୁ, ଏମାନେ ସମସ୍ତେ ସତକର୍ମ ତ କଲେ, ପରନ୍ତୁ ତାପରେ ସମସ୍ତେ ଶୋଇଗଲେ ତାର ଅର୍ଥ ସତର୍କ ରହିଲେ ନାହିଁ । ସେଥିପାଇଁ ଅଜଗର ଆସିଗଲା । ତାତ୍ପର୍ଯ୍ୟ ହେଉଛି ଯେ, ଯଦି ସତକର୍ମ କରି ସତର୍କ ନ ରହିଲ, ତେବେ ଅହଂକାର ରୂପୀ ଅଜଗର ଆସିଥାଏ ଏବଂ ସେ ଆମକୁ ଗିଳି ଦେବାକୁ ହିଁ ଜଗି ବସିଥାଏ । ଭଗବାନ ସେହି ଅଜଗର ଠାରୁ ନନ୍ଦବାବାଙ୍କୁ ମୁକ୍ତ କରିଦେଲେ ଏବଂ ନିଜର ଚରଣ ସ୍ପର୍ଶ ଦ୍ୱାରା ଅଜଗର ହୋଇଥିବା ସୁଦର୍ଶନଙ୍କୁ ଅଜଗର ଯୋନିରୁ ମୁକ୍ତ କରାଇ ଦେଲେ । ତାକୁ ତା ନିଜର ପୂର୍ବରୂପ ବିଦ୍ୟାଧର ରୂପର ପ୍ରାପ୍ତି ହୋଇଗଲା । ତାର ପୂର୍ବ ନାମ

"ସୁଦର୍ଶନ' ଥିଲା । ଅଙ୍ଗିରା ଋଷିଙ୍କର ଅଭିଶାପ ହେତୁ ସେ ଅଜଗର ହୋଇଯାଇଥିଲା। ତେବେ ଏଠାରେ ଭଗବାନ ନିଜର ପିତାଜୀଙ୍କୁ ମଧ୍ୟ ମୁକ୍ତ କରାଇଦେଲେ ଏବଂ ତା ସହିତ ସେହି ଅଜଗରକୁ ମଧ୍ୟ ଉଦ୍ଧାର କରିଦେଲେ ।

ପୁଣି ଥରେ ବସନ୍ତ ଋତୁର ରାତ୍ରି ସମୟରେ ଯେତେବେଳେ ଶ୍ରୀକୃଷ୍ଣ ତଥା ବଳରାମଜୀ ଗୋପିମାନଙ୍କ ସହିତ ନୃତ୍ୟ କରି ଗୀତ ଗାଇ ଗାଇ ବିହାର କରୁଥିଲେ, ସେତେବେଳେ **"ଶଙ୍ଖଚୂଡ଼"** ନାମକ ଏକ ଯକ୍ଷ, ଯେ କି କୁବେରଙ୍କର ଅନୁଚର ଥିଲା, ସେ ଆସି ଗୋପିମାନଙ୍କୁ ନେଇ ଚାଲିଗଲା। ସେତେବେଳେ ଭଗବାନ ସେହି ଶଙ୍ଖଚୂଡ଼କୁ ବଧ କରିଦେଲେ । ତାର ଚୂଡ଼ାମଣୀ ବାହାର କରି ବଳରାମ ଜୀଙ୍କୁ ଦେଇ ଦେଲେ ।

## ଯୁଗଳ ଗୀତ

ଏହାପରେ ଯୁଗଳ ଗୀତର ପ୍ରସଙ୍ଗ ଆସେ । ଯଦି କେବେ ଭଗବାନ ଗୋଷ୍ଠରଣ ନିମନ୍ତେ (ଗାଈମାନଙ୍କୁ ଚରାଇବା) ବନକୁ ଯାଉଥିଲେ, ତ ତାଙ୍କ ଅନୁପସ୍ଥିତିରେ ସମସ୍ତ ଗୋପି ଭଗବାନଙ୍କ ଲୀଳାର ଧ୍ୟାନ କରୁଥିଲେ । ତାଙ୍କୁ ସ୍ମରଣ କରି ଗୀତ ଗାଉଥିଲେ । ପୁଣି ସନ୍ଧ୍ୟା ସମୟରେ, ଯେତେବେଳେ ଭଗବାନ ସମ୍ମୁଖକୁ ଆସୁଥିଲେ ତ ତାଙ୍କର ଦର୍ଶନ କରୁଥିଲେ । ସେଥିପାଇଁ ଭଗବାନଙ୍କର ଦର୍ଶନ ଏବଂ ଦର୍ଶନର ଅଭାବରେ ସ୍ମରଣ କରିଚାଲିବା, ଏହା ଆମ୍ଭମାନଙ୍କର ସାଧନା ହେବା ଉଚିତ୍ । ଆଉ ଅଧିକା କଣ ବା ଆମେ କରିପାରିବା ? ଦେଖନ୍ତୁ, ଏବେ ଆମେ କେଉଁଠାରେ ଅଛନ୍ତି ? ଗୋକୁଳରେ, ବୃନ୍ଦାବନରେ ଅଛନ୍ତିନ୍ତ ଅର୍ଥାତ୍ ଏବେ ଆମେ ସମସ୍ତେ ଇନ୍ଦ୍ରିୟମାନଙ୍କ ସମୂହରେ ବସିଅଛନ୍ତି। ଏହି ସ୍ଥିତିରେ ତ ଆମେ ଭଗବାନଙ୍କର ଲୀଳାର ସ୍ମରଣ ହିଁ ତ କରିପାରିବା । ଏହା ଅତି ସୁଲଭ ଅଟେ ।

ଏବେ ଦେଖନ୍ତୁ, ଭଗବାନ କିଛି ବଡ଼ ହୋଇଗଲେଣି, ଆଠବର୍ଷର ହୋଇଗଲେଣି। ଭଗବାନ ଜାଣିଛନ୍ତି ଯେ ସେ ସବୁବେଳେ ବୃନ୍ଦାବନରେ ହିଁ ରହିପାରିବେ ନାହିଁ । ଭଗବାନ ବିଚାର କଲେ, କିଛି ସମୟ ପରେ ମୋତେ ଏଠାରୁ ଯିବାକୁ ପଡ଼ିବ, କିନ୍ତୁ ତା ପୂର୍ବରୁ, ଏପରି ହୋଇଯିବା ଉଚିତ୍ ଯେ ଏହି ଗୋକୁଳବାସୀ ମୋ ଭକ୍ତିରେ ନିମଗ୍ନ ହୋଇଯାଆନ୍ତୁ, ବୁଡି ଯାଆନ୍ତୁ। ପୁଣି ତା ପରେ ସେମାନଙ୍କର ଭକ୍ତିରେ କୌଣସି ପ୍ରକାରର ବିଘ୍ନ ମଧ୍ୟ ଆସିପାରିବ ନାହିଁ । ଭଗବାନ ଜାଣନ୍ତି ଯେ ଆମ ସମସ୍ତଙ୍କର ସ୍ୱଭାବ ହିଁ ଏହିପରି ହୋଇଥାଏ ଯେ ଯେଉଁ ପର୍ଯ୍ୟନ୍ତ (ଆମ ସମ୍ମୁଖରେ) କୌଣସି କଥା ଅଥବା ପ୍ରବଚନ - ଜ୍ଞାନଯଜ୍ଞ ଚାଲୁଛି, ସେ ପର୍ଯ୍ୟନ୍ତ ଆମେ ଘରର କାମ-କାର୍ଯ୍ୟ ଛାଡ଼ି ଦେଇ

ମଧ୍ୟ ପ୍ରବଚନରେ ପହଞ୍ଚି ଯାଇଥାଉ, ଶୁଣିଥାଉ, କିନ୍ତୁ ଯେତେବେଳେ ତାର ସମାପ୍ତିର ଦିନ ଆସେ ତ ଆମେ ବିଚାର କରୁ ଏବେ ଆମେ କଣ କରିବୁ ? ଏହା ଅଭାବରେ କଣ ହେବ ? ସେତେବେଳେ ଆମେ "ଦୂରଦର୍ଶନ' ଦେଖିବାରେ ଅଥବା ଅନ୍ୟ କୌଣସି ବିଷୟରେ ଲାଗିଯାଉ । ଏହି କାରଣରୁ ଆମର ଭାବ ଦୃଢ଼ ହୋଇପାରେ ନାହିଁ, ପକ୍କା ହୋଇପାରେ ନାହିଁ । ତେଣୁ ସତ୍‌ସଙ୍ଗରେ ଯେଉଁ ଆନନ୍ଦ ମିଳିଲା ତାର ଧାରଣ କରି ରଖିବା ଉଚିତ, ଯେପରି ଜୀବନରେ ସତତ ପ୍ରବାହିତ ହେଉଥିବ, ସେହି ରସାନୁଭୂତିରେ କୌଣସି ପ୍ରକାର ବିଘ୍ନ ଆସିବା ଉଚିତ୍ ନୁହେଁ ।

କେବେ-କେବେ ଏପରି ଦେଖାଯାଏ ଯେ, ଲୋକମାନେ ଜଣକ ପରେ ଜଣକୁ ଗୁରୁ କରୁଥାଆନ୍ତି । ଅଥବା ଯେତେବେଳେ ଅନ୍ୟ କେହି ଜଣେ ସାଧନାର ଅନ୍ୟ କୌଣସି ବାର୍ଗ ତାଙ୍କୁ କହନ୍ତି, ତେବେ ସେମାନେ ସେହି ମାର୍ଗରେ ଚାଲିବାକୁ ଲାଗନ୍ତି । ସେମାନଙ୍କୁ ପ୍ରଥମେ ଯେଉଁ ସାଧନ ମାର୍ଗ ଶିକ୍ଷା ଦିଆଯାଇଥାଏ ତାକୁ ଛାଡ଼ି ଦିଅନ୍ତି, ଅନ୍ୟ ସାଧନା କରିବାରେ ଲାଗିଯାଆନ୍ତି । ଏଭଳି ଲୋକମାନେ କୌଣସି ସାଧନାର ଦୃଢ଼ ହୋଇପାରନ୍ତି ନାହିଁ । ସେହି ସାଧକମାନଙ୍କର ବଡ଼ ଦୁଃଖଦ ସ୍ଥିତି ହୋଇଯାଏ ।

ଏବେ ଏଠାରେ ଆଗକୁ ଯେଉଁ ବର୍ଣ୍ଣନ ଅଛି, ତାକୁ ଯଦି ଲୀଳା ଦୃଷ୍ଟିରେ ଦେଖିବା ତ ଭଗବାନ ବିଚାର କରୁଛନ୍ତି, ମୋତେ ଏଠାରୁ ଯିବାକୁ ପଡ଼ିବ, ତେବେ ଯିବା ପୂର୍ବରୁ ଏବେ ଯେଉଁ ଅସୁରମାନେ ଏଠି-ସେଠି ଲୁଚି ରହିଛନ୍ତି, ମୁଁ ସେମାନଙ୍କୁ ମଧ୍ୟ ମାରିବା ପରେ ଯିବି, ଯଦ୍ୱାରା ଏମାନଙ୍କୁ ଆଗକୁ ସେମାନେ କୌଣସି କଷ୍ଟ ଦେଇପାରିବେ ନାହିଁ। ଏହି ପ୍ରସଙ୍ଗକୁ ଦେଖିବା ପାଇଁ ଏହା ଏକ ସାମାନ୍ୟ ଦୃଷ୍ଟି । କିନ୍ତୁ ଏଠାରେ ଗମ୍ଭୀର ଦୃଷ୍ଟି ହେଉଛି ଯେ - ସମସ୍ତ ବ୍ରଜବାସୀ ଭଗବାନଙ୍କର ସାନ୍ନିଧ୍ୟ ପ୍ରାପ୍ତ କରି ଭକ୍ତି ରସରେ ବୁଡ଼ି ରହିଛନ୍ତି । ପରନ୍ତୁ ବର୍ତ୍ତମାନ ଯେଉଁ ଅସୁରମାନେ ଆସିବେ, ସେମାନେ ବଡ଼ ବିଚିତ୍ର ପ୍ରକାରର ଅଟନ୍ତି । ଯେଉଁ ଲୋକ ଅସ୍ତ୍ର-ଶସ୍ତ୍ର ନେଇ ବିରୋଧୀ ହୋଇ ଆସିଛନ୍ତି, ସେମାନେ ତଥାପି ଭଲ । କିନ୍ତୁ ଯଦି କେହି (ଅସୁର) ଭକ୍ତ ବେଶରେ ଆସିଯାଏ ଏବଂ ଆମକୁ ଧୋକା ଦେଇ ଚାଲିଯାଏ ତ ତାହା ଅତି ଦୁଃଖଦ ଘଟଣା ହେବ। ହଁ କି ନୁହେଁ?

ଯେପରିକି ଘରକୁ ଚୋର ଯଦି ଆସିଯାଆନ୍ତି ତ ଲୋକମାନେ ସାବଧାନ ହୋଇଯାଆନ୍ତି । କିନ୍ତୁ ଯଦି କେହି ସାଧୁ-ବେଶ ଧାରଣ କରି ଆସନ୍ତି ଏବଂ କୌଣସି ଚମତ୍କାର କରି କିଛି ଦେଖେଇ ଦିଅନ୍ତି । ତେବେ ତାଙ୍କୁ ଲାଗେ, ଆରେ । ଏ ସାଧୁ ତ ଜଣେ ସିଦ୍ଧ ଭଳି ଜଣାପଡୁଛନ୍ତି, (ଏବଂ ଆପଣଙ୍କୁ ମୂର୍ଖ ବନେଇଦିଅନ୍ତି) ଏବଂ ସେ

ଯେତେବେଳେ କହନ୍ତି - ତୁମେ ପାଞ୍ଚ ଟଙ୍କା ଆଣ, ମୁଁ ତାକୁ ଦଶ ଟଙ୍କା କରିଦେବି ଏବଂ ଆପଣଙ୍କ ସମ୍ମୁଖରେ ଦେଖାଇ ଦିଏ, ତେବେ ଆମେ କହୁ ଏହି ସାଧୁ ବେଶଧାରୀ ପାଞ୍ଚକୁ ଦଶ କରି ଦେଖାଉଛନ୍ତି । ପୁଣି ସେ କହନ୍ତି - ଶହେ ଟଙ୍କା ନେଇ ଆସ । ତାହା ଦେଲାପରେ ସେ ଦୁଇଶହ ଟଙ୍କା କରିଦିଅନ୍ତି । ପୁଣି ଏକ ହଜାର, ତାପରେ ଦଶହଜାର.... ଏବଂ ସେ ନୋଟ ବାହାର କରି ସାଧୁଙ୍କୁ ଦେଇଥାଆନ୍ତି । ପୁଣି ଅଚାନକ ଦେଖନ୍ତି ଯେ ସାଧୁ ଜଣକ ଉଭାନ୍ ହୋଇଗଲେ । ଦେଖନ୍ତୁ, ଏପରି କରିବାର କଣ ଆବଶ୍ୟକତା ଥିଲା ?

## ଅରିଷ୍ଟାସୁର, କେଶୀ ତଥା ବ୍ୟୋମାସୁରଙ୍କର ଉଦ୍ଧାର

ଭଗବାନ ଚାହୁଁନାହାନ୍ତି ଯେ, ସେଠାରେ (ବ୍ରଜଭୂମିରେ) ଏପରି କେହି ଆସନ୍ତୁ। ଭଗବାନ ଚାହୁଁଛନ୍ତି ଯେ ବ୍ରଜବାସୀମାନଙ୍କର ଭକ୍ତି ନିରାପଦ ରହୁ, ସେଥିରେ କୌଣସି ବିଘ୍ନ, କୌଣସି ବ୍ୟବଧାନ ନ ଆସୁ। ସେଥିପାଇଁ ସେ ଅରିଷ୍ଟାସୁର, କେଶୀ ତଥା ବ୍ୟୋମାସୁର ଏହି ତିନି ବେଶଧାରୀ ଅସୁରମାନଙ୍କୁ ନାଶ କରିଦେଲେ ।

ଏବେ ଦେଖନ୍ତୁ, କେବେ କେବେ ଧର୍ମ ନାମରେ ଅଧର୍ମ କଥା ଶିକ୍ଷା ଦେଉଥିବା ବ୍ୟକ୍ତି ଆମ ପାଖରେ ପହଞ୍ଚିଥାଆନ୍ତି । ତାକୁ ଅରିଷ୍ଟାସୁର ଅଥବା ବୃଷଭାସୁର କୁହାଯାଇଛି। ବୃଷଭର ଅର୍ଥ ବଳଦ, ତାକୁ ଧର୍ମର ପ୍ରତୀକ ରୂପେ ମାନ୍ୟତା ଦିଆଯାଏ । କିନ୍ତୁ ଯଦି କୌଣସି ଅସୁର, ବୃଷଭର ବେଶ ଧାରଣ କରି ଅର୍ଥାତ୍ ଧର୍ମର ରୂପ ଧାରଣ କରି ଆସିଯାଏ ତ ତାହା ଅତି ଦୁଃଖଦାୟକ ସିଦ୍ଧ ହୋଇଥାଏ । ଯେପରିକି ଜୀବନରେ କେବେ କେବେ ମିଥ୍ୟା ଧର୍ମର ଉପଦେଶ କରିବା ନିମନ୍ତେ ଆମ୍ଭମାନଙ୍କୁ ବହୁ ସଂଖ୍ୟାରେ ମିଳିଯାଆନ୍ତି, ସେମାନେ ଆମ୍ଭମାନଙ୍କୁ ବାସ୍ତବିକ ଧର୍ମମାର୍ଗ ଓ ଜ୍ଞାନମାର୍ଗଠାରୁ ବିଚ୍ୟୁତ କରିଦେଇଥାଆନ୍ତି । ଭଗବାନ ଏହି ମିଥ୍ୟା ଧର୍ମବାଲାଙ୍କୁ ମଧ ନାଶ କରିଦେଲେ । ଅରିଷ୍ଟାସୁର (ବୃଷଭାସୁର)ର ବଧ କରିଦେଲେ ।

ବ୍ରଜବାସୀମାନଙ୍କୁ ଜଣା ନାହିଁ ଯେ ଆଗକୁ କଣ ହେବ । ଏବେ କଂସକୁ ପ୍ରେରଣା ହେଲା, କାରଣ ନାରଦ ଜୀ ଯାଇ ତାର କାନରେ କିଛି କହି ଆସିଲେ । "ଆରେ ! ତୁ ଏତେ ଅସୁରମାନଙ୍କୁ ଗୋକୁଳ ପଠାଇଲୁ, କିନ୍ତୁ ସେହି ଛୋଟ ବାଳକଟି ସେ ସମସ୍ତଙ୍କୁ ମାରିଦେଲା । ଜଣାଅଛି ! ସେ ହିଁ ତ ତୋର କାଳ ଅଟେ । ତୁ କିଛି ବୁଝିପାରୁ ନାହୁଁ, ସେ ହିଁ କୃଷ୍ଣ ଅଟନ୍ତି । ସେ ହିଁ ଦେବକୀଙ୍କର ଅଷ୍ଟମ ଗର୍ଭ-ଅଷ୍ଟମ ପୁତ୍ର ଅଟନ୍ତି ।" ଏପରି ଭାବରେ ନାରଦ ଜୀ ତାଙ୍କୁ କହିଦେଲେ । ତାପରେ କଂସ ଦେବକୀ

ତଥା ବସୁଦେବ ଜୀଙ୍କୁ ପୁନର୍ବାର କାରାଗୃହରେ ରଖିଦେଲ ଏବଂ ପୁଣି କେଶୀଙ୍କୁ ଶ୍ରୀକୃଷ୍ଣ ଓ ବଳରାମଜୀଙ୍କୁ ମାରିବା ନିମନ୍ତେ ବୃନ୍ଦାବନ ପଠାଇଦେଲ ।

ପୁଣି ସେ ବିଚାର କରିବାକୁ ଲାଗିଲା - ଏବେ ମୁଁ କଣ କରିବି ? ସେ ଏକ ଯୋଜନା ପ୍ରସ୍ତୁତ କଲ । କଂସ ସ୍ୱୟଂ ମଧ୍ୟ ବଡ଼ ଉଚ୍ଚମାନର ପହଲିମାନ ଥିଲା । ତାର କୁସ୍ତୀ କରିବାରେ ଖୁବ ଆଗ୍ରହ ଥିଲା । ତା ନିକଟରେ କେତେକ ବଡ଼ ବଡ଼ ପହଲିମାନ ଥିଲେ । ଯେଉଁମାନଙ୍କ ମଧ୍ୟରେ ଚାଣୂର ଏବଂ ମୁଷ୍ଟିକାସୁର ଦୁହେଁ ମୁଖ୍ୟ ଥିଲେ । ତାଙ୍କ ସମ୍ମୁଖରେ ଅନ୍ୟ କେହି ତିଷ୍ଟିପାରୁ ନ ଥିଲେ । ତା ପାଖରେ କୁବଳୟାପୀଡ଼ ନାମକ ଏକ ବଡ଼ ଭୟଙ୍କର ବଳଶାଳୀ ହାତୀ ମଧ୍ୟ ଥିଲା । ସେ ବିଚାର କଲା ଏଠାରେ ଏକ ମଲ୍ଲଯୁଦ୍ଧର ଆୟୋଜନ କରିବାକୁ ହେବ । ସେଥିରେ ମଲ୍ଲଯୁଦ୍ଧ ଏବଂ ଏକ ଧନୁଷ-ଯଜ୍ଞର ଆୟୋଜନ କରି ଏହି ଉତ୍ସବର ଆଳରେ ଶ୍ରୀକୃଷ୍ଣ ତଥା ବଳରାମଙ୍କୁ ଏଠାକୁ ଆସିବା ନିମନ୍ତେ ନିୟନ୍ତ୍ରଣ କରିବା । ଏଠାକୁ ଡାକି ଆଣି କୁବଳୟାପୀକ୍ଷ ହାତୀକୁ ସେ ଦୁଇଜଣଙ୍କ ଆଡ଼କୁ ଛାଡ଼ି ଦେବା । ସେମାନେ କୁବଳୟାପୀଡ଼ ଦ୍ୱାରା ହିଁ ମରିଯିବେ, ନଚେତ୍ ପୁଣି ସେମାନଙ୍କୁ କୁସ୍ତୀ କରିବା ନିମନ୍ତେ କହିବା । ଏବେ ଏଠାରେ ଧ୍ୟାନ ରଖନ୍ତୁ, ଭଗବାନ ଶ୍ରୀକୃଷ୍ଣ ଏହି ସମୟରେ ଏଗାର ବର୍ଷର ବାଳକ ଅଟନ୍ତି । ଯେତେବେଳେ କି ଚାଣୂର ଏବଂ ମୁଷ୍ଟିକ ବଡ଼ ବଡ଼ ପହଲମାନ ଅଟନ୍ତି । କହୁଛନ୍ତି - ଏମାନଙ୍କ ସହିତ ସେମାନଙ୍କର କୁସ୍ତୀ କରାଇ ଦେବେ । ତେବେ ସେମାନେ ଏମାନଙ୍କୁ ଧରି ଚୂର୍ଣ୍ଣ କରିଦେବେ । ଏହିଭଳି ଯୋଜନା କରି କଂସ ଏହି ଦୁଇଜଣଙ୍କୁ (ଶ୍ରୀକୃଷ୍ଣ ଓ ବଳରାମଜୀଙ୍କୁ) ଆଣିବା ନିମନ୍ତେ ଅକ୍ରୁର ଜୀଙ୍କୁ ଭଗବାନଙ୍କ ନିକଟକୁ ବ୍ରଜକୁ ପଠାଉଛନ୍ତି ।

ଏହା ଭିତରେ କେଶୀ ଯେ କି ପ୍ରଥମେ ହୟଗ୍ରୀବ ନାମକ ଅସୁର ଥିଲା, ଯେ କି ପ୍ରଳୟ ସମୟରେ ବେଦକୁ ଚୋରାଇ ନେଇଥିଲା, ସେ ଘୋଡ଼ା ରୂପରେ ହୁଁକାର କରି ବ୍ରଜରେ ପହଞ୍ଚିଲା । (ଏବଂ ସେ ବେଦକୁ ଲୁଚାଇ ଦେଇଥାଏ ।) ଘୋଡ଼ା ସ୍ୱଭାବ ଯୋଗୁଁ - ଘୋର ଧ୍ୱନୀ କରୁଥାଏ । କେଶୀ ମଧ୍ୟ ବହୁତ ଜୋରରେ ଶବ୍ଦ କରି ବ୍ରଜର ସମସ୍ତଙ୍କ ମନରେ ଭୟ ସୃଷ୍ଟି କରାଇଦେଲା । ଏଠାରେ ବୁଝିବା ଉଚିତ୍ ଯେ ବେଦର ଅଧ୍ୟୟନ ମଧ୍ୟ ଭକ୍ତିର ବିରୋଧୀ ହେବା ଉଚିତ୍ ନୁହେଁ । ଯଦି ଏପରି ହୁଏ ତ, ବାସ୍ତବିକ ତାହା ବେଦାର୍ଥର ବିରୋଧି ଅଟେ, ତାର ତିରସ୍କାର କରିବା କଥା । ସେଥିପାଇଁ ଭଗବାନ ଏହି କେଶୀ ନାମକ ଅସୁରକୁ ବଧ କରିଦେଲେ ।

ଜୀବନରେ ମଧ୍ୟ କେତେଥର ଏପରି ହୋଇଥାଏ, କେଜାଣି କେଉଁଠାରୁ କେହି ଆସିଯାଆନ୍ତି ଏବଂ କହିବାକୁ ଲାଗନ୍ତି, "ମୁଁ ଆପଣଙ୍କୁ ବେଦ ପଢ଼ାଇବି ।" ସେ ବେଦର ବାସ୍ତବିକ ତାତ୍ପର୍ଯ୍ୟକୁ ତ ଗୁପ୍ତ ରଖିଦିଏ ଏବଂ ବେଦ ପଢ଼ାଇବା ଆଳରେ ସେ ଆମକୁ ଆଉ କିଛି ଶିଖାଇବାରେ ଲାଗିଯାଏ। ଏପରି ଆସୁରୀ ବେଦବାଦୀମାନଙ୍କ ଦ୍ୱାରା ବ୍ରଜବାସୀମାନଙ୍କର ଭକ୍ତି ଖଣ୍ଡିତ ହୋଇନଯାଉ, ଏପରି ବିଚାର କରି ଭଗବାନ ତାଙ୍କର ସେହି ଖଣ୍ଡନ ମାର୍ଗକୁ, ନିମିତ୍ତକୁ ନଷ୍ଟ କରିଦେଲେ, ସେହି ବେଦ ବିରୁଦ୍ଧ ମାର୍ଗକୁ ଅବରୁଦ୍ଧ କରିଦେଲେ । କେଶୀକୁ ନାଶ କରିଦେଲେ ।

ସେତେବେଳେ ନାରଦ ଜୀ ଭଗବାନଙ୍କ ପାଖକୁ ଆସି ତାଙ୍କର ସ୍ତୁତି କରୁଛନ୍ତି । କହୁଛନ୍ତି, "କେଶୀର ବଧ କରି ଆପଣ ସମସ୍ତଙ୍କୁ ତାର ଭୟରୁ ମୁକ୍ତ କରି ଆନନ୍ଦିତ କରି ଦେଲେ।" ପୁଣି ଆଗକୁ ଭଗବାନଙ୍କ ଦ୍ୱାରା ହେବାକୁ ଥିବା ସଂହାର ତଥା ବିଶିଷ୍ଟ କାର୍ଯ୍ୟକୁ ମଧ୍ୟ ସେ କହି ଶୁଣାଇଲେ । ତା ପରେ ଭଗବାନଙ୍କ ପାଖରୁ ବିଦାୟ ନେଇ ସେ ସେଠାରୁ ଚାଲିଗଲେ ।

ଦେଖନ୍ତୁ, କେହି କେହି ବ୍ୟୋମାସୁର ହୋଇଥାଆନ୍ତି । ଏହି ବ୍ୟୋମାସୁର କିଏ ? ଜଣାଅଛି । ଏ ଆମକୁ ଭକ୍ତି ମାର୍ଗରୁ ବିଚ୍ୟୁତ କରି ଆମର ଯୋଗ ସମାଧିକୁ ଜଡ଼ ସମାଧିରେ ଅଥବା ପୁଣି ଆମକୁ ଶୂନ୍ୟରେ ପହଞ୍ଚାଇ ଦେଇଥାଏ । ଯେ ଏପରି କରିଥାଏ, ସେ "ବ୍ୟୋମସୁର' ଅଟେ । ସେଥିପାଇଁ ଭଗବାନ ବ୍ରଜକୁ ଆସିଥିବା ସେହି ବ୍ୟୋମାସୁରକୁ ବଧ କଲେ ।

ଅରିଷ୍ଟାସୁର (ବୃଷଭାସୁର), କେଶୀ ତଥା ବ୍ୟୋମାସୁର ଏହି ତିନିଜଣଙ୍କୁ ଭଗବାନ ବଧ କଲେ, ଯଦ୍ଦ୍ୱାରା କି ବ୍ରଜବାସୀମାନଙ୍କୁ ନିରନ୍ତର ଭକ୍ତି ରସ ମିଳୁଥାଉ । ଏବେ ଏହା ଧ୍ୟାନରେ ରଖିବା କଥା ଯେ ଭକ୍ତି ରସର ପୁଷ୍ଟି ବିୟୋଗରେ ଅଧିକ ହୋଇଥାଏ । ବିୟୋଗ ଭକ୍ତି ରସକୁ ବଢ଼ାଇଥାଏ । କାରଣ ବିୟୋଗରେ ନିରନ୍ତର ସ୍ମରଣ ଚାଲିଥାଏ। ସେଥିପାଇଁ ଭଗବାନ ପ୍ରଥମେ ଏମାନଙ୍କୁ ସଂଯୋଗର ରତି ତ ପ୍ରଦାନ କରିଛନ୍ତି, ଏବେ ବିୟୋଗର ରତି ପ୍ରଦାନ କରିବାକୁ ଯାଉଛନ୍ତି । ତଦ୍ଦ୍ୱାରା ଭକ୍ତି ରସ ଦୃଢ଼ ହୋଇଥାଏ । ଯେପରି କି, ଦୁଧକୁ ଯଦି କଞ୍ଚା ରଖାଯାଏ ତ ତାହା ଫାଟିଯିବ (ଛାଡ଼ିଯିବ) । ଯଦି ତାକୁ ଗରମ କରି (ଫୁଟାଇ) ରଖାଯାଏ, ତେବେ ତାହା ଛିଡ଼େ ନାହିଁ । ଏପରି ଦେଖିଲେ ତ ଆମେ ଏବେ ମଧ୍ୟ ଗରମ ହୋଇ ରହିଛୁ, ପରନ୍ତୁ ଏହି ତାପ ସଂଯୋଗ ରହିତ ବିୟୋଗର ତାପ ଅଟେ । ସଂଯୋଗ ପରେ ଯେଉଁ ବିୟୋଗ ହୋଇଥାଏ, ତାର ତାପ ଅନ୍ୟ ପ୍ରକାର

ହୋଇଥାଏ । ତାହା ଅନ୍ତଃକରଣକୁ ପୂର୍ଣ୍ଣ ରୂପେ ନିଷ୍ଠାବାନ କରିଦେଇଥାଏ । ଭଗବାନ ବିଚାର କରୁଛନ୍ତି ଯେ ସଂଯୋଗର ରସ ତ ଏମାନେ ସମସ୍ତେ ଆସ୍ୱାଦନ କରିଛନ୍ତି, ଏବେ ଏମାନଙ୍କୁ ବିୟୋଗର ରସକୁ କିଛି ପରିମାଣରେ ଅନୁଭବ କରାଇବା । ସେଥିପାଇଁ ଭଗବାନ ଯିବା ପାଇଁ ପ୍ରସ୍ତୁତିରେ ଲାଗି ଯାଇଛନ୍ତି ।

## ଅକ୍ରୂର ଜୀଙ୍କର ବ୍ରଜଯାତ୍ରା

ଅକ୍ରୂର ଜୀ ଭଗବାନ ଶ୍ରୀକୃଷ୍ଣଠାରେ ଭକ୍ତି ଭାବ ରଖିଥିଲେ, ଭଗବାନ ମଧ୍ୟ ତାଙ୍କୁ ନିଜର ଚାଚା (କକା) ଭଳି ସମ୍ମାନ ଦେଉଥିଲେ । ସେ ତାଙ୍କର ଆତ୍ମୀୟସ୍ୱଜନ ହିଁ ଅଟନ୍ତି। ବହୁତ ବଡ଼ ବଂଶ ଅଟେ । ଅକ୍ରୂର ଜୀଙ୍କର ବୟସ ମଧ୍ୟ ଅଧିକ ଥିଲା । ଭଗବାନ ଏବେ ତାଙ୍କୁ ମଧ୍ୟ ଶୁଦ୍ଧ କରିଦେବାକୁ ଚାହୁଁଛନ୍ତି । ଦେଖନ୍ତୁ, ଭଗବାନଙ୍କୁ କିଏ ଆଣିପାରିବ ? କ୍ରୂର ତ ତାଙ୍କୁ ଆଣିପାରିବ ନାହିଁ । ସେଥିପାଇଁ ଭଗବାନଙ୍କୁ ମଥୁରାକୁ ଆଣିବା ନିମନ୍ତେ କଂସ ଅକ୍ରୂରଙ୍କୁ ପଠାଇଲା । ସେ ପ୍ରଥମେ କେତେକ କ୍ରୂର ଲୋକଙ୍କୁ ପଠାଇଥିଲା, ତ ସେ ସମସ୍ତଙ୍କର ସଂହାର ହୋଇଗଲା, ସମସ୍ତେ ନଷ୍ଟ ହୋଇଗଲେ । କହିଲେ କ୍ରୂର ଲୋକଙ୍କ ଦ୍ୱାରା ଆମେ ଭଗବାନଙ୍କର କ୍ଷତି କରିପାରିବା ନାହିଁ । କ୍ରୂରମାନଙ୍କ ଦ୍ୱାରା ଭଗବାନଙ୍କୁ ଏଠାକୁ ଆଣିପାରିବୁ ନାହିଁ । ତେଣୁ ଏବେ ଅକ୍ରୂରଙ୍କୁ ପଠାଉଛନ୍ତି, ଯେପରିକି ସେ ପ୍ରେମ ଦ୍ୱାରା ତାଙ୍କୁ ଏଠାକୁ ଆଣିପାରିବ । ଅକ୍ରୂରଙ୍କୁ ତ ସେ ମନା କରିବେ ନାହିଁ ।

ଏପରି ବିଚାର କରି, ନିଜର ଏହି କୁଯୋଜନାକୁ ଅକ୍ରୂରଜୀଙ୍କୁ ଶୁଣାଇ କଂସ ତାଙ୍କୁ କହୁଛି, "ଆପଣ ନନ୍ଦ ଗ୍ରାମକୁ ଯାଆନ୍ତୁ ଏବଂ କୁହନ୍ତୁ ଯେ ମଥୁରାରେ ଏକ ବିରାଟ ଗମ୍ଭୀର ଧନୁଷ-ଯଜ୍ଞର ଆୟୋଜନ କରାଯାଉଛି । ଆପଣ ତାକୁ ଦେଖିବାକୁ ଚାଲନ୍ତୁ । ଏଭଳି କହି ଶ୍ରୀକୃଷ୍ଣ ତଥା ବଳରାମଙ୍କ ସହିତ ସେମାନଙ୍କୁ ନେଇ ଆସନ୍ତୁ ।" କଂସର ଅଭିପ୍ରାୟକୁ ଜାଣିଲା ପରେ ଅକ୍ରୂରଜୀଙ୍କୁ ତ ଭଲ ଲାଗିଲା ନାହିଁ । କିନ୍ତୁ ସେ ବିଚାର କରୁଛନ୍ତି । ଏହି ଆଳରେ ମୋତେ ବୃନ୍ଦାବନ ଯିବାକୁ ମିଳିବ, ସେଠାରେ ମୋତେ ଭଗବାନଙ୍କ ଦର୍ଶନ ମିଳିବ। ସେମାନଙ୍କୁ ସାଥିରେ ଆଣିବାର ସୌଭାଗ୍ୟ ମଧ୍ୟ ପ୍ରାପ୍ତ ହେବ । ମୋର ଆଉ କଣ ଆବଶ୍ୟକ ? ସେ ତ ଭଗବାନ, ଶକ୍ତିଶାଳୀ ଅଟନ୍ତି । ସେ ତ କଂସକୁ ଡରିବା ବାଲା ନୁହେଁ । ମୋତେ ମଧ୍ୟ ସେଥିପାଇଁ ବ୍ୟସ୍ତ ହେବାର କୌଣସି ଆବଶ୍ୟକତା ନାହିଁ ।

ଏପରି ବିଚାର କରି, ଅକ୍ରୂରଜୀ ଭଗବାନଙ୍କୁ ଆଣିବା ନିମନ୍ତେ ରଥରେ ଚଢ଼ି ମଥୁରାରୁ ବୃନ୍ଦାବନ ଆଡ଼କୁ ବାହାରି ଗଲେ । ରାସ୍ତାରେ ଅକ୍ରୂର ଜୀ ମନୋରଥ (କଳ୍ପନା) କରି ଚାଲିଛନ୍ତି - ମୁଁ ସେହି ଭଗବାନଙ୍କର ଦର୍ଶନ କରିବାକୁ ଯାଉଛି, ଯେ କି ସମସ୍ତ ପୃଥିବୀର ଭାରକୁ ହରଣ କରିବା ନିମନ୍ତେ ଏଠାରେ ପ୍ରକଟ ହୋଇଛନ୍ତି, ଯେ ସେଠାରେ ନନ୍ଦବାବା ଏବଂ ଯଶୋଦା ଜୀଙ୍କୁ ନିଜ ବାଳ ଲୀଳାର ସୁଖ ପ୍ରଦାନ କରିଛନ୍ତି, ବାଛୁରୀ ତଥା ଗାଈମାନଙ୍କୁ ଚରାଇଛନ୍ତି । ଗୋପାଳ ବାଳକମାନଙ୍କ ସହିତ ମିଶି ସେ ମାଖନ ଚୋରୀ ଲୀଳା କଲେ, ଜଣାନାହିଁ ଆହୁରି କେତେ କେତେ ଲୀଳାମାନ ସବୁ କରିଛନ୍ତି । ଗୋପିମାନଙ୍କ ସହିତ ବିହାର ମଧ୍ୟ କରିଛନ୍ତି । ସେହି ଭଗବାନଙ୍କର ଦର୍ଶନ ମୋତେ ଏବେ ହେବ । ଏପରି (କଳ୍ପନା) ମନୋରଥ କରି କରି ଏବେ ଅକ୍ରୂର ଜୀ ଭୂମିକୁ ଅନୁସରଣ କରି ଯାଉଛନ୍ତି, ଯେ କାହିଁ କେଉଁଠାରେ ତ ଭଗବାନଙ୍କର ଚରଣ ଚିହ୍ନ ଦେଖାଯାଉ ନାହିଁ ? କାରଣ ସେ ତ ଏଇଠାରେ କେଉଁଠି ଚାଲିଥିବେ, ବୁଲିଥିବେ । ଚାଲୁ-ଚାଲୁ ତାଙ୍କୁ ଭଗବାନଙ୍କର ଚରଣ-ଚିହ୍ନର ଦର୍ଶନ ମଧ୍ୟ ହୋଇଗଲା । ଦର୍ଶନ ପାଉ ପାଉ ଅକ୍ରୂରଜୀ ରଥ ଉପରୁ ଡେଇଁ ପଡୁଛନ୍ତି ଏବଂ ସେହିଠାରେ ଗଡ଼ି ଯାଉଛନ୍ତି । ପୁଣି ସେହି ଚିହ୍ନକୁ ସାଷ୍ଟାଙ୍ଗ ପ୍ରଣିପାତ କରୁଛନ୍ତି ।

ତାପରେ, ଆଗକୁ ଯାଇ ଅକ୍ରୂର ଜୀ ଦେଖିଲେ ଯେ ଶ୍ରୀକୃଷ୍ଣ ଜୀ ଓ ବଳରାମ ଜୀ ଦୁଇଜଣ ଗୋ ଦୋହନ ସ୍ଥାନରେ ଉପସ୍ଥିତ ଅଛନ୍ତି । ସେ ଦୁଇଜଣଙ୍କର ଅତି ଶୋଭନ ବେଶ-ଭୂଷା ତଥା ରୂପ ଲାବଣ୍ୟକୁ ଦେଖି ଅକ୍ରୂର ଜୀ ମୁଗ୍ଧ ହୋଇଗଲେ । ପ୍ରେମ ଭାବରେ ଓତଃପ୍ରୋତ ହୋଇ ସେ ପୁଣି ରଥରୁ କୁଦି ପଡ଼ିଲେ ଏବଂ ଶ୍ରୀକୃଷ୍ଣ-ବଳରାମ ଦୁହିଁଙ୍କ ଚରଣରେ ସାଷ୍ଟାଙ୍ଗ ଲୋଟିଗଲେ । ତାଙ୍କ ଆଖିରୁ ଅଶ୍ରୁଧାରା ବହିବାକୁ ଲାଗିଲା। ଭଗବାନ ଅତି ପ୍ରେମରେ ତାଙ୍କୁ ହୃଦୟରେ ଲଗାଇଲେ । ପୁଣି ବଳରାମ ଜୀ ମଧ୍ୟ ତାଙ୍କୁ ହୃଦୟରେ ଲଗାଇଲେ ଏବଂ ଦୁଇଭାଇ ମିଶି ତାଙ୍କ ହାତ ଧରି ତାଙ୍କୁ ଘରକୁ ନେଇ ଆସିଲେ ଏବଂ ସେଠାରେ ତାଙ୍କର ଅତି ଉତ୍ତମ ରୂପେ ସ୍ୱାଗତ ସତ୍କାର କଲେ । ନନ୍ଦବାବା ମଧ୍ୟ ତାଙ୍କର ସମ୍ମାନ କଲେ ଏବଂ ଅତି ପ୍ରେମ ପୂର୍ବକ ତାଙ୍କର କୁଶଳ ମଙ୍ଗଳ ପଚାରିଲେ। ମଥୁରାର ସମାଚାର ମଧ୍ୟ ପଚାରିଲେ ।

ମଥୁରାରୁ ଆସିବା ସମୟରେ ଅକ୍ରୂର ଜୀଙ୍କ ମନରେ ଭାବନା ଆସୁଥିଲା ଯେ ଶ୍ରୀକୃଷ୍ଣ ମୋତେ ଚାଚା-ଚାଚା ସମ୍ବୋଧନ କରି ଡାକିବେ, ପୁଣି ମଥୁରାକୁ ଆସିଲେ ମୋ ଘରକୁ ମଧ୍ୟ ଆସିବେ । ଦେଖନ୍ତୁ, ଏଠାରେ ଆସୁ ଆସୁ ପ୍ରଣାମ କଲାପରେ ଭଗବାନ ତାଙ୍କ ସହିତ ସେହିଭଳି କଥା ହେବାକୁ ଲାଗିଲେ । ତାଙ୍କ ଇଛାକୁ ପୂର୍ଣ୍ଣ କଲେ । କେବଳ

ଏତିକି ନୁହେଁ, ଭଗବାନ ତ ତାଙ୍କର ପାଦ ମଧ୍ୟ ଆଉଁଷି ଦେଉଛନ୍ତି, ତାଙ୍କର କ୍ଳାନ୍ତି ଦୂର କରିଛନ୍ତି । ପୁଣି ରାତ୍ରିରେ ଯେତେବେଳେ ସମସ୍ତେ ଏ ପାଖ, ସେ ପାଖ ହୋଇଗଲେ, ଭଗବାନ ଶ୍ରୀକୃଷ୍ଣ ତାଙ୍କୁ ପଚାରୁଛନ୍ତି ଯେ ମଥୁରାର ସ୍ଥିତି କ'ଣ ? ସେଠାକାର ଖବର କ'ଣ ? ଅକ୍ରୂର କହିଲେ - ଆପଣଙ୍କୁ କଣ ଖବର କହିବି ? ସେଠାରେ ଆପଣଙ୍କ ମାତା, ପିତାଙ୍କୁ କଂସ ଜେଲରେ ରଖିଛି । ନିଜର ପିତା ଉଗ୍ରସେନଙ୍କୁ ମଧ୍ୟ ଜେଲରେ ଭର୍ତ୍ତିକରି ସେ ନିଜେ ରାଜା ହୋଇ ବସିଛି ଏବଂ ସମସ୍ତଙ୍କୁ ବହୁତ କଷ୍ଟ ଦେଉଛି । ଏବେ ଶିଘ୍ର ତାର ସଂହାର ହୋଇଯିବା ଉଚିତ । ଭଗବାନ କହିଲେ, ଠିକ ଅଛି, ଯିବା ନିମନ୍ତେ ପ୍ରସ୍ତୁତି କରନ୍ତୁ ।

ଯେତେବେଳେ ବ୍ରଜରେ ଏହି ଖବର ପ୍ରଚାର ହୋଇଗଲା ଯେ ଅକ୍ରୂର ଭଗବାନଙ୍କୁ ନେଇଯିବା ପାଇଁ ଆସିଛନ୍ତି, ତ ସେମାନେ ସମସ୍ତେ କହିବାକୁ ଲାଗିଲେ - ତାଙ୍କ ନାମ ଅକ୍ରୂର କିଏ ଦେଲା ? ଏ ଅକ୍ରୂର ନା କ୍ରୂର ? ଦେଖନ୍ତୁ, ଗୋକୁଳରେ ପଦାର୍ପଣ କରିବାଠାରୁ ଏ ପର୍ଯ୍ୟନ୍ତ ଏହି ବ୍ରଜବାସୀମାନଙ୍କର ଭଗବାନଙ୍କ ସହିତ ଯେପରି ସମ୍ବନ୍ଧ ରହିଛି, ତାକୁ ଆମେ ଦେଖିଛନ୍ତି । ଭଗବାନଙ୍କର ସେମାନଙ୍କ ପ୍ରତି କିଭଳି ପ୍ରେମ ଅଛି, ସମସ୍ତେ ତାଙ୍କ ସହିତ ମଧ୍ୟ କିପରି ପ୍ରେମ କରିଛନ୍ତି, ତାହା ମଧ୍ୟ ଆମେ ଜାଣିଛନ୍ତି। ସେହି ଭଗବାନ ସେଠାରୁ ଚାଲିଯିବେ, ଏହା ଶୁଣି ସେ ସମୟରେ ସେମାନଙ୍କର ସ୍ଥିତି କିପରି ହୋଇଯାଇଥିବ, ଆମ୍ଭେମାନେ ତାର କଳ୍ପନା ମଧ୍ୟ କରିପାରିବା ନାହିଁ । ଆମେ ଗୋପିମାନଙ୍କର ପ୍ରେମ ମଧ୍ୟ ଦେଖିଛନ୍ତି ଯେ କିପରି ସେମାନେ ନିଜର ବକ୍ଷସ୍ଥଳରେ ମଧ୍ୟ ଭଗବାନଙ୍କ ଚରଣ ରଖିବା ପାଇଁ ଡରୁଛନ୍ତି, ସେମାନଙ୍କୁ ଲାଗୁଛି ଯେ- ଭଗବାନଙ୍କ ଚରଣ ଏତେ କୋମଳ ଯେ ଯାହା ଅପେକ୍ଷା ସେମାନଙ୍କର ନିଜର ବକ୍ଷସ୍ଥଳ ମଧ୍ୟ ଅତି କଠୋର। ସେହି ଅତି ସୁକୋମଳ ଚରଣ ଦ୍ୱାରା ଶ୍ରୀକୃଷ୍ଣ ବନରେ ବୁଲୁଛନ୍ତି, ଏପରି ଚିନ୍ତା କରି କରି ଯେଉଁମାନଙ୍କୁ ଦୁଃଖ ହେଉଛି, ଏପରି ଯେଉଁମାନଙ୍କର ଭକ୍ତି, ପ୍ରେମ, ସେମାନଙ୍କୁ ଯେତେବେଳେ ଏହି ସମାଚାର ମିଳିଲା, ତ ସେମାନେ ଚିନ୍ତା କରିବାକୁ ଲାଗିଲେ ଯେ ଭଗବାନ କରନ୍ତୁ ଏହି ଖବର ମିଥ୍ୟା ହେଉ । ଏହା ଜନରବ ହୋଇଥାଉ । ଏହି ସମାଚାର ସତ୍ୟ ନ ହେଉ । କିନ୍ତୁ କଣ କରାଯିବ, ଯେଉଁ କଥାକୁ ଆମେ ଜନରବ ହୋଇଥାଉ ବୋଲି ଭାବିଥାଉ, ତାହା ପ୍ରାୟ ସତ୍ୟ ହୋଇଥାଏ । ଗୋପୀମାନେ ଜାଣିଛନ୍ତି ଯେ ଧନୁ-ଯଜ୍ଞ ତ କେବଳ ଏକ ବାହାନା ଅଟେ । ଶ୍ରୀକୃଷ୍ଣ ଥରେ ଏଠାରୁ ଚାଲିଗଲା ପରେ ଆଉ କେବେ ଆସିବେ ନାହିଁ। ସେମାନଙ୍କୁ ଜଣାଅଛି ଯେ ଭଗବାନ ଯେଉଁଠିକୁ ଯିବେ ଲୋକମାନେ ସେଠାରେ ତାଙ୍କୁ ଅଟକାଇବାକୁ ଚାହିଁବେ, ବସାଇ ରଖିବେ, ତାଙ୍କୁ ଛାଡ଼ିବାକୁ ଚାହିଁବେ ନାହିଁ ।

ପୁଣି ସେମାନେ ବିଚାର କରୁଛନ୍ତି ଯେ ଏଠାରେ ଆମେ ସମସ୍ତେ ଅପାଠୁଆ ଗୋପୀ, ଆମକୁ ତ କିଛି ଜଣାନାହିଁ, ନା ଢଙ୍ଗରେ ବସ୍ତ୍ର ପିନ୍ଧିବାକୁ ଆସେ, ନା ଢଙ୍ଗରେ କଥା କହି ଆସେ, ନା ଢଙ୍ଗରେ ବସିବା, ଉଠିବା ଆସେ । ଭଗବାନ ଯେଉଁ ସହରକୁ ଯିବେ, ସେଠାରେ ତ ବଡ଼ ବଡ଼ ମହଲ ଥିବ । ସେଠାର ପୁଅ, ଝିଅ, ସ୍ତ୍ରୀ-ପୁରୁଷ ସମସ୍ତେ ପଢ଼ା-ଲେଖା ଜାଣିଥିବେ । ଭଗବାନ ସେମାନଙ୍କୁ ଦେଖି ମୋହିତ ହୋଇ ସେମାନଙ୍କ ସହିତ ରହିବାକୁ ଲାଗିବେ। ସେଠାରେ ସେ ଆମକୁ କାହିଁକି ମନେ ପକାଇବେ ? ଅଧିକନ୍ତୁ, ଆମେ ସମସ୍ତେ ତ ତାଙ୍କ ମା'ଙ୍କ ନିକଟରେ ସେମାନଙ୍କ ନାମରେ ଅଭିଯୋଗ କରୁଥିଲୁ ନା ? ଏହିଭଳି ଚିନ୍ତା କରି କରି ସେମାନଙ୍କର ହୃଦୟ ପୂର୍ବଠାରୁ ମଧ୍ୟ ଅଧିକ ଦୁଃଖି ହେବାକୁ ଲାଗିଲା । ସେମାନେ ସମସ୍ତେ ଭାବୁଥିଲେ ଯେ ଏହି ସମାଚାର ମିଥ୍ୟା ହେଉ, କିନ୍ତୁ ତାହା ସତ୍ୟ ହେଲା ।

## ଶ୍ରୀକୃଷ୍ଣ, ବଳରାମଙ୍କର ମଥୁରାଗମନ

ଶ୍ରୀକୃଷ୍ଣ କଂସର ନିମନ୍ତ୍ରଣ ବିଷୟରେ ନନ୍ଦବାବାଙ୍କୁ କହିଲେ ଏବଂ ନନ୍ଦବାବା ସମସ୍ତ ଗୋପାଳମାନଙ୍କୁ ଆଜ୍ଞା ଦେଲେ ଯେ କାଲି ପ୍ରଭାତ ସମୟରେ ସେହି ଉତ୍ସବରେ ସମ୍ମିଳିତ ହେବା ନିମନ୍ତେ ମଥୁରା ଯାତ୍ରା କରିବାକୁ ହେବ, ସେଥିପାଇଁ ପ୍ରସ୍ତୁତି କରିନିଅ। ଦୁଧ ଏବଂ ଅନ୍ୟ ସାମଗ୍ରୀ ଏକତ୍ରିତ କରି ନିଅ ଏବଂ ଶଗଡ଼ ଗାଡ଼ିକୁ ମଧ୍ୟ ସଜାଡ଼ି ନିଅ। ତା ପରଦିନ ଶଗଡ଼ ଗାଡ଼ିରେ ସମସ୍ତ ବସ୍ତୁଗୁଡ଼ିକୁ ଲଦା ହେଲା । ଅକ୍ରୁର ଶ୍ରୀକୃଷ୍ଣ ଓ ବଳରାମଙ୍କୁ ନିଜ ରଥରେ ବସିବା ପାଇଁ କହିଲେ । ତା ପରେ ନନ୍ଦ ଆଦି ଗୋପାଳମାନେ ତଥା ଗୋପବାଳକମାନେ ସମସ୍ତେ ନିଜ ନିଜର ଶଗଡ଼ ଗାଡ଼ିରେ ବସିଗଲେ । ସେମାନଙ୍କୁ ଜଣାନାହିଁ ଯେ ଏହି କୃଷ୍ଣ ତଥା ବଳରାମ ଏବେ ସବୁଦିନ ପାଇଁ ଏଠାରୁ ଚାଲିଯିବେ କାରଣ ସେମାନେ ସମସ୍ତେ ଅତି ସିଧା ସାଧା ସରଳ ପ୍ରକୃତିର ଅଟନ୍ତି। ତେବେ ସମସ୍ତ ପ୍ରସ୍ତୁତି ପରେ ସମସ୍ତେ ଯାତ୍ରା ଆରମ୍ଭ କଲେ ।

ଦେଖନ୍ତୁ, ଶ୍ରୀକୃଷ୍ଣ କିଭଳି ଅଟନ୍ତି । ସେହି ସମୟରେ ସେ ଗୋପୀମାନଙ୍କ ସହିତ କଥା ମଧ୍ୟ କରୁନାହାନ୍ତି, ସେମାନଙ୍କ ପାଖକୁ ଯାଉ ହିଁ ନାହାନ୍ତି । ସେହି ରଥରେ ବସି ରହିଲେ ଏବଂ ସେମାନେ ବିଚାରୀ ପ୍ରତିକ୍ଷା କରୁଥିଲେ ଯେ ଆମ ପାଖକୁ ଆସି କିଛି ତ କଥା ହୋଇଯିବେ, କିଛି ସାନ୍ତ୍ୱନା ଦେଇଯିବେ । କିନ୍ତୁ ସେ ଯାଉନାହାନ୍ତି । ସେହି ସମୟରେ ଲଜ୍ୟା ଛାଡ଼ି ସେମାନେ କାନ୍ଦିବାକୁ ଲାଗିଲେ । ଭଗବାନ ଦେଖିଲେ, କିନ୍ତୁ ସେମାନଙ୍କ ସମ୍ମୁଖକୁ ଯିବା ପାଇଁ ସାହାସ ବାନ୍ଧି ପାରୁନାହାନ୍ତି । ତାଙ୍କୁ ଲାଗିଲା ଯେ ଯଦି

ମୁଁ ସେମାନଙ୍କ ପାଖକୁ ଗଲି, ତେବେ ମୁଁ ସେଠାରୁ ଆସିପାରିବି ନାହିଁ । ଏପରି ବିଚାର କରି ସେ ଜଣେ ଦୂତକୁ ପଠାଇଲେ । ଦୂତକୁ କହିଲେ ଯେ ସେଠାକୁ ଯାଇ ସେମାନଙ୍କୁ କୁହ ଯେ **"ଆୟାସ୍ୟ ଇତି'** ମୁଁ ସେମାନଙ୍କ ସହିତ ମିଳିବା ପାଇଁ ପୁନର୍ବାର ଆସିବି । "ମୁଁ ଫେରି ଆସିବି' ଏହି କଥାଟି ସ୍ୱୟଂ କରିବା ପାଇଁ ତାଙ୍କର ସାହାସ ହେଲା ନାହିଁ । ଯେଉଁ ପର୍ଯ୍ୟନ୍ତ ରଥ ଚାଲିବାର ଧୂଳି ଉଡୁଥିବାର ଦେଖାଯାଉଥିଲା, ସେ ପର୍ଯ୍ୟନ୍ତ ସେମାନେ ସେହିଠାରେ ଛିଡ଼ା ହୋଇ ତାକୁ ଦେଖୁଥିଲେ । ସେମାନେ ଫେରି ଆସି କଣ କରିବେ ? ଜାଣନ୍ତୁ ଯେ, ସେମାନଙ୍କର ତ ପ୍ରାଣ ଚାଲିଯାଇଛି ।

ସନ୍ଥ ମୀରାବାଈ ବହୁତ ସୁନ୍ଦର ପଦ ଲେଖିଛନ୍ତି । **"ସଖୀ ଲାଜ ବୈରନ ଭଈ'** ନିଜର ସଖୀକୁ କହୁଛନ୍ତି- ମୁଁ ଭଗବାନଙ୍କ ସହ ଚାଲିଯିବାକୁ ଚାହୁଁଥିଲି । ଡେଇଁ ପଡ଼ି ରଥରେ ବସିବାକୁ କିନ୍ତୁ ଏହି ଲଜ୍ଜା- ସଂକୋଚ ମୋର ଶତ୍ରୁ ହୋଇଗଲା । ମୁଁ ଏହିଠାରେ ରହିଗଲି । ଗୋଟିଏ କ୍ଷଣର ଭୁଲ ପାଇଁ ଏବେ ମୋତେ ସବୁଦିନ ପାଇଁ ଏଠାରେ କାନ୍ଦିବାକୁ ପଡ଼ିବ । ମୁଁ ବାଳଗୋପାଳଙ୍କ ସାଙ୍ଗରେ କାହିଁକି ଗଲି ନାହିଁ ? **"ସଖୀ ଲାଜ ବୈରନ ଭଈ'** । ଦେଖନ୍ତୁ, ବ୍ରଜବାସୀମାନଙ୍କର ପ୍ରେମ ହେଉଛି ଏହିପରି ।

ଭଗବାନ ଏମାନଙ୍କୁ ଏହିଠାରେ ବୃନ୍ଦାବନରେ ଛାଡ଼ି ଆଗକୁ ଚାଲିଲେ । ସମସ୍ତ ଭକ୍ତମାନଙ୍କୁ ଭକ୍ତମାନଙ୍କ ସାଥିରେ ହିଁ ରହିବା ଉଚିତ୍, ଭଗବାନଙ୍କ ସହିତ ନୁହେଁ । ରଥ ଚଳାଇ ଅକ୍ରୂର ଆଗକୁ ଯାଉଛନ୍ତି । ରାସ୍ତାରେ ଯମୁନା ଜୀଙ୍କ କୂଳରେ ସେ କିଛି ସମୟ ରହିଯାଉଛନ୍ତି, କାରଣ ସେ ପର୍ଯ୍ୟନ୍ତ ସେ ନିରନ୍ତର ଚାଲୁଥିଲେ । ସେ ଭାବିଲେ ଶ୍ରୀକୃଷ୍ଣ, ବଳରାମଙ୍କୁ ମଧ୍ୟ କିଛି ସମୟ ବିଶ୍ରାମ କରିବାକୁ ଦେବି ଏବଂ ସନ୍ଧ୍ୟାବନ୍ଦନ କରିନିଅନ୍ତୁ । ତେଣୁ ସେ ସେଠାରେ ରହିଛନ୍ତି । ଭଗବାନ ଶ୍ରୀକୃଷ୍ଣ ଓ ବଳରାମ ଦୁହେଁ ହାତ, ମୁହଁ ଧୋଇ ଜଳପାନ କଲେ ଏବଂ ପୁଣି ଲେଉଟି ଆସି ରଥରେ ବସିଗଲେ ।

ତାପରେ ସେମାନଙ୍କଠାରୁ ଆଜ୍ଞା ନେଇ ନଦୀକୁ ଯାଉଛନ୍ତି, ସେଠାରେ ବ୍ରହ୍ମ ହ୍ରଦରେ ସ୍ନାନ କରୁଛନ୍ତି ଏବଂ ତାପରେ ଜଳରେ ବୁଡ଼ି ଯେତେବେଳେ ଜପ କରୁଛନ୍ତି, ସେତେବେଳେ ଏକ ଆଶ୍ଚର୍ଯ୍ୟ ଘଟଣା ଘଟିଲା ଯେ ନଦୀ ଜଳ ଭିତରେ ଶ୍ରୀକୃଷ୍ଣ ଓ ବଳରାମ ତାଙ୍କୁ (ଅକ୍ରୂରଜୀ) ଦୃଶ୍ୟ ହେଲେ । କହିଲେ, ମୁଁ ତ ସେମାନଙ୍କୁ ସେଠାରେ (ରଥ ଉପରେ) ଛାଡ଼ି କରି ଆସିଥିଲି, ଏଠାକୁ ସେମାନେ କିପରି ଆସିଗଲେ ? ମୁଣ୍ଡ ଉପରକୁ ଉଠାଇ ସେ ସେହିଠାରୁ ଦୃଷ୍ଟି ଫେରାଇ ଦେଖୁଛନ୍ତି ତ ସେ ଦୁହେଁ ସେହିଠାରେ ରଥ ଉପରେ ବସିଛନ୍ତି । ପୁଣିଥରେ ଯେତେବେଳେ ଜଳ ଭିତରେ ଦେଖିଲେ, ତ

ସେମାନେ ଏହିଠାରେ ଦେଖାଯାଉଛନ୍ତି । ଅକ୍ରୂର ବୁଝିପାରିଲେ ନାହିଁ ଯେ ଏହା ସବୁ କ'ଣ ହେଉଛି ? ପୁଣି କିଛି ସମୟ ପରେ, ନଦୀ ଗର୍ଭରେ ଭଗବାନ କ୍ଷୀର ସାଗରରେ ଶୟନ କଲାଭଳି ଦୃଶ୍ୟ, ନିଜର ସେହି ବିଷ୍ଣୁ ରୂପରେ ଦର୍ଶନ ଅକ୍ରୂରଙ୍କୁ କରାଇଲେ । ଭଗବତ୍ ସ୍ୱରୂପର ଦର୍ଶନ କରିବା ନିମନ୍ତେ ତାଙ୍କର (ଅକ୍ରୂରଙ୍କର) ଇଚ୍ଛା ଥିଲା, ଭଗବାନ ତାଙ୍କର ସେହି ଇଚ୍ଛାକୁ ପୂର୍ଣ୍ଣ କରିଦେଲେ । ଅକ୍ରୂର ଦର୍ଶନ କଲେ, ପୁଣି ତାଙ୍କର ସ୍ତୁତି କରି ସେ ଫେରି ଆସିଲେ । ସେତେବେଳେ ଭଗବାନ ତାଙ୍କୁ କହୁଛନ୍ତି ଯେ କକା, ଆପଣଙ୍କର କାହିଁକି ବିସ୍ମୟ ହେଉଛି ? ଆପଣ କ'ଣ ଜଳ ଭିତରେ କିଛି ଆଶ୍ଚର୍ଯ୍ୟ ଦେଖିଲେ କି ? ତ ଅକ୍ରୂର କହିଲେ, "ଆପଣଙ୍କ ଦର୍ଶନ ହେଲା ତ ସମସ୍ତ ଆଶ୍ଚର୍ଯ୍ୟ ଦେଖିନେଲି । ସେ ସମସ୍ତ ଆପଣଙ୍କ ଭିତରେ ହିଁ ଅଛି । ପୁଣି ରଥରେ ଚଢ଼ି ପୁନର୍ବାର ରଥ ଚଳାଇ ସେମାନେ ଆଗକୁ ବଢ଼ିଲେ ।

ଶ୍ରୀକୃଷ୍ଣ ଓ ବଳରାମଙ୍କୁ ନେଇ ଅକ୍ରୂର ଜୀଙ୍କର ରଥ ଯେତେବେଳେ ମଥୁରାରେ ପ୍ରବେଶ କରୁଛି, ସେତେବେଳେ ଅକ୍ରୂରଜୀ କହୁଛନ୍ତି, "ଭଗବାନ ଆପଣ ମୋ ଘରକୁ ଚାଲନ୍ତୁ ।" ଭଗବାନ କହୁଛନ୍ତି, "ମୁଁ ଆପଣଙ୍କ ଘରକୁ ନିଶ୍ଚୟ ଆସିବି, କିନ୍ତୁ ପରେ ଆସିବି । ଏବେ ଆପଣ ଆମ ଦୁଇଜଣଙ୍କୁ ଏହିଠାରେ ଓହ୍ଲାଇ ଦିଅନ୍ତୁ ।'' ସେତେବେଳକୁ ନନ୍ଦବାବା ତଥା ସମସ୍ତ ଗୋପାଳ, ଗୋପବାଳକମାନେ ମଧ୍ୟ ଆସି ମିଳିଗଲେ । ସେମାନେ ସେଠାରେ ପହଞ୍ଚି ସାରି ଏମାନଙ୍କୁ ଅପେକ୍ଷା କରିଥିଲେ । ଅକ୍ରୂର କହିଲେ, "ଆପଣ ମଥୁରାକୁ ପ୍ରଥମ ଥର ପାଇଁ ଆସିଛନ୍ତି । ଆପଣଙ୍କୁ ଏଠାରେ କିଛି ଜଣାନାହିଁ । ଏଠାରେ ମୁଁ ଆପଣମାନଙ୍କୁ କିପରି ଏଇଭଳି ଛାଡ଼ି ଦେଇଯିବି ?" ସେମାନେ କହିଲେ, "ନାହିଁ, ଆପଣ ଆମକୁ ଏହିଠାରେ ଛାଡ଼ି ଘରକୁ ଯାଆନ୍ତୁ ଏବଂ କଂସକୁ ଯାହା ସମାଚାର ଦେବା କଥା ଦେଇ ଦିଅନ୍ତୁ ।"

## ଶ୍ରୀକୃଷ୍ଣଙ୍କର ମଥୁରା ପ୍ରବେଶ

ରଥରୁ ଓହ୍ଲାଇ ଭଗବାନ ମଥୁରାରେ ପ୍ରବେଶ କରୁଛନ୍ତି । ଭଗବାନ ଜାଣି ଶୁଣି ଓହ୍ଲାଇ ପଡ଼ିଲେ । ସେଇଥିପାଇଁ ଯେ ମଥୁରାର ଗଳି ଭିତରେ ଯାଇ ଯେଉଁଠାରେ ତାଙ୍କର ଭକ୍ତମାନେ ବସିଥିଲେ, ସେ ସମସ୍ତଙ୍କୁ ଦର୍ଶନ ଦେବାକୁ ହେବ । ସେହି ସମସ୍ତଙ୍କର ଦର୍ଶନ ମଧ୍ୟ ସ୍ୱୟଂ ଭଗବାନଙ୍କୁ କରିବାକୁ ହେବ । ତାହା ସହିତ, ଭଗବାନ ସେଠାରେ କଂସ ତଥା ଅନ୍ୟାନ୍ୟ ଅସୁର ଓ ଦୁଷ୍ଟ ଲୋକମାନଙ୍କ ମନରେ ଭୟର ସଂଚାର ମଧ୍ୟ କରିବାକୁ ଚାହୁଁଛନ୍ତି । ପୁଣି ଦେଖନ୍ତୁ ଏତିକିବେଳେ କ'ଣ ହେଲା ? ଜଣେ ଧୋବା

କଂସର ବହୁତ ଲୁଗାପଟା ନେଇ ଯାଉଥିଲା । ତାର ବହୁତ ଅଭିମାନ ଥିଲା ଯେ ସେ କଂସର ଧୋବା । ପ୍ରାୟ ଯେଉଁମାନେ ବଡ଼ ଲୋକଙ୍କର ଚାକର ହୋଇଥାଆନ୍ତି ସେମାନଙ୍କର ଏହିଭଳି ଅଭିମାନ ହୋଇଥାଏ । ଶ୍ରୀକୃଷ୍ଣ ସେହି ଧୋବାକୁ କହୁଛନ୍ତି, "ଏଥିରେ ଆମର ଯୋଗ୍ୟ ଯେଉଁ ବସ୍ତ୍ର ଅଛି ଆମକୁ ଦେଇ ଦିଅ ।" ସେ ଧୋବା ବସ୍ତ୍ର ଦେଲା ନାହିଁ । (ସେହି ଧୋବା କିଏ, ଜଣାଅଛି ? ଏ ହେଉଛି ସେହି ଧୋବା ଯେ ରାମ ଅବତାର ସମୟରେ ମଧ ଧୋବା ଥିଲା । ଏବେ ମଧ ତାର ମନ ଶୁଦ୍ଧ ହୋଇ ନାହିଁ । କିନ୍ତୁ, ରାମ ଅବତାରରେ ଭଗବାନ ତାର କିଛି କରିନଥିଲେ । ପରନ୍ତୁ ଏବେ ଭଗବାନ ତାକୁ ମଧ ମୁକ୍ତ କରିବାକୁ ଚାହୁଁଛନ୍ତି ।) ଯେତେବେଳେ ଦେଖିଲେ ସେ ବସ୍ତ୍ର ଦେଲା ନାହିଁ, ତ ଭଗବାନ ଶ୍ରୀକୃଷ୍ଣ ତାକୁ ଏକ ଚାପୁଡ଼ା ଦେଲେ । ସେ ସେହିଥିରେ ଗଡ଼ି ପଡ଼ିଲା ଏବଂ ତାର ମୃତ୍ୟୁ ହେଲା । ଭଗବାନ ତା'ଠାରୁ ବସ୍ତ୍ର ନେଲେ ।

ନିଜର ଗୋପାଳ ମଣ୍ଡଳୀକୁ ମଧ ଭଗବାନ ବସ୍ତ୍ର ଦେଇଦେଲେ । ସେମାନଙ୍କୁ କହିଲେ – ତୁମ୍ଭେମାନେ ମଧ ପିନ୍ଧି ନିଅ । ଯାହାକୁ ଯାହା ପସନ୍ଦ ନିଜେ ଏହିଠାରୁ ନେଇ ପିନ୍ଧି ନିଅ । ଜଣାନାହିଁ, ସହରରେ ଏହି ବସ୍ତ୍ର କିପରି ପିନ୍ଧାଯାଏ କେଜାଣି ? କୌଣସି ଉପାୟରେ ହେଉ ପିନ୍ଧି ନିଅ । ଏବେ ଭଗବାନ ତ ବହୁତ ସାନ ଅଛନ୍ତି, କିନ୍ତୁ ସେହି ବସ୍ତ୍ର ସବୁ ବଡ଼ ବଡ଼ ଥିଲା। ସେହି ସମୟରେ ସେଠାରେ ଏକ ଦର୍ଜୀ ଆସି ପହଞ୍ଚିଗଲା। ତା ମନରେ ଭଗବାନଙ୍କ ପ୍ରତି ବହୁତ ପ୍ରେମ ଥିଲା । ସେ କହୁଛି – ମୁଁ ତାକୁ ଆପଣଙ୍କ ମାପ ଅନୁସାରେ ସିଲେଇ କରିଦେଉଛି । ଭଗବାନ କହିଲେ – ନେଇଯାଅ । ଦର୍ଜୀ ତାଙ୍କର ବସ୍ତ୍ର ସିଲେଇ କରିଦେଲେ । ଭଗବାନ ତାକୁ କଲ୍ୟାଣ କଲେ । ପୁଣି ଜଣେ ମାଳୀକୁ ମଧ ଭଗବାନ କୃପା କଲେ ।

## କୁବ୍‌ଜା ପ୍ରତି କୃପା

ଏହିଭଳି ଭାବରେ ମଥୁରାରେ ଭଗବାନ ସମସ୍ତ ଲୋକମାନଙ୍କ ଉପରେ ନିଜର ପ୍ରଭାବ ବିସ୍ତାର କରୁଛନ୍ତି । ପ୍ରଥମେ ସେ ଧୋବାକୁ ମାରିଦେଲେ । ମଥୁରାର ଲୋକମାନେ କହିବାକୁ ଲାଗିଲେ, ଆରେ ! କଂସର ଧୋବୀକୁ ମାରିବା ନିମନ୍ତେ କାହାର ସାହାସ ହେଲା ? କଂସର ସେବକକୁ ଗୋଟିଏ ଚାପୁଡ଼ାରେ ମାରି ଦେଲା ? ତୁରନ୍ତ ଏହି ସମାଚାର ପ୍ରଚାର ହୋଇଗଲା । ମଥୁରାରେ କୁବ୍ଜା ନାମରେ ଜଣେ କୁଜୀ ସ୍ତ୍ରୀଲୋକ ରହୁଥିଲା । ସେ କଂସ ପାଖରେ ରହି ସୈରନ୍ଧ୍ରୀର କାର୍ଯ୍ୟ କରୁଥିଲା । କଂସ ନିମନ୍ତେ ସେ ଅଙ୍ଗରାଗ, ଚନ୍ଦନ ଆଦି ନେଇ ଯାଉଥିଲା ଏବଂ ତାରି ସେବାରେ ରହିଥିଲା । ଏହା

ଦେଖି ଭଗବାନ ତାକୁ ସୁନ୍ଦରୀ କହି ସମ୍ବୋଧିତ କଲେ ଏବଂ ତାକୁ ଚନ୍ଦନ ଓ ଅଙ୍ଗରାଗ ମାଗିଲେ । ସେ ପ୍ରସନ୍ନ ହୋଇ ତାଙ୍କୁ ପ୍ରଦାନ କଲେ । ପୁଣି ଜଣାନାହିଁ କଣ ହେଲା ଯେ ସେ (ଶ୍ରୀକୃଷ୍ଣ) ତା ନିକଟକୁ ଗଲେ, ତା (ଚିବୁକ) ଥୋଡ଼ିକୁ ଧରି ନିଜର ପାଦକୁ ତାର ପାଦ ଉପରେ ରଖି ଯେମିତି ତାକୁ ଉପରକୁ କରିଛନ୍ତି, ତତ୍‌କ୍ଷଣାତ୍ ସେ ସିଧା ହୋଇଗଲା ସୁନ୍ଦରୀ ତ ସେ ପୂର୍ବରୁ ଥିଲା । ଏବେ ସେ ସର୍ବାଙ୍ଗ ସୁନ୍ଦରୀ ହୋଇଗଲା । କିନ୍ତୁ ସେ କୁବ୍‌ଜାର ମନ ଅତି ଶୁଦ୍ଧ ନ ଥିଲା । ତା ମନରେ କୌଣସି ଲଜ୍ଜ୍ୟା, ସଂକୋଚ ମଧ୍ୟ ନ ଥିଲା । ସେହି ମଝିରାସ୍ତାରେ ହିଁ ସେ ଶ୍ରୀକୃଷ୍ଣଙ୍କର ଉତ୍ତରୀୟ ଧରି ନେଲା । କହିଲା - ମୋ ସହିତ ମୋ ଘରକୁ ଚାଲ । ଭଗବାନ ମଧ୍ୟ କମ୍ ନୁହଁନ୍ତି । କହୁଛନ୍ତି – ଏବେ ତୁମେ ଯାଅ, ତୁମ ଘରକୁ ମୁଁ ପରେ ଆସିବି । ଭଗବାନ ତାକୁ ମଧ୍ୟ ବଚନ ଦେଇ ଦେଲେ । ପରେ ମଧ୍ୟ ତାକୁ ପୂର୍ଣ୍ଣ କଲେ।

## ଧନୁ-ଭଙ୍ଗ

ମଥୁରା ନଗରୀର ଦର୍ଶନ କରି ଆଗକୁ ଯାଉ ଯାଉ ସେ ଯଜ୍ଞ ମଣ୍ଡପରେ ପହଞ୍ଚି ଗଲେ। ସେଠାରେ ସେହି ଯଜ୍ଞମଣ୍ଡପର ମଧ୍ୟଭାଗରେ ସେହି ଧନୁ ରଖାଯାଇଥିଲା । ରକ୍ଷକମାନେ ଅଟକାଇବା ସତ୍ତ୍ୱେ ସେ ଅଟକିଲେ ନାହିଁ । ଭଗବାନ ତାକୁ (ଧନୁ) ଉଠାଇ ଡୋରି ଚଢ଼ାଇ ତାକୁ ଭାଙ୍ଗିଦେଲେ । ପୁଣି ସେ ଭଙ୍ଗା ଧନୁ ଦ୍ୱାରା ବଳରାମଜୀ ଏବଂ ଶ୍ରୀକୃଷ୍ଣ ସେହି ଦୁଷ୍ଟ ରକ୍ଷକମାନଙ୍କୁ କେବଳ ନୁହେଁ, ଅଧିକନ୍ତୁ ସେମାନଙ୍କୁ ସହାୟତା କରିବା ନିମନ୍ତେ ପଠାଯାଇଥିବା କଂସର ଅନ୍ୟ ସୈନ୍ୟମାନଙ୍କୁ ମଧ୍ୟ ମାରିଦେଲେ। ଅତି ଶୀଘ୍ର ନଗରର ସମସ୍ତ ଲୋକମାନଙ୍କ ଭିତରେ ଏହି ଖବର ପ୍ରସାରିତ ହୋଇଗଲା।

କଂସର ଆଉ ଯେତେ ବସ୍ତୁ ସେଠାରେ ଥିଲା, ଭଗବାନ ଶ୍ରୀକୃଷ୍ଣ ଗୋଟି-ଗୋଟି କରି ସେ ସମସ୍ତକୁ ନଷ୍ଟ କରି ଦେଲେ । ଏହି ସବୁ ଦେଖି କଂସ ପକ୍ଷର ଲୋକମାନଙ୍କ ମନରେ ପ୍ରବଳ ଭୟ ହେଲା, କିନ୍ତୁ ଅନ୍ୟ ଯେଉଁମାନେ ଭଗବାନଙ୍କର ଭକ୍ତ ଥିଲେ ସେମାନେ ସମସ୍ତେ ଅତି ପ୍ରସନ୍ନ ହୋଇଗଲେ । ସେମାନେ କହିବାକୁ ଲାଗିଲେ – ବହୁତ ଭଲ ହେଲା, ଏବେ ଏହି କଂସକୁ ତାର କରିଥିବା କର୍ମର ଫଳ ସବୁ ମିଳିଯିବ । ଏହିପରି ମଥୁରାରେ ବିଚରଣ କରି ସୂର୍ଯ୍ୟାସ୍ତ ସମୟରେ ଭଗବାନ ଶ୍ରୀକୃଷ୍ଣ ଏବଂ ବଳରାମ ତଥା ସେମାନଙ୍କର ସମସ୍ତ ସାଥୀ ଗୋପାଳବାଳକ ନିଜ ଶିବିରରେ ପହଞ୍ଚିଲେ । ଭୋଜନ ଆଦି ସମାପ୍ତି କରି ସେହି ରାତ୍ରି ସେମାନେ ସମସ୍ତେ ସେହିଠାରେ ହିଁ ବିଶ୍ରାମ କଲେ । କଂସର ସମସ୍ତ ଯୋଜନା ଜାଣିଲା ପରେ ମଧ୍ୟ ସମସ୍ତେ ନିଶ୍ଚିନ୍ତ ହୋଇ ଶୋଇଗଲେ ।

କଂସକୁ ସମସ୍ତ ଘଟଣା ଜଣାପଡ଼ିଲା ପରେ, ସେ ବହୁତ ଡ଼ରିଗଲା, ତାକୁ ରାତିରେ ନିଦ ମଧ୍ୟ ଆସିନଥିଲା ।

## କୁବଳୟାପୀଡ଼ର ଉଦ୍ଧାର

ତା ପରଦିନ ଭଗବାନ ରଙ୍ଗଶାଳାରେ ପହଞ୍ଚି ଦ୍ୱାରରେ ଠିଆ ହୋଇଥିବା ମଦମତ୍ତ କୁବଳୟାପୀଡ଼ ହାତୀକୁ ଝୁଲୁଥିବାର ଦେଖିଲେ। ଯିବା ପାଇଁ ରାସ୍ତା ଚାହିଁବାରୁ ମହନ୍ତ ହାତୀକୁ କ୍ରୋଧିତ କରାଇ ଭଗବାନଙ୍କ ଆଡ଼କୁ ଆଗେଇଲା । ଭଗବାନ ତା ସହିତ କିଛି ସମୟ ଖେଳିବା ପରେ ତାର ଶୁଣ୍ଢକୁ ଧରି ତାକୁ ଫୋପାଡ଼ି ଦେଲେ । ପୁଣି ତାକୁ ଚାପି ଧରି ତାର ଦୁଇଦାନ୍ତକୁ ଉପାଡ଼ି ଦେଲେ । ଗୋଟିଏ ଦାନ୍ତକୁ ବଳରାମଙ୍କୁ ଦେଇ ଦେଲେ ଏବଂ ଅନ୍ୟଟିକୁ ନିଜ ପାଖରେ ରଖିଦେଲେ ।

ସେହି ରଙ୍ଗଶାଳାରେ ଭିତରେ କଂସ ସବୁଠାରୁ ଉଚ୍ଚ ମଞ୍ଚ ଉପରେ ବସିଛି । ମଥୁରାବାସୀ ତଥା ସମସ୍ତ ଦେଶରୁ ଆସିଥିବା ଲୋକମାନେ ମଧ୍ୟ ସଜ୍ଜା ଯାଇଥିବା ରଙ୍ଗଶାଳାରେ ପହଞ୍ଚି ଯଥୋଚିତ ସ୍ଥାନରେ ବସି ଯାଇଛନ୍ତି । ଯଦ୍ୟପି କଂସ ଖୁବ ଶାନ୍ତ ଥିଲା, ତଥାପି କୁବଳୟାପୀଡ଼ର ମୃତ୍ୟୁର ସମାଚାର ଯେତେବେଳେ ତାକୁ ମିଳିଲା, ସେତେବେଳେ କଂସ ଅତି ଭୟଭୀତ ହେବାକୁ ଲାଗିଲା । ପୁଣି ତାକୁ ଲାଗିଲା ଯେ, ଏବେ ଚାଣୂର ଏବଂ ମୁଷ୍ଟିକ ମୋର ଦୁଇଜଣ ବିଶିଷ୍ଟ ପହିଲିମାନ ବଞ୍ଚି ରହିଛନ୍ତି । ସେ ଦୁହେଁ ଶ୍ରୀକୃଷ୍ଣଙ୍କୁ ମାରିପାରିବେ । ଏବେ ମଧ୍ୟ ତାକୁ ଏହିପରି ହିଁ ଲାଗୁଥିଲା । ଏଭଳି ଆଶା ତ କିଛି ନ ଥିଲା, ପୁଣି ମଧ୍ୟ ସେ ଏକ ମିଥ୍ୟା ଆଶା ନେଇ ବସିଥିଲା ।

**ବୃତୌ ଗୋପୈଃ କତିପୟୈର୍ବଲଦେବଜନାର୍ଦନୌ ।**
**ରଙ୍ଗଂ ବିବିଶତୂ ରାଜନ୍ ଗଜଦନ୍ତବରାୟୁଧୌ ॥ (୧୦.୧୩.୧୬)**

କୁବଳୟାପୀଡ଼ ହାତୀର ଦାନ୍ତକୁ ଶସ୍ତ୍ର ଭଳି ଧାରଣ କରି ବଳରାମ ତଥା ଶ୍ରୀକୃଷ୍ଣ, ଗୋପବାଳକମାନଙ୍କ ସହିତ ସେହି ରଙ୍ଗଶାଳାରେ ପ୍ରବେଶ କରୁଛନ୍ତି । ସେତେବେଳେ ସେଠାରେ ଉପସ୍ଥିତ ସମସ୍ତ ଲୋକମାନଙ୍କୁ ଭଗବାନ ନିଜ-ନିଜର ଭାବାନୁରୂପ ଭିନ୍ନ-ଭିନ୍ନ ପ୍ରକାରରେ ଦେଖାଯାଉଛନ୍ତି । ତୁଳସୀ ଦାସ ଜୀ ମଧ୍ୟ ତାଙ୍କର ରାମାୟଣରେ ଏହା କହିଛନ୍ତି ।

**ଜିହ୍ନ କେଁ ରହି ଭାବନା ଜୈସୀ । ପ୍ରଭୁ ମୂରତି ତିହ୍ନ ଦେଖୀ ତୈସୀ ।**

**(ରାମଚରିତ ମାନସ-୧-୨୪୦-୪)**

ଯେତେବେଳେ ଭଗବାନ ରାମଚନ୍ଦ୍ର ଜୀ ଯଜ୍ଞଶାଳାରେ ପହଞ୍ଚିଲେ, ସେତେବେଳେ ସେଠାରେ ଯେତେ ସବୁ ଲୋକମାନେ ବସିଥିଲେ, ସେମାନେ ସମସ୍ତେ ରାମଚନ୍ଦ୍ର ଜୀଙ୍କୁ ନିଜ-ନିଜର ଦୃଷ୍ଟିରେ ଦେଖିଲେ - ଅର୍ଥାତ୍ ସେମାନେ ତାଙ୍କୁ ଭିନ୍ନ-ଭିନ୍ନ ରୂପରେ ପ୍ରତୀତ ହେଉଥିଲେ । ଏଠାରେ ମଧ୍ୟ ଦେଖନ୍ତୁ -

**ମଲ୍ଲାନାମଶନିର୍ନୃଣାଂ ନରବରଃ**

**ସ୍ତ୍ରୀଣାଂ ସ୍ମରୋ ମୂର୍ତ୍ତିମାନ**

**ଗୋପାନାଂ ସ୍ୱଜନୋଽସତାଂ କ୍ଷିତିଭୂଜାଂ**

**ଶାସ୍ତା ସ୍ୱପିତ୍ରୋଃ ଶିଶୁଃ ।**

**ମୃତ୍ୟୁର୍ଭୋଜପତେର୍ବିରାଡ଼ବିଦୁଷାଂ**

**ତତ୍ତ୍ୱଂ ପରଂ ଯୋଗିନାଂ**

**ବୃଷ୍ଣିନାଂ ପରଦେବତେତି ବିଦିତୋ**

**ରଙ୍ଗଂ ଗତଃ ସାଗ୍ରଜଃ ।। (୧୦.୪୩.୧୭)**

**"ମଲ୍ଲାନାଂ"** - ଯେଉଁ ବଡ଼ ବଡ଼ ପହିଲମାନ୍ ଥିଲେ, ସେମାନଙ୍କୁ ଲାଗିଲା ଯେ ଏ ତ ଆମର କାଳ ଆସୁଅଛି । ଅନ୍ୟ ଯେଉଁମାନେ ଥିଲେ - **"ନୃଣାଂ"** - ସେମାନଙ୍କୁ ଲାଗିଲା ଯେ ଇଏ ତ ନରରତ୍ନ (ସ୍ୱରୂପ) ଅଟନ୍ତି । ସମସ୍ତ ମନୁଷ୍ୟମାନଙ୍କ ମଧ୍ୟରେ ଏତେ ସୁନ୍ଦର ତ କେହି ନାହାନ୍ତି । **"ସ୍ତ୍ରୀଣାଂ ସ୍ମରୋ ମୂର୍ତ୍ତିମାନ୍"** - ସ୍ତ୍ରୀମାନଙ୍କୁ ଲାଗିଲା ଯେ ଏ ତ ମୂର୍ତ୍ତିମାନ କାମଦେବ ଅଟନ୍ତି । କାମଦେବ ହିଁ ଏଠାରେ ପ୍ରକଟ ହୋଇଛନ୍ତି । **"ଗୋପାନାଂ ସ୍ୱଜନୋ"** - ଗୋପବାଳକମାନଙ୍କୁ ଲାଗିଲା ଇଏ ତ ଆମ ନିଜର ଏବଂ **"ଅସତାଂ କ୍ଷିତିଭୁଜାଂ ଶାସ୍ତା"** - ଯେଉଁ ଅସତ୍ ଲୋକମାନେ ଥିଲେ, ଦୁଷ୍ଟ ରାଜାମାନେ ଥିଲେ, ସେମାନଙ୍କୁ ଲାଗିଲା - ଇଏ ତ ଆମର ଶାସକ ଅଟେ । **"ସ୍ୱପିତ୍ରୋଃ ଶିଶୁଃ"** - ବୟୋଃଜ୍ୟେଷ୍ଠ ଯେଉଁ ଲୋକମାନେ ଥିଲେ, ସେମାନଙ୍କୁ ଲାଗିଲା ଏ ତ ଆମରି ବାଳକ ଅଟେ । ସେମାନଙ୍କ ମନରେ ଭଗବାନଙ୍କ ପ୍ରତି ନିଜର ହିଁ ପିଲା ଯେପରି ସେହିଭଳି ସ୍ନେହ ଉଚ୍ଛୁଳି ଉଠିଲା । **"ମୃତ୍ୟୁର୍ଭୋଜପତେ"** - କଂସକୁ ଜଣାଗଲା ଏ ତ

ମୋର ମୃତ୍ୟୁ ଅଟେ । **"ବିରାଟ ବିଦୂଷାମ"** - ବିଦ୍ୱାନ ଲୋକମାନେ ତାଙ୍କୁ ଦେଖି ବିରାଟ ପୁରୁଷଙ୍କୁ ମନେ ପକାଇଲେ । **"ତତ୍ତ୍ୱଂ ପରଂ ଯୋଗିନାଂ'** - ଯୋଗୀଲୋକମାନଙ୍କୁ ସେ ପରମ ତତ୍ତ୍ୱ ରୂପରେ ଦେଖା ଯାଉଥିଲେ । **"ବୃଷ୍ଣିନାଂ ପରଦେବତେତି ବିଦିତୋ'** - ବୃଷ୍ଣିବଂଶକୁ ତ ଲାଗିଲା ଏ ହେଉଛନ୍ତି ପରମଦେବତା । ପରମାତ୍ମା ହିଁ ଏଠାକୁ ଆସିଛନ୍ତି । ଏହିପରି ଯାହାର ଯେଉଁଭଳି ଭାବନା ଥିଲା, ସେହିଭଳି ଭାବରେ ଭଗବାନ ସେହି - ସେହି ଲୋକମାନଙ୍କୁ ଦର୍ଶନ ଦେବାକୁ ଲାଗିଲେ ।

## ଚାଣୂର, ମୁଷ୍ଟିକ ପ୍ରଭୃତିଙ୍କର ଉଦ୍ଧାର

ତାପରେ, ଶ୍ରୀକୃଷ୍ଣ ଓ ବଳରାମଙ୍କୁ ଦେଖି ଚାଣୂର କହୁଛି - "ମୁଁ ଶୁଣିଛି, ତୁମ୍ଭେମାନେ ଯୁଦ୍ଧରେ, କୁସ୍ତିରେ ଅତି ନିପୁଣ ଅଟ । ଆସ, ଏଠାରେ କୁସ୍ତି କରି ମହାରାଜା (କଂସ)ଙ୍କୁ ପ୍ରସନ୍ନ କରିବା । ତାଙ୍କ ଆଜ୍ଞା ପାଳନ କରିବା ଆମ ପ୍ରଜାମାନଙ୍କର କର୍ତ୍ତବ୍ୟ ଅଟେ । ବନ-ଜଙ୍ଗଲରେ ତୁମେ ନିଶ୍ଚିତ ମଲ୍ଲଯୁଦ୍ଧ କରୁଥିଲ । ତୁମେ ଦୁହେଁ କେତେ ଅସୁରମାନଙ୍କୁ ମଧ୍ୟ ମାରିଛ, ଏହା ମଧ୍ୟ ମୁଁ ଶୁଣିଛି । ସେମାନେ ସମସ୍ତେ ଦୁର୍ବଳ ଥିଲେ । ଏବେ ଅସଲ ଲୋକ ସହିତ ତୁମର ପାଳି ପଡ଼ିଛି ।'' ସେତେବେଳେ ଭଗବାନ ତାଙ୍କୁ କହୁଛନ୍ତି, " "ମୁଁ ତ ଅତି ଛୋଟ ବାଳକ ଅଟେ ଆଉ ତୁମେ ଏତେ ବଡ଼ । ମଲ୍ଲ ଯୁଦ୍ଧ ତ ସମାନ ବଳବାନମାନଙ୍କ ମଧ୍ୟରେ ହେବା ଉଚିତ । ଏଠାରେ କ'ଣ କିଛି ସମାନତା ଅଛି । ମୁଁ ତୁମ ସହିତ କିପରି ଯୁଦ୍ଧ କରିବି ?" ଏବେ ଚାଣୂର କହୁଛି, "ନା ତୁମେ ଦୁହେଁ ଛୋଟ ନା କିଶୋର । ତୁମ୍ଭେମାନେ ତ ବଡ଼ ବଳବାନ ଅଟ । ହଜାରେ ହାତୀର ବଳକୁ ଧାରଣ କରିଥିବା କୁବଳୟାପୀଡ଼କୁ ମଧ୍ୟ ତୁମେ ଅତି ସହଜରେ ମାରି ଦେଲ । ଚାଲ, ଏବେ ମୋ ସହିତ ତୁମେ କୁସ୍ତି ଲଢ଼ ।" ଭଗବାନ କହୁଛନ୍ତି - "ଲଢ଼ିବାକୁ ଯଦି ଅଛି ତେବେ ଲଢ଼ ।" ତେବେ ଶ୍ରୀକୃଷ୍ଣଙ୍କ ସହିତ ଚାଣୂର ଏବଂ ବଳରାମଙ୍କ ସହିତ ମୁଷ୍ଟିକ ମଲ୍ଲଯୁଦ୍ଧ ଆରମ୍ଭ କଲେ ।

ରଙ୍ଗଶାଳାରେ ବସିଥିବା ସ୍ତ୍ରୀମାନେ, ଅତି ବୃଦ୍ଧବ୍ୟକ୍ତିମାନେ କହିବାକୁ ଲାଗିଲେ - "କିପରି ଦୁଷ୍ଟତା ହେଉଛି ? ଏଠାରେ ଏସବୁ କେଉଁଭଳି ଅଧର୍ମ ହେଉଛି ? ଏଠାରେ ଆମର ବସିବା ଉଚିତ୍ ନୁହେଁ । ଏତେ ବଡ଼ ଏହି ରାକ୍ଷସ-ଅସୁର ଏବଂ ଛୋଟିଆ ଶ୍ରୀକୃଷ୍ଣ । ଏମାନଙ୍କ ମଧ୍ୟରେ କଣ କିଛି ସମାନତା ଅଛି ? ଏମାନଙ୍କର ଏହି ଯୁଦ୍ଧ ଠିକ ନୁହେଁ । କେହି କିଛି କହୁନାହାନ୍ତି କାହିଁକି ?" ସେଠାରେ ସମସ୍ତେ ଏହିଭଳି କହିବାକୁ ଲାଗିଲେ । ଭଗବାନ କିଛି ସମୟ ଏପାଖ ସେପାଖ ହୋଇ ପୁଣି ସେହି ଚାଣୂରକୁ

ହାତରେ ଉଠାଇ ଭୂମି ଉପରେ ପିଟି ଦେଲେ । ଚାଣୂରର ମୃତ୍ୟୁ ହୋଇଗଲା । ସେତେବେଳକୁ ବଳରାମ ମଧ୍ୟ ସେହି ମୁଷ୍ଟିକାସୁରକୁ ବଧ କରିଦେଲେ । ପୁଣି ଭଗବାନ ଶଳ ତୋଶଳ ଏବଂ ବଳରାମ କୂଟକୁ ମଧ୍ୟ ବଧ କରିଦେଲେ । ଶେଷ ପହିଲମାନ ମାନେ ଭୟରେ ପଳାଇଗଲେ ।

## କଂସର ଉଦ୍ଧାର

ଏଠାରେ କଂସକୁ ଭୟ ମଧ୍ୟ ଲାଗୁଛି, ତଥାପି ସେ କ୍ରୋଧାନ୍ୱିତ ହୋଇ ଚିତ୍କାର କରି କହିବାକୁ ଲାଗିଲା -

**ହତେଷୁ ମଲ୍ଲବର୍ୟ୍ୟେଷୁ ବିଦ୍ରୁତେଷୁ ଚ ଭୋଜରାଟ୍ ।**
**ନ୍ୟବାରୟତ୍ ସ୍ୱତୂର୍ୟାଣି ବାକ୍ୟଂ ଚେଦମୁବାଚ ହ ॥ (୧୦.୪୪.୩୧)**
**ନିଃସାରୟତ ଦୁର୍ବୃତ୍ତୌ ବସୁଦେବାତ୍ମଜୌ ପୁରାତ୍ ।**
**ଧନଂ ହରତ ଗୋପାନାଂ ନନ୍ଦଂ ବଧ୍ନୀତ ଦୁର୍ମତିମ୍ ॥ (୧୦.୪୪.୩୨)**

ବସୁଦେବଙ୍କର ଏହି ଦୁଇପୁତ୍ର ମହାଦୁଷ୍ଟ ଅଟନ୍ତି । ଏମାନଙ୍କୁ ଏଠାରୁ ବାହାର କରିଦିଅ, ଏମାନଙ୍କୁ ମାର, ଗୋପମାନେ ମଧ୍ୟ ଏଠାକୁ ଆସିଛନ୍ତି, ସେମାନଙ୍କର ଧନ ଛଡ଼ାଇ ନିଅ । ଦୁର୍ବୁଦ୍ଧି ନନ୍ଦକୁ ବାନ୍ଧି ଜେଲରେ ପୁରାଇ ଦିଅ, ବସୁଦେବଙ୍କୁ ମଧ୍ୟ ମାରିଦିଅ । ଉଗ୍ରସେନ ମୋର ପିତା ଅଟନ୍ତି, କିନ୍ତୁ ସେ ମଧ୍ୟ ମୋର ଶତ୍ରୁପକ୍ଷର ହୋଇଗଲେଣି । ତେଣୁ ତାଙ୍କୁ ବଞ୍ଚାଇ ରଖିବାର କୌଣସି ଆବଶ୍ୟକତା ନାହିଁ । ଉଗ୍ରସେନଙ୍କୁ ମଧ୍ୟ ମାରିଦିଅ । ଏହିପରି ଭାବରେ ସେ ଭୟରେ ଅଧୀର ହୋଇ ବକିବାକୁ ଲାଗିଲା । ସେ ସ୍ୱୟଂ ଶ୍ରୀକୃଷ୍ଣଙ୍କ ପାଖକୁ ଯିବାକୁ ସାହାସ କରିପାରିଲା ନାହିଁ । ଭଗବାନ ତଳେ ଠିଆ ହୋଇଛନ୍ତି ଏବଂ କଂସ ଉପରେ ମଞ୍ଚରେ ଅଛି । ସେ ଚିତ୍କାର କରୁଛି, ତାକୁ ଭୟ ମଧ୍ୟ ଲାଗୁଛି । ତେବେ ଭଗବାନ ହଠାତ୍ ଡେଇଁ ପଡ଼ିଲେ ଏବଂ ସିଧା ମଞ୍ଚ ଉପରେ ପହଞ୍ଚିଗଲେ ।

**ତଂ ଖଡ୍ଗପାଣିଂ ବିଚରନ୍ତମାଶୁ**
**ଶ୍ୟେନଂ ଯଥା ଦକ୍ଷିଣ ସବ୍ୟମମ୍ବରେ ।**
**ସମଗ୍ରହୀଦ୍ ଦୁର୍ବିଷହୋଗ୍ରତେଜା**
**ଯଥୋରଗଂ ତାର୍କ୍ଷ୍ୟସୁତଃ ପ୍ରସହ୍ୟ ॥ (୧୦.୪୪.୩୬)**

ଶ୍ରୀକୃଷ୍ଣଙ୍କୁ ଦେଖି କଂସ ଖଣ୍ଡା ତଥା ଢାଲ ଉଠାଇ ନେଲା । ଭଗବାନଙ୍କ ଉପରେ ପ୍ରହାର କରିବା ପାଇଁ ବାଜପକ୍ଷୀ ଭଳି ସେ ବାମ ଡାହାଣ କରିବାକୁ ଲାଗିଲା। ତେବେ ଯେପରି ଗରୁଡ଼ ପକ୍ଷୀ ସର୍ପକୁ ଝପଟି ପଡ଼ି ଧରିନିଏ, ସେହିପରି ଭଗବାନ ମଧ୍ୟ ତାକୁ ଧରିନେଲେ । ତାର ମୁକୁଟ ତଳେ ପଡ଼ିଗଲା । **"ପ୍ରଗୃହ୍ୟ କେଶେଷୁ ଚଲତ୍ କିରୀଟଂ'** (୧୦.୪୪.୩୭) ତାର କେଶକୁ ଧରି ଭଗବାନ **"ନିପାତ୍ୟ ରଙ୍ଗୋପରି ତୁଙ୍ଗମଞ୍ଚମ୍'** (୧୦.୪୪.୩୭) ତାକୁ ମଧ୍ୟ ମଞ୍ଚରୁ ତଳେ ପକାଇ ଦେଲେ ଏବଂ -

**ତସ୍ୟୋପରିଷ୍ଟାତ୍ ସ୍ୱୟମବ୍ଜନାଭଃ**
**ପପାତ ବିଶ୍ୱାଶ୍ରୟ ଆତ୍ମତନ୍ତ୍ରଃ ॥ (୧୦.୪୪.୩୭)**

ନିଜେ ମଧ୍ୟ ତଳକୁ କଂସ ଉପରକୁ ଡେଇଁ ପଡ଼ିଲେ । ସେତିକିବେଳକୁ ତାର ପ୍ରାଣ ଚାଲିଯାଇଥିଲା । ତାର ଶ୍ୱାସ ରୁଦ୍ଧ ହୋଇ ଯାଇଥିଲା । ଯେତେବେଳେ ଭଗବାନ ତା ଉପରକୁ ଡେଇଁ ପଡ଼ିଲେ ସେତେବେଳେ ହିଁ ସେ ମୃତ୍ୟୁବରଣ କରିଥିଲା । ଦେଖନ୍ତୁ, କଂସକୁ ମାରିବା ନିମନ୍ତେ ଭଗବାନଙ୍କୁ କିଛି କରିବାକୁ ପଡ଼ିନଥିଲା, କୌଣସି ଅସ୍ତ୍ର-ଶସ୍ତ୍ର ଉଠାଇବାକୁ ପଡ଼ିନଥିଲା । ହାତ ମଧ୍ୟ ଉଠାଇବାକୁ ପଡ଼ିନଥିଲା ।

**ହାହେତି ଶବ୍ଦଃ ସୁମହାଂସ୍ତଦାଭୂ-**
**ଦୁଦୀରିତଃ ସର୍ବଜନୈର୍ନରେନ୍ଦ୍ର ॥ (୧୦.୪୪.୩୮)**

**ସ ନିତ୍ୟଦୋଦ୍ୱିଗ୍ନଧିୟା ତମୀଶ୍ୱରଂ**
**ପିବନ୍ ବଦନ୍ ବା ବିଚରନ୍ ସ୍ୱପଞ୍ଶ୍ୱସନ୍ ।**
**ଦଦର୍ଶ ଚକ୍ରାୟୁଧମଗ୍ରତୋ ଯ -**
**ସ୍ତଦେବ ରୂପଂ ଦୁରବାପମାପ ॥ (୧୦.୪୪.୩୯)**

କଂସ ନିଜର ଭୟ ହେତୁ ଚାଲିଲେ-ବୁଲିଲେ, ବସିଲେ-ଉଠିଲେ, ଶୋଇଲେ-ଉଠିଲେ, ଖାଇଲେ-ପିଇଲେ ସବୁ ସମୟରେ ଭଗବାନଙ୍କର ଚିନ୍ତନ କରୁଥିଲା । ସେଥିପାଇଁ ମୃତ୍ୟୁ ସମୟରେ ତାକୁ ଶଙ୍ଖ-ଚକ୍ର, ଗଦାଧାରୀ ଭଗବାନଙ୍କର ଦର୍ଶନ ହେଲା । ଭୟ କାରଣରୁ ସେ ନିଜର ମନକୁ ଭଗବାନଙ୍କର ସେହି ରୂପରେ ଲଗାଇ ରଖିଥିଲା । ତେଣୁ ସେ ସେହି ରୂପକୁ ପ୍ରାପ୍ତ ହୋଇଗଲା । ତାକୁ ସାରୂପ୍ୟ ମୁକ୍ତି ପ୍ରାପ୍ତ ହୋଇଗଲା ।

ଏହିଭଳି ଭାବରେ ଭଗବାନ ଯେତେବେଳେ କଂସର ବଧ କରିଦେଲେ, ସେତେବେଳେ ସମସ୍ତେ ପ୍ରସନ୍ନ ହୋଇଗଲେ । କାହାକୁ ବିଶ୍ୱାସ ହିଁ ହେଉ ନ ଥିଲା ଯେ ଯିଏ ଆମକୁ ଏତେ ତ୍ରସ୍ତ କରି ଆସୁଥିଲା, ସେ ଏକ ମୂହୁର୍ତ୍ତରେ ମୃତ୍ୟୁବରଣ କଲା । ଆମେ ଦେଖୁ-ଦେଖୁ ହିଁ ସେ ଶେଷ ହୋଇଗଲା । ଆରେ ! ଭଗବାନ ଶ୍ରୀରାମଚନ୍ଦ୍ରଜୀଙ୍କୁ ତ ରାବଣ ସହିତ ଯୁଦ୍ଧ କରିବାରେ କିଛି ରସ ମଧ୍ୟ ପ୍ରାପ୍ତ ହୋଇଥିଲା । ସେ ରାବଣ ବଡ଼ ଶକ୍ତିଶାଳୀ ଥିଲା । ଏହା (କଂସ) ସହିତ ଭଗବାନଙ୍କୁ କିଛି କରିବାକୁ ମଧ୍ୟ ପଡ଼ିଲା ନାହିଁ । ତାର ଶ୍ୱାସ ଆପେ ଆପେ ରୁଦ୍ଧ ହୋଇଗଲା । ଏହିଭଳି ଭାବରେ କଂସର ମୃତ୍ୟୁ ହେଲା ।

କଂସର ରାଣୀମାନଙ୍କୁ ସୁନ୍ଦର ଭାବରେ ବୁଝାଇ ଦେବା ପରେ, ସମସ୍ତ ମୃତମାନଙ୍କର କ୍ରିୟା-କର୍ମ ସମାପ୍ତ କରି ଭଗବାନ ଜେଲକୁ ଯାଉଛନ୍ତି । ଦେବକୀ-ବସୁଦେବଙ୍କୁ ସେଠାରୁ ମୁକ୍ତ କରି, ସେମାନଙ୍କର ଚରଣ ସ୍ପର୍ଶ କରୁଛନ୍ତି । ତଥାପି ମଧ୍ୟ ସେ ଦୁହେଁ ନିଜର ଏହି ପୁତ୍ରକୁ ହୃଦୟରେ ଲଗାଇ ପାରୁନାହାନ୍ତି । ସେମାନଙ୍କୁ ଲାଗୁଥିଲା ଯେ ଜଗଦୀଶ୍ୱରଙ୍କୁ ନିଜର ପୁତ୍ର କିପରି ମାନିବା ? ଏହା ଦେଖି, ସ୍ୱଜନମୋହିନୀ ମାୟା ଦ୍ୱାରା ସେମାନଙ୍କର ସେହି ଜ୍ଞାନକୁ ବିମୋହିତ କରି ଭଗବାନ କହୁଛନ୍ତି - ମୋର ଏଠାରେ ଉପସ୍ଥିତି ଥାଇ ମଧ୍ୟ ଆପଣମାନଙ୍କୁ ଏତେ ଏତେ ସମୟ ପର୍ଯ୍ୟନ୍ତ ଏଠାରେ ଏହିଭଳି କଷ୍ଟ ଭୋଗିବାକୁ ପଡ଼ିଲା । ଆମ ଜୀବନର ଏତେଗୁଡ଼ିଏ ଦିନ ବ୍ୟର୍ଥ ହୋଇଗଲା ଆମେ ଆପଣମାନଙ୍କର କୌଣସି ସେବା କରିପାରିଲୁ ନାହିଁ । ଆପଣ ଆମକୁ କ୍ଷମା କରିଦିଅନ୍ତୁ । ଭଗବାନଙ୍କର ଏଭଳି କଥା ଶୁଣି ଦେବକୀ-ବସୁଦେବ ମୋହିତ ହୋଇଗଲେ ଏବଂ ନିଜର ପୁତ୍ରଙ୍କୁ କୋଳକୁ ଉଠାଇ ନେଲେ । ପୁଣି ତାଙ୍କୁ ହୃଦୟରେ ଲଗାଇ ସେମାନେ ଆନନ୍ଦ ମଗ୍ନ ହୋଇଗଲେ । ଏହିପରି ବସୁଦେବ-ଦେବକୀଙ୍କୁ ସାନ୍ତ୍ୱନା ଦେଇ ପୁଣି ଭଗବାନ ଉଗ୍ରସେନଙ୍କୁ ଜେଲରୁ ମୁକ୍ତ କଲେ । ଦେଖନ୍ତୁ, ସମସ୍ତଙ୍କର ଇଚ୍ଛା ଥିଲା ଯେ ଭଗବାନ ଶ୍ରୀକୃଷ୍ଣ ହିଁ ମଥୁରାର ରାଜା ହୁଅନ୍ତୁ, କିନ୍ତୁ ସେ ସ୍ୱୟଂ ରାଜା ହେଲେ ନାହିଁ । ସେ ଉଗ୍ରସେନଙ୍କୁ ହିଁ ରାଜା କଲେ, ତାଙ୍କର ରାଜ୍ୟାଭିଷେକ ମଧ୍ୟ କରାଇଲେ ।

ତାପରେ ଶ୍ରୀକୃଷ୍ଣ, ବଳରାମ ଦୁହେଁ ଯାଇ ନନ୍ଦବାବାଙ୍କୁ ହୃଦୟରେ ଲଗାଇ ତାଙ୍କୁ ପ୍ରିୟ ବଚନ କହୁଛନ୍ତି । ବହୁତ ଅନୁନୟ ବିନୟ କରି କହୁଛନ୍ତି, "ଯେଉଁମାନେ ପ୍ରେମପୂର୍ବକ ପିଲାମାନଙ୍କୁ ପାଳନ ପୋଷଣ କରନ୍ତି, ସେହିମାନେ ହିଁ ତାଙ୍କର ମାତା-ପିତା ହୋଇଥାଆନ୍ତି । ଏବେ ଆପଣମାନେ ସମସ୍ତେ ବ୍ରଜକୁ ଯାଆନ୍ତୁ । ଆମେ ଜାଣିଛୁ ଯେ ଆମ ବିନା ଆପଣମାନଙ୍କୁ ସେଠାରେ ଭଲ ଲାଗିବ ନାହିଁ, କିନ୍ତୁ ଏବେ ଏଠାରେ ମଧ୍ୟ ସମସ୍ତଙ୍କୁ ସୁଖ ପ୍ରଦାନ କରିବାକୁ ଅଛି । ଆମେ ପୁଣି କେବେ ଆପଣମାନଙ୍କ ପାଖକୁ ବୁଲିବାକୁ ଆସିବୁ ।" ଏହିଭଳି ଭାବରେ ବୁଝାଇ ଆଦର ସମ୍ମାନ ପୂର୍ବକ ନନ୍ଦବାବା ଏବଂ ଅନ୍ୟ ବ୍ରଜବାସୀମାନଙ୍କୁ ବିଦାୟ ଦେଲେ । ନନ୍ଦବାବାଙ୍କର ହୃଦୟ ଭରି ଉଠିଲା । ଲୋତକ ପୂର୍ଣ୍ଣ ଚକ୍ଷୁରେ ଅନ୍ୟ ଗୋପମାନଙ୍କ ସହିତ ସେ ବୃନ୍ଦାବନ ଫେରି ଆସିଲେ ।

## ଶ୍ରୀକୃଷ୍ଣ-ବଳରାମଙ୍କର ଗୁରୁକୁଳ ଗମନ

ଏବେ ବସୁଦେବ ଭାବୁଛନ୍ତି, ଏମାନେ ମୋର ପୁତ୍ର, ଏ ପର୍ଯ୍ୟନ୍ତ ମୁଁ ଏମାନଙ୍କର କୌଣସି ସଂସ୍କାର ମଧ୍ୟ କରିନାହିଁ । ଏହିପରି ବିଚାର କରି ଗର୍ଗାଚାର୍ଯ୍ୟଙ୍କ ଦ୍ୱାରା ସେମାନଙ୍କର ଯଜ୍ଞୋପବିତ ସଂସ୍କାର କରାଇଲେ । ପୁଣି ବିଦ୍ୟା ଅଧ୍ୟୟନ ନିମନ୍ତେ ସେମାନଙ୍କୁ ସାନ୍ଦୀପନି ମୁନିଙ୍କର ଗୁରୁକୁଳକୁ ପଠାଇ ଦିଆଗଲା । ଯାହାଙ୍କର ନିଃଶ୍ୱାସ ହିଁ ଚାରିବେଦ ଅଟେ, ସେହି ଭଗବାନଙ୍କୁ ବେଦ ଅଧ୍ୟୟନ ନିମନ୍ତେ ପଠାଇ ଦିଆଗଲା । କିନ୍ତୁ ଦେଖନ୍ତୁ, ଭଗବାନ ପରମ୍ପରାକୁ ପାଳନ କରୁଛନ୍ତି ଏବଂ ଗୁରୁକୁଳକୁ ଯାଉଛନ୍ତି । ସେମାନେ କେଉଁଠାକୁ ଗଲେ ? ସାନ୍ଦୀପନି ସାଧନାଳୟ, ସାନ୍ଦୀପନି ଋଷିଙ୍କର ଆଶ୍ରମ - ଯାହାକି ଉଜ୍ଜୟନୀରେ ଥିଲା, ଭଗବାନ ସେଠାକୁ ଗଲେ । ଗୁରୁଙ୍କ ଗୃହରେ ରହି ତାଙ୍କର ସେବା କରି, ଭଗବାନ ଜ୍ଞାନ ପ୍ରାପ୍ତ କଲେ । ଗୁରୁ ତାଙ୍କ ଉପରେ ଅତି ପ୍ରସନ୍ନ ହେଲେ । ତେଣୁ ଭଗବାନ କହୁଛନ୍ତି, " "ମୁଁ ଆପଣଙ୍କ ନିମନ୍ତେ କଣ ଗୁରୁ ଦକ୍ଷିଣା ଆଣିବି ? ମୋତେ କୁହନ୍ତୁ ?'' ଗୁରୁଜୀ ତାଙ୍କ ପତ୍ନୀଙ୍କ ସହ ପରାମର୍ଶ କରି କହିଲେ - ପ୍ରଭାସ କ୍ଷେତ୍ରରେ ସମୁଦ୍ରରେ ବୁଡ଼ି ଯାଇ ମୋର ପୁତ୍ର ମୃତ୍ୟୁବରଣ କଲା । ତୁମେ ତାକୁ ଫେରାଇ ନେଇ ଆସ ।

ଭଗବାନ ବଳରାମଙ୍କ ସହିତ ଖୋଜିବାକୁ ଯାଇ ଯମରାଜାଙ୍କ ନିକଟରେ ପହଞ୍ଚି ସେହି ମୃତପୁତ୍ରକୁ ଫେରାଇ ଆଣୁଛନ୍ତି ଏବଂ ଦକ୍ଷିଣାରେ ଗୁରୁଙ୍କୁ ସମର୍ପଣ କରୁଛନ୍ତି । ଗୁରୁପତ୍ନୀ ପ୍ରସନ୍ନ ହୋଇଯାଉଛନ୍ତି ଏବଂ ସେମାନଙ୍କୁ ଅଶେଷ ଆଶୀର୍ବାଦ ପ୍ରାପ୍ତ ହେଉଛି ।

ଗୁରୁକୁଳରୁ ଭଗବାନ ଯେତେବେଳେ ମଥୁରା ଫେରି ଆସିଲେ ସେତେବେଳେ ସମସ୍ତେ ତାଙ୍କୁ ଭେଟିଲେ, ତାଙ୍କୁ ଦେଖି ସମସ୍ତେ ପରମାନନ୍ଦରେ ବୁଡ଼ିଗଲେ । ସେଠାରେ ମଧ୍ୟ କିଛି ସମୟ ଏପରି ଭାବରେ ବିତିଗଲା । ସେତେବେଳେ ଗୋକୁଳ କଥା ମନେ ପକାଇ ଭଗବାନ ଭାବୁଛନ୍ତି ଯେ ଗୋକୁଳର ସମସ୍ତ ଗୋପି ତାଙ୍କ ବିରହରେ ବ୍ୟାକୁଳ ହେଉଥିବେ । ଭଗବାନଙ୍କର ସ୍ମରଣ ହୋଇଆସିଲା ଯେ ମୁଁ ସେମାନଙ୍କୁ କହିଥିଲି ଯେ ମୁଁ ଫେରି ଆସିବି, କିନ୍ତୁ ଏଠାରେ ରାଜ-କାର୍ଯ୍ୟରେ ମୁଁ ଏପରି ବ୍ୟସ୍ତ ଯେ ଏଠାରୁ ବାହାରିବା ଅତି କଠିନ ହେଉଛି । ଭଗବାନ ବିଚାର କଲେ ଯେ ଉଦ୍ଧବ ତ ମୋ'ଠାରୁ କିଛି କମ୍ ନୁହେଁ, ମୁଁ କାହିଁକି ତାକୁ ସେଠାକୁ ପଠାଇ ନ ଦେବି ?

## ଉଦ୍ଧବ ଜୀଙ୍କର ବ୍ରଜଯାତ୍ରା

ଉଦ୍ଧବ ଜୀଙ୍କୁ ଭଗବାନଙ୍କର ଉତ୍ସବ ମୂର୍ତ୍ତି କୁହାଯାଏ । ଆପଣ ମନ୍ଦିରରେ ଦେଖିଥିବେ । ଗୋଟିଏ ତ ମୂଖ୍ୟ ମୂର୍ତ୍ତି ହୋଇଥାଏ, ଯାହାକି ପ୍ରାଣ ପ୍ରତିଷ୍ଠିତ ହୋଇଥାଏ ଏବଂ ଅନ୍ୟଟି ଉତ୍ସବ ମୂର୍ତ୍ତି ଅଟେ, କାରଣ ଯଦି କୌଣସି ଉତ୍ସବ ହୋଇଥାଏ ଏବଂ କୌଣସି ଶୋଭାଯାତ୍ରା ବାହାରିବାର ଥାଏ ତେବେ ପ୍ରତିଷ୍ଠିତ ମୂର୍ତ୍ତିକୁ ଉଠାଯାଏ ନାହିଁ । ଅନ୍ୟ ଯେଉଁ ଉତ୍ସବ ମୂର୍ତ୍ତି ଥାଏ, ତାକୁ ହିଁ ରଖି ଯାତ୍ରା ବାହାର କରାଯାଏ । ଉଦ୍ଧବ ଜୀ ଭଗବାନ ଶ୍ରୀକୃଷ୍ଣଙ୍କର ପରମ ସଖା ଅଟନ୍ତି, ବୃଷ୍ଣିକୁଳର ପ୍ରଧାନ ପୁରୁଷ ଅଟନ୍ତି, ବୃହସ୍ପତିଙ୍କର ଶ୍ରେଷ୍ଠ ଶିଷ୍ୟ ଏବଂ ଶ୍ରୀକୃଷ୍ଣଙ୍କର ମନ୍ତ୍ରୀ ମଧ୍ୟ ଅଟନ୍ତି ।

ଦିନେ ଭଗବାନ ଉଦ୍ଧବ ଜୀଙ୍କୁ ଡାକି ତାଙ୍କୁ କହୁଛନ୍ତି, "ମୋର ସନ୍ଦେଶ ନେଇ (ତୁମେ) ବ୍ରଜ ଭୂମିକୁ ଯାଅ ଏବଂ ମୋର ନନ୍ଦବାବା, ଯଶୋଦା ମା, ଗୋପ, ଗୋପବାଳକମାନଙ୍କୁ ଏବଂ ଗୋପୀମାନଙ୍କୁ ପ୍ରସନ୍ନ କରାଅ ।" ଏହିପରି କେହି ଭଗବାନ ଉଦ୍ଧବ ଜୀଙ୍କୁ ଗୋପୀମାନଙ୍କ ନିକଟକୁ ପଠାଇଲେ । ଗୋଟିଏ କଥା ହେଉଛି ଉଦ୍ଧବ ଦେଖିବା ପାଇଁ ଠିକ୍ ଭଗବାନଙ୍କ ଭଳି ହିଁ ଅଟନ୍ତି । ତେବେ ନିଜ ଭଳି ବିଚାର କରି, ଅର୍ଥାତ୍ ଉଦ୍ଧବ ଗଲା ତ ମୁଁ ହିଁ ଗଲି ଏଇ ବିଚାର କରି, ତାଙ୍କୁ ବ୍ରଜକୁ ପଠାଇ ଦେଲେ । ଦ୍ୱିତୀୟ କଥା ହେଉଛି, ଉଦ୍ଧବ ଜୀଙ୍କର ନିଜର ଜ୍ଞାନର ସାମାନ୍ୟ ଅଭିମାନ ମଧ୍ୟ ଥିଲା । ଭଗବାନ ଶ୍ରୀକୃଷ୍ଣ ଯେତେବେଳେ ଗୋପୀମାନଙ୍କୁ ମନେ ପକାଉଥିଲେ, ସେତେବେଳେ ସେ କହୁଥିଲେ - ଆପଣ କଣ ସବୁବେଳେ ସେମାନଙ୍କୁ ମନେ ପକାଉଅଛନ୍ତି । ଉଦ୍ଧବ ଜୀଙ୍କୁ ଖୁବ ଆଶ୍ଚର୍ଯ୍ୟ ଲାଗୁଥିଲା ଯେ, ସେମାନଙ୍କଠାରେ ଏପରି କ'ଣ ଅଛି ? ଗ୍ରାମର ଅପାଠୁଆ ସ୍ତ୍ରୀ ହିଁ ତ ସେମାନେ, କେବେ କଣ ଟିକେ ମାଖନ ଆଦି ଖୁଆଇ ଦେଉଥିବେ,

ତ ସେମାନଙ୍କୁ ଏତେ କ'ଣ ମନେ ପକାଇବେ ? ତାଙ୍କୁ (ଉଦ୍ଧବଙ୍କୁ) ଗୋପୀମାନଙ୍କର ମାହାତ୍ମ୍ୟ ଜଣା ହିଁ ନ ଥିଲା । ଭଗବାନ ଚାହୁଁଥିଲେ ଯେ ଉଦ୍ଧବଙ୍କର ଯେଉଁ ଅଭିମାନ ଅଛି, ତାହା ନଷ୍ଟ ହେଉ ଏବଂ ତାଙ୍କୁ ଟିକିଏ ଶୁଦ୍ଧ ପ୍ରେମର ଅନୁଭବ ପ୍ରାପ୍ତ ହେଉ । ଏପରି ବିଚାର କରି ଭଗବାନ ଶ୍ରୀକୃଷ୍ଣ ଉଦ୍ଧବ ଜୀଙ୍କୁ ବ୍ରଜକୁ ପଠାଇ ଦେଲେ ।

ଭଗବାନଙ୍କର ସନ୍ଦେଶ ନେଇ ଉଦ୍ଧବଜୀ ସୂର୍ଯ୍ୟାସ୍ତ ସମୟରେ ଯାଇ ବ୍ରଜରେ ପହଞ୍ଚିଲେ । ସେହି ସମୟରେ ଗୋବତ୍ସମାନେ ଘରକୁ ଫେରୁଥିଲେ । ଭ୍ରମରମାନେ ଗୁଂଜନ କରୁଥିଲେ । ପକ୍ଷୀମାନେ ସଙ୍ଗୀତ ଗାନ (କୂଜନ) କରୁଥିଲେ । ଚତୁର୍ଦ୍ଦିଗରେ ପ୍ରସ୍ଫୁଟିତ ପୁଷ୍ପର ସମ୍ଭାର ଥିଲା । ବ୍ରଜବାସୀ ଗୋପ-ଗୋପୀ ସୁନ୍ଦର ବସ୍ତ୍ର ପରିଧାନ କରି ଶ୍ରୀକୃଷ୍ଣ-ବଳରାମଙ୍କର ଲୀଳା ଗାନ କରୁଥିଲେ । ସମସ୍ତଙ୍କ ଘରେ ଦୀପ ଜଳାଇଥିଲେ। ସମସ୍ତଙ୍କ ଘରେ ନିତ୍ୟ ପୂଜା କରାଯାଇଥିଲା । ଉଦ୍ଧବ ଜୀଙ୍କୁ ବୋଧ ହେଲା ଯେପରି କେହି ହେଲେ ଏଠାରେ ଦୁଃଖୀ ନାହାନ୍ତି । ସମସ୍ତେ ଆନନ୍ଦରେ ଅଛନ୍ତି ।

ସେ ନନ୍ଦବାବାଙ୍କ ଘରେ ପହଞ୍ଚିଲେ । ତାଙ୍କୁ ଭେଟିବା ପରେ ନନ୍ଦବାବା ବହୁତ ପ୍ରସନ୍ନ ହେଲେ । ତାଙ୍କୁ ହୃଦୟରେ ଲଗାଇ, ଶ୍ରୀକୃଷ୍ଣଙ୍କ ଭଳି ହିଁ ତାଙ୍କୁ ଆଦର ସତ୍କାର କରି ସେ ଅତ୍ୟନ୍ତ ପ୍ରେମ ପୂର୍ବକ ଶ୍ରୀକୃଷ୍ଣଙ୍କର ଲୀଳାମାନ ବର୍ଣ୍ଣନ କରିବାକୁ ଲାଗିଲେ । ସତେ ଯେପରି ତାଙ୍କ ମନ ଭିତରେ ସମସ୍ତ ସ୍ମୃତିଗୁଡ଼ିକ ଏକ ସହିତ ଜାଗ୍ରତ ହୋଇଯାଇଛି। ପୁଣି ସେ ମଥୁରାର ସମସ୍ତଙ୍କର କୁଶଳ ପଚାରିଲେ ଏବଂ ତାପରେ ଉଦ୍ଧବ ଜୀଙ୍କୁ କହୁଛନ୍ତି ଯେ - ଦେଖ ଇଏ ହେଉଛନ୍ତି ତାଙ୍କର ମା', ଏମାନେ ଗୋପାଳବାଳକ ଏବଂ ଗୋପ-ଗୋପୀମାନେ । ସେ କଣ କେବେ ଏଠାକାର କଥା ମନେ ପକାନ୍ତି ? ଯଶୋଦା ମା' ନିକଟରେ ହିଁ ବସିଥିଲେ । ସେ କିଛି ମଧ୍ୟ କହିଲେ ନାହିଁ, ବାସ୍ ତାଙ୍କ ଆଖିରୁ ଅଶ୍ରୁଧାରା ପ୍ରବାହିତ ହୋଇଚାଲିଲା । ବାତ୍ସଲ୍ୟ ମମତାର ଆଧିକ୍ୟ ହେତୁ ତାଙ୍କ ସ୍ତନରୁ କ୍ଷୀରର ଧାରା ପ୍ରବାହିତ ହୋଇଯାଉଥିଲା । ସେଠାରେ ସମସ୍ତଙ୍କର ସ୍ନେହକୁ ଦେଖି ଉଦ୍ଧବ ଜୀ ପରମାନନ୍ଦରେ ବୁଡ଼ିଗଲେ । ସେମାନଙ୍କର ପ୍ରଶଂସା କରିବାକୁ ଲାଗିଲେ । ଉଦ୍ଧବ ଜୀ ସେମାନଙ୍କୁ ବହୁତ ପ୍ରକାର ବୁଝାଇଲେ ଏବଂ କହିଲେ - ଭଗବାନ କହିଛନ୍ତି ଯେ ସେ ଆସିବେ । ସାରା ରାତି କେବଳ କଥାବାର୍ତ୍ତାରେ ବିତିଗଲା।

## ଉଦ୍ଧବ ଜୀଙ୍କର ଗୋପୀମାନଙ୍କ ସହିତ ସମ୍ବାଦ

ତା ପର ଦିନ ଗୋପୀମାନେ ଉଦ୍ଧବ ଜୀଙ୍କୁ ଭେଟିଲେ । ଦୂରରୁ ଦେଖିଲେ ଉଦ୍ଧବ ଜୀ ଶ୍ରୀକୃଷ୍ଣଙ୍କ ଭଳି ଦେଖାଯାଉଥିଲେ । ତେଣୁ ପ୍ରଥମେ ତ ଗୋପୀମାନଙ୍କୁ ଲାଗିଲା, ଆରେ ! ଶ୍ରୀକୃଷ୍ଣ ଆସିଗଲେ କି ? କିନ୍ତୁ ଯେତେ ଯେତେ ସେମାନେ ପାଖକୁ ଆସିଲେ ତ ଭାବୁଛନ୍ତି - ତାଙ୍କ ସହିତ ଯାଙ୍କର ତ କୌଣସି ସାମଞ୍ଜସ୍ୟ ହିଁ ନାହିଁ । ତଥାପି ଯେତେବେଳେ ସେମାନଙ୍କୁ ଜଣାପଡ଼ିଲା ଯେ ଏହାଙ୍କୁ ଆମର ଭଗବାନ ହିଁ ଏଠାକୁ ପଠାଇଛନ୍ତି ଏବଂ ଇଏ ତାଙ୍କର ସଖା ଅଟନ୍ତି, ସେତେବେଳେ ଗୋପୀମାନଙ୍କର ତାଙ୍କ ପ୍ରତି ପ୍ରେମ ହେବାକୁ ଲାଗିଲା । କହିଲେ, ଭଗବାନ ନ ହେଲେ କ'ଣ ହେଲା, ତାଙ୍କର ତ ସଖା ଅଟନ୍ତି । ତାଙ୍କୁ (ଉଦ୍ଧବ ଜୀଙ୍କୁ) ସେ ହିଁ ତ ପଠାଇଛନ୍ତି, ଏହା ଜାଣି ସେମାନେ ସମସ୍ତ ଖବର ପଚାରିବାକୁ ଲାଗିଲେ, ଭଗବାନଙ୍କ ବିୟୋଗରେ କାନ୍ଦୁଥିଲେ ମଧ୍ୟ ଅନେକ କଥା ପଚାରିବାକୁ ଲାଗିଲେ । ସେତେବେଳେ ଉଦ୍ଧବ ଜୀ ସେମାନଙ୍କୁ ଜ୍ଞାନର ଭାଷାରେ ବୁଝାଇବାକୁ ଲାଗିଲେ ଯେ ଭଗବାନ ସର୍ବବ୍ୟାପୀ ଅଟନ୍ତି । ତାଙ୍କର ବିୟୋଗ କାହାକୁ କିଭଳି ବା ହୋଇପାରିବ ? ସେ ତ ତୁମ୍ଭମାନଙ୍କର ଆତ୍ମା ହିଁ ଅଟନ୍ତି । ସେ କେବେ ହେଲେ ମଧ୍ୟ ତୁମ୍ଭମାନଙ୍କଠାରୁ ଦୂର ହୋଇପାରିବେ ନାହିଁ । ତୁମେ ତାଙ୍କର ଧ୍ୟାନ କର, ନିର୍ଗୁଣ ତତ୍ତ୍ୱର ଧ୍ୟାନ କର ।

ତା ପରେ ଗୋପୀମାନେ ଉଦ୍ଧବ ଜୀଙ୍କୁ କହୁଛନ୍ତି - ଧ୍ୟାନ ତ କରିବୁ, କିନ୍ତୁ ପ୍ରଥମେ ଏହା ବୁଝାନ୍ତୁ ଯେ ଧ୍ୟାନ କାହାଦ୍ୱାରା କରାଯାଏ ? (ଉଦ୍ଧବ ଜୀ) କହିଲେ - ମନ ଦ୍ୱାରା କରାଯାଏ । ପୁଣି ସେମାନେ କହୁଛନ୍ତି, ସେ ମନ ତ ଆମ୍ଭମାନଙ୍କ ପାଖରେ ହିଁ ନାହିଁ । ସୂରଦାସ ଜୀ ଏକ ପଦରେ ଲେଖିଛନ୍ତି - "ଉଧୋ ମନ ନାହିଁ ଦସ ବୀସ୍' ଆମ୍ଭମାନଙ୍କ ପାଖରେ ଦଶ-କୋଡ଼ିଏଟି ମନ କେଉଁଠି ଅଛି ? ଯେପରି, ଘରେ ଯଦି ଦୁଇ, ଚାରି ପୁତ୍ର ଅଛନ୍ତି, ତେବେ ସେମାନଙ୍କୁ ଅଲଗା-ଅଲଗା କାର୍ଯ୍ୟରେ ଲଗାଯାଇ ପାରେ । ଚାରି ପୁତ୍ରଙ୍କୁ ଚାରୋଟି କାର୍ଯ୍ୟ ପାଇଁ ଏଠାକୁ-ସେଠାକୁ ପଠାଇ ଦେଇପାରୁ । ଏବେ କିନ୍ତୁ ମନ ତ ଗୋଟିଏ ମାତ୍ର ଅଟେ । "ଏକ ହତୋ ସୋ ଗୟୋ ସ୍ୟାମ ସଙ୍ଗ' ସେମାନେ କହୁଛନ୍ତି, ଗୋଟିଏ ମନ ଥିଲା ତାହା ତ ଶ୍ୟାମଙ୍କ ସଙ୍ଗରେ ଚାଲିଗଲା, ତୁମର କହିବା ଅନୁସାରେ ସେହି ନିର୍ଗୁଣର ଧ୍ୟାନ କରିବା ପାଇଁ ଏବେ ଆଉ ଗୋଟିଏ କେଉଁ ମନ ଆଣିବା ? ଏହି ନିର୍ଗୁଣ କିଏ ? ନିର୍ଗୁଣ କେଉଁ ଦେଶର ଅଧିବାସୀ ? କହିବାକୁ ଲାଗିଲେ ଆମ୍ଭେମାନେ ତ ଏଇ ହାତରେ, ଏହି ଅଙ୍ଗରେ ଭଗବାନଙ୍କ ପୂଜା କରୁଥିଲୁ, ସେବା

କରୁଥିଲୁ ଏବଂ ସ୍ନେହ କରୁଥିଲୁ, ଏବଂ ଭଗବାନ ମଧ୍ୟ ନିଜ ହାତରେ ଆମ କେଶରେ ପୁଷ୍ପ ଲଗାଇ ଦେଉଥିଲେ ଏବଂ ଜଣା ନାହିଁ ଆହୁରି କଣ କଣ କରୁଥିଲେ, ଆଉ ତୁମେ କହୁଛ ଯେ ଆମେ ଏ ସବୁ କିଛି ଛାଡ଼ି, ବିଭୂତି ଲଗାଇବୁ ଏବଂ ଚକ୍ଷୁ ବନ୍ଦ କରି ଧ୍ୟାନ ଲଗାଇ ବସିଯିବୁ !

ସେମାନେ କହୁଛନ୍ତି – ଉଦ୍ଧବ ଜୀ, ସତ କଥା ତ ଏହା ହିଁ ଯେ ଭଗବାନଙ୍କ ଯିବା ପରେ ଏହି ଗୋକୁଳରେ କିଛି ହିଁ ଆଉ ନାହିଁ । ପୁଣି ଜଣେ ଗୋପୀ ଭଗବାନଙ୍କ ସ୍ମୃତିରେ ଏତେ ଦୂର ତନ୍ମୟ ହୋଇଗଲେ ଯେ ଉଡୁଥିବା ଏକ ଭ୍ରମରକୁ ଦେଖି, ସେ ତାକୁ ଶ୍ରୀକୃଷ୍ଣଙ୍କ ଦୂତ ରୂପରେ ସମ୍ବୋଧନ କରି ତା ସହିତ କଥା ହେବାକୁ ଲାଗିଲେ । ବାସ୍ତବରେ, ସେ ଯାହା ସବୁ ସେହି ଭ୍ରମରକୁ କହୁଥିଲେ, ତାହା ସବୁ ଉଦ୍ଧବ ଜୀଙ୍କୁ ଲକ୍ଷ୍ୟ କରି ହିଁ କହୁଥିଲେ । ଦଶଟି ଶ୍ଳୋକରେ ବର୍ଣ୍ଣିତ ଏହି ପ୍ରସଙ୍ଗ "ଭ୍ରମର-ଗୀତ' ନାମରେ ପ୍ରସିଦ୍ଧ ଅଟେ । ସେହି ଶ୍ଳୋକରେ ଗୋପୀମାନେ ନିଜର ଭାବ-ଉଦ୍‌ଗାର ପ୍ରକଟ କରିଛନ୍ତି । ଉଦ୍ଧବ ଯେତେବେଳେ ଗୋପୀମାନଙ୍କର ସେହି ସେମାନଙ୍କ ପ୍ରେମକୁ ଦେଖିଲେ ଏବଂ ହୃଦୟଙ୍ଗମ କଲେ, ତ ତାଙ୍କର ନିଜ ଜ୍ଞାନର ଯେଉଁ ଅଭିମାନ ଥିଲା, ତାହା ଚାଲିଗଲା, ସବୁ ଦୂର ହୋଇଗଲା । ସେତେବେଳେ ସେ ଭଗବାନଙ୍କର ଖବର ଶୁଣାଇ ଗୋପୀମାନଙ୍କୁ ସାନ୍ତ୍ୱନା ଦେଲେ ।

ଉଦ୍ଧବ ଜୀ କହିଲେ – ଶ୍ରୀକୃଷ୍ଣ କହିଛନ୍ତି, "ମୁଁ ହିଁ ସମସ୍ତଙ୍କର ଆତ୍ମା ଅଟେ । ସମସ୍ତଙ୍କ ଭିତରେ ଅଛି, ତେଣୁ ମୋଠାରୁ ତୁମର ବିୟୋଗ କେବେ ହେଲେ ହୋଇପାରିବ ନାହିଁ । ତୁମର ପ୍ରେମକୁ, ତୁମର ଭାବକୁ ମୁଁ ଭଲ ଭାବରେ ଜାଣିଛି । ସେଥିପାଇଁ ମୁଁ ତୁମ୍ଭମାନଙ୍କଠାରୁ ଦୂରରେ ରହୁଛି, ଯଦ୍ଦ୍ୱାରା କି ତୁମେ ସମସ୍ତେ ମନ ଭିତରେ ମୋର ସନ୍ନିଧି ଅନୁଭବ କରି, ମୋତେ ହିଁ ପ୍ରାପ୍ତ କରିପାରିବ । ମୁଁ ତୁମ୍ଭମାନଙ୍କ ସହ ଅବଶ୍ୟ ମଶିବ, ତେଣୁ ନିରାଶ ହେବାର କୌଣସି କାରଣ ନାହିଁ । ତୁମ ସମସ୍ତଙ୍କର ମନ ଯେତେବେଳେ ପୂର୍ଣ୍ଣତଃ ମୋଠାରେ ହିଁ ଏକାଗ୍ର ହୋଇଯିବ, ସେତେବେଳେ ତୁମ୍ଭେମାନେ ସବୁଦିନ ପାଇଁ ମୋତେ ପ୍ରାପ୍ତ କରିନେବ।" ଭଗବାନଙ୍କର ଏପରି ସନ୍ଦେଶ ଶୁଣି ଗୋପୀମାନଙ୍କର ଖୁବ୍ ଆନନ୍ଦ ହେଲା । ସେମାନଙ୍କର ବିରହ ବ୍ୟଥା ଶାନ୍ତ କରିବା ପାଇଁ ଉଦ୍ଧବ ଜୀ କିଛି ମାସ ପର୍ଯ୍ୟନ୍ତ ସେହି ବ୍ରଜରେ ରହିଲେ । ଶ୍ରୀକୃଷ୍ଣଙ୍କର ଅନେକ ଲୀଳାମାନ ଶୁଣାଇ ଶୁଣାଇ ସେଠାରେ ସମସ୍ତଙ୍କୁ ଆନନ୍ଦିତ କରାଉଥିଲେ ଏବଂ ବ୍ରଜର ଭିନ୍ନ-ଭିନ୍ନ ସ୍ଥାନରେ ଭଗବାନ ଯେଉଁ ଲୀଳା ସବୁ କରିଥିଲେ, ତାକୁ ଶୁଣି ସେ ନିଜେ ମଧ୍ୟ ଆନନ୍ଦିତ ହେଲେ । ପୁଣି ସେ ଗୋପୀମାନଙ୍କର ପ୍ରେମର, ସେମାନଙ୍କର ଭାବର ଉଦାର

ହୃଦୟରେ ପ୍ରଶଂସା କଲେ ଏବଂ ସର୍ବଶେଷରେ ଉଦ୍ଧବ ଜୀ ଗୋପୀମାନଙ୍କର ଚରଣ ଧୂଳିକୁ ନିଜ ମସ୍ତକରେ ଧାରଣ କଲେ । ତାପରେ ନନ୍ଦବାବା, ଯଶୋଦା ମା' ତଥା ଗୋପବାଳକମାନଙ୍କଠାରୁ ବିଦାୟ ନେଇ ସେ ମଥୁରାକୁ ଫେରି ଆସିଲେ ।

ବ୍ରଜରୁ ମଥୁରା ଫେରି ଆସିବା ପରେ ଉଦ୍ଧବ ଜୀ ଭଗବାନ ଶ୍ରୀକୃଷ୍ଣଙ୍କୁ କହୁଛନ୍ତି - ଆପଣ ବଡ଼ ନିର୍ମମ ଅଟନ୍ତି । ଦେଖନ୍ତୁ, ଏ ସେହି ଉଦ୍ଧବ ଜୀ, ଯେ କି (ବ୍ରଜକୁ ଯିବା ପୂର୍ବରୁ) ଭଗବାନଙ୍କୁ କହୁଥିଲେ ଯେ ଆପଣ ସେମାନଙ୍କୁ କାହିଁକି ଏତେ ମନେ ପକାଉଛନ୍ତି ? ଏବେ କହୁଛନ୍ତି, (ଗୋପୀମାନେ) ସେମାନେ ଆପଣଙ୍କୁ ଯେତେ ସ୍ମରଣ କରୁଛନ୍ତି, ଆପଣ ସେମାନଙ୍କୁ ସେତେ ସ୍ମରଣ କରୁନାହାନ୍ତି । ବ୍ରଜକୁ ଯାଇ ଫେରିବା ପରେ ତାଙ୍କ ବିଚାରରେ ଏତେ ପରିବର୍ତ୍ତନ ଆସିଗଲାଣି । ତାଙ୍କର ସ୍ୱଭାବ ସମ୍ପୂର୍ଣ୍ଣ ବଦଳିଗଲା । ଏପରି ଲାଗୁଥିଲା ଯେ ସତେ ଯେପରି ପ୍ରେମରସ ତାଙ୍କ ହୃଦୟରେ ଆଚ୍ଛାଦିତ ହୋଇ ରହିଛି । ଅର୍ଥାତ ଏବେ ସେ ପ୍ରେମ ରସରେ ବୁଡ଼ି ଗଲେଣି । ଏଭଳି ଦେଖିଲେ ଏହି ପ୍ରେମର ଗାଥା ଏତେ ଶୀଘ୍ର କେହି ବୁଝିପାରନ୍ତି ନାହିଁ, ପରନ୍ତୁ ଯେତେବେଳେ ଆସେ ସେତେବେଳେ ଆମର ହୃଦୟକୁ ଆନନ୍ଦରେ ପୂର୍ଣ୍ଣ କରିଦିଏ । ତେଣୁ ଆମକୁ ତ କେବଳ ମାତ୍ର ଚେଷ୍ଟା କରିବା ଉଚିତ୍, ବାସ୍ !

## ଶ୍ରୀକୃଷ୍ଣଙ୍କ ଦ୍ୱାରା କୁବ୍ଜାକୁ ଦିଆଯାଇଥିବା ବଚନର ପୂର୍ତ୍ତି

ଉଦ୍ଧବ ଜୀ ମଥୁରାକୁ ଫେରି ଆସିବା ପରେ ଭଗବାନଙ୍କୁ ବିଚାର କଲେ ଏବେ କୁବ୍‌ଜାକୁ ଦେଇଥିବା ବଚନକୁ ପୂର୍ଣ୍ଣ କରିଦେବା ଉଚିତ୍ । ଦେଖନ୍ତୁ, ନିଜର ସେହି ବଚନକୁ ପୂର୍ଣ୍ଣ କରିବା ନିମନ୍ତେ ଉଦ୍ଧବଙ୍କୁ ସାଥିରେ ନେଇ ଶ୍ରୀକୃଷ୍ଣ ତା ଘରକୁ ଯାଉଛନ୍ତି ଏବଂ ସେହି କୁବ୍ଜାର ମନୋରଥ ମଧ୍ୟ ପୂର୍ଣ୍ଣ କରୁଛନ୍ତି । ଏଠାରେ ଶୁକଦେବଜୀ କହୁଛନ୍ତି ଯେ ଭଗବାନଙ୍କୁ ପାଇ ମଧ୍ୟ ସେହି କୁବ୍ଜା ଅତ୍ୟନ୍ତ ସାମାନ୍ୟ ପ୍ରକାରର ଇଚ୍ଛା କରିଥିଲା, ତେଣୁ ସେ ଅତି ମନ୍ଦ ଭାଗ୍ୟା ଥିଲା । ଭଗବାନଙ୍କ ପାଖକୁ ଯାଇ ସାମାନ୍ୟ ଅଙ୍ଗ-ସ୍ପର୍ଶ ଚାହିଁବା ତ ଅତି ମନ୍ଦ କଥା । ଏହାଠାରୁ ବଡ଼ ଦୁର୍ଭାଗ୍ୟ ଆଉ କ'ଣ ବା ହୋଇପାରେ । ଯାହାର ବୁଦ୍ଧି ଯେତିକି ସେ ସେତିକି ହିଁ ମାଗିପାରେ । ଭଗବାନଙ୍କର ପ୍ରେମ ଦେଖନ୍ତୁ, ସେ ଛୋଟ-ବଡ଼ କିଛି ଦେଖନ୍ତି ନାହିଁ । ଏହା ହିଁ ତାଙ୍କର ବିଶେଷତା ।

## ଶ୍ରୀକୃଷ୍ଣଙ୍କର ଅକ୍ରୁର ଜୀଙ୍କ ଗୃହକୁ ଗମନ

ତାପରେ ଭଗବାନ ଅକ୍ରୂରଙ୍କ ଘରକୁ ଯାଉଛନ୍ତି । ମଥୁରାରେ ପହଞ୍ଚୁ - ପହଞ୍ଚୁ ହିଁ ଯେତେବେଳେ ଅକ୍ରୂର ତାଙ୍କ ଘରକୁ ଯିବା ପାଇଁ ଅନୁରୋଧ କରିଥିଲେ, ସେତେବେଳେ ଭଗବାନ ତାଙ୍କୁ ମଧ୍ୟ କହିଥିଲେ ଯେ ମୁଁ ଆପଣଙ୍କ ଘରକୁ ଅବଶ୍ୟ ଆସିବି । ତେବେ ତାଙ୍କ ଘରକୁ ମଧ୍ୟ ଆସିଛନ୍ତି । ପୁଣି ତାଙ୍କୁ ଲାଗିଲା ଯେ ଏହି ସମୟରେ ହସ୍ତିନାପୁରରେ ପାଣ୍ଡବମାନଙ୍କର ସ୍ଥିତି କିଛି ଭଲ ନାହିଁ । କୌରବ-ପାଣ୍ଡବମାନଙ୍କ ଭିତରେ କଣ ଚାଲୁଛି, ଏହି କଥା ଜାଣିବା ନିମନ୍ତେ ସେ ଅକ୍ରୁରଙ୍କୁ କହୁଛନ୍ତି - "ଅକ୍ରୁରଜୀ ଆପଣ ହସ୍ତିନାପୁର ଯାଆନ୍ତୁ ଏବଂ ସେଠିକାର ସମସ୍ତ ଖବର ନେଇ ଆସନ୍ତୁ।" ଦେଖନ୍ତୁ, ଭଗବାନ ସମସ୍ତ ଭକ୍ତମାନଙ୍କର ଖବର ରଖୁଛନ୍ତି। ଗୋକୁଳରେ ଥିଲାବେଳେ ମଧ୍ୟ ଦେବକୀ-ବସୁଦେବ ଆଦି ସମସ୍ତେ କିପରି ଅଛନ୍ତି ତାର ଖବର ରଖନ୍ତି । ମଥୁରା ଆସିବା ପରେ, ଗୋକୁଳର ଲୋକମାନେ କିପରି ଅଛନ୍ତି, ହସ୍ତିନାପୁର (ଆଜିର ଦିଲ୍ଲୀ)ରେ କୌରବ ପାଣ୍ଡବ କିଭଳି ଅଛନ୍ତି, ଏ ସମସ୍ତ ସମାଚାର ଭଗବାନ ନେଉଛନ୍ତି ।

ତାତ୍ପର୍ଯ୍ୟ ହେଉଛି ଯେ ଭଗବାନ ସ୍ୱାଭାବିକ ଭାବରେ ସମସ୍ତଙ୍କ ପ୍ରତି ଧ୍ୟାନ ରଖନ୍ତି। ସେ କାହାକୁ ଭୁଲନ୍ତି ନାହିଁ । ଆମେ ସମସ୍ତେ ତ କଥା-କଥାକେ କହିଦେଉଛୁ "ମୁଁ ଭୁଲିଗଲି' । ଯେପରିକି, କେହି କହନ୍ତି ଆପଣ କହୁଥିଲେ ପତ୍ର ଲେଖିବି, କିନ୍ତୁ ଲେଖିଲେ ନାହିଁ ? ତ ଆମେ କହୁ, "କାମରେ ଲାଗିଯାଇଥିଲି ।" ଏପରି କେଉଁ ବଡ଼ କାମ ଆସିଯାଇଥିଲା ? ସତ କଥା ହେଲା ଯେ ବାସ୍, ଭୁଲି ଗଲେ । କେହି କେହି ତ ଡାକଘରେ ଚିଠି ପକାଇବା ପାଇଁ ମଧ୍ୟ ଭୁଲି ଯାଆନ୍ତି । ସବୁ କଥା ତ ଭୁଲି ଯାଉ । କିନ୍ତୁ, ଭଗବାନ ଭୁଲନ୍ତି ନାହିଁ । ସେ ନିଜର ବଚନ ଅବଶ୍ୟ ପୂର୍ଣ୍ଣ କରନ୍ତି, ତାହା ଭୁଲନ୍ତି ନାହିଁ। (କେଉଁଠାରେ କେଉଁଠାରେ ମଧ୍ୟ ଉଲ୍ଲେଖ ମିଳେ ଯେ, ବ୍ରଜବାସୀମାନଙ୍କ ସହିତ ମିଳିବା ପାଇଁ ଭଗବାନ ସ୍ୱୟଂ ବୃନ୍ଦାବନ ଯାଇଥିଲେ।)

ଭଗବାନଙ୍କ ଆଦେଶ ପ୍ରାପ୍ତ କରି ଅକ୍ରୂର ହସ୍ତିନାପୁର ଯାଉଛନ୍ତି ଏବଂ ସେଠାରେ ସମସ୍ତ ଇଷ୍ଟ-ମିତ୍ର ତଥା ସଖା-ସମ୍ବନ୍ଧିମାନଙ୍କ ସହ ମିଳୁଛନ୍ତି । ସେଠାରେ ପାଣ୍ଡବମାନଙ୍କର ମାତା କୁନ୍ତୀ ତାଙ୍କୁ ନିଜର ଦୁଃଖ ଶୁଣାଉଛନ୍ତି । ପାଣ୍ଡମାନଙ୍କ ସହିତ ଧୃତରାଷ୍ଟ୍ରଙ୍କର କେଉଁଭଳି ବ୍ୟବହାର ଏହା ଦେଖିବା ଦୃଷ୍ଟିରେ ସେ କିଛି ମାସ ପର୍ଯ୍ୟନ୍ତ ସେଠାରେ ରହିଗଲେ । ସବୁ ଦେଖିବା ପରେ ତାଙ୍କୁ ସ୍ପଷ୍ଟ ରୂପେ ଜ୍ଞାତ ହୋଇଯାଇଛି ଯେ ପାଣ୍ଡବମାନଙ୍କ ସହ କୌରବମାନେ ବଡ଼ ଅନ୍ୟାୟ କରୁଛନ୍ତି । ଅକ୍ରୂର ସମସ୍ତ ସମାଚାର ନେଇ ଭଗବାନଙ୍କ ନିକଟକୁ ଫେରିଆସୁଛନ୍ତି । ଏହି ପ୍ରସଙ୍ଗ ସହିତ, ଶ୍ରୀକୃଷ୍ଣ ଚରିତ୍ରର - ଦଶମ ସ୍କନ୍ଧର ପୂର୍ବାର୍ଦ୍ଧ ସମାପ୍ତ ହେଉଛି ।

## ଦଶମ ସ୍କନ୍ଧ (ଉତ୍ତରାର୍ଦ୍ଧ)

## ଜରାସନ୍ଧର ସତର ଥର ଆକ୍ରମଣ

ଉତ୍ତରାର୍ଦ୍ଧରେ ସର୍ବପ୍ରଥମେ ଜରାସନ୍ଧର ପ୍ରସଙ୍ଗ ଆସେ । ଜରାସନ୍ଧ ମଗଧ ଦଶେର ରାଜା ଥିଲା ଏବଂ ସେ ଅତି ଶକ୍ତିଶାଳୀ ଥିଲା । ଜନ୍ମ ନେବାବେଳେ ସେ ଦୁଇଖଣ୍ଡ ହୋଇଯାଇଥିଲା, କିନ୍ତୁ ଜରାନାମକ ଜଣେ ସ୍ତ୍ରୀ ତାକୁ ଯୋଡ଼ି ଦେଇଥିଲା । ସେଥିପାଇଁ ତାର ନାମ ଜରାସନ୍ଧ ହୋଇଥିଲା । ଏହି କାରଣରୁ, ଯେତେବେଳେ ଯଦି କେହି ତାକୁ ଦୁଇଖଣ୍ଡ କରିବେ, ସେତେବେଳ ହିଁ ତାର ମୃତ୍ୟୁ ସମ୍ଭବ ହେବ । ଏହି ଜରାସନ୍ଧ କଂସର ମଧ୍ୟ ମିତ୍ର ଥିଲା । ଜରାସନ୍ଧ, ଶିଶୁପାଳ, ଦନ୍ତବକ୍ର, ଶାଲ୍ବ, ବିଦୂରଥ ଏବଂ କଂସ, ଏ ସମସ୍ତଙ୍କ ବଡ଼ ମିତ୍ରଭାବ ଥିଲା । ଜରାସନ୍ଧ ନିଜର ଦୁଇକନ୍ୟାଙ୍କର ବିବାହ କଂସ ସହିତ କରାଇ ଦେଇଥିଲା ।

କଂସର ଏହି ଦୁଇ ପତ୍ନୀଙ୍କର ନାମ ଥିଲା, ଅସ୍ତି ଓ ପ୍ରାପ୍ତି । ଏହି ଦୁଇଟି ନାମ ନିଶ୍ଚୟ ବିଚାରଣୀୟ । ଗୀତାଜୀରେ କୁହାଯାଇଛି -

**ଇଦମସ୍ତୀଦମପି ମେ ଭବିଷ୍ୟତି ପୁନର୍ଧନମ । (ଭ.ଗୀ-୧୬-୨୩)**

ମନୁଷ୍ୟର ପ୍ରଧାନତଃ ଦୁଇଟି ବୃତ୍ତି ହୋଇଥାଏ । ଏହି ବସ୍ତୁ ମୋ ପାଖରେ ଅଛି "ଅସ୍ତି' ଏବଂ ମୋତେ ଅନ୍ୟଟି ପ୍ରାପ୍ତି କରିବାର ଅଛି - "ପ୍ରାପ୍ତି', ପ୍ରାୟ ମନୁଷ୍ୟ ନିଜ ଜୀବନରେ ଏହି ଦୁଇଟି କଥାକୁ ମହତ୍ତ୍ୱ ଦେଇଥାଏ ।

ଭଗବାନଙ୍କ ଦ୍ୱାରା ଯେତେବେଳେ କଂସର ମୃତ୍ୟୁ ହୋଇଗଲା, ସେତେବେଳେ ଏ ଦୁହେଁ ଅସ୍ତି ଏବଂ ପ୍ରାପ୍ତି ନିଜର ପିତା ଜରାସନ୍ଧଙ୍କ ନିକଟକୁ ଗଲେ । ଜରାସନ୍ଧ ଯେତେବେଳେ ସେମାନଙ୍କଠାରୁ ଶୁଣିଲା ଯେ ଶ୍ରୀକୃଷ୍ଣ କଂସକୁ ମାରି ଦେଇଛନ୍ତି, ସେତେବେଳେ ସେ ଅତ୍ୟନ୍ତ କ୍ରୋଧିତ ହୋଇଗଲା । ସେ ବହୁ ସଂଖ୍ୟକ ଶକ୍ତିଶାଳୀ (ତେଇଶ ଅକ୍ଷୌହିଣୀ) ସୈନ୍ୟମାନଙ୍କ ସହିତ ମଥୁରା ଉପରେ ଆକ୍ରମଣ କରିଦେଲା । ସେତେବେଳେ ବଳରାମ ତଥା ଶ୍ରୀକୃଷ୍ଣ ତା ସହିତ ଯୁଦ୍ଧ କରୁଛନ୍ତି । ତାର ଚତୁରଙ୍ଗିଣୀ ସେନାକୁ ନଷ୍ଟ କରୁଛନ୍ତି, କିନ୍ତୁ ତାକୁ ନ ମାରି ଛାଡି ଦେଉଛନ୍ତି । ପରାସ୍ତ ହୋଇ ତାକୁ ଫେରିଯିବାକୁ ପଡୁଛି । ଭଗବାନ ଶ୍ରୀକୃଷ୍ଣ ତାକୁ ମାରୁ ନାହାନ୍ତି, ତାର ବିଶେଷ କାରଣ ଅଛି । ତାହା ହେଉଛି - ଜରାସନ୍ଧ ଜୀବିତ ରହିଲେ, ପୁଣି ସମସ୍ତ ଅସୁରମାନଙ୍କୁ ଏକାଠି କରି ନେଇ ଆସିବ । ତେବେ ସହଜରେ ଭଗବାନଙ୍କର ଅବତାରରେ ଉଦ୍ଦେଶ୍ୟ ସିଦ୍ଧ

ହେବ, ଦୁଷ୍ଟମାନଙ୍କର ସଂହାର ହେବ, ଯଦ୍ଦ୍ୱାରା ପୃଥିବୀର ଭାର ହାଲୁକା ହେବ । ଏହିଭଳି ଭାବରେ ସେହି ଜରାସନ୍ଧ ସତର ଥର ମଥୁରା ଉପରେ ଆକ୍ରମଣ କଲା । ବାରମ୍ବାର ଯୁଦ୍ଧ କଲା, କିନ୍ତୁ ସବୁଥର ଭଗବାନ ତାକୁ ହରାଇ ଛାଡି ଦେଉଥିଲେ, ମାରୁ ନ ଥିଲେ ।

## ଦ୍ୱାରକାର ନିର୍ମାଣ

କାଳଯବନ ନାମରେ ଜରାସନ୍ଧର ଜଣେ ମିତ୍ର ଥିଲା । ଯେତେବେଳେ ନାରଦଜୀଙ୍କ ଠାରୁ କାଳଯବନ ଶ୍ରୀକୃଷ୍ଣ ଏବଂ ବଳରାମଙ୍କର ପରାକ୍ରମ ଶୁଣିଲା, ସେତେବେଳେ ତାର ନିଜର ମ୍ଲେଚ୍ଛ ସୈନ୍ୟମାନଙ୍କୁ ସଙ୍ଗରେ ନେଇ ମଥୁରା ଉପରେ ଆକ୍ରମଣ କଲା, ମଥୁରାକୁ ଘେରାଉ କଲା । ସେତେବେଳେ ବଳରାମଙ୍କ ସହ ମିଶି ଭଗବାନ ବିଚାର କଲେ ଯେ କାଳଯବନର ପଛରେ ଜରାସନ୍ଧ ମଧ୍ୟ ନିଶ୍ଚୟ ଯୁଦ୍ଧ କରିବାକୁ ଆସୁଥିବ । ଯଦି ଆମେ ଦୁହେଁ ଏଠାରେ ତା ସହିତ ଲଢ଼ିବାରେ ରହିଯିବା, ତେବେ ଜରାସନ୍ଧ ସେହି ସମୟରେ ଆସି ଆମର ସ୍ୱଜନ ତଥା ପ୍ରଜାମାନଙ୍କୁ ମାରିଦେବ । ଏହିପରି ବିଚାର କରି ଭଗବାନ ଶ୍ରୀକୃଷ୍ଣ ସମୁଦ୍ର ଭିତରେ ଦ୍ୱାରକା ନାମକ ଏକ ନଗରୀ ନିର୍ମାଣ କରାଇଲେ । ଏଭଳି ନଗରୀ ଯାହାର ଦ୍ୱାରରେ "କ' ବ୍ରହ୍ମ ରହିଥିବ, ଅର୍ଥାତ୍ ଯାହାକି ମୋକ୍ଷର ଦ୍ୱାର ହୋଇଥିବ ତାକୁ ଦ୍ୱାରକା କହନ୍ତି ।

ପୁରାଣ ଅନୁସାରେ ସାତଟି ନଗରୀକୁ ମୋକ୍ଷଦାୟିନୀର ମାନ୍ୟତା ଦିଆଯାଏ । ପ୍ରଥମ ଅଯୋଧ୍ୟା, ଦ୍ୱିତୀୟ ମଥୁରା, ଏହାକୁ ସମସ୍ତେ ଜାଣିଛନ୍ତି । ତୃତୀୟ ହେଉଛି ମାୟା ଅର୍ଥାତ୍ ହରିଦ୍ୱାର । ହରିଦ୍ୱାରକୁ ମାୟା ନଗରୀ କୁହାଯାଏ । ତା ପରେ ଚତୁର୍ଥ ନଗରୀ ହେଉଛି କାଶୀ । ଏ କଥାକୁ ମଧ୍ୟ ସମସ୍ତେ ଜାଣିଛନ୍ତି ଯେ ଯେଉଁଠାରେ ଗଙ୍ଗାଜୀ ପ୍ରବାହିତ ହେଉଛି, ଯେଉଁଠାରେ ଭଗବାନ ବିଶ୍ୱନାଥ ବିରାଜମାନ, ସେହି କାଶୀରେ ଯାହାର ମରଣ ହୋଇଥାଏ, ତାର କର୍ଣ୍ଣରେ ଭଗବାନ ତାରକ ମନ୍ତ୍ରର ଉପଦେଶ ଦିଅନ୍ତି ଏବଂ ତାର ମୁକ୍ତି ହୋଇଯାଏ । ପଞ୍ଚମ ହେଉଛି କାଞ୍ଚି । କାଞ୍ଚି ନଗରୀ ଦକ୍ଷିଣ ଭାରତରେ ଅବସ୍ଥିତ । ସେଥିରେ ମଧ୍ୟ ଦୁଇଭାଗ ଅଛି - ବିଷ୍ଣୁ କାଞ୍ଚି ଓ ଶିବ କାଞ୍ଚି । ଷଷ୍ଠ ହେଉଛି ଉଜ୍ଜୟିନୀ, ଯାହାକି ମଧ୍ୟ ପ୍ରଦେଶରେ ଅବସ୍ଥିତ । ତାକୁ ଅବନ୍ତିକା କୁହାଯାଏ ଏବଂ ସପ୍ତମ ହେଉଛି ଦ୍ୱାରକା । ବର୍ଣ୍ଣନ ଅଛି ଯେ ଭଗବାନ ନିଜର ଲୀଳା ସମ୍ବରଣ ସମୟରେ ନିଜର ଦ୍ୱାରକା ନଗରୀକୁ ସମୁଦ୍ରରେ ବୁଡ଼ାଇ ଦେଇଥିଲେ । ବର୍ତ୍ତମାନରେ ଯାହାକୁ ଦ୍ୱାରକା କୁହାଯାଉଛି ତାହା ହେଉଛି ଅନ୍ୟ ଦ୍ୱାରକା । ପ୍ରତ୍ନତତ୍ତ୍ୱ ବିଭାଗର ଲୋକମାନେ ବର୍ତ୍ତମାନ ସେହି ପୂର୍ବ ଦ୍ୱାରକାର ଅନ୍ୱେଷଣରେ ଲାଗିଛନ୍ତି, ସେମାନଙ୍କୁ କିଛି ଅବଶେଷ ମଧ୍ୟ ମିଳୁଛି ।

ଦ୍ୱାରକାର ନିର୍ମାଣ କରାଇ ଭଗବାନ ନିଜର ଅଚିନ୍ତ୍ୟ ଯୋଗ ଶକ୍ତି ଦ୍ୱାରା ସମସ୍ତ ସ୍ୱଜନଙ୍କୁ ସେଠାରେ ପହଞ୍ଚାଇ ଦେଲେ । ମଥୁରାରୁ ସେମାନଙ୍କୁ ନେଇଗଲେ, କାରଣ ମଥୁରା ଉପରେ ବାରମ୍ବାର ଆକ୍ରମଣ ହେଉଥିଲା । ଭଗବାନ ନିଜର ଦ୍ୱାରକାକୁ ସମୁଦ୍ର ଭିତରେ ନିର୍ମାଣ କଲେ ଯଦ୍ୱାରା ଭବିଷ୍ୟତରେ କେହି ସହଜରେ ଆକ୍ରମଣ କରିପାରିବେ ନାହିଁ । ଭଗବାନ ତାର ବୈଭବକୁ ବୈକୁଣ୍ଠଠାରୁ ମଧ୍ୟ ଅଧିକ ବଢ଼ାଇ ଦେଲେ । ଯେଉଁଠାରେ ସ୍ୱୟଂ ଭଗବାନ ବିରାଜମାନ, ସେଠାରେ କଣ କିଛି ଅସମ୍ଭବ ହୋଇପାରେ ?

## କାଳଯବନ ଭସ୍ମ

କାଳଯବନ ଯେ କି ମଥୁରାକୁ ଘେରି ବସିଥିଲା, ସେ ଅଜେୟ ଥିଲା । ତାକୁ ବରଦାନ ପ୍ରାପ୍ତ ଥିଲା ଯେ ଯୁଦ୍ଧରେ ତାର ସମ୍ମୁଖକୁ ଯେ କେହି ଆସିବ, ତାକୁ ପଳାଇ ଯିବାକୁ ପଡ଼ିବ । ଭଗବାନ ଏହି ରହସ୍ୟକୁ ଜାଣିଥିଲେ । ତେଣୁ ବଳରାମଙ୍କ ସହିତ ବିଚାର କରି, ମଥୁରାବାସୀମାନଙ୍କର ରକ୍ଷା ନିମନ୍ତେ ତାଙ୍କୁ (ବଳରାମ ଜୀଙ୍କୁ) ସେହିଠାରେ ଛାଡ଼ି ସେ ସ୍ୱୟଂ କାଳଯବନର ସମ୍ମୁଖୀନ ହେବା ପାଇଁ ମଥୁରା ଦ୍ୱାରରୁ ବାହାରକୁ ଆସିଲେ । କାଳଯବନର ସମ୍ମୁଖିନ ହେବାମାତ୍ରେ ସେ ପଳାଇଲେ ।

ଆଧ୍ୟାତ୍ମିକ ଦୃଷ୍ଟିରେ ଏହି ଜରାସନ୍ଧ ଜରା ଅବସ୍ଥା ଅଟେ, ଜୀବନର ଉତ୍ତରାର୍ଦ୍ଧ । ଯଦିବା ଅନେକ ରୋଗ ରୂପରେ ତାର ଥରକୁ ଥର ହେଉଥିବା ଆକ୍ରମଣ ଦ୍ୱାରା ଆମର ଶରୀର ରୂପୀ ମଥୁରାନଗରୀ କ୍ଷତିଗ୍ରସ୍ତ ହୋଇଯାଏ, ତାର ଅବୟବ କ୍ଷୀଣ ହେବାକୁ ଲାଗେ, ତଥାପି ଅନେକଥର ଆମେ ତାକୁ ପରାଜିତ କରି ତା ଉପରେ ବିଜୟ ପ୍ରାପ୍ତ କରିନେଇଥାଉ । ପରନ୍ତୁ ଯେତେବେଳେ ସେ କାଳରୂପୀ କାଳଯବନକୁ ସଙ୍ଗରେ ନେଇ ତାକୁ ସମ୍ମୁଖରେ ରଖି ଆସେ, ତେବେ ତା ସହିତ ଯୁଦ୍ଧ କରାଯାଇପାରେ ନାହିଁ । କାଳକୁ ପରାଜିତ କରିବାକୁ ହେଲେ ତା ସହିତ ଯୁଦ୍ଧ କରାଯାଏ ନାହିଁ, କାଳର ଉର୍ଦ୍ଧ୍ୱକୁ ଯିବାକୁ ପଡ଼ିଥାଏ । ତାହା ବ୍ରହ୍ମବିଦ୍ୟା ଦ୍ୱାରା ହିଁ ସମ୍ଭବ । ସେଥିପାଇଁ ବ୍ରହ୍ମର ଦ୍ୱାର ଦ୍ୱାରକାକୁ ଯିବାକୁ ପଡ଼ିଥାଏ । ତେଣୁ ଭଗବାନ ତାକୁ ସତର ଥର ତାକୁ ହରାଇ ଫେରାଇ ଦେଲେ । ଅଠର ଥର ଯେତେବେଳେ ସେ ତାର ମିତ୍ର କାଳଯବନକୁ ପ୍ରଥମେ (ଯୁଦ୍ଧପାଇଁ) ପଠାଇ ତାପରେ ଆସୁଛି, ସେତେବେଳେ ଭଗବାନ ତା ସହ ଅର୍ଥାତ୍ ଜରାସନ୍ଧ ସହ ଯୁଦ୍ଧ ନ କରି ଯୁଦ୍ଧ ଭୂମିରୁ ପଳାଇ ମଥୁରାକୁ ଛାଡ଼ି ଦ୍ୱାରକାରେ ବସତି ସ୍ଥାପନ କରୁଛନ୍ତି ।

ଏବେ ଏହାର ଅର୍ଥ ବୁଝନ୍ତୁ ନାହିଁ ଯେ ଭଗବାନ ଭୟରେ ପଳାୟନ କରିଥିଲେ । ଭଗବାନଙ୍କୁ ପୁଣି ଭୟ କାହିଁକି ? ଭଗବାନ ତ ଚତୁରତାର ସହିତ ପଳାୟନ କଲେ ।

ଦେଖନ୍ତୁ, ଭଗବାନ ଏଠାରେ ଆମକୁ ଶିକ୍ଷା ଦେଉଛନ୍ତି – ଯେକୌଣସି କାର୍ଯ୍ୟକୁ ସେହି ସମୟରେ ପୂର୍ଣ୍ଣ କରିଦେବା ଉଚିତ୍ । କାଳଯବନ ଭଗବାନଙ୍କୁ ପଳାଉଥିବାର ଦେଖି ସେ ମଧ୍ୟ ସ୍ୱୟଂ ତାଙ୍କ ପଛରେ ଦୌଡ଼ିବାକୁ ଲାଗିଲା । ପଳାୟନ କରି ଭଗବାନ ସେହି ଗୁମ୍ଫା ଭିତରେ ପ୍ରବେଶ କଲେ, ଯେଉଁଠାରେ ରାଜା ମୁଚୁକୁନ୍ଦ ଶୋଇଥିଲେ । ରାଜା ମୁଚୁକୁନ୍ଦ ବହୁତ ଦିନ ପର୍ଯ୍ୟନ୍ତ ଜାଗ୍ରତ ରହି ଦେବତାମାନଙ୍କୁ ସହାୟତା କରିଥିଲେ । ସେ ଏତେ ଥକି ଯାଇଥିଲେ ଯେ ଦେବତାମାନେ ଯେତେବେଳେ ମୁଚୁକୁନ୍ଦଙ୍କୁ କହିଲେ – ତୁମର କ'ଣ ବର ଆବଶ୍ୟକ ? ସେତେବେଳେ ସେ କହିଥିଲେ – "ମୁଁ ବହୁତ ଥକି ଗଲିଣି। ଏବେ ତ ମୋତେ ନିଦ୍ରା ଆବଶ୍ୟକ । ମୋ ନିଦ୍ରାରେ କେହି ବ୍ୟାଘାତ ସୃଷ୍ଟି ନ କରନ୍ତୁ ।" ସେତେବେଳେ ତାଙ୍କୁ ଏହି ବର ପ୍ରଦାନ ହୋଇଥିଲା ଯେ – ତାଙ୍କର ନିଦ୍ରାରେ ଯଦି କେହି ବିଘ୍ନ ସୃଷ୍ଟି କରେ, ଏବଂ ସର୍ବପ୍ରଥମ ତାଙ୍କର ଦୃଷ୍ଟି ଯାହା ଉପରେ ପଡ଼ିବ, ସେ ଜଳିଯାଇ ଭସ୍ମ ହୋଇଯିବ ।

## ମୁଚୁକୁନ୍ଦଙ୍କର କଥା

ଏହି ମୁଚୁକୁନ୍ଦ ମହାରାଜ ସେଠାରେ ଶୋଇଥିଲେ । ଭଗବାନଙ୍କୁ ସବୁ ଜଣାଥିଲା। ତେଣୁ ଭଗବାନ ପଳାଇ ଯାଇ ସେଠାରେ ପହଞ୍ଚି ଗଲେ ଏବଂ ଗୁମ୍ଫା ଭିତରେ ଲୁଚି ଗଲେ। ନିଜର ଉପବସ୍ତ୍ରକୁ ଶୋଇଥିବା ମୁଚୁକୁନ୍ଦଙ୍କ ଉପରେ ଘୋଡ଼ାଇ ଦେଲେ । ଏତିକିବେଳେ କାଳଯବନ ମଧ୍ୟ ତାଙ୍କୁ (ଭଗବାନଙ୍କୁ) ଅନୁସରଣ କରି ତାଙ୍କ ପଛେ ପଛେ ଆସି ଗୁମ୍ଫା ଭିତରକୁ ପ୍ରବେଶ କଲା, କିନ୍ତୁ ସେଠାରେ ତାକୁ ସ୍ପଷ୍ଟ ରୂପେ କିଛି ଦେଖାଯାଉ ନ ଥିଲା । ଦେଖନ୍ତୁ, ଆଲୋକରୁ କେହି ଯଦି ହଠାତ୍ ସମ୍ପୂର୍ଣ୍ଣ ଅନ୍ଧକାର ଭିତରେ ପ୍ରବେଶ କରେ, ତେବେ କିଛି ସମୟ ପର୍ଯ୍ୟନ୍ତ ସେ ସ୍ପଷ୍ଟ ରୂପେ କିଛି ଦେଖିପାରେ ନାହିଁ । କିଛି ସମୟ ପରେ ସେ ଦେଖିଲା ଯେ, ସେଠାରେ କେହି ଶୟନ କରିଛି । ପୁଣି ସେହି ଉପବସ୍ତ୍ରକୁ ଦେଖି କାଳଯବନ ବୁଝିଗଲା ଯେ ଏ ନିଶ୍ଚୟ କୃଷ୍ଣ ହୋଇଥିବେ । ତାକୁ ବୋଧ ହେଲା ଯେ ଯୁଦ୍ଧରୁ ପଳାୟନ କରି ଏଠାରେ ଆସି ଶୋଇ ପଡ଼ିଛି ? ଏଭଳି ବିଚାର କରି ଶୋଇଥିବା ମୁଚୁକୁନ୍ଦଙ୍କୁ ଶ୍ରୀକୃଷ୍ଣ ମନେ କରି ଏକ ଗୋଇଠା ମାରିଲା, ତେଣୁ ଶୋଇଥିବା ମୁଚୁକୁନ୍ଦ ଉଠିଗଲେ । ତେଣୁ ତାଙ୍କୁ ଲାଗିଲା ଯେ ମୋତେ ନିଦରୁ ଉଠାଇବା ଲାଗି ଏଠାରେ କିଏ ଆସି ପହଞ୍ଚିଲା ? ସମ୍ମୁଖରେ ପୁଣି କ'ଣ ଥିଲା – କାଳଯବନ ଠିଆ ହୋଇଥିଲା । ଯେଉଁ ମୁହୂର୍ତ୍ତରେ ରାଜା ମୁଚୁକୁନ୍ଦଙ୍କ ଦୃଷ୍ଟି ତା ଉପରେ ପଡ଼ିଲା, ସେହି ମୁହୂର୍ତ୍ତରେ ହିଁ ସେ ସେଠାରେ ଭସ୍ମ ହୋଇଗଲା । ସେତେବେଳେ ମୁଚୁକୁନ୍ଦ ଦେଖୁଛନ୍ତି

ଯେ ସେଠାରେ ଭଗବାନ ଚୁପ୍‌ଚାପ୍ ଠିଆ ହୋଇଛନ୍ତି । ଏହି ମୁଚୁକୁନ୍ଦ ମହାରାଜା ଭଗବାନଙ୍କର ଭକ୍ତ ଥିଲେ ।

ଦେଖନ୍ତୁ, ଏଠାରେ ଭଗବାନ ଥରକରେ ଦୁଇଟି କାର୍ଯ୍ୟ ସମାପନ କରିଦେଲେ । ପ୍ରଥମରେ ଭକ୍ତକୁ ଦର୍ଶନ ଦେଲେ, ଧରି ନିଅନ୍ତୁ ଭଗବାନ ତାଙ୍କୁ (ଭକ୍ତକୁ) କହୁଛନ୍ତି - ଆଉ କେତେଦିନ ଶୋଇବ ? ବହୁତ ଶୋଇଲ, ଏବେ ଉଠ । ତେବେ ଗୋଟିଏ ପାଖରେ ମୁଚୁକୁନ୍ଦକୁ ଉଠାଇ ନିଜର ଦର୍ଶନ କରାଇଲେ ଏବଂ ଦ୍ୱିତୀୟରେ କାଳଯବନକୁ ମଧ୍ୟ ସିଧା ମରାଇ ଦେଲେ । ଦେଖନ୍ତୁ, ସେଥିପାଇଁ ଭଗବାନ ମଥୁରାରୁ ପଳାଇ ଆସିଥିଲେନ୍ତ ଭୟ ହେତୁ ନୁହେଁ । ତେବେ ଏଠାରେ ଭଗବାନ ମୁଚୁକୁନ୍ଦଙ୍କୁ ଦର୍ଶନ ଦେଉଛନ୍ତି ଏବଂ ଆଶୀର୍ବାଦ ମଧ୍ୟ ଦେଉଛନ୍ତି ଯେ, "ତୁମକୁ ମୋର ଅନପାୟନୀ ଭକ୍ତି ପ୍ରାପ୍ତ ହେଉ । ପୁଣି କହୁଛନ୍ତି, "ଏବେ ତୁମେ ଏଠାରୁ ଯାଅ ଏବଂ ମୋର ତପ କର । ନିଜର ସାଧନାରେ ଅଗ୍ରସର ହୁଅ । ଆସନ୍ତା ଜନ୍ମରେ ଯେତେବେଳେ ତୁମେ ବ୍ରାହ୍ମଣ ଜନ୍ମ ପ୍ରାପ୍ତ ହେବ, ତୁମେ ସମସ୍ତଙ୍କର ସୁହୃତ୍ ହେବ, ସେତେବେଳେ ତୁମେ ସ୍ୱରୂପତଃ ମୋତେ ପ୍ରାପ୍ତ କରିବ ।"

କେତେକ ଲୋକ କହିଥାଆନ୍ତି ଯେ, ମୁଚୁକୁନ୍ଦ ମହାରାଜ ହିଁ ପରବର୍ତ୍ତୀ ସମୟରେ ଶ୍ରୀଧର ସ୍ୱାମୀ ହୋଇ ଆସିଥିଲେ । ଏହା ତ ଶ୍ରଦ୍ଧାର (ବିଶ୍ୱାସର) ବିଷୟ, ସ୍ୱୀକାର କରିନେଲେ ନିଶ୍ଚୟ ହିତ । ଶ୍ରୀ ଶ୍ରୀଧର ସ୍ୱାମୀଜୀ ଭାଗବତ ଉପରେ ଅତି ସୁନ୍ଦର ଭାଷ୍ୟ ଲେଖିଛନ୍ତି ।

ଏହିଭଳି କାଳଯବନର ମଧ୍ୟ ନାଶ ହୋଇଗଲା ଏବଂ ଭଗବାନ ମଥୁରାକୁ ଫେରି ଆସିଲେ । ଭଗବାନ ପୁଣି ବଳରାମଜୀଙ୍କ ସହିତ କାଳଯବନର ସେନାମାନଙ୍କୁ ସଂହାର କଲେ । ସେତେବେଳକୁ ଜରାସନ୍ଧ ପୁଣି ଅଠରଥର ପାଇଁ ତେଇଶ ଅକ୍ଷୌହିଣୀ ସେନା ସହିତ ମଥୁରାକୁ ଆକ୍ରମଣ କଲା । କାଳଯବନର ସେନାମାନଙ୍କ ନିକଟରୁ ପ୍ରାପ୍ତ ଯେତେ ଧନ ଯଦୁବଂଶୀମାନଙ୍କ ପାଖରେ ଥିଲା ସେ ସମସ୍ତ ଲୁଟ୍ କରିନେଲା । ଭଗବାନ ଚାହିଁଥିଲେ ଏହିଥର ମଧ୍ୟ ତାକୁ ହରାଇ ପାରିଥାଆନ୍ତେ । ପରନ୍ତୁ, ବଳରାମଜୀଙ୍କ ସହିତ ଯୁଦ୍ଧଭୂମିରୁ ଖାଲି ପାଦରେ ପଳାଇ ଯାଇ ନିଜକୁ "ରଣଛୋଡ୍' କୁହାଇଲେ । ଏହି ଶ୍ରୀକୃଷ୍ଣ ଭଗବାନ ଏପରି ଯେ ସେ ଯାହା କରିଲେ ମଧ୍ୟ ସେଥିରେ ତାଙ୍କର ଜୟ ଜୟକାର ହୋଇଥାଏ ସେଥିନିମନ୍ତେ ତାଙ୍କର ଅଭିବାଦନ କରାଯାଏ । ଏପରି ଦେଖିଲେ, ଯଦି କେହି ରଣଭୂମି ଛାଡ଼ି ପଳାୟନ କରେ, ତାକୁ ତ ଲୋକମାନେ ଭୀରୁ କହିଥାଆନ୍ତି । କେହି କ'ଣ ତାର ଜୟ ଜୟକାର କରନ୍ତି ? କିନ୍ତୁ ଶ୍ରୀକୃଷ୍ଣ ଯୁଦ୍ଧରୁ ପଳାୟନ କରନ୍ତୁ, କି ମାଖନ ଚୋରୀ

କରନ୍ତୁ, ସବୁବେଳେ ତାଙ୍କର ଅଭିବାଦନ କରାଯାଏ । ଗୋପୀମାନଙ୍କର ବସ୍ତ୍ର ହରଣ କଲେ ମଧ୍ୟ, "ଗୋପୀବସ୍ତ୍ରହାରକା ନମଃ' ତାଙ୍କୁ ବନ୍ଦନ ହିଁ କରାଯାଇଥାଏ । ସେ ରହିଁଲେ ଯାହା କରନ୍ତୁ ନା କାହିଁକି, ତାଙ୍କର ଜୟ ଜୟକାର ହିଁ ହୋଇଥାଏ । ତେବେ ଭଗବାନଙ୍କର ଆଉ ଏକ ନାମ ହୋଇଗଲା "ରଣଛୋଡ୍ ଜୀ' । ମଥୁରା ଛାଡ଼ି ପଳାୟନ କଲାବେଳେ ସେମାନେ କେତେକ ମହାପୁରୁଷମାନଙ୍କ ସହ ମିଳିଲେ, ସତ୍ସଙ୍ଗ କଲେ ଏବଂ ପୁଣି ପ୍ରବର୍ଷଣ ପର୍ବତ ଆଦି ଦେଇ ଦ୍ୱାରକାରେ ପହଞ୍ଚିଗଲେ । ଏହିଭଳି ଭଗବାନ ତଥା ଅନ୍ୟ ଯାଦବମାନେ ମଥୁରାରୁ ଦ୍ୱାରକା ଗମନ କଲେ ।

## ବଳରାମ ଜୀ ତଥା ଶ୍ରୀକୃଷ୍ଣଙ୍କର ବିବାହ

ଏବେ ଦ୍ୱାରକାରେ ପ୍ରଥମେ, ରାଜା ରୈବତଙ୍କର କନ୍ୟା ରେବତୀଙ୍କ ସହିତ ବଳରାମଜୀଙ୍କର ବିବାହ ହେଲା । ପୁଣି ଶ୍ରୀକୃଷ୍ଣଜୀଙ୍କ ନିକଟକୁ ରୁକ୍ମିଣୀଙ୍କର ସମାଚାର ଆସୁଛି । ଦେଖନ୍ତୁ, ଭଗବାନଙ୍କର ଯେଉଁ ପ୍ରକୃତି ଅଛି, ତାହା ଅଷ୍ଟଧା ଅଟେ, ତେଣୁ ତାଙ୍କର ଆଠଟି ବିବାହ ତ ବିଶେଷ ଅଟେ । ତା ପରେ ତାଙ୍କର ହଜାର ହଜାର ବିବାହ ହେଉଛି । ଏକ ସଙ୍ଗେ ତାଙ୍କର ଷୋହଳ ସହସ୍ର ବିବାହ ହେଲା । ଧ୍ୟାନ ରଖିବେ, ଏପରି ନୁହେଁ ଯେ, ଭଗବାନ ହେଉଛନ୍ତି ଏକ ଏବଂ ଷୋହଳ ସହସ୍ର କନ୍ୟା । ପ୍ରତ୍ୟେକଙ୍କ ସହିତ ଏକ-ଏକ ଶ୍ରୀକୃଷ୍ଣ ଥିଲେ । ଲୋକମାନେ କହନ୍ତି - ଭଗବାନ ଷୋହଳ ସହସ୍ର କରିଥିଲେ, ତେବେ ଆମେ କାହିଁକି ଦୁଇ, ଚାରି ବିବାହ କାହିଁକି କରିପାରିବା ନାହିଁ ? ସେମାନେ ଏହା ଜାଣନ୍ତି ନାହିଁ ଯେ, ଭଗବାନ ସେହି ଷୋହଳ ସହସ୍ର ପତ୍ନୀମାନଙ୍କ ପ୍ରତି କିଭଳି ଧ୍ୟାନ ରଖୁଥିଲେ । ଏହି ସମସ୍ତ ବର୍ଣ୍ଣନ ଆମେ ଆଗକୁ ଦେଖିବା - ଯେତେବେଳେ ନାରଦ ଜୀ ଭଗବାନଙ୍କର ଦିନଚର୍ଯ୍ୟା ଦେଖିବାକୁ ଦ୍ୱାରକାକୁ ଯାଉଛନ୍ତି, ସେତେବେଳେ ଦେଖିବା । ସାମାନ୍ୟତଃ, ମନୁଷ୍ୟ ଏକ ପତ୍ନୀ ସହିତ ହିଁ ଆନନ୍ଦରେ ରହେ - ଏହା ବହୁତ ବଡ଼ କଥା। ଭଗବାନଙ୍କର ଶକ୍ତି ଅପାର ହୋଇଥାଏ । ତାଙ୍କ ସହିତ ଅନ୍ୟ କେହି ସମାନ ହୋଇପାରିବେ ନାହିଁ, ଏହି କଥାକୁ ଭଲ ଭାବରେ ବୁଝିନେବା ଆବଶ୍ୟକ ।

ଭଗବାନ କେଉଁଭଳି ଅଟନ୍ତି ଏବେ ଦେଖନ୍ତୁ । ରୁକ୍ମିଣୀ ଜୀ ବିଦର୍ଭ ଦେଶର ରାଜା ଭୀଷ୍ମକଙ୍କର କନ୍ୟା ଥିଲେ । ତାଙ୍କର ଭାଇଥିଲେ ରୁକ୍ମୀ । ରୁକ୍ମିଣୀ ଭଗବାନ ଶ୍ରୀକୃଷ୍ଣଙ୍କର ଗୁଣର ବହୁତ (ଅତି) ପ୍ରଶଂସା ଶୁଣିଥିଲେ ଏବଂ ଏ ପାଖରେ ଶ୍ରୀକୃଷ୍ଣ ମଧ୍ୟ ରୁକ୍ମିଣୀଙ୍କର ବହୁତ ଶୁଣିଥିଲେ । ଦୁଇଜଣଙ୍କର ମନ ମଧ୍ୟ ପରସ୍ପର ପ୍ରତି ମୁଗ୍ଧ ହୋଇଯାଇଥିଲା, ଯଦିବା ଦୁହେଁ ଦୁହିଁଙ୍କୁ କେବେହେଲେ ଦେଖି ମଧ୍ୟ ନ ଥିଲେ । ରୁକ୍ମିଣୀଙ୍କର ଭାଇ ରୁକ୍ମୀ ଶ୍ରୀକୃଷ୍ଣଙ୍କ

ସହିତ ଦ୍ୱେଷ କରୁଥିଲା ଏବଂ ନିଜ ଭଉଣୀର ବିବାହ ଚେଦି ରାଜା ଶିଶୁପାଳଙ୍କ ସହିତ କରିବାକୁ ଚାହୁଁଥିଲା । ରୁକ୍ମିଣୀଜୀ ଶିଶୁପାଳଙ୍କୁ ପସନ୍ଦ କରୁ ନ ଥିଲେ । ସେ ହେଉଛନ୍ତି ସ୍ୱୟଂ, ଲକ୍ଷ୍ମୀ, ତାଙ୍କୁ ତ ଭଗବାନ ଶ୍ରୀକୃଷ୍ଣ ହିଁ ଆବଶ୍ୟକ । ତେଣୁ ସେ ବିଚାର କଲେ ଯେ ଏବେ କଣ ହେବ, କାରଣ ଶ୍ରୀକୃଷ୍ଣଙ୍କୁ ତ ଏମାନେ ନିମନ୍ତ୍ରଣ ମଧ୍ୟ ପଠାଇବେ ନାହିଁ । ସ୍ୱୟଂବରର ତ ଆୟୋଜନ ହେବ, କିନ୍ତୁ ଶ୍ରୀକୃଷ୍ଣଙ୍କୁ ଆମନ୍ତ୍ରଣ ଦିଆଯିବ ନାହିଁ ।

## ରୁକ୍ମିଣୀଜୀଙ୍କର ସନ୍ଦେଶ ଏବଂ ତାହାର ରହସ୍ୟ

ସେତେବେଳେ ରୁକ୍ମିଣୀଜୀ ବିଚାର କଲେ, ଏ ଲୋକମାନେ ତାଙ୍କୁ (ଶ୍ରୀକୃଷ୍ଣଙ୍କୁ) ନିମନ୍ତ୍ରଣ ନ କଲେ କଣ ହେଲା, ମୁଁ ହିଁ ନିମନ୍ତ୍ରଣ କରିଦିଏ । ଦୃଢ଼ ସାହାସ କରି ଜଣେ ବିଶ୍ୱାସଭାଜନ ବ୍ରାହ୍ମଣଙ୍କ ମାଧ୍ୟମରେ ରୁକ୍ମିଣୀଜୀ ଭଗବାନ ଶ୍ରୀକୃଷ୍ଣଙ୍କ ନିକଟକୁ ସନ୍ଦେଶ ପଠାଇଲେ। ବ୍ରାହ୍ମଣ ଦେବତା ଯେତେବେଳେ ଶ୍ରୀକୃଷ୍ଣଙ୍କ ନିକଟରେ ପହଞ୍ଚିଲେ, ସେତେବେଳେ ପ୍ରଥମେ ଭଗବାନ ଶ୍ରୀକୃଷ୍ଣ ସ୍ୱୟଂ ତାଙ୍କର ସ୍ୱାଗତ ସତ୍କାର କଲେ, ସେବା କଲେ, ଭୋଜନ କରାଇଲେ, ପୁଣି ତାଙ୍କର ଆସିବାର କାରଣ ପଚାରିଲେ । ସେତେବେଳେ ବ୍ରାହ୍ମଣ ରୁକ୍ମିଣୀ ଜୀଙ୍କର ଯେଉଁ ସନ୍ଦେଶ ତାଙ୍କୁ ଶୁଣାଇଲେ ତାହା ହେଉଛି -

**ଶ୍ରୁତ୍ୱା ଗୁଣାନ୍ ଭୁବନସୁନ୍ଦର ଶୃଣ୍ୱତାଂ ତେ**
**ନିର୍ବିଶ୍ୟ କର୍ଣ୍ଣବିବରୈର୍ହରତୋଽଙ୍ଗତାପମ୍ ।**
**ରୂପଂ ଦୃଶାଂ ଦୃଶିମତାମଖିଳାର୍ଥଲାଭଂ**
**ତ୍ୱୟ୍ୟଚ୍ୟୁତାବିଶତିଚିତ୍ତମପତ୍ରପଂ ମେ ॥ (୧୦.୫୨.୩୭)**

"ହେ ଭୁବନ ସୁନ୍ଦର (ଦେଖନ୍ତୁ, ଭୁବନ ସୁନ୍ଦରର ତାତ୍ପର୍ଯ୍ୟ କ'ଣ ? ଯେ ତ୍ରିଭୁବନରେ ସବୁଠାରୁ ସୁନ୍ଦର ହୋଇଥିବ, ତାଙ୍କୁ ଭୁବନ ସୁନ୍ଦର କହନ୍ତି ଅର୍ଥାତ ଯାହାର କାରଣରୁ ତ୍ରିଭୁବନକୁ ସୁନ୍ଦରତା ପ୍ରାପ୍ତ ହେଉଥିବ, ତାଙ୍କୁ ତ୍ରିଭୁବନ ସୁନ୍ଦର କହନ୍ତି ।) ଆପଣଙ୍କର ଗୁଣ ଏପରି ଯେ ଶ୍ରବଣ କରୁଥିବା ବ୍ୟକ୍ତିର କର୍ଣ୍ଣଦ୍ୱାର ଦେଇ ହୃଦୟରେ ପ୍ରବିଷ୍ଟ ହୋଇ ତାହା ପର ସମସ୍ତ ପାପ, ତାପ ସନ୍ତାନକୁ ନଷ୍ଟ କରି ଦେଇଥାଏ । ଆପଣଙ୍କର ରୂପ ଏପରି ଯେ ତାର ଦର୍ଶନରେ ଦେଖୁଥିବା ବ୍ୟକ୍ତିର ଚକ୍ଷୁ ସଫଳ ହୋଇଯାଏ।" ଏଠାରେ ଧ୍ୟାନ ଦେବାର ବିଷୟ ହେଉଛି ଯେ ଆମର ଚକ୍ଷୁ କେବଳ ଦୂରଦର୍ଶନ ଅଥବା ସଂସାରର ଅନ୍ୟ ବ୍ୟକ୍ତି ଅଥବା ବସ୍ତୁକୁ ଦେଖିବା ନିମନ୍ତେ ହୋଇନାହିଁ। ଏହା ତ ଭଗବାନଙ୍କୁ ଦର୍ଶନ କରିବା ନିମନ୍ତେ ହୋଇଛି, ଏବଂ ଭଗବାନଙ୍କର ଦର୍ଶନ

ହୋଇପାରିବ । ରୁକ୍ମିଣୀଜୀ ଆଗକୁ କହିଛନ୍ତି, "ଆପଣଙ୍କର ଏପରି ରୂପ ତଥା ଗୁଣର ବର୍ଣ୍ଣନା ଶୁଣି ମୋର ମନ ଲଜ୍ଜା, ସଂକୋଚ ତ୍ୟାଗ କରି ପୂର୍ଣ୍ଣ ରୂପରେ ଆପଣଙ୍କଠାରେ ହିଁ ସମାବିଷ୍ଟ ହୋଇଯାଇଛି, ଆପଣଙ୍କ ଭିତରେ ହିଁ ରମଣ କରୁଛି।" ପୁଣି କହୁଛନ୍ତି, "କେବଳ ମୁଁ ନୁହେଁ, ଏପରି କେଉଁ ଧୀର କୁଳବତୀ କନ୍ୟା ହୋଇଥିବ ଯେ କି ଉଚିତ ସମୟ ଆସିଲେ କୁଳ, ଶୀଳ, ରୂପ, ବିଦ୍ୟା, ଆୟୁ, ଧନ, ଘର ଆଦିରେ ନିଜ ଭଳି ତଥା ସାରା ବିଶ୍ୱକୁ ରମଣ କରାଉଥିବା ଆପଣଙ୍କର ବରଣ ନ କରିବ ? ସେଥିପାଇଁ ଆପଣଙ୍କୁ ହିଁ ତ ମୁଁ ବରଣ କରିଅଛି, ତେବେ ଏଥିରେ କୌଣସି ଅନୁଚିତ ଅଥବା ଅଯୋଗ୍ୟତାର ତ କିଛି ବିଷୟ ନାହିଁ । ମୁଁ ସ୍ୱୟଂକୁ ଆପଣଙ୍କ (ପ୍ରତି) ଉଦ୍ଦେଶ୍ୟରେ ସମର୍ପିତ କରିଦେଇଛି। ତେଣୁ ଆପଣ ଏହି ସ୍ଥାନକୁ ଆସି ମୋତେ ଆପଣଙ୍କର ପତ୍ନୀ ରୂପରେ ସ୍ୱୀକାର କରିନିଅନ୍ତୁ। ମୁଁ ଆପଣଙ୍କର ଅଟେ, ଯେପରି କେଉଁ ଶିଶୁପାଳ ଆସି ମୋତେ ନେଇ ନ ଯାଉ । ଏପରି କିଛି ନ ଘଟୁ - ସିଂହ ପାଇଁ ଥିବା ଭାଗକୁ ଶିଆଳ ନେଇ ନ ଯାଉ।"

**ନିର୍ମଥ୍ୟ ଚୈଦ୍ୟମଗଧେନ୍ଦ୍ରବଲଂ ପ୍ରସହ୍ୟ**
**ମାଂ ରାକ୍ଷସେନ ବିଧିନୋଦ୍ୱହ ବୀର୍ଯ୍ୟଶୁଲ୍କମ୍ । (୧୦.୫୨.୪୧)**

"ଆପଣ ଏଠାକୁ ଆସି ଶିଶୁପାଳ ତଥା ଜରାସନ୍ଧର ସୈନ୍ୟମାନଙ୍କୁ ନାଶ କରିଦିଅନ୍ତୁ ଏବଂ ମୋତେ ଅପହରଣ କରି (ରାକ୍ଷସ ବିଧିରେ) ଏଠାରୁ ନେଇଯାଆନ୍ତୁ । ଅନ୍ୟଥା ଏହି ଲୋକମାନେ ମୋତେ ଯିବାକୁ ଦେବେ ନାହିଁ । ଏବେ ଯଦି ଆପଣଙ୍କ ମନରେ ଏପରି ବିଚାର ଆସେ ଯେ- ତୁମେ ତ ଅନ୍ତଃପୁରରେ ରହୁଛ, ସେଠାରେ ପ୍ରହରୀମାନେ ଅଛନ୍ତି, ତେବେ ତୁମର ସମ୍ବନ୍ଧିମାନଙ୍କୁ ନ ମାରି ମୁଁ ତୁମକୁ ସେଠାରୁ କିପରି ଆଣିପାରିବି ? ତେବେ ତାର ଉପାୟ ମଧ୍ୟ ମୁଁ ବତାଇ ଦେଉଛି । ଆମ କୁଳରେ ଏପରି ପରମ୍ପରା ଅଛି ଯେ ବିବାହର ଗୋଟିଏ ଦିନ ପୂର୍ବରୁ କନ୍ୟା ଦେବୀଙ୍କ ଦର୍ଶନ କରିବା ନିମନ୍ତେ ମନ୍ଦିରକୁ ଯାଆନ୍ତି । ଆପଣ ସେହିଠାରୁ ମୋତେ ନେଇଯାଆନ୍ତୁ।"

**ଯସ୍ୟାଙ୍ଘ୍ରିପଙ୍କଜରଜଃସ୍ନପନଂ ମହାନ୍ତୋ**

**ବାଞ୍ଛନ୍ତ୍ୟୁମାପତିରିବାତ୍ମତମୋଽପହତ୍ୟୈ ।**

**ୟର୍ହ୍ୟମ୍ବୁଜାକ୍ଷ ନ ଲଭେୟ ଭବତ୍ପ୍ରସାଦଂ**

**ଜହ୍ୟାମସୂନ୍ ବ୍ରତକୃଶାଞ୍ଛତଜନ୍ମଭିଃ ସ୍ୟାତ୍ ॥ (୧୦.୫୨.୪୩)**

ପୁଣି କହୁଛନ୍ତି, "ନିଜ ହୃଦୟର ଅଜ୍ଞାନ ଅନ୍ଧକାର ଦୂର କରିବା ନିମନ୍ତେ ବଡ଼-ବଡ଼ ମହାପୁରୁଷମାନେ, ସନ୍ଥ ତଥା ସ୍ୱୟଂ ଶଙ୍କର ମଧ୍ୟ ଆପଣଙ୍କର ଚରଣ-ରଜକୁ ଚାହିଁ ବସିଥାଆନ୍ତି । ସେଥିରେ ସ୍ନାନ କରିବାର ଇଚ୍ଛା ରଖିଥା'ନ୍ତି । ଆପଣଙ୍କର ସେହି ପ୍ରସାଦ (ଚରଣ-ରଜ) ଯଦି ମୋତେ ପ୍ରାପ୍ତ ନ ହେଲା ତେବେ "ଜହ୍ୟାମସୂନ୍' ମୁଁ ବ୍ରତ କରି ପ୍ରାଣକୁ ତ୍ୟାଗ କରିଦେବି । ଶତଜନ୍ମ ପର୍ଯ୍ୟନ୍ତ ବ୍ରତ, ତପ ଆଦି କରିବାକୁ ପଡୁନା କାହିଁକି ତଥାପି ମଧ୍ୟ ମୁଁ କରୁଥିବି କିନ୍ତୁ ଆପଣଙ୍କୁ ହିଁ ପାଇବି ।"

ଦେଖନ୍ତୁ, ଏଠାରେ ରୁକ୍ମିଣୀଜୀଙ୍କର ସନ୍ଦେଶକୁ ନିମିତ୍ତ କରି ଜଣେ ସାଧକ ବା ସାଧିକାର ହୃଦୟର କଥା ଏଠାରେ କୁହାଯାଇଛି । ଭଗବାନ ଯେପରି ରୂପବାନ ଏବଂ ଗୁଣବାନ, ଏହି ସଂସାରରେ ତାଙ୍କ ଭଳି ଆଉ କିଏ ଅଛି ? ତେବେ ଏହି ସଂସାରରେ ଅଥବା ନିଜର ଜୀବନରେ, କିଛି ଚାହୁଁଥିବା ବ୍ୟକ୍ତି ନିମନ୍ତେ, ଭଗବାନଙ୍କ ବ୍ୟତୀତ ଅନ୍ୟ କିଛି ଅଛି କି ?

ଭଗବାନଙ୍କଠାରୁ ଅଧିକ ଚାହିଁବାର ଯୋଗ୍ୟ ଅନ୍ୟ କିଛି ହୋଇପାରେ କି ? କିଏ ହୋଇପାରେ ? ଭଗବାନ ହିଁ ପ୍ରାପ୍ତି ପାଇଁ ଯୋଗ୍ୟ ଅଟନ୍ତି ।

ଅନ୍ୟ କାହାକୁ ଚାହିଁଲେ ପ୍ରକୃତରେ କିଛି ଲାଭ ନାହିଁ । ଅନୁଭବ ଦ୍ୱାରା ହିଁ ଏହି କଥା ଲୋକମାନଙ୍କର ସ୍ପଷ୍ଟ ଜ୍ଞାନ ହୋଇଯାଇଥାଏ ଯେ ଭଗବାନଙ୍କ ଅତିରିକ୍ତ ଅନ୍ୟ କିଛି ଚାହୁଁଥିବା ବ୍ୟକ୍ତି କେବଳ ଦୁଃଖ ହିଁ ପାଇଥାଏ । ତେଣୁ ତାକୁ ଅଜ୍ଞାନ ହିଁ କୁହାଯାଇପାରିବ ।

ଏଠାରେ ଆଉ ଗୋଟିଏ କଥା ମଧ୍ୟ ବୁଝିବାକୁ ଅଛି ଯେ, କେବେ କେବେ ଭଗବାନଙ୍କୁ ଚାହୁଁଥିଲେ ମଧ୍ୟ ଆମେ ଏପରି ସ୍ଥିତିରେ ଥାଉ ଯେ, ନିଜେ ସେଠାରୁ ବାହାରି ପାରି ନ ଥାଉ । କିନ୍ତୁ ଭଗବାନ ଆମକୁ ସେହି ପରିସ୍ଥିତିରୁ ବାହାର କରିପାରନ୍ତି । ସେଥିପାଇଁ ତ ରୁକ୍ମିଣୀଜୀ କହିଥିଲେ, "ଆପଣ ମୋତେ ଏଠାରୁ ନେଇଯାଆନ୍ତୁ । ମୁଁ ଏଠାରୁ ବାହାରି ପାରୁ ନାହିଁ ।" ତେବେ ଜଣେ ସାଧକ ହିଁ ତ ଭଗବାନଙ୍କୁ ଏହା

କହିପାରିବ ଯେ - ହେ ଭଗବାନ, ଆପଣ ମୋତେ ଏଠାରୁ ନେଇଯାଆନ୍ତୁ, ଉପରକୁ ଉଠାନ୍ତୁ । କେବଳ ଏତିକି ନୁହେଁ, ସେହି ସାଧକର ଭାବ କିଭଳି ହେବା ଉଚିତ୍ ? ମୋତେ ଭଗବାନଙ୍କ ବ୍ୟତୀତ ଆଉ କିଛି ଆବଶ୍ୟକ ନାହିଁ, ଏଭଳି ଭାବ ହେବା ଉଚିତ। ନଚିକେତା ଯେତେବେଳେ ଯମରାଜାଙ୍କ ନିକଟରେ ପହଞ୍ଚିଲେ - ସେତେବେଳେ ଯମରାଜା ତାଙ୍କୁ ଅନ୍ୟ ବହୁତ ବସ୍ତୁ ପ୍ରଦାନ କରି କହିଲେ, "ତୁମେ ଏ ସବୁ ନେଇଯାଅ, କିନ୍ତୁ ଆତ୍ମଜ୍ଞାନ କଥାକୁ ଛାଡ଼ିଦିଅ।" ନଚିକେତା କହିଲେ "ନିଜର ବସ୍ତୁକୁ ଆପଣ ନିଜ ପାଖରେ ରଖି ନିଅନ୍ତୁ। **"ବରସ୍ତୁ ମେ ବରଣୀୟଃ ସ ଏବ"** (କ ଉପ-୧.୧.୨୭) ମୋତେ ତ କେବଳ ଆତ୍ମଜ୍ଞାନ ହିଁ ଆବଶ୍ୟକ ।"

ଦେଖନ୍ତୁ, ଆମ୍ଭମାନଙ୍କୁ ଆତ୍ମ-ଜ୍ଞାନର ପ୍ରାପ୍ତି କାହିଁକି ହେଉନାହିଁ । କାରଣ ଆମେ ଆତ୍ମାର ଶ୍ରବଣ ତ କରୁଛୁ କିନ୍ତୁ ବରଣ କରୁନାହୁଁ । ବହୁତ ଶୁଣୁଛୁ, କିନ୍ତୁ ମୋତେ ପରମାତ୍ମା ହିଁ ଆବଶ୍ୟକ - ଏହାକୁ ଆମେ ଉପଲବ୍ଧ କରୁନାହିଁ, ଆମେ ପରମାତ୍ମାଙ୍କର ବରଣ କରିନାହୁଁ । କିନ୍ତୁ ରୁକ୍ମିଣୀ ଜୀ କିଭଳି ଥିଲେ ? ସେ ତ କହିଲେ, "ଶତଜନ୍ମ ପର୍ଯ୍ୟନ୍ତ ମୋତେ ତପସ୍ୟା କରିବାକୁ ହେଲେ ମଧ୍ୟ ମୁଁ କରିବି, କିନ୍ତୁ ଆପଣଙ୍କ ବ୍ୟତୀତ ମୁଁ ଅନ୍ୟ କାହାକୁ ବରଣ କରିବି ନାହିଁ । ମୋତେ ଅନ୍ୟ କେହି ଦରକାର ନାହିଁ ।"

ଏବେ ଦେଖନ୍ତୁ, ରୁକ୍ମିଣୀଜୀଙ୍କର ସନ୍ଦେଶ ବାହକ ଏହି ବ୍ରାହ୍ମଣ ଜଣକ କିଏ ଥିଲେ ? କୁହାଯାଏ ଯେ- ଇଏ ତ ପୂର୍ବଜନ୍ମରେ ବାଲ୍ମୀକି ଋଷି ଥିଲେ, ଯେ କି ସୀତା ଜୀଙ୍କର ବହୁତ ଧ୍ୟାନ ରଖୁଥିଲେ, ତାଙ୍କୁ ସମ୍ଭାଳି ଥିଲେ । ଶ୍ରୀରାମ ତଥା ସୀତା ଜୀଙ୍କର ପୁନର୍ବାର ସଂଯୋଗ କରାଇବା ନିମନ୍ତେ ତାଙ୍କର ପ୍ରବଳ ଇଚ୍ଛା ଥିଲା । କିନ୍ତୁ ଯେତେବେଳେ ସେ ସମୟ ଆସିଲା ଯେତେବେଳେ ସୀତା ମାତା ପୃଥିବୀରେ ପ୍ରବେଶ କରିଗଲେ । ବାଲ୍ମୀକୀଙ୍କର ଇଚ୍ଛା କେବଳ ଅପୂର୍ଣ୍ଣ ହୋଇ ରହିଗଲା । ସେ ଏହି ଦୁହିଁଙ୍କର ମିଳନ କରାଇ ପାରିନଥିଲେ । ଭଗବାନ କହିଲେ - କିଛି କଥା ନାହିଁ, ପରଜନ୍ମରେ ମୁଁ ଏହି ଅବସର ତୁମକୁ ପ୍ରଦାନ କରିବି । ସେତେବେଳେ ଆମ ସଂଯୋଗରେ ତୁମେ ନିମିତ୍ତ ହେବ । ସେଥିପାଇଁ କୃଷ୍ଣାବତାର ସମୟରେ ବାଲ୍ମୀକିଜୀଙ୍କୁ ବ୍ରାହ୍ମଣ ରୂପ ପ୍ରାପ୍ତ ହେଲା ।

ରୁକ୍ମିଣୀଜୀଙ୍କର ଗୁପ୍ତ ସମାଚାର ଶୁଣାଇ ବ୍ରାହ୍ମଣ ଦେବତା କହିଲେ, "ଏବେ ଆପଣ ଏହା ଉପରେ ବିଚାର କରି ଯାହା କରିବା କଥା ଶୀଘ୍ର କରନ୍ତୁ।" ଭଗବାନଙ୍କ ଶ୍ରୀକୃଷ୍ଣ ଯେତେବେଳେ ବ୍ରାହ୍ମଣଙ୍କ ଦ୍ୱାରା ରୁକ୍ମିଣୀଜୀଙ୍କର ସମାଚାର ଶୁଣିଲେ ସେତେବେଳ ତାଙ୍କର ହୃଦୟ ତରଳିଗଲା । କହୁଛନ୍ତି, "ମୁଁ ମଧ୍ୟ ତାଙ୍କର ପ୍ରଶଂସା ଶୁଣିଛି, ମୁଁ ନିଶ୍ଚୟ

ଆସିବି । ରାଜା ଭୀଷ୍ମକ ନିମନ୍ତ୍ରଣ ନ କଲେ କ'ଣ ହେଲା ? ଯାହାର ବିବାହ ହେବାକୁ ଅଛି ସେ ତ ସ୍ୱୟଂ ନିମନ୍ତ୍ରଣ କରିଛି ତେବେ ଏଥିରେ ବିଚାର କରିବାର କଣ ଅଛି ?"

ଏଭଳି ନିଶ୍ଚୟ କରି ପୁଣି ଭଗବାନ ବିଚାର କଲେ - ସ୍ୱୟଂବରରେ ପହଞ୍ଚିବା ପାଇଁ ବର୍ତ୍ତମାନ ହିଁ ଏଠାରୁ ବାହାରିବାକୁ ହେବ । ତେଣୁ ନିଜ ସାରଥୀ ଦାରୁକକୁ ଡକାଇ, ସେହି ବ୍ରାହ୍ମଣଙ୍କ ସହିତ ଏକୁଟିଆ ବିଦର୍ଭ ଦେଶର ରାଜଧାନୀ କୁଣ୍ଡିନପୁର ଆଡ଼କୁ ଚାଲିଲେ । ଯେତେବେଳେ ବଳରାମଜୀଙ୍କୁ ଏହି ପ୍ରସଙ୍ଗର ସୂଚନା ମିଳିଲା, ସେ ବିଚାର କଲେ ଯେ ଶ୍ରୀକୃଷ୍ଣ ଏକୁଟିଆ ତ ଯାଇଛନ୍ତି, କିନ୍ତୁ ସେଠାରେ ଯୁଦ୍ଧ ନିଶ୍ଚୟ ହେବ। ରୁକ୍ମିଣୀଙ୍କର ଯେଉଁ ଅନ୍ୟ ମିତ୍ର ଜରାସନ୍ଧ, ଦନ୍ତବକ୍ର, ଶାଲ୍ୱ ଆଦି ଅଛନ୍ତି, ସେମାନେ କେବଳ କ'ଣ ସବୁ ଦେଖି ରହିଯିବେ ? ସେମାନେ ସମସ୍ତେ କ'ଣ ନିରବରେ ସବୁ ସହିଯିବେ ? ଏପରି ହେବ ନାହିଁ । ଏଇଭଳି ବିଚାର କରି ବଳରାମ ଜୀ ଯଦୁବଂଶୀମାନଙ୍କୁ ସାଥିରେ ନେଇ ଶ୍ରୀକୃଷ୍ଣଙ୍କର ପଛେ ପଛେ ସେଠାରେ ପହଞ୍ଚିଗଲେ । ଦେଖନ୍ତୁ, ନିଜ ଛୋଟ ଭାଇର କେତେ ଧ୍ୟାନ ରଖୁଛନ୍ତି ! ତେବେ ଭଗବାନ ଶ୍ରୀକୃଷ୍ଣ ସ୍ୱୟଂବର ସ୍ଥଳ କୁଣ୍ଡିନପୁରରେ ପହଞ୍ଚି ଗଲେ । ରୁକ୍ମିଣୀଜୀ ପ୍ରଥମରୁ ହିଁ (ପତ୍ରଦ୍ୱାରା) ତାଙ୍କୁ କହି ଦେଇଥିଲେ ଯେ କିଭଳି ଭାବରେ ସେ ଦେବୀଙ୍କ ପୂଜା କରିବା ନିମନ୍ତେ ଯିବେ ଏବଂ ସେଠାରୁ ଫେରିବା ସମୟରେ ଶ୍ରୀକୃଷ୍ଣ ତାଙ୍କୁ ଅପହରଣ କରି ନେଇ ଆସିବେ ।

ଏ ସବୁ ଶୁଣି ଆଜିକାଲିର ଝିଅମାନେ କହିପାରନ୍ତି ଯେ - ଯଦି ଆମେ ସେହିଭଳି କିଛି କରୁ, ତେବେ ସେଥିରେ ଭୁଲ କ'ଣ ଅଛି ? ତେବେ ପୁଣି ସେଇକଥା କହିବାକୁ ହେବ ଯେ ଅନ୍ୟ କେଉଁ ବ୍ୟକ୍ତିର ତଥା ଅନ୍ୟ କାହା କଥାର ତୁଳନା କେବେ ହେଲେ କରିବା ଉଚିତ୍ ନୁହେଁ, ନା କେବେ ହେଲେ କରାଯାଇପାରେ । ଅତ୍ୟନ୍ତ ବିକଟ ପରିସ୍ଥିତିରେ ରୁକ୍ମିଣୀଜୀଙ୍କୁ ଏପରି କରିବାକୁ ପଡ଼ିଥିଲା । ସେଠାରେ କୁଣ୍ଡିନପୁରରେ ସମସ୍ତେ ତାଙ୍କର ବିରୋଧୀ ଥିଲେ । କେବଳ ଏତିକି ନୁହେଁ - ଏଠାରେ ବିଚାର କରିବା ଉଚିତ୍ ଯେ ରୁକ୍ମିଣୀଜୀଙ୍କର ଶ୍ରୀକୃଷ୍ଣଙ୍କ ସହିତ ଯେଉଁ ସମ୍ବନ୍ଧ, ତାହା ବହୁତ ଭିନ୍ନ ପ୍ରକାରର ଅଟେ । ଏହା ତ କେବଳ ଭଗବାନଙ୍କ ସହିତ ସମ୍ବନ୍ଧ ଅଟେ, ଅନ୍ୟ କୌଣସି ସାମାନ୍ୟ କାମୀ, ଭୋଗୀ, ଅଜ୍ଞାନୀ, ଅଳ୍ପଜ୍ଞ, ଅଳ୍ପ ଶକ୍ତିମାନ ଜୀବ ସହିତ ନୁହେଁ । ଏଠାରେ ତ ପରମ ପ୍ରଭୁ ପରମାତ୍ମାଙ୍କର ବରଣ କରାଯାଇଛି।

**ଯମେବୈଷ ବୃଣତେ ତେନ ଲଭ୍ୟଃ**

**ତସ୍ୟୈଷ ଆତ୍ମା ବିବୃଣୁତେ ତନୂଂ ସ୍ୱାମ୍ ॥**

**(କଠ ଉପ.-୧.୨.୨୩) (ମୁଣ୍ଡକ ଉପ - ୩.୨.୩)**

ଦେଖନ୍ତୁ, ଆତ୍ମାର ବରଣ ତ ସମସ୍ତଙ୍କୁ ହିଁ କରିବା ଉଚିତ୍ । ଏହି ଭଗବାନ ଶ୍ରୀକୃଷ୍ଣ କିଏ ? ସେ ତ ସମସ୍ତଙ୍କର, ଆତ୍ମା । ଉପନିଷଦରେ କୁହାଯାଇଛି ଯେ, ଏହି ଆତ୍ମାର ପ୍ରାପ୍ତି ତାକୁ ହୋଇଥାଏ, ଯେ କେବଳ ତାଙ୍କୁ ହିଁ ବରଣ କରିଥାଆନ୍ତି । ସ୍ୱୟଂବର କରିବାକୁ ପଡ଼ିଥାଏ, ସ୍ୱୟଂ ହିଁ ତାଙ୍କୁ ଚୟନ କରିବାକୁ ପଡ଼ିଥାଏ, ତାଙ୍କୁ ବରଣ କରିବାକୁ ପଡ଼ିଥାଏ । ଶ୍ରୀକୃଷ୍ଣ "ପରମାତ୍ମା' ଅଟନ୍ତି । ତେବେ ରୁକ୍ମିଣୀ କୌଣସି ସାମାନ୍ୟ ପୁରୁଷର ବରଣ କରି ନ ଥିଲେ । ତାହା ତ ସାକ୍ଷାତ୍ ଭଗବାନଙ୍କର ବରଣ ଥିଲା ।

ସେ ପାଖରେ ରୁକ୍ମିଣୀଙ୍କର ହୃଦୟ ବ୍ୟାକୁଳ ହେଉଥିଲା ଯେ ସ୍ୱୟଂବରର ସମୟ ନିକଟ ହୋଇ ଆସୁଥିଲା, ଏ ପର୍ଯ୍ୟନ୍ତ ବ୍ରାହ୍ମଣ ଦେବତା ଆସି ନାହାନ୍ତି । ଏତିକି ବେଳେ ବ୍ରାହ୍ମଣ ଦେବତା ସେଠାରେ ପହଞ୍ଚିଗଲେ ଏବଂ ସେ ରୁକ୍ମିଣୀଜୀଙ୍କୁ ଭଗବାନଙ୍କର ଆଗମନର ସମାଚାର ଦେଲେ । ରୁକ୍ମିଣୀ ଜୀ ବିଚାର କଲେ ଯେ ବ୍ରାହ୍ମଣ ଦେବତା ଏତେ ବଡ଼ ଗୁରୁତ୍ୱପୂର୍ଣ୍ଣ ଏବଂ ଏତେ ପ୍ରିୟ କାର୍ଯ୍ୟ କରିଛନ୍ତି ତା ବଦଳରେ ତାଙ୍କୁ ଦେବା ପାଇଁ ଯୋଗ୍ୟ କୌଣସି ବସ୍ତୁ ହିଁ ନାହିଁ । ଦେଖନ୍ତୁ, ରୁକ୍ମିଣୀ ଜୀ ସାକ୍ଷାତ୍ ଲକ୍ଷ୍ମୀଜୀ ହେଲେ ମଧ୍ୟ ତାଙ୍କୁ ଲାଗୁଛି ଯେ ମୁଁ ତାଙ୍କୁ କ'ଣ ଦେବି ? ତେବେ ଏଭଳି ବିଚାର କରି ରୁକ୍ମିଣୀଜୀ ତାଙ୍କୁ ନମସ୍କାର କରିଦେଲେ । ବ୍ରାହ୍ମଣ ଦେବତା କେବଳ ନମସ୍କାର ନେଇ ଆଶ୍ଚର୍ଯ୍ୟ ହୋଇ ରହିଗଲେ । କଥା କ'ଣ ? କିଛି ଦେଲେ ନାହିଁ ? କେବଳ ନମୋ ନମୋ କରିଦେଲେ ? ଧ୍ୟାନ ରଖିବେ, ଲକ୍ଷ୍ମୀଜୀ ନମସ୍କାର କରିଦେଲେ, ଏହା କୌଣସି ସାମାନ୍ୟ କଥା ନୁହେଁ । ଏପରି ଦେଖିଲେ ଲକ୍ଷ୍ମୀଜୀ ବ୍ରାହ୍ମଣମାନଙ୍କ ଉପରେ ପ୍ରସନ୍ନ ନ ଥାଆନ୍ତି, କିନ୍ତୁ ଏଠାରେ ସେ ବ୍ରାହ୍ମଣକୁ ନମସ୍କାର କରୁଛନ୍ତି ।

## ରୁକ୍ମିଣୀ ଜୀଙ୍କର ଅପହରଣ

ଭଗବାନ ଶ୍ରୀକୃଷ୍ଣ ଯେତେବେଳେ ବିଦର୍ଭର ରାଜଧାନୀ କୁଣ୍ଡିନପୁରରେ ପହଞ୍ଚିଗଲେ, ସେତେବେଳେ ରାଜା ଭୀଷ୍ମକ ଭଗବାନ ତଥା ବଳରାମ ଜୀଙ୍କର ଅତି ଆଦରପୂର୍ବକ ସ୍ୱାଗତ କଲେ। ଯଦ୍ୟପି, ସେ ବୁଝିପାରୁ ନ ଥିଲେ ଯେ, ଶ୍ରୀକୃଷ୍ଣ ଓ ବଳରାମଜୀଙ୍କୁ କିଏ ନିମନ୍ତ୍ରଣ ପଠାଇଛି, ତଥାପି ରାଜା ଭୀଷ୍ମକ ଶ୍ରୀକୃଷ୍ଣ ଓ ବଳରାମଜୀଙ୍କ

ଯଥୋଚିତ ସ୍ୱାଗତ କଲେ କାରଣ ସେ ଭକ୍ତ ଥିଲେ । ସେ ପାଖରେ ଶିଶୁପାଳ ଆଦି ଅତି ପ୍ରସନ୍ନ ଥିଲେ । ଶିଶୁପାଳ ବୁଝିଥିଲେ ଯେ ରୁକ୍ମିଣୀଙ୍କର ବିବାହ ମୋ ସହିତ ହିଁ ହେବ କାରଣ ରୁକ୍ମିଣୀଙ୍କ ଭାଇ ତଥା ପିତା ଭୀଷ୍ମକ ଦୁହେଁ ମୋ ସହିତ ଅଛନ୍ତି । ଏଭଳି ଦେଖିଲେ, ରୁକ୍ମିଣୀଙ୍କର ବିବାହ ଶିଶୁପାଳ ସହିତ ହେଉ, ଏଥିରେ ରାଜା ଭୀଷ୍ମକଙ୍କର କୌଣସି ବିଶେଷ ଆଗ୍ରହ ନ ଥିଲା । ତାଙ୍କର ପୁତ୍ର ରୁକ୍ମୀ, ଯେ କି ଅଧିକ ଶକ୍ତିଶାଳୀ ଥିଲା, ସେ ଶ୍ରୀକୃଷ୍ଣଙ୍କ ପ୍ରତି ବହୁତ ଦ୍ୱେଷ କରୁଥିଲା । ଏହା ଜାଣି ମଧ୍ୟ ରୁକ୍ମିଣୀ ଶ୍ରୀକୃଷ୍ଣଙ୍କୁ ହିଁ ଚାହୁଁଥିଲେ, ସେ ରୁକ୍ମିଣୀଙ୍କର ବିବାହ ଶ୍ରୀକୃଷ୍ଣଙ୍କ ସ୍ଥାନରେ ଶିଶୁପାଳ ସହିତ ହିଁ କରିବାକୁ ଚାହୁଁଥିଲା । ତେଣୁ ରୁକ୍ମିଣୀଙ୍କ ସହିତ ନିଜର ବିବାହ ସୁନିଶ୍ଚିତ ଜାଣି ଶିଶୁପାଳ ପ୍ରତୀକ୍ଷା କରି ରହିଥିଲା ।

ନିର୍ଦ୍ଧାରିତ ସମୟରେ ପୂର୍ବ ପରମ୍ପରା ଅନୁସାରେ ରୁକ୍ମିଣୀ ଜୀ ଦେବୀଙ୍କ ମନ୍ଦିରକୁ ପୂଜା କରିବା ନିମନ୍ତେ ଯାଉଛନ୍ତି । ପୂଜନ କରିବା ପରେ ଯେତେବେଳେ ସେ ସେଠାରୁ ଫେରୁଥିଲେ, ସେତେବେଳେ ସମସ୍ତେ ଦେଖୁ-ଦେଖୁ ହିଁ ଭଗବାନ ଅତି ଦ୍ରୁତ ଗତିରେ ସେଠାରେ ପହଞ୍ଚିଲେ। ରୁକ୍ମିଣୀ ଜୀ ତ ପ୍ରଥମରୁ ହିଁ ପ୍ରସ୍ତୁତ ଥିଲେ, ତେଣୁ ଭଗବାନ ତାଙ୍କୁ ଉଠାଇ ନେଇ ନିଜ ରଥରେ ବସାଇ ଦେଲେ ଏବଂ ସେଠାରୁ ବାହାରିଗଲେ । ଏ ସମସ୍ତ ଘଟଣା ଏତେ ଶୀଘ୍ର ହୋଇଗଲା ଯେ ସମସ୍ତେ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ। କିନ୍ତୁ ଯେତେବେଳେ ସେଠାରେ ଉପସ୍ଥିତ ଥିବା ରାଜାମାନେ ଘଟିଥିବା ଘଟଣାକୁ ଜାଣିଲେ, ସେତେବେଳେ ସମସ୍ତେ କ୍ରୋଧିତ ହୋଇ ଶ୍ରୀକୃଷ୍ଣଙ୍କ ପଛରେ ପଛରେ ଯିବାକୁ ଆରମ୍ଭ କଲେ। ସେତେବେଳେ ବଳରାମଜୀଙ୍କ ସହିତ ଯଦୁବଂଶୀ ସେନାମାନେ ଶତ୍ରୁପକ୍ଷ ରାଜାମାନଙ୍କ ସେନାଙ୍କ ନଷ୍ଟ କରିଦେଲେ। ଜରାସନ୍ଧ ଆଦି ରାଜା ଯୁଦ୍ଧରୁ ପଳାଇ ଆସିଲେ।

ଫେରି ଆସି ସେମାନେ ସମସ୍ତେ ଦେଖିଲେ ଯେ ଶିଶୁପାଳ ହତୋତ୍ସାହିତ ହୋଇ ଅତ୍ୟନ୍ତ ନିରାଶ ହୋଇଯାଇଛି । ତାର ପରିସ୍ଥିତି ଦେଖି ଜରାସନ୍ଧ ଆଦି ରାଜାମାନେ ତାକୁ ବୁଝାଇବାକୁ ଲାଗିଲେ – ଏବେ କଣ କରାଯାଇପାରେ ! ଯାହା ଭାଗ୍ୟ ଲେଖା ହୋଇଥାଏ, ତାହା ହିଁ ହୋଇଥାଏ । ଏହିଭଳି ତାକୁ ସାନ୍ତ୍ୱନା ଦେଇ ଶିଶୁପାଳ ସହିତ ସେମାନେ ସମସ୍ତେ ନିଜ-ନିଜ ସ୍ଥାନକୁ ଫେରିଗଲେ । କିନ୍ତୁ ରୁକ୍ମୀଙ୍କୁ ଅତି କ୍ରୋଧ ହେଲା। ସେ କହିବାକୁ ଲାଗିଲେ ଏହା କିପରି ସମ୍ଭବ ? ଏହା କହି ନିଜର ସୈନ୍ୟମାନଙ୍କୁ ନେଇ ସେ କୃଷ୍ଣଙ୍କ ପଛରେ ଚାଲିଲା । ଭଗବାନଙ୍କୁ ଅନୁସରଣ କରି ସେ ତାଙ୍କ ନିକଟରେ ହିଁ ପହଞ୍ଚିଗଲା । ଦୁଇଜଣଙ୍କ ମଧ୍ୟରେ ଯୁଦ୍ଧ ଆରମ୍ଭ ହୋଇଗଲା ଏବଂ ଭଗବାନ ଯେତେବେଳେ ଦେଖିଲେ ଯେ ରୁକ୍ମୀ ତାଙ୍କ ଉପରେ ପ୍ରହାର କରିବାକୁ

ଯାଉଛି, ସେତେବେଳେ ଭଗବାନ ତାକୁ ମାରିଦେବାକୁ ଚାହିଁଲେ । ଏହା ଦେଖି ରୁକ୍ମିଣୀଜୀ ଚିନ୍ତିତ ହୋଇପଡ଼ିଲେ । ସେ, ନିଜର ଭାଇ ରୁକ୍ମୀକୁ ଛାଡ଼ି ଦେବା ପାଇଁ ଭଗବାନଙ୍କୁ ପ୍ରାର୍ଥନା କରିବାରୁ ଭଗବାନ ତାକୁ ଛାଡ଼ିଦେଲେ । କିନ୍ତୁ ପୁନର୍ବାର ଯେତେବେଳେ ରୁକ୍ମୀ ଭଗବାନଙ୍କର ଅନିଷ୍ଟ କରିବାକୁ ଆସିଲ ଭଗବାନ ତାକୁ ବିରୂପ କରି ବାନ୍ଧିଦେଲେ । ସେତିକିବେଳେକୁ ବଳରାମଜୀ ତଥା ଅନ୍ୟ ଯଦୁବଂଶୀମାନେ ମଧ୍ୟ ସେଠାରେ ପହଞ୍ଚି ଗଲେ । ରୁକ୍ମୀଙ୍କୁ ସେହି ଅବସ୍ଥାରେ ଦେଖି ତା ଉପରେ ବଳରାମଜୀଙ୍କର ଦୟା ଆସିଲା। ତାକୁ ବନ୍ଧନରୁ ଖୋଲି ଛାଡ଼ି ଦେଲେ ଏବଂ ଶ୍ରୀକୃଷ୍ଣଙ୍କୁ କହୁଛନ୍ତି ଯେ ତୁମେ ଏହା ଠିକ୍ କଲ ନାହିଁ । କିନ୍ତୁ ସେ ରୁକ୍ମିଣୀଙ୍କୁ ବୁଝାଇ ଶାନ୍ତ କରିଦେଲେ ।

## ଶ୍ରୀକୃଷ୍ଣ-ରୁକ୍ମିଣୀ-ବିବାହ

ରୁକ୍ମିଣୀଙ୍କ ସହିତ ଶ୍ରୀକୃଷ୍ଣଙ୍କର ଏ ଯେଉଁ ବିବାହ ହେଲା, ତାକୁ ରାକ୍ଷସ ବିବାହ କୁହାଯାଏ । ବିବାହ ମଧ୍ୟ ଅନେକ ପ୍ରକାରର ହୋଇଥାଏ । ଏହିପରି ଯେତେବେଳେ କୌଣସି କନ୍ୟାକୁ ଅପହରଣ ତାକୁ ନେଇ ଯାଆନ୍ତି, ସେତେବେଳେ ସେହି ବିବାହକୁ ରାକ୍ଷସ ବିବାହ କୁହାଯାଇଥାଏ । ପୁତ୍ର-କନ୍ୟା ଜଣେ ଅନ୍ୟକୁ ପସନ୍ଦ କରିଥିବ ଏବଂ ସେମାନେ ନିଜ ନିଜର ଇଚ୍ଛାରେ ବିବାହ କଲେ ତାକୁ ଗାନ୍ଧର୍ବ ବିବାହ କୁହାଯାଏ । ଗାନ୍ଧର୍ବ ବିବାହକୁ ଆଜିକାଲି ଭାଷାରେ ପ୍ରେମ ବିବାହ କୁହାଯାଏ । ବୈଦିକ ବିବାହ, ଗାନ୍ଧର୍ବ ବିବାହ, ରାକ୍ଷସ ବିବାହ, ପିଶାଚ ବିବାହ - ଏହିଭଳି କେତେ ପ୍ରକାର ବିବାହ ହୋଇଥାଏ ।

ପ୍ରଥମେ ଭଗବାନ ରୁକ୍ମିଣୀଙ୍କୁ ଅପହରଣ କରି (ରାକ୍ଷସ ବିବାହ କରି) ସେଠାରୁ ନେଇ ଆସିଲେ । କିନ୍ତୁ ଦ୍ୱାରକାରେ ପହଞ୍ଚି ଭଗବାନ ରୁକ୍ମିଣୀ ଜୀଙ୍କ ସହିତ ବୈଦିକ ରୀତିରେ ବିବାହ କଲେ । ଏହିଭଳି ଭାବରେ ରୁକ୍ମିଣୀ ତଥା ଶ୍ରୀକୃଷ୍ଣଙ୍କର ବିବାହ ସମ୍ପନ୍ନ ହେଲା ।

## ପ୍ରଦ୍ୟୁମ୍ନ ଦ୍ୱାରା ଶମ୍ବାରାସୁରର ବଧ

ଏହାପରେ, ତାଙ୍କର ପୁତ୍ର ହେଲା । ତାଙ୍କ ନାମ ପ୍ରଦ୍ୟୁମ୍ନ । ପୂର୍ବଜନ୍ମରେ ପ୍ରଦ୍ୟୁମ୍ନ କାମଦେବ ଥିଲେ । ଭଗବାନ୍ ଶଙ୍କର ତାଙ୍କୁ ଜଳାଇ ଦେଇଥିଲେ ଭସ୍ମ କରିଦେଇଥିଲେ। ସେତେବେଳେ ସେ ଅନଙ୍ଗ ହୋଇଯାଇଥିଲେ । କାମଦେବଙ୍କ ପତ୍ନୀ ରତିଙ୍କର ପ୍ରାର୍ଥନା ଦ୍ୱାରା ଶଙ୍କର ଭଗବାନ କହି ଦେଇଥିଲେ ଯେ, ବାସୁଦେବଙ୍କ ଘରେ ରୁକ୍ମିଣୀଙ୍କ ନନ୍ଦନ ରୂପରେ କାମଦେବ ପ୍ରକଟ ହେବେ । ତେବେ ବର୍ତ୍ତମାନ ସେହି କାମଦେବ ହିଁ ଭଗବାନଙ୍କ ପୁତ୍ର ହୋଇ ଜନ୍ମ ନେଲେ, ଯାହାଙ୍କର ନାମ ପ୍ରଦ୍ୟୁମ୍ନ ଥିଲା । ଭାଗବତରେ ତାଙ୍କ କଥା

ବିସ୍ତୃତ ରୂପେ ବର୍ଣ୍ଣନ ହୋଇଛି । ଦଶଦିନର ପ୍ରଦ୍ୟୁମ୍ନକୁ ଶମ୍ବରାସୁର ନେଇ ସମୁଦ୍ରରେ ଫିଙ୍ଗି ଦେଇଥିଲା । କାରଣ ସେ ଜାଣିଥିଲା ଯେ, ପ୍ରଦ୍ୟୁମ୍ନ ବଡ଼ ହେଲା ପରେ ତାର ଶତ୍ରୁ ହେବ। ସମୁଦ୍ରରେ ଏକ ବଡ଼ ମାଛ ସେହି ଶିଶୁକୁ ଗିଳି ଦେଲା । ମାଛ ଧରିବା ଲୋକ ସେହି ମାଛକୁ ଧରି ଶମ୍ବରାସୁରକୁ ଭେଟି ଦେଲା । ପାକଶାଳାରେ ସେହି ମାଛକୁ କଟା ହେବାବେଳେ, ତା ଭିତରୁ ଏକ ସୁନ୍ଦର ଶିଶୁ ବାହାରିଲା । ନାରଦ ଜୀଙ୍କ ଦ୍ୱାରା ଏହି ଘଟଣା ଘଟିବାର ପୂର୍ବଜ୍ଞାନ ରତିଙ୍କର ଥିଲା । ସେହି କାରଣରୁ ସେ ମାୟାବତୀ ହୋଇ ଶମ୍ବରାସୁର ଘରେ କାର୍ଯ୍ୟ କରୁଥିଲେ । ସେ ସେହି ଶିଶୁ ପ୍ରଦ୍ୟୁମ୍ନକୁ ନେଇ ତାର ପାଳନ-ପୋଷଣ କରିବାକୁ ଲାଗିଲେ । ପ୍ରଦ୍ୟୁମ୍ନ ଅତିଶୀଘ୍ର ଯୁବକ ହୋଇଯିବାରୁ ରତି ନିଜର ବାସ୍ତବିକ ରୂପ ପ୍ରକଟ କରି ସମସ୍ତ କଥା ଶୁଣାଇଲେ ଏବଂ ଏହା ମଧ୍ୟ ଶୁଣାଇଲେ ଯେ - ଦ୍ୱାରକାରେ ଆପଣଙ୍କ ମାତା ଆପଣଙ୍କ ପାଇଁ ବ୍ୟାକୁଳ ହେଉଛନ୍ତି । ତେବେ ରତିଙ୍କ ଦ୍ୱାରା ଶିଖିଥିବା ମହାମାୟା ନାମକ ବିଦ୍ୟା ଅର୍ଜିତ କରି ପ୍ରଦ୍ୟୁମ୍ନ ଶମ୍ବରାସୁରକୁ ମାରିଦେଲେ । ତା ପରେ ରତିଙ୍କୁ ସାଥିରେ ନେଇ ଆକାଶ ମାର୍ଗରେ ସେ ଦ୍ୱାରକାରେ ପହଞ୍ଚିଗଲେ । ସେତେବେଳେ ସେଠାରେ ନାରଦ ଜୀ ପହଞ୍ଚି ସମସ୍ତ ବୃତ୍ତାନ୍ତକୁ କହି ଶୁଣାଇଲେ । ସମସ୍ତ ଲୋକ ପ୍ରଦ୍ୟୁମ୍ନ ତଥା ରତିଙ୍କୁ ସାକ୍ଷାତ କରି ଅତି ଆନନ୍ଦିତ ହେଲେ ।

## ସ୍ୟମନ୍ତକ ମଣିର କଥା

ଏହାପରେ ସ୍ୟମନ୍ତକ ମଣିର ପ୍ରସଙ୍ଗ ଆସେ । ଏହି ସ୍ୟମନ୍ତକ ମଣି ସତ୍ରାଜିତ ନାମରେ ଜଣେ ବ୍ୟକ୍ତି ନିକଟରେ ଥିଲା । ସେହି ମଣିର ବିଶେଷତା ଥିଲା ଯେ – ତାହା ପ୍ରତ୍ୟେକ ଦିନ ଆଠ ଭାର ସବୁର୍ଣ୍ଣ ପ୍ରଦାନ କରୁଥିଲା । ସେହି କାରଣରୁ ତା ଉପରେ ଅନେକଙ୍କର ଦୃଷ୍ଟି ଥିଲା । ଭଗବାନ ସତ୍ରାଜିତଙ୍କୁ କହିଥିଲେ ଯେ ଏହି ବିଶେଷ ପ୍ରକାରର ମଣି କୌଣସି ବ୍ୟକ୍ତି ବିଶେଷ ନିକଟରେ ରହିବା ଉଚିତ୍ ନୁହେଁ । ଏହା ତୁମେ ରାଜା ଉଗ୍ରସେନଙ୍କୁ ଦେଇ ଦିଅ । ଭଗବାନ ଚାହୁଁଥିଲେ, ଯେ ତଦ୍ଦ୍ୱାରା ଲୋକମାନଙ୍କର କଲ୍ୟାଣ ହେଉ । ଏଭଳି ସମ୍ପତ୍ତି କୌଣସି ଏକ ବ୍ୟକ୍ତି ନିକଟରେ ରହିଗଲେ, ସେ କେବଳ ନିଜର ସମ୍ପତ୍ତି ବଢ଼ାଇବାକୁ ଲାଗିବ । ତଦ୍ଦ୍ୱାରା ଲୋକମାନଙ୍କର କୌଣସି ଉପକାର ହେବ ନାହିଁ। ଏହା ବିଚାର କରି ଭଗବାନ ସତ୍ରାଜିତଙ୍କୁ କହିଥିଲେ – ଏହାକୁ ଲୋକକଲ୍ୟାଣ ନିମନ୍ତେ ଛାଡ଼ି ଦିଅ । କିନ୍ତୁ ସେ ସେତେବେଳେ ଭଗବାନଙ୍କର କଥା ମାନି ନ ଥିଲେ ।

ତା'ପରେ ଦିନେ ଏପରି ଏକ ଘଟଣା ହେଲା ଯେ, ସତ୍ରାଜିତରେ ଭାଇ ପ୍ରସେନ, ସେହି ମଣିକୁ ପିନ୍ଧି ଜଙ୍ଗଲକୁ ଚାଲିଗଲା । ସେଠାରେ ଏକ ସିଂହ ତାକୁ ମାରି ସେହି ମଣିକୁ

ନେଇଗଲା । ପୁଣି ଜାମ୍ବବାନ୍ ସେହି ସିଂହଠାରୁ ମଣି ନେଇଗଲେ । ସେପଟେ ସତ୍ରାଜିତ ଭାବିଲେ ଯେ - ଶ୍ରୀକୃଷ୍ଣ ହିଁ ପ୍ରସେନକୁ ମାରିଦେଇ ସେହି ମଣିକୁ ଚୋରାଇ ନେଇଛନ୍ତି । ବଳରାମ ଜୀଙ୍କୁ ମଧ୍ୟ ଶଙ୍କା ହେଲା ଯେ ପ୍ରସେନକୁ ମାରି ଶ୍ରୀକୃଷ୍ଣ ସେହି ମଣିକୁ ରଖିଥାଇ ପାରନ୍ତି । ଭଗବାନଙ୍କ ଉପରେ ମଧ୍ୟ ଚୋରୀର କଳଙ୍କ ଲାଗିଲା । କିନ୍ତୁ ଭଗବାନ ସେହି କଳଙ୍କ ତଥା ସମସ୍ତଙ୍କର ଶଙ୍କାକୁ ନିବାରଣ କରି ଦେଲେ । ତାହାକୁ ମିଥ୍ୟା ବୋଲି ସିଦ୍ଧ କରିଦେଲେ ।

## ଶ୍ରୀକୃଷ୍ଣ-ଜାମ୍ବବତୀ-ବିବାହ

ମଣିର ଖବର ନେବା ନିମନ୍ତେ ସେ (ଭଗବାନ) ପ୍ରସେନକୁ ଖୋଜିବା ନିମନ୍ତେ ବାହାରିଲେ । ପ୍ରସେନକୁ ଖୋଜି ଖୋଜି ଭଗବାନ ଏକ ଗୁମ୍ଫାରେ ଯାଇ ପ୍ରବେଶ କଲେ, ଯେଉଁଠାରେ ଜାମ୍ବବାନ ଜୀ ସେହି ମଣିକୁ ନେଇ ବସିଥିଲେ । ଜାମ୍ବବାନ ଜୀ, ଯେ କି ଦେବତାମାନଙ୍କର ଅଂଶ ଅଟନ୍ତି, ସେ ବାମନ ଅବତାର ସମୟରୁ ସେହିଠାରେ ଥିଲେ । ରାମାବତାର ସମୟରେ ସେ ରାମଚନ୍ଦ୍ର ଜୀଙ୍କର ସେବା କରିଥିଲେ । ଏବେ କୃଷ୍ଣାବତାର ସମୟରେ ମଧ୍ୟ ସେ ସେଠାରେ ଏକ ଗୁମ୍ଫାରେ ରହୁଥିଲେ । ଶ୍ରୀକୃଷ୍ଣଙ୍କ ସହିତ ଜାମ୍ବବାନଙ୍କର ଅଠାଇଶ ଦିନ ପର୍ଯ୍ୟନ୍ତ ଯୁଦ୍ଧ ହେଲା, ଯଦ୍ଦ୍ୱାରା ଜାମ୍ବବାନ ପଛରେ ତାଙ୍କୁ ଚିହ୍ନିଗଲେ । ସେହି ମଣି ସହିତ ସେ ନିଜର କନ୍ୟା ଜାମ୍ବବତୀଙ୍କୁ ମଧ୍ୟ ଭଗବାନଙ୍କୁ ଅର୍ପଣ କଲେ । ଏହିପରି ଭଗବାନଙ୍କର ଦ୍ୱିତୀୟ ବିବାହ ଜାମ୍ବବତୀଙ୍କ ସହିତ ହେଲା ।

## ଶ୍ରୀକୃଷ୍ଣ-ସତ୍ୟଭାମା-ବିବାହ

ସେଠାରୁ ଫେରିବା ପରେ ଭଗବାନ ସତ୍ରାଜିତକୁ କହୁଛନ୍ତି ଦେଖ, ମୁଁ ଏହି ମଣିକୁ ଚୋରାଇ ନେଇ ଯାଇନଥିଲି । ପୁଣି ସମ୍ପୂର୍ଣ୍ଣ ଘଟଣା ଶୁଣାଇ ସତ୍ରାଜିତକୁ ସେହି ମଣି ପ୍ରଦାନ କଲେ । ସତ୍ରାଜିତ ଅତି ଲଜ୍ଜିତ ହେଲା । ପୁଣି ଅନ୍ତତଃ ସେ ମଧ୍ୟ ନିଜର କନ୍ୟା ସତ୍ୟଭାମା ସହିତ ସେହି ମଣିକୁ ଭଗବାନଙ୍କୁ ସମର୍ପଣ କରିଦେଲେ । କିନ୍ତୁ ଭଗବାନ କହିଲେ, "ସୂର୍ଯ୍ୟ ଭଗବାନଙ୍କଠାରୁ ପ୍ରାପ୍ତ ଏହି ମଣିକୁ ତୁମେ ନିଜ ପାଖରେ ହିଁ ରଖ, ଆମକୁ କେବଳ ତାର ଫଳ (ଆଠ ଭାର ସୁନା)କୁ ପ୍ରଦାନ କରିଦିଅ ।" ସେତେବେଳେ ସତ୍ରାଜିତଙ୍କର କନ୍ୟା ସତ୍ୟଭାମାଙ୍କ ସହିତ ଭଗବାନଙ୍କର ତୃତୀୟ ବିବାହ ସମ୍ପନ୍ନ ହେଲା। ତାର ଅଭିପ୍ରାୟ ହେଉଛି, ମନୁଷ୍ୟକୁ କର୍ମରୂପୀ ସାଧନ କରିବା ଉଚିତ, କିନ୍ତୁ ତାର ଫଳ ଭଗବାନଙ୍କୁ ଅର୍ପଣ କରିବା ଉଚିତ୍ ।

ଏହାପରେ ଶ୍ରୀକୃଷ୍ଣ ଓ ବଳରାମଜୀଙ୍କୁ, ହସ୍ତିନାପୁର ଯିବାକୁ ପଡ଼ିଲା । ପରମୁହୂର୍ତ୍ତରେ ଅକ୍ରୂର ତଥା କୃତବର୍ମାର ବୁଦ୍ଧିରେ ଆସି ଶତଧନ୍ୱା ସତ୍ରାଜିତଙ୍କୁ ମାରି ସେହି ମଣିକୁ ହରଣ କରିନେଲେ। ସତ୍ୟଭାମା ଜୀ ନିଜ ପିତାଙ୍କର ହତ୍ୟା ଖବର ଜାଣିଲା ପରେ, ସେ ହସ୍ତିନାପୁରରେ ପହଞ୍ଚି ଶ୍ରୀକୃଷ୍ଣ ଓ ବଳରାମଜୀଙ୍କୁ ନିଜ ପିତାଙ୍କର ହତ୍ୟା ବିଷୟରେ ସମସ୍ତ ବୃତ୍ତାନ୍ତ ଜଣାଇଲେ । ତାପରେ ସମସ୍ତେ ଦ୍ୱାରକା ଫେରି ଆସିଲେ । ସେମାନଙ୍କ ଭୟରେ ଶତଧନ୍ୱା ଅକ୍ରୂର ଜୀ ତଥା କୃତବର୍ମାଙ୍କୁ ସହାୟତା ମାଗିଲେ, କିନ୍ତୁ ସେ ଦୁହେଁ କୌଣସି ସହାୟତା ଦେବାକୁ ମନା କରିଦେଲେ । ସେତେବେଳେ ଶତଧନ୍ୱା ସେହି ମଣିକୁ ଅକ୍ରୂରଜୀଙ୍କ ନିକଟରେ ଫିଙ୍ଗି ଦେଇ ଘୋଡ଼ାରେ ଚଢ଼ି ପଳାଇଗଲେ । ଶ୍ରୀକୃଷ୍ଣ ଏବଂ ବଳରାମ ତା ପଛରେ ଗଲେ ଏବଂ ଭଗବାନ ନିଜର ଚକ୍ରରେ ତାର ଶିର ଛେଦନ କଲେ, କିନ୍ତୁ ସେହି ମଣି ତା ପାଖରୁ ମିଳିଲା ନାହିଁ ।

## ଶ୍ରୀକୃଷ୍ଣଙ୍କର ଅନ୍ୟାନ୍ୟ ବିବାହ

ତାପରେ ବଳରାମଜୀ ତ ବିଦେହ ରାଜା ଜନକଙ୍କ ପାଖକୁ ଚାଲିଗଲେ ଏବଂ ଶ୍ରୀକୃଷ୍ଣ ଦ୍ୱାରକାକୁ ଫେରି ଆସିଲେ । ସେଠାରେ ସବୁ କଥା ସମସ୍ତଙ୍କୁ କହିଲେ । ପୁଣି ଦିନେ ସଭା ମଧ୍ୟରେ ଭଗବାନ ଅକ୍ରୂରଜୀଙ୍କୁ ଡାକି କହିଲେ ଯେ ମୁଁ ଜାଣିଛି ଯେ ସେହି ମଣି ତୁମ ପାଖରେ ଅଛି । ଥରେ ସମସ୍ତଙ୍କ ସମ୍ମୁଖରେ ସିଦ୍ଧ କରି ଦେଖାଇ ଦିଅ ଯେ ସେହି ମଣି ତୁମ ପାଖରେ ନାହିଁ। କାରଣ ଏହି ବିଷୟରେ ବଳରାମ ଜୀଙ୍କର ମଧ୍ୟ ମୋ ଉପରେ ପୂର୍ଣ୍ଣ ବିଶ୍ୱାସ ନାହିଁ । ସେତେବେଳେ ଅକ୍ରୂର ଜୀ ସେହି ମଣିକୁ ସମସ୍ତଙ୍କୁ ଦେଖାଇ ଦେଲେ। ଏହିଭଳି ଭଗବାନ ନିଜ ଉପରେ ଲାଗିଥିବା କଳଙ୍କକୁ ଦୂର କଲେ । ପୁଣି ସେହି ମଣିକୁ ଅକ୍ରୂରଜୀଙ୍କୁ ଫେରାଇ ଦେଲେ ।

ଏବେ ଏହାପରେ ପୁଣି ଭଗବାନଙ୍କର ଅନେକ ବିବାହର ବର୍ଣ୍ଣନ ଆସେ । ସେମାନଙ୍କ ମଧ୍ୟରୁ କାଳିନ୍ଦୀ, ମିତ୍ରାବିନ୍ଦା, ସତ୍ୟା ତଥା ଲକ୍ଷଣା, ଏମାନଙ୍କ ସହିତ ଭଗବାନଙ୍କର ଯେଉଁ ପାଣିଗ୍ରହଣ ହେଲା, ତାହା ବିଶେଷ ଅଟେ । ଏହି ପାଞ୍ଚ ଏବଂ ଏହା ପୂର୍ବରୁ କୁହାଯାଇଥିବା ତିନି - ଭଗବାନଙ୍କର ଏହି ଆଠରାଣୀ, ତାଙ୍କର ଅଷ୍ଟଧା ପ୍ରକୃତିର ସୂଚକ ଅଟନ୍ତି ।

କାହାକୁ ଲାଗିପାରେ ଯେ ଏତେ ବିବାହ ! ବାସ୍ତବରେ ଦେଖିବାକୁ ଗଲେ ଭାଗବତରେ ଯେତେ ବିବାହ ବର୍ଣ୍ଣନ ହୋଇଛି, ଏହା ତ ବହୁତ ଅଳ୍ପ । ସତକଥା କହିବାକୁ ଗଲେ, ସଂସାରରେ ଯେତେ ବିବାହ ହେଉଛି, ଏ ସମସ୍ତ ଭଗବାନଙ୍କର ହିଁ

ବିବାହ ହେଉଛି । ହିନ୍ଦୁ ଧର୍ମରେ ତ ଏହା ସ୍ୱୀକାର କରାଯାଇଥାଏ ଯେ, ଯେଉଁ ବିବାହ ହେଉ ନା କାହିଁକି, ସେଥିରେ ବର କୌଣସି ଅନ୍ୟ ପୁରୁଷ ନୁହେଁ ତାଙ୍କୁ ତ ନାରାୟଣ ରୂପେ ମାନ୍ୟତା ପ୍ରଦାନ କରାଯାଏ ଏବଂ ସେହି କନ୍ୟାକୁ ମଧ୍ୟ ଲକ୍ଷ୍ମୀ ସମାନ ମାନ୍ୟତା ଦିଆଯାଏ। ପ୍ରତ୍ୟେକ ବିବାହରେ ଏହା କୁହାଯାଇଥାଏ ଯେ - ଏହି ଲକ୍ଷ୍ମୀଙ୍କୁ ଭଗବାନ ନାରାୟଣଙ୍କୁ ଦିଆଯାଉଛି । ଦେଖନ୍ତୁ, ବାସ୍ତବରେ ସମସ୍ତ ଦେହରେ ସ୍ଥିତ ଚେତନ ତ ସେହି ସଚ୍ଚିଦାନନ୍ଦ ଭଗବାନ ହିଁ ଅଟନ୍ତି । ଏହି ଦୃଷ୍ଟିରେ ଦେଖିଲେ ତ ସମସ୍ତ ବିବାହ ତାଙ୍କର ସହିତ ହିଁ ହେଉଛି । ଯେ ପର୍ଯ୍ୟନ୍ତ, ଆତ୍ମଜ୍ଞାନ ଦୃଷ୍ଟି ପ୍ରାପ୍ତ ନ ହୋଇଛି, ସେ ପର୍ଯ୍ୟନ୍ତ ଅଥବା ଶ୍ରୀକୃଷ୍ଣଙ୍କୁ ଈଶ୍ୱର ଦୃଷ୍ଟିରେ ଦେଖି ପାରିନାହାନ୍ତି ସେ ପର୍ଯ୍ୟନ୍ତ ଏହି ତଥ୍ୟ ପ୍ରତି ମନରେ ଅନେକ ଶଙ୍କା ଲାଗି ରହିଥିବ ।

ଅନ୍ୟ ପୁରାଣମାନଙ୍କରେ ଭଗବାନ ଶ୍ରୀକୃଷ୍ଣଙ୍କର ଯେତେ ବିବାହ ହୋଇଛି, ସେମାନଙ୍କର ପୂର୍ବ-ପୂର୍ବ ଜନ୍ମ କଥାମାନ ମଧ୍ୟ କୁହାଯାଇଛି । ଭଗବାନ ସେ ସମସ୍ତଙ୍କୁ କହିଥିଲେ ଯେ ପରବର୍ତ୍ତୀ ଜନ୍ମରେ ମୁଁ ତୁମ୍ଭମାନଙ୍କର ଇଚ୍ଛାକୁ ପୂର୍ଣ୍ଣ କରିବି । ତେଣୁ ଏହିଭଳି ଏହା ଗୋଟିଏ ଜନ୍ମର କଥା ନୁହେଁ । ଶ୍ରୀକୃଷ୍ଣ ଅବତାରରେ, ଭଗବାନ ହିଁ ଜାଣନ୍ତି କେତେ କେତେ ଜୀବମାନଙ୍କର କେତେ ଜନ୍ମର ଇଚ୍ଛାକୁ ପୂର୍ଣ୍ଣ କରୁଛନ୍ତି । ସେଥିପାଇଁ ଭଗବାନଙ୍କର ଏହି ଶ୍ରୀକୃଷ୍ଣ ଅବତାରକୁ ପୂର୍ଣ୍ଣ ଅବତାର କୁହାଯାଏ । ପୂର୍ବ-ପୂର୍ବର ସମସ୍ତ ବଚନକୁ ଭଗବାନ ଏହି ଅବତାରରେ ପୂର୍ଣ୍ଣ କରିଛନ୍ତି । ଯାହା-ଯାହାକୁ ଯେଉଁ-ଯେଉଁ ବଚନ ଦେଇଥିଲେ, ଯାହାର-ଯାହାର ଯେଉଁଭଳି ଇଚ୍ଛା ଥିଲା, ଶ୍ରୀକୃଷ୍ଣ ଅବତାରରେ ଭଗବାନ ସେ ସମସ୍ତ ପୂର୍ଣ୍ଣ କରି ଦେଇଥିଲେ । ଏହି ଦୃଷ୍ଟିରେ ଯଦି କେହି କହିବାକୁ ଚହାଁନ୍ତି ଭଗବାନଙ୍କର ଶ୍ରୀରାମ ଅବତାରରେ ଅଳ୍ପ କଳାରେ ଆସିଥିଲେ, ତେବେ ସେହି କଥା ବୁଝି ହୋଇପାରିଛି । କାରଣ ସେ ସେହି ଅବତାରରେ ଯେଉଁ ବଚନ ଦେଇଥିଲେ, ପରବର୍ତ୍ତୀ ଶ୍ରୀକୃଷ୍ଣ ଅବତାରରେ ପୂର୍ଣ୍ଣ କଲେ ।

ଶ୍ରୀମଦ୍ ଭାଗବତ ସଂସ୍କୃତରେ ଲେଖାଯାଇଥିଲେ ମଧ୍ୟ, ତାର ଅର୍ଥ କୌଣସି ଶବ୍ଦକୋଷରୁ ବୁଝାଯାଇପାରେ ନାହିଁ ଅଥବା କୌଣସି ସାହିତ୍ୟର ବା ସଂସ୍କୃତ ବ୍ୟାକରଣ ଜ୍ଞାନ ମଧ୍ୟ ତାକୁ ସ୍ପଷ୍ଟ କରିପାରେ ନାହିଁ । ଏହା ଆମେ ପୂର୍ବରୁ ଦେଖିଛୁ । ଏହା ଏପରି ଯେ ଯେତେବେଳେ ଦେବର୍ଷି ନାରଦ ଏହି ଭାଗବତକୁ ବ୍ୟାସଜୀଙ୍କୁ ଶୁଣାଇଲେ, ସେ ସମାଧିସ୍ଥ ହୋଇ ଯାଇଥିଲେ । ପୁଣି ପ୍ରଥମେ ସେ ଧ୍ୟାନ କଲେ, ପରମାତ୍ମାଙ୍କର ଦର୍ଶନ କଲେ, ତାଙ୍କର ମାୟା - ଆଦି ଶକ୍ତିଙ୍କର ମଧ୍ୟ ଦର୍ଶନ କଲେ ଏବଂ ତାପରେ ସେହି ସମାଧି ଭାଷାରେ ସମାଧିର ଅନୁଭବକୁ, ସମାଧିଗମ୍ୟ ଅର୍ଥକୁ ସେ ଭାଗବତ ରୂପରେ ବ୍ୟକ୍ତ

କଲେ। ତାକୁ ଲେଖିଲେ, ରଚନା କଲେ । ତେଣୁ ଭାଗବତର ଅର୍ଥ ଲୌକିକ ହୋଇପାରିବ ନାହିଁ । ଏହି କଥା ଯେତେବେଳେ ଆମେ ବୁଝିଯିବା, ସେତେବେଳେ ଆମ ମନର ଅନେକ ବୃଥା ଶଙ୍କା ନିବୃତ୍ତ ହୋଇଯିବେ ।

## ଭୌମାସୁରର ଉଦ୍ଧାର

ତାପରେ ଭୌମାସୁରର ପ୍ରସଙ୍ଗ ଆସେ । ତାର ନାମ ଥିଲା, ନରକାସୁର । ଯଦ୍ୟପି ସେ ପୃଥିବୀ ଦେବୀଙ୍କର ପୁତ୍ର ଥିଲା, ତଥାପି ସେ ବଡ଼ ଭୟଙ୍କର ଏବଂ ମହା ଅତ୍ୟାଚାରୀ ଅସୁର ଥିଲା । ସେ ଷୋଳ ସହସ୍ର (୧୬୦୦୦) ଠାରୁ ମଧ୍ୟ ଅଧିକ କନ୍ୟାମାନଙ୍କୁ ଅପହରଣ କରି ସେମାନଙ୍କୁ ନିଜ ମହଲରେ ବନ୍ଦି କରି ରଖିଥିଲା । ସେ ସମସ୍ତ କନ୍ୟାମାନଙ୍କ ତରଫରୁ ଭଗବାନଙ୍କ ନିକଟକୁ ଏକ ନିବେଦନ ପହଞ୍ଚିଲା ଯେ "ଭଗବାନ, ଆପଣ ଏହି ଅସୁର କବଳରୁ ଆମ୍ଭମାନଙ୍କୁ ମୁକ୍ତ କରାନ୍ତୁ।" ଭଗବାନ ସତ୍ୟଭାମାଙ୍କୁ ନିଜ ସଙ୍ଗରେ ନେଇ ସେହି ସ୍ଥାନକୁ ଯାଉଛନ୍ତି । ଯେତେବେଳେ ଭଗବାନ ସେଠାରେ ପହଞ୍ଚିଲେ, ସେ ଦେଖୁଛନ୍ତି ଯେ ଭୌମାସୁର ଅନେକ ପ୍ରକାର ଅଭେଦ୍ୟ ପ୍ରାଚୀର ସେଠାରେ ତିଆରି କରିଦେଇଛି । ଭଗବାନ ନିଜର ସୁଦର୍ଶନ ଚକ୍ର ତଥା ଅନ୍ୟ ଆୟୁଧ ଦ୍ୱାରା ସେଗୁଡ଼ିକ ଭାଙ୍ଗି ଦେଇ ଆଗକୁ ବଢ଼ି ଚାଲିଲେ । ପୁଣି ଭୌମାସୁରଙ୍କ ସହିତ ତାଙ୍କର ଯୁଦ୍ଧ ହେଲା । ସର୍ବଶେଷରେ ଭଗବାନ ତାକୁ ମାରିଦେଉଛନ୍ତି। ସେଥିପାଇଁ ଦୀପାବଳୀ ସମୟରେ ପ୍ରଥମେ ଲକ୍ଷ୍ମୀ ପୂଜନ କରାଯାଏ ଏବଂ ପୁଣି ନରକ ଚତୁର୍ଦ୍ଦଶୀ ଦିନ ଲୋକମାନେ ସକାଳୁ ଶୀଘ୍ର ଉଠି ସ୍ନାନ କରନ୍ତି ଏବଂ ଆରତୀ କରନ୍ତି । କାରଣ ସେହିଦିନ ଭଗବାନ ଶ୍ରୀକୃଷ୍ଣ ନରକାସୁରକୁ ମାରିଥିଲେ । ଏହି ପରମ୍ପରାକୁ ଜାଣିବା ଉଚିତ୍ ।

ନରକାସୁରକୁ ବଧ କରି ସେହି ଷୋହଳ ହଜାର କନ୍ୟାମାନଙ୍କୁ ମୁକ୍ତ କଲେ, ସେତେବେଳେ ସେମାନେ ସମସ୍ତେ ଭଗବାନଙ୍କୁ ପ୍ରାର୍ଥନା କଲେ ଯେ, ଏବେ ଆପଣ ହିଁ ଆମକୁ ଆଶ୍ରୟ ଦିଅନ୍ତୁ । ଆମ୍ଭେମାନେ ଆପଣଙ୍କର ହିଁ ଶରଣ ଗ୍ରହଣ କରୁଅଛୁ । ଏହି କାରଣରୁ, ସେତେବେଳେ ସେହି କନ୍ୟାମାନଙ୍କ ସହ ଭଗବାନଙ୍କର ବିବାହ ହେଲା ।

## ଶ୍ରୀକୃଷ୍ଣଙ୍କର ଷୋହଳ ହଜାର ବିବାହ

ଏବେ ଦେଖନ୍ତୁ, ଭଗବାନଙ୍କର ଏତେ ସବୁ ଯେଉଁ ବିବାହ ହେଲା, ଏହା ଅତି ବିଚିତ୍ର ଥିଲା । ଏହି ପ୍ରସଙ୍ଗକୁ କେବଳ ଈଶ୍ୱର ଦୃଷ୍ଟିରେ ନୁହେଁ, ସାମାଜିକ ଦୃଷ୍ଟିରେ ମଧ୍ୟ ସାମାନ୍ୟ ବିଚାର କରି ଦେଖିବା ଉଚିତ୍ । ସତ କଥା ହେଲା ଯେ, ଯେତେବେଳେ କାହାର କନ୍ୟା ଅପହୃତ ହୋଇଯାଏ ଏବଂ ସେ ଅନ୍ୟର ଘରେ, ପୁଣି ରାକ୍ଷସ ପ୍ରଭୃତିଙ୍କ ଘରେ

ରହି, ପୁଣି ଆସିଥାଏ, ତ ବେଳେବେଳେ ସ୍ୱୟଂ ତାଙ୍କର ମାତା-ପିତା ମଧ୍ୟ ଏତେ ସହଜରେ ତାକୁ ଗ୍ରହଣ କରିବା ପାଇଁ ପ୍ରସ୍ତୁତ ହୋଇନଥାନ୍ତି । ସେମାନଙ୍କର ମନ ଅନେକ ପ୍ରକାର ଆଶଙ୍କାରେ ପୂର୍ଣ୍ଣ ହୋଇଯାଏ । ସେମାନଙ୍କୁ ଲାଗେ ଏବେ ଏହି କାରଣରୁ ସମାଜରେ ଆମର ଅବହେଳନା ହୋଇପାରେ । ଆମେ ତାର ସମ୍ମୁଖୀନ କିପରି ହେବା ? ଅନେକ ଥର ମାତା-ପିତା ମଧ୍ୟ ନିଜର ସେହି କନ୍ୟାକୁ ପରିତ୍ୟାଗ କରିବା ପାଇଁ ପ୍ରସ୍ତୁତ ହୋଇଯାଆନ୍ତି ।

ଏଠାରେ ଭଗବାନ ବିଚାର କରୁଛନ୍ତି ଯେ, ଏମାନେ ୧୬୦୦୦ ଅଟନ୍ତି, ଏବେ ଯଦି ଏମାନଙ୍କୁ କେହି ସ୍ୱୀକାର ନ କରନ୍ତି, ତେବେ ପୁଣି ପରିସ୍ଥିତି କିଭଳି ହୋଇଯିବ ? ତାହା ତ ଅତି ଭୟାନକ ସ୍ଥିତି ହେବ କାରଣ ଏତେ ସଂଖ୍ୟକ ନାରୀ ଯଦି କୌଣସି ନିର୍ଦ୍ଦିଷ୍ଟ ଘର-ଦ୍ୱାର ବିନା ରହିବେ ତ, ତେବେ ସାମାଜିକ ସ୍ଥିତି ମଧ୍ୟ ଖରାପ ହୋଇଯିବ, ସ୍ୱୟଂ ସେମାନଙ୍କର ସ୍ଥିତି ମଧ୍ୟ ଖରାପ ହୋଇଯିବ । ଏହିଭଳି ଭାବି-ଚିନ୍ତି କରି ଭଗବାନ ସେମାନଙ୍କୁ ସ୍ୱୀକାର କରିନେଲେ । ଦେଖନ୍ତୁ, ସେମାନଙ୍କ ପ୍ରତି ଭଗବାନ କେତେ ବଡ଼ ଉପକାର କଲେ ! ଏହି ଘଟଣାକୁ ଦେଖିବାର ଏକ ଦୃଷ୍ଟି ତ ହୋଇପାରେ ଯେ - ଭଗବାନ ସେମାନଙ୍କର ଇଚ୍ଛା ପୂର୍ଣ୍ଣ କଲେ । ପରନ୍ତୁ ଏହା ତ ଏକ ବଡ଼ ହିଁ ସାମାନ୍ୟ କଥା ହେଲା। ବିଶେଷ କଥା ହେଲା - ଭଗବାନ ଏହି କାର୍ଯ୍ୟ କରି ସମାଜରେ କେତେ ବଡ଼ ପରିବର୍ତ୍ତନ ଆଣି ଦେଇ ପାରିଲେ, କେତେ ବଡ଼ କ୍ରାନ୍ତି ଏବଂ ତତ୍ ସହିତ ଶାନ୍ତିର ମଧ୍ୟ ସ୍ଥାପନା କରିପାରିଲେ । ଏହିଭଳି ଭାବରେ ଭଗବାନ ସେ ସମସ୍ତ କନ୍ୟାମାନଙ୍କର ଉପକାର କରି, ସେମାନଙ୍କର କଲ୍ୟାଣ କଲେ ।

ଏବେ ଦେଖନ୍ତୁ, ଜଣେ ପୁରୁଷ ନିମନ୍ତେ ଷୋହଳ ହଜାର ସ୍ତ୍ରୀମାନଙ୍କ ସହିତ ଏକ ସଙ୍ଗରେ ବିବାହ କରିବା କଣ କେବେ ସମ୍ଭବ ? ଏହା ଏକ ବିଚାରଯୋଗ୍ୟ ବିଷୟ ଅଟେ। ପୂର୍ବରୁ କଣ କେବେ କେହି ଏପରି କରିଥିଲେ ? ଷୋହଳ ହଜାର ସ୍ତ୍ରୀମାନଙ୍କ ସହିତ ରହିବା କ'ଣ ସମ୍ଭବ? ଯଦି ପ୍ରତି ଜଣଙ୍କ ସହିତ ଏକ-ଏକ ମିନିଟ ପାଇଁ ହିଁ ରହିବାକୁ ହୁଏ, ତଥାପି ମଧ୍ୟ କେତେ ସମୟ ଲାଗିବ କୁହନ୍ତୁ ତ ? ତେଣୁ ଏ କଥା ତ ସ୍ପଷ୍ଟ ଯେ, ଏପରି ହେବା ସମ୍ଭବ ନୁହେଁ । ଏପରି କେବେ ମଧ୍ୟ ହୋଇନଥିଲା । ସେହି ରାଜକନ୍ୟାମାନଙ୍କ ନିମନ୍ତେ ଭଗବାନ କେବଳ ଷୋହଳ ସହସ୍ର ମହଲ କରାଇଲେ ତାହା ନୁହେଁ, ବରଂ ସେ ନିଜକୁ ମଧ୍ୟ ସେତିକି ହିଁ ରୂପରେ ପ୍ରକଟ କରିଲେ ଯେତିକି ତାଙ୍କର ରାଣୀ ଥିଲେ । ପ୍ରତ୍ୟେକ ମହଲରେ ଭଗବାନ ପ୍ରତ୍ୟେକଙ୍କ ସଙ୍ଗରେ ଅଲଗା-ଅଲଗା ରହୁଥିଲେ ।

ଏହା ଆମେ ପୂର୍ବରୁ ମଧ୍ୟ ଦେଖିଛୁ ଯେ, ଯେତେବେଳେ ବ୍ରହ୍ମାଜୀ ଗୋ-ବତ୍ସ ତଥା ଗୋପାଳବାଳକମାନଙ୍କୁ ଲୁଚାଇ ଦେଇଥିଲେ, ସେତେବେଳେ ଭଗବାନ ସ୍ୱୟଂ ହିଁ ସେତିକି ରୂପରେ ବାଛୁରୀ ତଥା ଗୋପାଳ ବାଳକ ହୋଇ, ବ୍ରଜବାସୀମାନଙ୍କୁ ଆନନ୍ଦିତ କରୁଥିଲେ। ସେତେବେଳେ, ସ୍ୱୟଂ ନିଜେ ହିଁ ଅନେକ ପ୍ରତି ରୂପ ବନାଇବାରେ ତାଙ୍କର କ'ଣ ଅସୁବିଧା ହୋଇଛି ? ଏଠାରେ କେବଳ ଗୋଟିଏ ଶରୀରର ଉପାଧି ହିଁ ଆବଶ୍ୟକ, ନୁହେଁ କି ? ବାସ୍ ! ହୋଇଗଲା ଅନେକ ରୂପ । ଏହିଭଳି ଭାବରେ, ଷୋହଳ ସହସ୍ର ରାଜକନ୍ୟାମାନଙ୍କ ସହିତ ଭଗବାନଙ୍କର ବିଧି ଅନୁଯାୟୀ ବିବାହ ହେଲା । ସେଠାରୁ ଫେରିବା ସମୟରେ ଶ୍ରୀକୃଷ୍ଣ ଇନ୍ଦ୍ରଙ୍କର ଅମରାବତୀରୁ ସତ୍ୟଭାମାଙ୍କ ନିମନ୍ତେ ପାରିଜାତ ବୃକ୍ଷ ମଧ୍ୟ ନେଇ ଆସିଲେ । ସେଥିପାଇଁ ତାଙ୍କୁ ଇନ୍ଦ୍ର ତଥା ଅନ୍ୟ ଦେବତାମାନଙ୍କ ସହିତ ଯୁଦ୍ଧକରିବାକୁ ମଧ୍ୟ ପଡିଥିଲା ।

## ଶ୍ରୀକୃଷ୍ଣ-ରୁକ୍ମିଣୀ-ସମ୍ବାଦ

ଏହାପରେ ଗୋଟିଏ ଅଧ୍ୟାୟରେ ସଂକ୍ଷେପରେ ରୁକ୍ମିଣୀଜୀ ତଥା ଶ୍ରୀକୃଷ୍ଣଙ୍କର ଏକ ପ୍ରଣୟ କଳହର ବର୍ଣ୍ଣନ ଆସେ । ଏହା ତାଙ୍କର ପ୍ରେମପୂର୍ଣ୍ଣ କଳହ । ଦେଖନ୍ତୁ, ଏଠାରେ ଭଗବାନ ଶ୍ରୀକୃଷ୍ଣ ନିଜ ଭକ୍ତର ଭକ୍ତିକୁ ପୁଷ୍ଟ କରିଚାଲିଛନ୍ତି । ଭକ୍ତି ରସର ପୁଷ୍ଟି ନିମନ୍ତେ ସଂଯୋଗ ହିଁ ପର୍ଯ୍ୟାପ୍ତ ନୁହେଁ । ସେଥିପାଇଁ ବିୟୋଗ ମଧ୍ୟ ଆବଶ୍ୟକ । ବିୟୋଗରେ ଭଜନୀୟରମାନଙ୍କୁ ପ୍ରିୟର ସ୍ମରଣ ଅଧିକ ଦୃଢ଼ ହୋଇଥାଏ । ସେଇଥିପାଇଁ ତ ଭଗବାନ ଗୋପୀ ଏତେ ଦୀର୍ଘ ବିୟୋଗ ଦେଇଥିଲେ । କିନ୍ତୁ ସେହି କାରଣରୁ ଗୋପୀମାନଙ୍କର ଭଗବାନଙ୍କ ସହିତ ନିରନ୍ତର ସଂଯୋଗ ହୋଇପାରୁଥିଲା । ତଥାପି, ରୁକ୍ମିଣୀଜୀଙ୍କର ତ ଭଗବାନଙ୍କ ପ୍ରତି ଏପରି ପ୍ରେମ ଥିଲା ଯେ ବାସ୍ତବିକ ବିୟୋଗ କଥା ତ ଦୂରେ ଥାଉ, ଏଠାରେ ତ ସେ ବାଚିକ ବିୟୋଗ ମଧ୍ୟ ସହି ପାରି ନ ଥିଲେ । ଭଗବାନ ନିଜେ କେବଳ ଏତିକି କହିଲେ ଯେ – "ତୁମେ କୌଣସି ଶ୍ରେଷ୍ଠ କ୍ଷତ୍ରିୟକୁ ବରଣ କରି ତା ନିକଟକୁ ଚାଲି ଯାଅ", ସେତେବେଳେ କେବଳ ଏତିକି ମାତ୍ର ଶୁଣିବା କ୍ଷଣି ତାଙ୍କର ରୂପ ମାଧୁରୀ ଶେଥା ହୋଇଗଲା, ମୁଖାରବିନ୍ଦ ଶୁଖିଗଲା ଏବଂ ସେ ଭୟ ହେତୁ ଚେତାଶୂନ୍ୟ ହୋଇଗଲେ । ଭଗବାନ ବ୍ୟସ୍ତ ହୋଇଗଲେ ଯେ ଛାଡ଼ିବାର ନାମ ମାତ୍ରକେ ଇଏ ଏତେ ବ୍ୟାକୁଳ ହୋଇଗଲା । ଭଗବାନ ନିଜର ଚାରି ଭୁଜରେ ତାଙ୍କୁ ଉଠାଇ ନେଲେ । ପୁଣି ତାଙ୍କର ଅଶ୍ରୁଧାରା ପୋଛି ଦେଇ ଭଗବାନ ତାଙ୍କୁ କହୁଛନ୍ତି, "ମୁଁ ତ ବିନୋଦ କରୁଥିଲି ।" ପୁଣି ଭଗବାନ ତାଙ୍କୁ ବୁଝାଇ ଶୁଝାଇ ପ୍ରସନ୍ନ କଲେ । ଦେଖନ୍ତୁ, ରୁକ୍ମିଣୀ ଜୀ ଏପରି ଥିଲେ ।

ଭଗବାନ ତାଙ୍କୁ ଛାଡ଼ି ଦେବେ, ଏହି ବିଚାରରେ ହିଁ ସେ ଏତେ ବ୍ୟାକୁଳ ହୋଇଗଲେ, ତାଙ୍କର ଏପରି ଘନିଷ୍ଠ ପ୍ରେମ ଥିଲା ।

## ଶ୍ରୀ କୃଷ୍ଣଙ୍କର ସନ୍ତାନ-ସନ୍ତତିଙ୍କର ବର୍ଣ୍ଣନ

ଆଗକୁ ଶ୍ରୀକୃଷ୍ଣଙ୍କର ସନ୍ତାନମାନଙ୍କର ବର୍ଣ୍ଣନ ଆସେ । ପ୍ରଦ୍ୟୁମ୍ନଙ୍କ ପୁତ୍ର ଅନିରୁଦ୍ଧଙ୍କର ମଧ୍ୟ ବର୍ଣ୍ଣନ ଅଛି । ଏଠାରେ ତାକୁ ଆମେ ସଂକ୍ଷେପରେ ଦେଖିବା । ବାଣାସୁରଙ୍କ କନ୍ୟାଙ୍କ ନାମ ଉଷା । ସେ ସ୍ୱପ୍ନରେ ଜଣେ ପୁରୁଷଙ୍କୁ ଦେଖିଛନ୍ତି । ତାଙ୍କ ମନ ସେହି ପୁରୁଷ ପ୍ରତି ସମର୍ପିତ ହୋଇଯାଇଛି । ତେଣୁ ତା ପରଦିନଠାରୁ ସେ ଉଦାସୀନ ହୋଇ ଚିନ୍ତା କରିବାକୁ ଲାଗିଲେ । ତାଙ୍କୁ ଦେଖି ତାଙ୍କ ସଖୀ ଚିତ୍ରଲେଖା କହୁଛନ୍ତି, "ତୁମର କଣ ହେଲା ? ତୁମେ କାହିଁକି ଏପରି ଉଦାସ ହୋଇଯାଇଚି ?" ସେତେବେଳେ ଉଷା ତାଙ୍କୁ କହିଲେ, "ମୁଁ ସ୍ୱପ୍ନରେ ଜଣେ ପୁରୁଷଙ୍କୁ ଦେଖିଲି । ସେ ଏତେ ସୁନ୍ଦର ଥିଲେ ଯେ ମୋର ମନ ତାଙ୍କ ପ୍ରତି ସମର୍ପିତ ହୋଇଯାଇଛି ।"

ଏବେ ଦେଖନ୍ତୁ, ଏହି ଚିତ୍ରଲେଖା ମଧ୍ୟ ଅତି ବିଲକ୍ଷଣ ପ୍ରତିଭାଶାଳୀ ଥିଲେ । ସେ କହୁଛନ୍ତି, "ମୁଁ ଚିତ୍ର କରି କରି ତୁମକୁ ଦେଖାଉଛି, ତୁମେ ସେଗୁଡ଼ିକୁ ଦେଖି କହିବ ଯେ ସେହି ଚିତ୍ର ଭିତରୁ କେଉଁ ଚିତ୍ରଟି ସେହି ପୁରୁଷଙ୍କ ସହିତ ମିଳିଯାଉଛି ?" ସେ ପୁଣି ଚିତ୍ର ଆଙ୍କିବାକୁ ଲାଗିଲେ । ଯେତେବେଳେ ସେ ଭଗବାନ ଶ୍ରୀକୃଷ୍ଣଙ୍କର ଚିତ୍ର ପ୍ରସ୍ତୁତ କଲେ, ସେତେବେଳେ ସେ ତାକୁ ଦେଖି କହିଲେ, "ସେ ଏହି ଚିତ୍ର ସହିତ ମିଶୁଛି ।" ପୁଣି ସେ ପ୍ରଦ୍ୟୁମ୍ନ ଏବଂ ପ୍ରଦ୍ୟୁମ୍ନଙ୍କ ପରେ ଅନିରୁଦ୍ଧଙ୍କର ଚିତ୍ର ପ୍ରସ୍ତୁତ କଲେ । ସେତେବେଳେ ଉଷା କହିଲେ – "ସେ ଏହିପରି ଥିଲେ ।" ଚିତ୍ରଲେଖାଙ୍କୁ ଯୋଗସିଦ୍ଧି ମଧ୍ୟ ପ୍ରାପ୍ତ ଥିଲା । ଯୋଗ ବିଦ୍ୟା ଦ୍ୱାରା ସେ ଅନିରୁଦ୍ଧଙ୍କୁ ଦ୍ୱାରକାରୁ ନେଇ ଆସିଥିଲେ ଏବଂ ଉଷାଙ୍କ କକ୍ଷରେ ପହଞ୍ଚାଇ ଦେଲେ । ଯେତେବେଳେ ବାଣାସୁର ଏ କଥା ଜାଣିଲା, ସେତେବେଳେ ସୈନିକମାନଙ୍କ ସହିତ ଉଷାଙ୍କ ମହଲକୁ ଯାଇ ଅନିରୁଦ୍ଧଙ୍କୁ ଘେରାଉ କରିଦେଲା । ପୁଣି ଯେତେବେଳେ ଦେଖିଲେ ଅନିରୁଦ୍ଧ ସାହସ ପୂର୍ବକ ସେ ସମସ୍ତଙ୍କର ସମ୍ମୁଖୀନ ହୋଇ ସମସ୍ତ ସୈନିକଙ୍କୁ ସଂହାର କରିଦେଲା, ସେତେବେଳେ ବାଣାସୁର ନାଗଫାଶ ଦ୍ୱାରା ଅନିରୁଦ୍ଧଙ୍କୁ ବାନ୍ଧିଦେଲା । ଏହା ଅତି ବିଚିତ୍ର କଥା । ସେ ପାଖେ ଦ୍ୱାରକାରେ କେହି ଏ କଥା ଜାଣି ପାରି ନ ଥିଲେ । ଦେଖନ୍ତୁ, ଭଗବାନ ଶ୍ରୀକୃଷ୍ଣଙ୍କର ସହସ୍ର ପତ୍ନୀ ଥିଲେ, ତେବେ ସନ୍ତାନ-ସନ୍ତତି କେତେ ହୋଇଥିବେ ?

ସେତେବେଳେ ନାରଦ ଜୀ ଦ୍ୱାରକା ଯାଇଛନ୍ତି ଏବଂ କହୁଛନ୍ତି - “ ”ଆରେ ତୁମ ଘରେ ତ ଶୋକର ଛାୟା ନାହିଁ ? ସବୁ ପିଲାମାନେ ଘରକୁ ଫେରିଲେଣି କି ନାହିଁ, ଏ କଥାକୁ କେହି ଧ୍ୟାନ ଦେଉଛନ୍ତି ନା ନାହିଁ ? ଆପଣଙ୍କ ଘରର ଗୋଟିଏ ସନ୍ତାନ ନାହିଁ । ଏ କଥା କାହାକୁ ଜଣା ଅଛି ? (କହିଲେ-ହାଁ ? ଗୋଟିଏ ସନ୍ତାନ ନାହିଁ ? କିଏ ସେ ? ସେତେବେଳେ ନାରଦ ଜୀ କହିଲେ - ଅନିରୁଦ୍ଧ କାହିଁ ? ସେ କେଉଁଆଡ଼େ ଗଲା ? କହିଲେ - କେଉଁଆଡ଼େ ଗଲା, ଜଣାନାହିଁ । ଏତେ ପିଲାମାନଙ୍କ ମଧ୍ୟରେ ଜଣାପଡୁ ନାହିଁ ଯେ କିଏ କୁଆଡ଼େ ଗଲେ ? ଏହିଭଳି ଏହା ତ ବଡ଼ ବିଚିତ୍ର ଲୀଳା ।) ପୁଣି ନାରଦ ଜୀ ସମସ୍ତ କଥା କହି ଶୁଣାଇଲେ ଯେ କିପରି ଅନିରୁଦ୍ଧ ଏବେ ବାଣାସୁରର ନାଗଫାଶରେ ବନ୍ଧା ହୋଇ ଶୋଣିତ ପୁରରେ ବନ୍ଦି ଅଛି ।

ତାପରେ, ଶ୍ରୀକୃଷ୍ଣ, ବଳରାମ ତଥା ଅନ୍ୟ ଯଦୁବଂଶୀମାନେ ବାଣାସୁର ଉପରେ ଆକ୍ରମଣ କରି ବନ୍ଦି ହୋଇଥିବା ଅନିରୁଦ୍ଧକୁ ମୁକ୍ତ କରାଇଲେ । ପୁଣି ଉଷା ଏବଂ ଅନିରୁଦ୍ଧଙ୍କର ବିବାହ କରାଇ ସେମାନେ ତାଙ୍କୁ ନେଇ ଆସିଲେ ।

ଏହା ପୂର୍ବରୁ, ରୁକ୍ମୀଙ୍କର ପୌତ୍ରୀ ରୋଚନାଙ୍କ ସହିତ ଅନିରୁଦ୍ଧଙ୍କର ବିବାହ ସମୟରେ ଜୁଆ ଖେଳୁ ଖେଳୁ ଯେତେବେଳେ ରୁକ୍ମୀ ବେଇମାନୀ କଲେ ଏବଂ ବ୍ୟଙ୍ଗ କଲେ, ସେତେବେଳେ ବଳରାମ ଜୀ ତାଙ୍କୁ ମାରି ଦେଇଥିଲେ । ସେଥିରେ ରୁକ୍ମିଣୀ ଜୀ ବହୁତ କ୍ରୋଧିତ ହୋଇଯାଇଥିଲେ । ଶ୍ରୀକୃଷ୍ଣ ମୌନ ଥିଲେ । ଏହାଦ୍ୱାରା ସେହି କଳହ ସେହିଠାରେ ସମାପ୍ତ ହୋଇଥିଲା ।

## ରାଜା ନୃଗଙ୍କର ଉଦ୍ଧାର

ଏହାପରେ ଭଗବାନ ଏଣ୍ଡୁଅ (ବହୁରୂପୀ) ରୂପକୁ ପ୍ରାପ୍ତ ହୋଇଥିବା ରାଜା ନୃଗଙ୍କୁ ଉଦ୍ଧାର କଲେ । ତାଙ୍କୁ ଦେବତାଙ୍କର ରୂପ ପ୍ରାପ୍ତ ହୋଇଗଲା । ପୂର୍ବ ଜନ୍ମରେ ସେ ବଡ଼ ଦାନୀ ଥିଲେ । ତଥାପି, ଥରେ ଯେଉଁ ଗାଇକୁ ଦାନ ରୂପେ ଦିଆ ହୋଇ ସାରିଥିଲା, ସେହି ଗାଇଟି କୌଣସି ଉପାୟରେ ଫେରି ଆସି ପୁନର୍ବାର ରାଜା ନୃଗଙ୍କର ଗାଇମାନଙ୍କ ସହିତ ମିଶି ଯାଇଥିଲା । ଅଜାଣତରେ ସେହି ଗାଇଟି ପୁଣିଥରେ କୌଣସି ଅନ୍ୟ ବ୍ରାହ୍ମଣଙ୍କୁ ଦାନରେ ଦିଆଗଲା । ଯେଉଁ ବ୍ରାହ୍ମଣଙ୍କୁ ଯାହା ପ୍ରଥମେ ଦିଆଯାଇଥିଲା ସେ ରାଜା ନୃଗଙ୍କ ନିକଟକୁ ଯାଇ କହିଲେ - ସେହି ଗାଇଟିକୁ ମୋତେ ଫେରାଇ ଦିଅ । କିନ୍ତୁ, ଯାହାକୁ ସେ ଗାଇଟି ଦ୍ୱିତୀୟ ଥର ଦାନରେ ଦିଆଯାଇଥିଲା, ସେ ତାକୁ ଫେରାଇବା ନିମନ୍ତେ ମନା କରିଦେଲା। ରାଜା ନୃଗ ଏହାର ସମାଧାନ ତୁରନ୍ତ କରିପାରିନଥିଲେ । ଏହି ପ୍ରସଙ୍ଗକୁ

ବାଲ୍ମୀକି ରାମାୟଣରେ ଅତି ସୁନ୍ଦର ରୂପେ ବର୍ଣ୍ଣନା କରାଯାଇଛି । ନ୍ୟାୟ କରିବାରେ ବିଳମ୍ବ କରିବା ହେତୁ ରାଜା ନୃଗଙ୍କୁ ଏଣ୍ଟୁଅ ହେବାକୁ ପଡ଼ିଥିଲା । ଏହି ପ୍ରସଙ୍ଗରୁ ଏଠାରେ ଶିକ୍ଷା ମିଳୁଛି - ଥରେ ଦିଆଯାଇଥିବା ଦାନକୁ, ଭୁଲରେ ମଧ୍ୟ ପୁନର୍ବାର ଦାନ ଦେବା ଉଚିତ୍ ନୁହେଁ । ବ୍ରାହ୍ମଣର ଧନ ଭୁଲରେ ମଧ୍ୟ କେବେ ଆମ ପାଖକୁ ନ ଆସୁ । ଦ୍ୱିତୀୟ କଥା ହେଉଛି - କୌଣସି ରାଜା ନ୍ୟାୟ କରିବାରେ ଆଦୌ ବିଳମ୍ବ କରିବା ଉଚିତ୍ ନୁହେଁ।

କିଛି ସମୟ ପରେ ବଳରାମଜୀ କହୁଛନ୍ତି ମୁଁ ବ୍ରଜକୁ ଯାଇ ଫେରି ଆସିବି । ଯେଉଁଭଳି ଭାବରେ ଗୋକୁଳରେ ଭଗବାନ ଶ୍ରୀକୃଷ୍ଣଙ୍କର ପ୍ରେମୀ, ପ୍ରଶଂସକ ଗୋପ, ଗୋପୀମାନେ ଥିଲେ, ସେହିଭଳି ସେଠାରେ ବଳରାମ ଜୀଙ୍କ ପ୍ରଶଂସକ ମଧ୍ୟ ଥିଲେ । ତେବେ ବଳରାମଜୀ ବ୍ରଜକୁ ଯାଉଛନ୍ତି ଏବଂ ସମସ୍ତଙ୍କ ସହିତ ସାକ୍ଷାତ କରି ତାଙ୍କୁ ସୁଖ ପ୍ରଦାନ କରି ଫେରି ଆସିଛନ୍ତି ।

## ରାଜା ପୌଣ୍ଡ୍ରକଙ୍କ କଥା

ଯେତେବେଳେ ବଳରାମ ଜୀ ବ୍ରଜରେ ଥିଲେ, ସେତେବେଳେ କୁରୁଷ ଦେଶର ଜଣେ ଅଜ୍ଞାନୀ ରାଜା ପୌଣ୍ଡ୍ରକକୁ ତାର କେତେକ ମୂର୍ଖ ସାଥି କହିଲେ, “ଆରେ ତୁ ହିଁ ତ ପ୍ରକୃତ ବାସୁଦେବ ଅଟୁ । ଦ୍ୱାରିକାରେ ଯେଉଁ ଶ୍ରୀକୃଷ୍ଣ ଅଛନ୍ତି, ତାକୁ ବାସୁଦେବ କୁହାଯାଉଛି କିନ୍ତୁ ସେ ପ୍ରକୃତରେ ବାସୁଦେବ ନୁହଁନ୍ତି । ସେ ବଳପୂର୍ବକ ଶଙ୍ଖ-ଚକ୍ର ଆଦି ଧାରଣ କରି ବସିଛି । ସବୁ ଧାରଣ କରି ନାଟକ କରୁଛି । ସେମାନଙ୍କ କଥାରେ ପଡ଼ି (ଭାସିଯାଇ), ସେହି ପୌଣ୍ଡ୍ରକ ନିଜେ ନିଜକୁ ବାସୁଦେବ ବୋଲି ଗ୍ରହଣ କରିନେଲା । ସେ ନିଜ ହାତରେ ଚକ୍ର (କାଠରେ ତିଆରି) ଧାରଣ କଲା । ସେ କାଠରେ ଅନ୍ୟ ଦୁଇଟି ହାତ ମଧ୍ୟ ତିଆରି କଲା । କେବଳ ଏତିକି ନୁହେଁ, ସେ କାଠରେ ଏକ ଗରୁଡ଼ ମଧ୍ୟ ତିଆରି କରାଇଲା । ସେଥିରେ ଚକ୍ର ଆଦି ଲଗାଇ ଉଡ଼ିବାର ପ୍ରବନ୍ଧ କରାଇଥିଲା । ଗ୍ଲାଇଡର ଭଳି ସେ କିଛି ନିର୍ମାଣ କଲା । ପୁଣି ସେହି ସାଥିମାନଙ୍କ କଥାରେ ପଡ଼ି ପୌଣ୍ଡ୍ରକ ଶ୍ରୀକୃଷ୍ଣଙ୍କ ନିକଟକୁ ନିଜ ଦୂତକୁ ପଠାଇ ଦେଲା ।

ଦେଖନ୍ତୁ, ଆମର ବର୍ତ୍ତମାନର ରାଜନୀତିରେ ମଧ୍ୟ ଏହିଭଳି ଅନେକ କଥା ହୋଇଚାଲିଛି । କେହି କେହି କହନ୍ତି, ଆମେ ଅସଲ କଂଗ୍ରେସ ଅଟୁ, ତ କିଏ କହନ୍ତି ସେ ଅସଲ ନୁହଁନ୍ତି । କହିବାର ତାତ୍ପର୍ଯ୍ୟ ହେଉଛି, ଆଜି ମଧ୍ୟ ଅନେକ ପୌଣ୍ଡ୍ରକ ଅଛନ୍ତି । ଏ ଜଣକ ଅସଲ କି ଅନ୍ୟ ଜଣକ ଅସଲ, ଏହି କଥାରେ କଳହ ଚାଲେ । ଏହା କୌଣସି ନୂଆ କଥା ନୁହେଁ ।

ସେହି ଦୂତ ଦ୍ୱାରକାରେ ପହଞ୍ଚି, ରାଜସଭାରେ ବସିଥିବା ଶ୍ରୀକୃଷ୍ଣଙ୍କୁ ନିଜ ରାଜାର ସନ୍ଦେଶ ଶୁଣାଇ କହିଲେ, "ମୁଁ ହିଁ ଏକମାତ୍ର ବାସୁଦେବ ଅଟେ । ତୁମେ କିଏ ଯେ ମିଛଟାରେ ନିଜେ ନିଜକୁ ବାସୁଦେବ କହି ବିଷ୍ଣୁ ଭଗବାନଙ୍କର ଆୟୁଧ ତଥା ଚିହ୍ନକୁ ଧାରଣ କରି ବସିଛ ? ମୋର ଶରଣରେ ଆସି ସେ ସମସ୍ତ ମୋତେ ସମର୍ପଣ କରିଦିଅ । ଅନ୍ୟଥା ମୋ ସହିତ ଯୁଦ୍ଧ ନିମନ୍ତେ ପ୍ରସ୍ତୁତ ହୋଇଯାଅ ।" ଏହା ଶୁଣି ସଭାରେ ଉପସ୍ଥିତ ମନ୍ତ୍ରୀଗଣ ତଥା ଉଗ୍ରସେନ ଆଦି ସମସ୍ତେ ହସିବାକୁ ଲାଗିଲେ । ଭଗବାନ ସେହି ଦୂତ କହୁଛନ୍ତି, "ତୁମେ ଯାଇ ନିଜ ରାଜାଙ୍କୁ କହିଦେବ ଯେ ମୁଁ ଏହି ଚିହ୍ନକୁ ଅବଶ୍ୟ ଛାଡ଼ିଦେବି, କିନ୍ତୁ କେବଳ ତୁମ ଉପରେ ନୁହେଁ, ତୁମକୁ ବଳ ଦେଉଥିବା ତୁମର ସାଥିମାନଙ୍କ ଉପରେ ମଧ୍ୟ ଛାଡ଼ିବି ।" ଦୂତ ଯାଇ ରାଜା ପୌଣ୍ଡ୍ରକକୁ ସମସ୍ତ ସମାଚାର କହିଲା । ପୌଣ୍ଡ୍ରକକୁ ସହଯୋଗ କରୁଥିବା କାଶୀ ନରେଶ ମଧ୍ୟ ତାହା ସହିତ ଥିଲେ । କେଜାଣି କାହିଁକି ଶ୍ରୀକୃଷ୍ଣଙ୍କ ପ୍ରତି ତାର ବିରକ୍ତି ଥିଲା । ସେ ପୌଣ୍ଡ୍ରକକୁ କହିଥିଲା, "ଯଦି ଲଢ଼ିବାକୁ ହୁଏ, ମୁଁ ତୁମ ସହିତ ରହିବି ।"

ସେତିକି ବେଳକୁ ଭଗବାନ ପୌଣ୍ଡ୍ରକ ଉପରେ ଆକ୍ରମଣ କରିଦେଲେ । ପୌଣ୍ଡ୍ରକ ସହିତ ତାଙ୍କର ଯୁଦ୍ଧ ହେଲା । ସେ କାଷ୍ଠ ନିର୍ମିତ ଗରୁଡ଼ ଉପରେ ବସି ସମ୍ମୁଖକୁ ତ ଆସିଗଲା, କିନ୍ତୁ ତାହା ରହୁଛି କେଉଁଠି ? ତାହା ଜଳି ସମାପ୍ତ ହୋଇଗଲା । ସ୍ୱୟଂ ସେ ମଧ୍ୟ ମୃତ୍ୟୁ ମୁଖରେ ପଡ଼ିଲା । କିନ୍ତୁ ଏହା ପରେ ଏଠାରେ ଯେଉଁ କଥା ବର୍ଣ୍ଣନ ହୋଇଛି, ତାହା ବିଶେଷ ଧ୍ୟାନ ଦେବାର ଯୋଗ୍ୟ । ତାହା ହେଉଛି - ସେହି ପୌଣ୍ଡ୍ରକର ମଧ୍ୟ ଭଗବତ୍ ରୂପର ପ୍ରାପ୍ତି ହୋଇଗଲା । ସେ ମୂର୍ଖ ଭଳି ନିଜର ରୂପକୁ ଭଗବାନଙ୍କ ସମାନ ମାନୁ ଥାଉନା କାହିଁକି ତଥାପି ତାର ମୁକ୍ତି ହୋଇଗଲା ।

ପ୍ରଥମରୁ ମଧ୍ୟ ଆମ୍ଭେ ଦେଖିଛୁ ଯେ ସ୍ନେହ ଦ୍ୱାରା, ଭୟ ଦ୍ୱାରା, ଦ୍ୱେଷ ଦ୍ୱାରା ଅର୍ଥାତ ଯେକୌଣସି ଭାବରେ କେହି ଯଦି ଭଗବାନଙ୍କୁ ସ୍ମରଣ କରୁଥାଏ, ତେବେ ତାର ମୁକ୍ତି ହୋଇଯାଏ । ରାଜା ପୌଣ୍ଡ୍ରକ ତ ମୂର୍ଖତା ବଶତଃ ହିଁ ଭଗବାନଙ୍କର ରୂପକୁ ଧ୍ୟାନ କରୁଥିଲା, ତଥାପି ମଧ୍ୟ ତାର ସାରୂପ୍ୟ ମୁକ୍ତି ପ୍ରାପ୍ତ ହୋଇଗଲା । ଏପରି ଭଗବାନ ଆମକୁ ଆଉ କେଉଁଠାରେ ମିଳିପାରିବେ ? ପୁଣି ଭଗବାନ ପୌଣ୍ଡ୍ରକ ସହିତ ଯୋଗ ଦେଇଥିବା କାଶୀ ରାଜାଙ୍କୁ ମଧ୍ୟ ବଧ କଲେ ଏବଂ ସେ ଦ୍ୱାରକାକୁ ଫେରି ଆସିଲେ । ନିଜ ପିତାଙ୍କର ମୃତ୍ୟୁର ପ୍ରତିଶୋଧ ନେବା ପାଇଁ କାଶୀରାଜାଙ୍କ ପୁତ୍ର ସୁଦକ୍ଷିଣ ଯେତେବେଳେ ଅଭିଚାର କରି ଦ୍ୱାରକା ପୁରୀରେ ମାହେଶ୍ୱରୀ କୃତ୍ୟା ପଠାଇଲେ, ସେତେବେଳେ ସୁଦର୍ଶନ ଚକ୍ର

ଭଗବାନଙ୍କର ଆଜ୍ଞା ପାଇ କୃତ୍ୟାକୁ ଶକ୍ତିହୀନ କରାଇ ଫେରାଇ ଦେଲେ ଏବଂ ସ୍ୱୟଂ କାଶୀକୁ ଯାଇ କାଶୀ ନରେଶଙ୍କ ନଗରୀ ବାରାଣସୀକୁ ମଧ୍ୟ ଜଳାଇ ଦେଲେ ।

ଏହାପରେ ବଳରାମ ଜୀ ଦ୍ୱିବିଦ ନାମକ ଏକ ଉପଦ୍ରବୀ ମାଙ୍କଡ଼, ଯେ କି ନରକାସୁରର ମିତ୍ର ଥିଲା, ତାକୁ ସଂହାର କଲେ । ପୁଣି ଶ୍ରୀକୃଷ୍ଣ ଜାମ୍ବବତୀଙ୍କ ପୁତ୍ର ଶାମ୍ବ ଯେତେବେଳେ ଦୁର୍ଯ୍ୟୋଧନଙ୍କର କନ୍ୟା ଲକ୍ଷ୍ମଣାଙ୍କୁ ହରଣ କରିନେଲେ, ସେତେବେଳେ ଅନେକ କୌରବ ମିଳିତ ହୋଇ ଶାମ୍ବଙ୍କୁ ବାନ୍ଧି ବନ୍ଦୀଶାଳାରେ ରଖିଦେଲେ । ତେବେ ବଳରାମଜୀ ଯାଇ ଦୁର୍ଯ୍ୟୋଧନ ପ୍ରଭୃତି ସମସ୍ତ କୌରବଙ୍କୁ ନିଜର ଶକ୍ତି ଦର୍ଶାଇଲେ । ସେ ହସ୍ତିନାପୁରକୁ ଦୋହଲାଇ ଦେଲେ । ସେମାନେ ଯେତେବେଳେ ଦେଖିଲେ ଯେ ସେମାନେ ଗଙ୍ଗା ନଦୀରେ ବୁଡ଼ିବାକୁ ଲାଗିଲେଣି, ସେତେବେଳେ ସମସ୍ତ କୌରବ ତାଙ୍କର ଶରଣାପନ୍ନ ହେଲେ । ପୁଣି ସେମାନେ ସମସ୍ତେ ଲକ୍ଷ୍ମଣଙ୍କର ବିବାହ ପ୍ରେମ ଆଦର ପୂର୍ବକ ଶାମ୍ବଙ୍କ ସହିତ ସମ୍ପନ୍ନ କରାଇ ଆନନ୍ଦ, ଉଲ୍ଲାସ ସହିତ ସେମାନଙ୍କୁ ବିଦାୟ ଦେଲେ ।

## ନାରଦ ଜୀ ଭଗବାନଙ୍କର ଗୃହସ୍ଥୀ ଦେଖିବା

ଏହାପରେ ଏକ ସୁନ୍ଦର ପ୍ରସଙ୍ଗର ବର୍ଣ୍ଣନ ଆସେ । ଦିନେ ଦେବର୍ଷି ନାରଦ ଜୀଙ୍କ ମନରେ ବିଚାର ଆସିଲା - ମୁଁ କେତେ ଗୃହସ୍ଥଙ୍କୁ ଦେଖିଛି, ଜଣେ ପତି ଓ ଜଣେ ପତ୍ନୀଙ୍କ ମଧ୍ୟରେ ମୁଁ କେତେ କଳହ, କେତେ ଅଶାନ୍ତି ହେଉଛି । ଜଣେ ପତ୍ନୀକୁ ମଧ୍ୟ ଖୁସିରେ ରଖିବା କଠିନ ହୋଇଯାଏ, ତେବେ ପୁଣି ଏହି ଶ୍ରୀକୃଷ୍ଣ ଷୋହଳ ହଜାର ଶହେ ଆଠ ପତ୍ନୀମାନଙ୍କ ସହିତ କିପରି ରହୁଥିବେ ? ଏହି କୌତୁହଳରେ ପୂର୍ଣ୍ଣ ହୋଇ ସେ ବିଚାର କଲେ ଟିକିଏ ଯାଇ ଦେଖି ଆସିବା ଯେ ଦ୍ୱାରକାରେ ଶ୍ରୀକୃଷ୍ଣଙ୍କର ଏତେ ବଡ଼ ଘର ସଂସାର କିପରି ଚାଲିଛି । ନାରାୟଣ, ନାରାୟଣ କରି କରି ସେ ସେଠାରେ ପହଞ୍ଚିଗଲେ। ନାରଦ ଜୀ ପ୍ରଥମେ ରୁକ୍ମିଣୀଜୀଙ୍କ ମହଲକୁ ଗଲେ । ଭଗବାନ ସେଠାରେ ତାଙ୍କର ସ୍ୱାଗତ କରି କହିଲେ, "ଆସନ୍ତୁ, ଆମର ବଡ଼ ଭାଗ୍ୟ ଯେ ଆପଣ ଆମ ଘରକୁ ଆଜି ଆସିଛନ୍ତି ।" ପୁଣି ଭଗବାନ ତାଙ୍କୁ ବସାଉଛନ୍ତି, ତାଙ୍କର ଚରଣ ଧୋଉଛନ୍ତି ଏବଂ ତାଙ୍କର ପୂଜା କରୁଛନ୍ତି । ପୁଣି କହୁଛନ୍ତି, "ଆଦେଶ କରନ୍ତୁ, ଆମେ ଆପଣଙ୍କର କଣ ସେବା କରିପାରିବା ।" ଯେତେବେଳେ ସେ ଦ୍ୱିତୀୟ ମହଲକୁ ଯାଉଛନ୍ତି, ସେତେବେଳେ ଭଗବାନ କହୁଛନ୍ତି, "ଆରେ ! ନାରଦ ଜୀ ଆପଣ କେତେବେଳେ ଆସିଲେ ? ଆସନ୍ତୁ।" ସେଠାରେ ମଧ୍ୟ ଭଗବାନ ନିଜେ ଉଠି ତାଙ୍କର ସ୍ୱାଗତ କରୁଛନ୍ତି ଏବଂ ପୂଜା ସତ୍କାର କରୁଛନ୍ତି ।

ଭଗବାନଙ୍କର ଅନ୍ତଃପୁରରେ ଗୋଟି ଗୋଟି କରି ସମସ୍ତ ମହଲକୁ ନାରଦ ଜୀ ଗଲେ । ସେଠାରେ ସେ ଦେଖିଲେ ଯେ ଯେତେ ମହଲ, ଯେତେ ରାଣୀ ଅଛନ୍ତି ସେହି ସଂଖ୍ୟକ ଭଗବାନ ଅଛନ୍ତି । ପ୍ରତ୍ୟେକ ମହଲରେ ସେ ଭଗବାନଙ୍କୁ ଭିନ୍ନ ଭିନ୍ନ ରୂପରେ ଦେଖିଲେ । କେଉଁଠାରେ ଭଗବାନଙ୍କୁ ସ୍ନାନ କରୁଥିବାର ଦର୍ଶନ କଲେ ତ କେଉଁଠାରେ ସନ୍ଧ୍ୟା ବନ୍ଦନ କରିବାର ଦେଖିଲେ । କେଉଁଠାରେ ପୂଜା କରୁଛନ୍ତି ତ କେଉଁଠାରେ ବଳିବୈଶ୍ୱଦେବ ଆଦିଙ୍କର ଯଜ୍ଞ କରୁଛନ୍ତି । କେଉଁଠାରେ ଜଳଖିଆ କରୁଥିବାର ଦେଖିଲେ ତ କେଉଁଠାରେ ନିଜ ପତ୍ନୀଙ୍କ ସହିତ କଥାବାର୍ତ୍ତା କରୁଥିବା ଦେଖିଲେ । କେଉଁଠାରେ ଭଗବାନ ନିଜର ସୁଧର୍ମା ନାମକ ସଭାକୁ ଯିବା ନିମନ୍ତେ ପ୍ରସ୍ତୁତ ହୋଇ ଠିଆ ହୋଇଛନ୍ତି। କେଉଁଠାରେ ଏପରି ମଧ୍ୟ ଦେଖିଲେ ଯେ ଭଗବାନଙ୍କ ନିକଟକୁ କିଛି ଲୋକ ଆସିଛନ୍ତି ଏବଂ ଭଗବାନ ସେମାନଙ୍କ ସହିତ ବାର୍ତ୍ତାଳାପ କରୁଛନ୍ତି । ଏହିଭଳି ସେ ଗୋଟିଏ ଗୋଟିଏ ମହଲକୁ ଯାଇଛନ୍ତି । ଯେଉଁ ମହଲକୁ ଯାଉଛନ୍ତି, ସେଠାରେ ଶ୍ରୀକୃଷ୍ଣଙ୍କୁ ଦେଖୁଛନ୍ତି। ଏ ସବୁ ଦେଖି ନାରଦ ଜୀଙ୍କର ମୁଣ୍ଡ ଘୂରିଗଲା - ଏହା ସବୁ କ'ଣ ? ଏତେ ମହଲ, ଏତେ ସ୍ତ୍ରୀ ଏବଂ ଏତେ ଶ୍ରୀକୃଷ୍ଣ ? ସେ ବୁଝିଗଲେ । କହିବାକୁ ଲାଗିଲେ, "ନମସ୍ତେ ଅସ୍ତୁ ଭଗବନ୍ - ଭଗବାନ ! ଆପଣଙ୍କ ନମସ୍କାର ! ଆପଣଙ୍କ ମାୟାକୁ ନମସ୍କାର ।"ଏକାଠି ଏତେ ପତ୍ନୀମାନଙ୍କୁ କିପରି ଖୁସି ରଖି ରହୁଥିବେ ? ଆପଣଙ୍କ ପ୍ରତି ଏପରି ଶଙ୍କା କରିବା ବ୍ୟର୍ଥ ଅଟେ, ମୂର୍ଖତା ଅଟେ ।

ଏଠାରେ ବର୍ଣ୍ଣନ ଆସେ ଯେ ଭଗବାନ ଅତି ନିୟମ ନିଷ୍ଠ ଥିଲେ । ସେ ପ୍ରାତଃ ସମୟରେ ଶୀଘ୍ର ଉଠୁଥିଲେ ଏବଂ ଉଠୁ ଉଠୁ ହିଁ ଆତ୍ମ ଜ୍ୟୋତିର ଧ୍ୟାନ କରୁଥିଲେ । ଏହା ପରେ ହିଁ ଅନ୍ୟ ସମସ୍ତ କାର୍ଯ୍ୟକୁ ଗୋଟିଏ ପରେ ଗୋଟିଏ କ୍ରମବଦ୍ଧ ରୀତିରେ ଅନୁଶାସନ ପୂର୍ବକ କରୁଥିଲେ । ଭଗବାନଙ୍କର ଗୃହଚର୍ଯ୍ୟା ଏହିପରି ଥିଲା ।

## ଜରାସନ୍ଧର ବନ୍ଦୀ ରାଜାମାନଙ୍କର ଦୂତଙ୍କ ଆଗମନ

ଦିନେ ଭଗବାନ ନିଜର ସୁଧର୍ମା ସଭାରେ ବସିଥିଲେ । ସେତିକିବେଳେ ଜଣେ ଦୂତ ଆସି କହୁଛି - "ଜରାସନ୍ଧ ଦ୍ୱାରା ବନ୍ଦୀ ହୋଇଥିବା ରାଜାମାନଙ୍କ ପକ୍ଷରୁ କେହି ଜଣେ ଆପଣଙ୍କ ନିକଟରେ କିଛି ପ୍ରାର୍ଥନା କରିବାକୁ ଆସିଛି ।" ତାଙ୍କୁ ଡକା ହେବାରୁ ସେ ଭଗବାନ ଶ୍ରୀକୃଷ୍ଣଙ୍କୁ କହୁଛି ଯେ ସେହି ରାଜାମାନେ ନିବେଦନ କରିଛନ୍ତି ଯେ, ସେମାନେ ଆପଣଙ୍କର ଶରଣ ଗ୍ରହଣ କରିଛନ୍ତି । ଆପଣ କୃପା କରି ସେମାନଙ୍କୁ ଜରାସନ୍ଧର ବନ୍ଦୀ ଗୃହରୁ ମୁକ୍ତ କରନ୍ତୁ । ସେହି ସମୟରେ ଦେବର୍ଷି ନାରଦ ଜୀ ମଧ୍ୟ ସୁଧର୍ମା ସଭାରେ

ପ୍ରବିଷ୍ଟ ହେଉଛନ୍ତି । ଭଗବାନ ତାଙ୍କ ଚରଣରେ ବନ୍ଦନ ପୂର୍ବକ ତାଙ୍କୁ ବିଶ୍ୱର ସମାଚାର ପଚାରୁଛନ୍ତି, ବିଶେଷ ଭାବେ ପାଣ୍ଡବମାନଙ୍କର କୁଶଳ ପଚାରୁଛନ୍ତି । ସେତେବେଳେ ନାରଦ ଜୀ କହୁଛନ୍ତି ଯେ ଧର୍ମରାଜ ଯୁଧିଷ୍ଠିର ରାଜସୂୟ-ଯଜ୍ଞ ଦ୍ୱାରା ଆପଣଙ୍କର ଆରାଧନା କରିବାକୁ ଚାହୁଁଛନ୍ତି । ଆପଣ ତାଙ୍କର ଇଚ୍ଛାକୁ ଅନୁମୋଦନ କରନ୍ତୁ ।

ସେତେବେଳେ ଭଗବାନ ବିଚାର କରିବାକୁ ଲାଗିଲେ ଏବେ କ'ଣ କରିବା ? ଗୋଟିଏ ପାଖରେ ଜରାସନ୍ଧଠାରୁ ବନ୍ଧନରୁ ମୁକ୍ତ କରାଇବା ନିମନ୍ତେ ରାଜାମାନଙ୍କର ନିବେଦନ ଏବଂ ଅନ୍ୟ ପାଖରେ ଯୁଧିଷ୍ଠିରଙ୍କର ନିମନ୍ତ୍ରଣ । ଏବେ କଣ କରାଯାଇପାରେ ? ଭଗବାନ ଉଦ୍ଧବଜୀଙ୍କୁ କହୁଛନ୍ତି, "ତୁମେ ମୋର ନେତ୍ର ସମାନ ଅଟ, ତୁମେ ହିଁ କୁହ, ଏହି ସମୟରେ ଆମେ କଣ କରିବା ଉଚିତ୍ ? ପ୍ରଥମେ ଯୁଧିଷ୍ଠିରଙ୍କ ନିକଟକୁ ଯିବା ଉଚିତ୍ ଅଥବା ପ୍ରଥମେ ଜରାସନ୍ଧ ସହିତ ଯୁଦ୍ଧ କରି ସେହି ରାଜାମାନଙ୍କୁ ମୁକ୍ତ କରିବା ଉଚିତ୍ ? ସେତେବେଳେ ଉଦ୍ଧବଜୀ, ପ୍ରଥମେ ସମସ୍ତ ସଭାସଦ୍‌ମାନଙ୍କୁ ପଚାରିଲେ ଏବଂ ତାପରେ ହିଁ ପୁଣି ନିଜର ନିର୍ଣ୍ଣୟ ଶୁଣାଇଲେ ଯେ ପ୍ରଥମେ ଆମକୁ ଯୁଧିଷ୍ଠିରଙ୍କ ନିକଟକୁ ଯିବା ଉଚିତ୍ । ସେ ରାଜସୂୟ-ଯଜ୍ଞ କରିବେ । ସେହି ଯଜ୍ଞ ନିମନ୍ତେ ଯେଉଁ ଦିଗବିଜୟ ପ୍ରାପ୍ତ କରିଯିବ, ସେଥିରେ ଜରାସନ୍ଧ ଉପରେ ମଧ୍ୟ ବିଜୟ ପ୍ରାପ୍ତ କରାଯିବ । ତାପରେ ସେହି ବନ୍ଦୀରାଜାମାନଙ୍କର ନିବେଦନ ମଧ୍ୟ ଅନାୟାସରେ ପୂରଣ ହୋଇଯିବ । ସେମାନଙ୍କୁ ବନ୍ଧନରୁ ମୁକ୍ତି ମିଳିବ । ଭଗବାନ କହିଲେ, "ଠିକ୍ ଅଛି, ଏପରି ହିଁ କରିବା ।"

## ଇନ୍ଦ୍ରପ୍ରସ୍ଥ ନିମନ୍ତେ ପ୍ରସ୍ଥାନ

ଭଗବାନ ସମସ୍ତ ସମ୍ବନ୍ଧି ତଥା ସେନାମାନଙ୍କୁ ମଧ୍ୟ ସଙ୍ଗରେ ନେଇ ଇନ୍ଦ୍ରପ୍ରସ୍ଥ ଆଡ଼କୁ ଯାତ୍ରା କଲେ । ସେଠାରେ ପଞ୍ଚ ପାଣ୍ଡବ, କୁନ୍ତୀ ମାତା, ଦ୍ରୌପଦୀ, ସୁଭଦ୍ରା ପ୍ରଭୃତି ସମସ୍ତଙ୍କ ସହିତ ଭଗବାନ ତଥା ତାଙ୍କର ସମସ୍ତ ପତ୍ନୀମାନେ ଅତି ପ୍ରେମପୂର୍ବକ ଭେଟିଲେ ଏବଂ ଭଗବାନ ସେଠାରେ କିଛି ମାସ ପର୍ଯ୍ୟନ୍ତ ରହି ସମସ୍ତଙ୍କୁ ଆନନ୍ଦିତ କଲେ । ଦିଗବିଜୟର ସ୍ଥାପନା ନିମନ୍ତେ ଯୁଧିଷ୍ଠିର ଚାରିଦିଗକୁ ନିଜର ଚାରିଭାଇଙ୍କୁ ପଠାଇଲେ । ଯେତେବେଳେ ସେ ଜାଣିଲେ ଯେ ଅନ୍ୟ ସମସ୍ତ ରାଜାମାନେ ତ ତାଙ୍କର ବଶରେ ଅଛନ୍ତି, କିନ୍ତୁ ଜରାସନ୍ଧ ଏ ପର୍ଯ୍ୟନ୍ତ ତାଙ୍କ ବଶୀଭୂତ ହୋଇନାହିଁ ତ ସେ ଚିନ୍ତା କରିବାକୁ ଲାଗିଲେ ।

## ଜରାସନ୍ଧର ଉଦ୍ଧାର

ତେବେ ଦ୍ୱାରକାରୁ ବାହାରିବା ସମୟରେ, ଉଦ୍ଧବ ଜୀ ଜରାସନ୍ଧକୁ ଜୟ କରିବାର ଯେଉଁ ଉପାୟ କହିଥିଲେ, ସେହି ଅନୁଯାୟୀ ଭଗବାନ ଶ୍ରୀକୃଷ୍ଣ, ଭୀମ ତଥା ଅର୍ଜୁନଙ୍କୁ

ସଙ୍ଗରେ ନେଇ ବ୍ରାହ୍ମଣ ବେଶ ଧାରଣ କରି ଜରାସନ୍ଧର ମହଲରେ ପହଞ୍ଚିଲେ । ଜରାସନ୍ଧର ଏକ ନିୟମ ଥିଲା ଯେ, ପ୍ରତିଦିନ ନିଜର ପୂଜା ଆଦି ପରେ ଏବଂ ଭୋଜନ ପୂର୍ବରୁ ସେ ନିଜର ଅତିଥିମାନଙ୍କର ଇଚ୍ଛା ପୂର୍ଣ୍ଣ କରୁଥିଲା । ତେବେ ନିଜର ସେହି ନିୟମ ଅନୁଯାୟୀ ଜରାସନ୍ଧ ସେମାନଙ୍କୁ ପଚାରୁଛି, "ଆପଣମାନଙ୍କର କ'ଣ ଆବଶ୍ୟକ ? ଆପଣ କ'ଣ ଭିକ୍ଷା ନେବେ ?" ସେମାନେ କହିଲେ, "ଆମେ ଯୁଦ୍ଧ ଭିକ୍ଷା ଚାହୁଁଛୁ ।" ଆରେ । ବ୍ରାହ୍ମଣ ହୋଇ ଯୁଦ୍ଧ କରୁଛ ? ଭଗବାନ କହିଲେ – ଆମେ ବ୍ରାହ୍ମଣ ନୁହେଁ । ତତ୍କ୍ଷଣାତ ନିଜର ପ୍ରକୃତ ରୂପ ପ୍ରକଟ କରି ସେମାନଙ୍କୁ କହୁଛନ୍ତି – ଏ ହେଉଛନ୍ତି ଭୀମ ଏବଂ ଅର୍ଜୁନ, ଏବଂ ମୁଁ ଶ୍ରୀକୃଷ୍ଣ । ସେତେବେଳେ ଜରାସନ୍ଧ ଶ୍ରୀକୃଷ୍ଣଙ୍କୁ କହୁଛନ୍ତି, "ତୁମେ ତ ଏକ ନମ୍ବର ଡରକୁଳା । ତୁମେ ରଣଭୂମିରୁ ପଳାୟନ କରିଥିଲ । ମୁଁ ତୁମ ସହିତ ଯୁଦ୍ଧ କରିବି ନାହିଁ।" ପୁଣି ଭୀମଙ୍କ ଆଡ଼କୁ ଅନାଇ ସେ କହୁଛନ୍ତି, "ହଁ, ଏଇ ଲୋକଟା ଠିକ ଲାଗୁଛି, ମୁଁ ଏହା ସହିତ ହିଁ ଯୁଦ୍ଧ କରିବି ।" ସେତେବେଳେ ଭୀମସେନ ଓ ଜରାସନ୍ଧ – ଏ ଦୁହିଁଙ୍କ ମଧ୍ୟରେ ମଲ୍ଲଯୁଦ୍ଧ ହେଉଛି । ଜଣେ ଅନ୍ୟ ଜଣଙ୍କ ଆଡ଼କୁ ମାଡ଼ି ଯାଉଛନ୍ତି ।

ସେ ଦୁହିଁଙ୍କ ମଧ୍ୟରେ ସତାଇଶ ଦିନ ପର୍ଯ୍ୟନ୍ତ ଯୁଦ୍ଧ ଚାଲିଲା । ସେତେବେଳକୁ ଭୀମସେନ ଥକିଗଲେଣି । ଏବେ କଣ କରାଯାଇପାରେ, ସେ ବୁଝିପାରୁ ନ ଥିଲେ । ତେଣୁ ଅଠାଇ ଦିନରେ ଭୀମସେନ ଭଗବାନଙ୍କ ଆଡ଼କୁ ଚାହିଁଲେ, ସତେ ଯେପରି ସେ ଶ୍ରୀକୃଷ୍ଣଙ୍କୁ କହୁଛନ୍ତି ଯେ ମୁଁ ମୋର ଶକ୍ତି ଦ୍ୱାରା ଜରାସନ୍ଧକୁ ଜିତି ପାରିବି ନାହିଁ । ସେତେବେଳେ ଭଗବାନ ତାଙ୍କୁ (ଭୀମଙ୍କ) ଭିତରେ ନିଜର ଶକ୍ତିକୁ ସଞ୍ଚାର କରିଦେଲେ, ଏବଂ ପୁଣି ଏକ କାଠି ଖଣ୍ଡକୁ ମଝିରୁ ଚିରି ଦେଖାଇଦେଲେ – ତୁମେ ସେହିପରି ତାକୁ ଚିରି ପକାଅ । ତେବେ ହିଁ ତାର ବଧ ସମ୍ଭବ ହେବ । ଅନ୍ୟଥା ତାର ମୃତ୍ୟୁ ଅସମ୍ଭବ । ଏତିକି ବୁଝିଗଲା ପରେ ତତ୍କ୍ଷଣାତ୍ ଭୀମସେନ ତାକୁ ଭୂମି ଉପରେ ପକାଇ ଦେଲେ ଏବଂ ତାର ଗୋଟିଏ ପାଦରେ ନିଜର ଗୋଟିଏ ପାଦ ରଖି ଅନ୍ୟ ପାଦକୁ ଧରି ଚିରି ଦେଲେ ।

ଦେଖନ୍ତୁ, ଜରାସନ୍ଧ ଦୁଇଖଣ୍ଡ ହୋଇ ଜନ୍ମ ହୋଇଥିଲା, ତାକୁ ଜରା ନାମକ ରାକ୍ଷସୀ ଯୋଡ଼ି ଦେଇଥିଲା । ତେଣୁ ଭଗବାନଙ୍କର ନିର୍ଦ୍ଦେଶ ଅନୁସାରେ ତାକୁ ଦୁଇଭାଗ କରି ବଧ କରିବା ହିଁ ସମ୍ଭବ ଥିଲା । ଅନ୍ୟଥା ତାର ମୃତ୍ୟୁ ସମ୍ଭବ ନ ଥିଲା । ବାସ୍ତବରେ ଜରାସନ୍ଧ ହେଉଛି ଆମର କର୍ମବନ୍ଧନ, ଦେହାଧ୍ୟାସ ଅଟେ । ତାହାର ନାଶ ଜଡ଼ ଚେତନ ବିବେକ ବିନା ହେବା ସମ୍ଭବ ନୁହେଁ । ଏହା ହିଁ ଏହି ପ୍ରସଙ୍ଗର ଆଧ୍ୟାତ୍ମିକ ରହସ୍ୟ ।

ଜରାସନ୍ଧର ମୃତ୍ୟୁପରେ, ତା ଦ୍ୱାରା ବନ୍ଦି ହୋଇଥିବା ସମସ୍ତ ରାଜାମାନଙ୍କୁ ଭଗବାନ

ଶ୍ରୀକୃଷ୍ଣ ବନ୍ଧନରୁ ମୁକ୍ତ କରିଦେଲେ । ସେମାନଙ୍କୁ ତାଙ୍କ ଧନ-ସମ୍ପତ୍ତି ମଧ୍ୟ ପ୍ରଦାନ କଲେ। ଏହି ବିଜୟ ସହିତ ଦିଗ୍‌ବିଜୟ ମଧ୍ୟ ପୂର୍ଣ୍ଣ ହୋଇଗଲା । ଏବେ ଭଗବାନ ଶ୍ରୀକୃଷ୍ଣ, ଭୀମସେନ ତଥା ଅର୍ଜ୍ଜୁନ ପାଣ୍ଡବମାନଙ୍କ ନିକଟକୁ ଇନ୍ଦ୍ରପ୍ରସ୍ଥ ଫେରି ଆସୁଛନ୍ତି । ସେ ସମସ୍ତ ରାଜାମାନେ ମଧ୍ୟ ଭଗବାନଙ୍କର ଭକ୍ତ ହୋଇ ତାଙ୍କ ସହିତ ସେହି ଯଜ୍ଞକୁ ଯାଉଛନ୍ତି । ବର୍ତ୍ତମାନ ସମସ୍ତେ ଏଥିରେ ପ୍ରସନ୍ନ ଅଛନ୍ତି ।

## ଭଗବାନ ଶ୍ରୀକୃଷ୍ଣଙ୍କର ଅଗ୍ରପୂଜା ଏବଂ ଶିଶୁପାଳର ଉଦ୍ଧାର

ଯୁଧିଷ୍ଠିରଙ୍କ ଦ୍ୱାରା ଆମନ୍ତ୍ରିତ ଋଷି-ମୁନି, ଦେବତାଗଣ, ଭୀଷ୍ମ ପିତାମହ, ଦ୍ରୋଣାଚାର୍ଯ୍ୟ, ଧୃତରାଷ୍ଟ୍ର, ତାଙ୍କର ପୁତ୍ର, ବିଦୁର, କୃପାଚାର୍ଯ୍ୟ ପ୍ରଭୃତି ସମସ୍ତେ ସେଠାରେ ଉପସ୍ଥିତ ଥିଲେ । ଯଜ୍ଞୋଚିତ ସମୟରେ ଯାଜକମାନେ ଯୁଧିଷ୍ଠିରଙ୍କ ଦ୍ୱାରା ବିଧିପୂର୍ବକ ରାଜସୂୟ-ଯଜ୍ଞ କରାଇଲେ । ପୁଣି ଯୁଧିଷ୍ଠିର ସେ ସମସ୍ତଙ୍କର ପୂଜନ କଲେ । ରାଜସୂୟ ଯଜ୍ଞରେ, ସଦସ୍ୟମାନଙ୍କ ମଧ୍ୟରେ ସବୁଠାରୁ ଶ୍ରେଷ୍ଠ ପୁରୁଷର ପୂଜା "ଅଗ୍ରପୂଜା'ର ବିଧାନ ହୋଇଥାଏ । ତଦନୁସାରେ ଏବେ ଅଗ୍ରପୂଜା ହେବାର ଥିଲା, ତେବେ ବିଚାର ହେବାକୁ ଲାଗିଲା ଯେ କାହାର ଅଗ୍ରପୂଜା ହେବ? କାରଣ ସେଠାରେ ଭୀଷ୍ମ ପିତାମହ ଆଦି ବଡ଼ - ବଡ଼ ମହାନୁଭବମାନେ ଉପସ୍ଥିତ ଥିଲେ । ପାଞ୍ଚ ପାଣ୍ଡବମାନଙ୍କ ମଧ୍ୟରେ ସହଦେବଙ୍କୁ ବଡ଼ ବୁଦ୍ଧିମାନ ରୂପେ ମାନ୍ୟତା ଦିଆଯାଉଥିଲା । ଯେତେବେଳେ ଦେଖିଲେ ଯେକୌଣସି ନିର୍ଣ୍ଣୟ ହୋଇପାରୁନାହିଁ, ସେତେବେଳେ ସହଦେବ କହିଲେ ଯେ ଅଗ୍ରପୂଜା ନିମନ୍ତେ ସବୁ ଦୃଷ୍ଟିରୁ ଯୋଗ୍ୟ ତ ଶ୍ରୀକୃଷ୍ଣ ହିଁ ଅଟନ୍ତି । ତେଣୁ ତାଙ୍କର ହିଁ ପୂଜା ହେବା ଉଚିତ୍ । ଭୀଷ୍ମ ପିତାମହ ଆଦି ସମସ୍ତ ଶ୍ରେଷ୍ଠ ପୁରୁଷମାନେ ଏହି ପ୍ରସ୍ତାବରେ ତୁରନ୍ତ ସମ୍ମତି ପ୍ରଦାନ କଲେ। କହିଲେ - ହଁ, ଅଗ୍ରପୂଜା ନିମନ୍ତେ ଶ୍ରୀକୃଷ୍ଣ ହିଁ ସର୍ବଦା ଯୋଗ୍ୟ ଅଟନ୍ତି । ତାପରେ ରତ୍ନଦ୍ୱାରା ସୁଶୋଭିତ ସିଂହାସନରେ ତାଙ୍କୁ ଆରୂଢ଼ କରାଗଲା। ପୁଣି ଯୁଧିଷ୍ଠିର ମହାରାଜା ତାଙ୍କର ଚରଣ କମଳକୁ ଧୋଇ, ତାଙ୍କର ଚରଣାମୃତକୁ ନିଜ ମସ୍ତକରେ ଲଗାଇଲେ । ବସ୍ତ୍ରାଭୂଷଣ ସମର୍ପିତ କରି ଭଗବାନଙ୍କର ପୂଜା କଲେ । ସମସ୍ତ ଲୋକ ନମୋ ନମଃ କହି ପ୍ରଣାମ କରିବାକୁ ଲାଗିଲେ ଏବଂ ଜୟ ଜୟକାର କରିବାକୁ ଲାଗିଲେ । ସେତେବେଳେ ଆକାଶରୁ ପୁଷ୍ପବୃଷ୍ଟି ମଧ୍ୟ ହେବାକୁ ଲାଗିଲା ।

ସେତେବେଳେ ଶିଶୁପାଳ ଠିଆ ହୋଇ କହିବାକୁ ଲାଗିଲା ଯେ ଏଠାରେ ଏତେ ବଡ଼-ବଡ଼ ଲୋକ, ରାଜା-ମହାରାଜା ଜ୍ଞାନୀ ତପସ୍ୱୀ ସମସ୍ତେ ଉପସ୍ଥିତ ଅଛନ୍ତି, ତାଙ୍କର ସମକକ୍ଷ ଗୋକୁଳରେ ଗାଈ ଚରାଉଥିବା ଏହି ଶ୍ରୀକୃଷ୍ଣଙ୍କର କଣ ଶ୍ରେଷ୍ଠତା ଅଛି ? ଇଏ

ତ ମିଥ୍ୟା କହୁଛି, ଚୋରି କରୁଛି, ସମସ୍ତ ପ୍ରକାର ଅନୁଚିତ କାର୍ଯ୍ୟ କରୁଛି । ଏହି ସମ୍ମାନ ନିମନ୍ତେ ଇଏ କୌଣସି ଦୃଷ୍ଟିରୁ ମଧ୍ୟ ଯୋଗ୍ୟ ନୁହନ୍ତି । ତାଙ୍କର ପୁଣି ପୂଜା କରୁଛ ?

ଏଠାରେ ବର୍ଣ୍ଣନ ଆସେ ଯେ ଶିଶୁପାଳର ଯେତେବେଳେ ଜନ୍ମ ହେଲା, ସେତେବେଳେ ତାର ରୂପ ବଡ଼ ବିଚିତ୍ର ଥିଲା ଏବଂ ତାର ଚାରୋଟି ହାତ ଥିଲା । ତା ମା'ଙ୍କୁ ଜଣାଥିଲା ଯେ ଯାହାର କୋଳକୁ ଗଲେ ତାର ଦୁଇଟି ଅତିରିକ୍ତ ହାତ ଗଳିତ ହୋଇଯିବ ଏବଂ କେବଳ ଦୁଇଟି ହାତ ରହିବ, ସେହି ବ୍ୟକ୍ତି ଦ୍ୱାରା ତାର ମରଣ ହେବ। ତେଣୁ ଯିଏ ଆସୁଥିଲା ମା ତାର କୋଳରେ ଶିଶୁପାଳକୁ ଦେଉଥିଲେ । ଶିଶୁପାଳ ଶିଶୁଥିଲା ବେଳେ ଥରେ ଭଗବାନ ଶ୍ରୀକୃଷ୍ଣ ମଧ୍ୟ ସେଠାରେ ପହଞ୍ଚିଗଲେ । ସେତେବେଳେ ତାଙ୍କର ମା' ଶିଶୁପାଳକୁ ଶ୍ରୀକୃଷ୍ଣଙ୍କ କୋଳରେ ଦେଲେ । ତା ପରେ ତା'ର ଦୁଇଟି ହାତ ଗଳି ପଡ଼ିଲା ଏବଂ ଦୁଇଟି ହସ୍ତ ହିଁ ରହିଲା । ମା' ବୁଝିଗଲେ ଏହାଙ୍କ ହସ୍ତରେ ହିଁ ମୋର ପୁତ୍ରର ମୃତ୍ୟୁ ହେବ । ସେ କହିଲେ, "ଭଗବାନ ଆପଣ ଏହି ଶିଶୁ ପ୍ରତି କୃପା କରନ୍ତୁ । ଏହାକୁ ମାରିବେ ନାହିଁ ।" ସେତେବେଳେ ଭଗବାନ ତାଙ୍କୁ କହି ଦେଇଥିଲେ ଯେ ପୂର୍ଣ୍ଣ ସଭାରେ ଏହାର ଅନେଶୋତ ଭୁଲକୁ ତ ମୁଁ କ୍ଷମା କରିଦେବି, ପରନ୍ତୁ ଯେତେବେଳେ ଏହାର ଶତ ଅପରାଧ ପୂର୍ଣ୍ଣ ହୋଇଯିବ ସେତେବେଳେ ମୋର ସୁଦର୍ଶନ ଚକ୍ର ଏହାର ମୁଣ୍ଡକୁ କାଟିଦେବ। ମା' କହିଲେ - ଆଚ୍ଛା, ଠିକ ଅଛି । ସେହି ଦିନଠାରୁ ସେ ପ୍ରାୟ ଶିଶୁପାଳକୁ କହିଛନ୍ତି - ଦେଖ ପୁତ୍ର, ତୁମେ ତାଙ୍କୁ ଗାଳି ଦେବ ନାହିଁ, ନଚେତ ତୋର ମସ୍ତକ ଛେଦନ ହେବ । କିନ୍ତୁ ମନରେ ଯେତେବେଳେ ଦ୍ୱେଷ ପୂର୍ଣ୍ଣ ହୋଇଯାଏ, ସେତେବେଳେ କୌଣସି କଥା କ'ଣ ବୁଝିହୁଏ କି ? ଦେଖନ୍ତୁ, ଏହି ଶିଶୁପାଳ କିଏ ? ସେ ହିଁ ଜୟ, ବିଜୟ ଯେ କି ହିରଣ୍ୟାକ୍ଷ ଏବଂ ହିରଣ୍ୟକଶିପୁ ହୋଇଥିଲେ, ରାବଣ-କୁମ୍ଭକର୍ଣ୍ଣ ହୋଇଥିଲେ, ସେହି ଦୁଇଜଣ ହିଁ ଏବେ ଶିଶୁପାଳ-ଦନ୍ତବକ୍ତ୍ର ହୋଇ ଜନ୍ମ ନେଲେ । ଏହା ସେମାନଙ୍କର ତୃତୀୟ ଜନ୍ମ ଥିଲା ।

ଏବେ ପୂର୍ଣ୍ଣ ସଭାରେ ଶିଶୁପାଳ ଭଗବାନଙ୍କ ପ୍ରତି ଅପଶବ୍ଦ କହି ଚାଲିଛି । ଭଗବାନ ଚୁପ୍‌ଚାପ ବସିଛନ୍ତି । କେବଳ ଗଣି ଚାଲିଥିଲେ, ଅନେଶତ ଅପଶବ୍ଦ ହୋଇଗଲା। ତଥାପି ମଧ୍ୟ ଶ୍ରୀକୃଷ୍ଣ ଶାନ୍ତ ଭାବରେ ବସିଛନ୍ତି, କିଛି କରୁନାହାନ୍ତି । ଏହା ଦେଖି ଶିଶୁପାଳର ସାହାସ ବଢ଼ିଗଲା। ତାକୁ ଲାଗୁଥିଲା, ଏ ମୋତେ ଡରୁଛନ୍ତି । ସେତିକିବେଳେ ଯେତେବେଳେ ସେ ପୁନର୍ବାର ଅପଶବ୍ଦ କହିବାକୁ ଲାଗିଲା (ଶତ ଅପରାଧ କରିବା ଦ୍ୱାରା) ସେତେବେଳେ ଭଗବାନ ନିଜର ଚକ୍ର ତା ଆଡ଼କୁ ଛାଡ଼ିଦେଲେ । ସେହି ଚକ୍ର ଯାଇ ଶିଶୁପାଳର ମସ୍ତକକୁ କାଟିଦେଲା । ସଭାରେ ସମସ୍ତେ ଦେଖୁ ଦେଖୁ ତାର ଶରୀରରୁ

ଏକ ଜ୍ୟୋତି ବାହାରି ଭଗବାନଙ୍କଠାରେ ଲୀନ ହୋଇଗଲା । ଶିଶୁପାଳର ମୁକ୍ତି ହୋଇଗଲା। ସମସ୍ତଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ସେମାନେ ସମସ୍ତେ ବିସ୍ମିତ ହୋଇ ରହିଗଲେ। ଏହାଦ୍ୱାରା ସେଠାରେ ଉପସ୍ଥିତ ସମସ୍ତ ଲୋକଙ୍କର ଏହା ସ୍ପଷ୍ଟ ହୋଇଗଲା ଯେ ଶ୍ରୀକୃଷ୍ଣ ତ ଈଶ୍ୱର ହିଁ ଅଟନ୍ତି । ପୁଣି ଯଜ୍ଞର ସମାପ୍ତିରେ ଅବଭୃଥ ସ୍ନାନ ହେଲା । ଏହିଭଳି ଭାବରେ ରାଜସୂୟ-ଯଜ୍ଞ ସମ୍ପନ୍ନ ହେଲା ।

ଆମେ ପୂର୍ବରୁ ମଧ୍ୟ (ପ୍ରଥମ ସ୍କନ୍ଧରେ) ଦେଖିଛନ୍ତି, ଯେତେବେଳେ ନାରଦ ଯୁଧିଷ୍ଠିରଙ୍କୁ କହୁଛନ୍ତି ଯେ କେହି ଯଦି ଦ୍ୱେଷ ପୂର୍ବକ ଭାବନାରେ ମଧ୍ୟ ଭଗବାନଙ୍କୁ ଚିନ୍ତନ କରେ, ତଥାପି ମଧ୍ୟ ତାର ମୁକ୍ତି ହୋଇଯାଏ । ସେତେବେଳେ ଯୁଧିଷ୍ଠିର ବଡ଼ ଆଶ୍ଚର୍ଯ୍ୟ ହୋଇଥିଲେ । ଏଠାରେ ଗୋଟିଏ କଥା ପ୍ରତି ଧ୍ୟାନ ଦେବା ଉଚିତ। ଶିଶୁପାଳର ଶରୀରରୁ ଜ୍ୟୋତି ବାହାରିଲା ଏବଂ ଭଗବାନଙ୍କଠାରେ ଲୀନ ହୋଇଗଲା । ତେବେ ପୁଣି ଭଗବାନ ଓ ଶିଶୁପାଳଙ୍କ ମଧ୍ୟରେ କଣ ଭେଦ ରହିଲା ? କୌଣସି ଭେଦ ରହିଲା ନାହିଁ ତ? ଦେଖନ୍ତୁ, ସେହି ଶିଶୁପାଳ ସଦା ସର୍ବଦା କଳି-ଝଗଡ଼ା କରୁଥିଲା, ତେବେ କାହା ସହିତ କରୁଥିଲା ? ବାସ୍ତବରେ ସେ ନିଜ ସହିତ ହିଁ କରୁଥିଲା । ଏହିଭଳି ଭାବରେ ସମଗ୍ର ଜଗତରେ ସବୁ ଲୋକମାନେ ନିଜ ସହିତ ହିଁ କଳି, ଝଗଡ଼ା କରୁଥାଆନ୍ତି ।

ଆରେ ଭାଇ, ସାମାନ୍ୟ ବିଚାର କରନ୍ତୁ, ଯେତେବେଳେ କହିଥାଉ, ଇଏ ମୋର ମିତ୍ର ଅଟେ ଏବଂ ଇଏ ମୋର ଶତ୍ରୁ ଅଟେ, ତେବେ ସେ ଦୁଇଜଣ ମୋର ହେଲେ କି ନାହିଁ । କେବେ ମିତ୍ରକୁ ଆମେ ନିଜର କହୁଛୁ । କିନ୍ତୁ ତା ସହିତ ଶତ୍ରୁକୁ ମଧ୍ୟ ନିଜର ହିଁ କହିଥାଉ ନା? ପ୍ରତ୍ୟେକଙ୍କୁ ନିଜର ବସ୍ତୁ ପ୍ରତି ପ୍ରେମ ତ ହୋଇଥାଏ । ଏହିଭଳି ଦେଖିଲେ ମଧ୍ୟ, ଯେତେବେଳେ ଆମେ କେବେ ଆମ୍ଭର ଶତ୍ରୁ ସହିତ କଳି-ଝଗଡ଼ା କରିଥାଉ, ତେବେ ବାସ୍ତବରେ ନିଜ ସହିତ ହିଁ ତ କଳି କରିଥାଉ । ତାହା କିପରି ? ସାମାନ୍ୟ ବିଚାର କରନ୍ତୁ, ଶତ୍ରୁକୁ ମଧ୍ୟ କିଏ ତିଆରି କଲା? ଆମେ ହିଁ ତିଆରି କରିଛୁ । ଆମେ ସ୍ୱୟଂ ଶତ୍ରୁକୁ ତିଆରି କରି, ପୁଣି ତା ସହିତ କଳି-ଝଗଡ଼ା କରିବାରେ ଲାଗିଥାଉ। ଏ ସମସ୍ତ ନିଜ ମନର ହିଁ କଳ୍ପନା ଅଟେ । ଆମେ ଜବରଦସ୍ତୀ ଭେଦ ସୃଷ୍ଟି କରିଥାଉ । ଏହା ବିଚାର କରିବା ଉଚିତ ଯେ ଆମ୍ଭେ ଯେଉଁ ଦ୍ୱେଷ କରୁଅଛୁ, ତାହା କାହା ସହିତ କରୁଅଛୁ ? କୌଣସି ବ୍ୟକ୍ତି ଅନ୍ୟ ସହିତ ଦ୍ୱେଷ କରିପାରିବ ହିଁ ନାହିଁ । ଆମେ ନିଜ ମନର କଳ୍ପନା ଜନିତ ଦ୍ୱେଷକୁ ହିଁ ଅନ୍ୟ ଉପରେ ଆରୋପ କରିଥାଉ ଏବଂ ପୁଣି ତା ସହିତ କଳି କରିଥାଉ । ଏହା ବଡ଼ ରହସ୍ୟର କଥା । ଏହା ଶୀଘ୍ର ବୁଝିହୁଏ ନାହିଁ । ପରନ୍ତୁ, ଯେତେବେଳେ ଏହା ବୁଝି ହୋଇଯାଏ, ସେତେବେଳେ ଆମର ଝଗଡ଼ା ସମାପ୍ତ

ହୋଇଯାଏ। ଏହା କହିବାର ତାତ୍ପର୍ଯ୍ୟ ହିଁ ହେଉଛି ଆମେ ସମସ୍ତେ ବୃଥାରେ ହିଁ କଳି କରିଥାଉ - ସ୍ୱୟଂ ନିଜ ସହିତ ।

## ଦୁର୍ଯୋଧନର ଅପମାନ

ଏହି ରାଜସୂୟ-ଯଜ୍ଞରେ ଏପରି ଏକ ଘଟଣା ଘଟିଲା ଯେ ଦୁର୍ଯୋଧନ ଅପ୍ରସନ୍ନ ହୋଇ ଇନ୍ଦ୍ରପ୍ରସ୍ଥରୁ ହସ୍ତିନାପୁରକୁ ଚାଲିଗଲା । ରାଜସୂୟ-ଯଜ୍ଞପରେ ଯୁଧିଷ୍ଠିରଙ୍କ ଯେପରି ବୈଭବ ବଢ଼ିଲା, ସମସ୍ତ ପ୍ରକାରର ଯେଉଁ ଅଭିବୃଦ୍ଧି ହେଲା, ତାକୁ ଦେଖି ଦୁର୍ଯ୍ୟୋଧନ ମନ ଈର୍ଷାରେ ଭରିଗଲା । ପୁଣି ଦିନେ ମୟଦାନବ ଦ୍ୱାରା ନିର୍ମିତ ସଭାରେ, ଯାହାକି ଭଗବାନ ଶ୍ରୀକୃଷ୍ଣ ପାଣ୍ଡବମାନଙ୍କୁ ନିର୍ମିତ କରିଦେଇଥିଲେ, ସେଠାରେ ସମସ୍ତେ ବସିଥିଲେ। ତାହା ଏପରି ମାୟାବୀ ମହଲ ଥିଲା ଯେ ସେଥିରେ ଜଳ ସ୍ଥାନରେ କାଚ ଏବଂ କାଚ ସ୍ଥାନରେ ଜଳର ଆଭାସ ହେଉଥିଲା । ସେହି ସଭା ଜନପୂର୍ଣ୍ଣ ଥିଲା । ସେହି ସମୟରେ ଦୁର୍ଯୋଧନ ସେଠାରେ ପ୍ରବେଶ କଲା । ଯେଉଁଠାରେ ସ୍ଥଳ (କାଚ) ଥିଲା ତାକୁ ଜଳ ମନେ କରି ସେଠାରେ ସମ୍ଭାଳି ସମ୍ଭାଳି ପାଦ ରଖୁଥିଲା, ଯେଉଁଠାରେ ଜଳ ଥିଲା, ତାକୁ ସ୍ଥଳ ମନେ କରି ଜଳରେ ପଡ଼ିଗଲା । ସେତେବେଳେ ତାକୁ ଦେଖି ଦ୍ରୌପଦୀ, ଭୀମସେନ ତଥା ସେଠାରେ ଉପସ୍ଥିତ ନରପତିମାନେ ହସିବାକୁ ଲାଗିଲେ । ତଦ୍ଦ୍ୱାରା ଦୁର୍ଯ୍ୟୋଧନ କ୍ରୋଧିତ ହୋଇଗଲା ଏବଂ ସେହିକ୍ଷଣି ସଭାରୁ ବାହାରି ହସ୍ତିନାପୁର ଫେରି ଆସିଲା । ଏକ ପ୍ରକାର ଦେଖିବାକୁ ଗଲେ, ଏହି ଘଟଣାରୁ ମହାଭାରତ ଯୁଦ୍ଧର ବୀଜାରୋପଣ ହୋଇଗଲା। ମହାଭାରତରେ ଏହାର ବିସ୍ତୃତ ବର୍ଣ୍ଣନ କରାଯାଇଛି । ଭାଗବତରେ ତ ଗୋଟିଏ ଅଧ୍ୟାୟରେ ସଂକ୍ଷେପରେ ବର୍ଣ୍ଣନ ହୋଇଛି, କାରଣ ଏହା ତାର (ଭାଗବତର) ମୁଖ୍ୟ ବିଷୟ ନୁହେଁ। ସେଥିପାଇଁ ଭାଗବତକୁ ଭଲ ରୂପେ ବୁଝିବା ପାଇଁ ମହାଭାରତକୁ ମଧ୍ୟ ପଢ଼ିବା ଉଚିତ୍ ।

ପାଣ୍ଡବମାନଙ୍କର ପ୍ରସନ୍ନତା ନିମନ୍ତେ ରାଜସୂୟ-ଯଜ୍ଞ ପରେ ମଧ୍ୟ ଭଗବାନ ନିଜର ସମ୍ବନ୍ଧିମାନଙ୍କ ସହିତ ଆଉ କିଛି ମାସ ପର୍ଯ୍ୟନ୍ତ ଇନ୍ଦ୍ରପ୍ରସ୍ଥରେ ରହିଲେ । ଅଚାନକ ଦିନେ ତାଙ୍କୁ ଲାଗିଲା ଯେ କାଳେ ତାଙ୍କର ଶତ୍ରୁମାନେ ଦ୍ୱାରକାକୁ ଘେରି ରହିଥିବେ । ଏହିପରି ହିଁ ହୋଇଥିଲା । ଶ୍ରୀକୃଷ୍ଣଙ୍କର ଅନୁପସ୍ଥିତି ଦେଖି ଶାଲ୍ୱ, ଯେ କି ରୁକ୍ମିଣୀଙ୍କର ସ୍ୱୟଂବର ସମୟରେ ପ୍ରତିଜ୍ଞା କରିଥିଲା ଯେ ମୁଁ ଏହି ପୃଥିବୀକୁ ଯାଦବ ବିହୀନ କରି ଦେବି, ସେ ଦ୍ୱାରକା ଉପରେ ଆକ୍ରମଣ କରିଦେଇଥିଲା । ପ୍ରଦ୍ୟୁମ୍ନଙ୍କର ସହିତ ତାର ଯୁଦ୍ଧ ହେଉଥିଲା। ସେତେବେଳେ ଭଗବାନ ସେଠାରେ ପହଞ୍ଚିଲେ ଏବଂ ସେଠାରେ ସେ ଶାଲ୍ୱର ଓ ତାପରେ ଦନ୍ତବକ୍ତ୍ର ତଥା ବିଦୂରଥଙ୍କର ମଧ୍ୟ ଉଦ୍ଧାର କରିଦେଲେ ।

## ବଳରାମଙ୍କର ତୀର୍ଥଯାତ୍ରା

କିଛି ଦିନ ପରେ, ଯେତେବେଳେ ଜଣାପଡ଼ିଲା ଯେ କୌରବ ତଥା ପାଣ୍ଡବମାନଙ୍କ ମଧ୍ୟରେ ଯୁଦ୍ଧ ହେବ, ସେତେବେଳେ ବଳରାମ ତୀର୍ଥଯାତ୍ରା କରିବା ପାଇଁ ବାହାରିଗଲେ କାରଣ ସେ ମଧ୍ୟସ୍ଥ ଥିଲେ, ଦୁହିଁଙ୍କ ମଧ୍ୟରେ କୌଣସି ଏକ ପକ୍ଷରେ ମଧ୍ୟ ଲଢ଼ିବାକୁ ଚାହୁଁ ନ ଥିଲେ । ଅନେକ ତୀର୍ଥ ଦର୍ଶନ କରି ସେ ନୈମିଷାରଣ୍ୟରେ ପହଞ୍ଚି ଗଲେ । ସେଠାରେ ଶ୍ରେଷ୍ଠ-ଶ୍ରେଷ୍ଠ ଋଷିଗଣ ଏକ ବିଶେଷ ଏବଂ ସତ୍‌ସଙ୍ଗ ସତ୍ର ପାଇଁ ଏକତ୍ରିତ ହୋଇଥିଲେ। ସେଠାରେ ବଳରାମ ଦେଖିଲେ ଯେ ସୂତ ଜାତିରେ ଜନ୍ମ ରୋମହର୍ଷଣ ଜୀ ବ୍ୟାସ ଗଦିରେ ସମସ୍ତଙ୍କଠାରୁ ଉପରେ ବିରାଜମାନ ଅଛନ୍ତି ଏବଂ ସେ ବନ୍ଦନ ମଧ୍ୟ କରୁନାହାନ୍ତି, ସେଠାରୁ ଉଠି ସ୍ୱାଗତ ମଧ୍ୟ କରୁନାହାନ୍ତି । ବଳରାମଜୀଙ୍କୁ ଲାଗିଲା ଯେ ବ୍ୟାସ ଶିଷ୍ୟ ରୋମହର୍ଷଣଙ୍କ ଠାରେ ନା ତ ବିନୟଭାବ ଅଛି ନା ତାଙ୍କର ଆଚରଣ ଧର୍ମ ଶାସ୍ତ୍ରର ଅନୁରୂପ ଅଟେ । ସେତେବେଳେ ବଳରାମଜୀ ତାଙ୍କ ଉପରେ କ୍ରୋଧିତ ହୋଇ କୁଶାର ଏକ ଅଗ୍ରଭାଗରେ ରୋମହର୍ଷଣଙ୍କ ଉପରେ ପ୍ରହାର କରିଦେଲେ । ଏତିକିରେ ହିଁ ରୋମହର୍ଷଣଙ୍କର ମୃତ୍ୟୁ ହୋଇଗଲା । ସମସ୍ତ ଋଷିଗଣ ହାୟ ହାୟ କରିବାକୁ ଲାଗିଲେ।

ସେଠାରେ ସମସ୍ତେ ବଳରାମଙ୍କୁ କହିଲେ, ଯେ ଯଦ୍ୟପି ଆମେ ଜାଣିଛୁ ଯେ, ଆପଣ ଯୋଗେଶ୍ୱର ଅଟନ୍ତି, ବେଦଶାସନର ଉର୍ଦ୍ଧ୍ୱରେ, ତଥାପି ଏହା ଅତ୍ୟନ୍ତ ଅଧର୍ମ ଆଚରଣ ହୋଇଗଲା । ଏହା ବ୍ରହ୍ମ ହତ୍ୟା ସହ ସମାନ ଅଟେ । ତେଣୁ ଲୋକ ଶିକ୍ଷା ନିମନ୍ତେ ଆପଣ ସ୍ୱୟଂ ହିଁ କୌଣସି ପ୍ରାୟଶ୍ଚିତ କରି ନିଅନ୍ତୁ, ତାହା ଭଲ ହେବ । ତେବେ ବଳରାମଜୀ ତାଙ୍କ ସହିତ ଥିବା ମହର୍ଷିମାନଙ୍କୁ ତାର ବିଧାନ କରିବାକୁ କହିଲେ ଏବଂ ସେହିପରି ପୁଣି କଲେ । ସେ କହିଲେ ଯେ ରୋମହର୍ଷଣଙ୍କର ଏହି ପୁତ୍ରକୁ ମୁଁ ଦୀର୍ଘ ଆୟୁ, ଇନ୍ଦ୍ରିୟ ଶକ୍ତି ତଥା ବଳ ପ୍ରଦାନ କରୁଛି । ଏହି ଏବେ ଆପଣମାନଙ୍କୁ କଥା ଶ୍ରବଣ କରାଇବେ । ପୁଣି ଋଷିମାନଙ୍କର ଇଚ୍ଛା ପୂର୍ତ୍ତି କରିବା ପାଇଁ ବଳରାମ ବଲ୍ୱଲ ନାମକ ଭୟଙ୍କର ଦାନବର ଉଦ୍ଧାର କଲେ । ତା ପରେ ଅନେକ ସ୍ଥାନ ଭ୍ରମଣ କରି କରି କୌରବ ଏବଂ ପାଣ୍ଡବମାନଙ୍କୁ ଭେଟି ସେ ଦ୍ୱାରକା ଫେରି ଆସିଲେ ।

### ଶ୍ରୀକୃଷ୍ଣଙ୍କର ସଖା ସୁଦାମାଜୀଙ୍କର କଥା

ଏହାପରେ ଭଗବାନଙ୍କର ପ୍ରିୟ ସଖା ସୁଦାମାଜୀଙ୍କର ପ୍ରସଙ୍ଗ ଆସେ । ଭଗବାନ ଶ୍ରୀକୃଷ୍ଣ ଯେତେବେଳେ ବେଦ ଅଧ୍ୟୟନ ନିମନ୍ତେ ସାନ୍ଦୀପନି ଋଷିଙ୍କ ଗୁରୁକୁଳ ଆଶ୍ରମକୁ ଯାଇଥିଲେ, ସେତେବେଳେ ସେଠାରେ ସୁଦାମା ନାମକ ଏକ ବ୍ରାହ୍ମଣ ମଧ୍ୟ ବିଦ୍ୟାର୍ଥୀ

ଥିଲେ । ସେଠାରେ ଶ୍ରୀକୃଷ୍ଣ ଏବଂ ସୁଦାମା ଘନିଷ୍ଠ ମିତ୍ର ହୋଇଯାଇଥିଲେ । ଦୁଇଜଣ ସାଥି ହୋଇ ରହୁଥିଲେ । ସୁଦାମା ଶ୍ରୀକୃଷ୍ଣଙ୍କୁ ବହୁତ ପ୍ରେମ କରୁଥିଲେ ।

ସେମାନେ ଗୁରୁକୁଳରେ ରହୁଥିବା ସମୟରେ ଏକ ଘଟଣା ଯାହାକି ଶ୍ରୀମଦ୍ ଭାଗବତରେ ତ ନାହିଁ, କିନ୍ତୁ ମହାତ୍ମାମାନେ ତାର ବର୍ଣ୍ଣନା କରିଛନ୍ତି । ଯେତେବେଳେ ଗୁରୁଜୀଙ୍କ ପତ୍ନୀଙ୍କ କହିବା ଅନୁଯାୟୀ ଶ୍ରୀକୃଷ୍ଣ ଓ ସୁଦାମା କାଠ ଆଣିବା ନିମନ୍ତେ ଜଙ୍ଗଲକୁ ଯାଇଥିଲେ, ସେତେବେଳେ ଘୋର ବର୍ଷା ହେବାରୁ ସେମାନଙ୍କୁ ଗୋଟିଏ ସ୍ଥାନରେ ଅଟକି ରହିବାକୁ ହୋଇଥିଲା । ଦୁଇଜଣଙ୍କୁ ବହୁତ ଶୀତ ଲାଗୁଥିଲା । ଏବେ ସୁଦାମାଜୀଙ୍କୁ ଭୋକ ମଧ୍ୟ ହେଲା । ତାଙ୍କ ପାଖରେ କିଛି ଚଣା ରଖିଥିଲେ ତ ସେ ଚୁପ୍‌ଚାପ ତାକୁ ଖାଇବାକୁ ଲାଗିଲେ । ଯେତେବେଳେ କୁଡୁ-କୁଡୁ ଶବ୍ଦ ଆସିଲା ତ ଭଗବାନ କହିଲେ, "କଣ ହେଉଛି ? (ଭଗବାନଙ୍କୁ ମଧ୍ୟ ଭୋକ ଲାଗୁଥିଲା) କୌଣସି ଜିନିଷର ଶବ୍ଦ ଶୁଭୁଛି ?" ସୁଦାମା କହିଲେ - "ମୁଁ ଅତି ଶୀତ ଯୋଗୁ ଥରି ଯାଉଛି ତ ମୋର ଦାନ୍ତ ବାଜି ଯାଉଛି ।" ସୁଦାମା ଏହିପରି କଥା କହିଲେ । ସମ୍ଭବତଃ ସେଥିପାଇଁ ସୁଦାମାଜୀଙ୍କ ଜୀବନରେ ବହୁତ ଦାରିଦ୍ର୍ୟତା ଆସିଲା । ଭଗବାନଙ୍କୁ କିଛି ଦେଲେ ନାହିଁ, ସେଥିପାଇଁ ତ ଦାରିଦ୍ର୍ୟତା ଆସିଗଲା ।

ଦ୍ୱାରକାଠାରୁ କିଛି ଦୂରରେ ତାଙ୍କର ଗ୍ରାମ ଥିଲା । ତାଙ୍କ ସହିତ ତାଙ୍କ ପତ୍ନୀ ମଧ୍ୟ ଥିଲେ । ସୁଦାମାଜୀ ଅତି ବିଦ୍ୱାନ ଥିଲେ, ମଧ୍ୟ ଅତି ଦରିଦ୍ର ଅବସ୍ଥାରେ ଥିଲେ । ବିରକ୍ତ ସ୍ୱଭାବର ହୋଇଥିବାରୁ ନା ତ ସେ ଜୀବନଯାପନ ନିମନ୍ତେ ଅଧିକ କିଛି କାର୍ଯ୍ୟ କରିପାରୁଥିଲେ ନା କାହାକୁ କିଛି ମାଗୁଥିଲେ । ସବୁବେଳେ ଭଗବାନଙ୍କର ନାମ କୀର୍ତ୍ତନ କରିବା ହିଁ ତାଙ୍କର କାମ ଥିଲା । ତାଙ୍କର ବହୁତ କାର୍ଯ୍ୟ କରିବାର ପ୍ରକୃତି ହିଁ ନ ଥିଲା । ତାର ଅର୍ଥ ଏହା ନୁହେଁ ଯେ ସେ ଅଳସୁଆ ଥିଲେ, ଶ୍ରୀକୃଷ୍ଣଙ୍କ ପ୍ରତି ସବୁବେଳେ ତାଙ୍କ ମନରେ ଏତେ ପ୍ରେମ ଉଚ୍ଛଳୁ ଥିଲା ଯେ ତାଙ୍କର ପ୍ରତ୍ୟେକ ଅଙ୍ଗ ପ୍ରେମରେ ଶିଥିଳ ହୋଇ ଯାଉଥିଲା । ତାଙ୍କ ଦ୍ୱାରା କୌଣସି କାର୍ଯ୍ୟ ହୋଇ ମଧ୍ୟ ପାରୁନଥିଲା । ଅତି ପ୍ରେମ ଯୋଗୁଁ ସେ ନିତ୍ୟ ନିରନ୍ତର ଭଗବତ୍ ସ୍ମରଣରେ ବୁଡ଼ି ରହୁଥିଲେ ।

ସୁଦାମାଜୀ ପ୍ରାୟ ନିଜର ସଖା ଶ୍ରୀକୃଷ୍ଣଙ୍କୁ ମନେ ପକାଉଥିଲେ । କହୁଥିଲେ ଯେ ଶ୍ରୀକୃଷ୍ଣ ଏବଂ ମୁଁ ସାଥି ହୋଇ ପଢୁଥିଲୁ । ଶୁଣିଛି, ସେ ଏବେ ଦ୍ୱାରକାର ରାଜା ହୋଇ ଗଲେଣି । ତାଙ୍କର ବିଷ୍ଣୁ ଭଗବାନଙ୍କ ସମାନ ବୈଭବ ଅଛି । ସେଠାକାର ଶୋଭା, ଐଶ୍ୱର୍ଯ୍ୟ ବୈକୁଣ୍ଠ ସମାନ ଅଟେ । ଏ ସମସ୍ତ କଥା ତାଙ୍କର ପତ୍ନୀ ଅନେକ ଥର ତାଙ୍କଠାରୁ ଶୁଣିଥିଲେ ।

ଅତି ଦାରିଦ୍ର୍ୟତା ଯୋଗୁଁ ସୁଦାମାଜୀଙ୍କର ଶରୀର ଦୁର୍ବଳ ହୋଇଯାଇଥିଲା । ତାଙ୍କ ପତ୍ନୀଙ୍କର ମଧ୍ଯ ସେହି ଅବସ୍ଥା ଥିଲା । ଦିନେ ସେ କହିଲେ, "ପତିଦେବ, ଆପଣ ନିଜର ମିତ୍ର ଶ୍ରୀକୃଷ୍ଣଙ୍କର ବହୁତ ପ୍ରଶଂସା କରିଚ୍ଛଲିଛନ୍ତି, ଏହା ମଧ୍ୟ କହୁଛନ୍ତି ଯେ ସେ ଅତି ଧନବାନ ଅଟନ୍ତି, ଶ୍ରୀପତି ଅଟନ୍ତି । ଆପଣ ପ୍ରାୟତଃ ତାଙ୍କର ସ୍ମରଣ କରିଚ୍ଛଲିଛନ୍ତି । ଥରେ ସେହି ମିତ୍ରଙ୍କ ସହିତ ସାକ୍ଷାତ୍ କରିବାକୁ କାହିଁକି ଯାଉନାହାନ୍ତି ? ଦେଖନ୍ତୁ, ସେ ବ୍ରାହ୍ମଣୀ ବିଚ୍ଚର କରୁଛନ୍ତି ଯେ ସୁଦାମାଜୀ ସେଠାକୁ ଯାଇ ପହଞ୍ଚିବା ପରେ ଶ୍ରୀକୃଷ୍ଣ ନିଜର ପିଲାଦିନର ମିତ୍ରଙ୍କର ଏହି ଦଶାକୁ ଦେଖି ବୁଝିଯିବେ ଯେ ଏ ଅତି ଦାରିଦ୍ର୍ୟତା ମଧ୍ୟରେ ଅଛି, ଏବଂ ଭଗବାନ ତାଙ୍କୁ କିଛି ନା କିଛି ନିଜ ତରଫରୁ ଦେବେ । ଏଭଳି ବିଚ୍ଚର କରି, ସେ କହୁଛନ୍ତି ଯେ ଆପଣ ତାଙ୍କୁ କିଛି ନ ମାଗନ୍ତୁ, କିନ୍ତୁ ଥରେ ମାତ୍ର ତାଙ୍କୁ ଭେଟିବାକୁ ତ ଯାଇ ପାରିବେ । ଦେଖନ୍ତୁ, ସୁଦାମାଜୀଙ୍କଠାରେ ଅନେକ ସଦ୍‌ଗୁଣ ଥିଲା, କିନ୍ତୁ ଏକ ଅବଗୁଣ ମଧ୍ୟ ଥିଲା । ଏଭଳି କହିବା ଦ୍ୱାରା ଲାଗେ ଯେ ଭଲ ସୁଦାମାଜୀଙ୍କର କଣ ଅବଗୁଣ ଥିଲା ? ତାଙ୍କଠାରେ ଏହି ଅବଗୁଣ ଥିଲା ଯେ ତାଙ୍କର କିଛି ଅଭିମାନ ଥିଲା । କେଉଁ ପ୍ରକାର ଅଭିମାନ ଥିଲା ? ତାହା ହେଉଛି, ମୁଁ କାହାକୁ କିଛି ମାଗିବି ନାହିଁ, ଏହା ହିଁ ତାଙ୍କର ଅଭିମାନ ଥିଲା ।

ଦେଖନ୍ତୁ, କେବେ-କେବେ ଲୋକମାନଙ୍କଠାରେ ଏଭଳି ଅଭିମାନ ମଧ୍ୟ ଦେଖାଯାଇଥାଏ । ଏହି ଅଭିମାନ କିଛି ବିଚିତ୍ର ପ୍ରକାର ହୋଇଥାଏ । "ମୁଁ କାହା ସମ୍ମୁଖରେ ହାତ ପତାଇବି ନାହିଁ' ଜୀବନରେ ଏଭଳି ଅଭିମାନ ଚଳିପାରେ ନାହିଁ । ଯଦି କେହି ଏପରି ଅଭିମାନ କରି ବସିଯାଏ ଯେ ମୁଁ ଭଗବାନଙ୍କୁ ମଧ୍ୟ କିଛି ମାଗିବି ନାହିଁ, ତେବେ ତ ତାହା କୌଣସି ପ୍ରକାରେ ମଧ୍ୟ ଚଳେ ନାହିଁ । ଦେଖନ୍ତୁ, ଅନେକ ଲୋକମାନଙ୍କଠାରେ ଅନେକ ବିଷୟ ଭଲ ଥାଏ, କିନ୍ତୁ କିଛି ନା କିଛି ହିଁ ଦୁର୍ବଳତା ରହିଯାଇଥାଏ । କେତେ ଲୋକଙ୍କର ଅଧ୍ୟାତ୍ମ ମାର୍ଗରେ ଅଧିକ ପ୍ରବୃତ୍ତି ହୋଇଥାଏ, କିନ୍ତୁ ସନ୍ନ୍ୟାସ ଗ୍ରହଣ କରିବାକୁ ସେମାନେ ପସନ୍ଦ କରନ୍ତି ନାହିଁ । ଏଇଥିପାଇଁ ଯେ, ସନ୍ୟାସ ଗ୍ରହଣ କରିବା ପରେ ଭିକ୍ଷା ମାଗିବାକୁ ପଡ଼ିଥାଏ । ସେମାନେ କହନ୍ତି, "ମୁଁ ଭିକ୍ଷା ମାଗିପାରିବି ନାହିଁ । ନିଜେ ରୋଜଗାର କରି ଖାଇବି ।" ଦେଖନ୍ତୁ, "ନିଜ ରୋଜଗାର' ଏହି ଯେଉଁ ଅଭିମାନ ଥାଏ, ଏହା ହିଁ ସନ୍ୟାସ ଗ୍ରହଣ କରିବାରେ ପ୍ରତିବନ୍ଧକ ହୋଇଥାଏ । ସୁଦାମାଜୀଙ୍କଠାରେ ମଧ୍ୟ ଏହି ପ୍ରକାର ବୃତ୍ତି ଥିଲା ଯେ ମୁଁ କାହାକୁ କିଛି ମାଗିବି ନାହିଁ ।

ଏବେ ବ୍ରାହ୍ମଣୀ ଯେତେବେଳେ ଏପରି କହିଲେ, ସେତେବେଳେ ସୁଦାମାଜୀ ବିଚ୍ଚର କରିବାକୁ ଲାଗିଲେ ଯେ ଭଗବାନଙ୍କ ନିକଟକୁ ଗଲେ ତ କିଛି ଅସୁବିଧା ହେବ

ନାହିଁ । ମୁଁ ସିନା କିଛି ମାଗିବି ନାହିଁ, କିନ୍ତୁ ଏହି ମାଧ୍ୟମରେ ତ ଭଗବାନ ଶ୍ରୀକୃଷ୍ଣଙ୍କ ସହିତ ମିଳନ ତ ହେବ । ବହୁତ ଦିନ ହୋଇଗଲାଣି ତାଙ୍କ ସହିତ ସାକ୍ଷାତ ହିଁ ହୋଇନାହିଁ । ଦେଖନ୍ତୁ, ଗୁରୁକୁଳରେ ଦୁହେଁ ଏକାଠି ପଢୁଥିଲେ, କିନ୍ତୁ ତା ପରେ ଆଦୌ ତାଙ୍କ ସହିତ ଭେଟ ମଧ୍ୟ ହୋଇନାହିଁ । ଶ୍ରୀକୃଷ୍ଣ ତ ସ୍ୱୟଂ ଭଗବାନ, ରାଜକାର୍ଯ୍ୟରେ ସେ କେତେବେଳେ ଏଠାରେ ତ ଅନ୍ୟ ସମୟରେ ଆଉ କେଉଁଠାରେ ଥାଆନ୍ତି । ତାଙ୍କୁ ବିଭିନ୍ନ ସ୍ଥାନକୁ ତ ଯିବାକୁ ହିଁ ହେଉଥିଲା । କିଏ ଜାଣେ ସେ କଅଣ କଅଣ କରୁଥିଲେ । ସେତେବେଳେ କିନ୍ତୁ ସୁଦାମା ଜୀଙ୍କୁ ତ ସାଧାରଣ ଜୀବନ ବିତାଇବାକୁ ପଡୁଥିଲା । ତେଣୁ ଅନେକ ବର୍ଷ ବିତିଯାଇଥିଲେ ମଧ୍ୟ ଦୁହିଁଙ୍କର ମିଳନର ଅବସର ମଧ୍ୟ ଆସି ନ ଥିଲା । ଏବେ ସୁଦାମାଙ୍କର ଶରୀର ତ ଏପରି ଜର୍ଜର ହୋଇଥିଲା, ଯେପରି ତାଙ୍କଠାରେ କୌଣସି ଶକ୍ତି ହିଁ ନାହିଁ । ବୟସର ଆଧିକ୍ୟ ନ ଥିଲେ ମଧ୍ୟ ସେ ବୃଦ୍ଧ ଭଳି ଦେଖାଯାଉଥିଲେ ।

ଯେତେବେଳେ ବିଚାର କଲେ ଯେ ଭଗବାନଙ୍କୁ ଭେଟିବାକୁ ଯିବି, ସେତେବେଳେ ସେ ନିଜର ପତ୍ନୀଙ୍କୁ କହିଲେ, "ମୁଁ ସେଠାକୁ ଖାଲି ହାତରେ କିପରି ଯିବି ? ଯଦି ଘରେ କିଛି ଅଛି, ତେବେ ଆଣିଦିଅ ।" ସେ ପର୍ଯ୍ୟନ୍ତ ଭଗବାନ ଜାଣିନଥିଲେ ଯେ ସୁଦାମାଙ୍କର ବିବାହ ହୋଇଗଲାଣି । କିନ୍ତୁ ସୁଦାମା ଜାଣିଥିଲେ ଯେ ପ୍ରଭୁ ନିଶ୍ଚୟ ପଚାରିବେ ଯେ ଗୁରୁକୁଳରୁ ଆସିବା ପରେ କ'ଣ କ'ଣ କରିଛ ? ତାଙ୍କୁ ଯେତେବେଳେ ଜଣାପଡ଼ିବ ଯେ ବିବାହ ମଧ୍ୟ ହୋଇଗଲାଣି, ତେବେ ସେ ନିଶ୍ଚୟ ପଚାରିବେ ଯେ ଭାଉଜ ମୋ ପାଇଁ କ'ଣ ପଠାଇଛନ୍ତି ? ତେଣୁ ସୁଦାମାଜୀ କହୁଛନ୍ତି, "ଘରେ କିଛି ଥିଲେ ଦିଅ ।" ଘରେ ତ କିଛି ନ ଥିଲା । ତେଣୁ ସେହି ବ୍ରାହ୍ମଣୀ ଯାଇ ଚାରି ମୁଠା ଚାଉଳ ମାଗି ଆଣିଲା । ଚାରିଘରୁ ଆଣିଥିବା ଚାଉଳ ଚାରିପ୍ରକାରର । କିଛି ଧଳା ଥିଲା ତ କିଛି ଲାଲ, କିଛି ସରୁ ଥିଲା କିଛି ମୋଟା ଥିଲା । ଏବେ ଘରେ ଏତେ ଦାରିଦ୍ର୍ୟତା ଥିଲା ଯେ ସେହି ଚାଉଳ ଭଜାକୁ ବାନ୍ଧିବା ନିମନ୍ତେ କୌଣସି ଭଲ କନା ଖଣ୍ଡିଏ ମଧ୍ୟ ନ ଥିଲା । କୌଣସି ଉପାୟ କରି ଖଣ୍ଡେ ଲୁଗା କନାରେ ସେହି ଚାଉଳ ଭଜାକୁ ଏକାଠି କରି ବାନ୍ଧି ଦେଲେ ।

ସୁଦାମା ସେହି ପୁଟୁଳୀକୁ ନେଇ ଯାତ୍ରା ଆରମ୍ଭ କଲେ । ଯିବା ସମୟରେ ସୁଦାମା ମନ ଭିତରେ କେତେ ପ୍ରକାର ଇଚ୍ଛା କରି କରି ଯାଉଥିଲେ ଯେ, "ଏତେ ଦିନ ପରେ ଭଗବାନଙ୍କ ସହ ଭେଟ ହେବ । ସେ ମୋ ସହିତ କିଭଳି ଭେଟିବେ ? ପୁଣି କେତେବେଳେ ତାଙ୍କୁ ଲାଗୁଛି ଯେ ଜଣାନାହିଁ – ମୋତେ ସେ ଚିହ୍ନି ମଧ୍ୟ ପାରିବେ କି ନାହିଁ। ତେବେ କଣ ହେବ ? ସେ ତ ସେଠାରେ ରାଜା ଅଟନ୍ତି ଏବଂ ମୁଁ ଏପରି ଦୁର୍ଦ୍ଦଶାରେ ଅଛି ! ଜଣା ନାହିଁ ଭେଟିବା କିପରି ହେବ, ସେଠାରେ କ'ଣ ହେବ ?

ଏହିଭଳି ସେ ବିଚାର କରି କରି ସେ ଯାଉଥିଲେ, ଶରୀରରେ ଶକ୍ତି ତ ନ ଥିଲା, ତେଣୁ ସେ ଥକି ଯାଇ ଗୋଟିଏ ସ୍ଥାନରେ ବସି ପଡ଼ିଲେ ଏବଂ ବସି ବସି ତାଙ୍କୁ ନିଦ ଆସିଗଲା। ତାଙ୍କ ପ୍ରତି ଭଗବାନଙ୍କର ଦୟା ଆସିଲା, ତେଣୁ ସେ ଏପରି ମାୟା କରିଦେଲେ ଯେ ସେହି ସମୟରେ ସେ ସୁଦାମାଜୀଙ୍କୁ ଉଠାଇ ଦ୍ୱାରକାର ସୀମାରେ ପହଞ୍ଚାଇ ଦେଲେ । ଚାଲି ଚାଲି ସେଠାରେ ପହଞ୍ଚିବାର କଷ୍ଟ ମଧ୍ୟ ଭଗବାନ ତାଙ୍କୁ ଭୋଗିବାକୁ ଦେଇ ନ ଥିଲେ।

ଯେତେବେଳେ ସୁଦାମାଜୀଙ୍କର ଚକ୍ଷୁ ଖୋଲିଲା, ସେତେବେଳେ ସେଠାରେ ଏକ ବିଶାଳ ନଗରୀ ଦେଖାଗଲା । ଯେପରି, ଏକ ଛୋଟ ଗ୍ରାମରୁ କୌଣସି ବ୍ୟକ୍ତି ଯଦି ମୁମ୍ବାଇ ସହରକୁ ଯାଏ, ତେବେ ସେ ଆଶ୍ଚର୍ଯ୍ୟ ହୋଇ ଚାରିଆଡ଼କୁ ଦେଖିବାକୁ ଲାଗେ ଏବଂ କହିବାକୁ ଲାଗେ ଯେ - ଆରେ ଏ ସମସ୍ତ ଲୋକ କାହିଁକି ଦୌଡୁଛନ୍ତି ? କେଉଁଠାରେ କଣ ନିଆଁ ଲାଗିଯାଇଛି କି ? ସେତେବେଳେ ସେଠାରେ ଲୋକେ କହନ୍ତି - କିଏ ଦୌଡୁଛି ? ଏହା ତ ଏଠାରେ ସାଧାରଣ କଥା ଅଟେ । ଥରେ ଜଣେ ବ୍ୟକ୍ତି ପ୍ରଥମଥର ପାଇଁ କଲିକତା ଗଲା । ସେ କହିବାକୁ ଲାଗିଲା, ଏହି ଦଳଦଳ ଲୋକ କେଉଁଥିପାଇଁ ଯାଉଛନ୍ତି ? (ଅନ୍ୟ ଜଣେ କହିଲେ) ଦଳ ଦଳ ଲୋକ? ଏଠାକାର ଲୋକମାନେ ତ ଚାଲିଛନ୍ତି, ଆଉ କିଛି ନୁହେଁ । ଏହିପରି ସୁଦାମା ଦେଖିବାକୁ ଲାଗିଲେ ଏବଂ ତାଙ୍କୁ ଲାଗିଲା - ଏହା କିଭଳି ଅଦ୍ଭୁତ ନଗରୀ ? ତାହା ତ ସ୍ୱର୍ଣ୍ଣର ଦ୍ୱାରକା ନଗରୀ ଥିଲା । ଝକମକ୍ ହୋଇ ଚମ୍‌କି ଉଠୁଥିଲା ।

ସୁଦାମାଜୀ ଦେଖିଲେ ଯେ, ସେଠାରେ ଓସାରିଆ ଓସାରିଆ ସଡ଼କ, ଚିତ୍ର-ବିଚିତ୍ର ହାଟ-ବଜାର ଅଛି ଏବଂ ଆହୁରି ସେଠାରେ କେତେ କଣ ବସ୍ତୁ ଅଛି । ସେ ଚାଲୁ ଚାଲୁ ରାଜମହଲର ସମ୍ମୁଖରେ ପହଞ୍ଚିଗଲେ । ସେ ଏହା ମଧ୍ୟ ବୁଝିପାରିଲେ ନାହିଁ ଯେ ସେ ମହଲରେ ପହଞ୍ଚିଗଲେଣି । କାରଣ ତାଙ୍କୁ ତ ସବୁ ଘରଗୁଡ଼ିକ ମହଲ ଭଳି ଜଣାପଡୁଥିଲା। ଶ୍ରୀକୃଷ୍ଣଙ୍କ ମହଲର ଦ୍ୱାରରେ ଠିଆ ହୋଇ ସେ ଦ୍ୱାରପାଳଙ୍କୁ ପଚାରୁଛନ୍ତି - ଶ୍ରୀକୃଷ୍ଣଙ୍କ ମହଲ କେଉଁଠାରେ ? ଦ୍ୱାରପାଳ କହୁଛି - "ଏହିଠାରେ।" ଯଦିବା ଶ୍ରୀକୃଷ୍ଣଙ୍କ ଅନ୍ତଃପୁରକୁ ପ୍ରବେଶ କରିବା ନିମନ୍ତେ ତିନି ଛାଉଣୀ ସୈନିକମାନଙ୍କୁ ତଥା ତିନି ଦ୍ୱାର ରକ୍ଷକଙ୍କୁ ଅତିକ୍ରମ କରି ଯିବାକୁ ହୋଇଥାଏ, ତଥାପି ସେଠାରେ ବ୍ରାହ୍ମଣମାନଙ୍କ ନିମନ୍ତେ କୌଣସି ପ୍ରତିବନ୍ଧକ ନ ଥିଲା । ସେମାନେ ସିଧା ଶ୍ରୀକୃଷ୍ଣଙ୍କ ମହଲ ପର୍ଯ୍ୟନ୍ତ ପହଞ୍ଚିପାରୁଥିଲେ । ତେବେ ସୁଦାମାଜୀ ମଧ୍ୟ ଚାଲିଚାଲି ସେଠାରେ ଯାଇ ପହଞ୍ଚି ଗଲେ, ଯେଉଁ ମହଲରେ ଭଗବାନ ଶ୍ରୀକୃଷ୍ଣ ରୁକ୍ମିଣୀଜୀଙ୍କ ପଲଙ୍କରେ ବିରାଜମାନ ଥିଲେ । ନିଜର ବାଲ୍ୟବନ୍ଧୁଙ୍କୁ ଦେଖିବା କ୍ଷଣି ଭଗବାନ ଉଠିଯାଇ ଓହ୍ଲାଇ ଆସିଲେ ଏବଂ ସୁଦାମାଜୀଙ୍କୁ ବାହୁରେ କୋଳାଇ ନେଲେ ।

କବିମାନେ ବର୍ଣ୍ଣନ କରିଛନ୍ତି – ସୁଦାମାଜୀ ଯେତେବେଳେ ଦ୍ୱାରପାଳଙ୍କୁ କହିଛନ୍ତି ଯେ ସେ ଶ୍ରୀକୃଷ୍ଣଙ୍କୁ ଭେଟିବାକୁ ଚାହୁଁଛନ୍ତି, ସେତେବେଳେ ସେ ଭିତରକୁ ଯାଇ ଭଗବାନଙ୍କୁ କହୁଛନ୍ତି, "ଭଗବାନ ଜଣେ ଦରିଦ୍ର ବ୍ରାହ୍ମଣ ଆସିଛି, ଯେ କି ଶକ୍ତିହୀନ, ସମ୍ପୂର୍ଣ୍ଣ ଜର୍ଜର ଅବସ୍ଥାରେ ଅଛନ୍ତି, ଏବଂ ନିଜର ନାମ ସୁଦାମା ବୋଲି କହୁଛନ୍ତି ।" "ସୁଦାମା" ଏତିକି ଶୁଣିବା ମାତ୍ରକେ ଭଗବାନ ସେଠାରୁ ଦୌଡ଼ିବାକୁ ଲାଗିଲେ । ଦେଖନ୍ତୁ, ପରମ ଶକ୍ତିଶାଳୀ ଭଗବାନ ନିଜ ଆସନରୁ ଉଠି ଦୌଡ଼ିବାକୁ ଲାଗିଲେ । ପୁଣି ସେଠାରେ ସେ ଏପରି ଆତୁରତାର ସହିତ ତାଙ୍କୁ ହୃଦୟରେ ଲଗାଇଲେ ଯେ, ସେ ବିଚରା ଏପରି ତ ଦୁର୍ବଳ ଓ ପତଳା ଥିଲେ, ହାଡ଼ ଗଣି ହୋଇଯାଉଥିଲା, ସେ ସତେ ଯେପରି ଭଗବାନଙ୍କର ଅଭୟ ବାହୁ ମଧ୍ୟରେ ଲୁଚି ଯାଇଥିଲେ । ଭଗବାନ ପ୍ରେମରେ ଗଦ୍‌ଗଦ୍ ହୋଇ ତାଙ୍କୁ ସେହିଭଳି ଆଲିଙ୍ଗନ କଲେ। ସୁଦାମା ଯିଏ ଏତେ ଦୁର୍ବଳ, ଏତେ ଯୋରରେ ଏପରି ବାରମ୍ବାର କୁଣ୍ଢାଇ ନେଲେ ତାଙ୍କ ଅବସ୍ଥା କ'ଣ ହେବ ? ସେଥିପ୍ରତି ଭଗବାନଙ୍କର ଧ୍ୟାନ ହିଁ ନ ଥିଲା ।

ସବୁଲୋକ ଚକିତ ତଥା ବିସ୍ମିତ ହୋଇଗଲେ । ସମସ୍ତ ପ୍ରହରୀମାନେ ଡରିଗଲେ ଯେ, ଆରେ ! ଏହାଙ୍କୁ ଆମେ ତ ଏବେ ଭିତରକୁ ଛାଡୁ ନ ଥିଲୁ, ସେହିଠାରୁ ତଡ଼ି ଦେବାପାଇଁ ବସିଥିଲୁ । ଭଲ ହେଲା, ଭିତରକୁ ଆସି ପଚାରି ନେଲୁ, ନଚେତ୍ ପରେ ଯେତେବେଳେ ଭଗବାନ, ଶ୍ରୀକୃଷ୍ଣ ଏ କଥା ଜାଣିଥାନ୍ତେ, ତେବେ ଆମ ଚାକିରୀ ତ ଯାଇଥାନ୍ତା, ତାପରେ ଆଉ କଣ ହୋଇଥାନ୍ତା କିଏ ଜାଣେ ?

ଏବେ ଭଗବାନ ସୁଦାମାଙ୍କୁ ଭିତରକୁ ନେଇ ଯାଇ ତାଙ୍କୁ ନିଜ ପଲଙ୍କରେ ବସାଉଛନ୍ତି । ପୁଣି କହୁଛନ୍ତି, ଆରେ ! ଏହାଙ୍କର ଚରଣ ଧୋଇବା ନିମନ୍ତେ ପାତ୍ରଟିଏ ଆଣ । ଆବଶ୍ୟକୀୟ ସମସ୍ତ ବସ୍ତୁ ମଗାଇ ଆଣି ତାଙ୍କ ପାଦ ଧୋଇ ଦେଉଛନ୍ତି, ତାଙ୍କୁ ପୂଜା କରୁଛନ୍ତି । ରୁକ୍ମିଣୀ ଜୀ ଚାମର ହଲାଉଛନ୍ତି । ସମସ୍ତ ପତ୍ନୀମାନେ ଆସି ଠିଆ ହୋଇଗଲେ । ସେମାନେ ସମସ୍ତେ କେବଳ ଚକିତ ହୋଇ ଦେଖୁଥିଲେ । ଦେଖନ୍ତୁ, ଭଗବାନ କିଭଳି ! ସୁଦାମାଜୀଙ୍କୁ ସୁନ୍ଦର ପୀତାମ୍ବର ଧାରଣ କରାଉଛନ୍ତି । ସୁନ୍ଦର ଉପବସ୍ତ୍ର ପିନ୍ଧାଇ ଦେଉଛନ୍ତି । ସୁନ୍ଦର ସୁବର୍ଣ୍ଣମାଳା ତଥା ମୁଦ୍ରିକା ଆଦି ପିନ୍ଧାଇ ଦେଉଛନ୍ତି। ପୁଣି ଗୁରୁକୁଳର କଥାକୁ ମନେ ପକାଇ କହୁଛନ୍ତି – ସୁଦାମା ଗୁରୁକୁଳର ଅଧ୍ୟୟନ ପରେ ତୁମେ କ'ଣ କଲ ? ତୁମର ବିବାହ ହୋଇଛି କି ନାହିଁ ? ଯେତେବେଳେ ସୁଦାମା ହିଁ କହିଲେ, ତତ୍‌କ୍ଷଣାତ୍ ଭଗବାନ ଶ୍ରୀକୃଷ୍ଣ କହୁଛନ୍ତି, "ତେବେ ତ ଭାଉଜ ମୋ ପାଇଁ କିଛି

ନା କିଛି ପଠାଇଥିବେ । କଣ ପଠାଇଛନ୍ତି କୁହ ।" ସୁଦାମା ଜୀ ତ ଦ୍ୱାରକାର ବୈଭବ ଦେଖି ଚକିତ ହୋଇଯାଇଥିଲେ । ବାସ୍ତବରେ ସେଠାରେ ଭବ୍ୟତା ତଥା ଐଶ୍ୱର୍ଯ୍ୟର ଦର୍ଶନରେ ହିଁ ସେ ଆଶ୍ଚର୍ଯ୍ୟ ତ ହୋଇ ଯାଇଥିଲେ, ତା ସହିତ ଭଗବାନ ଯେପରି ତାଙ୍କୁ ସ୍ୱାଗତ କଲେ, ତାଙ୍କୁ ଆଦର କଲେ, ତା ପରେ ସେ କିଛି ହିଁ ବୁଝିପାରୁ ନ ଥିଲେ - "ମୁଁ କିଏ ଓ କେଉଁଠାରେ ଅଛି' ।

ସେ ଭୁଲିଯାଇଥିଲେ ଯେ ତାଙ୍କ ସହିତ ସେ ଏକ ପୋଟଳୀ (ପୁଟୁଳି) ନେଇ ଆସିଛନ୍ତି, ଯେଉଁଥିରେ କିଛି ଖୁଦଭଜା ଅଛି । ଯେତେବେଳେ ଭଗବାନ ପଚାରିଲେ ସେତେବେଳେ ତାଙ୍କର ସେହି ପୁଟୁଳି କଥା ମନେପଡ଼ିଲା । କିନ୍ତୁ ଯେପରି ବୈଭବ ମଧ୍ୟରେ ତାକୁ କିପରି ବାହାର କରି ସେ ପ୍ରଦାନ କରିବେ ଏହା ବିଚାର କରିବାକୁ ଲାଗିଲେ । ଏଠାରେ ତ ବଡ଼ ବଡ଼ ଲୋକମାନେ ତାଙ୍କୁ ଭେଟିବାକୁ ଆସୁଥିବେ । ସେମାନେ କେଉଁଭଳି ଉପହାରକୁ ସବୁ ପ୍ରଦାନ କରୁଥିବେ । ଏବେ ମୁଁ ଏହି ଖୁଦଭଜାକୁ ତାଙ୍କୁ କିପରି ପ୍ରଦାନ କରିବି ? ଏଭଳି ବିଚାର କରି ସୁଦାମା ଜୀ କହୁଛନ୍ତି, "ନା, ମୁଁ କିଛି ଆଣି ନାହିଁ'' ଓ ତାକୁ (ପୁଟୁଳୀକୁ) ପୁଣି ଲୁଚାଉଛନ୍ତି । ଭଗବାନ କହିଲେ, ""ଏପରି ତ କେବେ ହୋଇପାରେ ନାହିଁ । ଭାଉଜ ମୋ ପାଇଁ ତ କିଛି ନା କିଛି ପଠାଇଥିବେ ।"

ଭଗବାନ ମନେ ମନେ ଭାବୁଛନ୍ତି ଯେ ଏହାର ପୁରୁଣା ସ୍ୱଭାବ ଏବେ ମଧ୍ୟ ଯାଇ ନାହିଁ । ଗୁରୁକୁଳରେ ଥିବା ସମୟରେ ଏ ମୋତେ କିଛି ଦେଇ ନ ଥିଲା, ଏବେ ମଧ୍ୟ କିଛି ଦେଉ ନାହିଁ । ଯେପର୍ଯ୍ୟନ୍ତ ମୋତେ କିଛି ଦେଉ ନାହିଁ, ସେ ପର୍ଯ୍ୟନ୍ତ ମୁଁ ତାଙ୍କୁ କିପରି ପ୍ରଦାନ କରିବି ? ଭଗବାନ ବଡ଼ କୃପାଳୁ ଅଟନ୍ତି । ସେ ସେହି ପୁଟୁଳୀଟିକୁ ଦେଖିପକାଇଲେ ଏବଂ ତାକୁ ଟଣାଟଣି କରିବାକୁ ଲାଗିଲେ । କିନ୍ତୁ ଏହି ବ୍ରାହ୍ମଣ ତାକୁ ରକ୍ଷା କରିବା ନିମନ୍ତେ ସମ୍ପୂର୍ଣ୍ଣ ଶକ୍ତି ଲଗାଇଲେ । କିନ୍ତୁ ଭଗବାନଙ୍କର ଇଛା ବିରୁଦ୍ଧରେ ସେ କଣ ବା କରି ପାରିଥା'ନ୍ତେ । ଶେଷରେ ଭଗବାନ ସେହି ପୋଟଳୀକୁ ନିଜ ହାତକୁ ନେଇ ଆସିଲେ। ପୁଣି ସେହି ପୋଟଳୀକୁ ଖୋଲି ସେଥିରୁ ଏକ ମୁଠା ଖୁଦ ଭଜା ନେଇ ନିଜ ପାଟିରେ ପକାଇଲେ । କହିଲେ - କେତେ ମିଠା ? ଏହାର ସ୍ୱାଦ ତ ଅମୃତ ସମାନ ଅଟେ । ସେ ଖାଇ ଚାଲିଛନ୍ତି, ଏତିକିବେଳେ ରୁକ୍ମିଣୀଜୀ ଭଗବାନଙ୍କ ହାତ ଧରି ପକାଇ କହିଲେ, "ଆପଣ କ'ଣ ଏକୁଟିଆ ସବୁ ଖାଇଦେବେ କି ? ଆମ ସମସ୍ତଙ୍କୁ କଣ କିଛି ମଳିବ ନାହିଁ ? ସୁଦାମାଜୀ ଆଶ୍ଚର୍ଯ୍ୟ ହୋଇ ଏସବୁ ଦେଖୁଥାଆନ୍ତି ।"

ଭଗବାନ ଏବେ ତାଙ୍କୁ ଭୋଜନ କରାଉଛନ୍ତି । ସୁବର୍ଣ୍ଣର ଥାଳୀ, ସବୁର୍ଣ୍ଣର ବାଟି ମଧ୍ୟ ଅଛି । ନାନା ପ୍ରକାରର ପକ୍ୱ ଅନ୍ନ ସହିତ ଷଡ଼ ରସ ଯୁକ୍ତ ଭୋଜନ । ବ୍ରାହ୍ମଣ (ସୁଦାମାଜୀ) ନିଜର ସାରା ଜୀବନରେ ଏଭଳି ଭୋଜନ ଖାଇବା ତ ଦୂର କଥା - କେବେ ଦେଖି ମଧ୍ୟ ନ ଥିଲେ । ଏଠାରେ ଭଗବାନ ତାଙ୍କୁ ଅତି ଆଗ୍ରହରେ ଖୁଆଉଛନ୍ତି । ଏହି ଘଟଣା ସବୁ ଦେଖି ଦେଖି ରୁକ୍ମିଣୀଜୀ ତଥା ଅନ୍ୟ ସମସ୍ତେ ବୁଝିଗଲେ ଯେ ଏହି ବ୍ରାହ୍ମଣ ଶ୍ରୀକୃଷ୍ଣଙ୍କର ଅତି ପ୍ରିୟ ମିତ୍ର ଅଟନ୍ତି । ପୁଣି ଭଗବାନ ତାଙ୍କୁ ନିଜ ପଲଙ୍କରେ ଶୁଆଇଲେ । ଏବେ ଦେଖନ୍ତୁ, ଏତେ ପ୍ରେମ ଥାଇ ମଧ୍ୟ ଭଗବାନ ତାଙ୍କୁ ନିଜ ପାଖରେ ଅଧିକ ଦିନ ରଖିଲେ ନାହିଁ । ପର ଦିନ ହିଁ ତାଙ୍କୁ ଶିଘ୍ର ବିଦା କରିଦେଲେ । କହିଲେ ଯେ, ସୁଦାମା, ଏବେ ତୁମେ ଘରକୁ ଯାଅ । ଆଚ୍ଛା, ଏ ପୁଣି କେଉଁ ପ୍ରକାର ଅତିଥି ସତ୍କାର ? ପରସ୍ପର ମଧ୍ୟରେ ଏତେ ପ୍ରେମ ଅଛି, ଯଦିବା ଅତିଥି ନିଜେ ଯିବା ନିମନ୍ତେ କହନ୍ତି, ତଥାପି ମଧ୍ୟ ଆଗ୍ରହ ପୂର୍ବକ ତାଙ୍କୁ ଅଟକାଇବା ଉଚିତ୍ । କିନ୍ତୁ ଏହାର ବିପରୀତ, ଏଠାରେ ଭଗବାନ କହୁଛନ୍ତି ଯେ, ଏବେ ତୁମେ ଫେରିଯାଇପାର । ଦେଖନ୍ତୁ, ଭଗବାନ ଭଲ ରୂପେ ଜାଣିଛନ୍ତି ଯେ, ସୁଦାମାଜୀଙ୍କର ପତ୍ନୀ ସେଠାରେ ତାଙ୍କୁ ସତତ ପ୍ରତୀକ୍ଷା କରିଥିବେ । ଦ୍ୱିତୀୟ କଥା, ଯଦି କେହି ଉପହାର ରୂପରେ ଚାରି ପ୍ରକାର ଚାଉଳର ଖୁଦ ଭଜା ସଙ୍ଗରେ ଆଣିଛି, ତେବେ ତାର ଘରର ଅବସ୍ଥା କଣ ହୋଇଥିବ, ଏହା ତ ଯେକୌଣସି ବ୍ୟକ୍ତି ବୁଝିପାରିବ । ପୁଣି ଭଗବାନ ତ ସର୍ବଜ୍ଞ ଅଟନ୍ତି । ସେ ସବୁ କିଛି ଜାଣନ୍ତି ଏବଂ ସବୁ ବିଚାର କରିପାରନ୍ତି ଯେ ଯଦି ଏହାକୁ ଏଠାରେ ଅଧିକ ଦିନ ପର୍ଯ୍ୟନ୍ତ ଅଟକାଇ ରଖିବି, ତେବେ ସେଠାରେ ତାଙ୍କ ପତ୍ନୀ ବ୍ୟାକୁଳ ହୋଇଯିବେ । ସେଥିପାଇଁ ଭଗବାନ ସୁଦାମାଙ୍କୁ ଶୀଘ୍ର ଘରକୁ ପଠାଇଦେଲେ ।

ଦେଖନ୍ତୁ, ଭଗବାନଙ୍କର ବ୍ୟବହାର ମଧ୍ୟ କେତେ ବିଚିତ୍ର ଅଟେ । ସେ ସୁଦାମାଙ୍କୁ ଯେଉଁ ପୀତାମ୍ବର ପିନ୍ଧାଇଥିଲେ, ଯେଉଁ ଆଭୂଷଣ ଆଦି ପିନ୍ଧାଇ ଥିଲେ, ସେହି ସବୁ ସେ ଓହ୍ଲାଇ ରଖିଲେ । ତାଙ୍କର ସେହି ପୁରୁଣା ଧୋତି ତାଙ୍କୁ ଦେଇ ଦେଲେ ଯେ ତାକୁ ହିଁ ପିନ୍ଧି ସେ ଘରକୁ ଫେରିବେ । କେବଳ ଏତିକି ନୁହେଁ ଭଗବାନ ତାଙ୍କୁ କିଛି ଦେଲେ ମଧ୍ୟ ନାହିଁ । ସେ ଯେଉଁଭଳି ଆସିଥିଲେ, ସେହିପରି ଖାଲି ହାତରେ ହିଁ ତାଙ୍କୁ ବିଦାୟ କରିଦେଲେ ।

ଏବେ ସୁଦାମା ଫେରୁଛନ୍ତି, ତାଙ୍କର ମନର ଇଚ୍ଛା ତ ପୂର୍ଣ୍ଣ ହେଲା, ପରନ୍ତୁ ଅଚାନକ ତାଙ୍କ ମନରେ ବିଚାର ଆସିଲା ଯେ ମୁଁ କାହିଁକି ଆସିଥିଲି ? ଭଗବାନଙ୍କ ପାଖକୁ ଯିବା ନିମନ୍ତେ ନିଜର କୌଣସି ପ୍ରୟୋଜନ ନ ଥିଲା, ପରନ୍ତୁ ତାଙ୍କ ମନରେ ବିଚାର ଆସିଲା ଯେ ପତ୍ନୀ ଯେଉଁ କାର୍ଯ୍ୟ ନିମନ୍ତେ କହିଥିଲେ ତାହା ତ କିଛି ହେଲା

ନାହିଁ। ସେ ବିଚାର କରୁଛନ୍ତି ଯେ ମୁଁ କିଛି ମାଗିଲି ନାହିଁ, ଶ୍ରୀକୃଷ୍ଣ ମଧ୍ୟ କିଛି ଦେଲେ ନାହିଁ। ଏହାପରେ ମଧ୍ୟ ଦେଖନ୍ତୁ, ସୁଦାମାଙ୍କୁ ମନରେ ଏପରି କିଛି ଭାବନା ଆସିଲା ନାହିଁ ଯେ ଇଏ ପୁଣି କିଭଳି ମିତ୍ର ? ଇଏ ମୋତେ କିଛି ହେଲେ ଦେଲେ ନାହିଁ । ମୋତେ ତ କହିଲେ ଯେ ମୋ ପାଇଁ ନିଶ୍ଚିତ ଭାଉଜ କିଛି ହେଲେ ଦେଇଥିବେ । କିନ୍ତୁ ମୁଁ ଯେତେବେଳେ ଫେରୁଛିତ ତ ମୋତେ କିଛି ଦେବା କଥା ତ କହିଲେ ନାହିଁ । ସୁଦାମା ଏଭଳି କିଛି ମଧ୍ୟ ଭାବିଲେ ନାହିଁ। ସେ ବିଚାର କରୁଛନ୍ତି ଯେ, ଭଗବାନ ଏଭଳି ଭାବିଥିବେ ଯେ ଯଦି ମୁଁ ତାଙ୍କୁ କିଛି ଧନ ଦେବି ସେ ମୋତେ ଭୁଲିଯିବ । ସେହି ଧନକୁ ସମ୍ଭାଳିବାରେ ଲାଗିଯିବ । ଏହାଦ୍ୱାରା (ତା ପାଇଁ) ମୋର ବିସ୍ମରଣ ହୋଇଯିବ। ଏହା ବିଚାର କରି ଭଗବାନ ମୋତେ କିଛି ଦେଲେ ନାହିଁ । ତାଙ୍କର ମୋ ଉପରେ କେତେ କୃପା ଯେ ତାଙ୍କର ସ୍ୱର୍ଣ୍ଣ ଆଦିର ଯେଉଁ ଆଭୂଷଣ ତଥା ପୀତାମ୍ବର ବସ୍ତ୍ର ଆଦି ମୋତେ ପିନ୍ଧାଇ ଥିଲେ, ତାକୁ ମଧ୍ୟ ସେ ମୋ ଠାରୁ ଓହ୍ଲାଇ ନେଲେ । ଦେଖନ୍ତୁ, ସୁଦାମାଙ୍କ ବିଚାର କିପରି (ମହାନ୍) !

ଏଭଳି ବିଚାର କରି ସୁଦାମା ଫେରି ଯାଉଛନ୍ତି । କିଛି ସମୟ ପରେ ଥକିଯିବାରୁ ଏକ ସ୍ଥାନରେ ବିଶ୍ରାମ କରିବା ପାଇଁ ବସିଗଲେ । ସେଠାରେ ବିଶ୍ରାମ ନେଉ ନେଉ ତାଙ୍କୁ ନିଦ ହୋଇଗଲା । ସେତେବେଳେ ଭଗବାନ ପୁଣି ଥରେ ସେହି ମାୟା କଲେ । ଯେତେବେଳେ ସୁଦାମାଜୀଙ୍କର ନିଦ୍ରା ଭଙ୍ଗ ହେଲା ସେ ଦେଖୁଛନ୍ତି ସମ୍ମୁଖରେ ଏକ ସୁନ୍ଦର ନଗରୀ ଭଳି ଦେଖାଯାଉଛି । ଏକ ମହଲ ମଧ୍ୟ ଦେଖାଯାଉଛି । ସେ ଚିହ୍ନିପାରିଲେ ନାହିଁ ଯେ ତାହା ହେଉଛି ତାଙ୍କର ନିଜ ଗାଁ । ସେଥିପାଇଁ ସେ ଚିନ୍ତାରେ ପଡ଼ିଗଲେ ଯେ - ମୁଁ କେଉଁଠାରେ ପହଞ୍ଚିଗଲି । ସେ ତାଙ୍କ ନିଜ ଘରକୁ ମଧ୍ୟ ଚିହ୍ନି ପାରିଲେ ନାହିଁ । ଚିନ୍ତାରେ ପଡ଼ିଗଲେ ଯେ ତାଙ୍କ ଚାଳଘର ଖଣ୍ଡିକ କେଉଁଆଡ଼େ ଗଲା ? ସେହି ସମୟରେ ସେ ଦେଖିଲେ ଯେ ସମ୍ମୁଖରେ ଯେଉଁ ମହଲ, ଯେଉଁ ଘର ଥିଲା, ସେହିଠାରୁ ଦାସଦାସୀମାନଙ୍କୁ ନେଇ ଜଣେ ସ୍ତ୍ରୀ ତାଙ୍କୁ ଆଡ଼କୁ ଚାଲି ଆସୁଛନ୍ତି । ସେ ସୁନ୍ଦର ବସ୍ତ୍ରାଳଙ୍କାରରେ ସୁଶୋଭିତ ଥିଲେ । ସୁଦାମା ତାଙ୍କୁ ପଚାରୁଛନ୍ତି ଏଠାରେ ସୁଦାମାଙ୍କର ଏକ କୁଡ଼ିଆ ଥିଲା ତାହା କୁଆଡ଼େ ଗଲା ? ସେ ନିଜର ପତ୍ନୀଙ୍କୁ ମଧ୍ୟ ଚିହ୍ନିପାରିଲେ ନାହିଁ। ପତ୍ନୀ ତାଙ୍କର ହାତ ଧରି ମହଲ ଭିତରକୁ ନେଇଯାଉଛନ୍ତି । କହୁଛନ୍ତି "ଏହା ହିଁ ହେଉଛି ଆପଣଙ୍କର ଘର ।" ସାମାନ୍ୟ ବିଚାର କରନ୍ତୁ । ସେହି ସମୟରେ ସୁଦାମାଙ୍କର ମାନସିକ ସ୍ଥିତି କିପରି ହୋଇଥିବ ? ସେ ସମସ୍ତ ଦେଖି ସୁଦାମା ଭଗବାନଙ୍କର ବାତ୍ସଲ୍ୟର ଗୁଣଗାନ କରିବାକୁ ଲାଗିଲେ ।

ଦ୍ୱାରକାରେ ଭଗବାନ ସୁଦାମାଜୀଙ୍କୁ କିଛି ଦେଲେ ନାହିଁ କାରଣ ପ୍ରଭୁ ଜାଣିଛନ୍ତି- ଯେ "ଇଏ କେବଳ ମୋରି ପାଇଁ ମୋ ପାଖକୁ ଆସିଛନ୍ତି ।" ସେଥିପାଇଁ ଭଗବାନ ସୁଦାମାଙ୍କୁ ତ ନିଜେ ନିଜକୁ ହିଁ ପ୍ରଦାନ କରି ଦେଲେ । ତାଙ୍କ ପତ୍ନୀଙ୍କର ଇଛା ଥିଲା ଯେ ଭଗବାନ ତାଙ୍କର ସେହି ଅବସ୍ଥାକୁ ହରଣ କରିନିଅନ୍ତୁ । ତେଣୁ ଭଗବାନ ସେହି ସମ୍ପୂର୍ଣ୍ଣ ଐଶ୍ୱର୍ଯ୍ୟ ତାଙ୍କ ପତ୍ନୀଙ୍କୁ ଦେଇ ଦେଲେ । କହିଲେ - ତାଙ୍କର ଅର୍ଥ ଆବଶ୍ୟକ - ତେଣୁ ଭଗବାନ ତାଙ୍କୁ ଅର୍ଥ ଐଶ୍ୱର୍ଯ୍ୟ ପ୍ରଦାନ କଲେ । କିନ୍ତୁ ସୁଦାମାଙ୍କର ତ ପରମାର୍ଥ ଆବଶ୍ୟକ। ସେ ଭଗବାନଙ୍କ ନିକଟକୁ ଧନ ମାଗିବାକୁ ଯାଇ ନ ଥିଲେ । ସେ ଭଗବାନଙ୍କୁ ଭେଟିବା ପାଇଁ ହିଁ ଯାଇଥିଲେ । ତେଣୁ ଭଗବାନ ତାଙ୍କୁ ମିଳିଗଲେ । ଶ୍ରୀକୃଷ୍ଣ ଚରିତ୍ରରେ ସୁଦାମାଙ୍କର ଏହି ପ୍ରସିଦ୍ଧ ପ୍ରସଙ୍ଗ ହୃଦୟ-ସ୍ପର୍ଶୀ । ବଡ଼ ବଡ଼ କବିମାନେ ମଧ୍ୟ ଏହି ପ୍ରସଙ୍ଗ ଉପରେ ଅନେକ କାବ୍ୟ କବିତା ମଧ୍ୟ ରଚନା କରିଛନ୍ତି ।

ଏହାପରେ ବର୍ଣ୍ଣନ ଆସେ ଯେ ଥରେ ଏକ ସର୍ବଗ୍ରାସ ସୂର୍ଯ୍ୟପରାଗ ଅବସରରେ, କୁରୁକ୍ଷେତ୍ରର ସମନ୍ତପଞ୍ଚକ ତୀର୍ଥରେ ଭାରତବର୍ଷର ସମସ୍ତ ଭକ୍ତମାନେ ଯଦୁବଂଶୀ, କୁରୁବଂଶୀ ତଥା ନନ୍ଦ ପ୍ରଭୃତି ବ୍ରଜବାସୀ ଗଣ ପହଞ୍ଚିଥିଲେ । ସେଠାରେ ସମସ୍ତଙ୍କର ମିଳନ ହୋଇଥିଲା। ଭଗବାନଙ୍କର ପରମପ୍ରିୟ । ଗୋପୀମାନଙ୍କ ସହିତ ମଧ୍ୟ ସମସ୍ତଙ୍କର ମିଳନ ହୋଇଥିଲା।

ସେହି ସମୟରେ ଦ୍ରୌପଦୀ ଶ୍ରୀକୃଷ୍ଣଙ୍କ ପତ୍ନୀମାନଙ୍କୁ ପଚାରୁଛନ୍ତି ଯେ ଶ୍ରୀକୃଷ୍ଣଙ୍କ ସହିତ ସେମାନଙ୍କର ବିବାହ କିଭଳି ଅନୁଷ୍ଠିତ ହୋଇଥିଲା ? ସେତେବେଳେ ଭଗବାନଙ୍କର ଅଷ୍ଟପାଟରାଣୀମାନେ ବର୍ଣ୍ଣନ କରୁଛନ୍ତି ଯେ ସେମାନଙ୍କର ବିବାହ ଭଗବାନଙ୍କ ସହିତ କିପରି ଅନୁଷ୍ଠିତ ହେଲା। ସେତିକିବେଳକୁ ସେଠାରେ ପହଞ୍ଚିଥିବା ସମସ୍ତ ଋଷିଗଣ, ଭଗବାନ ଶ୍ରୀକୃଷ୍ଣ ତଥା ବଳରାମଙ୍କର ଦର୍ଶନ ନିମନ୍ତେ ସେଠାରେ ପହଞ୍ଚିଛନ୍ତି । ତାହା ଦେଖି ବଳରାମ ତଥା ଅନ୍ୟ ରାଜାମାନଙ୍କ ସହିତ ଭଗବାନ ଶ୍ରୀକୃଷ୍ଣ ସମସ୍ତ ଋଷିମାନଙ୍କୁ ପୂଜନ ପୂର୍ବକ ସମସ୍ତଙ୍କୁ ସମ୍ବୋଧିତ କରି କହୁଛନ୍ତି - ଦୀର୍ଘକାଳର ଉପାସନା ଅଥବା ତୀର୍ଥାଟନର ତୁଳନାରେ ଅତି ଅଳ୍ପ ସମୟ **ମହାପୁରୁଷଙ୍କର ସେବା** ଅଧିକ ଶ୍ରେଷ୍ଠ ଅଟେ, **କାରଣ ବାସ୍ତବରେ** ସେହିମାନଙ୍କର କୃପା ଦ୍ୱାରା **ଭେଦ ବୁଦ୍ଧିର ନାଶ** ହୋଇଥାଏ **ପୁଣି ସମସ୍ତ ଋଷିଗଣ ଭଗବାନଙ୍କର ସ୍ତୁତି କରୁଛନ୍ତି** । ଏହାପରେ ଋଷିମାନଙ୍କର ଆଦେଶ ଅନୁସାରେ ସେମାନଙ୍କର ମାର୍ଗଦର୍ଶନରେ ବସୁଦେବ ଯଜ୍ଞ ଦ୍ୱାରା ବିଷ୍ଣୁ ଭଗବାନଙ୍କର ଆରାଧନା କଲେ ଏବଂ ଅନ୍ୟ ସମସ୍ତଙ୍କର ସ୍ୱାଗତ ସତ୍କାର ମଧ୍ୟ କଲେ । ଯଜ୍ଞ ଉପରାନ୍ତ,

ବସୁଦେବଙ୍କର ପ୍ରସନ୍ନତା ନିମନ୍ତେ ନନ୍ଦ ପ୍ରଭୃତି ସମସ୍ତ ବ୍ରଜବାସୀ ତିନି ମାସ ପର୍ଯ୍ୟନ୍ତ ସେଠାରେ ରହି ପୁଣି ବ୍ରଜକୁ ଫେରି ଆସିଥିଲେ ।

## ମାତା ଦେବକୀଙ୍କର ଛଅ ପୁତ୍ରମାନଙ୍କୁ ଫେରାଇ ଆଣିବା

ଥରେ ଶ୍ରୀକୃଷ୍ଣ ତଥା ବଳରାମ ଯଥାବତ୍ ପ୍ରାତଃକାଳରେ ଆସି ବସୁଦେବଜୀ ଓ ମାତା ଦେବକୀଙ୍କୁ ପ୍ରଣାମ କଲେ । ସେତେବେଳେ ନିଜ ପୁତ୍ର ଭଗବାନ ଶ୍ରୀକୃଷ୍ଣଙ୍କ ବିଷୟରେ ବସୁଦେବ ଯେଉଁଭଳି ସବୁ ଶୁଣିଥିଲେ ସେହି ରୀତିରେ ତାଙ୍କର ମାହାତ୍ମ୍ୟ ଗାନ କରୁ କରୁ କହିବାକୁ ଲାଗିଲେ, "ଯଦ୍ୟପି ଆପଣ ଆମ ପୁତ୍ର ରୂପରେ ଏଠାରେ ପ୍ରକଟ ହୋଇଛନ୍ତି, ତଥାପି ଆପଣ କୌଣସି ସାଧାରଣ ବାଳକ ନୁହଁନ୍ତି ।" ପୁଣି ବସୁଦେବ ଭଗବତ୍ ତତ୍ତ୍ୱର ନିର୍ଦ୍ଦେଶ କରିଲେ । ଦେବକୀ ମାତା ସେହି ପାଖରେ ହିଁ ବସିଥିଲେ । ଯେତେବେଳେ ସେ ଏସବୁ ଶୁଣିଲେ, ସେତେବେଳେ ନିଜ ପୁତ୍ରମାନଙ୍କ କଥା ମନେ ପଡ଼ିଲା, ଯେଉଁମାନଙ୍କୁ ଜନ୍ମ ମାତ୍ରେ ହିଁ କଂସ ମାରିଦେଇଥିଲା । ସେ ଶ୍ରୀକୃଷ୍ଣଙ୍କୁ କହୁଛନ୍ତି "ସମସ୍ତେ କହୁଛନ୍ତି, ତୁମେ ଈଶ୍ୱର ଅଟ । ତୁମେ ସବୁ କିଛି କରିପାର । ମୁଁ ଶୁଣିଛି ଯେ ତୁମେ ଦୁହେଁ ନିଜର ଗୁରୁ ସାନ୍ଦୀପନିଜୀଙ୍କର ମୃତ ପୁତ୍ରକୁ ଫେରାଇ ଆଣିଥିଲ । ମୋର ଛଅ ପୁତ୍ରଙ୍କୁ ଜନ୍ମ ମାତ୍ରେଣ ଦୁଷ୍ଟ କଂସ ମାରି ଦେଇଥିଲା । ମୁଁ ସେହି ସମସ୍ତ ପୁତ୍ରମାନଙ୍କୁ ଦେଖିବାକୁ ଚାହୁଁଛି, ସେମାନଙ୍କ ସହିତ ମିଶିବାକୁ ଚାହୁଁଛି । ତୁମେ ଦୁହେଁ ସେମାନଙ୍କୁ ନେଇ କରି ଆସ ।" ସେତେବେଳେ ଭଗବାନ ନିଜ ମାତାଙ୍କର ଇଚ୍ଛାକୁ ପରିପୂର୍ଣ୍ଣ କରିଛନ୍ତି । ଯେଉଁ ପୁତ୍ରମାନଙ୍କର ମୃତ୍ୟୁ ହୋଇଯାଇଥିଲା, ସେମାନଙ୍କୁ ସେ ପୁଣି ଫେରାଇ ଆଣିଲେ ଏବଂ ନିଜର ମା'ଙ୍କୁ ସମର୍ପି ଦେଲେ । ଦେବକୀ ମାତା ସେମାନଙ୍କୁ ଦେଖି ଆନନ୍ଦରେ ବିଭୋର ହୋଇଗଲେ । ସେମାନଙ୍କୁ ହୃଦୟରେ ଲଗାଇ ସ୍ତନପାନ କରାଇଲେ । ସେମାନେ ସମସ୍ତେ ବସୁଦେବ, ଶ୍ରୀକୃଷ୍ଣ ତଥା ବଳରାମଙ୍କୁ ପ୍ରଣାମ କଲେ । ଭଗବାନଙ୍କର ଦର୍ଶନ ତଥା ସ୍ପର୍ଶ ଦ୍ୱାରା ଆତ୍ମ ଦର୍ଶନ ପ୍ରାପ୍ତ କରି, ସମସ୍ତେ ଚାହିଁଛନ୍ତି - ସେମାନେ ସମସ୍ତେ ଦେବ ଲୋକକୁ ଚାଲିଗଲେ ।

## ସୁଭଦ୍ରା ହରଣ

ଏହାପରେ ସୁଭଦ୍ରା ଜୀ, ଯେ କି ଭଗବାନ ଶ୍ରୀକୃଷ୍ଣଙ୍କର ଭଉଣୀ ଥିଲେ, ତାଙ୍କର ହରଣ ପ୍ରସଙ୍ଗ ଆସେ । ଅତି ଆଶ୍ଚର୍ଯ୍ୟର କଥା ଯେ, ବଳରାମ, ଭଉଣୀ ସୁଭଦ୍ରାଙ୍କର ବିବାହ ଦୁର୍ଯ୍ୟୋଧନଙ୍କ ସହିତ କରାଇବାକୁ ଚାହୁଁଥିଲେ । ଶ୍ରୀକୃଷ୍ଣ, ବସୁଦେବ, ଦେବକୀ ମାତା ପ୍ରଭୃତିଙ୍କର ଏହି କଥାରେ ସହମତ ନ ଥିଲା । ସେହି ସମୟରେ ଅର୍ଜ୍ଜୁନ ତୀର୍ଥାଟନ

କରି କରି ପ୍ରଭାସ କ୍ଷେତ୍ରରେ ପହଞ୍ଚି ଥିଲେ । ସେଠାରେ ସେ ସୁଭଦ୍ରାଙ୍କର ବିବାହ ପ୍ରସଙ୍ଗ ଶୁଣିବା ପରେ ତାଙ୍କୁ ବିବାହ କରିବା ନିମନ୍ତେ ତାଙ୍କ ମନରେ ଇଚ୍ଛା ଜାଗ୍ରତ ହେଲା । ସେହି କାରଣରୁ ସେ, ତ୍ରିଦଣ୍ଡୀ ଯତି ବେଶ ଧାରଣ କରି ଦ୍ୱାରକା ପୁରରେ ପହଞ୍ଚି ଗଲେ ବର୍ଷା ଋତୁର ଚାରିମାସ ପର୍ଯ୍ୟନ୍ତ ସେ ସେହିଠାରେ ହିଁ ରହିଲେ । ଥରେ ବଳରାମ ତାଙ୍କୁ ସମ୍ମାନ ପୂର୍ବକ ତାଙ୍କୁ ନିମନ୍ତ୍ରଣ କରି ଘରକୁ ଆଣିଲେ ଏବଂ ତାଙ୍କୁ ଭୋଜନ କରାଇଲେ ସେତେବେଳେ ସୁଭଦ୍ରା ଅର୍ଜ୍ଜୁନଙ୍କୁ ଦେଖି ନିଶ୍ଚୟ କରିନେଲେ ଯେ ସେ ଅର୍ଜ୍ଜୁନଙ୍କୁ ବିବାହ କରିବେ । ଅର୍ଜ୍ଜୁନ ତ ପୂର୍ବରୁ ତାହା ହିଁ ଚାହୁଁଥିଲେ । ପୁଣି ଦିନେ ଯେତେବେଳେ ସୁଭଦ୍ରା ଦେବ ଦର୍ଶନ ନିମନ୍ତେ ଦ୍ୱାରକାର ଦୁର୍ଗ ବାହାରକୁ ବାହାରିଲେ, ସେତେବେଳେ ଶ୍ରୀକୃଷ୍ଣ, ବସୁଦେବ ତଥା ଦେବକୀ ମାତାଙ୍କର ଅନୁମତି ନେଇ ଅର୍ଜୁନ ତାଙ୍କୁ ହରଣ କରି ନେଇ ଗଲେ । ଯେତେବେଳେ ବଳରାମ ଏହି କଥା ଜାଣିଲେ, ସେତେବେଳେ ସେ ଅତିଶୟ କ୍ରୋଧିତ ହୋଇଥିଲେ । ଶ୍ରୀକୃଷ୍ଣ ତଥା ଅନ୍ୟ ସମ୍ବନ୍ଧିମାନେ ଅନେକ ପ୍ରକାର ତାଙ୍କୁ ବୁଝାଇବା ପରେ ସେ ଶାନ୍ତ ହୋଇଥିଲେ । ପୁଣି ବହୁତ ଧନ, ସମ୍ପତ୍ତି ତଥା ଦାସ-ଦାସୀମାନଙ୍କୁ ଯୌତୁକ ରୂପରେ ପଠାଇଦେଲେ । ଏହିଭଳି ଅର୍ଜ୍ଜୁନ ସୁଭଦ୍ରାଙ୍କୁ ଅପହରଣ କରି ପୁଣି ତାଙ୍କୁ ବିବାହ କଲେ ।

ଏବେ ଦେଖନ୍ତୁ, ଏହି ସୁଭଦ୍ରା କିଏ ? ଧ୍ୟାନ ଦେବାର ବିଷୟ ହେଉଛି ଯେ, ସୁଭଦ୍ରା ହେଉଛନ୍ତି ଭଗବାନଙ୍କର ଯୋଗ ମାୟା । ଯୋଗମାୟାଙ୍କର ବିବାହ ତ ଭଗବାନଙ୍କର ସହିତ ହିଁ ସମ୍ଭବ ଅନ୍ୟଥା ଅନ୍ୟ କାହା ସହିତ ନୁହେଁ । କିନ୍ତୁ ଭଗବାନଙ୍କର ଏହି ଶ୍ରୀକୃଷ୍ଣ ଅବତାରରେ ସେ ଭଗବାନଙ୍କର ଭଉଣୀ ହୋଇ ଆସିଛନ୍ତି । ତେଣୁ ତାଙ୍କର ବିବାହ ଭଗବାନଙ୍କ ସହିତ ହେବା ଅସମ୍ଭବ । ଅର୍ଜୁନ ତ ଭଗବାନଙ୍କର ବିଭୂତି ଅଟନ୍ତି, ସେ ଭଗବାନଙ୍କଠାରୁ ଅଲଗା ହେଲେ ମଧ୍ୟ ଅଲଗା ନୁହଁନ୍ତି । ତେଣୁ ସୁଭଦ୍ରାଙ୍କର ବିବାହ କେବଳ ତାଙ୍କ ସହିତ ହିଁ ସମ୍ଭବ ଥିଲା । ଦୁର୍ଯ୍ୟୋଧନ ତଥା ଅନ୍ୟ କାହା ସହିତ ସମ୍ଭବ ନ ଥିଲା ।

## ଶ୍ରୀକୃଷ୍ଣଙ୍କର ମିଥିଳା ନରେଶ ବହୁଳାଶ୍ୱ ତଥା ଶ୍ରୁତଦେବ ବ୍ରାହ୍ମଣଙ୍କ ଗୃହକୁ ଏକ ସମୟରେ ପ୍ରବେଶ

**ଏହାପରେ ଶୁକଦେବ ଜୀ ବର୍ଣ୍ଣନା କରୁଛନ୍ତି ଯେ ମିଥିଳା ନରେଶ ବହୁଳାଶ୍ୱ ତଥା ମିଥିଳାର ହିଁ ନିବାସୀ ଶ୍ରୁତଦେବ ନାମକ ଏକ ଗୃହସ୍ଥ ବ୍ରାହ୍ମଣ, ଏ ଦୁହେଁ ଭଗବାନଙ୍କର ପ୍ରିୟ ଭକ୍ତ ଥିଲେ । ସେ ଦୁହିଁଙ୍କୁ ପ୍ରସନ୍ନ କରିବା ନିମନ୍ତେ ଥରେ ଭଗବାନ ଶ୍ରୀକୃଷ୍ଣ ନାରଦ**

ଜୀ, ବାମଦେବ ଅତ୍ରି ଆଦି ଅନେକ ଋଷିମାନଙ୍କୁ ସାଥିରେ ନେଇ ମିଥିଳା ନଗରୀକୁ ଯାଉଛନ୍ତି । ରାଜା ବହୁଳାଶ୍ୱ ତଥା ଶ୍ରୁତଦେବ ବ୍ରାହ୍ମଣ ଦୁହେଁ ସାଥି ହୋଇ ଆସି ଭଗବାନଙ୍କୁ କହୁଛନ୍ତି, "ଭଗବାନ କୃପା ପୂର୍ବକ ଆପଣ ସମସ୍ତ ଋଷିମାନଙ୍କ ସହିତ ଆମ ଘରକୁ ଆସନ୍ତୁ ।" ସେ ଦୁହେଁ ହିଁ ଋହୁଁଥିଲେ ଯେ ଭଗବାନ ପ୍ରଥମେ ଆମ ଘରକୁ ଆସନ୍ତୁ। ଭଗବାନ ବିଋର କଲେ ଏବେ ଦୁଇଟି କାର୍ଯ୍ୟ ଏକ ସମୟରେ କିପରି କରିବି ? ପୁଣି କହିଲେ, "ତୁମେ ଦୁହେଁ ଘରକୁ ଯାଅ ମୁଁ ଆସୁଛି ।" ଏପରି କହି ଭଗବାନ ସେ ଦୁଇଜଣଙ୍କୁ ନିଜ ନିଜ ଘରକୁ ପଠାଇ ଦେଲେ ।

ପୁଣି ଭଗବାନ ଦୁଇଟି ରୂପରେ ପ୍ରକଟ ହୋଇ, ଏକ ରୂପରେ ସମସ୍ତ ଋଷିମାନଙ୍କୁ ସଙ୍ଗରେ ନେଇ ସେ ରାଜା ବହୁଳାଶ୍ୱଙ୍କର ଘରକୁ ଗଲେ, ଏବଂ ଅନ୍ୟ ରୂପରେ ଗରିବ ବ୍ରାହ୍ମଣ ଘରକୁ ଗଲେ । ଦେଖନ୍ତୁ, ଭଗବାନ ଏଠାରେ କେବଳ ନିଜକୁ ଦୁଇଟି ରୂପରେ ପ୍ରକଟ କରି ଥିଲେ, ତାହା ନୁହେଁ ବରଂ ଭଗବାନ ସେହି ସମସ୍ତ ଋଷିଗଣମାନଙ୍କର ମଧ୍ୟ ଦୁଇ ଦୁଇ ରୂପ କରି ଦେଇଥିଲେ । ତେବେ ତ ଏକ ସମୟରେ ଦୁହିଁଙ୍କର ଘରକୁ ସମସ୍ତ ଋଷିମାନଙ୍କୁ ସଙ୍ଗରେ ନେଇ ଯାଇ ପାରିଥିଲେ । ଯେଉଁ ଭଗବାନ ଅନେକ ଗୋପାଳ ବାଳକ ତଥା ସେମାନଙ୍କର ବାଛୁରୀମାନଙ୍କର ରୂପ ନେଇଥିଲେ, ତାଙ୍କ ନିମନ୍ତେ ଏହା କୌଣସି ବଡ଼ କଥା ନୁହେଁ ।

ଏବେ ରାଜା ବହୁଳାଶ୍ୱଙ୍କ ନିକଟରେ ଭଗବାନ ଅଠାଇଶ ଦିନ ପର୍ଯ୍ୟନ୍ତ ରହିଲେ, କାରଣ ଜଣେ ରାଜା ସେତେ ଦିନ ଧରି ସେମାନଙ୍କର ଆତିଥ୍ୟ କରିବାକୁ ସମର୍ଥ ଥିଲେ। ତାଙ୍କ ପାଇଁ ତାହା ସମ୍ଭବ ଥିଲା । ଯଦ୍ୟପି ଭଗବାନ ସେହି ବ୍ରାହ୍ମଣଙ୍କ ଘରେ ମଧ୍ୟ ସେତିକି ଦିନ ପର୍ଯ୍ୟନ୍ତ ରହିଥିଲେ, ତଥାପି ତାଙ୍କୁ ଲାଗିଲା, ଯେପରି ସତରେ ଭଗବାନ ଗୋଟିଏ ଦିନ ହିଁ ମାତ୍ର ରହିଛନ୍ତି । କାରଣ ସେହି ବ୍ରାହ୍ମଣ ନିମନ୍ତେ ସମସ୍ତଙ୍କର ଆତିଥ୍ୟ ଏତେ ଦିନ ପର୍ଯ୍ୟନ୍ତ କରିପାରିବା କଠିନ ଥିଲା । ଏଠାରେ ଏହି ପ୍ରସଙ୍ଗରୁ ଆମ୍ଭମାନଙ୍କୁ ଗୋଟିଏ କଥା ବୁଝିନେବା ଉଚିତ୍ ଯେ ସବୁଠାରେ ଆମର ସ୍ୱାଗତ ସେହିଭଳି ହେବ, ଏପରି ଅପେକ୍ଷା ରଖିବା ଉଚିତ୍ ନୁହେଁ । ଯେ ଡାଲି ରୁଟି ଖାଇବା ଲୋକ ଏବଂ ଖୁଆଇବା ଲୋକଠାରୁ ପଞ୍ଚପକ୍ୱାନ୍ନ ଅପେକ୍ଷା କରିବା ଉଚିତ ନୁହେଁ । ଯେ ଯେପରି, ତାଠାରୁ ସେହିଭଳି ହିଁ ଆଦର ଆତିଥ୍ୟ ସ୍ୱୀକାର କରିବା ଉଚିତ । ତେବେ ଭଗବାନ ବ୍ରାହ୍ମଣ ଶ୍ରୁତଦେବ ତଥା ରାଜା ବହୁଳାଶ୍ୱ ଦୁଇଜଣଙ୍କର ଆଦର ଆତିଥ୍ୟକୁ ଏକ ସମୟରେ ସ୍ୱୀକାର କଲେ, ସେମାନଙ୍କୁ ପ୍ରସନ୍ନ କଲେ, ଏବଂ ସତ୍ ମାର୍ଗର ଉପଦେଶ ଦେଇ ପୁଣି ସେମାନଙ୍କୁ ପରମାର୍ଥର ବୋଧ ମଧ୍ୟ ପ୍ରଦାନ କରାଇଦେଲେ । ତାପରେ ସେ ଦ୍ୱାରକାକୁ ଫେରି ଆସିଲେ ।

ପରବର୍ତ୍ତୀ ଅଧ୍ୟାୟରେ ଶ୍ରୁତି ଦ୍ୱାରା ଭଗବାନଙ୍କର ସ୍ତୁତିର ବର୍ଣ୍ଣନ ଆସେ । ଏକ-ଏକ ଶ୍ରୁତିବାକ୍ୟ ଦ୍ୱାରା ଭଗବାନଙ୍କୁ ଶାସ୍ତ୍ରୀୟ ରୀତିରେ ସ୍ତୁତି କରାଯାଇଛି । ଏହାପରେ **"ଶିବାଚ୍ୟୁତୟୋଃ ସ୍ୱଭାବ ବୈଲକ୍ଷଣ୍ୟମ୍'** ଭଗବାନ ଶିବ ତଥା ଭଗବାନ ବିଷ୍ଣୁଙ୍କର ସ୍ୱଭାବରେ ଯେଉଁ ଭେଦ ତାହା ହିଁ ବର୍ଣ୍ଣନ କରାଯାଇଛି ।

## ଭସ୍ମାସୁରର ବିନାଶ

ଥରେ ରାଜା ପରୀକ୍ଷିତ ଏକ ବିଲକ୍ଷଣ ପ୍ରଶ୍ନ ପଚାରିଲେ । ସେ କହିଲେ, "ଭଗବାନ ମୁଁ ଏକ ବିଚିତ୍ର ଘଟଣା ଦେଖୁଛି ଯେ ଭଗବାନ ଶଙ୍କର ତ ହେଉଛନ୍ତି ବୈରାଗୀ ବାବା, ଭସ୍ମ ଲଗାଇ ଗୋଟିଏ ସ୍ଥାନରେ ବସି ଧ୍ୟାନ କରୁଥାଆନ୍ତି । ତାଙ୍କର କୌଣସି ବୈଭବ ଅଥବା ଐଶ୍ୱର୍ଯ୍ୟ ତ ଦେଖାଯାଇନଥାଏ । କିନ୍ତୁ ତାଙ୍କୁ ଯେଉଁମାନେ ଭକ୍ତି କରନ୍ତି, ସେମାନଙ୍କୁ ତ ଅଖଣ୍ଡ ବୈଭବ ପ୍ରାପ୍ତି ହୋଇଥାଏ । ଯେଉଁଠାରେ କି, ବିଷ୍ଣୁ ଭଗବାନ ତ ସ୍ୱୟଂ ଲକ୍ଷ୍ମୀପତି ଅଟନ୍ତି, କିନ୍ତୁ ତାଙ୍କୁ ଭକ୍ତି କରିବା ଲୋକଙ୍କ ସଂଖ୍ୟା ଅଧିକ ନୁହେଁ ଏବଂ ସେମାନେ ଅଧିକ ବୈଭବଶାଳୀ ମଧ୍ୟ ନୁହଁନ୍ତି ।" ଶୁକଦେବଜୀ ମହାରାଜ କହୁଛନ୍ତି, "ଦେଖନ୍ତୁ, କଥା ହେଉଛି ଯେ ଶଙ୍କର ଭଗବାନ ଅତିଶୀଘ୍ର ପ୍ରସନ୍ନ ହୋଇଯାଆନ୍ତି । ତାଙ୍କର ନାମ ହେଉଛି "ଆଶୁତୋଷ' । ଆଶୁତୋଷର ଅର୍ଥ ହେଉଛି, ଯେ ଶୀଘ୍ର ପ୍ରସନ୍ନ ହୋଇଥାଆନ୍ତି । ସେ ସମ୍ପୂର୍ଣ୍ଣ ଦାନୀ ଅଟନ୍ତି । ତାଙ୍କୁ ଯାହା ମାଗିଲେ ସେ ସବୁ କିଛି ଦେଇ ଦିଅନ୍ତି ଏବଂ ଦେବା ଦ୍ୱାରା କେବେ କେବେ ସେ ନିଜେ ନିଜକୁ ସଂକଟରେ ମଧ୍ୟ ପକାଇ ଦେଇଥାଆନ୍ତି ।

ଭଗବାନ ବିଷ୍ଣୁ ଏପରି ନୁହନ୍ତି । ସେ ନିଜର ଭକ୍ତମାନଙ୍କୁ କଠିନ ପରୀକ୍ଷା କରାନ୍ତି ଏତେ ଶୀଘ୍ର କୌଣସି ବର ଦିଅନ୍ତି ନାହିଁ । ଭଗବାନ ଶିବଙ୍କର ସ୍ୱଭାବ ଏପରି ଯେ କେହି ସାମାନ୍ୟ ତପସ୍ୟା କଲେ ମଧ୍ୟ, ସେ ତା ଉପରେ ପ୍ରସନ୍ନ ହୋଇ ତାକୁ ବର ପ୍ରଦାନ କରନ୍ତି । ଯେଉଁଠାରେ କି ବିଷ୍ଣୁ ଭଗବାନ ଯାହା ଉପରେ ପ୍ରସନ୍ନ ହୁଅନ୍ତି, ପ୍ରଥମେ ତାଙ୍କର ସମସ୍ତ ଧନ ହରଣ କରି ନେଇଥାଆନ୍ତି । ଏହାପରେ ତାଙ୍କର ସ୍ୱଜନ ଜ୍ଞାତି-କୁଟୁମ୍ବମାନେ ତାଙ୍କୁ ତ୍ୟାଗ କରି ଦେଇଥାଆନ୍ତି । ସେତେବେଳେ ସେ ଧନ ଅର୍ଜନରେ ଲାଗି ଯାଇଥାଏ । ତେବେ ସେଥିରେ ମଧ୍ୟ ବିଷ୍ଣୁ ଭଗବାନ ତାକୁ ବିଫଳ କରାଇ ଦେଇଥାଆନ୍ତି । ଶେଷରେ ସେ ଘରିଆଡୁ ବିଫଳ ହେବାର ଭୟରେ ବିରକ୍ତ ହୋଇଯାଇଥାଏ । ସେତେବେଳେ ବିଷ୍ଣୁ ଭଗବାନ ତାର ଭକ୍ତିକୁ ବଢ଼ାଇ (ସୁଦୃଢ଼ କରି), ପୁଣି ତା ପ୍ରତି କୃପା କରିଥାଆନ୍ତି ଏବଂ ସେତେବେଳେ ତାକୁ ପରମବ୍ରହ୍ମଙ୍କର ପ୍ରାପ୍ତି ହୋଇଥାଏ ।

ଏହି ସନ୍ଦର୍ଭରେ ଏକ ପ୍ରସିଦ୍ଧ ଇତିହାସ ଅଛି । ଜଣେ ଅସୁର ଥିଲା, ତାର ନାମ ଥିଲା ବୃକାସୁର, ପରେ ତାର ନାମ ହେଲା ଭସ୍ମାସୁର ହେଲା । ସେ ନିଜର ତପସ୍ୟା ବଳରେ ଶିବଜୀଙ୍କୁ ପ୍ରସନ୍ନ କରି ଦେଲା । ଶିବ ଜୀ ପ୍ରସନ୍ନ ହୋଇ ପଚାରିଲେ, "ତୁମେ କଣ ଚାହୁଁଛ ? ସେହି ବର ମାଗିନିଅ ।" ସେ କହୁଛି, "ମୁଁ ଯାହାର ମୁଣ୍ଡ ଉପରେ ହାତ ରଖିଦେବି ସେ ଜଳି ଜଳି ଭସ୍ମ ହୋଇଯିବ ।" ଏହା ଶୁଣି ଭଗବାନ ଶିବଜୀ ପ୍ରଥମେ ତ ଚିନ୍ତାରେ ପଡ଼ିଗଲେ, ତଥାପି ସ୍ମିତ ହାସ୍ୟ ଦେଇ ତାକୁ "ତଥାସ୍ତୁ' କହି ଦେଲେ । ବର ପ୍ରାପ୍ତି ପରେ ବୃକାସୁରର ବୁଦ୍ଧି ବିପରୀତ ହୋଇଗଲା । ବର ଦେଇସାରି ଭଗବାନ ଶିବଜୀ ଯିବାକୁ ହିଁ ବାହାରିବା ବେଳକୁ ବୃକାସୁର କହୁଛି, "ଏଠାରେ ମୋ ସମ୍ମୁଖରେ ଆପଣ ହିଁ ଅଛନ୍ତି, ତେଣୁ ସବୁଠାରୁ ପ୍ରଥମେ ଆପଣଙ୍କ ମୁଣ୍ଡ ଉପରେ ହାତ ଦେଇ ପରୀକ୍ଷା କରିବି ଯେ ମୋ ହାତରେ ସେହି ଶକ୍ତି ଆସିଛି କି ନାହିଁ ।" ଏବେ ଭଗବାନ ଶଙ୍କରଙ୍କୁ ଲାଗିଲା ଯେ ଆରେ, ଏହି ତ ବଡ଼ ଗୋଳମାଳିଆ କଥା ହେଲା। ମୁଁ ତଥାସ୍ତୁ କହି ଦେବାରୁ ତାର ବର ସିଦ୍ଧ ହେବା ତ ନିଶ୍ଚିନ୍ତ । ଏହିପରି ବିଚାର କରି ସେ ଦୌଡ଼ିବାକୁ ଆରମ୍ଭ କଲେ, ସେହି ବୃକାସୁର ମଧ୍ୟ ତାଙ୍କ ପଛରେ ପଛରେ ଦୌଡ଼ିବାକୁ ଲାଗିଲା । ଦୌଡ଼ି ଦୌଡ଼ି ଭଗବାନ ଶିବଜୀ ଭଗବାନ ବିଷ୍ଣୁଜୀଙ୍କ ପାଖରେ ବୈକୁଣ୍ଠରେ ପହଞ୍ଚିଗଲେ ।

ବିଷ୍ଣୁ ଭଗବାନ ତାଙ୍କର ଦଶା ଦେଖି କହୁଛନ୍ତି, "ଆପଣ ତ ଏପରି ଯେ ଯିଏ ଯେଉଁପରି ବର ମାଗିଥାଏ, ତାକୁ ସେହିପରି ବର ପ୍ରଦାନ କରି ଦେଇ ନିଶ୍ଚିନ୍ତ ରହନ୍ତି ଏବଂ ନିଜେ ସଂକଟରେ ପଡ଼ିଯାଆନ୍ତି ।" ପୁଣି, ଭଗବାନ ବିଷ୍ଣୁ ଜଣେ ବଟୁ ବ୍ରାହ୍ମଣ ବେଶ ହୋଇ ବୃକାସୁର ପାଖକୁ ଯାଉଛନ୍ତି, ଏହିପରି ଭାଗବତରେ ଲେଖା ଯାଇଛି । ଅନ୍ୟ ପୁରାଣ ଅନୁସାରେ ଭଗବାନ ମୋହିନୀ ରୂପରେ ଯିବାର ଉଲ୍ଲେଖ ଅଛି । ଶକୁନୀ ନନ୍ଦନ ବୃକାସୁର ନିକଟରେ ପହଞ୍ଚି ବିନମ୍ର ଭାବରେ ପ୍ରଣାମ କରି କହୁଛନ୍ତି, "ଏତେ ଶୀଘ୍ର ଶୀଘ୍ର ଆପଣ କେଉଁଆଡ଼େ ଯାଉଛନ୍ତି ?" କହିଲେ, "ମୁଁ ଶିବଜୀଙ୍କ ପଛରେ ଯାଉଛି । ସେ ବର ପ୍ରଦାନ କରି ପଳାଇ ଯାଉଛନ୍ତି ।" ବିଷ୍ଣୁ ଭଗବାନ କହୁଛନ୍ତି "କିପରି ବର ?" ସେ କହୁଛି, "ମୁଁ ଯାହା ମୁଣ୍ଡ ଉପରେ ହାତ ରଖିବି, ସେ ଜଳି ଭସ୍ମ ହୋଇଯିବ । ମୁଁ ଏପରି ବର ମାଗିଲି ଏବଂ ସେ ମଧ୍ୟ ମୋତେ ଦେଲେ । ଏବେ ମୁଁ ତାଙ୍କ ମୁଣ୍ଡରେ ହାତ ରଖି ପରୀକ୍ଷା କରିବାକୁ ଚାହୁଁଛି ଯେ ସେହି ବର ମୋତେ ପ୍ରାପ୍ତ ହୋଇଛି କି ନାହିଁ ।" ଏହା ଶୁଣି ବଟୁ ବେଶ ଧାରୀ ଭଗବାନ ହସିବାକୁ ଲାଗିଲେ।

ଭଗବାନଙ୍କର ହସ ହେଉଛି ମାୟା । ଏହି କଥାକୁ ଆମେ ପୂର୍ବରୁ ମଧ୍ୟ ଦେଖିଛନ୍ତି।

ତେବେ ଭଗବାନ ତାଙ୍କୁ ମୋହିତ କରିଦେଲେ । ଭଗବାନ କହୁଛନ୍ତି - ଆରେ ! ତୁମେ ଏହି ଛୋଟ ଛୋଟ କଥାରେ କିପରି ବିଶ୍ୱାସ କରିନେଉଛ ? ଏବେ ମଧ୍ୟ ଯଦି ତାଙ୍କ କଥାରେ ବିଶ୍ୱାସ ଅଛି, ତେବେ ନିଜ ମୁଣ୍ଡ ଉପରେ ହାତ ରଖି ପରୀକ୍ଷା କରି ନିଅ । ନାରାୟଣ ଭଗବାନଙ୍କର ମଧୁର କଥାରେ ସେ ଭ୍ରମିତ ହୋଇଗଲା । ସେ ମୋହିତ ହୋଇଗଲା । କହିଲା, "ହଁ, କଥାଟା ତ ଠିକ୍ ହିଁ ଲାଗୁଛି ।"

ମୋହିନୀ ଅବତାର ଦୃଷ୍ଟିରୁ ବର୍ଣ୍ଣନ ଆସେ ଯେ, ସେ ମୋହିନୀ (ଭଗବାନ)ଙ୍କୁ ଦେଖିବା କ୍ଷଣି ସେ ନିଜେ ନିଜକୁ ଭୁଲିଗଲା । ମୋହିନୀ ନୃତ୍ୟ କରିବାକୁ ଲାଗିଲେ, ତେବେ ବୃକାସୁର ମଧ୍ୟ ତାଙ୍କ ସହିତ ନୃତ୍ୟ କରିବାକୁ ଲାଗିଲା । ନୃତ୍ୟ କରି କରି ମୋହିନୀ ଭଗବାନ ନିଜ ମୁଣ୍ଡ ଉପରେ ନିଜ ହାତ ରଖି ଦେଲେ, ଏହା ଦେଖି ବୃକାସୁର ମଧ୍ୟ ତାଙ୍କୁ ଅନୁକରଣ କରି ସେହିପରି କଲା । ନିଜ ମୁଣ୍ଡ ଉପରେ ନିଜେ ହାତ ରଖିବା ମାତ୍ରକେ ସେ ଜଳିଯାଇ ଭସ୍ମ ହୋଇଗଲା । ଏହିପରି ଭସ୍ମାସୁରର ନାମ ହୋଇଗଲା ।

ଆମର ଗୁରୁଦେବ ସ୍ୱାମୀ ଚିନ୍ମୟାନନ୍ଦଜୀ ଏହି ପ୍ରସଙ୍ଗର ଅତି ସୁନ୍ଦର ଅର୍ଥ କରିଛନ୍ତି । ଏହି ଭସ୍ମାସୁର କିଏ ? ଏ ହେଉଛି ଆମର ବୁଦ୍ଧି ? ସ୍ୱଭାବତଃ ହିଁ ବୁଦ୍ଧି ବି ଚିକିତ୍ସା କରିବାରେ ଲାଗିଥାଏ । ଯେକୌଣସି ବସ୍ତୁ ସମ୍ମୁଖରେ ଆସିଯାଏ, ସେ ତାର ପରୀକ୍ଷଣ କରିଥାଏ, ଏବଂ ତାକୁ ଛିନ୍ନ-ଭିନ୍ନ କରି ପକାଏ । ଯେପରି - ଏହା କ'ଣ ? କାହିଁକି ଅଛି ? କିପରି ଅଟେ ? ଆଦି-ଆଦି । ଏହିଭଳି ଭାବରେ ଛିନ୍ନ-ଭିନ୍ନ କରି, ବିଚାର-ମନ୍ଥନ କରି ସେହି ବସ୍ତୁର ଅସ୍ତିତ୍ୱକୁ ଶେଷ କରିଦିଏ, ଏହା ବୁଦ୍ଧିର ସ୍ୱଭାବ ଅଟେ। କିନ୍ତୁ, ଯେଉଁ ପର୍ଯ୍ୟନ୍ତ ବୁଦ୍ଧି ଅନ୍ୟ ବିଷୟକୁ ହିଁ ପରୀକ୍ଷଣ କରୁଥାଏ, ସେ ପର୍ଯ୍ୟନ୍ତ, ଆମେ ତାକୁ ବିଦ୍ୟା କହିପାରୁ, କିନ୍ତୁ ତାହା ହେଉଛି ଅବିଦ୍ୟା । ତାହା କୌଣସି ଆବିଷ୍କାର ହେଉ ଅଥବା ବୈଜ୍ଞାନିକ ଗବେଷଣା ହଉ। ବେଦାନ୍ତରେ, ଏହି ବୁଦ୍ଧିର ହାତକୁ ସ୍ୱୟଂ ନିଜ ଉପରେ ହିଁ ରଖି ଦିଆଯାଇଥାଏ । ଉଦାହରଣ ସ୍ୱରୂପ - ଏହା ବିଚାର କର ଯେ ତୁମେ କିଏ ? କେଉଁଠାରୁ ଆସିଛ ? ଏ ପର୍ଯ୍ୟନ୍ତ ତୁମେ ଏହା କ'ଣ, ତାହା କଣ - ଏହିଭଳି ବହୁତ ବିଚାର କଲଣି । ଏବେ କିଛି ବେଦାନ୍ତର ଅନୁରୂପ "କୋଽହମ୍' ର ବିଚାର କର। ତୁମେ କିଏ - ଏହା ବିଚାର କର । ନିଜର ବୁଦ୍ଧିକୁ ନିଜ ଆଡ଼କୁ ମୋଡିଦିଅ। ଯେତେବେଳେ ଆମ ବୁଦ୍ଧି କୋଽହମ୍‌ର ବିଚାର କରିବାକୁ ଲାଗେ, ସେତେବେଳେ ସେ ତ ସ୍ୱୟଂ ସମାପ୍ତ ହୋଇଯାଏ, କେବଳ ଶୁଦ୍ଧ ଅହମ୍ ଅଥବା କେବଳ ଭଗବାନ ହିଁ ଅବଶେଷ ରହିଯାଆନ୍ତି। ପରମ ପୂଜ୍ୟ ସ୍ୱାମୀଜୀ ଏହିଭଳି ସୁନ୍ଦର ବର୍ଣ୍ଣନ କରିଛନ୍ତି । ତେବେ ଟିକିଏ ନିଜେ ନିଜ ଉପରେ ହାତ ରଖନ୍ତୁ !

**ଅହମୟଂ କୁତୋ ଭବତି ଚିନ୍ୱତଃ ।**

**ଅୟି ପତତ୍ୟହଂ ନିଜବିଋରଣମ୍ ॥ (ଉପଦେଶ ସାର-୧୯)**

**ଅହମି ନାଶଭାଜ୍ୟହମହଂତୟା ।**

**ସ୍ଫୁରତି ହୃସ୍ବୟଂ ପରମପୂର୍ଣ୍ଣସତ୍ ॥ (ଉପଦେଶ ସାର-୨୦)**

ମୁଁ କିଏ ? ମୁଁ କେଉଁଠାରୁ ଆସିଛି ? ଯେତେବେଳେ ଏହିଭଳି ଭାବରେ ବିଋର ହେବାକୁ ଲାଗେ, ସେତେବେଳେ ଅହଂକାରର ବୃତ୍ତି ଗଳିତ ତଥା ସମାପ୍ତ ହୋଇଯାଏ। ଯେତେବେଳେ ଅହଂକାରର ନାଶ ହୋଇଯାଇଥାଏ, ସେତେବେଳେ ଆମର ସତ୍ ଚିତ୍ ସ୍ୱରୂପ ପ୍ରକଟ ହୋଇଯାଇଥାଏ । ଏହି ସୁନ୍ଦର କଥା ଏଠାରେ ବୁଝାଇ ଦିଆଯାଇଛି। ଏହା ପରେ ଏକ ଅତି ସୁନ୍ଦର ପ୍ରସଙ୍ଗ ଆସେ ।

## ଭୃଗୁଋଷିଙ୍କ ଦ୍ୱାରା ତ୍ରିଦେବମାନଙ୍କୁ ପରୀକ୍ଷା

ଥରେ ଋଷିମୁନିମାନଙ୍କ ମଧ୍ୟରେ ବିଋର ଋଲିଲା ଯେ ବ୍ରହ୍ମା, ବିଷ୍ଣୁ ଏବଂ ମହେଶ୍ୱର- ଏହି ତିନି ଦେବଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ କିଏ ? ଏହାର ନିର୍ଣ୍ଣୟ କରିବା ନିମନ୍ତେ ସେମାନେ ଭୃଗୁ ଋଷିଙ୍କୁ କହିଲେ ଯେ ଆପଣ ଯାଇ ପରୀକ୍ଷଣ କରି ଆସନ୍ତୁ ଯେ ଏହି ତିନିଜଣଙ୍କ ମଧ୍ୟରେ ଶ୍ରେଷ୍ଠ କିଏ? ତେବେ ଏହା ଜାଣିବା ନିମନ୍ତେ ମହର୍ଷି ଭୃଗୁ ସର୍ବପ୍ରଥମେ ବ୍ରହ୍ମାଜୀଙ୍କ ନିକଟକୁ ଯାଉଛନ୍ତି । ସେଠାରେ ପହଞ୍ଚି ପ୍ରଣାମ ନ କରି ଦଣ୍ଡବତ୍ (ଦଣ୍ଡ ସମାନ) ଠିଆ ହୋଇ ରହିଲେ । ତାଙ୍କୁ ସ୍ତବ୍ଧ ଭାବରେ ଠିଆ ହେବାର ଦେଖି ବ୍ରହ୍ମାଜୀ କ୍ରୋଧ ପୂର୍ବକ ବିଋର କଲେ ଯେ ମୋର ପୁତ୍ର ହୋଇ ମଧ୍ୟ ଏଠାକୁ ଆସି ମୋତେ ନମସ୍କାର କଲା ନାହିଁ, ଅଭିବାଦନ ମଧ୍ୟ କଲା ନାହିଁ । ତାଙ୍କର କ୍ରୋଧ ତ ସୃଷ୍ଟି ହେଲା, କିନ୍ତୁ ସେ ବିଋର କଲେ ଯେ ଯାହା ହେଲେ ମଧ୍ୟ, ଏ ତ ମୋର ହିଁ ପୁତ୍ର ଅଟେ, ତେଣୁ ଛାଡ଼ । ଏପରି ବିଋର କରି ସେ ନିଜର କ୍ରୋଧକୁ ଶାନ୍ତ କରିଦେଲେ । ଏହା ଦେଖି ମହର୍ଷି ଭୃଗୁ କହିଲେ - ଏ ତ ପରୀକ୍ଷାରେ ଫେଲ ହୋଇଗଲେ । ଯାଙ୍କୁ ତ କ୍ରୋଧ ତ ଆସିଗଲା ।

ପୁଣି ସେ କୈଳାସ ପର୍ବତ ଉପରେ ବିରାଜମାନ ଶିବଜୀଙ୍କ ନିକଟକୁ ଯାଉଛନ୍ତି। ଭଗବାନ ଶିବ ଯେତେବେଳେ ଭୃଗୁଋଷିଙ୍କୁ ଆସିବାର ଦେଖିଲେ, ସେତେବେଳେ ତାଙ୍କୁ ଲାଗିଲା ସତେ ଯେପରି ତାଙ୍କର ଜଣେ ଭାଇ ଆସୁଛନ୍ତି । ସେଥିପାଇଁ ସେ ପ୍ରେମ ପୂର୍ବକ ନିଜ ଆସନରୁ ଉଠି ଭୃଗୁ ଋଷିଙ୍କୁ ହୃଦୟରେ ଲଗାଇବା ନିମନ୍ତେ ଋହିଁଛନ୍ତି ସେତେବେଳେ

ଭୃଗୁଋଷି କହିଲେ, "ମୋ ଠାରେ ହାତ ଲଗାନ୍ତୁ ନାହିଁ । ମୋତେ ସ୍ପର୍ଶ କରନ୍ତୁ ନାହିଁ । ଆପଣ ସଦାବେଳେ ବେଦ ବର୍ହିଭୁତ ଆଚରଣ କରି ଭ୍ରମଣ କରୁଛନ୍ତି ।"ଏପରି କଥା ଶ୍ରବଣ ମାତ୍ରେ ଶିବଜୀଙ୍କର କ୍ରୋଧ ହେଲା । ତୀକ୍ଷ୍ଣ ଦୃଷ୍ଟିରେ ସେ ଭୃଗୁଋଷିଙ୍କୁ ଚାହିଁବାକୁ ଲାଗିଲେ ଏବଂ ନିଜର ତ୍ରିଶୂଳରେ ତାଙ୍କୁ ମାରିବାକୁ ହିଁ ଯାଉଥିଲେ, କିନ୍ତୁ ସତୀ ଜୀ ତାଙ୍କୁ ବାରଣ କଲେ । ଭୃଗୁଜୀ କହିଲେ - "ଆରେ, ଏ ମଧ୍ୟ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇପାରିଲେ ନାହିଁ ।"

ଏହାପରେ ସେ ନାରାୟଣ ଭଗବାନଙ୍କ ପାଖକୁ ଗଲେ, ଯେଉଁଠାରେ ଲକ୍ଷ୍ମୀଜୀ ମଧ୍ୟ ଥିଲେ । ଦେଖନ୍ତୁ, ବ୍ରହ୍ମାଜୀଙ୍କ ପାଖକୁ ଗଲେ ତ ସେ କିଛି କରିଲେ ନାହିଁ, କିଛି କହିଲେ ମଧ୍ୟ ନାହିଁ । ସେହିଥିରେ ତାଙ୍କର କ୍ରୋଧ ତ ଆସିଲା । ଶିବଜୀଙ୍କ ପାଖକୁ ଯାଇ କିଛି କଠୋର ଶବ୍ଦ ଉଚ୍ଚାରଣ କରିଦେବାରୁ ଶିବଜୀଙ୍କର କ୍ରୋଧ ଆସିଗଲା ।

ଏବେ ନାରାୟଣ ଭଗବାନଙ୍କ ପାଖକୁ ଯାଇଛନ୍ତି ଏବଂ ସିଧା ନାରାୟଣ ଭଗବାନଙ୍କ ଛାତିରେ ପଦାଘାତ କରିଛନ୍ତି । ଭଗବାନ ନାରାୟଣ ତାଙ୍କର ପାଦ ଦୁଇଟିକୁ ଧରି ନେଇଛନ୍ତି, ଏବଂ କହୁଛନ୍ତି, "ବ୍ରାହ୍ମଣ ଦେବତା, ମୋର ହୃଦୟ ବହୁତ କଠୋର ଅଟେ ଏବଂ ଆପଣଙ୍କର ପାଦ ଦୁଇଟି ଅତି କୋମଳ ଅଟେ । ଆପଣଙ୍କ ପାଦକୁ କଷ୍ଟ ହୋଇନାହିଁ ତ ?" ଭୃଗୁଋଷି ମନରେ ବିଚାର କରୁଛନ୍ତି, "ଇଏ ତ ଉତ୍ତୀର୍ଣ୍ଣ ହୋଇଗଲେ। ପରୀକ୍ଷାରେ ସଫଳ ହୋଇଗଲେ ।"

ଭଗବାନ ତାଙ୍କର ଚରଣ ଚିହ୍ନକୁ ସବୁଦିନ ପାଇଁ ନିଜର ହୃଦୟରେ ଧାରଣ କରିନେଲେ, ଯଦ୍ଦ୍ୱାରା ବ୍ରାହ୍ମଣମାନଙ୍କ ପ୍ରତି ତାଙ୍କର କେତେ ଅଧିକ ପ୍ରେମ ତାହା ଏଠାରେ ପ୍ରକଟ ହୋଇଛି । କିନ୍ତୁ ସେଠାରେ ଲକ୍ଷ୍ମୀଜୀ ମଧ୍ୟ ଥିଲେ । ଭୃଗୁଋଷିଙ୍କର ସେହି ବ୍ୟବହାରକୁ ତାଙ୍କର କ୍ରୋଧ ଆସିଗଲା । ସେହିଦିନଠାରୁ ମା ଲକ୍ଷ୍ମୀ ବ୍ରାହ୍ମଣମାନଙ୍କ ପାଖକୁ ଯାଆନ୍ତି ହିଁ ନାହିଁ । ଠିକ ହିଁ ତ ଅଟେ, ଭଗବାନ କ୍ଷମା କରିଦିଅନ୍ତୁ, କିନ୍ତୁ ତାଙ୍କ ପ୍ରତି କଣ ଏଭଳି କରିବା ଉଚିତ ଥିଲା ? ଲକ୍ଷ୍ମୀଜୀଙ୍କୁ ଲାଗିଲା ମୋ ସମ୍ମୁଖରେ ଭଗବାନଙ୍କୁ ଲାତ ମାରିଦେଲା । କିଛି କହିଲା, ନା କିଛି କାହାଠାରୁ ଶୁଣିଲା, ଏଠାକୁ ଆସିଲା, ସିଧା ଭଗବାନଙ୍କୁ ଲାତ ମାରିଦେଲା । ଏହା ପୁଣି କେଉଁଭଳି ଘଟଣା ଅଟେ । ଭୃଗୁଋଷି ଯାହା କରିଗଲେ, ତାକୁ ଏ ପର୍ଯ୍ୟନ୍ତ ବ୍ରାହ୍ମଣ ଲୋକମାନେ ଭୋଗ କରୁଛନ୍ତି । ଏହିପରି ଘଟଣା ଏଠାରେ ବର୍ଣ୍ଣନ ହୋଇଛି ।

ପୁଣି ଏହାପରେ ବର୍ଣ୍ଣନ ଆସେ ଯେ, ଦ୍ୱାରକାର ଏକ ବ୍ରାହ୍ମଣ ଯେ ସବୁବେଳେ

ଦୁଃଖି ଥାଏ, କାରଣ ତାର ପୁତ୍ର ଜନ୍ମ ହେବା ପରେ ମୃତ୍ୟୁ ହୋଇଯାଉଥାଏ । ସେଥିପାଇଁ ସେ ରାଜାଙ୍କୁ ଦୋଷ ଦେବା ସହିତ ରାଜଦ୍ୱାର ସମ୍ମୁଖରେ ଯାଇ ବିଳାପ କରୁଥିଲା । ଯେତେବେଳେ ତାର ନବମ ବାଳକର ମଧ୍ୟ ମୃତ୍ୟୁ ହୋଇଗଲା, ସେତେବେଳେ ସେ ପୁଣି ରାଜଦ୍ୱାର ସମ୍ମୁଖରେ ପହଞ୍ଚିଲା । ସେହି ସମୟରେ ଅର୍ଜ୍ଜୁନ ସେଠାରେ ଥିଲେ । ସେ ତାକୁ ପ୍ରତିଶ୍ରୁତି ଦେଲେ ଯେ ମୁଁ ଆପଣଙ୍କ ସନ୍ତାନକୁ ରକ୍ଷା କରିବି ଅନ୍ୟଥା ମୁଁ ମୋର ପ୍ରାଣ ତ୍ୟାଗ କରିଦେବି । ଯେତେବେଳେ ଅର୍ଜ୍ଜୁନ ତାହା କରିବାରେ ସଫଳ ହୋଇପାରିଲେ ନାହିଁ ସେତେବେଳେ ଭଗବାନ ସେହି ବ୍ରାହ୍ମଣର ସମସ୍ତ ପୁତ୍ରମାନଙ୍କୁ ଫେରାଇ ଆଣି ଦେଇଥିଲେ । ଏହିପରି ଭଗବାନ ଅର୍ଜ୍ଜୁନଙ୍କର ବଚନ ତଥା ପ୍ରାଣର ରକ୍ଷା କରିଥିଲେ ଏବଂ ସେହି ବ୍ରାହ୍ମଣ ତଥା ଅନ୍ୟ ପ୍ରଜାମାନଙ୍କ ଉପରେ କୃପା ପ୍ରଦାନ କରିଥିଲେ ।

ଏହାପରେ, ଦଶମ ସ୍କନ୍ଧର ଶେଷ ଅଧ୍ୟାୟରେ ଭଗବାନଙ୍କର ଲୀଳା ବିହାରର ବର୍ଣ୍ଣନ କରାଯାଇଛି । ଦ୍ୱାରକାରେ ଶ୍ରୀକୃଷ୍ଣଙ୍କର ଷୋହଳ ହଜାରରୁ ଅଧିକ ରାଣୀ ଥିଲେ । ସେ ସମସ୍ତଙ୍କର ନିଜ-ନିଜର ବିରାଟ ଅତି ସୁନ୍ଦର ମହଲ ଥିଲା । ଯେତେ ରାଣୀ ଥିଲେ, ସେତିକି ହିଁ ରୂପ ଧାରଣ କରି ଭଗବାନ ସେମାନଙ୍କ ସହିତ ଲୀଳା ବିହାର କରୁଥିଲେ । ସଂକ୍ଷେପରେ ଭଗବାନଙ୍କର ପତ୍ନୀମାନେ ତାଙ୍କୁ କେତେ ଅନୁରାଗ କରୁଥିଲେ, କେତେ ଅଧିକ ପ୍ରେମ କରୁଥିଲେ - ଏହି ସମସ୍ତ ଏଠାରେ (ଦଶମ ସ୍କନ୍ଧ, ଶେଷ ଅଧ୍ୟାୟ) ବର୍ଣ୍ଣନ କରାଯାଇଛି । ପୁଣି ଶ୍ରୀ ଶୁକଦେବଜୀ ଯଦୁବଂଶର ସନ୍ତାନ ସନ୍ତତିମାନଙ୍କର ସଂକ୍ଷିପ୍ତ ବର୍ଣ୍ଣନ କରିଛନ୍ତି । ତାପରେ କୁହାଯାଇଛି ଯେ ସମସ୍ତ ଦେବତାମାନେ ହିଁ ଯଦୁବଂଶୀ ରୂପରେ ଅବତରିତ ହୋଇଥିଲେ । ସେମାନେ ସମସ୍ତେ ଶ୍ରୀକୃଷ୍ଣଙ୍କୁ ଅତି ସ୍ନେହ କରୁଥିଲେ ଏବଂ ସେହି ଭାବରେ ବୁଡ଼ି ରହୁଥିଲେ ।

ଭଗବାନ ଶ୍ରୀକୃଷ୍ଣ ସର୍ବତ୍ର ଅଛନ୍ତି, ସେ ହିଁ ସମସ୍ତଙ୍କର ଆଶ୍ରୟ ସ୍ଥାନ ଅଟନ୍ତି । ତଥାପି ଅଧର୍ମର ଅନ୍ତ କରି, ପ୍ରାଣୀମାନଙ୍କର ଦୁଃଖକୁ ପ୍ରଶମିତ କରିବା ନିମନ୍ତେ ସେ ଅବତାର ଗ୍ରହଣ କରନ୍ତି । ଶେଷରେ ଭଗବାନଙ୍କର ଜୟକାର କରିବା ସହିତ କହୁଛନ୍ତି ଯେ, ଯିଏ ତାଙ୍କର ଦିବ୍ୟ କର୍ମର ତଥା ତାଙ୍କର ଲୀଳାମାନଙ୍କର ଶ୍ରବଣ, କୀର୍ତ୍ତନ ତଥା ଚିନ୍ତନ କରିବ, ସେହି ମନୁଷ୍ୟ ତାଙ୍କର ପରାଭକ୍ତିକୁ ପ୍ରାପ୍ତ କରେ, ଭଗବାନଙ୍କର ପରମଧାମକୁ ପ୍ରାପ୍ତ କରିନିଏ । ସେଥିପାଇଁ ଭଗବାନଙ୍କର ଦିବ୍ୟ ଲୀଳାର ଶ୍ରବଣ ଅବଶ୍ୟ କରିବା ଉଚିତ୍ । ଏଥି ସହିତ ଦଶମସ୍କନ୍ଧର ସମାପ୍ତ ହେଉଛି ।



# ଏକାଦଶ ସ୍କନ୍ଧ

## ମୁକ୍ତିର ସ୍ୱରୂପ

ଏକାଦଶ ସ୍କନ୍ଧ ହେଉଛି ମୁକ୍ତି ସ୍କନ୍ଧ ଏବଂ ଭାଗବତର ସାର ଅଟେ। ଯଦ୍ୟପି ସଗୁଣ ଲୀଳା ଦୃଷ୍ଟିରୁ ଦଶମ ସ୍କନ୍ଧ ହିଁ ଭାଗବତର ସାର ଅଟେ, ତଥାପି ଜ୍ଞାନ ଦୃଷ୍ଟିରେ ଏକାଦଶ ସ୍କନ୍ଧର ମହତ୍ତ୍ୱ ସର୍ବଶ୍ରେଷ୍ଠ ଅଟେ । ମହାରାଷ୍ଟ୍ରର ସନ୍ଥ ଏକନାଥଜୀଙ୍କର ନାମ ବଡ ପ୍ରସିଦ୍ଧ । ସେ ଜଣେ ପ୍ରସିଦ୍ଧ ସନ୍ଥ ଅଟନ୍ତି । ସେ ଏହି ଏକାଦଶ ସ୍କନ୍ଧ ଉପରେ ବହୁତ ସୁନ୍ଦର ବ୍ୟାଖ୍ୟା ଲେଖିଛନ୍ତି । ମହାରାଷ୍ଟ୍ରରେ ତା'ହା ବିଶେଷ ପ୍ରସିଦ୍ଧ ହୋଇଛି। ସେ ଜଣେ ଅଦ୍ୱୈତ ସାଧୁଥିଲେ । ଦ୍ୱୈତର ପରିଭାଷା ତ ତାଙ୍କୁ ଆସୁ ବି ନ ଥିଲା। ଯେଉଁଭଳି ଭାବରେ ଏକାଦଶୀ ବ୍ରତର ବିଶେଷ ତାତ୍ପର୍ଯ୍ୟ ଅଛି, ସେହିଭଳି ଏହି ଏକାଦଶ ସ୍କନ୍ଧର ମଧ୍ୟ ତାତ୍ପର୍ଯ୍ୟ ହେଉଛି, ଆମେ ଆମର ପାଞ୍ଚଟି ଜ୍ଞାନେନ୍ଦ୍ରିୟ ତଥା ଏକମନ - ଏହି ଏକାଦଶ ଇନ୍ଦ୍ରିୟମାନଙ୍କୁ ଭଗବତ୍ ତତ୍ତ୍ୱରେ ଯୁକ୍ତ କରିଦେବା ଉଚିତ୍ । ମୁକ୍ତିର ପରିଭାଷା ଆମେ ପ୍ରଥମରୁ ବିଚାର କରିଛନ୍ତି । ଶ୍ରୀ ଶୁକଦେବଜୀ (ଦ୍ୱିତୀୟ ସ୍କନ୍ଧରେ) କହିଛନ୍ତି -

**ମୁକ୍ତିର୍ହିତ୍ୱନ୍ୟଥାରୂପଂ ସ୍ୱରୂପେଣ ବ୍ୟବସ୍ଥିତିଃ ॥** (୨.୧୦.୬)

ମୁକ୍ତିର ଅର୍ଥ ହେଉଛି ନିଜ ସ୍ୱରୂପରେ ସ୍ଥିତ ହୋଇଯିବା । ଏବେ ଆମେମାନେ ନିଜ ସ୍ୱରୂପଠାରୁ ଭିନ୍ନ ଅନ୍ୟ କୌଣସି ସ୍ଥିତିକୁ ପ୍ରାପ୍ତ କରିଛନ୍ତି । ସେହି ଅନ୍ୟଥା ସ୍ଥିତିକୁ ଛାଡ଼ି ନିଜର ବାସ୍ତବିକ ସ୍ୱରୂପରେ, ସ୍ୱ ସ୍ୱରୂପରେ ସ୍ଥିତ ହୋଇଯିବାକୁ 'ମୁକ୍ତି' କୁହାଯାଏ।

ଦେଖନ୍ତୁ, ମୋକ୍ଷ ବିଷୟରେ ଲୋକମାନଙ୍କର ମନରେ ବଡ଼ ବିଚିତ୍ର ଧାରଣା ସବୁ ହୋଇଥାଏ, ଭିନ୍ନ ଭିନ୍ନ ବିଚାର ସବୁ ହୋଇଥାଏ । କେହି କେହି କହନ୍ତି ସ୍ୱର୍ଗକୁ ଯିବା ହେଉଛି ମୁକ୍ତି । କେହି କେହି କହନ୍ତି ଭଗବାନଙ୍କର ଲୋକକୁ ଯିବା ତଥା ଭଗବାନଙ୍କର ନିକଟକୁ ଯିବା ହିଁ ମୋକ୍ଷ ଅଟେ ଅଥବା ଭଗବାନଙ୍କ ଭଳି ଐଶ୍ୱର୍ଯ୍ୟ ପ୍ରାପ୍ତ କରିବା, ତଥା ଭଗବାନଙ୍କ ପରି ରୂପ ପ୍ରାପ୍ତ କରିବା ମୋକ୍ଷ ଅଟେ । କେହି କେହି କହନ୍ତି ଜନ୍ମ ମରଣ ପିଣ୍ଡରୁ ମୁକ୍ତି ହେବା ତଥା ପୁର୍ନଜନ୍ମ ନ ନେବା ହିଁ ମୋକ୍ଷ ଅଟେ । ଏପରି ନାନାପ୍ରକାରର ଧାରଣା ହେଉଥିବା ଯୋଗୁଁ ଏହା ଉପରେ ଭଲ ଭାବରେ ବିଚାର କରିବା ଉଚିତ୍ ।

ଏବେ ଆମ୍ଭମାନଙ୍କୁ ଯେଉଁ ରୂପ ପ୍ରାପ୍ତ ହୋଇଛି, ତାହା ଆମର ପ୍ରକୃତ ରୂପ ନୁହେଁ। ସେଥିପାଇଁ ଆମ୍ଭମାନଙ୍କୁ ଦୁଃଖ ପ୍ରାପ୍ତ ହେଉଅଛି । ପ୍ରକୃତରେ ଏବେ ଏହା ଆମ୍ଭମାନଙ୍କୁ ଜଣା ନାହିଁ ଯେ ଆମ୍ଭଙ୍କୁ କାହିଁକି ଦୁଃଖ ହେଉଛି ? ମୁମ୍ବାଇରେ ରହୁଥିବା ବ୍ୟକ୍ତି ଭାବନ୍ତି ଯେ, ଆମେ ମୁମ୍ବାଇରେ ଅଛନ୍ତି, ତେଣୁ ଆମକୁ ଦୁଃଖ ହେଉଛି । ଦିଲ୍ଲୀ ଚାଲିଗଲେ ଆମକୁ ସୁଖ ପ୍ରାପ୍ତ ହେବ । ଦିଲ୍ଲୀବାଲା ଭାବନ୍ତି ଯେ ଆମେ କଲିକତା ଚାଲିଗଲା ପରେ ସୁଖି ହୋଇଯିବା । କିନ୍ତୁ ଦିଲ୍ଲୀ ଯିବାପରେ ଦିଲ୍ଲୀର ଦୁଃଖ ହୋଇଥାଏ। ସେଠାରେ ବମ୍ବେର ଦୁଃଖ ରହେ ନାହିଁ, କିନ୍ତୁ ଦିଲ୍ଲୀର ବିଶେଷ ଦୁଃଖ ପ୍ରାପ୍ତ ହୋଇଥାଏ। ସେହିପରି କଲିକତାରେ ଦିଲ୍ଲୀର ଦୁଃଖ ରହେ ନାହିଁ । କିନ୍ତୁ କଲିକତାରେ ଅଲଗା ଦୁଃଖ ପ୍ରାପ୍ତ ହୁଏ । କହିବାର ଅର୍ଥ କିଛି ଲୋକମାନଙ୍କ ମତରେ କୌଣସି ସ୍ଥାନ (ଦେଶ) ବିଶେଷ ଯୋଗୁଁ ତାଙ୍କୁ ଦୁଃଖପ୍ରାପ୍ତ ହେଉଛି, ଅଥବା ଆମ୍ଭର ସମୟ ଖରାପ ଚାଲିଛି, ଶନିଦଶା ଚାଲିଛି, ସେଥିପାଇଁ ଦୁଃଖ ହେଉଛି । ତାଙ୍କୁ ଲାଗୁଛି ସାଢ଼େ ସାତ ବର୍ଷ ଗଲାପରେ ଗ୍ରହ ଶାନ୍ତ ହୋଇଯିବ; ସବୁ କିଛି ଠିକ୍ ହୋଇଯିବ ।

କିନ୍ତୁ ଏପରି ହୋଇ ନ ଥାଏ । କାହିଁକି ନା ସେତିକି ବେଳକୁ କୌଣସି ଅନ୍ୟ ଗ୍ରହର ଦୃଷ୍ଟି ପୁଣି ବକ୍ର ହୋଇଯାଇଥାଏ । କୌଣସି ନା କୌଣସି ଗ୍ରହ ଅନିଷ୍ଟ ଗୃହରେ ସବୁବେଳେ ରହୁଥାଏ । ଏହି ସମସ୍ତେ ଇଷ୍ଟ ଗୃହରେ କିପରି ରହି ପାରିବେ ? କେହି ନା କେହି ଗ୍ରହ ଓଲଟା-ସିଧା କାର୍ଯ୍ୟ ସବୁବେଳେ କରୁଥାଆନ୍ତି । ତେଣୁ ଶାନ୍ତି କିପରି ପ୍ରାପ୍ତ ହେବ ?

କେହି କେହି କହନ୍ତି, ମୋ ଘରେ ଭିଡିଓ ନାହିଁ । ସେଥିପାଇଁ ମୁଁ ଦୁଃଖି । ଭିଡିଓ ଆସିଗଲା ପରେ ମୁଁ ସୁଖି ହୋଇଯିବି । ଯାହା ଘରେ ଭିଡିଓ ଅଛି, ସେ ଭାବୁଛି ଯେ ସେ ବିକ୍ରି କରି ଦେଲେ ହିଁ ସୁଖି ହୋଇଯିବ । ଏପରି ଲୋକମାନେ ମଧ୍ୟ ଅଛନ୍ତି । କେହି କହନ୍ତି - ମୁଁ ମୋର ପତ୍ନୀ ନିମନ୍ତେ ଦୁଃଖି ହେଉଛି । ପତ୍ନୀକୁ ବଦଳାଇ ଦେଲେ ସୁଖି ହୋଇଯିବି। ସେଥିପାଇଁ ମୁଁ ଦ୍ୱିତୀୟ ବିବାହ କରୁଛି । ଏପରି ବିଚାର କରି ବିବାହ ବିଚ୍ଛେଦ କରି ନିଏ। ତାପରେ ତାର ପଡୋଶୀ ତାର ସ୍ତ୍ରୀ ସହିତ ବିବାହ କରି ନିଏ । ଏହି ଦୁନିଆରେ ଏହା କୌଣସି ଆଶ୍ଚର୍ଯ୍ୟ କଥା ନୁହେଁ । କେହି କହନ୍ତି ମୁଁ ଅମୁକ ବସ୍ତୁକୁ ପ୍ରାପ୍ତ କରି ସୁଖି ହୋଇଯିବି ତ ଆଉ ଜଣେ କହେ ମୁଁ ଅମୁକକୁ ଛାଡ଼ି ଦେଲେ ହିଁ ସୁଖି ହୋଇଯିବି। ଏହିପରି ସବୁବେଳେ ଚାଲୁଥାଏ । ମନୁଷ୍ୟ ଦେଶ (ସ୍ଥାନ) ବଦଳାଏ । କାର୍ଯ୍ୟକ୍ଷେତ୍ର ବଦଳାଇ ଥାଏ, ଜଣା ନାହିଁ କ'ଣ କ'ଣ ବଦଳାଉଥାଏ, କିନ୍ତୁ ତାର ସ୍ଥିତି ଯେମିତିକୁ ସେମିତି ରହିଥାଏ । ଟିକିଏ ବିଚାର କରନ୍ତୁ ଏ ସବୁ କ'ଣ ଆମର ସମସ୍ତ

ଦୁଃଖର କାରଣ ହୋଇପାରେ ? ସତ କଥା ହେଉଛି ଯେ ଆମମାନଙ୍କୁ ଆମ ଦୁଃଖର ବାସ୍ତବିକ କାରଣ କଣ ତାହା ଜଣାନାହିଁ ।

ବେଦାନ୍ତ କହେ - ଆରେ ମୂର୍ଖ ! ଏ ସବୁ ତୁମର ଦୁଃଖର କାରଣ ନୁହନ୍ତି । ତୁମ ଦୁଃଖର ବାସ୍ତବ କାରଣ ହେଉଛି ଅନ୍ୟ କିଛି । ତୁମେ ନିଜକୁ ନିଜେ ଏହି ଶରୀର ସହିତ ବାନ୍ଧି ହୋଇ, ଏହି ଶରୀର ହେଉଛି ମୁଁ - ଏପରି ମାନି ନେଇଛି । ଏହା ହେଉଛି ତୁମର ଦୁଃଖର କାରଣ । ଏହା ତ ତୁମେ ଏକ ବେଶ ଧାରଣ କରିଛ; ପୁଣି ସେହି ବେଶ ସହିତ ତୁମର ପୂର୍ଣ୍ଣ ତାଦାତ୍ମ୍ୟ ହୋଇଗଲାଣି । କିନ୍ତୁ ବାସ୍ତବରେ ତୁମେ ତାହା (ଶରୀର) ନୁହେଁ। ସେଥିପାଇଁ ତୁମେ ଯେତେବେଳେ ଏହି ତାଦାତ୍ମ୍ୟକୁ ଛାଡ଼ିଦେବ, ତ ବାସ୍, ସେତେବେଳେ ତୁମେ ମୁକ୍ତ । ତୁମକୁ ମୁକ୍ତି ପ୍ରାପ୍ତ କରିବାକୁ ପଡ଼ିବ ନାହିଁ । ଦେଖନ୍ତୁ, ବେଦାନ୍ତ କହେ- ତୁମେ ପ୍ରଥମରୁ ହିଁ ମୁକ୍ତ ଅଟ । କିନ୍ତୁ ଅଜ୍ଞତାବଶତଃ ନିଜେ ନିଜକୁ ବନ୍ଧନରେ ପକାଇ ନିଜକୁ ବନ୍ଧା ବୋଲି ମାନି ନେଇଛ। ତୁମର ବନ୍ଧନ ବାସ୍ତବିକ ନୁହେଁ, ଏହା କେବଳ ତୁମର ମାନ୍ୟତା ।

**ମନ ଏବ ମନୁଷ୍ୟାଣାଂ କାରଣଂ ବନ୍ଧ ମୋକ୍ଷୟୋଃ ॥**

(ଅମୃତବିନ୍ଦୁ ଉପନିଷଦ-୨୧)

ମନରେ କଳ୍ପନା କରି ତୁମେ ନିଜେ ବନ୍ଧନରେ ପଡି ଯାଇଛ । ଏହା ବ୍ୟତିରେକେ ଅନ୍ୟ କୌଣସି ବନ୍ଧନ ନାହିଁ । ଏହି ଦୁଃଖ ହିଁ ବନ୍ଧନ ଅଟେ । ବନ୍ଧନ କ'ଣ ଏହା ନ ବୁଝି ପାରିଲେ ମଧ୍ୟ ସମସ୍ତଙ୍କୁ ଦୁଃଖ ରୂପରେ ଅନୁଭବ ହୋଇଥାଏ । ଯଦି କେହି କହନ୍ତି ଯେ, ଆପଣ ବନ୍ଧନରେ ଅଛନ୍ତି, ତେବେ ସେ କହନ୍ତି ବନ୍ଧନ କେଉଁଠି ? ମୁଁ ତ ସ୍ୱତନ୍ତ୍ର। ବନ୍ଧନର ଅର୍ଥ କୌଣସି ଦଉଡିରେ ବାନ୍ଧି ହେବା ନୁହେଁ । ଦୁଃଖ ରୂପରେ ଯାହା ଅନୁଭବରେ ଆସେ, ତାହା ହିଁ ବନ୍ଧନ । ଜଣେ ବ୍ୟକ୍ତି ଥିଲେ । ସେ କୌଣସି ନାଟକ କମ୍ପାନୀରେ କାର୍ଯ୍ୟ କରୁଥିଲେ । ତାଙ୍କୁ ନାଟକରେ ସବୁବେଳେ ସ୍ତ୍ରୀର ପାତ୍ର ମିଳୁଥିଲା। କାହିଁକି ନା ପ୍ରଥମେ ସ୍ତ୍ରୀମାନେ ନାଟକରେ କାମ କରୁ ନ ଥିଲେ । ପୁରୁଷମାନେ ହିଁ ସ୍ତ୍ରୀର ବେଶ ଧାରଣ କରୁ ଥିଲେ । ମହାରାଷ୍ଟ୍ରରେ ବାଲଗନ୍ଧର୍ବ ଆଦି ଏତେ ପ୍ରସିଦ୍ଧ ଥିଲେ ଯେ ସେମାନଙ୍କୁ ଦେଖି ସ୍ତ୍ରୀମାନେ ମଧ୍ୟ ତାଙ୍କର ନକଲ କରୁଥିଲେ। ତେବେ ସେହି ବ୍ୟକ୍ତିଜଣକ ପୁରୁଷ ହେଲେ ମଧ୍ୟ ସ୍ତ୍ରୀର ଅଭିନୟ କରି କରି ସ୍ତ୍ରୀ ରୂପ ପ୍ରତି ତାର ଏପରି ତାଦାତ୍ମ୍ୟ ହୋଇଗଲା ଯେ ସେ ସ୍ତ୍ରୀ ଲୋକଭଳି କଥା କହିବା ଆରମ୍ଭ କରିଥିଲା । ଏବେ ଦେଖନ୍ତୁ, ସେ ବ୍ୟକ୍ତିର ଅଭିନୟ ଅନ୍ୟମାନଙ୍କୁ ମନୋରଞ୍ଜକ ହୋଇପାରେ, ପରନ୍ତୁ, ସ୍ୱୟଂ ନିଜ

ପାଇଁ ସମସ୍ୟା ରୂପ ନେଇଥିଲା । ଜଣେ ପୁରୁଷ ଯଦି ନିଜେ ନିଜକୁ ସ୍ତ୍ରୀ ବୋଲି ମାନିନିଏ ତେବେ ବିଚାର କରନ୍ତୁ କେତେ ସମସ୍ୟା ହୋଇଥିବ । ତାର ବଡ ବିଚିତ୍ର ସ୍ଥିତି ହୋଇଗଲା । କେହି ତାକୁ ଡାକିଲେ ସେ ସ୍ତ୍ରୀ ଭଳି ଆଚରଣ କରି ଆସୁଛି ବୋଲି କହେ । ତେଣୁ ଏହି ପ୍ରକାର ବନ୍ଧନ ତାର କି ଭଳି ନାଶ ହେବ ? ସାମାନ୍ୟ ବିଚାର କରନ୍ତୁ, ବନ୍ଧନର ନାଶର ଅର୍ଥ କ'ଣ ? ସେ ତ ଜଣେ ପୁରୁଷ । ତଥାପି ସେ ସ୍ତ୍ରୀ ସ୍ୱଭାବର ବନ୍ଧନରୁ କିପରି ମୁକ୍ତି ପ୍ରାପ୍ତ କରିବ ? ତାର ମୁକ୍ତି କିଭଳି ହେବ ? ତା' ନିମନ୍ତେ ମୁକ୍ତି କ'ଣ ?

**'ହିତ୍ୱା ତ୍ୟକ୍ତ୍ୱା ଅନ୍ୟଥା ରୂପଂ ସ୍ୱରୂପେଣ ବ୍ୟବସ୍ଥିତିଃ'**

କେବଳ ସେତିକି ଯେ ସେ ସେହି ବେଶକୁ ତ୍ୟାଗ କରି ଦେବା ହିଁ ମୁକ୍ତି । କାହିଁକି ନା ତାହା ତାର ବାସ୍ତବିକ ରୂପ ନୁହେଁ, ଅନ୍ୟଥା ରୂପ ଅଟେ । ତେଣୁ ସେ ଯେଉଁ ଅନ୍ୟ ରୂପ ସହିତ ତାଦାତ୍ମ୍ୟ କରି ନେଇଛି ତାକୁ ତ୍ୟାଗ କରିବା ମାତ୍ରକେ ପୁଣି ନିଜର ପୁରୁଷ ରୂପକୁ ପ୍ରାପ୍ତ ହୋଇଯିବ । ତାହାକୁ **"ସ୍ୱରୂପେଣ ବ୍ୟବସ୍ଥିତିଃ"** କହନ୍ତି ।

ତାକୁ ପୁରୁଷ ହେବା ନିମନ୍ତେ କିଛି କରିବାର ଆବଶ୍ୟକତା ନାହିଁ । ଏହା ତ ଅତି ସରଳ ଅଟେ ।

ଏବେ ଦେଖନ୍ତୁ, ଆମମାନଙ୍କ ସହିତ ମଧ୍ୟ ଏହିଭଳି କିଛି ହୋଇଅଛି । ଆମ୍ଭେ ସମସ୍ତେ ମଧ୍ୟ ଏହି ସଂସାରରୂପୀ ରଂଗମଞ୍ଚରେ ନାଟକ କରୁଛନ୍ତି । ଏଠାରେ ଆମେ ଶରୀର ରୂପୀ ବେଶଧାରଣ କରି ନେଇଛନ୍ତି । ଟିକିଏ ବିଚାର କରନ୍ତୁ, ମୋର ଏହି ଶରୀରଟି କେବେହେଲେ କ'ଣ 'ମୁଁ' ହୋଇପାରେ ? ଯଦି ଶରୀରଟି ମୁଁ ହୋଇଥାଆନ୍ତି, ତେବେ ଯେଉଁଠାରେ ଶରୀର ଅଛି, ସେହିଠାରେ ସ୍ୱପ୍ନ ତଥା ନିଦ୍ରା ଅବସ୍ଥାରେ ମଧ୍ୟ 'ମୁଁ' ରହିବା ଉଚିତ । କିନ୍ତୁ ଆମ୍ଭେ ଯେତେବେଳେ ଶୟନ କରିଥାଉ, ସେତେବେଳେ କଣ ଏହି ଶରୀର ସହିତ କୌଣସି ବ୍ୟବହାର ହୋଇପାରେ ? ଶରୀର ତ ପଡ଼ି ରହିଥାଏ । ସେଥିପାଇଁ ଏହା ଉପରେ ଅବଶ୍ୟ ବିଚାର କରିବା ଉଚିତ ଯେ ଏହି ଶରୀର କ'ଣ କେବେ ମୁଁ ହୋଇପାରେ ? ଆମେ ସମସ୍ତେ ଶରୀର, ପ୍ରାଣ, ଇନ୍ଦ୍ରିୟ, ମନ, ବୁଦ୍ଧି ଇତ୍ୟାଦିର ବେଶ ଧାରଣ କରିଛୁ । ଅର୍ଥାତ୍ ଶରୀର ଆଦି ପଞ୍ଚକୋଷ ସହିତ ଆମେ ପ୍ରଗାଢ଼ ତାଦାତ୍ମ୍ୟ କରି ନେଇଛୁ । ଚୀର ହରଣ ଲୀଳା ବେଳେ ଏହା ଉପରେ ଆମେ ବିଚାର କରିଛନ୍ତି ।

ମୁଁ କଳା, ମୁଁ ଗୋରା, ଲୋକମାନେ ଏହିପରି କହିଥାଆନ୍ତି । ପରନ୍ତୁ ଏହି ସବୁ ତ ଶରୀରର ରଙ୍ଗମାତ୍ର । ଏହା କେବଳ ବାହ୍ୟ ଚର୍ମର ଭେଦମାତ୍ର । ଭିତରେ ତ

ସମସ୍ତେ ସମାନ । ଗୋରା ଲୋକମାନଙ୍କର ବେଳେ ବେଳେ ଅଭିମାନ ହୋଇଥାଏ ଯେ ମୁଁ ଗୋରା ଏବଂ କଳା ଲୋକମାନଙ୍କର ବେଳେବେଳେ ହୀନ ଭାବ ଜାଗ୍ରତ ହୁଏ ଯେ ମୁଁ କଳା । ସେମାନଙ୍କୁ କେହି କୁରୂପ ବୋଲି କହିଲେ ବହୁତ ଦୁଃଖ ହୁଏ, କ୍ରୋଧ ମଧ୍ୟ ହୋଇଥାଏ । ସୁକରାତଙ୍କର ନାକଟି ବହୁତ ବଡ଼ ଥିଲା । କେହି ଜଣେ ତାଙ୍କୁ କହିଲା, ତୁମର ନାକଟି ତ ବହୁତ ବଡ଼ । ଏହା ଶୁଣି ସେ କହିଲେ, "ବହୁତ ଭଲ, ମୁଁ ଅଧିକରୁ ଅଧିକ ଅମ୍ଳଜାନ ନେଇପାରିବି ।" କୌଣସି ମହାପୁରୁଷ ଏଭଳି କଥା ଉପରେ ଗୁରୁତ୍ୱ ଦିଅନ୍ତି ନାହିଁ । ଶରୀର ସହିତ କାହିଁକି ତାଦାତ୍ମ୍ୟ କରିବା ? କିନ୍ତୁ ଯଦି କେହି ଜଣେ କାହାକୁ କହନ୍ତି, ଆରେ ! ତୁମର କେଶ ପରିପକ୍ୱ ହୋଇଗଲାଣି, ଝଡ଼ିଗଲାଣି, ଏହା ଶୁଣିବା ମାତ୍ରକେ ସେ ଡରିଯାଏ, ଚିନ୍ତା କରେ । କେଶଗୁଡ଼ିକୁ କଣ କେହି ଏଠାରେ ଧରି ରହିପାରିବେ ? ଏହି କଥାରେ ଲୋକମାନେ କାନ୍ଦିବାକୁ ଲାଗନ୍ତି । କେହି କେତେ ଶୃଙ୍ଗାର କଲେ ମଧ୍ୟ ବାର୍ଦ୍ଧକ୍ୟଠାରୁ ବଞ୍ଚିପାରି ନ ଥାଏ। ଯାହା କଲେ ମଧ୍ୟ ସମସ୍ତ ଚେଷ୍ଟା ବ୍ୟର୍ଥ ଯାଏ । ବାର୍ଦ୍ଧକ୍ୟକୁ ଦେଖି ସମସ୍ତେ ଭୟଭୀତ ହୋଇଥାଆନ୍ତି । କେହି କେହି ପ୍ଲାଷ୍ଟିକ୍ ସର୍ଜରୀ କରାନ୍ତି । କେଉଁ ପର୍ଯ୍ୟନ୍ତ ନିଜେ ନିଜକୁ ରକ୍ଷା କରିବ ? ପ୍ରକୃତିର ନିୟମ ହେଉଛି ବିକୃତି । ସେଥିରେ ନିଶ୍ଚୟ ପରିଣାମ ହେବ ।

ଦେଖନ୍ତୁ, ଏହି ମନୁଷ୍ୟ ନିଜ ଦେହ ପ୍ରତି କେତେ ଆସକ୍ତ ହୋଇଗଲାଣି। କିଏ କହେ ମୁଁ ପତଳା, କିଏ କହେ ମୁଁ ମୋଟା । ଯିଏ ମୋଟା ସେ ପତଳା ହେବାକୁ ଚେଷ୍ଟା କରୁଛି । ଯିଏ ଦେଖିବାକୁ ଛୋଟ ସେ ଲମ୍ବା ହେବାକୁ ଚେଷ୍ଟା କରୁଛି । ଶରୀର ସହିତ ତାଦାତ୍ମ୍ୟ କରି କେହି କେହି କହନ୍ତି ମୁଁ ଉଚ୍ଚ ସମ୍ଭ୍ରାନ୍ତ ବଂଶର ବ୍ୟକ୍ତି । ମୁଁ ବ୍ରାହ୍ମଣ, ମୁଁ କ୍ଷତ୍ରିୟ, ମୁଁ ବୈଶ୍ୟ, ଅଥବା ମୁଁ ଶୁଦ୍ର ଅଟେ । ନିଜ ଶରୀର ପ୍ରତି ଏତେ ତାଦାତ୍ମ୍ୟ ହୋଇଯାଇଛି, ଯେକୌଣସି ନିମ୍ନଜାତିର ନାମ ଆସିବା ମାତ୍ରକେ ଆମେ ସହନ କରିପାରି ନ ଥାଉ । ମୁଁ ଅମୁକ ଦେଶର ନାଗରିକ, ଏହିପରି ମଧ୍ୟ ତାଦାତ୍ମ୍ୟ ହୋଇଥାଏ । ସେଥିପାଇଁ ଅନ୍ୟ ଦେଶବାସୀମାନଙ୍କ ପ୍ରତି ଦ୍ୱେଷ ହୋଇଥାଏ । କହିବାର ତାତ୍ପର୍ଯ୍ୟ ଶରୀର ସହିତ ତାଦାତ୍ମ୍ୟ କରି ନିଜେ ନିଜକୁ ଛୋଟ ତଥା ପରିଚ୍ଛିନ୍ନ ବିଚାର କରୁଛନ୍ତି । ସେହି କାରଣରୁ ଆମ୍ଭମାନଙ୍କୁ ଦୁଃଖ ହେଉଛି ।

ଏହା ବ୍ୟତୀତ ଆମ୍ଭେମାନେ ଆମର ପ୍ରାଣ ସହିତ ତାଦାତ୍ମ୍ୟ ହୋଇଯାଇଥିବା ଯୋଗୁଁ ଭୋକ ଶୋଷ ଲାଗୁଛି । ସେହି ଭୋକ ଶୋଷରେ ପୀଡ଼ିତ ହୋଇ ଆମ୍ଭେମାନେ କାନ୍ଦୁଛୁ । ସମସ୍ତଙ୍କର ନିଜ ନିଜର ଦୁଃଖ ଅଛି । ସମସ୍ତେ କାନ୍ଦୁଛନ୍ତି। ଆରେ ! ଦେହ ସହିତ, ପ୍ରାଣ ସହିତ, କେତେ ତାଦାତ୍ମ୍ୟ କରିଛନ୍ତି । କେବଳ ସେତିକି ନୁହେଁ, ଇନ୍ଦ୍ରିୟ

ସହିତ ଏବଂ ମନ-ବୁଦ୍ଧି ସହିତ ମଧ୍ୟ ତାଦାତ୍ମ୍ୟ କରିଛନ୍ତି । ଗୋଟିଏ ମୁହୂର୍ତ୍ତରେ ଆମେ କେତେ ସୁଖି ଥିଲାବେଳେ ପର ମୁହୂର୍ତ୍ତରେ ଦୁଃଖି ହୋଇଯାଉ । କ୍ଷଣକେ କାନ୍ଦ, କ୍ଷଣକେ ହସ, ପୁଣି ଚିତ୍କାର, ଏହା ହିଁ ସବୁ ଚାଲିଥାଏ । ଆରେ ! ମନ ହିଁ ସୁଖି, ଦୁଃଖି ହେଉଥାଏ । କିନ୍ତୁ ତୁମେ କଣ ମନ ? ତୁମେ କଣ ଏହି ଶରୀର ? ଶରୀର ତୁମର ଅଟେ, କିନ୍ତୁ ଶରୀର ତୁମେ ନୁହେଁ । ସେହିପରି ମନଟି ମଧ୍ୟ ତୁମର ଅଟେ, କିନ୍ତୁ ମନ ତୁମେ ନୁହେଁ । ମନ ସହିତ ତାଦାତ୍ମ୍ୟ ହେଉଥିବା ଯୋଗୁ ଜୀବନରେ ଶୋକ, ମୋହ ଆଦି ଲାଗି ରହେ । ବୁଦ୍ଧି ସହିତ ତାଦାତ୍ମ୍ୟ କରି ଲୋକମାନେ ନିଜକୁ ଜ୍ଞାନୀ ଅଥବା ଅଜ୍ଞାନୀ ବୋଲି କହି ଜ୍ଞାନର ତଥା ଅଜ୍ଞାନର ଅଭିମାନ କରି ବସନ୍ତି । ଏହା ସବୁ ଅନ୍ୟଥା ରୂପ ଅଟେ । ଏ ସବୁ 'ନିଜର' ନୁହେଁ ଅଥବା 'ମୁଁ' ନୁହେଁ । ଏହି ସବୁର ଯିଏ ଦ୍ରଷ୍ଟା, ସେ ହିଁ ବାସ୍ତବରେ ମୁଁ ଅଟେ । ନିଜ ଶରୀରକୁ ସମସ୍ତେ ଦେଖନ୍ତି - ଜାଣନ୍ତି । ଯେଉଁ ବସ୍ତୁକୁ ଆମେ ଦେଖିଥାଉ- ଯେପରି ଆମେ ପୁସ୍ତକକୁ ଦେଖୁ କିନ୍ତୁ ଆମେ କ'ଣ ପୁସ୍ତକ ହୋଇଯାଉ କି ? ଯେଉଁଭଳି ଭାବରେ ପୁସ୍ତକକୁ ଦେଖୁଥିବା ବ୍ୟକ୍ତି ପୁସ୍ତକଠାରୁ ଭିନ୍ନ ଅଟେ, ସେହିଭଳି ସେ ଦେହକୁ ଦେଖୁଥିବାରୁ ସେ ଦେହଠାରୁ ଭିନ୍ନ ଅଟେ । ସେ ସ୍ୱୟଂ ଦେହର ହୋଇ ନ ପାରେ । କିନ୍ତୁ ଆମେ ସମସ୍ତେ ମାନି ନେଇଛନ୍ତି ଯେ ମୁଁ ହେଉଛି ଦେହ । ଏହା ହେଉଛି ମୋର ମୂଳ ବନ୍ଧନ । ଯାହାକି ମୋର ନୁହେଁ, ଅଥବା ମୋର ସ୍ୱଭାବ ନୁହେଁ- ତାହା ସହିତ ପ୍ରଗାଢ଼ ତାଦାତ୍ମ୍ୟ କରି ମୁଁ ଦେହ ବୋଲି କହୁଛି । ବାସ୍, ଏହାକୁ ହିଁ ବନ୍ଧନ କୁହାଯାଏ । ଯେତେବେଳେ ଆତ୍ମମାନଙ୍କର ଏହି ବିବେକ ହୋଇଯିବ, ସେତେବେଳେ ଆତ୍ମର ବନ୍ଧନ ନାଶ ହୋଇଯିବ । ଏହାକୁ **'ଆତ୍ମା-ଅନାତ୍ମା ବିବେକ'** କୁହାଯାଏ । ଏହାକୁ ହିଁ 'ଦ୍ରଷ୍ଟା-ଦୃଶ୍ୟ' ବିବେକ କୁହାଯାଏ । ଅନ୍ତଃକରଣରେ ଯେତେବେଳେ ଏହି ବିବେକର ଉଦୟ ହୋଇଥାଏ, ସେତେବେଳେ ବୁଝି ହୁଏ - ଏହି ଶରୀର ଅନାତ୍ମା ଅଟେ, ଜଡ଼ ପଦାର୍ଥ ମାତ୍ର । ଏହା 'ମୁଁ' ହୋଇ ନ ପାରେ । ମୁଁ ଏହାଠାରୁ ଭିନ୍ନ, ଏହାର ପ୍ରକାଶକ, ଏହାକୁ ଦେଖୁଥିବା ଦ୍ରଷ୍ଟା ସଚ୍ଚିଦାନନ୍ଦ ସ୍ୱରୂପ ମାତ୍ର । **'ହୃତ୍ ସ୍ଥଲେ ମନଃ ସ୍ୱସ୍ଥତା କ୍ରିୟା'**(ଉପଦେଶ ସାର) । ବାସ୍ ସେତିକିବେଳେ ଜାଣିନେବା ଉଚିତ ଆମର ମନ ସ୍ୱ-ସ୍ୱରୂପରେ ସ୍ଥିତି ହୋଇଗଲାଣି ।

ତେବେ ଦେଖନ୍ତୁ, ଭାଗବତରେ ମୁକ୍ତିର ଏପରି ସୁନ୍ଦର ପରିଭାଷାର ବର୍ଣ୍ଣନ ହୋଇଛି । କୁହାଯାଇଛି ଯେ ସ୍ୱର୍ଗ ଆଦିକୁ ଯିବା ମୋକ୍ଷ ନୁହେଁ । ଅନ୍ୟ କୌଣସି ରୂପକୁ ପ୍ରାପ୍ତ କରିବା ମଧ୍ୟ ମୁକ୍ତି ନୁହେଁ । ଐଶ୍ୱର୍ଯ୍ୟର ପ୍ରାପ୍ତି ମଧ୍ୟ ମୋକ୍ଷ ନୁହେଁ । କୌଣସେ ନୂତନ ଅନୁଭବକୁ ପ୍ରାପ୍ତ କରିବା, ଚକ୍ଷୁରେ ପ୍ରକାଶ ଦେଖିବା, ଏ ସମସ୍ତ ମୋକ୍ଷ ହୋଇ ନ

ପାରେ । ଚକ୍ଷୁ ବନ୍ଦ କରି ପ୍ରକାଶ ଦେଖିବା କଣ ଦରକାର ? ଦେଖିବାର ଅଛି ତ ଚକ୍ଷୁ ଖୋଲି କରି ଦେଖ ନା ! ବାହାରେ ବହୁତ ସୁନ୍ଦର ପ୍ରକାଶ, ସୂର୍ଯ୍ୟଙ୍କର ପ୍ରକାଶକୁ ଦେଖ, ଚନ୍ଦ୍ରଙ୍କର ପ୍ରକାଶକୁ ଦେଖ। ଜଣା ନାହିଁ, ଲୋକମାନେ କାହା-କାହାକୁ ମୋକ୍ଷ ବୋଲି କହିଥାଆନ୍ତି । ଶ୍ରୀ ଶୁକଦେବଜୀ କହନ୍ତି - **'ଅନ୍ୟଥା ରୂପଂ ହିତ୍ୱା ସ୍ୱରୂପେଣ ବ୍ୟବସ୍ଥିତିଃ ।'** ଏହି ଭାଷାରେ ମୋକ୍ଷକୁ ବୁଝି ନେବା ଉଚିତ୍ । ଶ୍ରୀମଦ୍ ଭାଗବତର ଏହି ଶ୍ଳୋକାର୍ଦ୍ଧରେ କୁହାଯାଇଥିବା କଥାକୁ ମନେ ରଖିବା ଉଚିତ । ସଂସ୍କୃତରେ କରି ନ ପାରିଲେ ମଧ୍ୟ ନିଜ ଭାଷାରେ ତାକୁ ବୁଝି ତାକୁ ସ୍ମରଣ କରିବା ଉଚିତ୍ । ଯାହା ମୋର ନିଜର ସ୍ୱରୂପ ନୁହେଁ, ତାହା ଅନ୍ୟଥା ରୂପ। ସେହି ଅନ୍ୟଥା ରୂପକୁ ଛାଡ଼ି ନିଜର ସ୍ୱରୂପରେ ସ୍ଥିତ ହେବା ହିଁ ମୋକ୍ଷ ଅଟେ ।

ସେଥିପାଇଁ ଅନ୍ୟ କୌଣସି ଦେଶକୁ ଯିବା (ଲୋକ ଲୋକାନ୍ତର), ନା କୌଣସି କାଳ ବିଶେଷର ପ୍ରାପ୍ତି, ନା କୌଣସି ଅନ୍ୟ ସ୍ଥିତିକୁ ପ୍ରାପ୍ତ କରିବାକୁ ପଡ଼ିବ । ଅନ୍ୟ କିଛି କରିବାକୁ ପଡ଼ିବ ନାହିଁ । ନା ଆମର ଶରୀରକୁ ବଦଳାଇବାକୁ ପଡ଼ିବ, ଅର୍ଥାତ୍ ଦେଶାନ୍ତରାପତ୍ତି, କାଳାନ୍ତରାପତ୍ତି ଅଥବା ଅବସ୍ଥାନ୍ତରା ପତ୍ତି - ଏହିସବୁ ମଧ୍ୟରୁ କେହି ମୋକ୍ଷ ନୁହନ୍ତି । ଏହିଠାରେ ରହି ଯେତେବେଳେ ଆମର ବିବେକ ହୋଇଯାଏ, ସେହି ସମୟରେ ହିଁ ମୁକ୍ତି । ସେତେବେଳେ ଦେହଥାଇ ମଧ୍ୟ ଆମେ ମୁକ୍ତ ଏବଂ ଦେହ ବିନା ମଧ୍ୟ ଆମେ ମୁକ୍ତ । ନାଟକରେ ଯେତେବେଳେ କେହି କେହି ବ୍ୟକ୍ତି ପାତ୍ରର ଅଭିନୟ କରେ, ସେହି ପାତ୍ର ଅନୁରୂପ ବେଶ ଧାରଣ କରେ, ତେବେ ଯଦିଓ ତାହା ତାର (ବେଶ) ନିଜ ସ୍ୱରୂପ ନ ହେଲେ ମଧ୍ୟ ସେହି ଭୂମିକାକୁ ନିର୍ବାହ କରିବା ଦ୍ୱାରା ସେହି ବ୍ୟକ୍ତିର କିଛି ବିକାର ହୁଏ ନାହିଁ । କିନ୍ତୁ ଯଦି ସେହି ବ୍ୟକ୍ତିର ସେହି ପାତ୍ର ସହିତ ପୂର୍ଣ୍ଣ ତାଦାତ୍ମ୍ୟ କରି ସେହି ପାତ୍ର ବିଶେଷ ହେଉଛି "ମୁଁ", ଅର୍ଥାତ୍ ତାକୁ ଯଦି ଭ୍ରମ ହୋଇଯାଏ ଯେ ସେ ପାତ୍ର ହିଁ ତାର ନିଜ ରୂପ ଅର୍ଥାତ୍ ସ୍ୱରୂପ ଅଟେ, ତେବେ ସେ ବନ୍ଧନରେ ପଡ଼ିଥାଏ । ଅନ୍ୟଥା ସେ ଭିକାରୀ ପାତ୍ରର ଅଭିନୟ କଲେ ମଧ୍ୟ ସେ ବ୍ୟକ୍ତି ବିଶେଷ ଉପରେ କୌଣସି କ'ଣ ପ୍ରତିକ୍ରିୟା ହେବ ? କିଛି ହେବ ନାହିଁ । କାହିଁକି ନା, ସେ ଜାଣିଛ ଯେ ଭିକାରୀ ବେଶ ଧାରଣ କଲା ପରେ ମଧ୍ୟ ସେ ଧନବାନ ରହିବ । ସେହିଭଳି ଭାବରେ ସ୍ତ୍ରୀରୂପ ତଥା ଅନ୍ୟ କୌଣସି ବେଶ ଧାରଣ କରିବା ଦ୍ୱାରା ତାର କିଛି ହାନି ହୁଏ ନାହିଁ, କାହିଁକି ନା ତାହା ଏକ ନାଟକ ମାତ୍ର ।

ଜଣେ ବ୍ୟକ୍ତି ଏକ ନାଟକରେ କାର୍ଯ୍ୟ କରୁଥିଲା । ନିଜର ପାତ୍ରତା ଅନୁସାରେ ତାକୁ ଅନ୍ତିମ ଦୃଶ୍ୟରେ ମରିଯିବାର ଅଭିନୟ ବେଳେ ପର୍ଦା ପଡ଼ିଯିବାର ଥିଲା । ହେଲା

କ'ଣ ? ସେ ମରିବାର ଅଭିନୟ ତ କଲା, କିନ୍ତୁ ପର୍ଦା ପଡ଼ିଲା ନାହିଁ । କିନ୍ତୁ ସେ ପର୍ଦା ପଡ଼ିଛି କି ନାହିଁ ନ ଜାଣି ଉଠିବାକୁ ଲାଗିଲା । ହଠାତ୍ ତାର ଦୃଷ୍ଟି ପର୍ଦା ଆଡ଼କୁ ଗଲା। ପର୍ଦା ନ ପଡ଼ିବା ଦେଖି ପୁଣି ସେ ମରିଲା ଭଳି ପଡ଼ି ରହିଲା । ଦେଖନ୍ତୁ ନାଟକରେ ତାକୁ କୌଣସି ଅଭିନୟ କରିବାକୁ କଣ ଭୟ ଲାଗୁଛି ? କଣ କିଛି ଦୁଃଖ ଲାଗୁଛି ? ନାହିଁ, କାହିଁକି ନା ସେ ଜାଣିଛି ଏହା ତ ନାଟକ ସହିତ ସମ୍ବନ୍ଧିତ ଏକ ଘଟଣା ମାତ୍ର ତଥା ଦୃଶ୍ୟ ମାତ୍ର । ସେ ଭଲ ଭାବରେ ଜାଣିଛି, ମରୁଥିବା ବ୍ୟକ୍ତି ସେ ନିଜେ ନୁହେଁ, ସେ ତ ନାଟକର କେବଳ ଏକ ପାତ୍ର । ତେବେ ତାକୁ କାହିଁକି ଭୟ ଲାଗିବ କହିଲେ ! ପ୍ରଥମେ ବେଦାନ୍ତର ଏହି ବିଚାର ଏକ ଅସାଧାରଣ ବା ଆଶ୍ଚର୍ଯ୍ୟଜନକ ଲାଗିପାରେ, ତଥାପି ଏହା ଶ୍ରବଣ ମନନର ଅଭ୍ୟାସ ଦ୍ୱାରା ଧିରେ ଧିରେ ସ୍ପଷ୍ଟ ହୋଇଯାଏ ।

ଏକାଦଶ ସ୍କନ୍ଧରେ ଯେଉଁ ମୁକ୍ତିର ବର୍ଣ୍ଣନ ହୋଇଛି ତା'ଦ୍ୱାରା ଆମର ସମସ୍ତ ପ୍ରକାର ସମସ୍ୟାର ସମାଧାନ ଘଟିଥାଏ । ଏହି ମୋକ୍ଷ ଥରେ ପ୍ରାପ୍ତ ହୋଇଗଲା ପରେ ଜଣେ ବ୍ୟକ୍ତି କେବେହେଲେ କାନ୍ଦି ପାରେ ନାହିଁ। ଏହା ହିଁ ଏଥିରେ ଏକ ମାତ୍ର ସମସ୍ୟା ଅଟେ। କାରଣ ନା କିଛି ଲୋକମାନଙ୍କୁ କାନ୍ଦିବାକୁ ହିଁ ଭଲ ଲାଗେ । ସେମାନେ ସବୁବେଳେ କାନ୍ଦୁଥାଆନ୍ତି। ସେହି କାରଣରୁ ତାଙ୍କୁ ସହାନୁଭୂତି ମିଳିଥାଏ । ତେବେ ଏହି ଶ୍ରୀମଦ୍ ଭାଗବତର ଏକାଦଶ ସ୍କନ୍ଧରେ ଏଭଳି ସୁନ୍ଦର ମୋକ୍ଷର ବର୍ଣ୍ଣନ ହୋଇଛି ଯେ, ଯାହାକୁ ଥରେ ପ୍ରାପ୍ତ ହୋଇଗଲା ପରେ ମନୁଷ୍ୟକୁ ଦୁଃଖ ସ୍ପର୍ଶ କରିପାରେ ନାହିଁ ।

ଦେଖନ୍ତୁ, ଭଗବାନ ଶ୍ରୀକୃଷ୍ଣ ଏହି ଧରାକୁ ଧର୍ମର ସଂସ୍ଥାପନା କରିବା ନିମନ୍ତେ ଆସିଥିଲେ । ଯେତେବେଳେ ପର୍ଯ୍ୟନ୍ତ ସେ ଅଧ୍ୟାତ୍ମଜ୍ଞାନର ଉପଦେଶ ଦେଇନାହାନ୍ତି, ସେତେବେଳ ଧର୍ମ ପର୍ଯ୍ୟନ୍ତ ସଂସ୍ଥାପନ ହୋଇପାରିବ ନାହିଁ । କାରଣ ଧର୍ମ ତାକୁ ହିଁ କୁହାଯାଇଥାଏ, ଯଦ୍ଦ୍ୱାରା ଧାରଣା ହୋଇଥାଏ । ସମାଜର ଧାରଣା ସେତେବେଳେ ହୋଇପାରିବ, ଯେତେବେଳେ ଜଣେ ଜଣକ ପ୍ରତି ପ୍ରେମ, ସଦ୍‌ଭାବନା ରଖିବ । ପ୍ରେମ ବିନା ଧାରଣା ହୋଇପାରିବ ନାହିଁ ତଥା ସଙ୍ଗଠନ କରିବା ମଧ୍ୟ ଅସମ୍ଭବ ହେବ । ଆମ୍ଭେମାନେ ରାଷ୍ଟ୍ରୀୟ ଏକତାର, ସଙ୍ଗଠନ ଆଦିର ବହୁତ କଥା କହୁ, କିନ୍ତୁ ପରସ୍ପର ଦ୍ୱେଷ ମଧ୍ୟ କରିଥାଉ । ରାଷ୍ଟ୍ରୀୟ ଏକତାର ଯେତେ ଦୁହାଇ ଦେଲେ ମଧ୍ୟ ପରସ୍ପର ପ୍ରେମ ନ ଥିଲେ ଏକତା କେଉଁଠି ଆସିବ ? ଧାରଣା କିପରି ସମ୍ଭବ ହେବ ? ଯେତେବେଳେ ପର୍ଯ୍ୟନ୍ତ ଆମେ ଅନ୍ୟମାନଙ୍କୁ ଜାଣିପାରି ନ ଥାଉ, ସେତେବେଳ ପର୍ଯ୍ୟନ୍ତ ସେମାନଙ୍କୁ ଭଲ ପାଇପାରିବୁ ନାହିଁ । ସେମାନେ ସମସ୍ତେ ଆତ୍ମଠାରୁ ଭିନ୍ନ ନୁହନ୍ତି । ଆତ୍ମର ନିଜର ସ୍ୱ-ସ୍ୱରୂପ ହିଁ ଭିନ୍ନ ଭିନ୍ନ ରୂପରେ ଭାସିତ ହେଉଛି; ଏହିଭଳି ଜ୍ଞାନ-ଅଦ୍ୱୈତ ଜ୍ଞାନ ନ

ହୋଇ ପ୍ରେମ ହେବା ଅସମ୍ଭବ । ଯେତେବେଳେ ପର୍ଯ୍ୟନ୍ତ ନିଜେ ନିଜକୁ ଅନ୍ୟମାନଙ୍କ ଭିତରେ ଦେଖି ନାହାନ୍ତି, ସେତେବେଳେ ପର୍ଯ୍ୟନ୍ତ ଭଲ ପାଇବା ସମ୍ଭବପର ନୁହେଁ । ପ୍ରେମ ନ ହେବା ପର୍ଯ୍ୟନ୍ତ ସେବା ହୋଇପାରିବ ନାହିଁ । ତାତ୍ପର୍ଯ୍ୟ ହେଉଛି ଯେ ଅଦ୍ୱୈତର ଜ୍ଞାନୀ ହିଁ ଧର୍ମ ସଂସ୍ଥାପନ କରିପାରିବ ।

ମହାଭାରତରେ ମଧ୍ୟ ଆମେ ଦେଖିଛନ୍ତି ଯେ ସେଠାରେ କେବଳ ଯୁଦ୍ଧ ଅଥବା ହାଣିବା, କାଟିବା ହିଁ ନାହିଁ । ଅଧିକନ୍ତୁ ସେଠାରେ ଭଗବାନ ଶ୍ରୀକୃଷ୍ଣ ଧର୍ମର ସଂସ୍ଥାପନ ନିମନ୍ତେ ଅର୍ଜ୍ଜୁନଙ୍କୁ ଭଗବତ୍ ଗୀତାର ଉପଦେଶ ଦେଇଛନ୍ତି ।

**ରାଜବିଦ୍ୟା ରାଜଗୁହ୍ୟଂ ପବିତ୍ର ମିଦମୁତ୍ତମମ୍ ।**
**ପ୍ରତ୍ୟକ୍ଷାବଗମଂ ଧର୍ମ୍ମ୍ୟଂ ସୁସୁଖଂ କର୍ତ୍ତୁମବ୍ୟୟମ୍ ॥**

(ଭଗବତ୍ ଗୀତା ୬-୨)

ଶ୍ରୀମଦ୍ ଭଗବତ୍ ଗୀତାରେ ପ୍ରସ୍ତୁତ ଶ୍ଳୋକରେ ଭଗବାନ ସେହି ଅଦ୍ୱୟ ଜ୍ଞାନକୁ- ଅବ୍ୟୟମ ପଦକୁ ଧର୍ମ୍ମ୍ୟଂ ମଧ୍ୟ କହିଛନ୍ତି । ଉଦ୍ଧବଜୀ ଭଗବାନଙ୍କର ବାଲ ସଖା ଥିଲେ, ଭଗବାନଙ୍କର ଭକ୍ତ ମଧ୍ୟ ଥିଲେ । ତାଙ୍କୁ ମଧ୍ୟ ଭଗବାନ ସେହି ଜ୍ଞାନ ପ୍ରଦାନ କରିଥିଲେ। ଭଗବାନ ଶ୍ରୀକୃଷ୍ଣ ନିଜର ଜୀବନ କାଳରେ ଏହି ମହତ୍ତ୍ୱପୂର୍ଣ୍ଣ ଉପଦେଶ ଦେଇଛନ୍ତି । ପ୍ରଥମେ ଅର୍ଜ୍ଜୁନଙ୍କୁ ଏବଂ ଦ୍ୱିତୀୟ ହେଉଛି ଉଦ୍ଧବଜୀଙ୍କୁ ଏହି ଉପଦେଶ ପ୍ରଦାନ କରିଛନ୍ତି।

ଶ୍ରୀମଦ୍ ଭାଗବତରେ ଏହି (ଏକାଦଶ) ସ୍କନ୍ଧରେ କୁହାଯାଉଛି ଯେ ଆମ୍ଭର ଯେଉଁ ଏକାଦଶ ଉପାଧିମାନ ସବୁ ରହିଛି - ପାଞ୍ଚ ଜ୍ଞାନେନ୍ଦ୍ରିୟ, ପାଞ୍ଚ କର୍ମେନ୍ଦ୍ରିୟ ତଥା ଅନ୍ତଃକରଣ, ଏମାନଙ୍କ ସହିତ ତାଦାତ୍ମ୍ୟ କରି ଆମେ ନିଜ ସ୍ୱରୂପଠାରୁ ଦୂରକୁ ଚାଲି ଆସିଲୁଣି । ଏହି କଥାକୁ ବିଚାର କରି ସେହି ତାଦାତ୍ମ୍ୟକୁ ସମାପ୍ତ କରିବା ଉଚିତ୍ । ନିଜ ସ୍ୱରୂପରେ ସ୍ଥିତ ହେବା ଉଚିତ । ଏହା ହିଁ ହେଉଛି ମୁକ୍ତି। ଏହି ମୁକ୍ତିର ପ୍ରାପ୍ତି ଗୋଟିଏ କ୍ଷଣରେ ମଧ୍ୟ ହୋଇପାରେ । ବାସ୍, ଏହି କଥାକୁ ନିଜର ବୁଦ୍ଧିରେ ନିଶ୍ଚୟ କରି ଦେବା ଉଚିତ । ଏହି କ୍ଷଣରେ ବସି ବସି ଏହିଠାରେ ହିଁ ମୁକ୍ତି ପ୍ରାପ୍ତ ହୋଇପାରିବ । ସେଥିପାଇଁ ଅନ୍ୟ କେଉଁ ଦେଶ ଦେଶାନ୍ତର ତଥା ଅନ୍ୟ କୌଣସି କାଳ ବିଶେଷକୁ ଅପେକ୍ଷା କରିବାକୁ ପଡ଼ି ନ ଥାଏ। ନା ସେଥିପାଇଁ କିଛି କରିବାକୁ ପଡ଼ିଥାଏ । ଯାହା କିଛି ସବୁ ହେଉଛି, ବାସ୍ ତାର କେବଳ ଦ୍ରଷ୍ଟା ହୋଇ ରୁହ । କିନ୍ତୁ କର୍ତ୍ତା ନୁହେଁ । ଏହା ହିଁ ହେଉଛି ମୋକ୍ଷର ଲକ୍ଷଣ । ବାସ୍ତବରେ ଉପଦେଶ ହିଁ ହେଉଛି କେବଳ ସେତିକି । କର୍ତ୍ତା ହେବାକ୍ଷଣି

ପରିଣାମ ସ୍ୱରୂପ ଆମ୍ଭମାନଙ୍କୁ **ଭୋକ୍ତା** ମଧ୍ୟ ହେବାକୁ ପଡ଼ିଥାଏ । ଏହି କର୍ତା ଓ ଭୋକ୍ତା ହେବା ହିଁ ବାସ୍ତବରେ ବନ୍ଧନ । **ଯେତେବେଳେ ଦ୍ରଷ୍ଟା ହୋଇଯାଇ ଥାଉ, ସେତେବେଳେ ମୁକ୍ତ ହୋଇଯାଇ ଥାଉ** । ସାର ରୂପରେ ଏତିକି ପ୍ରସ୍ତାବନା ପରେ ଆମ୍ଭେମାନେ ଏକାଦଶ ସ୍କନ୍ଧରେ ପ୍ରବେଶ କରିବା ।

## ଯଦୁବଂଶୀମାନଙ୍କ ନାଶର ପୃଷ୍ଠଭୂମି

ପୂର୍ବ ପୂର୍ବ ସ୍କନ୍ଧଗୁଡିକରେ ଆମେମାନେ ଭଗବାନଙ୍କର ଅନ୍ୟ ଲୀଳା ସବୁ ଦେଖିଛନ୍ତି। ଏହା ପରେ ଦଶମ ସ୍କନ୍ଧରେ ଶ୍ରୀକୃଷ୍ଣଙ୍କର ଲୀଳାମାନ ମଧ୍ୟ ଆମେ ବିଚାର କଲେ । ଏବେ ଶ୍ରୀ ଶୁକଦେବଜୀ କହୁଛନ୍ତି, ଶ୍ରୀକୃଷ୍ଣ ଅବତାରରେ ଭଗବାନଙ୍କର ଯେଉଁ ସବୁ ଲୀଳା କରିବାର ଥିଲା, ସେ ସବୁ ସେ କରି ନେଲେ । ସେହି ମଧ୍ୟରେ ମହାଭାରତ ଯୁଦ୍ଧ ମଧ୍ୟ ହୋଇସାରିଥିଲା । ସେହି ଯୁଦ୍ଧରେ ପୃଥିବୀର ଭାର ରୂପ କୌରବମାନଙ୍କର ମଧ୍ୟ ନାଶ ହେଇସାରିଥିଲା । ପ୍ରଥମରୁ ଭଗବାନ ଶ୍ରୀକୃଷ୍ଣ ଅନେକ ଅସୁରମାନଙ୍କର ନାଶ କରି ସାରିଥିଲେ । ପୁଣି ବଳରାମଜୀ ତଥା ଅନ୍ୟ ଯଦୁବଂଶୀମାନଙ୍କର ସହାୟତାରେ ସେ ଅନେକ ଅସୁରମାନଙ୍କୁ ନାଶ କରାଇଥିଲେ । ନିଜ ଶକ୍ତି ଦ୍ୱାରା ସେ ଜରାସନ୍ଧ ଆଦି ବଳଶାଳୀ ରାଜାମାନଙ୍କୁ ମରାଇଥିଲେ । ସମସ୍ତ ପୃଥିବୀ ଅସୁର ରହିତ ହୋଇ ଯାଇଥିଲା।

ତେବେ ଭଗବାନ ବିଚାର କରିବାକୁ ଲାଗିଲେ ସମସ୍ତ ଅସୁର ତ ନଷ୍ଟ ହେଲେ, କିନ୍ତୁ ମୁଁ ଯେଉଁମାନଙ୍କ ଦ୍ୱାରା ଏ ସମସ୍ତଙ୍କ ବିନାଶ କରାଇଲି ସେହି (ଯଦୁବଂଶୀ)ମାନେ ତ ରହିଗଲେ । ଏମାନେ ବଡ଼ ଶକ୍ତିଶାଳୀ । ବର୍ତ୍ତମାନ ତ ଏମାନଙ୍କୁ ସମ୍ଭାଳିବା ନିମନ୍ତେ ମୁଁ ଏଠାରେ ଅଛି, ଏହି ଅବତାରକୁ ସମାପ୍ତ କରି ମୁଁ ଯେତେବେଳେ ଏଠାରୁ ଚାଲିଯିବି, ତେବେ ଏମାନେ ସମସ୍ତେ ନିରଙ୍କୁଶ ହୋଇଯିବେ । ଏବେ ତ ଏମାନେ ଠିକ୍ ଅଛନ୍ତି, ଭଲ ଅଛନ୍ତି, ପରେ କିଏ ଜାଣେ କଣ ହେବେ ? ପରେ ଯଦି ଏମାନେ ଆହୁରି ଅଧିକ ଶକ୍ତିଶାଳୀ ହୋଇ ମନ ମୁତାବକ କରିବାକୁ ଲାଗନ୍ତି, ଆସୁରୀ ସ୍ୱଭାବଯୁକ୍ତ ହେବେ, ତେବେ ଏମାନଙ୍କୁ ବାରଣ କରିବା ନିମନ୍ତେ କିଏ ଥିବ ? ତେଣୁ ମୁଁ ଏଠାରୁ ଯିବା ପୂର୍ବରୁ ଏମାନଙ୍କୁ ମଧ୍ୟ ସମାପ୍ତ କରି ଦେଇ ଯିବି ।

ଦେଖନ୍ତୁ, ଏଠାରେ ଧ୍ୟାନ ଦେବା ଯୋଗ୍ୟ କଥା ହେଉଛି ଭଗବାନଙ୍କର ଯେଉଁଠାରେ ରାଗ (ଆସକ୍ତି) ଦେଖାଯାଉଥିଲା, ସେହିଠାରେ ହିଁ ଅନାସକ୍ତି ମଧ୍ୟ ସ୍ପଷ୍ଟ ଦେଖାଯାଉଥିଲା। ତାଙ୍କର ଏହି କୃଷ୍ଣାବତାର ବଡ଼ ବିଲକ୍ଷଣ ଅବତାର ଅଟେ । ଯେଉଁଠାରେ ସେ ଗୋପୀମାନଙ୍କ ନିକଟରେ ଅନୁପମ ପ୍ରେମ ଦର୍ଶାଇଛନ୍ତି, ସେହିଠାରେ ସେମାନଙ୍କୁ

ଛାଡ଼ି ଦେଇ ଚାଲି ଆସିଲେ । ସେ ଭୋଗରେ ପୂର୍ଣ୍ଣ ଥିଲେ, ବୈରାଗ୍ୟରେ ମଧ୍ୟ ପୂର୍ଣ୍ଣ ଥିଲେ ଏବଂ ଯୋଗରେ ମଧ୍ୟ ପୂର୍ଣ୍ଣ ଥିଲେ । ଲୀଳା ସମ୍ବରଣ ପୂର୍ବରୁ ସ୍ୱୟଂ ନିଜର ଯଦୁବଂଶୀମାନଙ୍କୁ ନଷ୍ଟ କରାଇବାରେ ଭଗବାନଙ୍କୁ କିଛି ଲାଗି ନ ଥିଲା, କୌଣସି ପ୍ରକାର ଦ୍ୱନ୍ଦ ନ ଥିଲା, କାହିଁକି ନା ସେ ତ ମୁକ୍ତ ଥିଲେ । ଭଗବାନଙ୍କର ଏହା ଏକ ବିଶେଷ ଆଧ୍ୟାତ୍ମିକ ଲୀଳା ଅଟେ ।

ତେବେ ଭଗବାନ ବିଚାର କଲେ ଯେ, ସମ୍ଭବତଃ ଏହି ଯଦୁବଂଶୀମାନେ ଯେଉଁମାନେ କି ଶକ୍ତିଶାଳୀ ହୋଇଗଲେଣି, ସେମାନେ ସମସ୍ତେ ଆସୁରୀ ସ୍ୱଭାବଯୁକ୍ତ ହୋଇପାରନ୍ତି। ଦେଖନ୍ତୁ, ଏହି କଥା ସତ୍ୟ ନିଶ୍ଚୟ। ଆମର ଅନ୍ତଃକରଣରୁ ମଧ୍ୟ ଯେତେବେଳେ ଭଗବାନ ଚାଲିଯାଆନ୍ତି, ସେତେବେଳେ ଆମର ସୁବିଚାରଗୁଡ଼ିକ ମଧ୍ୟ ଭୂଲ କରି ବସନ୍ତି । ଯେଉଁ ପର୍ଯ୍ୟନ୍ତ କେହି ଦେଖାଶୁଣା କରିବା ପାଇଁ ଥାଆନ୍ତି, ସେ ପର୍ଯ୍ୟନ୍ତ ସବୁ ଠିକ୍ ଚାଲୁଥାଏ । ଅନେକ ଘରେ ଆମେ ଦେଖିଛନ୍ତି ଯେ, ଯେଉଁ ପର୍ଯ୍ୟନ୍ତ ତାଙ୍କର ମାତା-ପିତା ଜୀବିତ ଅଛନ୍ତି, ସେ ପର୍ଯ୍ୟନ୍ତ ସେମାନଙ୍କର ପିଲାମାନେ ପରସ୍ପର ଭଲରେ ରହିଥାଆନ୍ତି। ଯେମିତି ସମସ୍ତଙ୍କ ଦୃଷ୍ଟି ପଡ଼ିଯାଇଥାଏ, ସତରେ ସେମାନେ କେତେ ଭଲ ! କିନ୍ତୁ ଯେତେବେଳେ ମାତା-ପିତା ଚାଲିଯାଆନ୍ତି, ସେତେବେଳେ ଅନର୍ଥ ହେବା ପ୍ରାରମ୍ଭ ହୋଇଥାଏ । ତୁ - ତୁ, ମୁଁ - ମୁଁ ମଧ୍ୟ ହୋଇଥାଏ। ବହୁତ ଭଲ ପିଲା ଥିଲେ । କିନ୍ତୁ ପୁଣି କ'ଣ ହେଲା ? ସେଥିପାଇଁ ଏଠାରେ ଭଗବାନ କହିଛନ୍ତି, "ମୁଁ ଏମାନଙ୍କୁ ସମାପ୍ତ କରି, ତାପରେ ହିଁ ଏଠାରୁ ଯିବି ।" ସତରେ କି ବିଲକ୍ଷଣ ବିଚାର ! ଦେଖନ୍ତୁ, ବ୍ୟବହାରରେ ମଧ୍ୟ ଏପରି ବିଚାର ଦେଖାଯାଏ। ଯେଉଁଭଳି 'କଣ୍ଟକେନ କଣ୍ଟକମ୍', କେହି ଜଙ୍ଗଲରେ ଯାଉଥିବା ବେଳେ ଯଦି ତାର ପାଦରେ କଣ୍ଟା ପଶିଯାଏ, ତେବେ ଆଉ ଏକ କଣ୍ଟା ନେଇ ସେହି (ପଶିଯାଇଥିବା) କଣ୍ଟାକୁ ବାହାର କରି ଦିଆଯାଏ। ପୁଣି ଦୁଇଟି ଯାକ କଣ୍ଟାକୁ ଫିଙ୍ଗି ଦିଆଯାଏ । ଦ୍ୱିତୀୟ କଣ୍ଟାକୁ ସମ୍ଭାଳି କରି ରଖାଯାଏ ନାହିଁ ଯେ, ଏହି କଣ୍ଟାଟି ସେବା କରିଛି, ତେଣୁ ତାକୁ ରଖିଦେବା । ଏହିଭଳି ହୋଇ ନ ଥାଏ । କାହିଁକି ନା ସେହି କଣ୍ଟାକୁ ପକେଟରେ ଅଥବା ଅନ୍ୟ କେଉଁଠି ରଖିଲେ ମଧ୍ୟ ତଦ୍ୱାରା ସବୁବେଳେ ଫୋଡ଼ି ହେଉଥାଏ। ତାତ୍ପର୍ଯ୍ୟ ହେଉଛି କଣ୍ଟକ ଦ୍ୱାରା କଣ୍ଟକକୁ ବାହାର କରିବା, ଏବଂ ପୁଣି ସେ ଦୁହିଁଙ୍କୁ ତ୍ୟାଗ କରି ଦେବା ।

ପ୍ରକୃତ ପ୍ରସଙ୍ଗର ବ୍ୟାବହାରିକ ପକ୍ଷକୁ ଆମ୍ଭେ ବିଚାର କଲେ । ଏବେ ଏହି ପ୍ରସଙ୍ଗକୁ ଧର୍ମ ତଥା ଅଧ୍ୟାତ୍ମ ଦୃଷ୍ଟିରେ ବିଚାର କରିବା । ମୁଁ ହେଉଛି ଦେହ, ମୁଁ ହେଉଛି ମନ, ମୁଁ ହେଉଛି ବୁଦ୍ଧି, ମୁଁ ହେଉଛି ଅହଂକାର, ମୁଁ ହେଉଛି ଜୀବ, ମୁଁ ଦୁଃଖୀ, ମୁଁ କର୍ତା,

ମୁଁ ଭୋକ୍ତା – ଏହି ସମସ୍ତ ବୃତ୍ତି ହେଉଛି ଅଜ୍ଞାନ ଜନ୍ୟ । ଏମାନଙ୍କୁ ନିରାକରଣ କରିବା ନିମନ୍ତେ ଆମ୍ଭେ ଜ୍ଞାନ ବୃତ୍ତିର ଆଶ୍ରୟ ନେଇ ଥାଉ । ଏହି ଦେହ ମୁଁ ନୁହେଁ, ମୁଁ ଇନ୍ଦ୍ରିୟ ନୁହେଁ, ମୁଁ ଆନନ୍ଦସ୍ୱରୂପ ଆତ୍ମା ଅଟେ; ମୁଁ ବ୍ରହ୍ମସ୍ୱରୂପ ଏହି ବୃତ୍ତି ଦ୍ୱାରା ସେହି ଅଜ୍ଞାନ ଜନିତ ବୃତ୍ତିମାନଙ୍କୁ ନିବାରଣ କରାଯାଏ । କିନ୍ତୁ ପର ମୁହୂର୍ତ୍ତରେ ଜ୍ଞାନାତ୍ମକ ବୃତ୍ତିମାନଙ୍କୁ ମଧ୍ୟ ସମାପ୍ତ କରିବାକୁ ପଡ଼ିଥାଏ । ଯଦିଓ ସାତ୍ତ୍ୱିକ ବୃତ୍ତି ଦ୍ୱାରା ରାଜସିକ ଏବଂ ତାମସିକ ବୃତ୍ତିମାନଙ୍କୁ ସମାପ୍ତ କରାଯାଏ, କିନ୍ତୁ ତାପରେ ସେହି ସାତ୍ତ୍ୱିକ ବୃତ୍ତିକୁ ମଧ୍ୟ ତ୍ୟାଗ କରି ତ୍ରିଗୁଣର ଊର୍ଦ୍ଧ୍ୱକୁ ଯିବାକୁ ହୁଏ । ବେଦାନ୍ତର ପ୍ରଣାଳୀରେ ବେଦକୁ ମଧ୍ୟ ବ୍ରହ୍ମ କୁହାଯାଇଛି । ତେବେ ବ୍ରହ୍ମବାକ୍ୟ ଦ୍ୱାରା ଅର୍ଥାତ୍ ବେଦ ବାକ୍ୟ ଦ୍ୱାରା ହିଁ ଦୁଇ ପ୍ରକାରର ବୃତ୍ତିମାନଙ୍କର ନିଷେଧ ହୋଇଯାଇଥାଏ । ଅନାତ୍ମ ବୃତ୍ତିର ମଧ୍ୟ ଏବଂ ତାପରେ ଆତ୍ମବୃତ୍ତିର ମଧ୍ୟ ନିରାସ (ନିରାକରଣ) ହୋଇଯାଏ । ବାସ୍, ସେତେବେଳେ କେବଳ ଆତ୍ମା ହିଁ ରହିଯାଇଥାଏ ।

ସଂକ୍ଷେପରେ, ବ୍ୟାବହାରିକ ଦୃଷ୍ଟିରେ ତ ଭଗବାନ ପ୍ରଥମେ ଯଦୁବଂଶୀମାନଙ୍କର ସହାୟତାରେ ସମସ୍ତ ଅସୁରମାନଙ୍କୁ ନଷ୍ଟ କଲେ, ପୁଣି ସେ ବିଚାର କଲେ ଯେ ଏହି ଯଦୁବଂଶୀମାନେ ଆଗକୁ ଯାଇ ପୁଣି ଆସୁରୀ ପ୍ରକୃତିର ନ ହୁଅନ୍ତୁ, ଭଗବାନ ଯୋଜନା ପୂର୍ବକ ସେମାନଙ୍କୁ ମଧ୍ୟ ନଷ୍ଟ କରାଇ ଦେଲେ । ଏହି ପ୍ରସଙ୍ଗର ଆଧ୍ୟାତ୍ମିକ ଦୃଷ୍ଟିକୋଣ ହେଉଛି – ପ୍ରଥମେ ଅଜ୍ଞାନ ବୃତ୍ତିକୁ ଜ୍ଞାନ ବୃତ୍ତି ଦ୍ୱାରା ନିରାକରଣ କଲେ, ପୁଣି ସେଠାରୁ ମଧ୍ୟ ନିବୃତ୍ତ ହୋଇଗଲେ । ଦୁହିଁଙ୍କୁ ନିରାକରଣ କରି ନିର୍ଦ୍ୱନ୍ଦ୍ୱ ହୋଇଗଲେ । ଦୁଇ ବୃତ୍ତିର (ଜ୍ଞାନ, ଅଜ୍ଞାନ) ବିନାଶ ଘଟିବା ପରେ, ରହିଲା କିଏ ? ନିର୍ଦ୍ୱନ୍ଦ୍ୱ, ଅଦ୍ୱୟ, ପରମାତ୍ମା ସ୍ୱୟଂ ରହିଲେ । ସ୍ୱ ସ୍ୱରୂପସ୍ଥ ହୋଇ ରହିଲେ । ବାସ୍, ପୁଣି ଦ୍ୱିତୀୟ କେହି ରହିଲେ ନାହିଁ । ଅନ୍ୟ କିଛି ମଧ୍ୟ ରହିଲା ନାହିଁ । ନିଜର ସହଜ ସ୍ଥିତିରେ ପହଞ୍ଚି ନିର୍ଭୟ ହୋଇଗଲେ । ଯଦ୍ୱାରା ନିଜ ସ୍ୱରୂପରେ ସ୍ଥିତି ହୋଇଯାଏ, ନିର୍ଭୟତାର ପ୍ରାପ୍ତି ହୋଇଯାଏ ସେହି ଜ୍ଞାନକୁ ଏହି ଏକାଦଶ ସ୍କନ୍ଧରେ ବର୍ଣ୍ଣନ କରୁଛନ୍ତି ।

ବେଦାନ୍ତର ସଂସ୍କାର ନ ଥିଲେ ଏହି ପ୍ରସଙ୍ଗ ବଡ଼ କ୍ଲିଷ୍ଟ ଲାଗିପାରେ । ଏହା ମଧ୍ୟ ଲାଗିପାରେ ଯେ ଏ ପର୍ଯ୍ୟନ୍ତ ଏହି ଭାଗବତ ତ ଭଲ ଲାଗୁଥିଲା । ଏବେ କିଛି ସ୍ପଷ୍ଟ ହେଉନାହିଁ । ଦେଖନ୍ତୁ, ଏହା ହେଉଛି ବେଦାନ୍ତର ବିଷୟ, ତାତ୍ତ୍ୱିକ ଚର୍ଚ୍ଚାର ବିଷୟ । ଏହାକୁ ମଧ୍ୟ ଠିକ୍‌ରେ ବୁଝିବା ଉଚିତ । ସଗୁଣକୁ ବୁଝିଲୁ, ଏବେ ଟିକିଏ ନିର୍ଗୁଣକୁ ମଧ୍ୟ ବୁଝିବା ଆବଶ୍ୟକ । **'ରଘୁପତି ମହିମା ଅଗୁଣ ଅଗାଧ'** । କାହିଁକି ନା ଭଗବାନଙ୍କର ଯେଉଁ ଅଗୁଣ ମହିମା ଅଛି, ତାହା ହିଁ ତାଙ୍କର ଗଭୀରତା, ତଥା ତାଙ୍କର ବାସ୍ତବିକ ସ୍ୱରୂପ

ଅଟେ । ଯେଉଁ ପର୍ଯ୍ୟନ୍ତ ଭଗବତ୍ ତତ୍ତ୍ୱର ଜ୍ଞାନ ଉଦୟ ହୁଏ ନାହିଁ, ସେ ପର୍ଯ୍ୟନ୍ତ ଭକ୍ତିରେ ଗଭୀରତା ଆସେ ନାହିଁ, ଗମ୍ଭୀରତା ଆସେ ନାହିଁ । ସେ ପର୍ଯ୍ୟନ୍ତ ଭକ୍ତି କେବଳ ଏକ ଭାବନା ହୋଇ ରହିଥାଏ । ସେଥିପାଇଁ ଦୁଇ (ନିର୍ଗୁଣ ତଥା ସଗୁଣ)ଟି ସ୍ୱରୂପକୁ ବୁଝିବା ଆବଶ୍ୟକ।

## ଯଦୁବଂଶୀମାନଙ୍କୁ ବ୍ରହ୍ମଶାପ

ଶ୍ରୀଶୁକଦେବଜୀ କହୁଛନ୍ତି ଯେ ଯେତେବେଳେ ଭଗବାନ ନିଶ୍ଚୟ କରି ନେଲେ ଯେ ଏହି ଧରାଧାମକୁ ଯିବା ପୂର୍ବରୁ ସାତ୍ତ୍ୱିକ ବୃତ୍ତି ରୂପୀ ଯଦୁବଂଶୀମାନଙ୍କୁ ମଧ୍ୟ ସମାପ୍ତ କରି ଯିବାକୁ ହେବ, ସେତେବେଳେ ସେ ବିଚାର କରିବାକୁ ଲାଗିଲେ ଯେ ଏମାନଙ୍କୁ କିପରି ବିନାଶ କରିବାକୁ ହେବ ? କହିଲେ ବ୍ରହ୍ମଶାପ ଦ୍ୱାରା ସମ୍ଭବ ହେବ । ଦେଖନ୍ତୁ, ବ୍ରହ୍ମର ଉପଦେଶ ଦ୍ୱାରା ହିଁ ବୃତ୍ତି ମାତ୍ର ବାଧିତ ହୋଇଥାଏ । ଏହା ହିଁ ହେଉଛି ବ୍ରହ୍ମଶାପ ଦ୍ୱାରା ବିନାଶ ହେବାର ତାତ୍ପର୍ଯ୍ୟ । ନ ହେଲେ ଯଦୁବଂଶୀମାନଙ୍କୁ କିଏ ମାରିବ, ଏଭଳି କେହି ନ ଥିବେ । ବ୍ରାହ୍ମଣମାନଙ୍କର ଅଭିଶାପ ବ୍ୟତୀତ ଅନ୍ୟ କୌଣସି ନିମିତ୍ତରେ ସେମାନଙ୍କର ମୃତ୍ୟୁ ହୋଇ ପାରି ନ ଥାଆନ୍ତା । ସେମାନଙ୍କୁ ନଷ୍ଟ କରିବାର ସାମର୍ଥ୍ୟ ଅନ୍ୟ କାହା ପାଖରେ ନ ଥିଲା । ସେଥିପାଇଁ ଭଗବାନ ତାଙ୍କୁ ବ୍ରହ୍ମ ଅଭିଶାପ ଦେବାର ବ୍ୟବସ୍ଥା କରିଦେଲେ । ଖେଳ-ଖେଳରେ ଯଦୁବଂଶୀ ଯୁବକମାନେ ଋଷିମାନଙ୍କର, ବ୍ରାହ୍ମଣମାନଙ୍କର ଅପରାଧ କରିଦେଲେ ଏବଂ ସେହି କାରଣରୁ ସେମାନଙ୍କର ଅଭିଶାପର ପାତ୍ର ହେଲେ। ପ୍ରକୃତରେ ଏହା ଭଗବାନଙ୍କର ମାୟା ଅଟେ । ଭଗବାନ ନିଜର ସଂକଳ୍ପ ଦ୍ୱାରା ହିଁ ଏହା ସବୁ କରାଇଥିଲେ । ତାହା କାହିଁକି ? ଯଦୁବଂଶୀମାନଙ୍କୁ ମଧ୍ୟ ସେଠାରୁ ବିନାଶ କରିବା ନିମନ୍ତେ, ନିର୍ଦ୍ୱନ୍ଦ ସ୍ଥିତି ସ୍ଥାପନ କରିବା ନିମନ୍ତେ ! ଦେଖନ୍ତୁ; ରାମ ଅବତାରରେ ତ ଭଗବାନ ସମସ୍ତଙ୍କୁ ନିଜ ସହିତ ନେଇ ଯାଇଥିଲେ, କିନ୍ତୁ କୃଷ୍ଣ ଅବତାରରେ ସେ ସମସ୍ତଙ୍କୁ ନଷ୍ଟ କରି ଦେଇ ଯାଉଛନ୍ତି।

ରାମାବତାରରେ ତଥା କୃଷ୍ଣାବତାର ଦୁହିଁଙ୍କୁ ଏକ ଦୃଷ୍ଟିରେ ଦେଖିଲେ ସେଥିରେ ବଡ଼ ବିରୋଧାଭାସ ଦେଖାଯାଏ । ଯେଉଁଠାରେ ରାମଚନ୍ଦ୍ରଜୀ ସମସ୍ତ ଅଯୋଧ୍ୟାବାସୀମାନଙ୍କୁ ତାଙ୍କର ସଙ୍ଗରେ ନେଇଯାଇଥିଲେ ଏଠାରେ ଶ୍ରୀକୃଷ୍ଣ ଭଗବାନ ସମସ୍ତ ଦ୍ୱାରକାବାସୀମାନଙ୍କୁ ସମାପ୍ତ କରିଯାଉଛନ୍ତି । ଦୁଇଟି କଥା ବିପରୀତ ଲାଗିଲେ ମଧ୍ୟ ତାର ତାତ୍ପର୍ଯ୍ୟ ହେଉଛି ଏକ । ଗୋଟିଏ ହେଉଛି ବିଧି ପ୍ରଧାନ, ଅନ୍ୟଟି ହେଉଛି ନିଷେଧ ପ୍ରଧାନ । ଯଥା ଅନ୍ୱୟ ପଦ୍ଧତିରେ ଉପଦେଶ କଲାବେଳେ କୁହାଯାଏ ସବୁକିଛି ଭଗବାନ ହିଁ ଅଟନ୍ତି,

ଆଉବ୍ୟତିରେକ ପଦ୍ଧତିରେ କୁହାଯାଏ ଯେ ଭଗବାନଙ୍କର ବ୍ୟତିରେକେ ଆଉ କିଛି ନାହିଁ। ଏହିଭଳି ଭାବରେ ଦୁଇ ପ୍ରକାରର ବିଚାର କରାଯାଏ । ବେଦାନ୍ତରେ ବିଚାର କରିବାର ପଦ୍ଧତି ହେଉଛି ଦୁଇ ପ୍ରକାରର, ଗୋଟିଏ ହେଉଛି ଅନ୍ୱୟ ପଦ୍ଧତି ଏବଂ ଅନ୍ୟଟି ହେଉଛି ବ୍ୟତିରେକ ପଦ୍ଧତି । ଯାହା କିଛି ସବୁ ଦେଖାଯାଉଅଛି, ତାହା ସବୁ ଭଗବାନ ହିଁ ଅଟନ୍ତି, ବ୍ରହ୍ମ ହିଁ ଅଟନ୍ତି **'ସର୍ବ ଖଲୁ ଇଦଂ ବ୍ରହ୍ମ' (ଛା.ଉପନିଷଦ୍ ୩-୧୪-୧)** ଅଥବା କୁହନ୍ତୁ ଯେ ଭଗବାନଙ୍କର ଅତିରିକ୍ତ କିଛି ନାହିଁ **'ନେହ ନାନାଽସ୍ତି କିଞ୍ଚନ'**(କଠ - ଉପ.୨.୧.୧୧) ଏଇ ଦୁଇଟି କଥା ହେଉଛି ଗୋଟିଏ । ଏହିଭଳି ରୀତିରେ ଭଗବାନ ଶ୍ରୀରାମଙ୍କର ସମସ୍ତଙ୍କୁ ସଙ୍ଗରେ ନେଇଯିବା ତଥା ଭଗବାନ ଶ୍ରୀକୃଷ୍ଣଙ୍କର ସମସ୍ତଙ୍କୁ ବିନାଶ କରାଇଯିବା; ଏହି ଦୁଇଟି ଘଟଣାରେ ବିରୋଧ ଦେଖାଗଲେ ମଧ ବାସ୍ତବରେ କୌଣସି ବିରୋଧ ନାହିଁ। ଏହି ଦୁଇଟି ଘଟଣାବଳୀର ତାତ୍ପର୍ଯ୍ୟ ହେଉଛି ଏକ।

ରାଜା ପରୀକ୍ଷିତ ଶୁକଦେବଜୀଙ୍କୁ ପଚାରୁଛନ୍ତି, ମହାରାଜ ! ଯେଉଁ ଯଦୁବଂଶୀମାନଙ୍କ ସହିତ ସ୍ୱୟଂ ଭଗବାନ ଶ୍ରୀକୃଷ୍ଣ ରହୁଥିଲେ, ତାଙ୍କୁ ବ୍ରାହ୍ମଣମାନଙ୍କର ଅଭିଶାପ କିଭଳି ଲାଗିଲା? ସେମାନଙ୍କ ଦ୍ୱାରା ଏଭଳି କି ଅପରାଧ ହୋଇଥିଲା ? ସେତେବେଳେ ଶ୍ରୀ ଶୁକଦେବ କହୁଛନ୍ତି ଯେ- ଯଦୁବଂଶୀମାନଙ୍କ ସହିତ ରହିବା ସମୟରେ ଭଗବାନ ଶ୍ରୀକୃଷ୍ଣ-ବିଚାର କଲେ ଯେ ଲୀଳା ସମ୍ବରଣ କରିବାର ସମୟ ଆସିଗଲାଣି। ଭଗବାନ ଶ୍ରୀକୃଷ୍ଣ ଯଦୁବଂଶରେ ଆବିର୍ଭାବ ହୋଇଥିଲେ। ଏବେ ସେ ତିରୋଭୂତ ହେବାକୁ ଚାହୁଁଛନ୍ତି । ଯେଉଁଭଳି, ବୃତ୍ତିର ଉଦୟ ହେବା ପରେ ତାର ଅସ୍ତ ମଧ ହେବା ଉଚିତ୍; ତେବେ ତ ସ୍ୱରୂପରେ ବ୍ୟବସ୍ଥିତି ସମ୍ଭବପର ହେବ! ତେଣୁ ଭଗବାନ ବିଚାର କଲେ ଯେ ଏବେ ଏହି ସମସ୍ତଙ୍କୁ କିପରି ବିନାଶ କରାଯାଇପାରିବ ? ଦ୍ୱାରକାରେ ବ୍ରାହ୍ମଣମାନେ ମଧ ରହନ୍ତି; ଶ୍ରେଷ୍ଠ ମୁନିଋଷିମାନେ ମଧ ରହନ୍ତି । ସେମାନଙ୍କର ରହିଥିବା ବେଳେ ଏହି ଦ୍ୱାରକାର ଅଥବା ଦ୍ୱାରକାବାସୀ ମାନଙ୍କର କେବେହେଲେ ନାଶ ହେବ ନାହିଁ। ଏହା ବିଚାର କରି ଭଗବାନ ସମସ୍ତ ବ୍ରାହ୍ମଣମାନଙ୍କୁ ତଥା ମୁନିଋଷିମାନଙ୍କୁ ପିଣ୍ଡାରକ କ୍ଷେତ୍ରରେ ଯାଇ ବସତି ସ୍ଥାପନ କରିବା ନିମନ୍ତେ ପ୍ରେରଣା ଦେଲେ । ଭଗବାନଙ୍କର ଏହିଭଳି ପ୍ରେରଣା ପ୍ରାପ୍ତ କରି ସେମାନେ ଦ୍ୱାରକା ଛାଡ଼ି ପାଖରେ ଥିବା ପିଣ୍ଡାରକ ବନକୁ ଚାଲିଗଲେ।

ଗୋଟିଏ ଦିନ ଶ୍ରୀକୃଷ୍ଣଙ୍କର କେତେ ଜଣ ପୁତ୍ର ଖେଳୁ ଖେଳୁ ସେଠାରେ ଋଷିମାନଙ୍କ ନିକଟରେ ପହଞ୍ଚିଥିଲେ, ପୁଣି କେଜାଣି କାହିଁକି ତାଙ୍କର ମନରେ ଋଷିମାନଙ୍କ ସହିତ କୁ ଚେଷ୍ଟା କରିବା ନିମନ୍ତେ ବିଚାର ପ୍ରକଟ ହେଲା । ସେମାନେ ଭଗବାନ ଶ୍ରୀକୃଷ୍ଣଙ୍କର ଏକ

ପୁତ୍ର, ଯାହାଙ୍କର ନାମ ଥିଲା ଶାମ୍ବ, ଯିଏ କି ଦେଖିବାକୁ ଅତି ସୁନ୍ଦର, ତାକୁ ସ୍ତ୍ରୀ ବେଶରେ ସୁସଜ୍ଜିତ କଲେ। ସେ ମଧ୍ୟ ସାମାନ୍ୟ ସ୍ତ୍ରୀର ନୁହେଁ, ଗର୍ଭବତୀ ସ୍ତ୍ରୀ ଭଳି ତାକୁ ସଜାଇ ଦେଲେ। ପୁଣି ତାକୁ ନେଇ ସମସ୍ତେ ଋଷିମାନଙ୍କ ପାଖକୁ ଯାଉଛନ୍ତି, ଏବଂ ନମ୍ରତାର ଅଭିନୟ କରି ପଚାରୁଛନ୍ତି; "ଭଗବନ୍ ! ଏହି ନବ ଯୁବତୀ ଗର୍ଭବତୀ ଅଟେ। ଇଏ ଜାଣିବାକୁ ଚାହୁଁଛି ଯେ ଏହା ଗର୍ଭରୁ ପୁତ୍ର ଜନ୍ମ ହେବ କି ପୁତ୍ରୀ ? ଆପଣ କୃପା କରି କୁହନ୍ତୁ । ସେ ନିଜେ ପଚାରିବାକୁ ସଂକୋଚ କରୁଛି ।" ଏହି ଶାମ୍ବ ମଧ୍ୟ ସ୍ତ୍ରୀଙ୍କ ଭଳି ଅଭିନୟ କରିବାରେ କୁଶଳ ଥିଲା । କିନ୍ତୁ ଋଷିମାନଙ୍କ ଦୃଷ୍ଟିରେ କଣ କିଛି ଗୁପ୍ତ ରହିପାରିବ ? ସେ ବୁଝିଗଲେ ଯେ, ଯଦୁବଂଶର ଯୁବକମାନେ ଆମ୍ଭମାନଙ୍କ ସହିତ ଖେଳୁଛନ୍ତି । ତାଙ୍କର ଏପରି ବ୍ୟବହାରରେ ଋଷିମାନଙ୍କୁ କ୍ରୋଧ ଆସିଗଲା ଏବଂ ସେ କ୍ରୋଧଯୁକ୍ତ ହୋଇ କହିଲେ, "ଏହାର ଗର୍ଭରୁ ନା ପୁତ୍ର ହେବ ନା ପୁତ୍ରୀ ।" ଏକ ଲୁହାର ମୁଶଳ ଜନ୍ମ ହେବ ଏବଂ ତାହା ତୁମ୍ଭମାନଙ୍କର ସମସ୍ତ କୁଳକୁ ନଷ୍ଟ କରି ଦେବ।

ଋଷିମାନଙ୍କର ଏପରି ବଚନକୁ ଶୁଣି ଯଦୁବଂଶୀ ଯୁବକମାନେ ଚିନ୍ତାରେ ପଡ଼ିଗଲେ। ସେମାନେ ତତ୍କ୍ଷଣାତ୍ ଶାମ୍ବର ପେଟରୁ ସମସ୍ତ ବସ୍ତ୍ରକୁ ବାହାର କଲାବେଳେ ଦେଖିଲେ ସତକୁ ସତ ସେହି ସମୟରେ ଏକ ଲୁହାର ମୁଶଳ ବାହାରି ଆସିଲା । ମୁଶଳର ଅର୍ଥ ଲୁହାର ଏକ ବାଡ଼ି । ଯଦ୍ଦ୍ୱାରା ଧାନ ଆଦି କୁଟାଯାଏ । ଋଷିମାନଙ୍କର ଅଭିଶାପ ତ ତତ୍କ୍ଷଣ ଫଳିଭୂତ ହୁଏ, ତଥା ସିଦ୍ଧ ହୋଇଯାଏ । ଭୟଭୀତ ହୋଇ ସମସ୍ତେ ବିଚାର କଲେ ଯେ ଏହା ଖେଳ ଖେଳରେ କ'ଣ ହୋଇଗଲା ? କିନ୍ତୁ ଦେଖନ୍ତୁ, ତାଙ୍କର ବୁଦ୍ଧି କିପରି ହୋଇଗଲା ? ସେମାନେ ଘରକୁ ଆସି ସମସ୍ତଙ୍କର ଉପସ୍ଥିତିରେ ସମସ୍ତ ଘଟଣାକୁ ଉଗ୍ରସେନଙ୍କୁ ତ କହିଲେ, କିନ୍ତୁ ଭଗବାନ ଶ୍ରୀକୃଷ୍ଣଙ୍କୁ କିଛି କହିଲେ ନାହିଁ ଯେ ଆମ୍ଭେ ଋଷିମାନଙ୍କ ସହିତ ଏହିଭଳି କରୁଥିଲୁ ଏବଂ ତାଙ୍କର ଅଭିଶାପରେ ଏକ ମୁଶଳ ବାହାରିଛି। ଦେଖନ୍ତୁ, ଜୀବନରେ ଏଭଳି କିଛି ଘଟଣା ଥାଏ ଯାହାକୁ ଆମ୍ଭେ ଲୁଚାଇବାକୁ ଚାହୁଁଛୁ । ଏହି କଥାକୁ ସମସ୍ତେ ଜାଣିଥିଲେ, କିନ୍ତୁ କେହି ହେଲେ ମଧ୍ୟ ଶ୍ରୀକୃଷ୍ଣଙ୍କୁ କହି ନ ଥିଲେ। ସେମାନଙ୍କୁ ଲାଗୁଥିଲା ଯେ ଶ୍ରୀକୃଷ୍ଣ ତ ବ୍ରାହ୍ମଣମାନଙ୍କର ବଡ଼ ଆଦର କରନ୍ତି, ସେମାନଙ୍କର ପୂଜା କରନ୍ତି । ଏହି କଥାକୁ ଶୁଣି ନିଶ୍ଚିତ ଭାବରେ କ୍ରୋଧିତ ହେବେ । ଉଗ୍ରସେନଜୀ ମଧ୍ୟ ଭଗବାନ ଶ୍ରୀକୃଷ୍ଣଙ୍କୁ କହିଲେ ନାହିଁ । ସେ ସେହି ମୁଶଳକୁ ଚୂର୍ଣ୍ଣ -ବିଚୂର୍ଣ୍ଣ କରି ଦେଲେ । ତଥାପି ସେଥିରୁ ଖଣ୍ଡେ ଏପରି ଭାବରେ ରହି ଯାଇଥିଲା ଯାହା ଚୂର୍ଣ୍ଣ ହୋଇ ପାରିଲା ନାହିଁ, ସେତେବେଳେ ଉଗ୍ରସେନଜୀ କହିଲେ ଏହି ଖଣ୍ଡକୁ ତଥା ସମସ୍ତ ଚୂର୍ଣ୍ଣ ଆଦିକୁ ସମୁଦ୍ରରେ ଭସାଇ ଦିଅ ।

ଏବେ ଭଗବାନଙ୍କର ସଂକଳ୍ପକୁ କିଏ ଜାଣିପାରିବ । ଭଗବାନଙ୍କର ମାୟା ଦ୍ୱାରା ସେ ସମସ୍ତ ଚୂର୍ଣ୍ଣ କୂଳକୁ ଆସିଗଲା ଏବଂ ଐରକ (ଘାସ) ରୂପରେ ଜନ୍ମ ନେଲା । ଚୂର୍ଣ୍ଣ କଲାପରେ ମଧ୍ୟ ଯେଉଁ ଛୋଟ ଲୌହ ଖଣ୍ଡକ ଅବଶେଷ ରହିଥିଲା, ତାକୁ ଏକ ମାଛ ଗିଳି ଦେଲା । ସେହି ମାଛକୁ ଗୋଟିଏ କେଉଟ ଧରିଲା । ମାଛର ପେଟରୁ ଯେତେବେଳେ ଏହି ଲୌହଖଣ୍ଡ ବାହାରିଲା, ସେତେବେଳେ କେଉଟ ତାକୁ ନେଇ କମାର ପାଖରେ ପହଞ୍ଚିଲା । ଶିକାର କରୁଥିବା ଏକ ଲୁବ୍ଧକ କମାରକୁ କହିଲା ଯେ ମୋର ଶର ତୀକ୍ଷ୍ଣ କରିବା ନିମନ୍ତେ ଏହି ଲୌହ ଖଣ୍ଡଟି ହିଁ ଠିକ୍ ହେବ । ସେ ସେହି ଲୌହଖଣ୍ଡକୁ ନେଇ ନିଜ ଶରରେ ଲଗାଇ ଦେଲା ।

**ଭଗବାନଜ୍ଞାତସର୍ବାର୍ଥ ଈଶ୍ୱରୋଽପି ତଦନ୍ୟଥା ।**

**କର୍ତ୍ତୁଂ ନୈଚ୍ଛଦ୍ ବିପ୍ରଶାପଂ କାଲରୂପ୍ୟନ୍ୱମୋଦତ ॥** (୧୧.୧.୧୨୪)

ଯଦ୍ୟପି ଭଗବାନ ସର୍ବ ସମର୍ଥ ଅଟନ୍ତି । ସେ ଚାହିଁଥିଲେ ବ୍ରହ୍ମ ଅଭିଶାପକୁ ମଧ୍ୟ ନିରସ୍ତ କରିପାରି ଥାଆନ୍ତେ, କିନ୍ତୁ ସେ ତ ସ୍ୱୟଂ ବିଚାର କରି ସାରିଥିଲେ ଯେ ସମସ୍ତଙ୍କୁ ସମାପ୍ତ କରିବି । ସେଥିପାଇଁ ଭଗବାନ ନିଜର ଶକ୍ତି ତଥା ନିଜର ସାମର୍ଥ୍ୟକୁ ପ୍ରୟୋଗ କଲେ ନାହିଁ । କେବଳ ସେତିକି ନୁହେଁ; ବରଂ ଏହାର ବିପରୀତ ସେ ତ ବ୍ରାହ୍ମଣମାନଙ୍କର ଅଭିଶାପକୁ ଅନୁମୋଦନ କଲେ । ଏହି ବିଷୟକୁ ଏଠାରେ ଛାଡି ଦେଇ ଏବେ (ପର ଅଧ୍ୟାୟରେ) ଅନ୍ୟ ଏକ ପ୍ରସଙ୍ଗ ପ୍ରାରମ୍ଭ ହୁଏ । ଆଗକୁ ଏହି ସନ୍ଦର୍ଭ ପୁଣି ଥରେ ଆସିବ ।

## ବସୁଦେବଙ୍କୁ ନାରଦଙ୍କ ଦ୍ୱାରା ଜ୍ଞାନ ଉପଦେଶ

**ଗୋବିନ୍ଦଭୁଜଗୁପ୍ତାୟାଂ ଦ୍ୱାରବତ୍ୟାଂ କୁରୁଦ୍ୱହ ।**
**ଅବାତ୍ସୀନ୍ନାରଦୋଽଭୀକ୍ଷ୍ଣଂ କୃଷ୍ଣୋପାସନଲାଲସଃ ॥** (୧୧.୨.୧)

ଏହି ଏକାଦଶ ସ୍କନ୍ଧରେ ଏବେ ଜ୍ଞାନର ଚର୍ଚ୍ଚା ପ୍ରାରମ୍ଭ ହେଉଛି । ଅନ୍ୟ ସମସ୍ତ ଋଷିମାନେ ତ ବନକୁ ଚାଲିଯାଇଥିଲେ; କିନ୍ତୁ ନାରଦଜୀ ବାରମ୍ବାର ଭଗବାନଙ୍କ ପାଖକୁ ଯିବା-ଆସିବା କରୁଥିଲେ । ସେ ଭଗବାନ ଶ୍ରୀକୃଷ୍ଣଙ୍କୁ ଅତ୍ୟଧିକ ପ୍ରେମ କରୁଥିଲେ । ତାଙ୍କୁ ବାରମ୍ବାର ଭଗବାନ ଶ୍ରୀକୃଷ୍ଣଙ୍କୁ ଦର୍ଶନ କରିବାକୁ ଇଚ୍ଛା ହେଉଥିଲା, ତେଣୁ ସେ ପ୍ରାୟତଃ ଦ୍ୱାରକା ଆସୁଥିଲେ । ଥରେ ସେଠାରେ ପହଞ୍ଚି ବସୁଦେବଙ୍କ ଘରକୁ ଆସିଲେ। କାହିଁକି ନା ସେ ବିଚାର କଲେ ଯେ ବସୁଦେବ ଭଗବାନ ଶ୍ରୀକୃଷ୍ଣଙ୍କୁ ପ୍ରେମ ତ କରନ୍ତି, କିନ୍ତୁ ନିଜର ପୁତ୍ର ବୋଲି ବିଚାର କରି ପ୍ରେମ କରନ୍ତି । ଏବେ ଯଦି ସେ ଭଗବାନଙ୍କୁ ସବୁବେଳେ ପୁତ୍ର-ପୁତ୍ର ବୋଲି ବିଚାର କରନ୍ତି, ତେବେ କଥା ଅଧା ହୋଇ ରହିଯିବ ! ସେଥିରେ ପୂର୍ଣ୍ଣତା ଆସିବ ନାହିଁ । ତେଣୁ ଏବେ ତାଙ୍କୁ ଭଗବାନଙ୍କର ସ୍ୱରୂପର - ଭଗବାନଙ୍କର ତତ୍ତ୍ୱଜ୍ଞାନକୁ ଜାଣିବା ପରମ ଆବଶ୍ୟକ । ଏବେ ତାର ସମୟ ଆସିଗଲାଣି।

**'ଦେବର୍ଷି ବସୁଦେବୋ ଗୃହାଗତମ୍'** ନାରଦଜୀଙ୍କୁ ଘରକୁ ଆସିବାର ଦେଖି ବସୁଦେବଜୀ ତାଙ୍କର ସ୍ୱାଗତ କଲେ । ପୁଣି ତାଙ୍କ ପୂଜା ଆଦି ସମାପ୍ତ କଲା ପରେ, ସେ ନାରଦଜୀଙ୍କୁ କହୁଛନ୍ତି - ଭଗବନ୍ ! ଆପଣଙ୍କ ଭଳି ଭଗବତ୍‌ମୟ ଭଗବତ୍ ପ୍ରେମୀଜନ ଆମ ଗୃହରେ ପ୍ରବେଶ କଲେ ଏହା ଆପଣଙ୍କର ଅପାର କୃପା । ଆପଣ ତ **'ସାଧବୋ ଦୀନ ବତ୍ସଲାଃ' ୧୧.୨.୬** ଅଟନ୍ତି । ଯଦ୍ୟପି ମୁଁ ତ ଏତିକିରେ କୃତକୃତ୍ୟ । ତଥାପି ମୋ ମନରେ ବହୁତ ଥର ଜ୍ଞାନ ପ୍ରାପ୍ତିର ଇଚ୍ଛା ହେଉଛି । ସତ୍ୟକୁ ଜାଣିବା ନିମନ୍ତେ ଜିଜ୍ଞାସା ହେଉଛି। ସମସ୍ତେ ଶ୍ରୀକୃଷ୍ଣଙ୍କୁ ପରମାତ୍ମା କହୁଛନ୍ତି କିନ୍ତୁ ମୁଁ ଯେତେବେଳେ ତାଙ୍କୁ ଜ୍ଞାନ କଥା ପଚାରେ ସେତେବେଳେ ସେ ମୋର ପାଦ ସ୍ପର୍ଶ କରି କୁହନ୍ତି - ଆପଣ ତ ମୋର ପିତା । ପୁଣି ସେ ମୋ ଠାରୁ ଶିଖିବା ନିମନ୍ତେ କଥା ପଚାରନ୍ତି । ତେଣୁ ତାଙ୍କଠାରୁ ତ ମୁଁ ଜ୍ଞାନ ପ୍ରାପ୍ତ କରିପାରିବି ନାହିଁ । କେବଳ ସେତିକି ନୁହେଁ, ମୋର ମନରେ ମଧ୍ୟ ଇଏ ମୋର ପୁତ୍ର ବୋଲି ସବୁବେଳେ ଆସିଯାଉଛି । (ଜଣାନାହିଁ, ମାତା ଦେବହୁତି ନିଜପୁତ୍ର କପିଳ ମୁନିଙ୍କ ଠାରୁ କିଭଳି ଜ୍ଞାନପ୍ରାପ୍ତ କରିଥିଲେ, ତତ୍ ବ୍ୟତିରେକେ ଅନ୍ୟ କେହି ନାହାନ୍ତି।) ସେଥିପାଇଁ ମୁଁ ଆପଣଙ୍କଠାରୁ ସେହି ସାଧନ ବିଷୟରେ ଜାଣିବାକୁ ଚାହୁଁଛି; ଯାହାର ଶ୍ରବଣ ମାତ୍ର ଦ୍ୱାରା ମନୁଷ୍ୟ ଏହି ଭୟାବହ ଭବସାଗରରୁ ମୁକ୍ତ ହୋଇଯାଏ।

**ବ୍ରହ୍ମଂସ୍ତଥାପି ପୃଚ୍ଛାମୋ ଧର୍ମାନ୍ ଭାଗବତାଂସ୍ତବ ।**

**ଯାଞ୍ଛ୍ରୁତ୍ୱା ଶ୍ରଦ୍ଧୟା ମର୍ତ୍ତ୍ୟୋ ମୁଚ୍ୟତେ ସର୍ବତୋଭୟାତ୍ ॥** (୧୧.୨.୭)

ଯାହାର ପାଳନ କରି ମନୁଷ୍ୟ ସବୁପ୍ରକାର ଭ୍ରମରୁ, ସଂସାରର ଭୟଠାରୁ ମୁକ୍ତ ହୋଇଯାଏ, ସେହି ଭାଗବତ ଧର୍ମ କ'ଣ, ଆପଣ ମୋତେ କୁହନ୍ତୁ । ମୁଁ ପ୍ରଥମେ ମଧ୍ୟ ଭଗବାନଙ୍କର ଆରାଧନା କରିଥିଲି । ସେ ସମୟରେ ତାଙ୍କର ଲୀଳାରେ ମୋହିତ ହୋଇ ମୁଁ ତାଙ୍କଠାରୁ ଜ୍ଞାନ ମାଗିଲି ନାହିଁ, ତାଙ୍କୁ ମୁଁ ପୁତ୍ର ରୂପରେ ମାଗିଥିଲି । ସେଥିପାଇଁ ସେ ପୁତ୍ର ରୂପରେ ଆସିଲେ । ଏବେ ଏହି ରୂପରେ ମୁଁ ତାଙ୍କଠାରୁ ଜ୍ଞାନ ପ୍ରାପ୍ତ କରି ପାରିବି ନାହିଁ । ଆପଣ ତ ସନ୍ଥ, ସନ୍ଥ ଲୋକମାନେ ହିଁ ଜ୍ଞାନ ଦେଇପାରିବେ । ତେଣୁ ଆପଣ ମୋତେ ସଂସାର ସାଗରରୁ ପାର ହେବା ନିମନ୍ତେ ଜ୍ଞାନ ପ୍ରଦାନ କରାନ୍ତୁ । ବସୁଦେବ ଭଗବାନ ଦେବର୍ଷି ନାରଦଙ୍କ ନିକଟରେ ଏଭଳି ନିବେଦନ କଲେ । ବସୁଦେବ ଭଗବାନଙ୍କର ସ୍ୱରୂପ ତଥା ଗୁଣର ଶ୍ରବଣ କରିବାକୁ ଚାହୁଁଛନ୍ତି - ଏହା ଶୁଣି-

**ପ୍ରୀତସ୍ତମାହ ଦେବର୍ଷିର୍ହରେଃ ସଂସ୍ମାରିତୋ ଗୁଣୈଃ ॥** (୧୧.୨.୧୦)

ସ୍ୱୟଂ ନାରଦ ଭଗବାନଙ୍କର ଗୁଣର ସ୍ମରଣ କରି ତନ୍ମୟ ହୋଇଗଲେ । ତାଙ୍କର ହୃଦୟ ପ୍ରସନ୍ନତାରେ ଭରିଗଲା ।

## ରାଜା ନିମି ତଥା ନଅ ଯୋଗୀଶ୍ୱରଙ୍କର ସଂବାଦ

ସେତେବେଳେ ସେ ବସୁଦେବଙ୍କୁ କହୁଛନ୍ତି, "ତୁମେ ବହୁତ ଉତ୍ତମ ପ୍ରଶ୍ନ ପଚାରିଛ, କାହିଁକି ନା ଏହି ପ୍ରଶ୍ନ ହେଉଛି ଭାଗବତ ସମ୍ବନ୍ଧରେ । ଏହାଦ୍ୱାରା ସଂପୂର୍ଣ୍ଣ ବିଶ୍ୱର ଧାରଣ ହୋଇଥାଏ । ମାନବର କଲ୍ୟାଣ ହୋଇଥାଏ ।" ପୁଣି କହିଲେ, ବସୁଦେବ, ଋଷିମାନେ ଏହି ସନ୍ଦର୍ଭରେ ଏକ ଐତିହାସିକ କଥା କହିଛନ୍ତି । ଏହିଭଳି ପ୍ରଶ୍ନ ପୂର୍ବରୁ ପଚରାଯାଇଥିଲା । ତାହାଲେ ? କିଏ, କେଉଁଠି, କେତେବେଳେ ପଚାରିଥିଲେ ? ଦେଖନ୍ତୁ, ଆଗକୁ ବଢ଼ିବା ପୂର୍ବରୁ ଆମ୍ଭେ ଟିକିଏ ପୂର୍ବ-ପୂର୍ବ କଥାକୁ ସ୍ମରଣ କରିନେବା । ଋଷଭ ଦେବଙ୍କ ଅବତାର ଆପଣମାନଙ୍କର ମନେ ଥିବ । ଋଷଭଦେବ, ମୁହଁରେ ପଥର ରଖି ରାଜ୍ୟରୁ ଚାଲିଯିବା ପୂର୍ବରୁ, ନିଜର ପୁତ୍ରମାନଙ୍କୁ ସମସ୍ତଙ୍କର ସମ୍ମୁଖରେ ବିଶେଷ ଶିକ୍ଷା ପ୍ରଦାନ କରିଥିଲେ । ତାଙ୍କର ଏକଶହ ପୁତ୍ର ଥିଲେ, ଯେଉଁମାନଙ୍କ ମଧ୍ୟରେ ରାଜା ଭରତ ଶ୍ରେଷ୍ଠ ପୁତ୍ର ଥିଲେ । ତାଙ୍କର ଶେଷ ନଅ ପୁତ୍ର ମହାଭାଗବତ ହେଲେ, ସେହି ନଅ ଯୋଗୀମାନଙ୍କର ନାମ ସେଠାରେ ଗଣନା ହୋଇଥିଲା (୫.୪.୧୧) ଏବଂ ଏହା ମଧ୍ୟ

କୁହାଯାଇଥିଲା ଯେ ଏହି କଥାଟି ଏକାଦଶ ସ୍କନ୍ଧରେ ଆସିବ । ଏଠାରେ ସେହି ନଅ ଯୋଗୀଙ୍କର ଯେଉଁ କଥା ତାକୁ ପ୍ରସ୍ତୁତ ପ୍ରସଙ୍ଗରେ ନାରଦ ବସୁଦେବଙ୍କୁ ଶୁଣାଉଛନ୍ତି । ସେ କହୁଛନ୍ତି ଯେ, ମିଥିଳାର ରାଜା ନିମି ଥରେ ବହୁତ ବଡ଼ ଯଜ୍ଞ କରାଉଥିଲେ, ସେହି ସମୟରେ ତାଙ୍କର ସଭାରେ ଏହି ନଅଯୋଗୀ ପଦାର୍ପଣ କଲେ । ସେମାନେ ସମସ୍ତେ ତେଜସ୍ୱୀ ତଥା ସିଦ୍ଧ ଥିଲେ । ସଦା ନିଜର ସ୍ୱରୂପରେ ସ୍ଥିତ ରହୁଥିବା ମୁକ୍ତ ପୁରୁଷ ଥିଲେ । ସେମାନେ ସମସ୍ତେ ଯତ୍ର-ତତ୍ର ସ୍ୱଚ୍ଛନ୍ଦ ରୂପରେ ବିଚରଣ କରୁଥିଲେ । ଥରେ ସେମାନେ ସମସ୍ତେ ସ୍ୱତଃ ହିଁ ଅନାୟାସରେ ରାଜା ନିମିଙ୍କର ଯଜ୍ଞରେ ପହଞ୍ଚିଗଲେ । ଦେଖନ୍ତୁ, ରାଜା ନିମିଙ୍କ ଉପରେ ତାଙ୍କର କେତେ ଅନୁଗ୍ରହ । ତାଙ୍କର ଦର୍ଶନ ପ୍ରାପ୍ତ କରି ବିଦେହ ରାଜା ଆସନରୁ ଉଠିଯାଇ ତାଙ୍କର ସ୍ୱାଗତ କରୁଛନ୍ତି । କହୁଛନ୍ତି -

**ମନ୍ୟେ ଭଗବତଃ ସାକ୍ଷାତ୍ ପାର୍ଷଦାନ୍ ବୋ ମଧୁଦ୍ୱିଷଃ ।**
**ବିଷ୍ଣୋର୍ଭୂତାନି ଲୋକାନାଂ ପାବନାୟ ଚରନ୍ତି ହି ॥** (୧୧.୨.୨୮)

ଆପଣ ତ ସାକ୍ଷାତ୍ ଭଗବାନଙ୍କର ପାର୍ଷଦ ଅଟନ୍ତି । ସମସ୍ତଙ୍କର କଲ୍ୟାଣ କରିବା ନିମନ୍ତେ ଆପଣ ଏହି ଜଗତରେ ବିଚରଣ କରୁଛନ୍ତି . ଆଜି ମୋର ମଧ୍ୟ କଲ୍ୟାଣ କରିବା ନିମନ୍ତେ ଆପଣ ଏଠାକୁ ଆସିଛନ୍ତି । ଏହି ମନୁଷ୍ୟ ଜନ୍ମ ବଡ଼ ଦୁର୍ଲଭ ଅଟେ, **'ଦେହିନାଂ କ୍ଷଣଭଙ୍ଗୁରଃ'**ଏହା ତ ବଡ଼ କ୍ଷଣ ଭଙ୍ଗୁର ମଧ୍ୟ ଅଟେ । ବର୍ତ୍ତମାନ ଅଛି, ଏହାର ପରକ୍ଷଣରେ ଏହା ରହିବ କି ନାହିଁ, ଏହାର କୌଣସି ଭରସା ନାହିଁ, କୌଣସି ନିଶ୍ଚୟ ନାହିଁ । **'ଦୁର୍ଲଭଂ ମାନୁଷୋ ଦେହୋ'** (୧୧.୧.୨୬) ମନୁଷ୍ୟ ଦେହ ଦୁର୍ଲଭ ଅଟେ । ଏହି କଥା ଉପରେ ଆଜିକାଲିର ଲୋକମାନେ ବିଶ୍ୱାସ କରୁନାହାନ୍ତି । କହନ୍ତି- ଦୁର୍ଲଭ କିପରି ? ଜନସଂଖ୍ୟା ଏତେ ବଢ଼ି ଚାଲୁଛି । ଆଜିର ଲୋକସଂଖ୍ୟାକୁ ଦେଖି ଲୋକମାନଙ୍କୁ ଲାଗୁନାହିଁ ଯେ ମନୁଷ୍ୟ ଜନ୍ମ ଦୁର୍ଲଭ ଅଟେ । କିନ୍ତୁ ଶାସ୍ତ୍ର କହେ - **'ଜନ୍ତୁନାଂ ନର ଜନ୍ମ ଦୁର୍ଲଭମ୍ ।'** (ବିବେକ ଚୂଡ଼ାମଣି) । ଆରେ ! ସଂସାରରେ ଯଦି ଜନ୍ତୁମାନଙ୍କର, ଜୀବମାନଙ୍କର ସଂଖ୍ୟା ଦେଖାଯାଏ ତ ଅନ୍ୟ ଜୀବମାନଙ୍କର ତୁଳନାରେ ମନୁଷ୍ୟମାନଙ୍କର ସଂଖ୍ୟା ହିଁ କେତେ ? ଟିକିଏ ବିଚାର କରନ୍ତୁ ! ତାହା ବହୁତ ଅଳ୍ପ ।

**ତତ୍ରାପି ଦୁର୍ଲଭଂ ମନ୍ୟେ ବୈକୁଣ୍ଠପ୍ରିୟଦର୍ଶନମ୍ ॥** (୧୧.୨.୨୬)

ବିଦେହ ରାଜା ନିମି କହୁଛନ୍ତି, "ମନୁଷ୍ୟ ଜନ୍ମ ତ ଦୁର୍ଲଭ ଅଟେ, କିନ୍ତୁ ତାହାଠାରୁ ମଧ୍ୟ ଦୁର୍ଲଭତର ହେଉଛି ବୈକୁଣ୍ଠ ପ୍ରିୟଜନଙ୍କର ଦର୍ଶନ ।" ଏଠାରେ ବୈକୁଣ୍ଠ ଶବ୍ଦର ତାତ୍ପର୍ଯ୍ୟ ହେଉଛି ବିଷ୍ଣୁ ଭଗବାନ । ବିଷ୍ଣୁ ସହସ୍ର ନାମରେ ଭଗବାନଙ୍କର ନିମନ୍ତେ ବୈକୁଣ୍ଠ ଶବ୍ଦ ଆସିଛି । ବୈକୁଣ୍ଠଙ୍କର ପ୍ରିୟ ଏହାର ଅର୍ଥ ଭଗବାନଙ୍କର ଭକ୍ତମାନଙ୍କର ଦର୍ଶନ ତ ଦୁର୍ଲଭତର ଅଟେ । ରାଜା ନିମି କହୁଛନ୍ତି, "ଆଜି ମୋର ସଦ୍‌ଭାଗ୍ୟ ଯୋଗୁ ଆପଣମାନେ ଏଠାରେ ପହଞ୍ଚିଛନ୍ତି । ଏହା ମୁଁ ଜାଣିଛି ଯେ ଯଦି କେହି ସନ୍ଥ ମିଳନ୍ତି, ସେମାନଙ୍କ ସହିତ ବ୍ୟର୍ଥ ଚର୍ଚ୍ଚା କରିବା ଉଚିତ ନୁହେଁ । ସେମାନଙ୍କୁ ନିଜର କଲ୍ୟାଣ ନିମନ୍ତେ ପ୍ରଶ୍ନ ପଚାରିବା ଉଚିତ୍ ।

**ସଂସାରେଽସ୍ମିନ୍ କ୍ଷଣାର୍ଦ୍ଧୋଽପି ସତ୍‌ସଙ୍ଗ ଶେବଧିର୍ନୃଣାମ୍ ॥** (୧୧.୨.୩୦)

ଏଭଳି କୁହାଯାଏ ଯେ ଅର୍ଦ୍ଧକ୍ଷଣର ସତ୍‌ସମ୍ବନ୍ଧ ଯାହାକୁ ପ୍ରାପ୍ତ ହୋଇଯାଏ, ତାର କଲ୍ୟାଣ ହୋଇଯାଏ । ତାହା ଆମ୍ଭଙ୍କୁ ଅନେକ ପ୍ରକାର କଷ୍ଟରୁ, ଦୁଃଖଦ ପରିସ୍ଥିତିଠାରୁ ବଞ୍ଚାଇ ଥାଏ । ସେଥିପାଇଁ ମୁଁ ଆପଣଙ୍କୁ ଏହି ପ୍ରଶ୍ନ ପଚାରୁଛି ।"

ଦେଖନ୍ତୁ, ଏହି ସନ୍ଦର୍ଭରେ ମୁଁ ଏକ ବିନୋଦଭରା କଥା ଶୁଣିଥିଲି । କେହି ଜଣେ ମହିଳା କଥା ଶୁଣିବାକୁ ସତ୍‌ସଙ୍ଗ ଯାଇଥିଲେ । ସେହିଦିନ ସେଠାରେ ତାଙ୍କୁ କେବଳ ତିନୋଟି ଶବ୍ଦ ଶୁଣାଗଲା । ଗୋଟିଏ ଥିଲା - 'ଆସିଗଲେ', ଦ୍ୱିତୀୟ ଥିଲା 'ବସିଗଲେ', ଏବଂ ତୃତୀୟଟି ଥିଲା 'ଯାଉଛନ୍ତି' ବାସ୍ । ସେହି ମହିଳା ସତ୍ସଙ୍ଗରୁ ଘରକୁ ଫେରିଲେ, ପତି କହିଲେ, 'ସତ୍ସଙ୍ଗ କରି ଆସିଗଲ' ଓ ସେ କହିଲେ 'ହଁ' କିନ୍ତୁ ଆଜି ମତେ ଖୁବ୍ ନିଦ ଆସୁଥିଲା ଭଲ କରି ଶୁଣିପାରିଲିନି ଖାଲି ତିନୋଟି ଶବ୍ଦ ଶୁଣିଲି। ଦୈବଯୋଗରୁ ଠିକ୍ ସେହି ସମୟରେ ଗୋଟିଏ ଚୋର ତାଙ୍କ ଘରକୁ ପଶିଆସିଲା। ପତି ପଚାରିଲେ ଚୋରର ଆସିବା ଏବଂ ପତ୍ନୀଙ୍କର କହିବା "ଆସିଗଲେ", ଏଇ ଦୁଇ ଘଟଣା ଏକାଠି ଘଟିଲା । ଚୋର ଚିନ୍ତାରେ ପଡ଼ିଗଲା । ପୁଣି କହିଲେ - "ବସିଗଲେ" । ଚୋରକୁ ଲାଗିଲା, ଆରେ ! ଏଠାରେ ମୋତେ କେହି ଦେଖୁଛି । ଯଦି ମୋତେ କେହି ଦେଖୁଛି, ତେବେ ମୁଁ ଏଠାରେ ଚୋରି କରିପାରିବି ନାହିଁ। ଏଭଳି ବିଚାର କରି ସେ ଚୋରଟି ଯିବାକୁ ବାହାରିଲା, ସେତେବେଳେ ସେ ମହିଳା କହୁଥିଲେ "ଯାଉଛନ୍ତି।" ଦେଖନ୍ତୁ ଅଧାକ୍ଷଣର ସତ୍‌ସଙ୍ଗ ଦ୍ୱାରା ତାର ଘରଟି ଚୋର ହାତରୁ ବଞ୍ଚିଗଲା !!! ତେବେ ଏଭଳି ହେଉଛି ସତ୍‌ସଙ୍ଗର ମହିମା । ସେଥିପାଇଁ ସତ୍‌ସଙ୍ଗର ମଧ୍ୟ ଜୟ-ଜୟକାର ହେବା ଉଚିତ । ଏହି ସତ୍‌ସଙ୍ଗ ହିଁ ଆମ୍ଭଙ୍କୁ ସମସ୍ତ ଦୁଃଖରୁ ଉଦ୍ଧାର କରିପାରିବ ।

## ପ୍ରଥମ ପ୍ରଶ୍ନ - ଭାଗବତ ଧର୍ମର ତାତ୍ପର୍ଯ୍ୟ

ତେବେ ବିଦେହରାଜା ନିମି ସେହି ନଅ ଯୋଗୀମାନଙ୍କୁ କହୁଛନ୍ତି - ଆପଣ କୃପା କରି ମୋତେ ବୁଝାଇ କୁହନ୍ତୁ ଯେ -

**ଅତ ଆତ୍ୟନ୍ତିକଂ କ୍ଷେମଂ ପୃଚ୍ଛାମୋ ଭବତୋଽନଘାଃ** ।(୧୧.୨.୩୦)

ଆତ୍ୟନ୍ତିକ କ୍ଷେମ କ'ଣ ? ମନୁଷ୍ୟର ସବୁଠାରୁ ଶ୍ରେଷ୍ଠ କଲ୍ୟାଣ କେଉଁଥିରେ ଅଛି ? ଦେଖନ୍ତୁ, କେତେ ନମ୍ରତା ରାଜା ନିମିଙ୍କର, ସେ ପୁନଃ କହୁଛନ୍ତି -

**ଧର୍ମାନ୍ ଭାଗବତାନ୍ ବ୍ରୁତ ଯଦି ନଃ ଶ୍ରୁତୟେ କ୍ଷମମ୍** ॥ (୧୧.୨.୩୧)

ଯଦି ଆପଣଙ୍କ ଦୃଷ୍ଟିରେ ଆମ ପାଖରେ ଶୁଣିବାର ଯୋଗ୍ୟତା ଅଛି ବୋଲି ବିଚାର କରୁଛନ୍ତି, ତେବେ ଆପଣ ଆମମାନଙ୍କୁ ଭାଗବତ ଧର୍ମ ବୁଝାଇ କୁହନ୍ତୁ; ଆମେ ତାକୁ ବୁଝିବାକୁ ଚାହୁଁଛୁ, କାହିଁକି ନା ଆମେ ଶୁଣିଛୁ -

**ଯୈଃ ପ୍ରସନ୍ନଃ ପ୍ରପନ୍ନାୟ ଦାସ୍ୟତ୍ୟାତ୍ମାନମପ୍ୟଜଃ** ॥ (୧୧.୨.୩୧)

ଏହି ଭାଗବତ ଧର୍ମ ଯେଉଁ ବ୍ୟକ୍ତି ହୃଦୟରେ ଆସିଯାଏ, ତାଙ୍କୁ ଭଗବାନ (ପ୍ରସନ୍ନ ହୋଇ) ନିଜେ ନିଜକୁ ହିଁ ଦେଇ ଦିଅନ୍ତି । ଆଉ କଣ କୁହାଯାଇପାରେ ? ଏହା ହେଉଛି ଭାଗବତ ଧର୍ମ । ଶ୍ରୀମଦ୍ ଭାଗବତରେ ପ୍ରଥମେ ଧର୍ମ ବିଷୟରେ କୁହାଯାଇଛି, ପୁଣି ସଦ୍‌ଧର୍ମ ବିଷୟରେ ବର୍ଣ୍ଣନ ହୋଇଛି, କିନ୍ତୁ ଏବେ ଭାଗବତ ଧର୍ମ ବିଷୟରେ ବର୍ଣ୍ଣନ କରାଯାଇଛି । ଏଠାରେ ବିଦେହ ରାଜା ନିମି ଗୋଟିଏ ପରେ ଗୋଟିଏ ଅନେକ ପ୍ରଶ୍ନ ପଚାରୁଛନ୍ତି । ଗୋଟିଏ -ଗୋଟିଏ ପ୍ରଶ୍ନର ଉତ୍ତର ଜଣେ ଜଣେ ଯୋଗେଶ୍ୱର ଦେଉଛନ୍ତି। ତେବେ ବିଦେହରାଜା ନିମି ପଚାରୁଛନ୍ତି ଯେ ଏହି ଭାଗବତ ଧର୍ମ କଣ, ଯାହାଦ୍ୱାରା ଆତ୍ୟନ୍ତିକ କ୍ଷେମ ପ୍ରାପ୍ତ ହୋଇଥାଏ ? ଏହା ପ୍ରଥମ ପ୍ରଶ୍ନ । ଏହାର ଉତ୍ତର ସେହି ସେହି ନବଯୋଗୀମାନଙ୍କ ମଧ୍ୟରୁ '**କବି**'ନାମକ ଯୋଗୀ ଦେଉଛନ୍ତି । କବି ଅର୍ଥାତ୍ କ୍ରାନ୍ତିଦର୍ଶୀ, ସର୍ବଜ୍ଞ ।

ଯୋଗୀଶ୍ୱର କବି କହୁଛନ୍ତି -

**ମନ୍ୟେଽକୁତଶ୍ଚିଦ୍‌ଭୟମଚ୍ୟୁତସ୍ୟ**

**ପାଦାମ୍ବୁଜୋପାସନମତ୍ର ନିତ୍ୟମ୍ ।**

**ଉଦ୍‌ବିଗ୍ନବୁଦ୍ଧେରସଦାତ୍ମଭାବାଦ୍**

**ବିଶ୍ୱାତ୍ମନା ଯତ୍ର ନିବର୍ତ୍ତତେ ଭୀଃ ॥** (୧୧.୨.୩୩)

"ମୁଁ ତ ଜାଣିଛି ଯେ, ଯିଏ ଅଚ୍ୟୁତ ପରମାତ୍ମା, ତାଙ୍କର ଚରଣ କମଳର ସେବା କରିବା ହିଁ ସବୁଠାରୁ ଶ୍ରେଷ୍ଠ ଧର୍ମ - ଭାଗବତ ଧର୍ମ ଏବଂ ଏହାଦ୍ୱାରା ଏହି ସଂସାର ସାଗରର ଭୟ ସମାପ୍ତ ହୋଇଯାଏ । ଏହାଦ୍ୱାରା ଆମର ବୁଦ୍ଧି ଯାହାକି ଅସତ୍ ବସ୍ତୁରେ ଲାଗିଥିବା କାରଣରୁ ଉଦ୍‌ବିଗ୍ନ ରହୁଛି, ତାହା ସେଠାରୁ ଅଲଗା ହୋଇ ପରମାତ୍ମାଙ୍କ ଚରଣରେ ଏକାକାର ହୋଇ ନିର୍ଭୟତା ପ୍ରାପ୍ତ ହୋଇଥାଏ । ଭଗବାନ ସ୍ୱୟଂ ନିଜକୁ ପ୍ରାପ୍ତି ନିମନ୍ତେ ଯେଉଁ ଉପାୟମାନ କରିଛନ୍ତି, ତାହା ହିଁ ଭାଗବତ ଧର୍ମ ଅଟେ। ଏବେ ମୁଁ ତାକୁ ହିଁ ତୁମକୁ ଶୁଣାଉଛି।"

**ଯାନାସ୍ଥାୟ ନରୋ ରାଜନ୍ ନ ପ୍ରମାଦ୍ୟେତ କର୍ହିଚିତ୍ ।** (୧୧.୨.୩୫)

ଏହି ଭାଗବତ ଧର୍ମ ବଡ଼ ବିଲକ୍ଷଣ ଅଟେ । ଏହି ଧର୍ମର ଆଶ୍ରୟ ନେଇଥିବା ବ୍ୟକ୍ତିର ପତନ କେବେହେଲେ ହୋଇ ନ ଥାଏ, ସେମାନଙ୍କର ଜୀବନରେ କେବେହେଲେ ପ୍ରମାଦ ହୁଏ ନାହିଁ । ଏବେ ଦେଖନ୍ତୁ ଅନ୍ୟ ଧର୍ମରେ ତଥା ଏହି ଭାଗବତ ଧର୍ମରେ ଏହା ହେଉଛି ପାର୍ଥକ୍ୟ । ଅନ୍ୟ ଧର୍ମରେ ମନୁଷ୍ୟକୁ ବହୁତ ଜାଗ୍ରତ ରହିବାକୁ ପଡ଼େ । ଯେତେବେଳେ ଦେଖିଲେ ସେତେବେଳେ ନିଜର ପ୍ରଯତ୍ନ ଦ୍ୱାରା, ପୁରୁଷାର୍ଥ ଦ୍ୱାରା ସତର୍କ ରହିବାକୁ ପଡ଼ିଥାଏ, ଯେ ମୋ ଦ୍ୱାରା ଯେପରି କିଛି ଭୁଲ ହୋଇ ନ ଯାଉ । ଭାଗବତ ଧର୍ମରେ ସବୁକିଛି ଭଗବାନଙ୍କର ଉପରେ ଛାଡ଼ି ଦିଆଯାଏ, ଯେ ଭଗବାନ ହିଁ ସବୁକିଛି ଦେଖିବେ। ସେଥିପାଇଁ କୁହାଯାଇଛି -

**ଧାବନ୍ ନିମୀଲ୍ୟ ବା ନେତ୍ରେ ନ ସ୍ଖଲେନ୍ନ ପତେଦିହ ॥**(୧୧.୨.୩୫)

ଏହି ମାର୍ଗ ଏଭଳି ମାର୍ଗ ଅଟେ, ଯେ ଏହି ପଥରେ ଅତିକ୍ରମଣ କରୁଥିବା ବ୍ୟକ୍ତି ଆଖି ଖୋଲି ଦୌଡୁଥାଉ କି ଆଖି ବନ୍ଦ କରି ଦୌଡୁ, ତଥାପି ସେ କେବେହେଲେ ପଡ଼ିଯିବାର ଭୟ ନ ଥାଏ । ଯେଉଁଭଳି ଭାବରେ କୌଣସି ବ୍ୟକ୍ତି ଯଦି ନିଜର ଆଖି

ଖୋଲି ଦୌଡୁଥାଏ, ତେବେ ପୃଥିବୀ ତାକୁ ଆଶ୍ରୟ ଦିଏ, କିନ୍ତୁ ଯଦି ସେ ଚକ୍ଷୁ ବନ୍ଦ କରି ଚାଲେ, ସେ ପଡ଼ିଯାଏ, ତେବେ କହିଲେ – ସେ କେଉଁଠି ପଡ଼ିବ ? ପୃଥିବୀ ଉପରେ ତ ସେ ପଡ଼ିବ ନା ? ଅନ୍ୟ କେଉଁଠାରେ ତ ସେ ପଡ଼ିବାର ସମ୍ଭାବନା ନାହିଁ । ସେହିଭଳି ଭାବରେ ଭଗବାନଙ୍କର ଆଶ୍ରୟ ନେଇ କେହି ଯଦି ଚାଲୁଥାଏ, ସେ ଚକ୍ଷୁବନ୍ଦ କରି ଚାଲୁ ଅଥବା ଉନ୍ମୁକ୍ତ କରି ଚାଲୁଥାଉ, ଯଦି ସେ ପଡ଼ିଯିବ ତ କେଉଁଠାରେ ପଡ଼ିବ ? ଭଗବାନଙ୍କର କୋଳରେ ତ ପଡ଼ିବ ! ସେଥିପାଇଁ ଏହି ଭାଗବତ ଧର୍ମ ବଡ଼ ବିଶେଷ ଅଟେ। କହୁଛନ୍ତି ଏହି ଭାଗବତ ଧର୍ମ କଣ ? ଆପଣ ପ୍ରଥମରୁ କହି ଆସୁଛନ୍ତି – ଭାଗବତ ଧର୍ମ ଭାଗବତ ଧର୍ମ, ଏହା କ'ଣ ? ଆମେ ତାକୁ ପାଳନ କିପରି ଭାବରେ କରିବୁ ?

ଦେଖନ୍ତୁ, ଏଠାରେ ଏହି ଶ୍ଳୋକରେ ପ୍ରଥମ ପୁରୁଷରେ (କରୋତି ଯଦ୍ ଯତ୍) କୁହାଯାଇଛି । ପ୍ରାୟଃ ଯେତେବେଳେ କେହି କୌଣସି କାର୍ଯ୍ୟ କରି ପୁଣି ଯେତେବେଳେ କହନ୍ତି ସେତେବେଳେ ଉତ୍ତମ ପୁରୁଷରେ (କରୋମି ଯଦ୍ ଯତ୍) କୁହାଯାଏ ।

**କାୟେନ ବାଚା ମନସେନ୍ଦ୍ରିୟୈର୍ବା**
**ବୁଦ୍ଧ୍ୟାଽଽତ୍ମନା ବା ନୁସୃତସ୍ୱଭାବାତ୍ ।**
**କରୋମି ଯଦ୍ ଯତ୍ ସକଳଂ ପରସ୍ମୈ**
**ନାରାୟଣାୟେତି ସମର୍ପୟେତ୍ତତ୍ ॥** (୧୧.୨.୩୬)

ଯୋଗୀଶ୍ୱର କବି କହୁଛନ୍ତି, ଯେଉଁ ମନୁଷ୍ୟ ନିଜ ଶରୀର ଦ୍ୱାରା, ବାଣୀଦ୍ୱାରା, ଇନ୍ଦ୍ରିୟମାନଙ୍କ ଦ୍ୱାରା ସ୍ୱଭାବ ଅନୁସାରେ ଯାହା କିଛି କରେ – ଚାଲିବା, ଉଠିବା, ବୁଲିବା, ଦେଖିବା, ବୋଲିବା, ଶୋଇବା, ଖାଇବା, ପିଇବା, ହସିବା, କାନ୍ଦିବା ଆଦି, ସେ ସବୁକିଛି ଭଗବାନଙ୍କୁ ଅର୍ପିତ, ଏଭଳି ମାନି କରୁ । ସେ ଯାହା-ଯାହା କର୍ମ ସବୁ କରେ ସବୁ କିଛି ଭଗବାନଙ୍କୁ ସମର୍ପିତ କରି କର୍ମ କରୁ। ଏଭଳି କର୍ମ କରିବାକୁ ଭାଗବତ ଧର୍ମ କୁହାଯାଏ। ଭଗବାନ ଶଙ୍କରାଚାର୍ଯ୍ୟଜୀ ମଧ୍ୟ ଏହିଭଳି କହିଛନ୍ତି।

**ଯଦ୍ୟତ୍କର୍ମ କରୋମି ତତ୍ତଦଖିଳଂ ଶମ୍ଭୋ ତବାରାଧନମ୍ ॥**

(ଶିବମାନସପୂଜା ୪)

**ହେ ଭଗବନ୍ ! ମୁଁ ଯେଉଁ ଯେଉଁ କର୍ମ କରେ ସେ ସମସ୍ତ ହିଁ ଆପଣଙ୍କର ପୂଜା। ଏଭଳି ଯାହାର ଭାବନା ଅଟେ, ସେହି ପୁରୁଷର ଶୋଇବା ମଧ୍ୟ ଭଗବାନଙ୍କ ନିମନ୍ତେ କାହିଁକି ନା କାଲି ସକାଳୁ ଉଠି ମୋତେ ଆପଣଙ୍କର ପୂଜା କରିବାକୁ ଅଛି ।**

ଜଣେ ଭକ୍ତଙ୍କର କଥା ଅଛି। କୌଣସି କାରଣରୁ ସେ ଜଙ୍ଗଲକୁ ଯାଇ ଥିଲେ। ସେଠାରେ ମଶାମାନେ ତାଙ୍କୁ ରାତ୍ରି ସମୟରେ ଶୋଇବାକୁ ଦେଲେ ନାହିଁ । ସେ ରାମଭକ୍ତ ଥିଲେ, ତେଣୁ ଶ୍ରୀରାମଜୀଙ୍କୁ କହିବାକୁ ଲାଗିଲେ - ଏହି ମଶାମାନଙ୍କ ଯୋଗୁଁ ମୁଁ ଶୋଇପାରୁନାହିଁ। ଏବେ ଯଦି ଶୋଇ ପାରିବି ନାହିଁ, ତେବେ ପ୍ରାତଃ କାଳରେ ଶୀଘ୍ର ଉଠି ପାରିବି ନାହିଁ । ତେଣୁ ଆପଣଙ୍କର ପୂଜା କିଏ କରିବ ? ତେବେ ଶ୍ରୀରାମଜୀଙ୍କର ଏପରି କୃପା ହୋଇଗଲା ଯେ ସମସ୍ତ ମଶାମାନେ ଚାଲିଗଲେ । ଦେଖନ୍ତୁ, ଆମ୍ଭେମାନେ ମଶାମାନଙ୍କୁ ମାରିଦେଇଥାଉ। ଯଦି କେହି କହନ୍ତି, ନିଦ ଆସୁ ନାହିଁ, ତେବେ ଭଗବାନଙ୍କର ନାମ ନେଉଥାଅ । କିନ୍ତୁ ଆମ୍ଭେମାନେ ଭଗବାନଙ୍କର ନାମ ନେଉଥିବା ବେଳେ ମଧ୍ୟ ମଶା ମାରିଥାଉ। ଯଦି କେହି କହନ୍ତି, ନିଦ ଆସୁନାହିଁ, ତେବେ ଭଗବାନଙ୍କର ନାମ ନେଉଥାଅ। କିନ୍ତୁ ଆମ୍ଭେମାନେ ଭଗବାନଙ୍କର ନାମ ନେଉଥିବା ବେଳେ ମଧ୍ୟ ମଶାମାନଙ୍କୁ ମାରୁଥାଉ। କିନ୍ତୁ ଏହି ସନ୍ଥମାନେ କିପରି ଦେଖନ୍ତୁ, ମଶାମାନଙ୍କୁ ମାରିଲେ ନାହିଁ, ତାକୁ ମଧ୍ୟ ଉଡାଇ ନ ଥିଲେ। ସେ ତ କେବଳ ଭଗବାନଙ୍କୁ କହୁଥିଲେ- ମୋତେ ଶୋଇବାକୁ ଅଛି, ତାହା ପୁଣି ଆପଣଙ୍କ ନିମନ୍ତେ । ମୁଁ ଶୋଇ ନ ପାରିଲେ ମୋର କିଛି ହେବ ନାହିଁ। କିନ୍ତୁ ଆପଣଙ୍କର ପୂଜା ହୋଇପାରିବ ନାହିଁ । ସିଧା କଥା କେବଳ ଏତିକି । ଏହା ଏକ ସତ୍ୟ ଘଟଣା । କୌଣସି ମନକଳ୍ପିତ କଥା ନୁହେଁ । ସେ ସନ୍ଥଙ୍କର ନାମ ଥିଲା ବାବା ଗଙ୍ଗାଦାସ। ଯିଏ କି ତୁଳସୀଦାସଙ୍କ ସମ୍ପ୍ରଦାୟର ଥିଲେ ।

ଏହିଭଳି ଭାବରେ ନିଜର ସମସ୍ତ କର୍ମ ଆଦି ସବୁ କିଛି **'ନାରାୟଣାୟେତି ସମର୍ପୟେତ୍ତତ୍'** ଭଗବାନଙ୍କର ଶ୍ରୀଚରଣରେ ସମର୍ପିତ କରି ଦେବାପରେ ଭଗବାନ ହିଁ ଭଗବାନ ରହିବେ, ଅନ୍ୟ କିଛି ରହିବ ନାହିଁ । ପୁଣି କହୁଛନ୍ତି - ଯଦି କେହି ନିଜେ ନିଜକୁ ମଧ୍ୟ ସମର୍ପିତ କରିଦିଏ, ତେବେ ତ ସେହି ମନୁଷ୍ୟକୁ କାହାଠାରୁ କିଛି ଭୟ ମଧ୍ୟ ରହିବ ନାହିଁ ।

**ଭୟଂ ଦ୍ୱିତୀୟାଭିଃନିବେଶତଃ ସ୍ୟା-**
**ଦୀଶାଦପେତସ୍ୟ ବିପର୍ଯ୍ୟୟୋଽସ୍ମୃତିଃ** । (୧୧.୨.୩୭)

ଦେଖନ୍ତୁ, ଆମ୍ଭମାନଙ୍କୁ ଯେଉଁ ଭୟ ହେଉଛି ତାହା **'ଦ୍ୱିତୀୟାତ୍ ବୈ ଭୟଂ ଭବତି'** ଅନ୍ୟ ପାଖରୁ ହିଁ ହୋଇଥାଏ । ଅନ୍ୟ ଜଣେ ବ୍ୟକ୍ତିର ଦର୍ଶନ ମାତ୍ରେ ଭୟ ହୋଇ ନ ଥାଏ । ତାକୁ ଅନ୍ୟ ତଥା ପରଭାବରେ ଜାଣିଲେ ହିଁ ଭୟ ହୋଇଥାଏ । ପର ରୂପରେ ଜାଣିବା, ଅନ୍ୟତାର ଦର୍ଶନ, ଭ୍ରାମକ ହୋଇଥାଏ, ମୋହର କାରଣରୁ ହିଁ

ହୋଇଥାଏ । ଯାହାକୁ ମୁଁ ପର ରୂପରେ ଜାଣୁଛି, ସେ ଯେ ମୋ ଠାରୁ ଅନ୍ୟ ତଥା ପର ନୁହନ୍ତି, ସେ ମୋର ସ୍ୱରୂପ ଅଟନ୍ତି। ଏଭଳି ଜାଣିବା ମାତ୍ରେ ମୋହ ନାଶ ହୋଇଯାଏ ଏବଂ ମୋହ ନାଶ ହୋଇଯିବା ଦ୍ୱାରା କେବେହେଲେ ଭ୍ରମ ହୁଏ ନାହିଁ ।

ଏହି ସନ୍ଦର୍ଭରେ ଏକ ପ୍ରସିଦ୍ଧ କାହାଣୀ ଅଛି, କୌଣସି ଜଣେ ରାଜାଙ୍କର ଏକ ମହଲ ଥିଲା । ତାର ଏକ କୋଠରୀ ଭିତରେ ସାମନା-ସାମନି ଅନେକ ଦର୍ପଣ ଲାଗିଥିଲା। ସେହି ଗୃହରେ ପ୍ରବେଶ କରିବା ମାତ୍ରେ ନିଜର ଅସଂଖ୍ୟ ରୂପ ଦେଖାଯାଉଥିଲା । ରାଜାଙ୍କର ଏକ କୁକୁର ଥିଲା । ଗୋଟିଏ ଦିନ ସେ ଘରକୁ ପଶି ଆସିଲା । ସେ ଦେଖିଲା ସେଠାରେ ହଜାର ହଜାର କୁକୁର ତାରି ଆଡ଼କୁ ଆସୁଛନ୍ତି । ସେ ଭୋ-ଭୋ କରି ତାଙ୍କ ଆଡ଼କୁ ଦୌଡ଼ିବାକୁ ଲାଗିଲା। ସେତେବେଳେ ସମସ୍ତ ପ୍ରତିବିମ୍ବ କୁକୁରମାନେ ତାର ଆଡ଼କୁ ଦୌଡ଼ି ଆସିବା ଦେଖାଯିବାରୁ ସେ ଡ଼ରିଗଲା । ଏବେ ଦେଖନ୍ତୁ, ସେହି କୁକୁରର ଯେଉଁ ଭୟ ତାହା କେଉଁ କାରଣରୁ ଥିଲା ? ସେଠାରେ କ'ଣ ଅନ୍ୟ କେହିଥିଲେ ? ନ ଥିଲେ । କିନ୍ତୁ **'ଦ୍ୱିତୀୟାଭିନିବେଶତଃ'** ତାଙ୍କୁ ଅନ୍ୟ ଜଣଙ୍କର – ଅନ୍ୟର **'ଅଭିନିବେଶ'** ହୋଇଯାଇଥିଲା। ଯେମିତି ସେଠି ଅନ୍ୟ କେହି ନ ଥିଲେ ସେମିତି ଏଠି ମଧ୍ୟ ଅନ୍ୟ କେହି ନାହାନ୍ତି। କିନ୍ତୁ ଆମେ ଅନ୍ୟ କେହି ଅଛି ମାନିବା ପର୍ଯ୍ୟନ୍ତ, ଡର ମଧ୍ୟ ମାଡୁଥିବ।

ଯେପରି, ରାତିରେ ଯଦି କେହି ଧିରେ ଧିରେ ଆସି ଘରେ ପଶି ଆଲମାରୀ ପାଖକୁ ଯାଇ, ତାକୁ ଖୋଲିବାର ଦେଖିଲେ ମଧ୍ୟ ଶୀଘ୍ର ଆମ ମୁହଁରୁ କଥା ବାହାରେ ନାହିଁ। ସେତେବେଳେ ଲାଗୁଥାଏ ଯେ ମୁଁ କହିବି କି ନାହିଁ। ତଥାପି ଦୀର୍ଘଶ୍ୱାସ ପୂର୍ବକ ଡ଼ରି ଡ଼ରି କହୁ – କିଏ ? ସେ ଲୋକ ବତି ଜଳାଏ । ସେତେବେଳେ ନିଶ୍ଚିନ୍ତ ହୋଇ କହିଥାଉ, ବାପା ଆପଣ? ଅନ୍ୟ କେହି ନାହାନ୍ତି । ଏବେ ଦେଖନ୍ତୁ, ଯେଉଁ ପର୍ଯ୍ୟନ୍ତ ଏପରି ଭାବୁଥିଲେ ଯେ ଅନ୍ୟ କେହି ଆସିଲା ସେ ପର୍ଯ୍ୟନ୍ତ ଡ଼ର ଲାଗୁଥିଲା । ଯେତେବେଳେ ଜଣାପଡ଼ିଗଲା ଯେ, ଇଏ ମୋର ବାପା, ଅଥବା ଇଏ ମୋର ଭାଇ, ତ ସବୁ ଡ଼ର ଭୟ ଚାଲିଗଲା। ସେତେବେଳେ ସ୍ୱୟଂ ଠାରୁ ଭିନ୍ନ ଅନ୍ୟ (ବାପା ଅଥବା ଭାଇଙ୍କୁ) ଦେଖିଲା ପରେ ସେଠାରେ ଅନ୍ୟର (ଅଭିନିବେଶ) ଭାବନା ଆଉ ରହିଲା ନାହିଁ । ଏ ତ ଅନ୍ୟ କେହି ନୁହଁନ୍ତି ଇଏ ତ ମୋର ଏତିକି ବୁଝିବା ପର୍ଯ୍ୟନ୍ତ। କହିବାର ତାତ୍ପର୍ଯ୍ୟ ହେଉଛି **ଯେତେବେଳେ 'ଅଦ୍ୱୈତ'ର ପ୍ରତିଷ୍ଠା ହୋଇଯାଏ,** ସେତେବେଳେ ଯାଇ ବ୍ୟକ୍ତି ନିର୍ଭୟ ହୋଇଥାଏ ।

ଏଠାରେ ଯୋଗେଶ୍ୱର କବି କହୁଛନ୍ତି- ଅବିଦ୍ୟାର କାରଣରୁ ଆମକୁ ଏହି ସମସ୍ତ ବସ୍ତୁ ଅନ୍ୟ ରୂପରେ ଦେଖାଯାଉଛି। କିନ୍ତୁ **'ଭକ୍ତୈକୟେଶଂ ଗୁରୁଦେବତାତ୍ମା'** ଯେତେବେଳେ କେହି ଗୁରୁଙ୍କୁ ଈଶ୍ୱର ମାନନ୍ତି ଏବଂ ଏଭଳି ମାନ୍ୟତା ପୂର୍ବକ ଯେତେବେଳେ ସେ ଈଶ୍ୱରଙ୍କ ପାଖରେ ଅନନ୍ୟ ଭକ୍ତି କରେ, ବେଦାନ୍ତ ବିଚାର କରେ, ସେତେବେଳେ ତାର ହୃଦୟରୁ ଅବିଦ୍ୟା ନିବୃତ୍ତ ହୋଇଯାଏ । ଅବିଦ୍ୟା ନିବୃତ୍ତ ହୋଇଗଲା ପରେ ସେ ଜାଣିଯାଏ ଯେ ସେ ଯାହାକୁ ଅନ୍ୟ ବୋଲି ମାନୁଥିଲା, ସେ ସବୁ ଅନ୍ୟ ନୁହନ୍ତି । ଏଠାରେ ତ ଅନ୍ୟ ବୋଲି କିଛି ନାହିଁ । ମୁଁ ହିଁ ମୁଁ ଅଟେ । ସମସ୍ତ ରୂପରେ ଆତ୍ମା ସ୍ୱୟଂ ବିଦ୍ୟମାନ।

**ଅବିଦ୍ୟମାନୋଽପ୍ୟବଭାତି ହି ଦ୍ୱୟୋ-**
**ର୍ଧ୍ୟାତୁର୍ଧିୟା ସ୍ୱପ୍ନମନୋରଥୌ ଯଥା ॥** (୧୧.୨.୩୮)

ବାସ୍ତବରେ ତତ୍ତ୍ୱ ତ ଗୋଟିଏ, କିନ୍ତୁ ଯିଏ ଦେଖିବା ଲୋକ, ସେ ନିଜ ଭାବନା ଯୋଗୁଁ ଦୁଇ ଅବା ଅନେକ ରୂପ ଦେଖିବାକୁ ଲାଗେ । ଯେପରି ସ୍ୱପ୍ନରେ କେବଳ ମନ ହିଁ ଥାଏ, ତଥାପି ସେ ନିଜର କଳ୍ପନା ଦ୍ୱାରା ଜାଗ୍ରତ ଅବସ୍ଥାର ମନୋରଥ ଯୋଗୁଁ କେଜାଣି କେତେ-କେତେ କ'ଣ କ'ଣ ଦେଖିବାକୁ ଲାଗିଥାଏ; ଏକ ସ୍ୱପ୍ନ ପ୍ରପଞ୍ଚ ନିର୍ମାଣ କରି ଦେଇଥାଏ । କହିବାର ଅର୍ଥ ହେଲା ଯେ, ଏହି ମନ ହିଁ ଦ୍ୱୈତ ପ୍ରପଞ୍ଚ ନିର୍ମାଣ କରେ। ଯଦି ମନକୁ ଆତ୍ମାରେ ନିରୋଧ କରି ଦିଆଯାଏ, ସେତେବେଳେ ଦ୍ୱୈତ ରହେ ନାହିଁ । ମାଣ୍ଡୁକ୍ୟ କାରିକାକାର ଲେଖିଛନ୍ତି -

**ମନସୋ ହ୍ୟମନୀଭାବେ ଦ୍ୱୈତଂ ନୈବୋପଲଭ୍ୟତେ ।** (ଅ.ପ୍ର.୧)

ଯେଉଁଠି ମନ ଅମନ ହୋଇଯାଏ ସେଠାରେ ଦ୍ୱୈତ ରହେ ନାହିଁ । ଯେତେବେଳେ ମନ ଖଟ୍-ପଟ୍ କରେ ସେତେବେଳେ ଦ୍ୱୈତ ଦେଖାଯାଏ । ଯେତେବେଳେ ମନ ଶାନ୍ତ ହୋଇଯାଏ, ସେତେବେଳେ ଦ୍ୱୈତ ରହେ ନାହିଁ। ଏହିସବୁ ଦ୍ୱୈତ ପ୍ରପଞ୍ଚ ମନର ହିଁ କେବଳ ସ୍ଫୁରଣ ମାତ୍ର । ମନ ଯେତେବେଳେ ପୂର୍ଣ୍ଣ ରୂପରେ ଶାନ୍ତ ହୋଇଯାଏ, ସେତେବେଳେ ସାଧକ ପରମାତ୍ମାଙ୍କୁ ଅନୁଭବ କରି ନିଏ । ଯଦି କାହାର ମନ ସରଳତାରେ ସଂସାର ଚିନ୍ତନକୁ ଛାଡ଼ି ପାରୁନାହିଁ, ଅଥବା ମନକୁ ଶାନ୍ତ କରାଇବା କଠିନ ହେଉଛି; ତେବେ କହୁଛନ୍ତି :-

**ଶୃଣ୍ୱନ୍ ସୁଭଦ୍ରାଣି ରଥାଙ୍ଗପାଣେ-**

**ର୍ଜନ୍ମାନି କର୍ମାଣି ଚ ଯାନି ଲୋକେ ।**

**ଗୀତାନି ନାମାନି ତଦର୍ଥକାନି**

**ଗାୟନ୍ ବିଲଜ୍ଜୋ ବିଚରେଦସଙ୍ଗଃ ॥** (୧୧.୨.୩୯)

"ସେ ଭଗବାନଙ୍କର ସୁନ୍ଦର ପାବନ ଯଶ ଶ୍ରବଣ କରୁ । ତାଙ୍କର ଗୁଣ ତଥା କର୍ମର ସ୍ମରଣ ପ୍ରଦାନ କରାଉଥିବା ତାଙ୍କର ଅନେକ ନାମ, ଲଜ୍ଜ-ସଂକୋଚ ତ୍ୟାଗ କରି ଗାନ କରିବା ଆବଶ୍ୟକ । ଦେଖନ୍ତୁ, ସମାଜରେ, ଏଭଳି ଅନେକ ଲୋକ ଅଛନ୍ତି ଯେଉଁମାନେ କି ଭଗବାନଙ୍କର ନାମ ନେବା ନିମନ୍ତେ ସଂକୋଚ କରନ୍ତି । କେହି କେହି ଜପ-ତପ କରିବାବେଳେ ମଧ୍ୟ ଅନ୍ୟଠାରୁ ଲୁଚି ଛପି କରନ୍ତି । କେହି କେହି ଲୋକମାନଙ୍କୁ ମନ୍ଦିର ଯିବା ପାଇଁ ମଧ୍ୟ ଲଜ୍ଜା ଲାଗେ । ନାଇଟ କ୍ଲବ ଯିବା ନିମନ୍ତେ ଲଜ୍ଜା ଆସେ ନାହିଁ, ମନ୍ଦିର ଗଲାବେଳେ ଲଜ୍ଜା ଆସେ; ପୂଜା କରିବା ବେଳେ ଲଜ୍ଜା ଆସେ । ଏଭଳି ଲୋକମାନେ ମଧ୍ୟ ଅଛନ୍ତି । ଏଠାରେ କହୁଛନ୍ତି ଯେ, ମନୁଷ୍ୟକୁ ଭାଗବତ ଧର୍ମ ପାଳନ କରିବା ସହିତ ଲଜ୍ଜା ତ୍ୟାଗ ପୂର୍ବକ ଭଗବାନଙ୍କର ନାମ କୀର୍ତ୍ତନ କରିବା ସହିତ ଅସଙ୍ଗ ହୋଇ ବିଚରଣ କରିବା ଉଚିତ୍ ।" ଏହାର ପରିଣାମ ସ୍ୱରୂପ -

**ଏବଂବ୍ରତଃ ସ୍ୱପ୍ରିୟନାମକୀର୍ତ୍ୟା**

**ଜାତାନୁରାଗୋ ଦ୍ରୁତଚିତ୍ତ ଉଚ୍ଚୈଃ ।**

**ହସତ୍ୟଥୋ ରୋଦିତି ରୌତି ଗାୟ-**

**ତ୍ୟୁନ୍ମାଦବନ୍ନୃତ୍ୟତି ଲୋକବାହ୍ୟଃ ॥** (୧୧.୨.୪୦)

ଯେତେବେଳେ ତାର ମନରେ ଭଗବାନଙ୍କ ପ୍ରତି ଅନୁରାଗ ଉତ୍ପନ୍ନ ହୁଏ, ସେତେବେଳେ ସେ ସମସ୍ତ ଲୌକିକ ନିୟମମାନଙ୍କର ଉର୍ଦ୍ଧ୍ୱକୁ ଚାଲିଯାଏ । ପୁଣି କେତେବେଳେ ଯଦି ତାର ନିର୍ବିକଳ୍ପରେ ସ୍ଥିତି ହୋଇଯାଏ ଏବଂ ସେହି ସ୍ଥିତିଠାରୁ ସେ ଯେତେବେଳେ ବାହାରକୁ ଆସେ, ତଥା ତାର ଚିତ୍ତର ଯେତେବେଳେ ଉତ୍‌ଥାନ ହୋଇଥାଏ, ସେତେବେଳେ ତାକୁ ଭଗବାନଙ୍କର ଯେଉଁ ନାମ ମନେ ପଡ଼େ ତାକୁ ସେ ଉଚ୍ଚସ୍ୱରରେ ଗାନ କରିବାକୁ ଲାଗେ । ସେ କେତେବେଳେ ହସିବାକୁ ଲାଗେ ତ, କେତେବେଳେ କାନ୍ଦିବାକୁ ଲାଗେ । କେତେବେଳେ ଗାଇବାକୁ ଲାଗେ ତ କେତେବେଳେ

ମଦୋନ୍ମତ୍ତ ପରି ଝୁମିବାକୁ ଲାଗେ, କେତେବେଳେ ନୃତ୍ୟ କରିବାକୁ ଲାଗେ । ଲୋକମାନେ ତାକୁ କେହି ବୁଝିପାରନ୍ତି ନାହିଁ । କେହି ତାକୁ ପାଗଳ ବୋଲି କୁହନ୍ତି ତ, କେହି ମୂର୍ଖ ବୋଲି କହନ୍ତି । କିନ୍ତୁ ସେ କହେ ଯିଏ ଯାହା ବୁଝିବାର କଥା ବୁଝ ମୋତେ କାହାଠାରୁ କିଛି ନେବାର ନାହିଁ କି କାହାକୁ କିଛି ଦେବାର ନାହିଁ । ତୁଳସୀଦାସଜୀଙ୍କୁ ଯେତେବେଳେ ଲୋକମାନେ କିଛି କହୁଥିଲେ, ସେତେବେଳେ ସେ କହୁଥିଲେ- ତୁମେ ଯାହାଇଚ୍ଛା କୁହ, ମୋତେ କାହାର ଝିଅ ସହିତ ବିବାହ କରିବାକୁ ଅଛି କି ? ନିଜର ଗୋଟିଏ ପଦରେ ସେ ଲେଖିଛନ୍ତି । ତୁଳସୀଦାସଜୀ ବଡ଼ ନମ୍ର ସ୍ୱଭାବର ଥିଲେ । ଭଗବାନଙ୍କ ସମ୍ମୁଖରେ ବଡ଼ ବିନୟଶୀଳ ଥିଲେ ।

ଏପରି ସ୍ଥିତିରେ ପହଞ୍ଚିଗଲା ପରେ ସେହି ଭକ୍ତର ବୁଦ୍ଧି ଭିତରେ ସଗୁଣ ଏବଂ ନିର୍ଗୁଣର ଭେଦ ରହେ ନାହିଁ । ଲୋକମାନେ ନିଜେ ନିଜକୁ ବଡ଼ ଭାବନ୍ତି ଏବଂ ପୁଣି ସଗୁଣ-ନିର୍ଗୁଣକୁ ନେଇ ବିବାଦ ମଧ୍ୟ କରନ୍ତି । କେହି କେହି କହନ୍ତି, ଆମେ ତ ନିର୍ଗୁଣବାଦୀ ଅଟୁ । ଆରେ ! ତେବେ ସଗୁଣ କ'ଣ ? ଅଦ୍ୱୈତ ବୋଧ ପରେ ସଗୁଣ-ନିର୍ଗୁଣର ଭେଦ ରହେ ନାହିଁ, କାରଣ ସେତେବେଳେ ପରମାତ୍ମା ଏକ, ଏହା ବୋଧ ହୋଇଯାଇଥାଏ । ଜ୍ଞାନେଶ୍ୱର ମହାରାଜ ଲେଖିଛନ୍ତି- **'ତୁଝ ସଗୁଣ ହ୍ମଣୋ କି ନିର୍ଗୁଣରେ'** ଭଗବାନ, ମୁଁ ତୁମକୁ ସଗୁଣ କହିବି କି ନିର୍ଗୁଣ କହିବି ? **'ସଗୁଣ ନିର୍ଗୁଣ ଦୋହ୍ନୀ ଏକୁ ଗୋବିନ୍ଦରେ'** ସଗୁଣ-ନିର୍ଗୁଣ ଦୁହେଁ ହିଁ ହେଉଛନ୍ତି ଏକ ଗୋବିନ୍ଦ - ପରମାତ୍ମା ଅଟନ୍ତି। ସେହି ଏକ ଅଦ୍ୱିତୀୟ ପରମାତ୍ମାଙ୍କୁ କେହି ସଗୁଣ କହନ୍ତି ତ କେହି ନିର୍ଗୁଣ କହନ୍ତି । ଭାବଗତ ଧର୍ମର ଆଚରଣ କରୁଥିବା ପୁରୁଷ ଏପରି ହୋଇ ଯାଏ । ଭାଗବତ ଧର୍ମକୁ ପାଳନ କରି ଅଥବା ପ୍ରତ୍ୟେକ କର୍ମକୁ ଈଶ୍ୱରାର୍ପଣ ବୁଦ୍ଧିଦ୍ୱାରା କର୍ମ କରି ତାର ମନ ଶୁଦ୍ଧ ହୋଇଯାଇଥାଏ ଏବଂ ସେତେବେଳେ ସେ ସଦ୍‌ଗୁରୁଙ୍କ ଠାରୁ ଆତ୍ମଜ୍ଞାନ ପ୍ରାପ୍ତ କରିଥାଏ। ଏହା ଶୁଣି ମନରେ ପ୍ରଶ୍ନ ଉଠେ ଯେ, ତାପରେ ସେ କ'ଣ କରେ ? କିପରି ରହେ ?

**ଖଂ ବାୟୁମଗ୍ନିଂ ସଲିଲଂ ମହିଂ ଚ**
**ଜ୍ୟୋତଂଷି ସତ୍ତ୍ୱାନି ଦିଶୋ ଦ୍ରୁମାଦୀନ୍ ।**
**ସରିତ୍ ସମୁଦ୍ରାଂଶ୍ଚ ହରେଃ ଶରୀରଂ**
**ୟତ୍ କିଞ୍ଚ ଭୂତଂ ପ୍ରଣମେଦନନ୍ୟଃ ॥** (୧୧.୨.୪୧)

ସେ ସମସ୍ତ ସୃଷ୍ଟିକୁ ଭଗବାନମୟ ଦେଖେ । ସେହି କାରଣରୁ ସେ ଯାହାକୁ ଦେଖେ ତାକୁ ନମସ୍କାର କରୁଛି । ଲୋକମାନେ ଭାବନ୍ତି ଏ କାହାକୁ ନମସ୍କାର କରୁଛି।

ସ୍ତମ୍ଭ ଆଦିକୁ ନମସ୍କାର କରୁଛି ? ପଶୁ ଆଦିକୁ ନମସ୍କାର କରୁଛି ? ସେତେବେଳେ ସେ ତ ପରମାତ୍ମାଙ୍କୁ ହିଁ ନମସ୍କାର କରୁଥାଏ । ଶ୍ରୀ ରାମକୃଷ୍ଣ ପରମହଂସଜୀ ମା' କାଳୀଙ୍କୁ ଆରତୀ କରୁ କରୁ ସ୍ୱୟଂ ନିଜର ଆରତୀ କରିବାକୁ ଲାଗୁଥିଲେ । ଲୋକମାନେ କହନ୍ତି - ଆରେ ! ଦେବୀଙ୍କର ଆରତୀ କରୁଛ କି ନିଜର ? ସେ କହୁଥିଲେ - ମୋତେ ଯେଉଁଠାରେ ଦେବୀଙ୍କର ଦର୍ଶନ ହେଉଛି ମୁଁ ସେହିଠାରେ ଆରତୀ କରୁଛି । ତେବେ ସେ ଏହିଭଳି ହୋଇଯାଏ । ତାଙ୍କୁ ସର୍ବତ୍ର-ସର୍ବଦା ସବୁଠାରେ ଭଗବାନଙ୍କର ଦର୍ଶନ ହୋଇଥାଏ ।

**ଭକ୍ତିଃ ପରେଶାନୁଭବୋ ବିରକ୍ତି -**
**ରନ୍ୟତ୍ର ଚୈଷ ତ୍ରିକ ଏକକାଲଃ ।**
**ପ୍ରପଦ୍ୟମାନସ୍ୟ ୟଥାଶ୍ନତଃ ସ୍ୟୁ -**
**ସ୍ତୁଷ୍ଟିଃ ପୁଷ୍ଟିଃ କ୍ଷୁଦପାୟୋଽନୁଧାସମ୍ ॥** (୧୧.୨.୪୨)

ଏହାପରେ ଭଗବାନଙ୍କର ଭକ୍ତି ବିଷୟରେ ଏକ ସୁନ୍ଦର କଥା କୁହାଯାଇଛି। କହୁଛନ୍ତି – ଯେଉଁଭଳି ଭାବରେ ଭୋକ ଲାଗିଲେ ଯେତେବେଳେ ଆମ୍ଭେମାନେ ଭୋଜନ କରିବାକୁ ବସିଥାଉ, ସେତେବେଳେ ମୁହଁରେ ଗ୍ରାସ ଗ୍ରହଣ କରିବା ମାତ୍ରେଣ ତିନୋଟି କାର୍ଯ୍ୟ ଏକାଠି ହୋଇଥାଏ – **'ତୁଷ୍ଟିଃ ପୁଷ୍ଟିଃ କ୍ଷୁଦପାୟୋଽନୁଘାସମ୍'** । ଗୋଟିଏ ହେଉଛି 'ତୁଷ୍ଟି' ଯେତେବେଳେ ଭୋକ ହେଉଥାଏ, ସେତେବେଳେ ଗ୍ରାସ ଦେବା ମାତ୍ରକେ ବଡ଼ ସନ୍ତୋଷ ହୋଇଥାଏ। ଦ୍ୱିତୀୟ ହେଉଛି ପୁଷ୍ଟି – କିଛି ଅନ୍ନ ମୁହଁରେ ପ୍ରବେଶ ମାତ୍ରେଣ ନିଜ ଭିତରେ 'ଶକ୍ତି ସଂଗ୍ରହର ଅନୁଭବ' ହେବାକୁ ଲାଗେ ଏବଂ ତୃତୀୟ ହେଉଛି 'କ୍ଷୁଧା ନିବୃତ୍ତି', ଏହି ତିନି ପ୍ରକାର କାର୍ଯ୍ୟ ଏକ ସାଙ୍ଗରେ ସମ୍ପନ୍ନ ହୋଇଥାଏ ।

ଠିକ୍ ସେହିଭଳି ଭାବରେ ଜୀବନରେ ଯେତେବେଳେ ଭଗବାନଙ୍କର ଭକ୍ତି ଆସେ, ସେତେବେଳେ ଭଗବାନଙ୍କର ଜ୍ଞାନରୂପୀ ଅନୁଭବ ତଥା ବିଷୟଠାରୁ ବିରକ୍ତି ଏହା ଏକ ସାଙ୍ଗରେ ହେବାକୁ ଲାଗେ । ଭଗବାନଙ୍କର ଭକ୍ତି ସହିତ ବିରକ୍ତି ଏହି ଦୁହେଁ ଆସିଯାଆନ୍ତି, ଏବଂ ତଦ୍ୱାରା ପରମାତ୍ମାଭୂତି ହୋଇଯାଏ । ଭକ୍ତି, ବିରକ୍ତି ଏବଂ ପରମାତ୍ମା ପ୍ରାପ୍ତି ଏହି ତିନି ସ୍ଥିତି ଏକ ସଙ୍ଗରେ ପ୍ରାପ୍ତି ହୁଅନ୍ତି। (ଯେଉଁଭଳି ଭାବରେ ଭୋଜନ ପ୍ରାରମ୍ଭ କରିବା ମାତ୍ରେଣ ତୁଷ୍ଟି, ପୁଷ୍ଟି ଏବଂ କ୍ଷୁଧା ନିବୃତ୍ତି ତୁରନ୍ତ ହୋଇଯାଏ।)

**ଇତ୍ୟଚ୍ୟୁତାଙ୍ଘ୍ରିଂ ଭଜତୋଽନୁବୃତ୍ତ୍ୟା**
**ଭକ୍ତିର୍ବିରକ୍ତିର୍ଭଗବତ୍ପ୍ରବୋଧଃ ।**
**ଭବନ୍ତି ବୈ ଭାଗବତସ୍ୟ ରାଜଂ-**
**ସ୍ତତଃ ପରାଂ ଶାନ୍ତିମୁପୈତି ସାକ୍ଷାତ୍ ॥ (୧୧.୨.୪୩)**

ପୁଣି ଯେତେବେଳେ ଏହି ତିନି ସ୍ଥିତିରେ ପୂର୍ଣ୍ଣ ନିଷ୍ଠା ହୋଇଯାଏ; ସେତେବେଳେ ସେହି ଭାଗବତଙ୍କର ପୂର୍ଣ୍ଣ ଜୀବନ ଭଗବତ୍ କେନ୍ଦ୍ରିତ ହୋଇଯାଏ ଏବଂ ତାକୁ ପରମ ଶାନ୍ତି ପ୍ରାପ୍ତି ହୋଇ ଯାଏ ।

ଦେଖନ୍ତୁ, ପ୍ରାୟ ଲୋକମାନେ ସାଧନାର ଅର୍ଥ କ'ଣ ବୁଝନ୍ତି ? ଏହା ଯେ - ନିତ୍ୟ ପ୍ରାତଃ ସମୟରୁ ଉଠି ପାଞ୍ଚ-ଦଶ ମିନିଟ ଭଗବାନଙ୍କର ନାମ ନେବା, ପୂଜା କରିବା, ଭକ୍ତି ଅଥବା ସାଧନା ହୋଇଗଲା। ପୁଣି ଅବଶିଷ୍ଟ ସମୟ ସେମାନେ ଅନ୍ୟ ଲୌକିକ କାର୍ଯ୍ୟରେ ଲାଗି ଯାଆନ୍ତି। ଏଠାରେ କହୁଛନ୍ତି - ସେ ସତ୍‌କର୍ମ ହେଉ, ଯେପରି ଜପ, ତପ, ପୂଜା, ଧ୍ୟାନ, ଭଜନ, ଦାନ, ପୁଣ୍ୟ ଆଦି ଅଥବା ଅନ୍ୟ କୌଣସି ଲୌକିକ କର୍ମ ହେଉ - ଯେପରି ଅଫିସ ଯିବା, ପଢ଼ିବା - ପଢ଼େଇବା, ବ୍ୟବସାୟ ଆଦି କରିବା ଯାହା କିଛି ହେଉନା କାହିଁକି ସେ ସବୁକିଛି ଭଗବାନଙ୍କର କାମ, ଏହିଭଳି ବିଚାର କରିବା ହିଁ ପ୍ରକୃତ ସାଧନା। ଲୋକମାନେ ଏହି ତତ୍ତ୍ୱକୁ ବୁଝି ପାରନ୍ତି ନାହିଁ । କିଛି ଲୋକ ପାଞ୍ଚ-ଦଶ ମିନିଟ କିଛି କରିବାକୁ ହିଁ ଭକ୍ତି ଅଥବା ସାଧନା ବୁଝି ଥାଆନ୍ତି । ସେଥିପାଇଁ ସେମାନଙ୍କର ଜୀବନରେ ସଦା ସର୍ବଦା ଦ୍ୱନ୍ଦ ଲାଗି ରହିଥାଏ । ସେମାନଙ୍କୁ ସାଧନା କରିବା ନିମନ୍ତେ ସମୟ ମିଳି ନ ଥାଏ । କହନ୍ତି - ସ୍ୱାମୀଜୀ ଘରର ଜଞ୍ଜାଳ ସବୁବେଳେ ଲାଗି ରହୁଛି । ଆରେ ! ଟିକିଏ ଏହିଭଳି କର୍ମ କର, ପ୍ରତ୍ୟେକ କର୍ମକୁ ଭଗବାନଙ୍କର ବୋଲି ଭାବ ତଥା ଭଗବାନଙ୍କର ପ୍ରତି ନିମନ୍ତେ କର୍ମ କର, ପୁଣି ଦେଖ ଯେ ଭକ୍ତି, ବିରକ୍ତି ଏବଂ ଅନୁଭୂତି, ଏହି ତିନି ସ୍ଥିତି ଏକା ସହିତ କିଭଳି ଭାବରେ ପ୍ରାପ୍ତି ହେଉଛି । ଏହିସବୁ ପ୍ରସଙ୍ଗ ଶୁଣି ରାଜା ନିମି ପ୍ରସନ୍ନ ହୋଇଗଲେ।

## ଦ୍ୱିତୀୟ ପ୍ରଶ୍ନ - ଭକ୍ତର ଲକ୍ଷଣ

**ଅଥ ଭାଗବତଂ ବ୍ରୂତ ଯଦ୍ଧର୍ମୋ ଯାଦୃଶୋ ନୃଣାମ୍ ।**

**ଯଥା ଚରତି ଯଦ୍ ବ୍ରୂତେ ଯୈର୍ଲିଙ୍ଗୈର୍ଭଗବତ୍ ପ୍ରିୟଃ ॥** (୧୧.୨.୪୪)

ସେ ପୁଣି ଦ୍ୱିତୀୟ ପ୍ରଶ୍ନ ପଚାରୁଛନ୍ତି - "ଭଗବାନ, ଆପଣ ଏବେ ଭାଗବତ ଧର୍ମ କହିଲେ । ସାଧନା ବିଷୟରେ ମଧ୍ୟ କହିଲେ । କୃପା କରି ଏବେ କୁହନ୍ତୁ ଯେ, ଯିଏ ଭଗବାନଙ୍କର ଭକ୍ତ ହୋଇଗଲାଣି, ଯାହାକୁ ଭାଗବତ ବୋଲି କୁହାଯାଏ, ଯିଏ କି ପରମ ଭାଗବତ, ତାର ଲକ୍ଷଣ କ'ଣ ? ତାର ଧର୍ମ କ'ଣ? ତାର ସ୍ୱଭାବ, ତାର ଚାଲିଚଳନ, ତାର ବ୍ୟବହାର କିପରି ହୋଇଥାଏ ? କାହିଁକି ନା ଭକ୍ତ ମଧ୍ୟ ଅନେକ ପ୍ରକାରର ଦେଖାଯାଆନ୍ତି । ସମସ୍ତେ ଭଗବାନଙ୍କୁ ପ୍ରେମ କରୁଥାଆନ୍ତୁ ନା କାହିଁକି, ତଥାପି ସେମାନଙ୍କର ଭିତରେ ଭେଦ ଦେଖାଯାଇଥାଏ । ସେମାନେ ସମସ୍ତେ ଗୋଟିଏ ଶ୍ରେଣୀର, ଏହି ଭଳି ତ ଦେଖାଯାଏ ନାହିଁ । ଏଣୁ ଆପଣ କୃପା କରି ମୋତେ କୁହନ୍ତୁ ଯେ ସର୍ବଶ୍ରେଷ୍ଠ ଭକ୍ତ କିଏ? ତାର ଲକ୍ଷଣ କ'ଣ ? ଏହି ପ୍ରଶ୍ନର ଉତ୍ତର ଦେବାକୁ ଯାଇ **'ହରି'** ନାମକ ଯୋଗୀ ତାଙ୍କୁ ଉତ୍ତମ ଭକ୍ତ, ମଧ୍ୟମ ଭକ୍ତ ତଥା ସାମାନ୍ୟ ଭକ୍ତର ଲକ୍ଷଣ ବର୍ଣ୍ଣନ କରୁଛନ୍ତି । ଗ୍ରନ୍ଥର ପ୍ରାରମ୍ଭରୁ ହିଁ ଆମ୍ଭେମାନେ ଦେଖିସାରିଛନ୍ତି ଯେ **'ଭାଗବତ'** କାହାକୁ କହନ୍ତି । ଯିଏ ଭଗବାନଙ୍କର ଭକ୍ତ ତାକୁ ଭାଗବତ ବୋଲି କୁହାଯାଏ। ଭଗବତ୍ ପ୍ରାପ୍ତିର ଯେଉଁ **ସାଧନ**, ତାକୁ ମଧ୍ୟ ଭାଗବତ କହନ୍ତି ଏବଂ ଯାହା ଭଗବାନଙ୍କର **ସ୍ୱରୂପ** ସେ ତ ଭାଗବତ ନିଶ୍ଚୟ, ତେବେ ସ୍ୱୟଂ ଭାଗବତ ଅଟନ୍ତି, ଭକ୍ତ ଭାଗବତ ଏବଂ ଭଗବତ୍ ପ୍ରାପ୍ତିର ସାଧନ ମଧ୍ୟ ଭାଗବତ ଅଟେ। ଏହି ରୀତିରେ ମଧ୍ୟ ସବୁ କିଛି ଅଦ୍ୱୈତ ଅଟେ ।

ଦେଖନ୍ତୁ, ଏଠାରେ ଯୋଗେଶ୍ୱର ହରି ବିଦେହ ରାଜା ନିମିଙ୍କର ଦ୍ୱିତୀୟ ପ୍ରଶ୍ନର ସିଧା, ସିଧା ଉତ୍ତର ଦେଲେ । ପ୍ରଥମେ ଉତ୍ତମ ଭକ୍ତ, ପୁଣି ମଧ୍ୟମ ଭକ୍ତ ଏବଂ ଶେଷରେ ସାମାନ୍ୟ ଭକ୍ତ କିଭଳି ହେବା ଉଚିତ ତାହା ବର୍ଣ୍ଣନ କରାଯାଇଛି। ଉତ୍ତମ ଭକ୍ତର ଲକ୍ଷଣ ଅଧିକ ବିସ୍ତାରପୂର୍ବକ ବର୍ଣ୍ଣନ କରାଯାଇଛି ।

ଏହି ସନ୍ଦର୍ଭରେ ସମସ୍ତ ଭକ୍ତମାନଙ୍କୁ ଧ୍ୟାନ ଦେବାର କଥା ଏହି କି ଯେ, ଏହି ଲକ୍ଷଣ ସେଥିପାଇଁ ବର୍ଣ୍ଣନ କରାଯାଇ ନାହିଁ ଯେ ଆମେ ଅନ୍ୟକୁ ପରୀକ୍ଷଣ କରିବା ଅଥବା ଅନ୍ୟକୁ ପ୍ରମାଣ ପତ୍ର ଦେବା ଯେ, ଇଏ ହେଉଛନ୍ତି ସାମାନ୍ୟ ଭକ୍ତ, ଆମେ ଇଏ ମଧ୍ୟମ

ଭକ୍ତ ଏବଂ ଇଏ ଉତ୍ତମ ଭକ୍ତ। ଅନ୍ୟକୁ ଏଭଳି ପ୍ରମାଣ ପତ୍ର ଦେଉଥିବା ବ୍ୟକ୍ତି ସ୍ୱୟଂ ଅଧମ ଭକ୍ତ ହୋଇଥିବ । ସେଥିପାଇଁ ଏଭଳି କରିବା ଉଚିତ୍ ନୁହେଁ । ଏଠାରେ ବର୍ଣ୍ଣିତ ଭକ୍ତର ଲକ୍ଷଣ ଜାଣି ନିଜେ ନିଜକୁ ସାମାନ୍ୟ ଭକ୍ତଠାରୁ ମଧ୍ୟମ ଶ୍ରେଣୀର ଏବଂ ପୁଣି ମଧ୍ୟମଠାରୁ ଉତ୍ତମ ଶ୍ରେଣୀର ଭକ୍ତ ହେବା ନିମନ୍ତେ ସତତ ପ୍ରୟାସ କରିବା ଆବଶ୍ୟକ ।

ଏବେ ଯୋଗୀଶ୍ୱର ହରି କହୁଛନ୍ତି -

**ସର୍ବଭୂତେଷୁ ୟଃ ପଶ୍ୟେଦ୍ ଭଗବତ୍ ଭାବମାତ୍ମନଃ ।**

**ଭୂତାନି ଭଗବତ୍ୟାତ୍ମନ୍ୟେଷ ଭାଗବତୋତ୍ତମଃ ॥** (୧୧.୨.୪୫)

'ସର୍ବଭୂତେଷୁ ୟଃ ପଶ୍ୟେଦ୍ ଭଗବତ୍ ଭାବମାତ୍ମନଃ'- ଯିଏ ସ୍ୱୟଂ ନିଜର ଆତ୍ମାକୁ ଭଗବତ୍ ରୂପରେ ଚିହ୍ନି ସାରିଛି, ଅର୍ଥାତ୍ ସେ ହିଁ ସମସ୍ତ ଭୂତ ସମୁଦାୟର- ସମସ୍ତ ପ୍ରାଣୀମାନଙ୍କର ସ୍ୱରୂପ ଅଟେ ଏପରି ଜାଣିଗଲାଣି, ତତ୍ ସହିତ ସେ ସମସ୍ତ ଭୂତ (ପ୍ରାଣୀ) ଆତ୍ମରୂପ ଭଗବାନଙ୍କଠାରେ ହିଁ ବିଦ୍ୟମାନ । ଏପରି ଯିଏ ଜାଣିଗଲାଣି, ସେ ହିଁ ସବୁଠାରୁ ଶ୍ରେଷ୍ଠ ଭକ୍ତ, **'ଉତ୍ତମ ଭାଗବତ'** ଅଟେ।

ଦେଖନ୍ତୁ, ଏହା ତ ଉପନିଷଦ୍ ଅଥବା ଗୀତାରେ ବର୍ଣ୍ଣିତ କରାଯାଇଛି । ଶ୍ରୀମଦ୍ ଭଗବତ୍ ଗୀତାରେ କୁହାଯାଇଛି -

**ସର୍ବଭୂତସ୍ଥମାତ୍ମାନଂ ସର୍ବଭୂତାନି ଚାତ୍ମନି ।** (ଭଗବତ୍ ଗୀତା ୬.୨୯)

ଯିଏ ସମସ୍ତ ଭୂତମାନଙ୍କରେ ଆତ୍ମାକୁ ଏବଂ ଆତ୍ମାରେ ସମସ୍ତ ଭୂତକୁ ଦଖେ, ସେ ସବୁଠାରୁ ଶ୍ରେଷ୍ଠ ଯୋଗ ଯୁକ୍ତାତ୍ମା। ସେଥିପାଇଁ ତୁଳସୀଦାସଜୀ କହୁଛନ୍ତି -

**ସୀୟରାମମୟ ସବ ଜଗ ଜାନି ।**

**କରଉଁ ପ୍ରନାମ ଜୋରି ଜୁଗ ପାନି ॥**

(ଶ୍ରୀରାମଚରିତମାନସ ୧.୭.୨)

ସମସ୍ତ ଜଗତକୁ ସୀତା-ରାସମୟ ରୂପେ ଦେଖି ମୁଁ ତାଙ୍କୁ ପ୍ରଣାମ କରୁଛି। ଏହା ଉତ୍ତମ ଭକ୍ତର ଲକ୍ଷଣ ଅଟେ। ସେ କୁହେ ନାହିଁ ଯେ ଇଏ ପଶୁ, ଇଏ ଗଛ, ଇଏ ଜୀବ, ଇଏ ଜନ୍ତୁ ଆଦି। ସେ ସମସ୍ତଙ୍କୁ ଭଗବଦ୍‌ଭାବରେ ଦେଖେ। ସେ ନିଜ ଏବଂ ଜଗତ ମଧ୍ୟରେ ପାର୍ଥକ୍ୟ ଦେଖେ ନାହିଁ କାରଣ ତାର ଭେଦ-ବୁଦ୍ଧି ସମାପ୍ତ ହୋଇଯାଇଛି। ଏହିପରି, ସେ ସମ୍ପୂର୍ଣ୍ଣ ଜଗତକୁ ଯିଏ ଆତ୍ମଭାବରେ ଦେଖେ ସେ ସବୁଠାରୁ ଉତ୍ତମ ଭକ୍ତ।

ଟିକିଏ ଭାବନ୍ତୁ, ଏବେ ଆମେ ଜଗତକୁ କେଉଁ ଦୃଷ୍ଟିରେ ଦେଖୁଛେ ? ପରିବାରରେ ଇଏ ମୋ ଭାଇ-ଭଉଣୀ ଏପରି ଏକତ୍ୱ ଥାଏ। କିନ୍ତୁ ଅନ୍ୟମାନଙ୍କୁ ଆମେ ନିଜର ବୋଲି ଭାବୁ ନାହୁଁ। ଇଏ ନିଜର ଓ ଇଏ ପର-ଏପରି ଭେଦ ଭାବ ରହିଯାଏ। ସଂସାରରେ ପ୍ରାୟଃ ଦେଖାଯାଏ ଯେ ଲୋକମାନେ ନିଜ ଲୋକଙ୍କ ପାଇଁ ସବୁ କିଛି କରିବାକୁ ପ୍ରସ୍ତୁତ ହେଇଯାଆନ୍ତି କିନ୍ତୁ ଅନ୍ୟମାନଙ୍କ ପାଇଁ କିଛି କରନ୍ତିନି। କାରଣ ସେମାନଙ୍କୁ 'ପର' ଦୃଷ୍ଟିରେ ଦେଖନ୍ତି। ଅନ୍ୟ ଅନ୍ୟ ବୋଲି ଭାବନ୍ତି। ଏହାର ଠିକ୍ ଓଲଟା, ଜଗତକୁ ଯିଏ ଆତ୍ମ ଭାବରେ ଦେଖେ ତା ମନରେ କାହାରି ପ୍ରତି ଏପରି ଭେଦ ବୁଦ୍ଧି ରହେ ନାହିଁ। ତାକୁ ହିଁ ସବୁଠାରୁ ଉତ୍ତମ ଭକ୍ତ କୁହାଯାଏ। ଯିଏ ପ୍ରତିଦିନ ଭଗବାନଙ୍କୁ ପନ୍ଦର କିଲୋ ନୈବେଦ୍ୟ ଭୋଗ କରିବ ଓ ଚାରି-ଚାରି ଘଣ୍ଟା ପୂଜା ଘରେ ବସି ରହିବ ସେ ହିଁ ଉତ୍ତମ ଭକ୍ତ, ଏମିତି ହୁଏ ନାହିଁ। ତାହା ହେଲେ ମଧ୍ୟ ଶ୍ରେଣୀର ଭକ୍ତ କିପରି ହୋଇଥାଏ ?

**ଈଶ୍ୱରେ ତଦଧୀନେଷୁ ବାଲିଶେଷୁ ଦ୍ୱିଷସ୍ତୁ ଚ ।**
**ପ୍ରେମମୈତ୍ରୀ କୃପୋପେକ୍ଷା ୟଃ କରୋତି ସ ମଧ୍ୟମଃ ॥** (୧.୨.୪୬)

କହୁଛନ୍ତି, ଯିଏ ଈଶ୍ୱରଙ୍କଠାରେ ପ୍ରେମ କରନ୍ତି, ଈଶ୍ୱରଙ୍କର ଭକ୍ତମାନଙ୍କ ପ୍ରତି ମୈତ୍ରୀ ଭାବ ରଖନ୍ତି, ମୂର୍ଖ ତଥା ଅଜ୍ଞାନୀଜନମାନଙ୍କ ପ୍ରତି ଦୟା କରନ୍ତି, କୃପା କରନ୍ତି ତଥା ଈଶ୍ୱରଙ୍କୁ ଦ୍ୱେଷ କରୁଥିବା ଲୋକମାନଙ୍କର ଉପେକ୍ଷା କରନ୍ତି, ତାଙ୍କୁ **'ମଧ୍ୟମ ଶ୍ରେଣୀ'**ର ଭକ୍ତ କୁହନ୍ତି । ଦେଖନ୍ତୁ, ଏଠାରେ ଗୋଟିଏ କଥା ପ୍ରତି ଧ୍ୟାନ ଦେବା ଆବଶ୍ୟକ । ଆମେ କୌଣସି ଦ୍ୱେଷୀ ବ୍ୟକ୍ତି ପ୍ରତି ଦ୍ୱେଷ କରିବା ଉଚିତ ନୁହେଁ । ଆମ୍ଭେ ତାର ଅନୁକରଣ ଅଥବା ତାର ସମ ଆଚରଣ କରିବାର କୌଣସି ଆବଶ୍ୟକତା ନାହିଁ ।

ଦେଖନ୍ତୁ ଏଠାରେ ମଧ୍ୟମ ଭକ୍ତର ଲକ୍ଷଣ ରୂପରେ ଚାରୋଟି କଥା କୁହାଯାଇଛି - ଈଶ୍ୱରଙ୍କ ପ୍ରତି ପ୍ରେମ, ଈଶ୍ୱରଙ୍କ ଭକ୍ତଙ୍କ ପ୍ରତି ମୈତ୍ରୀ, ଅଜ୍ଞାନୀମାନଙ୍କ ପ୍ରତି ଦୟା, କୃପା ତଥା ଈଶ୍ୱରଙ୍କ ପ୍ରତି ଦ୍ୱେଷ କରୁଥିବା ଲୋକଙ୍କୁ ଉପେକ୍ଷା । କିନ୍ତୁ ନାରଦ କିଭଳି ଜଣା ଅଛି ? ସେ ତ ଏପରି ଯେ ଅଭକ୍ତମାନଙ୍କ ପାଖକୁ ଯାଇ ଯାଇ ତାଙ୍କୁ କୌଣସି ନା କୌଣସି ଉପଦେଶ ଦିଅନ୍ତି, ଯଦ୍ୱାରା ସେମାନେ ମଧ୍ୟ ଭଗବାନଙ୍କର ଭକ୍ତ ହେବେ ଏବଂ ଯଦି ସେମାନେ ଭକ୍ତ ହୋଇ ନ ପାରିଲେ ତେବେ ତାଙ୍କୁ ଏଭଳି କିଛି କୁହନ୍ତି ଯଦ୍ୱାରା ତାଙ୍କର ମନ ଭଗବାନଙ୍କଠାରେ ନିମଗ୍ନ ରହେ । ସେମାନେ ଭକ୍ତି କରିବାକୁ ଲାଗନ୍ତି । ନାରଦ ସେମାନଙ୍କର ମଧ୍ୟ ଉପେକ୍ଷା କରନ୍ତି ନାହିଁ । ସେ ତ ବିଚାର କରନ୍ତି ଯେ ଏଭଳି ଲୋକମାନଙ୍କୁ ଭଗବତ୍ ମାର୍ଗରେ ତଥା, ସତ୍ୟ ପଥକୁ ଆଣିବାର ଅଧିକ ଆବଶ୍ୟକତା ରହିଛି।

ଏହି ବିଚାରରେ ସେ କଂସ ପାଖକୁ ମଧ୍ୟ ଚାଲିଯାଇଥିଲେ । କିନ୍ତୁ ତାଙ୍କୁ ଅନ୍ୟ ପ୍ରକାର ଉପାୟ କହିଥିଲେ। କିନ୍ତୁ ସେ ତାକୁ କହି ଦେଇଥିଲେ ଯେ ଦେବକୀଙ୍କର ଅଷ୍ଟମ ଗର୍ଭ ଦ୍ୱାରା ତାର ଅନ୍ତ ହେବ । ପୁଣି ଏହା ମଧ୍ୟ କହି ଦେଇଥିଲେ ଯେ, ସେ ବର୍ତ୍ତମାନ ଗୋକୁଳରେ ପାଳିତ ହେଉଛି । ସେ ଯେଉଁ ଉପଦେଶକୁ ଧ୍ରୁବଜୀ ତଥା ପ୍ରହ୍ଲାଦଜୀଙ୍କୁ ଦେଇଥିଲେ, ତାହା କଂସକୁ କହି ନ ଥିଲେ, କାହିଁକି ନା ସେ ସେଥିପାଇଁ ପ୍ରସ୍ତୁତ ନ ଥିଲେ। ତେଣୁ ତାଙ୍କୁ ଏପରି କଥା କହିଥିଲେ ଯଦ୍ଦ୍ୱାରା ତାର କଲ୍ୟାଣ ହେବ । ତାଙ୍କୁ ଜଣାଥିଲା ଯେ କଂସ କେବେହେଲେ ତାଙ୍କୁ ପ୍ରେମ କରିପାରିବ ନାହିଁ । ସେଥିପାଇଁ ତାର (କଂସର) ମନରେ ନାରଦ ଭଗବାନଙ୍କର ଭୟ ସଂଚାର କରି ଦେଇଥିଲେ (ଯଦ୍ଦ୍ୱାରା ଭୟର କାରଣରୁ ହେଉ ନା କାହିଁକି) ସେ ଦିବା ରାତ୍ରି ଭଗବାନଙ୍କର ଚିନ୍ତନ କରିବ । କହିବାର ତାତ୍ପର୍ଯ୍ୟ ଏହି କି ଯେ ସନ୍ଥମାନେ କାହାର ଉପେକ୍ଷା କରନ୍ତି ନାହିଁ ।

ଜଗତରେ ଏହିପରି ମଧ୍ୟ ଦେଖାଯାଏ ଯେ ସମାଜରେ ଯେତେ ବଡ଼ ବଡ଼ ପ୍ରତିଷ୍ଠିତ ଅଥବା ଧନବାନ ବ୍ୟକ୍ତି ଅଛନ୍ତି, ତାଙ୍କର ସମ୍ମାନ ଯେତେ ଥାଉ ନା କାହିଁକି, କିନ୍ତୁ ତାଙ୍କର ଚରିତ୍ର ଅଥବା ସ୍ୱଭାବ ଯେ ବହୁତ ଭଲ ହୋଇଥିବ, ଏହା ଜରୁରୀ ନୁହିଁ। ଏବେ ଯଦି କୌଣସି ସାଧୁ ଅଥବା ସନ୍ନ୍ୟାସୀ ତାଙ୍କର ଘରକୁ ଯାଆନ୍ତି ତେବେ ଲୋକମାନେ କହନ୍ତି - ଆଜିକାଲି ସାଧୁ ଲୋକମାନେ ମଧ୍ୟ ଧନବାନମାନଙ୍କର ବଶ ହୋଇଗଲେଣି । ସେମାନେ ଏହି କଥା ଜାଣି ପାରନ୍ତି ନାହିଁ ଯେ ସାଧୁସନ୍ଥମାନଙ୍କର ମନରେ ଧନ ସଂପତ୍ତି ପ୍ରତି କୌଣସି ଭାବନା ନ ଥାଏ । କଥା ହେଉଛି ଏତିକି ଯେ ସେମାନେ କାହାର ଉପେକ୍ଷା କରନ୍ତି ନାହିଁ । କୁହନ୍ତି, ଜଣେ ସାଧୁ ଥିଲେ, ଯିଏକି ଧନବାନମାନଙ୍କ ପାଖକୁ ଯାଇ ଯାଇ ତାଙ୍କୁ ଖୋସାମତ୍ କରୁଥିଲେ । କେହି ଜଣେ ତାଙ୍କୁ କହିଲେ- ଆପଣ ଜଣେ ସାଧୁ ହୋଇ ତାଙ୍କ ପାଖକୁ କାହିଁକି ଯାଉଛନ୍ତି ? ସେ କହିଲେ- କଥା ହେଉଛି ଯେ କଖାରୁ ତଲବାର ଉପରେ ପଡୁ କି ତଲବାର କଖାରୁ ଉପରେ କିନ୍ତୁ କିଏ କଟିବ ? କଖାରୁ ହିଁ କାଟି ହେବ ନା ? ସେ ଆମ ପାଖକୁ ଆସୁ ଅଥବା ମୁଁ ତା ପାଖକୁ ଯାଏ।

ଯଦ୍ୟପି ଏପରି ଲୋକମାନଙ୍କର ଅଥବା ଦ୍ୱେଷ କରୁଥିବା ଲୋକମାନଙ୍କୁ ଉପେକ୍ଷା କରିବା ହିଁ ମଧ୍ୟମଶ୍ରେଣୀ ଭକ୍ତମାନଙ୍କ ନିମନ୍ତେ ଉଚିତ ଅଟେ, ତଥାପି ଦ୍ୱେଷ କରୁଥିବା ବ୍ୟକ୍ତିକୁ ଭୟ କରିବାର କିଛି ଆବଶ୍ୟକତା ନାହିଁ । ହଁ, ଅବଶ୍ୟ ଏତିକି କଥା ଯେ ସାଧକ ଅବସ୍ଥାରେ ଆମକୁ ତାଙ୍କଠାରୁ ସାମାନ୍ୟ ଦୂରରେ ରହିବା ଉଚିତ । ଯେଉଁ ପର୍ଯ୍ୟନ୍ତ ଶୁଦ୍ଧଜ୍ଞାନ ପ୍ରାପ୍ତ ହୋଇନାହିଁ, ସେହି ପର୍ଯ୍ୟନ୍ତ ସେମାନଙ୍କର ସଙ୍ଗ କରିବା ଉଚିତ ନୁହେଁ, କିନ୍ତୁ ସେମାନଙ୍କୁ ଦ୍ୱେଷ କରିବା ଉଚିତ ନୁହେଁ। ସାମାନ୍ୟତଃ ଦେଖାଯାଏ, ପ୍ରଥମତଃ

ମନୁଷ୍ୟର ଭୋଗପ୍ରତି ଆସକ୍ତ ରହିଥାଏ । ଯେତେବେଳେ ସେ ଅଳ୍ପ-ବହୁତ ଧର୍ମାଚରଣ ପ୍ରାରମ୍ଭ କରେ, ଧର୍ମ ମାର୍ଗରେ ଚାଲିବାକୁ ଲାଗେ, ତେବେ ନିଜେ ନିଜକୁ ଧର୍ମାତ୍ମା ଏବଂ ଅନ୍ୟମାନଙ୍କୁ ପାପାତ୍ମା ବିଚାର କରେ । ସ୍ୱୟଂକୁ ଶ୍ରେଷ୍ଠ ବୋଲି ବିବେଚିତ କରେ । ଏଭଳି କରିବା ଉଚିତ ନୁହେଁ ।

ଏବେ ଦେଖନ୍ତୁ ସାମାନ୍ୟ ଭକ୍ତ – ପ୍ରାକୃତ ଭକ୍ତ କିଏ ?

**ଅର୍ଚ୍ଚାୟାମେବ ହରୟେ ପୂଜାଂ ୟଃ ଶ୍ରଦ୍ଧୟେହତେ ।**
**ନ ତଦ୍‌ଭକ୍ତେଷୁ ଚାନ୍ୟେଷୁ ସ ଭକ୍ତଃ ପ୍ରାକୃତଃ ସ୍ମୃତଃ ।।** (୧୧.୨.୪୭)

କହୁଛନ୍ତି, ଯେଉଁମାନେ କେବଳ ମୂର୍ତ୍ତି ପୂଜା କରନ୍ତି, ମୂର୍ତ୍ତି ସ୍ନାନ କରାଇବା, ମାଳାପିନ୍ଧାଇବା, ନୈବେଦ୍ୟ ଅର୍ପଣ କରିବା, ଆରତୀ କରିବା ଆଦି ତ ସବୁ କିଛି କରନ୍ତି, କିନ୍ତୁ ଭଗବାନଙ୍କର କେହି ଭକ୍ତ ଆସିଲେ, ଅଥବା ସ୍ୱୟଂ ଭଗବାନ ଆସିଗଲେ ମଧ୍ୟ ତାଙ୍କୁ ତଡ଼ି ଦିଅନ୍ତି, ତାଙ୍କର ସେବା କରନ୍ତି ନାହିଁ, ତାଙ୍କୁ ପ୍ରେମ କରନ୍ତି ନାହିଁ। ଏହିଭଳି ଭକ୍ତକୁ **ପ୍ରାକୃତ ଭକ୍ତ** କୁହାଯାଏ ।

ଏକନାଥଜୀ ମହାରାଜଙ୍କର ଜୀବନର ଏହା ଏକ ପ୍ରସିଦ୍ଧ ଘଟଣା । ଅନ୍ୟ କିଛି ଲୋକମାନଙ୍କର ସହିତ ସେ କାଶୀଠାରୁ ଜଳ ନେଇ ରାମେଶ୍ୱର ଯାଉଥିଲେ । ରାସ୍ତାରେ ତାଙ୍କୁ ଶୋଷରେ ପୀଡ଼ିତ ଏକ ଗଧ ଦେଖା ହେଲା । ଏକନାଥଙ୍କର ସହିତ ଅନ୍ୟ ଯେତେ ଲୋକମାନେ ଥିଲେ, ସେମାନଙ୍କ ମଧ୍ୟରୁ କେହି ଗଧକୁ ଜଳପାନ କରାଇବା ନିମନ୍ତେ ପ୍ରସ୍ତୁତ ନ ଥିଲେ । ଏଭଳି କାହିଁକି ? ସେମାନେ କହୁଥିଲେ, ଆରେ ! ଏହି ଜଳ ଆମ୍ଭେମାନେ ଏହି ଗଧ ନିମନ୍ତେ ଆଣିଛୁ କି ? ଦେଖନ୍ତୁ, ଏହାର ଅର୍ଥ ଭଗବାନ ତ କେବଳ ସେହି ରାମେଶ୍ୱରରେ ହିଁ ଅଛନ୍ତି । କିନ୍ତୁ ସତ୍ୟ ହେଉଛି ଯେ- ଭଗବାନ ସମସ୍ତଙ୍କର ହୃଦୟରେ ବସି ଅଛନ୍ତି । ଏକନାଥଜୀ ସେହି ଗଧକୁ ଶୋଷରେ ଛଟପଟ ହେଉଥିବା ଦେଖିଲେ ତ ତାଙ୍କର ହୃଦୟ ଦ୍ରବୀଭୂତ ହେବାକୁ ଲାଗିଲା, ସେ ନିଜର ଗଙ୍ଗା ଜଳକୁ ସେହି ଗଧକୁ ପିଆଇ ଦେଲେ । ସମସ୍ତ ଲୋକମାନେ ତାଙ୍କୁ କେବଳ ଆଶ୍ଚର୍ଯ୍ୟ ହୋଇ ଦେଖୁଥିଲେ । କହିଲେ - ଇଏ, କିଭଳି ଲୋକ ! ଏତେ ଦୂରରୁ ପ୍ରଯତ୍ନପୂର୍ବ ଗଙ୍ଗାଜଳ ନେଇ ଆସିଥିଲେ କିନ୍ତୁ ଶେଷରେ ଏଇ ଗଧକୁ ପିଆଇ ଦେଲେ ! କିନ୍ତୁ ଦେଖନ୍ତୁ, ସେମାନେ ସମସ୍ତେ ଯେଉଁ ଭଗବାନଙ୍କୁ ଦର୍ଶନ କରିବା ନିମନ୍ତେ ରାମେଶ୍ୱର ଯାଉଥିଲେ। ସେହି ଭଗବାନ ଏକନାଥ ମହାରାଜଜୀଙ୍କୁ ସେହିଠାରେ ଦର୍ଶନ ଦେଲେ । ଏଠାରେ ଏହି ଘଟଣାରୁ ବୁଝିବା ଉଚିତ ଯେ, ଏହିଭଳି ଯେଉଁମାନେ କେବଳ ମୂର୍ତ୍ତିରେ

ଭଗବାନଙ୍କୁ ଦର୍ଶନ କରନ୍ତି - ସେମାନେ ସାମାନ୍ୟ ଭକ୍ତ, ପ୍ରାକୃତ ଭକ୍ତ ଅଟନ୍ତି ।

ଏହି ସନ୍ଦର୍ଭରେ ସନ୍ଥ ଏକନାଥ ମହାରାଜଙ୍କର ଜୀବନରେ ଆଉ ଏକ ଘଟଣା ସ୍ମରଣୀୟ । ଥରେ ସେ ପିତୃଶ୍ରାଦ୍ଧ କରାଉଥିଲେ । ସେହି ସମୟରେ ଶୁଦ୍ର ଜାତିର କିଛି ଲୋକମାନେ ଆସୁଥିଲେ । ଶ୍ରାଦ୍ଧ ନିମନ୍ତେ ପରିପକ୍ୱ ହେଉଥିବା ଭୋଜନର ସୁଗନ୍ଧ ପ୍ରାପ୍ତ କରି ତାଙ୍କୁ ଲାଗିଲା, ଆରେ ! ଏଭଳି ଖାଦ୍ୟ ତ ଆମ୍ଭେ ପୂର୍ବରୁ କେବେ ଭୋଜନ କରିନାହୁଁ । ସେତେବେଳେ ଏକନାଥଜୀ ମହାରାଜ ଶ୍ରାଦ୍ଧ ନିମନ୍ତେ ପ୍ରସ୍ତୁତ ଭୋଜନକୁ ସେମାନଙ୍କୁ ଭୋଜନ କରାଇ ଦେଇଥିଲେ । ଏହିସବୁ ଦେଖି ବ୍ରାହ୍ମଣମାନେ କହିଲେ - ଆମ୍ଭେମାନେ ଆପଣଙ୍କର ଏହି ଶ୍ରାଦ୍ଧକର୍ମ କରିବୁ ନାହିଁ । ଏକନାଥ ମହାରାଜ କହିଲେ, "ଆପଣମାନଙ୍କର ଯାହା ଇଚ୍ଛା । ଏମାନେ ଭୋକିଲା ଏବଂ ଦରିଦ୍ର ମଧ୍ୟ । ଭୋଜନର ସୁଗନ୍ଧରେ ଏମାନଙ୍କର ମନରେ ଏଭଳି ଇଚ୍ଛା ହେଲା । ତେବେ ତାଙ୍କୁ ମୁଁ କିପରି ମନା କରିଥାଆନ୍ତି ।" ବ୍ରାହ୍ମଣମାନେ ଚାଲିଗଲେ । ସନ୍ଥ ଏକନାଥଜୀ ମହାରାଜ ବେଦଶାସ୍ତ୍ରର ଜ୍ଞାନରେ ପରିପୂର୍ଣ୍ଣ ଥିଲେ । ଅଭିଜ୍ଞ ଥିଲେ । କହିଲେ "ମୁଁ ନିଜେ ଶ୍ରାଦ୍ଧ କର୍ମ କରିବି ।" ଏଭଳି ବିଚାର କରି ସେ ଯେତେବେଳେ ନିଜେ ଶ୍ରାଦ୍ଧକର୍ମ କରିଲେ, ତେବେ ଅନ୍ନ ଗ୍ରହଣ କରିବା ନିମନ୍ତେ ତାଙ୍କର ପିତୃ ସେଠାରେ ସ୍ୱୟଂ ଉପସ୍ଥିତ ହେଲେ। ସେତେବେଳେ ସେଠାରେ ଉପସ୍ଥିତ ଅନ୍ୟ ସମସ୍ତେ ଏହା ଦେଖି ଆଶ୍ଚର୍ଯ୍ୟ ହେବାକୁ ଲାଗିଲେ । ଇଏତ ଉତ୍ତମ ଭାଗବତ ଥିଲେ । ଅନ୍ୟ ପଣ୍ଡିତମାନେ ସାମାନ୍ୟ ଭକ୍ତ ଥିଲେ, ସେମାନଙ୍କର ଦୃଷ୍ଟିରେ ନିଜର କର୍ମକାଣ୍ଡ, ନିଜର ନିୟମ ବଡ଼ ଥିଲା ।

ଏହି ପ୍ରସଙ୍ଗରେ ବିଶେଷ କଥା ହେଲା ଯେ ପୂଜା ଆଦି କରିବା ବହୁତ ଭଲ କଥା, କିନ୍ତୁ ସେହିଠାରେ ଅଟକି ଯିବା ଭଲ ନୁହେଁ । ତା ଆଗକୁ ମଧ୍ୟ ବଢ଼ିବା ଉଚିତ୍। ସେହିଠାରୁ ଉଚ୍ଚକୁ ଉଠିବାର ଆବଶ୍ୟକତା ରହିଛି । ବହିଃସ୍ଥ ମୂର୍ତ୍ତିରେ ମୁଁ ଯେଉଁ ପରମାତ୍ମାଙ୍କୁ ପୂଜା କରୁଛି ସେ ମୋର ହୃଦୟରେ ମଧ୍ୟ ଅଛନ୍ତି ଏବଂ ସେହି ପରମାତ୍ମା ସମସ୍ତଙ୍କର ହୃଦୟରେ ଅଛନ୍ତି, କୌଣସି ସାଧକର ଯଦି ଏହିଭଳି ଭାବନା ହୋଇଯାଏ, ତେବେ ତାକୁ ଉତ୍ତମ ଭାଗବତ କୁହାଯାଏ। ଯିଏ ମୂର୍ତ୍ତି ପୂଜା ପର୍ଯ୍ୟନ୍ତ ହିଁ ସୀମିତ ରହନ୍ତି, ତାଙ୍କର ଅନ୍ୟ କାହା ପ୍ରତି ମଧ୍ୟ ଏଭଳି ପ୍ରେମ ହୋଇ ନ ଥାଏ । ମୂର୍ତ୍ତିର ସମ୍ମୁଖରେ ତାର ଚକ୍ଷୁରୁ ଅଶ୍ରୁ ଆସୁ, ହୃଦୟ ଗଦ୍‌ଗଦ୍ ହୋଇଯାଉ ନା କାହିଁକି, ପରନ୍ତୁ ଯେତେବେଳେ ପର୍ଯ୍ୟନ୍ତ ଅନ୍ୟ ଲୋକମାନଙ୍କ ପ୍ରତି ତାର ମନରେ କୌଣସି ବିଶେଷ ଭାବ ପ୍ରକଟ ହୁଏ ନାହିଁ, ସେ ପର୍ଯ୍ୟନ୍ତ ସେ ପ୍ରାକୃତ ଭକ୍ତ ହିଁ କୁହାଯାଇଥାଏ ।

ଉତ୍ତମ ଭକ୍ତର ଲକ୍ଷଣକୁ ବିସ୍ତାର କରି କହୁଛନ୍ତି – ସମସ୍ତ ଦୃଶ୍ୟ ପ୍ରପଞ୍ଚକୁ ଦେଖି ତଥା ଇନ୍ଦ୍ରିୟମାନଙ୍କ ଦ୍ୱାରା ଅନ୍ୟ ବିଷୟକୁ ଗ୍ରହଣ କରି ମଧ୍ୟ ସେ ବିଚାର କରୁଥାଏ ଯେ ଏହି ସବୁ କିଛି ଭଗବାନଙ୍କର ମାୟା, ଭଗବାନଙ୍କର ବିଳାସ, ଏଭଳି ବିଚାର କରି ସେ ନା କାହା ସହିତ ଦ୍ୱେଷ କରେ ନା କାହା ସହିତ ଆସକ୍ତ ହୁଏ, ସେ ହିଁ ଉତ୍ତମ ଭକ୍ତ ଅଟେ ।

ଦେଖନ୍ତୁ, ସଂସାରରେ ରହିବା ଭିତରେ ସମାନ ପରିସ୍ଥିତି ତ କେବେ ହେଲେ ରହେ ନାହିଁ । କେବେ ସମ୍ପତ୍ତି ଆସେ ତ, କେବେ ଶରୀର ସୁସ୍ଥ ମଧ୍ୟ ରହେ । କେବେ ଧନ ପ୍ରାପ୍ତ ହୁଏ, ଲାଭ ହୁଏ ତ କେବେ ଘରେ ହାନୀ ମଧ୍ୟ ହୁଏ । ଘରେ କେବେ କାହାର ଜନ୍ମ ହୁଏ ତ, କାହାର ନିଧନ ମଧ୍ୟ ହୋଇଥାଏ । ଏପରି ସବୁ ଚାଲିଥାଏ, କିନ୍ତୁ **'ସଂସାରଧର୍ମୈଃରବିମୁହ୍ୟମାନଃ'** (୧୧.୨.୪୯) ଏହି ନାନା ପ୍ରକାରର ସଂସାର ଧର୍ମର ପରିବର୍ତ୍ତନ ଦ୍ୱାରା ଉତ୍ତମ ଭକ୍ତ ମୋହିତ ହୁଏ ନାହିଁ । ତାହା କିଭଳି ? ଏହା ସେଥିପାଇଁ ଯେ, **'ହରେଃ ସ୍ମୃତ୍ୟା'**, ତାର ହୃଦୟରେ ଭଗବାନଙ୍କର ଏଭଳି ଅଖଣ୍ଡ ସ୍ମରଣ ଥାଏ, ଯଦ୍ଦ୍ୱାରା ଏହି ସଂସାର ଧର୍ମ ତାକୁ କୌଣସି ପ୍ରକାରର ବିଚଳିତ କରିପାରେ ନାହିଁ ।

ଏଠାରେ ଏହାକୁ ନିମିତ୍ତ କରି ଆମ୍ଭମାନଙ୍କୁ ଏହି ଉପଦେଶ ଦିଆଯାଉଛି ଯେ, ଜୀବନରେ କେବେ କୌଣସି ଦୁଃଖଦ ପରିସ୍ଥିତି ଆସିଲେ, ସେତେବେଳେ କାନ୍ଦିବାର କୌଣସି ଆବଶ୍ୟକତା ନାହିଁ । ଭଗବାନଙ୍କର ସ୍ମରଣ କର । ଏପରି କାହିଁକି ହେଲା ? କିପରି ହେଲା ? ଏପରି ହେବା ଉଚିତ ନ ଥିଲା, ମୋ ସଙ୍ଗରେ ଏପରି ସବୁ କାହିଁକି ହେଲା, ଅନ୍ୟମାନଙ୍କ ସହିତ ଏପରି କାହିଁକି କିଛି ହେଉ ନାହିଁ ? ଆମ୍ଭେମାନେ ପ୍ରାୟତଃ ଏପରି ଚିନ୍ତା କରିଥାଉ ଏବଂ କାନ୍ଦୁଥାଉ । ନିଜର ମନକୁ ଏହିଭଳି ଭାବରେ ତ୍ରସ୍ତ କରିଥାଉ । ଏଠାରେ କୁହାଯାଉଛି ଯେ ଏହିଭଳି ସବୁ ଚିନ୍ତା ଛାଡ଼ି ଭଗବାନଙ୍କର ସ୍ମରଣ କରି ଚାଲ କାହିଁକି ନା **'ତବ କଥା ମୃତଂ ତପ୍ତ ଜୀବନମ୍'** (୧୦.୩୧.୯) ଭଗବାନଙ୍କର କଥା ଅମୃତସ୍ୱରୂପ ଅଟେ ଏବଂ ସନ୍ତପ୍ତ ଜନମାନଙ୍କର ନିମନ୍ତେ ଜୀବନ ପ୍ରଦାନ କରୁଥିବା ସଂଜୀବନୀ ଅଟେ । ଲୋକମାନେ କଥାମୃତର ପାନ ତ କରୁନାହାନ୍ତି, ଯାହା ଚାଲିଗଲାଣି, ତାର ନିମନ୍ତେ ଶୋକ କରୁଥାଆନ୍ତି । ମହାପୁରୁଷମାନେ କୁହନ୍ତି – ତୁମକୁ ମଧ୍ୟ ଯିବାକୁ ହେବ । ଟିକିଏ ତା ଉପରେ ମଧ୍ୟ ବିଚାର କର । ଶୋକ କରି କଣ କରିବ ? କିନ୍ତୁ ଲାଗୁଛି ଯେ ଲୋକମାନଙ୍କର ଚିନ୍ତା କରିବା ଏକ ଅଭ୍ୟାସ ହୋଇଗଲାଣି ।

ଏଠାରେ ଯୋଗେଶ୍ୱର ହରି କହୁଛନ୍ତି, "ସଂସାରରେ ମୋହିତ ହେବାର ଆବଶ୍ୟକତା ନାହିଁ । ଯେତେବେଳେ କୌଣସି ଦୁଃଖ ଆସିଯାଉଛି ଭଗବାନଙ୍କର ସ୍ମରଣ କର।" ଦେଖନ୍ତୁ, ଆମେମାନେ ଏହି କଥାକୁ ପୂର୍ବ ସ୍କନ୍ଧରେ ଦେଖି ସାରିଛନ୍ତି । ସମସ୍ତ ଗୋପବାଳକ କଣ କରୁଛନ୍ତି ? 'କୃଷ୍ଣ-କୃଷ୍ଣ ମହାବାହୋ' କହୁଛନ୍ତି । ବାସ୍, ସେମାନଙ୍କ ଭଳି ଭଗବାନଙ୍କୁ ସ୍ମରଣ କରି ଚାଲ । ମୁଁ ହିଁ କାହିଁକି ରୋଗଗ୍ରସ୍ତ ହେଲି ? ଏହିଭଳି କହିବାର କଣ ଅର୍ଥ ? ଏହା ଯେ ଅନ୍ୟମାନେ ହିଁ କେବଳ ରୋଗରେ ପଡ଼ିବେ ? ଏହା ତ ଠିକ୍ କଥା ନୁହେଁ । ଦେଖନ୍ତୁ, ଯାହାର ହୃଦୟରେ ଭଗବାନଙ୍କର ନିବାସ ହୋଇଗଲାଣି-

**ନ କାମକର୍ମବୀଜାନାଂ ଯସ୍ୟ ଚେତସି ସମ୍ଭବଃ ॥** (୧୧.୨.୫୦)

ତାର ହୃଦୟରେ କାମ, କର୍ମ ଏବଂ ତାର ବୀଜଭୂତ ବାସନାର କେବେ ଉଦୟ ମଧ୍ୟ ହୁଏ ନାହିଁ, ସେହି ହୃଦୟ କେବଳ ଭଗବାନଙ୍କର ନିବାସ ହୋଇଯାଏ। ଯାହାର ହୃଦୟ ଏପରି ହୋଇଯାଏ ସେ **'ଭାଗବତୋତ୍ତମ'**ସବୁଠାରୁ ଉତ୍ତମ ଭାଗବତ ।

ଦେଖନ୍ତୁ, ଉତ୍ତମ ଭକ୍ତର ଏହିସବୁ ଲକ୍ଷଣ ଗୀତାଜୀଙ୍କର ଦ୍ୱାଦଶ ଅଧ୍ୟାୟରେ **'ଅଦ୍ୱେଷ୍ଟା ସର୍ବଭୂତାନାଂ ମୈତ୍ରଃ କରୁଣ ଏବ ଚ ।'**(ଭ.ଗୀତା ୧୨.୧୩) ଆଦି ଶ୍ଳୋକ ଦ୍ୱାରା କୁହାଯାଇଛି । ସେଠାରେ କୁହାଯାଇଛି ଯେ ସେହି ପୁରୁଷ ଏହି ଦେହ ପ୍ରତି ଟିକିଏ ମଧ୍ୟ ଆସକ୍ତ ହୁଏ ନାହିଁ । ଏହା ମୋର, ଏହା ପରର, ଏହିଭଳି ଭେଦ ଭାବ ରହେ ନାହିଁ ।

**ନ ଯସ୍ୟ ସ୍ୱଃ ପର ଇତି ବିତ୍ତେଷ୍ୱାତ୍ମନି ବା ଭିଦା ।** (୧୧.୨.୫୨)

ଏହି ବସ୍ତୁ ମୋର, ଏହି ବସ୍ତୁ ତୋର, ତୁମେ ମୋର ବସ୍ତୁକୁ କାହିଁକି ହାତ ଲଗାଇଲ ? ଏହିଭଳି କଥା ତାର ମନରେ ଆସେ ନାହିଁ । **'ସର୍ବଭୂତସମଃ ଶାନ୍ତଃ'** ସମସ୍ତ ଭୂତ ସମୁଦାୟମାନଙ୍କ ନିମନ୍ତେ ସେ ଏହିଭଳି ସମ ହୋଇ ଯାଆନ୍ତି - ଯେଉଁ ଭଳି ସ୍ୱୟଂ ପରମାତ୍ମା ହିଁ ହୋଇଥାଆନ୍ତି । **'ସ ବୈ ଭାଗବତୋତ୍ତମଃ'** ଯାହାର ମନରେ ନିଜର -ପରର, ଏହି ଭାବ ପରିସମାପ୍ତ ହୋଇଗଲାଣି, ରାଗ ଦ୍ୱେଷ ଆଦି ସମସ୍ତ ବିକାର ମଧ୍ୟ ସମାପ୍ତ ହେଲାଣି, ସଂସାରର ସମ୍ପତ୍ତି ବିପତ୍ତି ଠାରୁ ଯାହାର ମନ କ୍ଷୁବ୍ଧ ହୁଏ ନାହିଁ ଏବଂ ଯାହାର ମନରେ ସଦା ସର୍ବଦା ଭଗବାନଙ୍କର ସ୍ମୃତି ରହିଥାଏ ସେ ସବୁଠାରୁ ଶ୍ରେଷ୍ଠ-ଉତ୍ତମ ଭକ୍ତ ।

ଦେଖନ୍ତୁ, ଆମ୍ଭେମାନେ ତ ଭଗବାନଙ୍କର ସ୍ମରଣ କରିବାକୁ ବସିଥିଲେ ଏବଂ ସେତିକିବେଳେ ଯଦି ଜଣାପଡ଼େ ଯେ କେଉଁଠି ମାଗଣାରେ ଧନ ଅଥବା ମିଠାଇ ବଣ୍ଟା ଯାଉଛି, ତେବେ ଆମ୍ଭେମାନେ ମିଠାଇ ଆଣିବାକୁ ଚାଲିଯାଉ। ଟେଲିଫୋନର ଘଣ୍ଟି ବାଜିବାକୁ ଲାଗିଲା ବେଳକୁ, ସେତେବେଳେ ମଧ୍ୟ ଆମ୍ଭେମାନେ ଜପ ଛାଡ଼ି ଫୋନ ଶୁଣିବା ନିମନ୍ତେ ପହଞ୍ଚିଯାଇଥାଉ । ଯାହାହେଲେ-

**ତ୍ରିଭୁବନବିଭବହେତବେଽପ୍ୟକୁଣ୍ଠ-**
**ସ୍ମୃତିରଜିତାତ୍ମସୁରାଦିଭିର୍ବିମୃଗ୍ୟାତ୍ ।**
**ନ ଚଲତି ଭଗବତ୍‌ପଦାରବିନ୍ଦା-**
**ଲ୍ଲବନିମିଷାର୍ଧମପି ଯଃ ସ ବୈଷ୍ଣବାଗ୍ର୍ୟଃ ॥** (୧୧.୨.୫୩)

ଏଠାରେ ତ କୁହାଯାଇଛି '**ତ୍ରିଭୂବନବିଭବହେତବେଽପ୍ୟକୁଣ୍ଠସ୍ମୃତିଃ**' ଯଦି କେହି ତ୍ରିଭୁବନର ରାଜ୍ୟ ଦେବା ନିମନ୍ତେ ଆସୁ ନା କାହିଁକି, ତେବେ ମଧ୍ୟ ଜଣେ ଉତ୍ତମ ଭକ୍ତ ଭଗବାନଙ୍କର ସ୍ମରଣ ଛାଡ଼ି ତାର ପଛରେ ଚାଲିବା ନିମନ୍ତେ ପ୍ରସ୍ତୁତ ହୁଏ ନାହିଁ .

ଥରେ ତୁକାରାମଜୀ ମହାରାଜ କୌଣସି ପର୍ବତ ଉପରେ ବସିଥିଲେ। ସେତେବେଳେ ସେଠାରେ ରିଦ୍ଧି-ସିଦ୍ଧି ତାଙ୍କୁ ବର ପ୍ରଦାନ କରିବା ନିମନ୍ତେ ପହଞ୍ଚିଗଲେ। ତାଙ୍କୁ ଭଗବାନ ପଠାଇଥିଲେ । ସେମାନେ ଆସି କହୁଛନ୍ତି - "ଭଗବାନ ଆପଣଙ୍କ ଉପରେ ପ୍ରସନ୍ନ ଅଛନ୍ତି। ସେ ହିଁ ଆମ୍ଭମାନଙ୍କୁ ଆପଣଙ୍କର ସେବା କରିବା ନିମନ୍ତେ ପଠାଇଛନ୍ତି । ଆପଣଙ୍କର ଯାହା ଇଚ୍ଛା ଅଛି, ତାକୁ ଆପଣ ମାଗି ନିଅନ୍ତୁ ।" ତୁକାରାମଜୀଙ୍କୁ ଲାଗିଲା ମୁଁ ଏଠାରେ ବସି ଶାନ୍ତିରେ ଭଗବାନଙ୍କର ନାମ ନେଉଛି । ଏମାନେ ବ୍ୟର୍ଥ ଏଠାରେ ବିଘ୍ନ କରୁଛନ୍ତି। ସେଥିପାଇଁ ତୁକାରାମଜୀ ସେମାନଙ୍କୁ ପଠାଇ ଦେଲେ । ଭଗବାନଙ୍କ ଆଦେଶ ପ୍ରାପ୍ତ କରି ସେମାନେ ପୁଣି ଥରେ ଆସିଗଲେ । ସେତେବେଳେ ତୁକାରାମଜୀ ସେମାନଙ୍କୁ କହିଲେ- "ଭଗବାନ କିଛି ମାଗିବା ନିମନ୍ତେ କହିଛନ୍ତି ନା ?" ସେମାନେ ହଁ କହିଲେ । ତୁକାରାମଜୀ କହିଲେ, "ଏବେ ଯିବ ତ କେବେ ଫେରି ଆସିବ ନାହିଁ । ଆରେ ! ବର ଦିଅନ୍ତୁ ଅଥବା ଯାହା କିଛି କଲେ ମଧ୍ୟ ଭଗବାନଙ୍କର ସ୍ମରଣରେ ବିଘ୍ନ କାହିଁକି କରୁଛ ?" ଦେଖନ୍ତୁ ଏହି ଭକ୍ତ ଏହିଭଳି ଯେ ତ୍ରୈଲୋକ୍ୟର ବୈଭବ ପ୍ରାପ୍ତ ହୋଇଗଲେ ମଧ୍ୟ ଭଗବାନଙ୍କର ସ୍ମୃତି କେବେହେଲେ ଛାଡ଼ୁ ନାହାନ୍ତି । '**ଲବନିମିଷାର୍ଧମପି**' ପଲକ ବନ୍ଦ ହେବା ନିମନ୍ତେ ଯେତିକି ସମୟ ଲାଗେ - ତାର ଅଧା

ସମୟ ମଧ୍ୟ ଭଗବାନଙ୍କର ସ୍ମୃତିକୁ ଛାଡ଼ିବା ନିମନ୍ତେ ପ୍ରସ୍ତୁତ ହୋଇ ନ ଥାଆନ୍ତି । ସେମାନଙ୍କୁ ହିଁ ବୈଷ୍ଣବ ଭକ୍ତ କହନ୍ତି ।

ନରସୀ ମେହତା ବହୁତ ସୁନ୍ଦର କଥା କହିଛନ୍ତି -

**'ବୈଷ୍ଣବ ଜନ ତୋ ତେଣେ କହିୟେ**

**ଜେ ପୀର ପରାୟି ଜାନେ ରେ ।'**

ପରାୟୀ ପୀର ଜାଣିବାର ଅର୍ଥ ମିଥ୍ୟା ଉପକାର କରିବା ଏବଂ ପୁଣି ତାପାଇଁ ଅଭିମାନ କରିବା - ଏଭଳି ହୁଏ ନାହିଁ । ତାର ମନରେ କେବେହେଲେ ଅଭିମାନ ଆସେ ନାହିଁ। କହିବାର ଅର୍ଥ ହେଉଛି, ଯାହାର ମନରେ ସଦୈବ ଭଗବାନଙ୍କର ସ୍ମରଣ ସତତ ରହିଥାଏ- ତାକୁ ସବୁଠାରୁ ଉତ୍ତମ ଭକ୍ତ କୁହାଯାଏ।

ଆଗକୁ ଆହୁରି ମଧ୍ୟ ସୁନ୍ଦର ଭାବରେ କୁହାଯାଇଛି । ଯୋଗେଶ୍ୱର ହରି କହୁଛନ୍ତି- ଯେଉଁ ଭଳି ଭାବରେ ଚନ୍ଦ୍ରମାଙ୍କର ଉଦୟ ହେବା ସୂର୍ଯ୍ୟଙ୍କର ତାପ ରହେ ନାହିଁ, ସେହିଭଳି ଭାବରେ -

**ଭଗବତ ଉରୁବିକ୍ରମାଙ୍ଘ୍ରିଶାଖା-**

**ନଖମଣିଚନ୍ଦ୍ରିକୟା ନିରସ୍ତତାପେ ।**

**ହୃଦି କଥମୁପସୀଦତାଂ ପୁନଃ ସ**

**ପ୍ରଭବତି ଚନ୍ଦ୍ର ଇବୋଦିତେଽର୍କତାପଃ ॥** (୧୧.୨.୫୪)

ଯାହାର ହୃଦୟରେ ଭଗବାନଙ୍କର ଚରଣ କମଳର ନଖମଣିର କିଞ୍ଚିତ ମଧ୍ୟ ପ୍ରକାଶ ଆସିଯାଏ - ତାର ସମସ୍ତ ତାପ ନଷ୍ଟ ହୋଇ ଯାଏ। ଭଲା ପୁଣି ତାକୁ କେଉଁ ପ୍ରକାରର କଷ୍ଟ ହୋଇପାରେ। ତାର କଷ୍ଟ କେଉଁଭଳି ରହିବ ?

**ବିସୃଜତି ହୃଦୟଂ ନ ଯସ୍ୟ ସାକ୍ଷା**

**ଦ୍ଧରିରବଶାଭିହିତୋଽପ୍ୟଘୌଘନାଶଃ ।**

**ପ୍ରଣୟରଶନୟା ଧୃତାଙ୍ଘ୍ରିଂପଦ୍ମ**

**ସ ଭବତି ଭାଗବତପ୍ରଧାନ ଉକ୍ତଃ ॥** (୧୧.୨.୫୫)

କହୁଛନ୍ତି, ଭକ୍ତିରୂପୀ ଦଉଡି ଦ୍ୱାରା, ପ୍ରେମ ଡୋରୀ ଦ୍ୱାରା ଯିଏ ନିଜେ ନିଜକୁ ଭଗବାନଙ୍କର ଚରଣରେ ଭଲ ଭାବରେ ବାନ୍ଧି ସାରିଛି, ଯାହା ନିମନ୍ତେ ଭଗବତ୍ ବିସ୍ମରଣର କୌଣସି ପ୍ରଶ୍ନ ହିଁ ଉଠେ ନାହିଁ, ସେ ଉତ୍ତମ ଭକ୍ତ ଅଟନ୍ତି । ତେବେ ଏହିଭଳି ଭାବରେ ପ୍ରଥମ ପ୍ରଶ୍ନର ଉତ୍ତର ରୂପରେ ଭାଗବତ ଧର୍ମ (ପରମ ଶ୍ରେୟର ସାଧନ) ଏବଂ ଦ୍ୱିତୀୟ ପ୍ରଶ୍ନର ଉତ୍ତର ଦେଇ ଏହି ଭାଗବତ ଧର୍ମର ଆଚରଣ କରୁଥିବା ଭଗବତ୍ ଭକ୍ତର ଉତ୍ତମ ଭକ୍ତର ସୁନ୍ଦର ଲକ୍ଷଣ ବୁଝାଇ ଦିଆଗଲା ।

### ତୃତୀୟ ପ୍ରଶ୍ନ – ମାୟାର ସ୍ୱରୂପ

ଏବେ ଏହା ତ ପ୍ରାୟ ସମସ୍ତେ ଜାଣିଛନ୍ତି ଯେ ଭକ୍ତିରେ ଯେଉଁ ବାଧକ ତତ୍ତ୍ୱ, ତାହା ହେଉଛି **'ମାୟା'** । ଏହି ମାୟା ଆମ୍ଭମାନଙ୍କୁ ଏତେ ଶୀଘ୍ର ଭଗବାନଙ୍କ ପାଖକୁ ଯିବାକୁ ଦିଏ ନାହିଁ । ସେଥିପାଇଁ ରାଜା ନିମି ତୃତୀୟ ପ୍ରଶ୍ନ ପଚାରୁଛନ୍ତି।

**ପରସ୍ୟ ବିଷ୍ଣୋରୀଶସ୍ୟ ମାୟିନାମପି ମୋହିନୀମ୍ ।**

**ମାୟାଂ ବେଦିତୁମିଚ୍ଛାମୋ ଭଗବନ୍ତୋ ବ୍ରୁବନ୍ତୁ ନଃ ॥** (୧୧.୩.୧)

ସେ କହୁଛନ୍ତି, "ଭକ୍ତିର ମାର୍ଗରେ ମାୟା ବଡ଼ ବଡ଼ ମାୟାବୀମାନଙ୍କୁ ମଧ୍ୟ ମୋହିତ କରି ଦିଏ । ସେହି ମାୟା କଣ ? ଏହାକୁ ଆପଣ ବୁଝାଇ କୁହନ୍ତୁ ।"

ଏହାର ଉତ୍ତର ତୃତୀୟ ଯୋଗେଶ୍ୱର **ଅନ୍ତରୀକ୍ଷଜୀ** ଦେଇଛନ୍ତି । ସେ ଦୁଇପ୍ରକାର ମାୟାର ବର୍ଣ୍ଣନ କରିଛନ୍ତି । ତାକୁ ତୁଳସୀ ଦାସ ଏହିଭଳି କହିଛନ୍ତି ଯେ ମାୟା ହେଉଛି ଦୁଇ ପ୍ରକାରର ହୋଇଥାଏ । ଗୋଟିଏ ଅବିଦ୍ୟା ମାୟା ଏବଂ ଦ୍ୱିତୀୟ ହେଉଛି ବିଦ୍ୟା ମାୟା । ଯିଏ ସଂପୂର୍ଣ୍ଣ ଜଗତର ସୃଜନ କରେ ତାକୁ **ବିଦ୍ୟା ମାୟା** କୁହାଯାଏ ।

**ମୟାଧ୍ୟକ୍ଷେଣ ପ୍ରକୃତିଃ ସୂୟତେ ସଚରାଚରମ୍ ।** (ଭ.ଗୀତା ୯.୧୦)

ଗୀତାରେ ଭଗବାନ କହୁଛନ୍ତି, "ମୋର ଅଧ୍ୟକ୍ଷତାରେ, ପ୍ରକୃତି ଚରାଚର ସୃଷ୍ଟିର ରଚନା କରିଥାଏ ।" ଏହି ଯେଉଁ ପଞ୍ଚ ମହାଭୂତମାନଙ୍କର ସୃଷ୍ଟି, ସ୍ଥିତି ତଥା ଲୟ କରୁଥିବା ମାୟା ଆମର ସମସ୍ୟାମାନଙ୍କର କାରଣ ନୁହେଁ । କିନ୍ତୁ -

**ଗୁଣୈର୍ଗୁଣାନ୍ ସ ଭୁଞ୍ଜାନ ଆତ୍ମପ୍ରଦ୍ୟୋତିତୈଃ ପ୍ରଭୂଃ ।**

**ମନ୍ୟମାନ ଇଦଂ ସୃଷ୍ଟମାତ୍ମାନମିହ ସଜ୍ଜତେ ॥** (୧୧.୩.୫)

ଜୀବ ଯେତେବେଳେ ଏହି ସୃଷ୍ଟି ସହିତ ତାଦାତ୍ମ୍ୟ କରି ଏହା ମୁଁ, ଏହା ମୋର, ଏହା ତାର, ଏହା ସୁନ୍ଦର ଅଟେ, ଏହା ଖରାପ, ଏହି ଭଳି ଭାବରେ ସେଥିରେ ରାଗ-ଦ୍ୱେଷର ନିର୍ମାଣ କରି ନିଏ, ତେବେ ତାକୁ ହିଁ **ଅବିଦ୍ୟା ମାୟା** କୁହାଯାଏ । ଆମେ ଜୀବମାନେ ମୁଁ, ମୋର ଭଳି ଯେଉଁ ସୃଷ୍ଟି ନିର୍ମାଣ କରିଛନ୍ତି, ତାହା ହିଁ ଆମକୁ ବନ୍ଧନରେ ପକାଇ ଥାଏ । ତାହା ହିଁ ଆମକୁ ଆମର ସାଧନାରେ, ଭକ୍ତିରେ ଆଗକୁ ବଢ଼ିବାରେ ବାଧା ଦିଏ।

ଟିକିଏ ବିଚାର କରନ୍ତୁ, କଣ ଆକାଶ ଯୋଗୁଁ କାରଣରୁ ଆମଙ୍କୁ କେବେ କୌଣସି ସମସ୍ୟା ହୁଏ ? କେତେ ସୁନ୍ଦର ଆକାଶ, ସେଥିରେ ସୂର୍ଯ୍ୟ, ଚନ୍ଦ୍ରମା ଅନେକ-ଅନେକ ତାରା-ନକ୍ଷତ୍ର, ସେମାନେ ଚମକୁ ଥାଆନ୍ତି । ଅଥବା ଏହି ଯେଉଁ ନଦୀ, ପାହାଡ଼, ବନ, ବୃକ୍ଷ, ପଶୁ - କଣ ଏମାନଙ୍କର କାରଣରୁ କୌଣସି ସମସ୍ୟା ଅଥବା କୌଣସି ଦୁଃଖ ଆସେ ? ଆମେ ଯେଉଁଠି ଏହି ଜଗତର କୌଣସି ଭୌତିକ ବସ୍ତୁକୁ ଦେଖୁ, ସେହିଠାରେ ଏହା ମୋର, ଏହା ଅନ୍ୟର ବୋଲି ନାନାପ୍ରକାର ଭାବନା ମନରେ ପ୍ରକଟ ହୁଏ । ଚନ୍ଦ୍ରମାକୁ ଦେଖି, କେହି କହନ୍ତି ନାହିଁ ଯେ ଏହା ମୋର, ତୁମେ ତା ଆଡ଼କୁ ଦେଖ ନାହିଁ! ଏଭଳି କଥା କେହି କୁହନ୍ତି ? ହିମାଳୟକୁ ଦେଖି ଏହି ପର୍ବତ ମୋର ବୋଲି ଭାବନା କେବେ ଆସେ ନାହିଁ । ତାକୁ ଦେଖି ମନରେ ବଡ଼ ଆନନ୍ଦ ହୁଏ । କେବଳ ଏତିକି ନୁହେଁ, ଯଦି କାହାର ଦୃଷ୍ଟି (ଧ୍ୟାନ) ତା ଆଡ଼କୁ ନ ଯାଇଥାଏ, ତେବେ ତାକୁ କହୁ - ଆରେ ଦେଖ! ହିମାଚ୍ଛାଦିତ (ବରଫାବୃତ) ପର୍ବତ କେତେ ସୁନ୍ଦର ଲାଗୁଛି । ଦେଖନ୍ତୁ, ଏହି ଯେଉଁ ଭଗବାନଙ୍କର ମାୟା ସେ ଆମ୍ଭମାନଙ୍କୁ ଦୁଃଖ ଅଥବା କଷ୍ଟ ଦିଏ ନାହିଁ । କିନ୍ତୁ ଯେଉଁଠାରେ ମୁଁ-ମୋର, ଏହାର - ତାର ଅଥବା ନିଜର - ପରର ଭାବ ମନରେ ଆସେ, ସେହିଠାରେ ହିଁ ରାଗ-ଦ୍ୱେଷ ମଧ୍ୟ ଆସିଥାଏ । ତେବେ ପୁଣି ମୁଁ କର୍ତ୍ତା -

ଏହିଭଳି ଭାବ ମଧ୍ୟ ଆସିଥାଏ। ଏହି ଯେଉଁ ଅବିଦ୍ୟା ମାୟା - ଏହା ହିଁ ଅନାତ୍ମାରେ ଆତ୍ମବୁଦ୍ଧି କରାଇ ଦିଏ ।

ମାୟା ତାକୁ କୁହାଯାଏ, ଯାହା କୌଣସି ବସ୍ତୁକୁ ଯିଏ ଯେଉଁଭଳି ତାକୁ ସେହିଭଳି ନ ଦେଖାଇ ଅଲଗା ରୂପରେ ଦେଖାଏ ଅର୍ଥାତ୍ ତାର ଯଥାର୍ଥ ରୂପ ନ ଦେଖାଇ ତାକୁ ଅନ୍ୟଥା ରୂପରେ ଦେଖାଏ । ତାପରେ ସେହି ଅନ୍ୟଥା ରୂପକୁ ଆମ୍ଭେ ସତ୍ୟ ମାନି ବସିଥାଉ। ଯିଏ ଯେଉଁ ଭଳି ନୁହେଁ ତାକୁ ସେହି ଭଳି ଦେଖାଇବା ହେଉଛି ମାୟାର କାର୍ଯ୍ୟ । ଏହି ମାୟା ଯୋଗୁଁ ଆମ୍ଭେମାନେ ମୋହିତ ହୋଇଥାଉ । ମାୟାର ଏହି ଲକ୍ଷଣ ଆମେମାନେ ପୂର୍ବରୁ ମଧ୍ୟ ବିଚାର କରିଛନ୍ତି। **'ଯନ୍ନୟେନ ବିରୁଧ୍ୟତେ'** ଯିଏ ସମସ୍ତ ତର୍କକୁ ବିରୋଧ କରେ ଅର୍ଥାତ୍ ଯାହା ତର୍କ ଦ୍ୱାରା ସିଦ୍ଧ ହୁଏ ନାହିଁ । କେବଳ ଏତିକି ନୁହେଁ, ବରଂ ତା ବିଷୟରେ ଯେତେ ତର୍କ କଲେ ମଧ୍ୟ ସେ ସେତିକି-ସେତିକି ଜଟିଳ ପ୍ରତୀତ ହୋଇଥାଏ, ଯାହା କୌଣସି ରୀତି ପ୍ରକାରେ ବୁଝି ନ ହୁଏ, ତାକୁ ମାୟା କୁହାଯାଏ ।

**ଏଷା ମାୟା ଭଗବତଃ ସର୍ଗସ୍ଥିତ୍ୟନ୍ତକାରିଣୀ**
**ତ୍ରିବର୍ଣ୍ଣା ବର୍ଣ୍ଣିତାସ୍ମାଭିଃ କିଂ ଭୂୟଃ ଶ୍ରୋତୁମିଚ୍ଛସି ॥** (୧୧.୩.୧୬)

ଏହି ମାୟା ସତ୍ୱଗୁଣ, ରଜୋଗୁଣ ତଥା ତମୋଗୁଣ ଆତ୍ମିକ ହୋଇଥାଏ । ଈଶ୍ୱରଙ୍କର ଅଧ୍ୟକ୍ଷତାରେ ସେ ସୃଷ୍ଟିର ଉତ୍ପତ୍ତି, ସ୍ଥିତି, ତଥା ଲୟ କରିଥାଏ । ତାର ନିଜର କୌଣସି ସ୍ୱତନ୍ତ୍ର ସତ୍ତା ଅଥବା ଶକ୍ତି ନ ଥାଏ । ତଥାପି ଆମେ ଯେତେ ବେଳେ ଈଶ୍ୱରଙ୍କର ଅସ୍ତିତ୍ୱକୁ ଭୂଲିଯାଉ ଏବଂ ମାୟା (ପ୍ରକୃତି)ର ଅସ୍ତିତ୍ୱକୁ ସ୍ୱତନ୍ତ୍ର ରୂପରେ ସ୍ୱୀକାର କରି ପୁଣି ମାନି ନେଉ ସେତେବେଳେ ସେ ମାୟା ଆମକୁ ତାର ମୋହଜାଲରେ ବାନ୍ଧି ଦେଇଥାଏ । ଏହାର ବିପରୀତ ଯଦି ମନରେ ଭଗବାନଙ୍କର ସ୍ମୃତି ରହିଥାଏ ଏବଂ ତାଙ୍କୁ ହିଁ ମାୟାର ପ୍ରେରକ ରୂପରେ ଜାଣି ନେବା, ସେତେବେଳେ ସେହି ମାୟା ଆମମାନଙ୍କୁ ବାନ୍ଧିପାରେ ନାହିଁ । ମାୟାର ଏହିସବୁ ଲକ୍ଷଣ କହି ଯୋଗୀଶ୍ୱର ଅନ୍ତରୀକ୍ଷଜୀ କହୁଛନ୍ତି, "କୁହନ୍ତୁ, ଏବେ ଆଉ କଣ ଜାଣିବାକୁ ଚାହୁଁଛନ୍ତି ?" ତାପରେ ବିଦେହ ରାଜା ନିମି ସ୍ୱାଭାବିକ ପ୍ରଶ୍ନ ପଚାରିଲେ ଯେ ଭଗବନ୍ ! ଏହି ମାୟାରୁ ପାର ହେବା ନିମନ୍ତେ ଉପାୟ କ'ଣ ?

## ଚତୁର୍ଥ ପ୍ରଶ୍ନ - ମାୟାକୁ ଉତ୍ତୀର୍ଣ୍ଣ ହେବାର ଉପାୟ

ଏବେ ଏଠାରେ ଟିକିଏ ପ୍ରଶ୍ନର କ୍ରମ ଆଡ଼କୁ ଧ୍ୟାନ ଦେବେ । ପ୍ରଥମ ପ୍ରଶ୍ନ ଥିଲା ଭାଗବତ ଧର୍ମ କଣ ? ଦ୍ୱିତୀୟ ଥିଲା ଭଗବତ୍ ଭକ୍ତ କାହାକୁ କହନ୍ତି ? ଏବଂ ତାଙ୍କର ଲକ୍ଷଣ କଣ ? ତୃତୀୟ ପ୍ରଶ୍ନ - ଭକ୍ତିରେ ବାଧକ ହେଉଥିବା ମାୟାର ସ୍ୱରୂପ କଣ ? ଏବେ ଚତୁର୍ଥ ପ୍ରଶ୍ନ - ଏହି ମାୟାକୁ କିପରି ପାର କରିବାକୁ ହେବ ? ଏଭଳି ସୁନ୍ଦର ପ୍ରଶ୍ନ ରାଜା ନିମି ପଚାରୁଛନ୍ତି । କହୁଛନ୍ତି -

**ଯଥୈତାମୈଶ୍ୱରୀଂ ମାୟାଂ ଦୁସ୍ତରାମକୃତାତ୍ମଭିଃ ।**
**ତରନ୍ତ୍ୟଞ୍ଜଃ ସ୍ଥୂଲଧିୟୋ ମହର୍ଷ ଇଦମୁଚ୍ୟତାମ୍ ॥** (୧୧.୩.୧୭)

ଭଗବନ୍ ! ମାୟାକୁ ପାର କରିବା ବହୁତ କଠିନ । '**ଅକୃତାତ୍ମଭିଃ**'- ଯିଏ ନିଜେ ନିଜ ଉପରେ ସଂଯମ ରଖିନାହିଁ, ସ୍ୱୟଂକୁ ଅନୁଶାସନରେ ରଖି ନାହିଁ, ଏଭଳି ଅଜ୍ଞାନୀ ଲୋକମାନଙ୍କର ନିମନ୍ତେ ମାୟା ବଡ଼ ଦୁସ୍ତର ହୋଇଥାଏ। ଦେଖନ୍ତୁ, ଗୀତାରେ ମଧ୍ୟ ଭଗବାନ ଏହିଭଳି କହିଛନ୍ତି ।

**ଦୈବୀ ହ୍ୟେଷା ଗୁଣମୟୀ ମମ ମାୟା ଦୁରତ୍ୟୟା ।**
**ମାମେବ ଯେ ପ୍ରପଦ୍ୟନ୍ତେ ମାୟାମେତାଂ ତରନ୍ତି ତେ ॥**

(ଭ.ଗୀତା ୭.୧୪)

ଭଗବାନ୍ ଶ୍ରୀକୃଷ୍ଣ କହୁଛନ୍ତି, "ମୋର ମାୟାକୁ ପାର କରିବା ବଡ଼ କଠିନ, କିନ୍ତୁ ଯିଏ ମୋର ଶରଣରେ ଆସନ୍ତି ସେମାନେ ତାକୁ ବଡ଼ ସହଜରେ ପାର କରି ଥାଆନ୍ତି ।" ଯେଉଁ ଭଳି ଭାବରେ ମାଛ ଧରିଲା ଲୋକ ଯେତେବେଳେ ଜାଲ ପ୍ରସାରଣ କରି ମାଛ ଧରିବାକୁ ନଦୀରେ ଠିଆ ହୁଏ, ସେତେବେଳେ ଯେଉଁ ମାଛ ସବୁ ତାର ପାଦ ପାଖରେ ରହିଥାଆନ୍ତି, ଅଥବା ପହଞ୍ଚି ଯାଇଥାଆନ୍ତି, ସେମାନେ ସେହି ଜାଲରେ ପଡନ୍ତି ନାହିଁ । ସେହିଭଳି ଭାବରେ ଯେଉଁମାନେ ଭଗବାନଙ୍କର ଶରଣ ଗ୍ରହଣ କରନ୍ତି, ସେମାନେ ମାୟାରେ ବାନ୍ଧି ହୁଅନ୍ତି ନାହିଁ । ଏହାକୁ ଶ୍ରୀ ଗୀତାର ଭାଷାରେ '**ମାମେବ ଯେ ପ୍ରପଦ୍ୟନ୍ତେ**' କୁହାଯାଇଛି । ପାଦର ଉପରି ଭାଗକୁ 'ପ୍ରପଦ' ବୋଲି କୁହାଯାଏ । 'ପ୍ରପଦ୍ୟନ୍ତେ'- ଯେଉଁମାନେ ତାଙ୍କର ପାଖରେ ରହିଥାନ୍ତି, ଅର୍ଥ ଯେଉଁମାନେ ଭଗବାନଙ୍କର ଶରଣରେ ଯାଆନ୍ତି, ତାଙ୍କ ଉପରେ ମାୟାର କୌଣସି ପ୍ରଭାବ ପଡେ ନାହିଁ । କିନ୍ତୁ ଯେଉଁମାନେ ଭୋଗରେ ଆସକ୍ତି ହୋଇ ତାକୁ ଭୋଗ କରିବା ନିମନ୍ତେ ଭଗବାନଙ୍କର ଚରଣଠାରୁ ଦୂରକୁ ଚାଲିଯାଆନ୍ତି, ସେମାନେ ମାୟା ଜାଲରେ ଧରାପଡନ୍ତି ।

କହିବାର ତାତ୍ପର୍ଯ୍ୟ ଯେ ଭଗବାନଙ୍କର ଚରଣକୁ ଛାଡ ନାହିଁ । ସେଥିପାଇଁ ତ କୁହାଯାଏ - **'ଜାଉଁ କହାଁ ତଜି ଚରଣ ତିହାରେ'** ଆପଣଙ୍କର ଚରଣକୁ ଛାଡି ମୁଁ ଯିବି କୁଆଡେ ? କାହିଁକିନା ଯେଉଁଠିକୁ ଯାଉଛି ସେହିଠାରେ ବାନ୍ଧି ହୋଇଯାଉଛି, ସିଧା-ସିଧା କଥା ହେଲା ଏତିକି ।

ଏଠାରେ ରାଜା ନିମି କହୁଛନ୍ତି ଯେ ଏବେ କୃପା କରି ଆପଣ କୁହନ୍ତୁ ଯେ ଯାହାର ବୁଦ୍ଧି ପ୍ରଖର ନୁହଁ, ଅର୍ଥାତ୍ ଯିଏ ସ୍ଥୂଳ ବୁଦ୍ଧି ଯୁକ୍ତ ହୋଇଥିବ, ସେ ମାୟାକୁ କେଉଁଭଳି ଭାବରେ ପାର କରିପାରିବ ? ଏହି ପ୍ରଶ୍ନର ଉତ୍ତର **ପ୍ରବୁଦ୍ଧ** ନାମକ ଚତୁର୍ଥ ଯୋଗୀଶ୍ୱର ଦେଇଛନ୍ତି ।

ମାଣ୍ଡୁକ୍ୟ କାରିକାରେ ଶ୍ରୀଗୌଡପାଦାଚାର୍ଯ୍ୟ କହିଛନ୍ତି ଯେ ଅନାଦି ମାୟା କାରଣରୁ ଶୋଇଥିବା ଏହି ଜୀବ ଯେତେବେଳେ **'ପ୍ରବୁଧତେ'** ଜାଗ୍ରତ ହୁଏ -

**ଅନାଦି ମାୟୟା ସୁପ୍ତଃ ଯଦାଜୀବ ପ୍ରବୁଧତେ ।**

**ଅଜଂ ଅନିଦ୍ରଂ ଅସ୍ୱପ୍ନମାତ୍ମାନଂ ବୁଧତେ ତଦା ।**

(ମାଣ୍ଡୁକ୍ୟ କାରିକା ୧.୧୬)

ସେତେବେଳେ ସେ ଅଦ୍ୱେତ ଆତ୍ମାକୁ ଜାଣି ନିଏ। ତେଣୁ **'ପ୍ରବୁଦ୍ଧ'** ହେଉଛି ସେହି ଯିଏ ମାୟାରୂପୀ ନିଦ୍ରାରୁ ଜାଗ୍ରତ ହୋଇଗଲାଣି। ସେଥିପାଇଁ ପ୍ରବୁଦ୍ଧ ଯୋଗୀ ବର୍ଣ୍ଣନ କରୁଛନ୍ତି ଯେ ମାୟାକୁ କିପରି ଭାବରେ ପାର କରାଯାଇପାରେ ? ଦେଖନ୍ତୁ, ସ୍ୱପ୍ନ ମାୟାଠାରୁ ମୁକ୍ତ ହେବାର କଣ ଉପାୟ? ଜାଗ୍ରତ ହେବା ! ଏହାର ଅତିରିକ୍ତ ଅନ୍ୟ କୌଣସି ବିକଳ୍ପ ନାହିଁ । ଜାଗ୍ରତ ନ ହୋଇ ସ୍ୱପ୍ନ ଦୂର ହୁଏ ନାହିଁ । ଦଉଡି ଦେଖି ଯଦି କେହି ସର୍ପ ବୋଲି ବିଚାର କରେ, ଯେଉଁ ପର୍ଯ୍ୟନ୍ତ ଏହା ସର୍ପ ନୁହେଁ, ଦଉଡି ଅଟେ, ଏଭଳି ଭାବରେ ନ ଜାଣେ ସେ ପର୍ଯ୍ୟନ୍ତ ଭ୍ରାନ୍ତି ସମାପ୍ତ ହୁଏ ନାହିଁ । ଏହି ଭ୍ରାନ୍ତି ପ୍ରାଣାୟାମ ଦ୍ୱାରା ବିନାଶ ହୁଏ ନାହିଁ । ଦଉଡି ସ୍ଥାନରେ ସର୍ପ ଦେଖୁଥିବା ବ୍ୟକ୍ତି ଯଦି ପ୍ରାଣାୟାମ କରିବା ନିମନ୍ତେ ବସେ, ତେବେ ତାକୁ ସର୍ପ ଦେଖାଯିବା ବନ୍ଦ ହୋଇଯିବ କିନ୍ତୁ ଦଉଡିର ବୋଧ ହେବ ନାହିଁ । ତେଣୁ ଚକ୍ଷୁ ଖୋଲିବା ମାତ୍ରେଣ ଅଥବା ପ୍ରାଣାୟାମରୁ ଉଠିଲା ପରେ ସେହି ସର୍ପ ପୂର୍ବବତ୍ ହିଁ ଦେଖାଯିବ । ସେ ଭ୍ରାମକ ସର୍ପ ସେହି ପର୍ଯ୍ୟନ୍ତ ରହିବ - ଯେଉଁ ପର୍ଯ୍ୟନ୍ତ ଦଉଡିର ଜ୍ଞାନ ନ ହୋଇଛି।

ପ୍ରବୁଦ୍ଧଜୀ କହୁଛନ୍ତି -

**କର୍ମାଣ୍ୟାରଭମାଣାନାଂ ଦୁଃଖହତୈ ସୁଖାୟ ଚ ।** (୧୧.୩.୧୮)

ଲୋକମାନେ ସୁଖପ୍ରାପ୍ତି ନିମନ୍ତେ, ଦୁଃଖ ନିବୃତ୍ତି ନିମନ୍ତେ କର୍ମ ତ କରନ୍ତି, କିନ୍ତୁ ତଦ୍ଦ୍ୱାରା ସେମାନଙ୍କର ଦୁଃଖ ନିବୃତ୍ତ ହୁଏ ନାହିଁ । ଶ୍ରୀବିଦ୍ୟାରଣ୍ୟ ସ୍ୱାମୀଜୀ କୁହନ୍ତି ଯେ ଏହି ଲୋକମାନେ ବଡ଼ ବିଚିତ୍ର । **'ପୁଣ୍ୟସ୍ୟ ଫଳମିଚ୍ଛନ୍ତି ପୁଣ୍ୟଂ ନ ଇଚ୍ଛନ୍ତି ମାନବାଃ'** ସେମାନେ ପୁଣ୍ୟର ଫଳକୁ ତ ଚାହୁଁଛନ୍ତି, କିନ୍ତୁ ପୁଣ୍ୟ କରନ୍ତି ନାହିଁ । ଏହା ସତ୍ୟ କଥା ନା ! କେବଳ ସେତିକି ନୁହେଁ, ପାପର ଫଳ ଭୋଗ କରିବାକୁ ଚାହୁଁନାହାନ୍ତି, କିନ୍ତୁ ପ୍ରଯତ୍ନ ପୂର୍ବକ ପାପ କରିଥାଆନ୍ତି । ହତ୍ୟା କରନ୍ତି, ଚୋରୀ କରନ୍ତି, ଦୁରାଚାର, ଅଭିଚାର, ବ୍ୟଭିଚାର ଆଦି ନାନା ପ୍ରକାର ପାପାଚାର କରନ୍ତି । ତାହା ମଧ୍ୟ ଯୋଜନା ପୂର୍ବକ କରନ୍ତି। ପରନ୍ତୁ ଏହି ନିଷିଦ୍ଧ କର୍ମର ଫଳକୁ ଚାହାନ୍ତି ନାହିଁ । ଯେଉଁ ଭଳି ଭାବରେ ଫଳର ଆବଶ୍ୟକ ସେହି ଅନୁରୂପ କର୍ମ କରନ୍ତି ନାହିଁ ।

ଏହି କଥାକୁ ବୁଝି ନ ପାରି ଲୋକମାନେ ଦିନ ରାତ୍ରି ଧନ ସଂଗ୍ରହ କରିବା ନିମନ୍ତେ ଅଥବା ସାଂସାରିକ ଭୋଗରେ ବ୍ୟସ୍ତ ରୁହନ୍ତି । ସେମାନେ ଏହାଠାରୁ କେବେହେଲେ ମୁକ୍ତି ପ୍ରାପ୍ତି କରିପାରନ୍ତି ନାହିଁ । ଏଭଳି କହିବା ଦ୍ୱାରା ବଡ଼ ସ୍ୱାଭାବିକ ପ୍ରଶ୍ନ ଉଠେ ଯେ କଣ କରିବା ଦ୍ୱାରା ଏହି ମାୟାରୁ ମୁକ୍ତି ମିଳିବ ? କହୁଛନ୍ତି - **'ତସ୍ମାତ୍ ଗୁରୁଂ ପ୍ରପଦ୍ୟେତ'** ଗୁରୁଙ୍କ ପାଖକୁ ଯାଅ କିନ୍ତୁ ଦେଖନ୍ତୁ, ଗୁରୁଙ୍କ ପାଖକୁ ଯିବ କିଏ ? **'ଜିଜ୍ଞାସୁ ନ ତୁ ବୁଭୁକ୍ଷୁଃ'** ଜିଜ୍ଞାସୁ ହି ଯାଇ ପାରିବ। ଏହା ନୁହେଁ ଯେ ମୁଁ ଅମୁକ ସ୍ୱାମୀଜୀଙ୍କ ପାଖକୁ ଯାଉଛି । କାହିଁକି ? ସେ ବଡ଼ ଧନବାନ୍ ସ୍ୱାମୀଜୀ। ତାଙ୍କର ବହୁତ ଅଧିକ ଶିଷ୍ୟ ଅଛନ୍ତି। ବଡ଼ ବଡ଼ ଲୋକମାନେ ତାଙ୍କ ପାଖକୁ ଆସନ୍ତି । ବହୁତ ଫଳ, ମିଠା ଆଦି ଆଣନ୍ତି । ମୁଁ ତାଙ୍କର ଶିଷ୍ୟ ହେବି । ଦେଖନ୍ତୁ, ଯେଉଁ ବ୍ୟକ୍ତି ଖାଇବା-ପିଇବା ନିମନ୍ତେ କୌଣସି ଗୁରୁଙ୍କର ଶିଷ୍ୟ ହେଉଛି - ତାର କଣ କଲ୍ୟାଣ ହେବ ? ଗୁରୁଙ୍କର ପାଖକୁ ଜିଜ୍ଞାସୁ ହୋଇ ଯିବା ଉଚିତ୍ । ପ୍ରବୁଦ୍ଧଜୀ କହୁଛନ୍ତି -

**ତସ୍ମାତ୍ ଗୁରୁ ପ୍ରପଦ୍ୟେତ ଜିଜ୍ଞାସୁଃ ଶ୍ରେୟ ଉତ୍ତମମ୍ ।**
**ଶାବ୍ଦେ ପରେ ଚ ନିଷ୍ଣାତଂ ବ୍ରହ୍ମଣ୍ୟୁପଶମାଶ୍ରୟମ୍ ॥** (୧୧.୩.୨୧)

ଯିଏ ଶାସ୍ତ୍ରର ଅଧ୍ୟୟନ କରିଛନ୍ତି ଏବଂ ଶାସ୍ତ୍ର ଦ୍ୱାରା ନିର୍ଦ୍ଦିଷ୍ଟ ପରବ୍ରହ୍ମଙ୍କର ଚିନ୍ତନ କରି ଯାହାର ମନ ଶାନ୍ତ ହୋଇଗଲାଣି, ଅର୍ଥାତ୍ ଯିଏ ପରବ୍ରହ୍ମରେ ସ୍ଥିତ ହୋଇଗଲେଣି,

ଏଭଳି ଗୁରୁଙ୍କ ପାଖକୁ ଯିବା ଆବଶ୍ୟକ। ତାଙ୍କ ପାଖକୁ ଯାଇ -

**ତତ୍ର ଭାଗବତାନ୍ ଧର୍ମାନ୍ ଶିକ୍ଷେଦ୍ ଗୁର୍ବାତ୍ମଦୈବତଃ ।** (୧୧.୩.୨୨)

ତାଙ୍କଠାରୁ ଭାଗବତ ଧର୍ମକୁ ଶିଖିବା ଉଚିତ୍ କାହିଁକି ନା ଗୁରୁ ତ କେବଳ ଦେବତା ନୁହନ୍ତି ବରଂ ସେହିଁ ଆତ୍ମା ଅଟନ୍ତି । ତାଙ୍କୁ ହିଁ ନିଜର ଇଷ୍ଟ ଦେବ ମାନି ତାଙ୍କ ଠାରୁ ଭଲଭାବରେ ଏହି ଧର୍ମକୁ ଶିଖିବା ଉଚିତ୍ ଏବଂ ସେ ଯେଉଁ ସାଧନା କହିବେ ତାକୁ ଛଳ, କପଟ, ମାୟା ଆଦି ଛାଡି ଭଲ ଭାବରେ କରିବା ଉଚିତ୍ । ତା ସହିତ ମନରେ ଅସଙ୍ଗ ରହିବାର ପ୍ରଯତ୍ନ କରିବା ଉଚିତ ।

ଦେଖନ୍ତୁ, ସବୁଠାରୁ ବଡ଼ ସାଧନା ଆମେ ଆପଣଙ୍କୁ କହୁଛୁ । ଗୋଟିଏ କଥା ନିଶ୍ଚିତ କରି ନିଅନ୍ତୁ ଯେ ଦୁନିଆର କୌଣସି ଘଟଣାର କାରଣ ଯୋଗୁଁ ମୁଁ ମୋର ମନକୁ ବିଷମ ହେବାକୁ ଦେବି ନାହିଁ, ଉତ୍ତେଜିତ ହେବାକୁ ଦେବି ନାହିଁ। ଏଭଳି ନିଶ୍ଚୟ କରି ମନରେ ଶାନ୍ତି - ସମତା ରଖିବା ଉଚିତ୍ । ଏହା ହିଁ ସବୁଠାରୁ ବଡ଼ ସାଧନା । ସ୍ୱାମୀ ଅଖଣ୍ଡାନନ୍ଦଜୀ ସାଧନା ସନ୍ଦର୍ଭରେ ବହୁତ ଭଲ କଥା କହିଛନ୍ତି ଯେ ନିଜ ବୁଦ୍ଧିରେ ଏକତ୍ୱର ଜ୍ଞାନ ହେବା ଆବଶ୍ୟକ। ତେବେ ଦେଖ ମାୟାକୁ ପାର ପାଇବାର ଅଛି ତ ସର୍ବଦା ବୁଦ୍ଧିରେ ଏକତ୍ୱର ଜ୍ଞାନ ହେବା ପରମ ଆବଶ୍ୟକ । ଦୃଷ୍ଟିରେ ସମତା ହେଉ ଏବଂ ବ୍ୟବହାରରେ ଅସଙ୍ଗତା । ଏକତା ଜ୍ଞାନର ତାତ୍ପର୍ଯ୍ୟ ହେଲା ଯେ - ଏକ ହିଁ ପରମାତ୍ମା; ଏକ ହିଁ ତତ୍ତ୍ୱ ସବୁଠାରେ ବ୍ୟାପ୍ତ ଅଛନ୍ତି - ଏଭଳି ଜାଣିବା । ଏହା ହେଉଛି ମୋର, ଏହା ପରର ଏଭଳି ଭେଦ ଜ୍ଞାନ ଦ୍ୱାରା ମନରେ ରାଗ ଦ୍ୱେଷ ହିଁ ଉତ୍ପନ୍ନ ହୋଇଥାଏ। ତେବେ ସାଧନା ହେଉଛି ଯେ ଦୃଷ୍ଟିରେ ସମତା ହେବା ପରମ ଆବଶ୍ୟକ। ନିଜ ଭଳି ସମସ୍ତଙ୍କୁ ଦେଖିବା ଉଚିତ୍ ଏବଂ ବ୍ୟବହାର ସମୟରେ ଲୋକମାନଙ୍କ ସହିତ ଅସଙ୍ଗତା ହେବା ଉଚିତ୍ । ପ୍ରାୟତଃ ଆମ୍ଭେମାନେ ଯେଉଁମାନଙ୍କ ସହିତ କାମ କରୁଛୁ - ସେମାନଙ୍କ ସହିତ ଆସକ୍ତ ହୋଇଯାଉ । ଯେଉଁ ଭଳି ଭାବରେ ରାଜା ଭରତ ହରିଣ ଶାବକର ସେବା କରୁଥିଲେ । ସେବା କରିବା ତ ବହୁତ ଭଲ କାର୍ଯ୍ୟ, କିନ୍ତୁ ସେବା କରି-କରି ସେ ସେଥିରେ ଆସକ୍ତ ହୋଇଗଲେ, କାହିଁକି ନା ତାଙ୍କର ବ୍ୟବହାରରେ ଅସଙ୍ଗତା ଆସି ନ ଥିଲେ । ସେଥିପାଇଁ ସେ ମାୟାରେ ବାନ୍ଧି ହୋଇଗଲେ । ଏକତା, ସମତା ଏବଂ ଅସଙ୍ଗତା ଏହି ତିନୋଟି ବିଷୟରେ ଏଠାରେ ବର୍ଣ୍ଣନ ହୋଇଛି । ଗୁରୁଙ୍କୁ ପାଖକୁ ଯାଇ ଭଲ ଭାବରେ ଏହା ଶିଖି ନେବା ଉଚିତ୍ ।

**ବ୍ରହ୍ମଚର୍ଯ୍ୟମହିଂସା ଚ ସମତ୍ୱଂ ଦ୍ୱନ୍ଦସଂଜ୍ଞୟୋଃ ।** (୧୧.୩.୨୪)
**ସର୍ବତ୍ରମ୍ୱେଶ୍ୱରାନ୍ୱୀକ୍ଷାଂ କୈବଲ୍ୟମନିକେତତାମ୍ ॥** (୧୧.୩.୨୫)

ସର୍ବତ୍ର ଆତ୍ମରୂପ ଈଶ୍ୱରଙ୍କୁ ଦର୍ଶନ କରିବା ଉଚିତ୍ । ଈଶ୍ୱର ମୋର ସ୍ୱରୂପ ଏବଂ ସେହି ସବୁରି ଭିତରେ ହିଁ ବିଦ୍ୟମାନ, ଏହିଭଳି ଭାବନା ରଖିବା ଉଚିତ୍। କାହିଁକି ନା ଯେତେବେଳେ ଆମେ ସମତ୍ୱ ଉପରେ ଧ୍ୟାନ ଦେବାକୁ ଲାଗୁ ସେତେବେଳେ ଆମର ମନ ସମ ହେବାକୁ ଲାଗେ । ଅର୍ଥାତ୍ ଯେଉଁ ଏକ ତତ୍ତ୍ୱ- ଈଶ୍ୱର ସବୁଠାରେ ଅଛନ୍ତି, ତାକୁ ଧ୍ୟାନରେ ରଖି ତଥା ତା ପ୍ରତି ଦୃଷ୍ଟି ଦେଇ ବ୍ୟବହାର କରିପାରିଲେ ଧିରେ ଧିରେ ସମତା ଆସେ । ପ୍ରବୁଦ୍ଧଜୀ ଆଗକୁ କହୁଛନ୍ତି- **'ଶ୍ରଦ୍ଧାଂ ଭାଗବତେ ଶାସ୍ତ୍ରେ'** ଭାଗବତ ଶାସ୍ତ୍ରରେ ଶ୍ରଦ୍ଧା ହେବା ଉଚିତ୍ ଏବଂ ଏଠାରେ ଯେଉଁ ବିଶେଷ କଥା କୁହାଯାଇଛି ତାକୁ ଧ୍ୟାନରେ ରଖିବା ଉଚିତ୍ । ତା ହେଉଛି - **'ଅନିନ୍ଦାଂ ଅନ୍ୟତ୍ର ଚାପି ହି'**(୧୧.୩.୨୬) ନିଜ ଶାସ୍ତ୍ର ପ୍ରତି ତ ଶ୍ରଦ୍ଧା ରଖିବା ଉଚିତ୍, କିନ୍ତୁ ଅନ୍ୟ ଶାସ୍ତ୍ରର ନିନ୍ଦା କରିବା ଉଚିତ ନୁହେଁ, ଅନ୍ୟ ଧର୍ମଗ୍ରନ୍ଥକୁ, ଅନ୍ୟ ଶାସ୍ତ୍ରକୁ ନିନ୍ଦା କରୁଥିବା ଧର୍ମର ଅଭିମାନୀମାନଙ୍କୁ ଏହା ଭଲ ଭାବରେ ବୁଝିବା ଉଚିତ୍ । ଯେଉଁଭଳି ଭାବରେ ହିନ୍ଦୁମାନଙ୍କ ଭିତରେ କିଛି ବୈଷ୍ଣବମାନେ ଶୈବମାନଙ୍କର ନିନ୍ଦା କରନ୍ତି । ଏବଂ କିଛି ଶୈବମାନେ ବୈଷ୍ଣବମାନଙ୍କର ନିନ୍ଦା କରନ୍ତି। । ସେମାନେ ବିଚାର କରନ୍ତି ଯେ ଆମର ଶାସ୍ତ୍ର ହିଁ ସତ୍ୟ । ଯେଉଁ ଭଳି ଭାବରେ କେହି କେହି ଗୀତା ପଢୁଥିଲା ବ୍ୟକ୍ତି ଏପରି ଅଛନ୍ତି ଯେ ଯଦି କେହି ତାଙ୍କର ସମ୍ମୁଖରେ ଅନ୍ୟ କୌଣସି ଗ୍ରନ୍ଥର ନାମ ନେବା ମାତ୍ରେ - ବାସ୍ ! ସେତିକିରେ ସେମାନେ ସେ ଶାସ୍ତ୍ରର ନିନ୍ଦା କରିବାକୁ ଲାଗନ୍ତି । ଏଭଳି ହେବା ଉଚିତ୍ ନୁହେଁ । ପ୍ରହ୍ଲାଦଜୀଙ୍କ ଦ୍ୱାରା ବର୍ଣ୍ଣନ କରାଯାଇଥିବା ନବବିଧା-ନବଧା ଭକ୍ତି କରିବା ଉଚିତ୍ । ଭଗବାନଙ୍କ ଅଦ୍‌ଭୂତ କର୍ମର, ତାଙ୍କ ଲୀଳାର ଶ୍ରବଣ, କୀର୍ତ୍ତନ ଏବଂ ଧ୍ୟାନ କରିବା ଉଚିତ୍ । ଯେକୌଣସି କର୍ମ କଲେ ମଧ୍ୟ ସେ ସବୁକୁ ଭଗବାନଙ୍କ ନିମନ୍ତେ କରିବା ଉଚିତ। ତାଙ୍କୁ ହିଁ ସବୁକିଛି ଅର୍ପଣ କରିବା ଉଚିତ୍ ।

ଏବେ ଦେଖନ୍ତୁ ଆମର ବୃତ୍ତିଗୁଡିକ କିପରି ହୋଇଥାଏ। ମନରେ ବିଚାର ଆସିଲା ଯେ ଜଣେ ବ୍ରାହ୍ମଣକୁ ମୁଁ ଏକ ଗାଈ ଦାନରେ ଦେବି । ଯେତେବେଳେ ଦାନ ଦେବାର ସମୟ ଆସିଲା ସେତେବେଳେ ବିଚାର କରିବାକୁ ଲାଗିଲା କେଉଁ ଗାଈଟା ସବୁଠାରୁ କମ୍ ଦୁଗ୍ଧ ଦେଉଛି ? ଅଥବା କୌଣସି ସାଧୁ ସନ୍ଥ ଆସିଲା ବେଳେ ମନରେ ବିଚାର ଆସିଲା ତାଙ୍କୁ ଏକ ହଜାର ଟଙ୍କା ଦକ୍ଷିଣା ଦେଇ ଦେବା ଉଚିତ୍ । ପ୍ରଥମେ ଯେଉଁ ଭାବନା କିଛି

ସମୟ ପରେ ଅନ୍ୟ ଏକ ବିଚାର ଆସେ ଯେ ତାଙ୍କୁ ଏତେ ଟଙ୍କା ଦେବା କଣ ଠିକ୍ ହେବ ? ପାଞ୍ଚ ଶହ ଟଙ୍କା ମଧ୍ୟ ବହୁତ ଅଧିକ । ଯେତେବେଳେ ଚେକ୍‌ରେ ଲେଖିବାକୁ ବସିଥାଉ ସେତେବେଳେ ଆସି ଦୁଇଶହ ଟଙ୍କାରେ ଆସି ପହଞ୍ଚେ ପୁଣି ଲେଖିଲା ବେଳକୁ ଏକଶହ ଟଙ୍କା ଲେଖି ଦେଇଥାଉ । ଶହେ ଟଙ୍କା ଲେଖିଲା ପରେ ପୁଣି ଲାଗେ ଇଏ କଣ ଲେଖି ଦେଲି । ତେବେ ଚେକ୍‌ରେ ହସ୍ତାକ୍ଷର ନ କରି ଦେଇ ଦିଅନ୍ତି। କହନ୍ତି ଆରେ ! ନାମରେ କଣ ଅଛି ? ମୋର ନାମର କୌଣସି ଆବଶ୍ୟକତା ନାହିଁ । ନାମ ଆବଶ୍ୟକ ନାହିଁ ତ ନଗଦ ଦେଇ ଥାଆନ୍ତେ । ଦେଖନ୍ତୁ, ଚେକ୍ ଦିଅନ୍ତି, କିନ୍ତୁ ତା ଉପରେ ହସ୍ତାକ୍ଷର କରନ୍ତି ନାହିଁ । ଏଭଳି ଆମର ବୃତ୍ତି । ଏଠାରେ କହୁଛନ୍ତି -

**ଇଷ୍ଟଂ ଦତ୍ତଂ ତପୋ ଜପ୍ତଂ ବୃତ୍ତଂ ଯଚ୍ଚାତ୍ମନଃ ପ୍ରିୟମ୍ ।**
**ଦାରାନ୍ ସୁତାନ୍ ଗୃହାନ୍ ପ୍ରାଣାନ୍ ଯତ୍ ପରସ୍ମୈ ନିବେଦନମ୍ ॥**

(୧୧.୩.୨୮)

ତୁମେ ଯଜ୍ଞ, ଦାନ, ତପ, ଜପ ଆଦି ଯାହା କରନା କାହିଁକି ଏବଂ ଯାହା କିଛି ତୁମକୁ ପ୍ରିୟ ଲାଗୁଛି, ଯେଉଁଭଳି ଭାବରେ ପତ୍ନୀ, ପୁତ୍ର, ଘର, ପ୍ରାଣ, ଏହା ସବୁ କିଛି **'ପରସ୍ମୈ ନିବେଦନଂ'** ପରମାତ୍ମାଙ୍କୁ ନିବେଦନ କରି ଦେବା ଉଚିତ। ଆମ୍ଭେ ତ ଏଭଳି ଲୋକ ଯେ କେବେ ଭଗବାନଙ୍କୁ କିଛି ଅର୍ପଣ କରିବାକୁ ହେଲେ, ଆମ୍ଭେ ତାହା ହିଁ ଅର୍ପଣ କରୁ ଯାହା ଆମକୁ ପସନ୍ଦ ନୁହେଁ, ଅଥବା ଆମର ଯାହା କେବେ କାର୍ଯ୍ୟରେ ଆସିବ ନାହିଁ।

ନିଜର ସବୁକିଛି ଭଗବାନଙ୍କୁ ଅର୍ପିତ କରୁଥିଲେ ଦିନେ ଲାଗିବ ଯେ ସବୁ କିଛି ଭଗବାନଙ୍କର ଅଟେ । (ଆମେ ତାଙ୍କୁ କଣ ଅର୍ପିତ କରିବୁ ?) ଆମେ ଅନଧିକାର 'ମମ' ଭାବ କରି ନେଇଛୁ । ତାତ୍ପର୍ଯ୍ୟ ସେଥିରେ ନିଜର ସବୁ କିଛି ଭଗବାନଙ୍କୁ ଅର୍ପିତ ଏହା ଯେ କରିବା ଦ୍ୱାରା, ଏହିଭଳି ଭାବ ଦ୍ୱାରା ମନରେ ଭକ୍ତିର ପ୍ରକଟ ହୁଏ । ଭକ୍ତିର
ପାରେ ନାହିଁ । ତେଣୁ ମାୟାକୁ ପାର ହେବା ନିମନ୍ତେ ଉପାୟ
କ୍ତି । ଏବେ ଦେଖନ୍ତୁ, ଏହି ଭଗବତ୍ ଭକ୍ତି କିଭଳି ପ୍ରାପ୍ତ ହେବ ?
ହେବ ? ସଂଯମପୂର୍ବକ, ଶ୍ରଦ୍ଧାପୂର୍ବକ ଗୁରୁଜୀଙ୍କର ସେବା କରିବା ଦ୍ୱାରା
ହୋଇଥାଏ । ଶେଷରେ ତାର ପରିଣତି ହେଉଛି ଭକ୍ତି । ତା'ପରେ-

**କ୍ୱଚିଦ୍ ରୁଦନ୍ତ୍ୟଚ୍ୟୁତଚିନ୍ତୟା କ୍ୱଚି**
**ଦ୍ଧସନ୍ତି ନନ୍ଦନ୍ତି ବଦନ୍ତ୍ୟଲୌକିକାଃ ।**
**ନୃତ୍ୟନ୍ତି ଗାୟନ୍ତ୍ୟନୁଶୀଲୟନ୍ତ୍ୟଜଂ**
**ଭବନ୍ତି ତୂଷ୍ଣୀଂ ପରମେତ୍ୟ ନିର୍ବୃତାଃ ॥** (୧୧.୩.୩୨)

ଯେତେବେଳେ ତାକୁ ଭକ୍ତି ରସ ପ୍ରାପ୍ତ ହୋଇଯାଏ, ସେତେବେଳେ ସେ ଭକ୍ତ କେବେ କାନ୍ଦିବାକୁ ଲାଗେ ତ କେବେ ହସିବାକୁ ଲାଗେ । କେବେ ଗାଇବାକୁ ଲାଗେ ତ କେବେ ନୃତ୍ୟ କରିବାକୁ ଲାଗେ ଏବଂ କେବେ 'ନିବୃତାଃ' ପୂର୍ଣ୍ଣ ଶାନ୍ତ ହୋଇଯାଏ। ତାର ମନର ବୃତ୍ତି ପୂର୍ଣ୍ଣ ରୂପରେ ଶାନ୍ତ ହୋଇଯାଏ।

**ନାରାୟଣପରୋ ମାୟାମଞ୍ଜସ୍ତରତି ଦୁସ୍ତରାମ୍ ॥** (୧୧.୩.୩୩)

ଅର୍ଥାତ୍ ଯେଉଁ ବ୍ୟକ୍ତି ନାରାୟଣ ପରାୟଣ ହୋଇ ଯାଆନ୍ତି, ନାରାୟଣ ହିଁ ମୋର ଜୀବନର ପରମ ଲକ୍ଷ, ମୋର ସମ୍ପୂର୍ଣ୍ଣ ଜୀବନ ତାଙ୍କ ପ୍ରତି ସମର୍ପିତ ତଥା ସେହିଠାରେ କେନ୍ଦ୍ରିତ - ଏହିଭଳି ଯିଏ ନିଶ୍ଚିତ କରି ନେଇସାରିଛି - ସେ ହିଁ ମାୟାକୁ ପାର କରିଯାଏ।

## ପଞ୍ଚମ ପ୍ରଶ୍ନ - ନାରାୟଣଙ୍କର ସ୍ୱରୂପ

ମାୟାରୁ ମୁକ୍ତ ହେବାର ଉପାୟ ଶୁଣି ଏବେ ରାଜା ନିମିଙ୍କୁ ଆଉ ଏକ ପ୍ରଶ୍ନ ପଚାରିବାର ଏକ ସୁନ୍ଦର ନିମିତ୍ତ ମିଳିଗଲା । ରାଜା ନିମି କହିଲେ - "ଆପଣ କହିଲେ ଯିଏ 'ନାରାୟଣ ପରାୟଣ' ହୋଇଯାଏ, ସେ ମାୟାଠାରୁ ସହଜରେ ମୁକ୍ତ ହୋଇଯାଏ। କୃପା କରି ମୋତେ ଏବେ କୁହନ୍ତୁ ଯେ 'ନାରାୟଣ'ଙ୍କର ସ୍ୱରୂପ କଣ ? ତାଙ୍କର ସ୍ୱଭାବ କିପରି ? ଦେଖନ୍ତୁ, କିପରି ସୁନ୍ଦର ପ୍ରଶ୍ନ । ପ୍ରଶ୍ନମାନଙ୍କର ସୁନ୍ଦର କ୍ରମ ଆରମ୍ଭ ହୋଇଛି । ପ୍ରଥମ ପ୍ରଶ୍ନ ଥିଲା ଯେ ଯାହାଦ୍ୱାରା ପରମଶ୍ରେୟର ପ୍ରାପ୍ତି ହୋଇଥାଏ - ସେ ଭାଗବତ ଧର୍ମ କଣ ? ଦ୍ୱିତୀୟ ଥିଲା - ଭାଗବତ କିଏ ? ତାର ଲକ୍ଷଣ କଣ ? ପୁଣି ତୃତୀୟ ପ୍ରଶ୍ନ ଥିଲା - ଭାଗବତ ଭକ୍ତିରେ ଯିଏ ବାଧକ ହୋଇଥାଏ - ସେ ମାୟା କଣ ? ସେ ମାୟାକୁ ପାର ହେବାର ଉପାୟ କଣ ? କେଉଁଠାରୁ ପ୍ରାରମ୍ଭ କରିବା ? ଏଠାରେ କୁହାଯାଇଛି ଯେ ଯିଏ ନାରାୟଣ ପରାୟଣ ହୋଇଯାଏ, ସେ ମାୟାକୁ ପାର କରିଯାଏ। ଏଭଳି କହିବା ପରେ ସ୍ୱାଭାବିକ ପ୍ରଶ୍ନ ଉଠେ ଯେ ଯେଉଁ ନାରାୟଣ ପରାୟଣ ହେବା କଥା, ତାଙ୍କର ସ୍ୱରୂପ କଣ ?"

କେହି କହନ୍ତି - ସେ କ୍ଷୀର ସାଗରରେ ରହନ୍ତି ତ କେହି କହନ୍ତି ସେ ବୈକୁଣ୍ଠ ଲୋକରେ ରହନ୍ତି । କେହି କହନ୍ତି ଗୋଲୋକରେ ରହନ୍ତି, ତ କେହି କହନ୍ତି ସେ ସାକେତ ଲୋକରେ ରହନ୍ତି ତ କେହି କହନ୍ତି ସେ ଶଙ୍ଖ, ଚକ୍ର, ଗଦା, ପଦ୍ମଧାରୀ ଚତୁର୍ଭୁଜ ଅଟନ୍ତି, କେହି କହନ୍ତି ସେ ଦ୍ୱିଭୂଜ ଅଟନ୍ତି । ବାସ୍ତବରେ ସେ କିପରି ? ତାଙ୍କର ସ୍ୱରୂପ କଣ ? ଦେଖନ୍ତୁ, ପ୍ରଭୁଙ୍କୁ ଚତୁର୍ଭୁଜ, ଦ୍ୱିଭୁଜ ମାନୁଥିବା ଭକ୍ତ ମାନଙ୍କ ଭିତରେ ବହୁତ ଝଗଡା ହୋଇଥାଏ । ଝଗଡାରେ ଜଣେ ଜଣଙ୍କର ହାତ କାଟିଥାଆନ୍ତି । ଭଗବାନ ସବୁକିଛି ଦେଖୁଥାଆନ୍ତି ଯେ ଏମାନେ କିପରି ଲୋକ ? ଏହା କୌଣସି କୌତୁହଳର ବିଷୟ ନୁହେଁ । ଭଗବାନଙ୍କର ତିଳକ କେଉଁଭଳି ହେବା ଉଚିତ ଏହି କଥାକୁ ଲୋକମାନେ କୋର୍ଟରେ କେସ୍ କରନ୍ତି । ଇଂଗ୍ରେଜମାନଙ୍କ ସମୟରେ ଏପରି ହୋଇଥିଲା । ଇଂଗ୍ରେଜ ନ୍ୟାୟାଧୀଶ ତାର କଣ ନିର୍ଣ୍ଣୟ ଶୁଣାଇ ଥାଆନ୍ତେ ? କହିଲେ ଚାରିଦିନ ବଂକା ଏବଂ ଚାରିଦିନ ସିଧା ଲଗାଉ ଥାଅ । ନ ହେଲେ ମନ୍ଦିରକୁ ହିଁ ବନ୍ଦ କରିଦିଅ । ସେ ଆଉ କଣ କହିଥାଆନ୍ତେ ? ଦେଖନ୍ତୁ, ଏପରି ମୂଢ଼ ଲୋକମାନେ ମଧ୍ୟ ଅଛନ୍ତି । ସେଥିପାଇଁ କୁହାଯାଇଛି ଯେ ମୂଢ଼ଭକ୍ତ ଅଥବା ମୂଢ଼ମିତ୍ରର ସ୍ଥାନରେ ଏକ ବୁଦ୍ଧିମାନ ଶତ୍ରୁ ହେବା ମଧ୍ୟ ବହୁତ ଭଲ। ସେ ମୂଢ଼ ଭକ୍ତମାନେ ବହୁତ କଷ୍ଟ ଦିଅନ୍ତି; ବହୁତ ଉପଦ୍ରବ କରିଥାଆନ୍ତି ।

ତେଣୁ ଏଠାରେ ପ୍ରଶ୍ନ ଯେ ସେ ନାରାୟଣଙ୍କର ସ୍ୱରୂପ କଣ ? ସେ କ୍ଷୀର ସାଗରରେ ରହନ୍ତି କି ମଧୁ ସାଗରରେ ରୁହନ୍ତି ? କେଉଁଠି ରୁହନ୍ତି ? ଶ୍ରୀମଦ୍ ଭାଗବତରେ ଏହି 'ନାରାୟଣ' ଶବ୍ଦ ବାରମ୍ବାର ଆସେ । ସେଥିପାଇଁ ଟିକିଏ ଭଲ ଭାବରେ ବୁଝିଯିବା ଉଚିତ ଯେ ନାରାୟଣଙ୍କର ସ୍ୱରୂପ କଣ?

**ନାରାୟଣାଭିଧାନସ୍ୟ ବ୍ରହ୍ମଣଃ ପରମାତ୍ମନଃ ।**
**ନିଷ୍ଠାମର୍ହଥ ନୋ ବକ୍ତୁଂ ଯୂୟଂ ହି ବ୍ରହ୍ମବିତ୍ତମାଃ ॥** (୧୧.୩.୩୪)

ରାଜା ନିମି କହିଲେ, "ଆପଣ ବ୍ରହ୍ମ ଜ୍ଞାନୀମାନଙ୍କ ଭିତରେ ଶ୍ରେଷ୍ଠ । କୃପା କରି ମୋତେ କୁହନ୍ତୁ ଯେ ଯାହାକୁ ନାରାୟଣ କହନ୍ତି, ପରମାତ୍ମା କୁହନ୍ତି, ବ୍ରହ୍ମ ମଧ୍ୟ କୁହନ୍ତି, ତାଙ୍କର ସ୍ୱରୂପ କଣ? ଏହି ଜଗତରେ ଯେଉଁ ଭିନ୍ନ-ଭିନ୍ନ ରୂପରେ ତାଙ୍କୁ ବର୍ଣ୍ଣନ କରାଯାଏ, ସତରେ କଣ ଏହା ହିଁ ତାଙ୍କର ସ୍ୱରୂପ?" ଦେଖନ୍ତୁ, ଏହି ସନ୍ଦେହର ସବୁଠାରୁ ଭଲ ଉତ୍ତର ଏକ ଶ୍ଳୋକରେ ପୂର୍ବରୁ କୁହାଯାଇଛି । ଯେତେବେଳେ ନାରାୟଣ ଭଗବାନ ଧ୍ରୁବଙ୍କର କପୋଳକୁ ଶଙ୍ଖରେ ସ୍ପର୍ଶ କରିଥିଲେ, ସେଠାରେ ଧ୍ରୁବ ତାଙ୍କୁ ସ୍ତୁତି

କରି କହିଥିଲେ -

**ଯୋଽନ୍ତଃ ପ୍ରବିଶ୍ୟ ମମ ବାଚମିମାଂ ପ୍ରସୁପ୍ତାଂ**
**ସଂଜୀବୟତ୍ୟଖିଲଶକ୍ତିଧରଃ ସ୍ୱଧାମ୍ନା ।**
**ଅନ୍ୟାଂଶ୍ଚ ହସ୍ତଚରଣଶ୍ରବଣତ୍ୱଗାଦୀନ୍**
**ପ୍ରାଣାନ୍ନମୋ ଭଗବତେ ପୁରୁଷାୟ ତୁଭ୍ୟମ୍ ॥** (୪.୯.୬)

ଯେଉଁ ଭଗବାନ ମୋର ହୃଦୟରେ ପ୍ରବେଶ କରି ମୋର ବାଣୀକୁ, ପ୍ରାଣକୁ, ଜ୍ଞାନେନ୍ଦ୍ରିୟମାନଙ୍କୁ ତଥା ଅନ୍ତଃକରଣକୁ ଚେତନା ପ୍ରଦାନ କରୁଛନ୍ତି ସେ ଚୈତନ୍ୟ ସ୍ୱରୂପ ଅଟନ୍ତି । ଏହା ହେଉଛି ପରମାତ୍ମାଙ୍କର, ନାରାୟଣଙ୍କର ବାସ୍ତବିକ ସ୍ୱରୂପ । ଯଦ୍ୟପି ଭଗବାନ ନାରାୟଣଙ୍କର ରୂପ ଚତୁର୍ଭୁଜ ଆଦି ଉପାଧି ସହିତ ବର୍ଣ୍ଣନ କରାଯାଏ, ତଥାପି ଏହା ହିଁ ହେଉଛି ତାଙ୍କର ବାସ୍ତବିକ ରୂପ । ରାଜା ନିମିଙ୍କର ପଞ୍ଚମ ପ୍ରଶ୍ନର ଉତ୍ତର **ପିପ୍ପଳାୟନ ଯୋଗୀଙ୍କ** ଦ୍ୱାରା ଦିଆଯାଇଥିଲା । ପିପ୍ପଳାୟନଜୀ କହନ୍ତି, "ଯିଏ ନାରାୟଣ ସେ ହିଁ ଏହି ବ୍ୟାପକ ବିଶ୍ୱର, ସୃଷ୍ଟିର, **'ସ୍ଥିତ୍ୟୁଦ୍ଭବପ୍ରଳୟହେତୁରହେତୁରସ୍ୟ'** ଉଦ୍ଭବ, ସ୍ଥିତି ଏବଂ ପ୍ରଳୟର ହେତୁ, କାରଣ, ତଥା ଅଧିଷ୍ଠାନ ରୂପ ଅଟନ୍ତି । ସମସ୍ତଙ୍କର କାରଣ ହେଲେ ମଧ୍ୟ ସେ ସ୍ୱୟଂ ଅକାରଣ, ତାଙ୍କର କେହି କାରଣ ଅଥବା ହେତୁ ନାହାନ୍ତି, କାହିଁକି ନା ସେ ତ ସ୍ୱତଃ ସିଦ୍ଧ ଅଟନ୍ତି ।"

**ଯତ୍ ସ୍ୱପ୍ନଜାଗରସୁଷୁପ୍ତିଷୁ ସଦ୍ ବହିଶ୍ଚ**
**ଦେହେନ୍ଦ୍ରିୟାସୁହୃଦୟାନି ଚରନ୍ତି ଯେନ**
**ସଞ୍ଜୀବିତାନି ତଦବେହି ପରଂ ନରେନ୍ଦ୍ର ॥** (୧୧.୩.୩୫)

ଏକ ପକ୍ଷରେ ପିପ୍ପଳାୟନ ଯୋଗୀଶ୍ୱର ଏଭଳି ଉତ୍ତର ଦେଲେ ଯେ ଭଗବାନ ହେଉଛନ୍ତି ସଂପୂର୍ଣ୍ଣ ସୃଷ୍ଟିର ଆଦି କାରଣ, ଏହା ହିଁ ତାଙ୍କର ସ୍ୱରୂପ । ଏବେ ଜଗତର କାରଣ ଅସତ୍ କେବେହେଲେ ହୋଇ ନ ପାରେ । ସେ ଯାହା ହେଉନା କାହିଁକି ତାହା ସତ୍ ହିଁ ହେବ । ଅର୍ଥାତ୍ ସେ ସ୍ୱୟଂ ସତ୍, ସେ ହିଁ ଦେହ-ପ୍ରାଣ-ଇନ୍ଦ୍ରିୟ ଆଦି ସମସ୍ତ ଉପାଧିମାନଙ୍କୁ ଚେତନା ପ୍ରଦାନ କରନ୍ତି ଏବଂ ସେ ହିଁ ଜାଗ୍ରତ-ସ୍ୱପ୍ନ-ସୁଷୁପ୍ତି ଏହି ତିନି ଅବସ୍ଥାକୁ ପ୍ରକାଶିତ ମଧ୍ୟ କରି ଥାଆନ୍ତି । ଏହାକୁ ହିଁ ବେଦାନ୍ତର (ଶାସ୍ତ୍ରୀୟ)ଭାଷାରେ କୁହାଯାଏ ଯେ ଯେଉଁ ବ୍ରହ୍ମ ସମସ୍ତ ଜଗତର ଅଧିଷ୍ଠାନ ଅଟେ, ସେ ହିଁ ତାର ପ୍ରକାଶକ ମଧ୍ୟ ।

**ନୈତନ୍ମନୋ ବିଶତି ବାଗୁତ ଚକ୍ଷୁରାତ୍ମା ।** (୧୧.୩.୩୬)

ଅନ୍ୟପକ୍ଷରେ ପିପ୍ପଳାୟନ ଯୋଗୀ ଏହା ମଧ୍ୟ କୁହନ୍ତି ଯେ ଏଭଳି ପରମାତ୍ମା ତତ୍ତ୍ୱକୁ ନା ତ ମନଦ୍ୱାରା ଜାଣିହେବ, ନା ବାଣୀ ଅଥବା ଚକ୍ଷୁଦ୍ୱାରା ଜାଣି ହେବ। ତେବେ ଅନ୍ୟ ଇନ୍ଦ୍ରିୟମାନଙ୍କ କଥା କଣ କୁହାଯିବ । ସତକଥା କହିବାକୁ ଗଲେ ସମସ୍ତ ଇନ୍ଦ୍ରିୟଗୁଡ଼ିକ ସେହି ଚୈତନ୍ୟ ସ୍ୱରୂପ ପରମାତ୍ମାଙ୍କର କାରଣରୁ ହିଁ ନିଜ ନିଜ ବିଷୟକୁ ଗ୍ରହଣ କରିବାରେ ସମର୍ଥ ହୁଅନ୍ତି ।

**ନାତ୍ମା ଜଜାନ ନ ମରିଷ୍ୟତି ନୈଧତେଽସୌ ॥** (୧୧.୩.୩୮)

ତାର ନା କେବେ ଜନ୍ମ ହୋଇଛି – ନା ତାକୁ କେବେ ରୋଗ ହେବ, ନା ତାର କେବେ ମୃତ୍ୟୁ ହେବ । **'ସର୍ବତ୍ର ଶଶ୍ୱଦନପାୟ୍ୟୁ ପଲବ୍ଧିମାତ୍ରଂ** (୧୧.୩.୩୮) ସେ ନିର୍ବିଶେଷ ସତ୍, ଚୈତନ୍ୟସ୍ୱରୂପ ତଥା ଉପଲବ୍ଧି – ଅନୁଭବ ସ୍ୱରୂପ ଅଟନ୍ତି । ଯେଉଁ ଲୋକ କୁହନ୍ତି ଯେ ଆତ୍ମଙ୍କୁ ଆତ୍ମାର ଅନୁଭବ ହେଉନାହିଁ, ସେ ମୂଢ଼ ଅଟନ୍ତି । ଯେଉଁ ଆତ୍ମାର କାରଣରୁ ଅନ୍ୟ ସବୁକିଛିର ଅନୁଭବ ହୁଏ, ତାର ଅନୁଭବ ତାକୁ ହେଉ ନାହିଁ !

**ବୋଧେଽପ୍ୟନୁଭବୋ ୟସ୍ୟ ନ କଥଞ୍ଚନ ଜାୟତେ ।**
**ତଂ କଥଂ ବୋଧୟେତ୍‌ଶାସ୍ତ୍ରଂ ଲୋଷ୍ଟଂ ନରସମାକୃତିମ୍ ॥**

(ଶ୍ରୀ ପଞ୍ଚଦଶୀ ୩.୧୯)

ବୋଧସ୍ୱରୂପ ଆତ୍ମାର ଯାହାକୁ ଅନୁଭବ ହେଉନାହିଁ – ସେ ତ ମନୁଷ୍ୟ ନାମରେ ମାଟିର ଟେଳାଟିଏ ମାତ୍ର । ତାକୁ ଶାସ୍ତ୍ର ମଧ୍ୟ କେଉଁଭଳି ଭାବରେ ବୁଝାଇପାରିବ ? ଏହି କଥାକୁ ମୁଁ କହୁନାହିଁ । ଏହିଭଳି ଭାବରେ ଆମର ପୂର୍ବ ଆଚାର୍ଯ୍ୟ ଶ୍ରୀ ବିଦ୍ୟାରଣ୍ୟ ସ୍ୱାମୀଜୀ ନିଜର 'ପଞ୍ଚଦଶୀ' ନାମକ ପ୍ରସିଦ୍ଧ ଗ୍ରନ୍ଥରେ କହିଛନ୍ତି । ସମସ୍ତ ବସ୍ତୁ ଚକ୍ଷୁରେ ଦେଖାଯାଉଛି କିନ୍ତୁ ଚକ୍ଷୁତ ସ୍ୱୟଂ ଦେଖାଯାଉନାହିଁ। ତଥାପି ଚକ୍ଷୁ ଅଛି । ଏଥିରେ କୌଣସି ସନ୍ଦେହ ଅଛି କି ? ବିନା ଚକ୍ଷୁରେ ତ କେହି ଦେଖିପାରନ୍ତି ନାହିଁ । ସେହିଭଳି ଭାବରେ ସମସ୍ତ ଜଗତର ଜ୍ଞାନ ହେଉଛି, ଏଥିରୁ ସିଦ୍ଧ ହୁଏ ଯେ ଅନୁଭବ ସ୍ୱରୂପ ଆତ୍ମା ଅଟେ। ସଚ୍ଚିଦାନନ୍ଦ ହିଁ ତାର ସ୍ୱରୂପ କିନ୍ତୁ ଏବେ ସେ ପ୍ରକାଶିତ ହେଉନାହିଁ । ଆମର ଅନ୍ତଃକରଣକୁ କଣ ହୋଇଛି – ତାହା ଜଣାନାହିଁ । ଯଦ୍ୟପି ପରମାତ୍ମା ହିଁ ପରମ ଅଟନ୍ତି, ସେ ସ୍ୱୟଂ ହିଁ ସବୁକିଛି ହୋଇଛନ୍ତି ତଥାପି **'ଏଷୋ ବିଭୁରାତ୍ମା ନ ସର୍ବତ୍ର ପ୍ରକାଶତେ** ସେ ସର୍ବତ୍ର ପ୍ରକାଶିତ ହୁଅନ୍ତି ନାହିଁ । ଏଭଳି କାହିଁକି ? କୁହାଯାଇଛି –

**ତସ୍ମିନ୍ ବିଶୁଦ୍ଧ ଉପଲଭ୍ୟତ ଆତ୍ମତତ୍ତ୍ୱଂ** । (୧୧.୩.୪୦)

**ତମକ୍ରତୁଃ ପଶ୍ୟତି ବୀତଶୋକୋ ଧାତୁପ୍ରସାଦାତ୍‌ମହିମାନମାତ୍ମନଃ ॥**

(କଠଉପନିଷଦ ୧.୨.୨୦)

ଆମର ସ୍ୱରୂପ ତ ସଚ୍ଚିଦାନନ୍ଦ ଅଟେ ଏବଂ ସଦା ସର୍ବଦା ଉପଲବ୍ଧ, କିନ୍ତୁ ଆମମାନଙ୍କୁ ଅନୁଭବ ହୁଏ ନାହିଁ, କାହିଁକି ନା ଆମର ମନ ଅଶୁଦ୍ଧ ହୋଇଗଲାଣି, ମଳିନ ହୋଇଗଲାଣି। ଏହି ମଇଳା ମନ ଶୁଦ୍ଧ କିଭଳି ହେବ? ଯେଉଁ ପୁରୁଷ ନିଷ୍କାମ ହୋଇଯାଆନ୍ତି, ଯାହାର ମନ ନିର୍ମଳ ହୋଇଯାଏ, ତାଙ୍କୁ ହିଁ ସେହିଭଳି ଭାବରେ ଅନୁଭବ ପ୍ରାପ୍ତ ହୋଇଥାଏ । ସେଥିପାଇଁ ପ୍ରଶ୍ନ ହେଲା ଯେ ଏହି ମନ ଶୁଦ୍ଧ କିପରି ହେବ ?

**ଯର୍ହ୍ୟବ୍ଜନାଭଚରଣୈଷଣୟୋରୁଭକ୍ତ୍ୟା**

**ଚେତୋମଲାନି ବିଧମେଦ୍ ଗୁଣକର୍ମଜାନି ॥** (୧୧.୩.୪୦)

ମନ ଯେତେବେଳେ ଭଗବାନଙ୍କର ସଗୁଣରୂପର ଧ୍ୟାନ କରେ, ତାଙ୍କର ଚରଣରେ ଆଶ୍ରିତ ହୋଇଯାଏ ଏବଂ ତାଙ୍କର ସେବା କରିବାକୁ ଲାଗେ, ସେତେବେଳେ ସେ ଶୁଦ୍ଧ ହୋଇଯାଏ । ମନର ଶୁଦ୍ଧି ହେଇଗଲେ ଭଗବାନଙ୍କ ସ୍ୱରୂପ ପ୍ରକଟ ହେଇଯାଏ। ଏହିଭଳି ଭାବରେ ପିପ୍ପଳାୟନ ଯୋଗୀ ନାରାୟଣ ଭଗବାନଙ୍କର ସ୍ୱରୂପ ତଥା ତାଙ୍କର ଉପଲବ୍ଧିର ସାଧନ କଥା କହିଥିଲେ।

## ଷଷ୍ଠ ପ୍ରଶ୍ନ - କର୍ମଯୋଗର ସ୍ୱରୂପ

ଏବେ ରାଜା ନିମି କହୁଛନ୍ତି - ଭଗବାନ୍ ! ବାଲ୍ୟସମୟରେ ଥରେ ମୋର ପିତାଙ୍କର ସମକ୍ଷରେ ସନତ୍‌କୁମାର ଆଦି ଆମ ଘରକୁ ଆସିଥିଲେ । ସେତେବେଳେ ମୁଁ ତାଙ୍କୁ ଏକ ପ୍ରଶ୍ନ ପଚାରିଥିଲି, କିନ୍ତୁ ସେତେବେଳେ ସେମାନେ ତାର କୌଣସି ଉତ୍ତର ଦେଇ ନ ଥିଲେ । କାହିଁକି ଦେଇ ନ ଥିଲେ ମୋତେ ଜଣା ନାହିଁ । ତେଣୁ ଆପଣ ମୋର ସେହି ପ୍ରଶ୍ନକୁ ସମାଧାନ କରନ୍ତୁ ।

**କର୍ମଯୋଗଂ ବଦତ ନଃ ପୁରୁଷୋ ଯେନ ସଂସ୍କୃତଃ ।**
**ବିଧୂୟେହାଶୁ କର୍ମାଣି ନୈଷ୍କର୍ମ୍ୟଂ ବିନ୍ଦତେ ପରମ୍ ॥** (୧୧.୩.୪୧)

ଆପଣ ମୋତେ ସେହି କର୍ମଯୋଗ ବିଷୟରେ କୁହନ୍ତୁ, ଯାହା ଦ୍ୱାରା ମନୁଷ୍ୟର ମନ ସୁସଂସ୍କୃତ ବା ଶୁଦ୍ଧ ହୋଇଯାଏ ଏବଂ ତାକୁ ନୈଷ୍କର୍ମ୍ୟର ଶୁଦ୍ଧ ଜ୍ଞାନର ପ୍ରାପ୍ତି ହୋଇଯାଏ। ତା ସହିତ ଏହା ମଧ୍ୟ କୁହନ୍ତୁ ଯେ ସନତ୍‌କୁମାରାଦି ମୁନିମାନେ ମୋର ପ୍ରଶ୍ନର ଉତ୍ତର କାହିଁକି ଦେଇ ନ ଥିଲେ।

ଏ ପର୍ଯ୍ୟନ୍ତ ବର୍ଣ୍ଣନ କରାଯାଇଛି ଯେ ମନଶୁଦ୍ଧ ହେଲା ପରେ ହିଁ ପରମାତ୍ମାଙ୍କର ଦର୍ଶନ ହୋଇଥାଏ, ତାଙ୍କର ସ୍ୱରୂପର ବୋଧ ହୋଇ ଯାଇଥାଏ। ସଂକ୍ଷେପରେ ମନ ଶୁଦ୍ଧିର ଉପାୟ ମଧ୍ୟ ବର୍ଣ୍ଣନ କରାଗଲା । କିନ୍ତୁ ଏବେ ବିସ୍ତାରପୂର୍ବକ ବର୍ଣ୍ଣନ କରାଯାଉଛି। କର୍ମଯୋଗର ବିଷୟରେ ରାଜା ନିମିଙ୍କର ପ୍ରଶ୍ନ (ଷଷ୍ଠ ପ୍ରଶ୍ନ)ର ଉତ୍ତର ଦେଇ **ଆବିର୍ହୋତ୍ର ଯୋଗୀଶ୍ୱର** କହୁଛନ୍ତି - ହେ ପୁତ୍ର କର୍ମ ବିଷୟରେ କବି, ପଣ୍ଡିତ, ଆଦି ମଧ୍ୟ ମୋହିତ ହୋଇ ଯାଆନ୍ତି । ପୁଣି ସେ ସମୟରେ ତୁମେ ବାଳକ ଥିଲ । ସେତେବେଳେ ତୁମର ବୁଦ୍ଧିରେ କର୍ମ-ଅକର୍ମ-ବିକର୍ମର ରହସ୍ୟକୁ ବୁଝିବାର ପରିପକ୍ୱତା ନ ଥିଲା ସେଥିପାଇଁ ସେତେବେଳେ ସନତ୍‌କୁମାରମାନେ ତୁମକୁ କିଛି କହି ନ ଥିଲେ ।

**କର୍ମାକର୍ମବିକର୍ମେତି ବେଦବାଦୋ ନ ଲୌକିକଃ ॥** (୧୧.୩.୪୩)

କର୍ମ କଣ ? ଅକର୍ମ କଣ ? ଏବଂ ବିକର୍ମ କାହାକୁ କୁହାଯାଏ - ଏହା ତ ବେଦ-ଶାସ୍ତ୍ରଠାରୁ ହିଁ ବୁଝିବାର ଯୋଗ୍ୟ । ଏହା ଲୌକିକ ଚର୍ଚ୍ଚାର ବିଷୟ ନୁହେଁ । **'ବେଦସ୍ୟ ଚେଶ୍ୱରାତ୍ମତ୍ୱାତ୍'**(୧୧.୩.୪୩) ବେଦ ତ ଭଗବାନଙ୍କ ଠାରୁ ପ୍ରକଟ ହୋଇଛି, ଭଗବତ୍ ସ୍ୱରୂପ ଅଟନ୍ତି । ଅର୍ଥାତ୍ କର୍ମଯୋଗ କିପରି ହୋଇଥାଏ, ଏହା ବୁଝିବା ପାଇଁ ବେଦକୁ ପଢ଼ିବାକୁ ପଡେ। ସେଥିପାଇଁ ବେଦକୁ ବୁଝିବା ଆବଶ୍ୟକ ।

କିନ୍ତୁ, ଭଗବତ୍ ଭକ୍ତି ବିନା ବେଦର ରହସ୍ୟକୁ ଭଲଭାବରେ ବୁଝି ହୁଏ ନାହିଁ । ଦେଖନ୍ତୁ ! ଏହି ଭାଗବତ ଭକ୍ତି ଶାସ୍ତ୍ର ଅଟେ। ତେଣୁ ଏଠାରେ ଶୁକଦେବଜୀ ଆମ୍ଭର ଚିତ୍ତକୁ ଚାରିପାଖରୁ ଆକର୍ଷିତ କରି ଆଣି ପୁନଃ ଭଗବତ୍ ଭକ୍ତି ଆଡକୁ ନେଇ ଆସୁଛନ୍ତି । ଗୀତାରେ ଭଗବାନ୍ ଅର୍ଜୁନଙ୍କୁ ଏହି କଥା କହିଛନ୍ତି -

**କିଂ କର୍ମ କିମକର୍ମେତି କବୟୋଽପ୍ୟତ୍ର ମୋହିତାଃ ।**
**ତତ୍ତେ କର୍ମ ପ୍ରବକ୍ଷ୍ୟାମି ଯଜ୍ଜ୍ଞାତ୍ୱା ମୋକ୍ଷସେଽଶୁଭାତ୍ ॥**

(ଭଗବତ ଗୀତା୪.୧୬)

**କର୍ମଣୋ ହ୍ୟପି ବୋଦ୍ଧବ୍ୟଂ ବୋଦ୍ଧବ୍ୟଂ ଚ ବିକର୍ମଣଃ ।**
**ଅକର୍ମଣଶ୍ଚ ବୋଦ୍ଧବ୍ୟଂ ଗହନା କର୍ମଣୋ ଗତିଃ ॥**

(ଭଗବତ ଗୀତା ୪.୧୭)

କବିମାନଙ୍କୁ ମଧ୍ୟ ମୋହିତ କରୁଥିବା କର୍ମ-ଅକର୍ମ-ବିକର୍ମର ରହସ୍ୟକୁ ଭଲଭାବରେ ବୁଝି ନେବା ଉଚିତ୍- କାହିଁକି ନା କର୍ମର ଗତିକୁ ବୁଝିବା ବଡ଼ ଗହନ । ଭଗବାନ କେବେ କହନ୍ତି ନାହିଁ ଯେ ତୁମେ ଯାଇ ବେଦ ପଢ଼ । କହୁଛନ୍ତି – "ମୁଁ ସ୍ୱୟଂ ତୁମକୁ କହିବି ।" ଗୀତାରେ କୁହାଯାଇଛି ଯେ କର୍ମ-ଅକର୍ମ-ବିକର୍ମକୁ ବୁଝିବାକୁ ହେଲେ ଭାଗବତ ପଢ଼ିବାକୁ ହେବ । କାହିଁକି ନା ଗୀତାରେ ଏହି ବିଷୟରେ ଅଧିକ ବିସ୍ତାର ନାହିଁ। **'କର୍ମଣି ଅକର୍ମ ଯଃ ପଶ୍ୟେଦ୍'**- ଯିଏ କର୍ମରେ, ଅକର୍ମ ଦେଖେ ଏବଂ ଅକର୍ମରେ କର୍ମ ଦେଖେ ସେ ହିଁ ବୁଦ୍ଧିମାନ। ସେଠାରେ କେବଳ ଏତିକି ହିଁ ବର୍ଣ୍ଣନ କରାଯାଇଛି ।

ଏଠାରେ ଆବିର୍ହୋତ୍ର ଯୋଗୀ ସ୍ପଷ୍ଟରୂପରେ ବର୍ଣ୍ଣନ କରିଛନ୍ତି ଯେ କର୍ମ-ଅକର୍ମ-ବିକର୍ମ, ଏହି ତିନୋଟି ଶବ୍ଦର ଅର୍ଥ କଣ ? ଭାଗବତ ଶାସ୍ତ୍ରରେ ବର୍ଣ୍ଣନ କରାଯାଇଥିବା ଅର୍ଥକୁ ଭଗବାନ ଶ୍ରୀଶଙ୍କରାଚାର୍ଯ୍ୟଜୀମଧ୍ୟ ବର୍ଣ୍ଣନ କରିଛନ୍ତି । **'କର୍ମ'**ର ଅର୍ଥ କର୍ତ୍ତବ୍ୟ କର୍ମ ଏବଂ **'ବିକର୍ମ'**ର ଅର୍ଥ ନିଷିଦ୍ଧ କର୍ମ ।

ଆବିର୍ହୋତ୍ରଜୀ କହୁଛନ୍ତି ଯେ ବାଳକ ତଥା ସାମାନ୍ୟ ଲୋକମାନଙ୍କ ନିମନ୍ତେ ବେଦ ବିଧି- ନିଷେଧାତ୍ମକ ହୋଇଥାଏ । ସେମାନଙ୍କୁ ନିଜର ଜୀବନକୁ ବେଦ ଅନୁସାରେ ନିର୍ମାଣ କରିବା ଉଚିତ୍ । ଆଜିକାଲି ଲୋକମାନେ ଭାବନ୍ତି ଯେ ଯେଉଁଭଳି ଭାବରେ ବେଦରେ ବର୍ଣ୍ଣନ କରାଯାଇଛି, ସେହିଭଳି ଭାବରେ ଆମ୍ଭେ କାହିଁକି କରିବୁ? କିନ୍ତୁ ଟିକିଏ ବିଚାର କରନ୍ତୁ- ଗଣିତ କକ୍ଷାରେ ଯେତେବେଳେ କୁହାଯାଏ ଯେ ଏକ ଏବଂ

ଏକ ମିଶାଇଲେ ଦୁଇ ହୁଏ, ସେତେବେଳେ କଣ ଆମେ ପଚାରୁ ଯେ ଦୁଇ କାହିଁକି ହୁଏ ? ଇଂରାଜୀ କକ୍ଷାରେ ଯେତେବେଳେ ଆମକୁ ଶିଖାଯାଏ ଯେ କ୍ୟାଟ ଅର୍ଥ ବିଲେଇ। ସେତେବେଳେ ଆମେ କହୁନାହୁଁ ଯେ **'କ୍ୟାଟ୍'** କହୁଛନ୍ତି । ତେବେ Kat କାହିଁକି ଲେଖୁନାହାନ୍ତି ? ଚେମିଷ୍ଟ୍ରୀ କୁହନ୍ତି ନାହିଁ, କେମିଷ୍ଟ୍ରୀ କୁହନ୍ତି। ଯେତେବେଳେ କେମିଷ୍ଟ୍ରି ଲେଖନ୍ତି ସେତେବେଳେ 'ଚ' କାହିଁକି ଲେଖୁନାହାନ୍ତି ? ଏଭଳି କେହି କହନ୍ତି ନାହିଁ । ସେଠାରେ ଯେଉଁଭଳି କୁହାଯାଏ, ସେହିଭଳି ପଢ଼ନ୍ତି । କିନ୍ତୁ ଧାର୍ମିକ କଥାରେ ଏଭଳି କାହିଁକି ? ସେଭଳି କାହିଁକି ? ଏହିଭଳି ବହୁତ ପ୍ରକାରର କଥା ପଚାରୁଥାଆନ୍ତି।

ଦେଖନ୍ତୁ, ଏଠାରେ ସିଧା କଥା କହିବାକୁ ଗଲେ ଯେତେବେଳ ପର୍ଯ୍ୟନ୍ତ ନିଜର ବୁଦ୍ଧିକୁ ଶୁଦ୍ଧ କରିବାର ଉପାୟ ଜ୍ଞାତ ନ ହୋଇଯାଏ ଏବଂ ସେହି ଉପାୟ ଦ୍ୱାରା ଆମର ବୁଦ୍ଧି ଶୁଦ୍ଧ ହୋଇ ନ ଯାଏ, ସେତେବେଳ ପର୍ଯ୍ୟନ୍ତ ବେଦରେ କୁହାଯାଇଥିବା କଥାକୁ ମାନିନେବା ଉଚିତ୍ । ଯେଉଁଭଳି ଭାବରେ ଆମ୍ଭେ ଡାକ୍ତରଙ୍କ ପାଖକୁ ଗଲେ, ସେ ଯାହା ଔଷଧ ଦିଏ, ତାକୁ ଆମ୍ଭେ ଗ୍ରହଣ କରି ନେଉ, ଅଧିକ ତର୍କ-ବିତର୍କ କରି ନ ଥାଉ । ସେହିଭଳି ଭାବରେ ବେଦ ମଧ୍ୟ ମନକୁ ଶୁଦ୍ଧ କରିବାର ଯେଉଁ ଉପାୟ ବର୍ଣ୍ଣନ କରେ, ତାକୁ ବୁଝିକରି ସେହିଭଳି କରି ନେବା ଉଚିତ । ଏଠାରେ କୁହାଯାଇଛି -

**ନାଚରେଦ୍ ଯସ୍ତୁ ବେଦୋକ୍ତଂ ସ୍ୱୟମଜ୍ଞୋଽଜିତେନ୍ଦ୍ରିୟଃ ।** (୧୧.୩.୪୫)

ଯିଏ ନିଜେ ଅଜ୍ଞାନୀ, ନିଜର ଇନ୍ଦ୍ରିୟମାନଙ୍କ ଉପରେ ସଂଯମ ମଧ୍ୟ ରଖିପାରନ୍ତି ନାହିଁ, ପୁଣି ଅନ୍ୟର କଥା ମଧ୍ୟ ମାନନ୍ତି ନାହିଁ -

**ବିକର୍ମଣା ହ୍ୟଧର୍ମେଣ ମୃତ୍ୟୋର୍ମୃତ୍ୟୁମୁପୈତି ସଃ ॥** (୧୧.୩.୪୫)

ଏହିଭଳି ବ୍ୟକ୍ତି ଅଧର୍ମ କରନ୍ତି, ସେହି କାରଣରୁ ମୃତ୍ୟୁରୁ ମୃତ୍ୟୁ ଆଡକୁ ଯାଇଥାଆନ୍ତି। ସେଇଥିପାଇଁ ମନୁଷ୍ୟକୁ ବେଦୋକ୍ତ କର୍ମ କରିବା ଉଚିତ୍ । ପ୍ରଥମେ ମାତା, ପିତା, ଗୁରୁ, ଗୁରୁଜନ ଯାହା କୁହନ୍ତି, ସେହି କର୍ମକୁ କରିବା ଉଚିତ୍ । ତାପରେ **'ନୈଃସଙ୍ଗୋଽର୍ପିତମୀଶ୍ୱରେ'** ବେଦୋକ୍ତ କର୍ମ କରିବା ଉଚିତ୍ ଏବଂ ତାକୁ ଈଶ୍ୱରଙ୍କୁ ଅର୍ପିତ କରି ଦେବା ଉଚିତ୍ । ତେବେ ପ୍ରଥମେ ବିକର୍ମକୁ ଅଥବା ନିଷିଦ୍ଧ କର୍ମକୁ ଛାଡି ଦେବା ଉଚିତ, ପୁଣି କର୍ତ୍ତବ୍ୟ କର୍ମକୁ କରିବା ଉଚିତ୍ । ତାପରେ କର୍ତ୍ତବ୍ୟ କର୍ମକୁ ମଧ୍ୟ ଈଶ୍ୱରାର୍ପିତ ଭାବରେ କରିବା ଉଚିତ। ଏଭଳି ଈଶ୍ୱରାର୍ପିତ କର୍ମ ଦ୍ୱାରା -

**ନୈଷ୍କର୍ମ୍ୟା ଲଭତେ ସିଦ୍ଧିଂ ରୋଚନାର୍ଥା ଫଲଶ୍ରୁତିଃ ॥** (୧୧.୩.୪୬)

ପ୍ରଥମେ ନିବୃତ୍ତି ପୁଣି ନିବୃତ୍ତି ଦ୍ୱାରା ଜ୍ଞାନର ପ୍ରାପ୍ତି ହୋଇଥାଏ । ଯଦ୍ୟପି ବେଦରେ ସ୍ଥାନ-ସ୍ଥାନରେ ବର୍ଣ୍ଣନ ଆସେ ଯେ ଏହି ଅମୁକ କର୍ମ କରିବା ଦ୍ୱାରା ତୁମକୁ ଅମୁକ ଫଳ ମିଳିବ ଅଥବା ସ୍ୱର୍ଗ ମିଳିବ । ପୁଣି ସ୍ୱର୍ଗାଦିକୁ ପ୍ରାପ୍ତ କରାଉଥିବା କର୍ମର ମଧ୍ୟ ବର୍ଣ୍ଣନ ଆସେ। ତଥାପି, ବାସ୍ତବରେ ତାର ପ୍ରୟୋଜନ ସ୍ୱର୍ଗ ପ୍ରାପ୍ତି କରାଇବାରେ ନୁହେଁ। ଯେଉଁଭଳି ଭାବରେ ପିଲାମାନଙ୍କୁ କୁହାଯାଏ ଯେ, ତୁମେ ପାଠ ପଢ଼, ତେବେ ତୁମକୁ ସର୍କସ ଦେଖେଇବାକୁ ନେଇଯିବା, ତେବେ ସେଥିରେ ପ୍ରୟୋଜନ ସର୍କସ ଦେଖେଇବାରେ ନୁହେଁ । ଯଦ୍ୟପି ସର୍କସ ଦେଖେଇବା ମୁଖ୍ୟ ଉଦ୍ଦେଶ୍ୟ ନ ଥାଏ, ତଥାପି ସେ ପିଲାଟି ସର୍କସ ଦେଖିବା ନିମନ୍ତେ ତ ପାଠ ପଢ଼ିବାକୁ ଲାଗିଯାଏ । ଏବଂ ଯଦି ତାକୁ ସର୍କସ ଦେଖେଇବା ନିମନ୍ତେ ନ ନିଅନ୍ତି, ତେବେ ସେ ସ୍ୱୟଂ ସେ ଘରେ ସର୍କସ ଦେଖେଇବା ଆରମ୍ଭ କରିଦିଏ । ପାଠ ପଢ଼ି ଯେତେବେଳେ ତାକୁ ଜ୍ଞାନପ୍ରାପ୍ତିରେ ଆନନ୍ଦ ମିଳିବାକୁ ଲାଗେ, ତେବେ ସର୍କସ ମନକୁ ମନ ଛାଡି ହୋଇଯାଏ । ଏହିଭଳି ଭାବରେ ବେଦରେ ଯେଉଁ କର୍ମର ବିଧାନ ବର୍ଣ୍ଣନ କରାଯାଇଛି, ତାହା ଆମ୍ଭଙ୍କୁ କର୍ମରେ ନ ଲଗାଇ କର୍ମଠାରୁ ମୁକ୍ତି ନିମନ୍ତେ - ନିବୃତ୍ତି ଆଡକୁ ଆଣିବା ନିମନ୍ତେ ହିଁ ହୋଇଥାଏ ।

ଆଗକୁ କହୁଛନ୍ତି - ସେବା ଶୁଶ୍ରୁଷା ଦ୍ୱାରା ପ୍ରଥମେ ସଦ୍‌ଗୁରୁଙ୍କର ଅନୁଗ୍ରହ ପ୍ରାପ୍ତ କରିବା ଉଚିତ୍ । ପୁଣି ତାଙ୍କଠାରୁ ଶିଖି ପ୍ରାରମ୍ଭରେ ମୂର୍ତ୍ତିପୂଜା କରିବା ଉଚିତ୍ । ତା ପରେ ନିଜର ସମସ୍ତ କର୍ତ୍ତବ୍ୟ କର୍ମକୁ ମଧ୍ୟ ଭଗବାନଙ୍କର ପୂଜା ଭାବି କରିବା ଉଚିତ୍ । ଏକ ଅଦ୍ୱିତୀୟ ଭଗବାନ ହିଁ ସବୁରି ଭିତରେ ଅଛନ୍ତି, ଏଭଳି ଜାଣି ସମସ୍ତଙ୍କର ସେବା ପୂଜା କରିବା ଉଚିତ୍। କର୍ତ୍ତବ୍ୟ କର୍ମକୁ ମଧ୍ୟ ଯଦି ଈଶ୍ୱର ଭକ୍ତିପୂର୍ବକ ଈଶ୍ୱରାର୍ପଣ ଭାବ ଦ୍ୱାରା କରାଯାଏ, ତେବେ ଦିନେ ସେ ଆମକୁ ନୈଷ୍କର୍ମ୍ୟ ଆଡକୁ ନେଇଯିବ। ଏହା ହିଁ କର୍ମଯୋଗର ରହସ୍ୟ।

## ସପ୍ତମ ପ୍ରଶ୍ନ - ଅବତାରର କଥା

ରାଜା ନିମି କହୁଛନ୍ତି- ଭଗବନ୍ ଆପଣ କହିଲେ ଯେ ଆପଣଙ୍କର ନିର୍ଦ୍ଦେଶାନୁସାରେ କର୍ମଯୋଗର ପାଳନ କରିବା ଦ୍ୱାରା ଅନ୍ତତଃ ଭଗବାନଙ୍କର ପ୍ରାପ୍ତି ହୋଇଯିବ । ଆପଣ ମୋତେ ଭଗବାନଙ୍କର ନିର୍ଗୁଣ ସ୍ୱରୂପ ତ କହିଲେ। କିନ୍ତୁ ଆପଣ ସବୁବେଳେ କହୁଛନ୍ତି ଆମକୁ ଭଗବତ୍ ଭକ୍ତି କରିବା ଉଚିତ ଏବଂ ଆପଣ ଏଭଳି ମଧ୍ୟ କହୁଛନ୍ତି ଯେ ଯେତେବେଳେ ଯେତେବେଳେ ଧର୍ମର ହ୍ରାସ ହୁଏ ଏବଂ ଅଧର୍ମ ବହୁତ ବଢ଼ିଯାଏ, ସେତେବେଳେ ଧର୍ମ ସଂସ୍ଥାପନା ନିମନ୍ତେ ଭଗବାନ୍ ସ୍ୱୟଂ ଅବତାର ଗ୍ରହଣ କରିଥାଆନ୍ତି । ଏବେ ଟିକିଏ ଆପଣ ମୋତେ ସେହି ଅବତାରମାନଙ୍କ କଥା ମଧ୍ୟ ଶୁଣାନ୍ତୁ। ସେ କେଉଁ କେଉଁ ଲୀଳା ଏପର୍ଯ୍ୟନ୍ତ କରିସାରିଛନ୍ତି, କରୁଛନ୍ତି ଏବଂ ଆଗକୁ କରିବାକୁ ଅଛି । ଭଗବାନଙ୍କର ଯେଉଁ କଥା ଶୁଣିଲେ ଆମର ମନ ଶୁଦ୍ଧ ହୋଇଯାଏ, ଏକାଗ୍ର ହୋଇ ଯାଏ, ମନ ଭିତରେ ଭାବ ଉତ୍ପନ୍ନ ହୋଇଯାଏ, ତାହା ମଧ୍ୟ କୁହନ୍ତୁ । ମନ ଭିତରେ ଭାବ ଉତ୍ପନ୍ନ ହେଲେ । ଭଗବାନଙ୍କ ପ୍ରତି ପ୍ରେମ ହେବ ଏବଂ ସେତେବେଳେ ସହଜ ହିଁ ଆମେ ନିଜର ସମସ୍ତ କର୍ମ ତାଙ୍କୁ ହିଁ ଅର୍ପିତ କରିପାରିବା । ସେତେବେଳେ ପୁଣି ତାଙ୍କ ସ୍ୱରୂପର ବୋଧ ମଧ୍ୟ ହୋଇଯିବ । ତେଣୁ ଏବେ ଆପଣ ଭଗବାନଙ୍କର ସଗୁଣ ଲୀଳାମାନଙ୍କର ବର୍ଣ୍ଣନ କରନ୍ତୁ।

ତାପରେ **ଦ୍ରୁମିଳ** ନାମକ ଯୋଗୀଶ୍ୱର ଏହାର (ସପ୍ତମ ପ୍ରଶ୍ନର) ଉତ୍ତର ଦେବାକୁ ଯାଇ କହୁଛନ୍ତି, "ଆରେ ! ତୁମେ ଭଗବାନଙ୍କର ଲୀଳା ଏବଂ କର୍ମ କଥା ପଚାରୁଥିଲ ? ହେ ପୁତ୍ର ! ଏହି ପୃଥିବୀରେ ଯେତେ ଧୂଳିକଣା ଅଛି, ତୁମେ କଣ ତାକୁ ଗଣନା କରିପାରିବ ?"

**ରଜାଂସି ଭୂମେର୍ଗଣୟେତ୍ କଥଞ୍ଚିତ୍**
**କାଲେନ ନୈବାଖିଲଶକ୍ତିଧାମ୍ନଃ** । (୧୧.୪.୨)

**"ସମ୍ଭବତଃ କୌଣସି ପ୍ରକାର ତୁମେ ତାକୁ ଗଣିପାର, ସମୁଦ୍ରର ଜଳବିନ୍ଦୁକୁ ଗଣି ଦେଇପାର, କିନ୍ତୁ ଭଗବାନଙ୍କର ଅବତାର ଜନ୍ମ, କର୍ମ, ଲୀଳା ଏବଂ ଗୁଣୀମାନଙ୍କୁ କେବେ ଗଣନା କରାଯାଇ ପାରିବ ନାହିଁ ।"**

**ଯୋ ବା ଅନନ୍ତସ୍ୟ ଗୁଣାନନନ୍ତା-**

**ନନୁକ୍ରମିଷ୍ୟନ୍ ସ ତୁ ବାଲବୁଦ୍ଧିଃ ।** (୧୧.୪.୨)

ଯଦି କେହି ଏହି କଥା କୁହେ ଯେ ମୁଁ ଭଗବାନଙ୍କର ସମସ୍ତ ଗୁଣକୁ ବର୍ଣ୍ଣନ କରିପାରିବି, ତେବେ ବୁଝିଯିବେ ଯେ ସେ ହେଉଛି ଏକ ଅବୁଝା ବାଳକଟି ମୁଁ ତୁମକୁ ସଂକ୍ଷେପରେ କିଛି କଥା କହି ଦେଉଛି ।

ଭଗବାନଙ୍କର ଭିନ୍ନ ଭିନ୍ନ ଅବତାରମାନଙ୍କୁ, ତଥା ସେ କେଉଁ ଭଳି ଭାବରେ ସୃଷ୍ଟି କରନ୍ତି, ତାର ସଂକ୍ଷିପ୍ତ ବର୍ଣ୍ଣନ ଆମେ ଦେଖିସାରିଛନ୍ତି । ପରନ୍ତୁ, କଳିଯୁଗ ନିମନ୍ତେ ତଥା ଭାରତ ବର୍ଷ ନିମନ୍ତେ ଭଗବାନଙ୍କର ଯେଉଁ ବିଶେଷ ଅଭିବ୍ୟକ୍ତି, ସେ ହେଉଛି **'ନର-ନାରାୟଣ'**ଙ୍କର ଅବତାର ମତ୍ସ୍ୟ, କଚ୍ଛପ, ବରାହ, ନୃସିଂହ, ବାମନ, ଋଷଭଦେବ, ପୃଥୁ, ମୋହିନୀ, ଶ୍ରୀରାମଚନ୍ଦ୍ର, ଶ୍ରୀକୃଷ୍ଣ, ପରଶୁରାମଜୀ ଆଦିମାନଙ୍କର ବର୍ଣ୍ଣନ ତ ପ୍ରଥମରୁ ଆସିସାରିଛି । ପରନ୍ତୁ ନର-ନାରାୟଣଙ୍କର ଅବତାରର ବର୍ଣ୍ଣନ ପ୍ରଥମରୁ ଆସିନାହିଁ ।

ଏଠାରେ ଯୋଗୀଶ୍ୱର ଦ୍ରୁମିଳ କହୁଛନ୍ତି ଯେ ନର-ନାରାୟଣ ମଧ୍ୟ ଭଗବାନଙ୍କର ଅବତାର ଅଟନ୍ତି । ସେମାନେ ଯେତେବେଳେ ବଦରିକାଶ୍ରମରେ ତପସ୍ୟା କରୁଥିଲେ ସେତେବେଳେ ଦେବରାଜ ଇନ୍ଦ୍ର ତାଙ୍କର ତପସ୍ୟା ଭଙ୍ଗ ପାଇଁ କାମଦେବ ଏବଂ ତାଙ୍କର ସେନା (ମଦନ କୁମାର ଏଣ୍ଡ ପାର୍ଟି), ବସନ୍ତ ଋତୁ ତଥା ମଳୟାନିଳ (ସୁଗନ୍ଧିତ ବାୟୁ)କୁ ସେଠାକୁ ପଠାଇଥିଲେ । ସାମାନ୍ୟ ଲୋକମାନେ ତ ତାର ପ୍ରଭାବରେ ବିଚଳିତ ହେଉଥିଲେ, କିନ୍ତୁ ଯେଉଁ ନାରାୟଣ ଭଗବାନଙ୍କର ସାମାନ୍ୟ ଶକ୍ତି ଟିକକ ପାଇଁ ଯେଉଁ ଇନ୍ଦ୍ରଦେବ ନିଜର ସମସ୍ତ କାର୍ଯ୍ୟ କରିଥାଆନ୍ତି, ସେହି ଇନ୍ଦ୍ରଦେବଙ୍କର ସାମାନ୍ୟ ଟିକିଏ ଶକ୍ତି ସେହି କାମଦେବଙ୍କ ପାଖରେ ଅଛି। ସେ କାମଦେବ ଦ୍ୱାରା ତାଙ୍କର ଦଳର ଭଗବାନଙ୍କର ଉପରେ କଣ ପ୍ରଭାବ ପଡନ୍ତା ?

ତେବେ ଏହି କାମଦେବ ନିଜର ସେନାମାନଙ୍କ ସହିତ ଭଗବାନ ନର-ନାରାୟଣଙ୍କର ନିବାସ ସ୍ଥାନ ବଦରିକାଶ୍ରମରେ ପହଞ୍ଚିଗଲେ ଏବଂ ସେମାନେ ନୃତ୍ୟ-ଗାନ ଆଦି ଦ୍ୱାରା ନାରାୟଣ ଋଷିଙ୍କର ତପସ୍ୟା ଭଙ୍ଗ କରିବାର କାର୍ଯ୍ୟ ପ୍ରାରମ୍ଭ କଲେ। ସେତିକି ବେଳେ ନାରାୟଣ ଋଷି ସେମାନଙ୍କୁ ଦେଖି ଟିକିଏ ହସିବାକୁ ଲାଗିଲେ । ଏହା ଦେଖି ସମସ୍ତେ ଭୟଭୀତ ହେବାକୁ ଲାଗିଲେ। ଶିବଙ୍କର ଚକ୍ଷୁ ଖୋଲି ଦେଲା ପରେ କାମଦେବ ଭସ୍ମ ହୋଇଯାଇଥିଲେ। ନାରାୟଣ ଋଷି ତାଙ୍କ ଆଡକୁ ଦେଖି ଯେମିତି

କହିଲେ - କାମଦେବ ! କଣ ଏହି ସମସ୍ତଙ୍କୁ ତୁମେ ମୋତେ ଦେଖାଇବାକୁ ଆଣିଛ ? ପୁଣି ନାରାୟଣ ଋଷି କହିଲେ ଯେ ତୁମେ ଚିନ୍ତା କର ନାହିଁ । ତୁମେ ମାନେ ଏହି ଆଶ୍ରମରେ କିଛି ଦିନ ରୁହ । ଏହା ଶୁଣି କାମଦେବ ଆଦିଙ୍କର ଭୟ ଚାଲିଗଲା । ଏବଂ ସେମାନେ ସମସ୍ତେ ନର-ନାରାୟଣଙ୍କ ସ୍ତୁତି କଲେ । ତାପରେ ନାରାୟଣ ଋଷି କିଛି ଅଦ୍ଭୁତ ସୌନ୍ଦର୍ଯ୍ୟ ସମ୍ପନ୍ନ ସ୍ତ୍ରୀମାନଙ୍କୁ ପ୍ରକଟ କଲେ । ସେମାନଙ୍କର ସୌନ୍ଦର୍ଯ୍ୟ ଏଭଳି ଅଦ୍ଭୁତ ଏବଂ ମନୋହାରୀ ଥିଲା ଯେ ଯାହାକୁ ଦେଖି କାମଦେବ ସହିତ ଆସିଥିବା ସ୍ୱର୍ଗର ଅପ୍ସରାମାନଙ୍କର ଅଭିମାନ ସମାପ୍ତ ହୋଇଗଲା । ନାରାୟଣ ଭଗବାନ କାମଦେବଙ୍କୁ କହିଲେ- "ଏଭଳି ଲୋକ (ସ୍ତ୍ରୀ)ମାନଙ୍କୁ ତ ମୁଁ ମୋ ଉରୁରେ ରଖେ । ଏବେ ଏମାନଙ୍କ ଭିତରୁ ତୁମକୁ ଯିଏ ସବୁଠାରୁ ସୁନ୍ଦର ଲାଗିବ, ତାକୁ ତୁମେ ନେଇଯାଅ। ଉପହାର ରୂପରେ ତୁମେ ତାକୁ ଇନ୍ଦ୍ରକୁ ଦେଇ ଦେବ।" କାମଦେବ ଯାହାକୁ ନେଲେ ସେ ଅପ୍ସରାଙ୍କର ନାମ ଉର୍ବଶୀ ହେଲା ।

ସେଥିପାଇଁ କୁହାଯାଏ ଯେ ନାରାୟଣ ଭଗବାନଙ୍କର ଧ୍ୟାନ କଲେ 'କାମ' ହଇରାଣ କରେ ନାହିଁ । ଅନ୍ୟଥା ସେ ସମସ୍ତଙ୍କୁ ହଇରାଣ କରେ। ଏଠାରେ ଏହି ପ୍ରସଙ୍ଗରେ ନର-ନାରାୟଣ ଭଗବାନଙ୍କର ଚରିତ୍ରର ବିସ୍ତାର କରି ଅନ୍ୟ ଅବତାରକୁ ସଂକ୍ଷେପରେ ବର୍ଣ୍ଣନ କରାଯାଇଛି ।

ପୂର୍ବ କଥିତ ଅବତାର ଅତିରିକ୍ତ ଭଗବାନଙ୍କର ଅନେକ କଳାବତାର, ଯେଉଁଭଳି ଭାବରେ - ହଂସ, ଦତ୍ତାତ୍ରେୟ, ସନକ ସନନ୍ଦନ ସନାତନ ଏବଂ ସନତ୍‌କୁମାର, ନବଯୋଗୀମାନଙ୍କରେ ପିତା ଋଷଭଦେବ ଏବଂ ହୟଗ୍ରୀବ ଆଦି ଅବତାର ଗ୍ରହଣ କରିଥିଲେ ଏବଂ ସମସ୍ତଙ୍କର କଲ୍ୟାଣ କରିଥିଲେ ।

ଦେଖନ୍ତୁ, ଏକାଦଶ ସ୍କନ୍ଧ ଏକ ମହତ୍ତ୍ୱପୂର୍ଣ୍ଣ ଖଣ୍ଡ ଅଟେ । ସେଥିପାଇଁ ଏହାକୁ ଆମ୍ଭେ ବିସ୍ତାର ପୂର୍ବକ ଦେଖୁଛନ୍ତି । ନବଯୋଗୀମାନଙ୍କର ପ୍ରସଙ୍ଗ ବହୁତ ସୁନ୍ଦର । ଏହି ପ୍ରସଙ୍ଗରେ ବହୁତ ସୁନ୍ଦର ସୁନ୍ଦର ପ୍ରଶ୍ନ ପଚରାଯାଇଛି ।

## ଅଷ୍ଟମ ପ୍ରଶ୍ନ - ଅଭକ୍ତମାନଙ୍କର ଗତି

ରାଜା ନିମି କହନ୍ତି - ଆପଣ ସମସ୍ତେ ତ **'ଆତ୍ମବିତ୍ତମାଃ'** ଆତ୍ମ ଜ୍ଞାନୀ ତଥା ପରମ ଭାଗବତ ଅଟନ୍ତି, କିନ୍ତୁ ଏଠାରେ ଏଭଳି ଲୋକମାନେ ମଧ୍ୟ ଅଛନ୍ତି, ଯାହାର କି ନିଜ ମନ ଉପରେ କୌଣସି ପ୍ରକାର ସଂଯମ ନାହିଁ, ଯାହାର ମନ ଅଶାନ୍ତ ରହିଥାଏ ଏବଂ ଯେଉଁମାନେ କି ଭଗବାନଙ୍କର ଭକ୍ତି ମଧ୍ୟ କରନ୍ତି ନାହିଁ । ସେମାନେ ସବୁବେଳେ କାମନା ଦ୍ୱାରା ପୀଡ଼ିତ ରହନ୍ତି । ଏଭଳି ଲୋକମାନଙ୍କର କେଉଁ ଗତି ହୋଇଥାଏ ? ଏହାର ଉତ୍ତରରେ ଚମସ ଋଷି କହିଲେ - ଭଗବାନଙ୍କର ଭକ୍ତି କରୁ ନ ଥିବା ବ୍ୟକ୍ତି ମଧ୍ୟ ଦୁଇ ପ୍ରକାରର। ଗୋଟିଏ ହେଉଛି, ଯିଏ କି ଅଜ୍ଞାନତା କାରଣରୁ ଭକ୍ତି କରନ୍ତି ନାହିଁ, ସେମାନେ ଭକ୍ତି କଥା ଜାଣନ୍ତି ନାହିଁ,ସେଥିପାଇଁ ସେମାନେ ଭଗବାନଙ୍କର ଭକ୍ତି କରନ୍ତି ନାହିଁ ଏବଂ ଅନ୍ୟ ହେଉଛନ୍ତି ଯିଏ ସବୁ ଜାଣନ୍ତି ପରନ୍ତୁ ମନରେ ଶ୍ରଦ୍ଧା ନ ଥିବା ଯୋଗୁ ଭକ୍ତି କରିପାରନ୍ତି ନାହିଁ ।

**ନ ଭଜନ୍ତ୍ୟବଜାନନ୍ତି ସ୍ଥାନାଦ୍ ଭ୍ରଷ୍ଟାଃ ପତନ୍ତ୍ୟଧଃ ॥** (୧୧.୫.୩)

ଯେଉଁମାନେ ଭଗବାନଙ୍କର ଭଜନ କରନ୍ତି ନାହିଁ, ବରଂ ଭଗବାନଙ୍କର, ଭଗବାନଙ୍କର ମନ୍ଦିରର, ଭକ୍ତମାନଙ୍କର, ଶାସ୍ତ୍ରର ତଥା ଧର୍ମର ଅପମାନ ମଧ୍ୟ କରନ୍ତି, ସେମାନଙ୍କର ଅଧଃପତନ ହୋଇ ଥାଏ । ଏହା ତ ଅତି ସହଜରେ ବୁଝି ହୋଇଯାଏ । କିନ୍ତୁ -

**ଦୂରେହରିକଥାଃ କେଚିଦ୍ ଦୂରେଚ୍ଚ୍ୟୁତକୀର୍ତ୍ତନାଃ ।**

**ସ୍ତ୍ରିୟଃ ଶୂଦ୍ରାଦୟଶ୍ଚୈବ ତେଽନୁକମ୍ପ୍ୟା ଭବାଦୃଶାମ୍ ॥** (୧୧.୫.୪)

ଏଭଳି ଲୋକ ମଧ୍ୟ ଥାଆନ୍ତି, ଯିଏ କି ସଂସ୍କାରର କାରଣରୁ, ଜନ୍ମ ଜାତିର କାରଣରୁ, ଅଥବା ଅଜ୍ଞାନତା ଯୋଗୁ ଭଗବାନଙ୍କ ଠାରୁ ଦୂରରେ ଥାଆନ୍ତି। ସେମାନଙ୍କୁ ଭଗବତ୍ ମାର୍ଗରେ ବଢ଼ିବାର କେବେହେଲେ ଅବସର ମିଳେ ନାହିଁ। ତେବେ ଜଣା ନ ଥିବା ଯୋଗୁ କିନ୍ତୁ ଅଶ୍ରଦ୍ଧା କାରଣରୁ ନୁହେଁ - ଅଜ୍ଞାନର କାରଣରୁ ଯିଏ ଭଗବାନଙ୍କର ଭଜନ କରି ନ ଥାଆନ୍ତି, ସେମାନଙ୍କ ଉପରେ ତୁମକୁ ଦୟା କରିବା ଉଚିତ୍ । ଏଠାରେ ଚମସ୍ ଋଷିଙ୍କର କହିବାର ତାତ୍ପର୍ଯ୍ୟ - ଯିଏ ବୁଦ୍ଧିମାନ, ସେ ଧିରେ ଧିରେ ସୋପାନରୁ ସୋପାନ ସେହି ଅଜ୍ଞାନୀମାନଙ୍କୁ ବୁଝାଇ ସେହି ମାର୍ଗରେ ଲଗାଇବା ଉଚିତ୍ । ତେବେ ଧିରେ ଧିରେ ସେମାନଙ୍କର ସ୍ଥିତି ଠିକ୍ ହୋଇଯିବ । କିନ୍ତୁ ପ୍ରାୟତଃ ପଣ୍ଡିତ ଲୋକମାନେ

ଅଭିମାନ ବଶ, ବୁଝାଇବା ଛାଡ଼ି, ସେମାନଙ୍କୁ ଏହା କହି ଛାଡ଼ି ଦିଅନ୍ତି ଯେ ସେଥିରେ ତୁମ୍ଭର ଅଧିକାର ନାହିଁ । କେବଳ ଏତିକି ନୁହେଁ ସେମାନେ ତାଙ୍କୁ ଅନ୍ୟାନ୍ୟ କାର୍ଯ୍ୟରେ ବ୍ୟସ୍ତ ରଖିଥାଆନ୍ତି । ଏଭଳି କର୍ମକାଣ୍ଡୀ ବ୍ରାହ୍ମଣମାନଙ୍କର ଏଠାରେ କଡା ନିନ୍ଦା କରାଯାଇଛି । କାହିଁକି ନା ସବୁ କିଛି ବୁଝିଲା ପରେ ମଧ୍ୟ ସେ ଅନ୍ୟକୁ ମୂର୍ଖ କରିଥାଆନ୍ତି । ଏହା ମହାପାପ ଅଟେ । ସେମାନଙ୍କର ବୁଦ୍ଧିତ ପ୍ରଥମରୁ ଖରାପ ଅଛି, ସେମାନେ ଅନ୍ୟମାନଙ୍କୁ ମଧ୍ୟ ଭ୍ରମିତ କରିଥାଆନ୍ତି । ଗୀତାରେ ଭଗବାନ ଶ୍ରୀକୃଷ୍ଣ କହୁଛନ୍ତି -

**ନ ବୁଦ୍ଧିଭେଦଂ ଜନୟେଦଜ୍ଞାନାଂ କର୍ମସଙ୍ଗିନାମ୍ ।** (ଭ.ଗୀତା ୩.୨୬

ଅଜ୍ଞାନୀମାନଙ୍କ ଭିତରେ କେବେହେଲେ ବୁଦ୍ଧିଭେଦ ଉତ୍ପନ୍ନ କରିବା ଉଚିତ୍ ନୁହେଁ। ତାଙ୍କୁ ଧିରେ ଧିରେ ଜ୍ଞାନମାର୍ଗ ଆଡକୁ ଆଣିବା ଉଚିତ୍ । ତାଙ୍କୁ ବୁଝାଇବା ଉଚିତ୍ ଯେ- ତୁମେ ଏହିଭଳି କର । ଅଜ୍ଞାନୀମାନେ ଯେତେବେଳେ ସଙ୍କଟରେ ପଡନ୍ତି, ତାଙ୍କୁ କର୍ମକାଣ୍ଡୀ ପଣ୍ଡିତମାନେ କହନ୍ତି - ଏହି ଯଜ୍ଞ କର, ଏତେ ଗାଈମାନଙ୍କୁ ଦାନ କର, ଅଥବା ଏତିକି ସୁବର୍ଣ୍ଣ ଦାନ କର । ଯେତେବେଳେ ସେମାନେ ପଚାରନ୍ତି, ଆମେ କାହାକୁ ଦାନ କରିବୁ? ତେବେ ସେମାନେ କୁହନ୍ତି - ଆମକୁ ଦାନ କର ? ଆଉ କାହାକୁ? ଏହିଭଳି ଭାବରେ କେଜାଣି ସେମାନଙ୍କୁ କଣ କଣ କୁହନ୍ତି ।

**ଧନଂ ଚ ଧର୍ମୈକଫଲଂ ଯତୋ ବୈ**
**ଜ୍ଞାନଂ ସବିଜ୍ଞାନମନୁପ୍ରଶାନ୍ତି ।**
**ଗୃହେଷୁ ଯୁଞ୍ଜନ୍ତି କଲେବରସ୍ୟ**
**ମୃତ୍ୟୁଂ ନ ପଶ୍ୟନ୍ତି ଦୁରନ୍ତବୀର୍ଯ୍ୟମ୍ ॥** (୧୧.୫.୧୨)

ଧନର ଉପଯୋଗିତା ଧର୍ମ ପାଳନ ନିମନ୍ତେ ହୋଇଥାଏ ଏବଂ ଧର୍ମାଚରଣ ବିଶୁଦ୍ଧ ଜ୍ଞାନ ନିମନ୍ତେ ହୋଇଥାଏ । କିନ୍ତୁ ଯେଉଁ ଲୋକମାନେ ଧନର ଉପଯୋଗ କେବଳ ନିଜର ଘର ପରିବାର ନିମନ୍ତେ କରିଥାଆନ୍ତି ସେମାନେ ନିଜର ମରଣକୁ ସମ୍ମୁଖରେ ଦେଖିଲେ ମଧ୍ୟ ଦେଖନ୍ତି ନାହିଁ ଏବଂ ସଂସାରରେ ବାନ୍ଧି ହୋଇ ମରି ଯାଆନ୍ତି । ସେଥିପାଇଁ ଅସତ୍ ବସ୍ତୁକୁ ତ୍ୟାଗ କରି ଭଗବାନଙ୍କର ଧ୍ୟାନ କରିବା ଉଚିତ୍ । ଏହିଭଳି ଭାବରେ ଚମସ୍ ଯୋଗୀଶ୍ୱର ନିଜର ଉତ୍ତରରେ ବର୍ଣ୍ଣନ କଲେ ଯେ ଅଭକ୍ତମାନଙ୍କର ଗତି ଦୁଇ ପ୍ରକାରର ହୋଇଥାଏ। ଯେଉଁମାନେ ଅଶ୍ରଦ୍ଧା କାରଣରୁ ଭକ୍ତି କରନ୍ତି ନାହିଁ, ସେମାନଙ୍କର ଦୁର୍ଗତି ତ ହୁଏ କିନ୍ତୁ ଯେଉଁମାନେ ଅଜ୍ଞାନତା କାରଣରୁ ଭଗବତ୍ ଭକ୍ତି କରନ୍ତି ନାହିଁ, ସେମାନେ ଦୟାର ପାତ୍ର, ତାଙ୍କୁ ବୁଝାଇବା ଉଚିତ୍ ।

## ନବମ ପ୍ରଶ୍ନ - ଭିନ୍ନ ଭିନ୍ନ ଯୁଗରେ ଭଗବତ୍ ପ୍ରାପ୍ତିର ସାଧନ

**କସ୍ମିନ୍ କାଲେ ସ ଭଗବାନ୍ କିଂ ବର୍ଣ୍ଣଃ କୀଦୃଶୋ ନୃଭିଃ ।**
**ନାମ୍ନା ବା କେନ ବିଧିନା ପୂଜ୍ୟତେ ତଦିହୋଚ୍ୟତାମ୍ ॥ (୧୧.୫.୧୬)**

ଏବେ ଆସେ ଅନ୍ତିମ ପ୍ରଶ୍ନ - ରାଜା ନିମି କହୁଛନ୍ତି ଏବେ ଆପଣ କୃପା କରି କୁହନ୍ତୁ ଯେ ସତ୍ୟଯୁଗ, ତ୍ରେତାଯୁଗ, ଦ୍ୱାପରଯୁଗ ତଥା କଳିଯୁଗରେ ଭଗବାନଙ୍କର - ପରମାତ୍ମାଙ୍କ ଅଭିବ୍ୟକ୍ତି କେଉଁ କେଉଁ ପ୍ରକାରର ହୋଇଥାଏ ? ପ୍ରତ୍ୟେକ ଯୁଗରେ ସେ କେଉଁ ରୂପରେ ପ୍ରକଟ ହୋଇଥାଆନ୍ତି, ତାଙ୍କର କେଉଁ ବର୍ଣ୍ଣ ହୋଇଥାଏ ଏବଂ ତାଙ୍କୁ ପ୍ରାପ୍ତ କରିବାର ସାଧନ କଣ ହୋଇଥାଏ ? ସେଠାରେ ତାଙ୍କର ଉପାସନା କେଉଁ ଭଳି କରିବା ଉଚିତ ? ଏହାର ଉତ୍ତର ଦେଇ ନବମ ଯୋଗୀଶ୍ୱର **କରଭାଜନଜୀ** କହୁଛନ୍ତି- ସତ୍ୟଯୁଗରେ (କୃତଯୁଗରେ) ଭଗବାନ ଶ୍ୱେତ ବର୍ଣ୍ଣର ହୋଇଥାଆନ୍ତି । ଗୋରା ହୋଇଥାଆନ୍ତି । ସେତେବେଳେ ତପସ୍ୟା ତଥା ଧ୍ୟାନ ଦ୍ୱାରା ତାଙ୍କୁ ଆରାଧନା କରାଯାଇଥାଏ । **'ତ୍ରେତୟାଂ ରକ୍ତବର୍ଣ୍ଣଃ ଅସୌ'** ତ୍ରେତାଯୁଗରେ ଭଗବାନଙ୍କର (ଲାଲବର୍ଣ୍ଣ) ରକ୍ତବର୍ଣ୍ଣ ହୋଇଥାଏ । ତ୍ରେତାଯୁଗରେ ଯଜ୍ଞ-ଯାଗାଦି ଦ୍ୱାରା ଭଗବାନଙ୍କର ଆରାଧନା ହୋଇଥାଏ । ଏଠାରେ ଯଜ୍ଞ ହେଉଛି ବିଶେଷ ସାଧନ ।

ଦ୍ୱାପର ଯୁଗରେ ଭଗବାନ ଶ୍ୟାମବର୍ଣ୍ଣର ହୋଇଥାଆନ୍ତି ଏବଂ ସେଠାରେ ସେ ପିତାମ୍ବର ଧାରଣ କରନ୍ତି । ଦ୍ୱାପରରେ ତାଙ୍କୁ ଆରାଧନା କରିବାର ସାଧନ ହେଉଛି ତାଙ୍କର ପୂଜା । ପୂଜା ଦ୍ୱାରା ତାଙ୍କର ସେବା, ଆରାଧନା, ଉପାସନା କରାଯାଏ । ତାହା ହିଁ ମୋକ୍ଷର ସାଧନ ହୋଇଥାଏ ।

କଳିଯୁଗରେ ଭଗବାନ କୃଷ୍ଣବର୍ଣ୍ଣ ହୋଇଥାଆନ୍ତି । ଏହି ଯୁଗରେ ଭଗବାନଙ୍କର ନାମ ନେବା ମାତ୍ରକେ ଭଗବାନ୍ ଅତି ପ୍ରସନ୍ନ ହୁଅନ୍ତି । ତେଣୁ କଳିଯୁଗରେ ତାଙ୍କୁ ପ୍ରାପ୍ତି କରିବାର ଏକମାତ୍ର ସାଧନ ହେଉଛି ନାମ ସଂକୀର୍ତ୍ତନ ।

ଏଠାରେ କରଭାଜନ ଯୋଗୀଶ୍ୱର ଏକ ଶ୍ରେଷ୍ଠ କଥା କହିଛନ୍ତି । ସତ୍ୟ ଆଦି ଅନ୍ୟ ଯୁଗର ଲୋକମାନେ ମଧ୍ୟ କଳିଯୁଗର ଲୋକମାନଙ୍କୁ ଈର୍ଷ୍ୟା କରନ୍ତି, ତାଙ୍କର ଭାଗ୍ୟର ପ୍ରଶଂସା କରନ୍ତି ଯେ ଏମାନେ ଏକ ସୁନ୍ଦର ଯୁଗରେ ଉତ୍ପନ୍ନ ହୋଇଛନ୍ତି । ଏହି ଯୁଗରେ ଅନେକ ଭଗବତ୍ ଭକ୍ତ ଜନ୍ମ ହୋଇଥାଆନ୍ତି ଏବଂ ଭଗବତ୍ ନାମ ସଂକୀର୍ତ୍ତନ

ମାତ୍ରକେ ଏମାନଙ୍କର ସଦ୍‌ଗତି ହୋଇଯାଏ । କଳିଯୁଗର ଏହି ବିଲକ୍ଷଣ କଥା ଏଠାରେ ବର୍ଣ୍ଣନ ହୋଇଛି ।

କଳିସଂତରଣ ଉପନିଷଦ୍‌ରେ ବର୍ଣ୍ଣନ ଆସେ ଯେ ନାରଦ ବ୍ରହ୍ମାଙ୍କ ପାଖକୁ ଯାଇ କହୁଛନ୍ତି ଯେ ଏହି କଳିଯୁଗ ବଡ ଘୋର ଅଟେ । ତେଣୁ ଏହି ଲୋକମାନେ ସଂସାରସାଗରରୁ କିଭଳି ପାର ହୋଇପାରିବେ ? ତେବେ ବ୍ରହ୍ମାଜୀ କହୁଛନ୍ତି -

**ହରେ ରାମ ହରେ ରାମ ରାମ ରାମ ହରେ ହରେ ।**

**ହରେ କୃଷ୍ଣ ହରେ କୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ ॥**

କଳିଯୁଗର ଏହା ହେଉଛି ମହାମନ୍ତ୍ର। ଏହାର ସଂକୀର୍ତ୍ତନ ଦ୍ୱାରା ସମସ୍ତଙ୍କର କଲ୍ୟାଣ ହେବ । ଏହିଭଳି ଭାବରେ ଚାରିଯୁଗରେ ଭଗବାନଙ୍କୁ ପ୍ରାପ୍ତି କରିବାର ଯେଉଁ ସାଧନ- ତାହା ଏଠାରେ ବର୍ଣ୍ଣନ କରାଗଲା। କିନ୍ତୁ ଏହି ସନ୍ଦର୍ଭରେ ଗୋଟିଏ କଥା ବିଶେଷ ଧ୍ୟାନ ଦେବାର ଯୋଗ୍ୟ। ଏହି ଚାରିଯୁଗ କାଳ ଦୃଷ୍ଟିରେ ବାହାରେ ତ ଘଟିତ ହୁଏ, ତା ସହିତ ଆମର ମନରେ ମଧ୍ୟ ଏହି ଚାରିଯୁଗ ଆସେ ଏବଂ ଯାଏ । ମନ ଭିତରେ ଘୋର ତମୋଗୁଣର ବୃତ୍ତି ଆସିଗଲା ପରେ କଳିଯୁଗ ଆସିଗଲା ବୋଲି ଭାବିବା ଉଚିତ୍ । ସାତ୍ତ୍ୱିକ ବୃତ୍ତି ଆସିଲେ ତାହା ସତ୍ୟଯୁଗ ଆସିଲା । କହିବାର ଅଭିପ୍ରାୟ କଳିଯୁଗରେ ମଧ୍ୟ ଆମ୍ଭେ ସତ୍ୟଯୁଗରେ ରହି ପାରିବା । ଏହିଭଳି ଭାବରେ ସତ୍ୟଯୁଗରେ ଲୋକମାନେ ମଧ୍ୟ ଭିତରେ ଭିତରେ ନିଜ ହୃଦୟରେ କଳିଯୁଗରେ ରହିଥାଇ ପାରନ୍ତି।

ଏବେ ଆଗକୁ କହୁଛନ୍ତି ଯେ କଳିଯୁଗରେ ଲୋକମାନେ ଭଗବାନଙ୍କର ଏହିଭଳି ସ୍ତୁତି କରନ୍ତି - ଯଦ୍ୱାରା ତାଙ୍କର ନାମ ଲୀଳା ଆଦିର ସଂକୀର୍ତ୍ତନ ହୋଇଥାଏ । ଯଥା-

**ଧ୍ୟେୟଂ ସଦା ପରିଭବଘ୍ନମଭୀଷ୍ଟଦୋହଂ**
**ତୀର୍ଥାସ୍ପଦଂ ଶିବବିରିଞ୍ଚିନୁତଂ ଶରଣ୍ୟମ୍ ।**
**ଭୃତ୍ୟାର୍ତିହଂ ପ୍ରଣତପାଲ ଭବାବ୍ଧିପୋତଂ**
**ବନ୍ଦେ ମହାପୁରୁଷ ତେ ଚରଣାରବିନ୍ଦମ୍ ॥**(୧୧.୫.୩୩)

ଆପଣଙ୍କର ଚରଣାର ବିନ୍ଦକୁ ନମସ୍କାର, ଯିଏ ସମସ୍ତ ବିଘ୍ନକୁ ଦୂର କରନ୍ତି, ଅଭୀଷ୍ଟ ପ୍ରଦାନ କରନ୍ତି, ଏବଂ ବ୍ରହ୍ମା,ବିଷ୍ଣୁ, ମହେଶ ଆଦି ମଧ୍ୟ ଯାହାର ଧ୍ୟାନ କରନ୍ତି ଏବଂ '**ଭବାବ୍ଧିପୋତଂ**'ଭବସାଗରକୁ ପାର କରିବା ନିମନ୍ତେ ଯିଏ ନାଆ ଭଳି, ସେହି ଚରଣ କମଳକୁ ମୁଁ ନମସ୍କାର କରୁଛି ।

ଏହା ପରବର୍ତ୍ତି ଶ୍ଳୋକଟି ତ ଅତିସୁନ୍ଦର । କହୁଛନ୍ତି -

**ତ୍ୟକ୍ତ୍ୱା ସୁଦୁସ୍ତ୍ୟଜସୁରେପ୍ସିତରାଜ୍ୟଲକ୍ଷ୍ମୀଂ**
**ଧର୍ମିଷ୍ଠ ଆର୍ୟ୍ୟବଚସା ୟଦଗାଦରଣ୍ୟମ୍ ।**
**ମାୟାମୃଗଂ ଦୟିତୟେପ୍ସିତମନ୍ୱଧାବଦ୍**
**ବନ୍ଦେ ମହାପୁରୁଷ ତେ ଚରଣାରବିନ୍ଦମ୍ ॥** (୧୧.୫.୩୪)

ମହାପୁରୁଷ ରୂପରେ ଅବତରିତ ଭଗବାନଙ୍କର ଚରଣକମଳକୁ ନମସ୍କାର କରୁଛି । ପିତାଙ୍କର ବଚନକୁ ପ୍ରମାଣିତ କରିବା ନିମନ୍ତେ ଯିଏ ଦେବତାମାନଙ୍କ ଦ୍ୱାରା ବାଞ୍ଛିତ, ରାଜଲକ୍ଷ୍ମୀକୁ ତ୍ୟାଗ କରି ଅରଣ୍ୟକୁ ଚାଲିଗଲେ ଏବଂ ନିଜର ପ୍ରିୟ ପତ୍ନୀ ସୀତାଜୀଙ୍କ ପ୍ରତି ଯାହାଙ୍କର ଏଭଳି ଅଗାଧ ପ୍ରେମ ଥିଲା ତଥା ଏତେ ଦୟା ଯେ ସେହି କାରଣରୁ ସେ ମାୟାମୃଗର ପଛରେ ଦୌଡିବାକୁ ଲାଗିଲେ, ସେହି ଭଗବାନଙ୍କର ଚରଣ କମଳକୁ ନମସ୍କାର କରୁଛି ।

ଏହିଭଳି ଭାବରେ କରଭାଜନ ଯୋଗୀଶ୍ୱର ନବମ ପ୍ରଶ୍ନର ଉତ୍ତର ଦେଇ ଶେଷରେ କଳିଯୁଗରେ ସଂକୀର୍ତ୍ତନର ମହିମା ବର୍ଣ୍ଣନ କଲେ ।

**କଲୌ କଲଷଚିତ୍ତାନାଂ ପାପଦ୍ରବ୍ୟୋପଜୀବିନାମ୍ ।**
**ବିଧିକ୍ରିୟା ବିହୀନାନାଂ ଗତିର୍ଗୋବିନ୍ଦ କୀର୍ତ୍ତନମ୍ ॥**

ଅନ୍ୟତ୍ର ମଧ୍ୟ କୁହାଯାଇଛି ଯେ କଳି କାଳରେ କଳୁଷଯୁକ୍ତ ଚିତ୍ତ ସହ ପାପଦ୍ରବ୍ୟରେ ଜୀବିତ ରହୁଥିବା ଏବଂ ବିଧି ନିଷେଧକୁ ଜାଣୁ ନ ଥିବା ଲୋକମାନଙ୍କ ନିମନ୍ତେ କେବଳ ନାମ ସଂକୀର୍ତ୍ତନ ହିଁ ଆଧାର ଅଟେ । ଏହା ହିଁ ସବୁଠାରୁ ବଡ ସାଧନ । କେହି ଯଦି ଏହାର ଆଶ୍ରୟ ନିଅନ୍ତି ତେବେ ସେ ମୁକ୍ତ ହୋଇଯାଆନ୍ତି । ଅଜାମିଳରେ ଆଖ୍ୟାନରେ ଏହାର ବିସ୍ତାର ବର୍ଣ୍ଣନ ହୋଇସାରିଛି, ତେଣୁ ଏଠାରେ ବିସ୍ତାରର ଆବଶ୍ୟକତା ନାହିଁ ।

ନାରଦଜୀ କହୁଛନ୍ତି, "ଏହିଭଳି ଭାବରେ ରାଜା ନିମି ନବଯୋଗୀମାନଙ୍କଠାରୁ ଜ୍ଞାନ ଭକ୍ତି ସମ୍ବନ୍ଧରେ ନିଜର ସମସ୍ତ (ନଅ) ପ୍ରଶ୍ନର ଉତ୍ତର ଶୁଣିଲେ। ଏହା ଶୁଣି ସେ ବହୁତ ପ୍ରସନ୍ନ ହେଲେ । ପୁଣି ପ୍ରସନ୍ନ ଚିତ୍ତ ହୋଇ ସେ ଅତି ଶ୍ରଦ୍ଧା-ଭକ୍ତି ତଥା କୃତଜ୍ଞ ଭାବରେ ସେ ଯୋଗୀଶ୍ୱରମାନଙ୍କୁ ପୂଜନ କଲେ । ତାପରେ ସମସ୍ତଙ୍କର ଦେଖୁ-ଦେଖୁ ସେ ନବଯୋଗୀ ସେଠାରୁ ଅନ୍ତର୍ଦ୍ଧାନ ହୋଇଗଲେ । ରାଜା ନିମି ମଧ୍ୟ ତାଙ୍କର ଉପଦେଶ ଅନୁସାରେ, ତାଙ୍କ ଦ୍ୱାରା ବର୍ଣ୍ଣନ କରାଯାଇଥିବା ଅନୁସାରେ ଭାଗବତ ଧର୍ମର ଅନୁକରଣ କରି ଭଗବାନଙ୍କର ସହିତ ଏକ ରୂପ ହୋଇଗଲେ । ମୁକ୍ତ ହୋଇଗଲେ ।"

ଏହାର ବିପରୀତ, ଆମେମାନେ ସାଧନ ଆଦି ବିଷୟରେ ପ୍ରଶ୍ନ ତ ବହୁତ ପଚାରନ୍ତି, ପରନ୍ତୁ କିଛି କରନ୍ତି ନାହିଁ । ଆମମାନଙ୍କର ସମସ୍ୟା ହେଉଛି ବଡ ବିଚିତ୍ର । ଆମେ ଯେତେବେଳେ କାହାକୁ କିଛି ସାଧନ ପଚାରନ୍ତି, ପରେ ଯଦି ସେ କୌଣସି କଠିନ ସାଧନ ବର୍ଣ୍ଣନ କରେ, ତେବେ ଆମ୍ଭେ କହୁ, ଏହା ତ ବଡ କଠିନ ଅଟେ, ଏହାକୁ ତ ଆମେ କରିପାରିବୁ ନାହିଁ ଏବଂ ଯଦି କିଛି ସରଳ ସାଧନ କୁହାଯାଏ, ଯେଉଁଭଳି କେବଳ ଭଗବାନଙ୍କର ନାମ ନିଅ, ତେବେ ଆମକୁ ଲାଗୁଛି, ନାମ ନେଲେ କଣ ହେବ ? ତେବେକଥା ହେଉଛି ଯେ ଆମର କଠିନ ସାଧନାରେ ପ୍ରବୃତ୍ତି ହୁଏ ନାହିଁ ଏବଂ ସରଳ ସାଧନରେ ବିଶ୍ୱାସ ହୁଏ ନାହିଁ, ପୁଣି ତର୍କ ବିତର୍କରେ କେବଳ ରହିଯାଉ । ଯେପରି ଭଗବାନ ନିର୍ଗୁଣ ନା ସଗୁଣ ? ମୁଁ ତ ନିର୍ଗୁଣକୁ ମାନେ ! ନିର୍ଗୁଣରେ ମନକୁ ଲଗାଇବାକୁ ଚାଲିଲୁ । ଏବେ ଦେହରେ ପୂର୍ଣ୍ଣ ଆସକ୍ତି ପୁରି ରହିଛି । ଅତଃ ନିର୍ଗୁଣରେ ମନ ଲାଗେ ନାହିଁ । ନିର୍ଗୁଣରେ ଧ୍ୟାନ ଲାଗେ ନାହିଁ, ସଗୁଣରେ ବିଶ୍ୱାସ ହୁଏ ନାହିଁ । ତେବେ ନିର୍ଗୁଣ ମଧ୍ୟ ହେଲା ନାହିଁ, କି ସଗୁଣ ମଧ୍ୟ ହେଲା ନାହିଁ, ରହିଗଲା କେବଳ

ଦୁର୍ଗୁଣ ! ବାରମ୍ବାର ପଚାରନ୍ତି । କିନ୍ତୁ କିଛି କରନ୍ତି ନାହିଁ । ରାଜା ନିମି ଏହିଭଳି ନ ଥିଲେ । ସେ ସବୁ କିଛି ପଚାରିଲେ ଏବଂ ତାପରେ ତାକୁ ପାଳନ କରି ମୁକ୍ତ ହୋଇଗଲେ।

ନାରଦ କହିଲେ, "ବସୁଦେବ, ଦେବକୀ, ଏହିଭଳି ଭାବରେ ଆପଣ ମଧ୍ୟ ପ୍ରଶ୍ନ ପଚାରିଲେ, ଆପଣଙ୍କୁ ଉତ୍ତର ମିଳିଗଲା। ଏବେ ଆପଣ ଏହି ଭାଗବତ ଧର୍ମକୁ ଆଚରଣ କରନ୍ତୁ । ତେବେ ଆପଣମାନେ ମଧ୍ୟ ମୁକ୍ତ ହୋଇଯିବେ । ଆପଣମାନେ ତ ଏତେ ଭାଗ୍ୟବାନ ଯେ ନାରାୟଣ ଭଗବାନ୍ ସ୍ୱୟଂ ଆପଣଙ୍କର ପୁତ୍ର ହୋଇ ଆସିଛନ୍ତି, ଆପଣଙ୍କ ଭଳି ଭାଗ୍ୟ ଆଉ କାହାକୁ ହୋଇପାରେ ? ଆପଣ ଶ୍ରୀକୃଷ୍ଣଙ୍କୁ କେବଳ ପୁତ୍ର ବୁଦ୍ଧିରେ ଦେଖନ୍ତୁ ନାହିଁ, ତାଙ୍କୁ କେବଳ ନିଜର ପୁତ୍ର ବୋଲି ଭାବନ୍ତୁ ନାହିଁ । ସେ ତ ବ୍ରହ୍ମ, ସାକ୍ଷାତ୍ ପରମାତ୍ମା। ତେଣୁ ତାଙ୍କୁ ପୁତ୍ରଭାବରେ ପ୍ରେମ କରିବା ତ ଠିକ୍ ଅଛି, କିନ୍ତୁ ତା ସହିତ ତାଙ୍କୁ ବ୍ରହ୍ମ ରୂପରେ ଜାଣିବା ମଧ୍ୟ ଜରୁରୀ ଅଟେ । ତାଙ୍କଠାରେ ବ୍ରହ୍ମବୁଦ୍ଧି ରଖି ଆପଣ ତାଙ୍କୁ ଭକ୍ତି କରନ୍ତୁ ।" ନାରଦଙ୍କ ଦ୍ୱାରା ଏହି ନବଯୋଗୀ ପ୍ରସଙ୍ଗକୁ ଶୁଣି ଦେବକୀ ତଥା ବସୁଦେବ ଆଶ୍ଚର୍ଯ୍ୟଚକିତ ହୋଇଗଲେ । ବିସ୍ମିତ ହୋଇଗଲେ। ସେମାନେ ନିଜର ମୋହ ଛାଡି ଦେଲେ । ନାରଦଙ୍କ ବଚନଦ୍ୱାରା ତାଙ୍କୁ ମଧ୍ୟ ସେହିଭଳି ଭକ୍ତି ପ୍ରାପ୍ତି ହୋଇଗଲା ଏବଂ ସେ ମୁକ୍ତ ହୋଇଗଲେ ।

ଯେ କେହି ପୁରୁଷ ଏହି ନବଯୋଗୀ ଉପଦେଶକୁ ପଢ଼େ, ଶୁଣେ ଏହାର ଧ୍ୟାନ, ଅଥବା ଏହି ପ୍ରସଙ୍ଗର ଚିନ୍ତନ କରେ ସେ ବ୍ରହ୍ମସ୍ୱରୂପ ହେବାର ଯୋଗ୍ୟ ହୋଇ ପୁଣି ବ୍ରହ୍ମ ହିଁ ହୋଇଯାଇଥାଏ। ଏହା ହେଉଛି ଫଳଶ୍ରୁତି । ଏହିଭଳି ଭାବରେ ଏହି ପାବନ ଇତିହାସ - ନବଯୋଗୀମାନଙ୍କର ଅତି ସୁନ୍ଦର ପ୍ରସଙ୍ଗ ଏଠାରେ ସମାପ୍ତ ହେଉଛି ।

## ଦେବତାମାନଙ୍କର ଭଗବାନଙ୍କୁ ସ୍ୱଧାମ ଫେରିବା ନିମନ୍ତେ ପ୍ରାର୍ଥନା

ପର ଅଧ୍ୟାୟରେ ବର୍ଣ୍ଣନ ଆସେ ଯେ ଯେତେବେଳେ ନାରଦ ବସୁଦେବ-ଦେବକୀଙ୍କୁ ଉପଦେଶ ନେଇ ସାରି ଚାଲିଗଲେ ସେତେବେଳେ ବ୍ରହ୍ମା, ମହାଦେବ ଏବଂ ଦେବେନ୍ଦ୍ର, ସମସ୍ତ ଦେବତାଗଣ, ଭୂତଗଣ, ମରୁଦ୍‌ଗଣ ଆଦି ସମସ୍ତେ ଭଗବାନଙ୍କ ପାଖକୁ ଦ୍ୱାରିକା ଆସିଲେ। ସବୁ ଦେବତାମାନେ ଭଗବାନଙ୍କର ସ୍ତୁତି କଲେ, ତାପରେ ବ୍ରହ୍ମା କହିଲେ, "ଭଗବାନ, ଆମ ପ୍ରାର୍ଥନା ଶୁଣି ଆପଣ ଅବତାର ଗ୍ରହଣ କରି ଏହି ପୃଥିବୀକୁ ଆସିଲେ ଏବଂ ଅସୁରମାନଙ୍କୁ ନାଶ କରି ପୃଥିବୀର ବୋଝ କମ କଲେ। ଶ୍ରୀକୃଷ୍ଣ ରୂପରେ ଆପଣଙ୍କୁ ଏଠି ପୃଥିବୀରେ ଶହେ ପଚିଶ ବର୍ଷ ହେଇଗଲାଣି (କଣ ଭଗବାନଙ୍କ ଆୟୁ ୧୨୫ବର୍ଷ ? ଅର୍ଥାତ୍ କୃଷ୍ଣ ରୂପରେ ତାଙ୍କର ଆୟୁ ୧୨୫ ବର୍ଷ ହେଇସାରିଥିଲା।)"

**ଶରଚ୍ଛତ ବ୍ୟତୀତାୟ ପଞ୍ଚବିଂଶାଧିକଂ ପ୍ରଭୋ ॥** (୧୧.୬.୨୫)

"ଏବେ ଆପଣଙ୍କ ଦ୍ୱାରା କରଣୀୟ କୌଣସି ଦେବକାର୍ଯ୍ୟ ବାକି ନାହିଁ। ଆପଣଙ୍କ ଯଦୁକୂଳକୁ ବ୍ରାହ୍ମଣଙ୍କର ଅଭିଶାପ ମଧ୍ୟ ମିଳି ପାରିଛି, ସମସ୍ତ ଯଦୁବଂଶୀ ସ୍ୱୟଂ ନଷ୍ଟ ହେଇଯିବ, ଏବେ ଆପଣଙ୍କ ବିନା ବୈକୁଣ୍ଠ ଲୋକ ଭଲ ଲାଗୁନି, ତେଣୁ ଆପଣ ଠିକ୍ ଭାବିଲେ ବୈକୁଣ୍ଠ ଲୋକକୁ ଫେରି ଚାଲନ୍ତୁ।"

ଭଗବାନ କହିଲେ। "ଏହା ସବୁ ମୁଁ ଆଗରୁ ଭାବି ରଖିଛି। ଆପଣମାନେ ଠିକ୍ କହୁଛନ୍ତି- ଏଠାରେ ମୁଁ ଆପଣମାନଙ୍କ କାମ ସାରିଦେଇଛି। ଯଦୁବଂଶକୁ ମଧ୍ୟ ବ୍ରହ୍ମଶାପ ମିଳିସାରିଲାଣି, କିନ୍ତୁ ସେ ସବୁ ମୁଁ ନିଜ ଆଖିରେ ଦେଖି ସାରିଲେ ଯାଇଁ ଫେରିବି। ଏମାନେ ଦ୍ୱାରିକାରେ ଥିବା ପର୍ଯ୍ୟନ୍ତ ବ୍ରହ୍ମଶାପ ଫଳିବନି, ତେଣୁ ଏମାନଙ୍କୁ ଦ୍ୱାରିକାରୁ ବାହାର କରି ଅନ୍ୟ କୌଣସି ସ୍ଥାନକୁ ନେବାକୁ ପଡିବ।"

**ୟଦ୍ୟସଂହୃତ୍ୟ ଦୃପ୍ତାନାଂ ୟଦୂନାଂ ବିପୁଲଂ କୁଲମ୍।**
**ଗନ୍ତାସ୍ମ୍ୟନେନ ଲୋକୋଽୟମୁଦ୍‌ବେଲେନ ବିନଂକ୍ଷୟତି ॥** (୧୧.୬.୩୦

**ଏହି ଯଦୁବଂଶୀ ଯେଉଁମାନଙ୍କ ସାହାଯ୍ୟରେ ମୁଁ ଅନ୍ୟ ଅସୁର ଏବଂ କୌରବ ମାନଙ୍କର ସଂହାର କଲି, ସେମାନେ ଅତି ପ୍ରବଳ, ଅତ୍ୟନ୍ତ ଶକ୍ତିଶାଳୀ ହେଇଯାଇଛନ୍ତି। ତା ସହିତ ଧନ, ବଳ ଆଦିର ମଦରେ ଉନ୍ମତ୍ତ ହେଇଯାଇଛନ୍ତି। ଏମାନଙ୍କ ବିନାଶ**

ପୂର୍ବରୁ ମୁଁ ଚାଲିଗଲେ, ଏମାନଙ୍କୁ ଆଉ କେହି ବାଧା ଦେଇପାରିବେ ନାହିଁ ଏବଂ ଏମାନେ ଉଦ୍‌ଦଣ୍ଡ ହେଇ ସମସ୍ତଙ୍କର ବିନାଶର କାରଣ ହେବେ।

**ଇଦାନୀଂ ନାଶ ଆରବ୍ଧଃ କୁଳସ୍ୟ ଦ୍ୱିଜଶାପତଃ।**
**ଯାସ୍ୟାମି ଭବନଂ ବ୍ରହ୍ମନ୍ନେତଦନ୍ତେ ତବାନଘ ॥** (୧୧.୬.୩୧)

"ବ୍ରାହ୍ମଣମାନଙ୍କ ଅଭିଶାପ ଅନୁସାରେ ଯଦୁବଂଶୀମାନଙ୍କର ବିନାଶ ତ ଆରମ୍ଭ ହୋଇଗଲାଣି। କିନ୍ତୁ ମୁଁ ତାର ଅନ୍ତ ଦେଖିକରି ଫେରିବି।" ତାପରେ ସେମାନେ ଭଗବାନଙ୍କୁ ନମସ୍କାର କରି ନିଜ ନିଜ ଧାମକୁ ଚାଲିଗଲେ।

**ଭଗବାନ ଶ୍ରୀକୃଷ୍ଣଙ୍କୁ ଉଦ୍ଧବଙ୍କର ପ୍ରାର୍ଥନା**

ଏବେ ଦ୍ୱାରକାରେ ଘୋର ଅପଶକୁନ ଓ ଉତ୍ପାତ ହେବାକୁ ଲାଗିଲା । ସେତେବେଳେ ଭଗବାନ ନିଜର ସମସ୍ତ ସ୍ୱଜନମାନଙ୍କୁ କହିଲେ ଯେ ଆମର ଯଦୁକୁଳକୁ ବ୍ରାହ୍ମଣମାନଙ୍କର ଅଭିଶାପ ପଡିଲାଣି । ତେଣୁ ଏବେ ଏହି ସ୍ଥାନକୁ ଛାଡି ପ୍ରଭାସ କ୍ଷେତ୍ରକୁ ଚାଲିଯିବା କଥା । ପ୍ରଭାସ ଏକ ମହାପୁଣ୍ୟପ୍ରଦ କ୍ଷେତ୍ର ଅଟେ । ଆମ୍ଭେମାନେ ସେଠାରେ ଯାଇ ପୂଜା, ତର୍ପଣ, ଦାନଧର୍ମ ଆଦି କରିବା। ବ୍ରାହ୍ମଣମାନଙ୍କୁ ଭୋଜନ କରାଇବା । ସେମାନଙ୍କୁ ଦାନ-ଦକ୍ଷିଣା ଆଦି ଦେବା। ଏହାଦ୍ୱାରା ଆମ୍ଭମାନଙ୍କୁ ପୁଣ୍ୟପ୍ରାପ୍ତ ହେବ ଏବଂ ଆମ୍ଭମାନଙ୍କ ଦ୍ୱାରା ଯେଉଁ ପାପ ହୋଇଛି, ସେଥିରୁ ଆମ୍ଭର ମୁକ୍ତି ହେବ । ଆପଣମାନେ ଆଗରେ ଚାଲନ୍ତୁ, ମୁଁ ଆସୁଛି ।

**ଏବଂ ଭଗବତାଽଽଦିଷ୍ଟା ଯାଦବାଃ କୁଳନନ୍ଦନ ।**
**ଗନ୍ତୁଂ କୃତଧିୟସ୍ତୀର୍ଥଂ ସ୍ୟନ୍ଦନାନ୍ ସମୟୂୟୁଜନ୍ ॥** (୧୧.୬.୩୬)

ତାପରେ ସମସ୍ତ ଯଦୁବଂଶୀ ଭଗବାନଙ୍କର ଆଦେଶର ପାଳନ କରି ସେଠାରୁ ସମସ୍ତେ ପ୍ରଭାସ କ୍ଷେତ୍ର ଯିବା ନିମନ୍ତେ ନିଜ ନିଜର ରଥ ଯୋଚିବାକୁ ଲାଗିଲେ ।

**ଦୃଷ୍ଟ୍ୱାରିଷ୍ଟାନି ଘୋରାଣି ନିତ୍ୟଂ କୃଷ୍ଣମନୁବ୍ରତଃ ॥** (୧୧.୬.୪୦)

ଉଦ୍ଧବଜୀ ଯେତେବେଳେ ଏହି ସବୁ କଥା ଦେଖିଲେ-ଶୁଣିଲେ, କେବଳ ସେତିକି ନୁହେଁ, ବରଂ ଘୋର ଅମଙ୍ଗଳକୁ ଦେଖିଲେ, ତ ସେ ବୁଝିଗଲେ ଯେ ଭଗବାନ ଏମାନଙ୍କୁ ଏଠାରୁ କାହିଁକି ବାହାର କରୁଛନ୍ତି । ତାହା ସେଥିପାଇଁ ଯେ ଏବେ ଏଠାରେ ସ୍ୱୟଂ ଭଗବାନ ମଧ୍ୟ ରହିବେ ନାହିଁ ।

ପୂର୍ବ ପ୍ରସଙ୍ଗରେ ଆମେମାନେ ଦେଖିଛନ୍ତି ଯେ ଉଦ୍ଧବଜୀ ପାଞ୍ଚ ବର୍ଷ ଆୟୁଠାରୁ ଭଗବାନଙ୍କର ଭକ୍ତି କରୁଛନ୍ତି । ଭଗବାନଙ୍କର ଆୟୁ ଏବେ ୧୨୫ ବର୍ଷ ହେଲାଣି, ତେବେ ଉଦ୍ଧବଜୀ ମଧ୍ୟ ବୃଦ୍ଧ ହୋଇଯାଇଥିବେ । ସେ ଭଗବାନଙ୍କର ସଙ୍ଗରେ ସର୍ବଦା ରହୁଥିଲେ । ଏବେ ସେ ଯେତେବେଳେ ଦେଖିଲେ ଯେ ସମସ୍ତେ ଯିବାକୁ ବାହାରିଲେଣି। ଭଗବାନ ଏକୁଟିଆ ବସିଛନ୍ତି। ସେତେବେଳେ ଉଦ୍ଧବଜୀ ଏକାନ୍ତରେ ଭଗବାନଙ୍କ ପାଖରେ ଯାଇ ବସିଲେ ଏବଂ -

**ପ୍ରଣମ୍ୟ ଶିରସା ପାଦୌ ପ୍ରାଞ୍ଜଳିସ୍ତମଭାଷତ ॥** (୧୧.୬.୪୧)

ଭଗବାନଙ୍କୁ ପ୍ରଣାମ କରି କହୁଛନ୍ତି, "ଭଗବାନ ! ଏହା ଦେଖି ମୋତେ ବଡ଼ ଆଶ୍ଚର୍ଯ୍ୟ ହେଉଛି ଯେ ବ୍ରାହ୍ମଣମାନଙ୍କର ଅଭିଶାପ ମିଳିଲା ଏବଂ ସେଥିପାଇଁ ଆପଣ ଏମାନଙ୍କୁ ଏଠାରୁ ଯିବାକୁ କହୁଛନ୍ତି ।"

**ଦେବଦେବେଶ ଯୋଗେଶ ପୁଣ୍ୟଶ୍ରବଣକୀର୍ତନ ।**
**ସଂହୃତ୍ୟୈତତ୍ କୁଳଂ ନୂନଂ ଲୋକଂ ସନ୍ତ୍ୟକ୍ଷତେ ଭବାନ୍ ।**
**ବିପ୍ରଶାପଂ ସମର୍ଥୋଽପି ପ୍ରତ୍ୟହନ୍ନ ଯଦୀଶ୍ୱରଃ ॥** (୧୧.୬.୪୨)

ଆପଣ ବ୍ରାହ୍ମଣ ଅଭିଶାପକୁ କାଟି ପାରି ଥାଆନ୍ତେ, କିନ୍ତୁ ଆପଣ ଏଭଳି କରିଲେ ନାହିଁ । ସେହି ସ୍ଥାନରେ ଆପଣ ସମସ୍ତଙ୍କୁ ପ୍ରଭାସ କ୍ଷେତ୍ରକୁ ପଠାଉଛନ୍ତି। ଏହାର ଅର୍ଥ ମୁଁ ବୁଝି ଗଲିଣି । ତେଣୁ ଏବେ ଅଭିଶାପ କାରଣରୁ ଯେତେବେଳେ ଏହି ଯଦୁକୂଳ ବଂଶର ବିନାଶ ହେବ, ତୁରନ୍ତ ଆପଣ ଏହି ଧରାଧାମକୁ ଛାଡି ଏଠାରୁ ଚାଲିଯିବେ ।"

**ନାହଂ ତବାଙ୍ଘ୍ରିକମଲଂ କ୍ଷଣାର୍ଦ୍ଧମପି କେଶବ ।**
**ତ୍ୟକ୍ତୁଂ ସମୁତ୍ସହେ ନାଥ ସ୍ୱଧାମ ନୟ ମାମପି ॥** (୧୧.୬.୪୩)

"ଭଗବାନ୍ ! ଆପଣଙ୍କର ଚରଣକମଳକୁ ଛାଡି ମୁଁ ଅର୍ଦ୍ଧ କ୍ଷଣ ମଧ୍ୟ ରହିପାରିବି ନାହିଁ । ଏପର୍ଯ୍ୟନ୍ତ ଖାଉଥିଲେ-ପିଉଥିଲେ, ଉଠିଲେ-ବସିଲେ, ଶୋଇଲେ-ଉଠିଲେ ମୁଁ ଆପଣଙ୍କ ସାଙ୍ଗରେ ରହିଛି । ମୁଁ ପ୍ରତ୍ୟେକ କର୍ମ ଆପଣଙ୍କ ସାଙ୍ଗରେ କରିଛି ।" ଆପଣଙ୍କ ଯୋଗୁଁ ମୋତେ ଏଠାରେ ରହିବାର ଆନନ୍ଦ ମଧ୍ୟ ମିଳୁଥିଲା । ଯଦି ଆପଣ ନିଜ ଧାମକୁ ଫେରିଯାଉଛନ୍ତି, ତେବେ ମୋତେ ମଧ୍ୟ ସଙ୍ଗରେ ନେଇଯାଆନ୍ତୁ ।" ଭଗବାନ କହିଲେ, "ତୁମେ ମୋ ସାଙ୍ଗରେ କିପରି ଯାଇପାରିବ ? ଉଦ୍ଧବଜୀ କହିଲେ,

"ମୁଁ କାହିଁକି ଯାଇପାରିବି ନାହିଁ ? ଆପଣ ଗରୁଡ ଉପରେ ବସି ଯିବେ । ମୁଁ ମଧ୍ୟ ଗରୁଡଙ୍କୁ ଧରି ବସିବି । ଏହିଭଳି ଭାବରେ ମୁଁ ମଧ୍ୟ ଆପଣଙ୍କର ସଙ୍ଗରେ ଯିବି ।" ଭଗବାନ୍ ଟିକିଏ ହସି କହିଲେ, "ମୋର ଧାମରେ ଗରୁଡଙ୍କର ମଧ୍ୟ ପ୍ରବେଶ ନାହିଁ । କାହିଁକି ନା ତାହା ଏକ ଲୋକ ବିଶେଷ ନୁହେଁ ଯେ ଯେଉଁଠି କୌଣସି ବାହାନରେ ବସି ଯିବାକୁ ହେବ। ତା ତ ନିଜର ଶୁଦ୍ଧ ଚୈତନ୍ୟ ସ୍ୱରୂପ। ତାକୁ ଜାଣିଯିବା ପରେ ନା କୌଣସି ଅଜ୍ଞାନ ଅବଶେଷ ରହେ, ନା ସେଠାରୁ ଫେରିବାକୁ ପଡିଥାଏ । ତାକୁ ଏହି ସୂର୍ଯ୍ୟ, ଚନ୍ଦ୍ର, ଅଗ୍ନି ଆଦି କେହି ପ୍ରକାଶିତ କରିପାରନ୍ତି ନାହିଁ ବରଂ ଏହି ସବୁ ତା ଠାରୁ ପ୍ରକାଶିତ ହୁଅନ୍ତି ।" ତାପରେ ଉଦ୍ଧବଜୀ କହିଲେ, "ଆପଣଙ୍କର ଏଭଳି ଧାମ ଅଛି ?" କହିଲେ, "କୌଣସି ସନ୍ଥଙ୍କୁ ପଚାରନ୍ତୁ ।" ଉଦ୍ଧବଜୀଙ୍କୁ ଲାଗିଲା ଏବେ ମୁଁ ସନ୍ଥଙ୍କର ପାଖକୁ କେଉଁଠି ଯିବି ? ସବୁଠାରୁ ବଡ ଭଗବାନ ସ୍ୱୟଂ ଏଠାରେ ବସିଛନ୍ତି, ତେବେ ମୁଁ ଏଠି-ସେଠି କାହିଁକି ଯିବି ? ତେଣୁ ସେ କହୁଛନ୍ତି ଯେ "ମୁଁ କେଉଁଠି ଯିବି ନାହିଁ । ଆପଣଙ୍କର ପାଖରେ ହିଁ ବସିବି।"

**ଏକାନ୍ତିନଂ ପ୍ରିୟଂ ଭୃତ୍ୟମୁଦ୍ଧବଂ ସମଭାଷତ ॥** (୧୧.୬.୫୦)

ତାପରେ ଭଗବାନ ଶ୍ରୀକୃଷ୍ଣ ଉଦ୍ଧବଜୀଙ୍କୁ କହୁଛନ୍ତି, "ତୁମେ ବୁଝିଗଲଣି ଯେ ଏବେ ମୁଁ କଣ କରିବି ? ଏବେ ଏଠାରେ ମୋର କାର୍ଯ୍ୟ ସମାପ୍ତ ହୋଇ ଗଲାଣି । ଆଜିଠାରୁ ସାତଦିନ ପରେ ଦ୍ୱାରକାନଗରୀ ସମୁଦ୍ରରେ ବୁଡିଯିବ। ମୋର ପ୍ରସ୍ଥାନ ପରେ ଏଠାରେ କଳିଯୁଗର ପ୍ରବେଶ ହୋଇଯିବ ଏବଂ ସବୁକିଛି ଓଲଟା-ପାଲଟା ହୋଇଯିବ।"

**ନ ବସ୍ତବ୍ୟଂ ତ୍ୱୟୈବେହ ମୟା ତ୍ୟକ୍ତେ ମହୀତଲେ ।** (୧୧.୭.୫)

"ମୋର ଯିବା ପରେ ଏହି ପୃଥିବୀ (ଏହି ସ୍ଥାନରେ)ରେ ତୁମେ ମଧ୍ୟ ରହିବ ନାହିଁ। କାହିଁକି ନା କଳିଯୁଗରେ ଏଠାରେ ରହୁଥିବା ଲୋକମାନଙ୍କ ଦ୍ୱାରା ଅଧର୍ମ ପ୍ରବୃତ୍ତି ବୃଦ୍ଧି ହେବ । ତେଣୁ ସବୁକିଛି ଛାଡି ତୁମେ ନିଜର ମନକୁ ମୋଠାରେ ଲଗାଇଦେବ ଏବଂ ଜ୍ଞାନର ଆଶ୍ରୟ ନେଇ ଜ୍ଞାନୀ ପୁରୁଷଙ୍କ ଭଳି ରହିବ ।"

ଏବେ ଆଗକୁ ବଢ଼ିବାର ପୂର୍ବରୁ ଗୋଟିଏ କଥା ଧ୍ୟାନରେ ରଖିବାର ଯୋଗ୍ୟ ହେଉଛି ଏକ ପ୍ରଶ୍ନ ଉଠିପାରେ ଯେ ଉଦ୍ଧବଜୀ ମଧ୍ୟ ସେହି ଯଦୁବଂଶର ଥିଲେ ତେବେ ସେ କିଭଳି ବଞ୍ଚି ରହିଲେ ? ପରସ୍ପର କଳହ କରୁଥିବା ଯୋଗୁ ସଂପୂର୍ଣ୍ଣ ଯଦୁବଂଶର ସଂହାର ହୋଇଗଲା । ତେବେ ଉଦ୍ଧବଙ୍କର ସଂହାର କାହିଁକି ହେଲା ନାହିଁ ? ତେବେ

କଥା ହେଉଛି ଭଗବାନ ବିଚାର କଲେ ଯେ ଉଦ୍ଧବ ମୋଠାରୁ କିଛି କମ୍ ନୁହେଁ । ସେଥିପାଇଁ ମୋ ପରେ ସେ ମୋର ପ୍ରତିନିଧି ରୂପରେ ରହି ଧ୍ୟାନ କରନ୍ତୁ, ମୋ ଦ୍ୱାରା ଦିଆଯାଇଥିବା ଜ୍ଞାନର ପ୍ରଚାର କରନ୍ତୁ । ଏଭଳି ବିଚାର କରି ଭଗବାନ ତାଙ୍କୁ ଜ୍ଞାନ ଦେଲେ ଏବଂ ବିନାଶ ପୂର୍ବରୁ ବଦରିକା ଆଶ୍ରମକୁ ପଠାଇ ଦେଲେ । ତେଣୁ ତାଙ୍କୁ ସେଠାରେ ରହିବାକୁ କହିଲେ ନାହିଁ ।

## ଉଦ୍ଧବ ଗୀତା

ଶ୍ରୀମଦ୍‌ଭାଗବତରେ ଭଗବାନ ଶ୍ରୀକୃଷ୍ଣ ଉଦ୍ଧବଙ୍କୁ ଏହି ଯେଉଁ ଉପଦେଶ ନେଇଛନ୍ତି, ତାର ନାମ ହେଉଛି **'ଉଦ୍ଧବ ଗୀତା'** । ଏଥିରେ ଭଗବାନ ଉଦ୍ଧବଙ୍କୁ ପ୍ରଥମେ ସଂକ୍ଷେପରେ ସମସ୍ତ କଥା କହିଛନ୍ତି । ତାପରେ ଯେଉଁଭଳି ଭାବରେ ଉଦ୍ଧବ ପଚାରି ଚାଲିଲେ ସେହିଭଳି ଭାବରେ ଭଗବାନ ତାର ବିସ୍ତାର କରି ଚାଲିଲେ । ଭଗବାନ ଯାହା ମୁଖ୍ୟ ରୂପରେ କହିଛନ୍ତି, ଆମେ ପ୍ରଥମେ ତାକୁ ସାର ରୂପରେ ଦେଖିବା । ତାର ବିସ୍ତାର ଭାଗବତରେ ଅଲଗା-ଅଲଗା ସ୍ଥାନରେ ପୂର୍ବରୁ ଆସିଛି ।

ଏକାଦଶ ସ୍କନ୍ଧର ସପ୍ତମ ଅଧ୍ୟାୟର ପ୍ରାରମ୍ଭରେ ଥିବା ଚାରି-ପାଞ୍ଚ ଶ୍ଲୋକ ହେଉଛି ସାର ରୂପ । ଭଗବାନ କହୁଛନ୍ତି -

**ଯଦିଦଂ ମନସା ବାଚା ଚକ୍ଷୁର୍ଭ୍ୟାଂ ଶ୍ରବଣାଦିଭିଃ ।**

**ନଶ୍ୱରଂ ଗୃହ୍ୟମାଣଂ ଚ ବିଦ୍ଧି ମାୟାମନୋମୟମ୍ ॥** (୧୧.୭.୭)

"ଉଦ୍ଧବ ମୋର ଏହି କଥାକୁ ବୁଝିଯାଅ ଯେ ନିଜର ବୁଦ୍ଧି, ବାଣୀ, ଚକ୍ଷୁ (ନେତ୍ର), କର୍ଣ୍ଣ (କାନ), ଆଦି ଇନ୍ଦ୍ରିୟମାନଙ୍କ ଦ୍ୱାରା ତଥା ମନ ଦ୍ୱାରା ତୁମକୁ ଯେଉଁ ଜଗତ ଅଥବା ଏହି ଜଗତରେ ଯାହା କିଛି ଅନୁଭବରେ ଆସୁଛି, ତାହା ସବୁ ନଶ୍ୱର ଅଟେ । ନାଶବାନ୍ ଅଟେ । କେବଳ ଏତିକି ନୁହେଁ ବରଂ ସେ ସବୁ **'ମାୟା ମନୋମୟମ୍'** ମାୟାମୟ, ମନୋମୟ ଅଟେ ।"

ଏବେ ଦେଖନ୍ତୁ, ଅନୁଭବରେ ଆସୁଥିବା ସବୁକିଛି ନାଶବାନ୍ ହୋଇଥାଏ, ଏକଥା ତ ବୁଝି ହୋଇଯାଏ କାହିଁକି ନା ଏହା ତ ଅନୁଭବ ଦ୍ୱାରା ପ୍ରମାଣିତ । ପରନ୍ତୁ ମାୟାମୟ ଅଥବା ମନୋମୟ କଣ ? ମାୟାମୟ ଅର୍ଥାତ୍ ଯେଉଁ ବସ୍ତୁ ଯେଉଁଭଳି ଦେଖାଯାଉଛି, ତାହା ବାସ୍ତବରେ ସେହିଭଳି ନୁହେଁ । ମାୟା କାରଣରୁ ତାହା ସେହିଭଳି ଦେଖାଯାଉଛି । ଯେଉଁଭଳି ସୂର୍ଯ୍ୟ ଅସ୍ତ ହେଲା ଭଳି ଦେଖାଯାଉଛି । ପୃଥିବୀ ଚେପେଟା ଦେଖାଯାଉଛି ।

କିନ୍ତୁ ପ୍ରକୃତରେ ନା ସୂର୍ଯ୍ୟ ଅସ୍ତ ହେଉଛନ୍ତି, ନା ପୃଥିବୀ ଚେପେଟା । ପୃଥିବୀ ସ୍ଥିର ଲାଗେ। ଚନ୍ଦ୍ରମା ଅଭିବୃଦ୍ଧି ତଥା କ୍ଷୟକୁ ପ୍ରାପ୍ତ ହୁଏ । ଏହା ସବୁ ମାୟା କାରଣରୁ ହୋଇଥାଏ। ଏହାକୁ ମାୟାମୟ କୁହନ୍ତି । ମନୋମୟ କୁହନ୍ତି । ଏହାକୁ ବୈଜ୍ଞାନିକ ଭାଷାରେ 'ସାପେକ୍ଷ ବାଦ' ଦ୍ୱାରା ବୁଝାଯାଏ। ସେମାନେ କହନ୍ତି, ଯେଉଁ ବସ୍ତୁ ଅନ୍ୟ ଦୃଷ୍ଟିରେ ଯେପରି ଦେଖାଯାଏ, ସେ ବସ୍ତୁ ସ୍ୱୟଂ ନିଜ ଦୃଷ୍ଟିରେ ଏଭଳି ହୋଇ ନ ଥାଏ। ଅର୍ଥାତ୍ ସତ୍ୟ ଆଉ କିଛି ହେଇଥାଏ।

ସେଥିପାଇଁ ଯାହା ଯାହା ସବୁ ଆଖି, ନାକ, କାନ ଦ୍ୱାରା ଗ୍ରହଣ ହୋଇଥାଏ, ସେ ସବୁ ବ୍ୟାବହାରିକ ତ ହୋଇଥାଏ, କିନ୍ତୁ ତାହା ପାରମାର୍ଥିକ ସତ୍ୟ ହୋଇ ନ ଥାଏ । ଆମେ ଯେତେବେଳେ ବ୍ୟାବହାରିକ ସତ୍ତାକୁ ହିଁ ବାସ୍ତବିକ ମାନୁ ଅର୍ଥାତ୍ ତାକୁ ହିଁ ପାରମାର୍ଥିକ ସତ୍ୟ ବୋଲି ବିଚାର କରିଥାଉ, ତେବେ ହିଁ ସେ ଆମର ଦୁଃଖର କାରଣ ହୋଇଥାଏ । ଯେପରି କୌଣସି ସିନେମା ଅଥବା ନାଟକ ଦେଖିବାକୁ ଗଲେ ଏବଂ ସେଥିରେ ହେଉଥିବା ଘଟଣାମାନଙ୍କୁ ବାସ୍ତବିକ ଭାବିଲେ ହିଁ ତ ଦୁଃଖ ହେବ । କିନ୍ତୁ ଯିଏ ଚିତ୍ରପଟର ସତ୍ୟକୁ ବୁଝିଯାଏ, ତେବେ ଦୁଃଖଦ ଘଟଣାଗୁଡିକୁ ଦେଖିଲେ ମଧ୍ୟ ସେ ସେମାନଙ୍କ ପ୍ରତି ଅପ୍ରଭାବିତ ରହିପାରିବ । ଅଧିକନ୍ତୁ ସେହି ଘଟଣାଗୁଡିକ ଦେଖି ସେ ମନୋରଞ୍ଜନ କରିପାରିବ ଯେ ଦେଖନ୍ତୁ କେତେ ସୁନ୍ଦର ଭାବରେ ସେ ଅଭିନୟ କରିପାରୁଛନ୍ତି।

ଏହିଭଳି ଭାବରେ ମନ ବା ଇନ୍ଦ୍ରିୟମାନଙ୍କ ଦ୍ୱାରା ସେ ଯାହା କିଛି ଗ୍ରହଣ କରେ ସେ ସବୁ ବାସ୍ତବିକ ନୁହେଁ, ମାୟିକ ଅଟେ, ମନୋମୟ ଅଟେ । ଏବେ ଏହି ପ୍ରଶ୍ନ ହୋଇପାରେ ଯେ ଏହା ସବୁ ମନୋମୟ ତାକୁ କେଉଁ ଭଳି ଭାବରେ ବୁଝିବା ?

**ପୁଂସୋଽଯୁକ୍ତସ୍ୟ ନାନାର୍ଥୋ ଭ୍ରମଃ ସଗୁଣ ଦୋଷଭାକ୍ ।**
**କର୍ମାକର୍ମବିକର୍ମେତି ଗୁଣଦୋଷଧିୟୋ ଭିଦା ॥** (୧୧.୭.୮)

ଭଗବାନ ଉଦ୍ଧବଜୀଙ୍କୁ କହୁଛନ୍ତି ଯେ ଯାହାର ମନ ସ୍ଥିର ନୁହେଁ, ଏକାଗ୍ର ନୁହେଁ, ନିଜର ସ୍ୱରୂପରେ ସ୍ଥିତ ହୋଇନାହିଁ, ସେ ବଡ ଚଞ୍ଚଳ ହୋଇଥାଏ । ଥରେ ଯଦି ସେହି ଚଞ୍ଚଳ ମନର ବ୍ୟାପାର ପ୍ରାରମ୍ଭ ହୁଏ, ତେବେ ଜଗତର ବ୍ୟବହାର ମଧ୍ୟ ପ୍ରାରମ୍ଭ ହୋଇଯାଏ। ଏହାର ବିପରୀତ ଯେତେବେଳେ ମନର ବ୍ୟବହାର ହୁଏ ନାହିଁ, ସେତେବେଳେ ଏହି ଜଗତର ଅନୁଭବ ମଧ୍ୟ ହୋଇ ନ ଥାଏ । ଏହା ସମସ୍ତଙ୍କୁ ଜଣା, ସମସ୍ତଙ୍କର ଅନୁଭବର କଥା । ଯେଉଁଭଳି ଭାବରେ ନିଦ୍ରାରେ ମନର ବ୍ୟାପାର ହୁଏ

ନାହିଁ, ତେବେ ସେତେବେଳେ କଣ ଜଗତର ଅନୁଭବ ହୁଏ ? ହୁଏ ନାହିଁ । ସୁଖ-ଦୁଃଖ, ରାଗ-ଦ୍ୱେଷ, ପ୍ରିୟ-ଅପ୍ରିୟ, ଆଦି ବୃତ୍ତିଗୁଡ଼ିକ ଅଥବା କୌଣସି ସମସ୍ୟା କଷ୍ଟ ଅଥବା ପୀଡ଼ା କିଛି ମଧ୍ୟ ଅନୁଭବ ହୁଏ ନାହିଁ । ସେଥିପାଇଁ ତା ଲୋକମାନେ ଶୋକ ପଢ଼ିବାକୁ ଚାହାନ୍ତି । ନିଶା ଔଷଧ ନିଅନ୍ତି, କଣ କଣ ନ କରନ୍ତି । ଯଦ୍ୱାରା ସେମାନଙ୍କର ମନ ସେ ସମସ୍ୟା ଠାରୁ ଦୂରେଇ ଯାଉ !

ଏହାର ଅର୍ଥ ତ ହେଲା ଯେ ମନ ଯଦି ଗତିମାନ୍ ଥିବ, ମନ ସକ୍ରିୟ ହୋଇଥିବ, ତେବେ ହିଁ ଜଗତର ଅନୁଭବ ହେବ, ଅନ୍ୟଥା ହେବ ନାହିଁ । ଏହି ତର୍କରେ ଏହା ସିଦ୍ଧ ହୁଏ ଯେ ସବୁକିଛି ମନର ହିଁ ପ୍ରକ୍ଷେପଣ ଅଟେ, ଅର୍ଥାତ୍ **'ମନୋମୟ'** ଅଟେ । ସେଥିପାଇଁ କୁହାଯାଇଛି ଯେ ଏହି ସମସ୍ତ ବିକ୍ଷେପ କେବଳ ଏହି ମନର । ମନ ଚଞ୍ଚଳ ହେବା ମାତ୍ରକେ ବିଭିନ୍ନ ପ୍ରକାର ଗୁଣ-ଦୋଷ ପ୍ରତିଭାତ ହେବାକୁ ଆରମ୍ଭ ହୁଏ ଏବଂ ଯଦି ମନ ସ୍ଥିର ହୋଇଯାଏ ତେବେ ଏହିସବୁ ପ୍ରତିଭାତ ହୁଏ ନାହିଁ, ଜଗତର ଅନୁଭବ ହୋଇ ନ ଥାଏ । ଭଗବାନ କହୁଛନ୍ତି -

**ତସ୍ମାତ୍ ଯୁକ୍ତେନ୍ଦ୍ରିୟଗ୍ରାମୋ ଯୁକ୍ତଚିତ୍ତ ଇଦଂ ଜଗତ୍ ।**

**ଆତ୍ମନୀକ୍ଷସ୍ୱ ବିତତମାତ୍ମାନଂ ମୟ୍ୟଧୀଶ୍ୱରେ ॥** (୧୧.୭.୯)

ସେଥିପାଇଁ ତୁମେ ନିଜର ମନକୁ ଶୁଦ୍ଧ କରି ତାକୁ ନିଜର ସ୍ୱରୂପରେ ସ୍ଥିର କରିଦିଅ । ଯେତେବେଳେ ତୁମେ ନିଜର ଇନ୍ଦ୍ରିୟକୁ ତଥା ମନକୁ ବଶୀଭୂତ କରି ନେବ, ତେବେ ତୁମେ ଏହି ସମସ୍ତ ବିଶ୍ୱକୁ ନିଜ ଭିତରେ ଏବଂ ସ୍ୱୟଂକୁ ମୋ ଭିତରେ ପ୍ରାପ୍ତ କରିବ, ମୁଁ ହିଁ ପରମେଶ୍ୱର, ପରବ୍ରହ୍ମଙ୍କୁ ତୁମେ ଅଭିନ୍ନ ରୂପରେ ପ୍ରାପ୍ତ କରିବ ।

**ଜ୍ଞାନବିଜ୍ଞାନସଂଯୁକ୍ତ ଆତ୍ମଭୂତଃ ଶରୀରିଣାମ୍ ।**

**ଆତ୍ମାନୁଭବତୁଷ୍ଟାତ୍ମା ନାନ୍ତରାୟୈର୍ବିହନ୍ୟସେ ॥** (୧୧.୭.୧୦)

ଯେତେବେଳେ ତୁମେ ତତ୍ତ୍ୱଜ୍ଞାନ ବା ତାର ଅନୁଭବ ରୂପ ବିଜ୍ଞାନ ଦ୍ୱାରା ପରିପୂର୍ଣ୍ଣ ହୋଇଯିବ, ସେତେବେଳେ ସେହି ଅନୁଭବ ଦ୍ୱାରା ସନ୍ତୁଷ୍ଟ ରହୁଥିବା ଯୋଗୁ ବିଘ୍ନଠାରୁ ତୁମେ ଅଲଗା ହୋଇଯିବ ଅଥବା ବିଘ୍ନ ତୁମକୁ ପୀଡ଼ିତ କରି ପାରିବ ନାହିଁ । ପୁଣି ଏହି ଜଗତ ତୁମକୁ ଗୁଣ ଦୋଷମୟ, ଦୁଃଖମୟ, ସମସ୍ୟାଜନକ, ରାଗାସ୍ପଦ, ଅଥବା ଦ୍ୱେଷାସ୍ପଦ ଲାଗିବ ନାହିଁ ।

ଏଭଳି ଜ୍ଞାନ ଯାହାକୁ ହୋଇଯାଏ, ସେ ଜ୍ଞାନୀପୁରୁଷ ଭଲମନ୍ଦ ସମସ୍ତ ପରିସ୍ଥିତି ଠାରୁ ଊର୍ଦ୍ଧ୍ୱକୁ ଚାଲିଯାଏ । ଯେଉଁଭଳି ଏକ ଛୋଟବାଳକ ରାଗ ଦ୍ୱେଷାତ୍ମକ ଅଥବା ଗୁଣଦୋଷାତ୍ମକ ବୁଦ୍ଧି ରଖେ ନାହିଁ । ତାର ମନରେ କାହା ପ୍ରତି ରାଗଦ୍ୱେଷର ଭାବନା ରହେ ନାହିଁ । ସେ କେଉଁଠି ହେଲେ ଗୁଣ ଦୋଷ ମଧ୍ୟ ଦେଖେ ନାହିଁ । ଏହିଭଳି ଭାବରେ ଜ୍ଞାନୀ ପୁରୁଷ ମଧ୍ୟ ଏହି ରାଗ-ଦ୍ୱେଷ, ଗୁଣ ଦୋଷର ଭାବନା ଠାରୁ ମୁକ୍ତ ହୋଇ ଜଗତରେ ବିଚରଣ କରିଥାଏ ।

**ଦୋଷବୁଦ୍ଧ୍ୟୋଭୟାତୀତୋ ନିଷେଧାନ୍ନ ନିବର୍ତତେ ।**
**ଗୁଣବୁଦ୍ଧ୍ୟା ଚ ବିହିତଂ ନ କରୋତି ଯଥାର୍ଭକଃ ॥** (୧୧.୭.୧୧)

ବିଧି-ନିଷେଧ ତ ବାଳକ ବା ଅଜ୍ଞାନୀମାନଙ୍କ ନିମନ୍ତେ ହୋଇଥାଏ, କିନ୍ତୁ ଜ୍ଞାନୀ ପୁରୁଷ ତ ବିଧି-ନିଷେଧ ତଥା ତଜ୍ଜନ୍ୟ ସୁଖ-ଦୁଃଖର ଊର୍ଦ୍ଧ୍ୱକୁ ଚାଲିଯାଏ। ସେ କୌଣସି ନିଷିଦ୍ଧ କର୍ମ କରନ୍ତି ନାହିଁ, କାହିଁକି ନା ତାଙ୍କର ମନରେ କିଛି କରିବାର ଇଚ୍ଛା ନ ଥାଏ, ଏକଥା ନୁହେଁ ଯେ କୌଣସି କର୍ମକୁ ନିଷିଦ୍ଧ ଜାଣି କରି ତାକୁ ତ୍ୟାଗ କରେ । ସେ ଯେଉଁ କର୍ମକୁ କରେ, ତାକୁ କର୍ତ୍ତବ୍ୟ ବୁଦ୍ଧିଦ୍ୱାରା ଅଥବା ଏହା ସବୁ ମୋତେ କରିବା ଉଚିତ, ଏହା ମୋର କର୍ତ୍ତବ୍ୟ, ଏଭଳି ବିଚାର କରି ମଧ୍ୟ ସେ କିଛି କରେ ନାହିଁ । ସେ ଯାହା କିଛି କରେ ତାକୁ 'ଅର୍ଭକବତ୍' ଛୋଟ ଶିଶୁଭଳି ସ୍ୱାଭାବିକ ରୂପରେ କରିଥାଏ । ଯେଉଁଭଳି ଏକ ଶିଶୁ ଯେତେବେଳେ କୌଣସି କର୍ମ କରେ, ତେବେ ତାକୁ କରିବା ଉଚିତ୍, ଏଭଳି ବିଚାର କରି କରେ ନାହିଁ ନା ତାକୁ ଛାଡିଦେବା ଉଚିତ୍, କରିବା ଉଚିତ୍ ନୁହେଁ । ଏଭଳି ବିଚାର କରି ଛାଡେ ନାହିଁ ମଧ୍ୟ । ସେ ତ ସହଜ ଭାବରେ କରିଥାଏ ଏବଂ ସେହି ଭାବରେ ରହି କିଛି କିଛି କରୁଥାଏ । ଜ୍ଞାନୀ ପୁରୁଷ ମଧ୍ୟ ସେହିଭଳି ଭାବରେ ରହିଥାଏ। ସେ ରାଗ-ଦ୍ୱେଷ ଆଦି ସମସ୍ତ ଦ୍ୱନ୍ଦାତ୍ମକ ଭାବନାଠାରୁ ମୁକ୍ତ ହୋଇ ବିଚରଣ କରିଥାଏ।

ସାର ରୂପରେ ଭଗବାନ ଯାହା କିଛି ବର୍ଣ୍ଣନ କରିଛନ୍ତି ତା ହେଉଛି ଏତିକି ଯେ ମନ, ବାଣୀ,ଚକ୍ଷୁ ଆଦି ଇନ୍ଦ୍ରିୟ ତଥା ବୁଦ୍ଧିଦ୍ୱାରା ଆମକୁ ଯାହା ଯାହା ଅନୁଭବରେ ଆସେ ସେ ସବୁ ପରମାର୍ଥ ଅଥବା ସତ୍ୟ ହୋଇଥାଏ । ସିଦ୍ଧାନ୍ତ ରୂପରେ ଏହା ଗୋଟିଏ କଥା। ଦ୍ୱିତୀୟ କଥା ହେଉଛି ଯେ ବାସ୍ତବରେ ଯାହା ସତ୍ୟ, ପରମାର୍ଥ ସତ୍ତା, ସେ ହେଉଛି ଆଉ କିଛି । ତାକୁ ସଚ୍ଚିଦାନନ୍ଦ ପରମାତ୍ମା କୁହନ୍ତି । ସେ ପରମାତ୍ମା ହିଁ ମନରେ କୁହନ୍ତୁ ଅଥବା ମାୟାରେ - ବିବିଧ ରୂପରେ ସେ ଆମକୁ ଦେଖାଯାଉଛି, ପ୍ରତୀତି ହେଉଛି । ସେଥିପାଇଁ ଯଦି ସେ ପରମାର୍ଥ ସତ୍ୟକୁ ଅନୁଭବ କରିବାକୁ ହୁଏ, ତେବେ ପ୍ରଥମେ ନିଜର ମନ ବା

ଇନ୍ଦ୍ରିୟର ବ୍ୟାପାରକୁ ସ୍ଥିର କରିବାକୁ ପଡିବ । ଏଭଳି କରି ଶାନ୍ତ ଚିତ୍ତ ହୋଇ ଏକ ଚିତ୍ତରେ ସଚ୍ଚିଦାନନ୍ଦର ଅନୁଭବ ହୋଇଥାଏ ଏବଂ ଏହି ଜଗତର ଅନୁଭବ ହୋଇ ନ ଥାଏ । ଏହି ସତ୍ୟର ଥରେ ମାତ୍ର ଯାହାକୁ ଅନୁଭବ ହୋଇଯାଏ, ତାପରେ ସେ ପୁଣି ଯେକୌଣସି ବ୍ୟବହାର କରୁ ନା କାହିଁକି ସେ କେବେହେଲେ ବନ୍ଧନରେ ପଡେ ନାହିଁ। ଏହି ସନ୍ଦର୍ଭରେ ଗୀତାରେ ବଡ ସୁନ୍ଦର କଥା କୁହାଯାଇଛି -

**ସର୍ବଥା ବର୍ତ୍ତମାନୋଽପି ସ ଯୋଗୀ ମୟି ବର୍ତ୍ତତେ ॥** (ଭ.ଗୀତା ୬.୩୧)

ଯାହାକୁ ଏହି ଜ୍ଞାନ ହୋଇଗଲାଣି ଯେ ଏକ ହିଁ ପରମାତ୍ମା ବିବିଧ ରୂପରେ ପ୍ରତିଭାସ ହେଉଛନ୍ତି, ସବୁ କିଛି ବ୍ୟବହାର କଲେ ମଧ୍ୟ ସେ କାହାର ବନ୍ଧନରେ ଆସେ ନାହିଁ । କିନ୍ତୁ ଅଜ୍ଞାନୀ ପୁରୁଷ ବ୍ୟବହାର ନ କରି ମଧ୍ୟ (କେବଳ ମନ ଦ୍ୱାରା ବିଷୟର କଳ୍ପନା କରି) ସେ ବନ୍ଧନରେ ଆସିଯାଏ । ତେଣୁ ହେ ଉଦ୍ଧବ ! ତୁମେ ଅସତ୍ୟର, ଅନାତ୍ମାର ତ୍ୟାଗ କରି ନିଜର ସତ୍ ସ୍ୱରୂପରେ ସ୍ଥିତ ହୋଇଯାଅ।

ଭଗବାନଙ୍କର ଏହି କଥାକୁ ତଥା ତାଙ୍କର ଆଦେଶକୁ ଶୁଣି ଉଦ୍ଧବଜୀ କହୁଛନ୍ତି - ଭଗବନ୍ ! ଆପଣ ଏବେ ଯେଉଁ ଜ୍ଞାନର, ସନ୍ନ୍ୟାସର କଥା କହିଲେ, ତାହା ସାମାନ୍ୟ ଲୋକମାନଙ୍କ ନିମନ୍ତେ ବହୁତ କଠିନ, ଦୁର୍ଲଭ ଅଟେ।

**ତ୍ୟାଗୋଽୟଂ ଦୁଷ୍କରୋ ଭୂମନ୍ କାମାନାଂ ବିଷୟାତ୍ମଭିଃ ॥**

(୧୧.୭.୧୫)

ଯେଉଁ ଲୋକମାନଙ୍କର ମନ ଏବେ ଲୌକିକ ଅଥବା ସାଂସାରିକ ବସ୍ତୁରେ ଲାଗିଛି, ସେମାନଙ୍କ ନିମନ୍ତେ ଏହି ତ୍ୟାଗ, ଏହି ସନ୍ନ୍ୟାସ, ଜ୍ଞାନ, ଏହି ସବୁ ବଡ ଦୁଷ୍କର। ମୁଁ ମଧ୍ୟ ଏମାନଙ୍କ ଭଳି ସାଂସାରିକ କଥାରେ ତଥା ମୁଁ - ମୋର ଭିତରେ ଭ୍ରମିତ ହୋଇଗଲିଣି । ଏଣୁ ଆପଣ ଟିକିଏ ଏଭଳି ଭାବରେ ବୁଝାଇ ଦିଅନ୍ତୁ ଯେ ମୁଁ ମଧ୍ୟ ସରଳତାପୂର୍ବକ ଏହାର ପ୍ରାପ୍ତି ନିମନ୍ତେ ପ୍ରଯତ୍ନ କରିପାରିବି, ସାଧନା କରିପାରିବି । ଏହି ଜ୍ଞାନର ପ୍ରାପ୍ତି ନିମନ୍ତେ ନିଜର ମନକୁ ନିର୍ମାଣ କରିପାରିବି ।

ଦେଖନ୍ତୁ, ଉଦ୍ଧବଙ୍କର କଣ ଜ୍ଞାନ ନ ଥିଲା ? ତାଙ୍କୁ ଜ୍ଞାନ ତ ହୋଇଥିଲା, ପରନ୍ତୁ ତାହା ଥିଲା ପୁସ୍ତକ ଦ୍ୱାରା ପ୍ରାପ୍ତଜ୍ଞାନ । ସେଥିପାଇଁ ଜ୍ଞାନର ସହିତ ଅଭିମାନ ମଧ୍ୟ ଥିଲା। ପରନ୍ତୁ ଗୋପୀମାନଙ୍କର ସହିତ ମିଳିଲା ପରେ ତାଙ୍କର ଅଭିମାନ ନିବୃତ୍ତ ହୋଇଯାଇଥିଲା। ସେତେବେଳେ ତାଙ୍କ ହୃଦୟରେ ଭକ୍ତିର ପ୍ରବେଶ ମଧ୍ୟ ହୋଇଯାଇଥିଲା। ଜୀବନରେ

ବାସ୍ତବିକ ଜ୍ଞାନ ସେତେବେଳେ ଆସେ, ଯେତେବେଳେ ହୃଦୟରେ ଭକ୍ତି ଆସେ । ଗୀତାରେ ମଧ୍ୟ ସେହି କଥା କୁହାଯାଇଛି ।

**ଭକ୍ତ୍ୟା ତ୍ୱନନ୍ୟୟା ଶକ୍ୟ ଅହମେବଂ ବିଧୋଽର୍ଜୁନ ।**
**ଜ୍ଞାତୁଂ ଦ୍ରଷ୍ଟୁଂ ଚ ତତ୍ତ୍ୱେନ ପ୍ରବେଷ୍ଟୁଂ ଚ ପରଂତପ ॥**

(ଭ.ଗୀତା ୧୧.୫୪)

ସେଥିପାଇଁ ଭକ୍ତି ଭାବର ପ୍ରାପ୍ତି ନିମନ୍ତେ ଭଗବାନ ତାଙ୍କୁ ବ୍ରଜକୁ ପଠାଇଥିଲେ। ସେଠାରେ ଯାଇ ଗୋପୀମାନଙ୍କ ସହ ମିଶିଲା ପରେ, ସେମାନଙ୍କର ପ୍ରେମ, ଭକ୍ତି ଭାବକୁ ଦେଖି ଯେତେବେଳେ ଉଦ୍ଧବଙ୍କ ହୃଦୟରେ ମଧ୍ୟ ଭକ୍ତିର ସଞ୍ଚାର ହେଲା, ସେତେବେଳେ ଯାଇ ତାଙ୍କର ହୃଦୟ ତତ୍ତ୍ୱଜ୍ଞାନକୁ ଗ୍ରହଣ କରିବା ନିମନ୍ତେ ଯୋଗ୍ୟ ହେଲା। ତେଣୁ ଏବେ ଏଠାରେ ଭଗବାନଙ୍କୁ ତତ୍ତ୍ୱଜ୍ଞାନ ସମ୍ବନ୍ଧୀ ପ୍ରଶ୍ନ ପଚାରୁଛନ୍ତି ।

**ନାରାୟଣଂ ନରସଖଂ ଶରଣଂ ପ୍ରପଦ୍ୟେ ॥** (୧୧.୭.୧୮)

ଉଦ୍ଧବ କହୁଛନ୍ତି - ମୁଁ ଆପଣଙ୍କର ଶରଣରେ ଆସିଛି, ଆପଣ ମୋତେ ବୁଝାଇ କରି କୁହନ୍ତୁ । ଭଗବାନ ମଧ୍ୟ ବଡ ବିଲକ୍ଷଣ । ଅର୍ଜୁନଙ୍କୁ ଉପଦେଶ ଦେଉଛନ୍ତି ଯେ **'ଉଦ୍ଧରେଦାତ୍ମନାତ୍ମାନମ୍'** ନିଜର ଉଦ୍ଧାର ସ୍ୱୟଂ କର । ଦେଖନ୍ତୁ, ବୁଦ୍ଧିମାନ ଲୋକମାନଙ୍କୁ ଭଗବାନ ସବୁ ବେଳେ ଏହି କଥା କୁହନ୍ତି । କହିଲେ - **'ପ୍ରାୟେଣ'** ପ୍ରାୟଃ ଯେଉଁ ଲୋକ ତତ୍ତ୍ୱ ବିଚକ୍ଷଣ ଲୋକ, ସେମାନେ ନିଜର ଉଦ୍ଧାର ସ୍ୱୟଂ କରିଥାଆନ୍ତି, ସେ ନିଜର ବୁଦ୍ଧିକୁ ଶୁଦ୍ଧ କରନ୍ତି ଏବଂ ସେହି ଶୁଦ୍ଧବୁଦ୍ଧିଦ୍ୱାରା ସମସ୍ତ ଜ୍ଞାନକୁ ଅର୍ଜିତ କରନ୍ତି।

## ଅବଧୂତୋପାଖ୍ୟାନ

## (ଚବିଶ ଗୁରୁମାନଙ୍କର କଥା)

ଏବେ ଆଗକୁ ଏହି ପ୍ରସଙ୍ଗ ବହୁତ ସୁନ୍ଦର । ଏହାର ପ୍ରାରମ୍ଭରେ ଏକ ବିଶେଷ କଥା କୁହାଯାଇଛି, ତାକୁ ଭଲଭାବରେ ବୁଝିଯିବା ଉଚିତ୍ । ଲୋକମାନେ ପ୍ରାୟତଃ କୁହନ୍ତି ଯେ ଆମେ ଶୁଣିଛୁ ଯେ ଗୁରୁ କରିବା ଉଚିତ୍ କାହିଁକି ନା ଗୁରୁଙ୍କର ବିନା ମନୁଷ୍ୟର ଗତି ହୋଇ ନ ଥାଏ । ସେମାନେ ବିଚାର କରନ୍ତି ତେବେ ଆମେ ଗୁରୁ କାହାକୁ ବାଛିବୁ ? ଏବଂ ଏହି କଥା ବିଚାର କରି ଗୁରୁଙ୍କୁ ଖୋଜିଥାଆନ୍ତି ମଧ୍ୟ । କିନ୍ତୁ ଏଭଳି ଖୋଜାଖୋଜି କରି କେହି ଗୁରୁ ପ୍ରାପ୍ତ କରିପାରନ୍ତି ନାହିଁ । କାହିଁକି ସତକଥା କହିବାକୁ ଗୁରୁ କରାଯାଏ ନାହିଁ । ଯଦି କେହି ଏହିଭଳି ଭାବରେ କାହାକୁ ଗୁରୁ କରିଲେ ମଧ୍ୟ ଗୋଟିଏ ଦିନ ସେ ତାକୁ ଛାଡି ଦେବ, ଛାଡି ଦିଏ ମଧ୍ୟ । ଏଠାରେ ଭଗବାନ ଶ୍ରୀକୃଷ୍ଣ ଗୁରୁଙ୍କର ବିଷୟରେ ବହୁତ ସୁନ୍ଦର କଥା କହିଛନ୍ତି । ଏହାକୁ ଭଲଭାବରେ ବୁଝିବିଚାରି ଧ୍ୟାନରେ ରଖିବା କଥା। ଭଗବାନ କହିଛନ୍ତି -

**ପ୍ରାୟେଣ ମନୁଜା ଲୋକେତତ୍ତ୍ୱବିଚକ୍ଷଣାଃ ।**
**ସମୁଦ୍ଧରନ୍ତି ହ୍ୟାତ୍ମାନମାତ୍ମନୈବାଶୁଭାଶୟାତ୍** ॥ (୧୧.୭.୧୯)

**ଆତ୍ମନୋ ଗୁରୁରାତ୍ମୈବ ପୁରୁଷସ୍ୟ ବିଶେଷତଃ ।**
**ଯତ୍ ପ୍ରତ୍ୟକ୍ଷାନୁମାନାଭ୍ୟାଂ ଶ୍ରେୟୋଽସାବନୁବିନ୍ଦତେ** ॥(୧୧.୭.୨୦)

ଏହି ଜଗତରେ **'ଲୋକ ତତ୍ତ୍ୱ ବିଚକ୍ଷଣଃ'** ଯେଉଁମାନେ ବୁଦ୍ଧିମାନ ଲୋକ ସେମାନେ ନିଜର ପ୍ରଯତ୍ନ ଦ୍ୱାରା ନିଜର ଉଦ୍ଧାର କରିଥାଆନ୍ତି । ଗୀତାରେ କୁହାଯାଇଛି ଯେ ଆମେ ସ୍ୱୟଂ ଆମର ମିତ୍ର (ମନ ଯଦି ଆମର ବଶୀଭୂତ ହୋଇଛି) ଏବଂ ଆମେ ସ୍ୱୟଂ ହି ଆମର ସବୁଠାରୁ ବଡ ଶତ୍ରୁ (ଯଦି ମନ ଆମର ବଶୀଭୂତ ନ ହୋଇଛି) ଏଠାରେ ଭଗବାନ କହୁଛନ୍ତି - **'ଆତ୍ମନୋ ଗୁରୁରାତ୍ମୈବ'** ଆମେ ସ୍ୱୟଂ ହି ନିଜର ସବୁଠାରୁ ଶ୍ରେଷ୍ଠ ଗୁରୁ । ଏଭଳି କଥା ଆମକୁ କେଉଁଠାରେ ଦେଖିବାକୁ ମିଳେ ନାହିଁ । ଆମେ ସ୍ୱୟଂ ନିଜର ଗୁରୁ - ଏଭଳି ଶୁଣିଲା ପରେ ଲାଗେ ଯେ ଏହା କିଭଳି କଥା ? ଏହି କଥାଟି ତ ବୁଝି ହେଉନି। ଏପର୍ଯ୍ୟନ୍ତ ତ ଆମେ ଶୁଣିଛନ୍ତି ଯେ ଗୁରୁଙ୍କର ଶରଣରେ ଯିବା ଉଚିତ୍। ଗୁରୁଙ୍କର ବିନା ଜ୍ଞାନ ହୁଏ ନାହିଁ, ଗତି ହୁଏ ନାହିଁ । ସେଥିପାଇଁ ଏଠାରେ ଭଗବାନଙ୍କର କହିବାର ଭାବକୁ ଭଲ ଭାବରେ ବୁଝିନେବା ଉଚିତ୍ ।

କଥା ହେଉଛି ଯେ ଯଦି ଆମ୍ଭେ ଶିଖିବା ନିମନ୍ତେ ପ୍ରସ୍ତୁତ ନ ହେବୁ, ତେବେ କେହି ମଧ୍ୟ ଆମକୁ ଶିଖାଇପାରିବ ନାହିଁ । କେହି ଶିଖାଇ ଦେଲେ ଯଦି ଲୋକ ଶିଖି ଯାଆନ୍ତେ, ତେବେ ଆଜି ଜଗତ ଏଭଳି ନ ଥାଆନ୍ତା । ମାତା-ପିତା, ସ୍ୱଜନ-ସମ୍ବନ୍ଧୀ, ଇଷ୍ଟ-ମିତ୍ର, ସନ୍ଥ-ମହାତ୍ମା, ଗୁରୁଜନ ଆଦି ସମସ୍ତେ ଶିଖାଇ-ଶିଖାଇ ଶେଷରେ ହାରିଗଲେ । ଜଗତ କିଛି ବଦଳିଛି କି ? ଆପଣମାନଙ୍କୁ ସତ୍ୟ କଥା କହୁଛି, କୌଣସି ଗୁରୁଙ୍କ ପାଖକୁ ଯାଇ ମଧ୍ୟ, ଯଦି ଆମେ ତାଙ୍କୁ ଗୁରୁ ମାନୁ ନାହୁଁ, ତେବେ ସେ କଣ ଶିଖାଇପାରିବେ ? ଏଭଳି ପରିସ୍ଥିତିରେ ଆମକୁ ଶିଖାଇବା ନିମନ୍ତେ ବ୍ରହ୍ମା ଆସନ୍ତୁ କି, ବୃହସ୍ପତି ଆସନ୍ତୁ, ଅଥବା କୌଣସି ଅନ୍ୟ ସମର୍ଥ ଗୁରୁ ଆସନ୍ତୁ ନା କାହିଁକି, ତେବେ ମଧ୍ୟ ଆମକୁ କେହି ଶିଖାଇ ପାରିବେ ନାହିଁ । ସେଥିପାଇଁ ଏଠାରେ କୁହାଯାଇଛି ଆମେ ସ୍ୱୟଂ ହିଁ ଆମର ଗୁରୁ, ଅର୍ଥାତ୍ ଆମେ ସ୍ୱୟଂ ହିଁ ଆମକୁ ଶିଖାଇପାରିବା, କିନ୍ତୁ କେହି ଚାହିଁଲେ ତ ! ଶିଖିବାକୁ ପ୍ରସ୍ତୁତ ହେଲେ ତ । ଯେ କେହି ଶିଖିବାକୁ ପ୍ରସ୍ତୁତ ହେଲେ ତ ସେ ସବୁଠାରୁ ଶିଖିପାରିବ । ତାର କେତେ ଗୁରୁ ହୋଇ ପାରିବେ । ସ୍ୱାମୀ ବିବେକାନନ୍ଦଜୀ ମଧ୍ୟ କହିଥିଲେ- ଯେ ଯଦି ଆମେ ଶିଖିବାକୁ ଚାହୁଁ, ତେବେ ବହୁତ ଲୋକଙ୍କଠାରୁ ବହୁତ କିଛି ଶିଖିପାରିବୁ । ବୃକ୍ଷଲତାଠାରୁ, ଫୁଲ-ପତ୍ରଠାରୁ, ବାୟୁଠାରୁ, ଜଳଠାରୁ, ସବୁଠି କିଛି ନା କିଛି ଶିଖିବାକୁ ମିଳିଯିବ, କିନ୍ତୁ ନ ଚାହିଁଲେ କାହାକୁ ଶିଖାଇ ପାରିବା ନାହିଁ ।

ଏହାର ଅର୍ଥ ଏହା ନୁହେଁ ଯେ ଜୀବନରେ କୌଣସି ଗୁରୁଙ୍କର ଆବଶ୍ୟକତା ନାହିଁ । ଏଠାରେ ଗୁରୁଙ୍କର ଆବଶ୍ୟକତାକୁ ଅଥବା ମହତ୍ତ୍ୱକୁ ମନା କରାଯାଇ ନାହିଁ । ଆମର ଧ୍ୟାନକୁ ପରମାତ୍ମାଙ୍କର ଆଡକୁ ଯିବା ନିମନ୍ତେ ପ୍ରତ୍ୟକ୍ଷ ସାକ୍ଷାତ୍ ଗୁରୁଙ୍କର ଆବଶ୍ୟକତା କୌଣସି ପ୍ରକାର ସନ୍ଦେହ ନାହିଁ । ତଥାପି ଏତିକି କହିବାର ଆବଶ୍ୟକତା ଅଛି ଯେ ଗୁରୁଙ୍କର ଦ୍ୱାରା ଶିଖାଗଲା ପରେ ମଧ୍ୟ ଯେ ପର୍ଯ୍ୟନ୍ତ ଆମେ ସ୍ୱୟଂ ଚିନ୍ତନ କରୁନାହାନ୍ତି, ସେ ପର୍ଯ୍ୟନ୍ତ ଆମକୁ ଜ୍ଞାନ ହୁଏ ନାହିଁ ।

ସେଇଥିପାଇଁ ହିଁ ତ ଶାସ୍ତ୍ରରେ ବର୍ଣ୍ଣନ ଆସେ ଯେ ଭଗବାନ ଶ୍ରୀକୃଷ୍ଣ ଥରେ ଦୁର୍ଯ୍ୟୋଧନଙ୍କୁ ଧର୍ମର ଶିକ୍ଷା ଦେବାକୁ ଗଲେ, ସେତେବେଳେ ଦୁର୍ଯ୍ୟୋଧନ କହୁଛି, "ଭଗବାନ୍ ! ଏହା ସବୁ ମୋତେ ଆପଣ କଣ ଶିଖାଉଛନ୍ତି । ଏହିସବୁ ତ ମୁଁ ପ୍ରଥମରୁ ଜାଣିଛି । ଧର୍ମ କଣ ? ଅଧର୍ମ କଣ ? ମୋତେ ସବୁ କିଛି ଜଣା ଅଛି । ସମସ୍ୟା କେବଳ ଏତିକି ଯେ ଧର୍ମର ପାଳନ ମୁଁ କରିପାରୁନାହିଁ ଏବଂ ଅଧର୍ମ ଆଚରଣକୁ ଛାଡି ପାରୁ ନାହିଁ । ତେଣୁ ମୋତେ ଉପଦେଶ ଦେଲେ କଣ ହେବ ?" ଏବେ କହିଲେ ଏଭଳି ବ୍ୟକ୍ତିକୁ କଣ କରାଯାଇପାରେ ?

ଦେଖନ୍ତୁ, ସେଥିପାଇଁ ଏଠାରେ ବିଶେଷ ରୂପରେ କୁହାଯାଇଛି ଯେ **'ଆତ୍ମନୋ ଗୁରୁରାତ୍ମୈବ ପୁରୁଷସ୍ୟ ବିଶେଷତଃ'** ଆମେ ସ୍ୱୟଂ ହିଁ ନିଜର ଗୁରୁ । କହିବାର ଅର୍ଥ ଯେତେବେଳେ ଆମେ ଶିଖିବା ନିମନ୍ତେ ପ୍ରସ୍ତୁତ ହେବୁ ସେତେବେଳେ ଆମେ ଶିଖି ପାରିବୁ । ଅର୍ଥାତ୍ ଆମେ ସ୍ୱୟଂ ହି ନିଜେ ନିଜକୁ ଶିଖାଇବାକୁ ପଡିବ ଏବଂ ଯେତେବେଳେ ଏଭଳି ହେବ, ସେତେବେଳେ ଆମେ ସମସ୍ତଙ୍କଠାରୁ ଶିଖିପାରିବା। ତାହା କିପରି ହେବ ? **'ଯତ୍ ପ୍ରତ୍ୟକ୍ଷାନୁମାନାଭ୍ୟାଂ ଶ୍ରେୟୋଽସାବନୁବିନ୍ଦତେ'** ନିଜର ଆଖି, କାନ, ନାକ ଆଦି ଇନ୍ଦ୍ରିୟମାନଙ୍କ ଦ୍ୱାରା ତଥା ମନ ଦ୍ୱାରା ଏହି ଜଗତର ପ୍ରତ୍ୟେକ ବସ୍ତୁକୁ ଗ୍ରହଣ କରି ସବୁଠାରୁ ବହୁତ କିଛି ଶିଖିପାରିବା । ଏହି ଯେଉଁ 'ବିଶ୍ୱ ବିଦ୍ୟାଳୟ' ଶବ୍ଦ ଅଛି, ଏହାର ପ୍ରକୃତ ଅର୍ଥ ହେଉଛି ଏହି ଯେଉଁ ବିଶ୍ୱ ଅଛି, ତାହା ହିଁ ବିଦ୍ୟାଳୟ । ବିଶ୍ୱବିଦ୍ୟାଳୟ କୌଣସି ବିଲ୍ଡିଙ୍ଗର ନାମ ନୁହେଁ । କିନ୍ତୁ ଆମେ ସବୁ ତ ବାନ୍ଧି ହୋଇ ଅଛନ୍ତି । ସ୍କୁଲ କଲେଜକୁ ଯିବା ଦ୍ୱାରା ଜ୍ଞାନ ହୁଏ, ଏହା ତ ସମସ୍ତଙ୍କୁ ଜଣା । କିନ୍ତୁ କେତେ ଜଣ ଏଭଳି ମହାତ୍ମା ଅଛନ୍ତି, ଯିଏ କେବେହେଲେ କୌଣସି ସ୍କୁଲ ଅଥବା କଲେଜକୁ ଯାଇ ନାହାନ୍ତି। ଏହି ବିଶ୍ୱଠାରୁ ସେ ସବୁକିଛି ଶିଖିଗଲେ କିନ୍ତୁ ଲୋକମାନେ ଭାବୁଥାଆନ୍ତି ଯେ ଆମେ ଗୁରୁ କରିବା ଯାହାକୁ ବି ଗୁରୁ କରିବେ ନିଜ ବୁଦ୍ଧିଦ୍ୱାରା ହିଁ ତ କରିବେ। ସେଥିପାଇଁ କରଣୀୟ ହେଉଛି ଯେ ନିଜର ମନକୁ ଶୁଦ୍ଧ କରି ଜିଜ୍ଞାସାକୁ ଅଥବା ଜ୍ଞାନର ଇଚ୍ଛାକୁ ବଢାଇ ଚାଲିବା। ଶିଖିବା ନିମନ୍ତେ ପ୍ରସ୍ତୁତ ରୁହ। ସମସ୍ତଙ୍କ ପାଖରେ ଗୁରୁଭାବ ରଖ।

ଏଠାରେ ଧ୍ୟାନ ଦେବା ଯୋଗ୍ୟ ଯେ ଭଗବାନ ହିଁ ସମସ୍ତଙ୍କର ଗୁରୁ । ସେ ହିଁ ଭିନ୍ନ ଭିନ୍ନ ରୂପରେ ଆମକୁ ଶିଖଉଛନ୍ତି । ସେହି ଆମ ଜୀବନରେ ବିଶିଷ୍ଟ ଗୁରୁ ରୂପରେ ଆସନ୍ତି। ତେବେ ଗୁରୁ କଣ କରନ୍ତି ? ଗୁରୁ ତ ତାଙ୍କୁ କୁହାଯାଏ ଯିଏ ଆମକୁ ଏଭଳି ଶିକ୍ଷା ଦିଅନ୍ତି ଏଭଳି କୌଣସି ବୁଦ୍ଧି ଦିଅନ୍ତି, ଯଦ୍ୱାରା ଆମେ ସବୁ ଜିନିଷରୁ ଶିଖିବା ନିମନ୍ତେ ସମର୍ଥ ହେବୁ ।

ଭଗବାନ କହିଲେ ଏହି ସନ୍ଦର୍ଭରେ ମହାପୁରୁଷମାନେ ଏକ ପ୍ରାଚୀନ ଇତିହାସ କହି ଥାଆନ୍ତି । ଏହି ଇତିହାସ ଅବଧୂତ ବ୍ରାହ୍ମଣ ଦତ୍ତାତ୍ରେୟଜୀ ତଥା ରାଜା ଯଦୁଙ୍କର ସଂବାଦ ରୂପରେ ବର୍ଣ୍ଣନ ହୋଇଛି । ଥରେ ଆମର ପୂର୍ବଜ ରାଜା ଯଦୁ ଅବଧୂତ ବ୍ରାହ୍ମଣ ଦତ୍ତାତ୍ରେୟଜୀଙ୍କୁ ନିର୍ଭୟ ହୋଇ ଆନନ୍ଦରେ ବିଚରଣ କରୁଥିବାର ଦେଖିଲେ । ତାଙ୍କର ନିକଟକୁ ଯାଇ ରାଜା ଯଦୁ ତାଙ୍କୁ କହିଲେ ଆପଣ ତ କିଛି କରୁ ନାହାନ୍ତି । ଏମିତି ତ ଯତ୍ର-ତତ୍ର, ଯେଉଁଠି ସେଇଠି ବିଚରଣ କରୁଛନ୍ତି ।

**କୁତୋ ବୁଦ୍ଧିରିୟଂ ବ୍ରହ୍ମନ୍ନକର୍ତ୍ତୁଃ ସୁବିଶାରଦା ।**
**ୟାମାସାଦ୍ୟ ଭବାଁଲ୍ଲୋକଂ ବିଦ୍ୱାଂଶ୍ଚରତି ବାଲବତ୍ ॥** (୧୧.୭.୨୬)

ଆପଣଙ୍କୁ ଏଭଳି ବିଲକ୍ଷଣ, ନିର୍ମଳ, ନିଶ୍ଚିତ ବୁଦ୍ଧି କେଉଁଠାରୁ ପ୍ରାପ୍ତ ହୋଇଛି - ଯାହାକୁ ପ୍ରାପ୍ତ କରି ଆପଣ ଏକ ବାଳକ ଭଳି ଉନ୍ମୁକ୍ତ ହୋଇ ବିଚରଣ କରୁଛନ୍ତି ? ଆପଣଙ୍କୁ ଦେଖିବା ମାତ୍ରକେ ଜ୍ଞାତ ହେଉଛି ଯେ ଆପଣ ସମସ୍ତ କର୍ମକୁ କରିବାରେ ସମର୍ଥ, '**କଲ୍ପଃ କବିଃ**' ସର୍ବଜ୍ଞ ଅଟନ୍ତି, ବୁଦ୍ଧିମାନ ଅଟନ୍ତି, '**ଦକ୍ଷ**' ନିପୁଣ ଅଟନ୍ତି - କାର୍ଯ୍ୟ କୁଶଳ, ଭାଗ୍ୟଶାଳୀ, ଅମୃତଭାଷୀ ଅଟନ୍ତି । ଏତେ ସବୁ ଥିଲେ ମଧ୍ୟ ଆପଣ କିଛି କଲା ଭଳି ଦେଖାଯାଉନାହାନ୍ତି, କିନ୍ତୁ ବଡ ଆନନ୍ଦରେ ବୁଡି ରହିଛନ୍ତି, ମଗ୍ନ ରହନ୍ତି, କିନ୍ତୁ ଏପଟେ ସମସ୍ତ ସଂସାରର ଲୋକ ଅତ୍ୟନ୍ତ ଶୋକ, ପାପ, ତାପରେ ସନ୍ତପ୍ତ ହେଉଛନ୍ତି, ବିକ୍ଷିପ୍ତ ହେଉଛନ୍ତି ଏବଂ ଆପଣ ଏପରି ନିଶ୍ଚିନ୍ତ ଦେଖାଯାଉଛନ୍ତି - ଯେପରି କୌଣସି ଜଙ୍ଗଲରେ ଦାବାଗ୍ନି ଲାଗିଛି, ସମସ୍ତ ପ୍ରାଣୀ ତପ୍ତ ହେଉଛନ୍ତି ଏବଂ ସେହିଠାରେ କୌଣସି ହାତୀ ଥଣ୍ଡା ଜଳରେ ବସିଛି । ଆପଣଙ୍କୁ ଏଭଳି ଶାନ୍ତି, ଏଭଳି ସହଜ ସ୍ୱରୂପ ସ୍ଥିତି କେଉଁଠାରୁ ମିଳିଗଲା ଯେ ଆପଣ ନିଜ ଭିତରେ ରମଣ କରୁଛନ୍ତି, ମଗ୍ନ ରହୁଛନ୍ତି ? ତାହା ଆପଣ କୃପା କରି ଆମମାନଙ୍କୁ ମଧ୍ୟ କୁହନ୍ତୁ ?

ଏଭଳି ପ୍ରଶ୍ନ ଶୁଣି ଦତ୍ତାତ୍ରେୟ ପ୍ରସନ୍ନ ହୋଇଗଲେ । ସେ କହିଲେ "ରାଜନ୍ କଥା ହେଉଛି ଯେ '**ସନ୍ତି ମେ ଗୁରବେ ରାଜନ୍ ବହବୋ ବୁଦ୍ଧ୍ୟୁପାଶ୍ରିତାଃ**' (୧୧.୭.୩୨) ମୋର ଅନେକ ଗୁରୁ ଅଛନ୍ତି, ଯାହାର ଆଶ୍ରୟ ମୋ ନିଜର ବୁଦ୍ଧି ଅଟେ। ଅର୍ଥାତ୍ ନିଜର ବୁଦ୍ଧି ଦ୍ୱାରା ସେମାନଙ୍କର ଆଶ୍ରୟ ନେଇ ଅବଧୁତଜୀ ସେମାନଙ୍କଠାରୁ ଶିକ୍ଷା ଗ୍ରହଣ କରିଛନ୍ତି। ମୁଁ ମଧ୍ୟ ଶିଖିଚାଲିଲି" ଏଭଳି କହିବା ସମ୍ଭବତଃ ଅଭିମାନ ଭଳି କଥା ହୋଇପାରେ, ସେଥିପାଇଁ ଅବଧୂତଜୀ ଏଭଳି କହୁନାହାନ୍ତି ଯେ ମୁଁ ଶିଖିଛି, କହୁଛନ୍ତି ଯେ ଏମାନେ ସମସ୍ତେ ମୋର ଗୁରୁ, ଏମାନେ ମୋତେ ଶିଖାଇଛନ୍ତି । ସତ୍ୟ କଥା ହେଲା ଯେ ସେ ସ୍ୱୟଂ ସେମାନଙ୍କଠାରୁ ଶିଖି ଚାଲିଲେ। ଯେଉଁ ବ୍ୟକ୍ତି ନିଜର ଅନୁଭବରୁ କିଛି ଶିଖେ, ସେ ହିଁ ବୁଦ୍ଧିମାନ୍ ।

ଦେଖନ୍ତୁ, ଆମେ ସମସ୍ତେ ବ୍ୟାଙ୍କରେ ନିଜର ଡିପୋଜିଟ୍ - ବ୍ୟାଙ୍କ ଖାତାରେ ଜମା ବଢାଇବାକୁ ଚାହାନ୍ତି ନା ନାହିଁ ? କହିଲେ ହଁ, ବଢାଇବାକୁ ଚାହାନ୍ତି । ତେବେ ଆପଣଙ୍କୁ ଗୋଟିଏ କଥା କହି ରଖୁଛି, ଗୋଟିଏ ଜ୍ଞାନର ବ୍ୟାଙ୍କ ମଧ୍ୟ ଅଛି । ସେଥିରେ ଆପଣଙ୍କ ଖାତା ସବୁବେଳେ ବଢୁଥିବ। ଜୀବନରେ ଦୁଃଖର, ସୁଖର, କଷ୍ଟର, ସଫଳତାର,

ଅସଫଳତାର, ଯାହା ଯାହା ଅନୁଭବ ପ୍ରାପ୍ତ ହେଉଛି, ସେହି ଗୋଟିଏ ଗୋଟିଏ ଅନୁଭବରୁ ଯଦି ଆମ୍ଭେ ଶିଖି ଚାଲିବା, ନିଜ ଖାତାରେ ଜ୍ଞାନର ପୁଞ୍ଜି ଜମା କରି ଚାଲିବା, ତେବେ ଆମ୍ଭ ଜ୍ଞାନର ଭଣ୍ଡାର ଭରି ଚାଲିବ। ଜୀବନରେ ଶିଖିଚାଲିବା କଥା, ଦୁଃଖଠାରୁ, ନିରାଶାରୁ, ଉଦାସୀରୁ, ନିନ୍ଦାଠାରୁ, ସ୍ତୁତିଠାରୁ, ସବୁଠାରୁ ଶିଖିବା ଉଚିତ୍ । କେବେ କାହାକୁ ବିଶ୍ୱାସ କଲେ ଏବଂ ସେ ବିଶ୍ୱାସଘାତ କଲା ତେବେ ତାକୁ ବାରମ୍ବାର ଚିନ୍ତନ କରିବା ଉଚିତ୍ ନୁହେଁ । ତାଠାରୁ ମଧ୍ୟ ଶିଖିବା ଉଚିତ୍ । ନିଜ ଭିତରେ ଅଧିକ ଚିନ୍ତା କରିବାର କୌଣସି ପ୍ରୟୋଜନ ନାହିଁ, ବୁଝିବା କଥା ଯେ ମୋତେ ଏକ ଶିକ୍ଷା ମିଳିଲା।

ଅବଧୂତ ଦତ୍ତାତ୍ରେୟଜୀ କହୁଛନ୍ତି, "ସେହି ଗୁରୁମାନଙ୍କର ନାମ ତଥା ସେମାନଙ୍କଠାରୁ ମୁଁ ଯାହା ଶିକ୍ଷା କରିଛି ତାହା ଶୁଣ । ମୋର ଗୁରୁ ହେଉଛନ୍ତି ପୃଥିବୀ, ବାୟୁ, ଆକାଶ, ଜଳ, ଅଗ୍ନି, ଚନ୍ଦ୍ରମା, ସୂର୍ଯ୍ୟ, କପୋତ, ଅଜଗର, ସମୁଦ୍ର, ପତଙ୍ଗ, ମଧୁହାରୀ, ମହୁମାଛି, ହାତୀ, ହରିଣ, ମାଛ, ପିଙ୍ଗଳା ବେଶ୍ୟା, କୁରର ପକ୍ଷୀ, ବାଳକ, କୁମାରୀ କନ୍ୟା, ବାଣ ତିଆରି କରୁଥିବା ଲୋକ ସର୍ପ, ବୁଢିଆଣୀ ତଥା ଭୃଙ୍ଗୀକୀଟ । ଏହି ସମସ୍ତଙ୍କଠାରୁ ମୁଁ ନିଜ ପାଇଁ ଯେଉଁ ଶିକ୍ଷା ଗ୍ରହଣ କରିଛି, ଏବେ ତାହା ଶୁଣ ।"

ଏଠାରେ ଗୋଟିଏ କଥା ଧ୍ୟାନ ଦେବା ଆବଶ୍ୟକ ଯେ - ଅବଧୂତଜୀ ତ ସନ୍ନ୍ୟାସୀ ଥିଲେ । ଅତଃ ସେ ଗୁରୁମାନଙ୍କ ଠାରୁ ସେ ସେହି କଥା ଶିଖିଲେ, ଯାହା ତାଙ୍କ ପାଇଁ ଉଚିତ୍ ଥିଲା । ଏହାର ଅର୍ଥ ଏହା ନୁହେଁ ଯେ ପ୍ରତ୍ୟେକ ବ୍ୟକ୍ତି ସେହି କଥାକୁ ଶିଖନ୍ତୁ। ନିଜ ନିଜର ଆଶ୍ରମ, ଅବସ୍ଥା ତଥା ସ୍ତରର ଅନୁରୂପ ମନୁଷ୍ୟ ସେ ସମସ୍ତଙ୍କଠାରୁ ଅଥବା ଅନ୍ୟ କୌଣସି ଠାରୁ କେତେ କଥା ଶିଖି ପାରିବ । ଅନ୍ୟ କୌଣସି ଶିକ୍ଷାକୁ ମଧ୍ୟ ସେ ଗ୍ରହଣ କରିପାରିବ । ଯେଉଁ ପର୍ଯ୍ୟନ୍ତ ସେ ଶିକ୍ଷା ତାର କଲ୍ୟାଣ ସାଧନ ହେଉଥିବ, ସେ ପର୍ଯ୍ୟନ୍ତ ତାକୁ ଗ୍ରହଣ କରି ଚାଲିବା କଥା । ଏହା ହିଁ ହେଉଛି କାରଣ ଯେ ଶ୍ରୀମଦ୍ ଭଗବତ୍ ଗୀତାର କେତେ କେତେ ଭାଷ୍ୟ ତଥା ବ୍ୟାଖ୍ୟା ମାନ ଉପଲବ୍ଧ ହେଉଛି । ଏଥିରେ କୌଣସି ଖରାପ କଥା ନାହିଁ ଯେଉଁ ପର୍ଯ୍ୟନ୍ତ ଏହାର ଅର୍ଥ ଦ୍ୱାରା ମନୁଷ୍ୟର କଲ୍ୟାଣ ହେଉଥିବ । ପରନ୍ତୁ ବିପରୀତ ଅର୍ଥ ଲଗାଇ ନିଜର ବୁଦ୍ଧିକୁ ଭ୍ରମିତ କରି ଅନ୍ୟମାନଙ୍କର ବୁଦ୍ଧିକୁ ମଧ୍ୟ ଭ୍ରମିତ କରାଇବା ଠିକ୍ ନୁହେଁ ।

ଅବଧୂତଜୀ କହୁଛନ୍ତି, "ଏହି ପୃଥିବୀକୁ ଦେଖ । ତାପାଇଁ କେତେ ଲୋକ କଳି କରୁଛନ୍ତି। ଏହା ମୋର ଜମି, ଏହା ତୁମର ଜମି - ଏହି କଥାକୁ ନେଇ କେହି କାହାକୁ ମାରି ଦେଉଛନ୍ତି ମଧ୍ୟ । ଏହି ପୃଥିବୀ ନିମନ୍ତେ ଭାଇ-ଭାଇର ଶତ୍ରୁ ହୋଇଯାଆନ୍ତି ।

ତଥାପି ଏହି ପୃଥିବୀ ସମସ୍ତଙ୍କୁ ନିଜ ଉପରେ ରହିବା ନିମନ୍ତେ ସ୍ଥାନ ଦେଉଛି । ସମସ୍ତଙ୍କୁ କ୍ଷମା କରୁଛି ।" ଦେଖନ୍ତୁ, ଲୋକମାନଙ୍କୁ ଯେତେବେଳେ କ୍ରୋଧ ଆସେ, ସେତେବେଳେ ସେମାନେ ପୃଥିବୀ ଉପରକୁ ଜିନିଷ ଫୋପାଡନ୍ତି, ଜୋର୍ ଜୋର୍‌ରେ ପାଦ ପିଟି ପିଟି ଚାଲନ୍ତି। ଯେତେବେଳେ ପିଲାମାନେ ଖସି ପଡନ୍ତି, ତାକୁ ଚୁପ୍ କରାଇବା ନିମନ୍ତେ ପ୍ରାୟଃ ଲୋକମାନେ କୁହନ୍ତି ଏହି (ପୃଥିବୀ) ତୋତେ ପକାଇ ଦେଲା ? ତାକୁ ମାର, ଏଭଳି କହି ତାକୁ ଆମେ ମାରିଥାଉ । ଏଥିରେ ପୃଥିବୀ କଣ ଦୋଷ ? କିନ୍ତୁ ପୃଥ୍ୱୀ କେବେହେଲେ କୌଣସି ପ୍ରତିକ୍ରିୟା କରେ ନାହିଁ । ଧୀରତା ପୂର୍ବକ ସେ ସବୁକୁ ସେ ସହି ନିଏ। କେବଳ ଏତିକି ନୁହେଁ ସମସ୍ତଙ୍କୁ କ୍ଷମା ମଧ୍ୟ କରିଦିଏ । ଅବଧୂତଜୀ କହନ୍ତି, "ମୁଁ ପୃଥିବୀଠାରୁ ଧୈର୍ଯ୍ୟକୁ, କ୍ଷମାକୁ ଶିକ୍ଷା କରିଛି ।"

ଏହି ପର୍ବତ, ବୃକ୍ଷ ଆଦି ପୃଥିବୀର ହିଁ ଅଙ୍ଗ, ସେମାନେ ସର୍ବଦୈବ ଅନ୍ୟ ନିମନ୍ତେ କାର୍ଯ୍ୟରତ ରହନ୍ତି । ସେମାନଙ୍କର ଜୀବନ ହିଁ ପରହିତ ନିମନ୍ତେ ହୋଇଥାଏ । ସେମାନଙ୍କଠାରୁ ପରହିତ କରିବାର ଶିକ୍ଷା ଗ୍ରହଣ କରିବା ଉଚିତ୍।

**ବାୟୁ** ସର୍ବତ୍ର ବିଚରଣ କରେ କିନ୍ତୁ କେଉଁଠାରେ ଅଟକି ରହେ ନାହିଁ, ଆସକ୍ତ ହୁଏ ନାହିଁ । ସେଥିପାଇଁ ଶାସ୍ତ୍ରରେ କୁହାଯାଇଛି **'ଅସକ୍ତଃ ବାୟୁବତ୍ ଚରେତ୍'** । ଏଠାରେ ଯେଉଁ ବାୟୁ (ପବନ) ଅଛି, ଏହା ତ ପ୍ରତ୍ୟକ୍ଷ ବ୍ରହ୍ମ, ସମସ୍ତଙ୍କର ଜୀବନ, ନିରନ୍ତର ସେବାରତ ପରନ୍ତୁ କେଉଁଠାରେ ମଧ୍ୟ ପ୍ରଦର୍ଶନ କରେ ନାହିଁ ।

ଏବେ ଦେଖନ୍ତୁ, ଯଦି କୌଣସି ଘରେ ସମସ୍ତ କବାଟ, ଝରକା ବନ୍ଦ କରି ଆମେ ବସିଯାଉ, ତେବେ ବାୟୁର ପ୍ରସାରଣ ନ ହେଉଥିବାରୁ କିଛି ସମୟ ପରେ ଅଣନିଶ୍ୱାସ ଲାଗିବ । କିନ୍ତୁ ଯଦି ଝରକା କବାଟ ଖୋଲି ଦିଆଯାଏ, ଏବଂ ପବନ ବହିବାକୁ ଲାଗିବା ମାତ୍ରକେ ସେଠାରେ ଆଶ୍ୱସ୍ତ ଲାଗେ । ସେହି ସ୍ଥାନ ଶୁଦ୍ଧ ହୋଇଯାଏ, ପବିତ୍ର ହୋଇଯାଏ। ତେବେ ବାୟୁଭଳି ସର୍ବତ୍ର ବିଚରଣ କରି ମଧ୍ୟ ଜ୍ଞାନୀକୁ ଅନାସକ୍ତ ରହିବା ଉଚିତ୍ । ଯେଉଁ ଯେଉଁ ସ୍ଥାନକୁ ଗଲେ ସେହିଠାରେ ସମସ୍ତଙ୍କୁ ଆନନ୍ଦିତ କରି ଚାଲିବା ଉଚିତ୍ କିନ୍ତୁ ସ୍ୱୟଂ କେଉଁଠାରେ ଅଟକିବା ଉଚିତ୍ ନୁହେଁ । ଜୀବନରେ ମନୁଷ୍ୟକୁ ବିଷୟମାନଙ୍କ ମଧ୍ୟରେ ଗଢି କରିବାକୁ ପଡେ । ପରନ୍ତୁ ତାକୁ ବାୟୁଠାରୁ ଅନାସକ୍ତ ରହିବା ଶିଖିନେବା ଉଚିତ୍।

ଅସଙ୍ଗ ରହି ବାୟୁ ସମସ୍ତଙ୍କୁ ଆନନ୍ଦ ଦିଏ । ଆମ ମିଶନର ମଧ୍ୟ ଧ୍ୟେୟ ବାକ୍ୟ ହେଉଛି ଅଧିକରୁ ଅଧିକ ଲୋକଙ୍କୁ ଅଧିକରୁ ଅଧିକ ସମୟ ପର୍ଯ୍ୟନ୍ତ ଅଧିକରୁ ଅଧିକ ଆନନ୍ଦ ପ୍ରଦାନ କରିବ । ଏଠାରେ ଅବଧୂତ ମହାରାଜ କହୁଛନ୍ତି - ଅସଙ୍ଗରେ ରହି ମଧ୍ୟ ସମସ୍ତଙ୍କୁ ଆନନ୍ଦ ଦେବା - ଏହା ମୁଁ ବାୟୁଠାରୁ ଶିକ୍ଷା ଗ୍ରହଣ କରିଛି ।

ଏହା ତ ବାହାରର ବାୟୁ, ଭିତର କଥା କହିଲେ - ଆମ ଭିତରେ ପ୍ରାଣ ବାୟୁ ରହିଛି । ସେଠାରୁ ମୁଁ ଶିକ୍ଷା ନେଇଛି - ଯେତିକି ଆବଶ୍ୟକତା ଅଛି, ସେତିକି ହିଁ ଭୋଜନ କରିବା ଉଚିତ୍, ଯଦ୍ୱାରା ମନ ଅଥବା ଇନ୍ଦ୍ରିୟଗୁଡିକ ଅଂସଯମିତ ନ ହେବ ।

**ଆକାଶ-** ଏବେ ଏହି ଯେଉଁ ଆକାଶ ଅଛି, ଏହା ସମସ୍ତଙ୍କୁ ରହିବା ନିମନ୍ତେ ସ୍ଥାନ ଦେଇଥାଏ, ସୂର୍ଯ୍ୟ, ଚନ୍ଦ୍ର, ନକ୍ଷତ୍ର, ଗ୍ରହ-ମଣ୍ଡଳ, ସମସ୍ତ ସୌରମଣ୍ଡଳ, ନଦୀ, ସମୁଦ୍ର, ବୃକ୍ଷ, ପର୍ବତ ଏ ସମସ୍ତେ ଆକାଶରେ ରୁହନ୍ତି । ସେଥିପାଇଁ କୁହନ୍ତି - **'ଅବକାଶାତ୍ ଆକାଶଃ'** । ସମସ୍ତଙ୍କୁ ଅବକାଶ-ସ୍ଥାନ ପ୍ରଦାନ କରୁଥିବା କାରଣରୁ ଏହାକୁ ଆକାଶ କୁହନ୍ତି । ଏହି ଆକାଶ କେତେ ଉଦାର ! ଏବଂ ବ୍ୟାପକ ମଧ୍ୟ । ଏଥିରେ ବର୍ଷା ହୁଏ, ପବନ-ବାତ୍ୟା ହୁଏ, ସବୁକିଛି ଏଥିରେ ହୁଏ, କିନ୍ତୁ ଏହା ସୂକ୍ଷ୍ମ ହୋଇଥିବାରୁ କାହାଠାରେ ଲିପ୍ତ ହୁଏ ନାହିଁ । ଏଥିରେ କୌଣସି ବିକାର ହୁଏ ନାହିଁ । ନିଜର ହୃଦୟ ମଧ୍ୟ ଏତେ ଉଦାର ତଥା ବିଶାଳ ହେବା ଉଚିତ୍ । ଏହା ମୁଁ ଆକାଶ ତତ୍ତ୍ୱ ଠାରୁ ଶିକ୍ଷା ଗ୍ରହଣ କରିଛି ।

ଦେଖନ୍ତୁ ! ଆକାଶ ଭଳି ଉଦାରତା, ବିଶାଳତା ଆମ ହୃଦୟରେ ଆସିବାମାତ୍ରକେ, ହୃଦୟରେ ସମସ୍ତଙ୍କୁ ଗ୍ରହଣ କରିବାର ଭାବନା ବାହାରେ ଆସିଯାଏ । ଯେପରି ଭାବେ ରେଳଗାଡିରେ ଷ୍ଟେସନରୁ କେହି ଚଢିବା ପରେ କୁହେ- ଟିକିଏ ବସିବାକୁ ଦିଅନ୍ତୁ, ତେବେ ଯିଏ ପ୍ରଥମରୁ ବସିଛି, ସେ କହେ ସ୍ଥାନ କେଉଁଠି ? ପରନ୍ତୁ ସେ ସମୟରେ ଯଦି କେହି ନିଜର ପରିଚତି ବ୍ୟକ୍ତି ସହିତ ଦେଖାହୋଇଯାଏ, ତେବେ ତାକୁ ଡାକି-ଡାକି ବସାଇଥାଉ । ସେତେବେଳେ ସ୍ଥାନ କେଉଁଠାରୁ ଆସେ- କାହିଁକି ନା ତା ପାଇଁ ହୃଦୟରେ ସ୍ଥାନ ଅଛି ।

**ଆପଃ-** ଅର୍ଥାତ୍ ଜଳ ତ ଜୀବନ । ଶୋଷିଲା ବ୍ୟକ୍ତିକୁ ଜଳର ଦର୍ଶନ ମାତ୍ରେଣ ଆନନ୍ଦ ପ୍ରାପ୍ତ ହୁଏ । ତାର ସ୍ପର୍ଶ ଦ୍ୱାରା ତନ-ମନରେ ଶୀତଳତା ଆସିଯାଏ । ସେଥିପାଇଁ କୌଣସି ସହର ଅଥବା ଗ୍ରାମ ବସାଇବା ପୂର୍ବରୁ ଆମେ ଦେଖୁ ଯେ ଆଖ-ପାଖରେ ଜଳ ଉପଲବ୍ଧ ଅଛି କି ନାହିଁ । ଜଳ ନ ମିଳିଲେ ସବୁକିଛି ଉଜୁଡି ଯାଏ । ତେଣୁ ଜଳକୁ ଜୀବନ ବୋଲି କୁହାଯାଇଛି । ଏହା ସମସ୍ତଙ୍କୁ ଜୀବନ ଦାନ କରିଥାଏ । କେବଳ ସେତିକି ନୁହେଁ ଜଳ କେତେ ଶୀତଳ, କେତେ ତରଳ, ନିର୍ମଳ ହୋଇଥାଏ । ପ୍ରବାହିତ ହେଉଥାଏ, ଏବଂ ସମସ୍ତଙ୍କର ମଳକୁ ହରଣ କରିନିଏ । ଗରମ ତଥା ଶୋଷର କଷ୍ଟକୁ ହରଣ କରି ସୁଖ-ଶାନ୍ତି ପ୍ରଦାନ କରିଥାଏ । ଅବଧୂତଜୀ କହୁଛନ୍ତି, "ସମସ୍ତଙ୍କୁ ଜୀବନ ଦାନ ଦେବା, ଶୀତଳ ପବିତ୍ର କରି ଦେବା, ଏହା ମୁଁ ଜଳଠାରୁ ଶିକ୍ଷା ଗ୍ରହଣ କରିଛି ।"

**ଅଗ୍ନିକୁ** ଦେଖନ୍ତୁ । ଏହା କିଭଳି ବିଲକ୍ଷଣ, ତେଜସ୍ୱୀ, ଉର୍ଦ୍ଧ୍ୱଗାମୀ ତଥା ଦୁର୍ଦ୍ଧର୍ଷ ଅଟେ ! ଦୁର୍ଦ୍ଧର୍ଷ ଅର୍ଥାତ୍ ଯାହାକୁ କେହି ଧରିପାରିବେ ନାହିଁ । ଏଭଳି କାହିଁକି ? କାହିଁକି ନା ଏହା ହେଉଛି ଉର୍ଦ୍ଧ୍ୱଗାମୀ । ସବୁବେଳେ ଉଚ୍ଚ ଆଡକୁ ଗତି କରୁଥାଏ ।

ଉଚ୍ଚ ବ୍ୟକ୍ତିକୁ ଦେଖନ୍ତୁ - ଅର୍ଥାତ୍ ଯାହାର ଚରିତ୍ର, ଗୁଣ, ଜ୍ଞାନ ଆଦି ସବୁଠାରୁ ଉଚ୍ଚ ହୋଇଥିବ, ତାକୁ କେହି ସ୍ପର୍ଶ କରି ପାରେ ନାହିଁ, ତାର ଅପମାନ କରିପାରେ ନାହିଁ ଏବଂ ଯିଏ ନିମ୍ନଗାମୀ ଅର୍ଥାତ୍ ତଳକୁ ଯାଉଥିବା ଲୋକ, ତାକୁ ତ ଯେ କେହି ବ୍ୟକ୍ତି ଅପମାନ କରିପାରେ । ତାକୁ ମଧ୍ୟ କିଣି ନେଇ ପାରେ । ସେଥିପାଇଁ ଅଗ୍ନିଭଳି ତେଜସ୍ୱୀ ଉର୍ଦ୍ଧ୍ୱଗାମୀ ହେବା ଉଚିତ୍।

ଦ୍ୱିତୀୟ କଥା ଅଗ୍ନିରେ ଯାହା କିଛି ମଧ୍ୟ ଦେଲେ ସେ ତାକୁ ଭସ୍ମ କରିଦିଏ । ଶୁଦ୍ଧ କରି ଦିଏ। ପବିତ୍ର କରିଦିଏ, ସର୍ବ ଭକ୍ଷଣ କରି ମଧ୍ୟ ସେ ଯେଉଁଭଳି - ସେହିଭଳି ରହିଥାଏ। ଅଗ୍ନିରତ ଲକ୍ଷଣ ହେଉଛି ଯେ ତା ଗର୍ଭରେ ପଡିଲା ମାତ୍ରେଣ ମଳିନରୁ ମଳିନ ପଦାର୍ଥ ମଧ୍ୟ ଶୁଦ୍ଧତାକୁ ପ୍ରାପ୍ତ ହୋଇଥାଏ । ଏତେ ସବୁ ହେଲା ପରେ ଅଗ୍ନିରେ କାହାର ଅଶୁଦ୍ଧି, କାହାର ଦୋଷ ଆସେ ନାହିଁ । ସେ ସ୍ୱୟଂ ଶୁଦ୍ଧ ହୋଇରହିଥାଏ । ଯେଉଁଭଳି ଅଗ୍ନି କେଉଁଠାରେ ତ ପ୍ରାକଟ୍ୟ ରୂପ, ତ କେଉଁଠି ଅପ୍ରକଟ, ସାଧକକୁ ମଧ୍ୟ ଏହିଭଳି ରହିବା ଉଚିତ୍ । ଭିକ୍ଷାରୂପ ହୋମ କରୁଥିବା ବ୍ୟକ୍ତିର ଦୋଷକୁ ସେ ଜ୍ଞାନାଗ୍ନିରେ ଭସ୍ମ କରି ଦେବା ଉଚିତ୍ ।

ଦେଖନ୍ତୁ ଗୋଟି ଗୋଟି କରି ଏହିସବୁ ଉପରେ ଗମ୍ଭୀର ବିଚାର କରିବା କଥା, ତେବେ ମୋର ମନରେ ପଞ୍ଚମହାଭୂତମାନଙ୍କ ପ୍ରତି ସୁନ୍ଦର ଭାବ ଆସିବାକୁ ଲାଗିଲା । ସେତେବେଳେ ଗୋଟିଏ ଗୋଟିଏ ତତ୍ତ୍ୱକୁ ସମ୍ବୋଧିତ କରି ଛୋଟ ଛୋଟ କବିତା ମୁଁ ଯାହା ଲେଖି ତାହା ମୁଁ ଏଠାରେ ଶୁଣାଇ ଦେଉଛି । ପଞ୍ଚତତ୍ତ୍ୱର ସ୍ୱରୂପ କଣ ? ସେମାନଙ୍କ ପାଖରୁ କଣ ଶିଖିବା କଥା, ଏହା ସବୁ ଭାଗବତର କଥା, ଏଥିରେ ମୋର ନିଜର କିଛି କଥା ନାହିଁ । କେବଳ ମୋର ମନରେ ଯେଉଁ ଭାବ ଉତ୍ପନ୍ନ ହେଲା, ତାକୁ ଲେଖିଥିଲି, ତାକୁ ଶୁଣାଉଛି ।

ପ୍ରଥମେ ଆକାଶକୁ ସମ୍ବୋଧିତ କରିବା ଆକାଶତତ୍ତ୍ୱ କଣ ? କିପରି ?

**ନିଃସୀମ ନିଃସ୍ପନ୍ଦ ନିଃସଙ୍ଗ ନିରାକାର ॥**

**ଦେତା ହୈ ତୂ ଅବକାଶ ସଭୀକୋ ।**

**ମନା ନ କରତା କଭି କିସି କୋ ॥**

**ଅନିଲ ଅନଲ ଜଲ ୟହ ବସୁଧାତଲ ।**

**ସୂର୍ଯ୍ୟ ଚନ୍ଦ୍ର ତାରେ ଗ୍ରହ-ମଣ୍ଡଲ ॥**

**ନଦୀ ତାଲ ବନ ଉପବନ ସୁନ୍ଦର ।**

**ବସତେ ତୁମ୍ହେ ତୂ ଇନକା ଘର ॥**

**ନିର୍ବିକାର ତୂ ସର୍ବାଧାର ।**

**ବନେ ହୃଦୟ ମେରା ଉଦାର ॥**

ଆକାଶର କୌଣସି ସୀମା ନାହିଁ, ସେଥିରେ କୌଣସି ସ୍ପନ୍ଦନ ନାହିଁ, ସେ ନିଃସଙ୍ଗ, ନିରାକାର ଅଟେ । ଆକାଶ ଏତେ ବ୍ୟାପକ ଯେ ସମସ୍ତଙ୍କୁ ସ୍ଥାନ ଦିଏ, ଅତ୍ୟନ୍ତ ଉଦାର । ସେଥିରେ କେବେ କୌଣସି ବିକାର ଆସେ ନାହିଁ । ଏଠାରେ ଭାବ ହେଉଛି ଯେ ମୁଁ ମଧ୍ୟ ସେପରି ହୁଏ ।

ଦ୍ୱିତୀୟ ହେଉଛି ସମୀର-ବାୟୁ । ବାୟୁ କିଭଳି ?

**ପ୍ରତ୍ୟକ୍ଷ ବ୍ରହ୍ମ ତୂ ସବକା ଜୀବନ ॥**

**ଶୀତଲ ମନ୍ଦ ସଦା ହୀ ବିଚରତ ।**

**ସୁରଭି ବହାକର ପାବନ କରତ ॥**

**ଶକ୍ତିହୀନ ବିନୁ ତବ ଜଲ ଥଲଚର ।**

**ଅନାସକ୍ତ ସବକେ ସଙ୍ଗ ରହକର ॥**

**ଗର୍ବରହିତ ସବକୀ ସେବାରତ ।**

**ଅସଙ୍ଗତା କା ହୋ ମେରା ବ୍ରତ ॥**

ବାୟୁ ସମସ୍ତଙ୍କର ସଙ୍ଗରେ ରହି ମଧ୍ୟ ସେ ଅନାସକ୍ତ । ଦେଖନ୍ତୁ, ବାୟୁ ଦେବତା ଚବିଶ ଘଣ୍ଟା ଆମର ସେବା କରି ମଧ୍ୟ କେବେ କେଉଁଠାରେ ପ୍ରଦର୍ଶନ କରେ ନାହିଁ ।

ତୃତୀୟ ହେଉଛି ଅଗ୍ନି । ଅଗ୍ନି କିଭଳି ?

ଦୁର୍ଧର୍ଷ, ଊର୍ଦ୍ଧ୍ୱଗାମୀ - ସେ ଉପର ଆଡକୁ ଯାଏ । ଅଗ୍ନିକୁ ଅପମାନ କରିବାର କାହାର ଶକ୍ତି ଅଛି ? ଏଠାରେ ଅଗ୍ନିକୁ ମଗାଯାଇଛି ଯେ ମୋର ଜୀବନରେ ତେଜ ତଥା ପ୍ରେମର ଉଷ୍ମ ଆସିଯାଉ, ଯଦ୍ୱାରା କି ମୁଁ ଜନ ଜୀବନରେ ସୁନ୍ଦରତା ଭରିଦିଏ ।

ଚତୁର୍ଥ ହେଉଛି ଜଳ । ଜଳ କିଭଳି ।

ତରଲ ଅମଲ ଅତି ବହୁତ ହରତ ମଲ ॥
ତାପ ତୃଷ୍ଣା ଦୁଃଖ ହରତ ପ୍ରଦତ ସୁଖ ।
ପରସତ ପଥିକ କେ ତନ କର ଅରୁ ମୁଖ ॥
ଲତା ବୃକ୍ଷ ପଶୁ ବିହଗ କା ଜୀବନ ।
ଶୋଭତ ବସୁଧା ଜବ ତବ ସିଞ୍ଚନ ।
ଶୀତଲତା ଦୁଁ ମେ ତେରେ ସମ ।
ଜନ କେ ତାପ କା କର ଦୁଁ ମେ ଶମ ॥

ଯଦି ଜଣେ ପଥିକ ଚାଲୁଛି, ଗରମରେ ଥକି ପଡିଛି, ତାକୁ ଶୋଷ ଲାଗୁଛି, ତେବେ ତାକୁ ଜଳ ସ୍ପର୍ଶ ହେବା ମାତ୍ରକେ ତାକୁ ଶାନ୍ତି ଅନୁଭବ ହେବାକୁ ଲାଗେ । ପୃଥିବୀ ସୁଖି ଗଲା ପରେ ଯେତେବେଳେ ବର୍ଷାର ସିଞ୍ଚନ ହୋଇଥାଏ, ତେବେ ଦେଖିବେ ପୃଥିବୀ କିଭଳି ଶୋଭାୟମାନ ହୁଏ ।

ପଞ୍ଚମ ହେଉଛି ପୃଥିବୀ -

ରସା ଧରା ବସୁଧା କ୍ଷମା ମାତା ॥
ଅମିତ ତେରେ ଉପକାର ହୈ ମାତା ।
ବରନତ ଉନକୋ ହାର ମୈ ଜାତା ॥
ତୂ କରତୀ ହମ ସବକା ପୋଷଣ ।
ହମ କରତେ ତେରା ହୀ ଶୋଷଣ ।
ତୁଝ ପର ବସ କର ଭାଇ-ଭାଇ ।
ବୈରୀ ବନ କର କରତେ ଲଡାଇ ॥
କ୍ରୋଧ ନ କରତୀ ତୂ ଉନ୍ ପରଭୀ ।
ଧରୁଁ କ୍ଷମାମୈ ଭୀ ଐସୀ ହୀ ॥

ଯେଉଁ ଭଳି ପୃଥିବୀ ସମସ୍ତଙ୍କୁ କ୍ଷମା କରେ, ସେହିଭଳି ମୁଁ କ୍ଷମାଶୀଳ ହେବି ।

ଅବଧୂତଜୀ ଏବେ ବର୍ଣ୍ଣନ କରୁଛନ୍ତି ଯେ ସେ ଚନ୍ଦ୍ରମାଠାରୁ କଣ ଶିକ୍ଷା ଗ୍ରହଣ କରିଛନ୍ତି । ଚନ୍ଦ୍ରମାରେ ଆମ୍ଭଙ୍କୁ ଷୋହଳ କଳା ବଢିବା ତଥା କ୍ଷୟିତ ହେବା ଦେଖିଥାଉ। ପୂର୍ଣ୍ଣିମାରେ ପୂର୍ଣ୍ଣ ଚନ୍ଦ୍ରମା ଦେଖାଦିଏ । ଅମାବାସ୍ୟା ଦିନ ସେ ଦେଖାଦିଏ ନାହିଁ । ସତରେ କଣ ଚନ୍ଦ୍ରମା ବଢ଼େ ଅଥବା କେବେ କମ୍ ହୋଇଯାଏ ? ନାହିଁ, ଏହିଭଳି ଭାବରେ ଆମର ଶରୀର ବଢେ ତ କେବେ ଦୁର୍ବଳ ହୋଇଯାଏ, ପରନ୍ତୁ ଆମକୁ ଲାଗେ ଯେ ମୁଁ ବଡ ହୋଇଗଲି, ମୋଟା ହୋଇଗଲି, ଦୁର୍ବଳ ହୋଇଗଲିଣି ଅଥବା ମୁଁ ବାଳକ ଥିଲି, ଏବେ ଯୁବକ ହୋଇଗଲିଣି, ପ୍ରୌଢ଼ ହୋଇଗଲିଣି, ଅଥବା ପୁଣି ବୃଦ୍ଧ ହୋଇଗଲିଣି । ଯେତେବେଳେ କି ମୁଁ ନା ତ ବଢ଼େ ନା କିଛି କମ୍ ହୁଏ, "ମୁଁ" ବାଳକ, ଯୁବକ, ବୃଦ୍ଧ ଆଦି କିଛି ହୋଇ ନ ଥାଏ । ସେ ତ ସଦା ଏକ ରସ ହୋଇଥାଏ । ଦେହ, ପ୍ରାଣ, ମନ ଆଦି ଉପାଧି ମାନଙ୍କର କାରଣରୁ ନିଜ ଭିତରେ ଦୁର୍ବଳତା, ସବଳତା, ମୋଟାପା, ସଶକ୍ତତା, ଅସକ୍ତତା, ସୁଖିତ୍ୱ-ଦୁଃଖିତ୍ୱର ଆରୋପ କରିଥାଉ । ପରନ୍ତୁ ନିଜ ସ୍ୱରୂପରେ ଏହି ସମସ୍ତ ବିକାର ହୋଇ ନ ଥାଏ। ଯେଉଁଭଳି ଭାବରେ ଅଗ୍ନି କଣିକା ଅଥବା ଦୀପକଟିର ସଦା ଜନ୍ମ-ମରଣ ହେଉଥାଏ, ଠିକ୍ ସେହିଭଳି ଭାବରେ ଶରୀରର ନିରନ୍ତର ଜନ୍ମ-ମରଣ ହେଉଥାଏ କିନ୍ତୁ ଅଜ୍ଞାନ କାରଣରୁ ଏହା ପ୍ରତୀତ ହୁଏ ନାହିଁ । ଚନ୍ଦ୍ରମାଠାରୁ ମୁଁ ଏହି କଥା ଶିକ୍ଷା ଗ୍ରହଣ କରିଛି - ଯେ ସମସ୍ତ ପରିବର୍ତ୍ତନ ଭିତରେ ମଧ୍ୟ ଆମର 'ସ୍ୱ' 'ନିଜତ୍ୱ' ଅଥବା 'ଆତ୍ମା' ସବୁବେଳେ ଅପରିବର୍ତ୍ତନଶୀଳ ରହିଥାଏ ।

ଅବଧୂତଜୀ କୁହନ୍ତି, "**ସୂର୍ଯ୍ୟ** ଯେଉଁ ଭଳି ଭାବରେ ସମୁଦ୍ରର ଜଳ ଗ୍ରହଣ କରି ପୁଣି ପୃଥିବୀ ଉପରେ ଛାଡିଦିଏ, ସେହିଭଳି ସାଧକକୁ ମଧ୍ୟ ବିଷୟକୁ ଗ୍ରହଣ କରି ପୁଣି ତାକୁ ଛାଡି ଦେବା ଉଚିତ୍ । ଅନେକ ସ୍ଥାନରେ ପ୍ରତିବିମ୍ବିତ ହୋଇ ଅନେକ ରୂପରେ ପ୍ରତିଭାସିତ ହେଲେ ମଧ୍ୟ ସୂର୍ଯ୍ୟ କେବଳ ଗୋଟିଏ ହିଁ ଥାଏ । ଅନେକ ହୁଅନ୍ତି ନାହିଁ, କି ସେ ଯେଉଁଠି ପ୍ରତିବିମ୍ବିତ ହେଉଛି, ତାର ବିକାରରେ ସେ ବିକୃତ ହୁଏ ନାହିଁ । ସେହିଭଳି ଭାବରେ ଆମର ଆତ୍ମତତ୍ତ୍ୱ ମଧ୍ୟ ଉପାଧିମାନଙ୍କର (ଶରୀର ଆଦିର) ନିମିତ୍ତ ଅନେକ ପ୍ରତୀତ ହେଲେ ମଧ୍ୟ ଏକ ହିଁ ଥାଏ - ଏହା ମୁଁ ସୂର୍ଯ୍ୟଙ୍କ ଠାରୁ ଶିଖିଛି ।"

ଏବେ ଦେଖନ୍ତୁ, ସୂର୍ଯ୍ୟଙ୍କଠାରୁ ଆମେ ଆହୁରି ମଧ୍ୟ କେବଳ ଶିକ୍ଷା ନେଇପାରିବା ଏହି ସୂର୍ଯ୍ୟଙ୍କ ଯୋଗୁଁ ହିଁ ପୃଥିବୀରେ ଜୀବନ ଆଦି ଅନେକ କିଛି ସମ୍ଭବ ହୋଇପାରିଛି। ଏଠାରେ ଶକ୍ତିର ସ୍ରୋତ ହେଉଛି ସୂର୍ଯ୍ୟ। ସେହିଭଳି ଆମକୁ ମଧ୍ୟ ସମସ୍ତଙ୍କର ଆନ୍ତରିକ

ଶକ୍ତି – ମନୋବଳର ସ୍ରୋତ ହେବା ଆବଶ୍ୟକ । ଉପନିଷଦ୍‌ରେ କୁହାଯାଇଛି **'ସୂର୍ଯୋ ଯଥା ସର୍ବଲୋକସ୍ୟ ଚକ୍ଷୁର୍ନ ଲିପ୍ୟତେ ଚକ୍ଷୁଷୈଃ ବାହ୍ୟଦୋଷୈଃ'** (କଠ ଉପ. ୨.୨.୧୧) ସୂର୍ଯ୍ୟ ହେଉଛନ୍ତି ଜଗତର ଚକ୍ଷୁ, ଅର୍ଥାତ୍ ସେ ସମସ୍ତ ଜଗତକୁ ପ୍ରକାଶିତ କରେ କିନ୍ତୁ କାହାର ଗୁଣ ଦୋଷ ସହିତ ସେ ଲିପ୍ତ ହୁଏ ନାହିଁ । ସୂର୍ଯ୍ୟଙ୍କର ଏହା ହେଉଛି ବିଲକ୍ଷଣ ଗୁଣ । ତେବେ ଆମକୁ ମଧ୍ୟ ଜ୍ଞାନରୂପୀ ପ୍ରକାଶ ଦ୍ୱାରା ସମସ୍ତଙ୍କୁ ପ୍ରକାଶିତ କରି ଚାଲିବା ଆବଶ୍ୟକ କିନ୍ତୁ କାହାର ଗୁଣ ଦୋଷ ଠାରେ ଲିପ୍ତ ହେବା ଅନୁଚିତ ।

ଏବେ ଅବଧୁତଜୀ କହୁଛନ୍ତି ଯେ ସେ **କପୋତ** ଠାରୁ କଣ ଶିକ୍ଷା ଗ୍ରହଣ କରିଛନ୍ତି। ସେ ଏହି କଥାକୁ ବଡ ବିସ୍ତାରପୂର୍ବକ ବର୍ଣ୍ଣନ କରିଛନ୍ତି । କୌଣସି ଜଙ୍ଗଲରେ କପୋତମାନଙ୍କର ଏକ ଯୋଡା ରହୁଥିଲା । ସେମାନଙ୍କୁ ସାଙ୍ଗରେ ରହୁଥିବାର ଅନେକ ବର୍ଷ ବିତିଗଲା । ତତ୍ ସହିତ ପରସ୍ପର ପ୍ରତି ଆସକ୍ତି ମଧ୍ୟ ଅତ୍ୟଧିକ ବଢିଯାଇଥିଲା। ପୁଣି ଯେତେବେଳେ ସେମାନଙ୍କର ଶାବକ ହେଲେ, ସେମାନଙ୍କର ଲାଳନ-ପାଳନରେ ମଗ୍ନ ହୋଇଗଲେ ଏବଂ ସେମାନଙ୍କର ପାଖରେ ମଧ୍ୟ ଆସକ୍ତ ହୋଇଗଲେ । ସେମାନେ ଭଗବାନଙ୍କର ଏହି ମାୟାଦ୍ୱାରା ଏଭଳି ମୋହିତ ହୋଇଗଲେ ଯେ ସେ ନିଜର ଏହି ସୁଖଦାୟକ ପରିବାରର ଅତିରିକ୍ତ ସେମାନଙ୍କୁ ଅନ୍ୟ କାହାର କଥା ମନେ ପଡୁ ନ ଥିଲା।

ଯେତେବେଳେ ସେ କପୋତ କପୋତୀ ଖାଦ୍ୟ ଆଣିବା ନିମନ୍ତେ ବାହାରକୁ ଯାଇଥିଲେ, ସେତେବେଳେ କୌଣସି ଶିକାରୀ ଜାଲ ପ୍ରକାର ସେ ଛୋଟ ଛୋଟ ପକ୍ଷୀମାନଙ୍କୁ ଧରିନେଲା । କପୋତ ଏବଂ କପୋତୀ ଫେରିଲା ବେଳକୁ ଦେଖିଲେ ଯେ ସେମାନଙ୍କର ଶାବକଗୁଡିକ ଜାଲରେ ପଡି ଛଟପଟ ହେଉଛନ୍ତି । ନିଜର ଶାବକମାନଙ୍କୁ ଏଭଳି ସ୍ଥିତିରେ ଦେଖି କପୋତୀ ହୃଦୟ ଦୁଃଖରେ ବ୍ୟାକୁଳ ହୋଇ କାନ୍ଦିବାକୁ ଲାଗିଲେ। ସେ ଏତେ ଦୁଃଖି, ଏତେ ବିହ୍ୱଳ ହୋଇଗଲା ଯେ ନିଜେ ମଧ୍ୟ ସେ ଜାଲରେ ପଡିଗଲା। ଏହା ଦେଖି ସେ କପୋତ ମଧ୍ୟ କାନ୍ଦି କାନ୍ଦି ବିଳାପ କରିବାକୁ ଲାଗିଲା ସେ କହିବାକୁ ଲାଗିଲା – ମୋର ପୁତ୍ର, ମୋର ପତ୍ନୀ ସମସ୍ତେ ଧରା ପଡିଗଲେ। ଏବେ ଏହି ଘରେ ଏମାନଙ୍କର ବିନା ମୁଁ କିଭଳି ରହିବି ? ମୋର ସର୍ବନାଶ ହୋଇଗଲା। ପତ୍ନୀଙ୍କ ବିନା ମୁଁ କିଭଳି ଜୀବନ ଧାରଣ କରିବି ?

ଦେଖନ୍ତୁ, ସେଥିପାଇଁ ବହୁତ ଲୋକ ସନ୍ନ୍ୟାସ ନେବା ପାଇଁ ଚାହୁଁନାହାନ୍ତି । ସେମାନଙ୍କୁ ଲାଗେ **'ପୁତ୍ରାଦିହୀନୋଽୟମ୍ ସନ୍ନ୍ୟାସଃ ଶୁଷ୍କଃ ଏବ ହି'**(ଭା.ମା.୬) ଆଖପାଖରେ ଚୁନ୍ନୁ-ମୁନ୍ନୁ ଆଦି କେହି ନ ଥିଲେ ଆଉ କଣ ସଂସାର ? ତା ବଡ ଶୁଷ୍କ

ତଥା ନିରସ ହେବ। ଏଭଳି ଲୋକମାନେ ସନ୍ନ୍ୟାସୀଙ୍କୁ ନମସ୍କାର ଆଦି କରନ୍ତି କିନ୍ତୁ ସେମାନଙ୍କର ମନରେ ବହୁତ ଶଙ୍କା ଆସେ ଯେ କେଜାଣି ଏମାନଙ୍କୁ ଜୀବନରେ କୌଣସି ଆନନ୍ଦ ମିଳିଛି କି ନାହିଁ ।

ସେଥିପାଇଁ କେବେ-କେବେ ଲୋକମାନେ ପଚାରନ୍ତି - ସ୍ୱାମୀଜୀ ଆପଣ କଣ ବାସ୍ତବରେ ସୁଖି ?" ପୁଣି କେବେ ପଚାରନ୍ତି, "ସନ୍ନ୍ୟାସର ନିଶ୍ଚୟ କଲାପରେ ଆପଣଙ୍କର ମନରେ କେବେ ପଶ୍ଚାତାପ ତ ହୋଇନାହିଁ ଯେ କେଉଁଠି ଆସି ବାନ୍ଧି ହୋଇଗଲି ? ଆପଣ କେବେ ବିରକ୍ତି ତ ହୋଇନାହାନ୍ତି ?" ଏହାସବୁ ଗୋଟିଏ ପ୍ରକାରର କଥା । ଏହା ସେଥିପାଇଁ ଲାଗୁଛି, କାହିଁକି ନା ବିଷୟ ସୁଖ ତଥା ଗୃହସ୍ଥାଶ୍ରମର ସୁଖର ଅତିରିକ୍ତ ଆମକୁ ଅନ୍ୟ କୌଣସି ନିର୍ବିଶେଷ, ନିର୍ନିମିତ୍ତକ ଆତ୍ମ ସ୍ୱାଭାବିକ ସ୍ୱରୂପ ସୁଖ ବା ଆତ୍ମ ସୁଖର ନା ପରିଚୟ ଅଛି ନା ସେଥିପ୍ରତି ବିଶ୍ୱାସ ଅଛି ?

ତେବେ କାନ୍ଦି କାନ୍ଦି ଅତି ବ୍ୟାକୁଳତାରେ ସେ କପୋତଟି ଜାଲରେ ଡେଇଁ ପଡିଲା। ଆରେ ! ସମସ୍ତେ ବନ୍ଧନରେ ପଡିଛନ୍ତି, ତୁମେ ତ ତାକୁ ଛଡାଇ ପାରିବ ନାହିଁ, ନିଜେ ନିଜକୁ ସେହି ସ୍ଥିତିରେ ବିବଶ ହୋଇ ମୃତ୍ୟୁକୁ ଆପଣେଇ ନେବାରେ କଣ ପ୍ରୟୋଜନ? ଶିକାରୀଟି କଣ କଲା ଜଣିଛ ? ସେ ବହୁତ ଖୁସି ହୋଇଗଲା, ସମସ୍ତଙ୍କୁ ଧରି ନେଇ ଚାଲିଗଲା ।

ଏଠାରେ ବୁଝିବାର କଥା ହେଉଛି ପ୍ରେମ କରିବା ତ ବହୁତ ଭଲ କଥା । ଘର-ଗୃହସ୍ଥୀ ବାଲାଙ୍କୁ ନିଜର ସ୍ୱଜନ-ପରିଜନମାନଙ୍କୁ ପ୍ରେମ ଅବଶ୍ୟ କରିବା କଥା । ପ୍ରେମ ବିନା ନା ତ କାହାର ଗୃହସ୍ଥାଶ୍ରମ ମଙ୍ଗଳ ହୁଏ ଏବଂ ନା ତ ଜୀବନରେ କୌଣସି ରସ ଆସେ । କିନ୍ତୁ ଏଭଳି ମୂଢ଼ ଆସକ୍ତି କରି ବସିଯିବା ଯେ ଅମୁକ ବିନା ମୁଁ କେମିତି ରହିବି - ଏହି କଥା ଠିକ୍ ନୁହେଁ । ଏଭଳି ଆସକ୍ତି ଦ୍ୱାରା କୌଣସି ଲାଭ ହୁଏ ନାହିଁ । କାହିଁକି ନା ସେତେବେଳେ ନା ତ ଆମେ ମରୁଥିବା ବ୍ୟକ୍ତିକୁ ବଞ୍ଚାଇ ପାରୁ ନା ତ ନିଜେ ନିଜକୁ ଏବଂ ନା ତ ନିଜେ ନିଜକୁ ସମ୍ଭାଳି ପାରୁ । ତେବେ ତାର ଲାଭ କଣ?

ଏହିଭଳି ଭାବରେ ଆସକ୍ତି କାରଣରୁ ମନୁଷ୍ୟ ନିଜେ ନିଜକୁ ବନ୍ଧନରେ ପକାଇ ଥାଏ । ଅବଧୂତଜୀ କୁହନ୍ତି, "ସେଥିପାଇଁ ଏହିଭଳି ମୂଢ଼ ମମତା ଏବଂ ଆସକ୍ତି କରିବା ଉଚିତ୍ ନୁହେଁ, ଏହା ମୁଁ କପୋତ-କପୋତୀଠାରୁ ଶିଖିଛି ।" ଏହି କଥାକୁ ଗୀତାରେ ଏଭଳି କୁହାଯାଇଛି ଯେ ଜ୍ଞାନୀପୁରୁଷର ଏକ ଲକ୍ଷଣ ହେଉଛି ଯେ **'ଯଃ ସର୍ବତ୍ର ଅନଭି ସ୍ନେହଃ'** (ଭ.ଗୀତା ୨.୫୭) ସେ କାହାଠାରେ ଅତି ସ୍ନେହ କରେ ନାହିଁ । ସେ ସମସ୍ତ

ସ୍ଥାନକୁ ଯାଏ, ସମସ୍ତଙ୍କ ସହ ପ୍ରେମପୂର୍ବକ ରହେ, ଯଥାଯୋଗ୍ୟ, ଯଥା ପ୍ରସଙ୍ଗ ବ୍ୟବହାର ମଧ୍ୟ କରେ, ସବୁ କିଛି କରେ, କିନ୍ତୁ କାହା ସହିତ ଆସକ୍ତ ହୁଏ ନାହିଁ ।

ଏବେ **ଅଜଗରର** କଥା ବର୍ଣ୍ଣନ କରୁଛନ୍ତି । ଅଜଗର ତ ଆପଣ ସମସ୍ତଙ୍କୁ ଜଣା ଥିବ । ସଂପୂର୍ଣ୍ଣ ଛେଳି ଆଦିକୁ ଅଥବା ଯାହା କିଛି ସମ୍ମୁଖରେ ଆସେ, ସେ ତାକୁ ଗିଳି ପକାଏ, ଏବଂ ଯଦି କିଛି ନ ମିଳେ ତେବେ ସେହିଭଳି ଭାବରେ ପଡି ରହେ । କୌଣସି ପ୍ରୟାସ କରେ ନାହିଁ । ଏହି ଦତ୍ତାତ୍ରେୟଜୀ ତ ଅବଧୂତ ବୃତ୍ତିଯୁକ୍ତ ଥିଲେ । ତେଣୁ ସେ କହିଲେ ଯେ ମୁଁ ଅଜଗରଠାରୁ **'ଯଦୃଚ୍ଛା ଲାଭ ସନ୍ତୁଷ୍ଟଃ'** (ଭ.ଗୀତା ୪.୨୨) ଯାହା ମିଳିଗଲେ ମଧ୍ୟ ସେଥିରେ ସନ୍ତୁଷ୍ଟ ରହିବାର ବୃତ୍ତି ଶିଖି ନେଇଛି ଏବଂ ମୁଁ ଏହା ମଧ୍ୟ ଶିଖି ନେଇଛି ଯେ ବେକାରରେ ଅଧିକ ଦୌଡା-ଦୌଡି କରିବାର କୌଣସି ଆବଶ୍ୟକ ନାହିଁ। ସମୟାନୁସାରେ ଭାଗ୍ୟ ଦ୍ୱାରା ଯାହା ମିଳିଥାଏ ତାକୁ ଭୋଜନ କର ଏବଂ ଯଦି ନ ମିଳିଲେ ଅଥବା କିଛି କମ୍ ପଡେ, ତେବେ ବସି ରୁହ, ନିଜର ମନରେ କ୍ଷୋଭ ଆସିବାକୁ ଦିଅ ନାହିଁ । ଯେଉଁଭଳି ଭାବରେ କୁହନ୍ତି ଯେ **'ହୋଗା ରାମ ତୋ ଦେଗା ଖଟିଯେ ପର'** । ଏବେ ଏହିଭଳି କଥା ସମସ୍ତଙ୍କୁ ଭଲ ଲାଗେ ନାହିଁ । ସେମାନଙ୍କର ଦୃଷ୍ଟିରେ ଏହି ଦର୍ଶନ ଅଥବା ବିଚାର ଠିକ୍ ନୁହେଁ । ସେମାନେ କୁହନ୍ତି, "କଣ ବସିଛ, କିଛି କର।" କିନ୍ତୁ ଏଠାରେ ଆପଣଙ୍କୁ ଗୋଟିଏ କଥା କହୁଛି, ତାକୁ ମନ ଦେଇ ଶୁଣନ୍ତୁ । ଯଦି ଥିବ ତେବେ ରାମଜୀ ନିଶ୍ଚିତ ଦେବେ, ଏଭଳି ନିଶ୍ଚଳ ଭାବରେ ବସି ଯାଅ (ଟିକିଏ ମଧ୍ୟ ବ୍ୟାକୁଳ ହୁଅନ୍ତୁ ନାହିଁ, କିଛି ନ ମିଳିଲେ ମଧ୍ୟ କିଛି ମାଗନ୍ତୁ ନାହିଁ) ବହୁତ କଠିନ ହେବ। ଏଭଳି ଦେଖିଲେ ଏ କଥା ହେଉଛି ସତ୍ୟ ଯେ ଆପଣଙ୍କୁ ଯାହା ମିଳିବାର ଥିବ, ତାହା ନିଶ୍ଚିତ ମିଳିବ । କିନ୍ତୁ ନିଜ ସ୍ଥାନରୁ ହଲିବେ ନାହିଁ। ସେହିଠାରେ ବସି-ବସି ସବୁକିଛି ଆସିଯିବ କିନ୍ତୁ କୌଣସି ବସ୍ତୁର ଇଚ୍ଛା ମନରେ ନେଇ ବସିବେ ନାହିଁ।

ଜଣେ ଯୁବକ ମୋ ପାଖକୁ ଆସି ପଚାରିବାକୁ ଲାଗିଲା - ସ୍ୱାମୀଜୀ ! ମୁଁ ଶୁଣିଛି ଯେ ଯେଉଁମାନେ ଭଗବାନଙ୍କର ଖୋଜିବାକୁ ବାହାରି ଗଲେଣି, ସେମାନେ ସଂସାରର ଚିନ୍ତା ଛାଡିଦେଇଛନ୍ତି । କେଉଁଠି ଭୋଜନ ମିଳିବ, ଜଳ ମିଳିବ, ତାକୁ ସେମାନେ କେବେ ବିଚାର କରି ନାହାନ୍ତି । ସେମାନେ ଚାଲିବାକୁ ଆରମ୍ଭ କଲେ, ପୁଣି କେଜାଣି, କିପରି, ଭାବରେ ସେମାନଙ୍କୁ କେଉଁଠି ନା କେଉଁଠି ଭୋଜନ ପାଣି ମିଳିଯାଉଥିଲା । ଏକଥା କଣ ସତ୍ୟ ? ମୁଁ କହିଲି - "ଏହା ଅକାଟ୍ୟ ସତକଥା ।" ତାପରେ ସେ କହିଲା, "ଯଦି ମୁଁ ଭଗବାନଙ୍କୁ ଖୋଜିବାକୁ ଯିବି ତେବେ ମତେ ଖାଇବାକୁ ମିଳିବ ନା ନାହିଁ।"

ମୁଁ କହିଲି ନାହିଁ। କାହିଁକି ? ମୁଁ କହିଲି, "କାହିଁକି ନା ତୁମେ ତ ଭୋଜନ ଖୋଜିବାକୁ ଯାଉଛ ତୁମକୁ ପ୍ରଥମେ ଚିନ୍ତା ହେଉଛି ଯେ ମୁଁ ଯିବି ମୋତେ ଭୋଜନ ମିଳିବ କି ନାହିଁ।" କିନ୍ତୁ ଯଦି କେହି ନିଶ୍ଚିତ ହୋଇ ବସିଯାଏ, ଯେ ଯଦି ଆସିବାର କଥା ତେବେ ଆସିବ, ଯଦି ନ ଆସିବାର ଥିବ ତେବେ ଆସିବ ନାହିଁ ଏଭଳି ବିଚାର କରି ଯଦି ସେ ଟିକିଏ ମଧ୍ୟ ବ୍ୟାକୁଳ ହୁଏ ନାହିଁ, ତେବେ ଦେଖନ୍ତୁ କଣ ହେଉଛି ।

ଆମ ସ୍ୱାମୀଜୀଙ୍କର ଗୁରୁଜୀ ଶ୍ରୀ ତପୋବନଜୀ ମହାରାଜ ଏକୁଟିଆ ହିଁ ହିମାଳୟରେ ପଦଚାରଣ କରୁଥିଲେ । କେବେ କେବେ ତ ଭୋଜନ ନିମନ୍ତେ କିଛି ମିଳୁ ନ ଥିଲା । ପରନ୍ତୁ ସେ ସନ୍ତୁଷ୍ଟି ପୂର୍ବକ ଚାଲୁଥିଲେ । ମିଳିଲେ ଠିକ୍, ନ ମିଳିଲେ ମଧ୍ୟ ଠିକ୍ । ଥରେ ସେ କୈଳାସ ମାର୍ଗରେ ଯାଉଥିଲେ, ସେଠାରେ ଦୁଇ ହିମଦସ୍ୟୁ (ଡାକୁ) ତାଙ୍କଠାରୁ ଚୋରି କରିବାକୁ ଆସିଲେ । ତେବେ ତାଙ୍କର ପାଖରେ କଣ ଥିଲା ଯେ ଚୋରି କରି ଥାଆନ୍ତେ। ଯେତେବେଳେ ସେମାନେ ଦେଖିଲେ ଯେ ଏହାଙ୍କ ପାଖରେ କିଛି ନାହିଁ, ସେତେବେଳେ ତପୋବନଜୀ ମହାରାଜା ତାଙ୍କୁ ରାସ୍ତା ପଚାରିଲେ, ଏବଂ ମୋତେ ବହୁତ ଭୋକ ଲାଗୁଛି ବୋଲି କହିଲେ । ସେତେବେଳେ ସେହି ଡାକୁ ହିଁ ତାଙ୍କୁ ଭୋଜନ ଦେଇଥିଲେ । ଏମିତି ବି ହୋଇଥାଏ ।

ଏବେ ଏହି ଦତ୍ତାତ୍ରେୟଜୀ ତ ଅବଧୂତ ସନ୍ନ୍ୟାସୀ ଥିଲେ । ସେ ଅଜଗରଠାରୁ ଯେଉଁ ଶିକ୍ଷା ଗ୍ରହଣ କରିଥିଲେ, ତାହା ସେମାନଙ୍କ ନିମନ୍ତେ ଉଚିତ୍ ଥିଲା, ପରନ୍ତୁ ଜଣେ ଗୃହସ୍ଥାଶ୍ରମକୁ ଏଠାରୁ କଣ ଶିକ୍ଷା ନେବା ଉଚିତ୍ ? ଯାହା ଉପରେ ଘର ପରିବାର ନିର୍ଭର କରୁଛି, ତାକୁ ତ ଅଜଗର ବୃତ୍ତିଠାରୁ ଏହି ତାତ୍ପର୍ଯ୍ୟ ବୁଝିବା କଥା ଯେ ନିଜର କର୍ତ୍ତବ୍ୟକୁ ପାଳନ କରି ଏବଂ ନ୍ୟାୟୋଚିତ ରୀତି ଦ୍ୱାରା ତାକୁ ଯାହା ପ୍ରାପ୍ତ ହେବ, **'ଯଲ୍ଲଭସେ ନିଜ କର୍ମୋପାତ୍ତଂ ବିତ୍ତଂ ତେନ ବିନୋଦୟ ଚିତ୍ତମ୍'** (ଭଜଗୋବିନ୍ଦମ୍ - ୨) ସେଥିରେ ସନ୍ତୁଷ୍ଟ ରହିବା ଉଚିତ୍ ।

**ସିନ୍ଧୁ** ଅର୍ଥାତ୍ ସମୁଦ୍ରଠାରୁ ମୁଁ ଗମ୍ଭୀରତା ଶିଖିଛି । ଭଗବାନ ଶ୍ରୀରାମଚନ୍ଦ୍ରଜୀଙ୍କ ନିମନ୍ତେ କୁହାଯାଇଛି **'ସମୁଦ୍ର ଇବ ଗାମ୍ଭୀର୍ଯେ'** ଯେ ତାଙ୍କର ଗାମ୍ଭୀର୍ଯ୍ୟ ସମୁଦ୍ର ଭଳି ଥିଲା। ସମୁଦ୍ରରେ କେତେ ନଦୀ ଆସି ମିଶେ ପରନ୍ତୁ ସେଥିରେ କେବେ ହେଲେ ବଢ଼ି ଆସେ ନାହିଁ । କେବଳ ଏତିକି ନୁହେଁ, ଯେତେବେଳେ ନଦୀଗୁଡିକ ଶୁଖିଯାଆନ୍ତି, ସେମାନଙ୍କର ଜଳ କ୍ଷୀଣ ହୋଇଯାଏ, ସେତେବେଳେ ମଧ୍ୟ ସମୁଦ୍ର ଉପରେ ତାର କୌଣସି ପ୍ରଭାବ ପଡେ ନାହିଁ । ସେଥିରେ କୌଣସି ବିକାର ଅଥବା କ୍ଷୋଭ ହୁଏ ନାହିଁ,

ସେ ସବୁବେଳେ ଅକ୍ଷୁବ୍ଧ ରହେ । ତାର ଅସ୍ତିତ୍ୱ ନଦୀମାନଙ୍କ ଉପରେ ଆଶ୍ରିତ ନ ଥାଏ। ସେ ନିଜେ ନିଜ ଭିତରେ ପରିପୂର୍ଣ୍ଣ ଥାଏ। ଯେତେବେଳେ କି ସେହି ନଦୀ ଗୁଡିକ ସମୁଦ୍ରରେ ମିଶିଯାଇ ସମୁଦ୍ର ଭଳି ବିଶାଳତାକୁ ପ୍ରାପ୍ତ କରିନିଅନ୍ତି, ସ୍ୱୟଂ ସମୁଦ୍ର ହୋଇଯାଆନ୍ତି।

ନଚିକେତାକୁ ଯମରାଜଜୀ ଅନେକ-ଅନେକ ପ୍ରକାରର ପ୍ରଲୋଭନ ଦେଖାଇଲେ, ପରନ୍ତୁ ସେ ସବୁ ତାକୁ ଲୁବ୍ଧ କରି ପାରିଲା ନାହିଁ । ସେ ସନ୍ଦର୍ଭରେ ଭଗବାନ ଭାଷ୍ୟକାର ଲେଖୁଛନ୍ତି -

**ଏବଂ ମୃତ୍ୟୁନା ପ୍ରଲୋଭ୍ୟମାନୋଽପି ନଚିକେତା**

**ମହାହ୍ରଦବଦ୍ ଅକ୍ଷୋଭ୍ୟ ଆହ ।** (ଶାଂ.ଭାଷ୍ୟ କଠ ଉପ. ୧.୧.୨୫)

ମହାହ୍ରଦ, ମହାସରୋବର ଅଥବା ଅପାର ସମୁଦ୍ର ଭଳି ନଚିକେତା ଅକ୍ଷୁବ୍ଧ ରହିଲେ। ଏପରି ସମୁଦ୍ରପରି ଗମ୍ଭୀରତା ନିଜର ସ୍ୱଭାବରେ ଆସିବା ଉଚିତ୍। ଆମ ମନ ତ ସବୁବେଳେ କ୍ରମ ପାଣି ଥିବା ପରି ଚହଲୁ ଥାଏ । କିନ୍ତୁ ସମୁଦ୍ର ଉପରେ ଲହରୀ ଦେଖାଗଲେ ମଧ ଭିତରେ ସେ ଅତ୍ୟନ୍ତ ଶାନ୍ତ ଏବଂ ଗଭୀର ଥାଏ । ଏହିଭଳି ଭାବରେ ସାଧକ ଜୀବନରେ ମଧ ଭୋଗର ପ୍ରାପ୍ତି ଅଥବା ଅପ୍ରାପ୍ତିରେ କୌଣସି ଅନ୍ତର ପଡିବା ଉଚିତ୍ ନୁହେଁ । ଯେତେବେଳେ ଏହିଭଳି ହୁଏ ସେତେବେଳେ ସେ ସମସ୍ତ ଭୋଗକୁ ନିଜର ସ୍ୱରୂପରେ ହିଁ ଭାସିତ ହେଉଛି - ଏହି ଜ୍ଞାନ ଦ୍ୱାରା ସେ ସମସ୍ତ ଭୋଗ ଆତ୍ମ ସ୍ୱରୂପରେ ଏକାକାର ହୋଇଯାଏ । ଏଠାରେ ଏହି ବିଲକ୍ଷଣ କଥା କୁହାଯାଇଛି ।

**ପତଙ୍ଗ** ଠାରୁ ମୁଁ ଶିଖିଛି ଯେ ରୂପାସକ୍ତି ହେବା ଉଚିତ୍ ନୁହେଁ । ପତଙ୍ଗ ରୂପ ଦେଖି- ଅଗ୍ନିର ଜ୍ୱାଳାକୁ ଦେଖି ଆସକ୍ତ ହୋଇଯାଏ ଏବଂ ସ୍ୱୟଂକୁ ନଷ୍ଟ କରିନିଏ । ସେ ସ୍ୱୟଂ ହି ତାର ପାଖକୁ ଯାଏ ଏବଂ ଜଳିଯାଏ ।

ସେହିଭଳି ଭାବରେ ଇନ୍ଦ୍ରିୟମାନଙ୍କ ଦ୍ୱାରା ନିୟନ୍ତ୍ରିତ ମନୁଷ୍ୟ ମଧ ରୂପ ପ୍ରତି ଆସକ୍ତ ହୋଇ ସ୍ୱୟଂକୁ ନଷ୍ଟ କରିନିଏ । ସଂସାରରେ ରୂପ ଆମ୍ଭମାନଙ୍କୁ ବହୁତ ଆକର୍ଷିତ କରିଥାଏ। ସ୍ତ୍ରୀ ନିମନ୍ତେ ପୁରୁଷର ରୂପ, ପୁରୁଷ ନିମନ୍ତେ ସ୍ତ୍ରୀର ରୂପ ଏବଂ ଆନ୍ୟ ଭୌତିକ ବିଷୟର ରୂପ ବହୁତ ଆକର୍ଷକ ଲାଗେ । ସେ ସବୁ ମନକୁ ପ୍ରଲୋଭିତ କରନ୍ତି ଏବଂ ନିଜର ବିବେକକୁ ହଜାଇ ଆମେ ସେଥିରେ ପଡିଯାଉ ଏବଂ ସ୍ୱୟଂକୁ ସର୍ବନାଶ କରିଥାଉ ।

**ମଧୁକୃଦ୍** ଅର୍ଥାତ୍ ମହୁମାଛି ଠାରୁ ମୁଁ ଶିଖିଛି ଯେ ମନୁଷ୍ୟକୁ ସାରଗ୍ରାହୀ ହେବା ଉଚିତ୍ । ମହୁ ନିର୍ମାଣ କରୁଥିବା ମହୁମାଛି ଭିନ୍ନ ଭିନ୍ନ ଫୁଲପାଖକୁ ଯାଇ ତାର ସାର ନେଇ ଆସେ । ସେଠାରୁ ମୁଁ ଶିଖିଛି ଯେ ଜୀବନରେ କେବେହେଲେ ଗୋଟିଏ ସ୍ଥାନରେ ଅଟକିଯିବା ଉଚିତ୍ ନୁହେଁ । ଯେକୌଣସି ଠାରେ ଯାହା କିଛି ହିତ କଥା ଜାଣିବାକୁ ମିଳେ ତାକୁ ତଥା ଛୋଟ-ବଡ ସମସ୍ତ ଗ୍ରନ୍ଥରୁ ତାଙ୍କର ସାରକୁ ଗ୍ରହଣ କରି ନେବା ଆବଶ୍ୟକ ।

ଯଦି ଛୋଟପିଲାଟିଏ କୌଣସି ବୁଦ୍ଧିମତ୍ତାର କଥା କହେ, ତେବେ ତାକୁ ଶିଖିନେବା ଉଚିତ୍ । ଦେଖନ୍ତୁ, ଯଦି ମଇଳାଗଦାରେ ଆମକୁ କୌଣସି ହୀରା ଅଥବା ରତ୍ନ ମିଳିଯାଏ, ତେବେ ତାକୁ ନେଇ ଯିବା କଥା ନା ? କୁହାଯାଇଛି **"ମୋଲ କରୋ ତଲ୍‌ବାର କା, ପଡା ରହନେ ଦୋ ମ୍ୟାନ୍ ।"** ତଲବାରର ଦାମ୍ ପଚାରିବା କଥା, ତାର ଖୋଳ ସହିତ ଆମର କଣ କାର୍ଯ୍ୟ ? ତେଣୁ ଜ୍ଞାନ କଥା କହୁଥିବା ବ୍ୟକ୍ତି ବାଳକ ହେଉ ଅଥବା ବୃଦ୍ଧ, ସ୍ତ୍ରୀ ହେଉ, ବା ପୁରୁଷ, ତାର କିଛି ମହତ୍ତ୍ୱ ନାହିଁ, ସେ ଯାହା କହୁଛି ତାର ହିଁ ମହତ୍ତ୍ୱ ଅଛି। ଜ୍ଞାନ କଥା ଯେଉଁଠାରୁ ମିଳିଗଲେ ମଧ୍ୟ ତାକୁ ଶିଖିନେବା ଉଚିତ୍, ଏହା ମୁଁ ମହୁମାଛି ଠାରୁ ଶିଖିଛି ।

**ଗଜ-** ହାତୀର ସ୍ପର୍ଶରେ ହିଁ ଆସକ୍ତି ଥାଏ । ଏକ ବିଶେଷ ଋତୁରେ ତାର କାମ ବାସନା ଜାଗ୍ରତ ହୁଏ ଏବଂ ସେତେବେଳେ ତାର ବୃତ୍ତି ଏହିଭଳି ହୋଇଯାଏ ଯେ ସେ ହାତିନୀମାନଙ୍କ ଶରୀର ସହିତ ରଗଡି-ରଗଡି କରି ସ୍ପର୍ଶ ସୁଖ ଭୋଗପୂର୍ବକ ଚାଲିଥାଆନ୍ତି। ତେଣୁ ଜାଣିବା-ଶୁଣିବା ଲୋକମାନେ ଏକ ଗର୍ତ୍ତ କରି ତା ପରପାର୍ଶ୍ୱରେ ଏକ ନକଲି ହାତିନୀକୁ ଠିଆ କରି ଦେଇଥାଆନ୍ତି । ସ୍ପର୍ଶାସକ୍ତି କାରଣରୁ ଯେତେବେଳେ ନିଜର ଶରୀରକୁ ତା ପାଖରେ ସ୍ପର୍ଶ କରିବାକୁ ଯାଏ, ସେତେବେଳେ ସେ ସେହି ଗର୍ତ୍ତରେ ପଡି ବନ୍ଧନରେ ବାନ୍ଧି ହୋଇଯାଏ ।

ଅନ୍ୟ ସମସ୍ତ ଆସକ୍ତିମାନଙ୍କର ତୁଳନାରେ ସ୍ପର୍ଶାସକ୍ତି ସବୁଠାରୁ ବିପଜ୍ଜନକ ହୋଇଥାଏ। ଯେତେବେଳ ପର୍ଯ୍ୟନ୍ତ ଅନ୍ୟ କାହାର ସ୍ପର୍ଶ କରି ନ ଥିବ, ସେତେବେଳ ପର୍ଯ୍ୟନ୍ତ ସବୁ ଠିକ୍ ହୋଇଥାଏ (କିନ୍ତୁ ଯେତେବେଳେ ସ୍ପର୍ଶ କଲା, ସେତେବେଳେ ହିଁ ପତନ ହୋଇଥାଏ) । ଶାସ୍ତ୍ରରେ ତ ସ୍ପଷ୍ଟତଃ କୁହାଯାଇଛି ଯେ ନିଜର ଅଙ୍ଗ ଦ୍ୱାରା ନିଜର ଅଙ୍ଗକୁ ଅଧିକ ସ୍ପର୍ଶ କରିବା ଉଚିତ୍ ନୁହେଁ । କାହିଁକି ନା ଏଭଳି କରିବା ଦ୍ୱାରା ମନରେ କାମନା ଉତ୍ପନ୍ନ ହୋଇଯାଏ । ସେତେବେଳେ ସ୍ତ୍ରୀ-ପୁରୁଷର ପରସ୍ପର ସ୍ପର୍ଶର ପରିଣାମ

କଥା କଣ କୁହାଯିବ ? ଅବଧୂତଜୀ କହୁଛନ୍ତି - ହାତୀଠାରୁ ମୁଁ ଶିଖିଛି ଯେ ସ୍ତ୍ରୀଠାରେ ଆସକ୍ତ ହେବା ଉଚିତ୍ ନୁହେଁ ।

ମଧୁହା - ଅର୍ଥାତ୍ ମଧୁହାରୀ - ମଧୁ ବାହାର କରୁଥିବା ଠାରୁ ମୁଁ ଶିଖିଛି ଯେ ଧନ ଅଥବା ଭୋଗ ସାମଗ୍ରୀର ସଞ୍ଚୟ କରିବା ଉଚିତ୍ ନୁହେଁ । ଏହାର ଲୋଭରେ ପଡି କରାଯାଇଥିବା ସମସ୍ତ ପରିଶ୍ରମ ବ୍ୟର୍ଥ ହୋଇଯାଏ । କାହିଁକି ନା ଯେଉଁଭଳି ଭାବରେ ମହୁମାଛିଟି ପ୍ରଯତ୍ନ ପୂର୍ବକ ସବୁଠାରୁ ମହୁ ଏକାଠି କରେ ପରନ୍ତୁ, ନା ତ ସେ ସ୍ୱୟଂ ତାକୁ ଖାଏ, ନା ସେ ଅନ୍ୟ କାହାକୁ ଖାଇବାକୁ ଦିଏ, ଦିନେ କେହି ମଧୁହାରୀ କମ୍ବଳ ଘୋଡାଇ ହୋଇ ଆସେ ଏବଂ ସମସ୍ତ ମଧୁକୁ ନେଇଯାଏ । ସେହିଭଳି ଭାବରେ ଯେତେବେଳେ ମନୁଷ୍ୟ ଲୋଭୀ ହୋଇ ଧନ ତଥା ଅନେକ ଭୋଗ୍ୟ ବସ୍ତୁମାନଙ୍କୁ ସଂଗ୍ରହ କରିଥାଏ ଏବଂ ପୁଣି ତାକୁ ନା ତ ସେ ଭୋଗ କରିପାରେ ନା ତ ଅନ୍ୟକୁ ଭୋଗ କରିବାକୁ ଦିଏ, ସେତେବେଳେ ମଧୁହାରୀ ଭଳି କେହି ତାକୁ ଲୁଟି ନେଇଥାଏ । ସେଥିପାଇଁ ଅଧିକ ସଂଗ୍ରହ କରିବା ଉଚିତ୍ ନୁହେଁ । ସବୁଠାରୁ ଗ୍ରହଣ କରି ପୁଣି ସମସ୍ତଙ୍କୁ ଦେଇ ଦେବା ଉଚିତ୍ । ଯେଉଁଭଳି ଭାବରେ ବୃକ୍ଷ-ଲତା, ପାହାଡ-ନଦୀ ଆଦି । ଏହା ମୁଁ ମଧୁହାରୀ ଠାରୁ ଶିଖିଛି ।

ଏବେ କହୁଛନ୍ତି ଯେ **ହରିଣ** ଠାରୁ ମୁଁ କଣ ଶିଖିଛି । ବେଣୁନାଦ ଶୁଣିକରି, ଅଥବା ସଙ୍ଗୀତ ଦ୍ୱାରା ମୋହିତ ହୋଇ ହରିଣଟି ନିଜେ ନିଜକୁ ଭୂଲିଯାଏ ଏବଂ ବାନ୍ଧି ହୋଇଯାଏ। ତେଣୁ ଯତିକୁ ଗ୍ରାମ୍ୟ ସଙ୍ଗୀତ ତଥା ଲୋକ ଅଥବା ଗ୍ରାମ୍ୟ ବିଷୟକ କଥା ଶୁଣିବା ଉଚିତ୍ ନୁହେଁ। ବିଷୟ କଥା ଶ୍ରବଣ ମାତ୍ରକେ ତା କାରଣ ପ୍ରତି ମୋହ ଉତ୍ପନ୍ନ ହେବାକୁ ଲାଗେ । ସଙ୍ଗୀତ ସେତେବେଳେ ହିତକାରୀ ହୋଇଥାଏ, ଯେତେବେଳେ ସେଥିରେ ଭକ୍ତି ରପୁଟ ଥାଏ । ଭକ୍ତିଯୁକ୍ତ ସଙ୍ଗୀତ ତ କଲ୍ୟାଣକାରୀ ହୋଇଥାଏ, କିନ୍ତୁ ଭକ୍ତିବିହୀନ ସଙ୍ଗୀତ ବନ୍ଧନର କାରଣ ହୋଇଥାଏ । ତେଣୁ ମୁଁ ହରିଣଠାରୁ ଶିଖିଛି ଯେ ଶବ୍ଦ ଅଥବା ଧ୍ୱନିରେ ବା ସଙ୍ଗୀତରେ ଆସକ୍ତ ହେବା ଉଚିତ୍ ନୁହେଁ ।

ଆଗକୁ କହୁଛନ୍ତି - ମୁଁ ଦେଖିଲି ଯେ **ମୀନ** ଅର୍ଥାତ୍ ମାଛର ସ୍ୱାଦରେ ବହୁତ ଆସକ୍ତି ଅଛି । ମାଛଧରା ବ୍ୟକ୍ତିର କଣ୍ଟାରେ ଲାଗିଥିବା ମାଂସ ଖଣ୍ଡର ଲୋଭରେ ପଡି ସେ ବନ୍ଧନରେ ଆସିଯାଇଥାଏ । ନିଜର ମରଣକୁ ସେ ନିଜେ ଆମନ୍ତ୍ରଣ କରିଥାଏ । ସେହିଭଳି ଭାବରେ ମନୁଷ୍ୟ ମଧ୍ୟ ସ୍ୱାଦାସକ୍ତିର କାରଣରୁ ହିଁ ନିଜର ବିନାଶ ସ୍ୱୟଂ କରେ। ଅନ୍ୟ ଇନ୍ଦ୍ରିୟମାନଙ୍କୁ ଜିତିବା ଏତେ କଠିନ ନୁହେଁ ଯେତେ ସ୍ୱାଦେନ୍ଦ୍ରିୟକୁ

ଜିତିବା । ଭୋଜନକୁ ଅଙ୍କ କରି ଅଥବା ବନ୍ଦ କରି ଅନ୍ୟ ଇନ୍ଦ୍ରିୟମାନଙ୍କ ଉପରେ ତ ବିଜୟ ପ୍ରାପ୍ତ କରାଯାଇପାରେ । ପରନ୍ତୁ, ସେଥିରେ ସ୍ୱାଦାସକ୍ତି ଆହୁରି ମଧ୍ୟ ବଢ଼ିଯାଏ । ତେଣୁ ଯେତେବେଳ ପର୍ଯ୍ୟନ୍ତ ରସନେନ୍ଦ୍ରିୟ ଉପରେ ବିଜୟ ପ୍ରାପ୍ତ ହୋଇ ନ ଥିବ ସେତେବେଳ ପର୍ଯ୍ୟନ୍ତ ଇନ୍ଦ୍ରିୟ ବିଜୟ ହୋଇ ନ ଥାଏ । ମନ ଆମର ବଶରେ ନ ଥାଏ। ଯିଏ ରସନେନ୍ଦ୍ରିୟକୁ ଜିତିଗଲାଣି, ବାସ୍ତବରେ ସେ ହିଁ ନିଜର ଇନ୍ଦ୍ରିୟର ତଥା ମନର ସ୍ୱାମୀ ହୋଇପାରିବ .

ଅବଧୂତଜୀ ଆଗକୁ କହୁଛନ୍ତି ଯେ ସେ **ପିଙ୍ଗଳା** ବେଶ୍ୟାଠାରୁ କଣ ଶିଖିଛନ୍ତି । ବିଦେହରାଜ ଜନକଙ୍କର ନଗରୀରେ ପିଙ୍ଗଳା ନାମକ ଜଣେ ବେଶ୍ୟା ରହୁଥିଲା । ସେ ନିତ୍ୟ ପ୍ରସ୍ତୁତ ହୋଇ କୌଣସି ପୁରୁଷକୁ ପ୍ରତୀକ୍ଷା କରୁଥିଲା, ଯଦ୍ୱାରା ତାକୁ କିଛି ଧନପ୍ରାପ୍ତ ହେବ । ଗୋଟିଏ ଦିନ କଥା - ପ୍ରତି ଦିନଭଳି ସେ ସଜାଇ ହୋଇ କାହାକୁ ପ୍ରତୀକ୍ଷା କରିଥିଲା । ଅନେକ ସମୟ ପର୍ଯ୍ୟନ୍ତ ପ୍ରତୀକ୍ଷା କଲା ପରେ ମଧ୍ୟ କେହି ଆସିଲେ ନାହିଁ । ସେତେବେଳେ ଅକସ୍ମାତ୍ ତା ଉପରେ ଭଗବତ୍ କୃପା ହେଲା ଯେ ତା ମନରେ ବୈରାଗ୍ୟ ଉତ୍ପନ୍ନ ହୋଇଗଲା । ସେ ନିଜେ ନିଜକୁ ଧିକ୍କାର କରିବାକୁ ଲାଗିଲା ଯେ ମୋତେ ଏତେ ଶ୍ରେଷ୍ଠ ଶରୀର - ମାନବ ଶରୀର ପ୍ରାପ୍ତ ହୋଇଛି ଏବଂ ମୁଁ ଏପର୍ଯ୍ୟନ୍ତ ତାକୁ ବିକ୍ରି କରୁଛି । ଏହି ଦୁଷ୍ଟ ଲୋକମାନଙ୍କୁ ଖୁସି କରିବା ନିମନ୍ତେ, ସେମାନଙ୍କର କାମନାକୁ ଚରିତାର୍ଥ କରି ଧନ ପ୍ରାପ୍ତ କରିବାରେ ମୁଁ ଲାଗିଲି । ମୁଁ କିଭଳି ମୂଢ଼ ହୋଇଯାଇଥିଲି ମୁଁ ଏହି ବିଦେହରାଜଙ୍କର ନଗରୀରେ ରହୁଛି - ଯେଉଁଠାରେ ପ୍ରାୟତଃ ସମସ୍ତେ ଜ୍ଞାନୀ । ଏଠାରେ ମୁଁ ହିଁ ଏଭଳି ଏକ ପାପୀ ସ୍ତ୍ରୀ ଅଛି । ସର୍ବସ୍ୱକୁ ପ୍ରଦାନ କରୁଥିବା ସଚ୍ଚା ପ୍ରେମ-ସୁଖ ବା ପରମାର୍ଥ ଧନ ପ୍ରଦାନ କରୁଥିବା ହୃଦୟସ୍ଥ ପ୍ରଭୁଙ୍କୁ ଛାଡି ମୁଁ ଆଜି ପର୍ଯ୍ୟନ୍ତ ଏହି ନଶ୍ୱର ପୁରୁଷମାନଙ୍କର, ତଥା ତାଙ୍କଠାରୁ ପ୍ରାପ୍ତ ହେଉଥିବା ଧନ ପ୍ରତି ଆଶା କରୁଥିଲି । ଏବେଠାରୁ ମୁଁ ଏହିଭଳି ମୋହରେ ପଡିବି ନାହିଁ । ଏଭଳି ନିଶ୍ଚୟ କରିବା ମାତ୍ରକେ କୌଣସି ପୁରୁଷର ଆସିବାର ଆଶା ତାର ଚିତ୍ତରୁ ଶୂନ୍ୟ ହୋଇଗଲା । ଏବଂ ସେ ପୂର୍ଣ୍ଣତଃ ଶାନ୍ତ ହୋଇ ଶୟନ କଲା । ଏହିଭଳି ଭାବରେ ବୈରାଗ୍ୟ ଉତ୍ପନ୍ନ ହେଲା ପରେ ପିଙ୍ଗଳା ଯେଉଁଭଳି ଅନୁଭବ କଲା ଏବଂ ତାକୁ କହି ଶୁଣାଇଲା ତାହା **ପିଙ୍ଗଳାଗୀତ** ନାମରେ ପ୍ରଖ୍ୟାତ । ତାହା ଅତ୍ୟନ୍ତ ସୁନ୍ଦର ।

**ଆଶା ହି ପରମଂ ଦୁଃଖଂ ନୈରାଗ୍ୟଂ ପରମଂ ସୁଖମ୍ ।** (୧୧.୮.୪୪)

ସାର ରୂପରେ ତାର ଭାବ ହେଉଛି ଆଶା ହିଁ ଆମ୍ଭଙ୍କୁ ଦୁଃଖ ପ୍ରଦାନ କରେ । ଏହି ସନ୍ଦର୍ଭରେ ଆମର ଗୁରୁଦେବ ସ୍ୱାମୀ ଚିନ୍ମୟାନନ୍ଦଜୀଙ୍କର ଏକ ଅତ୍ୟନ୍ତ ସୁନ୍ଦର ଇଂରାଜୀ ବାକ୍ୟ ସ୍ମରଣୀୟ ଅଟେ - ଯାହାର ଅର୍ଥ ହେଲା ଯିଏ ଅନେକ ପ୍ରକାରର ମିଥ୍ୟା ଆଶା କରିଥାଆନ୍ତି, ତାଙ୍କୁ ହିଁ ଜୀବନରେ ବହୁତ ନିରାଶ ହେବାକୁ ପଡେ, ଅବଧୂତଜୀ କହୁଛନ୍ତି, "ପିଙ୍ଗଳା ଠାରୁ ମୁଁ ଶିଖିଛି ଯେ '**ନୈରାଶ୍ୟଂ ପରମଂ ସୁଖମ୍**' କାହାଠାରୁ କିଛି ଆଶା ନ କରିବା ହିଁ ପରମ ସୁଖର ସ୍ଥିତି ଅଟେ ।

ଦେଖନ୍ତୁ କୌଣସି ସନ୍ଥ କହିଛନ୍ତି ଯେ ଏହା ତ ଅବଧୂତଙ୍କର ମହାନତା ଯେ ସେ କହିଲେ ଯେ ମୁଁ ପିଙ୍ଗଳା ଠାରୁ ଶିଖିଛି । ସତକଥା କହିବାକୁ ଗଲେ ଏହି ମହାରାଜ ତ ତା ଘର ନିକଟରେ ବସିଥିଲେ । ସେତେବେଳେ ତାଙ୍କର ଶରୀରକୁ ସ୍ପର୍ଶ କରି ଯେଉଁ ପବନ ବହିଲା । ପିଙ୍ଗଳାକୁ ତାର ସ୍ପର୍ଶ ପ୍ରାପ୍ତ ହେଲା ମାତ୍ରେ ତା ମନରେ ସେହିଭଳି ବୈରାଗ୍ୟ ଉଦୟ ହୋଇଗଲା । ଅନ୍ୟଥା ତାର ମନରେ କେଉଁଠି ବୈରାଗ୍ୟ ପ୍ରକଟ ହୋଇଥାଆନ୍ତା । ଆପଣଙ୍କୁ ସତ କଥା କହୁଛି ଯେ ସନ୍ଥମାନଙ୍କର କୃପା ଏହିଭଳି ଭାବରେ ହୋଇଥାଏ, ଯେ ସେମାନଙ୍କର ଦର୍ଶନ ଦ୍ୱାରା, ସ୍ପର୍ଶ ଦ୍ୱାରା ଆମର ମନ ପବିତ୍ରତାରେ ପୂର୍ଣ୍ଣ ହୋଇଯାଏ । ଏଥିରେ କୌଣସି ସନ୍ଦେହ ନାହିଁ ।

ଏବେ କହୁଛନ୍ତି ଯେ ସେ **କୁରର** ପକ୍ଷୀଠାରୁ କଣ ଶିଖିଲେ । କୁରର ହେଉଛି ଏକ ଶାଗୁଣା ଜାତିର ପକ୍ଷୀ । ଅବଧୂତ କହୁଛନ୍ତି, "ଗୋଟିଏ କୁରରୀ ପକ୍ଷୀ ତାର ମୁହଁରେ ଏକ ମାଂସ ଖଣ୍ଡ ନେଇ ଯାଉଥିଲା। ସେତିକି ବେଳେ କିଛି ଶକ୍ତିଶାଳୀ ଶାଗୁଣା ଭଳି ଅନ୍ୟ ବଡ ବଡ ପକ୍ଷୀ ତା ଉପରେ ଆକ୍ରମଣ କରି ଦେଲେ । ସେତେବେଳେ ମୁଁ ଦେଖିଲି ଯେ କୁରର ପକ୍ଷୀଟି ସେ ମାଂସ ଖଣ୍ଡକ ଛାଡି ଦେଲା । ଯେତେବେଳେ ସେ ମାଂସ ଖଣ୍ଡକୁ ଛାଡିନେଲା, ସେତେବେଳେ ହିଁ ସମସ୍ତ ପକ୍ଷୀଗୁଡିକ ତାକୁ ଛାଡିଦେଇ ସେହି ମାଂସ ପିଣ୍ଡ ଆଡକୁ ଚାଲିଗଲେ ଏବଂ ଶାନ୍ତି ହୋଇଗଲା । ଏଥିରୁ ମୁଁ ବୁଝିଗଲି ଯେ ଯେଉଁ ଲୋକମାନେ ସଂସାରର ବସ୍ତୁକୁ ଅଧିକ ଧରି ରଖନ୍ତି, ତାଙ୍କ ଉପରେ ଅନ୍ୟମାନେ ଆକ୍ରମଣ କରିଥାଆନ୍ତି। ତେଣୁ ପ୍ରିୟ ଲାଗୁଥିବା ବସ୍ତୁକୁ ଅଧିକ ଧରି ରଖିବା ଉଚିତ୍ ନୁହେଁ। ସେତେବେଳେ ହିଁ ଶାନ୍ତି ହୋଇପାରିବ ଏବଂ ପୁଣି ଆନନ୍ଦସ୍ୱରୂପ ପରମାତ୍ମାଙ୍କର ପ୍ରାପ୍ତି ହୋଇପାରିବ ।"

**ଅର୍ଭକ** ଅର୍ଥାତ୍ ବାଳକଠାରୁ ମୁଁ ଶିଖିଛି **"ସଂନ୍ନ୍ୟାସେ ପରମଂ ସୁଖମ୍"** (ଭା.ମା.୩୬) ଯେକୌଣସି ବସ୍ତୁକୁ ଛାଡିଦେବାରେ ହିଁ ସୁଖ ଅଛି । ଧରି ରଖିବାରେ ନୁହେଁ । ଦେଖନ୍ତୁ, ବାଳକ କିପରି ହୋଇଥାଏ ? **'କ୍ଷୁଧାଂ ଦେହବ୍ୟଥାଂ ତ୍ୟକ୍ତ୍ୱା ବାଳଃ କ୍ରୀଡତି ବସ୍ତୁନି'** (ବି.ଚୁ ୫୩୮) ସେ ନିଜ ଦେହର, ଭୋକ-ଶୋଷର ଚିନ୍ତାକୁ ଭୁଲି ଖେଳିବାରେ ହିଁ ରମଣ କରେ । ନା ତ ସେ ଭୂତକାଳ କଥା ବିଚାର କରେ, ନା ହିଁ ଭବିଷ୍ୟ କଥା ଚିନ୍ତା କରେ । ସେ ତ କେବଳ ବର୍ତ୍ତମାନରେ ରମଣ କରେ, ଏବଂ ସେ ନିଜ ସ୍ୱଭାବରେ ନିଷ୍ପାପ ହୋଇଥାଏ । ଦ୍ୱିତୀୟ କଥା ହେଉଛି ସେ କୌଣସି ମାନାପମାନର ଚିନ୍ତା କରେ ନାହିଁ । ସେ ସବୁକିଛି ସହଜ ଭାବରେ ବ୍ୟବହାର କରେ। ଯେମିତି କେବେ ଯଦି ତାକୁ ତା ମାଙ୍କ ଉପରେ ଅଥବା ଅନ୍ୟ କାହା ଉପରେ କ୍ରୋଧ ଆସେ, ତେବେ ତାଙ୍କ ଉପରେ ସେ ପରସ୍ପର କଳି କ୍ରୋଧ କରିପକାଏ। ତା ଟିକିଏ ପରେ ହସିବାକୁ ଲାଗେ । ମାଙ୍କର ବେକରେ ହାତ ଦେଇ ତଥା ଅନ୍ୟମାନଙ୍କ ସହିତ ମିଶି ପ୍ରେମ ମଧ୍ୟ କରିଥାଏ । ଯେତେବେଳେ କି ଯେଉଁ ପିଲାମାନଙ୍କର ପରସ୍ପର କଳି ହୁଏ, ସେମାନଙ୍କର ପିତାମାତାମାନେ ନିଜ-ନିଜ ଭିତରେ କଳି କରି ଶତୃତାକୁ ଜୀବିତ ରଖିଥାଆନ୍ତି। ଅବଧୂତଜୀ କହୁଛନ୍ତି "ବାଳକ ଠାରୁ ମୁଁ ଶିଖିଛି ଯେ ନିଜର ମନକୁ ନିର୍ମଳ କରି ସହଜ ଭାବରେ ଜୀବନ ଅତିବାହିତ କରିବା ଉଚିତ୍ । ତା ସହିତ ଏହା ମଧ୍ୟ ମୁଁ ଶିଖିଲି ଯେ ପ୍ରତ୍ୟେକ କ୍ଷଣକୁ (ବର୍ତ୍ତମାନରେ) କେଉଁଭଳି ଭାବରେ ବଞ୍ଚିବାକୁ ହେବ ।"

ଏବେ ଅବଧୂତଜୀ ବର୍ଣ୍ଣନ କରୁଛନ୍ତି ଯେ ସେ **କୁମାରୀ କନ୍ୟା**ଠାରୁ କଣ ଶିଖିଛନ୍ତି। ଥରେ କୌଣସି କୁମାରୀ ଘରକୁ ବାହାହେବା ନିମନ୍ତେ କିଛି ଲୋକମାନେ ଆସି ପହଞ୍ଚିଲେ । ସେତେବେଳେ ସେ ଘରେ ସେ କୁମାରୀ ଅତିରିକ୍ତ ଅନ୍ୟ କେହି ନ ଥିଲେ। ତେଣୁ ସ୍ୱୟଂ କୁମାରୀ ହିଁ ସେମାନଙ୍କୁ ସ୍ୱାଗତ କଲା । ପୁଣି ତାଙ୍କୁ ବସିବାକୁ କହି ସେ ତାଙ୍କର ଭୋଜନ ଆଦିର ବ୍ୟବସ୍ଥା କରିବା ନିମନ୍ତେ ଭିତରକୁ ଗଲା । ଭୋଜନ ପ୍ରସ୍ତୁତ କରିବା ନିମନ୍ତେ ତାକୁ ଧାନ କୁଟିବାର ଆବଶ୍ୟକତା ପଡିଗଲା। ଯେତେବେଳେ ସେ କୁଟିବାକୁ ଲାଗିଲା ତ ତା ହାତର ଚୁଡିଗୁଡିକ ଖନ୍-ଖନ୍ କରିବାକୁ ଲାଗିଲା । ତାକୁ ଲାଗିଲା ଯେ ଚୁଡିମାନଙ୍କର ଶବ୍ଦରେ ଅତିଥିମାନଙ୍କୁ ଜଣା ପଡିଯିବ ଯେ ଆମ ଘରେ କିଛି ନାହିଁ ଏବଂ ସେଥିପାଇଁ ମୁଁ ଏବେ ଧାନ କୁଟୁଛି । ଏଭଳି ବିଚାର କରି ସେ ଗୋଟିକ ପରେ ଗୋଟିଏ ଚୁଡିକୁ ବାହାର କରିବାକୁ ଲାଗିଲା । ଯେତେବେଳେ କେବଳ ଦୁଇ-ଦୁଇଟି ଚୁଡି ରହିଗଲା - ସେତେବେଳେ ମଧ୍ୟ ଖନ୍-ଖନ୍ ଶବ୍ଦ ଶୁଭୁଥିଲା। ଏହା ଦେଖି ସେ ଆହୁରି ଗୋଟିଏ-ଗୋଟିଏ ଚୁଡିକୁ ହାତରୁ ବାହାର କରି ଦେଲା । ଯେତେବେଳେ କେବଳ ଗୋଟିଏ-ଗୋଟିଏ ଚୁଡି ରହିଥିଲା ଶବ୍ଦ ହେବା ବନ୍ଦ ହୋଇଗଲା ।

ଦେଖନ୍ତୁ ଯେଉଁଠାରେ ଦୁଇଟି ଥାଏ ସେହିଠାରେ ଖଟ୍-ପଟ୍ ହେଉଥାଏ । ଯେଉଁଭଳି ଭାବରେ ଅଟୋ-ରିକ୍ସା ଆଦିର ପଛରେ ଲେଖାଥାଏ- ଏକରେ ଶାନ୍ତି, ଦୁଇରେ କ୍ରାନ୍ତି । କୁହାଯାଏ ଯେ ଯେଉଁଠାରେ ଦୁଇଟି ବାସନ ଥିବ- ସେହିଠାରେ ଶବ୍ଦ ଶୁଭିବ । ଦ୍ୱୈତରେ ଅଥବା ନାନାତ୍ୱରେ ଶାନ୍ତି କେବେହେଲେ ହୋଇପାରିବ ନାହିଁ । ଯେଉଁଠାରେ ଅଧିକ ଲୋକ ଥାଆନ୍ତି - ସେଠାରେ କୌଣସି ନା କୌଣସି କାରଣରୁ ଅଶାନ୍ତି ହୋଇଥାଏ । କେବଳ ଦୁଇଜଣ ଥିଲେ କଥା-ବାର୍ତ୍ତା ତ ହେବ । ମୁଁ କୁମାରୀଠାରୁ ଶିଖିଛି ଯେ ଏକୁଟିଆ ହିଁ ବିଚରଣ କରିବା ଉଚିତ୍ । ଅଦ୍ୱୈତ ଭାବରେ ହିଁ ରହିବା ଉଚିତ୍ - କାହିଁକି ନା ଅଦ୍ୱୈତରେ ହିଁ ଶାନ୍ତି ଅଛି ।

ଏବେ **ଶରକୃତ** ଅର୍ଥାତ୍ ବାଣ ତିଆରି କରୁଥିବା ବ୍ୟକ୍ତି କଥା କହୁଛନ୍ତି। ଥରେ ମୁଁ ଦେଖିଛି ଯେ ଜଣେ ବାଣ ନିର୍ମାଣ କରୁଥିବା ବ୍ୟକ୍ତି ବାଣର ଅଗ୍ରଭାଗକୁ ଏତେ ଏକାଗ୍ର ଭାବରେ ନିର୍ମାଣ କରୁଥିଲା ଯେ, ସେହି ରାସ୍ତା ଦେଇ ରାଜାଙ୍କର ପାଲିଙ୍କି ଚାଲିଗଲା କିନ୍ତୁ ତାକୁ ଜଣାପଡିଲା ନାହିଁ । କହୁଛନ୍ତି ଏହିଭଳି ଭାବରେ ମନକୁ ଏକାଗ୍ର କରିନେଲେ ସଂସାରର କୌଣସି ବସ୍ତୁ ଆମର ମନକୁ କ୍ଷୋଭିତ କରି ପାରିବ ନାହିଁ । ଅନ୍ୟକୁ ଠିକ୍ କରିବା ବଦଳରେ, ଯଦି ଆମେ ସ୍ୱୟଂ ନିଜର ମନକୁ ହିଁ ଶାନ୍ତ କରିନେବା, ଏକାଗ୍ର କରି ନେବା - ତେବେ ଅନ୍ୟ ସବୁ କିଛି ସ୍ୱୟଂ ଠିକ୍ ହୋଇଯିବ । ଜୀବନରେ ଯଦି ଅଳ୍ପ ଟିକିଏ ମଧ୍ୟ ବୈରାଗ୍ୟ ଥିବ ତେବେ ମନକୁ ସରଳତାପୂର୍ବକ ଏକାଗ୍ର କରାଯାଇପାରିବ। ବୈରାଗ୍ୟ ତଥା ଅଭ୍ୟାସ ଦ୍ୱାରା ମନକୁ କୌଣସି ଲକ୍ଷରେ ସ୍ଥିର କରି ଦେଲେ ସେ ଶାନ୍ତ ହୋଇଯାଏ । ଯଦି ତାକୁ ସ୍ୱରୂପରେ ସ୍ଥିର କରିବାର ଅଭ୍ୟାସ କରାଯିବ ତେବେ ଯେତିକି ଯେତିକି ମନ ସ୍ୱରୂପସ୍ଥ ହେଉଥିବ, ସେତିକି ସେତିକି ଆମର ସବୁ କର୍ମ ବାସନାଗୁଡିକ କ୍ଷୀଣ ହୋଇଯାଏ । ସତ୍ତ୍ୱ ବଢିଯିବା ଦ୍ୱାରା ମନ ଶାନ୍ତ ହୋଇଯାଏ ।

ଆଗକୁ ବର୍ଣ୍ଣନ କରୁଛନ୍ତି ଯେ **ସର୍ପ**ଠାରୁ କଣ ଶିଖିଛନ୍ତି । ସର୍ପ କେବେହେଲେ ନିଜ ପାଇଁ ଗର୍ତ୍ତ (ଘର) ତିଆରି କରି ନ ଥାଏ । ପ୍ରଥମରୁ ନିର୍ମିତ ହୋଇଥିବା ଗର୍ତ୍ତରେ ପ୍ରବେଶ କରି ସେ ସୁଖ ପୂର୍ବକ ଶୋଇଯାଏ । ଦତ୍ତାତ୍ରେୟଜୀ କୁହନ୍ତି ଯେ ସର୍ପଠାରୁ ମୁଁ ଏହା ଶିଖିଛି ଯେ ଯେଉଁଭଳି ତାର କୌଣସି ପ୍ରକାର ନିଶ୍ଚିତ ଘର ନ ଥାଏ, କେବେ କେଉଁ ଘରେ ରହେ ତ କେବେ ଅନ୍ୟ କାହାର ଘରେ, ସେହିଭଳି ଭାବରେ ଜଣେ ସାଧୁକୁ ମଧ୍ୟ କୌଣସି ଘର ପ୍ରତି ଆସକ୍ତ ହେବା ଅନୁଚିତ୍ । ଯେଉଁଠାରେ କାର୍ଯ୍ୟଥିବ। ସେଠାରେ କିଛି ସମୟ ରହିବ ଏବଂ କାର୍ଯ୍ୟ ସମାପ୍ତ ହୋଇଗଲା ପରେ ସେଠାରୁ

ଚାଲିଯିବା ଉଚିତ୍ । ମୁଁ ତ ଏତିକି ବୁଝିଛି ଯେ ନିଜପାଇଁ କୌଣସି ଘର ନିର୍ମାଣ କର ନାହିଁ, ଅନ୍ୟ ଦ୍ୱାରା ନିର୍ମାଣ ହୋଇଥିବା ଘରେ ଯାଇ ରହିବା ଉଚିତ୍ ।

ଏବେ ଦେଖନ୍ତୁ, ସମସ୍ତେ ଯଦି ଏହିଭଳି କରିବା ନିମନ୍ତେ ବିଚାର କରିବେ, ତେବେ ସମସ୍ତଙ୍କୁ ବୃକ୍ଷ ତଳେ ରହିବାକୁ ପଡିବ । କାହିଁକି ନା ସମସ୍ତେ ପ୍ରତୀକ୍ଷା କରିଥିବେ ଯେ ଜଣେ କେତେବେଳେ ଗୋଟିଏ ଗୃହ ନିର୍ମାଣ କରିବ, ମୁଁ ଯାଇ ସେଥିରେ ରହିବି । ଏଠାରେ କହିବାର ତାତ୍ପର୍ଯ୍ୟ ହେଉଛି, ଯେଉଁମାନେ ସାଧୁ-ସନ୍ନ୍ୟାସୀ ଅଟନ୍ତି, ତାଙ୍କର ବହୁତ-ଘର-ଦୋକାନ ନିର୍ମାଣ କରିବା ଉଚିତ୍ ନୁହଁ। ଯେତିକି ଦରକାର ସେତିକି କର।

ଗୃହସ୍ଥମାନଙ୍କ ନିମନ୍ତେ ଗୃହ ନିର୍ମାଣ କରିବା ସବୁଠାରୁ ବଡ କର୍ତ୍ତବ୍ୟ । ପ୍ରଥମେ ଆପଣଙ୍କର ନିଜ ଘର ହେବା ଆବଶ୍ୟକ, କିନ୍ତୁ ଏହି ପ୍ରସଙ୍ଗରୁ ଶିକ୍ଷା ନେବା ଉଚିତ୍ ଯେ ସେହି (ନିଜ ଦ୍ୱାରା ନିର୍ମିତ ଗୃହ) ଗୃହ ପ୍ରତି କୌଣସି ଆସକ୍ତି ହେବା ଉଚିତ୍ ନୁହେଁ । ଅନ୍ୟ କେଉଁଠି ଯିବାକୁ ହେଲେ ଚାଲିଯିବା ଆବଶ୍ୟକ । ସେଥିପାଇଁ ଗୃହ ପ୍ରବେଶ କରି, ସର୍ବପ୍ରଥମ ଘରେ ଭଗବାନଙ୍କୁ ପ୍ରତିଷ୍ଠିତ କରାଯାଏ, ଏବଂ ଏଭଳି ଭାବ ରଖାଯାଏ ଯେ ଏହି ଘରଟି ଭଗବାନଙ୍କର, ଆମେ ତାଙ୍କର ସେବକ ମାତ୍ର । ଏହି ଭାବରେ ସେ ଘରେ ରହିବା ଉଚିତ୍ । ସେଥିରେ ମମତ୍ୱ କରିବା ଉଚିତ୍ ନୁହେଁ । ଯେପରି ସର୍ପ କିଛି ଦିନ ପର୍ଯ୍ୟନ୍ତ ଏକ ଗର୍ତ୍ତରେ ରହି ପୁଣି ସେଠାରୁ ବାହାରି ଅନ୍ୟ କୌଣସି ଗର୍ତ୍ତକୁ ଚାଲିଯାଏ । ସେହିପରି ଆମକୁ ମଧ୍ୟ କୌଣସି ଘରକୁ ଛାଡି ଅନ୍ୟ କୌଣସି ଘରେ ଯାଇ ରହିବାକୁ ପଡିଲେ ମଧ୍ୟ ସେଥିପାଇଁ ପ୍ରସ୍ତୁତ ରହିବା ଉଚିତ୍ । କୌଣସି ଏକ ବିଶେଷ ଘରେ ଆସକ୍ତି ରଖିବା ଉଚିତ୍ ନୁହେଁ । ସେଥିପାଇଁ ଭକ୍ତର ଲକ୍ଷଣ କୁହାଯାଇଛି ଯେ **'ଅନିକେତଃ'** ତାର ନିଜର କୌଣସି ଘର ନାହିଁ । ଶ୍ରୀଶଙ୍କରାଚାର୍ଯ୍ୟଜୀ ମଧ୍ୟ କହିଛନ୍ତି - **'ନ ନିଶ୍ଚିତଃ ନିକେତଃ ଯସ୍ୟ'** ତାର କୌଣସି ନିଶ୍ଚିତ ଘର ନ ଥାଏ । ଏହା ହେଉଛି ମୋର ଗୃହ - ମୁଁ ଏହିଠାରେ ହିଁ ରହିବି - ଏଭଳି ହେବା ଉଚିତ୍ ନୁହେଁ । ଯେଉଁଠି ରହିବାକୁ ମିଳିଗଲା ସେହିଠାରେ ରହିଯିବା କଥା ସରିଲା। ତେଣୁ ଗୃହସ୍ଥକୁ ଘର ନିର୍ମାଣ କରିବା ଉଚିତ୍ କିନ୍ତୁ ସେଥିରେ ଆସକ୍ତି ହେବା ଉଚିତ୍ ନୁହେଁ। ତାକୁ ଛାଡିବାର ସମୟ ଆସିଗଲେ ଛାଡିଦେବା ଉଚିତ୍ ।

**ଉର୍ଣ୍ଣନାଭି** ଅର୍ଥ ବୁଢିଆଣୀ, ତାଠାରୁ କଣ ଶିଖିଛି । ବୁଢିଆଣୀ ନିଜ ମୁଖରୁ ତନ୍ତୁ ବାହାର କରି ଜାଲ ବୁଣେ । ସେଥିରେ ସେ ବିଚରଣ କରେ, ରମଣ କରେ, ଏବଂ ପୁଣି

ତାକୁ ନିଜ ଭିତରେ ସାଉଁଟି ନେଇ ଅନ୍ତତଃ ଏକୁଟିଆ ରହିଥାଏ । ସେହିପରି ପରମାତ୍ମା ମଧ୍ୟ ସଂପୂର୍ଣ୍ଣ ସୃଷ୍ଟିକୁ ସ୍ୱୟଂ ପ୍ରକଟ କରି, ସେଥିରେ ବିହରଣ କରନ୍ତି ଏବଂ ଅନ୍ତତଃ ସ୍ୱୟଂଠାରେ ତାର ଲୟ ମଧ୍ୟ କରି ନିଅନ୍ତି । ଏଠାରେ କୌଣସି ପ୍ରକାରର ଦ୍ୱୈତ, ତ୍ରୈତ ଅଥବା ନାନାତ୍ୱ କିଛି ନାହିଁ । ସେହି ଏକ ଅଦ୍ୱିତୀୟ ପରମାତ୍ମାଙ୍କ ଠାରୁ ଏହି ସମସ୍ତ ସୃଷ୍ଟି ପ୍ରକଟ ହୋଇଛି । ସେଥିପାଇଁ ଅବଧୂତଜୀ କହୁଛନ୍ତି ମୁଁ ବୁଢିଆଣୀଠାରୁ ଶିଖିଛି ଯେ ଭେଦ ବୁଦ୍ଧି ରଖିବା ଉଚିତ୍ ନୁହେଁ । ଅଦ୍ୱୈତ ହିଁ ପାରମାର୍ଥିକ ସତ୍ୟ ଅଟେ। ଅନ୍ୟ ସବୁ କିଛି ଆଭାସ ମାତ୍ର ଅଟେ, ବାସ୍ତବିକ ନୁହେଁ ।

ପୁଣି କହୁଛନ୍ତି ଯେ ସୁପେଶକୃତ ଅର୍ଥାତ୍ **ଭୃଙ୍ଗୀକୀଟ**ଠାରୁ ମୁଁ କଣ ଶିଖିଛି । ଭୃଙ୍ଗୀକୀଟ ଯେତେବେଳେ କୌଣସି କୀଟକୁ ନେଇ ଆସି ନିଜର ନିବାସ ସ୍ଥାନରେ ବନ୍ଦ କରି ଦିଏ, ସେତେବେଳେ ସେ କୀଟଟି ଭୟ ଯୋଗୁଁ ସେହି ଭୃଙ୍ଗୀର ଚିନ୍ତନ କରି କରି ଦିନେ (ନିଜର ପୂର୍ବ ଶରୀରକୁ ନ ଛାଡି) ସେ ଭୃଙ୍ଗୀରୂପକୁ ପ୍ରାପ୍ତ ହୋଇଯାଇଥାଏ । ସେହିଭଳି ଭାବରେ ମନୁଷ୍ୟ ମଧ୍ୟ ଭୟରେ, ରାଗରେ, ଦ୍ୱେଷରେ, ପ୍ରେମରେ ଅଥବା ଯେକୌଣସି ଭାବରେ ନିଜର ମନକୁ ଯେଉଁଠି ଲଗାଇଦେବେ, ଏକାଗ୍ର କରି ନେବେ ମଧ୍ୟ ସେମାନେ ସେହି ସ୍ୱରୂପକୁ ପ୍ରାପ୍ତ ହୋଇଯାଆନ୍ତି।

ଅବଧୂତ ଦତ୍ତାତ୍ରେୟଜୀ କହୁଛନ୍ତି ଯେ ଏହିଭଳି ଭାବରେ ନିଜର ବୁଦ୍ଧିଦ୍ୱାରା ଚବିଶ ଗୁରୁଙ୍କର ଆଶ୍ରୟ ନେଇ ମୁଁ ସେମାନଙ୍କ ପାଖରୁ ଜ୍ଞାନପ୍ରାପ୍ତ କରିଛି । ଏହାଛଡା ମୁଁ ନିଜ ଶରୀରଠାରୁ ମଧ୍ୟ କିଛି ଶିଖିଛି, ଶିକ୍ଷା ପ୍ରାପ୍ତ କରିଛି । ଜନ୍ମ ହେଉଥିବା- ମୃତ୍ୟୁ ହେଉଥିବା ଶରୀରଟି ନଶ୍ୱର ହେଲେ ମଧ୍ୟ ଏହା ମୋକ୍ଷ ପ୍ରାପ୍ତ କରିବାର ସାଧନ-ଦ୍ୱାର ଅଟେ । କାହିଁକି ନା ଏହା ଏହିଭଳି ବୁଦ୍ଧିଦ୍ୱାରାଯୁକ୍ତ ହୋଇଛି ଯାହାକି ବ୍ରହ୍ମର ସାକ୍ଷାତ୍କାର ଅର୍ଥାତ୍ ବ୍ରହ୍ମର ସାକ୍ଷାତ୍ ଅପରୋକ୍ଷ ଅନୁଭବ କରି ପାରିବ । ଯଦ୍ୟପି ଏହି ଶରୀରଟି ନଶ୍ୱର ଏବଂ ପୁଣି ମଳମୂତ୍ର ଯୁକ୍ତ ଅପବିତ୍ର ମଧ୍ୟ, ତଥାପି ଏହି ଶରୀରରେ ଆମେ ଅଦ୍ୱୟ ଜ୍ଞାନ ପ୍ରାପ୍ତ କରିପାରିବା । ସେଥିପାଇଁ ଏହାକୁ ଜ୍ଞାନ ପ୍ରାପ୍ତିରେ ଲଗାଇବା ଉଚିତ୍ । କିନ୍ତୁ ଅନ୍ୟ କେଉଁଠି ନୁହେଁ । ଏହି ଶରୀରରୁ ମୋତେ ବିବେକ ତଥା ବୈରାଗ୍ୟର ଶିକ୍ଷା ମିଳେ।

ଦେଖନ୍ତୁ, ଶରୀରକୁ ସୂକ୍ଷ୍ମ ଦୃଷ୍ଟିରେ ଦେଖିଲେ, ସତକୁ ସତ ବୈରାଗ୍ୟ ହୋଇଯିବ। କାହିଁକି ନା ଏଠାରେ ଆସକ୍ତ କଲା ଭଳି କିଛି ନାହିଁ । ଏହାର ପ୍ରତ୍ୟେକଟି ଅଙ୍ଗକୁ ନିକଟରୁ ଦେଖିଲେ, ସେଥିରେ ଆମଙ୍କୁ ଭଲ ଲାଗିବାର କୌଣସି ଗୋଟିଏ ଅଙ୍ଗ ମିଳିବ

କି ? ଏଥିରେ ମଳ ଅଛି, ମୂତ୍ର ଅଛି, ଝାଳ ଅଛି, ରକ୍ତ ଅଛି, ମାଂସ ଅଛି, ହାଡ ଅଛି, ତେବେ କହିଲେ ଏଥିରୁ କେଉଁଟି ପବିତ୍ର ? କିନ୍ତୁ ସଂପୂର୍ଣ୍ଣ ଛାଞ୍ଚ ହୋଇସାରିବା ପରେ ଲାଗେ - ଆହା ! ଏହାର ପ୍ୟାକିଙ୍ଗ ବହୁତ ସୁନ୍ଦର । କିନ୍ତୁ ଯଦି ପ୍ୟାକିଙ୍ଗ୍‌କୁ ଖୋଲି ଭିତରକୁ ଦେଖିବାକୁ ଗଲେ ଦେଖିବା ଅସମ୍ଭବ । ଏଭଳି ଶରୀର ସହିତ ଏକ ହୋଇ ଜୀବ ନାନା ପ୍ରକାରର କଷ୍ଟ ଭୋଗ କରୁଥାଏ, କାହିଁକି ନା ସେ ଶରୀରକୁ ହିଁ ନିଜର ସ୍ୱରୂପ ମାନି ବସିଛି ଏବଂ ସେହି କାରଣରୁ ଇନ୍ଦ୍ରିୟମାନଙ୍କର ଟଣା-ଓଟରାରେ ବାନ୍ଧି ହୋଇ ଦୁଃଖ ପ୍ରାପ୍ତ କରୁଥାଏ ।

ଅବଧୂତଜୀ କହିଲେ ଏହିଭଳି ମୁଁ ସମସ୍ତଙ୍କଠାରୁ ଶିକ୍ଷାପ୍ରାପ୍ତ କରି ମୁଁ ଏହି ଜ୍ଞାନରେ ସ୍ଥିତ ହୋଇଛି ଏବଂ ମୋର ବୁଦ୍ଧି ଏହି ଜ୍ଞାନରେ ସ୍ଥିର ହୋଇସାରିଛି ।

ଏହି ପ୍ରସଙ୍ଗରେ ଧ୍ୟାନ ଦେବାର ବିଷୟ ହେଉଛି ଯେ ପୂର୍ବୋକ୍ତ ଚବିଶ ଗୁରୁ ବାସ୍ତବରେ ଅବଧୂତଜୀଙ୍କର ନିଜ ମନ ହିଁ ଅଟେ । ସେ ସମସ୍ତଙ୍କୁ ଦେଖି ଅବଧୂତ ଦତ୍ତାତ୍ରେୟଜୀ ନିଜର ବୁଦ୍ଧିଦ୍ୱାରା ସେହି ସେହି ଜ୍ଞାନକୁ ପ୍ରାପ୍ତ କରିଛନ୍ତି ।

**ଅବଧୂତବଚଃ ଶ୍ରୁତ୍ୱା ପୂର୍ବେଷାଂନଃ ସ ପୂର୍ବଜଃ ।**
**ସର୍ବସଙ୍ଗବିନିର୍ମୁକ୍ତଃ ସମଚିତ୍ତୋ ବଭୂବ ହ ॥** (୧୧.୯.୩୮)

ଭଗବାନ୍ ଶ୍ରୀକୃଷ୍ଣ ଉଦ୍ଧବଜୀଙ୍କୁ କହୁଛନ୍ତି, "ରାଜା ଯଦୁ ଆମର ପୂର୍ବଜମାନଙ୍କର ମଧ୍ୟ ପୂର୍ବଜ ଅଟନ୍ତି । ତାଙ୍କର ବଂଶଜ ହୋଇଥିବା ଯୋଗୁ ଆମମାନଙ୍କୁ ଯାଦବ କୁହାଯାଏ ।" ଅବଧୂତ ଦତ୍ତାତ୍ରେୟଙ୍କର ଏହି କଥାକୁ ଶୁଣି ଯଦୁ ରାଜା ଅତି ପ୍ରସନ୍ନ ହେଲେ । ସେ ଦତ୍ତାତ୍ରେୟଙ୍କର ପୂଜା-ବନ୍ଦନା କଲେ ଏବଂ ସ୍ୱୟଂ ସର୍ବସଙ୍ଗ ବିନିର୍ମୁକ୍ତ ହୋଇଗଲେ । ଆମକୁ ମଧ୍ୟ ସେହିଭଳି ମୁକ୍ତ ହୋଇଯିବା ଉଚିତ୍ ।

ଏଠାରେ ଭଗବାନ୍ ଉଦ୍ଧବଙ୍କୁ କହୁଛନ୍ତି ଯେ ତୁମେ ନିଜ ବୁଦ୍ଧିକୁ ଶୁଦ୍ଧ କରି ନେଲେ ତୁମଙ୍କୁ ମଧ୍ୟ ଏହିଭଳି ପ୍ରତ୍ୟେକଠାରୁ ଜ୍ଞାନ ପ୍ରାପ୍ତ ହେବାକୁ ଲାଗିବ । ଜୀବନରେ ପ୍ରକୃତ ଦୃଷ୍ଟି ଥିଲେ ପ୍ରତ୍ୟେକ ବସ୍ତୁଠାରୁ ଜ୍ଞାନ ପ୍ରାପ୍ତ କରାଯାଇପାରିବ ଏବଂ ତତ ବିପରୀତ ଯଦି ତୁମେ ମୂଢ ହୋଇ ରହିବ ତେବେ ବ୍ରହ୍ମା ଆସନ୍ତୁ କି ବିଷ୍ଣୁ ସ୍ୱୟଂ ଆ ଆମକୁ ଶିକ୍ଷା ଦିଅନ୍ତୁ ନା କାହିଁକି ତଥାପି ଆମମାନଙ୍କୁ ଜ୍ଞାନ ପ୍ରାପ୍ତି ହୋଇପାରିବ ନାହିଁ ।

ସଂକ୍ଷେପରେ ଏଠାରେ ପ୍ରଥମରୁ କୁହାଯାଇଛି ଯେ ଆତ୍ମା ହିଁ ପରମ ସତ୍ୟ ଅଟେ। ଯାହା-ଯାହା ଦୃଶ୍ୟ ଅଛି, ତାହା ସବୁ କିଛି କେବଳ ଆଭାସ ମାତ୍ର । ତେଣୁ ସେହିଠାରୁ ଅଥବା ସମସ୍ତ ଦୃଶ୍ୟ ପ୍ରପଞ୍ଚ ଠାରୁ ନିଜର ମନକୁ ଆଣି ନିଜର ସ୍ୱରୂପରେ ସ୍ଥିତ କରିବା ଉଚିତ୍ ଏବଂ ଯଦି ଏହା କରିବାରେ କଠିନତାର ଅନୁଭବ କରିବାକୁ ପଡେ, ତେବେ ପ୍ରଥମେ ନିଜର ମନକୁ ସଦ୍‌ଗୁଣ ଦ୍ୱାରା ସମ୍ପନ୍ନ କରି ନେବା ଉଚିତ୍ । ଦେଖନ୍ତୁ, ଏହି ସମସ୍ତ ଶିକ୍ଷାଗୁଡିକ (ଚବିଶ ଗୁରୁଙ୍କଦ୍ୱାରା) ବର୍ଣ୍ଣନ କରାଯାଇଛି, ବାସ୍ତବରେ ଏହା ସବୁ ସଦ୍‌ଗୁଣଗୁଡିକୁ ସମ୍ପାଦିତ କରିବା ନିମନ୍ତେ ହିଁ ଶିକ୍ଷା ଦିଆଯାଇଛି ।

ତେବେ ଯେତେବେଳେ ଏହି ମନ ସଦ୍‌ଗୁଣ ଦ୍ୱାରା ଯୁକ୍ତ ହୋଇଯାଏ ସେତେବେଳେ ସେଥିରେ ଶୁଦ୍ଧତା ଆସେ, ପୁଣି ସତ୍‌ସଙ୍ଗ ଦ୍ୱାରା, ଭକ୍ତି ଦ୍ୱାରା ସେ ଭଗବତ୍ ସ୍ୱରୂପକୁ ପ୍ରାପ୍ତ ହୋଇଯାଏ । ଏବେ ଆଗକୁ ଏହି ସନ୍ଦର୍ଭରେ ଭଗବାନ୍ ବହୁତ କଥା ବର୍ଣ୍ଣନ କରିଛନ୍ତି, ଯାହାକୁ ଆମ୍ଭେମାନେ ପୂର୍ବ-ପୂର୍ବ ସ୍କନ୍ଧଗୁଡିକରେ ଦେଖିଛନ୍ତି ।

## ବଦ୍ଧ, ମୁକ୍ତ ତଥା ଭକ୍ତର ଲକ୍ଷଣ

ପର ଅଧ୍ୟାୟରେ ଭଗବାନ୍ କହୁଛନ୍ତି ଯେ ଶୁଦ୍ଧ ଆତ୍ମତତ୍ତ୍ୱର ଉପରେ ଅବିଦ୍ୟା, ଅଜ୍ଞାନ କାରଣରୁ ଅନେକ ପ୍ରକାରର ଆରୋପ ହେଇଛି । ବ୍ୟକ୍ତିଗତ ଦୃଷ୍ଟିରେ ଦେହ, ଇନ୍ଦ୍ରିୟ, ମନ, ବୁଦ୍ଧି, ପ୍ରାଣ ଆଦିର ତଥା ସମଷ୍ଟି ଅଥବା ସୃଷ୍ଟିର ଦୃଷ୍ଟିରେ ଆକାଶ, ବାୟୁ, ଅଗ୍ନି, ଜଳ, ପୃଥିବୀ, ନଦୀ, ପାହାଡ ଆଦି ଆରୋପିତ ହୋଇଅଛି । ଶାସ୍ତ୍ରୀୟ ଭାଷାରେ ଏହାକୁ ହିଁ ଅଧ୍ୟାସ କୁହାଯାଏ । ଏବେ ଆମର ସ୍ଥିତି ଏପରି ହୋଇଗଲାଣି ଯେ ନିଜର ଦେହ ତଥା ନଦୀ, ପାହାଡ ଆଦି ଦୃଶ୍ୟ ଜଗତରେ ଆମର ସତ୍ୟ ବୁଦ୍ଧି ହୋଇଗଲାଣି। ସର୍ବାଧାର ଭଗବାନ୍ ଯାହା ଉପରେ ଏହି ସମସ୍ତ ସୃଷ୍ଟି ସ୍ଥିତ, ସେ ଆମକୁ ଦେଖାଯାଏ ନାହିଁ । ଭଗବାନ କହୁଛନ୍ତି - ଆତ୍ମାଧିଷ୍ଠିତ, ଆତ୍ମା ଉପରେ ପ୍ରତିଭାସିତ ହେଉଥିବା, ଏହି ଅଧ୍ୟାସକୁ ତଥା ଭ୍ରାନ୍ତିକୁ ଦୂର କରିବା ଉଚିତ୍ । ଏହାକୁ ସମାପ୍ତ କରି ଦେବା ଉଚିତ୍ । ଏଭଳି କହିବା ପରେ ସହଜ ଭାବରେ ଏକ ପ୍ରଶ୍ନ ଉଠେ ଯେ ତାକୁ କେଉଁ ଭଳି ଭାବରେ ଦୂର କରିପାରିବା ? ତାକୁ ଦୂର କରିବାର ଉପାୟ କଣ ?

**ମୟୋଦିତେଷ୍ୱବହିତଃ ସ୍ୱଧର୍ମେଷୁ ମଦାଶ୍ରୟଃ ।** (୧୧.୧.୧୦୧)

ପୂର୍ବରୁ ଚର୍ଚ୍ଚିତ ହୋଇସାରିଥିବା ଯୋଗୁଁ ଏହି ପ୍ରସଙ୍ଗରେ ଏହାର ଉପାୟ ସଂକ୍ଷେପରେ ବର୍ଣ୍ଣନ କରୁଛନ୍ତି । ସର୍ବପ୍ରଥମେ କହୁଛନ୍ତି ଯେ ଅତ୍ୟନ୍ତ ଶ୍ରଦ୍ଧା ଭକ୍ତିର ସହିତ ନିଜ ସ୍ୱଧର୍ମର ପାଳନ କରିବା ଉଚିତ୍ । ଏଭଳି କରିବା ଦ୍ୱାରା ମନ ଶୁଦ୍ଧ ହେବାକୁ ଲାଗେ ଏବଂ ତାପରେ ଜ୍ଞାନ ପ୍ରାପ୍ତିର ଇଚ୍ଛା – ଜିଜ୍ଞାସା ପ୍ରବଳ ହେବାକୁ ଲାଗେ ।

**ନିବୃତ୍ତଂ କର୍ମ ସେବେତ ପ୍ରବୃତ୍ତଂ ମତ୍ପରସ୍ତ୍ୟଜେତ୍ ।**
**ଜିଜ୍ଞାସାୟାଂ ସଂପ୍ରବୃତ୍ତୋ ନାଦ୍ରିୟେତ୍ କର୍ମଚୋଦନାମ୍ ॥** (୧୧.୧୦.୪)

ଏହାପରେ କର୍ମବାହୁଲ୍ୟ ଅର୍ଥାତ୍ ଅଧିକ କର୍ମ ଅଥବା କର୍ମାଧିକ୍ୟରେ ପଡିବା ଉଚିତ୍ ନୁହେଁ । ଦେଖନ୍ତୁ, ଭଗବାନ ଶ୍ରୀଶଙ୍କରାଚାର୍ଯ୍ୟଜୀ ତାଙ୍କର **'ସାଧନା ପଞ୍ଚକମ୍'**ରେ କହିଛନ୍ତି ଯେ ବେଦ ପଢି ନିଜର କର୍ତ୍ତବ୍ୟ କର୍ମକୁ ବୁଝିବା ଉଚିତ୍ ଏବଂ ତାକୁ ଭଗବାନଙ୍କର ପୂଜା ଭାବି କରିବା ଉଚିତ୍ । ତା ହେଲେ ହିଁ ମନ ଶୁଦ୍ଧ ହୋଇଥାଏ । ତାପରେ ହିଁ ଆତ୍ମଜ୍ଞାନର ତୀବ୍ର ଜିଜ୍ଞାସା ଉତ୍ପନ୍ନ ହୋଇଥାଏ । ତାପରେ **'ନିଜଗୃହାତ୍ତୂର୍ଣ୍ଣ ବିନିର୍ଗମ୍ୟତାମ୍'** (ସାଧନା ପଞ୍ଚକମ୍ –୧) ନିଜ ଘରୁ ଶୀଘ୍ର ବାହାରିଯିବା ଉଚିତ୍ । ଏଭଳି କଥା ଶୁଣି ଯେ କେହି କହିପାରେ ଯେ ମୁଁ ପ୍ରତ୍ୟେକ ଦିନ ଘରୁ ବାହାରକୁ ଯାଉଛି, ପରିବା ଆଣିବା ନିମନ୍ତେ – ଏଭଳି ନୁହେଁ **'ଗମ୍ୟତାମ୍ – ନିର୍ଗମ୍ୟତାମ୍ – ବିନିର୍ଗମ୍ୟତାମ୍',** କହିଲେ ଯେ ଘରୁ ଏପରି ବାହାରିବା ଉଚିତ୍ ଯେପରି କି ପୁଣିଥରେ ଫେରିବାକୁ ନ ପଡେ । କିନ୍ତୁ ଏହା କେବେ କରିବା ଉଚିତ୍ ? ଯେତେବେଳେ ଆତ୍ମଜ୍ଞାନ ପ୍ରାପ୍ତ କରିବା ନିମନ୍ତେ ପ୍ରବଳ ଇଚ୍ଛା ହେବ ସେତେବେଳେ ଏହା ସବୁ କରିବା ଉଚିତ୍ । ତାପରେ ଘରୁ ବାହାରି କେଉଁଠିକୁ ଯିବାକୁ ପଡିବ । କୌଣସି ବୃକ୍ଷ ତଳେ ଯାଇ କଣ ବସିଯିବ ? ନାହିଁ – କହିଲେ– ତାପରେ କୌଣସି ଗୁରୁଙ୍କ ପାଖକୁ ଯିବାକୁ ପଡିବ ।

**ଆଚାର୍ଯ୍ୟୋଽରଣିରାଦ୍ୟଃ ସ୍ୟାଦନ୍ତେବାସ୍ୟୁତ୍ତରାରଣିଃ ।**
**ତତ୍ସନ୍ଧାନଂ ପ୍ରବଚନଂ ବିଦ୍ୟାସନ୍ଧିଃ ସୁଖାବହଃ ॥** (୧୧.୧୦.୧୨)

ଏହି ଶ୍ଳୋକରେ ଉପନିଷଦ୍ (ତୈତ୍ତରୀୟ)ର ହିଁ କଥା କୁହାଯାଇଛି । ତୈତ୍ତରୀୟ ଉପନିଷଦ୍‌ରେ କୁହାଯାଇଛି ଯେ – **'ଆଚାର୍ଯ୍ୟଃ ପୂର୍ବରୂପମ୍ । ଅନ୍ତେବାସ୍ୟୁତ୍ତରରୂପମ୍ । ବିଦ୍ୟା ସନ୍ଧିଃ । ପ୍ରବଚନଂ ସନ୍ଧାନମ୍ ।'** (ତୈ. ଉପ. ୧.୩.୪) ଗୁରୁ ତଥା ଶିଷ୍ୟର ମଧ୍ୟରେ ସନ୍ଧାନ (ଯୁକ୍ତ କରୁଥିବା ସଂଜ୍ଞା) ହେଉଛି ପ୍ରବଚନ । ପ୍ରବଚନ ଦ୍ୱାରା ଯାହା

ପ୍ରାପ୍ତ ହେବ, ତାକୁ ସନ୍ଧି କୁହାଯାଏ । ତାହା ହେଉଛି ବିଦ୍ୟା । ତାତ୍ପର୍ଯ୍ୟ ହେଉଛି ଯେ ସେତେବେଳେ ହିଁ ଆଚାର୍ଯ୍ୟ ପାଖକୁ ଯିବା ଉଚିତ୍ । ସେ ଉଚ୍ଚାସନରେ ଆସୀନ ହୋଇଥାଆନ୍ତି । ସେଠାରେ ଯାଇ ତାଙ୍କର ଶ୍ରୀଚରଣ ତଳେ ବସିବା ଉଚିତ୍ । ପୁଣି ବିନମ୍ର ଭାବରେ ବିଦ୍ୟା ପ୍ରାପ୍ତ କରିବା ଉଚିତ୍ ।

ଏଠାରେ ବୁଝିବାର ଯୋଗ୍ୟ ବିଶେଷ କଥା ହେଲା ଯେ ସାଧକକୁ, ଜିଜ୍ଞାସାକୁ ଆତ୍ମଜ୍ଞାନ ଅତିରିକ୍ତ ଅନ୍ୟ କୌଣସି ବିଷୟରେ ପଡିବା ଉଚିତ୍ ନୁହେଁ । ଶେଷ କର୍ମ ଉପାସନା ଆଦି ସମସ୍ତ ଚେଷ୍ଟା ଲୋକ-ଲୋକାନ୍ତର ପ୍ରାପ୍ତି କରାଇଥାଏ । ତେଣୁ ସେ ସବୁରେ ନ ପଡି ଶୁଦ୍ଧ ଆତ୍ମଜ୍ଞାନକୁ ପ୍ରାପ୍ତ କରିବା ନିମନ୍ତେ ଚେଷ୍ଟା କରିବା ଉଚିତ୍ । ନିଜ ଶୁଦ୍ଧ ସ୍ୱରୂପକୁ, ଆତ୍ମତତ୍ତ୍ୱକୁ ନ ଜାଣିଥିବା କାରଣରୁ, ତାର ଅଜ୍ଞାନ କାରଣରୁ ଜୀବ ତ୍ରିଗୁଣ ତଥା ଇନ୍ଦ୍ରିୟ ମନ ଆଦିକୁ ହିଁ ନିଜର ସ୍ୱରୂପ ମାନି ନିଏ ଏବଂ ପୁଣି ଗୁଣ ବା ଇନ୍ଦ୍ରିୟମାନଙ୍କ ଦ୍ୱାରା କରାଯାଇଥିବା କର୍ମଫଳ ଭୋଗିବା ନିମନ୍ତେ ବାନ୍ଧି ହୋଇଯାଏ । ଭଗବାନ୍ କହୁଛନ୍ତି, "ହେ ଉଦ୍ଧବ ! ଏହିଭଳି ଭାବରେ ଏଠାରେ କଥିତ କ୍ରମାନୁସାରେ ତୁମେ ଅଧ୍ୟାସର ନିବାରଣ କରିପାରିବ ।"

ଏବେ ଉଦ୍ଧବ ପଚାରୁଛନ୍ତି – ହେ ଭଗବାନ୍ ! ଗୁଣମାନଙ୍କ ଭିତରେ ଥାଇ ମଧ୍ୟ ତାର ବ୍ୟାପାରଠାରୁ ଅସଙ୍ଗ ରହିବାର ଉପାୟ କଣ ? ଜ୍ଞାନୀପୁରୁଷ ଗୁଣମାନଙ୍କ ଭିତରେ ବିଚରଣ କରୁଥିଲେ ମଧ୍ୟ ବନ୍ଧନ ଠାରୁ କେଉଁ ଭଳି ମୁକ୍ତ ରହିପାରେ ? ଏହା ମୋତେ ବୁଝାଇ କରି କୁହନ୍ତୁ । ଏହି ପ୍ରସଙ୍ଗରେ ଏହି କଥା ସ୍ମରଣର ଯୋଗ୍ୟ ଯେ ଅର୍ଜୁନ ମଧ୍ୟ ସ୍ଥିତପ୍ରଜ୍ଞର ପ୍ରସଙ୍ଗରେ ଭଗବାନଙ୍କୁ ଏହିଭଳି ପ୍ରଶ୍ନ କରିଥିଲେ । ଏଠାରେ ଉଦ୍ଧବ କହୁଛନ୍ତି-

**ନିତ୍ୟମୁକ୍ତୋ ନିତ୍ୟ ବଦ୍ଧ ଏକ ଏବେତି ମେ ଭ୍ରମଃ ॥** (୧୧.୧୦.୩୭)

ଯିଏ ବଦ୍ଧ, ସେହି ମୁକ୍ତ ଅଟେ । ଆତ୍ମା ଉପରେ ହିଁ ଅଧ୍ୟାସ ହୋଇଯାଇଛି । ତେଣୁ ସେ ହିଁ ବନ୍ଧନରେ ଅଛି ଏବଂ ଅଧ୍ୟାସର ନିରାକରଣ ହେବା ମାତ୍ରେଣ ସେ ମୁକ୍ତ ହୋଇ ଯାଇଥାଏ । ଆତ୍ମା ହେଉଛି ଏକ – ବଦ୍ଧ ହେଉଛି ସେହି ଏବଂ ସେ ହିଁ ପୁଣି ମୁକ୍ତ ହୋଇଯାଏ ? ଏହା କିପରି ସମ୍ଭବ ? ମୋତେ ଅତି ଭ୍ରମ ହେଉଛି । ସେଥିପାଇଁ ଆପଣ ମୋତେ ବୁଝାଇ କରି କୁହନ୍ତୁ । ତେବେ ଏହାର ଉତ୍ତରରେ ଭଗବାନ କହୁଛନ୍ତି – ଆରେ ଉଦ୍ଧବ ! ଏପରି ଦେଖିଲେ ଏହି ବନ୍ଧନ ଏବଂ ମୋକ୍ଷ କିଛି ନୁହେଁ । ଆତ୍ମାରେ ନା ବନ୍ଧନ ଅଛି ନା ମୋକ୍ଷ ଅଛି । ତାହେଲେ ?

**ବନ୍ଧୋ ମୁକ୍ତ ଇତି ବ୍ୟାଖ୍ୟା ଗୁଣତୋ ମେ ନ ବସ୍ତୁତଃ ॥** (୧୧.୧୧.୧)

ଗୁଣର ଦୃଷ୍ଟିରେ ହିଁ ଏହି ବନ୍ଧନ ଏବଂ ମୋକ୍ଷର କଳ୍ପନା କରାଯାଇଛି । ଗୁଣ ଅର୍ଥାତ୍ ସତ୍ତ୍ୱଗୁଣ, ରଜୋଗୁଣ ଏବଂ ତମୋଗୁଣ । ଯେଉଁଠାରେ ରଜୋଗୁଣ ତମୋଗୁଣରେ ଏକାକାର ହୋଇଛି ସେଠାରେ ସତ୍ତ୍ୱଗୁଣ ଅତ୍ୟନ୍ତ ନ୍ୟୁନ - ଅଳ୍ପ ଥାଏ । ସେଠାରେ, ବନ୍ଧନ, ଦୁଃଖ, ରୋଦନ ଆଦି ଥାଏ । ଏହା ହିଁ ସଂସାର । ଏବେ ତାର ସ୍ଥାନରେ ଯଦି ସତ୍ତ୍ୱଗୁଣ ପ୍ରଧାନ ହୋଇଯାଏ, ଅଧିକ ହୋଇଯାଏ, ତେବେ ମୋକ୍ଷର ପ୍ରସଙ୍ଗ ଉପସ୍ଥିତି ହୋଇଯାଏ । ଆତ୍ମାର ଅଜ୍ଞାନ ହିଁ ବନ୍ଧନର କାରଣ ଅଟେ । ଆତ୍ମଜ୍ଞାନ ପରେ ବନ୍ଧନର କୌଣସି ପ୍ରଶ୍ନ ହିଁ ରହେ ନାହିଁ ।

ଗୋଟିଏ ପ୍ରସିଦ୍ଧ କଥା ଅଛି ଯେ ଜଣେ ଗୁରୁଙ୍କର ଦଶଜଣ ଶିଷ୍ୟ ଥିଲେ ଏବଂ ସମସ୍ତେ ମୂର୍ଖ ଥିଲେ । ଜଣେ ମୂର୍ଖ, ଦ୍ୱିତୀୟ ମହାମୂର୍ଖ, ତୃତୀୟ ପରମ ମୂର୍ଖ, ଚତୁର୍ଥ ମୂର୍ଖ ଶିରୋମଣୀ, ପଞ୍ଚମ ମୂର୍ଖ ଚକ୍ରବର୍ତ୍ତୀ, ଷଷ୍ଠ ମୂର୍ଖ ସମ୍ରାଟ, ସପ୍ତମ ମୂର୍ଖ ରାଜାଧିରାଜ- ଏହିଭଳି ଭାବରେ ଜଣେ ଜଣଙ୍କ ଠାରୁ ଅଧିକ ଥିଲେ । ସେମାନେ ସମସ୍ତେ ଗୁରୁଙ୍କର ପାଖରେ ରହୁଥିଲେ । ଦିନେ ସେ ବିଚାର କଲେ ବସି ବସି ବିରକ୍ତ ଲାଗିଲାଣି, କୁଆଡେ ଯାଇ ଟିକିଏ ବୁଲି ଆସିବା । ସେମାନଙ୍କର କଥା ଶୁଣି ଗୁରୁଜୀ କହିଲେ, "ତୁମେ ସମସ୍ତେ ମୂର୍ଖ ଅଟ, କେଉଁଠି ବାଟ ଭୁଲିଯିବ।" ଶିଷ୍ୟମାନେ କହିଲେ "ଏବେ ଏହା ହେବ ନାହିଁ, କାହିଁକି ନା ଆମେ ଆପଣଙ୍କ ଠାରୁ ଶିକ୍ଷା ଗ୍ରହଣ କରିଛନ୍ତି ।" ଗୁରୁଜୀ କହିଲେ, "ତେବେ ଠିକ୍ ଅଛି, ଯାଅ, କିନ୍ତୁ ସମ୍ଭାଳି କରି ଯିବ ଏବଂ ଠିକ୍-ଠାକ୍ ଫେରିଆସିବ ।"

ମୂର୍ଖ ସମ୍ରାଟ କହିଲା ମୁଁ ନାୟକ ହୋଇଯାଉଛି । ତେବେ ସେ ନାୟକ ହୋଇଗଲା ଏବଂ ଚାଲିବାକୁ ଆରମ୍ଭ କଲେ । ସେମାନେ ସମସ୍ତେ ଅତି ସୁଖପୂର୍ବକ ଆନନ୍ଦରେ ଖାଇ ପିଇ ଯାଉଥିଲେ । ଚାଲି-ଚାଲି ଗୋଟିଏ ନଦୀ ପାଖରେ ପହଞ୍ଚିଗଲେ ଏବେ ସେହି ନଦୀକୁ କେଉଁଭଳି ପାର ହେବେ, ତାହା ସେମାନେ ବୁଝିପାରିଲେ ନାହିଁ । ମୂର୍ଖ ସମ୍ରାଟ କହିଲା, "ସମସ୍ତଙ୍କୁ କଣ ପହଁରି ଆସୁଛି ?" ସମସ୍ତେ କହିଲେ ହଁ ଆସୁଛି । ମୂର୍ଖ ସମ୍ରାଟ କହିଲା, "ତେବେ ଠିକ୍ ଅଛି, ଏବେ ଆମ୍ଭେମାନେ ପହଁରି କରି ନଦୀ ପାର କରିଯିବା" ଏଭଳୀ ନିଶ୍ଚୟ ହେଲା ପରେ ସେମାନେ ସମସ୍ତେ ପହଁରୀ-ପହଁରୀ ନଦୀର ଆର ପାର୍ଶ୍ୱରେ ଯାଇ ପହଞ୍ଚି ଗଲେ । ସେଠାରେ ପହଞ୍ଚିଗଲା ପରେ ମୂର୍ଖ ସମ୍ରାଟକୁ ନିଜର କର୍ତ୍ତବ୍ୟ ମନେ ପଡିଲା ସେ କହିଲା ଯେ ସମସ୍ତେ ପଂକ୍ତି ବଦ୍ଧ ହୋଇ ଠିଆ ହୋଇଯାଅ

। ଆମେ ଗଣି କରି ଦେଖିବା ଯେ ସମସ୍ତେ ଏହି ପାରକୁ ପହଞ୍ଚିଲେ କି ନାହିଁ। ସେ ନଅ ପର୍ଯ୍ୟନ୍ତ ଗଣିଲା ପରେ କହି ଉଠିଲା, ଆରେ ! ଦଶମ କୁଆଡେ ଗଲା ? ଗୁରୁଜୀ ଠିକ୍ କହୁଥିଲେ। ଏବେ କଣ କରିବା ? ସେ ଚିନ୍ତିତ ହୋଇଗଲା । ଏହା ଦେଖି ମୂର୍ଖ ଚକ୍ରବର୍ତ୍ତୀ ହସିବାକୁ ଲାଗିଲା । ସେ କହିଲା - ଏତେ ବର୍ଷ ଧରି ଗୁରୁଜୀଙ୍କର ପାଖରେ ରହି ମଧ୍ୟ ତୋତେ ଗଣନା କରି ଆସିଲା ନାହିଁ ! ତୁ ଚାଲ, ପଂକ୍ତିରେ ଠିଆ ହୋଇଯାଆ, ମୁଁ ଗଣନା କରୁଛି। ତାକୁ ପଂକ୍ତିରେ ଠିଆ କରି ସେ ସ୍ୱୟଂ ଅଲଗା ହୋଇଗଲା ଏବଂ ସମସ୍ତଙ୍କୁ ଗଣନା କରିବାକୁ ଲାଗିଲା । ସେ ମଧ୍ୟ ସେଠାରେ ନଅ ଜଣ ଗୁରୁଭାଇମାନଙ୍କର ଉପସ୍ଥିତି ନେଲା। ଏହା ପରେ ପରମ ମୂର୍ଖ, ମହାମୂର୍ଖ ଏବଂ ହସି-ହସି ସ୍ୱୟଂ ଗଣନା କଲେ, ପରନ୍ତୁ ସମସ୍ତେ ଦେଖିଲେ ଏଠାରେ ନଅ ଜଣ ହିଁ ଅଛନ୍ତି ।

ଏବେ ସେମାନେ ସମସ୍ତେ ଏହି ଚିନ୍ତା କରି କାନ୍ଦିବାକୁ ଲାଗିଲେ ଯେ ସେମାନଙ୍କର ଦଶମ ଗୁରୁଭାଇ ନଦୀରେ ବୁଡି କରି ମରିଗଲା । ସେମାନେ ଏହା ମଧ୍ୟ ବିଚାର କଲେ ନାହିଁ ଯେ ସେ ଦଶମ କିଏ ଥିଲା ! ତାର ନାମ କଣ ଥିଲା ? ଏବେ ଦେଖନ୍ତୁ କଥା କଣ ହୋଇଥିଲା ? କେବଳ ଏତିକି ଯେ ସେମାନଙ୍କର ବୁଦ୍ଧିଟି ମୋହିତ ହୋଇଯାଇଥିଲା । ଯଦି ବିଚାର କରାଯାଏ ତେବେ ଏହି କ୍ରନ୍ଦନର, ଦୁଃଖର କାରଣ କଣ ଥିଲା, ତେବେ ଏହା ସ୍ପଷ୍ଟ ହୋଇ ଯାଇଥାଆନ୍ତା ଯେ ତାର କାରଣ ତ କେବଳ ସେମାନଙ୍କର ବୁଦ୍ଧିର ମୋହ ଥିଲା, ଅଜ୍ଞାନ ଥିଲା । ସେଠାରେ ନା ତ କେହି ହଜି ଥିଲେ, ନା କାହାର ମୃତ୍ୟୁ ହୋଇଥିଲା।

ସେ ସମସ୍ତଙ୍କୁ ଦୁଃଖି ଦେଖି କୌଣସି ଜଣେ ବ୍ୟକ୍ତି ସେମାନଙ୍କର ଦୁଃଖର କାରଣ ପଚାରିଲା ଏବଂ ତାଙ୍କୁ ଗଣି କରି ଦେଖାଇ ଦେଲେ ଯେ ସେମାନେ ନଅ ନୁହେଁ ଦଶ ଅଛନ୍ତି । ପୁଣି ତାଙ୍କୁ ସେ ବୁଝାଇଦେଲା ଯେ ପ୍ରତ୍ୟେକ ଥର ଗଣନା କରୁଥିବା ସମୟରେ ଯେଉଁ ବ୍ୟକ୍ତି ଗଣନା କରୁଥିଲା ସେହି ବ୍ୟକ୍ତି ହେଉଛି ଦଶମ ବ୍ୟକ୍ତି । ସେ ନିଜେ ନିଜକୁ ଗଣୁ ନ ଥିଲା ଯେତେବେଳେ ସମସ୍ତେ ଏହି କଥାକୁ ବୁଝିଗଲେ, ସେତେବେଳେ ସମସ୍ତେ ଦୁଃଖରୁ ମୁକ୍ତ ହୋଇଗଲେ । ନା କେହି ହଜିଯାଇଥିଲେ, ନା ପରେ କାହାକୁ ସେମାନେ ଖୋଜି ଆଣିଲେ, ନା କେହି ମୃତ୍ୟୁ ହୋଇଥିଲେ, ନା କାହାର ପୁନଃ ଜୀବନ ଆସିଲା । ତେବେ ଦେଖନ୍ତୁ, ସେ ଦଶମ ଶିଷ୍ୟର ହଜିଯିବା ଏବଂ ପୁନଃ ପ୍ରାପ୍ତ ହେବା ଆଦି କେବଳ ଅଜ୍ଞାନ ଦୃଷ୍ଟିରେ ହିଁ ଥିଲା ନା ? ବାସ୍ତବରେ ଦେଖିବାକୁ ଗଲେ, ତତ୍ତ୍ୱ ଦୃଷ୍ଟିରେ ନା କେହି ହଜିଥିଲ, ନା କେହି ପ୍ରାପ୍ତ ହେଲେ ।

ବନ୍ଧ ଏବଂ ମୁକ୍ତ ଏହି ଦୁହେଁ ବାସ୍ତବରେ ଦୁଇ ନୁହେଁ, ଏହି କଥାକୁ ବୁଝାଇବା ନିମନ୍ତେ, ତାର ବିଲକ୍ଷଣତାକୁ ଦର୍ଶାଇବା ନିମନ୍ତେ ମୁଣ୍ଡକ ଉପନିଷଦ୍‌ରେ ଦୁଇ ପକ୍ଷୀମାନଙ୍କର କଥା ବର୍ଣ୍ଣନ କରାଯାଇଛି । ଗୋଟିଏ ବୃକ୍ଷରେ ଦୁଇଟି ପକ୍ଷୀ ବସିଛନ୍ତି। ସେଥି ମଧ୍ୟରୁ ଗୋଟିଏ ପକ୍ଷୀ ଚୁପଚାପ୍ ବସିଛି, ସେ କିଛି କରେ ନାହିଁ , କେବଳ ସେ ଦେଖୁଥାଏ । ଦ୍ୱିତୀୟ ପକ୍ଷୀଟି ଫଳ ଖାଉଥାଏ । ଯେତେବେଳେ ଫଳଟି ମିଠା ଲାଗେ, ତେବେ ସେ ଖୁସି ହୋଇଯାଏ, ଏବଂ ଯଦି ଫଳଟି ଖଟା ଲାଗେ, ତେବେ ସେ ଦୁଃଖି ହୋଇଯାଏ । ଖଟା ସ୍ୱାଦ ଆସିବା ମାତ୍ରକେ, ସେ ଉପର ଡାଳରେ ଶାନ୍ତ ସ୍ୱସ୍ଥ ହୋଇ ବସିଥିବା ପକ୍ଷୀକୁ ଦେଖିବାକୁ ଲାଗେ । ତାକୁ ଦେଖି ସେ ପ୍ରସନ୍ନ ହୋଇଥାଏ ଏବଂ ସେହି କାରଣରୁ ତାର ଆଡକୁ ସେ ଚାଲିବାକୁ ଆରମ୍ଭ କରେ । ପରନ୍ତୁ ଯେତେବେଳେ ତାକୁ ଅନ୍ୟ କୌଣସି ଫଳଟିଏ ଦେଖାଯାଏ ତେବେ ସେ ପୁଣି ତାକୁ ଖାଇବାକୁ, ତାର ସ୍ୱାଦ ନେବାରେ ଲାଗି ଯାଏ । ଏହି ରୀତିରେ ସେ କେବେ ଦୁଃଖି ତ କେବେ ସୁଖି ହୋଇଥାଏ। ଏହି ଜୀବ ମଧ୍ୟ ବ୍ୟର୍ଥରେ, ଯାହା-ତାହା ଫଳକୁ ଚାଖୁଥାଏ । ଏହାର ପରିଣାମ ସ୍ୱରୂପ ଦୁଃଖରେ, ବନ୍ଧନରେ ପଡିଯାଏ । କିନ୍ତୁ ଆମର ଆତ୍ମତତ୍ତ୍ୱ ସମସ୍ତଙ୍କୁ ପ୍ରକାଶିତ କରି ନିଶ୍ଚଳ ହୋଇ ବସି ରହିଛି। ମୁଣ୍ଡକ ଶ୍ରୁତିର କହିବାର ଅର୍ଥ ହେଉଛି, ସେହି ପକ୍ଷୀ ଭଳି ଯଦି ଏହି ଜୀବ ମଧ୍ୟ ଫଳ ଭୋଗ ଆଦି ଇଚ୍ଛାକୁ ଛାଡି ଦେଖିବାକୁ ଲାଗେ, ବିଚାର କରେ, ତା ହେଲେ ହିଁ ତାର ଦୃଷ୍ଟି ନିଜର ଆତ୍ମତତ୍ତ୍ୱ ଆଡକୁ ଯାଏ । ତାପରେ -

**ସମାନେ ବୃକ୍ଷେ ପୁରୁଷୋ ନିମଗ୍ନୋଽନିଶୟା ଶୋଚତି ମୁହ୍ୟମାନଃ ।**
**ଜୁଷ୍ଟଂ ଯଦା ପଶ୍ୟତ୍ୟନ୍ୟମୀଶମସ୍ୟ ମହିମାନମିତି ବିତଶୋକଃ ॥**

(ମୁ.ଉପନିଷଦ ୩.୧.୨)

**'ବୀତଶୋକଃ'** ତାର ଶୋକ, ଦୁଃଖ ସମାପ୍ତ ହୋଇଯାଏ । ମନ ଶାନ୍ତ ହୋଇଯାଏ ଏବଂ ସେ ସୁଖି ହୋଇଯାଏ । ଏହି କଥାକୁ ଏଠାରେ ଭାଗବତରେ ଏହିଭଳି କୁହାଯାଇଛି ।

**ସୁପର୍ଣ୍ଣାବେତୌ ସଦୃଶୌ ସଖାୟୌ**

**ୟଦୃଚ୍ଛୟୈତୌ କୃତନୀଡୌ ଚ ବୃକ୍ଷେ ।**

**ଏକସ୍ତୟୋଃ ଖାଦତି ପିପ୍ପଲାନ୍ନ**

**ମନ୍ୟୋ ନିରନ୍ନୋଽପି ବଲେନ ଭୂୟାନ୍ ॥** (୧୧.୧୧.୬)

କହୁଛନ୍ତି - ଗୋଟିଏ ପ୍ରକାର ସ୍ୱଭାବଯୁକ୍ତ (ଅର୍ଥାତ୍ ଚୈତନ୍ୟସ୍ୱରୂପ) ଦୁଇଟି ପକ୍ଷୀ, ଯିଏ କି ସଖା ଅଟନ୍ତି, ସେମାନେ ଗୋଟିଏ ବୃକ୍ଷ (ଶରୀର)ରେ ଏକ ସଙ୍ଗରେ ରହନ୍ତି । ଏହି ଦୁହିଁଙ୍କ ଭିତରୁ ଜଣେ ପକ୍ଷୀ ଫଳ ଖାଏ (ସୁଖ ଦୁଃଖ ଭୋଗେ), ପରନ୍ତୁ ଦ୍ୱିତୀୟ ପକ୍ଷୀଟି କିଛି ଖାଏ ନାହିଁ । ସେ ଅସଙ୍ଗ ହୋଇ ସାକ୍ଷୀ ଭାବରେ ସବୁକିଛି ଦେଖୁଥାଏ ।

ଏବେ ଦେଖନ୍ତୁ, ଏହି ବନ୍ଧନ-ମୋକ୍ଷ କଣ ? ଏହା ବାସ୍ତବିକ ନୁହେଁ । ଏହା ସବୁ କେବଳ ଗୁଣମାନଙ୍କ ଯୋଗୁଁ ହିଁ ପ୍ରତିଭାସିତ ହୋଇଥାଏ । ଆତ୍ମାରେ ନା ତ ବନ୍ଧନ ଅଛି ନା ତ ମୋକ୍ଷ । ଏହି ତଥ୍ୟକୁ ଜାଣିଥିବା ଜ୍ଞାନୀପୁରୁଷର ସ୍ଥିତି ବର୍ଣ୍ଣନ କରି ଭଗବାନ୍ ଶ୍ରୀକୃଷ୍ଣ କହୁଛନ୍ତି - **'ଦେହସ୍ଥୋଽପି ନ ଦେହସ୍ଥଃ'** ଦେହରେ ଥାଇ ମଧ୍ୟ ସେ ଦେହ ମଧ୍ୟରେ ନ ଥାଏ, (ଅର୍ଥାତ୍ ସ୍ୱୟଂକୁ ଦେହ ମାନି ନ ଥାଏ) ଏବଂ ଅଜ୍ଞାନୀ ପୁରୁଷ ତ **'ଅଦେହସ୍ଥୋଽପି ଦେହସ୍ଥଃ'** (୧୧.୧୧.୮) ବାସ୍ତବରେ ଦେହରେ ନ ଥାଇ ମଧ୍ୟ ସେ ଦେହରେ ଥାଏ । ଜ୍ଞାନୀ ପୁରୁଷ ଇନ୍ଦ୍ରିୟମାନଙ୍କ ଦ୍ୱାରା ସମସ୍ତ ବିଷୟକୁ ଗ୍ରହଣ କରି ମଧ୍ୟ, ତାକୁ ଦେଖି ମଧ୍ୟ ସେଥିରେ କେବେହେଲେ ଆସକ୍ତ ହୁଏ ନାହିଁ । କିନ୍ତୁ ଅଜ୍ଞାନୀ ପୁରୁଷ ବିଷୟକୁ ସମ୍ମୁଖରେ ନ ଦେଖି ମଧ୍ୟ, ତାର କଳ୍ପନା କରି କରି ସେଥିରେ ଆସକ୍ତ ହୋଇଯାଏ ।

ଯେପରି ଜଣେ ସେଠ୍ଙ୍କର ଚାକରଟି ଦଶ କିଲୋ ତେଲ ନେଇ ସେଠ୍ଜୀଙ୍କର ପଛରେ ଚାଲୁଥିଲା । ଚାଲୁ ଚାଲୁ ସେ କଳ୍ପନା କରିବାକୁ ଲାଗିଲା ଯେ ଏହି ତେଲକୁ ବିକ୍ରିକରି ମୁଁ କିଛି ଟଙ୍କା ଏକାଠି କରିବି, ମୋର ବିବାହ ହେବ, ଏବଂ ମୋର ପତ୍ନୀ ଆସିବ । ତାପରେ ଆମେ ଦୁହେଁ ମଜାରେ ରହିବୁ । ପୁଣି କୌଣସି ଦିନ ତା ସହ ଝଗଡା ମଧ୍ୟ ହେବ । ସେ ମୋତେ ମାରିବ ଏବଂ ମୁଁ ପଡିଯିବି । ଏଭଳି ବିଚାର କରିବା ବେଳକୁ ତାର ମୁଣ୍ଡରେ ଥିବା ତେଲର ଘଡାଟି ପଡିଗଲା । ସେଠ୍ଜୀ ତା ଉପରେ କ୍ରୋଧ ବୃଷ୍ଟି କଲେ, "ଆରେ ! ତୁ ମୋର ଦଶ କିଲୋ ତେଲ ବେକାର କରିଦେଲୁ ।"

ଏହା ଶୁଣି ସେ ଚାକର କହିଲା ଯେ ଆପଣଙ୍କର ତ କେବଳ ଦଶ କିଲୋ ତେଲ ଗଲା, କିନ୍ତୁ ମୋର ତ ସଂପୂର୍ଣ୍ଣ ପରିବାର ଚାଲିଗଲା । ଏଠାରେ ବୁଝିବାର କଥା ହେଲା ଯେ, ବିଷୟ ସାମନାରେ ନ ଥିଲେ ମଧ୍ୟ, ତାର ଚିନ୍ତନ କରିବା ମାତ୍ରକେ ମନୁଷ୍ୟ ସେଥିରେ ବାନ୍ଧି ହୋଇଯାଏ, ଯେଉଁଭଳି ସେ ଚାକର ! ଏବଂ ପୁଣି ସେହି ବିଷୟର ପ୍ରାପ୍ତି ନିମନ୍ତେ ଇନ୍ଦ୍ରିୟମାନଙ୍କର ଦ୍ୱାରା ଯାହା ସବୁ କର୍ମ ହୁଏ, ସେ ସବୁର କର୍ତ୍ତା ସ୍ୱୟଂକୁ ମାନି, ଲୋକମାନେ ବନ୍ଧନରେ ପଡିଯାଆନ୍ତି ।

**ନ ସ୍ତୁବୀତ ନ ନିନ୍ଦେତ କୁର୍ବତଃ ସାଧ୍ୱସାଧୁ ବା ।**
**ବଦତୋ ଗୁଣଦୋଷାଭ୍ୟାଂ ବର୍ଜିତଃ ସମଦୃଙ୍‌ମୁନିଃ ॥** (୧୧.୧୧.୧୬)

ଜ୍ଞାନୀପୁରୁଷର ବର୍ଣ୍ଣନ କରି ଭଗବାନ ଆଗକୁ କହୁଛନ୍ତି - ସେ କାହାର ନିନ୍ଦା-ସ୍ତୁତି କରେ ନାହିଁ । ସେ ନା ତ ମନ୍ଦ ଆଚରଣ କରୁଥିବା ବ୍ୟକ୍ତିର ନିନ୍ଦା କରେ ନା ଭଲ କାମ କରୁଥିବା ବ୍ୟକ୍ତିର ସ୍ତୁତି । କୌଣସି ସନ୍ଥ କହିଛନ୍ତି ଯେ କାହାର ଅଧିକ ସ୍ତୁତି କର ନାହିଁ, କାରଣ ଅଧିକ ସ୍ତୁତି କରିଲେ, ଦିନେ ନିନ୍ଦା ମଧ୍ୟ କରିବାକୁ ପଡିବ । ଆଗକୁ ଯଦି ସେ କୌଣସି ମନ୍ଦ କାର୍ଯ୍ୟ କରେ ତେବେ ତାର ନିନ୍ଦା କରିବାକୁ ପଡିବ । କେବଳ ଏତିକି ନୁହେଁ, କାହାର ଅଧିକ ନିନ୍ଦା କରିବା ଉଚିତ୍ ନୁହେଁ, କାହିଁକି ନା ଆଗକୁ ଯଦି ସେ କୌଣସି ଭଲ କାର୍ଯ୍ୟ କରେ, ତେବେ ତାର ସ୍ତୁତି ମଧ୍ୟ କରିବାକୁ ପଡିପାରେ । ଏହି କଥାକୁ ଭଲଭାବରେ ବୁଝି - କେହି ଆମର ସ୍ତୁତି କରନ୍ତୁ ଅଥବା ନିନ୍ଦା କରନ୍ତୁ ତଦ୍ୱାରା ଆମର ମନକୁ ପ୍ରଭାବିତ କରିବାକୁ ଦେବା ଉଚିତ୍ ନୁହେଁ, ଏବଂ ସେଥିରେ ବାନ୍ଧି ହେବା ଉଚିତ୍ ନୁହେଁ ।

**ଏବଂ ଜିଜ୍ଞାସୟାପୋହ୍ୟ ନାନାତ୍ୱଭ୍ରମମାତ୍ମନି ।**
**ଉପାରମେତ ବିରଜଂ ମନୋ ମୟ୍ୟର୍ପ୍ୟ ସର୍ବଗେ ॥** (୧୧.୧୧.୨୯)

ଏହିଭଳି ଭାବରେ ସମସ୍ତ କଥାକୁ ବୁଝି ବିଚାରି, ଭେଦ ବୁଦ୍ଧିକୁ ମୋହଜନ୍ୟ ନାନାତ୍ୱକୁ, ଭଲ ଭାବରେ ତ୍ୟାଗ କରି ପୂର୍ଣ୍ଣତୟା ମୋ ଭିତରେ ଏକାକାର ହୋଇଯିବା ହିଁ ଜ୍ଞାନୀ ପୁରୁଷର ଲକ୍ଷଣ ।

ଏହାପରେ ଭଗବାନ ଶ୍ରୀକୃଷ୍ଣ କହୁଛନ୍ତି ଯଦି କେହି ନିଜର ମନକୁ ପରମାତ୍ମାଙ୍କର ପରବ୍ରହ୍ମ ସ୍ୱରୂପରେ ଲୀନ କରିବାରେ ଅସମର୍ଥ, ତେବେ ତାକୁ ଶ୍ରଦ୍ଧାପୂର୍ବକ, ବରଣ ପୂର୍ବକ ମୋର କଥାକୁ ଶ୍ରବଣ କରିବା ଉଚିତ୍ । ନିଜର ସମସ୍ତ କର୍ମଗୁଡିକୁ ମୋର

ନିମନ୍ତେ ଅର୍ଥାତ୍ ସେହି କର୍ମମାନଙ୍କର ଉଦ୍ଦେଶ୍ୟ ମୋତେ ମାନି କରିବା ଉଚିତ୍ । ତତ୍ ସହିତ ମୋର ଲୀଳା ଆଜିକୁ ଗାୟନ ତଥା ଅଭିନୟ କରିବା ଉଚିତ୍ । ତାହାଲେ ହିଁ ତାର ମନ କାମନାଦିକୁ ତ୍ୟାଗ କରି ମୋ ଭିତରେ ରମଣ କରିବାକୁ ଲାଗିବ । ତାକୁ ମୋର ଦୃଢ ଭକ୍ତି ପ୍ରାପ୍ତ ହେବ । ଏହିଭଳି ମୋର ଉପାସନା କରିବା ଦ୍ୱାରା ତାର ମନ ଶୁଦ୍ଧ ହୋଇଯିବ, ତାପରେ ସନ୍ଥମାନଙ୍କର ଉପଦେଶ ଦ୍ୱାରା ତାକୁ ମୋର ପରମପଦର ପ୍ରାପ୍ତ ହେବ । ଭଗବାନଙ୍କର ଏଭଳି ବଚନ ଶୁଣି ଉଦ୍ଧବ କହୁଛନ୍ତି -

**ସାଧୁସ୍ତବୋତ୍ତମଶ୍ଲୋକ ମତଃ କୀଦୃଗ୍‌ବିଧଃ ପ୍ରଭୋ ।**

**ଭକ୍ତିସ୍ତୟୁପଯୁଜ୍ୟେତେ କୀଦୃଶୀ ସଦ୍ଭିରାଦୃତା ॥** (୧୧.୧୧.୨୬)

ହେ ପ୍ରଭୋ ! ଏବେ ଆପଣ ମୋତେ ସେହି ଭକ୍ତି ବିଷୟରେ କୁହନ୍ତୁ - ଯେଉଁଠି ଯୁକ୍ତ ହୋଇ ଆପଣଙ୍କ ବିଚାରରେ ଜଣେ ଭକ୍ତ ଉତ୍ତମ-ଶ୍ରେଷ୍ଠ ଭକ୍ତର ମାନ୍ୟତା ପ୍ରାପ୍ତ କରେ ଏବଂ ଯାହାକୁ ସାଧୁପୁରୁଷମାନେ ମଧ ପ୍ରଶଂସା କରିଥାନ୍ତି । ଏବେ ଭଗବାନ ଯାହା କହିଲେ, ତାର ସାର - ସଂକ୍ଷେପରେ ଏତିକି ଯେ, ସାଧକଙ୍କୁ ସଦ୍‌ଗୁଣଦ୍ୱାରା ସଂପନ୍ନ ତିତିକ୍ଷୁ, ଗମ୍ଭୀର, ଧୈର୍ଯ୍ୟଶୀଳ, ନିଷ୍କାମ, ସତ୍ୟସାର (ଅର୍ଥାତ୍ ତାର ଜୀବନର ସାର ସତ୍ୟ ହିଁ ହୋଇଥିବ) କୃପାଳୁ ତଥା ସମସ୍ତଙ୍କର ସେବାରେ ରତ, ସାଧୁପୁରୁଷମାନଙ୍କର ସଙ୍ଗ କରିବା ଉଚିତ୍, କାହିଁକି ନା ଏଭଳି ସାଧୁପୁରୁଷମାନଙ୍କର ବ୍ୟବହାର ହିଁ ଭକ୍ତର ବାସ୍ତବିକ ସ୍ୱରୂପ ଅଟେ । ସେ ଅତି ଗମ୍ଭୀର, ମୃଦୁ, ଓ ପବିତ୍ର ସ୍ୱଭାବଯୁକ୍ତ ହୋଇଥାଏ। ତାକୁ କାମନାଗୁଡିକ ତ୍ରସ୍ତ କରିପାରନ୍ତି ନାହିଁ, ନା ତ ସେ କିଛି କାମନା କରେ । ସେ ସଦୈବ ମୋ ଉପରେ ଆଶ୍ରିତ ରହି ମନନଶୀଳ ହୋଇ ରହିଥାଏ । ଆତ୍ମତତ୍ତ୍ୱର ଚିନ୍ତନ କରୁଥାଏ । ସେ କୌଣସି କାର୍ଯ୍ୟରେ ପ୍ରମାଦ କରେ ନାହିଁ । ସମସ୍ତଙ୍କ ପ୍ରତି ସମଭାବ ରଖେ ଏବଂ ଅତି କରୁଣାଶୀଳ ହୋଇଥାଏ । ତା ପାଖରେ ରହି ଭକ୍ତିକୁ ଶିଖିବା, ବୁଝିବା ଉଚିତ୍ । ଏହା ପରେ ଭକ୍ତି ବିଷୟରେ ଅଧିକ ଜ୍ଞାନ ନିମନ୍ତେ ସତ୍‌ସଙ୍ଗ କରିବା ଉଚିତ୍।

## ସତ୍ସଙ୍ଗର ମହିମା

ଏହାପରେ ଏବେ ଭଗବାନ ସତ୍ସଙ୍ଗର ମହିମାକୁ ପ୍ରକଟ କରି କହୁଛନ୍ତି "ତୁମ ମନରେ ଯେତେବେଳେ କୌଣସି ପ୍ରଶ୍ନ ଉଠେ, ତେବେ ତୁମେ ସତ୍ସଙ୍ଗ କର, ସନ୍ଥମାନଙ୍କର ସଙ୍ଗ କର ଏବଂ ଦେଖ ଯେ ସାଧୁପୁରୁଷମାନେ କେଉଁଭଳି ରହୁଛନ୍ତି, ଏବଂ କେଉଁଭଳି ଭାବରେ ବ୍ୟବହାର କରୁଛନ୍ତି । ଏହା ହିଁ ଶ୍ରେଷ୍ଠତମ ଭକ୍ତି ଅଟେ । ତା ସହିତ (ସାଧୁପୁରୁଷ) ସେମାନେ ଯାହା କହିବେ- ତଦନୁସାରେ ତାକୁ ପାଳନ କରିବା ମଧ୍ୟ ଶ୍ରେଷ୍ଠ ଭକ୍ତି ଅଟେ ।"

ଭକ୍ତିର ବର୍ଣ୍ଣନ କରି, ମୂର୍ତ୍ତି ପୂଜନ, ମୂର୍ତ୍ତି ତଥା ଭକ୍ତଦର୍ଶନ, ତାଙ୍କର ସେବା, ତାଙ୍କ ମୂର୍ତ୍ତିର ସ୍ଥାପନା, ଉତ୍ସବ ପାଳନ ଆଦିର ଅତିରିକ୍ତ ଏଠାରେ ଏକ ସୁନ୍ଦର କଥା କୁହାଯାଇଛି -

**ଯଦ୍ ଯଦିଷ୍ଟତମଂ ଲୋକେ ଯଚ୍ଚାତିପ୍ରିୟମାତ୍ମନଃ ।**

**ତତ୍ତନ୍ନିବେଦୟେନ୍ମହ୍ୟଂ ତଦାନନ୍ତ୍ୟାୟ କଳ୍ପତେ ॥** (୧୧.୧୧.୪୧)

ଭକ୍ତର ଆବଶ୍ୟକ ଯେ ଯାହା କିଛି ତାକୁ ଅତ୍ୟନ୍ତ ପ୍ରିୟ ଲାଗୁଛି, ତାକୁ ସେ ମୋତେ (ଭଗବାନଙ୍କୁ) ଅର୍ପିତ କରି ଦେବ । ସେଥିପାଇଁ କେଉଁକେଉଁ ତୀର୍ଥରେ ଏହି ପ୍ରଥା ଦେଖାଯାଏ ଯେ ସେଠାରେ ଯାଇ ଜଣେ ଭକ୍ତ ନିଜର କୌଣସି ପ୍ରିୟ ବସ୍ତୁକୁ ଛାଡିବା ନିମନ୍ତେ ପ୍ରତୀକ୍ଷା କରେ । କେବେ କେବେ ଲୋକମାନେ ତୀର୍ଥକୁ ଯାଇ କଖାରୁ ଅଥବା କଲରାକୁ ଛାଡିଛି ବୋଲି କହିଥାନ୍ତି । ତାଙ୍କୁ ଯଦି କେହି ପଚାରେ ଯେ ତୁମକୁ କଖାରୁ ଏତେ ଭଲ ଲାଗେ ? ସେ କୁହେ- ଆରେ ! ମୁଁ ତ ତାକୁ କେବେ ଖାଏ ନାହିଁ। ଖାଏ ନାହିଁ ? ଯାହା ତୁମକୁ ପ୍ରିୟ ନୁହେଁ, ତୁମେ ତାକୁ ଛାଡି ଦେଇଛ । ଏହିଭଳି ନୁହେଁ। ନିଜର ପ୍ରିୟ ବସ୍ତୁକୁ ହିଁ ଭଗବାନଙ୍କୁ ଅର୍ପିତ କରିବା ଉଚିତ୍।

**ପ୍ରାୟେଣ ଭକ୍ତିଯୋଗେନ ସତ୍ସଙ୍ଗେନ ବିନୋଦ୍ଧବ ।**

**ନୋପାୟୋ ବିଦ୍ୟତେ ସଧ୍ରୀଂଗ୍ ପ୍ରାୟଣଂ ହି ସତାମହମ୍ ॥** (୧୧.୧୧.୪୮)

ଏହି ଅଧ୍ୟାୟର ଶେଷରେ ଭଗବାନ କହୁଛନ୍ତି - ତୁମେ ଶ୍ରେଷ୍ଠ ଭକ୍ତ ଏବଂ ସାଧୁପୁରୁଷଙ୍କର ବିଷୟରେ ଜାଣିବା ନିମନ୍ତେ ଚାହୁଁଛ, ତେବେ ଏହି କଥାକୁ ମନ ଦେଇ ଶୁଣ । ମୋ ମତରେ ସତ୍ସଙ୍ଗ ତଥା ଭକ୍ତିଯୋଗ ଭଳି ଅନ୍ୟ କୌଣସି ଉପାୟ ନାହିଁ,

ଯଦ୍ୱାରା ତୁମକୁ ସମସ୍ତ ରହସ୍ୟ ବୁଝି ହେବ । ଯୋଗ, ଶାଙ୍ଖ୍ୟ, ଜପ, ସ୍ୱାଧ୍ୟାୟ, ତ୍ୟାଗ, ଇଷ୍ଟାପୂର୍ତ୍ତ, ବ୍ରତ, ତୀର୍ଥ ଆଦି ମୋତେ ଭକ୍ତ ତଥା ସତ୍‌ସଙ୍ଗ ଭଳି ପ୍ରସନ୍ନ କରେ ନାହିଁ । ସେ ସବୁ ଅପେକ୍ଷା ସତ୍‌ସଙ୍ଗ ଦ୍ୱାରା ମୋର ପ୍ରାପ୍ତି ଅତି ଶୀଘ୍ର ଏବଂ ଅତି ସହଜରେ ହୋଇଯାଏ । ସତ୍‌ସଙ୍ଗ ଦ୍ୱାରା ଧୀରେ ଧୀରେ ମନର ଦୁଃସଙ୍ଗକୁ ଦୂର କରି ଦେଇଥାଏ ।

**ସତ୍‌ସଙ୍ଗତ୍ୱେ ନିସଙ୍ଗତ୍ୱଂ ନିସଙ୍ଗତ୍ୱେ ନିର୍ମୋହତ୍ୱମ୍ ।**

**ନିର୍ମୋହତ୍ୱେ ନିଶ୍ଚଳତତ୍ତ୍ୱଂ ନିଶ୍ଚଳତତ୍ତ୍ୱେ ଜୀବନ୍ମୁକ୍ତିଃ ॥**

(ଭଜ ଗୋବିନ୍ଦମ୍-୬)

ଭଗବାନ୍ ଶଙ୍କରାଚାର୍ଯ୍ୟଜୀ ମଧ୍ୟ 'ଭଜଗୋବିନ୍ଦ'ରେ ସତ୍‌ସଙ୍ଗର ମହିମା ଗାନ କରିଛନ୍ତି । ସତ୍‌ସଙ୍ଗ ଦ୍ୱାରା ଆମର ବିଷୟାସକ୍ତି କମ୍ ହୋଇଯାଏ ଏବଂ ମନରେ ବିବେକ ଜାଗ୍ରତ ହୋଇଯାଏ । ବିବେକର ଜାଗ୍ରତ ଦ୍ୱାରା ସତ୍ୟ-ଅସତ୍ୟର ଭେଦ ବୁଝି ହୋଇଯାଏ, ଏବଂ ପୁଣି ତତ୍ତ୍ୱର ବୋଧ ମଧ୍ୟ ହୋଇଯାଏ । **'ଜ୍ଞାତେ ତତ୍ତ୍ୱେ କଃ ସଂସାରଃ'** (ଭଜଗୋବିନ୍ଦମ୍-୧୦) ତତ୍ତ୍ୱର ବୋଧ ହୋଇଗଲା ପରେ ସଂସାର ରହେ ନାହିଁ । ଭଗବାନ ଶ୍ରୀକୃଷ୍ଣ କହୁଛନ୍ତି "ସତ୍‌ସଙ୍ଗର ପ୍ରଭାବରେ ହିଁ ବ୍ୟାଧ, ଗଣିକା, ଗଜ, ଅଜାମିଳ, ବିଭୀଷଣ, ନିଷାଦରାଜ, ଜଟାୟୁ, ଶବରୀ, ସୁଗ୍ରୀବ ତଥା କେଜାଣି କେତେ ପଶୁପକ୍ଷୀ ଏବଂ ହୀନ ଜାତିର ଲୋକମାନେ ମଧ୍ୟ ସମସ୍ତେ ମୁକ୍ତ ହୋଇଗଲେ । କେବଳ ଏତିକି ନୁହେଁ ଯେଉଁ ଗୋପୀମାନେ କାମ ଭାବରେ ମଧ୍ୟ ମୋର ସଙ୍ଗ ଲାଭ କରିଥିଲେ ସେମାନେ ମଧ୍ୟ ସମସ୍ତେ ନିଷ୍କାମ ହୋଇଯାଇଛନ୍ତି ।"

**ମାମେକମେବ ଶରଣମାତ୍ମାନଂ ସର୍ବଦେହିନାମ୍ ।**

**ଯାହି ସର୍ବାତ୍ମଭାବେନ ମୟା ସ୍ୟା ହ୍ୟକୁତୋଭୟଃ ॥** (୧୧.୧୨.୧୫)

"ତେଣୁ ସବୁକିଛି ଛାଡି ମୋର ଶରଣରେ ଆସି ଯାଅ । ତୁମକୁ ସମସ୍ତ ଭୟରୁ ମୁକ୍ତି ମିଳିଯିବ ।" ଏତେ ସବୁ ଶ୍ରବଣ କରିବା ପରେ ମଧ୍ୟ ଉଦ୍ଧବ କହୁଛନ୍ତି, "ଭଗବାନ ଆପଣ ମୋତେ ବୁଝାଉଛନ୍ତି, ମୁଁ ଶ୍ରବଣ କରୁଛି ଏବଂ ମୋତେ ଶୁଣିବା ଯୋଗୁଁ ଆନନ୍ଦ ରସ ମଧ୍ୟ ପ୍ରାପ୍ତ ହେଉଛି । ତଥାପି, ସମସ୍ତ ବିଷୟକୁ ମୁଁ ଭଲ ଭାବରେ ବୁଝିପାରୁ ନାହିଁ ।" ଦେଖନ୍ତୁ, ଏଠାରେ ଉଦ୍ଧବ ଯେଉଁ ଭଳି ଆମର ମନ କଥାକୁ କହୁଛନ୍ତି "ଭଗବାନ ଆପଣ ମୋତେ ବୁଝାଇ କୁହନ୍ତୁ ଯେ ମୋତେ କଣ କରିବାକୁ ହେବ ? ସବୁକିଛି ଛାଡି ଆପଣଙ୍କର ଶରଣ ଗ୍ରହଣ କରିବା ଉଚିତ୍ ଅଥବା ନିଜର କର୍ତ୍ତବ୍ୟର ପାଳନ କରିବା

ଉଚିତ୍ ?" ଉଦ୍ଧବଙ୍କୁ ଉତ୍ତର ଦେଇ ଭଗବାନ କହୁଛନ୍ତି ଯେ ପରୋକ୍ଷ ପରମାତ୍ମା ହିଁ ସାକ୍ଷାତ ଅପରୋକ୍ଷ ଅଟନ୍ତି । ସମସ୍ତ ରୂପରେ ମୁଁ ହିଁ ପ୍ରକଟ ହୋଇଛି । ମାୟାର ଆଶ୍ରୟ ନେଇ ସଂସାର ବୃକ୍ଷ ରୂପରେ ପରମାତ୍ମା ହିଁ - ମୁଁ ହିଁ ଅଭିବ୍ୟକ୍ତ ହୋଇଥାଏ । ଏହି ତତ୍ତ୍ୱ ଜ୍ଞାନକୁ **'ଗୁରୁପାସନୟୈକଭକ୍ତ୍ୟା'** ଗୁରୁଙ୍କର ଉପାସନାରୂପୀ ଅନନ୍ୟ ଭକ୍ତି ଦ୍ୱାରା ତାକୁ ଜାଣ । ଜ୍ଞାନରୂପୀ ଖଣ୍ଡା ଦ୍ୱାରା ଅଜ୍ଞାନକୁ, ନିଜର ଜୀବଭାବକୁ କାଟି ପରମାତ୍ମା ସ୍ୱରୂପରେ ସ୍ଥିତ ହୋଇଯାଅ ।

## ହଂସୋପାଖ୍ୟାନ

ଏହାପର ଅଧ୍ୟାୟରେ ଗୁଣମାନଙ୍କର ବର୍ଣ୍ଣନ କରି ଭଗବାନ୍ କହୁଛନ୍ତି ଯେ ମନୁଷ୍ୟକୁ ପ୍ରଥମେ ନିଜର ସତ୍ତ୍ୱଗୁଣକୁ ବର୍ଦ୍ଧନ କରି ନିଜର ଅନ୍ତଃକରଣକୁ ଶୁଦ୍ଧ କରିବା ଅର୍ଥାତ୍ ରଜୋଗୁଣ ତଥା ତମୋଗୁଣକୁ କ୍ଷୀଣ କରି ନେବା ଉଚିତ୍ । ସତ୍‌ଶାସ୍ତ୍ର ସେବନ ଦ୍ୱାରା, ସତ୍ତ୍ୱଗୁଣ ଦ୍ୱାରା ଧର୍ମାଚରଣ, ଧର୍ମାଚରଣ ଦ୍ୱାରା ଚିତ୍ତଶୁଦ୍ଧି ଏବଂ ଶୁଦ୍ଧଚିତ୍ତ ଦ୍ୱାରା - ଗୁରୁଙ୍କର ଉପଦେଶ ଶୁଣିଲେ ଆତ୍ମତତ୍ତ୍ୱର ଜ୍ଞାନ ଉଦୟ ହୁଏ ।

ଉଦ୍ଧବ ପୁଣି ଥରେ କହୁଛନ୍ତି, "ଭଗବାନ୍ ସଂସାରରେ ଲୋକମାନେ ପ୍ରାୟଃ ଏହି କଥାକୁ ଜାଣିଛନ୍ତି ଯେ ବିଷୟ ସୁଖଟି ପରିଣାମରେ ଦୁଃଖ ପ୍ରଦାନ କରେ । ତଥାପି ସେମାନେ ସେଥିରେ ରମଣ କରୁଥାଆନ୍ତି । ଏଭଳି କାହିଁକି ? ଏହାର କାରଣ କଣ ?" ଦେଖନ୍ତୁ ଶ୍ରୀମଦ୍ ଭାଗବତରେ ଭଗବାନଙ୍କର ଅବତାର, ଶ୍ରୀକୃଷ୍ଣ ଲୀଳା, ବନ୍ଧ, ମୋକ୍ଷ, ତତ୍ତ୍ୱ, ଅତତ୍ତ୍ୱ ଆଦି ଅନେକ ପ୍ରସଙ୍ଗ ଆସେ । କେବେ କେବେ ଲାଗେ ଏଥିରେ କେବଳ କାହାଣୀଗୁଡିକ ହିଁ ବର୍ଣ୍ଣନ ହୋଇଛି । କିନ୍ତୁ ପ୍ରକୃତରେ ଦେଖିବାକୁ ଗଲେ, ଗଭୀର ଦୃଷ୍ଟିରେ ଦେଖିବାକୁ ଗଲେ ଏପରି ନୁହେଁ । ସମସ୍ତ ପ୍ରସଙ୍ଗରେ ତତ୍ତ୍ୱ ଜ୍ଞାନ ପରିପୂର୍ଣ୍ଣ ଅଛି। ଭଗବାନ୍ କହୁଛନ୍ତି - "ଉଦ୍ଧବ ! ତୁମେ ଠିକ୍ କହିଛ ! ତୁମେ ଯାହା ପଚାରିଲ ତାକୁ ଏତେ ସହଜରେ ବୁଝି ହେବ ନାହିଁ । ଏହାର ମୂଳ କାରଣ ହେଉଛି ଯେ ଆମର ଦେହରେ (ସ୍ଥୂଳ, ସୂକ୍ଷ୍ମ ଆଦି) ଯେଉଁ ସତ୍ୟ ବୁଦ୍ଧି (ଅହଂ ବୁଦ୍ଧି) ହୋଇଯାଇଛି, ତାହା ହିଁ ତାର ସତ୍ତ୍ୱ ପ୍ରଧାନ ମନକୁ ରଜୋଗୁଣୀ କରିଦିଏ ଏବଂ ପୁଣି ବିଷୟରେ ଲିପ୍ତ ହୋଇ ସେ ଶୁଦ୍ଧ ବିବେକର ସାମର୍ଥ୍ୟକୁ ହଜାଇ ଦେଇଥାଏ । ସେଥିପାଇଁ ଜଣେ ସାଧକକୁ ହତାଶ ନ ହୋଇ ସତତ ପ୍ରୟାସ ରତ ହୋଇ ନିଜର ମନକୁ ମୋ (ପରମାତ୍ମା)ଠାରେ ଲଗାଇବା ଉଚିତ୍ । କେବଳ ତୁମକୁ ନୁହେଁ, ଏହି କଥାକୁ ସନତ୍‌କୁମାରମାନଙ୍କୁ ମଧ୍ୟ ଏତେ ଶୀଘ୍ର ବୁଝିହୋଇ ନ ଥିଲା । ସେତେବେଳେ ମୁଁ ତାଙ୍କୁ ଯୋଗର ଏହି ଉପଦେଶ ଦେଇଥିଲି।"

ଭଗବାନଙ୍କଠାରୁ ଏପରି ବଚନ ଶୁଣି ଉଦ୍ଧବଙ୍କର ମନରେ ସେହି ଉପଦେଶକୁ ଶୁଣିବା ନିମନ୍ତେ ଇଚ୍ଛା ହେଲା । ସେ ଭଗବାନଙ୍କୁ କହୁଛନ୍ତି - "ଭଗବାନ ଆପଣ ସନତ୍କୁମାରମାନଙ୍କୁ ଯେଉଁ ଉପଦେଶ ଦେଇଥିଲେ, ଯେଉଁ ରୂପରେ ଦେଇଥିଲେ, ତାହା ସବୁ ମୁଁ ଜାଣିବାକୁ ଚାହୁଁଛି ।" ତାପରେ ଭଗବାନ୍ କହୁଛନ୍ତି - ଥରେ ଯେତେବେଳେ ସନତ୍କୁମାରମାନଙ୍କୁ ଏହି ବିଷୟରେ ଶଙ୍କା ହେଲା, ତେବେ ସେମାନେ ଶଙ୍କା ନିବାରଣାର୍ଥ ନିଜର ପିତା ବ୍ରହ୍ମାଙ୍କ ପାଖକୁ ଗଲେ । ସେଠାରେ ଯାଇ ଯୋଗର ଏହି ଅନ୍ତିମ ବା ସୂକ୍ଷ୍ମ କଥାକୁ ଜାଣିବା ନିମନ୍ତେ ସେ ବ୍ରହ୍ମାଙ୍କୁ ପ୍ରଶ୍ନ କଲେ -

**ଗୁଣେଷ୍ୱାବିଶତେ ଚେତୋ ଗୁଣାଶ୍ଚେତସି ଚ ପ୍ରଭୋ ।**
**କଥମନ୍ୟୋନ୍ୟସଂତ୍ୟାଗୋ ମୁମୁକ୍ଷୋରତିତିତୀର୍ଷୋଃ ॥** (୧୧.୧୩.୧୭)

ଭଗବନ୍ ! ବିଚାର କରି ଦେଖିଲା ପରେ ଲାଗେ ଯେ ମନ ହିଁ ବିଷୟ ଆଡକୁ ଚାଲିଯାଉଛି, କିନ୍ତୁ ଏପରି ନୁହେଁ । ବିଷୟ ମଧ୍ୟ ମନ ଭିତରେ ଏକାକାର ହୋଇଯାଇଛି । ମନ ଗୁଣରେ ଅର୍ଥାତ୍ ବିଷୟରେ ବାନ୍ଧି ହୋଇଯାଇଛି ଏବଂ ଗୁଣ ଗୁଡିକ ମନ ଭିତରେ ଆସି ଯାଇଛନ୍ତି । ଏପରି ସ୍ଥିତିରେ ଯେଉଁ ସାଧକଗଣ ସଂସାର-ସାଗରକୁ ପାର କରି ମୁକ୍ତ ହେବାକୁ ଚାହୁଁଛନ୍ତି, ସେମାନେ ନିଜର ମନକୁ ବିଷୟଠାରୁ କିପରି ଅଲଗା କରିବା ଉଚିତ୍ ? ଯେପରି ଯଦି କୌଣସି ବସ୍ତୁ ବାକ୍ସରେ ଅଛି, ତେବେ ତାକୁ ବାକ୍ସରୁ ବାହାର କରିପାରିବା, ପକ୍ଷୀ ପଞ୍ଜୁରୀରେ ଥିଲେ ସିନା ତାକୁ ପଞ୍ଜୁରୀରୁ ବାହାର କରିପାରିବା, କିନ୍ତୁ କଣ ଲହଡିକୁ ଜଳ ଠାରୁ ବାହାର କରିପାରିବା ? ଲହଡିରେ ଜଳ ଅଛି ଏବଂ ଜଳରେ ଲହଡି ଅଛି । ଏପରି ସ୍ଥିତିରେ କାହାକୁ କାହାଦ୍ୱାରା ଅଲଗା କରିବା ?

ଏପରି ପ୍ରଶ୍ନ ସନତ୍କୁମାରମାନେ ନିଜର ପିତା ବ୍ରହ୍ମାଙ୍କୁ ପଚାରିବାରୁ ବ୍ରହ୍ମା ଏହି ପ୍ରଶ୍ନର ଉତ୍ତର ଦେଇପାରିଲେ ନାହିଁ କାହିଁକି ? ସେଥିପାଇଁ ଯେ ସେ ସମୟରେ ସୃଷ୍ଟି ନିର୍ମାଣ କାର୍ଯ୍ୟରେ ବ୍ୟସ୍ତ ଥିଲେ । **'ନାଭ୍ୟପଦ୍ୟତ କର୍ମଧୀଃ'**(୧୧.୧୩.୧୮) । କର୍ମରେ ସଂଲଗ୍ନ ବୁଦ୍ଧିକୁ ତତ୍ତ୍ୱଜ୍ଞାନ କଥା ନା ଭଲ ଲାଗେ, ନା କିଛି ବୁଝି ହୁଏ, ନା ସେତେବେଳେ ସେଥିରେ କିଛି ରସ ମିଳେ । ଯେପରି ମାଆ ଭୋଜନ ନିର୍ମାଣରେ ବ୍ୟସ୍ତ ଥାଏ ଏବଂ ସେହି ସମୟରେ ବାଳକଟି ଆସି ଯଦି କୌଣସି ସାଧାରଣ ପ୍ରଶ୍ନଟିଏ ପଚାରେ, ତେବେ ସେ ସମୟରେ ମାଙ୍କୁ ତାର ଉତ୍ତର ଆସି ନ ଥାଏ । ତେବେ ଏଠାରେ ବ୍ରହ୍ମା ମଧ୍ୟ କହୁଛନ୍ତି, "ଜଣା ନାହିଁ ।" ସେ ସମୟରେ ସେ ନିଜର ମାନସ ପୁତ୍ରମାନଙ୍କର (ସନତ୍କୁମାର

ମାନଙ୍କର) ପ୍ରଶ୍ନ ବୁଝି ପାରିନଥିଲେ, ଧ୍ୟାନ ଲଗାଇବା ପରେ ମଧ୍ୟ ତାଙ୍କୁ ତାର ଉତ୍ତର ମିଳି ନ ଥିଲା । ତେଣୁ ସେ ଭଗବାନଙ୍କୁ ଚିନ୍ତନ କଲେ ।

ଭଗବାନ ଶ୍ରୀକୃଷ୍ଣ ଉଦ୍ଧବଜୀଙ୍କୁ କହୁଛନ୍ତି, "ସେତେବେଳେ ମୁଁ ହିଁ ହଂସ ହୋଇ ସେଠାରେ ପହଞ୍ଚି ଯାଇଥିଲି ।" ତେବେ ଭଗବାନ ହିଁ ହଂସ ରୂପରେ ସେଠାରେ ପହଞ୍ଚି ସନତ୍‌କୁମାରମାନଙ୍କୁ ଜ୍ଞାନର ଉପଦେଶ ଦେଲେ । ସେଥିପାଇଁ ଏହି ପ୍ରସଙ୍ଗକୁ **ହଂସଗୀତା** ନାମରେ ପ୍ରସିଦ୍ଧ ହୋଇଅଛି ।

ଏବେ ଦେଖନ୍ତୁ, ଭଗବାନ ହଂସ ହୋଇ ସେଠାରେ କାହିଁକି ପହଞ୍ଚିଥିଲେ ? ହଂସ କାହାକୁ କହନ୍ତି ? ଅହଂ + ସଃ = ହଂସଃ । 'ହଂସ' ଶବ୍ଦରେ 'ଅ'ର ଲୋପ ହୋଇଯାଇଛି। ହଂସର ବିଶେଷତା ହେଉଛି, ସେ ନୀର-କ୍ଷୀରର ବିବେକ କରିବାରେ ସମର୍ଥ ହୋଇଥାଏ। ଦୁଧ ଏବଂ ଜଳକୁ ଅଲଗା କରିବା ବହୁତ କଠିନ ହୋଇଥାଏ, ପରନ୍ତୁ ହଂସ ଏହି କାର୍ଯ୍ୟ କରିବାକୁ ସକ୍ଷମ ଅଟେ । ତାତ୍ପର୍ଯ୍ୟ ହେଉଛି ଯେ ବିବେକୀ ପୁରୁଷ ହିଁ ଏକତ୍ୱ ଜ୍ଞାନକୁ ପ୍ରାପ୍ତ କରି ଏହି ସତ୍ୟକୁ ଭଲ ଭାବରେ ବୁଝିଥାଏ ଯେ 'ସଃ' - 'ସେ' ମୁଁ (ଅହଂ) ହିଂ ଅଟେ। 'ସୋଽହଂ-ହଂସଃ' । ପ୍ରକୃତ ପ୍ରସଙ୍ଗରେ ପ୍ରଶ୍ନ ଥିଲା ଯେ ମନରେ ଗୁଣ (ଅବା ବିଷୟ) ଏବଂ ଗୁଣରେ ମନ, ଏହିଭଳି ଭାବରେ ଦୁହେଁ ଗୋଟିଏ ଅନ୍ୟ ସହିତ ଭିତରେ ପ୍ରବିଷ୍ଟ (ଏକାକାର) ହୋଇଯାଇଛନ୍ତି । ଏଭଳି ସ୍ଥିତିରେ କିପରି ମନକୁ ବିଷୟ ଠାରୁ ଅଥବା ଗୁଣଠାରୁ ପୃଥକ୍ କରାଯିବ ? ତେବେ ସେଥିପାଇଁ ଅଥବା ପୃଥକ୍‌କରଣ କରିବା ନିମନ୍ତେ ବିବେକର ଆବଶ୍ୟକତା ହୋଇଥାଏ। ସେଥିପାଇଁ ଭଗବାନ ବିବେକରୂପୀ ହଂସ ହୋଇ ସେଠାରେ ପହଞ୍ଚିଲେ ।

ଅକସ୍ମାତ୍ ଏକ ଉଜ୍ଜ୍ୱଳ ଶ୍ୱେତବର୍ଣ୍ଣର ହଂସକୁ ସେଠାରେ ପ୍ରକଟ ହେବା ଦେଖି ବ୍ରହ୍ମା ଚକିତ ହୋଇଗଲେ । ସେ ବିଚାର କରି କହିଲେ, ଆରେ ! ମୁଁ ଏହି ପକ୍ଷୀକୁ ମୁଁ ତ ରଚନା କରିନାହିଁ । ଏହା ମୋ ସୃଷ୍ଟିର ପ୍ରାଣୀ ନୁହେଁ । ତେବେ ପୁଣି ଇଏ କିଏ ? ତେବେ ବ୍ରହ୍ମାଙ୍କୁ ସମ୍ମୁଖରେ ରଖି ସନକାଦିକୁମାରମାନେ ହଂସରୂପୀ ଭଗବାନଙ୍କ ପାଖକୁ ଗଲେ ଏବଂ ତାଙ୍କ ଚରଣ ବନ୍ଦନା କରି ତାଙ୍କୁ ପଚାରିଲେ ଯେ ଆପଣ କିଏ ? ସନକାଦିମାନେ ତତ୍ତ୍ୱ ଜିଜ୍ଞାସୁ ଥିଲେ, ତେଣୁ ଭଗବାନ ତାଙ୍କୁ କହିଲେ ଯେ ଏହି ପ୍ରଶ୍ନ ହେଉଛି ବ୍ୟର୍ଥ । ଆତ୍ମା ହେଉଛି ଗୋଟିଏ । ସେହି ସମସ୍ତଙ୍କର ସ୍ୱରୂପ ଅଟନ୍ତି । ଏବଂ ଏହି ଶରୀରତଃ ପାଞ୍ଚଭୌତିକ ଅଟେ । ତେଣୁ ସେ ମଧ୍ୟ ସମସ୍ତଙ୍କ ଭିତରେ ସମାନ । ଏଭଳି କଥା ଶୁଣି ବ୍ରହ୍ମା ବୁଝିଗଲେ ଯେ ଇଏ ତ ସ୍ୱୟଂ ନାରାୟଣ ଭଗବାନ ଅଟନ୍ତି।

ବ୍ରହ୍ମା କହୁଛନ୍ତି - ଭଗବାନ୍ ! ଆପଣ ଏମାନଙ୍କର (ସନତ୍‌କୁମାରମାନଙ୍କର) ପ୍ରଶ୍ନର ସମାଧାନ କରନ୍ତୁ, ମୋର ତ ବୁଦ୍ଧି ଗ୍ରାହ୍ୟ ହେଉ ନାହିଁ ।

ତେବେ ଭଗବାନ ସଂକ୍ଷେପରେ ଉତ୍ତର ଦେଲେ । କହୁଛନ୍ତି - ମନ ଓ ବିଷୟ ଗୋଟିଏ ଅନ୍ୟ ଭିତରେ ପ୍ରବିଷ୍ଟ ହୋଇଅଛି ଏବଂ ତୁମେ ସେହି ମନକୁ ବିଷୟଠାରୁ ଅଲଗା କରିବା ନିମନ୍ତେ ଚାହୁଁଛ । ଏହା ବଡ଼ ବିଚିତ୍ର କଥା । ପ୍ରଥମେ ତୁମେ ଜାଣିଥାଅ ଯେ ମନ ଏବଂ ବିଷୟ ଏହି ଦୁଇଟି ପୃଥକ୍ ପୃଥକ୍ ନୁହେଁ, ଏକ ହିଁ ଅଟେ । ଏହି ଦୁଇଟିଯାକ ମାୟିକ ଅଟେ, ମାୟାର ବୃତ୍ତି ଅଟେ, ଆଭାସ ଅଟେ, ଆତ୍ମା ଉପରେ କେବଳ ଆରୋପିତ ହୋଇଅଛି । ତୁମେ ଏହି ଦୁଇଟିକୁ ସତ୍ୟ ମାନି ନେଇଛ, ଦୁଇଟିଯାକୁ ସ୍ୱତନ୍ତ୍ର ଅସ୍ତିତ୍ୱ ସ୍ୱୀକାର କରି ନେଇଛ । କିନ୍ତୁ ଆତ୍ମାରେ ନା ତ ଗୁଣ ଅଛି, ନା ତ ମନ ଅଛି । ସତ କଥା କହିବାକୁ ଗଲେ, ଯାହା ସତ୍ୟ, ଆତ୍ମତତ୍ତ୍ୱ ଅଟେ, ସେ ଏହି ଦୁଇଟିଯାକ ଠାରୁ ଊର୍ଦ୍ଧ୍ୱରେ । ଯେତେବେଳେ ତୁମର ଧ୍ୟାନ ତା ଆଡକୁ ଯିବ, ଅର୍ଥାତ୍ ଯେତେବେଳେ ତୁମେ ଆତ୍ମତତ୍ତ୍ୱର ଚିନ୍ତନ କରିବ, ସେତେବେଳେ ଏହି ଦୁଇଟିଯାକ (ବିଷୟ ଏବଂ ମନ) ଠାରୁ ମୁକ୍ତ ହୋଇଯିବ ।

ଏହି ତ୍ରିଗୁଣ ହିଁ ଗୋଟେ ପାଖରେ ମନ ଏବଂ ଅପରପାର୍ଶ୍ୱରେ ବିଷୟ ହୋଇ ଭାସିତ ହେଉଅଛି । ତାହା କିପରି ? ଯେପରି, କୌଣସି ଶିଶୁ ଯେତେବେଳେ ଅଙ୍ଗୁଳି ଶୋଷୁଥାଏ, ତେବେ ତାର ମୁଖ୍ୟ ଭୋକ୍ତା ହୋଇଥାଏ ଏବଂ ସ୍ୱୟଂ ତାର ଅଙ୍ଗୁଳିକୁ ଭୋଗ୍ୟ ବିଷୟ କରିଥାଏ । ତେବେ ଧ୍ୟାନ ଦେଲେ, ବାସ୍ତବରେ ଏଠାରେ ଭୋକ୍ତା ଏବଂ ଭୋଗର ବିଷୟ ଦୁହେଁ ଦୁଇଟି ନୁହଁନ୍ତି । ମୁଖ ଏବଂ ଅଙ୍ଗୁଳି ଏହି ଦୁଇଟିଯାକ ସେ ଶିଶୁ ଦେହର ଅଙ୍ଗ ମାତ୍ର । କେବଳ ଏତିକି ନୁହେଁ, ତାର ସ୍ୱୟଂ ଦେହଟି ମଧ୍ୟ ଶୁଦ୍ଧ ଅହଂ-ଆତ୍ମାତତ୍ତ୍ୱ ଉପରେ ଆରୋପିତ ହୋଇଅଛି । ତାତ୍ପର୍ଯ୍ୟ ହେଉଛି ଯେ ଯଦି କେହି ମନକୁ ବିଷୟଠାରୁ ଅଲଗା ଅଲଗା କରିବାକୁ ଚାହୁଁଛି, ତେବେ ଏହା କେବେ ସମ୍ଭବ ନୁହେଁ । ତଥାପି ମନ କଣ, ଏହା ବିଚାର କରିବା ପରେ ମନର କୌଣସି ଅସ୍ତିତ୍ୱ ରହେ ନାହିଁ । ସେତେବେଳେ କେବଳ ତୁମର ସ୍ୱରୂପ ହିଁ ରହିବ । ଏହା ଭଗବାନଙ୍କର ହଂସାବତାର ଥିଲା । ଏହି ପ୍ରସଙ୍ଗକୁ **'ହଂସଗୀତା'** କହନ୍ତି ।

ଭଗବାନ ଉଦ୍ଧବଙ୍କୁ କହୁଛନ୍ତି, "ଏହିଭଳି ଭାବରେ ମୁଁ ସେମାନଙ୍କ ଶଙ୍କାର ନିବାରଣ କରିଥିଲି । ତାପରେ ସନକାଦି ପରମଋଷିମାନେ ପରମଭକ୍ତି ଭାବରେ ମୋର ପୂଜା କଲେ । ସଂସ୍ତୁତି କଲେ ଏବଂ ତାପରେ ମୁଁ ସେଠାରୁ ଅନ୍ତର୍ଦ୍ଧାନ ହୋଇ ନିଜ

ଧାମକୁ ଫେରି ଆସିଲି । ଏବେ ତୁମେ ଚିନ୍ତା ତ୍ୟାଗ କରି ମୋର ଭଜନ କର । ତୁମ ସମସ୍ୟାର ସମାଧାନ ହୋଇଯିବ ।" ତାପରେ ଉଦ୍ଧବ କହୁଛନ୍ତି -

**ବଦନ୍ତି କୃଷ୍ଣ ଶ୍ରେୟାଂସି ବହୂନି ବ୍ରହ୍ମବାଦିନଃ ।**

**ତେଷାଂ ବିକଳ୍ପପ୍ରାଧାନ୍ୟମୁତାହାଏକମୁଖ୍ୟତା ॥** (୧୧.୧୪.୧)

ଭଗବାନ୍! ଶ୍ରେୟମାର୍ଗର ପ୍ରାପ୍ତି ନିମନ୍ତେ ଲୋକମାନେ ତୀର୍ଥାଟନ, ଯାତ୍ରା, ଜପ,ସ୍ନାନ, ଦାନ ଆଦି ଅନେକ ପ୍ରକାର ଉପାୟ ବର୍ଣ୍ଣନ କରନ୍ତି । କଳିଯୁଗରେ ତ ତାର ସଂଖ୍ୟା ଆହୁରି ମଧ୍ୟ ଅଧିକ ହୋଇଗଲାଣି । ନୂଆ-ନୂଆ ଗ୍ରନ୍ଥର ରଚନା ମଧ୍ୟ ହେଉଅଛି । ଲୋକମାନେ ଉପନିଷଦ୍ ପରମ୍ପରାକୁ ଛାଡିଯାଉଛନ୍ତି । କଣ ଏହି ସମସ୍ତ ମାର୍ଗର ମହତ୍ତ୍ୱ ସମାନ ଅଟେ ଅଥବା ଏମାନଙ୍କ ଭିତରୁ କୌଣସି ମାର୍ଗ ପ୍ରଧାନ ଏବଂ କେଉଁ ମାର୍ଗ ଗୌଣ ଅଟେ ? କଣ ଏହି ମାର୍ଗ ମାନଙ୍କ ଭିତରୁ କିଛି ମିଥ୍ୟା ମଧ୍ୟ ଅଛି ? ଭଗବାନ୍ କହୁଛନ୍ତି - ପ୍ରଳୟ କାଳରେ ଏହି ବେଦ ଅଥବା ଉପନିଷଦ୍ ପରମ୍ପରା ଲୁପ୍ତ ହୋଇଯାଇଥିଲା । ତେଣୁ ପୁଣି ଯେତେବେଳେ ସୃଷ୍ଟିର ସମୟ ଆସିଲା ସେତେବେଳେ ମୁଁ ହିଁ ସେହି ଉପଦେଶକୁ ବ୍ରହ୍ମାଙ୍କୁ ପ୍ରଦାନ କରିଥିଲି । ସେ ପୁଣି ସେହି ଉପଦେଶକୁ ସ୍ୱାୟମ୍ଭୁବ ମନୁଙ୍କୁ ପ୍ରଦାନ କରିଥିଲେ । ମନୁ ପୁଣି ଭୃଗୁ ଆଦି ମହର୍ଷିମାନଙ୍କୁ, ଏବଂ ମହର୍ଷିମାନେ ଦେବ, ଦାନବ, ମାନବ, କିନ୍ନର ଆଦିଙ୍କୁ ପ୍ରଦାନ କଲେ । କିନ୍ତୁ, ଏହି ସମସ୍ତଙ୍କର ସ୍ୱଭାବ, ରୁଚି, ଅନ୍ତଃକରଣ, କର୍ମ ବାସନା ଆଦି ସବୁକିଛି ଭିନ୍ନ ଭିନ୍ନ ହୋଇଥିବା ଯୋଗୁଁ, ସେହି ଉପଦେଶରୁ ହିଁ ଅନେକ-ଅନେକ ମାର୍ଗ ବାହାରି ଆସିଲା । ତେଣୁ ଏହି କଥାଟି ସତ୍ୟ ଯେ ଉପାୟ ଅନେକ କୁହାଯାଏ । ତଥାପି ତୁମେ ଏତିକି ବୁଝିଯାଅ ଯେ ଯାହା ମୋର ଭକ୍ତିର ଅନୁକୂଳ ହୋଇଥିବ, ତାହା ଠିକ୍ ଅଛି, ପରନ୍ତୁ ଯାହା ମୋର ଭକ୍ତିର ପ୍ରତିକୂଳ ହୋଇଥିବ, ବିରୁଦ୍ଧ ହୋଇଥିବ, ତାହା ଠିକ୍ ନୁହେଁ, ତାକୁ ତ୍ୟାଗ କରି ଦେବା ଉଚିତ୍ ।

## ସର୍ବଶ୍ରେଷ୍ଠ ମାର୍ଗ

ଏହା ପରେ ଭଗବାନ୍ କହୁଛନ୍ତି ଯେ ସବୁଠାରୁ ଉତ୍ତମ, ସବୁଠାରୁ ଶ୍ରେଷ୍ଠମାର୍ଗ କଣ ?

**ମୟର୍ପିତାତ୍ମନଃ ସଭ୍ୟ ନିରପେକ୍ଷସ୍ୟ ସର୍ବତଃ ।**

**ମୟାଽଽତ୍ମନା ସୁଖଂ ଯତ୍ତତ୍ କୁତଃ ସ୍ୟାଦ୍ ବିଷୟାତ୍ମନାମ୍ ॥** (୧୧.୧୪.୧୨)

ଶ୍ରୀ ଭଗବାନ୍ କହୁଛନ୍ତି - ନିଜର ମନକୁ ମୋ ଠାରେ ଲଗାଇ ଦେଲେ, ମୋ ଠାରେ ଅର୍ପିତ କରି ଦେବାଠାରୁ ଶ୍ରେଷ୍ଠ ଅନ୍ୟ କୌଣସି ସାଧନ ନାହିଁ । କାହିଁକି ନା ଯେଉଁ ଭକ୍ତ ଏଭଳି କରେ, ତାର ଆତ୍ମାରୂପରେ ମୁଁ ହିଁ ସ୍ଫୁରିତ ହୋଇଥାଏ । ତେଣୁ ତାକୁ ଯେଉଁ ନିଜ ସ୍ୱରୂପ ଆନନ୍ଦର ଅନୁଭୂତି ହୋଇଥାଏ, ତାକୁ ବିଷୟୀ ଲୋକମାନେ କଣ ଜାଣିବେ ? ଏହିଭଳି ଯେଉଁ ଭକ୍ତମାନେ, ସେମାନେ ମୋର ପଛରେ ଆସିବାକୁ ପଡେ ନାହିଁ, ସ୍ୱୟଂ ମୁଁ ତାଙ୍କର ପଛରେ-ପଛରେ ଯାଉଥାଏ । କବୀର ଦାସଜୀ ମଧ୍ୟ ଏହା କହିଛନ୍ତି । ପ୍ରଥମେ କବୀରଜୀ ରାମ-ରାମ କରୁଥିଲେ, କିନ୍ତୁ ପରେ ରାମଜୀ କବୀର-କବୀର କରି ପଛରେ-ପଛରେ ଯାଉଥିଲେ । ଭଗବାନ୍ କହୁଛନ୍ତି, "ମୁଁ ଏହିଭଳି ଭକ୍ତର ଚରଣର ଧୂଳି ନିଏ ।" ଭକ୍ତି ହିଁ ଶ୍ରେୟକୁ ପ୍ରାପ୍ତ କରିବା ନିମନ୍ତେ ଶ୍ରେଷ୍ଠ ସାଧନ ଅଟେ କାହିଁକି ନା ଭକ୍ତି ଦ୍ୱାରା ଦୁଇଟି କାର୍ଯ୍ୟ ସମ୍ପାଦିତ ହୋଇଯାଏ । ପ୍ରଥମେ ମନ ଶୁଦ୍ଧ ହୋଇଯାଏ, ଏବଂ ପୁଣି ପରମାତ୍ମା ସ୍ୱରୂପର ବୋଧ ହୋଇଯାଏ । ଏବଂ ଯେତେବେଳେ ଏହି ଭକ୍ତି ହୃଦୟରେ ଆସେ ସେତେବେଳେ ସେ ଭକ୍ତର କଣ୍ଠ ଗଦ୍‌ଗଦ୍ ହୋଇଯାଏ, ଶରୀରରେ ରୋମାଞ୍ଚ ହୋଇଥାଏ, ଚିତ୍ତ ଦ୍ରବିତ ହୋଇଯାଏ ଏବଂ ଚକ୍ଷୁରୁ ପ୍ରେମାଶ୍ରୁ ବହିବାକୁ ଲାଗେ ।

**ବାଗ୍ ଗଦ୍‌ଗଦା ଦ୍ରବତେ ଯସ୍ୟ ଚିତ୍ତଂ**
**ରୁଦତ୍ୟଭୀକ୍ଷ୍ଣଂ ହସତି କ୍ୱଚିଚ୍ଚ ।**
**ବିଲଜ୍ଜ ଉଦ୍‌ଗାୟତି ନୃତ୍ୟତେ ଚ**
**ମଦ୍ଭକ୍ତିଯୁକ୍ତୋ ଭୁବନଂ ପୁନାତି ॥** (୧୧.୧୪.୨୪)

ଏଭଳି ଭକ୍ତ ମାତ୍ର ନିଜେ ନିଜକୁ ନୁହେଁ, ବରଂ ଏହି ନିଖିଳ ଭୁବନକୁ ମଧ୍ୟ ପବିତ୍ର କରି ଦେଇଥାଏ । ଯେତେବେଳ ପର୍ଯ୍ୟନ୍ତ ଏହିଭଳି ହୁଏ ନାହିଁ, ସେତେବେଳ ପର୍ଯ୍ୟନ୍ତ ମନ ଶୁଦ୍ଧ ହୁଏ ନାହିଁ । ଏହି କଥାକୁ ଭଗବାନ୍ ଏଠାରେ ସ୍ପଷ୍ଟ ରୂପରେ ବର୍ଣ୍ଣନ କରୁଛନ୍ତି । ଭଗବାନ୍ କହୁଛନ୍ତି -

**କଥଂ ବିନା ରୋମହର୍ଷଂ ଦ୍ରବତା ଚେତସା ବିନା ।**
**ବିନାଽଽନନ୍ଦାଶ୍ରୁକଲୟା ଶୁଦ୍ଧ୍ୟେଦ୍ ଭକ୍ତ୍ୟା ବିନାଽଽଶୟଃ ॥** (୧୧.୧୪.୨୩)

ଶରୀର ପୁଲକିତ ନ ହୋଇ, ଚିତ୍ତ ଦ୍ରବିତ ନ ହୋଇ ଆନନ୍ଦାଶ୍ରୁ ବିନା ମନ କିଭଳି ଶୁଦ୍ଧ ହୋଇପାରିବ ? ଯେପରି ତପ୍ତ ହେଲା ପରେ ସୁବର୍ଣ୍ଣ ନିଜର ମଇଳାକୁ ତ୍ୟାଗ କରିଥାଏ, ସେହିପରି ଭକ୍ତିଯୋଗ ଦ୍ୱାରା ଅନ୍ତଃକରଣର ମଳ ଛାଡିଯାଏ। ମୋର ପାବନ କଥାର ଶ୍ରବଣ-କୀର୍ତ୍ତନ ଦ୍ୱାରା ମନ ଯେତେ-ଯେତେ ଶୁଦ୍ଧ ହେଉଥାଏ ତାକୁ ସେତିକି-ସେତିକି ସୂକ୍ଷ୍ମତତ୍ତ୍ୱର ଦର୍ଶନ ହେବାକୁ ଲାଗେ । ଏବଂ ସେ ଧିରେ ଧିରେ ନିଜ ଶୁଦ୍ଧ ସ୍ୱରୂପରେ, ପରମାତ୍ମାଙ୍କ ନିକଟରେ ସ୍ଥିତ ହୋଇଯାଏ ।

**ବିଷୟାନ୍ ଧ୍ୟାୟତଶ୍ଚିତ୍ତଂ ବିଷୟେଷୁ ବିଷଜ୍ଜତେ ।**
**ମାମନୁସ୍ମରତଶ୍ଚିତ୍ତଂ ମୟ୍ୟେବ ପ୍ରବିଲିୟତେ ॥** (୧୧.୧୪.୨୭)

ଭଗବାନ୍ ଆଗକୁ ବର୍ଣ୍ଣନ କରୁଛନ୍ତି, "ବିଷୟର ଚିନ୍ତନ କରି ମନଟି ସେଥିରେ ଆସକ୍ତ ହୋଇଯାଏ, କିନ୍ତୁ ମୋର ଚିନ୍ତନ କରି ସେ ମୋ ଠାରେ ସ୍ଥିର ହୋଇଯାଏ । ସେଥିପାଇଁ ମନୁଷ୍ୟକୁ ବିଷୟର ସ୍ତ୍ରୀର ତଥା ସ୍ତ୍ରୀଠାରେ ରାଗ ରଖୁଥିବା ପୁରୁଷର ସଙ୍ଗ କରିବା ଉଚିତ୍ ନୁହେଁ । ଏହା ବଡ କଷ୍ଟଦାୟକ । ତେଣୁ ତୁମେ ଏଭଳି ସଙ୍ଗକୁ ତ୍ୟାଗ କରି ମୋର ସଙ୍ଗ କର, ସତ୍‌ସଙ୍ଗ କର ।" ଏଠାରେ ପୁରୁଷ ନିମନ୍ତେ ଉପଦେଶ ଅଛି ଯେ ସ୍ତ୍ରୀର ସଙ୍ଗ କର ନାହିଁ, କାହିଁକି ନା ସେ ସାଧନାରେ ବାଧକ ହୋଇଥାଏ । ଏହିଭଳି ଭାବରେ ସ୍ତ୍ରୀକୁ ମଧ୍ୟ ପୁରୁଷର ସଙ୍ଗ କରିବା ଉଚିତ୍ ନୁହେଁ । ଦେଖନ୍ତୁ, ପିଙ୍ଗଳା ବେଶ୍ୟା ମଧ୍ୟ ଏହି କଥା କହିଛି ଯେ ମୁଁ ମୂଢ଼ ପୁରୁଷମାନଙ୍କର ସଙ୍ଗ କରୁଥିଲି, ସେମାନଙ୍କ ପାଖରେ ଆସକ୍ତ ରହୁଥିଲି । ସେମାନଙ୍କର ପ୍ରେମ ସତ୍ୟ ନୁହେଁ । ଅନ୍ତତଃ ସେ ମଧ୍ୟ ପୁରୁଷମାନଙ୍କର ସଙ୍ଗ ଛାଡି ଦେଲା । ବୁଝିବାର କଥା ଏତିକି ଯେ (ସ୍ତ୍ରୀ-ପୁରୁଷ) ପରସ୍ପର ଆସକ୍ତ ହେବା ଉଚିତ୍ ନୁହେଁ ।

## ସିଦ୍ଧିମାନଙ୍କର ନିରୂପଣ

ଆଗକୁ ଉଦ୍ଧବ ଭଗବାନଙ୍କୁ ପଚାରୁଛନ୍ତି, "ମୁମୁକ୍ଷୁମାନଙ୍କୁ ଆପଣଙ୍କର କେଉଁଭଳି ଧ୍ୟାନ କରିବା ଉଚିତ୍ ?" ଏହାର ଉତ୍ତର ଆମ୍ଭେମାନେ ଦ୍ୱିତୀୟ ସ୍କନ୍ଧରେ ଦେଖି ସାରିଛନ୍ତି। ଜିତାସନ, ଜିତଶ୍ୱାସ, ଜିତେନ୍ଦ୍ରିୟ ଏବଂ ଜିତସଙ୍ଗ ହୋଇ ଭଗବାନଙ୍କର ବିରାଟ ରୂପର ଧ୍ୟାନ କରିବ । ବିରାଟ ରୂପକୁ ଧ୍ୟାନ ନ କରି ପାରିଲେ ମନରେ

ଭଗବାନଙ୍କର କୌଣସି ମୂର୍ତ୍ତିର ଧ୍ୟାନ କରିବ । ପୁଣି କହୁଛନ୍ତି ଯେ ସାଧକ ଯେତେବେଳେ ଜିତଶ୍ୱାସ, ଜିତେନ୍ଦ୍ରିୟ ହୋଇ ଧାରଣା କରିବାକୁ ଲାଗେ - ସେତେବେଳେ ତାକୁ ଅନେକ ପ୍ରକାରର ସିଦ୍ଧିଗୁଡ଼ିକ ପ୍ରାପ୍ତ ହେବାକୁ ଲାଗେ । ଦେଖନ୍ତୁ, ଯେତେବେଳେ କୌଣସି କାର୍ଯ୍ୟକୁ ଏକାଗ୍ର ଚିତ୍ତ ହୋଇ କରିବାକୁ ଲାଗନ୍ତି, ତେବେ ସେଥିରେ ସିଦ୍ଧିପ୍ରାପ୍ତ ହୋଇଥାଏ। କେହି ଯେତେବେଳେ କୌଣସି ବିଶେଷ କର୍ମରେ କୁଶଳ ହୋଇଯାଆନ୍ତି - ତେବେ ତାର ପ୍ରସିଦ୍ଧି ମଧ୍ୟ ହୋଇଯାଏ। ଲୋକମାନେ ପ୍ରଣାମ କରିବାକୁ ଲାଗନ୍ତି, ପୂଜା କରିବାକୁ ଲାଗନ୍ତି । ଏହା ସବୁ ସିଦ୍ଧିମାନଙ୍କର ପ୍ରତାପ । କେବଳ ଅଣିମା, ମହିମା, ଲଘିମା ଆଦି ହିଁ ସିଦ୍ଧି ହୋଇଥାଏ, ତାହା ନୁହେଁ । ଏହାସବୁ ସିଦ୍ଧି, କିନ୍ତୁ ଏମାନେ ମନକୁ ବିଚଳିତ କରିଥାନ୍ତି । ସେଥିପାଇଁ କେହି ଯଦି ନିନ୍ଦା କରନ୍ତି, ତେବେ ଡରିବା ଆବଶ୍ୟକ ନୁହଁ, ପରନ୍ତୁ ଯଦି କେହି ସ୍ତୁତି କରନ୍ତି, ତେବେ ସଚେତ ହେବାର ଆବଶ୍ୟକ ଅଛି, କାହିଁକି ନା ସ୍ତୁତିକୁ, ନମସ୍କାରକୁ, ହଜମ କରିବା ବଡ କଠିନ ହୋଇଥାଏ । ଏଭଳି ସିଦ୍ଧି ପ୍ରତି ଡରିବା ଉଚିତ୍, ସେଠାରୁ ସତର୍କ ରହିବା ଉଚିତ୍। ଭଗବାନ୍ କହୁଛନ୍ତି - ଏଭଳି ସିଦ୍ଧି ପ୍ରାପ୍ତିକୁ ଶ୍ରେଷ୍ଠ ବୋଲି ବିଚାରିବା ଉଚିତ୍ ନୁହେଁ । ଏହି ସିଦ୍ଧି ମିଳିଗଲେ ମଧ୍ୟ ସ୍ଥିର ରହେ ନାହିଁ । ତେବେ ପୁଣି ବାସ୍ତବିକ, ଶ୍ରେଷ୍ଠ ସିଦ୍ଧି କଣ ?

**ନିର୍ଗୁଣେ ବ୍ରହ୍ମଣି ମୟି ଧାରୟନ୍ ବିଶଦଂ ମନଃ ।**

**ପରମାନନ୍ଦମାପ୍ନୋତି ଯତ୍ର କାମୋଽବଶିୟତେ ॥** (୧୧.୧୫.୧୭)

କହୁଛନ୍ତି - ଏଭଳି ସିଦ୍ଧି ପ୍ରାପ୍ତ କର, ଯାହାକୁ ପ୍ରାପ୍ତ କଲା ପରେ ଆଉ କୌଣସି କାମନା ନ ରହେ । ଦେଖନ୍ତୁ, କୌଣସି ବସ୍ତୁ ମିଳିଯାଏ, କୌଣସି ସିଦ୍ଧି ପ୍ରାପ୍ତ ହୋଇଯାଏ, କିନ୍ତୁ ତଦ୍ୱାରା ଆମର ସମସ୍ତ ଇଚ୍ଛା ନିବୃତ୍ତ ହୁଏନାହିଁ, ତାପରେ ମଧ୍ୟ ମନରେ ଅତୃପ୍ତିର ଭାବନା ରହିଥାଏ । ପରମାନନ୍ଦର ପ୍ରାପ୍ତି ତ କେବଳ ନିଜ ସ୍ୱରୂପରେ ସ୍ଥିତ ହେଲା ପରେ ହିଁ ହୋଇଥାଏ । ସେତେବେଳେ ସମସ୍ତ କାମନା ସମାପ୍ତ ହୋଇଯାଏ । ରମଣ ମହର୍ଷିଜୀ କହିଛନ୍ତି -

**ସିଦ୍ଧସ୍ୟ ବିତ୍ତିଃ ସତ ଏବ ସିଦ୍ଧିଃ**

**ସ୍ୱପ୍ନୋପମାନାଃ ଖଲୁ ସିଦ୍ଧୟୋଽନ୍ୟାଃ ॥** (ସଦ୍ଦର୍ଶନ ୩୭)

ନିଜର ସ୍ୱରୂପରେ ସ୍ଥିର ହେବା ହିଁ ବାସ୍ତବିକ ସିଦ୍ଧି ଅଟେ । ଅନ୍ୟ ସମସ୍ତ ସିଦ୍ଧିଗୁଡିକ ସ୍ୱପ୍ନରେ ପ୍ରାପ୍ତ ଲାଭ ହେଲା ଭଳି ହୋଇଥାଏ । ପ୍ରାୟଃ କିଛି-କିଛି ସିଦ୍ଧି ପ୍ରାପ୍ତ

ହୋଇ ଯିବା ଦ୍ୱାରା ମନୁଷ୍ୟଙ୍କୁ ଅଭିମାନ ହୋଇଯାଇଥାଏ ଯେ ମୁଁ ତ ସୁଖୀ ହୋଇ ଗଲିଣି। କିନ୍ତୁ ସତକଥା କହିବାକୁ ଗଲେ ଏହିସବୁ ସିଦ୍ଧିମାନଙ୍କ ଠାରୁ ଭଗବାନ୍ ବହୁତ ବଡ । ଭଗବାନ୍ ଶ୍ରୀକୃଷ୍ଣ ଆଉ ଏକ ମହତ୍ତ୍ୱପୂର୍ଣ୍ଣ କଥା କହୁଛନ୍ତି ଯେ ଯୋଗୀକୁ ସବୁବେଳେ ଗୋଟିଏ କଥାକୁ ଧ୍ୟାନରେ ରଖିବା ଉଚିତ୍ -

**ସର୍ବାସାମପି ସିଦ୍ଧିନାଂ ହେତୁଃ ପତିରହଂ ପ୍ରଭୁଃ ।** (୧୧.୧୫.୩୫)

ସମସ୍ତ ସିଦ୍ଧିମାନଙ୍କର କାରଣ, ସ୍ୱାମୀ ଏବଂ ପ୍ରଭୁ କେବଳ ମୁଁ ହିଁ ଅଟେ। ଏଭଳି ଭଗବାନଙ୍କର ପ୍ରାପ୍ତିଠାରୁ ଅଧିକ କଣ କିଛି ହୋଇପାରେ? ଜୀବନରେ ଇଚ୍ଛିତ ବସ୍ତୁ ପ୍ରାପ୍ତ ହେଲା ପରେ ମଧ୍ୟ ଆମର ମନରେ ଆକାଂକ୍ଷା ରହିଥାଏ । ତେବେ ଯେଉଁଠାରୁ ଏହିସବୁ ମିଳିଥାଏ, ତାକୁ ହିଁ ଧାରଣ କରିବା ଉଚିତ୍ । ଯେଉଁଭଳି ଭାବରେ କୌଣସି ବିବାହ ଉତ୍ସବରେ ଭଣ୍ଡାର ଗୃହରେ ତାଲା ଲଗାଇ ଜଣେ ଭଣ୍ଡାରୀ ବସିଥିଲା । ଯାହାକୁ ଯାହା ଆବଶ୍ୟକତା ହୋଇଥାଏ ସେ ଭଣ୍ଡାରୀଠାରୁ ମାଗିନିଏ । ଏକ ବାଳକ ଆସି ଏକ ଲଡୁ ମାଗିଲା । ଭଣ୍ଡାରୀ ତାକୁ ଭଣ୍ଡାର ଗୃହରୁ ଏକ ଲଡୁ ବାହାର କରି ଦେଲା। ଗୋଟିଏ ଲଡୁ ଖାଇବାକୁ କେତେ ସମୟ ଲାଗିବ ? ସେ ପୁଣି ଦ୍ୱିତୀୟ ଲଡୁ ମାଗିବା ନିମନ୍ତେ ଆସିଗଲା । ଦ୍ୱିତୀୟ ଏକ ଚତୁର ଛୋଟ ବାଳକ ଏହି କଥାକୁ ଦେଖୁଥିଲା । ସେ ମଧ୍ୟ ସେଠାକୁ ଗଲା । ଭଣ୍ଡାରୀ ସେ ବାଳକକୁ ମଧ୍ୟ ପଚାରିଲା ତୁମକୁ କଣ ଆବଶ୍ୟକ? ତେବେ ବାଳକଟି କହିଲା - ଭଣ୍ଡାର ଗୃହର ଚାବି ! ଦେଖନ୍ତୁ, ଯଦି ଚାବିଟି ନିଜ ପାଖରେ ଥାଏ ତେବେ ସଂପୂର୍ଣ୍ଣ ଭଣ୍ଡାର ଗୃହ ନିଜ ହାତରେ ଥାଏ । ଅନ୍ୟଥା ଗୋଟିଏ-ଗୋଟିଏ କରି ସମସ୍ତ ବସ୍ତୁ ମିଳେ ଏବଂ ସମାପ୍ତ ହୋଇଯାଏ । ସିଦ୍ଧିଗୁଡିକ ମଧ୍ୟ ଏହିପରି ଭଗବାନ୍ କହୁଛନ୍ତି - ସମସ୍ତ ସିଦ୍ଧିମାନଙ୍କର ସ୍ୱାମୀ ହେଉଛନ୍ତି କେବଳ ମୁଁ। ମୋର ଭିତରେ ହିଁ ତୁମକୁ ସମସ୍ତ ବସ୍ତୁ ପ୍ରାପ୍ତ ହେଉଛି, ତେବେ ମୋତେ ହିଁ ପ୍ରାପ୍ତ କରିନିଅ ।

ସାଂଖ୍ୟ, ଯୋଗ, ଧର୍ମ-କର୍ମ ଆଦିର ତଥା ସମସ୍ତ ସିଦ୍ଧିମାନଙ୍କର ସ୍ୱାମୀ ତ କେବଳ ମୁଁ ହିଁ ଅଟେ । ମୋର ଭକ୍ତି କର ଏବଂ ମୋ ପାଖକୁ ହିଁ ଆସ । ପୁଣି ତୁମ୍ଭଙ୍କୁ କୌଣସି ବସ୍ତୁର କାମନା ରହିବ ନାହିଁ । **'ବ୍ରହ୍ମବିତ୍ ଆପ୍ନୋତି ପରମ୍'** (ତୈ.ଉପ. ୨.୧.୧) ବ୍ରହ୍ମବିତ୍ ପରମ ବସ୍ତୁକୁ ପ୍ରାପ୍ତ କରି ନିଏ । ତା ନିମନ୍ତେ ପ୍ରାପ୍ତ କରିବାର ଯୋଗ୍ୟ ଅନ୍ୟ କୌଣସି ବସ୍ତୁ ଶେଷ ରହେ ନାହିଁ । ଏଭଳି ସୁନ୍ଦର କଥା ଏଠାରେ ବର୍ଣ୍ଣନ କରାଯାଇଛି ।

## ଭଗବାନଙ୍କର ବିଭୂତି

ଉଦ୍ଧବ କହୁଛନ୍ତି, "ଭଗବାନ୍, ଆପଣ ବାରମ୍ବାର କହୁଛନ୍ତି ଯେ ସମସ୍ତ ସୃଷ୍ଟିର ଆଦି-ମଧ୍ୟ-ଅନ୍ତ ଆପଣ ସ୍ୱୟଂ ଅଟନ୍ତି ଏବଂ ଆପଣ ସମସ୍ତଙ୍କର ସ୍ୱାମୀ ମଧ୍ୟ । ସେ ସବୁ ତ ଠିକ୍ ଅଛି, କିନ୍ତୁ ଆମର ମନ ପୂର୍ଣ୍ଣ ରୂପରେ ଆପଣଙ୍କର ସ୍ୱରୂପରେ ସ୍ଥିତ ହୋଇପାରୁ ନାହିଁ । ଆମେ ଆପଣଙ୍କର ଧ୍ୟାନ ତ କରିବାକୁ ଚାହୁଁଛୁ, କିନ୍ତୁ ଏହି ସମସ୍ତ ଜଗତ ଆପଣଙ୍କର ଯେଉଁ ବିରାଟ ସ୍ୱରୂପରେ ସ୍ଥିତ । ଆମେ ତାର ଧ୍ୟାନ କରିପାରୁ ନାହିଁ । ତେଣୁ ଆପଣ ନିଜର ଏଭଳି କିଛି ବିଭୂତିର ବର୍ଣ୍ଣନ କରନ୍ତୁ, ଯାହାର ଆମ୍ଭେମାନେ ଧ୍ୟାନ କରିପାରିବୁ।"

'ବିଭୂତି'ର ଅର୍ଥ ଭଗବାନଙ୍କର ଅଭିବ୍ୟକ୍ତି । ଭଗବାନ ଅଲଗା-ଅଲଗା ରୂପରେ ପ୍ରକଟ ହୁଅନ୍ତି । ଯଦ୍ୟପି ସଂପୂର୍ଣ୍ଣ ଜଗତ ହେଉଛି ଭଗବାନଙ୍କର ରୂପ, ତଥାପି ସେଥିରେ କୌଣସି ବସ୍ତୁ ଏପରି ଅଛି, ଯେଉଁଠାରେ ଭଗବାନଙ୍କର ବିଶାଳତା ଏବଂ ବ୍ୟାପକତା ଦୃଷ୍ଟିଗୋଚର ହୋଇଥାଏ । ଯେଉଁ-ଯେଉଁଠାରେ ତେଜର ଅଧିକତା ହୋଇଥାଏ, ସେଠାରେ ଭଗବାନଙ୍କର ଉପସ୍ଥିତି ସହଜରେ ବୁଝି ହୋଇଥାଏ । ଯେଉଁଭଳି ଭାବରେ, ସୂର୍ଯ୍ୟଙ୍କର ତେଜ ଦେଖି ତତ୍‌କ୍ଷଣ ହସ୍ତ ଯୋଡିବାକୁ ମନ ହୁଏ, ହିମାଳୟର ଉଚ୍ଚ ଶିଖରକୁ ଦେଖି ସ୍ୱତଃ ମସ୍ତକ ନଇଁ ପଡେ । ପ୍ରାୟଃ ଲୋକମାନେ ନିଜେ ନିଜକୁ ବଡଲୋକ ବୋଲି ଭାବିଥାଆନ୍ତି । କିନ୍ତୁ ଯଦି କୂଳରେ ଠିଆ ହୋଇ ସମୁଦ୍ରକୁ ଦେଖିବେ ବା ସମୁଦ୍ରର ମଧ୍ୟ ଭାଗକୁ ଯାଇ ଦେଖିବେ, ତେବେ ଜ୍ଞାତ ହେବ ଯେ ଆମେ କେତେ ଛୋଟ ଜୀବ ଅଟୁ ଏବଂ ସେତେବେଳେ ସମୁଦ୍ରର ବିଶାଳତା ବା ଗମ୍ଭୀରତାରେ ଅକସ୍ମାତ୍ ଭଗବତ୍ ଦର୍ଶନ ହେବାକୁ ଲାଗେ । ସମୁଦ୍ର ସ୍ନାନ କଲାବେଳେ ତ ଅତି ଭଲ ଲାଗେ । ସମୁଦ୍ର ସ୍ନାନ କରି ଦେଖିବା କଥା। ଯେତେବେଳେ ଲହଡିଗୁଡିକ ଆମ ଉପରକୁ ଆସେ, ସେତେବେଳେ ଲାଗେ ଯେପରି ମାତା ପିତା ଆମକୁ ତାଙ୍କର ବାହୁରେ କୋଳାଗ୍ରତ ତଥା ଆଲିଙ୍ଗନ କରିବାକୁ ଆସୁଛନ୍ତି । ଗଙ୍ଗାରେ ସ୍ନାନ କରିବାକୁ ଗଲାବେଳେ ଲାଗେ ଯେପରି ମା'ର କୋଳରେ ଖେଳୁଛୁ । ସେଠାରେ ଭଗବାନଙ୍କ ଅସ୍ତିତ୍ୱର ତୀବ୍ର ଆଭାସ ହୋଇଥାଏ। ତେଣୁ ଏହା ସବୁ ଭଗବାନଙ୍କର ବିଭୂତି ।

ଯେଉଁଭଳି, କେହି ଯଦି ମୁମ୍ବାଇ ନଗରୀକୁ ଦେଖିବାକୁ ଯାଏ, ତେବେ ତାକୁ କଣ ଦେଖାନ୍ତି ? ତାକୁ ତ ମୁମ୍ବାଇର ପ୍ରସିଦ୍ଧ ସ୍ଥଳ, ଯେପରି ଗେଟ୍‌ୱେ ଅଫ୍ ଇଣ୍ଡିଆ, ତାଜ୍‌ମହଲ ହୋଟେଲ୍, ହେଙ୍ଗିଙ୍ଗ୍ ଗାର୍ଡେନ୍ ଆଦି ଦେଖାନ୍ତି । ଏପରି କାହିଁକି ? କାହିଁକି ନା ଏସବୁ

ମୁମ୍ବଇର ବିଭୂତି ଅଟେ । ସେଗୁଡ଼ିକ ଦେଖିଦେବା ଅର୍ଥ ସମ୍ପୂର୍ଣ୍ଣ ମୁମ୍ବଇକୁ ଦେଖିଦେବା, ବ୍ରହ୍ମାଣ୍ଡରେ ଜୁଳୁ-ଜୁଳିଆପୋକର ପ୍ରକାଶଟି ମଧ୍ୟ ଭଗବାନଙ୍କର । କିନ୍ତୁ ସେଥିରେ ଦେଖାଯାଉଥିବା ଭଗବତ୍ତା ଆମକୁ ଦେଖାଯାଏ ନାହିଁ, ସୂର୍ଯ୍ୟଙ୍କ ପାଖରେ ଦେଖାଯାଇଥାଏ। ନିର୍ଗୁଣ-ନିରାକାର ସ୍ୱରୂପ ଭଗବାନ ହିଁ ସମସ୍ତ ରୂପରେ ଦେଖାଯାଉଛନ୍ତି। ଉଦ୍ଧବ ଧ୍ୟାନ ନିମନ୍ତେ ପ୍ରଶ୍ନ ପଚାରିବାରୁ ଭଗବାନଙ୍କୁ ଅର୍ଜୁନ ମନେ ପଡିଗଲା । ଭଗବାନ କହୁଛନ୍ତି - ଆରେ ଉଦ୍ଧବ, ମହାଭାରତଯୁଦ୍ଧ ସମୟରେ ଅର୍ଜୁନକୁ ମୋହ ହୋଇଥିଲା ଏବଂ ସେ ମଧ୍ୟ ଏଭଳି ପ୍ରଶ୍ନ କରିଥିଲା । ସେତେବେଳେ ମୁଁ ଦେବତା, ନାଗ, ଗନ୍ଧର୍ବ, କିନ୍ନର ମନୁଷ୍ୟ, ନଦୀ, ପର୍ବତ ଆଦି ସବୁଠାରେ ନିଜର ଏକ ବିଶେଷ ବିଭୂତିର ବର୍ଣ୍ଣନ କରିଥିଲି । ଯେଉଁଭଳି ଭାବରେ ପର୍ବତ ଆଦି ମାନଙ୍କ ଭିତରୁ ମୁଁ ହିମାଳୟ, ନଦୀମାନଙ୍କ ଭିତରେ ମୁଁ ହେଉଛି ଗଙ୍ଗାଜୀ, ଏବଂ **'ପ୍ରହ୍ଲାଦଶ୍ଚାସ୍ମି ଦୈତ୍ୟାନାଂ'** ଅସୁରମାନଙ୍କ ଭିତରେ ମୁଁ ପ୍ରହ୍ଲାଦ । ସେଠାରେ ଅର୍ଜୁନଙ୍କ ସହିତ କଥା ହେଉଛନ୍ତି, ତେବେ ଏପାଖରେ ଭଗବାନ କହିଥିଲେ **'ପାଣ୍ଡବାନାଂ ଧନଞ୍ଜୟଃ'** ପାଣ୍ଡବମାନଙ୍କ ମଧ୍ୟରୁ ମୁଁ ହିଁ ଧନଞ୍ଜୟ ଅଟେ । ଏଠାରେ ଉଦ୍ଧବଜୀ କହୁଛନ୍ତି -

**ବାସୁଦେବୋ ଭଗବତାଂ ତ୍ୱଂ ତୁ ଭାଗବତେଷ୍ୱହମ୍ ।**(୧୧.୧୬.୨୯)

ଭାଗବତରେ ମୁଁ ହେଉଛି ତୁମେ ଏବଂ କହୁଛନ୍ତି **"ଆଶ୍ରମାଣାଂ ଅହଂ ତୁର୍ୟଃ"** ଆଶ୍ରମମାନଙ୍କ ଭିତରେ ମୁଁ ହେଉଛି ଚତୁର୍ଥ ଆଶ୍ରମ, ସନ୍ନ୍ୟାସାଶ୍ରମ ଅଟେ । ଏହିଭଳି ଭାବରେ ଭଗବାନ୍ ନିଜର କିଛି ବିଭୂତିମାନଙ୍କର ବର୍ଣ୍ଣନ କରିଲେ ।

ଗୀତାରେ ମଧ୍ୟ ଭଗବାନ କହିଲେ ହେ ଅର୍ଜୁନ ! **'ନାନ୍ତୋଽସ୍ତି (ଅନ୍ତ ନ ଅସ୍ତି ମମ ବିଭୂତାନାଂ'** (ଭ.ଗୀତା ୧୦.୪୦) ମୋର ବିଭୂତିର କୌଣସି ଅନ୍ତ ନାହିଁ।

**ବିଷ୍ଟଭ୍ୟାହମିଦଂ କୃତ୍ସ୍ନମେକାଂଶେନ ସ୍ଥିତୋ ଜଗତ୍ ॥** (ଭ.ଗୀତା ୧୦.୪୨

ମୋର ଦେହର ଏକ ଛୋଟ ଅଂଶରେ ଏହି ସମସ୍ତ ବ୍ରହ୍ମାଣ୍ଡ ବିଦ୍ୟମାନ ଯେଉଁଠି ତୁମକୁ ସେହି ତେଜ, ଐଶ୍ୱର୍ଯ୍ୟ, ଜ୍ଞାନ, ଆତ୍ମବଳ, ଏବଂ ଧର୍ମର ବଳ ଦେଖାଯା , ଯାହାକୁ ଦେଖି ନିଜର ହାତ ଯୋଡି ହୋଇଯାଏ, ବ୍ୟକ୍ତି ନତମସ୍ତକ ହୋଇଯା ମନରେ ଏକ ଉଚ୍ଚ ବିଚାର ଆସିଥାଏ ଏବଂ ଏକ ତ୍ୟାଗର ପ୍ରେରଣା ମିଳେ, ସେ ସବୁ ମୋର ବିଭୂତି । ଏଠାରେ ଭଗବାନ୍ ଉଦ୍ଧବଙ୍କୁ କହୁଛନ୍ତି, ଏହି ସମସ୍ତ ବିଭୂତି ହେଉଛି ମନର ବିକାର ମାତ୍ର, କିନ୍ତୁ ଏହା ପରମାର୍ଥ ବସ୍ତୁ ନୁହେଁ । ସେଥିପାଇଁ ତୁମେ ନିଜର

ବାଣୀ, ପ୍ରାଣ, ମନ ଆଦିକୁ ବଶୀଭୂତ କରି ମୋର ଭକ୍ତି କର । ତଦ୍ୱାରା ତୁମେ ଜନ୍ମ-ମରଣର ବନ୍ଧନରୁ ମୁକ୍ତ ହୋଇଯିବ ।

## ବର୍ଣ୍ଣାଶ୍ରମ-ଧର୍ମ

ଏହାପରେ ବର୍ଣ୍ଣ-ଧର୍ମ ତଥା ଆଶ୍ରମ ଧର୍ମ (ବ୍ରହ୍ମଚର୍ଯ୍ୟ, ଗୃହସ୍ଥ, ବାନପ୍ରସ୍ଥ, ତଥା ସନ୍ନ୍ୟାସ ଧର୍ମ)ର ବର୍ଣ୍ଣନ କରାଯାଇଛି । ଯୁଧିଷ୍ଠିର ତଥା ନାରଦଜୀଙ୍କର ସମ୍ବାଦ ରୂପରେ ଏହାକୁ ଆମ୍ଭେ ପ୍ରଥମରୁ ଦେଖିଛନ୍ତି । ଏଠାରେ ଗୃହସ୍ଥାଶ୍ରମର ସନ୍ଦର୍ଭରେ ଏକ ବିଶେଷ କଥା କୁହାଯାଇଛି ।

**ଅହୋ ମେ ପିତରୌ ବୃଦ୍ଧୌ ଭାର୍ଯ୍ୟା ବାଲାତ୍ମଜାଽଽତ୍ମଜାଃ ।**
**ଅନାଥା ମାମୃତେ ଦୀନାଃ କଥଂ ଜୀବନ୍ତି ଦୁଃଖିତାଃ ॥** (୧୧.୧୭.୫୭)

ବାନପ୍ରସ୍ଥ ସମୟ ଉପସ୍ଥିତି ହେଲା ପରେ ଗୃହସ୍ଥାଶ୍ରମୀ ଲୋକମାନେ କୁହନ୍ତି - ମୋର ମାତା-ପିତା ବୃଦ୍ଧ ହୋଇଗଲେଣି । ମୋର ପତ୍ନୀ, ଏବଂ ମୋର ପିଲାମାନେ ମୋ ବିନା ଅନାଥ ହୋଇଯିବେ ।

**ଏବଂ ଗୃହାଶୟକ୍ଷିପ୍ତହୃଦୟୋ ମୂଢ଼ଧୀରୟମ୍ ।**
**ଅତୃପ୍ତସ୍ତାନନୁଧ୍ୟାୟନ୍ ମୃତୋଽନ୍ଧଂ ବିଶତେ ତମଃ ॥** (୧୧.୧୭.୫୮)

ଏଭଳି ଲୋକମାନେ ଗୃହସ୍ଥାଶ୍ରମର କର୍ତ୍ତବ୍ୟ ସମ୍ପନ୍ନ ହେଲା ପରେ ମଧ୍ୟ ଘର ଛାଡ଼ିବାକୁ ପ୍ରସ୍ତୁତ ହୋଇ ନ ଥାଆନ୍ତି । ଆରେ ଭାଇ, କୌଣସି ନବ ବିବାହିତ କରିଥିବା ବ୍ୟକ୍ତିକୁ ଘରଛାଡି ଯିବାର କୌଣସି ଆବଶ୍ୟକତା ନାହିଁ । କିନ୍ତୁ ଯେତେବେଳେ ନିଜର ସମସ୍ତ କର୍ତ୍ତବ୍ୟ ସଂପୂର୍ଣ୍ଣ ହୋଇଯାଏ, ଆମ ବିନା ମଧ୍ୟ ଘର ଚାଲିଥାଏ, ତାପରେ ମଧ୍ୟ ସେହିଠାରେ ଅଟକି ରହିବା ଉଚିତ୍ ନୁହେଁ, କୌଣସି ଗୌରବର କଥା ନୁହେଁ । ଦେଖନ୍ତୁ, ଗୃହସ୍ଥାଶ୍ରମ ହେଉଛି ବହୁତ ସୁନ୍ଦର, କିନ୍ତୁ ଗୃହସ୍ଥାଶ୍ରମରେ ଆସକ୍ତ ହୋଇ ସେହିଠାରେ ରହିଯିବା ଭଲ କଥା ନୁହେଁ । ବ୍ୟକ୍ତିକୁ ଆଗକୁ ବଢ଼ିବା ଉଚିତ୍ । 'ଚରୈବେତି' ଆଗକୁ ବଢ଼ିଚାଲ । ଛୋଟ ପିଲାଟିଏ ଅଙ୍ଗୁଳି ଚୋଷିଲେ ଠିକ୍ ଅଛି, ପରନ୍ତୁ ପନ୍ଦର ବର୍ଷ ହେଲା ପରେ ମଧ୍ୟ ଯଦି ସେ ଅଙ୍ଗୁଠି ମୁହଁରେ ପୁରାଇଥିବ - ତେବେ ଏହା ଉଚିତ୍ ନୁହେଁ । ତେବେ ଗୃହସ୍ଥାଶ୍ରମରୁ ବାନପ୍ରସ୍ଥ ଆଡକୁ ବଢିବା ଆବଶ୍ୟକ, ଏବଂ ବାନପ୍ରସ୍ଥଠାରୁ ସନ୍ନ୍ୟାସ ଆଡକୁ ଗତି କରିବା ଉଚିତ୍ । ଏହିଭଳି ଭାବରେ ବର୍ଣ୍ଣାଶ୍ରମ ଧର୍ମର ନିରୁପଣ କରାଯାଇଛି

ଏବଂ ଗୋଟିଏ କଥା ସମସ୍ତଙ୍କର ନିମନ୍ତେ କୁହାଯାଇଛି -

**ଦୃଷ୍ଟିପୂତଂ ନ୍ୟସେତ୍ ପାଦଂ ବସ୍ତ୍ରପୂତଂ ପିବେତ୍ ଜଳମ୍ ।**

**ସତ୍ୟ ପୂତାଂ ବଦେଦ୍ ବାଚଂ ମନଃପୂତଂ ସମାଚରେତ୍ ॥** (୧୧.୧୮.୧୬)

ଚାଲୁଥିଲା ବେଳେ ଆମର ଦୃଷ୍ଟି ଆଗକୁ ଥିବା ଆବଶ୍ୟକ । ବିପଦ ଅଭାବର ନିଶ୍ଚୟ ହେଲା ପରେ ହିଁ ପାଦ ଆଗକୁ ବଢାଇବା ଆବଶ୍ୟକ । ଜଳକୁ ଛାଣି କରି ପାନ କରିବା ଆବଶ୍ୟକ । ବାଣୀ ମଧ୍ୟ ଏପରି ହୋଇଥିବ, ଯାହା କି ସତ୍ୟ ଦ୍ୱାରା ପବିତ୍ର କରାଯାଇଥିବ । ଅର୍ଥାତ୍ ଯାହା କୁହାଯିବ, ତାହା ସତ୍ୟ ହିଁ ହୋଇଥିବ । ଏବଂ ମନରେ ଯେଉଁ କାର୍ଯ୍ୟକୁ କରିବାର ନିର୍ଣ୍ଣୟ କରି ନେଇଥିବେ, ତାର ଆଚରଣ ସେତେବେଳେ କରିବା ଆବଶ୍ୟକ ଯେତେବେଳେ ତାହା ପବିତ୍ର ହୋଇଥିବ ।

## ଶୁଦ୍ଧଜ୍ଞାନ ତଥା ଭକ୍ତିର ନିରୂପଣ

ଏହାପରେ ଭଗବାନ ଯମ-ନିୟମ ଆଦି ଭକ୍ତିର ସାଧନଗୁଡିକୁ ବର୍ଣ୍ଣନ କରୁଛନ୍ତି । ଏଠାରେ ଗୋଟିଏ କଥା ପ୍ରଥମରୁ କହି ଦେଉଛନ୍ତି ଯେ ଭକ୍ତ ଅନେକ ପ୍ରକାରର ଥାଆନ୍ତି, କିନ୍ତୁ ଯିଏ ଜ୍ଞାନୀ ଭକ୍ତ ସେ ମୋର ଅତ୍ୟନ୍ତ ପ୍ରିୟ ଅଟେ । ଏଭଳି ଭକ୍ତର ଜ୍ଞାନର ସ୍ୱରୂପ କଣ ।

**ଯୋ ବିଦ୍ୟାଶ୍ରୁତସମ୍ପନ୍ନ ଆତ୍ମବାନ୍ ନାନୁମାନିକଃ ॥** (୧୧.୧୯.୧)

ସେହି ଜ୍ଞାନ ଗୁରୁମୁଖରୁ ବେଦ-ଶାସ୍ତ୍ରର ଶ୍ରବଣ କରି ଆତ୍ମାନୁଭବ ଦ୍ୱାରା ପ୍ରାପ୍ତ ହୁଏ । ତାହା କୌଣସି ଆନୁମାନିକ ଅଥବା କେବଳ ତର୍କ ଦ୍ୱାରା ପ୍ରାପ୍ତ ବୌଦ୍ଧିକ ଜ୍ଞାନ ନୁହେଁ । ବୁଦ୍ଧିଦ୍ୱାରା ପ୍ରାପ୍ତ ଜ୍ଞାନ ଯେତେବେଳ ପର୍ଯ୍ୟନ୍ତ ଅନୁଭବ ସିଦ୍ଧ ହୋଇ ନ ଥାଏ, ସେତେବେଳ ପର୍ଯ୍ୟନ୍ତ ସେହି ଜ୍ଞାନରେ ପୂର୍ଣ୍ଣ ଅସନ୍ଦିଗ୍ଧତା ଆସେ ନାହିଁ, ଏବଂ ଏହିଭଳି ଜ୍ଞାନ କୌଣସି କାର୍ଯ୍ୟରେ ଲାଗେ ନାହିଁ । ଜ୍ଞାନ ତାକୁ କୁହାଯାଏ, ଯାହା ଶ୍ରୁତି-ଯୁକ୍ତି-ଅନୁଭୂତି ସିଦ୍ଧ ହୋଇଥିବ । ଭଗବାନ୍ କହୁଛନ୍ତି 'ମାୟାମାତ୍ରମିଦଂଜ୍ଞାତ୍ୱା' ଏହି ସବୁକିଛି ମାୟାର ଖେଳ, ଏହା ଯେଉଁ ଭଳି ଦେଖାଯାଏ, ତାହା ସେପରି ନୁହେଁ । ତାକୁ ଏହିଭଳି ରୂପରେ ଜାଣି ଶେଷରେ ଏହିଜ୍ଞାନକୁ ମୋ ଠାରେ ସନ୍ନ୍ୟାସ କରି ଦେବା ଉଚିତ ଅର୍ଥାତ ଏହି ଜ୍ଞାନର ଅଭିମାନ କରିବା ଉଚିତ୍ ନୁହେଁ । ଭଗବତ୍ ସ୍ୱରୂପ ହେବା ଉଚିତ । ଏଠାରେ ଭଗବାନ ଏକ ବହୁତ ବଡ କଥା କହିଛନ୍ତି । କହୁଛନ୍ତି -

**ଜ୍ଞାନୀ ପ୍ରିୟତମୋଽତୋ ମେ ଜ୍ଞାନେନାସୌ ବିଭର୍ତି ମାମ୍** ॥ (୧୧.୧୯.୩)

ଜ୍ଞାନୀକୁ ମୋ ଅତିରିକ୍ତ ଅନ୍ୟ କୌଣସି ବସ୍ତୁ ପ୍ରିୟ ନୁହେଁ, କୌଣସି ବସ୍ତୁକୁ ସେ ଋହେଁ ନାହିଁ । ମୁଁ ହିଁ ତାର ଏକମାତ୍ର ଇଷ୍ଟ । ସେ ମୋତେ ଅତ୍ୟଧିକ ପ୍ରେମ କରେ, ଏବଂ ଏହି କାରଣରୁ ସେ ସମସ୍ତଙ୍କୁ (କାହିଁକି ନା ମୁଁ ହିଁ ସମସ୍ତଙ୍କର ହୃଦୟରେ ନିବାସ କରିଥାଏ ।) ପ୍ରେମ କରେ । ସେଥିପାଇଁ ସେ ମୋତେ ସବୁଠାରୁ ପ୍ରିୟ। ଜ୍ଞାନର ସର୍ବତ୍ର ପ୍ରସାର କରି ସେ ଜ୍ଞାନ ଦ୍ୱାରା ମୋର ପୋଷଣ କରିଥାଏ । ହେ ଉଦ୍ଧବ, ତୁମେ ଏହି କଥାକୁ ଭଲ ଭାବରେ ଜାଣିନିଅ ଯେ ଜଗତର ଆଦି-ମଧ୍ୟ-ଅନ୍ତ ସବୁ କିଛି କେବଳ ମୁଁ ହିଁ ଅଟେ ।

ଏହାପରେ ଉଦ୍ଧବ ଭଗବାନଙ୍କୁ କହୁଛନ୍ତି - ଆପଣ ମୋତେ ବୁଝାଇ କରି କହିଲେ ଯେ ଶୁଦ୍ଧଜ୍ଞାନର ସ୍ୱରୂପଟି କଣ ? କିନ୍ତୁ ଏବେ ମୋତେ ବୁଝାଇ କରି କୁହନ୍ତୁ ଯେ- ଶୁଦ୍ଧଭକ୍ତି କଣ ? ଭଗବାନ କହୁଛନ୍ତି - **'ଭକ୍ତିଯୋଗଃ ପୁରା ଏବ ଭକ୍ତଃ'** ଭକ୍ତିଯୋଗ ତ ମୁଁ ବର୍ଣ୍ଣନ କରିସାରିଛି । ପରନ୍ତୁ ମୋର ବଚନକୁ ଶୁଣି ତୁମେ ପ୍ରସନ୍ନ ହେଉଅଛ, ସେଥିପାଇଁ ମୁଁ ତୁମକୁ ପୁଣି ଶୁଣାଉଅଛି । ଭକ୍ତିର ପ୍ରାରମ୍ଭ 'ଶ୍ରଦ୍ଧା'ରୁ ହିଁ ହୋଇଥାଏ । ଆମ୍ଭେ ପ୍ରଥମରୁ ଦେଖିଛନ୍ତି ଯେ ସର୍ବପ୍ରଥମ ତ ମନୁଷ୍ୟକୁ ମହାପୁରୁଷମାନଙ୍କର ସେବା କରିବା ଉଚିତ୍ । ଏହାର ଫଳସ୍ୱରୂପ ଭଗବତ୍ କଥା ଶ୍ରବଣ କରିବାର ଅବସର ମିଳିଥାଏ । ଏବଂ ପୁଣି **'କାୟେନ ବାଚ ମନସେନ୍ଦ୍ରିୟୈର୍ବା'** ପୂର୍ବ କଥିତ ଭାଗବତ ଧର୍ମାନୁସାରେ ଯାହା କିଛି ପ୍ରାପ୍ତ ହୁଏ, ତୁମେ ଯାହା କିଛି କରୁଛ, ସେ ସବୁକିଛି ମୋତେ ହିଁ ଅର୍ପଣ କରିଦିଅ । ଏହା ପରେ ଏଠାରେ ଭଗବାନ୍ ଧର୍ମ, ଜ୍ଞାନ ଏବଂ ବୈରାଗ୍ୟକୁ ଗୋଟିଏ ଶ୍ଳୋକରେ ପରିଭାଷିତ କରିଛନ୍ତି ।

**ଧର୍ମୋ ମଦ୍ଭକ୍ତିକୃତ୍ ପ୍ରୋକ୍ତୋ ଜ୍ଞାନଂ ଚୈକାତ୍ମ୍ୟଦର୍ଶନମ୍ ।**
**ଗୁଣେଷ୍ୱସଙ୍ଗୋ ବୈରାଗ୍ୟମୈଶ୍ୱର୍ଯ୍ୟଂ ଚାଣିମାଦୟଃ** ॥ (୧୧.୧୯.୨୭)

**'ଧର୍ମୋ ମଦ୍‌ଭକ୍ତିକୃତ'**- ଧର୍ମ ତାକୁ କୁହାଯାଏ ଯାହା ହୃଦୟରେ ଭକ୍ତି ପ୍ରାପ୍ତ କରାଏ।

**'ଜ୍ଞାନଂ ଚୈକାତ୍ମ୍ୟ ଦର୍ଶନମ୍'** - ଭୂତ ମାତ୍ରକେ ଏକ ହିଁ ଆତ୍ମା ବ୍ୟାପ୍ତ ଅଛି, ଏଭଳି ଦର୍ଶନକୁ ଜ୍ଞାନ କୁହାଯାଏ ।

**'ଗୁଣେଷୁ ଅସଙ୍ଗଃ ବୈରାଗ୍ୟମ୍'**- ପ୍ରକୃତିର ଗୁଣଠାରୁ ଅସଙ୍ଗ ରହିବା ହିଁ ବୈରାଗ୍ୟ ଅଟେ ।

ଏବେ ସରଳ ଶବ୍ଦରେ କହିବାକୁ ଗଲେ କଥା କେବଳ ଏତିକି ଯେ ମନରେ ସଦା-ସର୍ବଦା ସତ୍ତ୍ୱଗୁଣ, ରଜୋଗୁଣ ତଥା ତମୋଗୁଣ ଆସନ୍ତି ଏବଂ ଚାଲିଯାଆନ୍ତି, ଆମେ ସେହି ଗୁଣର ପ୍ରଭାବରେ ପ୍ରଭାବିତ ହୋଇଥାଆନ୍ତି ଏବଂ ତାଦାତ୍ମ୍ୟ ମଧ୍ୟ କରିଥାଆନ୍ତି । ସେହି ଗୁଣକୁ ଇଂରାଜୀରେ ମୂଡ୍ କହନ୍ତି ଏବଂ ଏହି 'ମୂଡ୍' ବଦଳୁଥାଏ । ଆମର ଯେଉଁଭଳି ମୂଡ୍ ଆସେ, ଆମେ ସେହିପରି ହୋଇଯାଇଥାଉ । ସେଥିପାଇଁ କହନ୍ତି- ଇଏ ଅତି ମୂଡୀ ଲୋକଟାଏ । ମୂଡୀ ବ୍ୟକ୍ତିକୁ ହିଁ ମୂଢ଼ କହନ୍ତି । ଯିଏ 'ମୂଡ୍'ର ନିୟନ୍ତ୍ରଣରେ ରହନ୍ତି, ତାକୁ ହିଁ ମୂଢ଼ କହନ୍ତି । କିନ୍ତୁ ଯେତେବେଳେ ଗୁଣଠାରୁ ଅନାସକ୍ତି ହୋଇଯାଏ, ସେତେବେଳେ ମନରେ ବୃତ୍ତି ଆସିଲେ ମଧ୍ୟ ତା ସହିତ ତାଦାତ୍ମ୍ୟ ହୋଇ ନ ଥାଏ । ଏହା ହେଉଛି, ବାସ୍ତବିକ ବୈରାଗ୍ୟ । ରାଗି ହୋଇଯିବା, କାମୀ ହୋଇଯିବା, କ୍ରୋଧୀ ହୋଇଯିବା - ଏହାସବୁ ବୈରାଗ୍ୟର ଅଭାବ ଯୋଗୁଁ ହିଁ ହୋଇଁଥାଏ । କୌପୀନଧାରୀ ହୋଇଯିବା, ସମସ୍ତ ଅଙ୍ଗରେ ଭସ୍ମ-ବିଭୂତି ଲଗାଇ ଗୋଟିଏ ପଥର ଉପରେ ବସିଯିବା (ପଥର ଭଳି ହୋଇଯିବା) ଏହି ସବୁର ନାମ ବୈରାଗ୍ୟ ନୁହେଁ । ଏହାପରେ ଭଗବାନ ଇନ୍ଦ୍ରିୟ ତଥା ମନର ସଂଯମର ବର୍ଣ୍ଣନ କରୁଛନ୍ତି ଏବଂ ଏକ ସୁନ୍ଦର କଥା ମଧ୍ୟ କହୁଛନ୍ତି - ମୂର୍ଖ ପୁରୁଷର ପରିଭାଷା ଦେଉଛନ୍ତି । **'ମୂର୍ଖୋ ଦେହାଦ୍ୟହଂ ବୁଦ୍ଧିଃ'** ଦେହକୁ ହିଁ 'ମୁଁ' ବିଚାର କରୁଥିବା ଲୋକ ହିଁ ବାସ୍ତବରେ ମୂର୍ଖ ଅଟେ । ଏହାପରେ ଭଗବତ୍ ପ୍ରାପ୍ତିର ମାର୍ଗ ବିଷୟରେ କହୁଛନ୍ତି ଯେ ମୋ ଦ୍ୱାରା ବର୍ଣ୍ଣନ କରାଯାଇଥିବା ବେଦମାର୍ଗ ହିଁ ଭଗବତ୍ ପ୍ରାପ୍ତିର ମାର୍ଗ ଅଟେ ।

ଏବେ ଦେଖନ୍ତୁ ଯେ ଦୁଃଖ କାହାକୁ କହନ୍ତି ? ଦୁଃଖର ପରିଭାଷା କଣ ?

**ଦୁଃଖଂ କାମସୁଖାପେକ୍ଷା ପଣ୍ଡିତୋ ବନ୍ଧମୋକ୍ଷବିତ୍ ॥** (୧୧.୧୬.୪୧)

ବିଷୟରୁ ସୁଖର ଅପେକ୍ଷା କରିବା ହିଁ ଦୁଃଖ ଅଟେ । ଭୋଗ କରିବା ଦ୍ୱାରା, ଖାଇବା-ପିଇବା ଦ୍ୱାରା ଆମେ ସୁଖୀ ହୋଇଯିବା, ଏହା ଭାବିବା ହିଁ ଦୁଃଖ ପୁଣି କହୁଛନ୍ତି - ଦରିଦ୍ର କିଏ ? ଗରୀବ କିଏ ? ଆମେ ଭାବୁ ଯେ ଯାହା ପାଖରେ ଧନ ନାହିଁ ସେ ଦରିଦ୍ର । କିନ୍ତୁ ଏଠାରେ ଦରିଦ୍ରର ସୁନ୍ଦର ପରିଭାଷା ଦିଆଯାଇଛି । **'ଦରିଦ୍ରୋ ୟସ୍ତ୍ୱସନ୍ତୁଷ୍ଟଃ'** (୧୧.୧୬.୪୪) ସିଏ ଦରିଦ୍ର ବ୍ୟକ୍ତି ଯିଏ ସଦା ସର୍ବଦା ଅସନ୍ତୁଷ୍ଟ ରହେ । ଅସନ୍ତୁଷ୍ଟ ବ୍ୟକ୍ତି ଗରୀବ ନା ନାହିଁ ? ବହୁତ କିଛି ମିଳିଗଲା ପରେ ମଧ୍ୟ ଏହା ନାହିଁ, ତାହା ନାହିଁ - ଏଭଳି ଲାଗିବା ହିଁ ଦାରିଦ୍ର୍ୟ ଅଟେ । ବାଳକ ସମୟରେ ଯେତେବେଳେ

ଆମେ କହୁ - ଏହା ନାହିଁ, ତାହା ନାହିଁ, ତେବେ ବାପା ଆମକୁ ରାଗୁଥିଲେ ଏବଂ କହୁଥିଲେ ନାହିଁ-ନାହିଁ କାହିଁକି କହୁଛ। ଏହା ଦରିଦ୍ରତାର, ଅସନ୍ତୁଷ୍ଟିର ଲକ୍ଷଣ ଅଟେ ।

କୃପଣ ଅଥବା ଦୟାର ପାତ୍ର କିଏ? **'କୃପଣୋ ଯୋଽଜିତେନ୍ଦ୍ରିୟଃ'** (୧୧.୧୯.୪୪) ଦୟାର ପାତ୍ର ହେଉଛି ସେହି, ଯାହାର ନିଜ ଇନ୍ଦ୍ରିୟ ଉପରେ ସଂଯମ ନାହିଁ । ଅଜିତେନ୍ଦ୍ରିୟ ତ ବସ୍ତ୍ର ବିହୀନଠାରୁ ମଧ୍ୟ ଅଧିକ ଦୟାର ପାତ୍ର ଅଟେ । ବାସ୍ତବରେ ସେହି ହେଉଛି କୃପଣ ।

ଈଶ୍ୱର କିଏ? ଈଶ୍ୱରଙ୍କର ପରିଭାଷା କଣ? **'ଗୁଣେଷ୍ୱସକ୍ତଧୀରୀଶୋ'** (୧୧.୧୯.୪୪) ଯିଏ ପ୍ରକୃତିର ଗୁଣଠାରୁ ନିତାନ୍ତ ଅନାସକ୍ତ ରହିଥାଏ, ସେ ହିଁ ସମର୍ଥ ହୋଇଥାଏ, ଶକ୍ତିଶାଳୀ ପୁରୁଷ ହୋଇଥାଏ, ଈଶ୍ୱର ହୋଇଯାଏ । ଅନ୍ୟ ଅର୍ଥରେ ବୈରାଗ୍ୟବାନ୍ ପୁରୁଷକୁ ହିଁ ଈଶ୍ୱର କୁହାଯାଏ ଏବଂ ଯିଏ ଗୁଣରେ ଆସକ୍ତ ହୋଇଯାଏ, ତାକୁ ଜୀବ କୁହାଯାଏ ।

ଏବେ ଭଗବାନ୍ ଏକ ସୁନ୍ଦର ତଥା ଏକ ଉଚ୍ଚସ୍ତରର କଥା କହୁଛନ୍ତି। କହିଲେ ଗୁଣ-ଦୋଷର କଥା ମୁଁ କେଉଁ ପର୍ଯ୍ୟନ୍ତ ବର୍ଣ୍ଣନ କରିବି ? କାହାଠାରେ ଗୁଣ-ଦୋଷ ଦେଖିବା ହିଁ ଦୋଷ ଅଟେ, ଏବଂ ଗୁଣ-ଦୋଷ ଉଭୟଙ୍କୁ ନ ଦେଖିବା ହିଁ ସବୁଠାରୁ ବଡ ଗୁଣ । ଭଲ କଣ, ମନ୍ଦ କଣ - ଏହା କେଉଁ ପର୍ଯ୍ୟନ୍ତ ଦେଖୁଥିବ ? ଏହି ଭାବରୁ ଟିକିଏ ଉପରକୁ ଉଠିଯାଅ।

## ଜ୍ଞାନଯୋଗ, କର୍ମଯୋଗ ଏବଂ ଭକ୍ତିଯୋଗ

ଏହାପରେ ଭଗବାନ ଜ୍ଞାନଯୋଗ, କର୍ମଯୋଗ, ତଥା ଭକ୍ତିଯୋଗର ବର୍ଣ୍ଣନ କରୁଛନ୍ତି, ଏହାର ଲକ୍ଷଣ କହୁଛନ୍ତି । ଏଠାରେ ଧ୍ୟାନ ଦେବାର କଥା ହେଉଛି ଯେ ଏହି ତିନୋଟିଯାକ ହେଉଛି ସାଧନ ରୂପ । ପ୍ରାୟଃ ଲୋକମାନଙ୍କର ମନରେ ପ୍ରଶ୍ନ ଉଠେ ଯେ ଆମ ନିମନ୍ତେ କେଉଁ ଯୋଗଟି ଉତ୍ତମ ?

**ନିର୍ବିଣ୍ଣାନାଂ ଜ୍ଞାନଯୋଗୋ ନ୍ୟାସିନାମିହ କର୍ମସୁ ॥** (୧୧.୨୦.୭)

ଯାହାଙ୍କୁ ବିଷୟରୁ ଶୁଦ୍ଧ ବୈରାଗ୍ୟ ହୋଇଗଲାଣି, ତାଙ୍କର ଅଧିକାର **ଜ୍ଞାନଯୋଗ**ରେ ଅଛି । ସେମାନଙ୍କୁ ଅନ୍ୟ କର୍ମରେ ବାନ୍ଧି ହେବା ଛାଡି ବିଚାର କରିବା ଉଚିତ୍ । ସତ୍ୟ ବୈରାଗ୍ୟର ଉଦୟ ହେଲେ ହିଁ ବ୍ୟକ୍ତି ସ୍ୱତଃ ହିଁ ଜ୍ଞାନ ମାର୍ଗରେ ପ୍ରବୃତ୍ତ

ହୋଇଯିବ । ସେଥିପାଇଁ ତାଙ୍କୁ ଆଉ କିଛି କରିବାର ଆବଶ୍ୟକତା ପଡେ ନାହିଁ । ପ୍ରବଳ ବୈରାଗ୍ୟ ନିଶ୍ଚୟ ହିଁ ତୀବ୍ର ଜିଜ୍ଞାସାକୁ ଜନ୍ମ ଦେଇଥାଏ ।

**ତେଷ୍ୱନିର୍ବିଣ୍ଣଚିତ୍ତାନାଂ କର୍ମଯୋଗସ୍ତୁ କାମିନାମ୍ ॥** (୧୧.୨୦.୭)

କିନ୍ତୁ ଯାହାର ବିଷୟଠାରୁ ବୈରାଗ୍ୟ ହୋଇ ନାହିଁ, ଘର ଛାଡିବାର ସାହସ ନାହିଁ, ଭୟ ଲାଗୁଥାଏ, ଏବଂ ଏହି ବିଚାର କରୁଥାଏ, ଯେ ମୁଁ ଯିବି ତ କେଉଁଠିକୁ ଯିବି ? ସେମାନଙ୍କ ନିମନ୍ତେ କୁହାଯାଇଛି - ଏବେ ତୁମେ କୁଆଡେ ହେଲେ ଯାଅ ନାହିଁ, ଘରେ ହିଁ ରୁହ । ଏଭଳି ଲୋକ ନିମନ୍ତେ **କର୍ମଯୋଗ** ହିଁ ଶ୍ରେଷ୍ଠ ମାର୍ଗ ।

**ନ ନିର୍ବିଣ୍ଣୋ ନାତିସକ୍ତୋ ଭକ୍ତିଯୋଗୋଽସ୍ୟ ସିଦ୍ଧିଦଃ ॥** (୧୧.୨୦.୮

ଯିଏ ପୂର୍ଣ୍ଣ ବିରକ୍ତ ନୁହନ୍ତି, ଏବଂ ଯାହାର କର୍ମରେ ମଧ୍ୟ ଅଧିକ ଆସକ୍ତି ନାହିଁ, ଏଭଳି ଲୋକମାନଙ୍କ ନିମନ୍ତେ ଭଗବାନ୍ ଭକ୍ତିଯୋଗ କହୁଛନ୍ତି । ତେବେ ଯିଏ ନିତାନ୍ତ ଅନାସକ୍ତ-ବିରକ୍ତ ପୁରୁଷ ଅଟନ୍ତି, ତାଙ୍କର ନିମନ୍ତେ ଜ୍ଞାନଯୋଗ, ଯିଏ ଆସକ୍ତ ତାଙ୍କର ନିମନ୍ତେ କର୍ମଯୋଗ, ତଥା ଯିଏ ପୂର୍ଣ୍ଣ ବିରକ୍ତି ନୁହନ୍ତି, କିନ୍ତୁ ବହୁତ ଆସକ୍ତ ମଧ୍ୟ ନୁହନ୍ତି, ସେମାନଙ୍କ ନିମନ୍ତେ ଭକ୍ତିଯୋଗର ମାର୍ଗ ବର୍ଣ୍ଣନ କରିଛନ୍ତି । ଏଠାରେ ଏହା ମଧ୍ୟ ବର୍ଣ୍ଣନ ଅଛି ଯେ କର୍ମ କେଉଁ ପର୍ଯ୍ୟନ୍ତ କରିବା ଉଚିତ୍ ?

**ତାବତ୍ କର୍ମାଣି କୁର୍ବୀତ ନ ନିର୍ବିଦ୍ୟେତ ଯାବତା ।**

**ମତ୍କଥାଶ୍ରବଣାଦୌ ବା ଶ୍ରଦ୍ଧା ଯାବନ୍ନ ଜାୟତେ ॥** (୧୧.୨୦.୬)

ବ୍ୟକ୍ତିକୁ ସେ ପର୍ଯ୍ୟନ୍ତ ଗୃହସ୍ଥାଶ୍ରମରେ ରହି କର୍ମ କରିବା ଆବଶ୍ୟକ ଯେଉଁ ପର୍ଯ୍ୟନ୍ତ ବିଷୟରୁ ବୈରାଗ୍ୟ ହୋଇନାହିଁ । ବିଧେୟାତ୍ମକ ରୀତିରେ କହିଲେ ଭଗବାନଙ୍କର କଥାରେ ଯେଉଁ ପର୍ଯ୍ୟନ୍ତ ଶ୍ରଦ୍ଧା ଏବଂ ରତି ହୋଇନାହିଁ, ସେ ପର୍ଯ୍ୟନ୍ତ କର୍ମର ସ୍ଥିତି ଅଛି । ଶ୍ରଦ୍ଧା ଏବଂ ରତି ହୋଇଗଲା ପରେ ବ୍ୟକ୍ତିକୁ ଅଧିକ କର୍ମକୁ ବଢାଇବା ଉଚିତ୍ ନୁହେଁ । ଏହି କଥାକୁ ଗୋସ୍ୱାମୀଜୀ ମଧ୍ୟ ରାମଚରିତ ମାନସରେ କହିଛନ୍ତି -

**ଛଠ ଦମ ସୀଲ ବିରତି ବହୁ କର୍ମା ।**

(ଶ୍ରୀରାମଚରିତମାନସ ୩.୩୫.୨)

**ଭଗବାନ କହୁଛନ୍ତି- ଏହି ସଂସାରରେ ଥାଇ ନିଷ୍ଠାପୂର୍ବକ ସ୍ୱଧର୍ମର ପାଳନ କରିଲେ ଧୀରେ ଧୀରେ ଜ୍ଞାନ ମଧ୍ୟ ପ୍ରାପ୍ତ ହେବ ଏବଂ ଭକ୍ତି ମଧ୍ୟ ପ୍ରାପ୍ତ ହେବ ।**

**॥ ୭୬୩ ॥**

ଏହାପରେ ଏକ ପ୍ରସିଦ୍ଧ ଶ୍ଳୋକରେ ଭଗବାନ କହୁଛନ୍ତି -

**ନୃଦେହମାଦ୍ୟଂ ସୁଲଭଂ ସୁଦୁର୍ଲଭଂ ପ୍ଳବଂ ସୁକଳ୍ପଂ ଗୁରୁକର୍ଣ୍ଣଧାରମ୍ ।**
**ମୟାନୁକୁଲେନ ନଭସ୍ୱତେରିତଂ ପୁମାନ୍ ଭବାବ୍ଧିଂ ନ ତରେତ୍ ସ ଆତ୍ମହା ॥**

(୧୧.୨୦.୧୭)

ଏହି ମନୁଷ୍ୟ ଜନ୍ମ ଅତି ଦୁର୍ଲଭ ଅଟେ, କିନ୍ତୁ ଏବେ ତାହା ଆପଣଙ୍କୁ ପ୍ରାପ୍ତ ହୋଇସାରିଛି, ତେଣୁ ଆପଣଙ୍କ ନିମନ୍ତେ ଏହା ସୁଲଭ ହୋଇଯାଇଛି । ଭବସାଗର, ସଂସାର ସାଗରକୁ ପାର ହେବା ନିମନ୍ତେ ଦେହରୂପୀ ନୌକା ତ ମିଳିସାରିଚି, ପରନ୍ତୁ କର୍ଣ୍ଣଧାର - ନୌକା ଚାଳକଟି କିଏ ? କହୁଛନ୍ତି - **'ଗୁରୁ କର୍ଣ୍ଣ ଧାରମ୍'** ଗୁରୁ ହିଁ କର୍ଣ୍ଣଧାର ଅଟନ୍ତି, ସେ ମଧ୍ୟ ଆପଣଙ୍କୁ ମିଳିସାରିଛନ୍ତି । ଏବେ ଦେଖନ୍ତୁ, ଯଦି ସମୁଦ୍ରରେ ତୋଫାନ୍ ଆସିଯାଏ ଏବଂ ବାୟୁ ପ୍ରତିକୂଳ ବହିବାକୁ ଲାଗେ, ତେବେ ଏହା ବଡ କଠିନ ହେବ । କିନ୍ତୁ ଆମ ନିମନ୍ତେ ତ **'ମୟାନୁକୁଲେନ ନଭସ୍ୱତେରିତଂ'** ଭଗବାନଙ୍କର କୃପାରୂପୀ ବାୟୁ ମଧ୍ୟ ଅନୁକୂଳ ଅଟେ । ଦେଖନ୍ତୁ, ନୌକା ମିଳିଯାଇଛି, ନାବିକ ମଧ୍ୟ ମିଳିଗଲେ ଏବଂ ତା ସହିତ ଭଗବାନଙ୍କର କୃପାରୂପୀ ଅନୁକୂଳ ବାୟୁ ମଧ୍ୟ ମିଳିଗଲାଣି, ଏହାପରେ ଯଦି କେହି ବ୍ୟକ୍ତି ସଂସାର ସମୁଦ୍ରକୁ ପାର କରିବା ନିମନ୍ତେ ପ୍ରୟାସ ନ କରିବ - **'ପୁମାନ୍ ଭବାବ୍ଧିଂ ନ ତରେତ୍ ସ ଆତ୍ମହା ।'** (୧୧.୨୦.୧୭) ତେବେ ସେ ଆତ୍ମଘାତୀ ଅଟେ । ଏଠାରେ ଆତ୍ମହତ୍ୟାର ତାତ୍ପର୍ଯ୍ୟ, କେବଳ ଶରୀରର ଅନ୍ତ କରି ଦେବା ନୁହେଁ । ଏତେ ସୁନ୍ଦର ଏବଂ ସୁଯୋଗ୍ୟ ଦେହ ପ୍ରାପ୍ତ କଲା ପରେ ମଧ୍ୟ ଭଗବାନଙ୍କୁ ପ୍ରାପ୍ତ ନ କରି ପାରିବା ବ୍ୟକ୍ତି ହିଁ ବାସ୍ତବରେ ଆତ୍ମଘାତୀ ଅଟେ ।

ଏହାପରେ ଭଗବାନ ଏକ ସୁନ୍ଦର କଥା କହୁଛନ୍ତି ଯେ ଆମକୁ ଯେତେବେଳେ କୌଣସି ସାଧନ ପ୍ରାପ୍ତ ହୋଇଯାଏ, ତେବେ ସେଥିରେ ସତତ ନିଷ୍ଠା ରଖିବା ଉଚିତ୍ । ଯେମିତି ଥରେ ଯଦି ଭଗବାନଙ୍କ ନାମ ଜପ କରିବାର ନିଶ୍ଚୟ କରିଲେ ତେବେ ସେଥିରେ ନିଷ୍ଠାବାନ୍ ହୋଇ ରହିବା ଉଚିତ୍ ।

**ଯଦିକୁର୍ଯ୍ୟାତ୍ ପ୍ରମାଦେନ ଯୋଗୀକର୍ମ ବିଗର୍ହିତମ୍ ।**

**ଯୋଗେନୈବ ଦହେଦଂହୋ ନାନ୍ୟଭତ୍ର କଦାଚନ ॥** (୧୧.୨୦.୨୫)

ଯେପରି ଆପଣ ପୂଜା କରୁଛନ୍ତି ତ ପୂଜା ହିଁ କରନ୍ତୁ । ଅନ୍ୟ କୌଣସି ଯାଗ-ଯଜ୍ଞ କରିବାର ଆବଶ୍ୟକତା ନାହିଁ । ଶ୍ରେଷ୍ଠ କଥା ହେଲା ଯେ ସେଥିରେ କୌଣସି ଭୂଲ ନ ଥାଉ । ପରନ୍ତୁ, ସେଥିରେ କୌଣସି ଅପରାଧ ହୋଇଗଲେ, ପାପ ହୋଇଗଲେ, ଅଥବା ପ୍ରମାଦ ହୋଇଗଲେ, ତେବେ ପଶ୍ଚାତାପ କରି ନେବା ଉଚିତ୍ ଏବଂ ସେହି ସାଧନା ଦ୍ୱାରା ସେହି ପାପକୁ ଦୂର କରିନେବା ଉଚିତ୍ । ଅନ୍ୟ ନୂଆ-ନୂଆ କର୍ମ କରିବାର କୌଣସି ଆବଶ୍ୟକତା ନାହିଁ । ପାୟଃ ଦେଖାଯାଏ ଯେ ସାଧନାରେ ଅପରାଧ ହୋଇଗଲେ, ଲୋକମାନେ ଅନେକ ପ୍ରକାରର ସମାଧାନ କହି ଥାଆନ୍ତି - ଏହା କରନ୍ତୁ, ତାହା କରନ୍ତୁ ଆଦି । ଏଥିରେ ନିଜର ସାଧନା ଛାଡି ହୋଇଯାଏ ।

ଯେପରି ନାମଜପ ଅଥବା ପୂଜା ଛାଡିହୋଇ ଯାଏ । ଏପରି ଆମ୍ଭେମାନେ ସେତେବେଳେ କରିଥାଉ, ଯେତେବେଳେ ଆମେ ନିଜର ସାଧନା ଉପରେ ପୂର୍ଣ୍ଣ ବିଶ୍ୱାସ କରିପାରୁନି ଯେ ତଦ୍ୱାରା କିଛି ସମ୍ଭବ ହେବ କି ନାହିଁ ? ଅନ୍ୟ କେହି ନିଜର ପୂର୍ବ ସାଧନାକୁ ଛାଡି ନାମ ଜପ କରିବାକୁ ଲାଗନ୍ତି, ଏବଂ ନାମଜପ କରୁଥିବା ବ୍ୟକ୍ତି ଜପ ଛାଡି ଅନ୍ୟ କିଛି କରିବାକୁ ଲାଗିଯାଏ । ଏଭଳି କରିବା ଉଚିତ୍ ନୁହେଁ ।

**ସ୍ୱେ ସ୍ୱେଽଧିକାରେ ଯା ନିଷ୍ଠା ସ ଗୁଣଃ ପରିକୀର୍ତିତଃ ॥** (୧୧.୨୦.୨୬)

ନିଜ-ନିଜର ଅଧିକାର ଅନୁରୂପ ଯାହାର ଯେଉଁ ସାଧନାରେ ନିଷ୍ଠା ହୋଇଯାଇଛି । ତାହା ହିଁ ତାର ନିମନ୍ତେ ଗୁଣ କୁହାଯାଇଛି ।

**ସର୍ବଂ ମଭକ୍ତି ଯୋଗେନ ମଭକ୍ତୋ ଲଭତେଽଞ୍ଜସା ।**

**ସ୍ୱର୍ଗାପବର୍ଗ ମଦ୍ଧାମ କଥଞ୍ଚିଦ୍ ଯଦି ବାଞ୍ଛତି ॥** (୧୧.୨୦.୩୩)

ଭଗବାନ କହୁଛନ୍ତି, "ମୋର ଭକ୍ତି ଦ୍ୱାରା ମନୁଷ୍ୟ ଯାହା ଚାହିଁଲେ ତାହା ପ୍ରାପ୍ତ କରିପାରିବ । ସେ ସ୍ୱର୍ଗଲୋକକୁ ଯିବାକୁ ଚାହୁଁ ଅଥବା ଯେଉଁଠି ରହିଁଲେ ସେଠି ଯାଇପାରିବ । କିନ୍ତୁ ଯେଉଁ ସାଧୁ ଭକ୍ତ, ସେମାନେ କିଛି ଚାହାନ୍ତି ନାହିଁ ।"

**ନ କିଞ୍ଚିତ ସାଧବୋ ଧୀରା ଭକ୍ତା ହ୍ୟେକାନ୍ତିନୋ ମମ ।**
**ବାଞ୍ଛନ୍ତ୍ୟପି ମୟା ଦତ୍ତଂ କୈବଲ୍ୟମପୁନର୍ଭବମ୍ ॥** (୧୧.୨୦.୩୪)

"ମୁଁ ସ୍ୱୟଂ ଯଦି ସେମାନଙ୍କୁ ମୋକ୍ଷ ଦେବାକୁ ଚାହେଁ - ତେବେ ତାକୁ ମଧ୍ୟ ସେମାନେ ନିଅନ୍ତି ନାହିଁ ।" ଏଠାରେ ଧ୍ୟାନ ଦେବାର ଆବଶ୍ୟକତା ଯେ ଭଗବାନଙ୍କ ଠାରୁ କିଛି ନ ଚାହିଁବା ତ ଠିକ୍, ପରନ୍ତୁ ନ ଚାହିଁବାର ଅଭିମାନ କରିବା ଠିକ୍ ନୁହେଁ । ଭଗବାନ କହୁଛନ୍ତି - ଏହିଭଳି ଭାବରେ ଯିଏ ସତ୍‌ମାର୍ଗରେ ଚାଲିବ, ତାକୁ ମୋର ପ୍ରାପ୍ତି ହୋଇଯିବ। ଏହା ହେଉଛି ଭକ୍ତି ସାଧନ । ଏବେ ସାଧକକୁ ଦେଖିବା ଉଚିତ୍ ଯେ ମୋ ଭିତରେ କେତେ ବୈରାଗ୍ୟ ଅଛି ଏବଂ ମୋର ନିମନ୍ତେ କେଉଁ ମାର୍ଗ ଉଚିତ୍ ହେବ । ସାମାନ୍ୟତଃ ଲୋକମାନଙ୍କର ଭିତରେ ଅଳ୍ପ ବୈରାଗ୍ୟ ହୋଇଥାଏ ଏବଂ ଅଳ୍ପ ରାଗ ମଧ୍ୟ ହୋଇଥାଏ। ଏମାନଙ୍କ ନିମନ୍ତେ ଭକ୍ତିଯୋଗ ହିଁ ଉଚିତ୍ ସାଧନ ଅଟେ ।

## ଗୁଣ-ଦୋଷର ବିବେଚନ

ଏହା ପର ଅଧ୍ୟାୟରେ ଦେଶ-କାଳ-ଦ୍ରବ୍ୟ ତଥା ଗୁଣ-ଦୋଷର ବିବେଚନ କରାଯାଇଛି । ଏଠାରେ ବିଶେଷ ରୂପରେ ବୁଝିବାର କଥା କେବଳ ଏତିକି ଯେ କେଉଁ ଦେଶ, କେଉଁ କାଳ, ତଥା କେଉଁ ଦ୍ରବ୍ୟ ପବିତ୍ର, ଯେଉଁ ବସ୍ତୁ ଆମର ମନକୁ ଭଗବାନଙ୍କର ଆଡକୁ ନେଇଯାଏ, ତାହା ପବିତ୍ର ଏବଂ ଯାହା ଆମ୍ଭର ମନକୁ ଭଗବାନଙ୍କ ଠାରୁ ବିମୁଖ କରୁଥିବ, ତାହା ଅପବିତ୍ର । ମୁମ୍ବଇରେ ରହି ମଧ୍ୟ ଯଦି ଆମର ମନ ଭଗବାନଙ୍କ ଆଡକୁ ଯାଏ, ତେବେ ଆମ୍ଭ ନିମନ୍ତେ ମୁମ୍ବଇ ପବିତ୍ର ଅଟେ । ଯଦି ହରିଦ୍ୱାର ଅଥବା ଋଷିକେଶରେ ରହି ମଧ୍ୟ ମନରେ ମାଦକ ଦ୍ରବ୍ୟ ଆଦିର ବିଚାର ଆସୁଥିବ, ତେବେ ଆମ୍ଭ ନିମନ୍ତେ ସେ ସ୍ଥାନ ପବିତ୍ର ନୁହେଁ, ଯଦ୍ୟପି ଭୌତିକ ଦୃଷ୍ଟିରେ ସେ ସ୍ଥାନ ଅତି ପବିତ୍ର ଅଟେ ।

## ସାଂଖ୍ୟର ବିବେଚନ

ଏହାପରେ ଦ୍ୱାବିଂଶ ଅଧ୍ୟାୟରେ ସାଂଖ୍ୟତତ୍ତ୍ୱର ବିବେଚନ କରାଯାଇଛି । ଦେଖନ୍ତୁ, ସାଂଖ୍ୟତତ୍ତ୍ୱର ଅର୍ଥ ହେଉଛି ପ୍ରକୃତି-ପୁରୁଷର ବିବେକ, ଯେଉଁଠି ଚବିଶ ତତ୍ତ୍ୱର ବିବେଚନ କରାଯାଇଛି । ତୃତୀୟ ସ୍କନ୍ଧରେ କପିଳ ମୁନି ତଥା ମାତା ଦେବହୂତିଙ୍କ ସଂବାଦରେ ଏହାକୁ ଆମ୍ଭେ ଦେଖିଛନ୍ତି । ଉଦ୍ଧବ ପ୍ରଶ୍ନ ପଚାରୁଛନ୍ତି - ହେ ଭଗବାନ୍ ! ପ୍ରକୃତିର ତିନିଗୁଣ କାରଣରୁ ଆମର ମନରେ ବିଭିନ୍ନ ପ୍ରକାରର ବିଚାର - ବୃତ୍ତିଗୁଡିକ ଉତ୍ପନ୍ନ ହୋଇଥାନ୍ତି । ସେହି କାରଣରୁ ମନୁଷ୍ୟକୁ କେଉଁ କେଉଁ ପ୍ରକାରର ଶ୍ରେଷ୍ଠ ଅଥବା ନିମ୍ନ

ଗତି ପ୍ରାପ୍ତ ହୋଇଥାଏ – ଏହି କଥା ଆପଣ କୁହନ୍ତୁ । ଶ୍ରୀମଦ୍‌ଭଗବତ୍ ଗୀତାରେ ମଧ୍ୟ ଏହାର ବର୍ଣ୍ଣନ ବହୁତ ଭଲ ଭାବରେ କରାଯାଇଛି ।

**ଊର୍ଦ୍ଧ୍ୱଂ ଗଚ୍ଛନ୍ତି ସତ୍ତ୍ୱସ୍ଥା ମଧ୍ୟେ ତିଷ୍ଠନ୍ତି ରାଜସାଃ ।**

**ଜଘନ୍ୟ ଗୁଣବୃତ୍ତିସ୍ଥା ଅଧୋ ଗଚ୍ଛନ୍ତି ତାମସାଃ ॥** (ଭ.ଗୀତା ୧୪.୧୮)

ସେଠାରେ ଚଉଦ ଅଧ୍ୟାୟରେ କୁହାଯାଇଛି ଯେ ସାତ୍ତ୍ୱିକ ବୃତ୍ତି ଯୁକ୍ତ ବ୍ୟକ୍ତି – ସତ୍ତ୍ୱଗୁଣ ପ୍ରଧାନ ଲୋକମାନେ ଦେବଲୋକ ଆଦିକୁ ପ୍ରାପ୍ତ ହୁଅନ୍ତି । ରାଜସିକ ଗୁଣ ବ୍ୟକ୍ତି କର୍ମପ୍ରଧାନ ମନୁଷ୍ୟ ଯୋନୀରେ ଜନ୍ମ ନିଅନ୍ତି ଏବଂ ତମୋଗୁଣ ପ୍ରଧାନ ଲୋକମାନେ ପଶୁ ଆଦି ଯୋନିକୁ ପ୍ରାପ୍ତ କରନ୍ତି । ଏହିଭଳି ଭାବରେ ଗୀତାରେ କର୍ମମାନଙ୍କର ଗତି ବିଷୟରେ ମଧ୍ୟ ବର୍ଣ୍ଣନ କରାଯାଇଛି । ଭଗବାନ କହିଛନ୍ତି ଯେ ଆମ୍ଭେମାନେ ଯେଉଁଭଳି ବିଷୟର ଭାବନା କରୁ, ସେହିଭଳି ଗତିକୁ ପ୍ରାପ୍ତ କରିଥାଉ । ଦେଖନ୍ତୁ ଏହା ହେଉଛି ସରଳ ସିଦ୍ଧାନ୍ତ ଯେ ଜୀବନଯାକ ଆମ୍ଭେ ଯାହାର ଚିନ୍ତନ କରୁଛନ୍ତି, ତାର ଅନୁରୂପ ଆମର ସ୍ୱଭାବ,ବିଚାର ହୋଇଯାଏ ଏବଂ ମରଣ କାଳରେ ଯେଉଁଭଳି ବୃତ୍ତି, ବିଚାର ହୋଇଥିବ, ସେହି ଅନୁସାରେ ଆମର ଗତି ହେବ । ରାଜା ଭରତ ହରିଣ-ହରିଣ ହେଉଥିଲେ । ତେଣୁ ତାର ଫଳସ୍ୱରୂପ ତାଙ୍କୁ ହରିଣର ହିଁ ରୂପ ପ୍ରାପ୍ତ ହୋଇଗଲା ।

ବାସ୍ତବରେ ମରିବାର ପ୍ରତୀକ୍ଷା କରିବାର ମଧ୍ୟ ଆବଶ୍ୟକତା ନାହିଁ । ଆମେ ପ୍ରତ୍ୟେକ କ୍ଷଣ-କ୍ଷଣ ମରୁଛନ୍ତି । ମନରେ କ୍ରୋଧର ବିଚାର ଆସିଲା, ଏବଂ ଆମ୍ଭେମାନେ ତା ସହିତ ତାଦାତ୍ମ୍ୟ କରିଦେବାରୁ ଏକ କ୍ରୋଧୀ ବ୍ୟକ୍ତିର ଜନ୍ମ ହୋଇଗଲା, ଭୟର ବିଚାର ଆସିଲା, ତେବେ ଏକ ଭୟାଳୁ ବ୍ୟକ୍ତି ପ୍ରକଟ ହୋଇଗଲା । ଆମ ଭାଗବତ ଶାସ୍ତ୍ରରେ ଜନ୍ମ-ମରଣର ସିଧା କଥା କୁହାଯାଇଛି । ମନ ଭିତରେ ଆସୁଥିବା ବିଚାର (ବୃତ୍ତି) ସହିତ ତାଦାତ୍ମ୍ୟ କରି ନେବା ହିଁ 'ଜନ୍ମ' ଅଟେ । ଏଠାରେ ଆମ୍ଭେ ଗୋଟିଏ-ଗୋଟିଏ ବୃତ୍ତି ସହିତ ତାଦାତ୍ମ୍ୟ କରି ଦେଇଥାଉ । ଏବେ ଦେହ ସହିତ ତାଦାତ୍ମ୍ୟ ହୋଇଗଲେ ଦେହଧାରୀ ହୋଇଯାଏ । ଯଦି ସେ ପୁରୁଷ ଦେହ ହୋଇଥିବ ତ ପୁରୁଷ ହୋଇଯିବ ଅନ୍ୟଥା ଯଦି ସ୍ତ୍ରୀ ଦେହ ହୋଇଥିବ, ତେବେ ସେ ସ୍ତ୍ରୀ ହୋଇଯାଏ । ଏହା ହିଁ ଜନ୍ମ । ଜୀବ ନା ତ ପୁରୁଷ, ନା ତ ସ୍ତ୍ରୀ, ସେ ଯାହା ସହିତ ତାଦାତ୍ମ୍ୟ କରିନେଇଥାଏ, ସେ ତଦ୍‌ବତ୍ ହୋଇଯାଏ ।

ଯେଉଁଭଳି ଜୀବର, ନବଜାତ ଶିଶୁର କୌଣସି ମାତୃଭାଷା ହୋଇ ନ ଥାଏ । ସେ ଯେଉଁଠି ଜନ୍ମ ନିଏ, ଯେଉଁଠି ଯାଏ, ସେହି ସ୍ଥାନର ଭାଷା ଶିଖିବାକୁ ଲାଗେ ।

ଗୋଟିଏ ଇଂରେଜୀ ପରିବାର ଥିଲା । ସେ ଜଣେ ଫ୍ରେଞ୍ଚ ବାଳକୁ ଜନ୍ମରୁ ଆଣି ପାଳିଲେ। ଏବେ ସେ ଇଂରାଜୀ ପରିବାର ଫ୍ରେଞ୍ଚଭାଷା ଶିଖିବାକୁ ଲାଗିଲେ । କେହି ଜଣେ ପଚାରିଲେ ଯେ ଆପଣ ଫ୍ରେଞ୍ଚ କାହିଁକି ଶିଖୁଛନ୍ତି । ସେମାନେ କହିଲେ ଯେ ଆମଙ୍କୁ ତ ଫ୍ରେଞ୍ଚଭାଷା ଆସୁନାହିଁ, ଏହି ବାଳକ ବଡ ହୋଇ ଫ୍ରେଞ୍ଚଭାଷା କହିବ ତେବେ ଆମେମାନେ ତାର ଭାଷା କିପରି ବୁଝିବୁ ? ଆରେ ! ଜନ୍ମରୁ କଣ କିଛି ହୋଇଥାଏ ? ଆପଣ ତାକୁ କେଉଁଭଳି ସଂସ୍କାର ଦେବେ, ଯେଉଁ ଭାଷାରେ ତା ସହ କଥାବାର୍ତ୍ତା କରିବେ, ସେହିଭଳି ତାର ତାଦାତ୍ମ୍ୟ ହୋଇଯିବ ଏବଂ ସେହି ଭାଷାରେ ସେ କଥା-ବାର୍ତ୍ତା କରିବାକୁ ଲାଗିବ । ଏହିସବୁର ମୂଳରେ - ତାଦାତ୍ମ୍ୟ ହିଁ ଅଟେ । ତାଦାତ୍ମ୍ୟର ଅର୍ଥ ତଦ୍ ଆତ୍ମା - ସେହିଭଳି ହୋଇଯିବା ।

**ତସ୍ମାଦୁଦ୍ଧବ ମା ଭୁଙ୍କ୍ଷ୍ୱ ବିଷୟାନସଦିନ୍ଦ୍ରିୟୈଃ ।**

**ଆତ୍ମାଗ୍ରହଣନିର୍ଭାତଂ ପଶ୍ୟ ବୈକଳ୍ପିକଂ ଭ୍ରମମ୍ ।।** (୧୧.୨୨.୫୬)

ସେଥିପାଇଁ ଭଗବାନ୍ କୁହନ୍ତି - ଆରେ ! ଉଦ୍ଧବ, ତୁମେ ଏହି ବ୍ୟର୍ଥ, ବସ୍ତୁମାନଙ୍କର ସହିତ ତାଦାତ୍ମ୍ୟ କର ନାହିଁ । ବିଷୟ ତଥା ଇନ୍ଦ୍ରିୟମାନଙ୍କର ସହିତ ତାଦାତ୍ମ୍ୟ କରି ଲୋକମାନେ ସେହିଭଳି ହୋଇଯାଆନ୍ତି । ପୁଣି ଅନ୍ୟ ଲୋକମାନଙ୍କର ଭୋଗ୍ୟ ହୋଇଥାଆନ୍ତି, ତେଣୁ ଏହି ଅସତ୍ ବିଷୟମାନଙ୍କର ଚିନ୍ତନ କର ନାହିଁ ।

ସେତେବେଳେ ଉଦ୍ଧବ ଏକ ସୁନ୍ଦର ପ୍ରଶ୍ନ ପଚାରିଲେ, ଯାହା କି ଆମ ସମସ୍ତଙ୍କର ନିମନ୍ତେ ଅତି ଉପଯୋଗୀ ଅଟେ । ସେ କହୁଛନ୍ତି - ଭଗବାନ୍ ! ଆପଣ ସାଧନା କରିବାର କଥା କହୁଛନ୍ତି ଏବଂ କହୁଛନ୍ତି ବୈରାଗ୍ୟକୁ ଅଭିବୃଦ୍ଧି କର, ବିଷୟମାନଙ୍କର ସଙ୍ଗ କର ନାହିଁ, ଲୋକମାନଙ୍କ ପ୍ରତି ଆସକ୍ତି ହୁଅ ନାହିଁ, ଗୃହସ୍ଥାଶ୍ରମରେ, କିନ୍ତୁ ଅନାସକ୍ତ ହୋଇ ରୁହ । ଏହା ସବୁକିଛି ତ ଠିକ୍ ଅଛି । କିନ୍ତୁ ଘରେ, ପରିବାରରେ ରହିଲା ବେଳେ ଲୋକମାନେ ଏପରି କଥା କହୁଛନ୍ତି, ଯାହା ଭିତରେ ଯାଇ ବାଣ ଭଳି ଲାଗୁଛି, ଯାହା କି ସହି ହେଉନାହିଁ । ଖରାପ ଭାବିବେ ନାହିଁ, ଏହା କହିବା ତ ଠିକ୍ ଅଛି। କିନ୍ତୁ କେହି ଯେତେବେଳେ ସିଧା-ସିଧା କିଛି କଟୁ କଥା ଶୁଣାଇ ଦିଏ, ତେବେ ସୁଖ-ଦୁଃଖ ତ ହୋଇଥାଏ, ତଦ୍ୱାରା ଏତେ କଷ୍ଟ ବା ଏତେ ପୀଡାର ଅନୁଭବ ହୋଇଥାଏ ଯେ ଶରୀରରେ ମଧ୍ୟ ପୀଡା ହେବାକୁ ଲାଗେ । ଏପରି ସମୟରେ ଅସଙ୍ଗ କିଭଳି ରହିପାରିବ ? କିଛି ନ କହି କିପରି ରହି ହେବ ? ଏହି ସମୟରେ ତିତାକ୍ଷା କିଭଳି ସମ୍ଭବ ?

ଭଗବାନ କହୁଛନ୍ତି - ସତ କଥା, ତୁମେ ଅତି ସୁନ୍ଦର ପ୍ରଶ୍ନ ପଚାରିଛ । କେହି ଯଦି ତୁମକୁ ପଥର ଉଠାଇ ମାରିଦିଏ, ତଥାପି ଏତେ ଦୁଃଖ ହୋଇ ନ ଥାଏ, ଯେତିକି କି କାହାର କଟୁ ବଚନ ଦ୍ୱାରା ହୋଇଥାଏ ।

**ବାର୍ହସ୍ପତ୍ୟ ସ ବୈ ନାତ୍ର ସାଧୁର୍ବୈ ଦୁର୍ଜନେରିତୈଃ ।**
**ଦୁରୁକ୍ତୈର୍ଭିନ୍ନମାତ୍ମାନଂ ଯଃ ସମାଧାତୁମୀଶ୍ୱରଃ ॥** (୧୧.୧୩.୨)

ଯେଉଁ ବ୍ୟକ୍ତି କଟୁ ତଥା କଷ୍ଟ ପ୍ରଦାନ କରୁଥିବା କଥାକୁ ସହିପାରେ, ବାସ୍ତବରେ ସେ ହିଁ ସାଧୁ ପୁରୁଷ ।

**ନ ତଥା ତପ୍ୟତେ ବିଦ୍ଧଃ ପୁମାନ୍ ବାଣୈଃ ସୁମର୍ମଗୈଃ ।**
**ଯଥା ତୁଦନ୍ତି ମର୍ମସ୍ଥା ହ୍ୟସତାଂ ପରୁଷେଷବଃ ॥** (୧୧.୨୩.୩)

ଲୋକମାନେ କୁହନ୍ତି, ସ୍ୱାମୀଜୀ, ଅନ୍ୟ ଜଣେ ପଦେକେହି କିଛି କହିଲେ ସହି ହେବ, ପରନ୍ତୁ ଆମର ସ୍ୱଜନ, ପୁତ୍ର, ପତ୍ନୀ ଆଦି ଯଦି ଏଭଳି କହିବେ - ତେବେ କିପରି ସହନ କରିବା ?

## ଭିକ୍ଷୁଗୀତ

ପୂର୍ବ ପ୍ରସଙ୍ଗରେ ବେଣୁଗୀତ, ଗୋପୀଗୀତ, ତଥା ପିଙ୍ଗଳାଗୀତ ଆମେମାନେ ଦେଖିଛନ୍ତି । ଏବେ ଏକ ସୁନ୍ଦର ଗୀତ ଆସେ, ଯାହାକୁ ଭିକ୍ଷୁଗୀତ କୁହଯାଏ । ଏହି ଗୀତଦ୍ୱାରା ସହନଶକ୍ତିକୁ ବଢାଇବାର ଉପାୟ ବର୍ଣ୍ଣନ କରାଯାଇଛି । ଅବନ୍ତୀ ନଗରୀରେ ଏକ ବ୍ରାହ୍ମଣ ରହୁଥିଲା । ସେ ପରିଶ୍ରମ କରି ବହୁତ ଧନ ସଂଗୃହୀତ କରି ଦେଇଥିଲା । ସେ ବହୁତ କାମୀ, କ୍ରୋଧୀ ତଥା ଲୋଭୀ ଥିଲା, ତା ସହିତ ଅତି କୃପଣ ମଧ୍ୟ ଥିଲା । ଚମ ଯାଉ ପଛେ ପଇସା ଥାଉ - ଏହି କଥାଟି ତାଉପରେ ଠିକ୍ ଲାଗୁଥିଲା । ସେ ଧନକୁ ନିଜ ପାଇଁ ନା ତାର ଘର, ପରିବାର ସ୍ତ୍ରୀ, ପୁତ୍ରମାନଙ୍କ ପାଇଁ କେବେହେଲେ ଖର୍ଚ୍ଚ କରୁ ନ ଥିଲା । ଏଥିପାଇଁ ସମସ୍ତେ ଚିନ୍ତିତ ଥିଲେ । ଦୈବଯୋଗରେ କୌଣସି କାରଣବଶତଃ ତାର ସମସ୍ତ ଧନ ସମାପ୍ତ ହୋଇଗଲା, ଲୋକମାନେ ମଧ୍ୟ ତାର ଧନକୁ ଛଡାଇନେବା ଆଦି ଆରମ୍ଭ କରି ଦେଲେ, ଏହିଭଳି ଭାବରେ ତାର ସମସ୍ତ ଧନ ଚାଲିଗଲା ଏବଂ ସେ ଦରିଦ୍ର ହୋଇଗଲା । ସେ ତା ଧନର ଉପଯୋଗ କେବେହେଲେ ଧର୍ମ ନିମନ୍ତେ ଅଥବା ନିଜ ଭୋଗ ନିମନ୍ତେ କରି ନ ଥିଲା । ଅନ୍ତତଃ ତାର ଅତି ଖରାପ ପରିସ୍ଥିତି ଆସିଗଲା ଏବଂ ଶେଷରେ ତାକୁ କେହି ହେଲେ ମଧ୍ୟ ପଚାରିଲେ ନାହିଁ ।

ଏହାପରେ କେଜାଣି କେମିତି ତା ଉପରେ ଭଗବତ୍ କୃପା ହୋଇଗଲା ଯେ ତାର ମନରେ ବୈରାଗ୍ୟ ଉତ୍ପନ୍ନ ହୋଇଗଲା। **'ଅର୍ଥମନର୍ଥ ଭାବୟ ନିତ୍ୟଂ'** (ଭଜଗୋବିନ୍ଦମ୍ - ୨୯) ସେ ବିଚାର କରିବାକୁ ଲାଗିଲା ମୁଁ ଅର୍ଥ ପ୍ରତି ଏତେ ଆସକ୍ତି ଥିଲି ଯେ ମୁଁ ନା କିଛି ଭୋଜନ କଲି, ନା ଅନ୍ୟ କାହାକୁ ଖୁଆଇଛି, ନା କୌଣସି ଧର୍ମ କରିଛି, ଏବେ ଏହି ଅର୍ଥ କାରଣରୁ ଏତେ ସବୁ ଅନର୍ଥ ହୋଇଗଲା । ପୁଣି ସେ ଧନର ଦୋଷ ଉପରେ ବିଚାର କରିବାକୁ ଲାଗିଲା । ଇଚ୍ଛାମାନଙ୍କର ପୂର୍ଣ୍ଣ ହେବା ଦ୍ୱାରା ଇଚ୍ଛା ବଢ଼େ ଏବଂ କାମନାର ପୂର୍ତ୍ତି ହେବା ଦ୍ୱାରା ଲୋଭ ବଢ଼ିଥାଏ । ବ୍ୟକ୍ତି ତାର କାମନା ପୂର୍ତ୍ତି ନିମନ୍ତେ ପାପ କର୍ମ କରିବାକୁ ଲାଗେ। ଯାହା ପାଖରେ ଧନ ଅଧିକ ଥାଏ, ତାକୁ ଅନ୍ୟମାନେ ଇର୍ଷ୍ୟା କରି ଥାଆନ୍ତି, ଏବଂ କାମ୍ୟ ବସ୍ତୁ ନ ମିଳିଲେ କ୍ରୋଧ ହୋଇଥାଏ। ଏହିଭଳି ବିଚାର କରି, ସେ ବୁଝିଗଲା ଯେ ଅର୍ଥ ହିଁ ହେଉଛି ଅନର୍ଥର ମୂଳ । ତେବେ ସେ ନିଶ୍ଚୟ କରି ନେଲା ଯେ ଏବେ ମୁଁ ପୁନଃ ଧନର ମାୟାରେ ପଡିବି ନାହିଁ ।

**ନୂନଂ ମେ ଭଗବାଂସ୍ତୁଷ୍ଟଃ ସର୍ବଦେବମୟୋ ହରିଃ ।**
**ଯେନ ନୀତୋ ଦଶାମେତାଂ ନିର୍ବେଦଶ୍ଚାତ୍ମନଃ ପ୍ଲବଃ ।।** (୧୧.୨୩.୨୮)

ମୋର ସବୁ କିଛି ହରଣ କରି ମୋତେ ରାସ୍ତାରେ ଆଣି ଠିଆ କରାଇ ଦେବାରେ ଭଗବାନ୍ ମୋ ଉପରେ ଅତି କୃପା କରିଛନ୍ତି । ମୁଁ ବଡ ଭାଗ୍ୟଶାଳୀ ଅଟେ । ଏହିଭଳି ବିଚାର କରି କରି ସେ ଆତ୍ମଜ୍ଞାନରେ ସ୍ଥିତ ହେବାକୁ ଲାଗିଲା । ଏବେ ମୋତେ ଚିନ୍ତା କରିବାର କୌଣସି ଆବଶ୍ୟକ ତ ନାହିଁ । ଏଠାରେ ଶ୍ରୀମଦ୍ ଭାଗବତରେ ଲେଖାଯାଇଛି ଯେ - ତାପରେ ସେ ଯେତେବେଳେ ଗ୍ରାମ ଭିତରକୁ ଯାଉଥିଲା, ତେବେ ଦୁଷ୍ଟଲୋକମାନେ ତା ଉପରକୁ ଛେପ ପକାଉଥିଲା, କେହି ତା ଉପରକୁ ପଥର ଫିଙ୍ଗୁଥିଲା ତ କେହି ତାର ଝୁଲା ତଥା କମଣ୍ଡଲୁ ନେଇ ପଳାଉଥିଲା। 'ମହାକୃପଣ ଆସିଗଲା ସାଧୁବାବା ହୋଇ'- ଲୋକମାନେ ଏହିଭଳି ଭାବରେ କଟୁବଚନ କହୁଥିଲେ, ପରନ୍ତୁ ସେ ବ୍ରାହ୍ମଣ ତ ମଗନ ହୋଇ ଗୀତଗାଇ ବୁଲୁଥିଲା । ସେ କଣ ଗାଉଥିଲା ?

**ନାୟଂ ଜନୋମେ ସୁଖଦୁଃଖ ହେତୁର୍ନଦେବତାଽଽତ୍ମା ଗ୍ରହକର୍ମକାଲାଃ ।**
**ମନଃ ପରଂ କାରଣମାମନନ୍ତି ସଂସାର ଚକ୍ରଂ ପରିବର୍ତୟେଦ୍ ଯତ୍ ॥**
(୧୧.୨୩.୪୩)

କହିଲେ – ମୋତେ ଏହି ଯେଉଁ ସବୁ ଦୁଃଖ ପ୍ରାପ୍ତ ହେଉଛି, ତାର କାରଣ **'ନାୟଂ ଜନଃ'** ଏମାନେ ନୁହନ୍ତି । ତେବେ ପୁଣି କେହି ଦେବତା ହୋଇଥିବେ । ଦେବତା ମଧ୍ୟ ନୁହଁନ୍ତି । ରାହୁ, ରବି, ଶନି, ଶୁକ୍ର, ଗୁରୁ, ବୁଧ ଆଦି କୌଣସି ଗ୍ରହ ମଧ୍ୟ ନୁହନ୍ତି । କର୍ମ ମଧ୍ୟ ଦୁଃଖ ଦିଏ ନାହିଁ । କର୍ମ ତ ଫଳ ଦିଏ । ତେବେ ପୁଣି କାଳ ଦୁଃଖ ଦେଉଥିବ । ପ୍ରାୟ ଲୋକମାନେ ନିଜର ଦୁଃଖର କାରଣ – କାଳ, କର୍ମ, ମନୁଷ୍ୟ, ଦେବତା ଆଦିକୁ ହିଁ ଦୋଷାରୋପ କରିଥାଆନ୍ତି । ସେ ବ୍ରାହ୍ମଣ କହୁଛନ୍ତି – **'ମନଃ ପରଂ କାରଣମାମନନ୍ତି'** ଆମର ମନଟି ହିଁ ଆମର ଦୁଃଖର କାରଣ । ଏଠାରେ ଧ୍ୟାନ ଦେବାର ବିଷୟ ହେଉଛି ଯେ କର୍ମ ସ୍ୱୟଂ ଦୁଃଖ ଦିଏ ନାହିଁ, ସେ ତ ଫଳପ୍ରଦାନ କରିଥାଏ । ସେହି ଫଳକୁ ଭଲ ଅଥବା ମନ୍ଦ ମାନି କରି ବ୍ୟକ୍ତି ସୁଖି-ଦୁଃଖି ହୋଇ ଥାଏ । ଆପଣ ଅଧ୍ୟୟନ କରି ନାହାନ୍ତି, ତେବେ ଫେଲ୍ ହୋଇଯିବେ । ଫେଲ୍ ହେବା ଫଳ – ସେ ସ୍ୱୟଂ ଦୁଃଖ ନୁହେଁ । ଦୁଃଖ ତ ନିଜ ମନ କାରଣରୁ ହିଁ ହୋଇଥାଏ । ଯେଉଁଭଳି କେହି ପ୍ରଥମ ଶ୍ରେଣୀରେ ପାସ୍ କଲା ପରେ ମଧ୍ୟ କାନ୍ଦୁଥାଏ, କାହିଁକି ନା ତାକୁ ତା ବେଷ୍ଟ ଭିତରେ ଆସିବାର ଥିଲା । ଏଭଳି ଦେଖିବାକୁ ଗଲେ ତ ଫେଲ୍ ହୋଇଥିବା ବ୍ୟକ୍ତିକୁ ଦୁଃଖି ହେବା ଉଚିତ୍ । କିନ୍ତୁ ଏଭଳି ମଧ୍ୟ ଦେଖାଯାଏ ଯେ କେହି କେହି ଫେଲ୍ ହେଲା ପରେ ମଧ୍ୟ ଦୁଃଖି ହୁଅନ୍ତି ନାହିଁ – ମସ୍ତ ରହନ୍ତି । ଏଭଳି ବ୍ୟକ୍ତିକୁ ଯଦି କେହି ପଚାରେ ଯେ ତୁମେ ଫେଲ୍ ହେଲା ପରେ ମଧ୍ୟ ମସ୍ତ ଅଛ ? ତେବେ ସେ କହିବ – ଏଥିରେ କଣ ଅଛି, ମୋତେ ତ ପୂର୍ବରୁ ଜଣାଥିଲା । ମୁଁ ତ ସବୁବେଳେ ଫେଲ୍ ହୁଏ । ପ୍ରତ୍ୟେକ ଶ୍ରେଣୀରେ ଦୁଇ-ଦୁଇ ବର୍ଷ ଲାଗିଯାଏ । ଏତେ ଶୀଘ୍ର କରିବାରେ କଣ ଅଛି ? କହିବାର ଅଭିପ୍ରାୟ ଯେ ଏହାସବୁ ମନର ଖେଳ । ଏଠାରେ ଏକ ସୁନ୍ଦର କଥା କୁହାଯାଇଛି –

**ମନୋବଶେଽନ୍ୟେ ହ୍ୟଭବନ୍ ସ୍ମ ଦେବା**
**ମନଶ୍ଚ ନାନ୍ୟସ୍ୟ ବଶଂ ସମେତି।**
**ଭୀଷ୍ମୋ ହି ଦେବଃ ସହସଃ ସହୀୟାନ୍**
**ଯୁଞ୍ଜ୍ୟାଦ୍ ବଶେ ତଂ ସ ହି ଦେବଦେବଃ ॥** (୧୧.୨୩.୪୮)

ନିଜର ମନକୁ ଯିଏ ବଶୀଭୂତ କରିନିଏ, ସେ ତ ଦେବମାନଙ୍କର ମଧ୍ୟ ଦେବତା, ତାକୁ କେହି ହେଲେ ନୁଏଁଇ ପାରିବ ନାହିଁ ଅଥବା କନ୍ଦାଇପାରିବ ନାହିଁ । ଏଭଳି ବ୍ୟକ୍ତି ସ୍ୱୟଂକୁ ହିଁ ସବୁଠାରେ ଦେଖୁଥାଏ । ତାର ଦୃଷ୍ଟିରେ ଆତ୍ମତତ୍ତ୍ୱ ହେଉଛି ଗୋଟିଏ । **'ଜିହ୍ୱାଂ କ୍ୱଚିତ୍ ସଂଦଶତି ସ୍ୱଦଭିଃ'** (୧୧.୨୩.୫୧) କେବେ କେବେ ଆମର ଜିହ୍ୱାଟି ଆମ ଦାନ୍ତଦ୍ୱାରା କଟିଯାଏ । ତେବେ କଣ ଆମେ ସେ ଦାନ୍ତକୁ ଦଣ୍ଡ ଦିଅନ୍ତି ? କଣ ଏଭଳି ବିଚାର କରନ୍ତି ଯେ ଦାନ୍ତ ଜିହ୍ୱାକୁ ଦୁଃଖ ଦେଉଥିବ ? କେବେ ଆଖିରେ ଅଙ୍ଗୁଳି ଲାଗିଗଲେ ସେହି କାରଣରୁ ଆଖି କଷ୍ଟ ହେଲେ, ତେବେ କଣ ଆମେ ମାନି ନେଉ ଯେ ଅଙ୍ଗୁଳି ଆଖିକୁ ଦୁଃଖ ଦିଏ ? ନାହିଁ ଏଭଳି ମାନୁ ନାହିଁ । କାହିଁକି ନା ଆମେ ନିଜ ଶରୀରର ପ୍ରତ୍ୟେକ ଅଙ୍ଗକୁ ଆତ୍ମଦୃଷ୍ଟିରେ ଦେଖି ଥାଉଁ । ଏଠାରେ ଗୋଟିଏ ସୁନ୍ଦର କଥା ସିଦ୍ଧ ହୁଏ ଯେ ଆମ କର୍ମ ଆମର ଦୁଃଖର କାରଣ ହୋଇପାରିବ ନାହିଁ । ଜ୍ୟୋତିଷଶାସ୍ତ୍ର ଅନୁସାରେ ଆମର ଗ୍ରହମାନେ ସୁଖଦୁଃଖ ଦେଇଥାଆନ୍ତି । ଲୋକମାନେ ପଚାରନ୍ତି ଏହି ଗ୍ରହ ପୁଣି କଣ ? ଆରେ ! ଗ୍ରହର ପ୍ରଭାବ ତ ଶରୀର ଉପରେ ପଡେ କିନ୍ତୁ ଆତ୍ମା ଉପରେ ନୁହେଁ । ଯେଉଁ ଭଳି ଥଣ୍ଡା ପଡିଲେ ତାହାର ପ୍ରଭାବ ତ ପଡିବ - କିନ୍ତୁ ଶରୀର ଉପରେ, ଆତ୍ମା ଉପରେ ନୁହେଁ । ଗ୍ରୀଷ୍ମ, ବର୍ଷା, ଶୀତ ଆଦିର ପ୍ରଭାବ ଶରୀର ଉପରେ ପଡିଥାଏ କିନ୍ତୁ ଆତ୍ମା ଉପରେ ନୁହେଁ । ସେଥିପାଇଁ ଏମାନେ ମଧ୍ୟ ଦୁଃଖ ଦେଇପାରନ୍ତି ନାହିଁ ।

ଦେଖନ୍ତୁ - ଏହି ଭିକ୍ଷୁ କେତେ ସୁନ୍ଦର କଥା କହୁଛି । କର୍ମ, ଗ୍ରହ, ଦେବତା, ଲୋକ, ଦେଶ-କାଳ, ପରିସ୍ଥିତି ଆଦି ଆତ୍ମାଙ୍କୁ ଦୁଃଖ ଦିଅନ୍ତି ନାହିଁ । ସେ ତ ଆମର ବିପରୀତ ବୁଦ୍ଧି, ଆମର ମନ ହିଁ ସବୁ ଓଲଟାପାଲଟା କରୁଥାଏ । ଏହି ମନକୁ ଓଲଟା କରି ଦେଲେ 'ନମଃ' ହୋଇଯାଏ । ନମଃ, ନମଃ କରି ଭଗବାନଙ୍କୁ ନମସ୍କାର କରିବା ଦ୍ୱାରା, ତାଙ୍କର ପାଖରେ ନଇଁବା ଦ୍ୱାରା, ଏହି ମନ ସମାପ୍ତ ହୋଇଯାଏ । ନମସ୍କାର ଦ୍ୱାରା, ନମନ ଦ୍ୱାରା ମନ ନମ ହୋଇଯାଏ । ମନକୁ ସମାପ୍ତ କରିବା ନିମନ୍ତେ ଏହା ହେଉଛି ସୁନ୍ଦର ଉପାୟ । ତେବେ ସେ ବ୍ରାହ୍ମଣ ଆତ୍ମଦୃଷ୍ଟିରେ ସମସ୍ତଙ୍କୁ ଦେଖିବାକୁ ଲାଗିଲା । ଅନ୍ୟ ମାନେ ତାକୁ ଦେହ ଦୃଷ୍ଟିରେ ଦେଖୁଥିଲେ । ସେ ଭଲ ଭାବରେ ଜାଣିଥିଲେ ଯେ ମୁଁ ଦେହ ନୁହେଁ । ସେଥିପାଇଁ ଯେତେବେଳେ ଦୁଷ୍ଟଲୋକମାନେ ତା ଉପରେ କିଛି ମଇଳା ଫିଙ୍ଗୁଥିଲେ, ତେବେ ସେ ଏହା ହିଁ କହୁଥିଲା ଯେ ଯେଉଁଠି ଅଳିଆଗଦା ଥିବ, ସେହିଠାରେ ତ ଲୋକମାନେ ଅଳିଆ ଫିଙ୍ଗିବେ । ଏହି ଶରୀରଟି ତ ଅଳିଆ ବାକ୍ସ ଅଟେ । ଲୋକମାନେ ଏଠାରେ ଅଳିଆ ପକାଇଲେ କ'ଣ ଅସୁବିଧା ?

ଏହା ତ ଅତି ଆଶ୍ଚର୍ଯ୍ୟର କଥା ଯେ ଭଗବାନ ଏହି ଶରୀର ଉପରେ ଏକ ସୁନ୍ଦର ଆବରଣ କରି ଘୋଡାଇ ଦେଇଛନ୍ତି, ଅନ୍ୟଥା (ଭିତରୁ ଦେଖିଲେ) ଆମ ନିଜକୁ ମଧ ଘୃଣା ଲାଗିବ। ଏପରି ବିବେକ କରି ସେହି ବ୍ରାହ୍ମଣ ଜାଣିଗଲେ ଯେ ମୋର କୌଣସି ଦୁଃଖ ନାହିଁ ।

**ଏତାଂ ସ ଆସ୍ଥାୟ ପରାତ୍ମନିଷ୍ଠାମଧ୍ୟାସିତାଂ ପୂର୍ବତମୈର୍ମହର୍ଷିଭିଃ ।**
**ଅହଂ ତରିଷ୍ୟାମି ଦୁରନ୍ତପାରଂ ତମୋ ମୁକୁନ୍ଦାଙ୍ଘ୍ରିନିଷେବୟୈବ ॥**

(୧୧.୨୩.୫୮)

କହୁଛନ୍ତି - ମୋ ପାଇଁ ତ ପୂର୍ବ-ପୂର୍ବର ଆଚାର୍ଯ୍ୟମାନେ ଏହି ମାର୍ଗ ବର୍ଣ୍ଣନ କରିଯାଇ ଅଛନ୍ତି । ଦେହ ସହିତ ତାଦାତ୍ମ୍ୟକୁ ତ୍ୟାଗ କର, ଏହି ଦେହ ତୁମେ ନୁହଁ । ପୁଣି ତୁମକୁ କିଏ ଦୁଃଖ ଦେଇପାରେ ? କେହି କହନ୍ତି ତୁମେ ମୋଟା ଅଥବା ଦୁର୍ବଳ, ତେବେ ମୋତେ ଦୁଃଖ କାହିଁକି ହେବ ? ଯଦି ମୁଁ ଶରୀର ନୁହେଁ ତେବେ ତାହା ମୋଟା ଅଥବା ଦୁର୍ବଳ ହେବାରେ ମୋତେ କଣ ଅନ୍ତର ପଡିବ ? ଏହି ଭିକ୍ଷୁଗୀତ ଅତି ସୁନ୍ଦର, ଏହାକୁ ସମସ୍ତେ ଗାଇବା ଉଚିତ୍ । ସେହି ବ୍ରାହ୍ମଣ ଏହିଭଳି ଭାବରେ ବିରକ୍ତ ହୋଇ ବିଚରଣ କରିବାକୁ ଲାଗିଲେ ।

ଭଗବାନ୍ ସ୍ୱୟଂ କହୁଛନ୍ତି -

**ୟଏତାଂ ଭିକ୍ଷୁଣା ଗୀତାଂ ବ୍ରହ୍ମନିଷ୍ଠାଂ ସମାହିତଃ ।**
**ଧାରୟନ୍ ଶ୍ରାବୟନ୍ ଶୃଣ୍ୱନ୍ ଦ୍ୱନ୍ଦ୍ୱୈର୍ନୈର୍ବାଭିଭୂୟତେ ॥**

(୧୧.୨୩.୬୨)

ଯେ କେହି ମଧ ଏହି ଭିକ୍ଷୁ ଗୀତକୁ ଭଲ ଭାବରେ ବୁଝିଯାଏ- ସେ ନିର୍ଦ୍ୱନ୍ଦ ହୋଇଯାଏ।

## ସାଂଖ୍ୟ ଯୋଗ

ପରବର୍ତ୍ତୀ ଅଧ୍ୟାୟରେ ଭଗବାନ୍ ସାଂଖ୍ୟଯୋଗର ବର୍ଣ୍ଣନ କରୁଛନ୍ତି । ଏହାର କିଞ୍ଚିତ୍ ବର୍ଣ୍ଣନ ଆମେ ପୂର୍ବରୁ ମଧ ଦେଖିଛନ୍ତି । ସାଂଖ୍ୟ ଯୋଗର ତାତ୍ପର୍ଯ୍ୟ କଣ ? ଏହି ନାନାବିଧ ସୃଷ୍ଟି ପରମାତ୍ମାଙ୍କର ଠାରୁ କେଉଁଭଳି ଭାବରେ ପ୍ରକଟ ହେଉଛି ତାହା ଜାଣି ସେହି ପରମାତ୍ମାଙ୍କୁ ସବୁରି ଭିତରେ ଦେଖିବା ହେଉଛି ସାଂଖ୍ୟ ଯୋଗ ।

**କାଲୋ ମାୟାମୟେ ଜୀବେ ଜୀବ ଆତ୍ମନି ମୟ୍ୟଜେ ।**
**ଆତ୍ମା କେବଳ ଆତ୍ମସ୍ଥୋ ବିକଳ୍ପାପାୟଲକ୍ଷଣଃ ॥ ୧୧.୨୪.୨୭**

ପରମାତ୍ମାଙ୍କଠାରୁ ପ୍ରଥମେ ଅବ୍ୟକ୍ତ, ପୁଣି ସୂକ୍ଷ୍ମ ଏବଂ ପରେ ସ୍ଥୁଳ ଜଗତର ଆବିର୍ଭାବ ହୋଇଛି । ଏହି ସ୍ଥୁଳ ଜଗତକୁ ଧ୍ୟାନାଭ୍ୟାସ ଦ୍ୱାରା ପୁଣିଥରେ ସେହି ଭଗବାନଙ୍କ ପାଖରେ ବିଲୀନ କରି ଦେବା ହିଁ ସାଂଖ୍ୟଯୋଗ ଅଟେ । ଇନ୍ଦ୍ରିୟଗୁଡିକୁ ମନରେ, ମନକୁ ବୁଦ୍ଧିରେ, ବୁଦ୍ଧିକୁ ଆତ୍ମାରେ ଲୀନ କରାଯାଇପାରେ । ପରନ୍ତୁ, ଆତ୍ମାକୁ କେଉଁଠି ଲୀନ କରାଯିବ ? ଆତ୍ମାକୁ କେଉଁଠି ହେଲେ ଲୀନ କରାଯାଇପାରିବ ନାହିଁ, ଅଧିକନ୍ତୁ ସେହିଠାରେ ହିଁ ସବୁକିଛି ଲୀନ ହୋଇଯାଇପାରିବ । ସେ ହେଉଛି ସ୍ୱତଃ ସିଦ୍ଧ, ଯେମିତି-ସେମିତି ରହିଥାଏ । ପରମାତ୍ମାଙ୍କଠାରୁ ସୃଷ୍ଟି ଯେଉଁ ଭଳି ଭାବରେ ପ୍ରକଟ ହୋଇଛି, ତାକୁ ସେହି ପୂର୍ବ କର୍ମ ଦ୍ୱାରା ପରମାତ୍ମାଙ୍କଠାରେ ବିଲୀନ କରିବା ହିଁ ସାଂଖ୍ୟ ଯୋଗ ଅଟେ ।

## ତ୍ରିଗୁଣ ମାନଙ୍କ କାର୍ଯ୍ୟର ବର୍ଣ୍ଣନ

ଏହାପରେ ଭଗବାନ୍ ସତ୍ତ୍ୱଗୁଣ, ରଜୋଗୁଣ, ବା ତମୋଗୁଣର କାର୍ଯ୍ୟକୁ ନିରୁପଣ କରୁଛନ୍ତି । ସଂକ୍ଷେପରେ ସତ୍ତ୍ୱଗୁଣର କାର୍ଯ୍ୟ ହେଉଛି ଜ୍ଞାନ, ଜ୍ଞାନର ପ୍ରତି ଜିଜ୍ଞାସା । ରଜୋଗୁଣର କାର୍ଯ୍ୟ ହେଉଛି - କର୍ମ ଏବଂ ତମୋଗୁଣର କାର୍ଯ୍ୟ ହେଉଛି ଆଳସ୍ୟ, ପ୍ରମାଦ ଏବଂ ନିଦ୍ରା । ଯିଏ ଏହି ତିନିଗୁଣର ଉର୍ଦ୍ଧ୍ୱରେ ତାକୁ ନିର୍ଗୁଣ କହନ୍ତି । ଭଗବାନ୍ ଏଠାରେ ଏକ ବିଶେଷ କଥା କହିଛନ୍ତି ।

**ବନଂ ତୁ ସାତ୍ତ୍ୱିକୋ ବାସୋ ଗ୍ରାମୋ ରାଜସ ଉଚ୍ୟତେ ।**
**ତାମସଂ ଦ୍ୟୁତ ସଦନଂ ମନ୍ନିକେତଂ ତୁ ନିର୍ଗୁଣମ୍ ॥ (୧୧.୨୫.୨୫)**

ବନରେ ରହିବା ସାତ୍ତ୍ୱିକ ନିବାସ, ଗ୍ରାମରେ ରହିବା ରାଜସିକ ଅଟେ, ଏବଂ ନାଇଟ୍ କ୍ଲବ - ଯେଉଁଠାରେ ଜୁଆ, ମଦ୍ୟପାନ ଆଦି ହେଉଥାଏ - ସେଠାରେ ରହିବା ତାମସିକ ଅଟେ ?। ଏଠାରେ ଏତିକି ବୁଝିବାର ଆବଶ୍ୟକତା ଅଛି ଯେ ବନରେ ରହୁଥିବା ସମସ୍ତେ ଯେ ସାତ୍ତ୍ୱିକ ତାହା ନୁହେଁ କିନ୍ତୁ ସାତ୍ତ୍ୱିକ ଗୁଣ ଯେତେବେଳେ ବଢିବାକୁ ଲାଗେ - ସେତେବେଳେ ଭିଡ ଭିତରେ ରହିବାକୁ ଭଲ ଲାଗେ ନାହିଁ । **'ମନ୍ନିକେତଂ ତୁ ନିର୍ଗୁଣମ୍'** ଯିଏ ପରମାତ୍ମାରେ ରହନ୍ତି, ସେ ନିର୍ଗୁଣ ଅଟନ୍ତି, ସେ ଭଗବାନଙ୍କର ଭକ୍ତ। ଏବଂ ପରମାତ୍ମା କେଉଁଠି ? ସେ ତ ସର୍ବବ୍ୟାପୀ । ତେଣୁ ଏଭଳି ବ୍ୟକ୍ତିକୁ କିଛି ଅନ୍ତର ନ ଥାଏ ଯେ ସେ ଗ୍ରାମରେ ଅଛି କି ଜଙ୍ଗଲରେ, ଏହି ଭେଦ ତ କେବଳ ସାଧକ

ଅବସ୍ଥାରେ ହିଁ ଥାଏ, ଏହା ପରେ ନୁହେଁ । ଏହିଭଳି ଭାବରେ ଭଗବାନ୍ ସଂକ୍ଷେପରେ ତ୍ରିଗୁଣର ବର୍ଣ୍ଣନ କରିଥିଲେ ।

## ଐଳ ଗୀତ

ଏହାପରେ ଭଗବାନ୍ କହୁଛନ୍ତି ଯେ ଗୁଣ ହିଁ ବ୍ୟକ୍ତିକୁ ସବୁବେଳେ ମୋହିତ କରିଥାଏ । ଏମାନଙ୍କ ପାଖରୁ ସାବଧାନ ରହିବା ଉଚିତ୍ । ଭୋଗରେ ଆସକ୍ତି ହେବା ଉଚିତ୍ ନୁହେଁ । ଭିକ୍ଷୁଗୀତରେ ଆମେ ଦେଖିଲେ ଯେ ଧନ ପ୍ରତି ଆସକ୍ତ ଏକ ବ୍ରାହ୍ମଣ ବିରକ୍ତ ଭିକ୍ଷୁ ହୋଇ ଗାଇବାକୁ ଲାଗିଲେ । ଏହାପରେ ପୁରୁରବାଙ୍କର ଐଳଗୀତର ବର୍ଣ୍ଣନ ଆସେ । ରାଜା ପୁରୁରବା ପ୍ରଥମରୁ ଉର୍ବଶୀଙ୍କର ପ୍ରତି ଆସକ୍ତ ଥିଲେ । ତାଙ୍କର ମନରେ ଯେତେବେଳେ ବୈରାଗ୍ୟର ଉଦୟ ହେଲା ସେ ବିଚାର କଲେ ଯେ ମୁଁ କିଭଳି ଦୁଷ୍ଟ, ପାପୀ ଏବଂ ହୀନ ବ୍ୟକ୍ତି । ମୁଁ ପିଣ୍ଡ ପ୍ରତି, ଦେହ ପ୍ରତି ପ୍ରଗାଢ଼ ତାଦାତ୍ମ୍ୟ (ଅତ୍ୟନ୍ତ ଆସକ୍ତି) କରି ବସିଗଲି । ଏଭଳି ବିଚାର କରି ସେ ନିଜକୁ ଧିକ୍କାର କରିବାକୁ ଲାଗିଲେ। ଏବଂ କାମନାବାସନା ଠାରୁ ନିଜକୁ ମୁକ୍ତ କରି ଦେଲେ । ଭିକ୍ଷୁ ଅର୍ଥାସକ୍ତି ଛାଡି ଏବଂ ରାଜା ପୁରୁରବା କାମାସକ୍ତି ଛାଡି ସ୍ୱୟଂକୁ ମୁକ୍ତ କରି ଦେଲେ । କହିବାର ଅଭିପ୍ରାୟ ଯେ ବୈରାଗ୍ୟର, ଜ୍ଞାନର ପ୍ରାରମ୍ଭ ଯେକୌଣସି ସ୍ଥାନରୁ ମଧ୍ୟ ହୋଇପାରେ । କିନ୍ତୁ ଭଗବତ୍ ଭକ୍ତିରେ ହିଁ ପହଞ୍ଚିବା ଉଚିତ୍ । ପୂର୍ବରୁ କୌଣସି ଭୂଲ କାର୍ଯ୍ୟ ହୋଇଯାଇଥିଲେ ମଧ୍ୟ - "ତେବେ ମୁଁ ଏଭଳି କାହିଁକି କଲି ?" ଏହିଭଳି ଚିନ୍ତା କଲେ କିଛି ଲାଭ ହେବ ନାହିଁ। ପ୍ରଥମେ ଯାହା ହୋଇଯାଇଛି - ହୋଇସାରିଛି, ଏବେ ତାକୁ ଛାଡି ଭଗବାନଙ୍କର ଧ୍ୟାନ କର ଏବଂ ଆନନ୍ଦ ନିଅ। ଆମେ ତ ବର୍ତ୍ତମାନରୁ ମଧ୍ୟ ଆନନ୍ଦ ଦେଇ ପାରୁ ନାହୁଁ । ଏହିଭଳି ଭାବରେ ଭଗବାନ୍ ଐଳ ଗୀତର ବର୍ଣ୍ଣନା କରିଛନ୍ତି ।

## କ୍ରିୟା ଯୋଗ

ଏହାର ପର ଅଧ୍ୟାୟରେ ଭଗବାନ କ୍ରିୟାଯୋଗ ବିଷୟରେ ବର୍ଣ୍ଣନ କରୁଛନ୍ତି। କ୍ରିୟାଯୋଗ କଣ ? ଭଗବାନଙ୍କର ଆରାଧନା କରିବା, ଷୋଡଶୋପଚାର ଦ୍ୱାରା ଭଗବାନଙ୍କର ପୂଜା କରିବା ହିଁ କ୍ରିୟା ଯୋଗ ଅଟେ । ଭଗବାନଙ୍କର ଧ୍ୟାନ, ଆବାହନ, ତାପରେ ଆସନ, ଅର୍ଘ୍ୟ, ପାଦ, ଧୂପ, ଦୀପ, ନୈବେଦ୍ୟ ଆଦି ସମର୍ପିତ କରିବା, ପୁଣି ଆରତୀ ଆଦି ଦ୍ୱାରା ଭଗବାନଙ୍କର ପୂଜନ କରିବା । ଏ ପୂଜନ କରି କରି ଧୀରେ ଧୀରେ ଏହି ସବୁର ଊର୍ଦ୍ଧ୍ୱକୁ ଚାଲିଯିବା ହିଁ କ୍ରିୟାଯୋଗ ଅଟେ ।

## ପରମାର୍ଥର ନିରୁପଣ

ଏହାପରେ ଭଗବାନ ପରମାର୍ଥର ନିରୁପଣ କରିଛନ୍ତି । ପରମାର୍ଥରେ ଭଗବାନ୍ କହୁଛନ୍ତି ଯେ ପରମାତ୍ମା ଅର୍ଥାତ୍ ତତ୍ତ୍ୱ, ଦେଶ-କାଳ-ବସ୍ତୁ-ବ୍ୟକ୍ତିର ଉର୍ଦ୍ଧ୍ୱରେ । ସେ ନାମ, ରୂପ, ଗୁଣ, କ୍ରିୟା, ଦ୍ରବ୍ୟ, ସଂବନ୍ଧ ଆଦିରୁ ମୁକ୍ତ ଏବଂ ନିର୍ବିଶେଷ ଅଟନ୍ତି । ସେହି ସ୍ୱରପରେ ସ୍ଥିତ ହୋଇଯାଅ । ସେଠାରେ ସ୍ଥିତ ହୋଇ ସମସ୍ତ ଜଗତକୁ ଦେଖ । କାହାର ସ୍ତୁତି ଅଥବା ନିନ୍ଦା କର ନାହିଁ । ଏହି ସଂପୂର୍ଣ୍ଣ ଜଗତ କେବଳ ଆତ୍ମା ହିଁ ଅଟେ, ଏଭଳି ଜାଣି କରି ଶାନ୍ତ ହୋଇଯାଅ। ପରମାର୍ଥ ତତ୍ତ୍ୱରେ ଦ୍ୱୈତର ଲେଶମାତ୍ର ମଧ୍ୟ ନାହିଁ । **'ସର୍ବପ୍ରଶ୍ନୋପଶମମ୍'** ଯେଉଁଠି ନା ନାମ ଅଛି, ନା ରୂପ ଅଛି, ନା ଗୁଣ ଅଛି, ନା କେହି ବ୍ୟକ୍ତି ଅଛନ୍ତି। ଯେଉଁଠାରେ ପହଞ୍ଚିଲା ପରେ ସମସ୍ତ ପ୍ରପଞ୍ଚ ଶାନ୍ତ ହୋଇଯାଏ, ସେ ହିଁ ପରମାତ୍ମା, ସେ ହିଂ ତତ୍ତ୍ୱ ଅଟେ ।

ଉଦ୍ଧବ ପଚାରୁଛନ୍ତି, "ହେ ଭଗବନ୍ ! ଯଦି ତତ୍ତ୍ୱ ହେଉଛି ଏଭଳି, ତେବେ ଆମମାନଙ୍କୁ ଏହି ବ୍ୟାପକ ଜଗତରେ ଏବଂ ସେଠାରେ ଘଟୁଥିବା ଅସଂଖ୍ୟ ଘଟଣାଗୁଡିକ କାହିଁକି ଦେଖାଯାଏ ?" ଭଗବାନ୍ କହୁଛନ୍ତି, "ଏହା ହିଁ ହେଉଛି ଅବିଦ୍ୟା ବୃତ୍ତି । ଅବଦ୍ୟା ଯୋଗୁଁ ଯିଏ ଯେଉଁଠାରେ ନାହିଁ କିନ୍ତୁ ସେଠାରେ ପ୍ରତିଭାସିତ ହୋଇଥାଏ। ଯେପରି ରଶିରେ ସର୍ପଦର୍ଶନ । ଏହା ହେଉଛି ବେଦାନ୍ତର ପ୍ରସିଦ୍ଧ ଦୃଷ୍ଟାନ୍ତ । ଏହି ଦୃଷ୍ଟାନ୍ତରୁ ଏତିକି ବୁଝିବା କଥା ଯେ ଏଠାରେ ରଶି ହିଁ କେବଳ ପରମାର୍ଥ ତତ୍ତ୍ୱ ଅଟେ, ଏହା ହିଁ ସତ୍ୟ ଅଟେ, କିନ୍ତୁ ଯେଉଁଭଳି ଭାବରେ ରଶିକୁ ନ ଜାଣି ପାରୁଥିବାରୁ ସେଠାରେ ସର୍ପ ଦେଖାଯାଇଥାଏ, ସେହିଭଳି ଭାବରେ ପରମାର୍ଥ ତତ୍ତ୍ୱକୁ ନ ଜାଣି ପାରୁଥିବାରୁ ଏହି ଜଗତ ଦେଖାଯାଇଥାଏ ଏବଂ ଏହି ଜଗତ ସହିତ ତାଦାତ୍ମ୍ୟ କରି ଆମ୍ଭେମାନେ ସୁଖି-ଦୁଃଖି ହୋଇଥାଉ ।

ସମସ୍ତ ଉପଦେଶକୁ ଶୁଣିବାପରେ ଉଦ୍ଧବ କହୁଛନ୍ତି, "ଭଗବାନ୍ ଆପଣ ସବୁକିଛି ମୋତେ କହି ଦେଲେ, କିନ୍ତୁ ପରମାର୍ଥ ପ୍ରାପ୍ତିର ଯେଉଁ ସାଧନ ଆପଣ ବର୍ଣ୍ଣନ କଲେ, ତାହା ତ ଅତି କଠିନ ଲାଗୁଛି । ତେଣୁ ସେଥିପାଇଁ କୌଣସି ସରଳ ସାଧନା କୁହନ୍ତୁ, ଯଦ୍ୱାରା ମନୁଷ୍ୟକୁ ଅନାୟାସ ପରମାର୍ଥର ପ୍ରାପ୍ତି ହୋଇଯିବ।" ଭଗବାନ୍ କହିଲେ, ଠିକ୍ ଅଛି, ମୁଁ ତୁମକୁ ସାର ରୂପରେ ବର୍ଣ୍ଣନ କରୁଛି । ଆମ୍ଭେ ସ୍ୱୟଂକୁ ଯେଉଁ ବର୍ଣ୍ଣ, ଆଶ୍ରମ, ସ୍ଥାନରେ ପ୍ରାପ୍ତ କରୁ - ତଦନୁରୂପ ଆମର ଯେଉଁ କର୍ତ୍ତବ୍ୟ ହୋଇଥାଏ, ତାକୁ ଭଗବାନଙ୍କର ପୂଜନ ଭାବି କରିବା ଉଚିତ୍ । ଏଭଳି କରିବା ଦ୍ୱାରା ଆମର ମନ ଶୁଦ୍ଧ ହୋଇଯାଏ, ସେତେବେଳେ ସତ୍ସଙ୍ଗ କରିବା ଉଚିତ୍ । ଏହାପରେ ସେ ହିଁ ପୂର୍ବକଥିତ କ୍ରମାନୁସାରେ

ମହତ୍ ସେବା କରିବା ଦ୍ୱାରା ଶ୍ରଦ୍ଧା ହେବ, ପୁଣି ରତି ହେବ, ଭକ୍ତି ହେବ ଏବଂ ସେତେବେଳେ ଧୀରେ ଧୀରେ ଏହି ସଂପୂର୍ଣ୍ଣ ଜଗତ ମୋ ଭିତରେ ଅଛି, ମୁଁ ଜଗତ ଭିତରେ ଅଛି - ଏହିଭଳି ପ୍ରକାରର ଜ୍ଞାନ ପ୍ରାପ୍ତ ହୋଇଯିବ । କହିବାର ତାତ୍ପର୍ଯ୍ୟ ସାଧନାର ସାର ରୂପ ହେଲା - ଯେ ପ୍ରଥମେ ଆମେ ନିଜର ମନକୁ ଶୁଦ୍ଧ କରି ନେବା ଏବଂ ସେହି ଶୁଦ୍ଧ ମନ ଦ୍ୱାରା ଗୁରୁମୁଖରୁ ଉପଦେଶ ଶ୍ରବଣ କରିବା, ଯାହାର ଶ୍ରବଣ କରିଛନ୍ତି, ତା ଉପରେ ବିଚାର କରି ଜ୍ଞାନ ପ୍ରାପ୍ତ କରିବା ଏବଂ ଜ୍ଞାନ ପ୍ରାପ୍ତି ପରେ ଭକ୍ତି ରସରେ ବୁଡିଯିବା । ଏହାପରେ ଆଉ କିଛି କରିବା ନିମନ୍ତେ ଶେଷ ନ ଥାଏ । ଏବେ ଭଗବାନ୍ କହୁଛନ୍ତି -

**ୟ ଏତନ୍ମମ ଭକ୍ତେଷୁ ସମ୍ପ୍ରଦଦ୍ୟାତ୍ ସୁପୁଷ୍କଲମ୍ ।**
**ତସ୍ୟାହଂ ବ୍ରହ୍ମଦାୟସ୍ୟ ଦଦାମ୍ୟାତ୍ମାନମାତ୍ମନା ॥** (୧୧.୨୯.୨୬)

ଯେଉଂ ବ୍ୟକ୍ତି ମୋ ଦ୍ୱାରା ପ୍ରଦତ୍ତ ଏହି ଜ୍ଞାନକୁ ସଂପ୍ରଦାୟରେ ନିଜର ଶିଷ୍ୟ ତଥା ଅନ୍ୟ ଲୋକମାନଙ୍କୁ ପ୍ରଦାନ କରେ, ତାକୁ ମୁଁ ନିଜେ ନିଜକୁ ସମର୍ପଣ କରି ଦିଏ। ଦେଖନ୍ତୁ, ଭଗବତ୍ ଜ୍ଞାନ ଦେଉଥିବା ବ୍ୟକ୍ତି ଉପରେ ଭଗବାନଙ୍କର କେତେ କୃପା ହୋଇଥାଏ।

**ୟ ଏତତ୍ ସମଧୀୟୀତ ପବିତ୍ରଂ ପରମଂ ଶୁଚି ।**
**ସ ପୂୟେତାହରହର୍ମା ଜ୍ଞାନଦୀପେନ ଦର୍ଶୟନ୍ ॥** (୧୧.୨୯.୨୭)

ଭଗବାନ୍ କହୁଛନ୍ତି, "ଯଦି କେହି ବ୍ୟକ୍ତି ଅନ୍ୟକୁ ଅଧ୍ୟୟନ ନ କରାଉ, ଶ୍ରବଣ ନ କରାଉ, କିନ୍ତୁ ଯଦି ସେ ସ୍ୱୟଂ ଏହାର ଅଧ୍ୟୟନ କରେ, ତେବେ ତାକୁ ଘିଅର ଦୀପ ଦେଖାଇବାରେ ଅଥବା ଅନ୍ୟ କିଛି କରିବାର ଆବଶ୍ୟକତା ନାହିଁ। ଭାଗବତ ଶାସ୍ତ୍ରର ଅଧ୍ୟୟନ ହିଁ ଜ୍ଞାନ ଦୀପ ଦ୍ୱାରା ମୋର ବାସ୍ତବିକ ପୂଜା।"

**ୟ ଏତଚ୍ଛ୍ରଦ୍ଧୟା ନିତ୍ୟମବ୍ୟଗ୍ରଃ ଶୃଣୁୟାନ୍ନରଃ ।**
**ମୟି ଭକ୍ତିଂ ପରାଂ କୁର୍ବନ୍ କର୍ମଭିର୍ନ ସ ବଧ୍ୟତେ ॥ (୧୧.୨୯.୨୮)**

"ଯେଉଁ ମନୁଷ୍ୟ ଏହି ଶାସ୍ତ୍ରକୁ ଶ୍ରଦ୍ଧାର ସହିତ ଏକାଗ୍ରଚିତ୍ତ ହୋଇ ଶ୍ରବଣ କରେ, ବ୍ୟଗ୍ରଚିତ୍ତ ହୋଇ ନୁହେଁ, ତାକୁ ମୋର ଭକ୍ତି ପ୍ରାପ୍ତ ହୋଇଯାଏ ଏବଂ '**କର୍ମଭିର୍ନ ସ ବଧ୍ୟତେ**' ସେ କର୍ମ ବନ୍ଧନରେ ବାନ୍ଧି ହୁଏ ନାହିଁ ।" ଶ୍ରବଣ, ଅଧ୍ୟୟନ-ଅଧ୍ୟାପନ ଆଦିର

ଫଳକୁ ନିରୂପଣ କରି ଏବେ ଭଗବାନ୍ ଉଦ୍ଧବଙ୍କୁ ପଚାରୁଛନ୍ତି ଯେ ତୁମର ମନରେ ଯେଉଁ ଅନେକ ପ୍ରଶ୍ନ ତଥା ଶଙ୍କା ଆଦି ଥିଲା, କଣ ସେଗୁଡିକର ନିବାରଣ ହୋଇଗଲା ? ପୁଣି କହୁଛନ୍ତି –

**ଅପ୍ୟୁଦ୍ଧବ ତ୍ୱୟା ବ୍ରହ୍ମ ସଖେ ସମବଧାରିତମ୍ ।**

**ଅପିତେ ବିଗତୋ ମୋହଃ ଶୋକଶ୍ଚାସୌ ମନୋଭବଃ ॥** (୧୧.୨୯.୨୯)

ଆରେ ମିତ୍ର ଉଦ୍ଧବ ! ତୁମେ କଣ ବ୍ରହ୍ମକୁ ଭଲ ଭାବରେ ବୁଝିଗଲ ? ତୁମର ମନରେ ଉତ୍ପନ୍ନ ହେଉଥିବା ଅବିଦ୍ୟା ମୂଳକ ଶୋକ, ମୋହ କଣ ଦୂର ହୋଇଗଲା ? ପୁଣି କହୁଛନ୍ତି – ଏହି ଜ୍ଞାନକୁ ଯେକୌଣସି ବ୍ୟକ୍ତିକୁ ଦେବ ନାହିଁ। ଯାହାର ମୋ ପ୍ରତି ଶ୍ରଦ୍ଧା-ଭକ୍ତି ନାହିଁ,ଏହି ଗ୍ରନ୍ଥ ପ୍ରତି ମଧ୍ୟ ଶ୍ରଦ୍ଧାଭକ୍ତି ନାହିଁ, ବରଂ ଏଥିରେ ଦୋଷ ଦେଖୁଥାଆନ୍ତି, ଅଭିମାନୀ ଅଟନ୍ତି, ପାଖଣ୍ଡ କରନ୍ତି, ଏହିଭଳି ଲୋକମାନଙ୍କୁ ଏହିଜ୍ଞାନକୁ ଦେବ ନାହିଁ ।

**ନୈତତ୍ତ୍ୱୟା ଦାମ୍ଭିକାୟ ନାସ୍ତିକାୟ ଶଠାୟ ଚ ।**

**ଅଶୁଶ୍ରୁଷୋରଭକ୍ତାୟ ଦୁର୍ବିନୀତାୟ ଦୀୟତାମ୍ ॥** (୧୧.୨୯.୩୦)

ଯାହା ପାଖରେ ଅଭିମାନ ଅଛି, ଦୁଷ୍ଟତା ଅଛି, ନମ୍ରତା ନାହିଁ, ଶ୍ରଦ୍ଧା ନାହିଁ, ଶୁଣିବାର ଇଚ୍ଛା ନାହିଁ, ସେବା କରିବାର ଇଚ୍ଛା ମଧ୍ୟ ନାହିଁ – ଏହିଭଳି ବ୍ୟକ୍ତିକୁ ଏହି ଜ୍ଞାନ ଦେବ ନାହିଁ । ପରନ୍ତୁ ଯିଏ ଏହି ଦୋଷ ଠାରୁ ରହିତ ଅଟେ, ଯିଏ ଭଗବାନ, ତଥା ତାଙ୍କ ଗୁଣ ପ୍ରତି ପ୍ରେମ କରେ, ଯିଏ ଶୁଣିବାକୁ ଚାହେଁ, ତଥା ସେ ମଧ୍ୟ କରିବାକୁ ଚାହେଁ, ତାକୁ ଏହି ଜ୍ଞାନକୁ ଅବଶ୍ୟ ଦେବ । ଏହି ଜ୍ଞାନକୁ ପ୍ରାପ୍ତ କରି ନେବା ପରେ, ଏହି ଜଗତରେ ଜାଣିବାର ଯୋଗ୍ୟ ଅନ୍ୟ କିଛି ବାକି ରହି ନ ଥାଏ । ଏହି କଥାମୃତର, ଜ୍ଞାନାମୃତର ପାନ କରିବା ପରେ ପ୍ରାପ୍ତ କରିବାର ଯୋଗ୍ୟ ଏବଂ ଅନ୍ୟ କୌଣସି ବସ୍ତୁ ଶେଷ ରହେ ନାହିଁ ଏବଂ କୌଣସି ବିଷୟ ପ୍ରତି ଇଚ୍ଛା ମଧ୍ୟ ରହେ ନାହିଁ ।

**ସ ଏବମାଦର୍ଶିତଯୋଗମାର୍ଗ**

**ସ୍ତଦୋତ୍ତମଶ୍ଳୋକବଚୋ ନିଶମ୍ୟ ।**

**ବଦ୍ଧାଞ୍ଜଳିଃ ପ୍ରୀତ୍ୟୁପରୁଦ୍ଧକଣ୍ଠୋ**

**ନ କିଞ୍ଚିଦୂଚେଽଶ୍ରୁପରିପ୍ଲୁତାକ୍ଷଃ ॥** (୧୧.୨୯.୩୫)

ଏଠାରେ ଭଗବାନ ତ ପ୍ରଶ୍ନ ପଚାରୁଛନ୍ତି ଯେ ହେ ଉଦ୍ଧବ ! ତୁମେ କଣ ବ୍ରହ୍ମକୁ ବୁଝିଗଲ ? କିନ୍ତୁ ସେ ସମୟରେ ଉଦ୍ଧବଙ୍କର ମନ କୃତଜ୍ଞତାରେ, ପ୍ରେମରସରେ ଏତେ ଭରିଯାଇଥିଲା ଯେ ତାଙ୍କର କଣ୍ଠ ଅବରୁଦ୍ଧ ହୋଇଗଲା ଏବଂ ତାଙ୍କର ମୁଖରୁ ବଚନ ବାହାରୁ ନ ଥିଲା, **'ନ କିଞ୍ଚିତ୍ ଉଚେ ଅଶ୍ରୁପରିପ୍ଲୁତାକ୍ଷଃ'** ତାଙ୍କର ଚକ୍ଷୁ ଅଶ୍ରୁପୂର୍ଣ୍ଣ ହୋଇଯାଇଥିଲା । ବହୁ ସମୟ ପରେ ପୁଣି ଧୈର୍ଯ୍ୟ ଧାରଣ କରି ଉଦ୍ଧବଜୀ କହୁଛନ୍ତି -

**ବିଦ୍ରାବିତୋ ମୋହମୋହାନ୍ଧକାରୋ**

**ୟ ଆଶ୍ରିତୋ ମେ ତବ ସନ୍ନିଧାନାତ୍ ॥** (୧୧.୨୯.୩୭)

ଭଗବାନ, ଆପଣଙ୍କର ସହିତ ରହି ମୋର ଅତି ବଡ ମୋହ-ଅନ୍ଧକାର ଏବେ ଦୂର ହୋଇଗଲା । ଦୂର କାହିଁକି ହେବ ନାହିଁ ? ଯେଉଁ ଭଳି ଭାବରେ ଜଣେ ବ୍ୟକ୍ତିକୁ ଯଦି ଥଣ୍ଡା ଲାଗୁଛି ଏବଂ ସେ ଅଗ୍ନି ପାଖକୁ ଚାଲିଯାଏ, ତେବେ ତାର ନିଶ୍ଚୟ ଥଣ୍ଡା ଦୂର ହେବ । ସେହିଭଳି ଭାବରେ ଆପଣ ମୋ ଭଳି ସେବକକୁ, ନିଜର ଭୃତ୍ୟକୁ ଏହି ଜ୍ଞାନ ଦେଇ କୃତାର୍ଥ କରି ଦେଲେ । ଏବେ ଆପଣଙ୍କର ଚରଣ କମଳକୁ ଛାଡି ମୁଁ କୁଆଡେ ଯିବି ? ସ୍ୱଜନ-ସମ୍ବନ୍ଧିମାନଙ୍କ ଭିତରେ, ଯଦୁବଂଶୀମାନଙ୍କ ଭିତରେ, ଏବଂ ଅନ୍ୟ ଲୋକମାନଙ୍କ ସହିତ ମୋର ଯେଉଁ ଆସକ୍ତି ହୋଇ ଯାଇଥିଲା, ସେହି ଆସକ୍ତିର ବନ୍ଧନକୁ ଆପଣ ଏହି ଜ୍ଞାନ ଉପଦେଶ ଦ୍ୱାରା କାଟି ଦେଲେ । ହେ ମହାଯୋଗିନ୍ !ଆପଣଙ୍କୁ ନମସ୍କାର । ମୁଁ ଆପଣଙ୍କର ଶରଣରେ ଆସିଛି । ଆପଣଙ୍କର କୃପା ମୋ ଉପରେ ସଦାସର୍ବଦା ଥାଉ । ଆପଣଙ୍କର ଚରଣରେ ଅବିଚଳ, ଅନପାୟନୀ (କେବେ ଦୂର ନ ହେଉଥିବା) ଭକ୍ତି ମୋତେ ପ୍ରାପ୍ତ ହେଉ। ଭଗବାନ୍ କହୁଛନ୍ତି - ହେ ଉଦ୍ଧବ ! ତୁମେ ଏବେ ଏହି ଜ୍ଞାନ ପ୍ରାପ୍ତ କରି ନେଲ । ଏବେ ତୁମେ ଏଠାରୁ ବଦରିକା ଆଶ୍ରମ ଚାଲିଯାଅ। ସେଠାରେ ଯାଇ ତୁମେ ଏହି ଜ୍ଞାନକୁ ସତତ ମନନ, ଚିନ୍ତନ ବା ଧ୍ୟାନ କରୁଥାଅ ।

**ମୟ୍ୟାବେଶିତବାକ୍‌ଚିତ୍ତୋ ମଦ୍ଧର୍ମନିରତୋ ଭବ ।**
**ଅତିବ୍ରଜ୍ୟ ଗତୀସ୍ତିସ୍ରୋ ମାମେଷ୍ୟସି ତତଃ ପରମ୍ ॥** (୧୧.୨୯.୪୮)

ଏଭଳି କରି ଯେତେବେଳେ ତୁମର ମନ ସ୍ଥିର ହୋଇଯିବ, ତେବେ ତୁମେ ମୋତେ ପ୍ରାପ୍ତ ହେବ ।

**ସ ଏବ ମୁକ୍ତୋ ହରିମେଧସୋଦ୍ଧବଃ**
**ପ୍ରଦକ୍ଷିଣଂ ତଂ ପରିସୃତ୍ୟ ପାଦୟୋଃ ।**
**ଶିରୋ ନିଧାୟାଶ୍ରୁକଲାଭିରାର୍ଦ୍ରଧୀ -**
**ର୍ନ୍ୟଷିଞ୍ଚଦଦ୍ୱନ୍ଦପରୋଽପ୍ୟପକ୍ରମେ ॥** (୧୧.୨୯.୪୫)

ଏହା ଶୁଣି ଉଦ୍ଧବ ଭଗବାନଙ୍କର ଶ୍ରୀଚରଣରେ ମୁଣ୍ଡ ରଖି ପ୍ରାର୍ଥନା କରୁଛନ୍ତି। ଭଗବାନ ତ ତାଙ୍କୁ ଆଦେଶ ଦେଲେ ଯେ ବଦରିକାଶ୍ରମ ଯାଆନ୍ତୁ । ପରନ୍ତୁ ସେ ଯିବେ କିପରି ? ତାଙ୍କର ପାଦ ତ ଉଠୁ ନାହିଁ । ଏହା ତ ଏଭଳି ସ୍ଥିତି ଯେ ଯେଉଁଭଳି ଚିତ୍ରକୂଟରେ ଭରତଜୀଙ୍କର ହୋଇଥିଲା । ଭଗବାନ ଶ୍ରୀରାମଚନ୍ଦ୍ରଜୀ ଆଦେଶ ଦେଲେ ଯେ ତୁମେ ଅଯୋଧ୍ୟା ଯାଅ । କଥା ତ ବୁଝି ହୋଇଗଲା କିନ୍ତୁ ଯିବେ କିପରି ? ତାଙ୍କର ଆଶ୍ରୟର ଆବଶ୍ୟକତା ଥିଲା । ତେବେ ରାମଚନ୍ଦ୍ରଜୀ ନିଜର ପାଦୁକା ଦେଇଥିଲେ। ସେ ତାକୁ ମସ୍ତକରେ ରଖି ଚାଲିଲେ । ଏବେ ଦେଖନ୍ତୁ, ଏଠାରେ ମଧ୍ୟ ଭଗବତ୍ ସ୍ୱରୂପର ଜ୍ଞାନ ହେଲା ପରେ ମଧ୍ୟ ଉଦ୍ଧବଙ୍କୁ ସଗୁଣ ଆଶ୍ରୟର ଆବଶ୍ୟକତା ପଡିଲା ।

**ସୁଦୁସ୍ତ୍ୟଜସ୍ନେହବିୟୋଗକାତରୋ**
**ନ ଶକ୍ନୁବଂସ୍ତଂ ପରିହାତୁମାତୁରଃ ।**
**କୃଚ୍ଛ୍ରଂ ୟୟୌ ମୂର୍ଧନି ଭର୍ତୃପାଦୁକେ**
**ବିଭ୍ରନ୍ନମସ୍କୃତ୍ୟ ୟୟୌ ପୁନଃ ପୁନଃ ॥** (୧୧.୨୬.୪୯)

ଉଦ୍ଧବ ଯେଉଁ ଭଗବାନଙ୍କୁ ପିଲାଟି ବେଳୁ ଏତେ ପ୍ରେମ କରୁଥିଲେ, ଏବଂ ଯିଏ ଉଦ୍ଧବଙ୍କୁ ଏତେ ପ୍ରେମ କରୁଥିଲେ, ତାଙ୍କଠାରୁ ଦୂରକୁ ଯିବାକୁ ଉଦ୍ଧବଙ୍କୁ କେତେ ଦୁଃଖ ହୋଇଥିବ ? ଅଜ୍ଞାନୀ ଲୋକଟିଏ ଭଳି, ସଂସାରୀ ଲୋକଟିଏ ଭଳି ଦୁଃଖ ନୁହେଁ, ଏହି ଦୁଃଖ ତ କିଛି ଅଲଗା ଏବଂ କୌଣସି ଭାଗ୍ୟଶାଳୀକୁ ହିଁ ଏଭଳି ସ୍ଥିତି ପ୍ରାପ୍ତ ହୁଏ ।

ଭଗବାନ୍ ବୁଝିଗଲେ ଯେ ଉଦ୍ଧବଙ୍କୁ କୌଣସି ଆଲମ୍ବନର ଆବଶ୍ୟକତା ଅଛି, ସେଥିପାଇଁ ସେ ନିଜର ଚରଣ ପାଦୁକାକୁ ପ୍ରଦାନ କଲେ । ତାଙ୍କୁ ନିଜର ମସ୍ତକରେ **'ମୂର୍ଧନି ଭର୍ତୃପାଦୁକେ ବିଭ୍ରନ୍'** ଧାରଣ କରି ଉଦ୍ଧବଜୀ ବାରମ୍ବାର ନମସ୍କାର କରି (ଯେମିତି ଶେଷଥର ପାଇଁ କରୁଛନ୍ତି) କିଛି ଦୂର ଯାଇ ପୁଣି ଥରେ ପଛକୁ ଅନାଇଁ ଦେଖୁଛନ୍ତି । ଫେରିଚାହିଁ ଦେଖିଲାପରେ ଆଗକୁ କିପରି ଯିବେ ? ସେଥିପାଇଁ ପୁଣିଥରେ ପ୍ରଣାମ କରୁଛନ୍ତି ଏବଂ ଅନ୍ତତଃ ଅତି କଷ୍ଟରେ **'ତଦନ୍ତମନ୍ତର୍ହୃଦି ସଂନିବେଶ୍ୟ'** ଭଗବାନଙ୍କୁ ନିଜ ହୃଦୟରେ ପ୍ରତିଷ୍ଠିତ କରି ମହାଭାଗବତ ଉଦ୍ଧବ ସେଠାରୁ ବିଦାୟ ନେଲେ । ଏହାପରେ ଅତି ସଂକ୍ଷେପରେ ବର୍ଣ୍ଣନ କରାଯାଇଛି ଯେ ତାଙ୍କୁ ଯେଉଁ ନିର୍ଦ୍ଦେଶ ପ୍ରାପ୍ତ ହୋଇଥିଲା, ସେହି ଅନୁସାରେ ସେ ସାଧନା କଲେ ଏବଂ ତାଙ୍କୁ ଭଗବାନଙ୍କର ପ୍ରାପ୍ତ ହୋଇଗଲା । ଭଗବାନ୍ ଶ୍ରୀକୃଷ୍ଣ ତଥା ଉଦ୍ଧବଙ୍କ ମଧ୍ୟରେ ଏହି ସମ୍ବାଦକୁ ଯେ କେହି ଶ୍ରଦ୍ଧା, ଭକ୍ତିପୂର୍ବକ ଶ୍ରବଣ କରେ, ତଦନୁରୂପ ଧ୍ୟାନ କରେ, ତାକୁ ସେହି ଗତି ପ୍ରାପ୍ତ ହୋଇଯାଏ ।

**ଭବଭୟମପହନ୍ତୁଂ ଜ୍ଞାନବିଜ୍ଞାନସାରଂ**
**ନିଗମକୃଦୁପଜହ୍ରେ ଭୃଙ୍ଗବଦ୍ ବେଦସାରମ୍**
**ଅମୃତମୁଦଧିତଶ୍ଚାପାୟୟଦ୍ ଭୃତ୍ୟବର୍ଗାନ୍**
**ପୁରୁଷମୃଷଭମାଦ୍ୟଂ କୃଷ୍ଣସଂଜ୍ଞଂ ନତୋଽସ୍ମି ॥** (୧୧.୨୬.୪୬)

ନିଜର ସେବକମାନଙ୍କୁ ଏହି ଜ୍ଞାନାମୃତରପାନ କରାଇ ସଂସାରରୁ ମୁକ୍ତ କରାଉଥିବା ଭଗବାନ ଶ୍ରୀକୃଷ୍ଣଙ୍କୁ ନମସ୍କାର । ଏହା ସହିତ **'ଉଦ୍ଧବ ଗୀତା'**ର ପ୍ରସଙ୍ଗ ସମାପ୍ତ ହୁଏ ।

ଏବେ ଦ୍ୱାରକାରେ ଅତି ପ୍ରବଳ ଉତ୍ପାତ ହେବାକୁ ଲାଗିଲା । ଭଗବାନ ଜାଣିଥିଲେ ଯେ ଏବେ ବ୍ରାହ୍ମଣମାନଙ୍କର ଅଭିଶାପ ଦ୍ୱାରା ଯାଦବ ମାନଙ୍କର ସଂହାରର ସମୟ ଆସିଗଲା । ସେତେବେଳେ ସୁଧର୍ମା ସଭାରେ ସେ ସମସ୍ତ ଯଦୁବଂଶୀମାନଙ୍କୁ କହିଲେ ଯେ ଏବେ ଦ୍ୱାରକାରେ ଅତି ଭୟଙ୍କର ଉତ୍ପାତ ହେବାକୁ ଲାଗିଲାଣି । ଏବେ ଆମ୍ଭେମାନେ ଏହି ସ୍ଥାନକୁ ଛାଡି ପ୍ରଭାସ କ୍ଷେତ୍ରକୁ ଚାଲିଯିବା ଉଚିତ୍ । ସେଠାକୁ ଯାଇ ଆମେ ସମସ୍ତେ ଦେବତାମାନଙ୍କର ପୂଜା ଆଦି କରିବା । ତାପରେ ସମସ୍ତ ଯଦୁବଂଶୀମାନେ ତାହା ହିଁ କଲେ । ପ୍ରଭାସ କ୍ଷେତ୍ରରେ ପହଞ୍ଚି ସମସ୍ତେ ଶ୍ରଦ୍ଧା, ଭକ୍ତିପୂର୍ବକ ସମସ୍ତେ ମଙ୍ଗଳ କାର୍ଯ୍ୟ ଆଦି କଲେ । ତଥାପି ଦୈବ ବଶ ସେମାନଙ୍କର ବୁଦ୍ଧିକୁ ହରଣ କରି ନିଆଗଲା ।

କୁହାଯାଇଛି **'ହୃଷ୍ଟଃ ଦୃପ୍ୟତି, ଦୃପ୍ତଃ ଧର୍ମଂ ଅତିକ୍ରାମତି'** ଯେତେ ବେଳେ ବ୍ୟକ୍ତି ଅତ୍ୟଧିକ ହର୍ଷିତ ହୋଇଯାଏ, ତେବେ ତାକୁ ଏକପ୍ରକାର ନିଶା ଚଢେ ଏବଂ ସେ ଧର୍ମର ଅତିକ୍ରମଣ କରିଯାଏ । ଏହି ଯଦୁବଂଶୀ ମଧ୍ୟ ଏହିଭଳି ମୋହିତ ହୋଇ 'ମୈରେୟକ' ନାମକ ମଦିରା ପାନ କରିବାକୁ ଲାଗିଲେ । ସେମାନଙ୍କୁ ଏଭଳି ନିଶା ଚଢିଗଲା ଯେ କୌଣସି ଛୋଟ-ଛୋଟ କଥାରେ ତୁ ତୁ, ମୁଁ ମୁଁ ହେବାକୁ ଲାଗିଲେ ଏବଂ ସେମାନେ ପରସ୍ପର ସହିତ ଲଢିବାକୁ ଲାଗିଲେ । ସମସ୍ତେ ଭାଇ-ଭାଇର ଛୋଟ-ବଡର ଭାବକୁ ଭୁଲିଗଲେ ଏବଂ ପରସ୍ପର ଘୋର ଯୁଦ୍ଧ କରିବାକୁ ଲାଗିଲେ । ସେମାନେ ନିଜ-ନିଜ ଭିତରେ ଏଭଳି ଯୁଦ୍ଧ ଆରମ୍ଭ କରି ଦେଲେ ଯେ ସେମାନଙ୍କର ସମସ୍ତ ଶସ୍ତ୍ରାସ୍ତ୍ର ମଧ୍ୟ ନଷ୍ଟ ହୋଇଗଲା ।

ତାପରେ ସମସ୍ତେ ସମୁଦ୍ର ତଟରେ ଲାଗିଥିବା ଏରକା ନାମକ ଘାସକୁ ଉପାଡି ସେଥିରେ ପରସ୍ପର ଉପରେ ପ୍ରହାର କରିବାକୁ ଲାଗିଲେ । ଏହା ସେହି ଘାସ ଥିଲା, ଯାହା କି ବ୍ରାହ୍ମଣମାନଙ୍କର ଅଭିଶାପ ଅନୁସାରେ, ସେହି ମୁସଳର ଚୂର୍ଣ୍ଣରୁ ଜନ୍ମ ନେଇଥିଲା । ସେମାନଙ୍କର ହାତକୁ ଆସି ସେହି ଘାସଗୁଡିକ ବଜ୍ର ଭଳି କଠୋର ହୋଇଗଲା । ସେତେବେଳେ ଭଗବାନ୍ ଶ୍ରୀକୃଷ୍ଣ ଏବଂ ବଳରାମଜୀ ସେଠାକୁ ଯାଇ ସେମାନଙ୍କୁ ଶାନ୍ତ କରାଇବା ନିମନ୍ତେ ପ୍ରୟାସ କଲେ । କିନ୍ତୁ ସେମାନେ ସମସ୍ତେ ଏହିଭଳି ମୂଢ଼ ହୋଇ ଯାଇଥିଲେ ଯେ ଶ୍ରୀକୃଷ୍ଣ ତଥା ବଳରାମଜୀଙ୍କ ଉପରେ ପ୍ରହାର କରିବାକୁ ଦୌଡିଲେ । ସେତେବେଳେ ଶ୍ରୀକୃଷ୍ଣ ଏବଂ ବଳରାମଜୀ କ୍ରୋଧିତ ହୋଇ ହାତରେ ମୁଠାଏ ମୁଠାଏ ଏରକା ଘାସକୁ ଉପାଡି ସେମାନଙ୍କୁ ମାରିବା ଆରମ୍ଭ କରି ଦେଲେ । ତଦ୍ୱାରା ସମସ୍ତଙ୍କର ସଂହାର ହୋଇଗଲା । ସମସ୍ତଙ୍କର ସର୍ବନାଶକୁ ଦେଖି ଏବେ ଭଗବାନ ମଧ୍ୟ ସ୍ୱଧାମ ଗମନ କରିବା ନିମନ୍ତେ ଉଦ୍ୟତ ହୋଇଗଲେ । ସେ ପର୍ଯ୍ୟନ୍ତ ବଳରାମଜୀ ମଧ୍ୟ ସମୁଦ୍ର ତଟରେ ବସି ସ୍ୱୟଂକୁ ଆତ୍ମସ୍ୱରୂପରେ ସ୍ଥିତ କରି ଦେହର ତ୍ୟାଗ କରି ଦେଲେ ।

**ନିଷସାଦ ଧରୋପସ୍ଥେ ତୂଷ୍ଣୀମାସାଦ୍ୟ ପିପ୍ପଲମ୍ ॥** (୧୧.୩୦.୨୭)

ସେତେବେଳେ ଭଗବାନ୍ ଏକ ଅଶ୍ୱତ୍ଥ ବୃକ୍ଷ ତଳେ ବସିଗଲେ । ପୁଣି ସେ ଶଙ୍ଖ-ଚକ୍ର-ଗଦା-ପଦ୍ମ ସହିତ ନିଜର ଚତୁର୍ଭୁଜ ରୂପ ଧାରଣ କରି ନେଲେ । ଗଳାରେ କୌସ୍ତୁଭମଣି ଥିଲା, କର୍ଣ୍ଣରେ ମକର-କୁଣ୍ଡଳ ଥିଲା ଏବଂ ପୀତାମ୍ବର ଧାରଣ କରିଥିଲେ । ତାଙ୍କର ତେଜରେ ଚତୁର୍ଦ୍ଦିଗ ପ୍ରକାଶିତ ହେଉଥିଲା ଏବଂ ଦେଖନ୍ତୁ ଭଗବାନ କିଭଳି ବସିଥିଲେ -

**କୃତ୍ୱୋରୌ ଦକ୍ଷିଣେ ପାଦମାସୀନଂ ପଙ୍କଜାରୁଣମ୍ ।।** (୧୧.୩୦.୩୨)

ଭଗବାନ୍ ବୃକ୍ଷକୁ ଡେରି ହୋଇ ବସିଥିଲେ । ତାଙ୍କର ପାଦ ଅତ୍ୟନ୍ତ ମନୋହାରୀ, ଶ୍ୟାମଳ କୋମଳ ଥିଲା । ଦକ୍ଷିଣ ପାଦ ଲମ୍ବାଇ ବସିଥିଲେ, ଏବଂ ବାମ ପାଦକୁ ମୋଡି ଦକ୍ଷିଣ ଜଂଘ ଉପରେ ରଖି ନିତାନ୍ତ ଶାନ୍ତ ହୋଇ ବସିଥିଲେ ସେଠାରୁ କିଛି ଦୂରରେ ଶିକାର କରୁଥିବା ଜରା ନାମକ ଲୁବ୍ଧକ କିଛି ଦୂରରେ ବସିଥିଲା । ତାର ଶର ମୂନରେ ସେହି ମୂଶଳର ଶେଷଭାଗର ଟୁକୁଡ଼ା ଖଣ୍ଡିକ ଲଗାଇଥିଲା - ଯାହାଦ୍ୱାରା ବ୍ରହ୍ମଶାପ ଅନୁସାରେ ଯଦୁବଂଶୀମାନଙ୍କର ବିନାଶ ହେବାର ଥିଲା । ସେ ଦୂରରୁ ଦେଖୁ ଥିଲା ।

**ମୃଗାସ୍ୟାକାରଂ ଚରଣଂ ବିବ୍ୟାଧ ମୃଗଶଙ୍କୟା ।।** (୧୧.୩୦.୩୩)

ଭ୍ରାନ୍ତିବଶ ସେ ଭଗବାନଙ୍କର ଚରଣକୁ ହରିଣର ମୁଖ ବୋଲି ଭାବିଲା ଏବଂ ତାର ଆଡକୁ ବାଣ ଛାଡି ଦେଲା । ସେ ଶର ସିଧା ଯାଇ ଭଗବାନଙ୍କର ପାଦରେ ପ୍ରବେଶ କରିଗଲା । ଲୁବ୍ଧକ ଯେତେବେଳେ ପାଖରେ ପହଞ୍ଚିଲା - **'ଚତୁର୍ଭୁଜଂ ତଂ ପୁରୁଷଂ ଦୃଷ୍ଟ୍ୱା'** ତେବେ ଚୁତର୍ଭୁଜ ନାରାୟଣ ଭଗବାନଙ୍କୁ ଦେଖି ସେ ଭୟଭୀତ ହୋଇଗଲା ଏବଂ ତାଙ୍କର ଚରଣ କମଳ ତଳେ ପଡିଗଲା । ସେ କହୁଛି - ଭଗବାନ୍ ! ମୁଁ ଅଜ୍ଞାନତା ବଶ ଯୋଗୁଁ ଏହି ଅପରାଧ କରିଛି । ଆପଣ ମୋତେ କ୍ଷମା କରନ୍ତୁ । ପୁଣି କହୁଛି - ମୁଁ ବଡ ପାପୀ ଅଟେ । ଆପଣ ମୋତେ କ୍ଷମା କରି ଦିଅନ୍ତୁ । ଭଗବାନ୍ କହିଲେ, "ଜରା, ଭୟ କର ନାହିଁ । ଏହା ସବୁ କିଛି ମୋର ସଂକଳ୍ପରୁ ହିଁ ହୋଇଛି । ଏବେ ତୁମେ ମୋର ଅନୁଗ୍ରହରୁ ସ୍ୱର୍ଗ ପୁର ଯାଅ ।" ତେଣୁ ତାଙ୍କୁ ନେବା ନିମନ୍ତେ ଏକ ବିମାନ ମଧ୍ୟ ଆସିଗଲା । ଏବେ ଦେଖନ୍ତୁ, ଏହି କଥା ଶୁଣାଯାଏ ଯେ ଭଗବାନ ଯାହାର ବଧ କରନ୍ତି, ତାଙ୍କୁ ବୈକୁଣ୍ଠ ଲୋକର ପ୍ରାପ୍ତି କରାଇ ଦିଅନ୍ତି । ପରନ୍ତୁ ଏଠାରେ ତ ଯିଏ ଭଗବାନଙ୍କୁ ମାରୁଛି, ଭଗବାନ ତାକୁ ମଧ୍ୟ ସ୍ୱର୍ଗକୁ ପଠାଉଛନ୍ତି । ସେହି ସମୟରେ ଭଗବାନଙ୍କର ସାରଥୀ ଦାରୁକ, (ଯିଏ କି ଭଗବାନଙ୍କୁ ଅତ୍ୟନ୍ତ ପ୍ରେମ କରୁଥିଲା) ସେଠାରେ ଯାଇ ପହଞ୍ଚିଲେ ଏବଂ ଭଗବାନଙ୍କୁ ଦେଖି ତାଙ୍କର ଚରଣରେ ପଡିଗଲେ । ପୁଣି ଦେଖୁ ଦେଖୁ ଗରୁଡ ଧ୍ୱଜ ଆଦି ଦ୍ୱାରା ସୁସଜ୍ଜିତ ଭଗବାନଙ୍କର ରଥ ଆକାଶ ମାର୍ଗରୁ ଅବତରଣ କଲା ଏବଂ ଭଗବାନଙ୍କୁ ଆରୁଢ କରି ପୁନଃ ଆକାଶ ଆଡକୁ ଚାଲିଗଲା । ଭଗବାନ କହୁଛନ୍ତି, "ଦାରୁକ ! ଏବେ ତୁମେ ଦ୍ୱାରକାକୁ ଯାଅ ଏବଂ ବଞ୍ଚିଥିବା ଲୋକମାନଙ୍କୁ (ଯେଉଁଠି ସ୍ତ୍ରୀମାନଙ୍କର ଆଧିକ୍ୟ) ଏହି ସମାଚାର ଶୁଣାଇ ଦେବେ । ମୁଁ ଯାଉଛି, ଏହା ମଧ୍ୟ କହି ଦେବ । ସେମାନଙ୍କୁ କହିବ ଯେ ଏବେ ଦ୍ୱାରକା ସମୁଦ୍ରରେ

ବୁଡିଯିବ । ତେଣୁ ସେମାନେ ସମସ୍ତେ ନିଜ-ନିଜର ଧନସମ୍ପତ୍ତି ତଥା ମୋର ମାତାପିତାଙ୍କୁ ନେଇ ଅର୍ଜୁନଙ୍କର ସଂରକ୍ଷଣରେ ଇନ୍ଦ୍ରପ୍ରସ୍ଥ ଚାଲିଯିବେ ।"

**ତ୍ୱଂ ତୁ ମଦ୍ଧର୍ମମାସ୍ଥାୟ ଜ୍ଞାନନିଷ୍ଠ ଉପେକ୍ଷକଃ ।**

**ମନ୍ମାୟାରଚନାମେତାଂ ବିଜ୍ଞାୟୋପଶମଂ ବ୍ରଜ ॥** (୧୧.୩୦.୪୬)

ପୁଣି କହୁଛନ୍ତି, "ମୋର ଭାଗବତ ଧର୍ମର ଆଶ୍ରୟ ନେଇ ଜ୍ଞାନ ନିଷ୍ଠ ହୋଇ ତୁମେ ନିଜ ସ୍ୱରୂପରେ ସ୍ଥିତ ହୋଇଯିବ ।" ଏଭଳି କହି ଭଗବାନ୍ ଦାରୁକକୁ ଦ୍ୱାରକା ପଠାଇଦେଲେ। ଏତିକିବେଳେ ବ୍ରହ୍ମା, ଶିବ, ଆଦି ସମସ୍ତ ଦେବତା ତଥା ଋଷିଗଣ ଭଗବାନଙ୍କର ମହାପ୍ରୟାଣ ଦେଖିବା ନିମନ୍ତେ ସମସ୍ତେ ପହଞ୍ଚିଲେ ଏବଂ ଶ୍ରୀକୃଷ୍ଣଙ୍କର ଜନ୍ମ ଲୀଳା ଆଦିର ଗାନ କରିବାକୁ ଲାଗିଲେ । କିନ୍ତୁ ସେଠାରେ ତ ଆଶ୍ଚର୍ଯ୍ୟର କଥା ହୋଇଗଲା ଯେ ଭଗବାନ ଏବେ ତ ସମ୍ମୁଖ ଦେଖାଯାଉଥିଲେ, ଏବଂ ପରକ୍ଷଣରେ ସେଠାରେ କିଛି ମଧ୍ୟ ନ ଥିଲା। ଭଗବାନଙ୍କର ପ୍ରସ୍ଥାନ କିପରି ହେଲା, କାହାକୁ କିଛି ବୁଝିହେଲା ନାହିଁ । କାହିଁକି ନା ସତକଥା କହିବାକୁ ଗଲେ ଭଗବାନ କୁଆଡେ ଯାଇନାହାନ୍ତି। ସେ ତ ସର୍ବବ୍ୟାପୀ । ସେ ଏକସ୍ଥାନରେ ପ୍ରକଟ ହୋଇଥିଲେ ଏବଂ ପୁଣି ଲୁପ୍ତ ହୋଇଗଲେ। ସେଥିପାଇଁ, ସେ କୁଆଡେ ଗଲେ, କିଭଳି ଗଲେ, କାହାକୁ କିଛି ଜଣା ପଡିଲା ନାହିଁ।

**ଇତ୍ଥଂ ହରେର୍ଭଗବତୋ ରୁଚିରାବତାର-**

**ବୀର୍ଯ୍ୟାଣି ବାଲଚରିତାନି ଚ ଶନ୍ତମାନି ।**

**ଅନ୍ୟତ୍ର ଚେହ ଚ ଶ୍ରୁତାନି ଗୃଣନ୍ ମନୁଷ୍ୟୋ**

**ଭକ୍ତିଂ ପରାଂ ପରମହଂସ ଗତୌ ଲଭେତ ॥** (୧୧.୩୧.୨୮)

ଶ୍ରୀଶୁକଦେବଜୀ ପରୀକ୍ଷିତଙ୍କୁ କହୁଛନ୍ତି - ଏହିଭଳି ଭଗବାନଙ୍କର ଯେଉଁ ସୁନ୍ଦର ଅବତାର ତଥା ତାଙ୍କର ବାଳ ଚରିତ୍ର ବା କିଶୋର ଚରିତ୍ରର ଶ୍ରବଣ ଯିଏ କରେ, ତାକୁ ଭକ୍ତି ପ୍ରାପ୍ତ ହୁଏ, ପରମହଂସଙ୍କର ଗତି ପ୍ରାପ୍ତ ହୋଇଯାଏ । ଏହି ପ୍ରସଙ୍ଗ ସହିତ ଏକାଦଶ ସ୍କନ୍ଧ ପୂର୍ଣ୍ଣ ହେଉଛି ।



# ଦ୍ୱାଦଶ ସ୍କନ୍ଧ

ଏବେ ଦ୍ୱାଦଶ ସ୍କନ୍ଧର ପ୍ରାରମ୍ଭ ହେଲା । ଦ୍ୱାଦଶ ସ୍କନ୍ଧ ଶ୍ରୀମଦ୍ ଭାଗବତର ଅନ୍ତିମ ସ୍କନ୍ଧ ଅଟେ । ଗୋଟିଏ ସମ୍ପ୍ରଦାୟ ଦୃଷ୍ଟିରେ ଏଥିରେ ଆଶ୍ରୟ ତତ୍ତ୍ୱର ବର୍ଣ୍ଣନ କରାଯାଇଛି ଏବଂ ଅନ୍ୟ ସମ୍ପ୍ରଦାୟ ଦୃଷ୍ଟିରେ ଏଥିରେ ନିରୋଧର ବର୍ଣ୍ଣନ ହୋଇଛି, ନିରୋଧର ଅର୍ଥ ପ୍ରଳୟ। ସର୍ଗ-ବିସର୍ଗର କ୍ରମର ଅନୁରୂପ ଦ୍ୱାଦଶ ସ୍କନ୍ଧ ତଥା ଦଶମ ସ୍କନ୍ଧର ନାମ ବିଭେଦର ଚର୍ଚ୍ଚା ଆମ୍ଭେ ଦଶମ ସ୍କନ୍ଧରେ କରିଛନ୍ତି ।

## କଳିଯୁଗର ଗୁଣ-ଦୋଷ

ରାଜା ପରୀକ୍ଷିତ ଶୁକଦେବଜୀଙ୍କୁ ପଚାରୁଛନ୍ତି ଯେ ଯେତେବେଳେ ଭଗବାନ୍ ନିଜର ଧାମକୁ ଚାଲିଗଲେ, ସେତେବେଳେ ପୃଥିବୀରେ କାହାର ରାଜ୍ୟ ହେଲା, ଆଗକୁ କିଏ ରାଜା ହେବ? ଏହାର ଉତ୍ତର ସ୍ୱରୂପ ଶ୍ରୀ ଶୁକଦେବଜୀ ପରବର୍ତ୍ତୀ କଳିଯୁଗୀ ରାଜବଂଶମାନଙ୍କର ବର୍ଣ୍ଣନ କଲେ ଏବଂ ତତ୍ ପଶ୍ଚାତ୍ କଳିଧର୍ମର ନିରୁପଣ କଲେ । କଳିଯୁଗର ଲୋକମାନେ କିଭଳି ହେବେ,ଏହାର ବର୍ଣ୍ଣନ ଆମ୍ଭେମାନେ ପ୍ରଥମ ସ୍କନ୍ଧରୁ ହିଁ ଦେଖିଛନ୍ତି । ଭାଗବତ ମାହାତ୍ମ୍ୟରେ ମଧ୍ୟ ଦେଖିଛନ୍ତି ଏବଂ ଦ୍ୱିତୀୟ କଥା ହେଲା, ଆମ୍ଭେମାନେ ସମସ୍ତେ କଳିଯୁଗରେ ହିଁ ଅଛନ୍ତି, ତେଣୁ ଅଧିକ ବ୍ୟାଖ୍ୟା କରିବାର କୌଣସି ଆବଶ୍ୟକତା ନାହିଁ । କଳିଯୁଗରେ କଣ-କଣ ହୁଏ, ଏହା ତ ଅତ୍ୟନ୍ତ ସ୍ପଷ୍ଟ । ଏହାପରେ ବର୍ଣ୍ଣନ କରାଯାଉଛି ଯେ ସତ୍ୟ ଯୁଗରେ ତପ ତଥା ଧ୍ୟାନ ହେଉଛି ସାଧନ, ତ୍ରେତା ଯୁଗରେ ଯଜ୍ଞ, ଦ୍ୱାପରରେ ପୂଜା ତଥା କଳିଯୁଗରେ କେବଳ ଭଗବାନଙ୍କର ନାମଟି ହିଁ ଆଧାର ଅଟେ । **'କଳିଯୁଗ କେବଲ ନାମ ଆଧାରା'** । କଳିଯୁଗରେ ଭଗବନ୍ନାମ ରୂପି ଆଧାର ଦ୍ୱାରା ହିଁ ଏହି ଭବସାଗରକୁ ପାର କରିବାକୁ ପଡିବ । କଳିଦୋଷର ନିରାସ ନିମନ୍ତେ କେବଳ ଗୋଟିଏ ଉପାୟ ରହିଛି ଏବଂ ତା ହେଉଛି ଭଗବନ୍ନାମ ସଂକୀର୍ତ୍ତନ।

**ପୁଂସାଂ କଳିକୃତାନ୍ ଦୋଷାନ୍ ଦ୍ରବ୍ୟଦେଶାତ୍ମସମ୍ଭବାନ୍ ।**
**ସର୍ବାନ୍ ହରତି ଚିତ୍ତସ୍ଥୋ ଭଗବାନ୍ ପୁରୁଷୋତ୍ତମଃ ।।** (୧୨.୩.୪୫)

**ତସ୍ମାତ୍ ସର୍ବାତ୍ମନା ରାଜନ୍ ହୃଦିସ୍ଥଂ କୁରୁ କେଶବମ୍ ।**
**ମ୍ରିୟମାଣୋ ହ୍ୟବହିତସ୍ତତୋ ଯାସି ପରାଂଗତିମ୍ ।।** (୧୨.୩.୪୬)

ଶୁକଦେବଜୀ କହୁଛନ୍ତି, "ରାଜନ୍ ! ଏବେ ତୁମେ ଭଗବାନଙ୍କୁ ନିଜର ହୃଦୟରେ ସ୍ଥାପିତ କରାଇ ତାଙ୍କର କୀର୍ତ୍ତନ କରୁଥାଅ ।"

## ଚାରିପ୍ରକାରର ପ୍ରଳୟ

ପରବର୍ତ୍ତୀ ଅଧ୍ୟାୟରେ ଚାରିପ୍ରକାରର ପ୍ରଳୟ ଅର୍ଥାତ୍ Dissolution ବର୍ଣ୍ଣନ କରାଯାଇଛି । ଏବେ ପର୍ଯ୍ୟନ୍ତ ଆମେ ସୃଷ୍ଟିର ନିରୂପଣ ଦେଖିଛନ୍ତି, ଏବେ ପ୍ରଳୟକୁ ମଧ୍ୟ ଦେଖିବା ।

(୧) **ନିତ୍ୟ ପ୍ରଳୟ-** ପ୍ରତିଦିନର ଆମର ଶୟନ ହିଁ ନିତ୍ୟ ପ୍ରଳୟ । ଯେତେବେଳେ କୌଣସି ଜୀବ ଶୋଇଯାଏ, ତେବେ ତାର ସଂସାର, ସୁଖଦୁଃଖ ସବୁକିଛି ଲୀନ ହୋଇଯାଏ । ଏହା ପ୍ରତିଦିନ ହୋଇଥାଏ । ସେ ଯେତେବେଳେ ଜାଗ୍ରତ ହୁଏ, ତେବେ ପୁଣିଥରେ ସୃଷ୍ଟି ହୋଇଯାଏ, ଶୋଇ ଗଲା ପରେ ପୁନଃ ଲୟ ହୋଇଯାଏ । ଏବଂ ପୁଣି, ସଂସାରର ସମସ୍ତ ପ୍ରାଣୀ ନିତ୍ୟ ହିଁ ଉତ୍ପନ୍ନ ବା ନଷ୍ଟ ହୋଇଥାଆନ୍ତି । ସମସ୍ତ ପଦାର୍ଥ ନିତ୍ୟ ପରିବର୍ତ୍ତନ ହୋଇ ଥାଆନ୍ତି । ଏହା ମଧ୍ୟ ନିତ୍ୟ ପ୍ରଳୟ ।

(୨) **ନୈମିତ୍ତିକ ପ୍ରଳୟ-** କୌଣସି ନିମିତ୍ତ କାରଣରୁ ଯେଉଁ ପ୍ରଳୟ ହୋଇଥାଏ, ତାକୁ ନୈମିତ୍ତିକ ପ୍ରଳୟ କହନ୍ତି । କାଳର ଗଣନାକୁ ଆମେ ଦେଖିଛନ୍ତି । ଲକ୍ଷେ ଯୁଗରେ ଏକ ମହାଯୁଗ ହୋଇଥାଏ ଏବଂ ଏକ ହଜାର ମହାଯୁଗର ବ୍ୟତୀତ ହେଲାପରେ ବ୍ରହ୍ମାଜୀଙ୍କର ଗୋଟିଏ ଦିନ ହୋଇଥାଏ । ବ୍ରହ୍ମାଜୀଙ୍କର ଏକ ଦିନ ସମାପ୍ତ ହେଲା ପରେ ଯେଉଁ ପ୍ରଳୟ ହୁଏ, ତାକୁ ନୈମିତ୍ତିକ ପ୍ରଳୟ କୁହନ୍ତି ।

(୩) **ପ୍ରାକୃତ ପ୍ରଳୟ-** ବ୍ରହ୍ମାଜୀଙ୍କର ଆୟୁ ଶହେ ବର୍ଷ ହୋଇଥାଏ । ତାଙ୍କର ଶହେ ବର୍ଷ ପୂର୍ଣ୍ଣ ହୋଇଗଲା ପରେ ଯେଉଁ ପ୍ରଳୟ ହୁଏ, ତାକୁ ପ୍ରାକୃତ ପ୍ରଳୟ କହନ୍ତି ।

(୪) **ଆତ୍ୟନ୍ତିକ ପ୍ରଳୟ-** ଆତ୍ୟନ୍ତିକ ଅର୍ଥାତ୍ ପୂର୍ଣ୍ଣତଃ । ଅନ୍ୟ ପ୍ରଳୟରେ ସୃଷ୍ଟିର ବୀଜ ନଷ୍ଟ ହୁଏ ନାହିଁ, ତେଣୁ ପ୍ରଳୟ ଏବଂ ସୃଷ୍ଟିର କ୍ରମ ଠିକ୍ ରହେ ।

ସେଥିପାଇଁ ଆମଙ୍କୁ ବାରମ୍ବାର ଏହି ବନ୍ଧନ ରୂପୀ ସୃଷ୍ଟି ପ୍ରାପ୍ତ ହୋଇଥାଏ । ପରନ୍ତୁ ଆତ୍ୟନ୍ତିକ ପ୍ରଳୟ ତ ଜ୍ଞାନ ଦ୍ୱାରା ସମ୍ଭବ ହୋଇଥାଏ । ତେଣୁ ଆମ୍ଭେ ଚାହିଁଲେ ସୃଷ୍ଟିର ଆତ୍ୟନ୍ତିକ ପ୍ରଳୟ ଏହି ସମୟରେ କରିପାରିବା ।

ଯଥା, ଯେତେବେଳେ ଆମେ ସିନେମା ଦେଖୁ, ତେବେ ପ୍ରଳୟ କରି ହିଁ ଆମେ ଦେଖୁ । ସିନେମା, ନାଟକ ଆଦି ଦେଖିବା ସମୟରେ ଆମ୍ଭମାନଙ୍କୁ ଜ୍ଞାତ ଥାଏ ଯେ ଏ ସବୁ ବାସ୍ତବିକତା ନୁହେଁ - ମିଥ୍ୟା ଅଟେ । ଯଦି ଏହିଭଳି ବୁଝି ଦେଖିବେ, ତେବେ ତାର ଆତ୍ୟନ୍ତିକ ପ୍ରଳୟ ହିଁ ହୋଇଗଲା । ସେଥିପାଇଁ ତାକୁ ସିନେମାର ସମାପ୍ତିର ଆବଶ୍ୟକତା ନାହିଁ । ସେ ଆମ୍ଭଙ୍କୁ ଦୁଃଖି-ସୁଖି କରିପାରେ ନାହିଁ । ହଁ - ନାଟକ ଦେଖୁଥିବାବେଳେ ସେଥିରେ ଆସୁଥିବା ଦୃଶ୍ୟର ଅନୁରୂପ କେବେ ହସୁଥାଉ, କେବେ କାନ୍ଦି ପକାଉ, କେବେ ଭୟଭୀତ ହୋଇଯାଉ, କିନ୍ତୁ ନାଟକ ସମାପ୍ତ ହେଲା ପରେ ଆମେ ପୂର୍ବବତ୍ ହିଁ ରହିଥାଉ। ତେଣୁ ଜ୍ଞାନ ଦ୍ୱାରା ହିଁ ଆତ୍ୟନ୍ତିକ ପ୍ରଳୟ ହୋଇଥାଏ । ଯଦି ଜ୍ଞାନଦୃଷ୍ଟିରେ ଏହି ସୃଷ୍ଟିକୁ ଦେଖିଲା ବେଳେ, ବୁଝିଯାଉ ଯେ ତତ୍ତ୍ୱ କେବଳ ଗୋଟିଏ। ସେହି ତତ୍ତ୍ୱଟି ବିଭିନ୍ନ ନାମ, ରୂପ ଧାରଣ କରି ନାନା ରୂପରେ ପ୍ରତିଭାସିତ ହେଉଛି । ଏଥିରେ ଅନ୍ୟ କୌଣସି ସତ୍ୟ, ତତ୍ତ୍ୱ ନାହିଁ । ଏଭଳି ଜାଣିବା ହିଁ ଆତ୍ୟନ୍ତିକ ପ୍ରଳୟ । ଏହିଭଳି ଭାବରେ ଶୁକଦେବଜୀ ପରୀକ୍ଷିତଙ୍କୁ ଚାରିପ୍ରକାରର ପ୍ରଳୟକୁ ବୁଝାଇ କହୁଛନ୍ତି।

## ପରୀକ୍ଷିତଙ୍କର ମୋକ୍ଷ

ଏହାର ପରବର୍ତ୍ତୀ ଅଧ୍ୟାୟରେ ଶୁକଦେବଜୀ ପରୀକ୍ଷିତଙ୍କୁ ପରମାର୍ଥ ଜ୍ଞାନ ବର୍ଣ୍ଣନ କରି କହୁଛନ୍ତି -

**ତ୍ୱଂ ତୁ ରାଜନ୍ ମରିଷ୍ୟେତି ପଶୁବୁଦ୍ଧିମିମାଂ ଜହି ॥** (୧୨.୫.୨)

ଆରେ ପରୀକ୍ଷିତ ! ଏବେ ତୁମେ ଶେଷ କଥା ଶୁଣ । ଯେଉଁ ବ୍ୟକ୍ତି ଏଭଳି ବିଚାର କରେ ଯେ ମୁଁ ମରୁଥିବା ପ୍ରାଣୀ, ସେ ମୂଢ଼-ବୁଦ୍ଧି, ପଶୁ ବୁଦ୍ଧି 'ମୁଁ ମରିଯିବି'- ଏହି ପଶୁ-ବୁଦ୍ଧିକୁ ତୁମେ ତ୍ୟାଗ କରିଦିଅ । ତୁମେ ମରଣଶୀଳ ନୁହେଁ, - କେବଳ ତୁମର ଦେହର ଜନ୍ମ-ତଥା ମରଣ ହୋଇଥାଏ । ଦେଖନ୍ତୁ, ଭଗବାନ୍ ମଧ ଦେହ ଧାରଣ କରିଛନ୍ତି, ପରନ୍ତୁ ଅନ୍ତତଃ ତାକୁ ତ୍ୟାଗ କରି ଦେଇଛନ୍ତି । କଣ ଭଗବାନ୍ ! ନିଜ ଦେହକୁ ଜୀବିତ ରଖି ପାରି ନଥାନ୍ତେ ? ଶୁକଦେବଜୀ କହୁଛନ୍ତି - ଭଗବାନ୍ ନିଜେ ନିଜର ଦେହକୁ ଏଠାରେ ରଖିନାହାନ୍ତି, କାହିଁକି ନା ମୂଢ଼ ଲୋକମାନେ ମଧ ଚାହିଁବେ

ଯେ ସେମାନଙ୍କୁ ମଧ୍ୟ ନିଜ ଦେହର ତ୍ୟାଗ କରିବାକୁ ନ ପଡୁ । ଭଗବାନ୍ ଏହା ହିଁ ଦର୍ଶାନ୍ତି ଯେ ଦେହପ୍ରତି ଆସକ୍ତ ହେବା ଉଚିତ୍ ନୁହେଁ ଏବଂ ସେଥିପାଇଁ ସେ ନିଜର ଅତ୍ୟନ୍ତ ସୁନ୍ଦର ଦେହଟିକୁ ମଧ୍ୟ ଲୟ କରିଦେଲେ । ତେବେ ଦେହର ଲୟ - ତୁମର ଲୟ, ତୁମର ମୃତ୍ୟୁ ହେବ ନୁହଁ । ତୁମର ଲୟ ତ ନିଜର ସ୍ୱରୂପରେ ହିଁ ହୋଇଥାଏ ।

**ନ ଜାତଃ ପ୍ରାଗଭୂତୋଽଦ୍ୟ ଦେହବତ୍ତ୍ୱଂ ନ ନଂକ୍ଷ୍ୟସି ॥** (୧୧.୫.୨)

ଆରେ ! ତୁମର ଜନ୍ମ ନା ତ ପ୍ରଥମେ କେବେ ହୋଇଥିଲା, ନା କେବେ ହୋଇଛି ଏବଂ ନା କେବେ ହେବ । ମନ ହିଁ ଏଭଳି କାଳ୍ପନିକ ସୃଷ୍ଟି କରୁଥାଏ । ସେ ହିଁ ବିଭିନ୍ନ ବସ୍ତୁ ଆଦିକୁ ଉତ୍ପନ୍ନ କରି ସେଥିରେ ଯୁକ୍ତ ହୋଇଯାଏ । ଶୁକଦେବଜୀ କହୁଛନ୍ତି, "ପରୀକ୍ଷିତ ! ଏବେ ତୁମେ ସବୁକିଛି ଛାଡି ଆତ୍ମସ୍ୱରୂପରେ ସ୍ଥିତ ହୋଇଯାଅ । ଏବେ ଋଷିକୁମାରଙ୍କର ଅଭିଶାପ ଅନୁସାରେ ତକ୍ଷକ ଆସିବ, ସେ ମଧ୍ୟ ତୁମର କିଛି କ୍ଷତି କରିପାରିବ ନାହିଁ ।"

**ଏତତ୍ତେ କଥିତଂ ତାତ ଯଥାଽଽତ୍ମା ପୃଷ୍ଟବାନ୍ ନୃପ ।**
**ହରେର୍ବିଶ୍ୱାତ୍ମନଶ୍ଚେଷ୍ଟାଂ କିଂ ଭୂୟଃ ଶ୍ରୋତୁମିଚ୍ଛସି ॥** (୧୨.୫.୧୩)

"ତୁମକୁ ଆଉକିଛି ପଚାରିବାର ଅଛି ତ ପଚାର । ଯଦ୍ୟପି ସାତଦିନ ପୂର୍ଣ୍ଣ ହେବାକୁ ହେଲାଣି, ଋଷିକୁମାରଙ୍କର ଅଭିଶାପ ଅନୁସାରେ ତକ୍ଷକ ଆସିବାର ସମୟ ହେଉଛି । ତଥାପି, ଯେ ପର୍ଯ୍ୟନ୍ତ ମୁଁ ଏଠାରେ ବସିଛି ସେ ପର୍ଯ୍ୟନ୍ତ ସେ ଆସିବ ନାହିଁ ।" ଶୁକଦେବଜୀ ପରୀକ୍ଷିତଙ୍କୁ ଏଭଳି କାହିଁକି କହୁଛନ୍ତି ? କାହିଁକି ନା ଶୁକଦେବଜୀ ସର୍ବଭୂତ ହୃଦୟ, ସମସ୍ତଙ୍କର ଆତ୍ମା ଅଟନ୍ତି । ତାଙ୍କ ପକ୍ଷରୁ ତ ବୃକ୍ଷଲତା ମଧ୍ୟ କଥା କହୁଥିଲେ । ତକ୍ଷକଙ୍କର ଆତ୍ମା ମଧ୍ୟ ଶୁକଦେବଜୀ ଅଟନ୍ତି, ତେଣୁ ଯଦି ଶୁକଦେବଜୀ ତାଙ୍କୁ କହନ୍ତି, ଏବେ ମୋର ଶିଷ୍ୟକୁ କିଛି ପଚାରିବାର ଅଛି, ତୁମେ ରହିଯାଅ, ତେବେ ତାକୁ ରହିବାକୁ ପଡିବ, ପରନ୍ତୁ ପରୀକ୍ଷିତ ନିମନ୍ତେ ଏବେ ପଚାରିବାର ଯୋଗ୍ୟ ଆଉ କିଛି ଅବଶେଷ ନ ଥିଲା । କୌଣସି ଶଙ୍କା ଥିଲେ ସିନା ପଚାରି ଥାଆନ୍ତେ । ତାଙ୍କର ତ ସମସ୍ତ ଶଙ୍କାଗୁଡିକର ନିବାରଣ ହୋଇସାରିଥିଲା ।

**ସିଦ୍ଧୋଽସ୍ମ୍ୟନୁଗୃହୀତୋଽସ୍ମି ଭବତା କରୁଣାତ୍ମନା ।**

**ଶ୍ରାବିତୋ ଯଚ୍ଚ ମେ ସାକ୍ଷାଦନାଦିନିଧନୋ ହରିଃ ॥** (୧୨.୬.୨)

ରାଜା ପରୀକ୍ଷିତ କହୁଛନ୍ତି - ହେ କରୁଣାଶୀଳ ଭଗବାନ୍ ! ଆପଣ ସ୍ୱୟଂ ଆସି ମୋ ସମ୍ମୁଖରେ ଶ୍ରୀହରିଙ୍କୁ ସାକ୍ଷାତ୍ ପ୍ରକଟ କରି ଦେଲେ ।

**ନାତ୍ୟଦ୍ଭୁତମହଂ ମନ୍ୟେ ମହତାମଚ୍ୟୁତାତ୍ମନାମ୍ ।**

**ଅଜ୍ଞେଷୁ ତାପତପ୍ତେଷୁ ଭୂତେଷୁ ଯଦନୁଗ୍ରହ ॥** (୧୨.୬.୩)

ଆପଣଙ୍କର ନିମନ୍ତେ ଏହା କୌଣସି ଆଶ୍ଚର୍ଯ୍ୟ କଥା ନୁହେଁ, କାହିଁକି ନା ଆପଣ ତ ଭଗବାନଙ୍କର ସହିତ ଏକ ରୂପ ହୋଇସାରିଛନ୍ତି । ଯିଏ ଅଜ୍ଞାନୀ ଲୋକ, ସଂସାରର ତାପଦ୍ୱାରା ଯିଏ ତପ୍ତ, ସେମାନଙ୍କ ଉପରେ ତ ଆପଣଙ୍କ ଭଳି ମହାତ୍ମାମାନେ କୃପା କରି ଥାଆନ୍ତି । ଆପଣ ଏଭଳି ପୁରାଣର ବର୍ଣ୍ଣନ କଲେ, ଯାହାର ପ୍ରତ୍ୟେକ ଶ୍ଳୋକରେ ପ୍ରତ୍ୟେକ ପଦରେ ଭଗବାନଙ୍କର ଯଶକୁ ହିଁ ଗାନ କରାଯାଇଛି ।

**ପ୍ରବିଷ୍ଟୋ ବ୍ରହ୍ମ ନିର୍ବାଣମଭୟଂ ଦର୍ଶିତଂ ତ୍ୱୟା ॥** (୧୨.୬.୫)

ଏବେ ତ ମୁଁ ଅତ୍ୟନ୍ତ ଶାନ୍ତ ସ୍ୱରୂପ ବ୍ରହ୍ମରେ ପ୍ରବେଶ କରିସାରିଛି । ଏବେ ତକ୍ଷକ ଆଦିର ଦଂଶନ ଦ୍ୱାରା ହେଉଥିବା ମରଣ ଦ୍ୱାରା ମୁଁ କିଞ୍ଚିତ୍ ମଧ୍ୟ ଭୟଭୀତ ନୁହେଁ ।

**ଅନୁଜାନୀହି ମାଂ ବ୍ରହ୍ମନ୍ ବାଚଂ ଯଚ୍ଛାମ୍ୟଧୋକ୍ଷଜେ ।**

**ମୁକ୍ତକାମାଶୟଂ ଚେତଃ ପ୍ରବେଶ୍ୟ ବିସୃଜାମ୍ୟସୂନ୍ ॥** (୧୨.୬.୬)

ଏବେ ଆପଣ ମୋତେ ଆଜ୍ଞା ଦିଅନ୍ତୁ । ମୁଁ ନିଜର କାମନା ରହିତ ଚିତ୍ତକୁ ବ୍ରହ୍ମ ସ୍ୱରୂପରେ ଲୀନ କରି ପ୍ରାଣ ତ୍ୟାଗ କରି ଦେବି ।

**ଅଜ୍ଞାନଂ ଚ ନିରସ୍ତଂ ମେ ଜ୍ଞାନବିଜ୍ଞାନ ନିଷ୍ଠୟା ।**

**ଭବତା ଦର୍ଶିତଂ କ୍ଷେମଂ ପରଂ ଭଗବତଃ ପଦମ୍ ॥** (୧୨.୬.୭)

ଆପଣ ସର୍ବୋତ୍ତମ ଜ୍ଞାନ ଦେଇ ମୋର ଅଜ୍ଞାନକୁ ଦୂର କରି ଦେଲେ ଏବଂ ଯଦ୍ୱାରା ଉତ୍ତମ ଶ୍ରେୟର ପ୍ରାପ୍ତି ହୋଇଥାଏ, ସେହି ଭଗବତ୍ ପଦକୁ ଦର୍ଶନ କରାଇଦେଲେ । ମୋତେ ଆଉ କିଛି ଦରକାର ନାହିଁ ।

ଶୁକଦେବଜୀ ପରୀକ୍ଷିତଙ୍କର କଥାଶୁଣି କହିଲେ, "ଠିକ୍ ଅଛି, ଏବେ ମୋର କାର୍ଯ୍ୟ ପୂର୍ଣ୍ଣ ହେଲା ।" ଦେଖନ୍ତୁ, ଶୁକଦେବଜୀ ସ୍ୱଭାବତଃ କେଉଁଠାରେ ରହନ୍ତି ନାହିଁ, ପରନ୍ତୁ ପରୀକ୍ଷିତ ନିମନ୍ତେ ସାତଦିନ ସେହିଠାରେ ରହି ଭାଗବତ କଥା ଶୁଣାଉଥିଲେ । ଏବେ ରାଜା ପରୀକ୍ଷିତ ଅତି ପ୍ରେମପୂର୍ବକ ତାଙ୍କର ପୂଜା କରୁଛନ୍ତି । ତାପରେ ଦେଖନ୍ତୁ, ଗୁରୁ ହେଉଛନ୍ତି କିଭଳି ? ସେ ମହାରାଜ ନିଜ ଶିଷ୍ୟ ପରୀକ୍ଷିତଙ୍କର ନିର୍ବାଣ ଆଦି ଦେଖିବା ନିମନ୍ତେ ସେଠାରେ ତିଳେ ମାତ୍ର ଅପେକ୍ଷା ମଧ୍ୟ କରୁ ନାହାନ୍ତି । ସେଠାରୁ **'ଜଗାମଭିକ୍ଷୁଭିଃସାକଂ'** (୧୨.୬.୮) ଚାଲିଯାଉଛନ୍ତି ।

**ବ୍ରହ୍ମଭୂତୋ ମହାୟୋଗୀ ନିଃସଙ୍ଗଶ୍ଛିନ୍ନ ସଂଶୟଃ ॥** (୧୨.୬.୧୦)

ଏ ପାଖରେ ରାଜା ପରୀକ୍ଷିତଙ୍କର ସମସ୍ତ ସଂଶୟ ଛିନ୍ନ ଭିନ୍ନ ହୋଇ ଗଲା ଏବଂ ସେ ନିଃସଙ୍ଗ ମହାଯୋଗୀ ବ୍ରହ୍ମଭୂତ ହୋଇ ସେଠାରେ ବସିଗଲେ । ଏବେ ତାଙ୍କୁ କାହାର ଧ୍ୟାନ ହିଁ ରହିଲା ନାହିଁ । ଦେହଭାବର ତ୍ୟାଗ ତ ସେ ପ୍ରଥମରୁ କରିସାରିଥିଲେ । ଏବେ ଅଭିଶାପର ଅନୁରୂପ ତକ୍ଷକ ଆସି ଦଂଶନ କରିବା ଏକ ଔପଚାରିକତା ମାତ୍ର ରହିଯାଇଥିଲା । ତାହା ମଧ୍ୟ ପୂର୍ଣ୍ଣ ହୋଇଗଲା ଏବଂ ସମସ୍ତଙ୍କର ସମ୍ମୁଖରେ ତକ୍ଷକର ବିଷଜ୍ୱାଳାରେ ପରୀକ୍ଷିତଙ୍କର ଶରୀର ଜଳି ଭସ୍ମ ହୋଇଗଲା ଏବଂ ଏହିଭଳି ଭାବରେ ପରୀକ୍ଷିତଙ୍କର ମୋକ୍ଷ ହୋଇଗଲା ।

ଦେଖନ୍ତୁ, ପ୍ରାରମ୍ଭ ହୋଇଥିଲା ଏକ ସର୍ପରୁ । ରାଜା ପରୀକ୍ଷିତ ଏକ ମୃତ ସର୍ପକୁ ଶମୀକ ଋଷିଙ୍କର ବେକରେ ପକାଇ ଦେଇଥିଲେ, ତେଣୁ ତାଙ୍କୁ ଅଭିଶାପ ମିଳିଲା । ଏଠାରେ ତକ୍ଷକର ଦଂଶନରେ ଯେଉଁ ମରଣ ହେଲା, ତାହା ତ ପରୀକ୍ଷିତଙ୍କର ଦେହର ମରଣ ହିଁ ଥିଲା । ତାଙ୍କ ନିଜର ମରଣ ନ ଥିଲା । ସେ ତ ନିଜ ସ୍ୱରୂପରେ ସ୍ଥିତ ହୋଇଯାଇଥିଲେ । ଭାଗବତ ଶାସ୍ତ୍ର ଆମ୍ଭମାନଙ୍କୁ ମରିବାର କଳା ଶିଖାଏ, ତେବେ ଗୀତାଶାସ୍ତ୍ର ଆମ୍ଭମାନଙ୍କୁ ବଞ୍ଚିବାର କଳା ଶିଖାଏ । ବାସ୍ତବରେ ଦୁଇଟି ଯାକ ହେଉଛି ଗୋଟିଏ । ସେଥିପାଇଁ ଭଗବତ୍ ଗୀତା ଶୁଣି ଜୀବନରେ ଭୟ କରିବା ଉଚିତ୍ ନୁହେଁ । ଏବଂ ଭାଗବତ ଶୁଣି ମରଣ ପ୍ରତି ଭୟ କରିବା ଉଚିତ୍ ନୁହେଁ । ଭୟ କରିବାର କୌଣସି କଥା ହିଁ ନାହିଁ । ଏଭଳି ଜ୍ଞାନରେ ସ୍ଥିତ ହୋଇଯିବା ଉଚିତ୍ ।

## ମାର୍କଣ୍ଡେୟ ଋଷିଙ୍କର ମାୟା ଦର୍ଶନ

ଏହାପରେ ସୂତଜୀ ଏବଂ ଶୌନକଜୀଙ୍କର ସଂବାଦ ଅଛି । ଏଠାରେ ମାର୍କଣ୍ଡେୟଜୀଙ୍କର ଏକ ଛୋଟ ପ୍ରସଙ୍ଗ ବର୍ଣ୍ଣନ ଅଛି, ଯେଉଁଥିରେ ମାର୍କଣ୍ଡେୟ ଋଷିଙ୍କୁ ଭଗବାନଙ୍କର ମାୟା ଦେଖିବାକୁ ଇଚ୍ଛା ହୁଏ । ଭଗବାନ ତାଙ୍କୁ ପ୍ରଳୟର ଦର୍ଶନ କରାନ୍ତି ଏବଂ କହୁଛନ୍ତି, ଏହା ସବୁ ମୋର ମାୟା ହିଁ ଅଟେ । ଏହି ସୃଷ୍ଟିକୁ ବଡ ବଡ ରାଜାମାନେ ଅନେକ ଥର ଆସିଲେ ଏବଂ ଗଲେ ଏବେ କେବଳ ତାଙ୍କର କଥାମାତ୍ର ରହିଯାଇଛି । ସତ୍ୟବସ୍ତୁ ତ କେବଳ ନିଜର ସ୍ୱରୂପ ଅଟେ । ବାକି ସମସ୍ତ ବସ୍ତୁ ଲୁପ୍ତ ହୋଇଯାଏ, ଏ଼ ଶିଖାଇବା ନିମନ୍ତେ ମାର୍କଣ୍ଡେୟ ଋଷିଙ୍କ ପ୍ରସଙ୍ଗ କୁହାଯାଇଛି ।

## ଉପସଂହାର

ଅନ୍ତତଃ ଉପସଂହାର କରି ସୂତଜୀ ସମସ୍ତଙ୍କର ବନ୍ଦନା କରୁଛନ୍ତି । କହୁଛନ୍ତି -

**ୟଂ ବ୍ରହ୍ମା ବରୁଣେନ୍ଦ୍ରରୁଦ୍ରମରୁତଃ ସ୍ତୁନ୍ୱନ୍ତି ଦିବୈଃସ୍ତବୈ-**
**ର୍ବେଦୈଃ ସାଙ୍ଗପଦକ୍ରମୋପନିଷଦୈର୍ଗାୟନ୍ତି ୟଂ ସାମଗାଃ ।**
**ଧ୍ୟାନାବସ୍ଥିତତଦ୍ଗତେନ ମନସା ପଶ୍ୟନ୍ତି ୟଂ ୟୋଗିନୋ**
**ୟସ୍ୟାନ୍ତଂ ନ ବିଦୁଃ ସୁରାସୁରଗଣା ଦେବାୟ ତସ୍ମୈ ନମଃ ॥**

(୧୨.୧୩.୧)

ଯାହାର ସ୍ତୁତି ସମସ୍ତ ଦେବତା-ଗଣ, ସମସ୍ତ ମୁନି-ଜନ ତଥା ସମସ୍ତେ ଶ୍ରୁତି କରନ୍ତି, 'ଦେବାୟ ତସ୍ମୈ ନମଃ' ସେହି ପରମାତ୍ମାଙ୍କୁ ନମସ୍କାର । ଏହି ସ୍କନ୍ଧରେ ଅନ୍ତିମ ଅଧ୍ୟାୟର ଅନ୍ତରେ ଆସୁଥିବା କିଛି ଶ୍ଳୋକ ଅତି ସୁନ୍ଦର ଅଟେ । ସୂତଜୀ ପୁନଃ କହୁଛନ୍ତି -

**ଶ୍ରୀମଦ୍ ଭାଗବତଂ ପୁରାଣମମଲଂ ୟଦ୍ୱୈଷ୍ଣବାନାଂ ପ୍ରିୟଂ**
**ୟସ୍ମିନ୍ ପାରମହଂସ୍ୟମେକମମଲଂ ଜ୍ଞାନଂ ପରଂ ଗୀୟତେ ।**
**ତତ୍ର ଜ୍ଞାନବିରାଗଭକ୍ତିସହିତଂ ନୈଷ୍କର୍ମ୍ୟମାବିଷ୍କୃତଂ**
**ତତ୍ଶୃଣ୍ୱନ୍ ବିପଠନ୍ ବିଚାରଣପରୋ ଭକ୍ତ୍ୟା ବିମୁଚ୍ୟେନ୍ନରଃ ॥**

(୧୨.୧୩.୧୮)

ଏହି ଶ୍ରୀମଦ୍‌ଭାଗବତ ନିର୍ମଳ ପୁରାଣ ଅଟେ, ଏହା ବୈଷ୍ଣବମାନଙ୍କର ଅତ୍ୟନ୍ତ ପ୍ରିୟ। ଏହି ଗ୍ରନ୍ଥରେ ସନ୍ନ୍ୟାସୀମାନଙ୍କ ଦ୍ୱାରା ଅନୁଭବ କରାଯାଇଥିବା ଶ୍ରେଷ୍ଠ ଜ୍ଞାନକୁ ଗାନ କରାଯାଇଛି। ଏଥିରେ ଜ୍ଞାନ, ବୈରାଗ୍ୟ-ଭକ୍ତି ସହିତ ନୈଷ୍କର୍ମ୍ୟକୁ ପ୍ରକଟ କରାଯାଇଛି। ଭକ୍ତି ସହିତ ଏହାର ଶ୍ରବଣ, ପଠନ, ଚିନ୍ତନ କରିବା ଦ୍ୱାରା ମନୁଷ୍ୟ ମୁକ୍ତ ହୋଇଯାଏ । **'ସତ୍ୟଂ ପରଂ ଧୀମହି'** ଆମ୍ଭେ ପରମ ସତ୍ୟର ଧ୍ୟାନ କରୁଛୁ ଏହି କଥନ ସହିତ ଭାଗବତର ପ୍ରାରମ୍ଭ ହୋଇଥିଲା ଏବଂ ଏବେ ଶେଷରେ ମଧ୍ୟ ଏହା ହିଁ କହୁଛନ୍ତି।

**କସ୍ମୈ ଯେନ ବିଭାସିତୋଽୟମତୁଲୋ ଜ୍ଞାନପ୍ରଦୀପଃ ପୁରା**
**ତଦ୍ରୂପେଣ ଚ ନାରଦାୟ ମୁନୟେ କୃଷ୍ଣାୟ ତଦ୍ରୂପିଣା**
**ଯୋଗିନ୍ଦ୍ରାୟ ତଦାତ୍ମନାଥ ଭଗବଦ୍ରାତାୟ କାରୁଣ୍ୟତ-**
**ସ୍ତତ୍‌ଶୁଦ୍ଧଂ ବିମଲଂ ବିଶୋକମମୃତଂ ସତ୍ୟଂ ପରଂ ଧୀମହି ॥**
(୧୨.୧୩.୧୬)

ଆମେ ସେହି ପରମସତ୍ୟର ଧ୍ୟାନ କରୁଛୁ, ଯିଏ ସ୍ୱୟଂ ପରମାତ୍ମା ଅଟନ୍ତି । ସେ ହିଁ ପ୍ରଥମେ ଏହି ଜ୍ଞାନକୁ ବ୍ରହ୍ମାଜୀଙ୍କୁ ପ୍ରଦାନ କରିଥିଲେ, ବ୍ରହ୍ମାଜୀ ନାରଦଜୀଙ୍କୁ, ନାରଦଜୀ ବେଦ-ବ୍ୟାସଜୀଙ୍କୁ, ବେଦବ୍ୟାସଜୀ ଶୁକଦେବଜୀଙ୍କୁ ଏବଂ ଶୁକଦେବ ଅତ୍ୟନ୍ତ କରୁଣାପୂର୍ବକ ରାଜା ପରୀକ୍ଷିତଙ୍କୁ ଦେଲେ । ସେହି ପରମସତ୍ୟକୁ, ସତ୍ୟସ୍ୱରୂପ ପରମାତ୍ମାଙ୍କୁ ଆମ୍ଭେ ନମସ୍କାର କରୁଛୁ ।

**ନମସ୍ତସ୍ମୈ ଭଗବତେ ବାସୁଦେବାୟ ସାକ୍ଷିଣେ ।**
**ୟ ଇଦଂ କୃପୟା କସ୍ମୈ ବ୍ୟାଚଚକ୍ଷେ ମୁମୁକ୍ଷବେ ॥** (୧୨.୨୩.୨୦)

ଏହି ଜ୍ଞାନକୁ ବ୍ରହ୍ମାଜୀଙ୍କର ନିମନ୍ତେ ପ୍ରକଟ କରାଇଥିବା ଭଗବାନ୍ ବାସୁଦେବଙ୍କୁ ନମସ୍କାର ।

**ଯୋଗିନ୍ଦ୍ରାୟ ନମସ୍ତସ୍ମୈ ଶୁକାୟ ବ୍ରହ୍ମରୂପିଣେ ।**
**ସଂସାରସର୍ପଦଷ୍ଟଂ ଯୋ ବିଷ୍ଣୁରାତମମୂମୁଚତ୍ ॥** (୧୨.୧୩.୨୧)

ସେହି ଜ୍ଞାନ ଦ୍ୱାରା ରାଜା ପରୀକ୍ଷିତଙ୍କୁ ସଂସାରରୁ ମୁକ୍ତ କରାଇଥିବା ଶୁକ ଯୋଗିନ୍ଦ୍ରଙ୍କୁ ନମସ୍କାର ! ଶେଷରେ ପ୍ରାର୍ଥନା କରୁଛନ୍ତି -

**ଭବେ ଭବେ ଯଥା ଭକ୍ତିଃ ପାଦୟୋସ୍ତବ ଜାୟତେ ।**

**ତଥା କୁରୁଷ୍ୱ ଦେବେଶ ନାଥସ୍ତ୍ୱଂ ନୋ ଯତଃ ପ୍ରଭୋ ॥** (୧୨.୧୩.୨୨)

**ନାମ ସଂକୀର୍ତନଂ ଯସ୍ୟ ସର୍ବପାପ ପ୍ରଣାଶନମ୍ ।**

**ପ୍ରଣାମୋ ଦୁଃଖଶମନସ୍ତଂ ନମାମି ହରିଂ ପରମ୍ ॥** (୧୨.୧୩.୨୩)

ଭଗବାନ୍ ! ଆମ୍ଭେ ଜନ୍ମ ଦେବା ନିମନ୍ତେ ଭୟ କରୁନାହୁଁ, ପରନ୍ତୁ ପ୍ରତ୍ୟେକ ଜନ୍ମରେ ଆପଣଙ୍କର ଶ୍ରୀଚରଣରେ ଆମର ଭକ୍ତି ରହିଥାଉ । ସେହି ହରିଙ୍କୁ ନମସ୍କାର, ଯାହାର ନାମ ସଂକୀର୍ତ୍ତନ ସମସ୍ତ ପାପକୁ ନାଶ କରିଦିଏ ।

ଏହିଭଳି ଭାବରେ ଦ୍ୱାଦଶ ସ୍କନ୍ଧର ସମାପ୍ତି ହୁଏ, ଏବଂ ଏହା ସହିତ ଭାଗବତ ଗ୍ରନ୍ଥ ମଧ୍ୟ ସମାପ୍ତ ହୁଏ । ଦେଖନ୍ତୁ, ଏଠାରେ ଗ୍ରନ୍ଥର ସମାପ୍ତି ହେଲେ ମଧ୍ୟ ଏହି ଜ୍ଞାନର କେବେ ସମାପ୍ତି ହୁଏ ନାହିଁ । ଏହି ଜ୍ଞାନକୁ ଆମ୍ଭେ ବାରମ୍ବାର ଅନୁସନ୍ଧାନ କରିବା ଉଚିତ, ଏବଂ ଅନୁସନ୍ଧାନ କରି ସେହି ଜ୍ଞାନରେ ସ୍ଥିତ ହୋଇଯିବା ଉଚିତ୍ । ସେଥିପାଇଁ ଏବେ ପୁଣିଥରେ ପ୍ରଥମ ଶ୍ଳୋକକୁ ଉଚ୍ଚାରଣ କରୁଛନ୍ତି -

**ଜନ୍ମାଦ୍ୟସ୍ୟ ଯତୋଽନ୍ୱୟାଦିତରତଶ୍ଚାର୍ଥେଷ୍ୱଭିଜ୍ଞଃ ସ୍ୱରାଟ୍**

**ତେନେ ବ୍ରହ୍ମ ହୃଦା ୟ ଆଦିକବୟେ ମୁହ୍ୟନ୍ତି ଯତ୍ସୂରୟଃ ।**

**ତେଜୋବାରିମୃଦାଂ ଯଥା ବିନିମୟୋ ଯତ୍ର ତ୍ରିସର୍ଗୋଽମୃଷା**

**ଧାମ୍ନା ସ୍ୱେନ ସଦା ନିରସ୍ତଂ କୁହକଂ ସତ୍ୟଂ ପରଂ ଧୀମହି ॥** (୧.୧.୧)

**"ଓଁ ତତ୍ ସତ୍"**

**"ଶ୍ରୀ କୃଷ୍ଣାର୍ପଣମସ୍ତୁ ।"**





ଶ୍ରୀମଦ୍ ଭାଗବତ ମହାପୁରାଣ ଭାରତୀୟ ସଂସ୍କୃତିର ଅଭିନ୍ନ ଅଂଗ ଅଟେ । ବୈଦିକ ବାଙ୍ମୟରେ ଏହାର ସ୍ଥାନ, ଏହାର ମହିମା ସର୍ବ-ବିଦିତ ଅଟେ । ବେଦର ସାର ରୂପ ଏହି ଅନୁପମ ଗ୍ରନ୍ଥର ବୈଶିଷ୍ଟ୍ୟ ଏହିକି ଯେ, ସଂସାରରେ ନିମଗ୍ନ ସର୍ବ ସାମାନ୍ୟ ବ୍ୟକ୍ତି ମଧ୍ୟ ଏହାର ଆସ୍ୱାଦନ କରି, ଆତ୍ମ କଲ୍ୟାଣର ମାର୍ଗରେ ଅଗ୍ରସର ହୋଇପାରିବ ।

ଏଥିରେ ଭଗବାନଙ୍କର ଏବଂ ଭଗବଦ୍ ଭକ୍ତମାନଙ୍କର ଏପରି ଅଦ୍ଭୁତ ଲୀଳା ଚରିତ୍ରମାନଙ୍କର ବର୍ଣ୍ଣନ ଅଛି ଯାହାକୁ ଶୁଣି ବା ପଢ଼ି ହୃଦୟରେ ପ୍ରେମର ଆବିର୍ଭାବ ନ ହୋଇ ରହି ହେବନାହିଁ । ଏହା ସହିତ ଏଥିରେ ସେହି ପରମ ଭଗବତ୍ ପ୍ରେମ କିପରି ଜଣକୁ ସତ୍ସଙ୍ଗ ପ୍ରାପ୍ତ କରାଏ ଓ ସଦ୍ଗୁରୁଙ୍କ ଉପଦେଶ ପ୍ରାପ୍ତ କରାଏ ତାହା କୁହାଯାଇଛି । ଏହା ଦ୍ୱାରା ମନୁଷ୍ୟଠାରେ ନିଜ ସ୍ୱରୂପ ବା ପରମାତ୍ମା ସ୍ୱରୂପର ଅନାବରଣ ହୋଇଯାଏ ଏବଂ ସେ ବଞ୍ଚି ଥାଉ ଥାଉ ମୁକ୍ତ ହେଇଯାଏ । ମହାପୁରୁଷମାନଙ୍କ ଅନୁସାରେ ଶ୍ରୀମଦ୍ ଭାଗବତ ଗୋଟିଏ ଅତ୍ୟନ୍ତ ଆହ୍ଲାଦକ ଲୋକୋପକାରୀ ଗ୍ରନ୍ଥ ।

ପରମ ପୂଜ୍ୟ ଗୁରୁଦେବ ସ୍ୱାମୀ ଚିନ୍ମୟାନନ୍ଦଜୀଙ୍କ ବଚନାନୁସାରେ, ପୂଜ୍ୟ ସ୍ୱାମୀ ତେଜୋମୟାନନ୍ଦଜୀ ଏହି ଲୋକପ୍ରିୟ ଗ୍ରନ୍ଥର ଗୂଢ଼ ରହସ୍ୟଗୁଡ଼ିକୁ ଅତ୍ୟନ୍ତ ସହଜତାର ସହିତ ବର୍ଣ୍ଣନା କରିଛନ୍ତି । ଆମର ପୂର୍ଣ୍ଣ ବିଶ୍ୱାସ ଯେ ପାଠକମାନେ କେବଳ ଯେ ଏହା ଦ୍ୱାରା ଲାଭାନ୍ୱିତ ହେବେ ତା ନୁହଁ ବରଂ ଶ୍ରୀମଦ୍ ଭାଗବତର ବିବାଦିତ ପ୍ରସଙ୍ଗ ଗୁଡ଼ିକ ସହ ସମ୍ବନ୍ଧିତ ସେମାନଙ୍କର ସବୁ ଶଂକାର ସମାଧାନ ମଧ୍ୟ ହେବ ଏବଂ ତାଙ୍କର ହୃଦୟ ମଧ୍ୟ ପୁଲକିତ ହେବ ।

CHINMAYA
PRAKASHAN
BRINGING KNOWLEDGE TO LIGHT
The Publications Division of
Central Chinmaya Mission Trust
₹ 350/- DEVOTIONAL